# ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ



# ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ

(ଆତ୍ମଜୀବନୀ ଓ ଭ୍ରମଣକାହାଣୀ)

ମନ୍ମଥ ନାଥ ଦାସ
ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ବିଦ୍ୟାପୁରୀ

*JIBANARA PATHAPRANTE DIGANTARA DRUSHYA*
*An autobiography and Travel Account*
*of Dr. Manmath Nath Das*
*Publisher: Vidyapuri, Balubazar, Cuttack 753002*



ISBN 81–7411–198–0

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ଦୀପକ କୁମାର ସାହୁ

ଲିପିସଂଯୋଜନ
ବିଦ୍ୟାଶୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ
ରେନ୍‌ବୋ ଅଫ୍‌ସେଟ୍ ପ୍ରାଇଭେଟ୍ ଲିମିଟେଡ
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର

ମୂଲ୍ୟ ଟ ୧୯୦.୦୦

# ଭୂମିକା

୧୯୯୬ ଜାନୁଆରୀ ୫ । ଜନ୍ମତିଥିର ପ୍ରଭାତ । ହାତରେ ଫୁଲ ଦେଇ ନାତିନାତୁଣୀମାନେ ଦୀର୍ଘଜୀବନ କାମନା କରିଗଲେ । ଅକସ୍ମାତ୍ ମନକୁ ସ୍ପର୍ଶକଲା ଅଶନି ସଂକେତ । ରାସ୍ତା ଶେଷ ହେଲାଣି । ଆଗରେ ମାଇଲ୍ ଖୁଣ୍ଟ ନାହିଁ । ଅନ୍ଧକାର ଭିତରେ ଦିଶୁଛି ଗଭୀର ଖାତ ।

ସନ୍ଧ୍ୟା ଆସିଲା । ଛାତ ଉପରେ ଏକାକୀ ବସିରହି ଚିନ୍ତାରାଇଜକୁ ଫେରାଇ ଆଣିଲି ଜୀବନର ଦୀର୍ଘ ଅତୀତ । ୭୧ ବର୍ଷ ଅତିକ୍ରମ କରିସାରିଛି । ଠିକ୍ ଏହି ସମୟରେ ମୋ ବାପା ଦେହତ୍ୟାଗ କରିଥିଲେ । ମନେପକାଇଲି, ସେହି ଭାବନୀୟ ପଦ୍ୟ—

ରେ ଆତ୍ମନ୍, ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ, କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।

ଭବିଷ୍ୟତ ନାହିଁ । ବର୍ତ୍ତମାନ ମଧ୍ୟ ହଜିଗଲାଣି । କିନ୍ତୁ ମାନସପଟରେ ତିଷ୍ଠିରହିଛି ଅତୀତ । ନିଃଶବ୍ଦେ ଧାଇଁ ଆସିଥିବା ଜୀବନସ୍ରୋତରେ ବିଗତ ସମୟର ଭାସମାନ ଛିନ୍ନ ବିଚ୍ଛିନ୍ନ ସ୍ମୃତିଖଣ୍ଡମାନ ଦୃଷ୍ଟିପଥରେ ଧରିରଖିଲା ବହୁ ଦୃଶ୍ୟପୂର୍ଣ୍ଣ ରଙ୍ଗୀନ ଚିତ୍ରପଟ ।

ଦୃଶ୍ୟ ପରେ ଦୃଶ୍ୟ । ଶୈଶବ କାଳର କେତେ କଥା । ସ୍କୁଲ ଦିନର ଅଲିଭା ସ୍ମୃତି । ବାଲ୍ୟାବସ୍ଥାରେ ଦେଖିଥିବା ମହାତ୍ମା ଗାନ୍ଧି, ସୁଭାଷ ଚନ୍ଦ୍ର ବୋଷ, ବଡ଼ଲାଟ ଲିନ୍‌ଲିଥିଗୋଙ୍କ ମୁଖ । ପରବର୍ତ୍ତୀ କାଳରେ ଦେଶ ବିଦେଶରେ ଦେଖିଥିବା ବହୁ ନରନାରୀଙ୍କ ରୂପ ।

ଅନ୍ତର୍ଦୃଷ୍ଟିରେ ଭାସିଗଲା ଦିଗଦିଗନ୍ତ, କେତେ ଦିଗ୍‌ବଳୟ, ଦେଶ ପରେ ଦେଶ, ସାତ ସମୁଦ୍ର ତେର ନଈ, ମରୁଭୂମି, ଆଲ୍‌ପସ୍ ପର୍ବତମାଳା, ହିମାଳୟ । ଦେଖିପାରିଲି ନିଜକୁ ନିଜେ । ରାତ୍ରିର ଶେଷ ପ୍ରହରରେ ନିଃସ୍ପନ୍ଦ ଛିଡ଼ା ରହିଛି ସିଂହଳ ଦ୍ୱୀପର ଆଦାମ୍ ଗିରିଶୃଙ୍ଗ ଶୀର୍ଷରେ, ଦେଖୁଛି ପାହାନ୍ତି ତରାର ଉଦୟ । ଛିଡ଼ା ଅଛି ପାର୍ଥେନନ୍ ମନ୍ଦିର ପ୍ରାଙ୍ଗଣରେ, ସମ୍ମୁଖରେ ଏଥେନ୍ସ ନଗରୀ । ବୋଇତ ଭାସିଚାଲିଛି

ପାରସ୍ୟ ଉପସାଗରରେ, ଆରବରୁ ପାରସ୍ୟ, ପାରସ୍ୟରୁ ଆରବ, ଦେଖୁଛି ବନ୍ଦର ପରେ ବନ୍ଦର । ଦେଖୁଛି ଦିଗହୀନ ସାହାରା, ପଶିଛି ବୃହତ୍ତମ ପିରାମିଡ୍‌ର ଗର୍ଭଗୃହରେ, ପାଖରେ ଫ୍ୟାରୋଙ୍କର ଶବାଧାର । ମିଶର ମରୁପ୍ରାନ୍ତସ୍ଥ ଧ୍ୱଂସପ୍ରାପ୍ତ ଗିର୍ଜାର ଅନ୍ଧକାରାଚ୍ଛନ୍ନ ଭୂତଳ କକ୍ଷରେ ନତଜାନୁ ଅବସ୍ଥାରେ ବସିରହିଛି, ଯେଉଁ ଗୃହରେ ଦିନେ ରହିଥିଲେ ଶିଶୁ ଯିଶୁଖ୍ରୀଷ୍ଟ । ଦେଖୁଛି, ଭିସୁଭିୟାସ୍ ଆଗ୍ନେୟଗିରି, ଲାଭା ତଳେ ଏକଦା ପୋତି ପଡ଼ିଥିବା ପ୍ରାଚୀନ ପମ୍ପେ । ବୁଲୁଛି, ପୋପ୍‌ଙ୍କ ଭାଟିକାନ୍ ଓ ରୋମ୍ ନଗରୀର କଲୋସିୟମ ଭିତରେ । ଚାଲିଛି, ରୁଷ୍ ସମ୍ରାଟମାନଙ୍କ ପ୍ରାସାଦ ଓ ଜାର୍‌ଯୁଗର ବନ୍ଦିଶାଳାର ନିର୍ଯ୍ୟାତନାକକ୍ଷମାନ ଦେଖି ଦେଖି । ଖୋଜୁଛି, ବଲଟିକ୍ ସାଗର କୂଳର ପାଇନ୍ ଅରଣ୍ୟରେ ବିପ୍ଳବୀ ଲେନିନ୍‌ଙ୍କ ଲୁଚିଥିବା ସ୍ଥାନ, ଦେଖୁଛି କ୍ରେମ୍‌ଲିନ୍ ହତାରେ ସୋଭିଏତ ନେତାମାନଙ୍କ ଦପ୍ତର । ଛିଡ଼ା ରହିଛି ଜାପାନ ସମ୍ରାଟଙ୍କ ରମଣୀୟ ଉଦ୍ୟାନରେ, ଦେଖୁଛି ଟୋକିଓର ସର୍ବପ୍ରାଚୀନ ବୌଦ୍ଧ ମନ୍ଦିରରେ ହିନ୍ଦୁ ସ୍ୱସ୍ତିକା । ଆଖି ଆଗରେ ଦୌଡ଼ୁଛି ଅଷ୍ଟ୍ରେଲିଆ ଜଙ୍ଗଲ ମଧ୍ୟରେ କଙ୍ଗାରୁ ଦଳ । ଆର୍ଦ୍ର ଦେହରେ ବାହାରି ଆସୁଛି ନାଏଗ୍ରା ଜଳପ୍ରପାତର ପତନ ସ୍ଥଳରୁ । ମଧ୍ୟରାତ୍ରରେ ବସିରହିଛି ଫରାସୀ ବିପ୍ଳବ ଯୁଗର ଗିଲୋଟିନ ମଞ୍ଚ ତଳେ, ଭାବୁଛି ରାଜାରାଣୀଙ୍କ ମୁଣ୍ଡଚ୍ଛେଦ କଥା । ସନ୍ଧ୍ୟାବେଳେ ବସିଛି ପଟୋମାକ ନଦୀତୀରସ୍ଥ ବେଞ୍ଚରେ ଯେଉଁଥିରେ ଦିନେ ବସୁଥିଲେ ବୃଦ୍ଧ ସେନାପତି ଜର୍ଜ ଉଆସିଂଟନ । ଦେଖୁଛି ଦୁର୍ଗ ପରେ ଦୁର୍ଗ, ହାଇଡ଼େଲବାର୍ଗ ବା ଏଗାର, ଦେଖିଚାଲିଛି ପ୍ରାଚ୍ୟ ପାଶ୍ଚାତ୍ୟର ବହୁବିଧ କୀର୍ତ୍ତି ।

ତନ୍ମୟ ଚିତ୍ତରେ ସେ ସନ୍ଧ୍ୟାରେ ଭାବିଯାଉଥିଲି ଭ୍ରମଣକାଳର ଘଟଣାରାଜି । ରାତ୍ରିର ଶୀତଳ ସ୍ପର୍ଶରେ ତନ୍ଦ୍ରା ଆସିଯାଉଥାଏ । ମନେପଡୁଥାଏ ଝିଅ ସଂଘମିତ୍ରାର ବାରମ୍ବାର କହିଥିବା କଥା– ଦେଶ ବିଦେଶର ଅନେକ ସ୍ଥାନ, ଅନେକ ବ୍ୟକ୍ତି ଓ ଅନେକ ଘଟଣା ସ୍ୱଚକ୍ଷୁରେ ଦେଖିଛ, ବଂଶଧରମାନଙ୍କ ଜାଣିବା ଲାଗି ଆତ୍ମଚରିତ ଲେଖିଯିବା ଉଚିତ । ପ୍ରକାଶକ ବନ୍ଧୁ ପୀତାମ୍ବର ମିଶ୍ର, ପ୍ରତ୍ୟେକ ଥର ବିଦେଶରୁ ଫେରିଲା ପରେ, ଭ୍ରମଣକାହାଣୀ ଲେଖିବାକୁ କହୁଥାନ୍ତି । କେହି କେହି ଶୁଭାର୍ଥୀ କେବେକେବେ କହିଥାନ୍ତି, ଜୀବନର ଅଭିଜ୍ଞତା ଓ ଅନୁଭୂତି ଲେଖିବା ପାଇଁ । ସମ୍ମୁଖରେ ବର୍ତ୍ତମାନ ଓ ଭବିଷ୍ୟତ ନଥିଲାବେଳେ, ଅତୀତକୁ ଖୋଜି ଦେଖିବା ଲାଗି କାହିଁକି କେଜାଣି ସହସା ପ୍ରେରଣା ଆସିଗଲା ।

ମନରେ ଦେଖାଦେଲା ଦ୍ୱନ୍ଦ୍ୱ । ଯେକୌଣସି ବ୍ୟକ୍ତି ପକ୍ଷରେ ଆତ୍ମଚରିତ ଲେଖିବା ସମୀଚୀନ କି ! ଜନ୍ମଦିନର ପର ଦିବସରେ ପାର୍ଥସାରଥି ଅଜୟ ନାମକ ଜଣେ ଉଦୀୟମାନ ଯୁବଲେଖକ ପ୍ରସଙ୍ଗକ୍ରମେ କହିଲେ, ରାଷ୍ଟ୍ରନୀତିଜ୍ଞମାନଙ୍କ ଜୀବନୀ ରଚନା

ଲାଗି ଲେଖକମାନଙ୍କ ଅଭାବ ନଥାଏ; ଅଥଚ ଅନ୍ୟ ପର୍ଯ୍ୟାୟର ବ୍ୟକ୍ତି, ବିଶେଷତଃ ଅଧ୍ୟାପକମାନଙ୍କ ଜୀବନଚରିତ ଲେଖିବା ପାଇଁ ଲେଖକ ନଥାନ୍ତି । ଏହାର କାରଣ କ'ଣ ?

ଅଧ୍ୟାପକର ଜୀବନଚରିତ ! ଲେଖିବ କିଏ ? ପଢ଼ିବ କିଏ ? ଉଲ୍ଲେଖ କଲି, ହେନ୍‌ରିକ୍ ହେନ୍ ନାମଧେୟ ଜୀବନଚରିତ ଲେଖକ ଯାହା କହିଥିଲେ ଅଧ୍ୟାପକ ଇମ୍ମାନୁଏଲ କ୍ୟାଣ୍ଟଙ୍କ ସମ୍ପର୍କରେ : "The history of the life of Immanuel Kant is hard to write, in as much as he had neither life nor history." ଜଣେ ନେପୋଲିୟନଙ୍କ ଜୀବନର ଗୋଟିଏ ମାସର ଘଟଣାରାଜିକୁ କେନ୍ଦ୍ରକରି ସହସ୍ରପୃଷ୍ଠା ସମ୍ବଳିତ ଇତିହାସ ରଚନା ସମ୍ଭବପର, କିନ୍ତୁ କ୍ୟାଣ୍ଟଙ୍କ ପରି ଜଣେ ଅଧ୍ୟାପକଙ୍କ ସାରା ଜୀବନକୁ ନେଇ କ୍ଷୁଦ୍ର ଖଣ୍ଡିଏ ଇତିହାସ ଲେଖିବା ସମ୍ଭବ ନୁହେଁ, ଯଦିଚ ତାଙ୍କ ପରି ମହାନ୍ ଆଦର୍ଶବାଦୀ ଦାର୍ଶନିକଙ୍କ ଚିନ୍ତାଧାରାକୁ କେନ୍ଦ୍ରକରି ବହୁ ଗ୍ରନ୍ଥ ରଚିତ ହୋଇଛି । "ଆମ ପରି ଅକିଞ୍ଚନ ଅଧ୍ୟାପକଙ୍କର ଜୀବନ ନାହିଁ କି ଦର୍ଶନ ନାହିଁ । ତେଣୁ ଜୀବନଚରିତ ଲେଖିବ କିଏ ଓ କାହିଁକି ?" ପାର୍ଥସାରଥିଙ୍କ ଉତ୍ତର ଥିଲା, "ଯେଉଁମାନଙ୍କ ଜୀବନୀ ଅନ୍ୟ କେହି ଲେଖନ୍ତି ନାହିଁ, ସେମାନେ ନିଜେ ନିଜର ଆତ୍ମଚରିତ ଲେଖିଯିବା ଉଚିତ ।"

ଆତ୍ମକଥା ପରିବର୍ତ୍ତେ ପ୍ରଥମେ ଭ୍ରମଣକାହାଣୀ ଲେଖିବି ବୋଲି ଭାବିଲି । ଗଦା ଗଦା ପୁରୁଣା ଫାଇଲ ଭିତରୁ ବିଦେଶ ଭ୍ରମଣ କାଳର କେତେଖଣ୍ଡି କୀଟଧ୍ୱସ୍ତ ଡାଏରି ବାହାର କଲି । ଅନ୍ୟ କେତେକ ଲେଖା ପାଇଲି ନାହିଁ । ଲେଖା ଆରମ୍ଭ କଲାପରେ ଅନୁଭବ କଲି, ନିଜ ଜୀବନକୁ ପୃଥକ୍ ରଖି ସ୍ମୃତିଚାରଣ ସମ୍ଭବ ନୁହେଁ । ଶେଷରେ ଠିକ୍ କଲି, ଜୀବନକାଳ ଓ ଭ୍ରମଣକାହାଣୀ ଏକାକାର କରି ଲେଖିବି ।

ଇତିହାସ ଅଧ୍ୟାପକ ରୂପେ ମହାନ ଐତିହାସିକ ପୁରୁଷମାନଙ୍କ 'ଆତ୍ମଚରିତ' ବିଶ୍ଳେଷଣ କଲାବେଳେ, ସେମାନଙ୍କ ମହତ୍ତ୍ୱ ଓ ଦୌର୍ବଲ୍ୟ ପ୍ରତି ଧ୍ୟାନ ଦେବା ଆବଶ୍ୟକ ଥାଏ । ମହାତ୍ମା ଗାନ୍ଧି ତାଙ୍କ ଆତ୍ମଚରିତକୁ ସତ୍ୟ ସଂପରୀକ୍ଷା ରୂପେ ବିବେଚନା କରିଥିଲେ । ଗାନ୍ଧି ଥିଲେ ଗାନ୍ଧି । ଅପର ପକ୍ଷରେ, ଅନ୍ୟ କେହି କେହି ପ୍ରଖ୍ୟାତ ବ୍ୟକ୍ତି ଆତ୍ମଗରିମା ଓ ଅହଙ୍କାରର ବଶବର୍ତ୍ତୀ ହୋଇ ଆତ୍ମଚରିତ ଲେଖିବା ଅସ୍ୱାଭାବିକ ନୁହେଁ । ଉଦାହରଣ ସ୍ୱରୂପ, ପ୍ରଥମ ବିଶ୍ୱଯୁଦ୍ଧକାଳୀନ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଲୟେଡ୍ ଜର୍ଜଙ୍କ ଆତ୍ମଚରିତ ପାଠକରି ହ୍ୟାରୋଲ୍ଡ ଲାସ୍କି ବିଦ୍ରୂପ ଛଳରେ କହିଥିଲେ, ସମସ୍ତେ ଜାଣିଛନ୍ତି ଯେ ଲୟେର୍ଡ୍ ଜର୍ଜ ମହାଯୁଦ୍ଧ

ଜିଣିଛନ୍ତି । କିନ୍ତୁ, ତାଙ୍କ ଆତ୍ମଚରିତ ପଢ଼ିଲାପରେ ଏବେ ଜାଣିପାରୁଛି, ଏକମାତ୍ର ଲୟେଡ୍ ଜର୍ଜ ହିଁ ମହାଯୁଦ୍ଧ ବିଜେତା ।

ମହାନ୍ ବ୍ୟକ୍ତିବିଶେଷଙ୍କ ଆତ୍ମଚରିତ ଏବଂ ସାଧାରଣ ବ୍ୟକ୍ତିର ଆତ୍ମଚରିତ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିବା ସୁନିଶ୍ଚିତ । ଜଣେ ଅଧ୍ୟାପକ ଭାବେ, ସୌଭାଗ୍ୟ କ୍ରମେ ବିଭିନ୍ନ ସମୟରେ ବିଭିନ୍ନ ଦେଶ ବୁଲିଥିଲି, କେତେକ ବ୍ୟକ୍ତିଙ୍କୁ ଦେଖିଥିଲି ଓ ନାନା କଥା ଶୁଣିଥିଲି । ନିଜ ଜୀବନକାଳର ପୃଷ୍ଠଭୂମିରେ ଅନ୍ୟମାନଙ୍କ କଥା ଓ ଦେଶବିଦେଶ ପର୍ଯ୍ୟଟନ ସମୟର ଅନୁଭୂତି ବର୍ଣ୍ଣନା ନିମନ୍ତେ ଏହି ପୁସ୍ତକ ଲେଖିଲି, ସ୍ୱଳ୍ପ ସମୟ ମଧ୍ୟରେ ।

୧୯୯୬ ସେପ୍ଟେମ୍ବର ୧୫ ତାରିଖ ଦିନ ଶ୍ରଦ୍ଧେୟ ଶ୍ରୀମାନ୍ ରାମାନନ୍ଦ ମିଶ୍ରଙ୍କ ହାତରେ ପାଣ୍ଡୁଲିପି ଅର୍ପଣ କରି ସ୍ୱସ୍ତି ଅନୁଭବ କରୁଛି । ଯେଉଁ ସମୟରେ ଓ ଯେଉଁ ସ୍ଥାନରେ ଯାହା ସବୁ ଦେଖିଥିଲି ଏବଂ ଜୀବଦ୍ଦଶାର ଭିନ୍ନ ଭିନ୍ନ ପର୍ଯ୍ୟାୟରେ ଯେଉଁ ସମସ୍ତ ଅବସ୍ଥାର ସମ୍ମୁଖୀନ ହୋଇଥିଲି, ସେହି ସବୁର କାହାଣୀ ରୂପେ ରଖିଗଲି **"ଜୀବନର ପଥପ୍ରାନ୍ତେ : ଦିଗନ୍ତର ଦୃଶ୍ୟ"** !

୧୭ ସତ୍ୟନଗର,
ଭୁବନେଶ୍ୱର ୭୫୧୦୦୭
୧୫ ସେପ୍ଟେମ୍ବର, ୧୯୯୬

**ମନ୍ମଥ ନାଥ ଦାସ**

## ସ୍ମୃତିର ଆଲେଖ୍ୟ

ଝିଅର ପୁଅ ଝିଅ : ରାଣା, ରାଜା, ରାତି
ପୁଅର ପୁଅ ଝିଅ : ସମ୍ରାଟ, ବିଦିଶା, ସତ୍ୟଶ୍ରୀ
ସେମାନଙ୍କ ଉଦ୍ଦେଶ୍ୟରେ ରଖିଗଲି ସ୍ମୃତିର ଆଲେଖ୍ୟ ।

# ସୂଚୀ

# ଜନ୍ମସ୍ଥାନ

## ପୂର୍ବପୁରୁଷମାନଙ୍କ ପରିଚୟ



### ଜନ୍ମସ୍ଥାନ

ଆତ୍ମଚରିତ ଲେଖୁଛି, ୧୯୯୬ ମସିହାରେ । ଜନ୍ମିଥିଲି, ୧୯୨୪ରେ । ୭୨ ବର୍ଷ ପୂର୍ବେ ମୋ ଜନ୍ମସମୟର ଜନ୍ମସ୍ଥାନ ଏବଂ ବର୍ତ୍ତମାନ ସମୟର ଜନ୍ମସ୍ଥାନ ମଧ୍ୟରେ ଅନେକ ପାର୍ଥକ୍ୟ । ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଭୋଗରାଇ ଥାନା । ସେହି ଥାନାର ସୁପ୍ରସିଦ୍ଧ ଶୈବପୀଠ ଚନ୍ଦନେଶ୍ୱର ଠାରୁ ତିନି କିଲୋମିଟାର ପଶ୍ଚିମରେ ଅବସ୍ଥିତ ଶଙ୍ଖାରି ନାମକ ଗ୍ରାମରେ ମୋର ଜନ୍ମ । ଚନ୍ଦନେଶ୍ୱରର ମାତ୍ର ଦୁଇ କିଲୋମିଟାର ପୂର୍ବରେ ପଶ୍ଚିମବଙ୍ଗର ସୀମା । ସୀମା ପାଖରୁ ଆଉ ପ୍ରାୟ ଦୁଇ କିଲୋମିଟାର ଦୂରରେ ରହିଛି ବଙ୍ଗ ସରକାରଙ୍କ ନବସ୍ଥାପିତ ସମୁଦ୍ରୋପକୂଳସ୍ଥ ପର୍ଯ୍ୟଟନ କେନ୍ଦ୍ର, ଦିଘା । ସେଠାକୁ ଆସୁଥିବା ସହସ୍ର ସହସ୍ର ଭ୍ରମଣକାରୀଙ୍କ ମଧ୍ୟରୁ ଅଧିକାଂଶ ନରନାରୀ ଆସନ୍ତି ଚନ୍ଦନେଶ୍ୱର ମହାଦେବଙ୍କ ମନ୍ଦିରରେ ପୂଜା ଉପାସନା ନିମନ୍ତେ । ଏବେ ଚନ୍ଦନେଶ୍ୱର ହେଉଛି ଓଡ଼ିଶାର ଅନ୍ୟତମ ଜନାକୀର୍ଣ୍ଣ ତୀର୍ଥସ୍ଥାନ ।

କେତେ ଶୀଘ୍ର ଗୋଟିଏ ଅଞ୍ଚଳର ପରିବର୍ତ୍ତନ ଘଟିପାରେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ମୋ ପିଲାକାଳରେ, କିମ୍ବା କଲେଜରେ ପଢ଼ିଲାବେଳେ, ଏପରିକି ୧୯୪୭ ମସିହାରେ ଭାରତର ସ୍ୱାଧୀନତାପ୍ରାପ୍ତି ପର୍ଯ୍ୟନ୍ତ ଭୋଗରାଇ ଅଞ୍ଚଳ କିପରି ଅବସ୍ଥାରେ ଥିଲା, ତାହା ସ୍ମୃତିପଟରେ ଖେଳିଯାଉଛି । କବିବର ରାଧାନାଥ ଦିନେ ଲେଖିଥିଲେ:

> ''ଭୋଗରାଇ ଯାର ଦିଗନ୍ତବିସ୍ତାରି-ସିକତା ରାଶି—
> ଶିରେ ଖେଳୁଥିଲା ରଙ୍ଗେ ଦିନେ ସିନ୍ଧୁ-ତରଙ୍ଗ ଆସି,
> ଏବେ ପାଦେ ଯାର ଚକ୍ରବାଳବ୍ୟାପୀ ଶାଳି-କେଦାର
> ପରତେ ଧରଇ ବାତାହତ-ସିନ୍ଧୁ-ତରଙ୍ଗାକାର
> ସେ ଶାଳି-କେଦାରେ ଦୂରୁଁ ଦିଶେ ଯାର ସିକତାକୁଦ,
> ପାରାବାରେ ଯେହ୍ନେ ଜଳଦେବତାଙ୍କ ଶଙ୍ଖ-ସଉଧ ।''

କବିବର ଏବେ ଯଦି ଭୋଗରାଇ ଭ୍ରମଣ ଲାଗି ଆସନ୍ତେ, ସେ ଦେଖିପାରନ୍ତେ "ଭୋଗରାଇ ଯାର ଦିଗନ୍ତପ୍ରସାରୀ ପାନବରଜ" ଏବଂ ଶାଳିକେଦାର ବା ଧାନକିଆରିର ସୌନ୍ଦର୍ଯ୍ୟରେ ମୁଗ୍ଧ ହେବା ସଙ୍ଗେ ଯେଉଁ ସିକତାକୁଦଗୁଡ଼ିକୁ ଜଳଦେବତାଙ୍କ ଶଙ୍ଖସଉଧ ରୂପେ ବର୍ଣ୍ଣନା କରିଥିଲେ, ତାହା ଉପରେ ଦେଖିପାରନ୍ତେ ଚିରହରିତ୍ ଝାଉଁବଣ ଓ ଜନବସତି ।

ପିଲାବେଳର ମୋ ଗ୍ରାମାଞ୍ଚଳ କଥା କହୁଛି । ନିକଟତମ ରେଳଷ୍ଟେସନ ଜଳେଶ୍ୱର ପାଖରୁ ୪୩ କିଲୋମିଟାର ଦୂରବର୍ତ୍ତୀ ନିପଟ ମଫସଲ । ରାସ୍ତାଘାଟ ନ ଥାଏ, ଯାତାୟାତ ପାଇଁ ମୋଟରଗାଡ଼ିର ପ୍ରଶ୍ନ ନ ଥିଲା । ଅଣଓସାରିଆ ଗାଁ ବାଟର ଦୁଇ ପାଖରେ ଘଞ୍ଚ ଘଞ୍ଚ କଣ୍ଟା ବେଢ଼ା । ଗାଁ ପାଖରୁ ୧୫ କିଲୋମିଟାର ଦୂରରେ ବାଟଗ୍ରାମ ନାମକ ଜାଗା । ଜଳେଶ୍ୱର ଠାରୁ ସେଠାକୁ କେବଳ ଗ୍ରୀଷ୍ମଋତୁରେ ଖଣ୍ଡିଏ ଦୁଇଖଣ୍ଡି ଛୋଟ ଓ ଦଦରା ବାସ୍ କ୍ୱଚିତ୍ ଆସୁଥାଏ, ଅନ୍ୟ ସମୟରେ ନୁହେଁ । ବାଟଗ୍ରାମ ଠାକୁ ଯିବା ରାସ୍ତାରେ ପଡୁଥାଏ ବଡ଼ ବଡ଼ ବାଲି ଆଡ଼ିଆ । ଖରାଦିନେ ତତଲା ବାଲିରେ ଚାଲି ଚାଲି ଯିବାକୁ ହେଉଥାଏ । ଜୋତା ମାଡ଼ି ଚାଲିବା ଲୋକଙ୍କ ସଂଖ୍ୟା ଥିଲା ଶହେରୁ ପ୍ରାୟ ଏକ । ଅନ୍ୟମାନେ ଚାଲୁଥାନ୍ତି ଖାଲିଗୋଡ଼ରେ । ଧନୀ ପରିବାରର ମହିଳା ବା ଅଥର୍ବମାନେ ସବାରିରେ ଯା'ଆସ କରୁଥାନ୍ତି । ରୋଗୀମାନଙ୍କ ପାଇଁ ଥାଏ ଦୋଳା ବା ଖଟିଆ । ବାଟଗ୍ରାମ ଠାରେ ଶେଷ ହେଉଥିଲା ବାଲି ଅଞ୍ଚଳ । ତା'ପରେ ବନ୍ୟା ଅଞ୍ଚଳର କାଦୁଅ । ବର୍ଷା ଋତୁର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଜଳେଶ୍ୱର ଠାକୁ ଚାଲି ଚାଲି ଯିବା ଛଡ଼ା ଅନ୍ୟ ଉପାୟ ନ ଥାଏ ।

ସେ ରାସ୍ତାର ଅବସ୍ଥା ପୁଣି କହିଲେ ନ ସରେ । ଆଣ୍ଠୁଏ କାଦୁଅ । ଅନେକ ଜାଗାରେ ଅଣ୍ଟା କିମ୍ବା ଛାତି ପର୍ଯ୍ୟନ୍ତ ପାଣି । ନିହାତି ଦରକାର ବେଳେ ଜଳେଶ୍ୱର ବଜାରରୁ ଭଡ଼ା ଆଣି ବଳଦଗାଡ଼ିରେ ଅସମର୍ଥ, ରୋଗୀ, ମହିଳା ଓ ଶିଶୁମାନଙ୍କୁ ରେଳଷ୍ଟେସନ ପର୍ଯ୍ୟନ୍ତ ନିଆଯାଉଥାଏ । ଅନ୍ୟ ସମସ୍ତେ ଚାଲି ଚାଲି ଯାଉଥାନ୍ତି । ପିଲାବେଳେ ଥରେ ତିନି ଚାରିଜଣଙ୍କ କାନ୍ଧରୁ କାନ୍ଧ ଅଦଳ ବଦଳ କରି ଦୁଇଦିନରେ ମୋତେ ଗାଁରୁ ଜଳେଶ୍ୱର ନିଆଯାଇଥିଲା, ପୁରୀ ଜଗନ୍ନାଥ ଧାମରେ କେଶମୁଣ୍ଡନ ଉପଲକ୍ଷେ ରେଳଗାଡ଼ି ଧରିବାକୁ । ଫେରିଲାବେଳକୁ ସୁବର୍ଣ୍ଣରେଖାରେ ଆସିଥାଏ ପ୍ରବଳ ବନ୍ୟା । କେତେ କଷ୍ଟରେ ବା କେତେ ଦିନରେ ପୁଣି ଷ୍ଟେସନ ପାଖରୁ ଘର ପର୍ଯ୍ୟନ୍ତ ଅଣାଯାଇଥିଲା, ତାହା ଆଜି ବି ମନେ ପଡୁଛି ।

ପିଲାବେଳେ ଶୁଣିଛି, ବାହାରର ଲୋକମାନେ ଭୋଗରାଇ ଅଞ୍ଚଳକୁ ଆସିବାକୁ ଇଚ୍ଛା କରୁ ନ ଥିଲେ । ନିମ୍ନପଦସ୍ଥ ସରକାରୀ କର୍ମଚାରୀମାନଙ୍କୁ ଭୋଗରାଇ

ଆସିବା ଲାଗି ଆଦେଶ ମିଳିଲେ ସେମାନେ ତାହାକୁ ଆଣ୍ଡାମାନ ନିର୍ବାସନ ଦଣ୍ଡ ବୋଲି ଭାବୁଥିଲେ । ବାଲି ଦେଶରେ ଚାଲିବା କଷ୍ଟ ଥିଲା ସମସ୍ୟା । ତେଣେ, ଡକାୟତଙ୍କ ଭୟ ଥାଏ । ନରହତ୍ୟା ପାଇଁ ଭୋଗରାଇର କୁଖ୍ୟାତି ଥିଲା । ଜମିଜମା ସଂକ୍ରାନ୍ତରେ ମାଲି ମୋକଦ୍ଦମା ଲାଗି ମଧ୍ୟ ଅଞ୍ଚଳର ଦୁର୍ନାମ ଥାଏ । ପଦସ୍ଥ ଜିଲ୍ଲା ପ୍ରଶାସକ ବା ପୋଲିସ କର୍ମଚାରୀମାନେ ପ୍ରାୟ ଆସୁ ନ ଥାନ୍ତି, ଯଦି ଆସୁଥାନ୍ତି ସବାରିରେ ଓ ଅନେକ କଷ୍ଟରେ ।

ବ୍ରିଟିଶ ଯୁଗରେ ଅବହେଳିତ ଅବସ୍ଥାରେ ଥାଏ ଭୋଗରାଇ ଥାନା । ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ ଯେଉଁସବୁ ଅଞ୍ଚଳକୁ ଦୁର୍ଗମ ବୋଲି ଜାଣିନେଇଥିଲେ, ତା ମଧ୍ୟରେ ଥିଲା ଭୋଗରାଇ । ଏ କଥା ମୁଁ ଜାଣିପାରିଥିଲି, ଇଂଲଣ୍ଡର ଗୋଟିଏ ଅଭିଲେଖାଗାରରେ ବ୍ରିଟିଶ ଶାସନ କାଳର ଓଡ଼ିଶାର ଆଞ୍ଚଳିକ ମାନଚିତ୍ରଗୁଡ଼ିକର ଅନୁଧ୍ୟାନ କଲାବେଳେ । ଭୋଗରାଇର ନକ୍ସା ଚାରିପାଖରେ ଯେଉଁ ରଙ୍ଗ ଦ୍ୱାରା ରେଖାଗୁଡ଼ିକ ଟଣା ଯାଇଥିଲା, ତାହା ଥିଲା ଅଗମ୍ୟ ସ୍ଥାନ ବୋଲି ସୂଚିତ କରାଇବା ରଙ୍ଗ । ଯେହେତୁ ଇଂରେଜ ସୈନ୍ୟମାନେ ଘୋଡ଼ାପିଠିରେ ବସି ପ୍ରକାଣ୍ଡ ପ୍ରକାଣ୍ଡ ଓ ସୁବିସ୍ତୀର୍ଣ୍ଣ ବାଲି ଆଡ଼ିଆ ଉପର ଦେଇ କ୍ଷିପ୍ର ଗତିରେ ଯାତାୟାତ କରିପାରିବେ ନାହିଁ, ସେଥିପାଇଁ ସେମାନଙ୍କ ଲାଗି ସେ ସ୍ଥାନ ଥିଲା ଗୋଟିଏ ପ୍ରକାର ନିଷିଦ୍ଧ ଅଞ୍ଚଳ । ବ୍ରିଟିଶ ଅଧିକୃତ ଉପକୂଳବର୍ତ୍ତୀ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାରେ ଭୋଗରାଇ ବୋଧହୁଏ ଥିଲା ସବୁଠାରୁ ବେଶି ଭୟପ୍ରଦ ଅଞ୍ଚଳ । ଫଳସ୍ୱରୂପ, ଭୋଗରାଇ ରହିଲା ବସ୍ତୁତଃ ସରକାରୀ ଶାସନକଳର ଦୃଷ୍ଟି ବହିର୍ଭୂତ ସ୍ଥାନ । କେବଳ ବର୍ଷକୁ ଥରେ, ଚନ୍ଦନେଶ୍ୱର ମେଳା ସମୟରେ, ଆଇନଶୃଙ୍ଖଳା ରକ୍ଷା କରିବା ନିମନ୍ତେ ଇଂରେଜ କଲେକ୍ଟର ଓ ପୋଲିସ୍‌ସାହେବ ସେଠାକୁ ଆସୁଥିଲେ, ଦୁଇ ତିନି ଦିନ ପାଇଁ । ସେମାନଙ୍କ ଲାଗି ତମ୍ବୁ ପଡୁଥିଲା । ଅନ୍ୟ ଅଫିସାରମାନେ ମଧ୍ୟ ଆସୁଥିଲେ ଓ ମେଳା ପରେ ଚାଲିଯାଉଥିଲେ ।

## ଆର୍ଥିକ ଅବସ୍ଥା

ସେ କାଳରେ ଭୋଗରାଇବାସୀଙ୍କ ଆର୍ଥିକ ଅବସ୍ଥା କଥା ମନେପଡ଼େ । ବଡ଼ ବଡ଼ ଗାଁଗୁଡ଼ିକରେ ଗୋଟିଏ ଦୁଇଟି ଧନଶାଳୀ ଏକାନ୍ନବର୍ତ୍ତୀ ପରିବାର ଦେଖିବାକୁ ମିଳୁଥାଏ । ସେମାନଙ୍କର ଯଥେଷ୍ଟ ଭୂସମ୍ପତ୍ତି ଥିଲା, ତେଣୁ ଅବସ୍ଥା ସ୍ୱଚ୍ଛଳ ଥାଏ । କୌଣସି କୌଣସି ଗାଁରେ କ୍ୱଚିତ ଜଣେ ଜଣେ ଧନୀଙ୍କର ପକ୍କା ଘର ଥାଏ । ଗୋଟିଏ ଦୁଇଟି କୋଠରି ଇଟା-ଚୂନରେ ତିଆରି ହୋଇଥିଲେ ବି ସେମାନଙ୍କର ସ୍ୱତନ୍ତ୍ର ସାମାଜିକ ମର୍ଯ୍ୟାଦା ଥିଲା । ସେମାନଙ୍କୁ କୁହାଯାଉଥାଏ 'ପକ୍କା ବାଡ଼ିଆ' । ସମଗ୍ର ଥାନାରେ ଏପରି ଧନୀଙ୍କ ସଂଖ୍ୟା ଥିଲା ଅତି ନଗଣ୍ୟ ।

ଅନ୍ୟ ପକ୍ଷରେ, ଗାଁଲୋକ ସାଧାରଣତଃ ଥାନ୍ତି ଦରିଦ୍ର । ଅନେକଙ୍କର ଚାଷଜମି ପ୍ରାୟ ନ ଥାଏ । ଯଦି ଥାଏ, ମାଣେ କିମ୍ବା ଦୁଇମାଣ । ଅନେକେ 'ବଡ଼ଲୋକ'ଙ୍କ ଜମିରେ ଦିନମଜୁରିଆ ଭାବେ କାମ କରୁଥାନ୍ତି, କେହି କେହି ଭାଗଚାଷୀ ଭାବରେ । କୃଷି ହିଁ ଥିଲା ପ୍ରଧାନ ଜୀବିକା । ଦୁଇ ତିନି ବର୍ଷରେ ଥରେ ଭଲ ଚାଷ ହେଉଥାଏ । କାରଣ, କେଉଁ ବର୍ଷ ଅତିବୃଷ୍ଟି ତ କେଉଁ ବର୍ଷ ଅନାବୃଷ୍ଟି, ଅଥବା ଅଦିନ ମେଘ । ସୁବର୍ଣ୍ଣରେଖା ତଟବର୍ତ୍ତୀ ବିସ୍ତୃତ ଧାନଜମିରେ ଚାଷ କରିବା ଥାଏ ଦୁରୂହ ବ୍ୟାପାର । ପ୍ରାୟ ପ୍ରତ୍ୟେକ ବର୍ଷ ଛୋଟ ବଡ଼ ବନ୍ୟା । ଗାଁଗଣ୍ଡା ପାଖରୁ ଦୂର ଦୂରାନ୍ତ ସେହି ପାହି ଜମିରେ ଘର କରିବା ସମ୍ଭବ ନ ଥାଏ । ଚାଷୀମାନେ ଧାନ ରୋପଣ ସମୟରେ ଅନେକ କଷ୍ଟରେ ଯାଉଥାନ୍ତି, ପୁଣିଥରେ ଧାନ କାଟିବା ପାଇଁ । ଜନଶୂନ୍ୟ ସେହି ସବୁ ଅଞ୍ଚଳରେ ଧାନ ଅମଳ କରିବା ସହଜସାଧ୍ୟ ନ ଥିଲା । କଲେରାରେ କିମ୍ବା ସର୍ପାଘାତରେ କେହି କେହି ଚାଷୀଙ୍କ ମୃତ୍ୟୁ ଖବର ମିଳୁଥାଏ । ସଂକ୍ଷେପରେ, ଚାଷ ଲାଗି ଉର୍ବର ଭୂମି ଥିଲେ ମଧ୍ୟ ପ୍ରକୃତି ଥାଏ ମନୁଷ୍ୟର ଶତ୍ରୁ ।

ଅନେକ ଗାଁରେ ତନ୍ତୀମାନେ ଲୁଗାବୁଣି ପେଟ ପାଳୁଥାନ୍ତି । କିନ୍ତୁ ମାରୱାଡ଼ୀମାନଙ୍କ ଦୟାରୁ ହାଟରେ ଶସ୍ତା ମିଲ୍ କପଡ଼ା ମିଳିଲାପରେ ତନ୍ତୀକୁଳର ସର୍ବନାଶ ଘଟିଲା । ସେମାନଙ୍କ ଦାରିଦ୍ର୍ୟର ଦୃଶ୍ୟ ଆଖିରେ ଦେଖିଛି । କେତେକେ ଦିନମଜୁରିଆ ଭାବରେ କାମ କରୁଥିଲେ । କ୍ଷୁଧା ଓ ଅନାହାର ଥାଏ ଅଧିକାଂଶ ପରିବାରର ଦୁର୍ଭାଗ୍ୟ । କୁମ୍ଭାର ଓ କାମିଳା ପରିବାରଗୁଡ଼ିକ ଏଣେତେଣେ ରହିଥାନ୍ତି । ସେମାନେ କୌଣସି ପ୍ରକାରେ ପରିବାର ପାଳିବାକୁ ସମର୍ଥ ଥାନ୍ତି । ତେଣେ, ସମୁଦ୍ର ତଟବର୍ତ୍ତୀ ଗାଁଗୁଡ଼ିକର ଧୀବରମାନଙ୍କ ଅବସ୍ଥା ଥାଏ ଶୋଚନୀୟ । ସାରା ଦିନ ସମୁଦ୍ର ଜଳରେ କିମ୍ବା ସୁବର୍ଣ୍ଣରେଖା ନଦୀରେ ବୁଡ଼ି ବୁଡ଼ି ଯାହା କିଛି ମାଛ ଧରୁଥାନ୍ତି, ତାହାକୁ ଗାଁ ଗାଁ ବୁଲି ବୁଲି ବିକ୍ରି କରି ମୁଠାଏ ମୁଠାଏ ଚାଉଳ ବା ଅଣେ ଦୁଇଅଣା ପଇସା ପାଉଥାନ୍ତି । ଗାଁରେ କେବେ କେବେ ମହୋତ୍ସବ ହେଲେ ମତ୍ସ୍ୟଜୀବୀ ବସ୍ତିର ଆବାଳବୃଦ୍ଧବନିତା ଯେପରି ଅବସ୍ଥାରେ ଛିଣ୍ଡାଲୁଗା ପିନ୍ଧି ଭାତ ମୁଠାଏ ଖାଇବା ପାଇଁ ବିକଳରେ ଆସୁଥାନ୍ତି, ସେ ଦୃଶ୍ୟ ଦେଖି ଆଖିକୁ ଲୁହ ଆସୁଥାଏ ।

ବୁଢ଼ା ବା ପିଲା ଏବଂ ବ୍ରାହ୍ମଣ ବା ଅବ୍ରାହ୍ମଣ, ଦୀନଦୁଃଖୀ ଭିକାରିମାନେ ସକାଳ ପାଖରୁ ସନ୍ଧ୍ୟା ପର୍ଯ୍ୟନ୍ତ ଭିକଥଳି ଧରି ଘର ଘର ବୁଲୁଥିବାର ଦୃଶ୍ୟ ଗାଁଗଣ୍ଡାର ସାଧାରଣ ବ୍ୟାପାର ଥାଏ । କେଉଁ ଘରେ ଚାଉଳ ମୁଠାଏ ମିଳେ, କେଉଁ ଘରେ ବା ମିଳେ ନାହିଁ, ତଥାପି ଦ୍ୱାର ଦ୍ୱାର ବୁଲି ସେମାନଙ୍କୁ ମାଗିବାକୁ

ପଡ଼େ । ତେବେ, ଦରିଦ୍ର ପରିବାରରେ ମଧ୍ୟ ଭିଖାରିକୁ ଚାଉଳ ଗଣ୍ଡିଏ ଦେବା ଲାଗି ଲୋକଙ୍କର ଆଗ୍ରହ ଥାଏ ।

ଖଣ୍ଡିଏ ଖଣ୍ଡିଏ ଗାଁରେ ଆଡ଼ିଆ ଉପରେ ଗୋଟିଏ ଦୁଇଟି ପାନବରଜ ଦେଖିବାକୁ ମିଳୁଥାଏ । କିନ୍ତୁ ବାଟଗ୍ରାମ ଘାଟ ପାଖରେ ପାନ ଟୋକେଇଗୁଡ଼ିକ କିଣି ନେଉଥାନ୍ତି ଜଳେଶ୍ୱର ବଜାରର ମାରୱାଡ଼ୀ ପାନବ୍ୟବସାୟୀମାନେ । ଅଳ୍ପ ମୂଲ୍ୟରେ କିଣିନେଇ ସେମାନେ ରେଳଗାଡ଼ିରେ ପାନ ଚାଲାଣ କରୁଥାନ୍ତି ବମ୍ବେ, ଦିଲ୍ଲୀ ଓ ବାରାଣସୀ ପ୍ରଭୃତି ସହରକୁ । ଉତ୍ତର ଓ ପଶ୍ଚିମ ଭାରତରେ ଭୋଗରାଇ ପାନର ଚାହିଦା ବେଶି ଥାଏ, କାରଣ ସେ ପାନ ଦୁଇ ତିନି ସପ୍ତାହ ପର୍ଯ୍ୟନ୍ତ ସତେଜ ରହୁଥାଏ । ତେବେ, ବାହାରର ପାନ ବ୍ୟବସାୟୀମାନେ ଲାଭବାନ ହେଲାବେଳକୁ, ଭୋଗରାଇର ପାନଚାଷୀମାନେ ଦରିଦ୍ର ଭାବରେ ଚଳୁଥିଲେ । ଭୋଗରାଇ ମାଟିର ସପମସିଣା, ଘଣାପେଷା ନଡ଼ିଆ, ତିଳ ଓ ସୋରିଷତେଲ ପ୍ରଭୃତି ଜିନିଷ ଅଣଓଡ଼ିଆ ବେପାରୀମାନେ ବାହାରକୁ ଚାଲାଣ କରୁଥିଲେ । ତଦ୍ଦ୍ୱାରା ଉତ୍ପାଦନକାରୀମାନଙ୍କ ଲାଭ ହେଉ ନ ଥାଏ ।

ମୋଟ ଉପରେ, ମୁଷ୍ଟିମେୟ କେତେଗୋଟି ଧନୀ ପରିବାର ବ୍ୟତୀତ ଭୋଗରାଇର ସାଧାରଣ ପ୍ରଜାମାନେ ଦୁଃଖରେ ଚଳୁଥାନ୍ତି । ଅଥଚ, ଦାରିଦ୍ର୍ୟ ସତ୍ତ୍ୱେ ସେମାନେ ଅତିଥିପରାୟଣ ଥିଲେ । ବାହାରୁ ଆସୁଥିବା ଲୋକେ ପ୍ରଶଂସା କରୁଥାନ୍ତି, ଯେ କୌଣସି ପରିବାରରେ ପହଞ୍ଚିଲେ ମଧ୍ୟ, ଗୃହକର୍ତ୍ତା ଅତିଥିସତ୍କାର କରୁଥିଲେ, ଅନ୍ତତଃପକ୍ଷେ ନିଜ ବାଡ଼ିର ପଇଡ଼ ପାଣି ପିଆଇ । ସେତେବେଳେ ପର୍ବପର୍ବାଣିର ଅଭାବ ନ ଥାଏ । ଗାଁ ଗାଁରେ ଯାତ୍ରାଦଳ ଥାଏ । ଯାତ୍ରା ଉପଭୋଗ କରିବା ଲାଗି ଲୋକଙ୍କର ଆଗ୍ରହ ଥାଏ ପ୍ରବଳ । ଯାତ୍ରାଦଳରେ ଯୋଗଦେବା ଲାଗି ଜାତି ଉପଜାତିର ବାଛ ବିଚାର ନ ଥିଲା । ଏପରିକି, ଦରିଦ୍ର ଓ ଅନୁନ୍ନତ ସମ୍ପ୍ରଦାୟର ଛୋଟ ଛୋଟ ଗାଁରେ ମଧ୍ୟ ଯାତ୍ରାଦଳ ଦେଖିବାକୁ ମିଳୁଥାଏ ।

ପିଲାକାଳରେ ଅନୁଭବ କରିଥିବା ଭୋଗରାଇ ଅଞ୍ଚଳର ଦୁଃଦୈନ୍ୟର ଚରମ ସୀମା ଦେଖିବାକୁ ମିଳିଥିଲା ୧୯୪୨ ମସିହାର ପ୍ରଳୟଙ୍କରୀ ବାତ୍ୟା ପରେ । ସେହି ଝଡ଼ ତୋଫାନରେ ପାର୍ଶ୍ୱବର୍ତ୍ତୀ କାନ୍ଥି ଅଞ୍ଚଳର ଅନେକ ଗ୍ରାମର ହଜାର ହଜାର ମଣିଷ ସମୁଦ୍ରଗର୍ଭରେ ଭାସିଯାଇଥିଲେ । ଭୋଗରାଇ ଓ ବାଲିଆପାଳ ଥାନା ଦୁଇଟିର ଅସଂଖ୍ୟ ଘରଦ୍ୱାର ଧ୍ୱସ୍ତବିଧ୍ୱସ୍ତ ହେଲା ଓ ଲକ୍ଷ ଲକ୍ଷ ଗଛ ଭାଙ୍ଗିପଡ଼ିଥିଲା । ଧାନଚାଷ ସମ୍ପୂର୍ଣ୍ଣଭାବେ ବିନଷ୍ଟ ହେଲା । ପାନବରଜଗୁଡ଼ିକ ନିର୍ମୂଳ ହେଲା । ହଜାର ହଜାର ଗାଈଗୋରୁ ମରି ପଡ଼ିଲେ । ସମଗ୍ର ଅଞ୍ଚଳରେ ହାହାକାର ପଡ଼ିଗଲା । ସେତେବେଳେ ଭାରତ ବାହାରେ ଚାଲିଥାଏ ଦ୍ୱିତୀୟ ମହାଯୁଦ୍ଧ ଓ

ଦେଶ ଭିତରେ 'ଭାରତ ଛାଡ଼' ବିପ୍ଳବ । ତେଣୁ, ବାତ୍ୟାବିଧ୍ୱସ୍ତ ଅଞ୍ଚଳ ପାଇଁ ସରକାରୀ ସାହାଯ୍ୟର ପ୍ରଶ୍ନ ନ ଥିଲା । ମାରୱାଡ଼ି ରିଲିଫ୍ ସୋସାଇଟି ତରଫରୁ ପୂଜ୍ୟ ଠକ୍କରବାପା ଓ ଈଶ୍ୱରଲାଲ ବ୍ୟାସ ପ୍ରଭୃତି ବ୍ୟକ୍ତିମାନେ ଯେଉଁପ୍ରକାର ସାହାଯ୍ୟ ଆଣିପାରୁଥିଲେ, ତାହା ଥିଲା ସମୁଦ୍ରକୁ ଶଙ୍ଖେ ପାଣି । କ୍ଷୁଧା ଓ ବ୍ୟାଧିର ସେହି ଦୁର୍ଦ୍ଦିନରେ ପୁଣି ଆସିଲା ୧୯୪୩ ମସିହାର ପ୍ରଚଣ୍ଡ ବନ୍ୟା । ସେଥିରେ ହଜାର ହଜାର ଘରଦ୍ୱାର ଭାସିଯିବା ସାଙ୍ଗକୁ ଧାନଚାଷ ସମ୍ପୂର୍ଣ୍ଣଭାବେ ନଷ୍ଟ ହେଲା । ପରିଣାମରେ ଦେଖିବାକୁ ମିଳିଲା ୧୯୪୪ ମସିହାର ଦୁର୍ଭିକ୍ଷ । ସେତେବେଳେ ସମଗ୍ର ବଙ୍ଗଦେଶରେ ଦେଖା ଦେଇଥାଏ ଦାରୁଣ ଦୁର୍ଭିକ୍ଷ, ଯେଉଁଥିରେ ଲକ୍ଷ ଲକ୍ଷ ମନୁଷ୍ୟ ମଶା ମାଛି ପରି ମରି ପଡୁଥାନ୍ତି । ସେହି ଦୁର୍ଭିକ୍ଷର କରାଳ ଛାୟା ପଡ଼ିଲା ଓଡ଼ିଶାର ଭୋଗରାଇ ଉପରେ । ନିଜ ଆଖିରେ ଦେଖିଛି ଦୁର୍ଭିକ୍ଷ-ପ୍ରପୀଡ଼ିତର ମୃତ୍ୟୁ, କାନରେ ଶୁଣିଛି ଅସ୍ଥିକଙ୍କାଳସାର ନରନାରୀ ଓ ଶିଶୁମାନଙ୍କର କରୁଣ ଆର୍ତ୍ତନାଦ ।

ବାତ୍ୟା, ବନ୍ୟା ଓ ଦୁର୍ଭିକ୍ଷର ପ୍ରକୋପରୁ ରକ୍ଷା ପାଇବା ପରେ ପୁନର୍ବାର ନିଜ ଗୋଡ଼ରେ ଛିଡ଼ା ହେବାଲାଗି ଜନସାଧାରଣଙ୍କର ଶକ୍ତି ବା ସମ୍ବଳ ନ ଥାଏ । ସ୍ୱାଧୀନତାର ପ୍ରାକ୍‌କାଳ ପର୍ଯ୍ୟନ୍ତ ଭୋଗରାଇ ରହିଥାଏ ଏକ ଅବହେଳିତ ଓ ଅଗମ୍ୟ ଅଞ୍ଚଳ । ୧୯୪୬ ମସିହାର ଗ୍ରୀଷ୍ମଋତୁରେ ଯେତେବେଳେ ତଦାନ୍ତୀନ ଓଡ଼ିଶାର ବରେଣ୍ୟ ନେତା ତଥା ଅନ୍ତର୍ବର୍ତ୍ତୀକାଳୀନ ସରକାରର 'ପ୍ରଧାନମନ୍ତ୍ରୀ' ହରେକୃଷ୍ଣ ମହତାବଙ୍କୁ ଏକ ଜନସମାବେଶରେ ଉଦ୍‌ବୋଧନ ଦେବା ନିମନ୍ତେ ଆମନ୍ତ୍ରଣ କରି ଆଣିଥିଲି, ସେତେବେଳେ ତାଙ୍କୁ ଜଳେଶ୍ୱର ଠାରୁ ବାଟଗ୍ରାମ ପର୍ଯ୍ୟନ୍ତ ଗୋଟିଏ ଟ୍ରକ୍‌ରେ ବସାଇ, ସ୍ଥାନେ ସ୍ଥାନେ ଆଣ୍ଠୁଏ କାଦୁଅ ମଧ୍ୟରେ ଟ୍ରକ୍ ଠେଲି ଠେଲି, ବାଟଗ୍ରାମ ଠାରୁ ଭୋଗରାଇ ବାଲି ଆଡ଼ିଆ ଉପରେ ମଧ୍ୟାହ୍ନର ପ୍ରଚଣ୍ଡ ସୂର୍ଯ୍ୟତାପ ତଳେ ଚଲାଇ ଚଲାଇ ଆଣିଥିଲି । ଏହା ଥିଲା ୧୯୪୬ ମସିହାରେ ଭୋଗରାଇର ଅବସ୍ଥା ।

## ରୂପାନ୍ତରିତ ଭୋଗରାଇ

ପଚାଶ ବର୍ଷପରେ ସେକାଳର ଭୋଗରାଇ ଏବେ ସ୍ମୃତିରାଜ୍ୟରେ ସ୍ଥାନ ପାଇଛି । ମୋ ପିଲାବେଳେ ଆମ ଅଞ୍ଚଳର ପ୍ରାୟ ୨୦ ଖଣ୍ଡି ଗାଁ ଭିତରେ ଥାଏ ଖଣ୍ଡିଏ ମାତ୍ର ସାଇକେଲ, ଚନ୍ଦନେଶ୍ୱରର ନିତ୍ୟାନନ୍ଦ ପାଣିଗ୍ରାହୀ ନାମକ ଜଣେ ଘରୋଇ ଡାକ୍ତରଙ୍କର । ରୋଗୀ ଦେଖିବାଲାଗି ତାଙ୍କୁ ଆଣିବାକୁ ଯାଉଥାନ୍ତି କେତେଜଣ ସବଳକାୟ ବ୍ୟକ୍ତି । ଡାକ୍ତରବାବୁ ସାଇକେଲରେ ଆସିବେ । ଯେଉଁଠାରେ ବାଲି ଆଡ଼ିଆ ପଡ଼ିବ, ସେଠାରେ ସବଳକାୟମାନେ ସାଇକେଲଟିକୁ ଶୂନ୍ୟରେ

ଟେକି ଓ ପାଣିଗ୍ରାହୀଙ୍କୁ କାନ୍ଧରେ ବସାଇ ରାସ୍ତା ଅତିକ୍ରମ କରୁଥିଲେ । ଆଜି ସେହିସବୁ ରାସ୍ତାରେ ଦିନ ରାତି ଚାଲିଛି ଅସଂଖ୍ୟ ମୋଟରକାର୍‌, ଜିପ୍‌, ଟ୍ରେକର ଓ ସ୍କୁଟର ଇତ୍ୟାଦି । ସବୁ ଦିଗରେ ପ୍ରଶସ୍ତ ରାସ୍ତା, ବାଲି ଉପରେ ପିଚୁ ବା ମୋରମ । ଭୋଗରାଇ ଆଜି ବ୍ରିଟିଶଯୁଗର ଅଗମ୍ୟ ବା ଦୁର୍ଗମ ଅଞ୍ଚଳ ନୁହେଁ । ଚାରିଆଡ଼େ ବାଟଘାଟ ବ୍ୟାପିଯାଇଛି । ଘରେ ଘରେ ସାଇକେଲ ଓ ମଟରସାଇକେଲ । ଜଳେଶ୍ୱର ପାଖରୁ ଚନ୍ଦନେଶ୍ୱର ପର୍ଯ୍ୟନ୍ତ ରାଜମାର୍ଗ ନ ହୋଇଥିଲେ ମଧ, ସେଥିରେ ଦୈନିକ ୧୫ରୁ ୨୫ ଖଣ୍ଡି ବଡ଼ ବଡ଼ ବାସ୍‌ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାତାୟାତ କରୁଛି ।

ଅଳ୍ପ କେତୋଟି ବର୍ଷ ମଧରେ ଗୋଟିଏ ଅଞ୍ଚଳର ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନର ପ୍ରଧାନ କାରଣ ହେଲା ଲୋକଙ୍କର ଆର୍ଥିକ ଉନ୍ନତି । ଅଞ୍ଚଳର ଭାଗ୍ୟ ପରିବର୍ତ୍ତନ କରିଦେଇଛି ଗୋଟିଏ ପତ୍ର– ପାନ । ଦିଗନ୍ତବିସ୍ତାରୀ ବାଲୁକାରାଶି ଆଜି ହଜିଯାଇଛି । ସେ ସ୍ଥାନରେ ଦେଖିବାକୁ ମିଳୁଛି ରାଶିହୀନ ପାନବରଜ । ପିଲାବେଳେ ମୋ ଗାଁ ପାଖରୁ ସମୁଦ୍ର ପର୍ଯ୍ୟନ୍ତ ବ୍ୟାପିରହିଥାଏ ବାଲି ଆଡ଼ିଆ ପରେ ବାଲି ଆଡ଼ିଆ । ଆଜି ସେହିସବୁ ଆଡ଼ିଆ ଉପରେ ଗ୍ରାମବାସୀଙ୍କର ପାନବରଜ । ଯେଉଁ ଦରିଦ୍ର ପରିବାରଗୁଡ଼ିକ ଆଗେ କୁଡ଼ିଆଘରେ ରହୁଥିଲେ, ଖଣ୍ଡିଏ ଦୁଇଖଣ୍ଡି ପାନବରଜ ବସାଇଲା ପରେ ଏବେ ସେମାନେ ରହୁଛନ୍ତି ପକ୍କା ଘରେ । ଗାଁରେ ଆଜି ସମସ୍ତେ ଧନଶାଳୀ । ଯେଉଁମାନଙ୍କ ବରଜସଂଖ୍ୟା ବେଶି, ସେମାନେ ଲକ୍ଷପତି ବା ନିୟୁତପତି । ଯେଉଁମାନେ ବାହାରକୁ ପାନ ଚାଲାଣ କରନ୍ତି, ସେମାନଙ୍କ ଆୟର ସୀମା ନାହିଁ ।

ସମୁଦ୍ରକୂଳରେ ବାସ କରୁଥିବା ମତ୍ସ୍ୟଜୀବୀମାନେ ଏକଦା ଥିଲେ ଦାରିଦ୍ର୍ୟର ସର୍ବନିମ୍ନ ସ୍ତରରେ । ଆଜି ସେମାନଙ୍କ ଘରେ ଘରେ ନାଇଲନ ଜାଲ । ବେଳାଭୂମି ଉପରେ ଦେଖିବାକୁ ମିଳେ ଡଜନ ଡଜନ ଟ୍ରକ୍‌ । ମାଛ ଚାଲାଣ ହୁଏ କଲିକତା । ମାଛର ଦର ଦୃଷ୍ଟିରୁ ଦରିଦ୍ରତମ ଧୀବରମାନଙ୍କର ଦୈନିକ ଆୟ ଶହ ଶହ ଟଙ୍କା । ଯେଉଁମାନଙ୍କର ଜନବଳ ବେଶି ଓ ବଡ଼ ବଡ଼ ଜାଲ ଓ ଯେଉଁମାନଙ୍କର ଅଛି ମାଛଧରା ଡଙ୍ଗା, ସେମାନଙ୍କ ଦୈନିକ ଆୟ ହଜାର ହଜାର । ଦିନେ ଯେଉଁମାନଙ୍କ ଦୁଃଖ ଦେଖି ଆଖିକୁ ଲୁହ ଆସୁଥାଏ, ଆଜି ସେମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ଦେଖି ବିମୋହିତ ହେବାକୁ ହୁଏ ।

ଧାନ, ପାନ, ମାଛ, ନଡ଼ିଆ, କାଜୁବାଦାମ, ଚୀନାବାଦାମ ଓ ତୈଳବୀଜ ଇତ୍ୟାଦିର ପ୍ରାଚୁର୍ଯ୍ୟ ଲାଗି ଭୋଗରାଇର ଆର୍ଥିକ ଅବସ୍ଥାରେ ଅଭୂତପୂର୍ବ ଉନ୍ନତି

ଘଟିଛି । ସେଥିସଙ୍ଗେ ଦେଖିବାକୁ ମିଳିଛି ଶିକ୍ଷାଦୀକ୍ଷାର ବ୍ୟାପକ ପ୍ରସାର । ମୋ ପିଲାକାଳରେ ସମଗ୍ର ଥାନାରେ ଥାଏ ଦୁଇଟି ମାତ୍ର ମଧ୍ୟଇଂରାଜୀ ସ୍କୁଲ । ସ୍ୱାଧୀନତାପ୍ରାପ୍ତିର ଅବ୍ୟବହିତ ପୂର୍ବେ ସ୍ଥାପିତ ହୋଇଥିଲା ଗୋଟିଏ ମାତ୍ର ବେସରକାରୀ ହାଇସ୍କୁଲ । ଏବେ ପ୍ରତ୍ୟେକ ତିନି ଚାରିଖଣ୍ଡି ଗାଁ ଅନ୍ତରରେ ଗୋଟିଏ ଲେଖାଏଁ ହାଇସ୍କୁଲ । ଥାନାରେ ପୁଣି ତିନିଟି କଲେଜ । ସଂଖ୍ୟା ବଢ଼ିଚାଲିବ ନିଶ୍ଚୟ ।

ଭୋଗରାଇ ମାଟିରେ ଦରିଦ୍ରସଂଖ୍ୟା ଏବେ ନଗଣ୍ୟ । ଭିଖାରିମାନଙ୍କୁ ଦେଖିବାକୁ ମିଳେ ନାହିଁ । ଅଧିକାଂଶ ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ । ଗାଁ ସାରା ପକ୍କା ଘର । ଯାତାୟାତର ସୁବିଧା ଯୋଗୁଁ ବାଣିଜ୍ୟ ବ୍ୟବସାୟ ବଢ଼ିଚାଲିଛି । ଲୋକମାନେ ଅତ୍ୟଧିକ କର୍ମତତ୍ପର । ଘରେ ଘରେ ରେଡ଼ିଓ, ବିଜୁଳିବତି, କାହା କାହା ଘରେ ଟେଲିଭିଜନ । ଶିକ୍ଷିତସଂଖ୍ୟା ବଢ଼ିବା ସଙ୍ଗେ ସାରାବର୍ଷ ନାନାପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମ ଲାଗିରହିଛି । ହାଟ ବଜାରର ଅଭାବ ନାହିଁ । ପ୍ରତ୍ୟେକ ଗାଁରେ ଧାଡ଼ି ଧାଡ଼ି ଦୋକାନ । କୁକୁଡ଼ାଚାଷ ପାଖରୁ ଚିଙ୍ଗୁଡ଼ିଚାଷ, ସବୁଥିରୁ ଅର୍ଥ ଆୟ । ଗାଁର ଛୋଟ ଛୋଟ ପିଲାମାନେ ମଧ୍ୟ ସମୁଦ୍ରକୂଳରୁ ଶାମୁକା ସଂଗ୍ରହ କରି ବେପାରୀମାନଙ୍କ ପାଖରୁ ଯଥେଷ୍ଟ ଟଙ୍କା ପାଇପାରନ୍ତି । ଯେଉଁମାନେ ପୂର୍ବକାଳର କଥା ମନେପକାନ୍ତି, ସେମାନଙ୍କ ମତରେ ଏବେକାର ଭୋଗରାଇ ପୂର୍ବକାଳର ଭୋଗରାଇ ନୁହେଁ । ଭୋଗରାଇ ଅଧୁନା 'ଭୋଗରାଜ୍ୟ'ରେ ପରିଣତ ।

ଅବଶ୍ୟ, ଭାରତ ଏକ ଦରିଦ୍ର ଦେଶ । କୋଟି କୋଟି ଦେଶବାସୀ ଦାରିଦ୍ର୍ୟର ସୀମାରେଖା ତଳେ । ଓଡ଼ିଶାବାସୀଙ୍କ ଅବସ୍ଥା ଭିନ୍ନ ହେବାର ପ୍ରଶ୍ନ ନାହିଁ । ତେବେ, ତୁଳନାତ୍ମକ ଭାବେ ଭୋଗରାଇ ଅଞ୍ଚଳ ଦେଶର ଅନ୍ୟାନ୍ୟ ଗ୍ରାମାଞ୍ଚଳ ଅପେକ୍ଷା ଆର୍ଥିକ ଦୃଷ୍ଟିରୁ ଅଧିକ ସମୃଦ୍ଧ । ମାଟିର ଉତ୍ପାଦନଶକ୍ତି ଓ ଲୋକଙ୍କର ପରିଶ୍ରମ ନିମନ୍ତେ ଅଞ୍ଚଳର ଉନ୍ନତି ଘଟିଥିବା ସ୍ୱାଭାବିକ ।

ଭୋଗରାଇବାସୀଙ୍କ ମହତ୍ ଗୁଣ ଯୋଗୁଁ ମୁଁ ମୋର ଜନ୍ମସ୍ଥାନ ଲାଗି ଗର୍ବ ଅନୁଭବ କରେ । ଏବେକାର ରାଜନୈତିକ ଦଳୀୟ ଦ୍ୱନ୍ଦ୍ୱ, ଶିକ୍ଷିତ ବେକାରୀ ସମସ୍ୟା, ଆଞ୍ଚଳିକ ଅଭାବ ଅସୁବିଧା ତଥା ବୃହତ୍ତର ପରିପ୍ରେକ୍ଷୀରେ ଭାରତୀୟ ସମାଜରେ ଦେଖା ଦେଇଥିବା ନୈତିକ ମୂଲ୍ୟବୋଧର ଅବକ୍ଷୟ ସତ୍ତ୍ୱେ ଭୋଗରାଇର ଜନସାଧାରଣ ସାଧାରଣତଃ ସତ୍‌ସାହସୀ ଓ ପରୋପକାରୀ, ଅତିଥିପରାୟଣ ଓ ଦୟାଳୁ, କର୍ତ୍ତବ୍ୟନିଷ୍ଠ ଓ ଧର୍ମବିଶ୍ୱାସୀ । ନିଜସ୍ୱ ରୀତିରେ ସେମାନଙ୍କର ଆଞ୍ଚଳିକ ବୈଶିଷ୍ଟ୍ୟ ଓ ପାରମ୍ପରିକ ଜୀବନଧାରା ଅକ୍ଷୁଣ୍ଣ ରଖିପାରିଥିବାରୁ ସେମାନେ ଧନ୍ୟବାଦର ପାତ୍ର ।

## ପୂର୍ବପୁରୁଷମାନଙ୍କ ପରିଚୟ

ଯେ କୌଣସି ସାଧାରଣ ପରିବାରର ଦୂରବର୍ତ୍ତୀ ପୂର୍ବପୁରୁଷମାନଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରିବା କଷ୍ଟସାଧ୍ୟ । ସେମାନଙ୍କ ନାମ ଓ କୀର୍ତ୍ତି ସମୟଗର୍ଭରେ ହଜିଯାଇଥାଏ । ଊନବିଂଶ ଶତାବ୍ଦୀର ଆରମ୍ଭ ସମୟରେ ରଘୁ ଦାସ ନାମକ ବ୍ୟକ୍ତି ସମୁଦ୍ରକୂଳରେ ଘରଦ୍ୱାର କରି ନିଜ ଭାଇମାନଙ୍କ ସହିତ ବସବାସ କରିଥିଲେ । ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ଜଣେ ଥିଲେ ତଡ଼ିତ୍‌କର୍ମା ବ୍ୟକ୍ତି, ଫକିର ଦାସ । ବାଲେଶ୍ୱର ଜିଲ୍ଲାର ବୁଢ଼ାବଲଙ୍ଗ ଓ ସୁବର୍ଣ୍ଣରେଖା ନଦୀ ମୁହାଣରୁ ସେ ସମୁଦ୍ରପଥରେ କଲିକତା ସହିତ ଯୋଗାଯୋଗ ରଖି ବାଣିଜ୍ୟ-ବ୍ୟବସାୟରେ ଲିପ୍ତ ଥାନ୍ତି । ତାଙ୍କର ବଡ଼ ବଡ଼ ବୋଇତ ଥାଏ ।

ସେହି ଶତାବ୍ଦୀର ଦ୍ୱିତୀୟ ଭାଗରେ ବଙ୍ଗ ସରକାର ଓ ଚବିଶ ପରଗଣା ଜିଲ୍ଲାର ଜମିଦାରମାନଙ୍କ ପକ୍ଷରୁ ଘୋଷଣା କରାଗଲା ଯେ, ଗଙ୍ଗାନଦୀ ମୁହାଣସ୍ଥିତ 'ସୁନ୍ଦରବନ'ର ଗହନ ଅରଣ୍ୟ ଯେଉଁମାନେ ନିଜ ଉଦ୍ୟମରେ ଆବାଦ କରିପାରିବେ, ସେମାନଙ୍କୁ ବିନାମୂଲ୍ୟରେ ସେହି ଜାଗାର କେତେକ ଅଂଶ ପଟ୍ଟା ଆକାରରେ ଦିଆଯିବ ଚାଷ କରିବାଲାଗି । କଲିକତାରେ ଏହି ଖବର ପାଇ ଫକିର ଦାସ ନିଜ ଅଞ୍ଚଳରୁ ଦଳ ଦଳ ଲୋକ ସହ ନୌକାରେ ପହଞ୍ଚିଲେ ସାଗର ଦ୍ୱୀପରେ । ସେତେବେଳେ ସେଠାରେ ଜନବସତି ନ ଥାଏ । ଗଙ୍ଗାନଦୀର ଶାଖା ପ୍ରଶାଖା ବେଷ୍ଟିତ ସାଗରଦ୍ୱୀପ ଥାଏ ଗୋଟିଏ ସୁବିସ୍ତୃତ ଗହନ ଅରଣ୍ୟ । ମହାବଳ ବାଘ ପରିପୂର୍ଣ୍ଣ ସ୍ଥାନ, ପୁଣି ନଦୀରେ ଥାଆନ୍ତି ଅସଂଖ୍ୟ କୁମ୍ଭୀର । ତଥାପି ଜୀବନ ବିପନ୍ନ କରି ଫକିର ଦାସଙ୍କ ଲୋକମାନେ ଜଙ୍ଗଲ କାଟିବାକୁ ଲାଗିପଡ଼ିଲେ । କେହି କେହି ବାଘ ଓ କୁମ୍ଭୀର ମୁହଁରେ ଜୀବନ ଦେଲେ । ଅଥଚ [illegible] କାମ ବନ୍ଦ କଲେ ନାହିଁ । ତେଣେ, ମନସାଦେବୀଙ୍କ ଦୟାପ୍ରାପ୍ତ ସ୍ଥାନ [illegible] ସାଗରଦ୍ୱୀପ ଥିଲା ସର୍ପର ଦେଶ । ସାପ ମାରିବା ସେଠାରେ ନିଷେଧ [illegible] ଫକିର ଦାସଙ୍କ କେହି କେହି ଅନୁଗାମୀ ସର୍ପଦଂଶନରେ ମଲେ ।

ପରିଶ୍ରମ ବଳରେ ଫକିର ଦାସଙ୍କ ଦଳବଳ ହଜାର ହଜାର [illegible] ଆବାଦ କରିଗଲେ । ସେଥିରୁ ଚବିଶ ପରଗଣାର ଜମିଦାରମା[illegible] ଅଞ୍ଚଳ ପାଇଲେ ଓ ଆବାଦକାରୀମାନଙ୍କୁ କିଛି କିଛି ଅଂଶ ଦା[illegible] ସମୁଦ୍ର କୂଳରେ ଗୋଟିଏ ସ୍ଥାନରେ ଫକିର ଦାସ ନିଜ [illegible] ୫ଶହ ଏକର ଜମି । ତାଙ୍କର ଲୋକମାନେ ପ୍ରତ୍ୟେକେ [illegible] କିମ୍ବା ଶହେ ଏକର ଲେଖାଏଁ ପାଇଲେ । ଫକିର ଦାସ[illegible] ଓ କର୍ଦ୍ଦମାକ୍ତ ଦ୍ୱୀପର ଦକ୍ଷିଣ ତଟରେ ଥିବା କପିଳ[illegible] ପର୍ଯ୍ୟନ୍ତ

ରାସ୍ତା ତିଆରି ହେଲା । କାଳକ୍ରମେ ସେଠାକୁ ବାହାର ଦେଶରୁ ଯାତ୍ରୀ ଓ ସନ୍ନ୍ୟାସୀମାନେ ବହୁସଂଖ୍ୟାରେ ଆସିପାରିଲେ ଓ କପିଳମୁନିଙ୍କ ପୀଠରେ ପ୍ରତ୍ୟେକ ବର୍ଷ 'ସାଗର ମେଳା' ବସିଲା । କପିଳମୁନିଙ୍କ ଲାଗି ଏବେ ସାଗରଦ୍ୱୀପ ଓ ସାଗର ମେଳା ଭାରତପ୍ରସିଦ୍ଧ ।

ବାଲେଶ୍ୱର ଜିଲ୍ଲା-ନିବାସୀ ଫକିର ଦାସଙ୍କ କୃତିତ୍ୱ ଦେଖି ମେଦିନୀପୁର ଜିଲ୍ଲାରୁ ମଧ୍ୟ ଦଳ ଦଳ ଲୋକ ଆସି ସୁନ୍ଦରବନ ଆବାଦ କରିବାକୁ ଲାଗିଲେ । ଗଙ୍ଗାର ଉର୍ବର ପଟୁମାଟିରେ ପ୍ରଚୁର ମାତ୍ରାରେ ଧାନ ଉତ୍ପାଦନ ସମ୍ଭବ ହେଲା । କ୍ରମେ କ୍ରମେ ଛୋଟ ଛୋଟ ଜନବସତିର ଉତ୍ଥାନ ଘଟିଲା । କିନ୍ତୁ ଗଙ୍ଗାନଦୀର ପ୍ରବଳ ବନ୍ୟା ବେଳେ ଜୀବନ ରକ୍ଷା କରିବା କଷ୍ଟକର ଥାଏ । ତେଣୁ, ବନ୍ୟା ସମୟରେ ଲୋକଙ୍କ ଆଶ୍ରୟ ପାଇଁ ବ୍ରିଟିଶ ସରକାର ସାଗର ଦ୍ୱୀପର କେତେକ ସ୍ଥାନରେ ବଡ଼ ବଡ଼ 'ଟ୍ୟାଙ୍କ୍' ପୋଖରୀ ଖନନ ଲାଗି କଣ୍ଟ୍ରାକ୍ଟର ନିଯୁକ୍ତ କଲେ । ପ୍ରତ୍ୟେକ ଟ୍ୟାଙ୍କ୍‌ର ଚାରିପାଖରେ ବନ୍ଧଗୁଡ଼ିକ ହେବ ଅତ୍ୟୁଚ୍ଚ ଓ ମଝିରେ ରହିବ ପ୍ରକାଣ୍ଡ ଜଳାଶୟ । ବନ୍ୟାବେଳେ ଲୋକମାନେ ବନ୍ଧ ଉପରେ ବସବାସ କରିବେ ଏବଂ ପୋଖରୀ ଜଳ ବ୍ୟବହାର କରିବେ ବୋଲି ଯୋଜନା କରାଗଲା ।

୩ଟି ସୁବିଶାଳ ଟ୍ୟାଙ୍କ୍ ନିର୍ମାଣ ପାଇଁ ଫକିର ଦାସ କଣ୍ଟ୍ରାକ୍ଟରୀ ନେଲେ । ନିଜ ଅଞ୍ଚଳରୁ ଶହ ଶହ ଲୋକଙ୍କୁ ନେଇ କାମରେ ଲଗାଇଲେ । ତାଙ୍କର ଶେଷ ବନ୍ଧଟି ମାପ କରି ମାଟି ଅନୁପାତରେ ଟଙ୍କା ଦେବାଲାଗି ଦିନେ ଜଣେ ଇଂରେଜ ଇଞ୍ଜିନିୟର କଲିକତାରୁ ଆସିଲେ । ଫକିର ଦାସ ହିସାବ ଦେଖାଇଲେ, ଏତେ ଲକ୍ଷ ମାଟି । ସାହେବ ଅଙ୍କ କଷି କହିଲେ, ନା ଏତେ ନୁହେଁ । ଭଙ୍ଗା ଭଙ୍ଗା ହିନ୍ଦୀରେ ଉଭୟଙ୍କ ମଧ୍ୟରେ ତର୍କବିତର୍କ ଚାଲିଲା । ସାହେବ କହିପକାଇଲେ, "ତୁମ୍ ଉଡ଼େ, ଝୋଟା କହତା ହାୟ" । ଫକିର ଦାସ ପାଟି କଲେ, "ମେ କଟକୀ ଅବଧାନ୍ ସେ ଅଙ୍କ୍ ଶିଖା ହେ । ମେରେ ହିସାବ୍ କଭି ଭୁଲ୍ ନେହିଁ ହୋଗା ।" "ତୋମାରା କଟକୀ ଅବଧାନକୋ କୁଛ୍ ମାଲୁମ୍ ନେହି" ସାହେବ ଗର୍ଜନ କରିଉଠିଲେ । ଉତ୍ତ୍ୟକ୍ତ ଅବସ୍ଥାରେ ଫକିର ଦାସ ହାତରେ ଧରିଥିବା ଶକ୍ତ ତାଳପତ୍ର ବିଡ଼ାଟିରେ ସାହେବଙ୍କ ମୁଣ୍ଡରେ ଦୁଇ ଚାରି ପ୍ରହାର ବସାଇ ଦେଇ ସଙ୍ଗେ ସଙ୍ଗେ ଦୌଡ଼ି ପଳାଇଗଲେ । ରକ୍ତାକ୍ତ ସାହେବଙ୍କ କର୍ମଚାରୀମାନେ ତାଙ୍କୁ ଧରିବା ଲାଗି ଗୋଡ଼ାଇଲେ । କିନ୍ତୁ ଫକିର ଦାସ ଓ ତାଙ୍କ ତିନିଜଣ ଲୋକ ନଦୀକୁ ଡେଇଁପଡ଼ି ପାଣିରେ ବୁଡ଼ି ବୁଡ଼ି ଅନ୍ତର୍ଦ୍ଧାନ ହେଲେ ।

ସେହି ଘଟଣାର ଦୁଇ ବର୍ଷ ପରେ ଫକିର ଦାସ ପୁଣିଥରେ ନିଜ ଜମିକୁ ଫେରିଲେ । ଏଣିକି କଣ୍ଟ୍ରାକ୍ଟରୀ ନ କରି ସେ ଚାଷକାମରେ ମନ ଦେଲେ ।

ଜମିର ଆୟତନ ମଧ୍ୟ ବଢ଼ାଇଚାଲିଲେ । ସାଗର ଦ୍ୱୀପର ପାର୍ଶ୍ୱବର୍ତ୍ତୀ ଘୋଡ଼ାମାରା ନାମକ ଦ୍ୱୀପରେ ମଧ୍ୟ ଜମି ଆବାଦ ଓ ଦଖଲ କଲେ । ନିଜର 'ନଅଶହ ମହଣୀ ବୋଟ'ରେ ଜମିର ଧାନ ନେଇ ବିକ୍ରି କରୁଥିଲେ କଲିକତାରେ । ସେହି ଟଙ୍କାରେ ମାଲ କିଣି ବୋଟ୍‌ରେ ଆସୁଥିଲେ ବାଲେଶ୍ୱର । ତାଙ୍କର ଅର୍ଥର ଅଭାବ ନ ଥାଏ । ଶେଷରେ ସେହି ସାଗର ଦ୍ୱୀପରେ ତାଙ୍କର ମୃତ୍ୟୁ ହେଲା । ଆଜି ପର୍ଯ୍ୟନ୍ତ ତାଙ୍କ ନିର୍ମିତ ଟ୍ୟାଙ୍କ୍ ପୋଖରୀଗୁଡ଼ିକୁ 'ଫକିର ଦାସେର ଟ୍ୟାଙ୍କ୍' ବୋଲି ସାଗରବାସୀମାନେ ଦେଖାଇ ଦିଅନ୍ତି । ତାଙ୍କରି ସମୟରୁ ଆମ ବଂଶକୁ 'ଚକଦାର' ବା 'ଲାଟଦାର' ବଂଶ ବୋଲି କେହି କେହି କହିଲେ । ଅର୍ଥାତ୍, ପ୍ରଚୁର ଭୂସମ୍ପତ୍ତିର ମାଲିକ ।

ଫକିର ଦାସ ଥିଲେ ମୋର ପ୍ରପିତାମହ । ତାଙ୍କ ସମୟର ପ୍ରାୟ ଶହେ ବର୍ଷ ପରେ ସେହି ସାଗର ଦ୍ୱୀପରେ ସୁନ୍ଦରବନ ଆବାଦ କାଳରେ ତାଙ୍କର ସାହସିକ କାହାଣୀମାନ ସେଠାକାର ଲୋକମାନଙ୍କ ପାଖରୁ ଶୁଣିଲାବେଳେ ମନେ ହେଉଥାଏ, କେଡ଼େ ଦୁର୍ଦ୍ଧର୍ଷ ଥିଲେ ଆଗ କାଳର ଓଡ଼ିଶାର ଲୋକମାନେ !

## ପିତାମହ ମଦନମୋହନ ଦାସ

ଫକିର ଦାସଙ୍କ ଚାରିପୁଅ ମଧ୍ୟରେ ଦ୍ୱିତୀୟ ଥିଲେ ମୋର ପିତାମହ ମଦନମୋହନ ଦାସ । ସୁନ୍ଦରବନରେ ଥାଏ ପର୍ଯ୍ୟାପ୍ତ ଭୂସମ୍ପତ୍ତି । 'ନଅଶହ ମହଣୀ' ଓ 'ସାତଶହ ମହଣୀ' ଦୁଇଟି ବୋଇତରେ ବାଲେଶ୍ୱର ଓ କଲିକତା ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଚାଲିଥାଏ । ଏକାନ୍ନବର୍ତ୍ତୀ ଗୋଟିଏ ବଡ଼ ପରିବାରର ସେ ଥିଲେ କର୍ତ୍ତା ଓ ଗାଁର ମାଲିକ । ସାଗର ଓ ଘୋଡ଼ାମାରା ଦ୍ୱୀପରେ ହାତଚାଷ କରି ପ୍ରଚୁର ଧାନ ଅମଳ କରୁଥାନ୍ତି । ଅର୍ଥର ଅଭାବ ନ ଥାଏ । ମନ୍ଦିର ନିର୍ମାଣ ଓ ଜଳାଶୟ ଖନନ ଦ୍ୱାରା ସେ ତାଙ୍କ ଅର୍ଥର ସଦୁପଯୋଗ କରୁଥିଲେ । ସମୟକ୍ରମେ ତାଙ୍କ ନାମ ପଛରେ ଲୋକେ ଗୋଟିଏ ବିଶେଷଣ ଯୋଗକଲେ – 'ଦାନୀ' । ଦାନୀ ମଦନ ଦାସଙ୍କ ସମ୍ପର୍କରେ ନାନାପ୍ରକାର କାହାଣୀ ଆଜି ପର୍ଯ୍ୟନ୍ତ ଉତ୍ତର ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲାର କାନ୍ଥି ସବ୍‌ଡିଭିଜନରେ ଶୁଣିବାକୁ ମିଳେ । ଜନଶ୍ରୁତିରେ ସେ ସବୁ କଥା ସ୍ମରଣୀୟ ରହିଯାଇଛି ।

ଥରେ ସେ ସୁନ୍ଦରବନରେ ଧାନ ବିକ୍ରି କରି ନୌକାରେ କାନ୍ଥିର ପିଛାବଣୀ ଘାଟରେ ପହଞ୍ଚି ସେଠାରୁ ଚାଲି ଚାଲି ଘରକୁ ଆସୁଥିଲେ । ସେତେବେଳେ କାଗଜନୋଟ୍ ନ ଥାଏ । କେବଳ ରୁପାଟଙ୍କା । ଟଙ୍କା ଭର୍ତ୍ତି ଥିବା ଚାରିଟା ବଡ଼ ବଡ଼ ବସ୍ତା କାନ୍ଧରେ ବୋହି ସାଙ୍ଗରେ ଚାଲିଥାନ୍ତି ଦୁଇଜଣ ବିଶ୍ୱସ୍ତ ଭୃତ୍ୟ । କାନ୍ଥି ସବ୍‌ଡିଭିଜନର କୌଣସି ସ୍ଥାନରେ ଆଡ଼ିଆ ଉପରେ ସେ ଦେଖିଲେ ଗୋଟିଏ

ବ୍ରାହ୍ମଣ ପରିବାରକୁ । ବରଗଛ ମୂଳରେ ବସି ସମସ୍ତେ ବିକଳ ସ୍ୱରରେ କାନ୍ଦୁଥାନ୍ତି । ମଦନ ଦାସ କାରଣ ପଚାରି ବୁଝିଲେ, ଅନେକ ବର୍ଷ ଖଜଣା ଦେଇ ନ ଥିବା ଯୋଗୁଁ ପଞ୍ଚେଟ୍ ଗଡ଼ର ଜମିଦାର ତାଙ୍କ ଘରଦ୍ୱାର ଓ ଜମି ବାଜ୍ୟାପ୍ତ କରି ସମସ୍ତଙ୍କୁ ବାସସ୍ଥାନରୁ ଉଚ୍ଛେଦ କରିଦେଇଛନ୍ତି ।

ମଦନ ଦାସ ଚାଲିଲେ ଜମିଦାରଙ୍କ କଚେରୀଘରକୁ । ସାଙ୍ଗରେ ବ୍ରାହ୍ମଣ ପରିବାର । ଖବର ପାଇ ଜମିଦାର ସସମ୍ଭ୍ରମେ ସାକ୍ଷାତ ଲାଗି ବାହାରି ଆସିଲେ । ମଦନ ଦାସ ପଚାରିଲେ, "ଆପଣଙ୍କ ପ୍ରାପ୍ୟ ଟଙ୍କା କେତେ ?" ଜମିଦାର ଉତ୍ତର ଦେଲେ, "ସାତ ଶହ" । ତତ୍‌କ୍ଷଣାତ୍ ବସ୍ତା ଫିଟାଇ ଟଙ୍କାତକ ଜମିଦାରଙ୍କ ଆଗରେ ରଖିଦେଲେ ଓ ଅନୁରୋଧ କଲେ, "ବ୍ରାହ୍ମଣ ପରିବାରକୁ ସେମାନଙ୍କ ଘରଦ୍ୱାର ଓ ଜମିବାଡ଼ି ଦୟାକରି ଫେରାଇ ଦିଅନ୍ତୁ ।" ସମ୍ବାଦଟି ସବୁଦିଗକୁ ବ୍ୟାପିଗଲା । ଆଜି ପର୍ଯ୍ୟନ୍ତ ତାହା କିମ୍ବଦନ୍ତୀ ଆକାରରେ ଶୁଣିବାକୁ ମିଳେ । ଏହିପରି ଅନେକ ଗଳ୍ପ ।

ଆଗକାଳର ବିଜ୍ଞ ବିଚାରକମାନେ ଗ୍ରାମାଞ୍ଚଳରେ କିପରି ଭାବରେ ସାମାଜିକ ସଦ୍‌ଭାବ ରକ୍ଷା କରିଥିଲେ, ସେ ସମ୍ପର୍କରେ ଏଠାରେ ଗୋଟିଏ ଉଦାହରଣ ଦେଉଛି । ଥରେ ଜଣେ ଉଚ୍ଚଜାତିର ଲୋକ ଜଳେଶ୍ୱରରୁ ଚାଲି ଚାଲି ଆସି ପେଟ ଯନ୍ତ୍ରଣାରେ ଛଟପଟ ହେବା ଅବସ୍ଥାରେ ତାଙ୍କ ଗାଁର ଜଣେ ସବାରିଆ ସର୍ଦ୍ଦାରଙ୍କ ପିଣ୍ଡାରେ ଶୋଇପଡ଼ି ଔଷଧ ଗିଳିବା ଲାଗି ବିକଳରେ ପାଣି ମାଗିଲେ । ତାଙ୍କ ଅବସ୍ଥା ଦେଖି ସର୍ଦ୍ଦାରଙ୍କ ସ୍ତ୍ରୀ ଲେମ୍ବୁ ସରବତ ପିଇବାକୁ ଦେଲେ । ଅସ୍ପୃଶ୍ୟ ଘରେ ପାଣି ପିଇଥିବା ଅପରାଧରେ ସବର୍ଣ୍ଣମାନେ ସେହି ଲୋକର ପରିବାରକୁ ଗାଁରେ ବାସନ୍ଦ କଲେ ଓ ସାମାଜିକ ଅତ୍ୟାଚାର ଚଳାଇଲେ । ଏହି ଘଟଣାକୁ କେନ୍ଦ୍ର କରି ଗାଁରେ ଦଳାଦଳି ଆରମ୍ଭ ହେଲା । ଶେଷରେ କେତେଜଣ ମିଶି ମଦନ ଦାସଙ୍କୁ ବିଚାରକ ଭାବେ ଆଣିବା ଲାଗି ତାଙ୍କ ଦ୍ୱାରସ୍ଥ ହେଲେ ।

ସବୁକଥା ଶୁଣିସାରି ମଦନ ଦାସ କହିଲେ, "ତମ ଗାଁ ଢେର ଦୂରରେ । ସବାରିରେ ଯାଇ ରବିବାର ରାତିରେ ସେଠାରେ ପହଞ୍ଚିବି । କାହାରି ଘରେ ରହିବି ନାହିଁ କି ଖାଇବି ନାହିଁ । ଗାଁ ବାହାରେ ଥିବା ମନ୍ଦିର ପିଣ୍ଡାରେ ଶୋଇବି । ମୋ ଲୋକ ରନ୍ଧାବଢ଼ା କରିବେ । ସୋମବାର ଠିକ୍ ସୂର୍ଯ୍ୟୋଦୟ ବେଳେ ତମ ହାଟ ପଡ଼ିଆରେ ସମସ୍ତେ ରହିବେ । ବିଚାର ଶେଷ କରି ଶୀଘ୍ର ଫେରିବି ।"

ମଦନ ଦାସଙ୍କ ସବାରି-ବାହକ ଥିଲେ ଚାରିଜଣ ସାନ୍ତାଳ । ରାତିରେ ମନ୍ଦିର ପାଖରେ ସବାରି ପହଞ୍ଚିଲା । ସାଙ୍ଗରେ ଯାଇଥିବା ପାଚକ ସମସ୍ତଙ୍କ ପାଇଁ ଭାତ ରାନ୍ଧିଲେ । ରାତି ପାହିଲାବେଳକୁ ହାଟ ଉପରେ ଗାଁ ଲୋକ ରୁଣ୍ଡ ହେଲେ ।

କିନ୍ତୁ ବେଳ ଘଡ଼ିଏ ପର୍ଯ୍ୟନ୍ତ ମଦନ ଦାସଙ୍କ ଦେଖା ନାହିଁ । ମୁଖିଆମାନେ ମନ୍ଦିର ପାଖକୁ ଦୌଡ଼ିଲେ । ଦେଖିଲାବେଳକୁ, ଗାମୁଛା ପିନ୍ଧି ମଦନ ଦାସ ମନ୍ଦିର ତଳେ ପଡ଼ିଥିବା ଅଇଁଠା କଦଳୀପତ୍ରଗୁଡ଼ାକ ନିଜ ହାତରେ ଉଠାଉଛନ୍ତି । ବିଳମ୍ବ ଲାଗି ଦୁଃଖ ପ୍ରକାଶ କରି ସେ କହିଲେ, ‘‘ବାବୁ, ଦେଖନ୍ତୁ ମୋ ଅବସ୍ଥା । ସାନ୍ତାଳମାନେ ରାତିରେ ମନ୍ଦିର ଦୁଆରେ ଖାଇଥିଲେ । ଅଇଁଠାପତ୍ର ତଳକୁ ଫୋପାଡ଼ି ଦେଇ, ହାଣ୍ଡିଆ ପିଇ କେଉଁଠି ଆଡ଼ିଆ ଉପରେ ଶୋଇଥିବେ । ଠାକୁରାଣୀଙ୍କ ମନ୍ଦିର ଫିଟିବା ଆଗରୁ ଅଇଁଠାଗୁଡ଼ାକ ସଫା କରିବା ଦରକାର । ଆତୁରେ ନିୟମୋ ନାସ୍ତି ! ପୋଖରୀରେ ଗାଧୋଇ ଆସି ସଙ୍ଗେ ସଙ୍ଗେ ହାଟରେ ପହଞ୍ଚିବି ।’’

ମୁଖିଆମାନେ ଫେରିଯାଇ ଦୁଇ ଦଳର ଲୋକଙ୍କ ଆଗରେ ଆଖିରେ ଦେଖିଥିବା ଦୃଶ୍ୟ ବର୍ଣ୍ଣନା କଲେ । ଜଣେ ବ୍ରାହ୍ମଣ ପୁରୋହିତ ଛିଡ଼ା ହୋଇ ହାତ ଯୋଡ଼ିକରି କହିଲେ, ‘‘ମଦନ ଦାସ ନିଜେ ଯଦି ସାନ୍ତାଳ ବେହେରାମାନଙ୍କ ଅଇଁଠା ନିର୍ବିକାର ମନରେ ଉଠାଇ ପାରୁଛନ୍ତି ଓ କହୁଛନ୍ତି ‘ଆତୁରେ ନିୟମୋ ନାସ୍ତି’, ଆମେ ତାଙ୍କ ଆଗରେ ଜାତି ପ୍ରଶ୍ନ ଉଠାଇବା ଉଚିତ ହେବ ନାହିଁ ।’’ ସମସ୍ତେ ସେଥିରେ ରାଜି ହେଲେ । ମଦନ ଦାସ ପହଞ୍ଚିଲାମାତ୍ରେ ପୁରୋହିତ ମହୋଦୟ କହିଲେ, ‘‘ଆଜ୍ଞା, ଆପଣ ଆମର ଆଖି ଫିଟାଇ ଦେଇଛନ୍ତି । ଆଉ ବିଚାର ଦରକାର ନାହିଁ । ବାସନ୍ଦ ଓ ଦଳାଦଳି ଏହିଠାରେ ଶେଷ ହେଲା ।’’ ମଦନ ଦାସ କହିଲେ, ‘‘ମୋ ଆଗରେ ଆଉ ଗୋଟିଏ ବିଚାର ବାକି ଅଛି । ଯେଉଁ ସର୍ଦ୍ଦାର ଘରର ନାରୀମାନେ ସରବତ୍ ଦେଇ ସବର୍ଣ୍ଣ ଲୋକଟିକୁ ରକ୍ଷା କରିଥିଲେ, ସେମାନଙ୍କୁ ମୁଁ ଭେଟି ଦେବି ।’’

ବାଳକ ଅବସ୍ଥାରେ ଏହି ଦୃଶ୍ୟ ଦେଖିଥିବା ବ୍ୟକ୍ତି ଜଣକ ତାଙ୍କ ବୃଦ୍ଧାବସ୍ଥାରେ ମୋ ଆଗରେ ଏ କଥା କହିଲା ବେଳେ କାନ୍ଦି ପକାଇଥିଲେ ।

ମାତ୍ର ୫୨ ବର୍ଷ ବୟସରେ ସେହି ସାଗର ଦ୍ୱୀପରେ ୧୯୧୭ ମସିହାରେ ମଦନ ଦାସ ପରଲୋକ ଗମନ କଲେ । ତାଙ୍କ ମୃତ୍ୟୁର ଅନେକ ବର୍ଷ ପରେ ସୁଦ୍ଧା ଆମ ଅଞ୍ଚଳର କେହି କେହି ବୃଦ୍ଧବ୍ୟକ୍ତି ସକାଳେ ବିଛଣାରୁ ଉଠି ପ୍ରଥମେ ତାଙ୍କ ନାମ ଉଚ୍ଚାରଣ କରନ୍ତି । ଜନମାନସରେ ତାଙ୍କ ମହତ୍ତ୍ୱ କେତେଦୂର ଗଭୀର ଭାବରେ ପ୍ରତିଷ୍ଠା ଲାଭ କରିଛି, ତାହାର ପ୍ରମାଣ ପାଇଲି ୧୯୮୯ ମସିହାର ବିଧାନସଭା ନିର୍ବାଚନ ସମୟରେ । ଭୋଗରାଇ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ରୂପେ ଛିଡ଼ା ହୋଇଥାନ୍ତି ମୋ କକାପୁଅ ସାନଭାଇ ଡକ୍ଟର କାଳିକୁମାର ଦାସଙ୍କ ଧର୍ମପତ୍ନୀ

ଡାକ୍ତର କମଳା ଦାସ । ସେ ଥିଲେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଅଧ୍ୟାପିକା । ଦୈବାତ୍‌କ୍ରମେ ଜନତା ଦଳର ତୁଙ୍ଗ ନେତା ମଧୁ ଦଣ୍ଡବତେ ଓ ବିଜୁ ପଟ୍ଟନାୟକଙ୍କ କଥାରେ ପଡ଼ି ସେ ଭୋଗରାଇରୁ ଜନତାଦଳର ପ୍ରାର୍ଥୀ ହେଲେ । ତାଙ୍କ ସପକ୍ଷରେ ନିର୍ବାଚନ ପ୍ରଚାର ଲାଗି ମୋତେ ଯିବାକୁ ପଡ଼ିଲା । ନିର୍ବାଚନ ମଣ୍ଡଳୀର ପ୍ରାୟ ୧୫ଟି ସ୍ଥାନରେ ଆୟୋଜିତ ହୋଇଥିବା ବଡ଼ ବଡ଼ ସାଧାରଣ ସଭାରେ ମୁଁ ଯେତେବେଳେ ମୋ ଭାଇବୋହୂଙ୍କୁ ଭୋଟ ଦେବାକୁ ଅନୁରୋଧ କରୁଥାଏଁ, ଅନେକ କଣ୍ଠରୁ ଉତ୍ତର ମିଳୁଥାଏ, ‘‘ଆମେ ମଦନ ଦାସଙ୍କ ନାତିବୋହୂଙ୍କୁ ନିଶ୍ଚୟ ଭୋଟ ଦେବୁଁ ।’’ ମନେ ମନେ ଭାବୁଥାଏ, ସାତ ଦଶନ୍ଧି ବିତି ଯାଇଥିଲେ ସୁଦ୍ଧା ତାଙ୍କ ନାମ ଲୋକଙ୍କ ମନରୁ ଲିଭିଯାଇ ନାହିଁ ।

## ପିତା ମଧୁସୂଦନ ଦାସ

ମଦନମୋହନ ଦାସଙ୍କ ଏକମାତ୍ର ପୁତ୍ର ଥିଲେ ମୋ ବାପା ମଧୁସୂଦନ ଦାସ । ଏକାନ୍ନବର୍ତ୍ତୀ ଗୋଟିଏ ବଡ଼ ପରିବାରର ଦାୟିତ୍ୱ ବହନ କରିବା ସାଙ୍ଗକୁ ସେ ସୁନ୍ଦରବନରେ ଥିବା ଭୂସମ୍ପତ୍ତି ଦେଖାଶୁଣା କରୁଥିଲେ ଓ ବାଣିଜ୍ୟ-ବ୍ୟବସାୟରେ ବ୍ୟସ୍ତ ରହିଥିଲେ । ପୁଣି, ଅନେକ ଗ୍ରାମ ଉପରେ ‘ପ୍ରେସିଡେଣ୍ଟ’ ରୂପେ କାର୍ଯ୍ୟ କରିବା ଲାଗି ସରକାରୀ ଦାୟିତ୍ୱ ପାଇଲେ । ସେ ସମୟରେ ପଞ୍ଚାୟତ ସମିତି ଚେୟାରମ୍ୟାନ ଓ ସରପଞ୍ଚ ପ୍ରଭୃତି ପଦ-ପଦବୀ ନ ଥାଏ । ପ୍ରତ୍ୟେକ ଥାନାକୁ କେତେଗୁଡ଼ିଏ ଅଞ୍ଚଳରେ ବିଭକ୍ତ କରି ଜଣେ ଜଣେ ପ୍ରେସିଡେ଼ଣ୍ଟଙ୍କ ତତ୍ତ୍ୱାବଧାନରେ ରଖାଯାଇଥାଏ । ତାଙ୍କ ଅଧୀନରେ ଥାନ୍ତି କେତେଗୁଡ଼ିଏ ଗ୍ରାମର ଚୌକିଦାର ଓ ସେମାନଙ୍କ ଉପରକୁ ଦଫାଦାର । ବିଚାର ଆଚାର, ଚୋରି ଓ ଅପରାଧ ଏବଂ ସାଧାରଣ ଶାନ୍ତିଶୃଙ୍ଖଳା ରକ୍ଷା ଇତ୍ୟାଦି ବିଷୟ ପ୍ରତି ଧ୍ୟାନ ଦେବା ଥାଏ ପ୍ରେସିଡେଣ୍ଟଙ୍କ କର୍ତ୍ତବ୍ୟ । ଘୋଡ଼ାପିଠିରେ ବସି ସେ ଗସ୍ତ କଲାବେଳେ ଚୌକିଦାରମାନେ ପାଖେ ପାଖେ ଦୌଡ଼ନ୍ତି ।

୧୯୨୪ ମସିହାରେ ମୋର ଜନ୍ମ ସମୟରୁ ଦଶ ବାର ବର୍ଷ ପର୍ଯ୍ୟନ୍ତ ମୋ ବାପାଙ୍କର ପ୍ରତାପ ପ୍ରତିପତ୍ତି ଓ ପରିବାରର ଧନସମ୍ପତ୍ତି କିଛି କମ୍ ନ ଥାଏ । କିନ୍ତୁ, ଲକ୍ଷ୍ମୀ ଚଞ୍ଚଳା । ତିନି ପୁରୁଷ ବ୍ୟାପୀ ଯେଉଁ ଲକ୍ଷ୍ମୀ ଆମ ବଂଶ ପ୍ରତି ସୁପ୍ରସନ୍ନା ଥିଲେ, ତାଙ୍କର ସେହି ଦୟା କମିଆସିଲା । ରେଳପଥରେ କଲିକତାରୁ ବାଲେଶ୍ୱରକୁ ମାଲ ଆସିବା ଫଳରେ ଆମ ଘରର ବୋଟ୍‌ଗୁଡ଼ିକରେ ସମୁଦ୍ର ପଥରେ ମାଲ ଆଣିବା ବନ୍ଦ ହେଲା । ପିଲାବେଳେ ସୁବର୍ଣ୍ଣରେଖା ମୁହାଣରେ ଯେଉଁ ନୌକାର ବନ୍ଦାଣ ଉତ୍ସବ ଦେଖିଥିଲି, ଉଚ୍ଚ ପ୍ରାଥମିକ ସ୍କୁଲରେ ପଢ଼ିଲାବେଳକୁ

ତାହା ଆଉ ନ ଥିଲା । ତେଣେ, ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗିଗଲା । ନିଜର ଦୁଇ କକା ଓ କକାପୁଅ ଭାଇମାନଙ୍କ ପାଖରୁ ପୃଥକ ହୋଇ ବାପା ଗାଁ ଶେଷସୀମାରେ ଘର ତୋଳିଲେ । ସାଗର ଦ୍ୱୀପରେ ଥିବା ଭୂସମ୍ପତ୍ତି ବା ଚକ ଜ୍ଞାତିମାନଙ୍କ ମଧ୍ୟରେ ଭାଗ ଭାଗ ହେଲା । ଘର ପାଖର ସମ୍ପତ୍ତି ମଧ୍ୟ । ହାତଚାଷ ବଦଳରେ ସୁନ୍ଦରବନର ଚାଷଜମି ସେଠାକାର ସ୍ଥାନୀୟ ଚାଷୀମାନଙ୍କ ହାତରେ ଛାଡ଼ିଦିଆଗଲା । ଫଳରେ ସେଠାରୁ ଯେଉଁ ପର୍ଯ୍ୟାପ୍ତ ଟଙ୍କା ଆସୁଥିଲା, ତାହା ଅନେକ ପରିମାଣରେ କମିଗଲା ।

ମୋର ସେତେବେଳେ ବୟସ ୧୦ ବର୍ଷ । ସାନଭାଇ ମନୋଜ ଜନ୍ମଲାଭ କରିଥାଏ । ଅନ୍ୟମାନଙ୍କ ବୁଦ୍ଧିରେ ପଡ଼ି ବାପା କଲିକତା ସହରର କେନ୍ଦ୍ରସ୍ଥଳ ଚୌରିଙ୍ଘି ଠାରେ ଗୋଟିଏ ବଡ଼ ଧରଣର ଜଳଖିଆ ଦୋକାନ କରିବେ ବୋଲି ଯୋଜନା କଲେ । ଘରଟିଏ ଭଡ଼ା ନେବାଲାଗି ଚାରିହଜାର ଟଙ୍କା ଦେଇ ଜଣେ ଅଭିଜ୍ଞ ବନ୍ଧୁଙ୍କୁ ପଠାଇଲେ । ଟଙ୍କା ଦିଆଗଲା ଓ ଘର ଠିକ୍ ହେଲା । ରେଷ୍ଟୁରାଁର ଶୁଭାରମ୍ଭ ଲାଗି ବାପା ଗୁଡ଼ିଆ ଦଳ ଓ କର୍ମଚାରୀମାନଙ୍କୁ ଧରି ପହଞ୍ଚିଲେ । ଦେଖିଲାବେଳକୁ ଘରଟି ଜଣେ ଜମିଦାରଙ୍କର, କିନ୍ତୁ ଠକିଦେଇ ଟଙ୍କା ନେଇଛନ୍ତି ତାଙ୍କର ଜଣେ ପ୍ରତାରକ ଗୁମାସ୍ତା । ବାପା ନିରାଶ ହୋଇ ଫେରିଲେ । ସେତେବେଳେ ଚାରିହଜାର ଟଙ୍କାର ମୂଲ୍ୟ କିଛି ଅଳ୍ପ ନ ଥାଏ । ଧାନ ମହଣର ଦାମ୍ ଥାଏ ମାତ୍ର ବାରଅଣା, ଖଣ୍ଡିଏ ଧୋତିର ଦାମ୍ ଦଶଅଣା, ସୁନା ଭରି କୋଡ଼ିଏ ଟଙ୍କା ।

ବାପା ଜାତକ ବିଚାର କଲେ । ଜ୍ୟୋତିଷୀ କହିଲେ, ଶନିର ଦଶା ପଡ଼ିଛି, ସବୁ କାମ ବିଫଳ ହେବ । ବାସ୍ତବିକ୍, ବାରବର୍ଷ ସେହି ଶନିଦଶା ପଡ଼ିଥିଲାବେଳେ ବାପା ଯେଉଁ କାମରେ ହାତ ଦେଲେ, ସେଥିରେ କ୍ଷତି ହେଲା । ପିତାମହ ମଦନ ଦାସଙ୍କ ସମୟର ପ୍ରାଚୁର୍ଯ୍ୟ ଆଉ ରହିଲା ନାହିଁ । ତଥାପି ବାପା ପକ୍କାଘର ତିଆରି କଲେ ଓ ଏଣେତେଣେ ବଡ଼ ବଡ଼ ଚାଷଜମି କିଣିଲେ । କିନ୍ତୁ, ସାଗର ଓ ଘୋଡ଼ାମାରା ଦ୍ୱୀପରୁ ଟଙ୍କାବସ୍ତା ଆସିଲା ନାହିଁ ଏବଂ 'ବାଣିଜ୍ୟେ ବସତେ ଲକ୍ଷ୍ମୀଃ' କଥାଟି ନିରର୍ଥକ ହୋଇଯାଇଥିଲା । ଯଥାସମୟରେ ପୁଣି ଆସିଲା ତୋଫାନ, ବନ୍ୟା ଓ ଦୁର୍ଭିକ୍ଷ । ଏହିପ୍ରକାର ବିପର୍ଯ୍ୟୟ ସତ୍ତ୍ୱେ ଆମ ପରିବାର ଧନୀ ପରିବାର ଭାବରେ ପରିଚିତ ରହିଲା, ଯଦିଚ ଧନର ପରିମାଣ ଥିଲା ଅତିଶୟ ସୀମିତ ।

ତିନି ଝିଅ ଓ ଦୁଇ ପୁଅଙ୍କୁ ବାପା ପ୍ରାଣଠାରୁ ଭଲ ପାଉଥିଲେ । ପୁଅମାନଙ୍କୁ ପାଠ ପଢ଼ାଇବା ଲାଗି ଅକାତର ଭାବେ ଟଙ୍କା ଖର୍ଚ୍ଚ କରୁଥିଲେ । ଏମ୍.ଏ.ପାଶ୍ କରି ମୁଁ ଅଧ୍ୟାପକ ହେଲାପରେ ଉଚ୍ଚତର ଶିକ୍ଷା ଲାଗି ମୋତେ ବିଲାତ ପଠାଇଲେ । ଗାଁରେ ନିଜ ଅର୍ଥରେ ମାଇନର ସ୍କୁଲଟିଏ ସ୍ଥାପନ କଲେ । ମୋ ମା'ଙ୍କ ଇଚ୍ଛା

ପାଳନ ଲାଗି ଚନ୍ଦନେଶ୍ୱର ମହାଦେବ ମନ୍ଦିର ନିକଟରେ ଜଗନ୍ନାଥ ମନ୍ଦିରଟିଏ ନିର୍ମାଣ କଲେ ।

୧୯୬୫ ମସିହା ଅଗଷ୍ଟ ମାସରେ, ୭୧ ବର୍ଷ ବୟସରେ, ଦିନେ ସକାଳେ ସମ୍ବାଦପତ୍ର ପଢୁଥିଲାବେଳେ ଅକସ୍ମାତ୍ ନିମିଷ ମଧ୍ୟରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଏହିଠାରେ ଗୋଟିଏ କଥା ଉଲ୍ଲେଖ କରିବି, ଯେଉଁ କଥା ଭାବିଲେ ମନରେ ବିସ୍ମୟ ଜାତ ହୁଏ । ସେତେବେଳେ ମୁଁ ଥାଏ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ । ଜୁନମାସ ଗ୍ରୀଷ୍ମଛୁଟିରେ ଘରକୁ ଯାଇଥିଲି । ମୋ ସାନଭାଇ ମନୋଜ ସେତେବେଳକୁ ପଣ୍ଡିଚେରୀସ୍ଥିତ ଶ୍ରୀଅରବିନ୍ଦ ଆଶ୍ରମକୁ ଚାଲିଗଲେଣି । ମୁଁ ଘରେ ପହଞ୍ଚିଲେ ବାପାଙ୍କର ଆନନ୍ଦର ସୀମା ନ ଥାଏ । ମୋ ପୁଅ ଝିଅ ଦେଖିବେ ବୋଲି ଦୁଇରାତ୍ରି ଘର ଆଗରେ ଥିଏଟର ଆୟୋଜନ କଲେ । ଛୁଟି ଶେଷରେ ଜୁଲାଇ ମାସ ୧ ତାରିଖ ଦିନ ବାଣୀବିହାର ଫେରିବା ପାଇଁ ମୁଁ ଘରୁ ବିଦାୟ ନେଲି । ଗାଁ ଶେଷ ସୀମା ପର୍ଯ୍ୟନ୍ତ ବାପା ଛାଡ଼ିବାକୁ ଆସିଲେ । ତାଙ୍କ ପାଦତଳେ ପ୍ରଣିପାତ କଲାପରେ ଅନୁରୋଧ କଲି, ''ଯେତେ ଶୀଘ୍ର ସମ୍ଭବ ବାଣୀବିହାର ଯିବେ । ସେଠାରେ କିଛିଦିନ ବିଶ୍ରାମ ନେବେ ।'' ଅକସ୍ମାତ ସେହି ମୁହୂର୍ତ୍ତରେ ମନ ଭିତରେ ଗୋଟିଏ ଅସ୍ୱାଭାବିକ ଆଶଙ୍କା ଖେଳିଗଲା ''ବାପା ଆଉ ଆସିବେ ନାହିଁ, ଦେଖା ହେବ ନାହିଁ ।''

ତାଙ୍କ ସ୍ୱାସ୍ଥ୍ୟ ସୁନ୍ଦର ଥାଏ । ଦେହରେ ଥାଏ ଯଥେଷ୍ଟ କର୍ମଶକ୍ତି । ଗାଁରେ ହାଇସ୍କୁଲ ସ୍ଥାପନ କରିବେ ବୋଲି ଆଗ ଦିନ ସନ୍ଧ୍ୟାରେ କହିଥିଲେ । ଦେହରେ କୌଣସିପ୍ରକାର ବିକାର ନ ଥାଏ । ତଥାପି ମୋ ମନକୁ ପାପ ଛୁଇଁଲା କାହିଁକି ? ବାଣୀବିହାରରେ ପହଞ୍ଚି ବାପାଙ୍କୁ ତୁରନ୍ତ ଆସିବା ପାଇଁ ଚିଠି ଲେଖିଲି । ଲଫାଫା ବନ୍ଦ କଲାବେଳେ ପୁଣି ସେହି ଅଶୁଭ ଚିନ୍ତା ''ସେ ଆଉ ଆସିବେ ନାହିଁ ।'' କିଛି ଦିନ ପରେ ବାପାଙ୍କ ପାଖରୁ ଉତ୍ତର ଆସିଲା, ''ଅଗଷ୍ଟ ୧୫ ତାରିଖ ସ୍କୁଲରେ ସ୍ୱାଧୀନତା ଦିବସ ପାଳନ କଲାପରେ ବାଣୀବିହାର ଯିବି ।'' ଚିଠି ପଢ଼ିଲାବେଳେ ପୁନର୍ବାର ସେହି ଆଶଙ୍କା, ''ଆଉ ଦେଖା ହେବ ନାହିଁ ।''

ଅଗଷ୍ଟ ମାସ ୧୬ ତାରିଖ ସନ୍ଧ୍ୟାବେଳେ ଟେଲିଗ୍ରାମଟିଏ ଆସିଲା । ଖୋଲିଲାବେଳେ ଦେହରେ ଶିହରଣ ଖେଳିଗଲା ''ଏ କ'ଣ ବାବାଙ୍କର ମୃତ୍ୟୁସମ୍ବାଦ !'' ପଢ଼ିଲି, ''Father Expired. Come soon.'' ଏହି ବିଷୟରେ ଅନେକ ଚିନ୍ତା କରିଛି । ମନୋଜକୁ ପଚାରିଛି । ବିଜ୍ଞ ବ୍ୟକ୍ତିଙ୍କ ସହ ଆଲୋଚନା କରିଛି । ମୋର ବିଶ୍ୱାସ, 'ପ୍ରେମୋନିସନ୍' ବା ଆସନ୍ନ ବିପଦର ପୂର୍ବାଭାସ ବୋଲି କୌଣସି ଗୁପ୍ତ ରହସ୍ୟ ନିଶ୍ଚୟ ରହିଛି ! ମୋ ଜୀବନରେ ସର୍ବାଧିକ ମର୍ମାନ୍ତିକ ଦୁଃଖଦାୟକ ଘଟଣା ଥିଲା ପିତୃବିୟୋଗ ।

## ସାଗର ଦ୍ୱୀପର ସମ୍ପତ୍ତି

ପଶ୍ଚିମବଙ୍ଗର ସାଗର ଦ୍ୱୀପରେ ଥିବା ଭୂସମ୍ପତ୍ତି କଥା ଆଗରୁ ଲେଖିଛି । ବାପାଙ୍କ •ମୃତ୍ୟୁପରେ ସେଥି ଉପରେ ନିଜର ପ୍ରଭୁତ୍ୱ ପ୍ରଦର୍ଶନ ଲାଗି ସେଠାକୁ ଯିବାକୁ ହେଲା । ମୋର ସାତବର୍ଷ ବୟସ ବେଳେ ବାପା ଥରେ ମୋତେ ସେଠାକୁ ନେଇଯାଇଥିଲେ । ଛୋଟ ନୌକାଟିରେ 'ବତିଶ କୋଶ ଗାଙ୍ଗ' ବା ସମୁଦ୍ର ଅତିକ୍ରମ କରି ସେଠାରେ ପହଞ୍ଚିଥିଲି । ଗଙ୍ଗାକୂଳରେ ଥାଏ ଆମର ପ୍ରଶସ୍ତ ମାଟିଘର । ଚାରିପାଖରେ ଶହ ଶହ ଏକର ଶସ୍ୟକ୍ଷେତ୍ର । ୧୯୬୫ରେ ହଠାତ୍ ଗଙ୍ଗାନଦୀର ଗତି ପରିବର୍ତ୍ତନ ଘଟିଲା । ମାତ୍ର କେତୋଟି ସପ୍ତାହ ମଧ୍ୟରେ ସାଗରବାସୀଙ୍କର ସହସ୍ର ସହସ୍ର ଏକର ଜମି ନଦୀଗର୍ଭରେ ବିଲୀନ ହେଲା । ସେଥିମଧ୍ୟରେ ଥାଏ ମୋ ପ୍ରପିତାମହ ଓ ପିତାମହଙ୍କ ଭୂମି । ସେହି ଦୁଃସମ୍ବାଦ ବାପା ପାଇଥିଲେ, କିନ୍ତୁ ମୋତେ କହି ନ ଥିଲେ । ମୁଁ ଯେତେବେଳେ ସମ୍ପତ୍ତି ଦେଖିବାକୁ ବାହାରିଲି, ସମୁଦ୍ରପଥରେ ଯିବାକୁ ସାହସ ହେଲା ନାହିଁ । ତେଣୁ ପ୍ରଥମେ ଗଲି କଲିକତା, ସେଠାରୁ ଡାୟମଣ୍ଡ ହାରବାର ଓ ତା'ପରେ କାକଦ୍ୱୀପ ନାମକ ସ୍ଥାନକୁ । କାକଦ୍ୱୀପରେ ପ୍ରଶାନ୍ତ କୁମାର ସିଂହ ନାମକ ମୋର ଜଣେ ସମ୍ପର୍କୀୟ ପୁତୁରା ଇଞ୍ଜିନିୟାର ଥାନ୍ତି । ଖଣ୍ଡିଏ ଛୋଟ ମୋଟରଲଞ୍ଚରେ ସେ ମୋତେ ନେଇ ଗଲେ ସାଗରଦ୍ୱୀପରେ ଥିବା ଆମର ଜମି ଆଡ଼କୁ । ଲଞ୍ଚ ଚାଲିଥାଏ ଦ୍ୱୀପର କୂଳେ କୂଳେ । ପିଲାବେଳେ ଦେଖିଥିବା ଦୃଶ୍ୟମାନ ମନେ ପଡ଼ିଗଲା । 'ମଦନ ଦାସେର ଟ୍ୟାଙ୍କ୍' ବନ୍ଧ ଉପରେ ଥିବା ଯେଉଁ ସୁଉଚ୍ଚ 'ଦିଶାଲୁ'' ତଳେ ଖେଳୁଥାଏଁ, ସେ ସ୍ଥାନ ସେତେବେଳେ ନଦୀ ପାଖରୁ ଅନେକ ଦୂରରେ ଥାଏ । ଅଥଚ, ଆଜି କ'ଣ ଏତେ ପାଖରେ ! ଇଞ୍ଜିନିୟାର ବନ୍ଧୁ ପଚାରିଲେ, ''ଆପଣ କ'ଣ ଜାଣନ୍ତି ନାହିଁ ? ଲଞ୍ଚ ପରା ଚାଲିଛି ଆପଣଙ୍କ ଜମି ଉପରେ ?'' ଗଙ୍ଗାନଦୀର ଗତି ପରିବର୍ତ୍ତନ କଥା କହିଲାବେଳେ ସେ ଆଙ୍ଗୁଳି ଦେଖାଇଦେଲେ–''ସେହି ଜାଗାରେ ଥିଲା ଆପଣଙ୍କର ଘରଦ୍ୱାର, ଆଜି ସେ ସବୁ ନଦୀଗର୍ଭରେ ।''

ଲଞ୍ଚ କୂଳରେ ଲାଗିଲା । ଚାଷୀମାନେ ଅପେକ୍ଷା କରିଥିଲେ । ନଦୀଗର୍ଭରୁ ରକ୍ଷା ପାଇଯାଇଥିବା ଅବଶିଷ୍ଟ ୮୦ ଏକର ଜମି ପାଖରେ ଥିବା ଜଣେ ଚାଷୀଙ୍କ କୁଡ଼ିଆରେ ଯାଇ ରହିଲି । ସେତିକି ଜମିରେ ମଧ୍ୟ ସମୁଦ୍ରରୁ ଲୁଣିପାଣି ମାଡ଼ିଆସୁଥିବାରୁ ଚାଷ ହେବା ଅସମ୍ଭବ ଥାଏ । ତଥାପି, ପାଞ୍ଚବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ଡିସେମ୍ବର ଶୀତଛୁଟିରେ ସେଠାକୁ ଗଲି । କିନ୍ତୁ ଚାକିରି ଓ ଚାଷ, ଦୁଇ ନୌକାରେ ଗୋଡ଼ ଦେବା ଅସମ୍ଭବ ଜାଣି ଜମିତକ ଚାଷୀମାନଙ୍କୁ ଅତି ଅଳ୍ପ ମୂଲ୍ୟରେ ବିକ୍ରି କରିଦେଲି ।

ଘରକୁ ଫେରିଲାବେଳେ କାନ୍ଥି ବଜାରରୁ କେତେଖଣ୍ଡି କାଠର ଚୌକି କିଣି ଆଣିଥିଲି । ଘରେ ପହଞ୍ଚି ସ୍ତ୍ରୀଙ୍କୁ କହିଲି, ''ପୂର୍ବପୁରୁଷମାନଙ୍କ 'ଚକ' ବିକ୍ରି କରି, ଚାରିଖଣ୍ଡି 'ଚୌକି' କିଣି ଆଣିଛି । ଏହାକୁ କୁହାଯାଏ ଭାଗ୍ୟ !'' ମା କାନ୍ଦିପକାଇଲେ ।

ବାସ୍ତବିକ୍ ଏହାହିଁ ଭାଗ୍ୟ । ଜୀବନ ବିପନ୍ନ କରି ଅଗାଧ ଉଦ୍ୟମ ବଳରେ ଦୁଃସାହସୀ ପୂର୍ବପୁରୁଷମାନେ ଯେଉଁ ସମ୍ପତ୍ତି ରଖିଯାଇଥାଆନ୍ତି, ଭାଗ୍ୟରେ ନ ଥିଲେ ଉତ୍ତରପୁରୁଷମାନେ ତାହା ଭୋଗ କରିପାରନ୍ତି ନାହିଁ । ମଧ୍ୟେ ମଧ୍ୟେ ପିତା, ପିତାମହ ଓ ପ୍ରପିତାମହଙ୍କ କଥା ମନେପଡ଼ିଲେ ସେମାନଙ୍କ ସାହସ ଓ କର୍ମଶକ୍ତି ବିଷୟ ଚିନ୍ତାକରି ଆତ୍ମଗ୍ଲାନି ଭୋଗ କରେଁ । ସେମାନେ ଡିଗ୍ରୀଧାରୀ ଶିକ୍ଷିତ ନ ଥିଲେ, ଅଥଚ ଥିଲେ ଜ୍ଞାନୀ; ସେମାନଙ୍କର ସରକାରୀ ପଦ-ପଦବୀ ନ ଥିଲା, କିନ୍ତୁ ଉଦ୍ୟୋଗ ଶକ୍ତି ଓ ଉଚ୍ଚାଭିଳାଷ ଥିଲା । ସର୍ବୋପରି, ସେମାନେ ଥିଲେ ଉନ୍ନତମନା ଓ ମହତ୍ ବ୍ୟକ୍ତି, ଯେଉଁଥିପାଇଁ ଜନସାଧାରଣଙ୍କ ସମ୍ମାନ ଓ ଭକ୍ତି ପାଉଥିଲେ । ଥରେ ଥରେ ଭାବିଥାଏଁ, ମୋ ପିତାମହ ନିଜର କୀର୍ତ୍ତି ଓ ଦାନ ବଳରେ ଆଜିକୁ ତିନିପୁରୁଷ ଧରି ନିଜ ଅଞ୍ଚଳରେ ଯେଉଁପରି ସ୍ମରଣୀୟ ରହିପାରିଛନ୍ତି, ତାଙ୍କର ନାତି ଭାବରେ ମୁଁ ଜୀବିତ ଅବସ୍ଥାରେ ମଧ୍ୟ ସେହି ଅଞ୍ଚଳରେ ଉନ୍ନତ ମସ୍ତକରେ ଲୋକଙ୍କ ଆଗରେ ଚାଲିପାରୁ ନାହିଁ କାହିଁକି ? ଉତ୍ତର ଖୋଜିବା ଅନାବଶ୍ୟକ ।

## ଯେଉଁ ଜାତିରେ ଜନ୍ମ

ବିଂଶ ଶତାବ୍ଦୀର ଶେଷ ସମୟରେ 'ଜାତି' ଶବ୍ଦ ଉଚ୍ଚାରଣ କରିବା ହେଉଛି ଗୋଟିଏ ନୈତିକ ଅପରାଧ । ହଜାର ହଜାର ବର୍ଷର ଏକ ସାମାଜିକ କଳଙ୍କ ଭାବରେ ରହିଆସିଥିବା ଜାତିପ୍ରଥା ଅଧୁନା ନିନ୍ଦିତ ଓ ପରିତ୍ୟକ୍ତ । ଏହି ଦୃଷ୍ଟିରୁ କୌଣସି ଜାତି ବିଷୟରେ କେବଳ ବୌଦ୍ଧିକ ଦିଗରୁ ଆଲୋଚନା କରିବା ବିଧେୟ । ଏପରି ଆଲୋଚନାର ଅର୍ଥ ନୁହେଁ ଯେ, ଜାତି ବା ଜାତିପ୍ରଥା ପ୍ରତି ଗୁରୁତ୍ୱ ଦିଆଯାଉଛି ।

ଭାରତର ଅଗଣିତ ଜାତି ଓ ଉପଜାତିର ଉତ୍ପତ୍ତି-ରହସ୍ୟ ବାସ୍ତବିକ ପ୍ରହେଳିକାମୟ । କେଉଁ ସମୟରେ କେଉଁ ଗୋଷ୍ଠୀର ମନୁଷ୍ୟ କିପରି ଭାବରେ କେଉଁ ସ୍ଥାନକୁ ଆସିଥାନ୍ତି, ସେ ବିଷୟ ବିସ୍ମୃତି ଗର୍ଭରେ ଲୀନ ହୋଇଯିବା ସ୍ୱାଭାବିକ ।

ମୋ ଜାତିକଥା କହୁଛି । ୧୯୪୨ ମସିହାର କଥା । ଅକ୍ଟୋବର ମାସର ପ୍ରବଳ ତୋଫାନରେ ଉତ୍ତର ବାଲେଶ୍ୱରର ଅନେକ ଅଞ୍ଚଳ ଧ୍ୱସ୍ତବିଧ୍ୱସ୍ତ ହେଲା । ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ପାଇଁ ସରକାରୀ ସାହାଯ୍ୟ ଆସିଲା ନାହିଁ । ବଦାନ୍ୟ

ସମାଜସେବୀମାନେ ହିଁ ଯତ୍‌ସାମାନ୍ୟ ସାହାଯ୍ୟ ବିତରଣ ନିମନ୍ତେ ଆସିଲେ । ମୁଁ ସେତେବେଳେ ରେଭେନ୍‌ସା କଲେଜରେ ଆଇ.ଏ. ପଢୁଥାଏଁ । 'ଭାରତ ଛାଡ଼' ଆନ୍ଦୋଳନ ଯୋଗୁଁ କିଛି ସପ୍ତାହ କଲେଜ ବନ୍ଦ ଥିଲା । ଗାଁକୁ ଆସି ଈଶ୍ୱରଲାଲ ବ୍ୟାସଜୀଙ୍କ ତତ୍ତ୍ୱାବଧାନରେ ଚାଲିଥିବା ରିଲିଫ୍ କାମରେ ଯୋଗଦେଲି । ସେହିପରି ସମୟରେ ଦିନେ ଓଡ଼ିଶାର ବରେଣ୍ୟ ସମାଜସେବୀ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ ସାକ୍ଷାତ ହେଲା । ସେ ପ୍ରଶ୍ନ କଲେ, ''ତୁମ ଜାତି କ'ଣ ?'' ମୁଁ କହିଲି, 'ରାଜୁ' ।

ସାହୁଜୀ କହିଲେ, ''କେବଳ ବାଲିଆପାଳ, ଜଳେଶ୍ୱର ଓ ଭୋଗରାଇ ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ଅଞ୍ଚଳରେ ରାଜୁ ଜାତିର ନାମ ମୁଁ ଶୁଣି ନାହିଁ ।'' ମୁଁ ଜଣାଇଲି, ''ସାର୍, ମୁଁ ଶୁଣିଛି ରାଜୁଜାତିର ଲୋକମାନେ ବଙ୍ଗଦେଶର ମେଦିନୀପୁର, ଝାଡ଼ଗ୍ରାମ ଓ ଚବିଶପରଗଣା ଅଞ୍ଚଳରେ ବି ଅଛନ୍ତି ।'' ଲକ୍ଷ୍ମୀନାରାୟଣବାବୁ କହିବାକୁ ଲାଗିଲେ, ''ତୁମ ଅଞ୍ଚଳର ଯେଉଁସବୁ ଧନୀ ପରିବାରକୁ ଯାଉଛି, ସେମାନେ ସମସ୍ତେ ଜାତିରେ ରାଜୁ । ହେଲେ, ତୁମ ଜାତି ବିଷୟରେ ମୋର କିଛି ହେଲେ ଧାରଣା ନାହିଁ । ମନକୁ ପ୍ରଶ୍ନ ଆସୁଛି, ଏ ଜାତିର ଲୋକମାନେ କାହିଁକି କେବଳ ଏହି ଅଞ୍ଚଳରେ ରହିଲେ, ଅନ୍ୟତ୍ର ନୁହେଁ ! ଓଡ଼ିଶାର ଯେଉଁ ଆଡ଼କୁ ଯାଉଛି, ସବୁ ଜାତିର ଲୋକଙ୍କୁ ଦେଖୁଛି, ଅଥଚ ରାଜୁଜାତିର ଲୋକଙ୍କୁ ନୁହେଁ । ତୁମେ ଗୋଟିଏ କାମ କର । ରାଜୁଜାତିର ବିବରଣୀ ଲେଖି ମୋତେ ଦେଖାଅ । ତୁମ ଜାତି ସମ୍ବନ୍ଧରେ ମୁଁ ଭଲ ଭାବରେ ଜାଣିବାକୁ ଚାହେଁ ।''

ତାଙ୍କ ଆଦେଶ ମାନିନେଲି । ଉତ୍ତର ବାଲେଶ୍ୱରର ସ୍ଥାନକୁ ସ୍ଥାନ ଗଲି । ବାଲେଶ୍ୱର ସହରରେ ବାସ କରୁଥିବା ରାଜୁ ଜାତିର କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସାକ୍ଷାତ କଲି ।

ପ୍ରଥମେ ଯେଉଁ ବ୍ୟକ୍ତିଙ୍କ ଘରେ ପହଞ୍ଚିଲି, ସେ ଥିଲେ ଦେବେନ୍ଦ୍ରନାଥ ଗିରି । ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ବୋଷଙ୍କ ଗବେଷଣାଗାରରେ ଜଣେ ବୈଜ୍ଞାନିକ ଭାବରେ କାର୍ଯ୍ୟ କରି ସେ ଖ୍ୟାତି ଅର୍ଜନ କରିଥିଲେ । ଆୟୁର୍ବେଦିକ ଚିକିତ୍ସା ନିମନ୍ତେ ସେ ଔଷଧ ପ୍ରସ୍ତୁତି କାର୍ଯ୍ୟରେ ଅଭିଜ୍ଞ ଥିଲେ । ରାଜୁ ଜାତିର ଇତିବୃତ୍ତ ସମ୍ପର୍କରେ ତାଙ୍କୁ ପ୍ରଶ୍ନଟିଏ ପଚାରିଦେଲାମାତ୍ରେ ସେ କପାଳରେ ହାତ ମାରି ଦୁଃଖ କଲେ, ''ଜଣେ ମୂର୍ଖ ଆମ ଜାତିର ସର୍ବନାଶ କରିଦେଇଛି । କିଛି ନ ଜାଣି ଓ ଦୁଷ୍ଟବୁଦ୍ଧିରେ ପଡ଼ି ଓ'ମାଲି ସାହେବଙ୍କୁ କହିଦେଲା ଯେ, ରାଜା ଚୋଡ଼ଗଙ୍ଗ ଦେବଙ୍କ ଔରସରୁ ଓ ତାଙ୍କ ରଜକୀ ପତ୍ନୀଙ୍କ ଗର୍ଭରୁ ଜନ୍ମିଥିବାରୁ ଜାତିର ନାମ ହୋଇଛି 'ରାଜୁ', ମାନେ, ରାଜା ଓ ରଜକୀର ସନ୍ତାନ ଥିଲେ ଆମର ପ୍ରଥମ

ପୂର୍ବପୁରୁଷ । ଓ'ମାଲି ସାହେବ ସେହି କଥା ତାଙ୍କ ଗେଜେଟିଆରରେ ଲେଖିଦେଲେ ।''

ଆଲୋଚନା ଚାଲିଲା । ନମ୍ର ଭାବରେ ମୁଁ ମତ ଦେଲି, ''ଯଦି ରାଜୁଜାତିର ଆଦିପିତା ଥିଲେ ଆଗଙ୍ଗାଗୋଦାବରୀ ଉତ୍କଳ ସାମ୍ରାଜ୍ୟର ସମ୍ରାଟ ସ୍ୱୟଂ ଚୋଡ଼ଗଙ୍ଗ ଦେବ, ଆମ ଜାତି ପକ୍ଷରେ ତା'ଠାରୁ ବଡ଼ ଗର୍ବ ଆଉ କ'ଣ ଥାଇପାରେ ?'' ''ମା ଯେ ରଜକୀ ବୋଲି ଅପବାଦ ରହିଗଲା ?''ପ୍ରତିବାଦ କଲେ ଦେବେନ୍ଦ୍ରବାବୁ । ମୋ କ୍ଷୁଦ୍ର ମନକୁ ଗୋଟିଏ କଥା ଆସିଗଲା । କହିଲି, ''ସାର, ପୌରାଣିକ ରାଜା ଶାନ୍ତନୁ ତ ଜାତି କୁଳ ନ ଜାଣି ଦାସରାଜଙ୍କ ଝିଅ ମତ୍ସ୍ୟଗନ୍ଧାଙ୍କୁ ବିବାହ କରିଥିଲେ ? ଐତିହାସିକ ଯୁଗର ମୌର୍ଯ୍ୟସମ୍ରାଟ ଚନ୍ଦ୍ରଗୁପ୍ତ ଯବନ ଗ୍ରୀକ୍ କନ୍ୟାଙ୍କ ପାଣିଗ୍ରହଣ କରିପାରିଥିଲେ ? ପିତାଙ୍କ ପରିଚୟରୁ ବଂଶର ପରିଚୟ । ମା ଯିଏ ହେଲେ କ'ଣ ହେଲା ?'' ଦେବେନ୍ଦ୍ରନାଥ ଗିରି ମୋ କଥାରେ ସନ୍ତୁଷ୍ଟ ହେଲେ ନାହିଁ । ମୁକ୍ତିଆର ଯଜ୍ଞେଶ୍ୱର ଗିରିଙ୍କ ପାଖକୁ ଯିବା ପାଇଁ ମୋତେ ପରାମର୍ଶ ଦେଲେ ।

ଜଣେ ବିଦ୍ୱାନ ବ୍ୟକ୍ତି ଓ ବିଚକ୍ଷଣ ଆଇନଜୀବୀ ଭାବରେ ଯଜ୍ଞେଶ୍ୱରବାବୁଙ୍କ ସୁନାମ ଥାଏ । ରାଜୁ ଜାତିର ଐତିହ୍ୟ ଉପରେ ଆଲୋକପାତ କରିବା ଲାଗି ସେ କିଛିବର୍ଷ ଧରି ଉଦ୍ୟମ କରୁଥିଲେ । ସଂଗ୍ରହ କରିଥିବା କେତେକ କାଗଜ ପତ୍ର ମୋତେ ଦେଖାଇଲେ । ଗୋଟିଏ ପୁରାତନ ପରିବାରରୁ ପାଇଥିବା ଖଣ୍ଡିଏ ଦଲିଲ ସେ ସାଇତି ରଖିଥିଲେ । ସେଥିରେ ଅଙ୍କିତ ଥାଏ ଗୋଟିଏ ପ୍ରାଚୀନ ଜମିଦାର ପରିବାରର 'ବଂଶ ଲତା' । ବଂଶର ପ୍ରଥମ ବ୍ୟକ୍ତିଙ୍କ ନାମ ଲେଖାଥିଲା ହନୁମାନ ରାଜୁ । ତାଙ୍କ ସ୍ତ୍ରୀଙ୍କ ନାମ ଥିଲା ପାର୍ବତୀ ମହାପାତ୍ର । ସେମାନଙ୍କ ପୁତ୍ର ଓ ପୌତ୍ରଙ୍କ ନାମ ପରେ ଥିଲା ସେହି 'ମହାପାତ୍ର' ସଂଜ୍ଞା ବା ବଂଶଗତ ଉପାଧି । ପ୍ରଥମ ପୁରୁଷଙ୍କ ପରେ 'ରାଜୁ' ସଂଜ୍ଞା ଆଉ ନ ଥାଏ ।

ଯଜ୍ଞେଶ୍ୱରବାବୁ ଦକ୍ଷିଣଭାରତର କେତେକ ଅଞ୍ଚଳରେ ଥିବା 'ରାଜୁ' ସଂଜ୍ଞାଧାରୀ ଲୋକମାନଙ୍କ ସହିତ ଯେଉଁସବୁ ଚିଠିପତ୍ର ଆଦାନପ୍ରଦାନ କରିଥିଲେ, ତାହା ଦେଖାଇଲେ । ସେ କହିଲେ, ''ମୁଁ ଜାଣିପାରୁ ନାହିଁ, ହନୁମାନ ରାଜୁଙ୍କ ବଂଶଧରମାନେ 'ରାଜୁ' ସଂଜ୍ଞା ବ୍ୟବହାର ନ କରି 'ମହାପାତ୍ର' ସଂଜ୍ଞା ବ୍ୟବହାର କଲେ କାହିଁକି ?

ତାଙ୍କ ପାଖରୁ ଅନେକ ତଥ୍ୟ ସଂଗ୍ରହ କଲି । ମୋ ସାନଭଉଣୀର ସ୍ୱାମୀ ରାଧାବିନୋଦବାବୁଙ୍କୁ ରାଜୁ ଜାତିର ପୁରାତନ ପରିବାରଗୁଡ଼ିକୁ ପଠାଇଲି । ମେଦିନୀପୁର ଜିଲ୍ଲାର ବଡ଼ ବଡ଼ ରାଜୁ ପରିବାର ସହିତ ଯୋଗାଯୋଗ ରଖିଲି । ସଂଗୃହୀତ କାଗଜପତ୍ର ଓ ଯଜ୍ଞେଶ୍ୱର ଗିରିଙ୍କ ନିକଟରୁ ନେଇଥିବା ଭାରତର ଜାତିବିଶେଷ ଉପରେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଦ୍ୱାରା ଲିଖିତ କେତେଖଣ୍ଡି ଉପାଦେୟ ଗ୍ରନ୍ଥ

ଗୋଟିଏ ବଡ଼ ଟିଣବାକ୍ସ ଭିତରେ ଭର୍ତ୍ତି କରି ରଖିଲି । ଯଥାସମୟରେ ମୋ ଅଧ୍ୟାପକମାନଙ୍କୁ ଦେଖାଇ ସେମାନଙ୍କ ମତାମତ ନେବି ବୋଲି ଠିକ୍ କଲି । ଦୁଃଖର ବିଷୟ, ମୁଁ କଟକରେ ଥିଲାବେଳେ, ୧୯୪୩ ମସିହାରେ ଆମ ଘରେ ଥରେ ଡକାୟତମାନେ ପଶିଲେ । ସଞ୍ଚିତ ସୁନାତକ ତ ନେଇଗଲେ, ସେଥି ସହ ଚାବି ଭାଙ୍ଗି ନ ପାରି, ମୋ ବାକ୍ସଟିକୁ ମଧ୍ୟ ନେଇଗଲେ । ସମୁଦ୍ରକୂଳରେ ଚାବି ଭାଙ୍ଗି ସେଥିରେ କାଗଜପତ୍ର ଓ ବହି ଥିବା ଦେଖି ସେହିଠାରେ ପକାଇଦେଇ ଗଲେ । କେତେଦିନ ପରେ ସନ୍ଧାନ ମିଳିଲାବେଳକୁ ସବୁକିଛି ପାଣିରେ ନଷ୍ଟ ହୋଇଯାଇଥାଏ । ରାଜୁ ଜାତିର ବିବରଣୀ ଲେଖିବା ସେହିଠାରେ ଶେଷ ହେଲା ।

ପରବର୍ତ୍ତୀ ସମୟରେ ଅନୁସନ୍ଧାନ ବଳରେ ଯାହା ଜାଣିବାକୁ ପାଇଲି, ତାହା ଅତି ସଂକ୍ଷେପରେ ଉଲ୍ଲେଖ କରୁଛି । ମଧ୍ୟଯୁଗର ଓଡ଼ିଶା ସାମ୍ରାଜ୍ୟ ଗଙ୍ଗାନଦୀ ଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥାଏ । ଗଙ୍ଗବଂଶର ରାଜାମାନେ ସେମାନଙ୍କ ସାମରିକବାହିନୀ ଲାଗି ଓଡ଼ିଶାର ବାହାର ଅଞ୍ଚଳ ଯଥା ରାଜପୁତାନା ପ୍ରଭୃତି ସ୍ଥାନରୁ ମଧ୍ୟ ସୈନ୍ୟ ସଂଗ୍ରହ କରୁଥିଲେ । ଗଙ୍ଗବଂଶ ପରେ ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ (ଖ୍ରୀ.ଅ ୧୪୩୬–୧୪୬୬) ଦକ୍ଷିଣଭାରତର ସୁଦୂର କାବେରୀନଦୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିବାକୁ ସମର୍ଥ ହୋଇଥିଲେ । ଗଜପତି ରାଜବଂଶର ଶାସନକାଳରେ ଦକ୍ଷିଣଭାରତ, ବିଶେଷତଃ ଆନ୍ଧ୍ର ଅଞ୍ଚଳରୁ ସୈନ୍ୟ ସଂଗ୍ରହ କରାଯାଉଥାଏ । ରାଜପୁତାନା ଓ ଆନ୍ଧ୍ରରୁ ଆସୁଥିବା ସୈନ୍ୟମାନେ ଥିଲେ କ୍ଷତ୍ରିୟ ଯୋଦ୍ଧା ଗୋଷ୍ଠୀର ବ୍ୟକ୍ତିବିଶେଷ । ଉଲ୍ଲେଖଯୋଗ୍ୟ ଯେ, ସୂର୍ଯ୍ୟବଂଶର ରାଜତ୍ୱ ପରେ ଓଡ଼ିଶାରେ ଭୋଇବଂଶର ଶାସନକାଳରେ ଦକ୍ଷିଣାଗତ ସୈନ୍ୟମାନଙ୍କର ସେନାପତି ଥିଲେ ମୁକୁନ୍ଦ ହରିଚନ୍ଦନ ନାମଧେୟ ଜଣେ ବୀର ପୁରୁଷ । ତାଙ୍କୁ 'ତେଲେଙ୍ଗା ମୁକୁନ୍ଦଦେବ' ବୋଲି କୁହାଯାଉଥାଏ । ଶେଷରେ ସେ ସିଂହାସନ ଅଧିକାର କରି ନିଜକୁ ଗଜପତି ମୁକୁନ୍ଦଦେବ ନାମରେ ଆଖ୍ୟାତ କରାଇଥିଲେ (ଖ୍ରୀ:୧୫୫୯) । ମୁକୁନ୍ଦଦେବ ଥିଲେ ସ୍ୱାଧୀନ ଓଡ଼ିଶାର ଶେଷ ରାଜା । ଗଙ୍ଗାନଦୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ରକ୍ଷା କରିବାକୁ ଯାଇ ସେ ବଙ୍ଗର ମୁସଲମାନ ସୁଲତାନଙ୍କ ସହିତ ଯୁଦ୍ଧ ଚଳାଇଲେ । ଓଡ଼ିଶାର ଦୁର୍ଭାଗ୍ୟକୁ ଗୃହଶତ୍ରୁମାନଙ୍କ ହସ୍ତରେ ତାଙ୍କର ପ୍ରାଣହାନି ଘଟିବା ଫଳରେ ୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗର ଆଫଗାନମାନେ ଓଡ଼ିଶା ଅଧିକାର କରିନେଲେ ।

ମୁଁ ରାଜୁଜାତି କଥା କହୁଛି । ବିଭିନ୍ନ ଐତିହାସିକ ଉପାଦାନରୁ ଜଣାଯାଏ ଯେ, ଚୋଡ଼ଗଙ୍ଗଦେବଙ୍କ ସମୟରୁ ଗଙ୍ଗବଂଶୀୟ ସମ୍ରାଟମାନେ ଗଙ୍ଗାନଦୀ ଓ ତାହାର ପୂର୍ବଦିଗରେ ଥିବା ସେମାନଙ୍କ ସାମ୍ରାଜ୍ୟ ସୀମା ପର୍ଯ୍ୟନ୍ତ ଓଡ଼ିଶାର

ଉତ୍ତର-ପୂର୍ବାଞ୍ଚଳକୁ ସାମରିକ ଦୃଷ୍ଟିରୁ ସୁଦୃଢ଼ ରଖିଥିଲେ । କିନ୍ତୁ ସୂର୍ଯ୍ୟବଂଶର ରାଜତ୍ୱ କାଳରେ ଗଜପତି ରାଜାମାନେ ଓଡ଼ିଶାର ଦକ୍ଷିଣ-ଭାରତୀୟ ସାମ୍ରାଜ୍ୟ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କଲେ । ଫଳରେ, ଉତ୍ତର-ଓଡ଼ିଶାର ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ଅଞ୍ଚଳର ସାମରିକ ଶକ୍ତି ଉପେକ୍ଷିତ ହେଲା, ଯଦିଚ ଗଜପତି ମୁକୁନ୍ଦଦେବଙ୍କ ସମୟ ପର୍ଯ୍ୟନ୍ତ ଗଙ୍ଗା ଥିଲା ଓଡ଼ିଶାରାଜ୍ୟର ପୂର୍ବ ସୀମା ଓ ସେହି ନଦୀ କୂଳରେ ମୁକୁନ୍ଦଦେବ ତାଙ୍କର ପ୍ରସିଦ୍ଧ ତ୍ରିବେଣୀ ଘାଟ ଓ ମନ୍ଦିର ନିର୍ମାଣ କରିଥିଲେ । ସେ ଯାହାହେଉ, ପରବର୍ତ୍ତୀ କାଳର ଇଂରେଜ ଲେଖକମାନଙ୍କ ବର୍ଣ୍ଣନାରୁ ଜଣାଯାଏ, ସୁବର୍ଣ୍ଣରେଖା ନଦୀ କୂଳସ୍ଥିତ ଜଳେଶ୍ୱର ଠାରୁ ଗଙ୍ଗା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ଥିଲା ଓଡ଼ିଶା ସାମ୍ରାଜ୍ୟର ଏକ ଅବହେଳିତ ଅଂଶ । ସମଗ୍ର ସ୍ଥାନଟି ଥିଲା ଜଙ୍ଗଲମୟ, ଜନବସତି ସଂଖ୍ୟା ଥିଲା ଅଳ୍ପ ଏବଂ ରାସ୍ତା ଘାଟ ପ୍ରାୟ ନ ଥିଲା । ସେତେବେଳେ ଗଙ୍ଗାର ପୂର୍ବାଞ୍ଚଳର ମୁସଲମାନ ଶାସକମାନଙ୍କ ଦୃଷ୍ଟି ଥାଏ ପୂର୍ବବଙ୍ଗ ଉପରେ । ଗଙ୍ଗାର ପଶ୍ଚିମାଞ୍ଚଳ ଥିଲା ସେମାନଙ୍କ ଦୃଷ୍ଟିରେ ଅଜ୍ଞାତ ।

କିନ୍ତୁ ସମୟକ୍ରମେ ମୁସଲମାନ ସୁଲତାନମାନଙ୍କ ଦୃଷ୍ଟି ପଡ଼ିଲା ସେହି ଅଜ୍ଞାତ ଅଞ୍ଚଳ ଉପରେ । ସେତେବେଳକୁ ସୂର୍ଯ୍ୟବଂଶର ଗୌରବ-ରବି ଅସ୍ତମିତ ହୋଇ ସାରିଥିଲା । ପ୍ରତାପରୁଦ୍ରଦେବଙ୍କ ପରେ ଆରମ୍ଭ ହୋଇଯାଇଥିଲା ଅରାଜକତା । ସେହି ଦୁର୍ଦ୍ଦିନରେ କଟକର ଶାସନକର୍ତ୍ତା ଭାବେ କାର୍ଯ୍ୟ କରୁଥିବା ସେନାପତି ମୁକୁନ୍ଦ ହରିଚନ୍ଦନ ସୁବର୍ଣ୍ଣରେଖା ଠାରୁ ଗଙ୍ଗା ପର୍ଯ୍ୟନ୍ତ ସ୍ଥାନ ସୁରକ୍ଷିତ ରଖିବା ନିମନ୍ତେ ଉଦ୍ୟମ କଲେ । ସୁବର୍ଣ୍ଣରେଖା ନଦୀକୁ ଓଡ଼ିଶାର ପ୍ରଥମ ପ୍ରତିରକ୍ଷା ସୀମା ରୂପେ ବିବେଚନା କରି ତାହାର ତଟବର୍ତ୍ତୀ କେତେଗୋଟି ଜାଗାରେ ସୁଦୃଢ଼ ଦୁର୍ଗ ନିର୍ମାଣ କରାଗଲା । ଗଙ୍ଗଯୁଗରେ ଯେଉଁ ଦୁର୍ଗମାନ ନିର୍ମିତ ହୋଇଥିଲା ଓ କାଳକ୍ରମେ ଭାଙ୍ଗିପଡ଼ିଥିଲା, ସେଗୁଡ଼ିକର ପୁନରୁଦ୍ଧାର କରାଗଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରେଜମାନେ ସୁବର୍ଣ୍ଣରେଖାର ପାର୍ଶ୍ୱବର୍ତ୍ତୀ ସ୍ଥାନଗୁଡ଼ିକରେ ରାଇବଣିଆ ଦୁର୍ଗ ସମେତ ଦେଉଳ ଗାଁ, ଗଡ଼ପଦା, ଅମର୍ଦ୍ଧା, ବଂଶଦା, ସାହବନ୍ଦର, ନଳଗଜା, ରାସଗୋବିନ୍ଦପୁର ଓ ନାରାୟଣଗଡ଼ ପ୍ରଭୃତି ଦୁର୍ଗର ଧ୍ୱଂସାବଶେଷ ଦେଖିପାରିଥିଲେ । ସ୍ଥାନୀୟ ଜମିଦାରମାନେ ଦୁର୍ଗର ପଥରଗୁଡ଼ିକ ଅପହରଣ କରି ନିଜ ନିଜର କୋଠାରେ ଲଗାଉଥିଲେ ।

ଉପର-ନାମିତ ପ୍ରତିରକ୍ଷା-ଦୁର୍ଗଗୁଡ଼ିକରୁ ଗଙ୍ଗା ପର୍ଯ୍ୟନ୍ତ ବ୍ୟାପିଥିବା ଓଡ଼ିଶା ସାମ୍ରାଜ୍ୟର ବିଭିନ୍ନ ଅଞ୍ଚଳ ଉପରେ କର୍ତ୍ତୃତ୍ୱ ରକ୍ଷା ଓ ମୁସଲମାନ ଆକ୍ରମଣ ବିରୋଧରେ ସୈନ୍ୟଚାଳନା କରାଯାଉଥାଏ । ଦୁର୍ଗରକ୍ଷୀ ଓ ସୀମାରକ୍ଷୀ ଓଡ଼ିଆ ସୈନ୍ୟମାନଙ୍କ

ମଧ୍ୟରେ କେତେକେ ଥିଲେ ରାଜପୁତାନା ଓ ଦକ୍ଷିଣାଞ୍ଚଳରୁ ଆସିଥିବା ସଂଗୃହୀତ ସୈନ୍ୟ । ସେମାନଙ୍କ ମଧ୍ୟରେ ଥିଲେ ଆନ୍ଧ୍ର ଅଞ୍ଚଳର କ୍ଷତ୍ରିୟ 'ରାଜୁ' ସମ୍ପ୍ରଦାୟର ସୈନିକ । ସେତେବେଳେ ସେମାନଙ୍କ ନାମ ପାଖରେ କୁଳନାମ ବା ସଂଜ୍ଞା ଥିଲା 'ରାଜୁ' । ଅଧୁନା ଆନ୍ଧ୍ର ପ୍ରଦେଶର ବିଭିନ୍ନ ସ୍ଥାନରେ ଥିବା ଏହି ଗୋଷ୍ଠୀର ଲୋକଙ୍କ ସଂଜ୍ଞା ସେହି 'ରାଜୁ' । ଉଲ୍ଲେଖଯୋଗ୍ୟ, ବିଶ୍ୱବିଖ୍ୟାତ ଆଧ୍ୟାତ୍ମିକ ପୁରୁଷ ଶ୍ରୀ ଶ୍ରୀ ସତ୍ୟସାଇ ବାବାଙ୍କର ଜନ୍ମକାଳର ନାମ ହେଉଛି 'ସତ୍ୟନାରାୟଣ ରାଜୁ' ।

ରାଜପୁତ ଓ ରାଜୁମାନେ ଓଡ଼ିଶାର ଉତ୍ତର-ପୂର୍ବ ସୀମାରେ ବସବାସ କରିବାର ସମୟ ଥିଲା ଷୋଡ଼ଶ ଶତାବ୍ଦୀର ପ୍ରଥମ ଓ ମଧ୍ୟଭାଗ । ଗଜପତି ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । କିନ୍ତୁ ବହିରାଗତ ସୀମାନ୍ତରକ୍ଷୀ ସୈନ୍ୟମାନେ ନିଜ ନିଜ ଆଦିସ୍ଥାନକୁ ଫେରିଲେ ନାହିଁ । ସେ କାଳରେ ସୁବର୍ଣ୍ଣରେଖାର ଉଭୟ ତୀରରେ ଥିବା ଉର୍ବର ସ୍ଥାନଗୁଡ଼ିକରେ ଜନବସତି ଅଳ୍ପ ଥିଲା ଏବଂ ବନ୍ୟା ସତ୍ତ୍ୱେ ବସବାସ ଓ ଚାଷ କରିବା ଲାଗି ପ୍ରଶସ୍ତ ଭୂମିର ଅଭାବ ନ ଥିଲା । ସେହିସବୁ ଉର୍ବର ଓ ରମଣୀୟ ସ୍ଥାନରେ ପୂର୍ବତନ ସୈନ୍ୟମାନେ କୃଷକ ଭାବରେ ଘରଦ୍ୱାର କରିଗଲେ ଓ ସ୍ଥାୟୀ ବାସିନ୍ଦାରେ ପରିଣତ ହେଲେ । କେତେକ ଲୋକ ମେଦିନୀପୁର ଓ ଚବିଶପରଗଣା ଅଞ୍ଚଳରେ ମଧ୍ୟ ସ୍ଥାୟୀ ଭାବରେ ରହିଗଲେ ।

ବାହାର ସ୍ଥାନମାନଙ୍କରୁ ଆସିଥିବା ସୈନ୍ୟମାନେ ଏକାକୀ ଆସିଥିଲେ ଓ ସେମାନଙ୍କର ପରିବାର ନ ଥିଲା । ସ୍ଥାୟୀ ଭାବରେ ରହିଗଲାପରେ ସେମାନେ ଯେଉଁ ସ୍ଥାନରେ ରହିଲେ, ସେହିଠାରେ ଅନ୍ୟ ପରିବାରରୁ କନ୍ୟା ଗ୍ରହଣ କଲେ । ଦକ୍ଷିଣାଞ୍ଚଳରୁ ଆସିଥିବା 'ରାଜୁ'ମାନେ ନିଜ ନିଜ ଧର୍ମପତ୍ନୀଙ୍କ କୁଳ-ସଂଜ୍ଞାକୁ ନିଜ ବଂଶଧରମାନଙ୍କ ସଂଜ୍ଞାରେ ପରିଣତ କରିଦେଲେ, ଅଥଚ ସାମୂହିକ ଭାବରେ ନିଜ ଜାତିର ନାମ ରଖିଲେ 'ରାଜୁ' । ରାଜପୁତମାନେ ମଧ ରାଜୁ ଜାତିରେ ମିଶିଗଲେ, ଯଦିଚ ସେମାନଙ୍କର 'ଚୌହାନ' ଓ 'ସିଂହ' ପ୍ରଭୃତି ସଂଜ୍ଞା ବଜାୟ ରଖିଲେ । ଅଧୁନା ରାଜୁ ଜାତିର ଲୋକଙ୍କ ମଧରେ ଓଡ଼ିଶାର ବିଭିନ୍ନ ଜାତିର ସଂଜ୍ଞାମାନ ଦେଖିବାକୁ ମିଳିଥାଏ, ଯଥା: ମହାପାତ୍ର, କର, ପଣ୍ଡା, ବ୍ରହ୍ମା, ଚୌହାନ, ଚୌଧୁରୀ, ସେନାପତି, ସେଣ, ସାହାଣୀ, ଦଣ୍ଡପାଟ, ପ୍ରଧାନ, ମହାନ୍ତି, ବିଶ୍ୱାଳ, ବର୍ମା, ଚଣ୍ଡ, ଭଞ୍ଜ, ଦେ, ଦେବତା, ଦତ୍ତ, ସିଂହ, ସାମଲ, ପାଳ, ନନ୍ଦୀ, ଗିରି, ଗାନ୍ଧି, ରାଜ, ହାତୀ, ନାୟକ, ପାତ୍ର, ଜେନା, ଭୂୟାଁ, କୁଣ୍ଡ, ସୁର, ମାହାନା, ଆଇଚ, ସାହୁ ଓ ଦାସ ଇତ୍ୟାଦି । କୌଣସି କୌଣସି ପରିବାରର ଲୋକେ ବ୍ରାହ୍ମଣ ପରି ଉପବୀତ ଧାରଣ କରୁଥିଲାବେଳେ, ଅନ୍ୟ କୌଣସି କୌଣସି ପରିବାରରେ ତରବାରି ପୂଜା କରୁଥିବା ଦେଖାଯାଏ ।

ଏକଦା ସୁବର୍ଣ୍ଣରେଖା ତଟବର୍ତ୍ତୀ ଅଞ୍ଚଳରେ ସୀମାବଦ୍ଧ ଥିବା ରାଜୁ ଜାତିର ଲୋକମାନେ ଏବେ ଓଡ଼ିଶାର ପ୍ରାୟ ସର୍ବତ୍ର ବସବାସ କରିଗଲେଣି । ବୈବାହିକ ସୂତ୍ରରେ ଆବଦ୍ଧ ହୋଇ ସେମାନେ କ୍ଷତ୍ରିୟ-ଖଣ୍ଡାୟତ ଜାତି ସହିତ ଏକାକାର ହୋଇଗଲେଣି । ମୋ ନିଜ ସାନଭାଇ ମନୋଜ ବିବାହ କରିଛନ୍ତି କୁଜଙ୍ଗ ରାଜବଂଶର ନାରାୟଣ ବୀରବର ସାମନ୍ତ ଓ ରତ୍ନମାଳି ଜେମାଙ୍କ କନ୍ୟା ପ୍ରତିଜ୍ଞାଙ୍କୁ । ସାମନ୍ତ ପୁଣି ହେଉଛନ୍ତି ଇନ୍ଦୁପୁର ରାଜବଂଶର ପୁତ୍ର ଓ ଆଠଗଡ଼ ରାଜାଙ୍କର ଭଣଜା । ମୋର ଜଣେ ସାନଭଉଣୀର ଝିଅକୁ ଦିଆଯାଇଛି ଗଞ୍ଜାମ ଜିଲ୍ଲାର କରଣ ପରିବାରରେ । ମୋ ସମ୍ପର୍କୀୟ କେତେଜଣ ବନ୍ଧୁ ବିବାହ କରିଛନ୍ତି ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରରୁ । ଏ କଥା କହିବାର ଅର୍ଥ, 'ଜାତି' ବୋଲି ଥିବା ପୃଥକ ପରିଚୟ କ୍ରମେ କ୍ରମେ ସମାଜରୁ ବିଲୀନ ହେବାକୁ ବସିଛି । ସମାଜ ପ୍ରତି ଏହା ଏକ ଶୁଭ ସୂଚନା ।

ରାଜୁ ଜାତିରେ ଜନ୍ମିଥିଲେ କବି ଦୀନକୃଷ୍ଣ ଦାସ । ନିଜକୁ ସେ ସୁବର୍ଣ୍ଣରେଖା ତୀରର ଜଳେଶ୍ୱର-ନିବାସୀ ଏବଂ 'ରାଜପୁତ୍ର' ବା ରାଜୁ ଜାତିର ବ୍ୟକ୍ତି ବୋଲି ପରିଚୟ ଦେବାକୁ ଯାଇ ଲେଖିଥିଲେ:

"ସର୍ବ ବାସନା ଆଦି ମୂଳେ
ଜନମ ରାଜପୁତ୍ର କୁଳେ
ସୁବର୍ଣ୍ଣରେଖା ନଦୀ ତୀରେ
କଟକ ନାମ ଜଳେଶ୍ୱରେ
ସପତ ପୁରୁଷ ମୋ ତହିଁ
ଗଲା ଯେ ଏତେ କାଳ ବହି
ବନ୍ଧୁ କୁଟୁମ୍ବ ତହିଁ ଯେତେ
ରହିଣ ଅଛନ୍ତି ସମସ୍ତେ
ତଣିଆ ରାଜ୍ୟର ନିକଟେ
ଷୋଳ ଚଉଦ ଦଣ୍ଡପାଟେ ।"

ପରିତାପର ବିଷୟ, ସାରା ଭାରତରେ ଏବେ କେତେକ ଉନ୍ନତ ଜାତିର ନେତାମାନେ ନିଜ ନିଜ ଜାତିକୁ ଅର୍ଥନୈତିକ ବିଚାର ଦୃଷ୍ଟିରୁ 'ଅନଗ୍ରସର' ବା (Other Backward Classes) ତାଲିକାଭୁକ୍ତ କରିବା ନିମନ୍ତେ ବ୍ୟଗ୍ର । ଚାକିରିରେ ତଥାକଥିତ ସ୍ଥାନ ସଂରକ୍ଷଣ ଲାଗି ଏପରି ଉଦ୍ୟମ । ଥରେ କେତେଜଣ ଖଣ୍ଡାୟତ ନେତାଙ୍କ ବାର୍ତ୍ତାବହମାନେ ମୋ ପାଖକୁ ଆସିଲେ, ମୋର ମତାମତ ନେବା ପାଇଁ । ମୁଁ କହିଥିଲି, ଯେଉଁ ଜାତିର ପୂର୍ବପୁରୁଷମାନେ ଖଣ୍ଡା ଧରି ବୀରତ୍ୱ

ପ୍ରଦର୍ଶନ କରିଥିଲେ, କୃଷି ଓ ବାଣିଜ୍ୟ-ବ୍ୟବସାୟରେ ଧୁରନ୍ଧର ଥିଲେ, ଏବଂ ଯେଉଁ ଜାତିର ତରୁଣମାନେ ନିଜ ପ୍ରତିଭା ବଳରେ ଉଚ୍ଚ ପଦପଦବୀ ମଣ୍ଡନ କରିବା ଲାଗି ଯୋଗ୍ୟ, ସେମାନେ ନିଜକୁ 'ଅନଗ୍ରସର' କହିବା ସଂପୂର୍ଣ୍ଣ ଅନୁଚିତ । ସହସ୍ର ମଧ୍ୟରୁ କିଏ ଜଣେ ଦୁଇଜଣ ନିଯୁକ୍ତି ପାଇବେ କି ନାହିଁ, ସେଥିରେ ମଧ୍ୟ ସନ୍ଦେହ ରହିଛି । ଅଥଚ, ଚାକିରି ଲୋଭରେ ପୂର୍ବପୁରୁଷ ଓ ଉତ୍ତରପୁରୁଷମାନଙ୍କ କପାଳରେ 'ଅନଗ୍ରସର' ଛାପ ମାରିବା ଲାଗି ଏପରି ବ୍ୟାକୁଳତା କାହିଁକି ?

୧୯୯୧ ମସିହାରେ ଯେତେବେଳେ ଭାରତର ଅନେକ ସ୍ଥାନରେ ମଣ୍ଡଳ କମିଶନ୍ ରିପୋର୍ଟ ବିରୋଧରେ ବିକ୍ଷୋଭ ପ୍ରକାଶ ପାଇଲା ଓ ସେଥିରେ ଯୁବକମାନେ ଆତ୍ମାହୁତି ଦେଲେ, ସେତେବେଳେ ଓଡ଼ିଶାର ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଭୁବନେଶ୍ୱର ଠାରେ ଗୋଟିଏ ବିଶାଳ ଛାତ୍ର-ସମାବେଶର ଆୟୋଜନ କରିଥିଲେ । ସେଥିରେ ଭାଷଣ ଦେବାକୁ ମୋତେ ନିମନ୍ତ୍ରଣ କରାଗଲା । ମୋ ବକ୍ତବ୍ୟରେ ମୁଁ କହିଥିଲି, "ମୁଁ କୃଷକ ପରିବାରରେ ଜନ୍ମିଛି, ଏହା ହିଁ ମୋ ସୌଭାଗ୍ୟ । ପୁରାଣବର୍ଣ୍ଣିତ ରାଜର୍ଷି ଜନକ ରାଜା ଓ ଋଷି ଥାଇ ମଧ୍ୟ ସ୍ୱହସ୍ତରେ ନିଜ ଭୂମିରେ ହଳ କରୁଥିଲେ । ଐତିହାସିକ ମହାପୁରୁଷ ଗୌତମବୁଦ୍ଧଙ୍କ ପିତା ରାଜା ଶୁଦ୍ଧୋଦନ ହଳ ଚାଳନା କରୁଥିଲେ । କୃଷି ପରି ପବିତ୍ର କର୍ମ ଭାରତଦେଶରେ ଅନ୍ୟ କିଛି ନାହିଁ । ଦେବଦେବୀଙ୍କ ପୂଜା ଆରାଧନା ନାମରେ କିମ୍ବା ବିଦ୍ୟାବୁଦ୍ଧି ବଳରେ ସରକାରୀ କିଙ୍କର ଭାବରେ ଜୀବିକା ଅର୍ଜନ ଅପେକ୍ଷା ବିବିଧ ପ୍ରକାର ଶ୍ରମ ବଳରେ ଯେଉଁମାନେ ଜୀବିକା ଅର୍ଜନ କରିଥାନ୍ତି, ମନୁଷ୍ୟରୂପେ ସେହିମାନେ ହିଁ ନମସ୍ୟ । ମୋ ଦୃଷ୍ଟିରେ ତଥାକଥିତ ଦଳିତ ବର୍ଗର କର୍ମଜୀବୀମାନେ ହିଁ ବନ୍ଦନୀୟ; ପରାଙ୍ଗପୁଷ୍ଟ ପରୋକ୍ଷ ଶୋଷଣକାରୀମାନେ ନୁହନ୍ତି । ଭାରତୀୟ ସଂସ୍କୃତିର କଳଙ୍କ ଭାବେ ବିବେଚିତ ଜାତିପ୍ରଥା ଆଧୁନିକ ସମାଜରୁ ସମ୍ପୂର୍ଣ୍ଣରୂପେ ନିଶ୍ଚିହ୍ନ ହେବା ଉଚିତ । ଦଳିତ, ଅବହେଳିତ ଓ ଦରିଦ୍ର ଗୋଷ୍ଠୀର ଅର୍ଥନୈତିକ ବିକାଶ ସମ୍ଭବପର ହେଲେ, ସେମାନେ ନିଜର ବିଦ୍ୟାବୁଦ୍ଧି ବଳରେ ହିଁ ଉଚ୍ଚ ପଦ ଅଧିକାର କରିପାରିବେ । ମଣ୍ଡଳ ବ୍ୟବସ୍ଥା ଦ୍ୱାରା ଗୋଲାମଗିରି ପ୍ରବର୍ତ୍ତନ ଫଳରେ ଦାରିଦ୍ର୍ୟ ଲୋପ ପାଇବ ନାହିଁ, କିମ୍ବା ଭାରତର ନିୟୁତ ନିୟୁତ ଯୁବକଙ୍କୁ କର୍ମ ଯୋଗାଇ ହେବ ନାହିଁ । ରାଜନୈତିକ ଧୂଆଁବାଣ ଦ୍ୱାରା ଦାରିଦ୍ର୍ୟ-ବ୍ୟାଧିର ଉପଶମ ଘଟିବ ନାହିଁ ।"

ମଣ୍ଡଳ ସପକ୍ଷବାଦୀ ଓ ବିପକ୍ଷବାଦୀ ସମବେତ ଯୁବକମାନେ ମୋ କଥାକୁ ସ୍ୱାଗତ କରିଥିଲେ ।



ପିତା ୰ ମଧୁସୂଦନ ଦାସ

# ବାଲ୍ୟକାଳ



## ମନେ ରହିଥିବା କେତେକ କଥା

### ସେ କାଳର ଗୋଟିଏ ପ୍ରଥା

ଛୋଟ ପିଲା ଥିଲାବେଳେ ମଧ୍ୟେ ମଧ୍ୟେ ଆମ ଘରକୁ ଜଣେ ସ୍ତ୍ରୀଲୋକ ଆସୁଥାନ୍ତି । ସେ ଆସିଲାମାତ୍ରେ ମୋତେ ଟେକିନେଇ ତାଙ୍କ କୋଳରେ ବସାଇ ଦିଆଯାଉଥାଏ । କିଛି ସମୟ ସେ ମୋ ମୁଣ୍ଡ ଆଉଁସି ଦେଉଥାନ୍ତି, ଗାଲରେ ଚୁମା ଖାଉଥାନ୍ତି ଓ ହାତରେ ଧରିଥିବା କୋଳି ଖୁଆଉଥାନ୍ତି । ତାଙ୍କ ସାଙ୍ଗରେ ଆସିଥିବା ଜଣେ ପୁରୁଷ ଲୋକ ପାଖରେ ବସି, ମୋତେ ସ୍ନେହ କରୁଥାନ୍ତି । ସେହି ସ୍ତ୍ରୀଲୋକଙ୍କୁ 'ମା' ବୋଲି ଡାକିବାକୁ ମୋତେ କୁହାଯାଉଥାଏ ।

ଜ୍ଞାନ ହେଲାପରେ ବୁଝିଲି, ସେ ଥିଲେ ସମୁଦ୍ରକୂଳର ଜଣେ ଧୀବର ମହିଳା । ମୁଁ ଜନ୍ମ ହେଲାମାତ୍ରେ ଯମ ମୋତେ ଧରିନେବ ବୋଲି ଆଶଙ୍କା ଥିବାରୁ ଗୋଟିଏ ଦୀନଦୁଃଖୀ ଧୀବରଦମ୍ପତି ହାତରେ ଟେକି ଦିଆଯାଇଥିଲା । ବିଶ୍ୱାସ ଥାଏ, ଧନୀ ଘରର ପିଲାଟିକୁ ଅତ୍ୟନ୍ତ ଦରିଦ୍ର ପରିବାରକୁ ହସ୍ତାନ୍ତର କିମ୍ବା ବିକ୍ରି କରିଦେଲେ ଯମଙ୍କ ଦୃଷ୍ଟି ପଡ଼େ ନାହିଁ ।

ମୋ ବୟସ ବଢ଼ିଚାଲିଲା । କିନ୍ତୁ ମୋର ଧୀବର ଜନନୀ ମୋତେ ଭୁଲିପାରିଲେ ନାହିଁ । ଅନାବିଳ ମମତା ନେଇ ସେ ବାରମ୍ବାର ଆସୁଥିଲେ । ତାଙ୍କର ଚାହାଣି ମଧ୍ୟରେ ମୁଁ ଦେଖିପାରୁଥାଏଁ ସ୍ନେହ ଶ୍ରଦ୍ଧାର ପବିତ୍ର ଆକର୍ଷଣ । କଲେଜରେ ପଢ଼ିଲାବେଳେ ଓ ଚାକିରି କଲାପରେ ମଧ୍ୟ ଛୁଟିରେ ଘରକୁ ଆସିଲେ ସେ ଓ ତାଙ୍କ ସ୍ୱାମୀ ମୋତେ ଦେଖିବାକୁ ଆସୁଥାନ୍ତି, ହାତରେ 'ପୁଅ' ପାଇଁ ମାଛଟିଏ ଧରି । କେତେଥର ଭାବୁଥାଏଁ, ସେମାନଙ୍କୁ କିଛି ଅର୍ଥ ଦାନ କରିବି । ସଂକୋଚ ଆସୁଥାଏ, ସ୍ନେହର ପ୍ରତିଦାନ ଅର୍ଥ ନୁହେଁ । ପାଖରେ ବସାଇ କିଛି ସମୟ ଭଲ ମନ୍ଦ କଥାବାର୍ତ୍ତା କଲେ ସେମାନେ ଖୁସି ହେଉଥିଲେ ।

ଅନ୍ଧବିଶ୍ୱାସ ମଧ୍ୟରୁ ଏହିପ୍ରକାର ଯେଉଁ ସାମାଜିକ ପ୍ରଥା ସୃଷ୍ଟି ହୋଇଥାଏ, ତାହାର ତାତ୍ତ୍ୱିକ ମୂଲ୍ୟ ଥାଏ ଅନେକ । ମାନବିକ ମମତା ଆଗରେ ଧନୀ

ଓ ନିର୍ଦ୍ଧନ ଅଥବା ଜାତି ଜାତି ମଧ୍ୟରେ ଥିବା ଭେଦଭାବ ନିରର୍ଥକ ବୋଧ ହେଉଥାଏ । ସେମାନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେହି 'ମହେନ୍ଦ୍ର ଗୋଖା ଓ ତାଙ୍କ ସ୍ତ୍ରୀଙ୍କୁ ନିଜର ଲୋକ ବୋଲି ଭାବିଥିଲି ।

## ପିଲାବେଳର ପ୍ରେତଭୟ

ହିନ୍ଦୁ ଏକାନ୍ନବର୍ତ୍ତୀ ପରିବାରରେ ଜନ୍ମିଥିବା ଯୋଗୁଁ ପିଲାବେଳଟି ଖୁବ୍ ଭଲରେ କଟିଥିଲା । ଠାକୁରବାପା ଓ ଠାକୁରମା ଏବଂ କକା ଓ ଖୁଡ଼ୀମାନଙ୍କ ପାଖରୁ ଯଥେଷ୍ଟ ସ୍ନେହ ମିଳୁଥାଏ । ମୋ ବାପାଙ୍କର ଜଣେ କକା ଥାଆନ୍ତି ଅନନ୍ତ ନାରାୟଣ ଦାସ । ସେ ଥିଲେ ବାବାଜି । ପେଟ ପର୍ଯ୍ୟନ୍ତ ଦାଢ଼ି ଝୁଲି ରହିଥାଏ । ସଦାବେଳେ ଧର୍ମଚର୍ଚ୍ଚା ଓ ଶାସ୍ତ୍ରପାଠ ଥାଏ ତାଙ୍କର କାମ । ତାଙ୍କ ପାଖକୁ ଆସୁଥାନ୍ତି ଦୂର ଦୂରାନ୍ତ ସ୍ଥାନରୁ ଜଟାଧାରୀ ସନ୍ନ୍ୟାସୀମାନେ । ସେହି ଠାକୁରବାପାଙ୍କ କୋଳରେ ବସି ସନ୍ଧ୍ୟାବେଳେ ଗପ ଶୁଣୁଥାଏଁ । ରାମ, କୃଷ୍ଣ, ରାବଣ ଓ କଂସ ଇତ୍ୟାଦିଙ୍କ ସମେତ ରାଜା ରାଣୀ ଏବଂ ଶେଷରେ ଭୂତ ପ୍ରେତର କାହାଣୀ । ସବୁ ଗପ ମଧ୍ୟରେ ଭୂତ ପ୍ରେତର କଥା ଥାଏ ବେଶି ରୋମାଞ୍ଚକର ।

କାରଣ, ରାକ୍ଷସ ରାକ୍ଷସୀ କିମ୍ବା ରାଜା ରାଣୀ ଦୂରବର୍ତ୍ତୀ ଜଣାଯାଉଥିଲାବେଳେ, ଭୂତ ପ୍ରେତ ଖୁବ୍ ପାଖରେ ଥାନ୍ତି ବୋଲି ଧାରଣା ଆସିଯାଇଥାଏ । ଘର ଆଗ ଆଡ଼ିଆ ଉପରେ, ପଛ ମଶାଣିରେ, ବଟଗଛରେ ଓ ଓଳି ପଛର ଅନ୍ଧାରୁଆ ଜାଗାଗୁଡ଼ିକରେ ସେମାନେ ରହନ୍ତି ବୋଲି ଶୁଣାଯାଉଥାଏ । ଗାଁର ଅମୁକ ବୁଢ଼ୀର ପ୍ରେତାତ୍ମା ଗଡ଼ିଆ ପାଖର ଆମ୍ବଗଛରେ ଅଛି, ଅମୁକ ବ୍ରାହ୍ମଣର ଭୂତ ଅଗଣା ପାଖର ବେଲଗଛରେ ଅଛି ଇତ୍ୟାଦି କଥା ସମସ୍ତେ ଜାଣିଥାନ୍ତି । ଗାଁ ଆଗରୁ ସମୁଦ୍ର ପର୍ଯ୍ୟନ୍ତ ପଡ଼ିଥାଏ ସୁବିସ୍ତୀର୍ଣ୍ଣ ବାଲି ଆଡ଼ିଆ । ତା ଭିତରେ ଏଣେତେଣେ ପ୍ରକାଣ୍ଡ ପ୍ରକାଣ୍ଡ ମଶାଣି । ସେଥିରେ ଥାଏ ବଡ଼ ବଡ଼ ବଟ ଓ ଅଶ୍ୱତ୍ଥ ଗଛ । ସନ୍ଧ୍ୟାପରେ ଆଲୋକହୀନ ଗାଁ ଉପରକୁ ଯେଉଁ ଗହନ ଅନ୍ଧକାର ମାଡ଼ିଆସୁଥାଏ, ରାତ୍ରିର ପ୍ରତ୍ୟେକ ପ୍ରହରରେ ବଣ ବୁଦା ଓ ମଶାଣି ଭିତରୁ ଶୃଗାଳଦଳର ଯେଉଁ ବିକଟ ରଡ଼ି ଶୁଣାଯାଉଥାଏ, ଏବଂ ନିସ୍ତବ୍ଧତା ମଧ୍ୟରେ ଗାଁଟି ଯେପରି ଭାବରେ ଶୋଇପଡ଼ିଥାଏ, ସେ ସବୁରେ ମିଶ୍ରିତ ଆବହାଉଆ ଥାଏ ବାସ୍ତବିକ ଭୌତିକ । ସେଥି ସାଙ୍ଗକୁ ଥାଏ ପ୍ରଚଳିତ ଜନରବ । ନିଜ ଆଖିରେ ଭୂତପ୍ରେତକୁ ଦେଖିଥିବା ସ୍ତ୍ରୀପୁରୁଷଙ୍କ ଅଭାବ ନଥାଏ ।

ଏହି ସମ୍ପର୍କରେ ଦୁଇଟି କଥା ମନେଅଛି । ଚନ୍ଦନେଶ୍ୱର ମହାଦେବଙ୍କ ପୀଠରେ ଚଡ଼କ ମେଳା ଚାଲିଥାଏ । ସନ୍ଧ୍ୟାବେଳେ ଆମ ଘରେ ଖବର ପହଞ୍ଚିଲା, ସାଗରଦ୍ୱୀପର ଜମିଦାର ତାଙ୍କ ବନ୍ଧୁମାନଙ୍କ ସହ ମେଳାକୁ ଆସିଛନ୍ତି ଓ ସେଠାରୁ ଆମ ଘରେ

ରହିବାକୁ ଆସିବେ । ବାପା ବ୍ୟସ୍ତ ହୋଇଉଠିଲେ । ଆମ ଘରେ ରହିଥିବା ଗାଁ ସ୍କୁଲର 'ବଡ଼ ମାଷ୍ଟର'ଙ୍କୁ ରସଗୋଲା କିଣିଆଣିବା ପାଇଁ ମେଳାକୁ ପଠାଇଲେ । ବଡ଼ ମାଷ୍ଟ୍ରେ ହାଣ୍ଡିଟିଏ ଧରି ବାହାରିପଡ଼ିଲେ । ତିନି କିଲୋମିଟର ଦୂରରେ ମେଳା । ହିସାବ କରାଗଲା, ସିଧା ବିଲ ବାଟରେ ଗଲେ ଯିବା ଆସିବା ଲାଗି ଘଣ୍ଟାଏ ସମୟ ଲାଗିବ ।

ପ୍ରାୟ ଘଣ୍ଟାଏ ପରେ ଜମିଦାର ଓ ତାଙ୍କ ଲୋକମାନେ ଦ୍ୱାରସ୍ଥ ହେଲେ । ଅଥଚ ବଡ଼ମାଷ୍ଟ୍ରେ ଫେରୁ ନାହାନ୍ତି । ଜଳଖିଆ ପାଇଁ ସୁଜି ତିଆରି ସରିଲାଣି । କେବଳ ରସଗୋଲାକୁ ଅପେକ୍ଷା । ମାଷ୍ଟ୍ରେଙ୍କ ବିଳମ୍ବ ଦେଖି ଶେଷରେ ଅତିଥିମାନଙ୍କୁ ଜଳଖିଆ ଦିଆଗଲା । ରାତି ପ୍ରାୟ ପାଞ୍ଚଘଡ଼ି ବେଳେ ବଡ଼ ମାଷ୍ଟର ଧଇଁସଇଁ ହୋଇ ଫେରିଲେ ଓ ବାରଣ୍ଡା ଉପରେ ଚିତ୍ ହୋଇ ଶୋଇପଡ଼ିଲେ । ବଳ ଫେରିଲାପରେ ଜଣାଇଲେ ଯେ, ବିଲରେ ଭୂତ ଦେଖି, ଏଣେ ତେଣେ ଅନ୍ଧାରରେ ଦୌଡ଼ି ଦୌଡ଼ି, ପ୍ରାଣବିକଳରେ କିଆବଣରେ ଲୁଚି ରହି, ଶେଷରେ ଆଡ଼ିଆ ବାଟରେ ଜୀବନ ଧରି ଫେରିଆସିଛନ୍ତି । ରସଗୋଲା ହାଣ୍ଡି ବିଲରେ ଖସିପଡ଼ିଛି ।

ତାଙ୍କ ବର୍ଣ୍ଣନାଟି ଏହି ପ୍ରକାର ଥିଲା । ''ମେଳାରୁ ରସଗୋଲା କିଣି ଚନ୍ଦନେଶ୍ୱର ପାଖରୁ ଆରୁଆପାଳ ବନ୍ଧ ପର୍ଯ୍ୟନ୍ତ ଝାପ୍‌ସା ଅନ୍ଧାରରେ ଚାଲିଆସିଲି । ତା'ପରେ, ଦ୍ୱିତୀୟ ବିଲର ଶେଷ ମୁଣ୍ଡିରେ ଦେଖିବାକୁ ପାଇଲି ତାଳଗଛ ପରି ଗୋଟିଏ ପ୍ରକାଣ୍ଡ କାଳିଆ ଭୂତ । ଥରେ ଦେଖିଲାବେଳକୁ ଆଉ ଥରେ ନ ଥାଏ । ପୁଣି ବାହାରିପଡୁଥାଏ, ପୁଣି ହଜିଯାଉଥାଏ । ଦେହରୁ ଝାଳ ବୋହିଗଲା, ଚେତା ଚାଲିଗଲା । ହାତରୁ ହାଣ୍ଡିଟା ଖସିପଡ଼ିଲା ।''

ବାପାଙ୍କର କିନ୍ତୁ ସନ୍ଦେହ ହେଲା । ସେ ଲଣ୍ଠନ ଧରି ଦଳବଳ ସହ ବିଲବାଟକୁ ଗଲେ । ପ୍ରାୟ ଘଣ୍ଟାଏ ସମୟ ପରେ ଫେରିଆସି ଜମିଦାରଙ୍କୁ ଜଣାଇଲେ, ''ଭୂତ ନୁହେଁ, ଜଣେ ଭକ୍ତ ।'' ଘଟଣାଟି ଥିଲା ଏହିପ୍ରକାରଃ ଜଣେ ବ୍ୟକ୍ତି ମାନସିକ କରିଥାନ୍ତି, ରୋଗମୁକ୍ତ ହେଲେ ବାବା ଚନ୍ଦନେଶ୍ୱରଙ୍କ ମନ୍ଦିର ପର୍ଯ୍ୟନ୍ତ ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ କରି କରି ପ୍ରତ୍ୟେକ ରାତିରେ କିଛି କିଛି ଦୂରତ୍ୱ ଅତିକ୍ରମ କରିବେ । ସେ ରାତିଟି ଥାଏ ତାଙ୍କ ଯାତ୍ରାର ତୃତୀୟ ରାତି । ଚାଲିଲାବେଳେ ମାଟି ଉପରେ ଶୋଇପଡୁଥାନ୍ତି ଓ ଯେଉଁଠାରେ ଦୁଇହାତର ଆଙ୍ଗୁଳି ଶେଷ ହେଉଥାଏ, ସେଠାକୁ ଗୋଡ଼ ନେଇ ପୁଣିଥରେ ଉର୍ଦ୍ଧ୍ୱବାହୁ ଅବସ୍ଥାରେ ଛିଡ଼ା ହେଉଥାନ୍ତି ଓ ଚନ୍ଦନେଶ୍ୱରଙ୍କୁ ଧ୍ୟାନ କରି ପୁଣିଥରେ ଶୋଇପଡୁଥାନ୍ତି । ଅନ୍ଧାର ଭିତରେ ତାଙ୍କର ଦେହ ଓ ଉପରକୁ ଉଠାଉଥିବା ହାତ ଦୁଇଟି ତାଳଗଛ ପରି ଲମ୍ବ ଦିଶୁଥାଏ । ହସି ହସି ବାପା କହିଲେ, ''ବଡ଼ ମାଷ୍ଟ୍ରେ ଅନ୍ଧକାରର ଭ୍ରମ ଭିତରେ

ଭକ୍ତକୁ ଭୂତ ବୋଲି ଭାବି ରସଗୋଲାଗୁଡ଼ିକ ନଷ୍ଟ କଲେ ।'' ମାଷ୍ଟ୍ରେ ଲଜ୍ଜିତ ହେବା ଦେଖି ଜମିଦାରବାବୁ ସାନ୍ତ୍ୱନା ଦେବା ଛଳରେ କହିଲେ, ''ଭୂତ୍ କିନ୍ତୁ ସତ୍ୟି ସତ୍ୟି ଆଛେ । ଆମି ନିଜେର ଚୋଖେ କୟେକ୍ ବାର୍ ଦେଖେଛି ।'' ମୋର ବୟସ ଚାରି କିମ୍ବା ପାଞ୍ଚ ବର୍ଷ ହୋଇଥାଏ । ସେ ଦିନ ପ୍ରଥମ ଥର ପାଇଁ ବଙ୍ଗଳା କଥା ଶୁଣିଲି ଏବଂ ଜମିଦାରଙ୍କ କଥାରେ ବିଶ୍ୱାସ ରଖିଲି ।

ଆଉ ଦିନକର ଘଟଣା । ମେଦିନୀପୁର ଜିଲ୍ଲାର ମୋହନପୁର ଗାଁରୁ ମୋ ପିଉସୀଙ୍କ ଆସିବା କଥା । ରାତି ପାହିବା ଆଗରୁ ସାନ୍ତାଳ ସବାରିଆମାନେ ସେହି ଦୂରବର୍ତ୍ତୀ ଗାଁକୁ ଚାଲିଯାଇଥିଲେ । ବାବାଙ୍କ କଡ଼ା ଆଦେଶ ଥାଏ, ସନ୍ଧ୍ୟା ଆଗରୁ ଫେରି ଆସିବାକୁ ହେବ, କାରଣ ଗର୍ଭବତୀ ପିଉସୀଙ୍କୁ ଅନ୍ଧକାରରେ ଗାଁ ଉତ୍ତର ସୀମାରେ ଥିବା ମଶାଣି ଉପର ଦେଇ ଆଣିବା ଉଚିତ ନୁହେଁ ।

ସନ୍ଧ୍ୟା ଆସିଗଲା, ଅଥଚ ପିଉସୀଙ୍କ ସବାରି ଫେରିଲା ନାହିଁ । ରାତି ଘଡ଼ିଏ ପରେ ଦୁଇ ଘଡ଼ି ହେଲା, ତଥାପି କିଛି ଖବର ନାହିଁ । ବାପା ବ୍ୟସ୍ତ ହୋଇଉଠିଲେ । ଗାଁ ମୁଣ୍ଡର ନାଫରାଇ ଆଡ଼ିଆ ଆଡ଼କୁ ଲଣ୍ଠନ ଧରି ଯିବାପାଇଁ ବାହାରିଲେ । ସେତିକିବେଳେ ହଠାତ୍ ଜଣେ ସବାରିଆ ପିଣ୍ଡାକୁ ଉଠିଆସି ମୁଣ୍ଡ ବାଡ଼େଇଦେଇ କହିଲେ, ''ବାବୁ ତୁ ମାରିବୁ ମାର୍, ରଖିବୁ ରଖ୍ । ନାଫରାଇ ଆଡ଼ିଆରେ ମଡ଼ା ପୋଡ଼ା ହେଉଛି । ନିଆଁ ଭିତରୁ ଡେଇଁପଡ଼ି ପେର୍‌ତ ଆଁ କରି ସବାରି ପାଖକୁ ଦୌଡ଼ିଲା । ବେହେରାମାନେ ପଳେଇଛନ୍ତି । ମଡ଼ାପୋଡ଼ା ଲୋକ ବି ପଳେଇଛନ୍ତି । ସୁଆରି ସେଇଠି ପଡ଼ିଛି । ତୁ ଯାହା କରିବୁ କର ।''

ବାପା ଲୋକବାକ ଧରି ଦୌଡ଼ିଲେ । ମଶାଣି କୋଣର ସରୁଆ ବାଟରେ ସବାରି ଥୁଆ ରହିଥାଏ । ପିଉସୀ ଅଚେତ ଅବସ୍ଥାରେ ପଡ଼ି ରହିଥାନ୍ତି । କିଛି ଦୂରରେ ଚିତା ଜଳୁଥାଏ । ପାଖରେ ବସିଥାଏ ଜଣେ ବଦ୍ଧ ପାଗଳ, ସମ୍ପୂର୍ଣ୍ଣ ଉଲଗ୍ନ । ପାଖରେ ପଡ଼ିଥାଏ ଅଧାପୋଡ଼ା ମୁର୍ଦ୍ଦାର । ପିଉସୀଙ୍କୁ ଘରକୁ ଅଣାଗଲା । ଅନେକ ପରେ ତାଙ୍କର ଚେତା ଫେରିଲା । ବାପା ସମସ୍ତଙ୍କୁ ବୁଝାଇଲେ, ପ୍ରେତ ନୁହେଁ, ପାଗଳ ।

କାହାକୁ କାହାକୁ ମଝେ ମଝେ ପ୍ରେତ ଲାଗେ ବୋଲି ଗାଁରେ ବିଶ୍ୱାସ ଥାଏ । କେଉଁ ବୋହୂକୁ ଶାଶୁର ପ୍ରେତ ଧରିଲାବେଳକୁ, ଆଉ କାହାକୁ ଅଜଣା ଲୋକର ଭୂତ ଧରୁଥାଏ । ଗୁଣିଆ ଆସୁଥାନ୍ତି । ମନ୍ତ୍ର ତନ୍ତ୍ର ବଳରେ ଓ ପ୍ରଚଣ୍ଡ ଚାବୁକ ମାଡ଼ରେ ସେମାନେ ପ୍ରେତକୁ ତଡ଼ିପାରୁଥିଲେ । ପ୍ରେତ ଛଡ଼ାଇବା ଦୃଶ୍ୟ ଅନେକ ଦୂରରେ ଲୁଚିରହି ଦୁଇଥର ଦେଖିଥିଲି ।

ଘର ପାଖରୁ ଦୁଇ କିଲୋମିଟର ଦୂରରେ ଥିବା ଦକ୍ଷିଣତେଘରି ଉଚ୍ଚ ପ୍ରାଥମିକ ସ୍କୁଲରେ ପଢ଼ିଲାବେଳେ ସନ୍ଧ୍ୟାପରେ ନାଫରାଇଁ ଆଡ଼ିଆର ମଶାଣି ପାଖ ବରଗଛ ତଳେ ଆଖି ବୁଜି ଏକା ନିଶ୍ୱାସକେ ଦୌଡ଼ିବାକୁ ହେଉଥାଏ । ପ୍ରବାଦ ଥାଏ, କେଉଁ ଅଜ୍ଞାତ ଯୁଗରେ ଜଣେ ସଧବା ସେହି ଗଛଡ଼ାଳରେ ଫାଶି ଦେଇ ମରିଥିଲେ ଓ ତାଙ୍କ ପ୍ରେତାତ୍ମା ଗଛ ଉପରେ ଆଶ୍ରୟ ନେଇ ରହିଛି । ରାତିରେ ତା'ର କ୍ରନ୍ଦନଧ୍ୱନି ଶୁଣାଯାଏ ବୋଲି କେହି କେହି କହୁଥାନ୍ତି । ପ୍ରକାଣ୍ଡ ସେହି ପୁରାତନ ଗଛଟି ଶାଖା ପ୍ରଶାଖା ବିସ୍ତାର କରି ଏବେ ବି ଛିଡ଼ା ରହିଛି । କିନ୍ତୁ ନିର୍ଜନ ମଶାଣି ଆଡ଼ିଆ ଅନେକ ଦିନରୁ ଜନାକୀର୍ଣ୍ଣ ବଜାରରେ ପରିଣତ ହେଲାଣି ।

## ମନ୍ତ୍ରଶକ୍ତିରେ ବିଶ୍ୱାସ

ସେ କାଳରେ ଆମ ଅଞ୍ଚଳର ଲୋକମାନେ ମନ୍ତ୍ରବଳ ଉପରେ ଅଗାଧ ବିଶ୍ୱାସ ରଖିଥିଲେ । ମନ୍ତ୍ର ଦୁଇପ୍ରକାର ଥାଏ, ଭଲ ଓ ଖରାପ । ଭଲ ମନ୍ତ୍ର ବଳରେ ଗୁଣିଆମାନେ ସାପର ବିଷ ହରଣ କରିପାରୁଥିଲେ । ଡାକ୍ତର, ଡାକ୍ତରଖାନା ଓ ବିଷ-ନିରୋଧକ ଔଷଧ ନଥିବା ଯୁଗରେ ବିଷଧର ଗୋଖର ବା ତମ୍ପର ଦଂଶନରୁ ରକ୍ଷା ପାଇବା ଲାଗି ଲୋକେ ଗୁଣିଆମାନଙ୍କ ଶରଣାଗତ ହେଉଥାନ୍ତି । ସେମାନେ ମନ୍ତ୍ର 'ଝାଡ଼ି' ବିଷ ହରିନେଉଥିଲେ । ଖରାପ ମନ୍ତ୍ର ଶିଖିଥିବା ଗୁଣିଆମାନେ ଦୁଧିଆଳୀ ଗାଈର ଦୁଧ ଅଟକାଇ ଦେଉଥିଲେ, ଦେହର ଘା' ବା କ୍ଷତକୁ ଦୀର୍ଘସ୍ଥାୟୀ କରିଦେଉଥିଲେ ଏବଂ ଚୁଲିରେ ବସିଥିବା ପିଠାହାଣ୍ଡିର ପିଠାଗୁଡ଼ିକୁ ଅସିଝା ରଖିଦେଉଥିଲେ । ଗାଁରେ ଥିବା ଏପରି ଜଣେ ଦୁଇଜଣ ସିଦ୍ଧହସ୍ତା ସଧବା ବା ବିଧବା ମହିଳା-ଗୁଣିଆଙ୍କୁ ଲୋକେ ଭୟ କରୁଥାନ୍ତି । କାହାରି ଘରକୁ ସେମାନଙ୍କୁ ଆସିବା ଦେଖିଲେ, ଗାଈ, ପିଠାହାଣ୍ଡି ଓ ଦେହର ଘା ସ୍ଥାନକୁ ତତ୍‌କ୍ଷଣାତ୍ ଲୁଚାଇ ରଖାଯାଉଥାଏ । କେତେଥର ସେପରି ଦୃଶ୍ୟ ପାଖ ପଡ଼ିଶା ଘରେ ଦେଖିଛି ।

ମନ୍ତ୍ରକୁ କେନ୍ଦ୍ରକରି ଥରେ ଏପରି ଗୋଟିଏ ଘଟଣା ଘଟିଲା, ଯାହା ସର୍ବତ୍ର ଆଲୋଚିତ ହେଲା । ପାଖ ଗାଁର ଜଣେ ଧନୀ ବ୍ୟକ୍ତିଙ୍କ ଆଣ୍ଠୁତଳେ ଗୋଟିଏ 'ଘା' ହୋଇଥାଏ । ବାଲେଶ୍ୱର, କଟକ ଓ କଲିକତାରେ ଡାକ୍ତର ଦେଖାଇଲେ । କିନ୍ତୁ ବର୍ଷ ପରେ ବର୍ଷ କ୍ଷତ ସ୍ଥାନଟି ପ୍ରଥମେ ଯେଉଁପରି ଥିଲା, ଠିକ୍ ସେହିପରି ରହିଲା । ବଢ଼ିଲା ନାହିଁ କି କମିଲା ନାହିଁ, ଅଥଚ କେବେହେଲେ ଶୁଖିଲା ନାହିଁ । ଦିନେ ସେ ତାଙ୍କ ବନ୍ଧୁମାନଙ୍କ ଆଗରେ ଦୁଃଖ ଜଣାଇ କହିଲେ, ଆତ୍ମହତ୍ୟା କରିବା ଭଲ, କିନ୍ତୁ ଗୋଡ଼ର ଘା ପାଇଁ ଲୋକଙ୍କ ଘୃଣାର ପାତ୍ର ହେବା

ଉଚିତ ନୁହେଁ । ତାଙ୍କର ଏହି ଉକ୍ତିଟି ଲୋକ ମୁଖରୁ ଶୁଣିବାକୁ ପାଇ ପାଖ ଗାଁର ଜଣେ ଜଣାଶୁଣା ଗୁଣିଆ ଖୁସି ମନରେ କହିପକାଇଲେ, ''ତା ଘା ଉପରେ ମୋ ଆଖି ପଡ଼ିଥିଲା, କେବେହେଲେ ଘା ଶୁଖିବ ନାହିଁ, ମଲାଯାଏ ସେ ଅପମାନ ଭୋଗିବ ।''

ଏ କଥା ପୁଣି କ୍ଷତପୀଡ଼ିତ ଧନୀ ବ୍ୟକ୍ତିଙ୍କ କାନକୁ ଆସିଲା । ସେ ରାଗରେ ଅଗ୍ନିଶର୍ମା ହେଲେ । ଛଳନା କରି ଗୁଣିଆକୁ ଦିନେ ନିଜ ଘରକୁ ଖାଇବାକୁ ଡାକିଲେ । ସନ୍ଦେହ ନକରି ଗୁଣିଆ ମଧ୍ୟ ଆସିଲେ । ପିଣ୍ଡାକୁ ଉଠିଲାମାତ୍ରେ କ୍ରୋଧାନ୍ଧ ଭଦ୍ରବ୍ୟକ୍ତି ଗୁଣିଆର ଆଣ୍ଠୁତଳେ ଲୁହା ଶାବଳରେ ଶକ୍ତ ପ୍ରହାରଟିଏ ବସାଇଦେଲେ । ଗୁଣିଆଙ୍କ ଗୋଡ଼ର ହାଡ଼ ଭାଙ୍ଗିଗଲା । ଅନେକ ଦିନ କଷ୍ଟ ଭୋଗି ସେ ପ୍ରାଣ ହରାଇଲେ ।

ମନ୍ତ୍ର ବିଷୟରେ ଗୋଟିଏ କଥା ଉଲ୍ଲେଖ କରିବି । ପିଲାକାଳରୁ ଗ୍ରାମାଞ୍ଚଳର ଗୁଣିଆମାନଙ୍କ ମନ୍ତ୍ରଶକ୍ତି ବିଷୟ ଶୁଣି ଶୁଣି, ବାଲେଶ୍ୱର କଲେଜରେ ଅଧ୍ୟାପକ ଥିଲାବେଳେ ନିଜେ ଥରେ ସେଥି ଉପରେ ଅନୁସନ୍ଧାନ କରିବି ବୋଲି ଠିକ୍ କଲି । ୧୯୫୨ ମସିହା ଡିସେମ୍ବର ମାସ ଶୀତଛୁଟିରେ ଘରକୁ ଆସିଥାଏଁ । ପାର୍ଶ୍ୱବର୍ତ୍ତୀ ଆରୁଆପାଳ ଗାଁରେ କାର୍ତ୍ତିକ ଗଉଡ଼ ନାମକ ଜଣେ ଗୁଣିଆ ଥାନ୍ତି । ମନ୍ତ୍ରବଳରେ ସେ ଲମ୍ବା ବାଉଁଶବାଡ଼ି ସାହାଯ୍ୟରେ ଚୋରି ଯାଇଥିବା ପଦାର୍ଥକୁ ଆବିଷ୍କାର କରିପାରୁଥିଲେ । ଦିନେ ପ୍ରଭାତରେ ସେହି ବ୍ୟକ୍ତିଙ୍କୁ ଡାକିଆଣି କହିଲି, ''ଯଦି ତୁମ ମନ୍ତ୍ରଶକ୍ତିର ପ୍ରମାଣ ଦେଇପାରିବ, ପୁରସ୍କାର ଦେବି, ନଚେତ୍ ପୋଲିସ ହାତରେ ତୁମକୁ ଧରାଇଦେବି ।'' ବିନା ସଂକୋଚରେ କାର୍ତ୍ତିକ ଉତ୍ତର ଦେଲେ, ''ସଞ୍ଜବେଳେ ଗାଁ ସାରା ଲୋକଙ୍କୁ ଡାକନ୍ତୁ, ସମସ୍ତେ ମୋ କରାମତି ଦେଖିବେ । କାହାର କିସ ହଜିଛି କହିଦେଲେ, ମୋ ବାଉଁଶକାଠି ସେଇ ଜିନିଷ ଆଡ଼କୁ ଚାଲିବ । ତେବେ, ଗୁରୁଙ୍କ ଦୟା !'' ଗୁରୁଙ୍କ ଦୟା ବାକ୍ୟଟି ଶୁଣି ମୋର ସନ୍ଦେହ ବଢ଼ିଗଲା । ସର୍ତ୍ତ ରଖିଲି, ''ବାଉଁଶକାଠିର ଗୋଟିଏ ପାଖ ମୁଁ ନିଜ ହାତରେ ଧରିବି, ଅନ୍ୟ ପାଖଟି ମୋ ମନୋନୀତ କେହି ଜଣେ ଗାଁ ପିଲା ଧରିବ ।'' ନିର୍ଭୟରେ କାର୍ତ୍ତିକ ଉତ୍ତର ଦେଲେ, ''ମନ୍ତ୍ର କାମ କଲେ ବାଉଁଶ ବାଡ଼ି ଆପଣଙ୍କୁ ମଧ୍ୟ ଟାଣି ଟାଣି ନେଇଯିବ ।''

ସନ୍ଧ୍ୟାବେଳକୁ ଆସିବେ କହି କାର୍ତ୍ତିକ ଗଉଡ଼ ଚାଲିଗଲା ପରେ ମୁଁ ଗୋଟିଏ ବୁଦ୍ଧି ପାଞ୍ଚିଲି । ଜିନିଷଟିଏ ହଜିବା ଦରକାର । ଗୋପନରେ ମା'ଙ୍କ ଆଲମିରାରୁ ସୁନାହାରଟିଏ କାଢ଼ିନେଲି । ତାକୁ ଲୁଚାଇ ରଖିବା କଥା । ଠିକ୍ କଲି, ସନ୍ଧ୍ୟାପରେ ଘରର ତୃତୀୟ ପ୍ରସ୍ତରେ ଦୋଳି ଉପରେ ମୋ ଦଶମାସ ବୟସର ନିଦ୍ରିତ

ପୁଅକୁ ଶୁଆଇବା ପରେ, ତା ପେଟ ଉପରେ ହାରଟିକୁ ରଖି କମ୍ବଳ ଘୋଡ଼ାଇଦେବି । ଯଥା ସମୟରେ ତାହା ହିଁ କଲି ।

ସନ୍ଧ୍ୟା ପରେ ପରେ ଶୀତ ସତ୍ତ୍ୱେ ଗାଁର ଅନେକ ଲୋକ ଘର ଆଗ ଖଳାରେ ବସିଗଲେ । କେତେଗୁଡ଼ିଏ ଲଣ୍ଠନ ଜଳିଲା । କାର୍ତ୍ତିକ ଗଉଡ଼ ପ୍ରାୟ ୨୦ ହାତ ଲମ୍ବ ଥିବା ଦୁଇଖଣ୍ଡି ପତଳା ବାଉଁଶବାଡ଼ି ଧରି ପହଞ୍ଚିଗଲେ । ମୁଁ ଘୋଷଣା କଲି "ମା'ଙ୍କ ହାରଟି ଆଲମିରାରେ ନାହିଁ ।" କାର୍ତ୍ତିକ ସେ କଥା ଶୁଣିଲେ । ତାଙ୍କ ଆଦେଶରେ ଗୋଟିଏ ବଡ଼ ପିତଳ ଘଟିରେ ପାଣି ଭର୍ତ୍ତି କରାଗଲା । ଘଟି ପାଖରେ ବସି ଗୁଣିଆ ଆମ୍ବପତ୍ର ଇତ୍ୟାଦି ରଖି ୦ଠ ହଲାଇ ଗୁଣୁ ଗୁଣୁ ମନ୍ତ୍ର ଉଚ୍ଚାରଣ କଲେ । ବାଉଁଶବାଡ଼ି ଦୁଇଟିର ଗୋଟିଏ ପାଖ ମୁଁ ଦୁଇ ହାତରେ ଧରିଲି । ଅନ୍ୟ ପାଖଟି ଧରିବା ଲାଗି ଛୋଟ ପିଲାଟିଏ ବାଛିନେଲି । ମନରେ ଭୟ ରଖି ସେ ଦୁଇହାତରେ ବାଉଁଶ ବାଡ଼ି ଧରିଲା ।

ତା ପରେ ଆରମ୍ଭ ହେଲା ଆଶ୍ଚର୍ଯ୍ୟଜନକ ବ୍ୟାପାର । ବାଉଁଶବାଡ଼ି ଦୁଇଟି ଗାଇ ଛନ୍ଦୁଣି ଦେଇ ଜଳପୂର୍ଣ୍ଣ ପିତଳ ଘଟିଟିକୁ ଉପରକୁ ଉଠାଇ ପୁଣି ତଳେ ରଖିଦେଲା । ସେତେବେଳକୁ ବାଉଁଶର ଶକ୍ତି ମୁଁ ଅନୁଭବ କରିପାରୁଥାଏଁ । ସ୍ୱୟଂଚାଳିତ ଯନ୍ତ୍ର ପରି ଆମକୁ ଟାଣିବାକୁ ଲାଗିଲା । ଖଳା ଭୂଇଁରୁ ପିଣ୍ଡା ଉପରକୁ, ତାପରେ ସଂକୀର୍ଣ୍ଣ ଦରଜା ପଥରେ ଓ ସେଠାରୁ ପ୍ରସ୍ଥ ପରେ ପ୍ରସ୍ଥ ଆମକୁ ଟାଣି ନେଇ ଚାଲିଲା । ଶେଷରେ, ତୃତୀୟ ପ୍ରସ୍ଥର ଦୋଳି ପର୍ଯ୍ୟନ୍ତ ଆମେ ଟଣା ହୋଇଗଲୁଁ । ଛୁଆ ଦିଗକୁ ଯାଉଥିବା ଦେଖି ବାପା ରାଗରେ ଥରିଗଲେ । କିନ୍ତୁ ସେତେବେଳକୁ ବାଉଁଶକାଠିର ମଧ୍ୟ ଅଂଶଟି ଧୀରେ ଧୀରେ ବକ୍ରାକାର ଧାରଣ କରି ନିଦ୍ରିତ ଶିଶୁଟିର ପେଟ ଉପରକୁ ନଇଁ ପଡ଼ିଥିଲା । କାର୍ତ୍ତିକ ମୁହଁ ଖୋଲିଲେ, "ଜିନିଷ ଏଇଠି ଅଛି ।" ସମସ୍ତଙ୍କ ଆଗରେ ପିଲାଟିକୁ ନିଦରୁ ଉଠାଇଲି । ତା ପେଟ ଉପରେ ଲୁଗା ତଳେ ଥିବା ସୁନାହାରଟିକୁ ବାହାର କରି ଅନ୍ୟମାନଙ୍କୁ ଦେଖାଇଲି । କାର୍ତ୍ତିକ ଗଉଡ଼ଙ୍କ ଗର୍ବ ଓ ଆନନ୍ଦର ସୀମା ନ ଥାଏ ।

ତାଙ୍କୁ ଏକାକୀ ଘର ଭିତରକୁ ଡାକି କିଛି ଟଙ୍କା ଧରାଇଦେଲି । ମନ୍ତ୍ରଶକ୍ତିର ପ୍ରଶଂସା କଲାପରେ ପଚାରିଲି, "ତୁମେ ଭୂତ ପ୍ରେତ ଦେଖିଛ ?" ହସିଦେଇ କହିଲେ, "ଦେଖିଛି !" "ମୋତେ ଦେଖାଇଦେଇ ପାରିବ ?" ପ୍ରଶ୍ନ କଲି । ଗମ୍ଭୀର ମୁହଁରେ ଉତ୍ତର ଦେଲେ, "ପାରିବି । ତେବେ, ସିନ୍ଦୂର ଓ କୁକୁଡ଼ା ପ୍ରଭୃତି କେତେଗୁଡ଼ିଏ ଜିନିଷ ଦରକାର । ଅମାବାସ୍ୟା ରାତିରେ ମୋ ସାଙ୍ଗରେ ଦରିଆ ପାଖ ମଡ଼ାପୋଡ଼ା ଜାଗାକୁ ଆପଣ ଯିବେ ତ ?" ଠିକ୍ ହେଲା, ଆଗାମୀ ଗ୍ରୀଷ୍ମଛୁଟିରେ ଘରକୁ ଆସିଲେ କାର୍ତ୍ତିକ ମୋତେ ଭୂତପ୍ରେତ ଦେଖାଇଦେବ ।

କିନ୍ତୁ, ତା ପୂର୍ବରୁ ସେ ଇହଧାମରୁ ବିଦାୟ ନେଲେ । ପ୍ରେତ ଦର୍ଶନ ସମ୍ଭବ ହେଲା ନାହିଁ ।

୧୯୭୬ ମସିହାରେ ଜର୍ମାନୀର ହାଇଡେଲବାର୍ଗ ସହରକୁ ଯାଇଥିଲାବେଳେ, ସେଠାରେ ଏକ ନୈଶ ଭୋଜିରେ କେତେଜଣ ଜାର୍ମାନ ପଣ୍ଡିତଙ୍କ ଆଗରେ ଏହି ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣନା କଲାବେଳେ, ଜଣେ ପ୍ରାଚ୍ୟବିଦ୍ୟାବିତ୍ କହିଥିଲେ, "ଯଦି ଜଣେ ଅଜ୍ଞ ଓ ନିରକ୍ଷର ଗ୍ରାମବାସୀ ମନ୍ତ୍ରଶକ୍ତିର ପ୍ରମାଣ ଦେଇପାରିଲେ, ତେବେ ଭାରତର ସାଧକ ଓ ସିଦ୍ଧପୁରୁଷ ମାନଙ୍କର ଶକ୍ତି କେତେଦୂର ପ୍ରଖର ଥିବ, ସେ କଥା କିଏ କହିପାରିବ ?" ଜାର୍ମାନମାନେ ଭାରତର ମନ୍ତ୍ର, ତନ୍ତ୍ର ଓ ଜ୍ୟୋତିଷ ବିଦ୍ୟାରେ ବିଶ୍ୱାସ କରନ୍ତି । ପ୍ରାଚୀନ ଶାସ୍ତ୍ରପୁରାଣ, ଯାହା ସବୁ ତାଳପତ୍ର ପୋଥି ଆକାରରେ ଏ ଯାବତ୍ ରହିଛି, ସେଥିଉପରେ ଗଭୀରଭାବେ ଗବେଷଣା କଲେ ମନ୍ତ୍ରଶକ୍ତି ବିଷୟରେ ଅନେକ କଥା ଜଣାପଡ଼ନ୍ତା ବୋଲି ସେମାନେ ମତ ଦେଇଥିଲେ ।

## ସେ କାଳର ମହାମାରୀ

ମୋ ପିଲାବେଳେ ଭୂତ ପ୍ରେତ ପ୍ରତି ସମସ୍ତଙ୍କର ଭୟ ଥିଲା । କିନ୍ତୁ ସେହି ଅଶରୀରୀମାନଙ୍କ ଦ୍ୱାରା କେହି କେବେ ମରିଥିବା କଥା ଶୁଣା ନ ଥାଏ । ଅପର ପକ୍ଷରେ, ଲୋକଙ୍କର ପ୍ରକୃତ ଭୟ ଥିଲା କଲେରା ଓ ବସନ୍ତ ନାମକ ଦୁଇଟି ଭୟଙ୍କର ମହାମାରୀ ପ୍ରତି । ମହାମାରୀ ଦେଖାଦେଲେ ଚାରିଆଡ଼େ ଆତଙ୍କ ଖେଳିଯାଉଥାଏ । ସେ ସମୟରେ ଆମ ଅଞ୍ଚଳରେ କୂଅ ଓ ଟିଉବ୍‌ୱେଲ୍ ନ ଥିଲା । ପ୍ରତ୍ୟେକ ଘରେ ଗୋଟିଏ କିମ୍ବା ଦୁଇଟା ଗଡ଼ିଆ ଥାଏ । ବାସନ ମାଜିବା, ଲୁଗା କାଚିବା, ଗାଧୋଇବା ଇତ୍ୟାଦି ସବୁ କାମ ସେଇଥିରେ । ସେହି ଗଡ଼ିଆପାଣି ଥାଏ ପାନୀୟ ଜଳ । ଶୀତ ଋତୁରେ ସମୁଦ୍ରରେ ପ୍ରଚୁର ଲୁଣିମାଛ ମିଳୁଥାଏ । ଅଧିକ ମାତ୍ରାରେ ଲୁଣିମାଛ ଖାଇ କେହି ଜଣେ କଲେରାରେ ଆକ୍ରାନ୍ତ ହେଲେ, ତାହା ସଂକ୍ରାମକ ବ୍ୟାଧି ଆକାରରେ ଗାଁ ସାରା ବ୍ୟାପିଯାଉଥାଏ ।

ଗାଁ ପ୍ରାଥମିକ ସ୍କୁଲରେ ପଢୁଥାଏଁ । ଗାଁ ପାଖ କୁମ୍ଭାର ସାହିରେ କଲେରା ଲାଗିଲା । ପ୍ରଥମ ଦିନ, ଗୋଟିଏ ପରିବାରର ୧୦ ଜଣ ସ୍ତ୍ରୀପୁରୁଷଙ୍କ ମଧ୍ୟରୁ ୭ ଜଣଙ୍କ ପ୍ରାଣ ଗଲା । ପରେ ପରେ ଖବର ଆସୁଥାଏ, ଅମୁକ ଘରେ ୩ ଜଣ ମଲେଣି, ଅମୁକ ଘରେ ୪ ଜଣ, ଇତ୍ୟାଦି । ଚାହୁଁ ଚାହୁଁ ଆମ ଗାଁକୁ କଲେରା ମାଡ଼ିଆସିଲା । ଜଣକ ପରେ ଜଣେ ମରିବାକୁ ଲାଗିଲେ । ଶବଗୁଡ଼ିକୁ ନେଇ ସମୁଦ୍ରକୂଳରେ ପୋଡ଼ିବା କିମ୍ବା ପୋତିବା ଲାଗି କାହାରି ସାହସ

ନ ଥାଏ । ସେଗୁଡ଼ିକ ଆଗ ଆଡ଼ିଆ ଉପରେ ପକାଇ ଦିଆଯାଉଥିଲା । ଲୋକଙ୍କ ମନରେ ସାହସ ସଞ୍ଚାର ପାଇଁ ବାପା ବୈଷ୍ଣବ ସାହିରୁ ସମ୍ପ୍ରଦାୟ ଦଳ ଆଣିଲେ । ସେମାନେ ଖୋଳ କରତାଳ ବଜାଇ ସକାଳ ସନ୍ଧ୍ୟାରେ ଘରକୁ ଘର ବୁଲି ହରିନାମ ସଂକୀର୍ତ୍ତନ କଲେ । ଦୁଇ ତିନି ଖଣ୍ଡି ଗାଁରେ ଦିନ ପରେ ଦିନ ହରିନାମ ଚାଲିଲା, କିନ୍ତୁ କଲେରା ବନ୍ଦ ହେଲା ନାହିଁ ।

ଅଞ୍ଚଳ ପ୍ରେସିଡ଼େଣ୍ଟ ଥିବାରୁ ବାପା ବାଲେଶ୍ୱର ଯାଇ ସିଭିଲ୍ ସାର୍ଜନଙ୍କ ନିକଟରେ ଆପତ୍ତି ଦେଲେ । କିଛି ଦିନ ପରେ ଜଣେ ଡାକ୍ତର ଓ କମ୍ପାଉଣ୍ଡର ଆମ ଘରେ ଆସି ପହଞ୍ଚିଲେ । ସେତେବେଳକୁ କେତେ ଲୋକ ମଲେଣି, ତା'ର ଇୟତ୍ତା ନ ଥାଏ । ଡାକ୍ତରବାବୁ ହୁକୁମ ଜାରି କଲେ, ଆମ ଘରକୁ ଗାଁ ଲୋକଙ୍କୁ ଡାକି ଆଣିବାକୁ ପଡ଼ିବ । ସେହିଠାରେ ସେ ଇଞ୍ଜେକ୍ସନ ଫୋଡ଼ିବେ । କିନ୍ତୁ ମୁଷ୍ଟିମେୟ କେତେଜଣଙ୍କ ଛଡ଼ା ଆଉ କେହି ଆସିଲେ ନାହିଁ । ''କଲେରାରେ ମରିବି, ଯମଦୂତର ଛୁଞ୍ଚି ଆଗକୁ ଯିବି ନାହିଁ'' ବୋଲି ଜଣେ ବୃଦ୍ଧାଙ୍କର ଉକ୍ତିଟି ଡାକ୍ତରବାବୁଙ୍କ କାନରେ ପଡ଼ିଲା । ସେ ଫେରି ଚାଲିଯିବେ ବୋଲି ବାପାଙ୍କୁ ଧମକ ଦେଲେ ।

ଦିନେ ରାତି ପାହିବା ଆଗରୁ ଦଳେ ଲୋକ ନେଇ ବାପା ଗାଁର ଘର ଘର ବୁଲି ବୁଢ଼ାବୁଢ଼ୀ, ଯୁବକ ଯୁବତୀ ଓ ବାଳକ ବାଳିକାମାନଙ୍କୁ ଧରି ଆଣିଲେ । ସମସ୍ତଙ୍କ ଭୟ ଦେଖି ପ୍ରଥମେ ନିଜେ ଇଞ୍ଜେକ୍ସନ ନେଲେ । ତା ପରେ ମୋର ପାଳି । ମୋଟା ଛୁଞ୍ଚି ହାତରେ ଫୋଡ଼ିଲାବେଳେ ଚିତ୍କାର କରିବାକୁ ଇଚ୍ଛା ହେଉଥାଏ । କିନ୍ତୁ ବାପାଙ୍କ ଭୟରେ ପାଟି ନକରି ଯନ୍ତ୍ରଣା ସହ୍ୟ କରିଗଲି । ତା ପରେ ଆରମ୍ଭ ହେଲା ଗାଁ ଲୋକଙ୍କ ପାଳି । ପ୍ରତିରୋଧ, ଚିତ୍କାର ଓ କ୍ରନ୍ଦନଧ୍ୱନି ମଧ୍ୟରେ କେତେଜଣଙ୍କୁ ଇଞ୍ଜେକ୍ସନ ଫୋଡୁଥିବାବେଳେ, ସ୍ତ୍ରୀଲୋକମାନେ ପିଲାମାନଙ୍କୁ ଧରି ପଳାଇଗଲେ । କେତେଜଣ ପୁରୁଷ ମଧ୍ୟ । ପରବର୍ତ୍ତୀ ଦିନଗୁଡ଼ିକରେ ସେମାନଙ୍କ ଘର ଉପରେ ଅତର୍କିତ ଚଢ଼ାଉ କରି ଇଞ୍ଜେକ୍ସନ ଦେବାଲାଗି ବାପାଙ୍କ ସାଙ୍ଗରେ ଡାକ୍ତରବାବୁ ବାହାରିଯାଉଥିଲେ ।

ତେଣେ ଆଉ କେତେଖଣ୍ଡି ଗାଁକୁ କଲେରା ବ୍ୟାପିଲା । ଡାକ୍ତରବାବୁ ଆମ ଘରେ ଏକ ମାସ ରହିଲେ ଓ ପ୍ରତିଦିନ ଗାଁ ଗାଁ ବୁଲି ପ୍ରତିଷେଧକ ଇଞ୍ଜେକ୍ସନ ଦେଲେ । ତାଙ୍କର ସେହି ରହଣିକାଳର ଗୋଟିଏ କଥା ମନେଅଛି । ଦିନେ ସେ କହିଲେ, ''ମୁଁ ରାତିରେ ଭାତ ଖାଇବି ନାହିଁ, ରୁଟି ଖାଇବି ।'' ୧୯୩୦–୩୧ ମସିହାର କଥା । ଆମ ଅଞ୍ଚଳରେ ସେତେବେଳେ ରୁଟି ଖାଇବା ଜଣା ନଥାଏ । ଅନେକ ଦୂରରୁ ଅଟା କିଣା ହେଲା । କିନ୍ତୁ ରୁଟି ତିଆରିକରିବା ବିଦ୍ୟା ଘରର

କାହାରିକୁ ଜଣା ନ ଥାଏ । ଲୁଚି ଓ ପୁରି ବେଲିବା ପାଇଁ ଚକି ବେଲଣା ଥାଏ । ବୁଦ୍ଧି ପ୍ରୟୋଗ କରି ବାପା ନିଜେ ରୁଟି ତିଆରି କଲେ । ରାତିରେ ଡାକ୍ତରବାବୁ ଖାଇବାକୁ ବସି ରୁଟିଗୁଡ଼ିକର ଆକାର ପ୍ରକାର ଦେଖି ହସି ହସି କହିଲେ, ''ମଧୁବାବୁ, ପ୍ରଥମ ରୁଟିଟିର ଆକାର ଠିକ୍ ଭାରତବର୍ଷର ମାନଚିତ୍ର ପରି, ଦ୍ୱିତୀୟଟି ଆଫ୍ରିକା ମହାଦେଶ, ତୃତୀୟଟି ଇଂଲଣ୍ଡର ମାନଚିତ୍ର କହିଲେ ଚଳିବ ।'' ବାପା ଲଜ୍ଜିତ ଅବସ୍ଥାରେ ଉତ୍ତର ଦେଲେ, ''ଆମ ଘରେ ପ୍ରଥମ ଥର ପାଇଁ ରୁଟି ତିଆରି ହେଲା । ଆଗାମୀ କାଲି ପୃଥିବୀର ମାନଚିତ୍ର ପରି ଗୋଲାକାର ରୁଟି ପାଇବେ ।''

ତହିଁ ପରଦିନ ଦୂରବର୍ତ୍ତୀ ଗୋଟିଏ ଗାଁରୁ କଲିକତା 'ବାବୁ ବାଡ଼ି'ରେ ପୂଝାରୀକାମ କରୁଥିବା ଜଣେ ଯୁବକ ଘରକୁ ଆସିଥିବା ଖବର ପାଇ ତାଙ୍କୁ ଆଣିବା ଲାଗି ବାପା ଲୋକ ପଠାଇଲେ । କଲିକତା-ଫେରନ୍ତାର ମର୍ଯ୍ୟାଦା ନେଇ ସେ ଆସିଲେ ଓ ବଙ୍ଗଳା ଭାଷାରେ କହିଲେ, ''ରୁଟି କରବାର ଏକ୍‌ଟୁ ଏକ୍‌ଟୁ ଆଇବାସ୍ (ଅଭ୍ୟାସ) ଆଛେ । ଯା ହବେ, ମନ୍ଦ ହବେନା ।'' ସେହି ପୂଝାରୀଙ୍କ ପାଖରୁ କଲିକତା ମହାନଗରୀ ବିଷୟରେ ଅନେକ କଥା ଶୁଣିବାକୁ ପାଇଲି । ହାଉଡ଼ା ପୋଲ, ଗଡ଼େର ମାଠ୍, ଚିଡ଼ିଆଖାନା, ଭିକ୍ଟୋରିଆ ମେମୋରିଆଲ୍, ପରେଶନାଥ ମନ୍ଦିର । ଯେଉଁ କେତେ ଦିନ ଥିଲେ, ମୋତେ ବଙ୍ଗଳାରେ କଥା କହିବାକୁ ବାଧ୍ୟ କଲେ । ବିଦାୟ ବେଳେ ମୋ କାନ ପାଖରେ କହିଗଲେ, ''କୋଲ୍‌କାତା ନା ଦେଖିଲେ, ବେଞ୍ଚେ ଥାକାର ମାନେ ହୟ ନା ।''

କଲେରା ପରି ମଧ୍ୟେ ମଧ୍ୟେ ଗାଁରେ ବସନ୍ତ ଲାଗୁଥାଏ । ସେଥିରେ ବେଶି ଲୋକ ମରୁ ନ ଥାନ୍ତି, କିନ୍ତୁ ଆକ୍ରାନ୍ତ ରୋଗୀମାନେ ଭୀଷଣ କଷ୍ଟ ପାଉଥାନ୍ତି । ସେମାନଙ୍କ ମୁଖମଣ୍ଡଳରେ ହାଡ଼ଫୁଟି ଚିହ୍ନ ଦେଖିଲେ ଡର ଲାଗୁଥାଏ । କାହାରି କାହାରିର ଆଖି ଫୁଟି ଯାଇଥାଏ ।

ସେ ସମୟରେ ଅଧିକତର ସାଂଘାତିକ ରୋଗ ଥିଲା ମ୍ୟାଲେରିଆ । ଅନେକ ଘରେ କମ୍ପଜ୍ୱର ଲାଗିରହିଥାଏ, ଅନେକଙ୍କ ତଳିପେଟରେ ଥାଏ ପ୍ଳୀହା । ଡାକ୍ତର ନ ଥାନ୍ତି, ଔଷଧ ନଥାଏ । ଲୋକେ ଜ୍ୱରରେ ମରୁଥାନ୍ତି । ପିଲା ବେଳେ କେତେ ଥର ମ୍ୟାଲେରିଆ ଭୋଗିଛି । କଖଡ଼ା ଗାଁରେ ଥିବା ଜମିଦାରଙ୍କ ଡ଼ାକ୍ତରଖାନାରୁ କୁଇନାଇନ ମିକ୍‌ସଚାର ଅଣାଯାଉଥାଏ । ଜ୍ୱର ହେଲେ, ପାଣି ପିଇବା ନିଷେଧ ଥାଏ । ଶୋଷରେ ଅସ୍ଥିର ହେଲେ ବି ପଇଡ଼ପାଣି ବା ମିଶ୍ରିପାଣି ଦେବାକୁ କେହି ସାହସ କରୁ ନ ଥିଲେ ।

ଏବେ ସେସବୁ ବ୍ୟାଧି ଦେଖିବାକୁ ମିଳେ ନାହିଁ ।

## କେତୋଟି ସାମାଜିକ ବ୍ୟାଧି

ମୁଁ ଜନ୍ମିଥିଲି ୧୯୨୪ରେ । ମୋ ବଡ଼ଭଉଣୀ ମୋଠାରୁ ପାଞ୍ଚବର୍ଷ ବଡ଼ ଥିଲେ । କିନ୍ତୁ ତାଙ୍କ ବିବାହ ବିଷୟ ମୁଁ ଜାଣିପାରି ନଥିଲି । ମାତ୍ର ୯ ବର୍ଷ ବୟସରେ ତାଙ୍କର ବିବାହ ସମ୍ପନ୍ନ ହେଲାବେଳେ ମୋର ଜ୍ଞାନ ଆସି ନଥାଏ । ମୋ ସ୍ତ୍ରୀଙ୍କ ବଡ଼ ଭଉଣୀଙ୍କୁ ୫ ବର୍ଷ ବୟସରେ ୮ ବର୍ଷର ଜଣେ ବାଳକ ସହିତ ବଡ଼ ଥାଳିଟିଏ ଉପରେ ବସାଇ ବିବାହ ଦିଆଯାଇଥିଲା । ହାତଗଣ୍ଠି ପଡ଼ିଲାବେଳେ ବର କନ୍ୟା ମଧ୍ୟରେ କଜଳପାତି ଧରିବା ପାଇଁ ଟଣା ଓଟରା, ମାଡ଼ପିଟ୍ ଓ କନ୍ଦାକଟା ଦେଖି ପୁରୋହିତ ଅସହାୟ ହୋଇପଡ଼ିଥିଲେ । କହିବାର ଉଦ୍ଦେଶ୍ୟ, ମୋ ପିଲାବେଳେ ଆମ ଅଞ୍ଚଳରେ ବାଲ୍ୟବିବାହ ପ୍ରଥା ଘରେ ଘରେ ପ୍ରଚଳିତ ଥାଏ । ଛୋଟ ଛୋଟ ବରକନ୍ୟାଙ୍କୁ ସବାରିରେ ବସି ଯିବାର ଦୃଶ୍ୟ ଅନେକ ଥର ଦେଖିଛି । ସବାରି ପଛରେ କନ୍ୟାମାତାମାନଙ୍କର ବିକଳ ସ୍ୱରରେ କାନ୍ଦି କାନ୍ଦି ଦୌଡ଼ିବା ଦୃଶ୍ୟ ଦୁଃଖଦାୟକ ହେଉଥାଏ ।

କନ୍ୟାମାନଙ୍କ ବୟସ ଅଳ୍ପ ଥିଲାବେଳେ, ସବୁ ବରମାନେ ଅଳ୍ପବୟସ୍କ ନ ଥାନ୍ତି । କେବେ କେବେ, ମଧ୍ୟବୟସ୍କ ବରମାନେ ଦ୍ୱିତୀୟ ବା ତୃତୀୟ ପତ୍ନୀ ରୂପେ ୮,୯ ବର୍ଷର ଝିଅକୁ ବିବାହ କରୁଥିଲେ । ସେହି ହତଭାଗିନୀ କନ୍ୟାମାନଙ୍କ ମଧ୍ୟରୁ କେତେକ ଦୁଇ ଚାରି ବର୍ଷ ପରେ ବିଧବା ହୋଇ ବାପ ମାଙ୍କ ପାଖକୁ ଫେରିଆସିବା ଦେଖିଛି । ଶାଶୁମାନଙ୍କ ଶାସନ କଥା ପ୍ରବାଦ ଆକାରରେ ଶୁଣିବାକୁ ମିଳୁଥାଏ । ଦିନେ, ଗାଁର ଜଣେ ବାଳିକା-ବଧୂକୁ ତା ମା ଆମ ଘରକୁ ଆଣିଲେ । ବୟସ ଆଠ କି ନଅ ହେବ । ମୋ ବୟସ ବି ପ୍ରାୟ ସେତିକି ଥାଏ । ଘା ହୋଇ ଝିଅର ପିଠି, ପେଟ, ଗୋଡ଼ ଓ ହାତ ପଚିଯାଇଥାଏ । କାନ୍ଦି କାନ୍ଦି ତା ମା କହୁଥାନ୍ତି, ତରକାରି ରାନ୍ଧି ନ ପାରିଲେ ଶାଶୁ ତତଲା ଚଟୁରେ ବୋହୂ ଦେହରେ ଚେଙ୍କା ଦେଇ ଦେଇ ସେପରି ଅବସ୍ଥା କରିଦେଇଛି । ଝିଅଟିକୁ ଦେଖି ମୋ ମା କାନ୍ଦୁଥାନ୍ତି ।

ଶାଶୁମାନେ ପ୍ରାୟ ଭୟଙ୍କରୀ ଥିବା ସତ୍ତ୍ୱେ ସେତେବେଳେ ଯୌତୁକ-ନିର୍ଯ୍ୟାତନା ଶୁଣାଯାଉ ନ ଥାଏ । ଯୌତୁକ ପ୍ରଥା ଅବଶ୍ୟ ଥିଲା । କିନ୍ତୁ ଜୋର୍ ଜୁଲମ କରି କନ୍ୟାପିତାଙ୍କ ପାଖରୁ ଅର୍ଥ ବା ସମ୍ପତ୍ତି ଅପହରଣ କରିବାର ଅପଚେଷ୍ଟା ପ୍ରାୟ ନ ଥିଲା ।

ଗୋଟିଏ କଥା ମନେପଡ଼େ । ଧନୀ ପରିବାରରେ ଝିଅ ଜନ୍ମିଲେ ମା' ମାନଙ୍କ ମନରେ ଦୁଃଖ ହେଉଥାଏ । ମୋ ତଳକୁ ଗୋଟିଏ ଭଉଣୀ ପରେ ଆଉ ଗୋଟିଏ ଭଉଣୀ ଜନ୍ମ ହେଲାବେଳେ ମୋ ମା କରୁଣ ସ୍ୱରରେ କାନ୍ଦିଥିବା

ଦେଖିଛି । ଅଥଚ, ତା'ପରେ ମା'ଙ୍କର ପୁତ୍ରସନ୍ତାନଟିଏ ଜନ୍ମ ହେବାରୁ ଚନ୍ଦନେଶ୍ୱର ମହାଦେବ ମନ୍ଦିରରେ ପୂଜା ଅର୍ଚ୍ଚନା ସାଙ୍ଗକୁ ଗାଁରେ ମିଷ୍ଟାନ୍ନ ବଣ୍ଟନ କରାଗଲା ।

ମୋ ଝିଅ ଜନ୍ମିଲାବେଳର କଥାଟିଏ ମନେପଡ଼ିଲେ ହସ ଲାଗେ । ୧୯୪୮ ଜାନୁଆରୀରେ ମୋ ସ୍ତ୍ରୀ ତାଙ୍କ ବାପାଙ୍କ ଘରେ ବାରିପଦା ସହରରେ କନ୍ୟାଟିଏ ପ୍ରସବ କଲେ । ସମ୍ବାଦ ପାଇ ମୋ ମା ଦୌଡ଼ିଲେ ଠାକୁରଙ୍କ ପାଦରେ ଫୁଲ ଦେବା ପାଇଁ । ଠାକୁର ଅର୍ଥାତ୍ ରାଧାକୃଷ୍ଣ ମୂର୍ତ୍ତି ପୂଜା ପାଉଥାନ୍ତି ମୋ ବାପାଙ୍କ ଜେଠାପୁଅ ବଡ଼ଭାଇଙ୍କ ଘରେ । ସେ ଥିଲେ ବାବାଜି ଓ ନିଃସନ୍ତାନ । ମୋତେ ପୁଅ ଭଳି ଭଲ ପାଉଥିଲେ । ମା ଫୁଲଚାଙ୍ଗୁଡ଼ି ଧରି ପହଞ୍ଚିଲେ ଓ ବାବାଜିଙ୍କୁ ମୋର କନ୍ୟାଲାଭ କଥା ଜଣାଇଲେ । ମାଳ ଝୁଲି ରଖିଦେଇ ବାବାଜି ବଡ଼ବାପା ଗାଲରେ ହାତ ଦେଇ କହିପକାଇଲେ, "ମୋ ମୁଣ୍ଡରେ ବିଷ ଚରିଗଲା ।" ମାତାଜୀ ବଡ଼ମା ବାହାରିପଡ଼ି କହିଲେ, "ଝିଅଟା ମରିଯାଆନ୍ତା କି, ମୁଁ ଠାକୁରଙ୍କ ପାଖରେ ଖିରି ଭୋଗ ଦିଅନ୍ତି ।" ଅଥଚ, ଏହାର ୩ ବର୍ଷ ପରେ ଯେତେବେଳେ ମୋର ପୁଅ ଜନ୍ମ ହେଲା, ସେହି ବଡ଼ବାପା, ବଡ଼ମା ମହାମନ୍ତ୍ର ଜପ କରି ରାଧାକୃଷ୍ଣଙ୍କ ପାଦପଦ୍ମରେ ସହସ୍ର ତୁଳସୀ ଅର୍ପଣ କରିଥିଲେ ।

ମୋ ଝିଅ ଜନ୍ମ ଲାଗି ନିଃସନ୍ତାନ ବାବାଜିଦମ୍ପତିର ଯେଉଁ ଗଭୀର ମର୍ମପୀଡ଼ା, ତାହା ଥିଲା ସେ ସମୟର ସାମାଜିକ ମନୋଭାବର ପ୍ରତିବିମ୍ବ । କୁହାଯାଉଥାଏ, ପ୍ରତ୍ୟେକ ମଣିଷର ଦୁଇଟି ଦାୟ, ଯଥା 'ପିତୃ ମାତୃ ଦାୟ' ଓ 'କନ୍ୟାଦାୟ' । ପିତାମାତାଙ୍କ ମୃତ୍ୟୁ ପରେ ଯେପରି ବ୍ୟୟବହୁଳ କ୍ରିୟାକର୍ମ, କନ୍ୟାଦାନ ବେଳେ ମଧ୍ୟ ସେହିପରି ବା ତତୋଽଧିକ ଅର୍ଥବ୍ୟୟ । ଭବିଷ୍ୟତରେ ଝିଅଟି ମୋର ବୋଝ ହେବ ବୋଲି ଭାବିନେଇ ମୋ ପ୍ରତି ସେମାନଙ୍କ ଅତ୍ୟଧିକ ସ୍ନେହ ଯୋଗୁଁ ବଡ଼ବାପା ଓ ବଡ଼ମା'ଙ୍କ ମନରେ ଦୁଃଖ ହେବା ସ୍ୱାଭାବିକ ଥିଲା । ସେତେବେଳେ ସେମାନେ ଅନୁମାନ କରିପାରି ନଥିବେ, ସେହି ଝିଅ ପାଠ ପଢ଼ି ଦିନେ ଡାକ୍ତର ହେବ ।

ପୂର୍ବକଥାକୁ ପୁଣି ଫେରୁଛି । ସେ ସମୟରେ ବିତ୍ତଶାଳୀ ଓ ମଧ୍ୟବିତ୍ତ ପରିବାରରେ ଝିଅ ଜନ୍ମ ଏକ ନିରାନନ୍ଦ ବ୍ୟାପାର ଥିଲାବେଳେ, ଜାତି ଉପଜାତି ନିର୍ବିଶେଷରେ ଅନେକ ଦରିଦ୍ର ପରିବାରରେ ଝିଅ ଜନ୍ମକୁ ସ୍ୱାଗତ କରାଯାଉଥାଏ । କାରଣ, ଅଳ୍ପ ବୟସର ଝିଅମାନଙ୍କୁ ବିବାହ ଦେଇ କନ୍ୟାପିତାମାନେ ବରପକ୍ଷ ପାଖରୁ 'ପଣି' ପାଉଥିଲେ । ଅର୍ଥାତ୍, ଝିଅ ଥିଲା ଅର୍ଥ ଆୟର ଉପକରଣ । ବରର ବୟସ ଅନୁସାରେ 'ପଣି'ର ପରିମାଣ ଠିକ୍ କରାଯାଉଥାଏ । କଥାଟିଏ ମନେପଡୁଛି । ସଦ୍ୟ ବିବାହ ପରେ ଆମ ଘରର ଜଣେ ପୁରାତନ ଚାଷୀ ଦେଖା କରିବାକୁ

ଆସିଲେ । ବୟସ ପଚାଶରୁ ବେଶି । ମୁଁ ତାଙ୍କୁ 'ବାୟାଣି ଅଜା' ବୋଲି ଡାକୁଥାଏଁ । ବାପା ପଚାରିଲେ, "କେତେ ଟଙ୍କା ପଣି ଦେଲ ?" ସେ ବର୍ଣ୍ଣନା କଲେ, "ପଚାଶ ଟଙ୍କାରେ କଥା ଛିଡ଼ିଥିଲା । ହାତଗଣ୍ଠି ପଡ଼ିଲାବେଳେ କନିଆର ବାପ ଦେଖିଦେଲା, ମୋର ଦୁଇଟା ଦାନ୍ତ ପଡ଼ିଯାଇଛି । ସେ ବାବଦ୍ ଦଶ ଦଶ ଟଙ୍କା ମୋଟ କୋଡ଼ିଏ ଟଙ୍କା ନ ଦେଲେ, ଝିଅ ଦେବ ନାହିଁ ବୋଲି କହିଦେଲା । ବେଦି ଉପରେ ବସି ଭାଇ ପାଖରୁ କରଜ କରି ସେତକ ଦେଲି ।" ଅଜାଙ୍କ କଥା ଶୁଣି ସମସ୍ତେ ହସିଲେ । ଜଣେ ପଚାରିଲେ, "ଝିଅଟି ଭଲ ତ ?" ବାୟାଣି ଅଜା ବିମର୍ଷ ମନରେ ଉତ୍ତର ଦେଲେ, "ଭାତ ମୁଠେ ଫୁଟେଇତେ ବି ଶିଖି ନାହିଁ । ଚୁଲି ପାଖରେ ବସାଇ ତାକୁ ମୋତେ ରନ୍ଧାବଢ଼ା ଶିଖେଇତେ ହବ ।" 'ଆଈ' ଯେ ଅଳ୍ପବୟସ୍କା, ଏଥିରେ ସନ୍ଦେହ ନଥାଏ । 'ଦାନ୍ତ ବାବଦ୍' କ୍ଷତିପୂରଣ କଥାଟା କିଛିଦିନ ବେଶ୍ ଆଲୋଚିତ ହେଲା ।

ଜଣେ ଗ୍ରାମବାସୀଙ୍କର ପଞ୍ଚମ କନ୍ୟା ଜନ୍ମିଲାପରେ ତାଙ୍କର ଆନନ୍ଦ ଦେଖି ଜଣେ ପରିହାସ କଲେ, "ତୋର ଭାଗ୍ୟ ଭଲ । ଗୋଟାକ ପରେ ଗୋଟିଏ ଝିଅ ବାହା ଦେଇ ଯେତିକି ଲେଖାଏଁ ଟଙ୍କା ପାଇବୁ, ସେଥିରେ ତୋ ଦିନ କାଳ ଆରାମରେ କଟିବ ।"

ପୁରୁଣା ଅମଳରେ ସମାଜରେ ଏହି ପ୍ରକାର ପ୍ରଥାଗୁଡ଼ିକ ଗତାନୁଗତିକ ଥାଏ । ଏଥି ସହିତ ଗୋଟିଏ ବ୍ୟକ୍ତିଗତ ବ୍ୟାଧି ଆମ ଅଞ୍ଚଳର ଲୋକଙ୍କୁ ଅଶେଷ ଦୁଃଖ ମଧ୍ୟକୁ ଟାଣିନେଉଥାଏ । ତାହା ଥିଲା ଅଫିମ ସେବନ । ଅସ୍ଥିକଙ୍କାଳସାର ବୁଢ଼ାମାନେ ହାତରେ ବାଡ଼ି ଧରି ଧୀର ମନ୍ଥର ଗତିରେ ଚାଲୁଥାନ୍ତି ଅଫିମ-ଦୋକାନୀ ପାଖକୁ । ଅଣ୍ଟାରେ ଗୁଞ୍ଜାଥିବ ଗୋଟିଏ ମାତ୍ର ପଇସା । ପଇସାଟିଏ ଦେଇ ବିରି ଆକାରର ଅଫିମ ଟିକକ ପାଟିରେ ଦେଇଦେବେ । ଧନୀ ଅଫିମସେବୀମାନଙ୍କର ଦିନକୁ ଚାରିପଇସାର ଅଫିମ ଦରକାର ପଡୁଥାଏ । ନିୟମିତ ସେବନ ନକଲେ ବୁଢ଼ାମାନେ ବିଛଣାରୁ ଉଠିପାରିବେ ନାହିଁ ବୋଲି ସେମାନଙ୍କ ମୁହଁରୁ ଶୁଣୁଥାଏଁ । ଗୋଟିଏ ପଇସାର ମୂଲ୍ୟ ସେତେବେଳେ କିଛି କମ୍ ନଥାଏ ।

ଦିନେ ଆମ ଘରେ ପହଞ୍ଚିଲେ ଭୋଗରାଇ ଥାନାର ଜଣେ ବୃଦ୍ଧ କନେଷ୍ଟବଲ ବା ସିପେଇ । ସନ୍ଧ୍ୟାବେଳକୁ ଦରକାର ପଡ଼ିଲା ଅଫିମ । ଶ୍ୱାସ ପେଲୁଥାଏ । କାଶି କାଶି କଫ ବାହାର କରୁଥାନ୍ତି । ଗାଁ ଚୌକିଦାର ଅଫିମ ଆଣିବାକୁ ଗଲେ । ଦୁଆରେ ବସିଥାନ୍ତି ଜଣେ ଭଦ୍ରଲୋକ । ତାଙ୍କ ମୁହଁକୁ ବିକଳ ଭାବେ ଚାହିଁରହି ସିପେଇ ଦୁଃଖ ପ୍ରକାଶ କଲେ । "ବାବୁ, ଏ ଗାନ୍ଧିବୁଢ଼ା ଯାହା କରିବ କରୁ । ହେଲେ, ତା ଆଖି ଦୁଇଟା ଆମ ଅଫିମଖିଆଙ୍କ ଉପରେ ପଡ଼ିଲା

କାହିଁକି କହିଲେ ? ସକାଳେ ଅଫିମ ଟିକେ ଖାଇଥିଲି ବୋଲି ଦୁଇକୋଶ ବାଟ ଚାଲିଆସିଲି । ଅଫିମ ଉଠିଗଲେ ଆମେ ବଞ୍ଚିବା ତ ? ଆମେ ମରିଗଲେ ଦେଶର କ'ଣ ଲାଭ ହେବ କହିଲେ ? ଆପଣ ଯାହା କହନ୍ତୁ ବାବୁ, ଗାନ୍ଧିବୁଢ଼ା ଉପରେ ଆମର ନିଶ୍ୱାସ ପଡ଼ିବ ।'' ସିପେଇଙ୍କ ଶ୍ୱାସ ନିର୍ଗତ ଦୀର୍ଘଶ୍ୱାସଗୁଡ଼ିକ ଥାଏ ସତେଯେପରି ମହାତ୍ମାଙ୍କ ବିରୋଧରେ ତାଙ୍କର ରଣଧ୍ୱନି !

## ବିପ୍ଳବ ଯୁଗର ଗୋଟିଏ ଘଟଣା

୧୯୩୦ ମସିହା । ଆରମ୍ଭ ହୋଇଥାଏ ମହାତ୍ମା ଗାନ୍ଧିଙ୍କ ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ । ମୋର ବୟସ ୬ ବର୍ଷ । ରାତି ପ୍ରାୟ ଏକ ପ୍ରହର ବେଳେ ଖାଇସାରି ବାପାଙ୍କ ବିଛଣାରେ ଶୋଇବାକୁ ଯାଉଥିଲି । ସେତିକିବେଳେ ଜଣେ ଲୋକ ବାପାଙ୍କ କାନ ପାଖରେ କିଛି ସମୟ କଥା କହି ଅନ୍ଧକାରରେ ଅନ୍ତର୍ଦ୍ଧାନ ହେଲେ । ବାପା ବ୍ୟସ୍ତ ହୋଇଉଠିଲେ । ତାଙ୍କ କକାପୁଅ ସାନଭାଇଙ୍କୁ ଡାକି କହିଲେ, ''ଗୋପାଳ ! ଖବର ଆସିଛି, ମଝି ରାତିରେ ହରେକୃଷ୍ଣ ମହତାବଙ୍କ ସ୍ତ୍ରୀ ଅଗରପଡ଼ାର ରାଣୀ ସୁଭଦ୍ରା ଦେବୀ ଆମ ଘରେ ଆସି ପହଞ୍ଚିବେ । ଜିଲ୍ଲା ତମାମ୍ ପୋଲିସ ତାଙ୍କୁ ଖୋଜୁଛି । ଆମ ଘରେ ଆତ୍ମଗୋପନ କରି ରହିବେ । ଚାଲ, ତାଙ୍କ ରହିବା ସୁବିଧା କରିବା ।'' ମା କ'ଣ କହିଲାରୁ ବାପା ରାଗିଉଠିଲେ, ''ନା, ରାଣୀ ହେଲେ ବି ପକ୍କାଘର ଭିତରେ ରଖାଯିବ ନାହିଁ । ହାଣ୍ଡିଶାଳ ପାଖରେ ସରଘରଟା ସଫା କର । ଦିନବେଳେ ତା ଭିତରେ ରହିବେ । ରାତିରେ ବରଂ ପକ୍କାଘରେ ଶୋଇବେ ।'' ବାପା ଓ ଗୋପାଳକକା ତରତରରେ ବାହାରି ଗଲେ । ମୁଁ ନିଦରେ ଶୋଇପଡ଼ିଲି ।

ରାତିର କେଉଁ ପ୍ରହରରେ ଓ କିପରି ଭାବରେ ସୁଭଦ୍ରା ଦେବୀ ଆସି ପହଞ୍ଚିଥିଲେ, ସେ ଦୃଶ୍ୟ ମୁଁ ଦେଖିପାରିଲି ନାହିଁ । ଭୋର ସମୟରେ ନିଦରୁ ଉଠି ଦେଖିଲି, ବାପାଙ୍କ ଆଗରେ ଗାଁର ଚୌକିଦାର । ବାପା ତାଙ୍କୁ କଡ଼ା ନିର୍ଦ୍ଦେଶ ଦେବା ଶୁଣିଲି, ''ଦେଖ୍ କୃଷ୍ଣ, ରାଣୀମା ଆସିଯାଇଛନ୍ତି । ଖବରଦାର, ଏକଥା କାହାରି ପାଖରେ କହିବୁ ନାହିଁ । ଦାରୋଗା ତୋତେ ପଚାରିପାରେ । କିଛି ଜାଣିନାହିଁ ବୋଲି କହିବୁ ।'' କୃଷ୍ଣ ଜେନା ଚୌକିଦାର ପଥର ପରି ଛିଡ଼ା ରହି ଆଦେଶଟି ଶୁଣିଲେ । ଗଭୀର ଆଶଙ୍କା ମଧ୍ୟରେ ବୋଧହୁଏ ଭାବୁଥିଲେ, ଗୋଟିଏ ଦିଗରେ ଖୋଦ୍ ପ୍ରେସିଡେଣ୍ଟ ଓ ଗାଁର ମାଲିକ, ଅନ୍ୟ ଦିଗରେ ସର୍ବଶକ୍ତିମାନ୍ ଥାନା ଦାରୋଗା । ଯଦି କୌଣସି ସୂତ୍ରରୁ ଦାରୋଗା ଜାଣିପାରିବେ, ତେବେ ଚାକିରିଟା ତ ନିଶ୍ଚୟ ଯିବ, ସେଥିସଙ୍ଗେ ପ୍ରଚଣ୍ଡ ପ୍ରହାର ଓ ହୁଏତ ଜେଲ୍ ଦଣ୍ଡ !

ରାଜାରାଣୀଙ୍କର ଅନେକ ଗପ ଶୁଣିଥାଏଁ । ସ୍ୱୟଂ ଜଣେ ରାଣୀ ଆମ ଘରକୁ ଆସିଗଲେଣି ଜାଣି ତାଙ୍କୁ ଦେଖିବା ଲାଗି ମନ ଅସ୍ଥିର ହେଲା । ସଫାସୁତୁରା ହୋଇ ମା'ଙ୍କ ସାଙ୍ଗରେ ଚାଲିଲି । ଏକାନ୍ନବର୍ତ୍ତୀ ପରିବାରର ରୋଷେଇ ଶାଳଟି ଖୁବ୍ ବଡ଼ ଥାଏ । ତା ପାଖରେ ଥାଏ ଚାଉଳ, ଡାଲି ଇତ୍ୟାଦି ରଖିବା ଲାଗି ବଡ଼ ଆକାରର ସରଘର । ଦେଖିଲି, ସେହି କୋଠରିର ପ୍ରବେଶପଥଟିକୁ ଅନେକଗୁଡ଼ିଏ ହାଣ୍ଡି ଉପରାପରି ରଖି ପ୍ରାୟ ଅଦୃଶ୍ୟ କରିଦିଆଯାଇଛି । ହାଣ୍ଡି ପାଖ ଦେଇ ମା ସରଘର ଭିତରକୁ ନେଇଗଲେ । ଛୋଟ ଖଟ ଉପରେ ବସିଥାନ୍ତି ସୁଭଦ୍ରା ଦେବୀ । ପାଖରେ ଆଉଜଣେ ମହିଳା । ମୋତେ କୋଳରେ ବସାଇଲେ ।

ଯେଉଁ କେତେଦିନ ସେ ଥିଲେ, ଅନେକ ସମୟରେ ତାଙ୍କ ପାଖରେ ମୁଁ ରହୁଥିଲି । ରାତିରେ ମଧ ସେ ସେହିଘରେ ଶୋଇଲେ । ସନ୍ଧ୍ୟାପରେ ମା'ଙ୍କ ସାଙ୍ଗରେ ଗାଁର ସ୍ତ୍ରୀଲୋକମାନଙ୍କୁ ତାଙ୍କ ପାଖକୁ ଅଣାଯାଉଥାଏ । ପାଖରେ ଲଣ୍ଠନ ଜଳୁଥାଏ । ଦିନେ ଦେଖିଲି, ସୁଭଦ୍ରା ଦେବୀ କ'ଣ କହିଲାପରେ ମୋ କାକୀମାନେ ନିଜ ନିଜ ହାତରୁ କାଚଚୁଡ଼ିଗୁଡ଼ିକ ବାହାର କରି ତାଙ୍କ ଆଗରେ ଭାଙ୍ଗିପକାଇଲେ । ସୁଭଦ୍ରାଦେବୀଙ୍କ ସାଙ୍ଗରେ ଆସିଥିବା ମହିଳାଟି ସେତେବେଳେ ମଧୁର ସ୍ୱରରେ ଗୀତଟିଏ ଗାଇବା ଶୁଣିଥିଲି—''ଭଉଣୀ ଗୋ ମାତା ଖୁଡ଼ୀ; ନ ଘେନ ଗୋ କାଚଚୁଡ଼ି; ତୁମ ପାଇଁ ଦେଶବାସୀ କାନ୍ଦୁଛନ୍ତି ମୁଣ୍ଡ କୋଡ଼ି ।'' ବିଲାତି ଜିନିଷ ବର୍ଜନ କରିବାକୁ ତାହା ଥିଲା ସଂଗ୍ରାମୀମାନଙ୍କର ମର୍ମସ୍ପର୍ଶୀ ଆହ୍ୱାନ ।

ଦିନେ ଗାଁର ଜଣେ ବୁଢ଼ା ବାପାଙ୍କ ଆଗରେ କାକୁତି ମିନତି କଲେ, ଥରେ ସେ ରାଣୀଙ୍କୁ ଦେଖିବେ । ମୋ ସାଙ୍ଗରେ ବାପା ତାଙ୍କୁ ପଠାଇଲେ । କିଛି ସମୟ ରାଣୀଙ୍କ ମୁହଁକୁ ଚାହିଁରହି ଫେରିଆସିଲେ । ବାପା ପଚାରିଲେ, ''ରାଣୀ ମା'ଙ୍କୁ ଦେଖିଲୁ ?'' ନିର୍ବୋଧ ସରଳ ବୃଦ୍ଧ କହିପକାଇଲେ, ''ରାଣୀ ନା ଚାକରାଣୀ ? ମୁଁ ଭାବିଥିଲି, ମୁଣ୍ଡରେ ମୁକୁଟ ଥିବ, ଦେହରେ ହୀରାନୀଳା ମୋତି ମାଣିକ୍ୟ ଝକ୍‌ମକ କରୁଥିବ, ହାତରେ ସୁନାଗହଣା ଛାଇରହିଥିବ ! ଦେଖିଲା ବେଳକୁ ଖାଲିଦେହ । ଇଏ କିମିତିକା ରାଣୀ ?'' ରାଗିଉଠି ବାପା ହାତ ଉଠାଇ ବୁଢ଼ାକୁ ଠେଲିଦେଲେ । କିନ୍ତୁ ସଙ୍ଗେ ସଙ୍ଗେ ପୁଣି କୋମଳ ସ୍ୱରରେ ବୁଝାଇଲେ, ''ରାଣୀ ହେଲେ ବି ଦେଶପାଇଁ ତାଙ୍କର ଏପରି ରୂପ । ତୋ ମୁଣ୍ଡରେ ବୁଦ୍ଧି ଅଛି ଯେ ତୁ ସେ କଥା ବୁଝିପାରିବୁ ! ଯା, ପଳା, କାହାରି ପାଖରେ କିଛି କହିବୁ ନାହିଁ ।''

ସୁଭଦ୍ରା ମହତାବ କେତେ ଦିନ ଆମ ଘରେ ଲୁଚି ରହିଥିଲେ, ତାହା ମନେ ନାହିଁ । ଶେଷରେ ଦିନେ ତାଙ୍କ ପାଖକୁ ଉପରୁ ନିର୍ଦ୍ଦେଶ ଆସିଲା, କେହି କଂଗ୍ରେସ ଲୋକ ଆତ୍ମଗୋପନ କରି ରହିବେ ନାହିଁ । ତାଙ୍କ ବିଦାୟକାଳର ଦୃଶ୍ୟ ମନେଅଛି । ଗଭୀର ଅନ୍ଧକାର ମଧ୍ୟରେ କକାମାନେ ଲଣ୍ଠନ ଧରି କେଉଁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ, ବୋଧହୁଏ ଚନ୍ଦନେଶ୍ୱର ମନ୍ଦିର ନିକଟରେ, ରାଣୀଙ୍କୁ ଛାଡ଼ିଦେବା ଲାଗି ଘରୁ ବାହାରି ଯାଇଥିଲେ । ମା'ଙ୍କ ଆଖିରେ ଲୁହ ଦେଖିଥିଲି । କେତେ କଷ୍ଟରେ ସେ ଆମ ଦୁର୍ଗମ ଅଞ୍ଚଳକୁ ଚାଲି ଚାଲି ଆସିଥିଲେ ଏବଂ ପୁଣି କେଉଁ ଅଜ୍ଞାତ ବିପଦ ପଥରେ ନିଜେ ଚାଲିଗଲେ ! ତାହା ହିଁ ଥିଲା ଗାନ୍ଧିଯୁଗର ଆହ୍ୱାନ । ସେଦିନର ତାଙ୍କର ସେହି ରୂପ— ଜୀର୍ଣ୍ଣଶୀର୍ଣ୍ଣ ଦେହ, ଧଳା ଖଦଡ଼ ଶାଢ଼ୀ, ମୁଣ୍ଡ ଉପରେ ଓଢ଼ଣା, ଚିନ୍ତା-ଭାରାକ୍ରାନ୍ତ ବିମର୍ଷ ମୁଖମଣ୍ଡଳ— ମୋ ସ୍ମୃତିପଟରେ ଏ ପର୍ଯ୍ୟନ୍ତ ରହିଯାଇଛି ।

## ତିନୋଟି ବିଦ୍ୟାଳୟରେ ପଢ଼ିବାକାଳର ସ୍ମୃତି

ଗାଁ ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ିଲାବେଳର ଗୋଟିଏ ଘଟଣା ଭୁଲିପାରି ନାହିଁ । ଗଣେଶ ଚତୁର୍ଥୀର ଆଗ ରାତି । ସାଙ୍ଗ ପିଲାମାନେ କହିଲେ, ଆଜି ରାତିରେ ଚୋରି କରିବାକୁ ହୁଏ । ପାଞ୍ଚଜଣ ମିଳିମିଶି ଆଖ ପାଖ ବାଡ଼ିରେ ପଶି ଫଳ ଚୋରିକରିବା କଥା ଠିକ୍ ହେଲା । ଅନ୍ଧକାର ଗଭୀର ହେବା ପର୍ଯ୍ୟନ୍ତ ସ୍କୁଲ ପିଣ୍ଡାରେ ବସିରହିଲୁଁ । ଅନ୍ୟ ପିଲାମାନେ ଗଣେଶ ମୂର୍ତ୍ତିଙ୍କୁ ସଜାଇବା କାମରେ ଲାଗିଥାନ୍ତି । ମାଷ୍ଟର ଦୁଇଜଣ ଶୋଇପଡ଼ିଲା ପରେ, ଆମେ ଚୋରଦଳ ବାହାରିଗଲୁଁ । ଗୋଟିଏ ଘରର ବାଡ଼ ପାଖରେ ଥାଏ ବଡ଼ ବାତାପିଗଛ । ମାଙ୍କଡ଼ ପରି ଉଠିଗଲୁଁ । ବାତାପି ପାଚି ନଥାଏ । ହେଲେ, ଖାଇବାଯୋଗ୍ୟ ହେଉ ନ ହେଉ, ଆମେ ନିଶ୍ଚୟ ଚୋରି କରିବା । ଗଣ୍ଡା ଗଣ୍ଡା କଞ୍ଚା ଫଳ ତଳକୁ ପକାଇଲୁଁ । ସେଗୁଡ଼ିକ ନେଇ ବିଲ ଭିତରେ ପକାଇଦେଇ ଚୋରିକାମ ଶେଷ କଲୁଁ । ତାପରେ, ଆଉ ଜଣକ ବାଡ଼ିରେ ପଶି କାକୁଡ଼ିକଷିଗୁଡ଼ିକ ଯେତେ ଇଚ୍ଛା ଖାଇଲାପରେ ବାକିତକ ଛିଣ୍ଡାଇପକାଇ ଏଣେ ତେଣେ ଫୋପାଡ଼ିଦେଲୁଁ । କାକୁଡ଼ିବାଡ଼ି ଛାରଖାର ହେଲା ।

ରାତି ପାହିଲାବେଳକୁ ଦୁଇଜଣ ଦରିଦ୍ର ଲୋକ ବାପାଙ୍କ ଆଗରେ ଆପତ୍ତି ଦେଉଥିବା ଶୁଣିଲି ଯେ ସ୍କୁଲ ପିଲାମାନେ ରାତିରେ ସେମାନଙ୍କର ସର୍ବନାଶ ଘଟାଇଛନ୍ତି । ସ୍କୁଲର ବଡ଼ ମାଷ୍ଟର ଆମ ଘରେ ରହୁଥାନ୍ତି । ଗର୍ଜନ ତର୍ଜନ କରି ବାପା ଆଦେଶ ଦେଲେ, "ଚୋର ପିଲାଙ୍କୁ ଧରି ରଖିଥିବେ, ମୁଁ ଗଲେ

ସେମାନଙ୍କ ପିଠିରେ ବେତ ପଡ଼ିବ ।'' ଆପତ୍ତିକାରୀ ମାନଙ୍କୁ ସାନ୍ତ୍ୱନା ଦେଲେ, ''ଚୋରଙ୍କର ବାପମାନଙ୍କ ପାଖରୁ ପଇସା ଆଦାୟ କରି ତୁମକୁ ଦେବି ।''

ନୂଆଲୁଗା ପିନ୍ଧି ଓ ଖାଲିପେଟରେ ପୁଷ୍ପାଞ୍ଜଳି ଦେବାକୁ ବଡ଼ ମାଷ୍ଟରଙ୍କ ସାଙ୍ଗରେ ବାହାରିଗଲି । ମାଷ୍ଟ୍ରେ ବାଟରେ ଖଣ୍ଡିଏ ବେଗୁନିଆ ବାଡ଼ି ବେଢ଼ା ପାଖରୁ ଭାଙ୍ଗିନେଲେ । ସ୍କୁଲରେ ପହଞ୍ଚି ଦୁଷ୍ଟ ଜଣାଥିବା ପିଲାଟି ପିଠିରେ ଚାବୁକ ବସାଇ ପାଟି କଲେ । ''କିଏ କିଏ ଚୋରି କରିଥିଲ କହ ।'' ମୋ ନାମ ସମେତ ସେ ପାଞ୍ଚଜଣଙ୍କ ନାମ କହିଦେଲା । ମାଷ୍ଟ୍ରେ ମହା ବିପଦରେ ପଡ଼ିଲେ । ସ୍କୁଲର ଖୋଦ୍ ପ୍ରତିଷ୍ଠାତା ଓ ସେକ୍ରେଟାରୀଙ୍କ ପୁଅ ହେଉଛି ଚୋର ! ତାଙ୍କର ସେହି ଚିନ୍ତାଗ୍ରସ୍ତ ମୁହୂର୍ତ୍ତରେ ବାପା ଗ୍ରାମର ମୁଖ୍ୟମାନଙ୍କ ସହ ପୂଜା ଦେଖିବାକୁ ପହଞ୍ଚିଗଲେ । ମାଷ୍ଟ୍ରେ ଗୁହାରି କଲେ, ''ମାଲିକ, ଗଣେଶ ଚତୁର୍ଥୀ ଆଗ ରାତିରେ ଫୁଲ ଫଳ ଚୋରି କରିବାଟା ପିଲାମାନଙ୍କର ଗୋଟିଏ ଧର୍ମ ବୋଲି ସମସ୍ତେ କୁହନ୍ତି । ତେଣୁ, ସେମାନଙ୍କୁ ପ୍ରହାର କରିବା ଲାଗି ହାତ ଉଠୁନାହିଁ ।'' ଆମେ ପାଞ୍ଚ ଜଣ ଚୋର ସେତେବେଳକୁ କାନ ଧରି ଛିଡ଼ା ହୋଇଥାଉଁ । ସେହି ସମୟରେ ବାପା ଯାହା କହିଥିଲେ ତାହା ମନେ ରହିଛି ।

''ମାଷ୍ଟ୍ରେ, ପିଲାମାନଙ୍କୁ ଗଣେଶ ଜ୍ଞାନ ଓ ବୁଦ୍ଧି ଦେବାକୁ ଆସିଥାନ୍ତି, ନା ଚୋରିବିଦ୍ୟା ଶିକ୍ଷା ଦେବାକୁ ? ଚୋରି ନ କରି ଘର ଘର ମାଗିଥିଲେ ଫୁଲ ଫଳ ମିଳିଥାନ୍ତା । ତା ନକରି, ଅନ୍ଧାରରେ ବେଢ଼ା ଡେଇଁ ଚୋରି ! ଏହାକୁ ଆପଣ ଧର୍ମ ବୋଲି କହୁଛନ୍ତି ? ଧର୍ମ ନାମରେ ଆମେ କେତେ ପ୍ରକାର ପାପ କରୁଛେ କହିଲେ ? ମାଂସ ଖାଇବାକୁ ଇଚ୍ଛା, ତେଣୁ ଧର୍ମର ଦୁହାଇ ଦେଇ ଛେଳି ବଳି ଦେଉଛେ । ମନେ ମନେ ଜୀବହତ୍ୟା ପାପରୁ ମୁକ୍ତି ପାଇଯାଉଛେ । ମାଲିମୋକଦ୍ଦମା ଜିଣିବା ପାଇଁ ଠାକୁରଙ୍କୁ ଲାଞ୍ଚ ଦେବା ଲାଗି ମାନସିକ କରୁଛେ । ଏ ସବୁ ଧର୍ମ ନା ପାପ ? ପିଲାମାନଙ୍କୁ ଧର୍ମର ଭଲ କଥା ଶିକ୍ଷା ଦେବେ, ଖରାପ କଥା ନୁହେଁ ।''

ବାପା ଦଣ୍ଡବିଧାନ କଲେ । ଯେଉଁ ଦୁଇ ଘରେ ଚୋରି କରିଥିଲୁଁ, ସେମାନଙ୍କ ପାଖକୁ ଯାଇ କ୍ଷମା ମାଗିବାକୁ ଆଦେଶ ଦେଲେ । କଠୋର ଦୃଷ୍ଟିରେ ମୋ ଆଡ଼କୁ ଚାହିଁ କହିଲେ, ''ସେମାନଙ୍କୁ କହିବୁ, ସଞ୍ଜବେଳେ ମୋ ପାଖରୁ ବାତାପି ଓ କାକୁଡ଼ିର ଦାମ ନେଇଯିବେ । କହିଦେବୁ, ପୁଅ ଚୋରି କରିଛି, ସେ ପାଇଁ ଜୋରିମାନା ଦେବ ତା ବାପ ।'' ଗାଁଲୋକେ ହସି ହସି ବେଦମ ହେଲେ । ଲଜ୍ଜିତ ବଡ଼ ମାଷ୍ଟ୍ରେ ପୁଷ୍ପାଞ୍ଜଳି ପାଇଁ ପ୍ରସ୍ତୁତ ହେବାକୁ ଲାଗିପଡ଼ିଲେ ।

ଉଚ୍ଚ ପ୍ରାଥମିକ ସ୍କୁଲଟି ଥିଲା ଦୁଇ କିଲୋମିଟାର ଦୂରରେ, ଦକ୍ଷିଣତେଘରି ଗ୍ରାମରେ । ଦୁଇଓଳି ପାଠପଢ଼ା ହେଉଥାଏ । ସକାଳ ଠାରୁ ଦୁଇ ପ୍ରହର ଓ ବେଳ ଓଳିରୁ ସନ୍ଧ୍ୟା । ବର୍ଷାଦିନେ ବାଲି ଆଡ଼ିଆରେ ଓ ଖରାଦିନେ ବିଲ ରାସ୍ତାରେ ଯିବାକୁ ହେଉଥାଏ । ନିର୍ଜନ ଆଡ଼ିଆ ଉପରେ ଥାଏ ଭୂତର ଭୟ, ବିଲରେ ଥାଏ ଗୋଖରସାପ । ପ୍ରକୃତ ଭୟ ଥାଏ ମାଷ୍ଟରମାନଙ୍କ ବେତ୍ରାଘାତ ପ୍ରତି । ଆମ ପିଲାକାଳରେ ପାଠଶାଳାରେ ଯେଉଁପ୍ରକାର ପ୍ରହାର-ନୀତି ପ୍ରଚଳିତ ଥାଏ, ତାହା ଆଜି କଳ୍ପନାର ବାହାରେ । ପ୍ରାୟ ପ୍ରତିଦିନ ଦେଖିବାକୁ ମିଳୁଥାଏ ଲୋମହର୍ଷଣକାରୀ ଦୃଶ୍ୟ । ଦିନେ ଜଣେ ପିଲାକୁ କାନ ଧରି ଶୂନ୍ୟେ ଶୂନ୍ୟେ ଟେକିନେଲାବେଳେ ତା କାନର ତଳ ଅଂଶଟି ଉପୁଡ଼ି ଯାଇ ଝର ଝର ରକ୍ତ ପଡ଼ିଲା । ମାଡ଼ ବେଳେ କ୍ଲାସଘର ଭିତରୁ ଅନେକ ଦୂରକୁ ଆର୍ତ୍ତନାଦ ଶୁଭୁଥାଏ । ଯେଉଁ ପିଲାକୁ ବୃତ୍ତିପରୀକ୍ଷା ଲାଗି ରଖାଯାଉଥାଏ, ତା'ପରି ହତଭାଗା ଆଉ କେହି ନଥାନ୍ତି । ବୃତ୍ତି ପାଇବାକୁ ହେଲେ ମାଡ଼ ଖାଇ ଖାଇ ସବୁ ବିଷୟରେ ପାରଙ୍ଗମ ହେବା ଆବଶ୍ୟକ । ମୁଁ ଭଲ ଛାତ୍ର ନଥିବାରୁ ଓ ଅଙ୍କରେ ଶୂନ୍ୟ ରଖୁଥିବା ଯୋଗୁଁ ବୃତ୍ତି ପାଇଁ ମନୋନୀତ ହେଲି ନାହିଁ । ତେଣୁ ମାଡ଼ରୁ ବର୍ତ୍ତିଗଲି ।

ଦିନେ ସ୍କୁଲ ପରିଦର୍ଶନ ପାଇଁ ଆସିଲେ ଶିକ୍ଷା ବିଭାଗର ସର୍ବୋଚ୍ଚ କର୍ତ୍ତା ଇନ୍‌ସପେକ୍ଟର ଏସ୍.ରାୟ । ସବାରିରେ ପହଞ୍ଚିଲେ । ଖାକି ପେଣ୍ଟ, ଧଳା ସାର୍ଟ, ମୁଣ୍ଡରେ ସାହେବୀ ସୋଲହ୍ୟାଟ୍ ଓ ଗୋଡ଼ରେ ଜୋତା ପାଖରୁ ଆଣ୍ଠୁଯାଏ ମୋଜା । ସ୍ଥାନୀୟ ଭଦ୍ରଲୋକମାନେ ରୁଣ୍ଡ ହେଲେ । କ୍ଲାସରୁମ୍ ଭିତରେ ଇନ୍‌ସପେକ୍ଟର ସାହେବ ଆମକୁ ପ୍ରଶ୍ନ ପଚାରିଲେ । ସଭା ହେଲା । ଦକ୍ଷିଣତେଘରି ଉ.ପ୍ରା. ସ୍କୁଲକୁ 'ଆଦର୍ଶ' ବିଦ୍ୟାଳୟ ରୂପେ ସ୍ୱୀକୃତି ଦିଆଗଲା ବୋଲି ସେ ଘୋଷଣା କଲେ ।

ଦକ୍ଷିଣତେଘରି ସ୍କୁଲରେ ଦୁଇବର୍ଷ ପଢ଼ିସାରିଲା ପରେ ଆରମ୍ଭ ହେଲା ସମସ୍ୟା । ସାରା ଭୋଗରାଇ ଥାନାରେ ଥାଏ ମାତ୍ର ଦୁଇଟି ମଧ୍ୟଇଂରାଜୀ ବା ମାଇନର ସ୍କୁଲ । ସେଥିରୁ ଗୋଟିଏ ଥାଏ ଥାନାର ପୂର୍ବ ସୀମାରେ ଥିବା କଖଡ଼ା ଗ୍ରାମରେ । ସ୍କୁଲ ଥାଏ, କିନ୍ତୁ ହଷ୍ଟେଲ ନଥାଏ । ସ୍କୁଲଟି ପୁଣି ଆମ ଗାଁଠାରୁ ସାତ କିଲୋମିଟର ଦୂରରେ । ବାଧ୍ୟ ହୋଇ ପାର୍ଶ୍ୱବର୍ତ୍ତୀ ଚଣ୍ଡୀପୁର ଗ୍ରାମରେ ଜଣେ ସମ୍ପର୍କୀୟ ଅଜାଙ୍କ ଘରେ ରହିବାକୁ ହେଲା । ଅଜାଙ୍କ ନାମ ଥିଲା ଅଯୋଧ୍ୟାରାମ କର । ଜଣେ ଜ୍ଞାନୀ ବ୍ୟକ୍ତି, କିନ୍ତୁ ଅଭାବଗ୍ରସ୍ତ । ଦିନେ ରାତିରେ ତାଙ୍କ କୋଳରେ ଶୋଇଥିଲି । ବିଛଣା ପାଖରୁ ଦୁଇ ହାତ ଦୂରରେ ଥାଏ ଗୋଟିଏ କାଠବାକ୍ସ ଭିତରେ ଦୁଇଟି ହଂସ । ମଝିରାତିରେ ସେଗୁଡ଼ିକର ରଡ଼ି ଶୁଣି ଉଠିଲାବେଳକୁ

ପାଖ ଦେଇ ଗୋଖରର ସାପଟିଏ ଚାଲିଯାଉଥିବା ଦେଖିଲି । ହଂସ ଦୁଇଟି ମରି ପଡ଼ିଥାନ୍ତି ।

୧୯୩୫ ମସିହା । ଭାରତସମ୍ରାଟ ପଞ୍ଚମଜର୍ଜଙ୍କ ଶାସନକାଳର ପଚିଶ ବର୍ଷ ପୂର୍ତ୍ତି ଉପଲକ୍ଷେ ରୌପ୍ୟ ଜୟନ୍ତୀ ପାଳିତ ହେଲା । ହେଡ୍‌ମାଷ୍ଟର ଆଦେଶ ଦେଲେ, ପ୍ରତ୍ୟେକ ଛାତ୍ର ଖଣ୍ଡିଏ ବାଉଁଶବାଡ଼ିରେ କାଗଜ ବା କନାର ପତାକା ବାନ୍ଧି ସ୍କୁଲକୁ ଆସିବେ । ଅଜା ପତାକାଟିଏ ତିଆରି କରିଦେଲେ । ଛାତ୍ରମାନେ ଏକାଠି ହେଲାପରେ ଶୋଭାଯାତ୍ରା ଆରମ୍ଭ ହେଲା । ପାର୍ଶ୍ୱବର୍ତ୍ତୀ ଗାଁ ଭିତରେ ସମ୍ରାଟଙ୍କ ଜୟଧ୍ୱନି ଦେଇ ବୁଲିବାକୁ ହେଲା । ଫେରିଲା ପରେ, ସ୍କୁଲ ପଡ଼ିଆରେ ସମସ୍ତଙ୍କୁ ସମବେତ କଣ୍ଠରେ ଗାଇବାକୁ ହେଲା "Long Live the King, Long Live our Gracious King." ଆମର ସମ୍ରାଟ-ଭକ୍ତିସଙ୍ଗୀତ ଶେଷ ହେଲାବେଳକୁ ଅଦୂରରେ ରାସ୍ତା ଉପରେ କିଏ ଜଣେ ଦୂରାଗତ ଯୁବକ କରୁଣ ମୂର୍ଚ୍ଛନାରେ ଗାଉଥିବା ଗୀତଟି ଶୁଣିବାକୁ ମିଳୁଥାଏ—"କେତେ ଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ ।" ଗୋଟିଏ ଦିଗରେ ବ୍ରିଟିଶ ସମ୍ରାଟଙ୍କ ଉଦ୍ଦେଶ୍ୟରେ ବାଧ୍ୟତାମୂଳକ ସ୍ତବଗାନ, ଅନ୍ୟ ଦିଗରେ ସମ୍ରାଟଙ୍କ ଅଧୀନସ୍ଥ ରାଜାରାଜୁଡ଼ା ଓ ଜମିଦାରମାନଙ୍କର ଅତ୍ୟାଚାର ବିରୋଧରେ ମର୍ମସ୍ପର୍ଶୀ ଗୀତ, ଏହା ହିଁ ଥିଲା ସେ ସମୟର ରାଜନୈତିକ ପରିବେଶ ।

ଷଷ୍ଠଶ୍ରେଣୀରେ ପଢୁଥିଲାବେଳେ ଶିକ୍ଷକମାନେ ମୋତେ ସବୁବିଷୟରେ ଦୁର୍ବଳ ବୋଲି ଜାଣି ସେହି କ୍ଲାସରେ ଆଉ ଗୋଟିଏ ବର୍ଷ ରଖିଦେଲେ । ସେତେବେଳକୁ ସ୍କୁଲ ପାଇଁ ପକ୍କା କାନ୍ଥର ଘରଟିଏ ତିଆରି ସରିଥିଲା ଓ ଆଗର ମାଟିଘରଟିକୁ ହଷ୍ଟେଲ କରାଯାଇଥିଲା । ମୁଁ ସେହି ହଷ୍ଟେଲରେ ରହିଲି । ସର୍ବମୋଟ ୬ ଜଣ ପିଲା ରହିଥାଉଁ । ନିଜ ହାତରେ ବାସନ ମାଜିବା ଓ ଘରସଫା ଇତ୍ୟାଦି କାମ କରିବାକୁ ହେଉଥାଏ । ଖାଇବାଖର୍ଚ୍ଚ ଥାଏ ମାସକୁ ସାତ ସେର ଚାଉଳ ଓ ଦୁଇଟି ଟଙ୍କା ।

ଗୋଟିଏ ଦିନର କଥା । ସ୍କୁଲ ପାଖରୁ କିଛି ଦୂରରେ ଥାଏ ସରିଷା ହାଟ । ସେଠାରେ ନାମ ସଂକୀର୍ତ୍ତନ ହେଉଛି ଶୁଣି ସକାଳେ ଦେଖିବାକୁ ଗଲି । ଫେରିଲାବେଳେ ଗୋଟିଏ ଛକି ସ୍ଥାନରେ ଦେଖିଲି ଥାନାର ମୁନ୍‌ସି ଓ କନେଷ୍ଟବଳମାନଙ୍କୁ । ଧରାପଡ଼ିଥିବା ଦୁଇଜଣ ଚୋରଙ୍କ ପିଠିରେ ନିଷ୍ଠୁର ପ୍ରହାର ଚାଲିଥାଏ । ମୁନସି ଗର୍ଜନ କରୁଥାନ୍ତି "ହାରାମଜାଦା, ଶୁଆର୍ ।" ଶବ୍ଦ ଦୁଇଟି ମନେ ରହିଗଲା । ସ୍କୁଲ ବାରଣ୍ଡାକୁ ଉଠିଲାବେଳେ ମୋ ଉପର ଶ୍ରେଣୀର କେତେକ ପିଲାଙ୍କୁ ପାଟି କରି ସମ୍ବୋଧନ କଲି "ହାରାମଜାଦା, ଶୁଆର ।"

୪ଟା ବେଳେ କ୍ଲାସ ଶେଷ ହେଲାପରେ ଦେଖିଲି, ସପ୍ତମଶ୍ରେଣୀର ପିଲାମାନେ ଖେଳପଡ଼ିଆରେ ଧାଡ଼ି ବାନ୍ଧି ଛିଡ଼ା ରହିଛନ୍ତି । ହେଡ଼ମାଷ୍ଟର ଚେୟାରରେ ବସିଛନ୍ତି । ମୋତେ ଜଣେ ଶିକ୍ଷକ ତାଙ୍କ ଆଗକୁ ନେଇଗଲେ । ଶୁଣିଲି, ମୋର ବିଚାର ହେବ । ଅପରାଧ କଥାଟି ଭୁଲିଯାଇଥାଏଁ । ହେଡମାଷ୍ଟର ପଚାରିଲେ, ‘‘କହ, ହାରାମଜାଦା ଓ ଶୂଆର ଶବ୍ଦ ଦୁଇଟାର ଅର୍ଥ କଣ ?’’ ଉତ୍ତର ଦେଲି, ‘‘ଜାଣେ ନାହିଁ ।’’ ପ୍ରଶ୍ନ ହେଲା, ‘‘ଏପରି ଭାଷା କାହା ପାଖରୁ ଶିଖିଲୁ ?’’ ଡରି ଡରି କହିଲି, ‘‘ଦାରୋଗାବାବୁ ହାଟ ଛକିରେ କହୁଥିଲେ ।’’ ଗମ୍ଭୀର ସ୍ୱରରେ ହେଡ଼ମାଷ୍ଟର କହିଲେ, ‘‘ଓଃ ବୁଝିଲି । ଦାରୋଗାଙ୍କ ଭାଷା ମନେ ରହିଗଲା । ହାଟ ଉପରେ ତ ନିଶ୍ଚୟ ନାମ ସଂକୀର୍ତ୍ତନ ଶୁଣିଥିବୁ ? କହିଲୁ, ସେମାନେ କେଉଁ ଶବ୍ଦଗୁଡ଼ିକ ବାରମ୍ବାର ଉଚ୍ଚାରଣ କରୁଥିଲେ ?’’ ଉତ୍ତର ଦେଲି, ‘‘ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।’’ ପୁଣି ପ୍ରଶ୍ନ କଲେ, ‘‘ଉପର ଶ୍ରେଣୀ ପିଲାଙ୍କୁ ସେହି ପବିତ୍ର ଶବ୍ଦଗୁଡ଼ିକ ନ କହି, ଦାରୋଗାବାବୁଙ୍କ ଅସଭ୍ୟ ଶବ୍ଦଗୁଡ଼ିକୁ ଶୁଣାଇଲୁ କାହିଁକି ?’’ ମୁଁ ନିରୁତ୍ତର ରହିଲି ।

ହେଡମାଷ୍ଟର ମହୋଦୟଙ୍କ ନାମ ଥିଲା ସୁରେନ୍ଦ୍ରନାଥ ମହାନ୍ତି । ସେ ଥିଲେ ଜଣେ ପରମ ବୈଷ୍ଣବ । ସଦାବେଳେ ତାଙ୍କ ହାତରେ ମାଳ ଝୁଲାଟି ରହିଥାଏ । କହିଲେ, ‘‘ପିଲାମାନେ, ବଡ଼ ହେଲେ କେବେ ହେଲେ ଖରାପ ଶବ୍ଦ ଉଚ୍ଚାରଣ କରିବ ନାହିଁ । ଭାଷାର ମାନେ ନ ଜାଣି ବ୍ୟବହାର କରିବ ନାହିଁ । ଏ ପିଲା ଶବ୍ଦଗୁଡ଼ିକର ଅର୍ଥ ନ ଜାଣି କହି ଦେଇଛି । ସେଥିପାଇଁ ତାକୁ ଛାଡ଼ି ଦିଆଗଲା ।’’

ବିଚାର ଶେଷ ହେଲା । ସମସ୍ତେ ଚାଲିଗଲା ପରେ ମୋତେ ଏକାକୀ ଡାକିନେଇ ତାଙ୍କ ଶେଯ ଉପରେ ବସାଇ ମହାଭାରତର କାହାଣୀଟିଏ କହିଲେ । ରାଜା ଧୃତରାଷ୍ଟ୍ର ଥିଲେ ଆଜନ୍ମ ଅନ୍ଧ । ତାଙ୍କ ପୁତ୍ର ଦୁର୍ଯ୍ୟୋଧନ ଥିଲେ ଦୁର୍ଦ୍ଧାନ୍ତ ଯୁବକ । ପାଣ୍ଡବ ପତ୍ନୀ ଦ୍ରୌପଦୀ ଥରେ ତାଙ୍କୁ ‘ଅନ୍ଧର ପୁତ୍ର’ ବୋଲି ବିଦ୍ରୂପ କରିଥିଲେ । ସାମାନ୍ୟ ପରିହାସ ପାଇଁ ଦୁର୍ଯ୍ୟୋଧନ ଏତେଦୂର କ୍ରୋଧାନ୍ଧ ହୋଇଉଠିଥିଲେ ଯେ, ସେହି କଥା ଟିକକରୁ ସୂତ୍ରପାତ ହୋଇଥିଲା ମହାଭାରତ ଯୁଦ୍ଧ । ଗପଟି ଶେଷ କରି ସେ କହିଥିଲେ, ‘‘ବିଷଧର ସାପ ଗୀତ ଶୁଣିଲାବେଳେ ଦଂଶନ କରିବାକୁ ଭୁଲିଯାଏ । କିନ୍ତୁ ଅସହ୍ୟ କଥା ଶୁଣି ମଣିଷ ରାଗରେ ମଣିଷକୁ ମାରିଦିଏ । ଶୂଆର ଶବ୍ଦର ଅର୍ଥ ହେଉଛି ଘୁଷୁରି । କାହାରିକୁ ଘୁଷୁରି କହିଲେ ସେ ନିଶ୍ଚୟ ରାଗିଯିବ । ହାରାମଜାଦା ଶବ୍ଦର ମାନେ ମୁଁ ବି ଜାଣେ ନାହିଁ । କିନ୍ତୁ ନିଶ୍ଚୟ ଅତି ଖରାପ ଗାଳି । ବଡ଼ ହେଲେ କାହାରି ପ୍ରତି ଖରାପ ଭାଷା

ପ୍ରୟୋଗ କରିବୁ ନାହିଁ । ଭଲ କଥା କହି ସମସ୍ତଙ୍କ ପ୍ରିୟ ହେବାକୁ ଶିକ୍ଷା କରିବୁ । ମନେ ରଖିବୁ, ଯାହାର ଭାଷା ଯେତିକି ଭଲ, ସେ ହେଉଛି ସେତିକି ଭଦ୍ର ।''

ଶାସନ ପରିବର୍ତ୍ତେ ଉପଦେଶ ବଳରେ ଯେଉଁ ଶିକ୍ଷକମାନେ ଛାତ୍ରର ମତିଗତି ସଂଶୋଧନ କରିଥାନ୍ତି, ସେହିମାନେ ରହନ୍ତି ଛାତ୍ରର ମାନସପଟରେ ସ୍ମରଣୀୟ ଓ ନମସ୍ୟ । ୧୯୩୭ରେ ମାଇନର ପରୀକ୍ଷାରେ ପାଶ୍ କରି ଶିକ୍ଷକମାନଙ୍କ ନିକଟରୁ ବିଦାୟ ନେଲାବେଳେ ସେମାନେ ଉପଦେଶ ଦେଇଥିଲେ– ପାଠପଢ଼ା ବନ୍ଦ କରିବୁ ନାହିଁ ।

## ଚଳଚ୍ଚିତ୍ର ଦେଖିବାବେଳର ରହସ୍ୟ

୧୯୩୭ ମସିହାରେ ଚନ୍ଦନେଶ୍ୱର ମେଳା ସମୟରେ ଆମ ଅଞ୍ଚଳକୁ ଟକିବା ସିନେମା ଆସିଲା । ଆଡ଼ିଆ ଉପରେ ତମ୍ବୁ ପଡ଼ିଥାଏ । ଛବିର ନାମ ଥାଏ 'ସୀତା ବିବାହ' । ଗାଁରେ ଚହଳ ପଡ଼ିଗଲା । ଦେଖିବା ପାଇଁ ସମସ୍ତଙ୍କର ଆଗ୍ରହ । ବାପାଙ୍କ ସାଙ୍ଗରେ ଦେଖିବାକୁ ଗଲି । ତମ୍ବୁ ଭିତରେ ବାଲି ଉପରେ ବସିଥାନ୍ତି ଅନେକ ଲୋକ । ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଲାଗି ପଛରେ କେତୋଟି ଚେୟାର ପଡ଼ିଥାଏ । ବାପାଙ୍କ ପାଖ ଚେୟାର ଗୁଡ଼ିକରେ ବସିଲେ ଚାରିଜଣ ଭଦ୍ରଲୋକ । ସିନେମା ଆରମ୍ଭ ହେଲା । କିଛି ସମୟ ଦେଖିଲାପରେ ସେମାନେ ଯେଉଁ ପ୍ରକାର କଥାବାର୍ତ୍ତା କଲେ, ତାହା ମନେ ରହିଲା ।

ବାବୁ ହେମଚନ୍ଦ୍ର ମହାନ୍ତି କହିଲେ, ''ବୁଝିଲେ ମଧୁବାବୁ, ଏଇଟା ହେଲା ସାଇବମାନଙ୍କ କୁହୁକ ଖେଳ । କନା ଉପରେ ଛବିଗୁଡ଼ାକ କଥା କହୁଛନ୍ତି । ପଇସା ଶୋଷିବା ଫନ୍ଦି । ଦେଶଟାକୁ କାଙ୍ଗାଳ କରିଦେବେ ।''

ସେତେବେଳକୁ ବାବୁ ନରେନ୍ଦ୍ରନାଥ ଦାସ ଆଖିରୁ ଲୁହ ପୋଛୁଥାନ୍ତି । ଭକ୍ତି ଗଦ୍‌ଗଦ ସ୍ୱରରେ କହିଲେ, ''ରାମ ସୀତାଙ୍କୁ ଦର୍ଶନ କରି ଜୀବନ ସାର୍ଥକ ହେଲା । ଆହା, କେଡ଼େ ସୁନ୍ଦର ରୂପ ।''

ବାବୁ ତ୍ରୈଲୋକ୍ୟନାଥ ଚଣ୍ଡ ମତ ଦେଲେ, ''ନରେନ୍ଦ୍ରବାବୁ, ତୁମକୁ କାନ୍ଦ ଲାଗୁଛି । ମୋତେ ରାଗ ଲାଗୁଛି । ସୀତାର ମୁହଁଟା ଥରେ ଥରେ ପାହାଡ଼ ପରି ଦିଶୁଛି । ରାମର ହାତଦୁଇଟା ତାଳଗଛ ପରି । ଆମ ଯାତ୍ରାର ରାମ ସୀତା କେଡ଼େ ସୁନ୍ଦର ଦିଶନ୍ତି କହିଲ ? ସେମାନେ ସତ ମଣିଷ, ଏ ଗୁଡ଼ାକ ଛବି ।''

ସେମାନଙ୍କ କଥା ଶୁଣି ବାପା ହସୁଥାନ୍ତି । ମୋ ମନ ଲାଖି ଯାଇଥାଏ ଚଳଚ୍ଚିତ୍ରର ଦୃଶ୍ୟଗୁଡ଼ିକ ଉପରେ ।

# ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ




## କେତୋଟି ସ୍ମୃତି

### ସେ ସମୟର ବାଲେଶ୍ୱର ସହର

୧୯୩୮ ମସିହା ଜାନୁଆରୀ ମାସରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ମେଟ୍ରିକ୍ ପଢ଼ିବା ପାଇଁ ଭର୍ତ୍ତି ହେଲି ଓ ହଷ୍ଟେଲରେ ରହିଲି । ଏବେ ସେହି ସ୍କୁଲଘର ଫକୀରମୋହନ କଲେଜକୁ ସ୍ଥାନ ଦେଇ ଅନ୍ୟତ୍ର ଉଠିଯାଇଛି । ସେଠାରେ ଚାରିବର୍ଷ ଅଧ୍ୟୟନ କଲାବେଳେ ବାଲେଶ୍ୱର ସହର ଯେପରି ଅବସ୍ଥାରେ ଥିଲା, ତାହା ମନରେ ଅଙ୍କିତ ରହିଛି । ସ୍ୱାଭାବିକ ରୀତିରେ ଗତ ଅର୍ଦ୍ଧଶତାବ୍ଦୀରୁ ଅଧିକ ସମୟ ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଯାଇଛି ।

୧୯୯୦ ମସିହାର କଥା । ଦିନେ ରବିବାର ଅପରାହ୍ଣରେ ଲଣ୍ଡନ ସହରର ଗୋଟିଏ ପାର୍କ ଭିତରେ ଲମ୍ବ ବେଞ୍ଚଟିଏ ଉପରେ ବସିଥାଏଁ । ପ୍ରାୟ ଅଶୀବର୍ଷ ବୟସର ଜଣେ ବୃଦ୍ଧ ଇଂରେଜ ମୋ ପାଖରେ ଆସି ବସିଲେ । ପଚାରିଲେ, "ଆପଣ କ'ଣ ଭାରତୀୟ ?" ମୁଁ 'ହଁ' କହିବାରୁ ପ୍ରଶ୍ନ କଲେ, "ଭାରତର କେଉଁ ସହରରେ ଆପଣଙ୍କ ଘର ?" ମୁଁ ପଚାରିଲି, "ଆପଣ କ'ଣ ମୋ ଦେଶର ସବୁ ସ୍ଥାନକୁ ଜାଣନ୍ତି ?" ଉତ୍ତର ଦେଲେ, "୧୯୩୦ ରୁ ୧୯୩୫, ପାଞ୍ଚବର୍ଷ ମୁଁ ଭାରତର ପ୍ରାୟ ସମସ୍ତ ଛୋଟ ବଡ଼ ସହର ବୁଲି ବୁଲି କେତେକ ବିଷୟରେ ସର୍ଭେ କରିଥିଲି । ଆପଣଙ୍କ ସହରର ନାମ ଶୁଣିଲେ, ନିଶ୍ଚୟ ମନେ ପକାଇ ପାରିବି ।" ମୁଁ କହିଲି, "ମୋ ସହରର ନାମ ବାଲାଶୋର ।"

ଚମକିଉଠିବା ଭଙ୍ଗୀରେ ବୃଦ୍ଧ ସାହେବ ଅନର୍ଗଳ ଭାବେ କହିଗଲେ, "ଓଃ, ବାଲାଶୋର, ସେହି କ୍ଷୁଦ୍ର, ବିଷାଦମୟ, ନିଦ୍ରାଳୁ, ସନ୍ତସନ୍ତିଆ ଓ ନିଃଶବ୍ଦ ପଲ୍ଲୀ ! (Oh,Balasore—that small, sullen, sleepy,swampy and silent–hamlet !)ସେ ସ୍ଥାନଟି ମଲାପର୍ଯ୍ୟନ୍ତ ଭୁଲିପାରିବି ନାହିଁ । ସେଠାରେ ସାତଦିନ ଥିବା ସମୟରେ ଦିନବେଳେ ବି ସବୁଆଡ଼େ ମଶା । ରାତିରେ ମଶାରି ଚାରିପାଖରେ ସେମାନଙ୍କର ସମର ସଂଗୀତ ଯୋଗୁଁ ନିଦ ନଥାଏ । ସେଠାରୁ ପଳାଇ ଆସି

ମାନ୍ଦ୍ରାଜରେ ପହଞ୍ଚିଲା ବେଳକୁ ମ୍ୟାଲେରିଆ ଜ୍ୱର ! ବାଲାଶୋର କଥା କେବେ ଭୁଲି ପାରିବି ?''

ସାହେବଙ୍କର କୌତୁକପୂର୍ଣ୍ଣ ବର୍ଣ୍ଣନା ଓ ବିଶେଷଣଗୁଡ଼ିକ ଶୁଣି ମୁଁ ମଧ ପରିହାସ ଛଳରେ କହିଲି, ''ବାଲାଶୋର ନାମକ ଯେଉଁ ନିଃଶବ୍ଦ ପଲ୍ଲୀଟିକୁ ଆପଣ ମନେରଖିଛନ୍ତି, ଆପଣଙ୍କ ଭ୍ରମଣର ଠିକ୍ ତିନିଶହ ବର୍ଷ ପୂର୍ବେ ସେହି ସ୍ଥାନକୁ ଆସିଥିଲେ ଆପଣଙ୍କ ପୂର୍ବପୁରୁଷମାନେ, ଇଷ୍ଟ ଇଣ୍ଡିଆ କୋମ୍ପାନୀ ନାମ ଧାରଣ କରି । ସାତ ସମୁଦ୍ର ତେର ନଈ ଡେଇଁ ସେମାନେ ବୋଲଙ୍ଗନଦୀ ତୀରସ୍ଥ ବାଲେଶ୍ୱର ନଗରର ବିଭବ ଓ ପଣ୍ୟଦ୍ରବ୍ୟର କାହାଣୀ ଶୁଣି ବାଣିଜ୍ୟବ୍ୟବସାୟ ପାଇଁ ଆସିଥିଲେ । ସେତେବେଳେ କଲିକତା, ବୋମ୍ବେ ଓ ମାନ୍ଦ୍ରାଜର ନାମ ମଧ ସେମାନଙ୍କୁ ଜଣା ନଥାଏ । ସେକାଳର ସେହି ସମୃଦ୍ଧ ବାଲାଶୋର ବିଷୟ ଆପଣ ନିଶ୍ଚୟ ବହିରେ ପଢ଼ିଥିବେ । ଏବେ ଆଉଥରେ ଯଦି ସେହି ସ୍ଥାନକୁ ଆସିବେ, ତେବେ ଯେଉଁ ନାମ ପୂର୍ବରୁ ଏତେଗୁଡ଼ାଏ ବିଶେଷଣ ଯୋଗ କରିଗଲେ, ସେ ସ୍ଥାନକୁ ଦେଖିବେ ଗୋଟିଏ କ୍ରମବର୍ଦ୍ଧନଶୀଳ, ଜାଗ୍ରତ, ସଦା ମୁଖରିତ ଓ ଜନାକୀର୍ଣ୍ଣ ସହର ରୂପେ ।''

''ସ୍ୱାଧୀନତା ପରେ ରୂପ ବଦଳିଲେ ବି ମଶା ଓ ମ୍ୟାଲେରିଆ ତ ଥିବ,'' ସାହେବ ମୁଣ୍ଡ ଟୁଙ୍ଗାରି ବଡ଼ ପାଟିରେ ହସି ହସି ମତ ପ୍ରକାଶ କଲେ । ମୁଁ ମଧ ସମସ୍ୱରରେ ହସି ହସି କମେଣ୍ଟ ଦେଲି, ''ଭାରତରୁ ଇଂରାଜମାନେ ବିଦାୟ ନେବା ସଙ୍ଗେ ଆନୋଫିଲିସ୍ ମଶାମାନେ ମଧ ବାଲାଶୋର ମାଟିରୁ ଚାଲିଯାଇଛନ୍ତି ।''ରହସ୍ୟପ୍ରିୟ ବୃଦ୍ଧ ମୋ କଥାର ଭାବାର୍ଥ ବୁଝିପାରିଲେ ଓ ଧନ୍ୟବାଦ ଦେଇ ବିଦାୟ ନେଲେ ।

୧୯୩୮ରେ ଜିଲ୍ଲାସ୍କୁଲରେ ଭର୍ତ୍ତି ହେଲାବେଳେ ବାଲେଶ୍ୱର ବାସ୍ତବିକ ଥାଏ ଗୋଟିଏ ଅପରିଣତ ସହର । ଷ୍ଟେସନ ଠାରୁ ସ୍କୁଲ ପର୍ଯ୍ୟନ୍ତ ଯିବା ଲାଗି ଯାନ ବାହନ ପ୍ରାୟ ନଥାଏ । ଖଣ୍ଡିଏ ଦୁଇଖଣ୍ଡି ହାତଟଣା ଭଙ୍ଗା ଦଦରା ରିକ୍ସା ବେଳେ ବେଳେ ଆଖିରେ ପଡୁଥାଏ, ଖଣ୍ଡିଏମାତ୍ର ଜରାଜୀର୍ଣ୍ଣ ଘୋଡ଼ାଗାଡ଼ି ମଧେ ମଧେ ଷ୍ଟେସନରୁ ଯାତ୍ରୀ ନେବାକୁ ଆସୁଥାଏ । ଘୋଡ଼ାଟିର ହାଡ଼ ଗଣତି କରି ଓ ଦେହରେ ମାଛି ଭଣଭଣ ହେବା ଦେଖି ଆମେ ପିଲାମାନେ ତା ମରିବାବେଳ ଆସିଗଲାଣି ବୋଲି ଦୟା କରୁଥାଉଁ । ରାତି ବା ଦିନ, ବିଛଣାପତ୍ର ଧରି ଚାଲିଚାଲି ହଷ୍ଟେଲ ଯିବାକୁ ହେଉଥାଏ । ଦିନେ ସନ୍ଧ୍ୟାବେଳେ ପ୍ଲାଟଫର୍ମରେ ବୁଲୁଥିଲାବେଳେ ଗୋଟିଏ ପାସେଞ୍ଜର ଗାଡ଼ିରୁ ଜଣେ ଭଦ୍ରବ୍ୟକ୍ତି ହାତରେ ଶତରଞ୍ଜି ବନ୍ଧା ବିଛଣାଟିଏ ଧରି ବାହାରି ଆସିଲେ । ସୋରୋ ଅଞ୍ଚଳର ପ୍ରିୟନାଥ ମହାନ୍ତି

ନାମକ ସାଙ୍ଗଟି ମୋତେ କହିଲା, "ଏହାଙ୍କୁ ଜାଣିଛୁ ? ଏ ହେଉଛନ୍ତି ହରେକୃଷ୍ଣ ମହତାବ ।" ବିଛଣାଟି କାଖରେ ରଖି ତାଙ୍କୁ ଚାଲିଚାଲି ଯିବାର ଦୃଶ୍ୟ ଦେଖିଲି ।

ଆମ ହାଇସ୍କୁଲ ପର୍ଯ୍ୟନ୍ତ ଦୀର୍ଘ ରାସ୍ତାର ଦୁଇ ପାଖରେ ଘରଦ୍ୱାର ପ୍ରାୟ ନଥିଲା । ବଣବୁଦା ବେଷ୍ଟିତ ବାଡ଼ ଗୁଡ଼ିକ ପଛରେ ଅଳ୍ପ କେତୋଟି ଚାଳଘର ଏଣେ ତେଣେ ଦେଖାଯାଉଥାଏ । ଷ୍ଟେସନ ପାଖରୁ କଚେରି ଓ ସେଠାରୁ ପ୍ରସିଦ୍ଧ ଝାଡ଼େଶ୍ୱର ମହାଦେବ ମନ୍ଦିର ପର୍ଯ୍ୟନ୍ତ ରାସ୍ତାଗୁଡ଼ିକ ପ୍ରାୟ ଜନଶୂନ୍ୟ ଥାଏ । ମନ୍ଦିର ନିକଟରେ ଥିବା ନୟାବଜାର ଅଞ୍ଚଳରେ ଅଳ୍ପ କେତୋଟି ପକ୍କାଘର ଥିଲା । ବାକି ସବୁ ଚାଳଘର । ଛୋଟ ଛୋଟ ଦୋକାନ ଓ ଗୋଟିଏ ପରିବାହାଟକୁ ନେଇ ଶୋଭା ପାଉଥାଏ ନୟାବଜାର । ଏକମାତ୍ର ବଡ଼ ଦୋକାନର ନାମ ଥାଏ 'ବାରଜୋରଜି' ଦୋକାନ । ନୟାବଜାର ପାଖରୁ ମୋତିଗଞ୍ଜ ବଜାରଯାଏ ବାଲେଶ୍ୱର ସହରର ମୁଖ୍ୟ ରାଜପଥର ଉଭୟ ପାର୍ଶ୍ୱରେ ଘରଦ୍ୱାର ନଥାଏ, ପଡ଼ିଥାଏ ଏ ଦିଗରୁ ସେ ଦିଗ ପରିତ୍ୟକ୍ତ ଜଳାଭୂଇଁ । ମୋତିଗଞ୍ଜ ବଜାରଟିରେ ଅନେକ ଗୁଡ଼ିଏ ଛୋଟ ବଡ଼ ଦୋକାନ ଥାଏ, ଏବଂ ଗୋଟିଏ ବଡ଼ ହାଟ । ସହରରେ ସିନେମାଘର ନଥାଏ । ବର୍ଷକୁ ଥରେ ବାହାରର କୌଣସି ଗୋଟିଏ କୋମ୍ପାନୀ ତମ୍ବୁ ପକାଇ ସିନେମା ଦେଖାଉଥାଏ ।

ସେତେବେଳେ ସରକାରୀ କର୍ମଚାରୀମାନଙ୍କର ସଂଖ୍ୟା ନଗଣ୍ୟ ଥିଲା । କଲେକ୍ଟର, ପୋଲିସସାହେବ ଓ ସିଭିଲ ସାର୍ଜନ, ଏହି ତିନିଜଣ ଥିଲେ ସର୍ବୋଚ୍ଚ ପଦାଧିକାରୀ । କଲେକ୍ଟରଙ୍କ ତଳକୁ ବୋଧହୁଏ ଜଣେମାତ୍ର ଏସ.ଡି.ଓ. ଥାନ୍ତି । ଓକିଲମାନଙ୍କ ସଂଖ୍ୟା ଆଙ୍ଗୁଳିରେ ଗଣି ହେଉଥାଏ । ମୋତିଗଞ୍ଜ ବଜାରର ଶେଷରେ ଥାଏ ଗୋଟିଏ ଛୋଟ ହସପିଟାଲ । ସେଠାରୁ କିଛିଦୂରରେ ବୋଳଙ୍ଗ ନଦୀ । ସହରରେ ବେସରକାରୀ ଡାକ୍ତରଙ୍କ ସଂଖ୍ୟା ଅତି କମ୍ ଥାଏ । ନର୍ସିଂହୋମ୍ ଓ କ୍ଲିନିକ ପ୍ରଭୃତି ଶୁଣା ନଥାଏ । ମାଣିକଖମ୍ବ ଓ ସୁନହଟ ଅଞ୍ଚଳରେ ଥାଏ ସ୍ଥାନୀୟ ଲୋକଙ୍କର ଜନବସତି । ଲୋକସଂଖ୍ୟା ଥିଲା ଖୁବ୍ ଅଳ୍ପ । ବିଜୁଳିବତି ଆସି ନଥାଏ । କୂଅପାଣି ଥିଲା ପାନୀୟ ଜଳ । ଗାଧୋଇବା ପାଇଁ ଗଡ଼ିଆ ।

୧୯୩୮ ମସିହାରେ ସହରରେ ପ୍ରଥମ ଥର ଲାଗି ଖଣ୍ଡିଏ ମୋଟରକାର୍ ଦେଖିଲି, ପୋଲିସସାହେବ ବସିଥିଲେ । ତା ପରେ ପରେ ଜମିଦାର ରାଧାପ୍ରସନ୍ନ ଦାସ ଗାଡ଼ିଟିଏ କିଣିଲେ । ଖୋଦ୍ ଶ୍ୱେତାଙ୍ଗ କଲେକ୍ଟରସାହେବ ତାଙ୍କ ସରକାରୀ ବାସଭବନରୁ କଚେରୀ ପର୍ଯ୍ୟନ୍ତ ଚାଲି ଚାଲି ଯିବା ଦେଖିଛି ।

ସେ ସମୟର ବାଲେଶ୍ୱର ଏବେ ସ୍ମୃତିଗର୍ଭରେ। ଥରେ ଦିନେ ସନ୍ଧ୍ୟାବେଳେ ସ୍କୁଲ ପାଖରୁ ଅଳ୍ପ ଦୂରରେ ଥିବା ଗୋଟିଏ ଜଙ୍ଗଲମୟ ସ୍ଥାନରେ କୋଳି ଖୋଜିବା

ଲାଗି ସାହସ ବାନ୍ଧି ପଶିଥିଲି । ସପେଟାଗଛରେ ଫଳଟିଏ ଦେଖି ବଣବୁଦା ଭିତରଦେଇ ଉପରକୁ ଉଠିଲି । ତଳେ ଦିଶିଲା କଣ୍ଟା ଝାଡ଼ ମଧ୍ୟରେ ଜରାଜୀର୍ଣ୍ଣ କ୍ଷୁଦ୍ର ମନ୍ଦିରାକୃତି ସ୍ତମ୍ଭଟିଏ । କିଛି ଦୂରରେ ଦିଶୁଥାଏ ଗୁଳ୍ମଲତା ପରିପୂର୍ଣ୍ଣ ଗଡ଼ିଆ । ପାଣି ପାଖକୁ ଲାଗିଥିବା ପକ୍କା ପାହାଚଗୁଡ଼ିକ ଭାଙ୍ଗି ପଡ଼ିଥାଏ । ପରେ ଶୁଣିଲି, ସେହି ପରିତ୍ୟକ୍ତ ବଣଟି ହେଉଛି ବ୍ୟାସକବି ଫକୀର ମୋହନ ସେନାପତିଙ୍କ 'ଶାନ୍ତି କାନନ' ।

ସମୟ ଦ୍ରୁତଗତିରେ ବଦଳିଯାଇଛି । ଆଜିର ବାଲେଶ୍ୱର ବ୍ରିଟିଶ ଯୁଗର ବାଲାଶୋର ନୁହେଁ । ଚାରି ଦିଗରେ ଅଟ୍ଟାଳିକା, କୋଠାବାଡ଼ି, ଘରଦ୍ୱାର, ଶିଳ୍ପାଞ୍ଚଳ ଓ ରାସ୍ତାଘାଟ ବ୍ୟାପିଯାଇଛି । ମୋଟର ଗାଡ଼ିର ସଂଖ୍ୟା ଗଣିବା ଅସମ୍ଭବ । ଜନାକୀର୍ଣ୍ଣ ସହର ଏବେ ନିଃଶବ୍ଦ ବା 'ନିଦ୍ରିତ' ନୁହେଁ ।

## ମହାତ୍ମା ଗାନ୍ଧିଙ୍କ ଦର୍ଶନ ଲାଭ

୧୯୩୮ ମସିହା ମାର୍ଚ୍ଚ ମାସ । ଅଷ୍ଟମ ଶ୍ରେଣୀରେ ସଦ୍ୟ ଭର୍ତ୍ତି ହୋଇଥାଏଁ । ଦିନେ ଶୁଣିଲି, ମହାତ୍ମା ଗାନ୍ଧି ପୁରୀ ଜିଲ୍ଲାର ଡେଲାଙ୍ଗ ନାମକ ସ୍ଥାନରେ 'ଗାନ୍ଧି ସେବାସଂଘ' ସମ୍ମିଳନୀରେ ଯୋଗଦେବା ଲାଗି ଆସିବେ । ସେ ସମୟରେ ଗାନ୍ଧିଙ୍କ ନାମ ଶୁଣିଲେ ଦେହରେ ଶିହରଣ ଖେଳିଯାଉଥାଏ । ତାଙ୍କୁ ଦେଖିବା ପାଇଁ ମନ ବ୍ୟାକୁଳ ହେଲା । ମୁଁ ଓ ସାଙ୍ଗରେ ପଢୁଥିବା ହଳଦିପଦାର ତ୍ରିଲୋଚନ ସେନାପତି ଠିକ୍ କଲୁଁ, ମହାତ୍ମାଙ୍କୁ ଦେଖିବା ଲାଗି ଡେଲାଙ୍ଗ ଯିବା । ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ୍ ଥାନ୍ତି ମହମ୍ମଦ ଅବଦୁଲ ହକ୍ ବେଗ୍ । ଗାନ୍ଧିଙ୍କୁ ଦେଖିବାକୁ ଯିବା ନିମନ୍ତେ ହଷ୍ଟେଲରୁ ଛୁଟି ମିଳିବା ଅସମ୍ଭବ ଜାଣି ଘରକୁ ଯିବାର ବାହାନା କଲୁଁ । ଟ୍ରେନ୍ ଟିକଟ ପାଇଁ ପଇସା ନଥାଏ । ସାହସ ବାନ୍ଧି ବିନା ଟିକଟରେ ଗାଡ଼ିରେ ପଶିଲୁଁ । ସରକାରଙ୍କୁ ଠକିବା ଥାଏ ସେ ସମୟର ଗୋଟିଏ ଆନନ୍ଦ । ଅପରାହ୍ନ ୪ଟା ବେଳେ ଡେଲାଙ୍ଗ ଷ୍ଟେସନରେ ଗାଡ଼ି ପହଞ୍ଚିଲା ।

କିଛି ଦୂରରେ ଗୋଟିଏ ବିସ୍ତୀର୍ଣ୍ଣ ପଡ଼ିଆରେ ଦେଖିବାକୁ ମିଳିଲା ବିଶାଳ ଜନ ସମାବେଶ । ସଭାସ୍ଥାନରେ ପହଞ୍ଚିଲା ବେଳକୁ ଚାରିଆଡ଼େ ଜନସମୁଦ୍ର । ପଡ଼ିଆ ଉପରେ ଅସଂଖ୍ୟ ଲୋକ ବସିଯାଇଥାନ୍ତି । ସେମାନଙ୍କ ପଛରେ ଧାଡ଼ି ଧାଡ଼ି ଛିଡ଼ା ରହିଥାନ୍ତି ହଜାର ହଜାର ଲୋକ । ସେମାନଙ୍କ ଚକ୍ରବ୍ୟୂହ ଭେଦ କରି ଆଗକୁ ଯିବା ସମ୍ଭବ ହେଲା ନାହିଁ । ଏଣେ ତେଣେ ଛିଦ୍ର ଖୋଜି ଖୋଜି ଭିତରକୁ ପଶିବା ଚେଷ୍ଟା କଲାବେଳେ ତ୍ରିଲୋଚନ କୁଆଡ଼େ ଅନ୍ତର୍ଦ୍ଧାନ ହେଲା ।

ଚାହୁଁ ଚାହୁଁ ଅନେକ ଦୂରରେ ଦିଶୁଥିବା ମଞ୍ଚ ଉପରକୁ ଗାନ୍ଧି ଆସିଗଲେ । ମହାତ୍ମା ଗାନ୍ଧିଙ୍କ ଜୟଧ୍ୱନିରେ ଆକାଶ ମଣ୍ଡଳ ପ୍ରକମ୍ପିତ ହେଲା । ବହୁତ ପଛରେ

ଥିବାରୁ ଗାନ୍ଧିଙ୍କ ଆଗମନ ଦୃଶ୍ୟ ଦେଖିପାରିଲି ନାହିଁ । ଆଗରେ ପ୍ରାଚୀର ସଦୃଶ ମନୁଷ୍ୟରାଶି । ସମ୍ମୁଖରେ ଥିବା ଜଣେ ବିଶାଳକାୟ ବ୍ୟକ୍ତିଙ୍କ ପଛରେ ରହି ତାଙ୍କ ଦୁଇ କାନ୍ଧ ଉପରେ ହାତ ରଖି ଉପରକୁ ଲମ୍ଫ ଦେବାପାଇଁ ଚେଷ୍ଟା କଲି । ପ୍ରଥମେ ପ୍ରଥମେ ସେ ପ୍ରତିବାଦ କଲେ ନାହିଁ । କିନ୍ତୁ ଅଧିକ ସମୟ ସେପରି ଉତ୍ପାତ ସହ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । କାରଣ, ଗାନ୍ଧି ତାଙ୍କର ଉଦ୍‌ବୋଧନ ଆରମ୍ଭ କରି ଦେଇଥିଲେ ।

ପଛକୁ ବୁଲିପଡ଼ି ଭଦ୍ରବ୍ୟକ୍ତି କର୍କଶ ସ୍ୱରରେ ଧମକ ଦେଲେ, "ଆରେ ଦୁଷ୍ଟ ! ମାଙ୍କଡ଼ ପରି ଡିଆଁ ମାରୁଛୁ କାହିଁକି ? ମୋ କାନ୍ଧ ଦୁଇଟା କ'ଣ ଗଛର ଡାଳ ? ଗୋଟିଏ ଥାପୁଡ଼ାରେ ମାଙ୍କଡ଼ପଣିଆ ଛଡ଼ାଇଦେବି, ବୁଝିଲୁ !" ନମ୍ର ଭାବରେ କାକୁତି କଲି, "ମଉସା, ମୁଁ ଗାନ୍ଧିଙ୍କୁ ଦେଖିପାରୁ ନାହିଁ ।" ବିରକ୍ତିଭାବ ଦେଖାଇ ସେ କହିଲେ, "ସେପାଇଁ କ'ଣ ମୁଁ ଦାୟୀ ? ଏତେ ଦୂରରୁ ଡେଇଁ ଡେଇଁ ଗାନ୍ଧିଙ୍କୁ ଦେଖିବା ଆଶା ଛାଡ଼ି ଦେ ।" ମୁଁ ତୁନି ପଡ଼ିଲି । ସଭାକାର୍ଯ୍ୟ ଶେଷ ହେଲା । ଜନତା ଛତ୍ରଭଙ୍ଗ ହେଲା ପରେ ମଞ୍ଚ ଆଡ଼କୁ ଚାହିଁଲା ବେଳକୁ ଗାନ୍ଧି ଚାଲିଯାଇଥିଲେ । ସନ୍ଧ୍ୟା ମାଡ଼ିଆସୁଥାଏ ।

ବ୍ୟସ୍ତ ହୋଇ ତ୍ରିଲୋଚନକୁ ଖୋଜିଲାବେଳେ ମଧ୍ୟବୟସ୍କ ଖଦଡ଼ ପରିହିତ ଜଣେ କଂଗ୍ରେସ କର୍ମୀ ପଚାରିଲେ, "କିରେ ପିଲା, କାହିଁକି ଏଣେ ତେଣେ ଦୌଡ଼ାଦୌଡ଼ି କରୁଛୁ ?" ଉତ୍ତର ଦେଲି, "ସାଙ୍ଗକୁ ଖୋଜୁଛି ।" "କେଉଁଠାରୁ ଆସିଛୁ ?" ସେ ଜିଜ୍ଞାସା କଲେ । ଦୁଃଖଭରା ସ୍ୱରରେ ଜଣାଇଲି, "ମହାତ୍ମା ଗାନ୍ଧିଙ୍କୁ ଦେଖିବାଲାଗି ବାଲେଶ୍ୱରରୁ ଆସିଥିଲି । କିନ୍ତୁ ଦେଖିପାରିଲି ନାହିଁ ।"

ମୋ ମୁହଁକୁ ସେ କିଛି ସମୟ ଚାହିଁରହିଲେ । ବୋଧହୁଏ ତାଙ୍କ ମନରେ ଦୟା ଉଦ୍ରେକ ହେଲା । ସାନ୍ତ୍ୱନା ଦେବା କଣ୍ଠରେ କହିଲେ, "ଗାନ୍ଧିଙ୍କୁ ଯଦି ଦେଖିବାକୁ ଇଚ୍ଛା କରୁଛୁ, ମୁଁ ସାହାଯ୍ୟ କରିବି । କିନ୍ତୁ ତୋତେ କିଛି କଷ୍ଟ କରିବାକୁ ପଡ଼ିବ । ଦେଖୁଛୁ, ପଡ଼ିଆ ଶେଷରେ ସେହି ବଡ଼ ପୋଖରୀ । ପୋଖରୀ ଉତ୍ତର ମୁଣ୍ଡରେ ଯେଉଁ କୁଡ଼ିଆ ଘରଟି ଦିଶୁଛି, ଗାନ୍ଧି ସେହି ଘରେ ରହନ୍ତି । ସୂର୍ଯ୍ୟୋଦୟ ଆଗରୁ ସେ ବାହାରିବେ । ପୋଖରୀ ତୁଠରେ ବସି ନିଜର ଲୁଗା କାଚିବେ । ତୁ ଯଦି ରାତି ପାହିବା ଆଗରୁ ପୋଖରୀର ଦକ୍ଷିଣ କୋଣରେ ପହଞ୍ଚିବୁ, ମୁଁ ସେଠାରେ ଥିବି । ବାଟ କହିଦେବି । ପାଖରୁ ନ ହେଲେ ବି କିଛି ଦୂରରୁ ମହାତ୍ମାଙ୍କୁ ଦର୍ଶନ କରିପାରିବୁ ।"

ଅତି ଆନନ୍ଦରେ କହିଦେଲି, "ଆଜ୍ଞା, ରାତି ଘଡ଼ିଏ ଥିବ ପହଞ୍ଚିଯିବି ।" ଉଦାରମନା ସ୍ୱେଚ୍ଛାସେବୀଙ୍କୁ କୃତଜ୍ଞତା ଜଣାଇଲାବେଳେ ତ୍ରିଲୋଚନ ଆସି ହାଜର

ହେଲା । ତାର ଉଛତା ଦେଖି ମୋତେ ସ୍ୱେଚ୍ଛାସେବୀ କହିଲେ, "ତୁ ଛୋଟ ପିଲାଟି ପରି ଦିଶୁଛୁ । ତୋତେ ଛାଡ଼ିଦେବି, ଯାକୁ ନୁହେଁ ।"

ପ୍ଲାଟ୍‌ଫର୍ମରେ ରାତି କଟିଲା । ଅନ୍ଧାର ଥାଏ, ନିର୍ଦ୍ଧାରିତ ଜାଗାରେ ପହଞ୍ଚିଗଲି । ସ୍ୱେଚ୍ଛାସେବୀ ଜଣକ ବୋଧହୁଏ ସାରା ରାତି ସେଠାରେ ଜଗୁଆଳି କାମ କରୁଥିଲେ । ମୋତେ ଦେଖି ଖୁସି ହେଲେ । ପୋଖରୀ ପାଖେ ପାଖେ ରହିଥାଏ ସଦ୍ୟ ତିଆରି ହୋଇଥିବା କଣ୍ଟାବାଉଁଶର ବାଡ଼ । ବାଡ଼ ଓ ପୋଖରୀ ପାଣି ମଧ୍ୟରେ ବାଟ ନଥାଏ । ଆଙ୍ଗୁଳି ଦେଖାଇ ସ୍ୱେଚ୍ଛାସେବୀ ନିର୍ଦ୍ଦେଶ ଦେଲେ, "ବାଡ଼ ତଳେ ତଳେ ଆଣ୍ଠୁଏ ପାଣିରେ ଯାଇ ସେହି କିଆଗଛ ପାଖରେ ଛିଡ଼ାହେବୁ, ଆଗକୁ ଯିବୁ ନାହିଁ ।" ତ୍ରିଲୋଚନକୁ ନିଜ ପାଖରେ ବସାଇ ରଖିଲେ ।

ଯଥାସ୍ଥାନ ପର୍ଯ୍ୟନ୍ତ ଯାଇ ସେଠାରେ ଅଟକି ରହିଲି । ବାଉଁଶ କଣ୍ଟାରେ ଗୋଡ଼ର ଦୁଇ ଜାଗା ଛିଣ୍ଡିଯାଇଥାଏ । ଅନ୍ଧକାର କମି ଆସିଥିଲା । ଉଷାର ପ୍ରାକ୍‌କାଳୀନ ଅସ୍ୱଷ୍ଟ ଆଲୋକ ମଧ୍ୟରେ ଦୂରରେ କୁଡ଼ିଆଟି ଦିଶୁଥାଏ । କ୍ଷିପ୍ରଗତିରେ ହଠାତ୍ ତା ମଧ୍ୟରୁ ବାହାରି ଆସିଲେ ମହାତ୍ମା ଗାନ୍ଧି । ଆତ୍ମବିସ୍ମୃତ ଅବସ୍ଥାରେ ଓ ଅପଲକ ଦୃଷ୍ଟିରେ ମୁଁ ଚାହିଁରହିଲି । ଅବିଳମ୍ବେ ଉଷାଲୋକରେ ଗାନ୍ଧିଙ୍କ ମୂର୍ତ୍ତି ପରିଷ୍କାର ଭାବେ ଦେଖାଗଲା । ପୋଖରୀ ତୁଠରେ ପଡ଼ିଥିବା ଖଣ୍ଡିଏ ବଡ଼ ପଥର ଉପରେ ବସି, ଲୁଗା ଖଣ୍ଡିଏ ପାଣିରେ ବୁଡ଼ାଇ ଆଣି ତାକୁ ଆଉ ଖଣ୍ଡିଏ ପଥର ଉପରେ କେତେଥର ପାଇଁ ଧୀରେ ଧୀରେ କଚାଡ଼ିଲେ । ସାବୁନ ଘଷିଲା ପରି ଜଣାଯାଉଥାଏ, କିନ୍ତୁ ଦିଶୁ ନଥାଏ । ଲୁଗା ଧୋଇବା ଲାଗି ସେ ପାଣିରେ ପଶିଲାବେଳକୁ କସ୍ତୁରବା ଗାନ୍ଧି ହାତରେ ଖଣ୍ଡିଏ ଥାଳି ଧରି ତୁଠ ପାଖକୁ ଆସିଲେ ଓ ପାଣିରେ ଧୋଇଲେ ।

ମାତ୍ର କେତୋଟି ମିନିଟ୍ ପରେ ଉଭୟେ କୁଡ଼ିଆ ଭିତରକୁ ଚାଲିଗଲେ । ସୂର୍ଯ୍ୟୋଦୟ ହେବାକୁ ସମୟ ବାକି ଥାଏ । ମୁଁ ପାଣି ଭିତର ଦେଇ ଯଥାସ୍ଥାନକୁ ଫେରିଆସିଲି । କଂଗ୍ରେସ କର୍ମୀଙ୍କୁ ସଭକ୍ତି ପ୍ରଣାମ ଜଣାଇ ବିଦାୟ ନେଲି । ସେହି ଶାନ୍ତ ପ୍ରଭାତର ଅସ୍ୱଷ୍ଟ ଦୃଶ୍ୟଟି ଚିରଦିନ ଲାଗି ସ୍ମୃତିପଟରେ ଚିତ୍ରିତ ହୋଇ ରହିଗଲା ।

ଏହି ଘଟଣାର ୯ ବର୍ଷ ପରେ, ୧୯୪୭ ମସିହାର ଶେଷ ବେଳେ ଆଉ ଥରେ ମହାତ୍ମା ଗାନ୍ଧିଙ୍କୁ ଅତି ନିକଟରୁ ଦେଖିବାକୁ ପାଇଥିଲି, ଏଲ୍ଲାହାବାଦ ରେଳଷ୍ଟେସନ୍‌ରେ ଅଟକିଥିବା ଟ୍ରେନ୍ ଭିତରେ । ଯାଉଥାନ୍ତି କଲିକତାରୁ ଦିଲ୍ଲୀ । ତାହା ଥିଲା ସ୍ୱାଧୀନ ଭାରତର ରାଜଧାନୀ ଦିଗକୁ ତାଙ୍କର ପ୍ରଥମ ଓ ଶେଷ ଯାତ୍ରା ।

ଯେଉଁ ସାଙ୍ଗ ତ୍ରିଲୋଚନ ସେନାପତି ମୋ ସହିତ ତେଲାଙ୍ଗ ଯାଇଥିଲେ, ସେ ସ୍ୱାଧୀନତା ପରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଓ ପରେ କଂଗ୍ରେସ ଦଳର ଜଣେ ଜଣାଶୁଣା ନେତା ରୂପେ ଉଚ୍ଚ ପଦପଦବୀ ମଣ୍ଡନ କରିଥିଲେ । ଏବେ ସେ ଇହଜଗତରେ ନାହାନ୍ତି ।

## ବଡ଼ଲାଟ୍ ଲର୍ଡ ଲିନ୍‌ଲିଥଗୋଙ୍କ ପୁରୀ ଆଗମନ, ୧୯୩୯

ଜିଲ୍ଲାସ୍କୁଲରେ ପଢୁଥିବାବେଳେ 'ବୟ ସ୍କାଉଟ' ଦଳରେ ଯୋଗ ଦେଇଥିଲି । ୧୯୩୯ ମସିହାର ଘଟଣା । ଦିନେ ସ୍କାଉଟ ପରିଚାଳକ ତଥା ପ୍ରଧାନ ଶିକ୍ଷକ ମହିମଚନ୍ଦ୍ର ନନ୍ଦୀ ଆମକୁ ଜଣାଇଲେ ଯେ ଭାରତର ବଡ଼ଲାଟ ଲର୍ଡ୍ ଲିନ୍‌ଲିଥିଗୋ ପୁରୀ ଆସିବେ ଏବଂ ଓଡ଼ିଶାର ଚାରିଟି ହାଇସ୍କୁଲର ବୟସ୍କାଉଟ୍‌ମାନେ ତାଙ୍କୁ ଗାର୍ଡ୍ ଅଫ୍ ଅନର ଦେବା ଲାଗି ସେଠାକୁ ଯିବେ । ନିଜ ନିଜ ସୁଟ୍‌କେଶ ଭିତରେ ସ୍କାଉଟ ପୋଷାକ ଭର୍ତ୍ତିକରି ଦୁଇଜଣ ଶିକ୍ଷକଙ୍କ ସହିତ ପାସେଞ୍ଜର ଟ୍ରେନ୍‌ରେ ବସିଗଲୁଁ । ଦିନକ ପରେ ସ୍ୱତନ୍ତ୍ର ଟ୍ରେନ୍‌ରେ ବଡ଼ଲାଟ ଯାତ୍ରା କରିବେ । ଅଥଚ, ଦିନକ ଆଗରୁ ରେଳପଥର ଦୁଇପାଖରେ ଦେଖିବାକୁ ମିଳିଲା ଅପୂର୍ବ ଦୃଶ୍ୟ । ପ୍ରତ୍ୟେକ ହଜାର ହାତ ବ୍ୟବଧାନରେ ଜଣେ ଜଣେ ନୀଳ ପୋଷାକ ପରିହିତ ପଗଡ଼ିଧାରୀ ଚୌକିଦାର ଲାଠିହାତରେ ଦଣ୍ଡାୟମାନ । ପ୍ରତ୍ୟେକ ଦଶଜଣ ଚୌକିଦାରଙ୍କ ପରେ ଜଣେ ଲେଖାଏଁ ଦଫାଦାର । ପୁଣି କେତେଜଣ ଦଫାଦାରଙ୍କ ପରେ ଜଣେ ଲେଖାଏଁ ଲାଲପଗଡ଼ିଧାରୀ କନେଷ୍ଟବଳ । ସ୍କାଉଟ୍ ଶିକ୍ଷକ କୃଷ୍ଣଚନ୍ଦ୍ର ଦାସ ବୁଝାଇଦେଲେ, ସୁଦୂର ଶ୍ୱେତଦ୍ୱୀପରେ ଥିବା ଅଦୃଶ୍ୟ ଭାରତସମ୍ରାଟଙ୍କ ଚଳନ୍ତି ମୂର୍ତ୍ତି ହେଉଛନ୍ତି ତାଙ୍କ ଭାଇସ୍‌ରୟ । ତାଙ୍କ ନିରାପତ୍ତା ନିମନ୍ତେ ଦିନକ ଆଗରୁ ଏପରି କଡ଼ା ବ୍ୟବସ୍ଥା ।

ଷ୍ଟେସନ ପରେ ଷ୍ଟେସନ ଅତିକ୍ରମ କଲାବେଳେ ଚୌକିଦାରମାନଙ୍କୁ ଦେଖି ଦେଖି ଆମ ମନରେ ଗୋଟିଏ ଦୁଷ୍ଟବୁଦ୍ଧି ଖେଳିଗଲା । ପ୍ଲାଟ୍‌ଫର୍ମରେ ଗାଡ଼ି ରହିଲାମାତ୍ରେ ଖପାଖପ୍ ତଳକୁ ଡେଇଁପଡ଼ି ରେଳଲାଇନ ପାଖରେ ପଡ଼ିଥିବା ଛୋଟ ଛୋଟ ପଥରଖଣ୍ଡ ପକେଟରେ ଭର୍ତ୍ତିକରି ଉଠିପଡ଼ିବୁଁ । ଦରଜା ପାଖରେ ଛିଡ଼ା ରହି ସିପାହିମାନଙ୍କ ଦେହକୁ ଲକ୍ଷ୍ୟ କରି ପଥର ଫିଙ୍ଗି ଫିଙ୍ଗି ବ୍ରିଟିଶ ସାମ୍ରାଜ୍ୟ ବିରୋଧରେ ଯୁଦ୍ଧ କରୁଥିବାର ତୃପ୍ତି ପାଇଲୁଁ । କଟକ ଷ୍ଟେସନ୍‌ରେ ପହଞ୍ଚିଲାବେଳକୁ ପ୍ଲାଟ୍‌ଫର୍ମ ବାହାରେ ବଡ଼ଲାଟ୍‌ଙ୍କୁ ସ୍ୱାଗତ କରିବା ଲାଗି ଆୟୋଜନ ଚାଲିଥାଏ । ପ୍ରକାଣ୍ଡ ସାମିଆନା ତଳେ ସୁଉଚ୍ଚ ମଞ୍ଚ । ଶିକ୍ଷକ କହିଲେ, ''ଯେଉଁ ଅଳ୍ପ ସମୟ ଲାଗି ବଡ଼ଲାଟ୍ ସେଠାରେ ଅବତରଣ କରିବେ, ତାଙ୍କ ବସିବା ପାଇଁ ରାଜଧାନୀ ଦିଲ୍ଲୀରୁ ସ୍ୱତନ୍ତ୍ର ସିଂହାସନ ଅଣାଯିବ ।''

ପୁରୀରେ ପହଞ୍ଚି ସେଠାକାର ଜିଲ୍ଲାସ୍କୁଲ୍‌ର ହଲ ଭିତରେ ରହିବାକୁ ହେଲା । କଟକ କଲିଜିଏଟ୍ ସ୍କୁଲ ଓ ସମ୍ବଲପୁର ହାଇସ୍କୁଲର ସ୍କାଉଟ୍‌ମାନେ ଆଗରୁ ପହଞ୍ଚିଯାଇଥିଲେ । ସମସ୍ତଙ୍କୁ ଏକତ୍ରିତ କରି 'ସେଲ୍ୟୁଟ୍' ଦେବାର ଆଦବକାୟଦା ତାଲିମ ଦିଆଗଲା । ତହିଁପରଦିନ ମନ୍ଦିର ସାମନା ବଡ଼ଦାଣ୍ଡ ଉପରେ ଲାଇନ ବାନ୍ଧି ଛିଡ଼ା ହେଲୁଁ । ବଡ଼ଲାଟ ତ ଆମ ଆଗକୁ ଆସିଲେ ନାହିଁ । କିନ୍ତୁ ଆମେ ଘଣ୍ଟା ଘଣ୍ଟା ଖରାରେ 'ଏଟେନ୍‌ସନ୍' ଅବସ୍ଥାରେ ଦଣ୍ଡାୟମାନ ରହିଲୁଁ । କେଉଁ ଅଜଣା ରାସ୍ତାରେ ଆସି ବଡ଼ଲାଟ୍ ଏମାରମଠର ପାହାଚ ଚଢ଼ିଲାବେଳେ ତାଙ୍କର ଦୀର୍ଘକାୟ ମୂର୍ତ୍ତିଟି କିଛି ସମୟ ଲାଗି ଆମ ଆଖି ଆଗରେ ଝଲସିଗଲା । ତାପରେ, ତାଙ୍କର ରୂପ ପୁଣିଥରେ ଦେଖିବାକୁ ମିଳିଲା ଏମାର ମଠର ଛାତ ଉପରେ । ଆଖିରେ ଦୂରବୀଣ ଲଗାଇ ସେ କିଛି ସମୟ ଜଗନ୍ନାଥ ମନ୍ଦିର ଦେଖିଲାପରେ ଅକସ୍ମାତ୍ ଅନ୍ତର୍ଦ୍ଧାନ ହେଲେ ।

ତହିଁ ପରଦିନ ସକାଳେ ଆମେ ପହଞ୍ଚିଲୁଁ ସମୁଦ୍ର ଦର୍ଶନ ପାଇଁ । ସ୍କାଉଟ୍‌ଶିକ୍ଷକ କୃଷ୍ଣବାବୁ ହଠାତ୍ ପଚାରିଦେଲେ, ''ତମ ଭିତରେ ସମୁଦ୍ରକୂଳିଆ ପିଲା କେହି ଅଛ ? ଢେଉରେ ପଶିପାରିବ ?'' ଆମ ଗାଁ ପାଖର ଦରିଆରେ ଢେଉ ଡେଇଁ ଡେଇଁ ସମୁଦ୍ର ପ୍ରତି ମୋର ଡର ନଥାଏ । ଶିକ୍ଷକଙ୍କ ବାକ୍ୟ ଶେଷ ହେଲା ମାତ୍ରେ ମୁଁ ପାଣି ଭିତରକୁ ପଶିଗଲି । କେତୋଟି ବଡ଼ ବଡ଼ ଢେଉ ଅତିକ୍ରମ କରିବା କଥା ମନେଅଛି । ତା'ପରେ ଆଉ କିଛି ଜାଣିପାରିଲି ନାହିଁ । ଚେତା ଫେରିଲାବେଳକୁ ଦେଖିଲି, ପୁରୀ ଜିଲ୍ଲାସ୍କୁଲ ହଲ୍ ଭିତରେ ସିମେଣ୍ଟ ମେଜିଆ ଉପରେ ପଡ଼ିଛି । ପିଲାମାନେ ଘେରି ରହିଛନ୍ତି । ପାଖରେ ଡାକ୍ତର । ଚେତା ଫେରିବା ସତ୍ତ୍ୱେ ଅନେକ ସମୟ ଶୁଆଇ ରଖାଗଲା ।

ପରେ ସାଙ୍ଗମାନଙ୍କ ପାଖରୁ ଶୁଣିଲି, ପୁରୀ ସମୁଦ୍ରରେ 'ଆଣ୍ଡାର କରେଣ୍ଟ୍' ବୋଲି ଗୋଟିଏ ଶକ୍ତି ଅଛି । ସେହି ସ୍ରୋତ ମୋତେ ଦୂରକୁ ଟାଣି ନେଇଗଲା । ଅନ୍ୟମାନଙ୍କର ଚିତ୍କାର ଶୁଣି ନୋଳିଆମାନେ ସମୁଦ୍ରରେ ପଶି ମୋତେ ଉଦ୍ଧାର କରି କୂଳକୁ ଘୋଷାରି ଆଣିଥିଲେ । ସେହିମାନେ ପୁଣି ମୋ କାନ, ନାକ ଓ ପାଟି ମଧ୍ୟରୁ ବାଲି କାଢ଼ି ଦେହରେ ଚାପ ଦେଇ ଦେଇ ପେଟରେ ଥିବା ପାଣିତକ ପାଟିବାଟେ ବାହାର କରିଥିଲେ । ତଥାପି ଚେତା ଫେରିଲା ନାହିଁ । ବଡ଼ଲାଟଙ୍କ ଆସିବା ଉପଲକ୍ଷେ ସମୁଦ୍ରକୂଳରେ ମୁତୟନ ଥିବା ପୋଲିସ ଅଫିସାର ସାଇକେଲଯୋଗେ ଡାକ୍ତର ଆଣି ତାଙ୍କ ହାତରେ ମୋ ବଞ୍ଚିବା ଦାୟିତ୍ୱ ନ୍ୟସ୍ତ କଲେ । ମୋତେ କାନ୍ଧରେ ଟେକି ରହିବା ସ୍ଥାନକୁ ନିଆଗଲା । ଅନେକ ସମୟ ପରେ ଚେତା ଫେରିଲା ।

ଏହି ଘଟଣାର ପଚାଶବର୍ଷ ପରେ, ବାଲେଶ୍ୱରରେ ଗୋଟିଏ ଧର୍ମସଭାରେ ଯୋଗ ଦେବାକୁ ଯାଇଥିଲାବେଳେ କାର୍ତ୍ତିକ ନାମକ ଜଣେ ସହପାଠୀ ଅଶ୍ରୁପୂର୍ଣ୍ଣ ନୟନରେ ସ୍ମୃତିଚାରଣ କରି ବର୍ଣ୍ଣନା କରିଥିଲେ, "ମନ୍ମଥ ସମୁଦ୍ରରେ ଅଦୃଶ୍ୟ ହୋଇଗଲା ପରେ ସେ ମରିଗଲା ଭାବି ସ୍କାଉଟ୍‌ଶିକ୍ଷକ ମୁଣ୍ଡରେ ହାତ ପିଟି ପିଟି ବିକଳ ହୋଇଉଠିଲେ । ତାଙ୍କ ଦୁଃଖ ଦେଖି ଆମେ ଚିତ୍କାର କରିବାକୁ ଲାଗିଲୁଁ । ସେହି ଚିତ୍କାର ଶୁଣି ନୋଳିଆମାନେ ଦରିଆକୁ ଡେଇଁପଡ଼ିଥିଲେ । ଗଳା ଫଟାଇ ପାଟି କରି ନଥିଲେ ଏହି ବ୍ୟକ୍ତିଟି ଆଜି ନଥାନ୍ତେ ।"

ଜୀବନରେ ଏହିପରି କେତେଥର ମୃତ୍ୟୁମୁଖରୁ ବଞ୍ଚିଯାଇଛି । ପିଲାବେଳେ ଦିନେ ଘରର ପିଣ୍ଡାଉପରକୁ ଉଠିଲା ବେଳେ ଗୋଖରସାପଟିଏ ଫଣା ଟେକି କାମୁଡ଼ିଲା ପୂର୍ବରୁ ଡେଇଁପଡ଼ି ବଞ୍ଚିଯାଇଥିଲି । ମାଇନର ପଢ଼ିଲାବେଳେ ବଡ଼ ପୋଖରୀଟିର ମଝି ପର୍ଯ୍ୟନ୍ତ ସନ୍ତରଣ କରି ବୁଡ଼ିଯାଉଥିବା ମୁହୂର୍ତ୍ତରେ ଜଣେ ଅଜଣା ପଥଚାରୀ ରକ୍ଷା କରିଥିଲେ । ଲଣ୍ଡନରେ ଦିନେ ପ୍ରକାଣ୍ଡ ଗ୍ୟାସ୍ ସିଲିଣ୍ଡାରରେ ଦିଆସିଲି କାଠି ଲଗାଇଲା ସମୟରେ ଯେଉଁ ବିସ୍ଫୋରଣ ଘଟିଥିଲା, ସେଥିରେ କାନ୍ଥର ଇଟା କେତେଖଣ୍ଡି ଉଡ଼ିଗଲା, କିନ୍ତୁ ମୁଁ ଅଳ୍ପକେ ବଞ୍ଚିଗଲି । ଆଉ ଥରେ ଦ୍ରୁତଗାମୀ ଟ୍ରାମ୍ ଆଗରେ ପଡ଼ିଯିବା ପୂର୍ବରୁ ଆଶ୍ଚର୍ଯ୍ୟଜନକ ଭାବେ ରକ୍ଷା ପାଇଗଲି । ମନୁଷ୍ୟ ଜୀବନରେ ଗୋଟିଏ ଗୋଟିଏ ମୁହୂର୍ତ୍ତ ଆସିଥାଏ, ଯେତେବେଳେ ଜୀବନ ଓ ମୃତ୍ୟୁ ମଧ୍ୟରେ ଥିବା ବ୍ୟବଧାନ ବୋଲି କିଛି ପ୍ରାୟ ନଥାଏ ।

## ସୁଭାଷ ଚନ୍ଦ୍ର ବୋଷଙ୍କ ଦର୍ଶନ ଲାଭ, ୧୯୩୯

ସେହି ୧୯୩୯ ମସିହା । ଦିନେ ଅପରାହ୍ନ ୫ଟା ସମୟରେ ମୁଁ ଓ ସହପାଠୀ ଚିନ୍ତାମଣି ଜେନା 'ସାସମଲ୍ ବ୍ରାଦାର୍ସ୍' କୋମ୍ପାନୀର ଅସ୍ଥାୟୀ ସିନେମା ଛାଉଣୀରେ ସନ୍ଧ୍ୟା 'ଶୋ' ଦେଖିବାକୁ ଯାଇଥିଲାବେଳେ ଖବର ମିଳିଲା, ଅଳ୍ପ ସମୟ ପରେ ସୁଭାଷ ଚନ୍ଦ୍ର ବୋଷ ବାଲେଶ୍ୱର ଷ୍ଟେସନ୍‌ରେ ପହଞ୍ଚିବେ ଓ ଟାଉନ୍‌ହଲ ପଡ଼ିଆରେ ଉଦ୍‌ବୋଧନ ଦେବେ । ସିନେମା କଥା ଭୁଲି ଦୌଡ଼ିଲୁଁ ଷ୍ଟେସନ୍ ଦିଗକୁ । ଗାଡ଼ି ଆସିଯାଇଥାଏ । ସୁଭାଷ ବୋଷଙ୍କୁ ସ୍ୱାଗତ କରି ପ୍ଲାଟ୍‌ଫର୍ମ୍ ବାହାରକୁ ଆଣୁଥାନ୍ତି ପଣ୍ଡିତ ନୀଳକଣ୍ଠ ଦାଶ । ଅନେକ ଲୋକ ଅପେକ୍ଷା କରିଥାନ୍ତି । ତାଙ୍କୁ ନେବାପାଇଁ ରହିଥାଏ ପୁଷ୍ପସଜ୍ଜିତ ଖଣ୍ଡିଏ ପୁରୁଣାକାଳିଆ ମୋଟରଗାଡ଼ି ।

ସୁଭାଷବାବୁ ଗାଡ଼ିର ପଛ ସିଟ୍‌ରେ ବସିଗଲେ । ପାଖରେ ବସିଲେ ପଣ୍ଡିତ ନୀଳକଣ୍ଠ । ଆଗରେ ଡ୍ରାଇଭର ଓ ଅନ୍ୟ ଜଣେ ଲୋକ । ଗାଡ଼ି ଷ୍ଟାର୍ଟ ଦେଲା । ଗାଡ଼ିଟିର ଦୁଇପାଖରେ ବାହାରି ରହିଥାଏ ପ୍ରାୟ ଚାଖଣ୍ଡେ ଓସାରର କାଠପଟା । ମୁହୂର୍ତ୍ତର ଭାବପ୍ରବଣତା ବଳରେ ମୁଁ ପଛ ପ୍ରବେଶଦ୍ୱାରର ପଟାଟି ଉପରକୁ ଉଠିପଡ଼ି

ଗାଡ଼ିର ଖୋଲା ଝରକା ଧରି ଛିଡ଼ା ହୋଇ ରହିଲି । ସେହିଠାରେ ବସିଥାନ୍ତି ସୁଭାଷଚନ୍ଦ୍ର ବୋଷ । ତାଙ୍କ ଆର ପାଖରେ ବସିଥିବା ପଣ୍ଡିତ ନୀଳକଣ୍ଠ ଗର୍ଜନ କରିଉଠିଲେ, "ବାଳକ, ତଳକୁ ଯା, ତଳକୁ ଯା । ଗାଡ଼ି ଚାଲିଲେ ପଡ଼ିଯିବୁ ।" ଗାଡ଼ି ଚାଲିବାକୁ ଆରମ୍ଭ କଲା । ଆଗରେ ଓ ପଛରେ ଅନେକ ଲୋକ । ଶୋଭାଯାତ୍ରାରେ ସୁଭାଷବାବୁଙ୍କୁ ନିଆଯିବ । ରାସ୍ତାର ଦୁଇ ପାଖରେ ରୁଣ୍ଡ ହୋଇଥିବା ନରନାରୀ ତାଙ୍କୁ ଦର୍ଶନ କରିବେ । ଡ୍ରାଇଭର ଧୀର ମନ୍ଥର ଗତିରେ ଗାଡ଼ି ଚଳାଇବାକୁ ବାଧ୍ୟ ଥାଏ । ତେଣୁ, ନିର୍ଭୟରେ ମୁଁ ମୋ ସ୍ଥାନରେ ଛିଡ଼ା ହୋଇ ରହିଲି । 'ଇନ୍‌କିଲାବ୍ ଜିନ୍ଦାବାଦ୍', 'ସୁଭାଷ ବୋଷ ଜିନ୍ଦାବାଦ୍' ଧ୍ୱନି ମଧ୍ୟରେ ପଣ୍ଡିତ ନୀଳକଣ୍ଠଙ୍କ କଣ୍ଠରୁ ମୋ ପ୍ରତି ବର୍ଷଣ ହେଉଥିବା କଠୋର ଆଦେଶ ବାରମ୍ବାର ଶୁଣି ମଧ୍ୟ ନ ଶୁଣିଲା ପରି ଛିଡ଼ା ରହିଥାଏଁ । ମଧ୍ୟେ ମଧ୍ୟେ ସୁଭାଷ ବୋଷଙ୍କ ସୁନ୍ଦର, ସୁଗଠିତ ମୁଖମଣ୍ଡଳକୁ ଚାହିଁ ଦେଖୁଥାଏ । ମୁଣ୍ଡରେ ଥାଏ ଗାନ୍ଧିଟୋପି ଓ ଗଳାରେ ଫୁଲମାଳ ।

ଷ୍ଟେସନ୍ ଠାରୁ ସଭାସ୍ଥଳ ପର୍ଯ୍ୟନ୍ତ ଦୂରତ୍ୱ ମଧ୍ୟରେ ତଳକୁ ପଡ଼ିଯିବାର ଆଶଙ୍କା ପ୍ରତି ଭ୍ରୂକ୍ଷେପ ନକରି ସୁଭାଷ ବୋଷଙ୍କୁ ପାଖରୁ ଦେଖିପାରିଥିବାରୁ ମନରେ ସେଦିନ ଗର୍ବ ଅନୁଭବ କରିଥିଲି । ଗାଡ଼ି ପାଖେ ପାଖେ ଦୌଡ଼ିଥିବା ବାଳକ ଚିନ୍ତାମଣି ଜେନା ଭବିଷ୍ୟତରେ ହୋଇଥିଲେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଓ ବାଲେଶ୍ୱରର ଲୋକନିର୍ବାଚିତ ପାର୍ଲିଆମେଣ୍ଟ ସଦସ୍ୟ ।

### କଲେକ୍ଟର ସୋଲମନ ସାହେବଙ୍କ ଦଣ୍ଡବିଧାନ

ନବମ ଶ୍ରେଣୀରେ ପଢ଼ିଲାବେଳର ଗୋଟିଏ ଘଟଣା । ସେତେବେଳର ମେଟ୍ରିକ୍ ପଢୁଥିବା ପିଲାମାନଙ୍କର ବୟସ ଅପେକ୍ଷାକୃତ ଆଜିକାଲିର ସ୍କୁଲ୍‌ପିଲାଙ୍କ ତୁଳନାରେ ବେଶି ଥାଏ । ଦୁଷ୍ଟାମି କରିବାଲାଗି କିମ୍ବା ଅନ୍ୟମାନଙ୍କୁ ଦୁଷ୍ଟବୁଦ୍ଧି ଶିକ୍ଷା ଦେବାପାଇଁ ବୟସ୍କ ଛାତ୍ରଙ୍କର ଅଭାବ ମଧ୍ୟ ନଥାଏ । ହଷ୍ଟେଲ୍‌ରେ ଥିବା ଏକାଦଶ ଶ୍ରେଣୀରେ ପଢୁଥିବା ସେହିପରି ଜଣେ ଧୁରନ୍ଧର ଛାତ୍ର ଥିଲେ ରାଧେଶ୍ୟାମ (ସଂଜ୍ଞା ମନେ ନାହିଁ) ।

ଥରେ ଏକାଦଶ ଶ୍ରେଣୀର ଦୁଇଦଳ ପିଲାଙ୍କ ମଧ୍ୟରେ କଳହ ଲାଗିଲା । ଆମେ ନବମ ଶ୍ରେଣୀର କେତେଜଣ ଛାତ୍ର ରାଧେଶ୍ୟାମଙ୍କ ପକ୍ଷ ନେଲୁଁ । ଶତ୍ରୁଗୋଷ୍ଠୀରେ ଥିଲେ କେତେଜଣ ମେଧାବୀ ଛାତ୍ର, ଯଥା : ହରପ୍ରସାଦ ମହାପାତ୍ର ଓ ଶଶିକାନ୍ତ ଭଞ୍ଜ । ଭବିଷ୍ୟତରେ ଏହି ଦୁଇଜଣ ଖ୍ୟାତନାମା ଆଇନଜୀବୀ ରୂପେ ପ୍ରତିଷ୍ଠା ଲାଭ କରିଥିଲେ । ହରପ୍ରସାଦବାବୁ ରାଜେନ୍ଦ୍ରନାରାୟଣ ସିଂହଦେଓଙ୍କ ମନ୍ତ୍ରିମଣ୍ଡଳରେ ଓଡ଼ିଶାର ସ୍ୱାସ୍ଥ୍ୟମନ୍ତ୍ରୀ ହୋଇଥିଲେ ଓ ଶଶିକାନ୍ତବାବୁ ବିଧାନସଭାକୁ ନିର୍ବାଚିତ

ହୋଇଥିଲେ । ମେଟ୍ରିକ୍ ଶେଷ ପରୀକ୍ଷା ଆସିଯାଉଥାଏ । ସେମାନଙ୍କ ପଢ଼ାପଢ଼ିରେ ଆମେ ବାଧାସୃଷ୍ଟି କରିବା ଦେଖି ହରବାବୁ ଓ ଶଶୀବାବୁ ହଷ୍ଟେଲ ଛାଡ଼ି ଦୂରରେ ଭଡ଼ାଘର ନେଇ ରହିଲେ । କେବଳ ରହିଗଲେ ସେମାନଙ୍କ ଜଣେ ସାଙ୍ଗ ପ୍ରହଲ୍ଲାଦ ଖିଲାର । ପରୀକ୍ଷା ପୂର୍ବରୁ ରାଧେଶ୍ୟାମ ସେହି ପିଲାଙ୍କୁ ପାନେ ଶିକ୍ଷା ଦେବାଲାଗି ଯୋଜନା ଢଳେ । ଦିନେ ନବମ ଶ୍ରେଣୀର ଛାତ୍ରମାନଙ୍କୁ ଏକାଠି କରି ଆମ ଭିତରୁ ତ୍ରିଲୋଚନ ସେନାପତି ଓ ନଗେନ୍ଦ୍ରନାଥ ଚାନ୍ଦଙ୍କୁ ପଠାଇଲେ ସୋରୋ ଷ୍ଟେସନ୍‌ରେ ଥିବା ଟେଲିଗ୍ରାଫ୍ ଅଫିସକୁ । ସେହି ଅଞ୍ଚଳରେ ପ୍ରହଲ୍ଲାଦ ଖିଲାରଙ୍କ ଘର । ସେଠାରୁ ସେମାନେ ପ୍ରହଲ୍ଲାଦ ପାଖକୁ ମିଛ ଟେଲିଗ୍ରାମ୍ କରିଦେଲେ— "ତୁମ ମା ପକ୍ଷାଘାତରେ ଆକ୍ରାନ୍ତ । ସିଭିଲ ସାର୍ଜନଙ୍କୁ ତୁରନ୍ତ ନେଇ ଆସ, ତୁମର ବାପା ।"

ପ୍ରହଲ୍ଲାଦ ଖିଲାର ଟେଲିଗ୍ରାମ୍ ପାଇ କାନ୍ଦି କାନ୍ଦି ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ସରୋଜକାନ୍ତ କାନୁନଗୋଙ୍କ ପାଖରେ ପହଞ୍ଚିଲେ । ତାଙ୍କ ପାଖରୁ ଚିଠି ନେଇ ଦୌଡ଼ିଲେ ଅଳ୍ପ ଦୂରରେ ଥିବା ସିଭିଲ ସାର୍ଜନ ବିଜୟବାବୁଙ୍କ ବାସଭବନକୁ, କିଛି ସମୟ ପରେ ସିଭିଲ୍ ସାର୍ଜନ ନିଜେ ତାଙ୍କ କାର ଚଳାଇ ବାହାରିବା ଦୃଶ୍ୟ ଦେଖାଗଲା । ପାଖରେ ବସିଥାନ୍ତି ପ୍ରହଲ୍ଲାଦ ଖିଲାର ।

ସନ୍ଧ୍ୟା ସମୟରେ ସୋରୋ ବଜାରରେ ଗାଡ଼ି ପହଞ୍ଚିଲାଉତ୍ତାରୁ ପ୍ରହଲ୍ଲାଦ କାନ୍ଦି କାନ୍ଦି ଜଣାଇଲେ, ତାଙ୍କ ଘର ଦୁଇ ମାଇଲ୍ ଦୂରରେ । ସେଠାକୁ ଗାଡ଼ିରାସ୍ତା ନଥାଏ । ଅନ୍ଧକାର ରାତି । ଜଣେ ଛାତ୍ରର ବିକଳ କ୍ରନ୍ଦନ ଦେଖି ବାଧ୍ୟ ହୋଇ ସିଭିଲ ସାର୍ଜନ ଚାଲିଲେ । ଯେତେ ଚାଲିଲେ ବି ଗାଁ ବାଟ ସରୁ ନାହିଁ । ଡାକ୍ତର ଜାଣିଲେ, ଦୁଇ ମାଇଲ ନୁହେଁ, ତାହାର ତିନିଗୁଣ ରାସ୍ତା । ରାତି ୧୦ଟା ପରେ ଘରେ ପହଞ୍ଚି ପ୍ରହଲ୍ଲାଦ କବାଟରେ ହାତ ପିଟି ବାପାଙ୍କୁ ଡାକିଲେ । ବାପା ବାହାରିଲାବେଳକୁ ଆଗରେ ପୁଅ ଓ ସିଭିଲ ସାର୍ଜନ । କଥା କ'ଣ ବୁଝିଲାବେଳକୁ ପୁଅ ଦେଖାଇଲେ ଟେଲିଗ୍ରାମ । ବାପା ବିକଳରେ କହିଲେ, "ତୋ ମା ତାଙ୍କ ବାପାଘରକୁ ଯାଇଛନ୍ତି, ସେହିଠାରେ ନିଶ୍ଚୟ ପକ୍ଷାଘାତ ହୋଇଥିବ ।"

ଉଭୟ ବାପ ପୁଅ ସିଭିଲ ସାର୍ଜନଙ୍କ ପାଦତଳେ ମୋଟା କିସମର ଭିଜିଟ୍ ଟଙ୍କା ରଖିଲେ । ସେମାନଙ୍କ ଅନୁନୟ ବିନୟ ଦେଖି ଅଗତ୍ୟା ସିଭିଲ ସାର୍ଜନ ମା'ଙ୍କ ବାପାଙ୍କ ଗାଁକୁ ଆଗେଇଲେ । ହାତରେ ଲଣ୍ଠନ ଧରି ଚାଲିଲେ ପ୍ରହଲ୍ଲାଦ ଓ ତାଙ୍କ ବାପା । ମଧ୍ୟରାତ୍ର ପରେ ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲାବେଳକୁ ପ୍ରହଲ୍ଲାଦଙ୍କ ମା ସୁସ୍ଥ ଓ ସବଳ ଅବସ୍ଥାରେ ଶୋଇଥିଲେ ।

କ୍ରୋଧଜର୍ଜରିତ ସାର୍ଜନ ସାରା ରାତି ଗାଉଁଲି ବାଟରେ ଚାଲି ଚାଲି ପ୍ରଭାତବେଳକୁ ସୋରୋ ଷ୍ଟେସନରେ ପହଞ୍ଚି ସିଧା ଚାଲିଲେ ଟେଲିଗ୍ରାଫ୍ ଅଫିସକୁ । ସେ କାଳରେ ସପ୍ତାହରେ କାଁ ଭାଁ କେହି କେହି ଟେଲିଗ୍ରାମ୍ କରୁଥିଲେ କି ନାହିଁ ସନ୍ଦେହ । କର୍ମଚାରୀ ଜଣକ ଦମ୍ଭ ପ୍ରକାଶ କଲେ, ଟେଲିଗ୍ରାମ କରିଥିବା ଦୁଇ ବ୍ୟକ୍ତିଙ୍କୁ ସହଜରେ ଚିହ୍ନିପାରିବେ । କାରଣ, ଦୁଇଜଣଯାକ ଛାତ୍ର ପରି ଦିଶୁଥିଲେ, ଜଣକର ଉଚ୍ଚତା ଖୁବ୍ ଲମ୍ବ ଏବଂ ଆଉ ଜଣକ କାନରେ ବଡ଼ ଗୋଲାଳୁ ପରି ମାଂସପିଣ୍ଡୁଳାଟିଏ ତଳକୁ ଝୁଲି ରହିଥାଏ । ପ୍ରହଲ୍ଲାଦ ତତ୍‌କ୍ଷଣାତ ଘୋଷଣା କରିଦେଲେ, ‘‘ଜଣେ ତ୍ରିଲୋଚନ ସେନାପତି ଯିଏକି ସ୍କୁଲ ଭିତରେ ସବୁଠାରୁ ଡେଙ୍ଗା ପିଲା ଓ ଆଉ ଜଣେ ନଗେନ୍ଦ୍ର ଚନ୍ଦ, ଯାହାଙ୍କ କାନରେ ମସ୍ତବଡ଼ ଗେଣ୍ଡୁ ଅଛି ।’’

ବାଲେଶ୍ୱରରେ ପହଞ୍ଚି ସିଭିଲ ସାର୍ଜନ ସିଧାସଳଖ ପହଞ୍ଚିଲେ କଲେକ୍ଟରଙ୍କ ଆଗରେ । କଲେକ୍ଟର ଥାନ୍ତି ସୋଲମନ ସାହେବ, ଇଂଲଣ୍ଡର ଲୋକ କିନ୍ତୁ ଜାତିରେ ଇହୁଦୀ । ଅପରାହ୍ନ ସାଢ଼େ ୪ଟାରେ କ୍ଲାସ୍ ସାରି ଆମେ ହଷ୍ଟେଲରେ ପହଞ୍ଚିଲା ବେଳକୁ ପୋଲିସ ଆସିଯାଇଥାନ୍ତି । ଆମମାନଙ୍କୁ ଧାଡ଼ି କରି ଛିଡ଼ା କରାଇ ଦିଆଗଲା । କୌତୂହଳର ବିଷୟ, ସେତେବେଳକୁ ତ୍ରିଲୋଚନ ସେନାପତି କୌଶଳରେ କ୍ଲାସରୁ ଖସି ଯାଇ ବାରିକ ପାଖରେ ଲଣ୍ଡା ହୋଇପଡ଼ିଥିଲେ । ତଥାପି ଡେଙ୍ଗା ମୁଣ୍ଡରେ ପଡ଼ିଲା ଠେଙ୍ଗା । ଇନ୍‌ସପେକ୍ଟର ସାହେବ ପଚାରିଲେ, ‘‘ଆଜି କେଉଁ ଆତ୍ମୀୟର ଦଶାହ କ୍ରିୟା ଥିଲା ଯେ ସଦ୍ୟ ଲଣ୍ଡା ହୋଇପଡ଼ିଛ ?’’ ଟେଲିଗ୍ରାଫ କର୍ମଚାରୀ ଚିହ୍ନଟ କରିଦେଲେ, ‘‘ଏଇ ପିଲା ଟେଲିଗ୍ରାମ କରିଥିଲେ ।’’ ନଗେନ୍ଦ୍ର ଉପରେ ତାଙ୍କର ଆଖି ପଡ଼ିଲା । ସେ ବିଚାରା କାନଟିକୁ ଲୁଚାଇବା ପାଇଁ ମୁଣ୍ଡ ଏପାଖ ସେପାଖ କରିବା ସତ୍ତ୍ୱେ, ଗେଣ୍ଡୁଟି ଅଛପା ରହିଲା ନାହିଁ । ସେହି ଦୃଶ୍ୟମାନ ମାଂସପିଣ୍ଡୁଳା ପାଇଁ କ୍ଲାସ ମଧ୍ୟରେ ତାଙ୍କର ନାମ ଥିଲା ‘ମିଷ୍ଟର ଗେଣ୍ଡୁଳି’ । ସେ ସହଜରେ ଚିହ୍ନଟ ହେଲେ ।

ସୁପରିନ୍‌ଟେଣ୍ଡେଣ୍ଟ ସରୋଜବାବୁ ଥିଲେ ଜଣେ ଛାତ୍ରବତ୍ସଳ ପିତୃତୁଲ୍ୟ ଶିକ୍ଷକ ଓ ସ୍କୁଲର ଡାକ୍ତର । ଦୁଇଜଣ ବାଳଅପରାଧୀଙ୍କୁ ତାଙ୍କ ନିଜ କ୍ୱାର୍ଟରରେ ଜେରା କରିବା ଲାଗି ପୋଲିସକୁ ଅନୁରୋଧ କରି ସେମାନଙ୍କୁ ସାଙ୍ଗରେ ନେଇଗଲେ । ଆଶ୍ଚର୍ଯ୍ୟର ବିଷୟ, ତ୍ରିଲୋଚନ ଓ ନଗେନ୍ଦ୍ର ପୋଲିସ ଆଗରେ ସେମାନଙ୍କ ବୁଦ୍ଧିଦାତା ଓ ଅର୍ଥଦାତା ରାଧେଶ୍ୟାମଙ୍କ ନାମ ପ୍ରକାଶ କଲେ ନାହିଁ । ନିଜେ ଦଣ୍ଡ ଭୋଗିବେ ଜାଣି ମଧ୍ୟ ଆଉ ଜଣକୁ ଦଣ୍ଡର ପରିସର ଭିତରକୁ ଟାଣି ନ ନେଇ ସେମାନେ ଛାତ୍ର ଜୀବନର ମହତ୍ ଗୁଣର ପରିଚୟ ଦେଇଥିଲେ ।

କେସ୍ ଚାଲିଲା । ଦୁଇ ଅପରାଧୀଙ୍କ ଅଭିଭାବକମାନେ ଓକିଲ ନିଯୁକ୍ତ କଲେ । ବିଚାର ଶେଷରେ ସୋଲମନ ସାହେବ ନିଜେ ଦଣ୍ଡବିଧାନ କଲେ ଯେ ତ୍ରିଲୋଚନ ଓ ନଗେନ୍ଦ୍ର ଭବିଷ୍ୟତରେ ଅପରାଧ କରିବେ ନାହିଁ ବୋଲି ଶପଥ ପାଠ ସହ ଅପରାଧ ସ୍ୱୀକୃତିପତ୍ର ସ୍ୱାକ୍ଷର କରିବେ । ସେଥି ସହ, ସୋଲମନ ସାହେବ ଆଦେଶ ଦେଲେ ଯେ ହଷ୍ଟେଲରେ ଥିବା ନବମ ଶ୍ରେଣୀର ଛାତ୍ରମାନେ ସ୍ୱତନ୍ତ୍ର ଖଣ୍ଡିଏ ଖାତାରେ ପ୍ରତ୍ୟେକେ ଶହେ ଥର ଲେଖିବେ ଗୋଟିଏ ପ୍ରସିଦ୍ଧ ଉକ୍ତି—

"Truth sits upon the lips of dying men,
And falsehood, while I lived, was far from mine".

ଏହି ବାକ୍ୟଟି ଥିଲା ମୃତ୍ୟୁମୁଖୀ ବୀର ଯୁବକ ସୋରାବଙ୍କର, ନିଜ ପିତା ରୁସ୍ତମଙ୍କ ସମ୍ମୁଖରେ ।

## କୋମଳମତି ଛାତ୍ରଙ୍କ ମନରେ ଯୁଦ୍ଧକାଳୀନ ହିଂସାର ପ୍ରଭାବ

୧୯୩୯ରେ ଦ୍ୱିତୀୟ ବିଶ୍ୱମହାଯୁଦ୍ଧ ଆରମ୍ଭ ହେଲା । ସେ ବେଳର ହାଇସ୍କୁଲ ଛାତ୍ରମାନଙ୍କ ମନରେ ଜାତୀୟ ସଂଗ୍ରାମ ଯୁଗର ପ୍ରଭାବ ପ୍ରତିଫଳିତ ହେବା ସ୍ୱାଭାବିକ ଥାଏ । ସେତେବେଳେ କଲେଜ ବୋଇଲେ ରେଭେନ୍ସା । ଶିକ୍ଷିତ ସମ୍ପ୍ରଦାୟ ବୋଇଲେ ମୁଖ୍ୟତଃ ସରକାରୀ ଚାକିରିଆ ଦଳ । କଂଗ୍ରେସ ରଜନୈତିକ ବ୍ୟକ୍ତିଙ୍କ ମଧ୍ୟରେ ଅଳ୍ପସଂଖ୍ୟକ ଥିଲେ ଉଚ୍ଚଶିକ୍ଷିତ, ଅଧିକାଂଶ ଥିଲେ ଅର୍ଦ୍ଧଶିକ୍ଷିତ, ଅଳ୍ପଶିକ୍ଷିତ ଓ ଅଶିକ୍ଷିତ । ତେଣୁ, ସେ ସମୟର ସଚେତନ ଗୋଷ୍ଠୀ ମଧ୍ୟରେ ହାଇସ୍କୁଲ ଛାତ୍ରଙ୍କର ସ୍ୱତନ୍ତ୍ର ସ୍ଥାନ ଥାଏ । ସଂବାଦପତ୍ରଟିଏ ହଷ୍ଟେଲରେ ପହଞ୍ଚିଗଲେ, ଆମେ ସମସ୍ତେ ଯୁଦ୍ଧର ଘଟଣାବଳୀ ପଢ଼ିବା ପାଇଁ ବସିପଡୁଥିଲୁଁ । ସେଥିସଙ୍ଗେ ଗାନ୍ଧି, କଂଗ୍ରେସ ଆନ୍ଦୋଳନ ଓ ଭାରତୀୟ ରଜନୀତି ବିଷୟ । ଜାର୍ମାନମାନଙ୍କ ହାତରେ ଇଂରେଜମାନଙ୍କର ପରାଜୟ ସଂବାଦ ପଢ଼ିଲେ ମନରେ ଅପାର ଆନନ୍ଦ ଖେଳିଯାଉଥାଏ । ଜାର୍ମାନ ଡିକ୍‌ଟେଟର ହିଟଲାର ଓ ଇଟାଲୀୟ ଡିକ୍ଟେଟର ମୁସୋଲିନୀଙ୍କ ପ୍ରତି ଆକର୍ଷଣ ଆସିଯାଉଥାଏ, କାରଣ ସେମାନେ ଥିଲେ ବ୍ରିଟିଶ ଜାତିର ପରମ ଶତ୍ରୁ ।

ତେଣେ, ବ୍ରିଟିଶ ସରକାରଙ୍କ ପ୍ରଚାର ବିଭାଗ ଦ୍ୱାରା ନାଜି ଜାର୍ମାନୀର ବର୍ବରତା ଓ ନୃଶଂସତାର କାହାଣୀମାନ ବିବିଧ ଉପାୟରେ ପ୍ରଚାର କରାଯାଉଥାଏ । ସିନେମା ହଲରେ ଫିଲ୍ମ ଆରମ୍ଭ ହେବା ଆଗରୁ କିମ୍ବା ବିରତି ସମୟ ପରେ ଯୁଦ୍ଧ ସମ୍ପର୍କୀୟ ଚିତ୍ରମାନ ଦେଖିବାକୁ ମିଳୁଥାଏ । ଜାର୍ମାନମାନେ କେତେଦୂର ଅମାନୁଷିକ ଥିଲେ, ପୋଲାଣ୍ଡବାସୀଙ୍କୁ କିପରି ହତ୍ୟା କରୁଥିଲେ, କିମ୍ବା ଇହୁଦୀ ସଂହାର କିପରି ଭାବରେ କାର୍ଯ୍ୟକାରୀ ହେଉଥାଏ, ଏହିପ୍ରକାର ଲୋମହର୍ଷଣକାରୀ ଚିତ୍ରମାନ

ଲୋକମାନେ ଦେଖିପାରୁଥାନ୍ତି । ସେଥି ସଙ୍ଗେ, ଯୁଦ୍ଧର ଛବି । ଟ୍ୟାଙ୍କ୍ ବାହିନୀର ଅଗ୍ରଗତି, ବୋମାବର୍ଷଣର ବିଭୀଷିକା ଓ ଆକାଶଛତା ସାହାଯ୍ୟରେ ଆକାଶମାର୍ଗରୁ ସୈନ୍ୟମାନଙ୍କର ଅବତରଣ ଇତ୍ୟାଦି ଦୃଶ୍ୟ ଦେଖିବାଲାଗି ଆମମାନଙ୍କର ଆଗ୍ରହ ବଢ଼ି ଚାଲିଥାଏ ।

କୋମଳମତି ବାଳକମାନଙ୍କ ମନରେ ଦୁଃସାହସ ଓ ନିଷ୍ଠୁରତାର ପ୍ରଭାବ କିପରିଭାବେ ପ୍ରତିଫଳିତ ହେଉଥାଏ, ତାହାର ତିନୋଟି ଦୃଷ୍ଟାନ୍ତ ଦେଉଛି । ଥରେ ଠିକ୍ କଲୁଁ, ଆକାଶମାର୍ଗରୁ ତଳକୁ ଖସିବୁଁ । ହଷ୍ଟେଲ ନିକଟରେ ଥାଏ ବଡ଼ ଗୋଟିଏ ପୋଖରୀ । ତା ଚାରିପାଖରେ ଥାଏ ବନ୍ଧ ଓ ବନ୍ଧ ଉପରେ ବଡ଼ ବଡ଼ ଆମ୍ବଗଛ । ବନ୍ଧ ତଳେ ପାଣିକୁ ଲାଗିଥାଏ କଣ୍ଟାପୂର୍ଣ୍ଣ ବୁଦା । ଠିକ୍ ହେଲା, ଯେଉଁ ଆମ୍ବଡାଳଟି ପୋଖରୀ ପାଣି ଉପରକୁ ମାଡ଼ିରହିଛି, ସେହି ଡାଳ ଉପରୁ ହାତରେ ଛତା ଫିଟାଇ ପାଣିକୁ ଲମ୍ଫ ଦେବାକୁ ହେବ । ମୁଁ ଓ ମୃତ୍ୟୁଞ୍ଜୟ ଜେନା ନାମକ ପିଲା ଏହି କାମ ଲାଗି ଗଛ ଉପରକୁ ଅନେକ କଷ୍ଟରେ ଉଠି, ଛତା ଫିଟାଇ ପାଣିକୁ ଡେଇଁଲାମାତ୍ରେ, ଛତାର ସିକ ଓ ଲୁଗା ଓଲଟିଗଲା ଓ ଆମେ ପଡ଼ିଲୁ କଣ୍ଟାବୁଦା ଉପରେ । ସାଙ୍ଗମାନେ ଟାଣି ଘୋଷାରି ବନ୍ଧ ଉପରକୁ ଆଣିଲା ବେଳକୁ ଆଣ୍ଠୁ ଓ ଗୋଡ଼ରୁ ଧାର ଧାର ରକ୍ତ ଭାସିଯାଉଥାଏ ।

ଦିନେ ଗୋଟିଏ ମେଗାଜିନରେ ପଢ଼ିଲୁଁ, ହିଟଲାର ତାଙ୍କ ନାଜି ଜାର୍ମାନୀର ବାଳକମାନଙ୍କୁ ଛାତ୍ରାବସ୍ଥାରୁ 'ହିଂସ୍ର' ହେବା ଲାଗି ନିୟମ ପ୍ରଚଳନ କରିଥିଲେ । ଆମେ ଆଲୋଚନା କଲୁଁ, ଜାର୍ମାନ ବାଳକମାନଙ୍କ ପରି ପ୍ରଥମରୁ ହିଂସ୍ର ନ ହେଲେ, ଭବିଷ୍ୟତରେ ଭାରତୀୟମାନେ ଇଂରେଜମାନଙ୍କୁ ତଡ଼ିଦେଇ ପାରିବେ ନାହିଁ । ଯେଉଁ ତିନିଜଣ ପିଲା ହିଂସାକାର୍ଯ୍ୟ ପାଇଁ ପ୍ରସ୍ତୁତ ହେଲେ, ସେମାନେ ଆଜି ପ୍ରତିଷ୍ଠିତ ବ୍ୟକ୍ତି, ତେଣୁ ନାମ ଲେଖୁନାହିଁ । ଦିନେ ଦେଖିଲାବେଳକୁ,ଡ୍ରିଲ୍ ସେଡ୍‌ର ବାଡ଼ ଭିତରେ କିଛି ମାଂସମିଶ୍ରିତ ଭାତ ରଖିଦିଆଯାଇଛି ଓ ତିନିଟା କୁକୁର ଖାଇବା ପାଇଁ ପଶିଯାଇଛନ୍ତି । ସଙ୍ଗେ ସଙ୍ଗେ ସେଡ୍‌ଟିର ଫାଟକ ବନ୍ଦ କରି ଲୁଚିରହିଥିବା ସେହି ତିନି ବାଳକ ହାତରେ ହକିଷ୍ଟିକ୍ ଧରି ଭିତରକୁ ପଶିଗଲେ ଓ ପିଟି ପିଟି କୁକୁରଗୁଡ଼ାକୁ ମାରିପକାଇଲେ । ଦୂରରୁ ସେହି ବୀଭତ୍ସ ଦୃଶ୍ୟ ଦେଖିଲାବେଳେ ମନକୁ ବିକାର ଆସୁଥାଏ ।

ଜାର୍ମାନମାନେ ଇହୁଦୀମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରୁଥିବାର ଅନୁକରଣରେ ଜଣେ ଛାତ୍ର ଦିନ ପରେ ଦିନ ପ୍ରଭାତକାଳରେ ଖେଳପଡ଼ିଆର ନିଘଞ୍ଚ ଘାସ ଉପରେ ଚାଲୁଥିବା ଅସଂଖ୍ୟ ଲମ୍ବ ଲମ୍ବ ଗେଣ୍ଡାଗୁଡ଼ିକ ମୁହଁରେ ଟିକିଏ ଟିକିଏ

ଲୁଣ ପକାଇ ସେଗୁଡ଼ିକୁ ମାରିଦେଉଥିଲେ । ସେହି ସାଙ୍ଗ ଭବିଷ୍ୟତରେ ଜଣେ ନିରୀହ ଭୂଦାନକର୍ମୀ ରୂପେ ଭୂମିକା ଗ୍ରହଣ କରିଥିଲେ ।

## କେତେଜଣ ଚିର ନମସ୍ୟ ଶିକ୍ଷକ

ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଶିକ୍ଷାଦାନ କରିଥିବା ଶିକ୍ଷକମାନଙ୍କ ମଧ୍ୟରେ ହାଇସ୍କୁଲର ଶିକ୍ଷକମାନେ ଛାତ୍ରମାନଙ୍କୁ ସର୍ବାଧିକ ପ୍ରଭାବିତ କରିପାରିଥାନ୍ତି ବୋଲି ମୋର ବ୍ୟକ୍ତିଗତ ବିଶ୍ୱାସ । କାରଣ, ପ୍ରାଥମିକ ଅବସ୍ଥାରେ ଶିକ୍ଷକମାନଙ୍କୁ ଜାଣିବା ଲାଗି ଛାତ୍ରର ବୟସ ହୋଇ ନଥାଏ, ଏବଂ କଲେଜ ଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ସାଧାରଣତଃ ଛାତ୍ରମାନଙ୍କ ନିକଟରୁ ଦୂରତ୍ୱ ରକ୍ଷା କରିଥାନ୍ତି । ଅପର ପକ୍ଷରେ, ହାଇସ୍କୁଲରେ ପଢ଼ିଲାସମୟରେ ଛାତ୍ରମାନଙ୍କର ଜ୍ଞାନଶକ୍ତି ଆସିଥିଲା ବେଳକୁ ଶିକ୍ଷକମାନେ ଥାନ୍ତି ନିକଟବର୍ତ୍ତୀ । ସେଥିଲାଗି, ଭାବପ୍ରବଣତା ଦୃଷ୍ଟିରୁ ସେମାନଙ୍କ ବ୍ୟକ୍ତିତ୍ୱ ପ୍ରତି ଅଳ୍ପବୟସ୍କ ଛାତ୍ରମାନଙ୍କର ମନୋଭାବ ଆବେଗଭରା ଥାଏ । ଶିକ୍ଷକମାନେ ଚିରଦିନ ପାଇଁ ମନେ ରହିଯାନ୍ତି ଏବଂ ସେମାନେ ମଧ୍ୟ ଭବିଷ୍ୟତରେ ନିଜର ଛାତ୍ରମାନଙ୍କୁ ସ୍ନେହଚକ୍ଷୁରେ ଦେଖିଥାନ୍ତି ।

ବାଲେଶ୍ୱର ଜିଲ୍ଲାସ୍କୁଲରେ ପଢ଼ିଲାବେଳେ ତିନିଜଣ ହେଡ୍‌ମାଷ୍ଟରଙ୍କୁ ଦେଖିଥିଲି । ସେମାନେ ଥିଲେ ଇବ୍ରାହିମ ସୁରାବର୍ଦ୍ଦୀ, ମହିମଚନ୍ଦ୍ର ନନ୍ଦୀ ଓ ରାୟସାହେବ ଭୀମ ରାଉତ ।

ଶିକ୍ଷକମାନଙ୍କ ମଧ୍ୟରେ ଥିଲେ ମନମୋହନ ପଟ୍ଟନାୟକ, ଜଗନ୍ନାଥ ସାହା, ନଗେନ୍ଦ୍ରନାଥ କର, ସରୋଜକାନ୍ତ କାନୁନଗୋ, ମହେଶ୍ୱର ମିଶ୍ର, ବୈଦ୍ୟନାଥ ମହାନ୍ତି, ମହମ୍ମଦ ଆବଦୁଲ୍ ହକ୍ ବେଗ୍, ଜଗନ୍ନାଥ ହରିଚନ୍ଦନ, ଲକ୍ଷ୍ମୀଧର ପଣ୍ଡା, କରୁଣାସିନ୍ଧୁ ରାୟ ଓ ବିଶ୍ୱନାଥ ପାଇକରାୟ ପ୍ରଭୃତି । ଶିକ୍ଷାଦାନ ସଙ୍ଗେ ଛାତ୍ରମାନଙ୍କର ଚରିତ୍ରଗଠନ ନିମନ୍ତେ ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଥାଏ । ବିଦ୍ୟାଳୟରୁ ପାଶ୍ କରି ଚାଲିଗଲେ ମଧ୍ୟ ପିଲାଙ୍କ ଉପରେ ସେମାନଙ୍କ ନୈତିକ ପ୍ରଭାବ ଅକ୍ଷୁଣ୍ଣ ଥାଏ । ପରିଣତ ବୟସରେ ମଧ୍ୟ ଜଣେ ପୁରାତନ ଛାତ୍ର ରୂପେ ହାଇସ୍କୁଲ ଶିକ୍ଷକମାନଙ୍କ ପ୍ରତି ରହିଥିବା ଭୟ ମୁଁ ଅନୁଭବ କରିଛି । ନୈତିକ ଅଧିକାର ବଳରେ ସେମାନେ ପୂର୍ବତନ ଛାତ୍ରମାନଙ୍କର ଭୁଲ ସଂଶୋଧନ ପାଇଁ କୁଣ୍ଠାବୋଧ କରନ୍ତି ନାହିଁ । ତାହାହିଁ ହେଉଛି ଶିକ୍ଷକ ଛାତ୍ର ସମ୍ପର୍କ ।

ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ଥରେ କେତେଜଣ ଏମ୍.ଏ. ପଢୁଥିବା ଛାତ୍ରଙ୍କୁ ନେଇ ପୁରୀ ଯାଇଥିଲି, କେତୋଟି ପ୍ରାଚୀନ କୀର୍ତ୍ତି ବିଷୟରେ ତଥ୍ୟ ସଂଗ୍ରହ ପାଇଁ । ରେଳଷ୍ଟେସନ୍ ବାହାରେ ବେଗ୍ ସାହେବଙ୍କୁ ଦେଖିପାରି

ପାଖକୁ ଯାଇ ପରିଚୟ ଦେଲି । ଦାଢ଼ି ପାଚିଯାଇଥାଏ । ଶିକ୍ଷକତା ଦିନର ସବଳ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଥାଏ । ମୋ ଛାତ୍ରମାନଙ୍କୁ ତାଙ୍କୁ ପ୍ରଣାମ କରିବାକୁ କହିଲି । କଥାବାର୍ତ୍ତାବେଳେ ପଚାରିଦେଲି, "ସାର୍, ଏଠାରେ ଲଜିଂ ଓ ଫୁଡ଼ିଂ ପାଇଁ ଭଲ ଜାଗା କେଉଁଠି ମିଳିବ (lodging and fooding) ? "

ବେଗ୍‌ସାହେବ ମୋ ଭାଷାରେ ଭୁଲ ଦେଖି ହସମିଶା ବିରକ୍ତିଭାବ ଦେଖାଇ କହିଲେ, "ମନ୍ମଥ, ବିଲାତରେ ପାଠ ପଢ଼ିଛୁ ଅଥଚ ତୋର ଇଂରାଜୀ ଭୁଲ ! 'ଫୁଡ୍' ଶବ୍ଦଟି ହେଉଛି ବିଶେଷ୍ୟ ପଦ (Noun), ତାକୁ 'ଫୁଡ଼ିଂ' କରି କ୍ରିୟାପଦ (verb) କରିଦେଲୁ କିପରି ?" ଗର୍ବ ସହକାରେ ମୋ ଛାତ୍ରମାନଙ୍କୁ ଚାହିଁ କହିଲି, "ଆମ ପୂଜ୍ୟ ଶିକ୍ଷକମାନଙ୍କର ଶ୍ରଦ୍ଧାପୂର୍ଣ୍ଣ ନୈତିକ ଅଧିକାରର ପରିଚୟ ପାଇଲ ! ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ଭୁଲ୍ ସଂଶୋଧନ ପାଇଁ ତାଙ୍କର ଯେଉଁ କ୍ଷମତା ଥିଲା, ଆଜି ତୁମର ମୁଖ୍ୟ ଅଧ୍ୟାପକ ହେଲାପରେ ବି ମୋ ଉପରେ ତାଙ୍କର ସେହି କ୍ଷମତା ରହିଛି । ଶିକ୍ଷକ ସବୁଦିନ ପାଇଁ ଶିକ୍ଷକ ।" ବେଗ୍‌ସାହେବ ଥିଲେ ଆମର ଇଂରାଜୀ ଶିକ୍ଷକ ।

୧୯୮୫ ମସିହାର କଥା । ମୁଁ ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଗୋଟିଏ ସାରସ୍ୱତ ସମାବେଶରେ ଭାଷଣ ଦେବାକୁ ଯାଇଥିଲି । ହଲ୍ ଭିତରକୁ ପଶିଲାବେଳେ କିଏ ଜଣେ ପଛରୁ ନାମଧରି ଡାକିଦେଲେ, "ମନ୍ମଥ, କିପରି ଅଛୁ ?" ତାଙ୍କୁ ହଠାତ୍ ଚିହ୍ନିପାରିଲି ନାହିଁ । ମୋ ପାଖରେ ଥାନ୍ତି ଶ୍ରଦ୍ଧାକାର ସୂପକାର । ସେ କହିଦେଲେ, "ସେ ହେଉଛନ୍ତି ମନମୋହନ ପଟ୍ଟନାୟକ ।" ନିମିଷ ମଧ୍ୟରେ ପାଖକୁ ଯାଇ ପଦଧୂଳି ନେଲାବେଳେ କହିଲି, "ସାର୍, ମୋର ଆଜି ସୌଭାଗ୍ୟ, ଅନେକ ବର୍ଷ ପରେ ଆପଣଙ୍କ ଦର୍ଶନ ଲାଭକଲି ।" ମଞ୍ଚ ଉପରକୁ ଯାଇ ଭାଷଣ ଦେବାକୁ ଛିଡ଼ା ହେଲି । ସଭାପତି ଓ ଶ୍ରୋତାମାନଙ୍କୁ ସମ୍ବୋଧନ ପୂର୍ବକ କହିଲି, "କିଛି କହିବାଲାଗି ମୋର ସାହସ ହେଉନାହିଁ । କାରଣ, ମୋ ସମ୍ମୁଖରେ ଯେଉଁ ମହାନ୍ ଶିକ୍ଷକ ଶ୍ରୀଯୁକ୍ତ ମନମୋହନ ପଟ୍ଟନାୟକ ମହୋଦୟଙ୍କୁ ଦେଖିପାରୁଛି, ତାଙ୍କ ଆଗରେ ମୁଁ ଏବେ ବି ଅଷ୍ଟମ ଶ୍ରେଣୀର ଜଣେ ଛାତ୍ର । ଚାଳିଶ ବର୍ଷରୁ ଅଧିକ ସମୟ ବିତିଯାଇଥିଲେ ସୁଦ୍ଧା ତାଙ୍କ ସମ୍ମୁଖରେ ମୋର ବୟସ ତେର କିମ୍ବା ଚଉଦ ।" ବାସ୍ତବିକ୍ ସେ ଦିନ କହିଲାବେଳେ ମନରେ ରହିଥାଏ ଭୁଲ୍ କରିବାର ଭୟ ! ଅନ୍ୟମାନଙ୍କ ଆଗରେ ନୁହେଁ, ନିଜ ଶିକ୍ଷକଙ୍କ ଆଗରେ ।

୧୯୪୨ ମସିହାରେ ମେଟ୍ରିକ୍ ପରୀକ୍ଷା ପରେ ବାଲେଶ୍ୱର ଜିଲ୍ଲାସ୍କୁଲରୁ ବିଦାୟ ନେଲି । ଫଳ ବାହାରିଲା ପରେ ଆରମ୍ଭ ହେଲା କଲେଜ ଜୀବନ ।

# ରେଭେନ୍ସା କଲେଜରେ ଅଧ୍ୟୟନ



## ସେ ବେଳର ସ୍ମୃତି

### ଭର୍ତ୍ତି ସମୟ, ଜୁଲାଇ ୧୯୪୨

ହାଇସ୍କୁଲ୍‌ରେ ପଢ଼ିଲାବେଳେ ଥରେ କେତେଜଣ ସାଙ୍ଗ ମିଶି କଟକ ବୁଲିବାକୁ ଆସିଥିଲୁଁ । ଦ୍ରଷ୍ଟବ୍ୟ ସ୍ଥାନ ତାଲିକାରେ ପ୍ରଥମ ନାମ ଥାଏ ରେଭେନ୍ସା କଲେଜ । ସେଠାରେ ଯେଉଁ ବ୍ୟକ୍ତିଙ୍କୁ ପ୍ରଥମେ ଦେଖିବା ଲାଗି ଠିକ୍ କରିଥିଲୁଁ, ସେ ଥିଲେ କଲେଜର ଅଧକ୍ଷ, ପରିଜାସାହେବ । ମାଇନର ପଢ଼ିବା ସମୟରୁ ତାଙ୍କ ନାମ ଶୁଣିଥିଲି । ମୋ ବଡ଼ମାମୁଁ କାଳୀକିଙ୍କର ସାମଲ ଥିଲେ ତାଙ୍କର ଛାତ୍ର । କାହାଣୀ ଆକାରରେ ତାଙ୍କ ମୁହଁରୁ ଶୁଣିଥାଏ ପରିଜା ଉପାଖ୍ୟାନ– ଦରିଦ୍ର ଘରେ ଜନ୍ମ, ପର ଘରେ କାମ କରି ମା ପାଠ ପଢ଼ାଇଥାନ୍ତି, ପ୍ରତିଭା ବଳରେ ଯାଇଥିଲେ ଉଚ୍ଚଶିକ୍ଷା ଲାଗି ଇଂଲଣ୍ଡ, ଅଧ୍ୟାପକ ଚାକିରି ପାଇଲାବେଳେ ତାଙ୍କ ମାମୁଁଙ୍କ ଖେଦୋକ୍ତି, ଯଥା: "ପ୍ରାଣକୃଷ୍ଣ, ଏତେ ପାଠ ପଢ଼ି ଶେଷରେ ମାଷ୍ଟରଟିଏ ହେଲୁ, ଥାନା ଦାରୋଗା ହୋଇଥିଲେ କେଡ଼େ ଖୁସି ହୋଇଥାନ୍ତି"– ଇତ୍ୟାଦି । ହାଇସ୍କୁଲ ଧରିଲାବେଳକୁ ପରିଜା ସାହେବ ଥିଲେ ଶିକ୍ଷାଜଗତରେ ଜଣେ ପ୍ରବାଦପୁରୁଷ ।

ରେଭେନ୍ସା କଲେଜ, ପରିଜା ସାହେବ ଓ କେତେଜଣ ଅଧ୍ୟାପକଙ୍କୁ ଦେଖିଲାପରେ କଲେଜରେ ପଢ଼ିବା ଲାଗି ମନରେ ଆଶା ଆସିଯାଇଥିଲା ।

ମେଟ୍ରିକ ପରେ ରେଭେନ୍ସାରେ ଭର୍ତ୍ତି ହେବାକୁ ଆସିଲି । କେଉଁ ବିଷୟଗୁଡ଼ିକ ନେଇ ପାଠ ପଢ଼ିବି ବୋଲି ଶଶିକାନ୍ତ ଭଞ୍ଜ ନାମକ ଉପର କ୍ଲାସର ଜଣେ ଛାତ୍ରଙ୍କୁ ପଚାରିଲି । ସେ କହିଥିଲେ, "ରେଭେନ୍ସାରେ ଯଦି ପଢ଼ିବ ଓ କଳା ବିଷୟ ନେଇ ଆଇ.ଏ.ରେ ଭର୍ତ୍ତି ହେବ,ତେବେ ଅର୍ଥନୀତି ବିଷୟଟି ନିଶ୍ଚୟ ରଖ, କାରଣ ସଦାଶିବ ମିଶ୍ରଙ୍କ ଛାତ୍ର ରୂପେ ମନ୍ତ୍ରମୁଗ୍ଧ ହେଲାପରି ତାଙ୍କ ଲେକ୍‌ଚାର ଶୁଣିବ । ଅର୍ଥନୀତି ସାଙ୍ଗକୁ ଇତିହାସ ମଧ୍ୟ ରଖିଥାଅ ।" ୧୯୪୨ ଜୁଲାଇ ମାସ ଦ୍ୱିତୀୟ ସପ୍ତାହରେ କଲେଜରେ ନାମ ଲେଖାଇଲି ଓ ପଶ୍ଚିମ ଛାତ୍ରାବାସରେ ରହିଲି ।

## ୧୯୪୨ 'ଅଗଷ୍ଟ ବିପ୍ଳବ'

ଭର୍ତ୍ତି ହେବାର କେତୋଟି ସପ୍ତାହ ମଧ୍ୟରେ ଆରମ୍ଭ ହେଲା 'ଭାରତ ଛାଡ଼' ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବ । ସର୍ବଭାରତୀୟ ସେହି ମହାନ ବିପ୍ଳବ ଦ୍ୱାରା ସାରା ଦେଶ ପ୍ରକମ୍ପିତ ହେଲା । ରେଭେନ୍ସା କଲେଜର ଛାତ୍ରମାନେ ସେଥିରେ ଝାସ ଦେଲେ ।

ଦିନେ ବେଳ ଓଳି ପଶ୍ଚିମ ଛାତ୍ରାବାସର ଉପର ମହଲାରେ ମୋ ରୁମ୍‌ରେ ଶୋଇଥାଏଁ । ସକାଳବେଳା କଲେଜର ଡାକ୍ତର କେଶବଚନ୍ଦ୍ର ସାହୁ ଜ୍ୱର ପାଇଁ ଇଞ୍ଜେକ୍‌ସନ ଦେଇଥିଲେ । ପତଳା ଅଧୋବସ୍ତ୍ର ବା ଆଣ୍ଡାରଉଏଆରଟି ପିନ୍ଧି ଖାଲିଦେହରେ ବିଛଣାରେ ପଡ଼ିଥିଲି । ଛାତ୍ରାବାସର ତଳ ତାଲାକୁ ଲାଗିଥାଏ କଲେଜର ମୁଖ୍ୟ ଅଫିସ କକ୍ଷ । ଦିନ ପ୍ରାୟ ୨ଟା ବେଳେ ସେଠାରେ ପ୍ରବଳ କୋଳାହଳ ଶୁଭିଲା । କ'ଣ ହେଉଛି ଦେଖିବା ଲାଗି ତଳକୁ ଚାଲିଆସିଲି । ଅଫିସ୍‌ଘର ଚାରିପଟେ ଧୂଆଁ ଦେଖି ସେ ଆଡ଼କୁ ଦୌଡ଼ିଲି । ଛାତ୍ରମାନେ ଏଣେ ତେଣେ ପଳାଉଥାନ୍ତି । ଅଫିସ ଭିତରେ ନିଆଁ ଜଳୁଥାଏ । କିଛି ନ ଭାବି ପଶିଗଲି । କିନ୍ତୁ କିରାଣୀମାନଙ୍କୁ ପଳାଉଥିବା ଦେଖି ଶୀଘ୍ର ବାହାରି ଆସିଲି ।

ଅଫିସ୍ ଭିତରୁ ବାହାରି ବାରନ୍ଦା ବାଟରେ ହଷ୍ଟେଲ ଆଡ଼କୁ ଦୌଡ଼ିଲାବେଳେ ହଠାତ୍ ୱାର୍ଡ଼େନ ବଳଭଦ୍ର ପ୍ରସାଦଙ୍କ ହାବୁଡ଼ରେ ପଡ଼ିଗଲି । ମୋ ହାତଟି ଧରିପକାଇ ପଚାରିଦେଲେ, "ତୁମର ନାମ କ'ଣ ? ରୁମ୍ ନମ୍ବର କେତେ ?" ମୁଁ ଉତ୍ତର ଦେଲି ଓ ଖଣ୍ଡିଏ କାଗଜରେ ସେ ଟିପିପକାଇଲେ । ତାଙ୍କର ଆଖି ଦୁଇଟି ନିବଦ୍ଧ ଥାଏ ମୋର ପୋଷାକ ବିହୀନ ଦେହ ଉପରେ । ଅନୁମାନ କରିପାରିଲି, ନିଶ୍ଚୟ ସେ ମୋତେ ଅଗ୍ନିସଂଯୋଗକାରୀ ଦଳରେ ସାମିଲ କରିବେ ।

ଧରପଗଡ଼ ଚାଲିଲା । ପ୍ରଥମ ଦଫାରେ କେତେଜଣ ଛାତ୍ରନେତା ଏରେଷ୍ଟ ହେଲେ । ଦ୍ୱିତୀୟ ଦଫାରେ ସନ୍ଦେହ ଘେରରେ ଥିବା ଛାତ୍ରମାନଙ୍କୁ ଜେରା ପାଇଁ ଧରି ନିଆଗଲା । ସେମାନଙ୍କ ମଧ୍ୟରେ ମୁଁ ଥାଏଁ । ପୋଲିସ ଇନ୍ସପେକ୍ଟର କାଶୀନାଥ ମିଶ୍ର ତଦନ୍ତ କରୁଥିଲେ । ତାଙ୍କ ପାଖରେ ବସିଥାନ୍ତି ଅଧ୍ୟାପକ ବଳଭଦ୍ର ପ୍ରସାଦ । ସେ କହିଲେ, "ଏହି ପିଲାକୁ ଖାଲିଦେହରେ ଅଫିସ ଭିତରୁ ବାହାରି ଆସିବା ମୁଁ ନିଜେ ଦେଖିଛି ।" ଇନ୍ସପେକ୍ଟର ସାହେବ ମୋର ନାମ, ବାପାଙ୍କ ନାମ, ଗାଁ ଓ ଥାନାର ନାମ ଇତ୍ୟାଦି ପଚାରି ତାଙ୍କ ଡାଏରୀରେ ଲେଖିବାକୁ ଲାଗିଲେ ।

ମୋର ମନେପଡ଼ିଗଲା, କାଶୀନାଥ ମିଶ୍ରଙ୍କୁ ପିଲାବେଳେ ଆମ ଗାଁରେ ଦେଖିଛି । ସେତେବେଳେ ସେ ଥିଲେ ଭୋଗରାଇ ଥାନାର ଦାରୋଗା । ଗୋଟିଏ ଡକାୟତି ଘଟଣାର ଅନୁସନ୍ଧାନ ପାଇଁ ଆମ ଗାଁକୁ ଯାଇଥିଲେ । ମୋ ବାପା ଥିଲେ ଅଞ୍ଚଳ ପ୍ରେସିଡେଣ୍ଟ୍ । ଯେତେବେଳେ ବାପାଙ୍କ ନାମ ଓ ଗାଁ ନାମ ଇତ୍ୟାଦି ଶୁଣିଲେ, ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହି ମନ୍ତବ୍ୟ ଦେଲେ, ''ଏତେ ଅଳ୍ପ ବୟସର ପିଲା ଅଫିସ ପୋଡ଼ିବାକୁ ସାହସ କରିବା ସମ୍ଭବ ନୁହେଁ । ଦ୍ୱିତୀୟରେ, ମାତ୍ର ଏକମାସ ପୂର୍ବେ କଲେଜରେ ଭର୍ତ୍ତି ହୋଇଛି ।'' ମୁଁ ନିର୍ଦ୍ଦୋଷ ସାବ୍ୟସ୍ତ ହୋଇ ବାହାରି ଆସିଲି । ବାପାଙ୍କ ନାମଟି ଯୋଗୁଁ ବିପଦରୁ ରକ୍ଷା ପାଇଗଲି । ୱାର୍ଡେନ ପ୍ରତିବାଦ ନକରି ଗମ୍ଭୀର ଭାବରେ ବସିରହିଥିଲେ । ଅପର ପକ୍ଷରେ, ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ଜଗଦାନନ୍ଦ ମହାନ୍ତି ଆନନ୍ଦିତ ହେବା ଦେଖିଲି । ସେ ଥିଲେ ମୋର ଇତିହାସ ଅଧ୍ୟାପକ ।

ଅଫିସ୍‌ପୋଡ଼ିର କିଛିଦିନ ପରେ ରେଭେନ୍ସା କଲେଜରୁ ବାହାରିଲା ଛାତ୍ର ପଟୁଆର । ସେଥିରେ ଯୋଗ ଦେଲି । ଛାତ୍ରନେତାମାନେ ପ୍ରତ୍ୟେକ ଧାଡ଼ିରେ ଚାରିଜଣ ଲେଖାଏଁ ଛାତ୍ରଙ୍କୁ ଛିଡ଼ା କରାଇ ଶୋଭାଯାତ୍ରାର ରୂପ ନିର୍ଣ୍ଣୟ କଲେ । ଆଗଧାଡ଼ି ଗୁଡ଼ିକରେ ରହିଲେ ବଡ଼ ବଡ଼ ପିଲାମାନେ । ମୁଁ ଥିଲି ଦଶମ ଧାଡ଼ିରେ । ମୋ ଦୁଇ ପାଖରେ ଥିଲେ ଛାତ୍ରାବାସର ଦୁଇଜଣ ଅନ୍ତେବାସୀ, ପୁରୀର ଚନ୍ଦ୍ରଶେଖର ନାୟକ ଓ 'ବବି' ଡାକନାମର ଜଣେ ପିଲା । ଆମ ପଛରେ ଥାଏ ଅନେକଗୁଡ଼ିଏ ଧାଡ଼ି । 'ଭାରତ ମାତା କୀ ଜୟ', 'ମହାତ୍ମା ଗାନ୍ଧି କୀ ଜୟ', 'ବ୍ରିଟିଶ୍ ସରକାର ଭାରତ ଛାଡ଼', 'ଇନ୍ କିଲାବ୍ ଜିନ୍ଦାବାଦ', ଇତ୍ୟାଦି ଧ୍ୱନି ଦେଇ ଛାତ୍ରମାନେ ଆକାଶମଣ୍ଡଳ ପ୍ରକମ୍ପିତ କଲେ ।

ପଟୁଆର କଲେଜ ଗେଟ୍‌ରୁ ବାହାରି ରାଣୀହାଟ ରାସ୍ତାରେ ମେଡ଼ିକାଲ କଲେଜ ହତା ଦିଗକୁ ଅଗ୍ରସର ହେଲା । ଅସଂଖ୍ୟ ନରନାରୀ ରାସ୍ତାର ଉଭୟ ପାଖରେ ଛିଡ଼ା ରହିଥାନ୍ତି । ମେଡ଼ିକାଲ ହତା ମଧ୍ୟରେ ମେଡ଼ିକାଲ ଛାତ୍ରମାନେ ପଟୁଆରରେ ଯୋଗ ଦେଲେ । ହତାର ପଶ୍ଚିମ ଗେଟ୍ ପାଖରେ ପହଞ୍ଚିଲାବେଳକୁ ସେଠାରେ ଅପେକ୍ଷା କରିଥାନ୍ତି ଲାଠି ଓ ବନ୍ଧୁକଧାରୀ ପୋଲିସ ଫୌଜ ସହିତ ସ୍ୱୟଂ ଇଂରେଜ ପୋଲିସ୍‌ସାହେବ ହାର୍‌ଗ୍ରିଭସ୍ ।

ସେହି ମୁହୂର୍ତ୍ତର ଦୃଶ୍ୟ ପ୍ରାଞ୍ଜଳ ଭାବରେ ମନେ ରହିଛି । ଆଗଧାଡ଼ି ଗୁଡ଼ିକରେ ଥିବା ଉପର କ୍ଲାସ୍‌ର ନେତୃସ୍ଥାନୀୟ ଛାତ୍ରମାନେ ପୋଲିସ୍‌ସାହେବଙ୍କ ବଜ୍ରଗମ୍ଭୀର ସ୍ୱରରେ ଉଚ୍ଚାରିତ ହେଉଥିବା ଆଦେଶମାନ ଶୁଣିପାରୁଥିଲେ । କିନ୍ତୁ ଆମ କାନକୁ

ଶୁଭୁଥାଏ ବାରମ୍ବାର ହୁଇସିଲ୍ ଧ୍ୱନି । ଯେଉଁମାନେ ସତର୍କବାଣୀ ଶୁଣିପାରିଲେ, ସେମାନେ ଅବିଳମ୍ବେ ପଛକୁ ଆସି "ଆଗେଇ ଚାଲ", "ଆଗେଇ ଚାଲ" କହି ଆମକୁ ଉତ୍ସାହିତ କରିବାକୁ ଲାଗିପଡ଼ିଲେ । ଆମେ ଗଳା ଫଟାଇ ସ୍ଲୋଗାନ ଦେଇ ଆଗେଇଚାଲିଲୁଁ । ହଠାତ୍ ହାର୍‌ଗ୍ରିଭସ୍ ସାହେବଙ୍କ ଗର୍ଜନ ଶୁଭିଲା—"Charge" । ଆରମ୍ଭ ହୋଇଗଲା ଲାଠିମାଡ଼ । ମୋ ଦୁଇପାଖରେ ଥିବା ଚନ୍ଦ୍ରଶେଖର ଓ ବବି ଉଚ୍ଚତାରେ ମୋ ଠାରୁ ଲମ୍ବ ଥାନ୍ତି । ବସିଗଲା ସେମାନଙ୍କ ମୁଣ୍ଡରେ ଶକ୍ତ ପ୍ରହାର । ମୁହୂର୍ତ୍ତ ମଧ୍ୟରେ ଆର୍ତ୍ତନାଦ ସହ ରକ୍ତାକ୍ତ ଅବସ୍ଥାରେ ସେମାନେ କଚାଡ଼ି ପଡ଼ିଲେ । ଦୁହିଙ୍କ ମଧ୍ୟରେ ଥାଇ ମୁଁ ମଧ୍ୟ ଧରାଶାୟୀ ହେଲି । ସେତେବେଳେ ଅନ୍ୟତ୍ର ଲାଠିଚାର୍ଜ ଚାଲିଥାଏ । କୋଳାହଳ ଓ ଚିତ୍କାର ମଧ୍ୟରେ ସମସ୍ତେ ଏଣେ ତେଣେ ଛତ୍ରଭଙ୍ଗ ଦେଉଥାନ୍ତି । ଗୋଡ଼ାଇ ଗୋଡ଼ାଇ ପୋଲିସ୍ ମାଡ଼ ଦେଉଥାଏ । ତେଣେ ଆସିଯାଉଥାଏ ସନ୍ଧ୍ୟା । ମାଟି ଉପରୁ ଉଠି ଚାହିଁଲା ବେଳକୁ ଗେଟ୍ ପାଖରେ ହାରଗ୍ରିଭସ୍ ସାହେବ ଆଉ ନଥିଲେ । କିନ୍ତୁ ଚାରିଆଡ଼େ ଥିଲେ ଲାଠିଧାରୀ ପୋଲିସ୍ ଫୋର୍ସ ।

କିଛି ସମୟ ପରେ ମେଡ଼ିକାଲ ଛାତ୍ରମାନେ ଆହତ ଦୁଇବନ୍ଧୁଙ୍କୁ ମୋ ପାଖରୁ ଟେକିନେବା ଦେଖି ଗୋଡ଼ରୁ ଜୋତା କାଢ଼ିପକାଇ ମୁଁ ପ୍ରାଣମୂର୍ଚ୍ଛା ଦୌଡ଼ିଲି । ମେଡ଼ିକାଲ ହତାର ଶେଷ ସୀମାରେ ଥିବା ଡ୍ରେନ୍ ଭିତରେ ଖସିପଡ଼ି ସେଥିରୁ ଉଠିଲାବେଳକୁ ବାଁ ଗୋଡ଼ରୁ ରକ୍ତ ଝରୁଥାଏ । ପଶିଯାଇଥିବା ଭଙ୍ଗା କାଚଟି ଟାଣିପକାଇ ଦୌଡ଼ି ଦୌଡ଼ି ପହଞ୍ଚିଲି କଲେଜ ପାଖ କସ୍‌ମୋପୋଲିଟାନ୍ ମେସ୍‌ରେ । ସେଠାରେ ମୋ ସାନ ଭେଣେଇ ରାଧାବିନୋଦବାବୁ ଗୋଡ଼ରେ ବ୍ୟାଣ୍ଡେଜ୍ ବାନ୍ଧିଲେ ଓ ଧରି ଧରି ହଷ୍ଟେଲରେ ନେଇ ଛାଡ଼ିଲେ ।

ରାତି ପାହିଲାବେଳକୁ ହଷ୍ଟେଲ ଛାଡ଼ିବା ଲାଗି ନୋଟିସ୍ ବାହାରିଗଲା । ଚନ୍ଦ୍ରଶେଖରର ମା ପୁରୀରୁ ଆସି ବିକଳ ଭାବରେ କାନ୍ଦୁଥିବାର ଦେଖିଲି । ମୁଣ୍ଡରେ ମୋଟା ବ୍ୟାଣ୍ଡେଜ ବାନ୍ଧି ପାଖରେ ବସିଥାନ୍ତି ଚନ୍ଦ୍ରଶେଖର । ମା ଓ ପୁଅଙ୍କ ମଧ୍ୟରେ ସେବେଳର ବାକ୍ୟାଳାପ ମନେ ରହିଛି । ମା କହିଲେ, "ଘରକୁ ନେବାକୁ ଆସିଛି । ମୋ ଦୁଃଖ କଥା ଟିକିଏ ଭାବିଥା ।" ପୁଅ ଉତ୍ତର ଦେଲେ, "ନିଜ ମା କଥା ଭାବିବି, ନା ଭାରତମାତାଙ୍କ କଥା ଭାବିବି କହିଲୁ ? ନା, ଘରକୁ ଯିବି ନାହିଁ । ଦେଶ ପାଇଁ ଜେଲ୍ ଯିବି ।" ଏବେ ଚନ୍ଦ୍ରଶେଖର ସହିତ ଦେଖା ହେଲେ, ତାଙ୍କର ସେହି ବାକ୍ୟଗୁଡ଼ିକ ସୂଚାଇ ଦେଇଥାଏଁ । ଆହତ ବବିକୁ ବ୍ୟାଣ୍ଡେଜ୍ ବନ୍ଧା ଅବସ୍ଥାରେ ସେଦିନ ଦେଖିଥିଲି । କିନ୍ତୁ ଭବିଷ୍ୟତରେ ଆଉ କେବେ ତାଙ୍କୁ ଦେଖିନାହିଁ ।

ଅନେକ ବର୍ଷ ପରେ, ୧୯୮୩ ମସିହାରେ, ତଦାନୀନ୍ତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ଆଦେଶରେ 'ଜାତୀୟ କଂଗ୍ରେସର ଇତିହାସ' ସଂକଳନ କଲାବେଳେ, ସଂଗ୍ରାମ ଯୁଗର ଅନେକ ଘଟଣା ଅନୁଧ୍ୟାନ କରିବାକୁ ହେଉଥାଏ ।'ଭାରତ ଛାଡ଼' ଆନ୍ଦୋଳନ କାଳରେ କଟକ ମେଡ଼ିକାଲ ହତାରେ ଯେପରି ଲାଠିମାଡ଼ ଘଟିଥିଲା, ସେହିପରି ଘଟଣା ଭାରତର ଅସଂଖ୍ୟ ସ୍ଥାନରେ ଦେଖିବାକୁ ମିଳିଥିଲା । ଜଣେମାତ୍ର ଇଂରେଜ ପୋଲିସ୍‌ସାହେବ ଦଳେ ଭାରତୀୟ ପୋଲିସ ସହିତ କିପରି ଭାବରେ ହଜାର ହଜାର ଉତ୍ୟକ୍ତ ଛାତ୍ର ଓ ବିକ୍ଷୁବ୍ଧ ଜନତାର ସମ୍ମୁଖୀନ ହେବାକୁ ସାହସ କରିଥିଲେ, ସେହି ରହସ୍ୟ ଉଦ୍‌ଘାଟନ କଲାବେଳେ ହୃଦ୍‌ବୋଧ ହୋଇଥିଲା ଯେ, ସେତେ ପର୍ଯ୍ୟନ୍ତ ଇଂରେଜମାନଙ୍କର ବିଶ୍ୱାସ ଥାଏ ଗାନ୍ଧିଯୁଗର ସଂଗ୍ରାମୀମାନେ ନିଜେ ମରିବେ ବା ମାଡ଼ ଖାଇବେ, କିନ୍ତୁ ସାହେବମାନଙ୍କ ପ୍ରତି ହିଂସା ଆଚରଣ କରିବେ ନାହିଁ ।

## ଗ୍ରାମାଞ୍ଚଳରେ ବିପ୍ଳବର ରଣଧ୍ୱନି

ରେଭେନସା କଲେଜ ଅନିର୍ଦ୍ଦିଷ୍ଟ ସମୟ ପାଇଁ ବନ୍ଦ ରହିଲା ପରେ ନିଜ ଘର ପାଖରେ ପହଞ୍ଚିଲି । ସେପ୍ଟେମ୍ବର ମାସ । ଭୋର ସମୟରୁ ଜଳେଶ୍ୱର ଷ୍ଟେସନ ପାଖରୁ ୪୩ କିଲୋମିଟର ବାଟ ଚାଲି ଚାଲି ରାତ୍ରି ପ୍ରାୟ ଏକ ପ୍ରହର ବେଳେ ଗାଁ ମୁଣ୍ଡ ନାଫରାଇ ଆଡ଼ିଆ ଉପରେ ପହଞ୍ଚିଲାବେଳକୁ ସେଠାରେ ଅନ୍ଧକାର ମଧ୍ୟରେ ଅନେକ ଲୋକଙ୍କୁ ରୁଣ୍ଡ ହୋଇଥିବା ଦେଖିଲି । ହାତରେ କାଠିବିଡ଼ା ଧରି ସେଥିରେ ନିଆଁ ଲଗାଇ ପ୍ରଜ୍ୱଳିତ ମଶାଲ ଆକାରରେ ଉପରକୁ ଧରି ପ୍ରଥମେ ଗାଁର ନିରକ୍ଷର ନିରୀହ ଭଣ୍ଡାରି ନାକ ବାରିକ ପାଟି କରିଉଠିଲେ, ''ମହାତ୍ମା ଗାନ୍ଧିଙ୍କି ଜୟ ।'' ଅନ୍ୟମାନେ ତାଙ୍କ ସହିତ ବାରମ୍ବାର ସେହି ସ୍ଲୋଗାନ ଦେଲେ । ଜାଣି ପାରିଲି, 'ଭାରତଛାଡ଼' ବିପ୍ଳବ ନିପଟ ଗାଁଗଣ୍ଡାକୁ ବ୍ୟାପିଯାଇଛି ।

ତାହା ହିଁ ଥିଲା ବିପ୍ଳବର ବାସ୍ତବ ରୂପ । ସମ୍ପୂର୍ଣ୍ଣ ନେତୃତ୍ୱହୀନ ଗଣ ଆନ୍ଦୋଳନ । ଅଗଷ୍ଟ ୯ ତାରିଖ ପରେ ପରେ ଭାରତର ଆପାଦମସ୍ତକ ସବୁ ସ୍ଥାନର କଂଗ୍ରେସକର୍ମୀଙ୍କୁ ଜେଲକୁ ନିଆ ସରିଥାଏ । ସର୍ବମହାନ୍ ନେତାମାନଙ୍କ ଠାରୁ ଆରମ୍ଭ କରି ଅଜ୍ଞାତ ଓ ଅନାମଧେୟ କର୍ମୀମାନଙ୍କୁ ମଧ୍ୟ ସରକାର ଧରି ନେଇଥାନ୍ତି । ଅଳ୍ପବୟସ୍କ ବାଳକମାନେ ମଧ୍ୟ ବାଦ୍ ପଡ଼ି ନ ଥିଲେ । ମୋ ସାଙ୍ଗରେ ମେଟ୍ରିକ ପାଶ କରିଥିବା ଆମ ଅଞ୍ଚଳର ଦୁର୍ଗାଶଙ୍କର ଦାସଙ୍କୁ ଜେଲରେ ଭର୍ତ୍ତି କରାଗଲା, କାରଣ ତାଙ୍କ କକାପୁଅ ଭାଇ ପ୍ୟାରୀମୋହନ ଦାସ ଥିଲେ କଂଗ୍ରେସକର୍ମୀ । ଏପରି ସ୍ଥଳେ, ଦିଗ୍‌ଦର୍ଶନ ଦେବାକୁ କେହି ନଥିବା ସମୟରେ ଗାଁଗଣ୍ଡାର ଜନସାଧାରଣ ଆପେ ଆପେ ହିଁ ସରକାର ବିରୋଧରେ ବିଦ୍ରୋହ ଲାଗି ବାହାରିପଡ଼ିଥିଲେ । ସେହି ଅଭୂତପୂର୍ବ ଜନଜାଗରଣ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ଦୋହଲାଇ ଦେଲା ।

ଘର ପାଖରେ ପହଞ୍ଚିଲାବେଳକୁ ବାପା ଜମି କିଣିବା ସନ୍ଧାନରେ ବାସୁଦେବପୁର ଅଞ୍ଚଳକୁ ଚାଲିଯାଇଥିଲେ । ସେତେବେଳେ ସେ ଇଲାକାରେ ଚାଷ ଉପଯୋଗୀ ଭୂମି ପତିତ ଆକାରରେ ପଡ଼ିରହିଥାଏ ଏବଂ ଅଳ୍ପ ମୂଲ୍ୟରେ କଣିବାକୁ ମିଳୁଥାଏ । ମୁଁ ଭାବିଲି, ବାପା ଫେରିଆସିଲେ ପ୍ରଥମେ ତାଙ୍କୁ 'ପ୍ରେସିଡେଣ୍ଟ' ପଦ ଛାଡ଼ିଦେବାକୁ କହିବି । ସେତେବେଳକୁ ଗ୍ରାମାଞ୍ଚଳର ଲୋକେ ସବୁଆଡ଼େ ଧ୍ୱନି ଦେଉଥିଲେ, "ଚୌକିଦାରୀ ଛାଡ଼ିଦିଅ" "ଦଫାଦାରୀ ଛାଡ଼ିଦିଅ," "ପ୍ରେସିଡେଣ୍ଟ ପଦବୀ ଛାଡ଼ିଦିଅ" ଇତ୍ୟାଦି, କାରଣ ଦେଶବାସୀଙ୍କ ଆଗରେ ସେମାନେ ଥିଲେ ବ୍ରିଟିଶ ସରକାରଙ୍କ କ୍ଷୁଦ୍ରାଦପି କ୍ଷୁଦ୍ର ପ୍ରତିନିଧି । ମୋର ଦୃଢ଼ ବିଶ୍ୱାସ ଥାଏ, ବାପା ମୋ କଥା ରଖିବେ । ପିଲାବେଳରୁ ଆମ ଘରେ ନନ୍ଦକିଶୋର ଦାସ, ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ନୀଳାମ୍ବର ଦାସ ଓ କରୁଣାକର ପାଣିଗ୍ରାହୀ ଇତ୍ୟାଦି କଂଗ୍ରେସ୍ ନେତାମାନଙ୍କୁ ଦେଖିବାକୁ ପାଇଥାଏଁ ଓ କଂଗ୍ରେସ ସହିତ ଆମ ଘରର ସୁସମ୍ପର୍କ କଥା ଜଣାଥାଏ । ତେଣୁ, ବିପ୍ଳବ କାଳରେ ସରକାରୀ ସ୍ୱୀକୃତି ପ୍ରତ୍ୟାଖ୍ୟାନ କଲେ ବାପାଙ୍କର ମର୍ଯ୍ୟାଦା ବଢ଼ିବ ବୋଲି ମୋର ଧାରଣା ହେଲା ।

ଗାଁରେ ପହଞ୍ଚି ମୁଁ ଓ ପାଖ ଗାଁର ରେଭେନ୍ସା ଛାତ୍ର ଶଶିକାନ୍ତ ଭଞ୍ଜ ମିଳିମିଶି ସଭା ସମିତି ଆୟୋଜନ କରିବାକୁ ଲାଗିପଡ଼ିଲୁଁ । ଶ୍ରଦ୍ଧାପୁର ନାମକ ସ୍ଥାନର ପ୍ରଶସ୍ତ ହାଟପଡ଼ିଆରେ ଗୋଟିଏ ବିଶାଳ ଜନସମାବେଶ ପାଇଁ ବନ୍ଦୋବସ୍ତ କରାଗଲା । ସେତେବେଳକୁ ସବୁଆଡ଼େ ଗୋଟିଏ ବିଷୟରେ ଲୋକେ ଚିନ୍ତାଗ୍ରସ୍ତ ଥିବା ଦେଖାଗଲା । ବିଷୟଟି ଥିଲା, 'ଚେତାବନୀ' ନାମକ ସଦ୍ୟପ୍ରକାଶିତ ପୁସ୍ତିକାରେ ସୃଷ୍ଟିର ଆସନ୍ନପ୍ରାୟ ପ୍ରଳୟ ବିଷୟକ ଭବିଷ୍ୟବାଣୀ ଘୋଷଣା କରାଯାଇଛି । ବହିରେ ଲେଖାଥାଏ, ଭାରତର ସର୍ବଶ୍ରେଷ୍ଠ ଜ୍ୟୋତିଷୀମାନେ ନିର୍ଭୁଲ ଗଣନା ଦ୍ୱାରା ଜାଣିପାରିଛନ୍ତି ଯେ, ଠିକ୍ ଅମୁକ ଦିନ ଏତେଘଣ୍ଟା ସମୟରେ ମହାପ୍ରଳୟ ଘଟିବ, ପୃଥିବୀ ଧ୍ୱଂସ ପାଇଯିବ ଓ ମନୁଷ୍ୟଜାତିର ଚିହ୍ନବର୍ଣ୍ଣ ରହିବ ନାହିଁ । ସ୍ୱୟଂ କଳ୍କୀ ଅବତାରଙ୍କ ଆବିର୍ଭାବ ଫଳରେ କଳିଯୁଗର ସମାପ୍ତି ଘଟିବ ! ଆମେ ଯେଉଁ ଜାଗାକୁ ଗଲୁଁ, ସରଳ ଗ୍ରାମବାସୀମାନଙ୍କର ସେହି ଗୋଟିଏ କଥା– ମହାପ୍ରଳୟ ଆସୁଛି । ହାଟ ବାଟରେ ଗୋଟିଏ ପ୍ରଶ୍ନ, ମରିବାକୁ ଆଉ କେତେ ଦିନ ବାକି ରହିଲା ? ସେମାନଙ୍କ ଅକାଟ୍ୟ ଅନ୍ଧବିଶ୍ୱାସ ବିପକ୍ଷରେ ସ୍ୱର ଉତ୍ତୋଳନ କରିବା ଆମ ପକ୍ଷରେ ଅସମ୍ଭବ ଜଣାଯାଉଥାଏ ।

ତଥାପି ସଭାର ଆୟୋଜନ ଚାଲିଲା । ସେ ଦିନ ଥାଏ, ୧୯୪୨ ମସିହା ସେପ୍ଟେମ୍ବର ମାସ ୨୭ ତାରିଖ । ଶ୍ରଦ୍ଧାପୁର ହାଟ ଉପରେ ପାର୍ଶ୍ୱବର୍ତ୍ତୀ ଅନେକ

ଗ୍ରାମରୁ ପଟୁଆରରେ ଆସି ଲୋକମାନେ ପହଞ୍ଚିଲେ । ବଙ୍ଗ ସୀମାରୁ ସୁଧୀର ଘୋଷ ଓ ଶୈଲେନ୍ ବୋଷ ନାମକ ଦୁଇଜଣ ଯୁବନେତା ବିରାଟ ଶୋଭାଯାତ୍ରାରେ ଆସି ଆମ ସହିତ ଯୋଗ ଦେଲେ । ସେମାନେ ବଙ୍ଗଳା ଭାଷାରେ ଓଜସ୍ୱିନୀ ବକ୍ତୃତା ଦେଇ ଜନତାକୁ ତନ୍ମୟ କଲେ । ଶଶୀବାବୁ ଓ ମୁଁ ସରକାରଙ୍କ ବିରୋଧରେ ବିଷୋଦ୍‌ଗାର କଲୁଁ । ବୟୋବୃଦ୍ଧ ସଭାପତି ନରେନ୍ଦ୍ରନାଥ ଦାସ ମହୋଦୟ ବିମର୍ଷ ମନରେ ବ୍ୟାଖ୍ୟା କରିଗଲେ 'ଚେତାବନୀ' ଘୋଷିତ ମହାପ୍ରଳୟ କଥା । ବିପ୍ଳବ ଓ ମହାପ୍ରଳୟ, ଏହି ଉଭୟ ଘଟଣାର ମିଶ୍ରିତ ଆଶଙ୍କା ମଧ୍ୟରେ ସନ୍ଧ୍ୟାର ବିଳମ୍ବିତ ପ୍ରହରରେ ସଭାକାର୍ଯ୍ୟ ଶେଷ ହେଲା ।

ଅନେକ ପରେ 'ଚେତାବନୀ'ର ରହସ୍ୟ ଉଦ୍‌ଘାଟିତ ହେଲା । ମହାପ୍ରଳୟର ଭୟ ସୃଷ୍ଟି କରି ଅନ୍ଧବିଶ୍ୱାସୀ ଭାରତବାସୀଙ୍କୁ 'ଭାରତଛାଡ଼' ବିପ୍ଳବ କାଳରେ ଅହରହ ଆତଙ୍କିତ ଅବସ୍ଥାରେ ରଖିବା ନିମନ୍ତେ ବ୍ରିଟିଶ ସରକାର ଭାରତର ସବୁ ଆଞ୍ଚଳିକ ଭାଷାରେ ସେହି ପୁସ୍ତିକା ମୁଦ୍ରଣପୂର୍ବକ ଲକ୍ଷ ଲକ୍ଷ ସଂଖ୍ୟାରେ ବାଣ୍ଟିଦେଇଥିଲେ । ଏପରି ପ୍ରଖର ଯୋଜନା ସ୍ୱୟଂ ବ୍ରିଟିଶ ପ୍ରଧାନମନ୍ତ୍ରୀ ଉଇନ୍‌ଷ୍ଟନ୍ ଚାର୍ଚ୍ଚିଲ୍‌ଙ୍କ ଉର୍ବର ମସ୍ତିଷ୍କରୁ ଉତ୍ପତ୍ତି ଲାଭ କରିଥିଲା ବୋଲି କେହି କେହି କହିଥିଲେ ।

ଆମ ୨୭ ତାରିଖ ସଭାର ତିନିଦିନ ପରେ ବାପା ଘରେ ପହଞ୍ଚିଲେ । ସେତେବେଳେ ମଧ୍ୟରାତ୍ରି । ଦୁଆରକୁ ଉଠିପଡ଼ି ମୋତେ ଦେଖି କହିପକାଇଲେ, ''ଗୁଳି ମୁହଁରୁ ବଞ୍ଚିଯାଇଛି । ଆହା, ଆଖି ଆଗରେ କି ଦୃଶ୍ୟ ଦେଖିଲି ! କେତେ ଲୋକ ଗୁଳିରେ ମଲେ ! କି ଚିତ୍କାର ! କେତେ ଭୟଙ୍କର ଘଟଣା !'' ବସିପଡ଼ି ବାପା ତାଙ୍କର ଅଭିଜ୍ଞତା ବର୍ଣ୍ଣନା କରିଗଲେ । ଦକ୍ଷିଣ ବାଲେଶ୍ୱରର ସମୁଦ୍ର ତଟବର୍ତ୍ତୀ ବାସୁଦେବପୁର ଥାନାର ଇରମ ନାମକ ଗାଁ ନିକଟରେ ସେ ଜମି ତଲାସ ଲାଗି ଯାଇଥିଲାବେଳେ ସେଠାରେ ଗୋଟିଏ ସଭା ହେବ ବୋଲି ଶୁଣିଲେ । ସାଙ୍ଗରେ ଯାଇଥିବା ନିତ୍ୟାନନ୍ଦ ପାଣିଗ୍ରାହୀଙ୍କ ସହିତ ସଭାକୁ ଗଲାବେଳେ ପାଖଆଖ ଗାଁଗୁଡ଼ିକରୁ ଅବିରତ ଶଙ୍ଖଧ୍ୱନି ଶୁଭୁଥାଏ । ସଭା ସ୍ଥଳରେ କ୍ରମେ କ୍ରମେ ଲୋକସମାଗମ ଆରମ୍ଭ ହେଲା । ଖୋଲା ପଡ଼ିଆର ପାଖେ ପାଖେ ଥାଏ କଣ୍ଟାବୁଦା, କାଦୁଅ ମାଟି ଓ ଗଡ଼ିଆ । ବାପା ଗୋଟିଏ ଜାଗାରେ ବସିଗଲେ । ସ୍ଥାନଟି ସନ୍ତସନ୍ତିଆ ଥିବାରୁ ଉଠିପଡ଼ି ଶୁଖିଲା ଜାଗା ଖୋଜୁଥିଲାବେଳେ ହଠାତ୍ କୋଳାହଳ ଓ ଆର୍ତ୍ତନାଦ ଶୁଣି ଦେଖିଲେ, ଗୁଳି ଚାଲିଛି । ସମସ୍ତଙ୍କୁ ପଳାଇବା ଦେଖି ବାପା ଓ ପାଣିଗ୍ରାହୀ ବିକଳରେ ବିଲ ହିଡ଼ ଓ କଣ୍ଟାବୁଦା ଡେଇଁ ଦୌଡ଼ି ଦୌଡ଼ି ଅନେକ ଦୂରରେ ଅନ୍ଧକାର ଭିତରେ ଗୋଟିଏ ଗଡ଼ିଆ ଆଡ଼ିରେ ପଡ଼ିରହିଲେ ।

ବାପାଙ୍କ ଦେଖିଥିବା ସେହି ଲୋମହର୍ଷଣକାରୀ ଘଟଣା ଘଟିଥିଲା ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ, ଇରମ ନାମକ ସ୍ଥାନରେ । ଇରମ ଗୁଳିକାଣ୍ଡରେ ମରିଥିଲେ ୨୯ ଜଣ ଓ ଆହତ ହୋଇଥିଲେ ଶତାଧିକ ବ୍ୟକ୍ତି ।

## ଅକ୍ଟୋବର ୧୬ ତାରିଖର ପ୍ରଳୟଙ୍କର ତୋଫାନ

ଆମର ଶ୍ରଦ୍ଧାପୁର ସଭା ପରେ ଗୁଜବ ଶୁଣାଗଲା, ପୋଲିସ ମୋତେ ଓ ଅନ୍ୟ କେତେଜଣଙ୍କୁ ଗିରଫ କରିବ । ଥାନା ଦାରୋଗାଙ୍କ ହାତରେ ସେ ସମୟରେ ଅମାପ କ୍ଷମତା ଥାଏ । ଯାହାକୁ ଇଚ୍ଛା ଧରିନେଇ ଜେଲ ପଠାଇ ପାରୁଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ବ୍ରିଟିଶ ଶାସନ କାଳର ନିମ୍ନପଦସ୍ଥ ପୋଲିସ କର୍ମଚାରୀମାନେ ସାମାନ୍ୟ ଲାଞ୍ଚ ପାଇଲେ ଦାଗୀ, ଡକାୟତ ଓ ଖୁନୀ ଆସାମୀମାନଙ୍କୁ ଛାଡ଼ିଦେଉଥିଲେ, ଅଥଚ, ଗାନ୍ଧିଯୁଗର ଆନ୍ଦୋଳନବେଳେ କୌଣସି କଂଗ୍ରେସକର୍ମୀଙ୍କୁ ଛାଡ଼ିଦେବାକୁ ନାରାଜ ଥିଲେ । ପୋଲିସ ଥିଲା ବିଦେଶୀ ସାମ୍ରାଜ୍ୟର ମେରୁଦଣ୍ଡ । ଅଳ୍ପ ବେତନ ଭୋଗୀ ସିପାହି ପାଖରୁ ସର୍ବୋଚ୍ଚ ପୋଲିସ କର୍ମକର୍ତ୍ତାମାନଙ୍କର ପ୍ରଭୁଭକ୍ତି ଥାଏ ବିଦେଶୀ ସରକାରର ସଞ୍ଜୀବନୀ । ଓଡ଼ିଶାର କୌଣସି ଜଣେ ପୋଲିସ ଅଫିସାର ନିଜର ବିପ୍ଳବୀ ପୁଅକୁ ସରକାରଙ୍କ ହାତରେ ଧରାଇଦେଇ ପରମ ତୃପ୍ତି ଓ ରାୟସାହେବ ଉପାଧି ପାଇଥିଲେ ବୋଲି ପ୍ରବାଦ ଥାଏ ।

୧୯୪୨ ମସିହାର ବିପ୍ଳବକାଳରେ 'ବ୍ରିଟିଶ ରାଜ'କୁ 'ପୋଲିସ ରାଜ' ବୋଲି କୁହାଯାଉଥିଲାବେଳେ, 'ପୋଲିସ ରାଜ୍'କୁ 'ଆତଙ୍କ ରାଜ୍' ରୂପେ ଦେଖିବାକୁ ମିଳିଥିଲା । ଅକ୍ଟୋବର ମାସ ଆରମ୍ଭରୁ ଭୋଗରାଇ ଥାନାର ପାର୍ଶ୍ୱବର୍ତ୍ତୀ ମେଦିନୀପୁର ଜିଲ୍ଲାର କାନ୍ଥି ସବ୍‌ଡିଭିଜନରେ ସୈନ୍ୟ ଓ ସିପାହିମାନେ ଗାଁପରେ ଗାଁରେ ନିଆଁ ଲଗାଇବାକୁ ଆରମ୍ଭ କଲେ । ଲୁଟତରାଜ୍, ନିର୍ମମ ପ୍ରହାର ଓ ବ୍ୟାପକ ଧରପଗଡ଼ ଇତ୍ୟାଦିର ଖବର ମିଳୁଥାଏ । ନିଷ୍ଠୁର ଭାବରେ ବିପ୍ଳବ ଦମନ କରିବା ନିମନ୍ତେ ବ୍ରିଟିଶ ସରକାର ବଦ୍ଧପରିକର ଥିଲେ ।

ସେ ଦିନ ଥିଲା ଅକ୍ଟୋବର ୧୫ ତାରିଖ । ରାତି ପାହିଲା ଆଗରୁ ଶଶୀ ଭଞ୍ଜ ଆମ ଘରେ ହାଜର ହେଲେ ଓ ବାପାଙ୍କୁ ଜଣାଇଲେ "ନବା ମୁନସି ଆମକୁ ଆଜି ଧରିବାକୁ ଆସିବ ।" ବାପା ଜାଣିନେଲେ, ଭୋଗରାଇ ଥାନାର ଦୁର୍ଦ୍ଦାନ୍ତ ଦାରୋଗା ନବବାବୁ ଜଣେ ପ୍ରେସିଡେଣ୍ଟଙ୍କ ପୁଅକୁ ମଧ୍ୟ ଧରିବାକୁ କୁଣ୍ଠାବୋଧ କରିବ ନାହିଁ । ଶଶୀବାବୁ ଲୁଚିବା ଲାଗି ବ୍ୟସ୍ତ ହୋଇପଡ଼ିଲେ । ଶେଷରେ ଠିକ୍ ହେଲା, ଘରଡିହର ଶେଷ ସୀମାରେ ଥିବା ଗୋରୁଗୁହାଳ ଭିତରେ ସେ ଆତ୍ମଗୋପନ କରିବେ ଓ ମୁଁ ଘରେ ରହିବି । "ଯାହା ହେବାକୁ ଥିବ ତାହା ହିଁ ହେବ" ବୋଲି କହି ବାପା ମୋତେ ସାନ୍ତ୍ୱନା ଦେଲେ ।

ଆକାଶ ମେଘାଚ୍ଛନ୍ନ ଥାଏ । ପବନର ଗତି ବଢ଼ିଚାଲିଥାଏ । ବର୍ଷା ଆସିଯିବ ବୋଲି ଜଣାଯାଉଥାଏ । ଗୁହାଳ ଭିତରୁ ଗାଈଗୋରୁ ଅଡ଼ାଇ ଗୋରୁମଣା ପିଲାଟି ଆଡ଼ିଆ ଦିଗକୁ ବାହାରିଗଲା । ଶଶୀବାବୁ ସପଟିଏ ହାତରେ ଧରି ଗୁହାଳଘରେ ପଶିଲେ । ଠିକ୍ ପ୍ରଭାତ ସମୟରେ ସତକୁ ସତ ଖରାପ ପାଣିପାଗ ସତ୍ତ୍ୱେ ଦାରୋଗାବାବୁ ଓ ଦୁଇଜଣ କନେଷ୍ଟବଳ ତଳେ ସାଇକେଲ ରଖି ପିଣ୍ଡା ଉପରକୁ ଉଠିପଡ଼ିଲେ । ‘‘ଏପରି ମେଘୁଆ ପାଗରେ କିପରି ଆସିଲେ ?’’ବୋଲି ବାପା ପ୍ରଶ୍ନ କଲାରୁ ଚେୟାର ଉପରେ ବିସିପଡ଼ି ଦାରୋଗା ଉତ୍ତର ଦେଲେ, ‘‘ଏ ସମୟରେ ପୋଲିସବାଲା ମେଘ ବର୍ଷାକୁ ଡରିଲେ ଚଳିବ ? ଶୁଣିଲେଣି ତ କାଛିରେ କ’ଣ ହେଉଛି ! ଶ୍ରଦ୍ଧାପୁର ସଭାର ଖବର ପାଇ ସଙ୍ଗେ ସଙ୍ଗେ ଆସିପାରିଲି ନାହିଁ । ବନ୍ଧ ସେପାଖରେ କେତେଗୁଡ଼ାଙ୍କୁ ଧରି ସାରିଲା ପରେ, ଆଜି ଏ ଆଡ଼କୁ ଆସିଛି ।’’

ଆଗମନର କାରଣ ପଚରିବାବେଳେ ହଠାତ୍ ମେଘଗର୍ଜନ ଶୁଣି ଦାରୋଗାବାବୁ ଆକାଶକୁ ଚାହିଁ କହିଲେ, ‘‘ବର୍ଷା ଆସିଯିବ । ମୋତେ ତୁରନ୍ତ ଦେଉଳା ହାଟରେ ପହଞ୍ଚିବାକୁ ପଡ଼ିବ । ଦୁଇଟା ବଙ୍ଗାଳୀ ପାଜି ସେଠାକୁ ଆସିଛନ୍ତି ଶୁଣିଲି । ଆଗାମୀ କାଲି ଏତେବେଳକୁ ଫେରିବି । ଆପଣ ସରବଣୀର ଶଶୀଭଞ୍ଜଟାକୁ ଓ ଆପଣଙ୍କ ପୁଅକୁ ପାଖରେ ରଖିଥିବେ ।’’ ଦୁଇଟା ପଇଡ଼ ପାଣି ପିଇପକାଇ ଦାରୋଗା ବିଦାୟ ନେଲେ । ତାଙ୍କ ପକ୍ଷରେ ଅନୁମାନ କରିବା ଅସମ୍ଭବ ଥିଲା ଯେ ଚେତାବନୀ-ବର୍ଣ୍ଣିତ ମହାପ୍ରଳୟ ନ ହେଲେ ମଧ୍ୟ, ଅଳ୍ପ କେତୋଟି ଘଣ୍ଟା ମଧ୍ୟରେ ଭୋଗରାଇ ଥାନାରେ ଘଟିଯିବ ଏକ ଖଣ୍ଡପ୍ରଳୟ ।

ସକାଳ ପାଖରୁ ପବନର ଗତି ବଢ଼ିଚାଲିଲା । ଅପରାହ୍ନରେ ଆରମ୍ଭ ହେଲା ବର୍ଷା । ସନ୍ଧ୍ୟାବେଳକୁ ବର୍ଷା ପ୍ରବଳ ଆକାର ଧାରଣ କଲା । ସେଥି ସହିତ ଆସିଗଲା ବାତ୍ୟା । ସାରା ରାତି ବର୍ଷା ଓ ଝଡ଼ ଲାଗିରହିଲା । ଆସିଗଲା ଅକ୍ଟୋବର ୧୬ ତାରିଖ । ରାତି କେତେବେଳେ ପାହିଲା, ତାହା ଜାଣିହେଲା ନାହିଁ । ମେଘର ଅନ୍ଧାର ତଳେ ଦିନର ଆଲୋକ ହଜିଯାଇଥାଏ । ବାପା ପିଣ୍ଡାକୁ ବାହାରିଲାମାତ୍ରେ ଗୋରୁମଣା ପିଲାଟି ପ୍ରଥମ ଦୁଃସଂବାଦ ଜଣାଇଲା ଯେ ଗତ ସନ୍ଧ୍ୟାରେ ଗୋରୁଗୁଡ଼ିକ ଆଡ଼ିଆରୁ ଫେରି ନାହାଁନ୍ତି, ସେ ମଧ୍ୟ ଖୋଜିବା ପାଇଁ ଯାଇପାରି ନାହିଁ । ସେତେବେଳେ ଭାବିହେଲା ନାହିଁ ଯେ ସେହି ୩୨ଟା ଗାଈଗୋରୁ ଆଉ ଫେରିବେ ନାହିଁ ।

ପ୍ରାୟ ଦିନ ଏକ ପ୍ରହର ସମୟରେ ଆରମ୍ଭ ହେଲା ପ୍ରକୃତ ତୋଫାନ । ଅକସ୍ମାତ ମେଘମାଳା ତଳକୁ ଖସି ଆସିଲା ପରି ଜଣାଗଲା । ପବନର ଗତି

ଭୟଙ୍କର ଭାବେ ବଢ଼ିଚାଲିଲା । ଆମ ଘରର ହତାଟି ଥାଏ ଏକ ଏକର ପରିମିତ ବିସ୍ତୃତ ସ୍ଥାନ । ବାଡ଼ ପାଖରେ ଥାଏ ୫୦ରୁ ବେଶି ନଡ଼ିଆଗଛ ଓ ଅନେକ ଗୁଡ଼ିଏ ବଡ଼ ବଡ଼ ଆମ୍ବଗଛ । ମାତ୍ର କେତୋଟି ମିନିଟ ମଧ୍ୟରେ ଗୋଟିକ ପରେ ଗୋଟିଏ ନଡ଼ିଆଗଛ ମୂଳରୁ ଭାଙ୍ଗିପଡ଼ିଲା । ତା ପରେ କଡ଼ ମଡ଼ ଶବ୍ଦ କରି ଭାଙ୍ଗିପଡୁଥାଏ ଆମ୍ବଗଛ ଗୁଡ଼ିକର ମୋଟା ମୋଟା ଡାଳ । ଘର ଆଗରେ ଥାଏ ଗୋଟିଏ ପ୍ରଶସ୍ତ ମାଟି ମେଲା । ସାଧୁ, ସନ୍ନ୍ୟାସୀ ଓ ବାବାଜିମାନେ ଆସିଲେ ସେଥିରେ ଆଶ୍ରୟ ନେଉଥାନ୍ତି । ପବନର ଗୋଟିଏ ଧକ୍କାରେ ମେଲା ଘରଟି ଓଲଟିପଡ଼ିଲା । ତାହାର ଅଳ୍ପ ଦୂରରେ ଥାଏ ଚାରିଗୋଟି ଅମାର । ପ୍ରତ୍ୟେକଟିରେ ଧାନ ଭର୍ତ୍ତି ହୋଇଥାଏ । ମୁହୂର୍ତ୍ତ ମଧ୍ୟରେ ଅମାରର ଚାଳଗୁଡ଼ିକ ଶୂନ୍ୟେ ଶୂନ୍ୟେ ଉଡ଼ିଗଲା । ତା ପରେ ଉଡ଼ିବାକୁ ଲାଗିଲା ଧାନ ଓ ପରେ ପରେ ବାଉଁଶ ତିଆରି ଅମାରଗୁଡିକ ଉଡ଼ିଯାଇ ପଡ଼ିଲା ପୋଖରୀ ଭିତରେ । ସେହି ଦୃଶ୍ୟଟି ଦେଖିସାରି ବାପା ତାଙ୍କ ଶୟନକକ୍ଷ ଭିତରକୁ ଚାଲିଗଲେ ଓ ଚଦର ଘୋଡ଼ିହୋଇ ଶୋଇପଡ଼ିଲେ । ପିଣ୍ଡାରେ ଛିଡ଼ା ରହି ମୁଁ ଦେଖିଲି, ଦିବସ ବେଳର ଅନ୍ଧକାରରେ ଭୌତିକ କାଣ୍ଡ ପରି ସବୁକିଛି ଭାଙ୍ଗିପଡୁଛି ।

ମାଟି ପରସ୍ତର ଘରଗୁଡ଼ିକ ଅଚିରେ ଭାଙ୍ଗିପଡ଼ିବ ଜାଣି ମା, ସାନଭଉଣୀ ଓ ସାନଭାଇ, ଏବଂ ଘରର ପରିଚାରକ ପରିଚାରିକାମାନଙ୍କୁ ଗୋଟିଏ ପକ୍କା କୋଠରି ମଧ୍ୟରେ ଆଶ୍ରୟ ନେବାକୁ କହିଲି । ସେଦିନ ଖାଇବା ପିଇବା କଥା କାହାରି ମନକୁ ଆସି ନଥିଲା ।

ଅପରାହ୍ନ ବେଳକୁ ତୋଫାନ ତୀବ୍ରତର ଆକାର ଧାରଣ କଲା । ମାଟିଘର ଗୁଡ଼ିକ ଭାଙ୍ଗିପଡ଼ିଲା ଓ ଘର ଭିତରେ ପାଣି ମାଡ଼ିଗଲା । ସେତେବେଳକୁ ପଡ଼ିଶା ଘରଗୁଡ଼ିକର କାନ୍ଥ ଭାଙ୍ଗିପଡ଼ିବା ଶବ୍ଦ ଶୁଭୁଥାଏ । ଅନୁମାନ କଲି, କେହି କେହି ଆମ ପକ୍କା ଘରେ ଆଶ୍ରୟ ନେବାପାଇଁ ଆସିଯିବେ । ଘର ପିଣ୍ଡାରେ ପବନ ମାଡ଼ ଖାଇ ଦୁଇଜଣ ସବଳକାୟ ପରିଚାରକଙ୍କ ସହିତ ଛିଡ଼ା ହୋଇ ରହିଲି । ପ୍ରବଳ ବର୍ଷା ଓ ଝଡ଼ ମଧ୍ୟରେ ପ୍ରାୟ ଉଲଗ୍ନ ଅବସ୍ଥାରେ ମାଟି ଉପରେ ହାମୁଡ଼ି ହାମୁଡ଼ି ଜଣେ ଜଣେ ପୁରୁଷ ବା ସ୍ତ୍ରୀ ଆସିବାକୁ ଲାଗିଲେ । ଗୋଟିଏ ଛୋଟ ପିଲାକୁ ତା ମା କୋଳରୁ ଧରି ନେବାଲାଗି ତଳକୁ ଗୋଡ଼ ରଖିଲାକ୍ଷଣି ପବନ ଧକ୍କାରେ ପେଣ୍ଡୁ ପରି ଚାରିଥର ଗଡ଼ିଗଲି । ତଥାପି କୌଣସି ପ୍ରକାରେ ମା ଓ ପିଲାକୁ ଉପରକୁ ଟାଣିଆଣିଲି । ଚାହୁଁ ଚାହୁଁ ବାରଣ୍ଡାରେ ପ୍ରାୟ ୩୦ ଜଣ ନରନାରୀ ଓ ପିଲା ଭର୍ତ୍ତି ହୋଇଗଲେ । ସମସ୍ତେ ଥଣ୍ଡାରେ ଥରୁଥାନ୍ତି । ପ୍ରକୃତିର ତାଣ୍ଡବଲୀଳା ସମୟରେ କାହାରି ପାଟିରେ ଭାଷା ନଥାଏ ।

ଚାରିଟି ପକ୍କା କୋଠରିରୁ ଦୁଇଟିରେ ଲୋକମାନେ ଭର୍ତ୍ତି ହେଲେ । ପରେ ପରେ ଆଉ କେତେଜଣ ଆସିଲେ । କୋଠରିଗୁଡ଼ିକ ଅନ୍ଧକୂପ ପରି ଦେଖାଯାଉଥାଏ । ଲଣ୍ଠନ ଓ ଡିବିରି ସେତେବେଳକୁ ହାଣ୍ଡିଶାଳର ମାଟିଗଦା ତଳେ । ଦିଆସିଲି କାଠି ଜାଳି, ଘରର ପୁରୁଣା ଲୁଗା, ମଶାରି ଓ ଚାଦରଗୁଡ଼ିକ ଖଣ୍ଡ ଖଣ୍ଡ ଆକାରରେ ଚିରି ବିବସ୍ତ୍ର ଲୋକମାନଙ୍କୁ ଧରାଇ ଦିଆଗଲା ସାମୟିକ ଲଜ୍ଜା ନିବାରଣ ପାଇଁ । ଜୀବନ ରହିଯାଇଛି, ସେତିକି ଥିଲା ଯଥେଷ୍ଟ । କେହି କେହି ବିକଳ ହେଉଥାନ୍ତି ଅନ୍ୟମାନଙ୍କ କଥା ଚିନ୍ତାକରି । ଘରର ଯେଉଁମାନେ ଆସିପାରିଲେ ନାହିଁ, ସେମାନେ ମରିଥିବେ ବା ବଞ୍ଚିଥିବେ, ତାହା ହିଁ ଥିଲା ଚିନ୍ତା । ଗତ ରାତିରୁ କେହି କିଛି ଖାଇ ନଥାନ୍ତି, ହାଣ୍ଡି ଦୁଇଟିରେ ଥିବା ମୁଢ଼ିରୁ ପ୍ରତ୍ୟେକଙ୍କ ହାତରେ ମୁଠାଏ କରି ଦିଆଗଲା । ଜଣେ ଜଣେ କଞ୍ଚା ଚାଉଳ ଚୋବାଇ କ୍ଷୁଧା ନିବାରଣ କଲେ ।

ମଧ୍ୟରାତ୍ର ପରେ ପବନର ସୁଉ ସୁଉ ଶବ୍ଦ ଧୀରେ ଧୀରେ କମିଆସିଲା । ଝରକା ଦେଇ ଚାହିଁଲାବେଳକୁ ଘର ବାଡ଼ିଟି ଗୋଟିଏ ହ୍ରଦ ପରି ଦେଖାଯାଉଥାଏ । ଜଣେ ବୃଦ୍ଧ ଚିତ୍କାର କରିଉଠିଲେ, "ଦରିଆ ମାଡ଼ିଆସିଲାଣି, ଘର ବୁଡ଼ିଯିବ ।" ସେହି ମୁହୂର୍ତ୍ତଟି ଥିଲା ସର୍ବାଧିକ ଆତଙ୍କପ୍ରଦ ସମୟ । କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବେ ଝଡ଼ର ଗତି ବଦଳିଗଲା । ଗତ ୨୪ ଘଣ୍ଟା ଯାବତ୍ ଦକ୍ଷିଣ-ପଶ୍ଚିମ ଦିଗରୁ ମାଡ଼ିଆସୁଥିବା ତୋଫାନ ଅକସ୍ମାତ ଗତି ବଦଳ କରି ଉତ୍ତର-ପଶ୍ଚିମ ଦିଗରୁ ବହିବାକୁ ଲାଗିଲା । ପ୍ରକୃତରେ ଯଦି ସେ ରାତ୍ରିର ମଧ୍ୟପ୍ରହର ବେଳକୁ ଦରିଆ ଜଳ ମାଡ଼ିଆସିଥିବ, ତେବେ ପବନର ଗତି ପରିବର୍ତ୍ତନ ଫଳରେ ସମୁଦ୍ରର ଜଳପ୍ରବାହ ମଧ୍ୟ ଫେରିପଡ଼ିଥିବ । ଉଲ୍ଲେଖ ଯୋଗ୍ୟ ଯେ, ସେହି ୧୬ ତାରିଖ ରାତିର ତୋଫାନ ସମୟରେ ଭୋଗରାଇର ପାର୍ଶ୍ୱବର୍ତ୍ତୀ କାନ୍ଥି ଇଲାକାର ସମୁଦ୍ରକୂଳବର୍ତ୍ତୀ ଅନେକଗୁଡ଼ିଏ ଗ୍ରାମ ସମୁଦ୍ରଗର୍ଭରେ ବିଲୀନ ହୋଇଯାଇଥିଲା । ଦଶରୁ ପନ୍ଦର ହଜାର ମନୁଷ୍ୟ ଭାସିଯାଇଥିଲେ ବୋଲି ଶୁଣାଯାଇଥାଏ । ବ୍ରିଟିଶ ସରକାର ମହାଯୁଦ୍ଧରେ ବ୍ୟସ୍ତ ଥିଲେ । ଜାପାନୀମାନେ ଭାରତର ପୂର୍ବସୀମାନ୍ତ ଦିଗକୁ ମାଡ଼ିଆସୁଥିଲେ । ତୋଫାନରେ ବଙ୍ଗଦେଶର କେତେ ଲୋକ ମଲେ, ତାହାର ଗଣନା କରିବାଲାଗି ସରକାରଙ୍କର ଅବକାଶ ବା ଆଗ୍ରହ ନ ଥିଲା ।

ସେହି କାଳରାତ୍ରିର ଶେଷପ୍ରହର ବେଳକୁ ବର୍ଷା ଓ ପବନ ଏକାଥରକେ ବନ୍ଦ ହୋଇଗଲା । ଉଷାକାଳର କ୍ଷୀଣ ଆଲୋକରେ ଘରୁ ବାହାରିଲାବେଳକୁ ଘରବାଡ଼ି, ରାସ୍ତାଘାଟ ଓ ସମଗ୍ର ଗାଁ ର ରୂପ ସମ୍ପୂର୍ଣ୍ଣଭାବେ ବଦଳିଯାଇଥାଏ । ଚାରିଆଡ଼େ ପଶୁ ପକ୍ଷୀ ମରି ପଡ଼ିଥାନ୍ତି । ଆଡ଼ିଆ ଉପରେ ପଡ଼ିରହିଥାଏ ଅସଂଖ୍ୟ ଗୋରୁଗାଈର ଶବ । ପାଖ ବିଲରେ ଭାସୁଥିଲା ସାତଜଣ ଲୋକଙ୍କର ମୃତଦେହ ।

ଭାଗ୍ୟକୁ ଆମ ଗାଁର କେହି ମରି ନଥିଲେ, କିନ୍ତୁ ଗାଁ ସାରା ଗୋଟିଏ ବି ଘରର ଚାଳ ନଥାଏ, ଅଧିକାଂଶ ଘରର କାନ୍ଥ ଭୁଷୁଡ଼ି ପଡ଼ିଥାଏ । ଶହ ଶହ ସଂଖ୍ୟାରେ ଗଛଗୁଡ଼ିକ ଭାଙ୍ଗି ପଡ଼ିଥିବାରୁ ରାସ୍ତାକୁ ବାହାରିବା ସମ୍ଭବ ହେଲା ନାହିଁ । ଦୁଇଦିନ ପାଇଁ କାହାରି ଘରେ ଚୁଲି ଲାଗିଲା ନାହିଁ । ଭାଙ୍ଗି ପଡ଼ିଥିବା ଶହ ଶହ ନଡ଼ିଆଗଛର କନ୍ଦା ଓ ପଇଡ଼ ଥିଲା ଖାଦ୍ୟ ।

୧୯୪୨ ମସିହାର ସେହି ବାତ୍ୟା ଭୋଗରାଇ ଥାନାର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଗଲା । ତାହାପରେ, ୧୯୪୩ରେ ଆସିଥିଲା ସୁବର୍ଣ୍ଣରେଖାର ପ୍ରବଳ ବନ୍ୟା, ଏବଂ ତା ପରେ ପରେ ୧୯୪୪ ମସିହାର ଭୟଙ୍କର ଦୁର୍ଭିକ୍ଷ, ଯେଉଁ ଦୁର୍ଭିକ୍ଷରେ ବଙ୍ଗଦେଶର ଲକ୍ଷ ଲକ୍ଷ ମନୁଷ୍ୟ ମଶା ମାଛି ପରି ମରି ପଡ଼ିଥିଲେ ।

## କଲେଜକୁ ପ୍ରତ୍ୟାବର୍ତ୍ତନ ଓ ତା ପରେ

କେତେକ ସପ୍ତାହ ପରେ କଲେଜ ଖୋଲିଲା । ଭବିଷ୍ୟତରେ ଆନ୍ଦୋଳନ କରିବେ ନାହିଁ ବୋଲି ଛାତ୍ରମାନଙ୍କୁ ମୁଚାଲିକାରେ ଦସ୍ତଖତ୍ କରିବାକୁ ହେଲା । କେତେକ ଛାତ୍ର ପଢ଼ିବା ଲାଗି ଆଉ ଫେରିଲେ ନାହିଁ । ତେଣେ, କ୍ରମେ କ୍ରମେ 'ଭାରତଛାଡ଼' ବିପ୍ଳବ ଶିଥିଳ ହୋଇ ଆସୁଥାଏ । ଅପର ପକ୍ଷରେ, ଛାତ୍ରମାନଙ୍କ ମଧ୍ୟରେ ରାଜନୈତିକ ସଚେତନତା ବୃଦ୍ଧି ପାଉଥାଏ ।

ଉଦ୍ଦେଶ୍ୟହୀନ ଭାବରେ ଅଥଚ ଖୁସିମନରେ ମୁଁ ମଝେ ମଝେ ଖଦଡ଼ ଧୋତି ଓ ସାର୍ଟ ପିନ୍ଧି କ୍ଳାସକୁ ଯାଉଥାଏ । ଅନୁମାନ କରି ନଥିଲି, ମୋ ପୋଷାକ ଦେଖି ସହପାଠୀମାନେ ମୋତେ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖିବେ, ଏପରିକି କେହି କେହି ଅଧ୍ୟାପକ ମଧ୍ୟ । ଦିନେ ସନ୍ଧ୍ୟାରେ ଜଗତବନ୍ଧୁ ଦାସ ନାମକ ଜଣେ ସହପାଠୀ ଓ ତାଙ୍କ ବନ୍ଧୁମାନେ ମୋତେ କହିଲେ, "ତୁମେ ଛାତ୍ର ଫେଡେରେସନରେ ଯୋଗ ଦିଅ ।" ରାଜି ହୋଇଗଲି । ଯୁବ କମ୍ୟୁନିଷ୍ଟନେତା ମନମୋହନ ମିଶ୍ରଙ୍କ ପଛେ ପଛେ ଚାଲି ତାଙ୍କର ବୈପ୍ଳବିକ ସଂଗୀତ ଗାଇବାକୁ ଭଲ ଲାଗିଲା । ଥରେ, ଛାତ୍ର ଫେଡେରେସନର ଗୋଟିଏ ସମ୍ମିଳନୀରେ ରାମଚନ୍ଦ୍ର ରାମଙ୍କ ଭାଷଣଶୈଳୀ ଦ୍ୱାରା ଏତେଦୂର ମୋହିତ ହୋଇଥିଲି, ଭବିଷ୍ୟତରେ ସେହି ଶୈଳୀ ଅନୁକରଣ କରି ସାଧାରଣ ସ୍ଥାନରେ କହିବା ପାଇଁ ଚେଷ୍ଟା କଲି । ପରିଣତ ବୟସରେ ତାଙ୍କ ସହିତ ଦେଖା ହେଲେ ମୁଁ କହୁଥାଏଁ, "ଆପଣ ମୋର ଗୁରୁ ।"

ଶୀତଛୁଟି ଆସିଲା । ବାତ୍ୟାବିଧ୍ୱସ୍ତ ଭୋଗରାଇ କଥା ମନେପଡୁଥାଏ । ଘରକୁ ଯିବାଲାଗି କଟକ ଷ୍ଟେସନରେ ଦିନେ ଟିକଟ କାଟୁଥିଲି । ମୋ ଆଗରେ ଥାନ୍ତି ଜଣେ ଦରିଦ୍ର ବୃଦ୍ଧ ବ୍ୟକ୍ତି । ଦୁଇଟି ଟଙ୍କା ବଢ଼ାଇଦେଇ ସେ ତାଙ୍କ ଷ୍ଟେସନର

ନାମ କହିଲେ । ଟିକଟବିକ୍ରେତା ରେଳକର୍ମଚାରୀ ଟିକଟ ଧରାଇଦେଲେ, କିନ୍ତୁ ବାକି ପ୍ରାପ୍ୟ ଚଉଦ ଅଣା ଫେରାଇଲେ ନାହିଁ । ନମ୍ର ସ୍ୱରରେ ବୁଢ଼ାଲୋକଟି ପଇସା ମାଗିଲାବେଳକୁ ସେ ଗର୍ଜନ କରିଉଠିଲେ, "ମୁଁ ଚଉଦ ଅଣା ଫେରାଇ ଦେଇଛି, ଯା ବାହାରି ଯା ।" ମୁଁ ପ୍ରତିବାଦ କଲି, "ବୁଢ଼ା ଦୁଇଟଙ୍କା ଦେଇଥିବା ମୁଁ ଦେଖିଛି । ଟିକଟ ସାଙ୍ଗରେ ଆପଣ ପଇସା ଫେରାଇ ନାହାନ୍ତି । ଗରିବ ଲୋକର ପଇସା ଫେରାଇ ଦିଅନ୍ତୁ, ନଚେତ..... ।" କର୍ମଚାରୀ ଜଣକ ମୋ ଖଦଡ଼ ସାର୍ଟକୁ ଲକ୍ଷ୍ୟ କରି ବୋଧହୁଏ ଶଙ୍କିତ ହେଲେ । କହିଲେ, "ମୁଁ ଡରିବା ଲୋକ ନୁହେଁ । ଯଦି କହୁଛ ସେ ଗରିବ, ମୋ ପକେଟରୁ ଆଠଅଣା ଦେଉଛି ।" ବଡ଼ ବଡ଼ ଆଖିରେ ମୋ ଆଡ଼କୁ ଚାହିଁ ବୁଢ଼ା ଉପରକୁ ଅଧୁଲିଟିଏ ଫୋପାଡ଼ିଦେଲେ । ମୁଁ ରାଗରେ ପାଟି କଲି, "ଜଣେ ନିରୀହ ଗରିବ ଲୋକର ବାକି ଛ ଅଣା ପଇସା ଆତ୍ମସାତ୍ କରି ଆପଣ ନିଶ୍ଚୟ ଧନୀ ହେବେ !" ତାପରେ, ନିଜ ପକେଟରୁ ଟଙ୍କାଟିଏ କାଢ଼ି ବୁଢ଼ାଙ୍କୁ ଦେଲି ଓ ଜଳେଶ୍ୱର ପର୍ଯ୍ୟନ୍ତ ଟିକଟ କିଣିଲି ।

ଅଳ୍ପ ଦୂରରେ ଛିଡ଼ା ରହି ଏହି ଦୃଶ୍ୟ ଦେଖୁଥାନ୍ତି ଜଣେ ଖଦଡ଼ ପରିହିତ କେଶହୀନ ବାମନାକୃତି ବ୍ୟକ୍ତି । ମୋତେ ପାଖକୁ ଡାକି ସହାସ୍ୟ ବଦନରେ କହିଲେ, "ମୋ ନାମ ଈଶ୍ୱରଲାଲ୍ ବ୍ୟାସ । ମୁଁ ବି ଜଳେଶ୍ୱର ଯିବି । ତୁମର ସାହସ ଓ ଦୟା ଦେଖି ଖୁସି ହେଲି ।" ଗାଡ଼ି ଛାଡ଼ିଲା । ପାଖରେ ବସାଇ ସେଦିନ ବ୍ୟାସଜୀ ଯାହା କହିଥିଲେ, ତାହା ଥିଲା ଗୋଟିଏ ସ୍ମରଣୀୟ ଶିକ୍ଷା । "ଦେଖ ବାବା, ଟଙ୍କାଟିର ଦୁଇଟି ପାଖ । ଗୋଟିଏ ପାଖର ନାମ ହେଲା 'ଭୋଗ', ଏବଂ ଅନ୍ୟ ପାଖର ନାମ ହେଉଛି 'ତ୍ୟାଗ' । ଯେଉଁ ଟଙ୍କାଟି ଗରିବ ବୁଢ଼ାକୁ ଦାନ କଲ, ସେଥିରେ ମିଷ୍ଟାନ୍ନ ଖାଇ ବା ସିନେମା ଦେଖି ଟଙ୍କାଟିକୁ 'ଭୋଗ' କରିଥାନ୍ତ । କିନ୍ତୁ ସେହି ଟଙ୍କାଟି 'ତ୍ୟାଗ' କରି ଅନ୍ତର ମଧ୍ୟରେ ଯେଉଁ ଆନନ୍ଦ ପାଇଥିବ, ତାହାର ମୂଲ୍ୟ ଅନେକ ।"

ସାମାନ୍ୟ ଗୋଟିଏ ଭଲ କାମର ବି ସୁଫଳ ଥାଏ । ସେହିଦିନରୁ ଈଶ୍ୱରଲାଲ ବ୍ୟାସଙ୍କ ସ୍ନେହ ଶ୍ରଦ୍ଧା ପାଇଲି ଓ ତାଙ୍କଯୋଗୁଁ ଲକ୍ଷ୍ମୀନାରାୟଣ ସାହୁ ଓ ଠକ୍କରବାପା ପ୍ରଭୃତି ପୂଜ୍ୟ ବ୍ୟକ୍ତିଙ୍କ ସଂସର୍ଗରେ ଆସିଲି । ଈଶ୍ୱରଲାଲ ସେତେବେଳେ ଉତ୍ତର ବାଲେଶ୍ୱରର ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ 'ମାରଓ୍ୱାଡ଼ି ରିଲିଫ୍ ସୋସାଇଟି' ତରଫରୁ ସେବା ଓ ଦାନ କାର୍ଯ୍ୟରେ ଲିପ୍ତ ଥିଲେ । ବାତ୍ୟା ପରେ ବନ୍ୟା ଓ ବନ୍ୟା ପରେ ଦୁର୍ଭିକ୍ଷ, ୧୯୪୨ ମସିହାରୁ ୧୯୪୫ ପର୍ଯ୍ୟନ୍ତ, ସେ ଆମ ଅଞ୍ଚଳକୁ ବାରମ୍ବାର ଆସିଲେ । ଛୁଟି ସମୟରେ ତାଙ୍କର ଜଣେ ଚେଲା ଭାବରେ କାମ କରି ଛାତ୍ରଜୀବନ ସାର୍ଥକ କଲି ।

## ଦୁର୍ଭିକ୍ଷର ସ୍ମୃତି

୧୯୪୪ ମସିହା ଥାଏ ମୋ ଆଇ.ଏ.ପାଠର ଶେଷବର୍ଷ । ବିଶ୍ୱମହାଯୁଦ୍ଧ ଚାଲିଥାଏ । ବଙ୍ଗଦେଶରେ ପଡ଼ିଥାଏ ଭୟଙ୍କର ଦୁର୍ଭିକ୍ଷ । ସେହି ଦୁର୍ଭିକ୍ଷର ପ୍ରଭାବ ପଡ଼ିଲା ଭୋଗରାଇ ଉପରେ । ସୌଭାଗ୍ୟକୁ ଓଡ଼ିଶାର ଅନ୍ୟତ୍ର ବଙ୍ଗ-ଦୁର୍ଭିକ୍ଷର ପ୍ରଭାବ ପଡ଼ି ନଥିଲା । ଓଡ଼ିଶା ସେତେବେଳେ ଥାଏ ବଳକା ରାଜ୍ୟ । ଦୁର୍ଭିକ୍ଷବେଳେ ବଙ୍ଗ ସରକାର ଓଡ଼ିଶାରୁ ୬ ଲକ୍ଷ ମହଣ ଧାନ କିଣିଥିଲେ ବୋଲି ଶୁଣିବାକୁ ମିଳିଥିଲା । ଅଥଚ ପ୍ରଦେଶର ଉପାନ୍ତ ଅଞ୍ଚଳ ଭୋଗରାଇ ପ୍ରତି ଓଡ଼ିଶା ସରକାରଙ୍କ କୃପାଦୃଷ୍ଟି ପଡ଼ି ନଥିଲା ।

ଆଇ.ଏ. ପରୀକ୍ଷା ଦେଇ ଘରକୁ ଆସିଲି । ବହିରେ ପଢ଼ିଥିବା ଉନବିଂଶ ଶତାବ୍ଦୀର ଦୁର୍ଭିକ୍ଷଗୁଡ଼ିକର ଦୃଶ୍ୟ ବିଷୟ ଏବେ ଆଖି ଆଗରେ ଦେଖିବାକୁ ପାଇଲି । ନିଜ ଗାଁର ଅବସ୍ଥା କଥା କହୁଛି । ସକାଳ ପାଖରୁ ସନ୍ଧ୍ୟା ପର୍ଯ୍ୟନ୍ତ ବୁଭୁକ୍ଷୁ ଶିଶୁମାନେ ହାତରେ ବାଟି ଧରି ଘରକୁ ଘର ତୋରାଣି ଟିକିଏ ମାଗିବୁଲୁଥିଲେ । ପ୍ରାୟ ପ୍ରତ୍ୟେକ ଘରେ ସେତେବେଳକୁ ମହିଳାମାନଙ୍କର ଅଳଙ୍କାର ଓ ଘରର ବାସନକୁସନ ବିକ୍ରି ସରିଥାଏ । ଉଚ୍ଚ ଦରରେ ଏଣୁ ତେଣୁ ଧାନ ବା ଚାଉଳ କିଣିବା ଲାଗି ଲୋକେ ବିକଳରେ ବାହାରି ଯାଉଥିଲେ । ଥରେ ଭାତ ରାନ୍ଧିଲେ ସେଥିରେ ପାଣି ଢାଳି ଢାଳି ଦୁଇ ତିନି ଦିନ ଖାଇବାକୁ ହେଉଥାଏ । ଦିନେ ସନ୍ଧ୍ୟାରେ ଯେଉଁ ବୁଢ଼ାଙ୍କୁ ଭିକ ମାଗିବାର ଦେଖିଥିଲି, ପରଦିନ ଶୁଣିଲି ସେ ମରିଗଲେଣି । ବୟସ୍କ ବା ଯୁବକ, ସମସ୍ତଙ୍କର ଅସ୍ଥିକଙ୍କାଳ ଗଣି ହେଉଥାଏ । ଥରେ ଦେଉଳା ହାଟ ଉପରେ ଗୋଟିଏ ଦୃଶ୍ୟ ଦେଖିଲି । ତତଲା ବାଲି ଉପରେ ଶୋଇଛି ଜଣେ ଯୁବକ । ତା ତଳିପେଟଟି ଲାଗିଯାଇଥାଏ ପିଠି ସହିତ । ଶୁଖିଲା ଚମଡ଼ା ଭିତରୁ ଛାତିର ପଞ୍ଜରା ହାଡ଼ ବାହାରକୁ ଫାଟିଉଠିବା ଅବସ୍ଥାରେ ରହିଥାଏ । କେତେଦିନ ଉପବାସ ରହିଲେ ମନୁଷ୍ୟର ଶରୀର ସେପରି ଅବସ୍ଥା ଧାରଣ କରେ, ତାହା ଅନୁମାନ କରିହେଲା ନାହିଁ । ବୋଧହୁଏ, ବଞ୍ଚିବା ଆଶାରେ ହାଟ ପର୍ଯ୍ୟନ୍ତ ଖାଦ୍ୟ ଖୋଜିବାକୁ ଆସିଥିଲା । ଦୌଡ଼ିଯାଇ ପାଖର ଜଣେ ଦୋକାନୀଙ୍କ ପାଖରୁ ମୁଠାଏ ଚୁଡ଼ା ଆଣି ତା ମୁହଁପାଖରେ ଧରିଲାବେଳକୁ ଆଖିଦୁଇଟି ମେଲା ରହିଥିଲେ ସୁଦ୍ଧା ପ୍ରାଣବାୟୁ ଉଡ଼ିଯାଇଥାଏ ।

ଆମ ନିଜ ଘରର ଅବସ୍ଥା କଥା କହିଲେ ନ ସରେ । କ୍ରମାଗତ ତିନିବର୍ଷ ଫସଲ ନ ହେବା ଫଳରେ ଓ ସଞ୍ଚିତ ଧାନତକ ତୋଫାନବେଳେ ଉଡ଼ିଯାଇଥିବା ଯୋଗୁଁ ଘରେ ଖାଦ୍ୟାଭାବ ଦେଖାଦେଲା । ବଂଶର ମର୍ଯ୍ୟାଦା ଦୃଷ୍ଟିରୁ ଅନ୍ୟ କୌଣସି ଧନୀ ପରିବାରରୁ ଧାନ କରଜ କରିବାକୁ ବାପା ରାଜି ହେଲେ ନାହିଁ ।

ଦିନେ ଦୁଃଖକରି କହିଲେ, ବର୍ଷକ ତଳେ ବନ୍ୟା ସମୟରେ ଏକମାସ ପର୍ଯ୍ୟନ୍ତ ଅନ୍ନଛତ୍ର ଦେଇପାରିଥିଲା ବେଳେ, ଏ ବର୍ଷ ଆଉ ମାସକ ପରେ ଅନାହାର ଭୋଗିବାକୁ ହେବ । ତାଙ୍କର ମର୍ମପୀଡ଼ା ଅନୁଭବ କଲି । ସେହି ରାତିରେ, ମୋ ଉପର କ୍ଳାସ୍‌ରେ ପଢୁଥିବା ସୋରୋ ଅଞ୍ଚଳର ଛାତ୍ର ହରପ୍ରସାଦ ମହାପାତ୍ରଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖିଲି । ଶୁଣିଥିଲି, ତାଙ୍କ ପିତା ପର୍ଯ୍ୟାପ୍ତ ଭୂସମ୍ପତ୍ତିର ମାଲିକ ଓ ଅମାର ଭର୍ତ୍ତିକରି ଧାନ ରଖିଥାନ୍ତି । ତାଙ୍କ ଘରୁ ଏକ ଶହ ମହଣ ଧାନ କିଣିବା ଲାଗି କରୁଣ ଆବେଦନ ଜଣାଇଲି । ସପ୍ତାହକ ମଧ୍ୟରେ ହରପ୍ରସାଦବାବୁ ଉତ୍ତର ପଠାଇଲେ ଯେ, ଶହେ କାହିଁକି, ଦୁଇଶହ ମହଣ ଧାନ ଦେବାପାଇଁ ସେ ପ୍ରସ୍ତୁତ । ବାପା ଟଙ୍କା ଯୋଗାଡ଼ କଲେ । ସ୍ଥାନୀୟ ଅନ୍ୟ ଗୋଟିଏ ଧନୀ ପରିବାରରେ ମଧ୍ୟ ଖାଦ୍ୟ ନଥାଏ । ସେହି ଘରର ଶ୍ୟାମସୁନ୍ଦର ପ୍ରଧାନ ମଧ୍ୟ ଶହେ ମହଣ ଧାନ କିଣିବେ ବୋଲି ମୋ ସାଙ୍ଗରେ ବାହାରିଲେ ।

ଅନେକ ଦୂରରେ ସୋରୋର ଅନନ୍ତପୁର ଗାଁ । ମାଲଗାଡ଼ି ବା ଟ୍ରକ୍‌ରେ ଧାନ ଆଣିବାର ପ୍ରଶ୍ନ ନଥାଏ । ହରପ୍ରସାଦବାବୁଙ୍କ ଘରୁ ଦୁଇଶହ ମହଣ ଧାନ ବଳଦଗାଡ଼ିରେ ସୋର ପାଖରୁ ବାଲେଶ୍ୱର ଓ ସେଠାରୁ ବଳଦଗାଡ଼ିରେ ବାଲିଆପାଳ, ତାପରେ ସୁବର୍ଣ୍ଣରେଖାରେ ନୌକାଯୋଗେ କୋଷ୍ଟ୍ କେନାଲ ଏବଂ ଶେଷରେ ସେଠାରୁ ଜନବଳ ଯୋଗେ ଧାନ ଆଣି ଘରେ ପହଞ୍ଚାଇବା ବେଳକୁ ଦେହରେ ଜୀବନୀଶକ୍ତି ନଥାଏ । ବଳଦଗାଡ଼ି ପାଖେ ପାଖେ ଚାଲି ଚାଲି ଓ ନୌକାରେ ବସି ଯେପରି କଷ୍ଟ ସ୍ୱୀକାର କରିବାକୁ ହେଲା, ତାହା କେବଳ ଅନାହାର କ୍ଳେଶରୁ ପରିବାରକୁ ରକ୍ଷା କରିବାର ପ୍ରେରଣା ପାଇଁ ସମ୍ଭବ ହୋଇଥିଲା ।

ସେହି ଭୟଙ୍କର ଦୁର୍ଭିକ୍ଷ ସମୟରେ ଆମ ଗାଁରେ ବସନ୍ତ ଲାଗିଲା । ସେଥିରେ ଆକ୍ରାନ୍ତ ହୋଇ ବାପା ଶଯ୍ୟାଶାୟୀ ରହିଲେ । ତା'ପରେ, ମୋ ସାନଭାଇ ଦଶବର୍ଷ ବୟସ୍କ ମନୋଜକୁ ବସନ୍ତ ହେଲା । ରୋଗ ଡେଇଁବ ବୋଲି ମୋତେ ଘରେ ରହିବାକୁ ଦିଆଗଲା ନାହିଁ । କିଛି ଦୂରରେ ଥିବା ବାବାଜି ବଡ଼ବାପାଙ୍କ ଘରେ ରହିଲି । ମଧ୍ୟେ ମଧ୍ୟେ ଗୋପନରେ ଆସି ଶଯ୍ୟାଶାୟୀ ବାପାଙ୍କୁ ଓ ଭାଇକୁ ଦେଖି ଯାଉଥାଏଁ ।

## ବିବାହ ପ୍ରସଙ୍ଗ

ଘରୁ ବସନ୍ତ ଛାଡ଼ିଲାବେଳକୁ ମେ ମାସ । ଦିନେ ବାପା ମୋ ବିବାହ ବିଷୟ ଉଠାଇଲେ । କହିଲେ, ମୟୂରଭଞ୍ଜ ରାଜ୍ୟର ବାରିପଦା ସହରରେ କନ୍ୟା ମନୋନୀତ କରିସାରିଛନ୍ତି । କନ୍ୟାପିତା ଭାଗୀରଥି ପାଳ ଉଦଳା ସବ୍‌ଡିଭିଜନର ଏସ.ଡି.ଓ । କନ୍ୟାର କକା ହେଉଛନ୍ତି କର୍ଣ୍ଣେଲ୍ ହରିଶ୍ଚନ୍ଦ୍ର ପାଳ, କଟକ ମେଡ଼ିକାଲ ହସ୍‌ପିଟାଲରେ

ଡାକ୍ତର ଥିଲାବେଳେ ଯୁଦ୍ଧରେ ଯୋଗଦେଇ ବ୍ରହ୍ମଦେଶର ରେଙ୍ଗୁନ୍ ଠାରେ ଜାପାନୀମାନଙ୍କ ହାତରେ ବନ୍ଦୀ କିମ୍ବା ନିହତ ହୋଇଛନ୍ତି । ବର୍ଣ୍ଣନା କଲେ କନ୍ୟାର ବୁଦ୍ଧି ବିଷୟ —“ଝିଅଟିକୁ ପଚାରିଲି, ମୋତେ ତୁମର ବାପା ବୋଲି ଭାବିବ ନା ପୁଅ ପରି ? ଝିଅ ସଙ୍ଗେ ସଙ୍ଗେ କହିଦେଲା ‘ପୁଅ ପରି’ !” ସେତିକିରେ ସନ୍ତୁଷ୍ଟ ହୋଇ ବାପା ବିବାହ ପ୍ରସ୍ତାବରେ ସମ୍ମତି ଦେଇଦେଲେ । ମୋତେ ନିଜେ ଯାଇ କନ୍ୟା ଦେଖିବା ପାଇଁ ଆଦେଶ ଦେଲେ ।

ଆଇ.ଏ. ପରୀକ୍ଷା ଫଳ ବାହାରି ନ ଥାଏ । ବୟସ ବି କୋଡ଼ିଏ ହୋଇ ନଥାଏ । ତଥାପି କନ୍ୟା ଦେଖିବା ଲାଗି ବାହାରିଗଲି । ସେ ସମୟର ସାମାଜିକ ପରିବେଶ ସେହିପରି ଥିଲା । ପୁଅ ପାଇଁ ବିବାହ ବୟସ ବାର ବା ଚଉଦରୁ ଓ କନ୍ୟା ପାଇଁ ଆଠ ବା ଦଶ ବର୍ଷରୁ ଆରମ୍ଭ ହେଉଥାଏ । ତଥାକଥିତ ‘ସାରଦା ଆଇନ୍’ ସତ୍ତ୍ୱେ ଲୋକେ ଅଳ୍ପବୟସରେ ପୁଅଝିଅଙ୍କ ବିବାହ ସମ୍ପନ୍ନ କରୁଥିଲେ । ବାପାଙ୍କ ଆଦେଶ ମାନି ବାରିପଦାରେ ପହଞ୍ଚିଲି । ସେଠାରୁ ପାଳବଂଶର ଜଣେ ବ୍ୟକ୍ତିଙ୍କ ସାଙ୍ଗରେ ମେ ମାସର ପ୍ରଚଣ୍ଡ ଖରାରେ ସାଇକେଲ ଯୋଗେ ଉଦଳା ଏସ୍.ଡି.ଓ.ଙ୍କ ବାସଭବନରେ ଦିନ ୧୨ଟା ବେଳେ ପହଞ୍ଚିଲି । ହାତରେ ଥାଏ, ଛୋଟିଆ ଝୋଟ ଥଳିଟିରେ ଖଣ୍ଡିଏ ଧୋତି ଓ ଖଣ୍ଡିଏ ସାର୍ଟ । ଖାଇବା ଆସନରେ ବସିଗଲାପରେ ହାତରେ ଭାତଥାଳି ଧରି କନ୍ୟା ଆସିଗଲେ । ମୋ ପାଖରେ ବସିଥିଲେ କନ୍ୟାଙ୍କ ଭିଣୋଇ ବାସୁଦେବ ନାୟକ । କାନପାଖରେ କହିଲେ, “ଏଇ ହେଉଛି ରାଜଲକ୍ଷ୍ମୀ” । କନ୍ୟାଙ୍କ ମୁଖ ଦର୍ଶନ ନିମନ୍ତେ ସାହସ ହେଲା ନାହିଁ । ତେରବର୍ଷ ବୟସ୍କା କନ୍ୟା ମଧ୍ୟ ମୋତେ ଚାହିଁ ଦେଖିବା ଲାଗି ଧୃଷ୍ଟତା ପ୍ରକାଶ କଲେ ନାହିଁ । କନ୍ୟା ଦେଖିବା ପର୍ବ ସେତିକିରେ ସରିଲା ।

ବାସୁଦେବବାବୁ ସେତେବେଳେ କଲିକତାରେ ବି.ଏ. ପଢୁଥିଲେ । ମେଟ୍ରିକ୍ ପଢ଼ିଲାବେଳେ ସେ ଭାରତୀୟ ‘ବୟ ସ୍କାଉଟ୍’ ଦଳରେ ଇଂଲଣ୍ଡ ଓ ହଲାଣ୍ଡ ଯାଇଥିଲେ । ସନ୍ଧ୍ୟାବେଳେ ଉପଦେଶ ଦେଲେ, “ଯଦି କନ୍ୟା ମନୋନୀତ ହୋଇଛି, ତେବେ ‘ଶୁଭସ୍ୟ ଶୀଘ୍ରଂ’, ଅର୍ଥାତ୍ ବିବାହ କରି ଘରକୁ ଯାଅ ।” ମୁଁ ନୀରବ ରହିବା ସତ୍ତ୍ୱେ ସେ ତାଙ୍କ ସିଦ୍ଧାନ୍ତ ଘୋଷଣା କଲେ ଯେ, ଚାରିଦିନ ମଧ୍ୟରେ ବିବାହ ଆୟୋଜନ ଶେଷ ହେବ ଓ ହାତଗଣ୍ଠି ପଡ଼ିଯିବ । ସତକୁ ସତ ତଡ଼ିତ୍‌କର୍ମା ବାସୁବାବୁ ସମସ୍ତ ପ୍ରସ୍ତୁତି ଶେଷକରି ବରକନ୍ୟାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ କରିଦେଲେ । ବିବାହ ପୂର୍ବରୁ କନ୍ୟାଙ୍କ ସହିତ କଥାବାର୍ତ୍ତା କରିବା ଚିନ୍ତାଶକ୍ତିର ବାହାରେ ଥାଏ । ସେକାଳର ବିବାହ ଥିଲା ପିତାମାତାଙ୍କ ଇଚ୍ଛାନୁବର୍ତ୍ତୀ ଭାଗ୍ୟ ନିର୍ଦ୍ଦିଷ୍ଟ ଦୈବଯୋଗ । ଅନ୍ତତଃ ପକ୍ଷେ, ମଧ୍ୟବିତ୍ତ ପରିବାରଗୁଡ଼ିକରେ ତାହାହିଁ

ଥାଏ ବିଶ୍ୱାସ । ଜାତକ ମେଳ ହେଲେ ଯଥେଷ୍ଟ, ଯୌତୁକ ପ୍ରଶ୍ନ ସହିତ ବିବାହ ବନ୍ଧନର ସମ୍ପର୍କ ନଥିଲା ।

ବିବାହର ଗୋଟିଏ ଦିନ ପରେ ଖବରକାଗଜରେ ପରୀକ୍ଷାଫଳ ଦେଖିଲି । ଦ୍ୱିତୀୟ ଶ୍ରେଣୀରେ ଆଇ.ଏ. ପାଶ୍ କରିଛି ଜାଣି ଖୁସି ହେଲି । ବିବାହ ପରେ ଏକାକୀ ଘରକୁ ଫେରିଲି । ସ୍ତ୍ରୀଙ୍କର 'ରାଜଲକ୍ଷ୍ମୀ' ନାମଟି ମରହଟ୍ଟା ଅମଳର ନାମ ପରି ଜଣାଯିବାରୁ ଯଥାସମୟରେ 'ରାଜଶ୍ରୀ' କରିଦେଲି । ସେହି ନାମରେ ସେ କବିତା ଲେଖି ମାୟାଧର ମାନସିଂହଙ୍କ ଦ୍ୱାରା ସମ୍ପାଦିତ ହେଉଥିବା 'ଶଙ୍ଖ' ପତ୍ରିକାରେ ପ୍ରକାଶ କରିବାକୁ ଲାଗିଲେ ।

## ରେଭେନ୍ସାରେ ବି.ଏ. ଅଧ୍ୟୟନ

୧୯୪୪ ଜୁଲାଇ ମାସ ବି.ଏ. କ୍ଲାସ୍‌ରେ ନାମ ଲେଖାଇଲାବେଳେ ଅର୍ଥନୀତି ବିଷୟଟିରେ ଅନର୍ସ ରଖିବି ବୋଲି ଫର୍ମ ପୂରଣ କରୁଥିବା ସମୟରେ ଦୈବାତ୍‌କ୍ରମେ ଇତିହାସ ଅଧ୍ୟାପକ ଘନଶ୍ୟାମ ଦାଶ ସେଠାରେ ପହଞ୍ଚିଗଲେ । ଇତିହାସ ସଂସଦର ସହସମ୍ପାଦକ ରୂପେ ଆଇ.ଏ. ପଢ଼ିବା ସମୟରୁ ସେ ମୋତେ ଜାଣିଥିଲେ । ଶ୍ରଦ୍ଧାରେ ଉପଦେଶ ଦେଲେ, "ଇତିହାସ ଅନାର୍ସ ନିଅ ।" ସେତେବେଳେ ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଥାନ୍ତି ଇତିହାସ ଅଧ୍ୟାପକ ଜଗଦାନନ୍ଦ ମହାନ୍ତି । ଧର୍ମରେ ସେ ଥିଲେ ଖ୍ରୀଷ୍ଟିଆନ୍ । ତାଙ୍କ ପରି ମହତ୍ ବ୍ୟକ୍ତି ଜୀବନରେ କ୍ୱଚିତ୍ ଦେଖିଛି । ଯେଉଁ ପ୍ରକାର ପବିତ୍ର ଗୁଣ ମନୁଷ୍ୟକୁ ଆଦର୍ଶସ୍ଥାନୀୟ କରିଥାଏ, ସେହି ପ୍ରକାର ଗୁଣର ସେ ଥାନ୍ତି ଜ୍ୱଳନ୍ତ ନିଦର୍ଶନ । ଭାବିନେଲି, ଇତିହାସ ଅନର୍ସ ନେଲେ ତାଙ୍କ ନିକଟରୁ ବହିପତ୍ର ପାଇପାରିବି । ତେଣୁ ସେହି ବିଷୟରେ ଅନର୍ସ ଓ ଅର୍ଥନୀତି ବିଷୟଟିକୁ ପାଶ୍ ବିଷୟ ରୂପେ ରଖିଲି ।

ସେତେବେଳେ ରେଭେନ୍ସା କଲେଜର ଅଧ୍ୟାପକମାନଙ୍କ ମଧ୍ୟରେ ବିଭିନ୍ନ ବିଷୟରେ ଖ୍ୟାତନାମା ଶିକ୍ଷାଦାତାମାନଙ୍କୁ ଦେଖିବାକୁ ମିଳୁଥାଏ । ଗିରିଜାଶଙ୍କର ରାୟ, ରାୟ ସାହେବ ଆର୍ତ୍ତବଲ୍ଲଭ ମହାନ୍ତି, ଭୈରବନାଥ ରୋହାତଗି, ସଦାଶିବ ମିଶ୍ର, ବଳଭଦ୍ର ପ୍ରସାଦ, ରତ୍ନାକର ପତି, ଭି.ଭି.ଜନ, ପି.ଏସ୍.ସୁନ୍ଦରାମ, ବଂଶୀଧର ସାମନ୍ତରାୟ, ନାରାୟଣ ମିଶ୍ର, ଦାମୋଦର ମିଶ୍ର, ଜୟକୃଷ୍ଣ ମିଶ୍ର, ବୈକୁଣ୍ଠନାଥ ପଟ୍ଟନାୟକ, ଘନଶ୍ୟାମ ଦାସ, ଜଗଦାନନ୍ଦ ମହାନ୍ତି, ଜନାଥନ ମହାନ୍ତି, ବ୍ରହ୍ମାନନ୍ଦ ପଣ୍ଡା, ରାଜକିଶୋର ରାୟ, କୁଞ୍ଜବିହାରୀ ତ୍ରିପାଠୀ, ବିଧୁଭୂଷଣ ଦାସ ଓ ପ୍ରଫୁଲ୍ଲକୁମାର ପତି ପ୍ରମୁଖ ଅଧ୍ୟାପକମାନେ ନିଜ ନିଜ ବିଷୟରେ ଥିଲେ ପ୍ରଗାଢ଼ ପଣ୍ଡିତ । କଳା ବିଭାଗର ଛାତ୍ରମାନେ ଇଂରାଜୀ ଅଧ୍ୟାପକ ଭି.ଭି.ଜନ୍‌ଙ୍କ କ୍ଲାସ୍ ରୁମ୍‌ରେ ଆଗସିଟ୍ ଗୁଡ଼ିକ ଦଖଲ କରିବା ଲାଗି ଦୌଡ଼ି ଦୌଡ଼ି ଯାଉଥାନ୍ତି । ସେହିପରି

ସଦାଶିବ ମିଶ୍ରଙ୍କ ଅର୍ଥନୀତି କ୍ଲାସ୍‌ରେ ବସିବା ଲାଗି ପ୍ରତିଦ୍ୱନ୍ଦ୍ୱିତା ଦେଖାଯାଉଥାଏ । ତୃତୀୟବାର୍ଷିକ କଳା କ୍ଲାସ୍‌ରେ ପଢୁଥିଲାବେଳେ ଅର୍ଥନୀତି ଅଧ୍ୟାପକ ରୂପେ ଯୋଗ ଦେଇଥିଲେ ଶ୍ରୀରାମଚନ୍ଦ୍ର ଦାଶ । ଷାଣ୍ମାସିକ ପରୀକ୍ଷାରେ ତାଙ୍କ ହାତରୁ ପ୍ରତ୍ୟେକ ୨୫ ନମ୍ବରରୁ ୨୩ ଓ ୨୨ ଲେଖାଏଁ ନମ୍ବର ପାଇ ମୋର ଧାରଣା ହେଲା, ମୁଁ ଜଣେ ଭଲ ଛାତ୍ର ।

କିନ୍ତୁ ମନଦେଇ ପଢ଼ିବା ଲାଗି ଅନ୍ତତଃପକ୍ଷେ କେତେକ ଛାତ୍ରଙ୍କ ପ୍ରତି ସେବେଳର ପରିବେଶ ଅନୁକୂଳ ନଥାଏ । ସେମାନଙ୍କ ମଧ୍ୟରେ ମୁଁ ଥିଲି ଜଣେ । ରାଜନୈତିକ ଆବହାଓଆ ସରଗରମ ଥାଏ । ୧୯୪୪ ମସିହା ଥିଲା ଦ୍ୱିତୀୟ ମହାଯୁଦ୍ଧର ସର୍ବାଧିକ ଭୟାବହ ବର୍ଷ । ତେଣେ ଭାରତବର୍ଷର ଅବସ୍ଥା ଶୋଚନୀୟ ହୋଇପଡୁଥାଏ । ମୁଦ୍ରାସ୍ଫୀତି ଓ ଦରବୃଦ୍ଧି ଯୋଗୁଁ ଲୋକେ ଅତିଷ୍ଠ ଥାନ୍ତି । ମହାଯୁଦ୍ଧ ଶେଷରେ ଯେ ଭାରତରେ ପୁଣି ଥରେ ଭୟାନକ ବିପ୍ଳବ ଆରମ୍ଭ ହେବ କିମ୍ବା ଇଂରେଜମାନଙ୍କ ଅତ୍ୟାଚାର ଦୃଢ଼ୀଭୂତ ହେବ, ଏ ବିଷୟରେ ଆଶଙ୍କା ପ୍ରକାଶ ପାଉଥାଏ । ନାନାପ୍ରକାର ପ୍ରଭାବ ମଧ୍ୟରେ ପାଠ ନପଢ଼ି ଖବରକାଗଜ ପଢ଼ିବା, ରେଡିଓରେ ସମ୍ବାଦ ଶୁଣିବା ଓ ଏଣେତେଣେ ରାଜନୀତି ଆଲୋଚନାରେ ସମୟ ନଷ୍ଟ କରିବା ଅଭ୍ୟାସରେ ପରିଣତ ହେଲା । ଜଣେ ଛାତ୍ରନେତା ଭାବରେ ପରିଚିତ ହେବାଲାଗି ସୁଯୋଗ ଥାଏ । ଫଳରେ, ପାଠ ଅପେକ୍ଷା ମନ ଚାଲିଗଲା ରାଜନୀତି ଦିଗକୁ । ଛାତ୍ର କଂଗ୍ରେସର ସକ୍ରିୟ କର୍ମୀ ହେବାକୁ ପ୍ରେରଣାର ଅଭାବ ନଥାଏ ।

୧୯୪୪ ମେ ମାସରେ ମହାତ୍ମା ଗାନ୍ଧି ମୁକ୍ତିଲାଭ କରିସାରିଥିଲେ । ୧୯୪୫ ମସିହା ଜୁନ୍ ମାସରେ ଜବାହାରଲାଲ ନେହରୁ ପ୍ରମୁଖ କଂଗ୍ରେସର ବରିଷ୍ଠ ନେତାମାନେ କାରାଗାରରୁ ମୁକ୍ତିଲାଭ କରି ଦେଶରେ ନୂତନ ଉନ୍ମାଦନା ସୃଷ୍ଟି କଲେ । ଓଡ଼ିଶାରେ ହରେକୃଷ୍ଣ ମହତାବ ରାଜନୀତିର କର୍ଣ୍ଣଧାର ରୂପେ ଅବତୀର୍ଣ୍ଣ ହେଲେ । ମହାଯୁଦ୍ଧ ଶେଷ ହୋଇଯାଇଥାଏ । ଭାରତର ଭବିଷ୍ୟତ ଥାଏ କୁହେଳିକାମୟ । ସମୟ ଥାଏ ଉତ୍ତେଜନାପୂର୍ଣ୍ଣ ।

## ହରେକୃଷ୍ଣ ମହତାବଙ୍କ ସହିତ ସମ୍ପର୍କ

ନଭେମ୍ବର କିମ୍ବା ଡିସେମ୍ବର ମାସର ଗୋଟିଏ ଘଟଣା । ସାରା ଭାରତରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ଓ ତାଙ୍କ ଆଜାଦ୍ ହିନ୍ଦ୍ ଫୌଜର ବୀରତ୍ୱ କାହାଣୀ ଜନମାନସକୁ ଆଚ୍ଛନ୍ନ କରିଦେଇଥାଏ । ସେହିପରି ସମୟରେ ବ୍ରିଟିଶ୍ ସରକାର ଦିଲ୍ଲୀର ଲାଲକିଲ୍ଲା ମଧ୍ୟରେ ରାଜଦ୍ରୋହ ଅପରାଧରେ ଆଜାଦ ହିନ୍ଦ୍ ଫୌଜ୍‌ର ବନ୍ଦୀ ସେନାପତିମାନଙ୍କର ବିଚାର ଆରମ୍ଭ କଲେ । ତାହା ବିରୋଧରେ ସମଗ୍ର ଦେଶରେ ଦେଖାଦେଲା ବିକ୍ଷୋଭ, ଶୋଭାଯାତ୍ରା ଓ ସଭା । ଦିନେ ରେଭେନ୍‌ସା

କଲେଜକୁ ଖବର ଆସିଲା, କଟକ ଟାଉନ୍‌ହଲଠାରେ ମହତାବଙ୍କ ସଭାପତିତ୍ୱରେ ସନ୍ଧ୍ୟାବେଳେ ବିଶାଳ ପ୍ରତିବାଦ ସଭା ଅନୁଷ୍ଠିତ ହେବ । ଛାତ୍ରମାନଙ୍କ ମଧ୍ୟରୁ ମୋତେ ଓ କୁଳମଣି ମହାପାତ୍ରଙ୍କୁ ସେଠାରେ ଭାଷଣ ଦେବା ଲାଗି ମନୋନୀତ କରାଗଲା ।

କ୍ଷୁଦ୍ର ଟାଉନ୍‌ହଲ୍‌ଟି ଭରପୂର ହୋଇଯାଇଥାଏ । ବାହାରେ ଅନେକ ଲୋକ । ମଞ୍ଚ ଉପରେ ମହତାବ ସଭାପତି ଆସନରେ ବସିଥାନ୍ତି । ପାଖରେ ଥାନ୍ତି ରାଜକୃଷ୍ଣ ବୋଷ ଓ ନବକୃଷ୍ଣ ଚୌଧୁରୀ ପ୍ରଭୃତି କଂଗ୍ରେସ ନେତା । ଜଣକ ପରେ ଜଣେ ଭାଷଣ ଦେଲେ । ଯଥାବେଳେ ମୋର ନାମ ଡକାଗଲା । ମଞ୍ଚ ଉପରକୁ ଉଠି ମାଇକ୍ ଧରି ଭାଷଣ ଦେଲି । ଥରେ ଦୁଇଥର କରତାଳି ପଡ଼ିଲା । ବକ୍ତବ୍ୟ ଶେଷ କରି ପଛରେ ଆସି ବସିଲି । ସଭା ଚାଲିଥାଏ । ଜଣେ କଂଗ୍ରେସକର୍ମୀ ମୋ ପାଖକୁ ଆସି କାଗଜ ଖଣ୍ଡିଏ ବଢ଼ାଇଦେଲେ । ଲେଖାଥିଲା, ‘‘ସଭାପରେ ମୋ ସହିତ ଦେଖା କରିବ– ହରେକୃଷ୍ଣ ମହତାବ ।’’

ଉତ୍‌ଫୁଲ୍ଲିତ ଚିତ୍ତରେ ସଭା ଶେଷରେ ତାଙ୍କ ନିକଟରେ ହାଜର ହେଲି । ‘‘ଖୁବ୍ ଭଲ କହିଲ । ତୁମର ଘର କେଉଁଠି ? ବାପାଙ୍କ ନାମ କ’ଣ ?’’ ମୁଁ ଉତ୍ତର ଦେଲି । ଈଷତ୍ ସ୍ମରଣ କରି ମହତାବବାବୁ କହିଲେ, ‘‘ଓଃ, ତା’ହେଲେ ତୁମ ବାପା ସୁଭଦ୍ରା ମହତାବଙ୍କୁ ୧୯୩୦ ସାଲରେ ଘରେ ଲୁଚାଇ ରଖିଥିଲେ ?’’ ମୁଁ କହିଲି, ‘‘ଆଜ୍ଞା ହଁ, ତାଙ୍କ କୋଳରେ ମୁଁ କେତେଥର ବସିଛି ।’’ ଖୁସି ହୋଇ କହିଲେ, ‘‘ଆଗାମୀ କାଲି ସ୍ୱରାଜ ଆଶ୍ରମରେ ମୋ ସାଙ୍ଗରେ ସନ୍ଧ୍ୟାବେଳେ ଦେଖା କରିବ ।’’

ମହତାବଙ୍କ ସହିତ ସେହି ସାକ୍ଷାତ ପରେ ଅଧିକାଂଶ ସନ୍ଧ୍ୟା ସ୍ୱରାଜ ଆଶ୍ରମରେ ବିତିଲା । ବି.ଏ. ଶେଷ ବର୍ଷର ଛାତ୍ର । ମନଦେଇ ପାଠ ପଢ଼ିବା କଥା । ଫାଷ୍ଟକ୍ଲାସ୍ ଅନର୍ସ ପାଇବା ଲାଗି ଆଶା ଥାଏ । କିନ୍ତୁ ମହତାବଙ୍କ ଦରବାରରେ ବାରମ୍ବାର ହାଜର ହେବା ଫଳରେ ଅନେକ ସମୟ ନଷ୍ଟ ହେଲା । ଦିନେ ଖଦଡ଼ ଲୁଗା ନ ପିନ୍ଧି ସ୍ୱରାଜ ଆଶ୍ରମ ଯାଇଥିଲି । ଜଣେ ବିଶିଷ୍ଟ ନେତାଙ୍କ ସହିତ ତର୍କ ବିତର୍କ କରୁଥିଲାବେଳେ ସେ ରାଗିଉଠି କହିଦେଲେ, ‘‘ତୁମେ କ’ଣ ଜେଲ୍ ଯାଇଥିଲ ? ଖଦଡ଼ ନ ପିନ୍ଧି ଆମମାନଙ୍କ ସାଙ୍ଗରେ ବଡ଼ ବଡ଼ କଥା କହିବାକୁ ସାହସ କରୁଛ କିପରି ?’’ ମୁଁ ତତ୍‌କ୍ଷଣାତ୍ ମହତାବବାବୁଙ୍କ କକ୍ଷ ଭିତରକୁ ପଶିଯାଇ ଆପତ୍ତି ଜଣାଇଲି, ‘‘ଜେଲ ନ ଗଲେ, ଖଦଡ଼ ନ ପିନ୍ଧିଲେ, ଆମେ କ’ଣ କଥା କହିବା ପାଇଁ ଅଯୋଗ୍ୟ ? କଲେଜରେ ପାଠ ପଢ଼ିବି

ନା ଅରଟରେ ସୂତା କାଟିବି ? ନୀଳାମ୍ବର ବାବୁ ମୋତେ ଅପମାନିତ କରିଛନ୍ତି ।'' ନବକୃଷ୍ଣ ଚୌଧୁରୀ ଓ ଅନ୍ୟ କେତେକ ନେତା ସେଠାରେ ବସିଥିଲେ । ନିଜ ସ୍ୱଭାବସୁଲଭ ଢଙ୍ଗରେ ମହତାବବାବୁ କହିଲେ, ''କିହୋ ମନ୍ମଥ, କିଏ କ'ଣ କହିଦେଲେ, ସେଥିରେ ରାଗିଗଲେ ଚଳିବ ? ଯଦି ରାଜନୀତି କରିବ, ଭାବପ୍ରବଣତା ଛାଡ଼ । ଯଦି ନ ପାରିବ, ସନ୍ଧ୍ୟାବେଳେ କାଠଯୋଡ଼ି ପଥରବନ୍ଧ ଉପରେ ବସି କବିତା ଲେଖିବାକୁ ଶିଖ ।'' ତାଙ୍କର ସେହି କଥାଟି ମନେ ରହିଗଲା ।

୧୯୪୬ ମସିହାର ଆରମ୍ଭ କାଳରେ ମହତାବବାବୁ ମୋତେ, ମୋର ସହପାଠୀ ବୈଦ୍ୟନାଥ ମିଶ୍ର ଓ କ୍ଷେତ୍ରମୋହନ ମଙ୍ଗରାଜଙ୍କୁ ଡିଷ୍ଟ୍ରିକ୍ଟ ବୋର୍ଡ଼ ନିର୍ବାଚନରେ ଗାଁଗଣ୍ଡାରେ କଂଗ୍ରେସପ୍ରାର୍ଥୀ ପାଇଁ ପ୍ରଚାର କରିବାଲାଗି ପଠାଇଲେ । ବି.ଏ. ଶେଷ ପରୀକ୍ଷା ପାଖେଇଆସୁଥାଏ । ତଥାପି, ତାଙ୍କ ଆଦେଶ ମାନି ବାରଙ୍ଗଠାରୁ ଚିଲିକା ପର୍ଯ୍ୟନ୍ତ କେତେବେଳେ ଚାଲି ଚାଲି, କେତେବେଳେ ଟ୍ରକ୍‌ରେ ବସି କଂଗ୍ରେସ ସପକ୍ଷରେ ପ୍ରଚାର କରି ବୁଲିବାକୁ ହେଲା । ପାଠପଢ଼ା ଦୃଷ୍ଟିରୁ ମୋର ଅଶେଷ କ୍ଷତି ହେଲା ।

ମହତାବଙ୍କ ସହିତ ସମ୍ପର୍କ ଘନିଷ୍ଠ ହେଲାବେଳକୁ ବୀରେନ ମିତ୍ରଙ୍କ ସହିତ ମିତ୍ରତା ବଢ଼ିଲା । ଅନ୍ୟ ନେତାମାନେ ମଧ୍ୟ ଶ୍ରଦ୍ଧା ଦେଲେ । ସେହିପରି ସମୟରେ ଦିନେ ଦେଖିଥିଲି ସ୍ୱରାଜ ଆଶ୍ରମ ପିଣ୍ଡାରେ ଗମ୍ଭୀର ଭାବରେ ବସିଥିବା ଜଣେ ଦୀର୍ଘକାୟ ବ୍ୟକ୍ତିଙ୍କୁ । ମହତାବବାବୁ କହିଲେ, ''ବାହାରେ ଯିଏ ବସିଛନ୍ତି, ସେ ଜଣେ ପାଇଲଟ୍ ଓ ସ୍ୱାଧୀନତା ସଂଗ୍ରାମୀ । ତାଙ୍କ ନାମ ବିଜୟାନନ୍ଦ ପଟ୍ଟନାୟକ । ସେ ଓଡ଼ିଶାରେ ଟେକ୍ସଟାଇଲ ଇଣ୍ଡଷ୍ଟ୍ରି ବସାଇବେ କହୁଛନ୍ତି । ଦେଶ ସ୍ୱାଧୀନ ହୋଇନାହିଁ । ଆମେ କଂଗ୍ରେସଲୋକେ ଖଦଡ଼ ଓ ତନ୍ତଲୁଗାରେ ବିଶ୍ୱାସ କରୁଁ । ମିଲ୍‌ଲୁଗା ପାଇଁ କଳକାରଖାନା ଲାଗି ରାଜି ହେବା କ'ଣ ଉଚିତ ହେବ ? ତୁମେ ତାଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିବ ଗଲ ।''

ବାହାରକୁ ଆସି ବେଞ୍ଚ୍ ଉପରେ ବସିଥିବା ବିଜୟାନନ୍ଦବାବୁଙ୍କୁ ମହତାବବାବୁ କହିଥିବା ବିଷୟ କହିଲି । ଜଣେ ସାମାନ୍ୟ କଲେଜପିଲା ସହିତ ସେପରି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା ଲାଗି ବିଜୟାନନ୍ଦବାବୁ ଅନାଗ୍ରହ ପ୍ରକାଶ କଲେ ନାହିଁ । ସେ ବୁଝାଇଦେଲେ ଯେ, ଓଡ଼ିଶାର ଲକ୍ଷ ଲକ୍ଷ ଲୋକ ବୋମ୍ବେ ଓ ଅହମ୍ମଦାବାଦରୁ ଆମଦାନୀ ହେଉଥିବା ମିଲ୍ କପଡ଼ା କିଣୁଥିବା ଦୃଷ୍ଟିରୁ ଓଡ଼ିଶାରେ ସେପରି ମିଲ୍ ସ୍ଥାପନ କରିବା ଲାଗି ବେଳ ଆସିଛି । ସମସ୍ତେ ଖଦଡ଼ ପିନ୍ଧିବେ ନାହିଁ କି ତନ୍ତବୁଣା ଲୁଗା ବ୍ୟବହାର କରିବେ ନାହିଁ । ମିଲ୍‌ଲୁଗାର ଚାହିଦା

ଦେଖି ଆମକୁ ତାହା ଉତ୍ପାଦନ କରିବାକୁ ହେବ । "ଅହମ୍ମଦାବାଦର ଶିଳ୍ପପତିମାନେ ଓଡ଼ିଶାରୁ ଟଙ୍କା ଶୋଷଣ କରିବେ କାହିଁକି ?"

ଆଉଦିନେ ସନ୍ଧ୍ୟାବେଳେ କର୍ଣ୍ଣେଲ ବ୍ରଜମୋହନ ନାମକ ଜଣେ ଯୁଦ୍ଧଫେରନ୍ତା ଡାକ୍ତରଙ୍କୁ ମହତାବଙ୍କ ପାଖରେ ଦେଖିଲି । ସେ ଆଜାଦ୍ ହିନ୍ଦ୍ ଫୌଜରେ ଯୋଗ ଦେଇଥିଲେ । ଗଭୀର ଉତ୍କଣ୍ଠା ସହ ତାଙ୍କୁ କର୍ଣ୍ଣେଲ ହରିଶଚନ୍ଦ୍ର ପାଲଙ୍କ କଥା ପଚାରିଲି । ସେ ବିଶଦ ଭାବରେ ଯାହା ବର୍ଣ୍ଣନା କରିଥିଲେ, ତାହାର ସାରାଂଶ ଥିଲା ଏହିପ୍ରକାର । କର୍ଣ୍ଣେଲ ପାଲ୍ ଓ ବ୍ରଜମୋହନବାବୁ ଡାକ୍ତର ଭାବରେ ବ୍ରିଟିଶ ସୈନ୍ୟବାହିନୀରେ ଯୋଗ ଦେଇ ରେଙ୍ଗୁନ୍ ଠାରେ ଆହତ ସୈନ୍ୟମାନଙ୍କର ଚିକିତ୍ସା କରୁଥାନ୍ତି । ସହରର ଉପକଣ୍ଠରେ ଥାଏ ସେମାନଙ୍କର ତମ୍ବୁ । ଦିନେ ଅପରାହ୍ନରେ ଜାପାନୀ ବିମାନରୁ ପ୍ରଚାର ପତ୍ର ପଡ଼ିଲା ଯେ ରାତ୍ରିକାଳରେ ରେଙ୍ଗୁନ ଉପରେ ବୋମାବର୍ଷଣ ହେବ । କର୍ଣ୍ଣେଲ ବ୍ରଜମୋହନ ହରିଶବାବୁଙ୍କୁ କହିଲେ, ସନ୍ଧ୍ୟାବେଳକୁ ଡାକ୍ତର ଛାଉଣୀରୁ ଜଙ୍ଗଲ ଭିତରକୁ ପଳାଇଯିବା ଉଚିତ । ହରିଶ୍ ପାଲ୍ କହିଲେ, ଛାଉଣୀ ଉପରେ 'ରେଡ୍ କ୍ରସ' ଚିହ୍ନ ଥିବାରୁ ଜାପାନୀମାନେ ତା ଉପରେ କଦାପି ବୋମା ନିକ୍ଷେପ କରିବେ ନାହିଁ । ସନ୍ଧ୍ୟା ଆସିଗଲା । କର୍ଣ୍ଣେଲ ବ୍ରଜମୋହନ ଓ ଅନ୍ୟ ଡାକ୍ତରମାନେ ଜିପ୍ ଯୋଗେ ଅରଣ୍ୟ ମଧ୍ୟକୁ ଚାଲିଗଲେ । କିନ୍ତୁ ହରିଶ୍‌ବାବୁ ତମ୍ବୁରେ ରହିଲେ । ରାତ୍ରିକାଳରେ ଜାପାନୀ ବିମାନରୁ ସହର ଉପରେ ଓ ତା ଉପକଣ୍ଠରେ ପ୍ରଚଣ୍ଡ ବୋମାମାଡ଼ ଚାଲିଲା । ଜଙ୍ଗଲ ଭିତରେ ଅନ୍ୟମାନେ ବୋମାର ବିସ୍ଫୋରଣ ଶବ୍ଦ ଶୁଣିପାରୁଥିଲେ । ଦୀର୍ଘଶ୍ୱାସ ତ୍ୟାଗ କରି କର୍ଣ୍ଣେଲ ବ୍ରଜମୋହନ କହିଲେ, "ସକାଳ ହେଲାପରେ ଫେରିଆସି ଦେଖିଲି, ହରିଶବାବୁଙ୍କ ଅଙ୍ଗପ୍ରତ୍ୟଙ୍ଗ ଖଣ୍ଡ ବିଖଣ୍ଡ ଆକାରରେ ପଡ଼ିରହିଛି ।"

ଏ କଥା ମୋ ଶ୍ୱଶୁରଘରକୁ ଜଣାଇଲି, କାରଣ ହରିଶ୍ ପାଲ ଥିଲେ ମୋ ସ୍ତ୍ରୀଙ୍କ କକା । କେହି କେହି ବିଶ୍ୱାସ କଲେ, କେହି କେହି ବିଶ୍ୱାସ କଲେ ନାହିଁ । ସରକାରୀ ସୂତ୍ରରୁ ବିଭ୍ରାନ୍ତିକର ସମ୍ବାଦମାନ ଆସିଥିବା ଯୋଗୁଁ ହରିଶବାବୁ ଜୀବିତ ଥିବେ ବୋଲି ଜଣେ ଜଣେ ଅନୁମାନ କଲେ । ଆଶ୍ଚର୍ଯ୍ୟର ବିଷୟ, ହରିଶ୍ଚନ୍ଦ୍ର ପାଲଙ୍କ ପତ୍ନୀ ତାଙ୍କ ସ୍ୱାମୀଙ୍କ ମୃତ୍ୟୁସମ୍ବାଦ କୌଣସିପ୍ରକାରେ ଗ୍ରହଣ କଲେ ନାହିଁ । ଆଜି, ୧୯୯୬ ମସିହାରେ ମୁଁ ଏକଥା ଲେଖିବା ସମୟରେ, ଦୀର୍ଘ ପଚାଶ ବର୍ଷ ପରେ ମଧ୍ୟ ସେହି ବୃଦ୍ଧା ମହିଳା ସଧବା ଭାବରେ ସ୍ୱାମୀଙ୍କ ଫେରିବା ଆଶାରେ ଅପେକ୍ଷା କରି ରହିଛନ୍ତି । ହରିଶବାବୁଙ୍କ ସାନପୁଅ ବିକ୍ରମକେଶରୀ ପାଲ ଏବେ ଆମେରିକାର ଜର୍ଜ ୱାଶିଂଟନ୍ ହସ୍‌ପିଟାଲରେ ଜଣେ ପ୍ରତିଷ୍ଠିତ ସାର୍ଜନ ଓ ବଡ଼ପୁଅ ସଂଗ୍ରାମକେଶରୀ ପାଲ ଭୁବନେଶ୍ୱରରେ ଚାଟାର୍ଡ ଏକାଉଣ୍ଟାଣ୍ଟ୍ ।

ଏମାନେ ମଧ୍ୟ ପିତାଙ୍କ ମୃତ୍ୟୁସମ୍ବାଦ ପ୍ରତି ଉଦାସୀନ ଥିବା ଦେଖିଆସିଛି । ସେମାନଙ୍କ ମାତାଙ୍କ ମତରେ, ତାଙ୍କ ମୃତ୍ୟୁ ପରେ ପୁଅମାନେ ଉଭୟ ପିତୃ ଓ ମାତୃ ଶ୍ରାଦ୍ଧ ପାଳନ କରିବେ ।

ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ମୃତ୍ୟୁର ପଚାଶ ବର୍ଷ ପରେ ମଧ୍ୟ ଅକାଟ୍ୟ ପ୍ରମାଣ ସତ୍ତ୍ୱେ କେତେକ ବ୍ୟକ୍ତି ନେତାଜୀ ଜୀବିତ ଅଛନ୍ତି ବୋଲି ପ୍ରଚାର କରୁଛନ୍ତି । ଅବଶ୍ୟ ଏହା ପଛରେ ରହିଛି ରାଜନୈତିକ ଅଭିସନ୍ଧି । କିନ୍ତୁ ହରିଶ ପାଲଙ୍କ ମୃତ୍ୟୁରେ ବିଶ୍ୱାସ ନ କରିବା ପଶ୍ଚାତରେ ରହିଛି ସାମାଜିକ ବିଶ୍ୱାସ ଯେ ସ୍ୱାମୀଙ୍କ ମୃତ୍ୟୁ ସମ୍ପର୍କରେ ସନ୍ଦେହ ଥିବା ଦୃଷ୍ଟିରୁ ତାଙ୍କ ସ୍ତ୍ରୀଙ୍କ ପକ୍ଷରେ ବୈଧବ୍ୟ ଅବଲମ୍ବନ କରିବା ଉଚିତ ନୁହେଁ ।

ମହତାବଙ୍କ କଥାକୁ ପୁଣି ଫେରୁଛି । ବି.ଏ. ପଢ଼ିଲାସମୟରୁ ସ୍ଥାପିତ ହୋଇଥିବା ସମ୍ପର୍କ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ସେ ମୋତେ ଶ୍ରଦ୍ଧା ଓ ବିଶ୍ୱାସ ଦେଇଥିଲେ, କିନ୍ତୁ ତାଙ୍କ ନିକଟରୁ କୌଣସି ପ୍ରକାର ଅନୁଗ୍ରହ ପାଇବା ଲାଗି ମୁଁ କେବେହେଲେ ଇଚ୍ଛା କରି ନଥିଲି । ତାଙ୍କ ମୃତ୍ୟୁ ପୂର୍ବରୁ ଥରେ ମୁଁ କୌତୂହଳରେ କହିଥିଲି, "ଆପଣଙ୍କ ଜୀବଦ୍ଦଶାରେ ଯେଉଁମାନଙ୍କୁ ଆପଣ ବରଦାନ କରି ବହୁ ଉଚ୍ଚ ସ୍ଥାନକୁ ଉଠାଇଥିଲେ, ସେମାନଙ୍କ ମଧ୍ୟରୁ ପ୍ରଧାନ କେତେଜଣ ବ୍ୟକ୍ତି ଭସ୍ମାସୁର ଭାବରେ ଆପଣଙ୍କ ମୁଣ୍ଡରେ ହାତ ରଖିବା ଲାଗି ଦୌଡ଼ିବୁଲିଲେ, ଅଥଚ ଆମ ପରି ସାମାନ୍ୟ ବ୍ୟକ୍ତିମାନେ ବର ଲାଭ କରି ନଥିବା ଯୋଗୁଁ ବରାବର ଅନୁରକ୍ତ ରହିଲୁଁ ।" ବିନା ଦ୍ୱିଧାରେ ସେ ଉତ୍ତର ଦେଇଥିଲେ, "ଠିକ୍ କଥାଟି କହିଛ ।"

## ଅଧ୍ୟକ୍ଷଙ୍କ କୋପଦୃଷ୍ଟି

ଛାତ୍ରନେତା ଭାବରେ ପଢ଼ାପଢ଼ିରେ ଅବହେଳା କରିବା ସାଙ୍ଗକୁ ଥରେ ଅଧ୍ୟକ୍ଷଙ୍କ କୋପଦୃଷ୍ଟିରେ ପଡ଼ିଲି । ପରିଜା ସାହେବଙ୍କ ପରେ ଅଧ୍ୟକ୍ଷ ଭାବେ ଯୋଗ ଦେଇଥିଲେ ଏସ୍.ରାୟ । ସେ ଇତିହାସ ଅଧ୍ୟାପକ ଥିଲେ ଓ ଆମର କ୍ଲାସ୍ ନେଉଥିଲେ । ମୁଁ ଇତିହାସ ସଂସଦର ସମ୍ପାଦକ ଥିବାରୁ ମୋତେ ଭଲ ପାଉଥିଲେ । କିନ୍ତୁ, ଗୋଟିଏ ଘଟଣା ଯୋଗୁଁ ତାଙ୍କ କୋପଦୃଷ୍ଟିରେ ପଡ଼ିଲି ଓ ଅଧ୍ୟକ୍ଷ ଭାବରେ ମୋତେ କଲେଜରୁ ବହିଷ୍କାର କରିବା ଲାଗି ସେ ଚିନ୍ତା କରିଥିଲେ ।

ଘଟଣାଟିର ପୂର୍ବାଭାସ ଥିଲା ଏହିପ୍ରକାର । ୧୯୪୫–୪୬ ବେଳକୁ ଭାରତର ସ୍ୱାଧୀନତାପ୍ରାପ୍ତି ନିଶ୍ଚୟ ସମ୍ଭବପର ହେବ ବୋଲି ଧାରଣା ଆସିଯାଇଥାଏ । ଅପର ପକ୍ଷରେ, ଦେଶକୁ ଖଣ୍ଡ ବିଖଣ୍ଡିତ କରି ପାକିସ୍ତାନ ଗଠନ କରାଯିବ

ବୋଲି ଆଶଙ୍କା ବଢ଼ିଚାଲିଥାଏ । ପଶ୍ଚିମ ଛାତ୍ରାବାସରେ ସେତେବେଳେ ଦୁଇଟି କୋଠରିରେ ମୁସଲମାନ ଛାତ୍ରମାନେ ପ୍ରାୟତଃ ପୃଥକ୍ ଭାବରେ ରହୁଥିଲେ । ସେମାନଙ୍କ ଖାଇବା ନିମନ୍ତେ ସ୍ୱତନ୍ତ୍ର ମେସ୍ ଥାଏ । ସେହି ଛାତ୍ରମାନଙ୍କ ମଧ୍ୟରୁ କେହି କେହି ଥାନ୍ତି ପାକିସ୍ତାନ ସମର୍ଥକ ଓ ଅନ୍ୟମାନେ ଜାତୀୟତାବାଦୀ । ସନାଉଲ୍ଲା ଖାଁ ନାମକ ଜଣେ ଛାତ୍ର 'ଡନ୍' ସମ୍ବାଦପତ୍ର ଆଣୁଥାନ୍ତି ଓ ମହମ୍ମଦ ଆଲି ଜିନ୍ନାଙ୍କ ନିକଟକୁ ପତ୍ର ଲେଖୁଥାନ୍ତି ଯେ ଓଡ଼ିଶାର ମୁସଲମାନମାନେ ପାକିସ୍ତାନ ଗଠନ ଚାହାନ୍ତି । ଦେଶରେ ସାମ୍ପ୍ରଦାୟିକ ଭେଦଭାବ ଉଗ୍ର ଆକାର ଧାରଣ କରୁଥିଲାବେଳେ, ହଷ୍ଟେଲରେ ମଧ୍ୟ ହିନ୍ଦୁ ମୁସଲମାନ ମାନସିକ ବିଭାଜନର ସୂତ୍ରପାତ ଦେଖିବାକୁ ମିଳିଥାଏ । ମହମ୍ମଦ ରଫିକ୍ ଓ ଆଦାମ ଆଲି ବେଗ୍ ନାମକ ଦୁଇଜଣ ଛାତ୍ର ନିଜକୁ ମୌଲାନା ଆବୁଲ କାଲାମ ଆଜାଦଙ୍କ ଅନୁରକ୍ତ ବୋଲି କହୁଥିଲାବେଳେ, ସନାଉଲ୍ଲା ଖାଁଙ୍କ ବନ୍ଧୁମାନେ ଜିନ୍ନାଙ୍କ ଅନୁଗାମୀ ବୋଲି ଗର୍ବ କରୁଥିଲେ ।

ତେଣେ, ଦେଶର ସର୍ବତ୍ର ଦେଶ ବିଭାଜନ ବିରୋଧରେ ସଭାସମିତି ଆୟୋଜିତ ହେଉଥାଏ । ରେଭେନ୍‌ସା କଲେଜରେ 'ପାକିସ୍ତାନ ବିରୋଧୀ' ସଭାଟିଏ ଆୟୋଜନ କରିବା ଲାଗି ମୁଁ ଉଦ୍ୟମ କଲି । ଇତିହାସ ସଂସଦର ସମ୍ପାଦକ ଭାବରେ ପାଠଚକ୍ର ଆୟୋଜନ କଲାବେଳେ ଅଧ୍ୟକ୍ଷଙ୍କ ଅନୁମତି ନେଉଥାଏଁ ଓ ମଧ୍ୟେ ମଧ୍ୟେ ସେ ସେଥିରେ ସଭାପତିତ୍ୱ କରୁଥାନ୍ତି । କିନ୍ତୁ ଏଥର ଜଣେ କଂଗ୍ରେସୀ ଛାତ୍ର ଭାବରେ ସଭା ଆହ୍ୱାନ କରୁଥିବା ଯୋଗୁଁ ଅଧ୍ୟକ୍ଷଙ୍କ ଅନୁମତି ନେଲି ନାହିଁ । ସଭାର ସାଫଲ୍ୟ ନିମନ୍ତେ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କୁ ମୁଖ୍ୟବକ୍ତା ହେବାକୁ ଅନୁରୋଧ କଲି ଓ ବିଷୟ ଦେଲି ''ଭାରତୀୟ ଜାତୀୟତା ଓ ପାକିସ୍ତାନ ଦାବି ।'' ୧୯୪୫ ମସିହା ଶୀତଛୁଟିର ଠିକ୍ ପୂର୍ବ ସନ୍ଧ୍ୟାରେ ସଭା ଅନୁଷ୍ଠିତ ହେଲା ।

ବାଗ୍ମୀ ଶ୍ରୀରାମବାବୁଙ୍କ ଭାଷଣ ଶୁଣିବାକୁ ଅନେକ ଛାତ୍ର ଓ ବାହାରର କେତେକ ଅଣଛାତ୍ର ମଧ୍ୟ ଆସିଗଲେ । ବକ୍ତୃତା ଦେଲାବେଳେ ଶ୍ରୀରାମବାବୁଙ୍କ ପାଟିରେ ଅଙ୍କୁଶ ବୋଲି କିଛି ନଥାଏ । ଅନର୍ଗଳ ଭାବରେ ପାକିସ୍ତାନ ଗଠନ ପ୍ରସ୍ତାବକୁ ନିନ୍ଦା କରିବା ସହିତ ସେ ଏପରି କେତୋଟି କଟୁ ମନ୍ତବ୍ୟ ଦେଲେ ଯେ ଯାହାର କଦର୍ଥ ବିଶ୍ଳେଷଣ କରିବା ସହଜ ଥିଲା । ଯଥା, ''ଯଦି ଦେଶର ପଶ୍ଚିମାଞ୍ଚଳ ଓ ପୂର୍ବାଞ୍ଚଳକୁ ନେଇ ପାକିସ୍ତାନ ଗଠନ କରାଯିବ, ତେବେ ପଶ୍ଚିମ ପାକିସ୍ତାନର ମୁସଲମାନ ଯୁବକମାନେ ପୂର୍ବପାକିସ୍ତାନ ମୁସଲମାନ ଯୁବତୀମାନଙ୍କୁ ବିବାହ କରି ଭାରତ ଭିତର ଦେଇ ରେଳପଥରେ ନିଜ ସ୍ତ୍ରୀମାନଙ୍କୁ ନେଇ

ନିରାପଦରେ ନିଜ ଘରେ ପହଞ୍ଚି ପାରିବେ ତ ? ଅଥବା ସେମାନଙ୍କୁ ତ୍ୟାଗକରି ଏକାକୀ ଫେରିବେ ?'' ଇତ୍ୟାଦି, ଇତ୍ୟାଦି । ବିପୁଳ କରତାଳି ମଧ୍ୟରେ ସଭା ଶେଷହେଲା ।

ତହିଁ ପରଦିନ ଠିକ୍ ୧୦ଟା ବେଳେ କ୍ଲାସ୍‌କୁ ବାହାରିଲା ବେଳକୁ ପ୍ରିନ୍‌ସିପାଲଙ୍କ ଅଫିସରୁ ଜଣେ କିରାଣି ତ୍ରସ୍ତ ବ୍ୟସ୍ତ ଅବସ୍ଥାରେ ଆସି ଖବର ଦେଲେ, କଟକ ସହରର କେତେଜଣ ଉତ୍ତ୍ୟକ୍ତ ମୁସଲମାନ ନେତା ପ୍ରିନ୍‌ସିପାଲଙ୍କ ରୁମ୍‌ରେ ଭର୍ତ୍ତି ହୋଇଗଲେଣି । ସେମାନଙ୍କ ଅଭିଯୋଗ, ସଭାପାଇଁ ସେ ଅନୁମତି ଦେଲେ କିପରି, ଏବଂ ଅପମାନଜନକ କଦର୍ଯ୍ୟ ଉକ୍ତିପାଇଁ ମୁସଲମାନ ସମ୍ପ୍ରଦାୟ ମନରେ ଯେଉଁ ଆଘାତ ଲାଗିଛି, ତାହାର ପ୍ରତିକାର କ'ଣ ? ପ୍ରିନ୍‌ସିପାଲ କୈଫିୟତ ଦେଲେଣି, ସଭା ବିଷୟ ସେ କିଛି ଜାଣନ୍ତି ନାହିଁ ଓ ଯେଉଁ ଛାତ୍ର ସଭା ଆୟୋଜନ କରିଛି, ତାକୁ ସେ ନିଶ୍ଚୟ ରାଷ୍ଟିକେଟ୍ କରିବେ । କର୍ମଚାରୀ ଜଣକ ମୋତେ ପରାମର୍ଶ ଦେଲେ, ''ଆପଣ ହଷ୍ଟେଲ ଛାଡ଼ି ତୁରନ୍ତ ପଳାଇ ଯାଆନ୍ତୁ । ମୁସଲମାନମାନେ ବସିଛନ୍ତି । ନିଜେ ହେଡ୍‌କ୍ଲାର୍କ୍ ଆପଣଙ୍କୁ ଡାକିବାକୁ ଅର୍ଡ଼ର ଧରି ଆସୁଛନ୍ତି ।''

ସିଙ୍ଗଲ୍ ରୁମରେ ଚାବି ପକାଇ ଅନ୍ତର୍ଦ୍ଧାନ ହେଲି । ସାତଦିନିଆ ଶୀତଛୁଟି ପରେ ମଧ୍ୟ ଫେରିଆସିବାକୁ ସାହସ ହେଲା ନାହିଁ । ପ୍ରାୟ ଦୁଇସପ୍ତାହ ପରେ ଫେରିଆସି ଶୁଣିଲି, ଅଧ୍ୟାପକ ଜଗଦାନନ୍ଦ ମହାନ୍ତି ନାନାପ୍ରକାର ବାହାନା ଦେଖାଇ ଅଧ୍ୟକ୍ଷଙ୍କ ମନକୁ ଥଣ୍ଡା କରିପାରିଥିଲେ । କିନ୍ତୁ, ତା ପରେ, ଅଧ୍ୟକ୍ଷ ଏସ୍.ରାୟ ଅନାର୍ସ କ୍ଲାସରେ ପଢ଼ାଇଲା ବେଳେ ମୋ ମୁହଁକୁ କେବେ ଚାହିଁ ନଥିଲେ ।

ପରେ ଏଲ୍ଲାହାବାଦରୁ ଏମ୍.ଏ. ପାଶ୍ କରି ଆସିଲାବେଳକୁ ସେ ଥିଲେ ଶିକ୍ଷା ବିଭାଗର ଡି.ପି.ଆଇ । ଚାକିରି ଲାଗି ଦରଖାସ୍ତ ଦେଲାବେଳେ ଗମ୍ଭୀର ସ୍ୱରରେ ସେ କହିଥିଲେ, ''ସେଦିନ ତୁମକୁ ରାଷ୍ଟିକେଟ୍ କରିଦେଇଥିଲେ, ଏବେ ଅଧ୍ୟାପକ ଚାକିରି ଲାଗି ଆସିପାରି ନଥାନ୍ତ ।'' ମୁଁ ଧୀର ସ୍ଥିର ଭାବରେ ଉତ୍ତର ଦେଲି, ''ସାର୍, ମୋ ସଭା ଓ ଶ୍ରୀରାମଚନ୍ଦ୍ର ଦାଶଙ୍କ ଭାଷଣ ସତ୍ତ୍ୱେ ପାକିସ୍ତାନ ତିଆରି ହେଲା । କିନ୍ତୁ କଟକର ମୁସଲମାନ ନେତାମାନେ ସେଠାକୁ ନଯାଇ ଏଠାରେ ଅଛନ୍ତି । କେବଳ ସନାଉଲ୍ଲା ଖାଁ ଚାଲିଯାଇଛନ୍ତି ବୋଲି ଶୁଣିଲି ।'' ଖୁବ୍ ଖୋଲା ମନରେ ଏସ୍.ରାୟଙ୍କୁ ସେତେବେଳେ ହସିଥିବାର ଦେଖିଥିଲି ।

## ବି.ଏ.ପରୀକ୍ଷା ପରେ

ବି.ଏ. ପରୀକ୍ଷା ଶେଷ ହେଲା ପରେ ମହତାବବାବୁ ଓ ବୀରେନ ମିତ୍ରଙ୍କ ସହିତ ସାକ୍ଷାତ କଲାବେଳେ ସେମାନେ ନିଜ ଅଞ୍ଚଳରେ ଜନଜାଗରଣ ନିମନ୍ତେ କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । ୧୯୪୬ ମସିହାର ପ୍ରଥମାର୍ଦ୍ଧରେ ସୁଦ୍ଧା ସ୍ୱାଧୀନତା ପ୍ରାପ୍ତି ସମ୍ଭବ ହେବ କି ନାହିଁ, ସେ ବିଷୟରେ ସନ୍ଦେହ ଥାଏ । ତେଣୁ ରାଜନୈତିକ ପରିବେଶ ଉତ୍ତେଜନାପୂର୍ଣ୍ଣ ଥିଲା ।

ଘର ପାଖରେ ପହଞ୍ଚି ଶୁଣିଲି, ବାଲିଆପାଳ ଠାରେ ଗୋଟିଏ କଂଗ୍ରେସ କର୍ମୀ ସମ୍ମିଳନୀ ବସିବ । ସୁବର୍ଣ୍ଣରେଖା ଅତିକ୍ରମ କରି ଚାଲି ଚାଲି ସେଠାକୁ ଗଲି । କରୁଣାକର ପାଣିଗ୍ରାହୀ ଓ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ ପ୍ରଭୃତି ବାଲେଶ୍ୱର ଜିଲ୍ଲାର ବଡ଼ ବଡ଼ ନେତାମାନେ ସେଠାରେ ଉପସ୍ଥିତ ଥିଲେ । ମୋ ସହିତ ଗୋଟିଏ ଛାତ୍ରବାହିନୀ ମଧ ଯାଇଥିଲେ । ତିନି ଦିନ ଧରି ସମ୍ମିଳନୀ ଚାଲିଥିଲା ।

ଦିନେ ନେତାମାନଙ୍କ ଆଗରେ ଜଣେ କଂଗ୍ରେସକର୍ମୀ ଆପତ୍ତି ଆଣିଲେ ଯେ ମୁସଲମାନ ଘରେ ପାଣି ପିଇଥିବାରୁ ଭୋଗରାଇ ଗ୍ରାମବାସୀମାନେ ତାଙ୍କ ପରିବାରକୁ ଏକଘରିଆ କରିଛନ୍ତି । ସତେ ଯେପରି ହିନ୍ଦୁମୁସଲମାନ ଏକତା ସ୍ଥାପନ ନିମନ୍ତେ ମୋତେ ଗୋଟିଏ ସୁଯୋଗ ମିଳିଗଲା । ଦଳେ ଛାତ୍ର ଓ କେତେକ କଂଗ୍ରେସକର୍ମୀଙ୍କୁ ଏକତ୍ରିତ କରି ତତ୍‌କ୍ଷଣାତ୍ ଘୋଷଣା କରିଦେଲି ଯେ ଆଗାମୀ ପରଶୁ ଭୋଗରାଇର ମୁସଲମାନ ନେତା ଦଫିର ସାହେବ ଓ ଶୋଭାନ୍ ମିଆଁଙ୍କ ଘରେ ଆମେ ମଧ୍ୟାହ୍ନ ଭୋଜନ କରିବୁଁ । ସେହି ଦୁଇ କଂଗ୍ରେସୀ ମୁସଲମାନ ଆମ ପ୍ରସ୍ତାବରେ ରାଜି ହୋଇ ଅତିଥି ଅଭ୍ୟର୍ଥନା ଲାଗି ପ୍ରସ୍ତୁତ ହେବାକୁ ଭୋଗରାଇ ଚାଲିଗଲେ ।

ଆମ ଅଞ୍ଚଳର ଦୁଇଜଣ ବି.ଏ. ପରୀକ୍ଷା ଦେଇଥିବା ଛାତ୍ର ମୃତ୍ୟୁଞ୍ଜୟ ଜେନା ଓ ସୁଧାଂଶୁଶେଖର ଦାସ, ଏବଂ ଭାରତଛାଡ଼ ଆନ୍ଦୋଳନରେ କାରାବରଣ କରିଥିବା ପ୍ୟାରୀମୋହନ ଦାସ ଓ ଦୁର୍ଗାଶଙ୍କର ଦାସଙ୍କ ସମେତ ୧୫ ଜଣ କର୍ମୀଙ୍କୁ ସାଙ୍ଗରେ ଧରି ବାଲିଆପାଳ ଠାରୁ ଭୋଗରାଇ ପର୍ଯ୍ୟନ୍ତ 'ମହାତ୍ମା ଗାନ୍ଧିକୀ ଜୟ' 'ଭାରତମାତା କୀ ଜୟ', 'ହିନ୍ଦୁମୁସଲମାନ ଏକ ହୁଅ' ଇତ୍ୟାଦି ଧ୍ୱନି ଦେଇ ଆସିଲା ବେଳେ ପଥପ୍ରାନ୍ତର ଦର୍ଶକମାନେ ଆମ ଅଭିଯାନର ଲକ୍ଷ୍ୟ ସ୍ଥଳ ବା ଉଦ୍ଦେଶ୍ୟ ସମ୍ପର୍କରେ କିଛି ଜାଣି ନଥିଲେ । କିନ୍ତୁ ଭୋଗରାଇର ନିକଟବର୍ତ୍ତୀ ବାଶୁଳୀ ଠାକୁରାଣୀଙ୍କ ମନ୍ଦିର ପାଖରେ ପହଞ୍ଚିଲାବେଳକୁ 'ମୁସଲମାନ ଘରେ ଖାଇବା' ଖବର ପବନରେ ଉଡ଼ି ଆସିବା ପରି ପହଞ୍ଚି ସାରିଥିଲା । ସେଠରେ ଜଣେ ଅଜ୍ଞାତ ବ୍ୟକ୍ତି ମୋତେ କିଛି ଦୂରକୁ ଡାକିନେଇ କାନ ପାଖରେ ସତର୍କବାଣୀ ଶୁଣାଇଲେ, ''ଏ କାମ କର ନାହିଁ । ଗାନ୍ଧି ମହାତ୍ମା ତ ନିଜେ କହିଛନ୍ତି

'ରୋଟି ଓ ବେଟୀ ଛୋଡ଼କେ ଔର୍ ସବ୍‌ମେ ହିନ୍ଦୁ ମୁସଲମାନ ଏକ୍ ହୋ', ଅଥଚ ତୁମେ ମୁସଲମାନଘରେ ଖାଇବାକୁ ଯାଉଛ । ବିପଦରେ ପଡ଼ିବ । ତୁମର ବି.ଏ.ପଢ଼ା ଚୁଲିକୁ ଯିବ ।'' ଭଦ୍ରଲୋକ ପରିଚୟ ନ ଦେଇ ଅନ୍ତର୍ହିତ ହେଲେ । ଆମେ ମୁସଲମାନ ବସ୍ତି ଭିତରେ ଦଫିରସାହେବଙ୍କ ଘରେ ଉପସ୍ଥିତ ହେଲୁଁ । ଶୋଭାନ ମିଆଁ ଓ ଅନ୍ୟ କେତେଜଣ ମୁସଲମାନ ଆମକୁ ସ୍ୱାଗତ କଲେ ।

ମୁସଲମାନୀ ଆଦବକାୟଦାରେ ପଂକ୍ତିଭୋଜନ ଶେଷ ହେଲା । ବିଶ୍ରାମ ପରେ ଯେ ଯାହା ଗାଁ ପଥରେ ଛତ୍ରଭଙ୍ଗ ଦେଲୁଁ । ସେ କାଳରେ ଜଣେ ହିନ୍ଦୁ ପକ୍ଷରେ ମୁସଲମାନଘରେ ଖାଦ୍ୟ ଗ୍ରହଣ କରିବା ଯେ କେଡ଼େ ବଡ଼ ସାମାଜିକ ଅପରାଧ ଥାଏ, ତାହା ଜାଣି ନଥିଲି କିମ୍ବା ପରିଣାମ କଥା ଭାବି ନଥିଲି । ରାତିରେ ଘରେ ପହଞ୍ଚିଲାବେଳକୁ ଭୋଗରାଇର ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରେରିତ ଦୂତ ବାପାଙ୍କୁ ମୋ ଦୁଷ୍କର୍ମର ବିବରଣୀ ପ୍ରଦାନ ସହ ସତର୍କ ଘଣ୍ଟି ମଧ୍ୟ ବଜାଇ ଯାଇଥିଲେ । ଅବିଳମ୍ବେ ଚାରିଆଡ଼େ ଚହଳ ପଡ଼ିଗଲା । ଚନ୍ଦନେଶ୍ୱରର ବ୍ରାହ୍ମଣମାନଙ୍କ ମଧରେ ଆଲୋଡ଼ନ, ବାଟ ଘାଟରେ ଆଲୋଚନା ଓ ଆତ୍ମୀୟସ୍ୱଜନମାନଙ୍କର ଭାଲେଣି ଇତ୍ୟାଦି ଘଟଣାର ସଂବାଦ ଆସୁଥାଏ । ବଂଶ ମୁହଁରେ କଳଙ୍କ ଲାଗିଲା ବୋଲି ଗାଁଲୋକେ କହିଲେ । ବାପା ଦୁଃଖରେ କହିବାକୁ ଲାଗିଲେ, ''ମୁଁ ଆଉ ମୁହଁ ଦେଖାଇ ପାରିବି ନାହିଁ ।'' ତାଙ୍କ ଆଗକୁ ବାହାରିବା ପାଇଁ ସାହସ କଲି ନାହିଁ ।

ତେଣେ, ବିପଦବେଳେ ମୋ ପାଖରେ ଛିଡ଼ା ହେବାଲାଗି କଂଗ୍ରେସକର୍ମୀମାନେ ଆସିଗଲେ । ପ୍ୟାରୀମୋହନ ଦାସ ବାପାଙ୍କୁ ବୁଝାଇଲେ, ସବୁଆଡ଼େ ସଭା ସମିତି କରି ଲୋକଙ୍କୁ ଶାନ୍ତ କରିଦିଆଯିବ । ଫଳରେ ଆରମ୍ଭ ହେଲା ଅନ୍ୟ ଏକ ପର୍ବ । ଆମ ଘର ହେଲା କଂଗ୍ରେସକର୍ମୀ ଓ ଦୂରାଗତ ଛାତ୍ରବନ୍ଧୁମାନଙ୍କର ଆଡ୍ଡାସ୍ଥଳୀ । ସେମାନଙ୍କୁ ଯଥାଯୋଗ୍ୟ ଚର୍ଚ୍ଚା କରିବା ହେଲା ଗୋଟିଏ ପାରିବାରିକ ସମସ୍ୟା । ମର୍ଯ୍ୟାଦା ଦୃଷ୍ଟିରୁ ସକାଳେ ସମସ୍ତଙ୍କ ପାଇଁ ପୁରି ଓ ସୁଜି ଇତ୍ୟାଦି ଜଳଖିଆ ତିଆରି କରିବା ଦାୟିତ୍ୱ ନବାଗତା ସ୍ତ୍ରୀଙ୍କ ହାତରେ ନ୍ୟସ୍ତ ରହିଲା । ରାତିରେ ପ୍ରାୟ ପନ୍ଦର ଜଣଙ୍କ ପାଇଁ ଶୋଇବା ବ୍ୟବସ୍ଥା ମୋତେ ତତ୍ତ୍ୱାବଧାନ କରିବାକୁ ହେଉଥାଏ । ଦିନେ ରାତିରେ ପ୍ରଶସ୍ତ ବାରଣ୍ଡା ଉପରେ ବଡ଼ ବଡ଼ ୪ଟି ମଶାରି ଟାଙ୍ଗି ପ୍ରତ୍ୟେକଟି ଭିତରେ ୪ ଜଣ ଲେଖାଏଁ ଶୋଇବେ ବୋଲି ଅନୁରୋଧ ଜଣାଇଲି । ଗୋଟିଏ ମଶାରି ଭିତରକୁ ଦଫିରସାହେବ, ଶୋଭାନ ମିଆଁ ଓ ପ୍ୟାରୀମୋହନ ଦାସ ପଶିଗଲା ପରେ ମୃତ୍ୟୁଞ୍ଜୟ ଜେନାଙ୍କୁ ସେଥିମଧରେ ଠେଲିପେଲି ଭର୍ତ୍ତି କଲି । ହାଇସ୍କୁଲ ସ୍ତରରୁ କଲେଜ ପର୍ଯ୍ୟନ୍ତ ସେ ଜଣେ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ

ଦୁଷ୍ଟଶିରୋମଣି ରୂପେ ପରିଚିତ ଥାନ୍ତି । ମଶାରି ଭିତରେ ପଶିଯାଇ ସେ ପାଟି କଲେ, ''ଏ ତ ଅଖଣ୍ଡ ଭାରତ । ୟା ଭିତରେ ଜାତି ଅଜାତି, ହିନ୍ଦୁ ମୁସଲମାନ, ଖଦଡ଼ୀ ବେଖଦଡ଼ୀ, କର୍ମୀ ଅକର୍ମା, ସମସ୍ତଙ୍କର ମହାମିଳନ !'' ତାଙ୍କ କଥା ଶୁଣି ସମସ୍ତେ ବେଦମ ହସିଲେ । ଦଫିରସାହେବ ମତ ଦେଲେ, ''ମୃତୁ୍ୟଞ୍ଜୟ, ତୁମେ ଖୋଦାଙ୍କୁ ଡାକ ଯେ ଜିନ୍ନା ସାହେବ ମଶାରି ପାଖକୁ ଆସି ଆମମାନଙ୍କ ମିଳନ ଦେଖିଯିବେ ।''

ଅନେକ ଜାଗାରେ ସଭା ସମିତି କଲାବେଳେ ଜାଣିପାରିଲି, ମୋ ପ୍ରତି ଲୋକଙ୍କର ବିରକ୍ତିଭାବ କମି ନାହିଁ । ଗୋଟିଏ ସଭାରେ ଭାଷଣ ଆରମ୍ଭ କଲି, ''ଦେଶର ଭବିଷ୍ୟତ ବିଷୟରେ ଆଲୋଚନା ଲାଗି ଏହି ସମାବେଶ ଆୟୋଜନ କରାଯାଇଛି ।'' ତତ୍‌କ୍ଷଣାତ ଜଣେ ବୟୋବୃଦ୍ଧ ଭଦ୍ରବ୍ୟକ୍ତି ଛିଡ଼ା ହୋଇ ଦୃଢ଼ ସ୍ୱରରେ ପ୍ରଶ୍ନ କଲେ, ''ଭବିଷ୍ୟତରେ ଧର୍ମ ଓ ସମାଜକୁ କିଭଳି ନଷ୍ଟ କରିବାକୁ ହେବ, ସେହିକଥା କହିବେ, ନା ଆଉ କିଛି ?'' ଏତକ କହି ସେ ସଭାସ୍ଥଳରୁ ଚାଲିଗଲେ ।

ଶେଷରେ ଚିନ୍ତା କଲି, ଭୋଗରାଇରେ ଗୋଟିଏ ଜନସମାବେଶ ଆୟୋଜନ କରି ମହତାବବାବୁଙ୍କୁ ଆଣିବି । ସେତେବେଳକୁ ସେ ଥାନ୍ତି ମଧ୍ୟବର୍ତ୍ତୀକାଳୀନ ସରକାରରେ ଓଡ଼ିଶାର 'ପ୍ରଧାନମନ୍ତ୍ରୀ' । ୧୯୪୬ ଜୁନ ମାସ । କଟକ ଯାଇ ତାଙ୍କୁ ସବୁକଥା ଜଣାଇଲି । ଭୋଗରାଇ ଆସିବେ ବୋଲି ସେ ତାରିଖ ଦେଇଦେଲେ । ଆଶ୍ଚର୍ଯ୍ୟର ବିଷୟ, ଭୋଗରାଇର ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ମୁସଲମାନ ଘରେ ଖାଇଥିବା ଅପରାଧ ଲାଗି ମୋର ଘୋର ଶତ୍ରୁତା କରୁଥିଲେ, ସେହିମାନେ ହିଁ ମିଳିତଭାବରେ ମହତାବବାବୁଙ୍କୁ ସମ୍ବର୍ଦ୍ଧନା ଦେବାଲାଗି ତତ୍ପର ହୋଇଉଠିଲେ । ସ୍ୱାଧୀନତାର ପ୍ରାକ୍‌କାଳରେ ବରେଣ୍ୟ ନେତାମାନଙ୍କୁ ସମ୍ମାନ ଦେବାଲାଗି ଜନସାଧାରଣଙ୍କର ପ୍ରବଳ ଆଗ୍ରହ ଥାଏ । ଜଣେ ସାମାନ୍ୟ ଛାତ୍ର ଭାବରେ ମୁଁ ଯେ ପ୍ରଧାନମନ୍ତ୍ରୀଙ୍କୁ ଭୋଗରାଇ ଆଣିପାରିବି, ସେଥିପାଇଁ ମୋ ପ୍ରତି ବିରୋଧୀମାନଙ୍କର ଶ୍ରଦ୍ଧା ଜାତ ହେବା ଅନୁଭବ କଲି ।

ସଭା ତାରିଖର ପୂର୍ବସନ୍ଧ୍ୟାରେ ମହତାବବାବୁ ସଦଳବଳେ ଟ୍ରେନ୍‌ରେ ଆସି ଜଳେଶ୍ୱର ଷ୍ଟେସନରେ ପହଞ୍ଚିଲେ । ତାଙ୍କ ସାଙ୍ଗରେ ଆସିଥାନ୍ତି ଭୈରବଚନ୍ଦ୍ର ମହାପାତ୍ର, କରୁଣାକର ପାଣିଗ୍ରାହୀ, ରବୀନ୍ଦ୍ରମୋହନ ଦାସ ଓ ଜ୍ୱାଲାପ୍ରସାଦ ସରାବଗୀ ପ୍ରମୁଖ ବାଲେଶ୍ୱରର ନେତୃବୃନ୍ଦ । ସମସ୍ତଙ୍କୁ ନେଇ ଡାକବଙ୍ଗଳାରେ ରଖିଲି । ବ୍ରିଟିଶ ରାଜତ୍ୱ ଶେଷ ହେବାକୁ ସେବେ ବି ସମୟ ବାକି ଥାଏ । ତେଣୁ, ଜଣେ କଂଗ୍ରେସ 'ପ୍ରଧାନମନ୍ତ୍ରୀ'ଙ୍କ ଗସ୍ତ ସହିତ ସରକାରୀ କଳର ପ୍ରାୟ ସମ୍ପର୍କ ନଥାଏ । ଅତିଥିମାନଙ୍କୁ ଜଳେଶ୍ୱର ଠାରୁ ବାଟଗ୍ରାମ ପର୍ଯ୍ୟନ୍ତ ନେବା ନିମନ୍ତେ

ସେତେବେଳେ ଚାଲୁଥିବା ଖଣ୍ଡିଏ ମାତ୍ର ଛୋଟ ସର୍ଭିସ୍ ବାସ୍‌ରେ ସିଟ୍ ରିଜାର୍ଭ କରିଥିଲି । କିନ୍ତୁ ସନ୍ଧ୍ୟାବେଳର ଅସରାଏ ବର୍ଷା ଯୋଗୁଁ ରାସ୍ତା କର୍ଦ୍ଦମାକ୍ତ ଥିବ ଜାଣିପାରି ମାର୍‌ୱାଡ଼ି ମାଲିକ ବାସ୍ ଯିବ ନାହିଁ ବୋଲି ରୋକ୍‌ଠୋକ୍ କହିଦେଲେ । ଅନୁନୟ ବିନୟ ତଥା ବାରମ୍ବାର ପ୍ରଧାନମନ୍ତ୍ରୀ ଶବ୍ଦ ଉଚ୍ଚାରଣ ବିଫଳ ହେଲା । ଜଣାଯାଉଥାଏ, ମାରୁଆଡ଼ି ବ୍ୟବସାୟୀମାନେ ସେତେବେଳେ ବି ଭାବୁଥିଲେ ଯେ ବ୍ରିଟିଶ ସାମ୍ରାଜ୍ୟ ଅମର ଓ ଅକ୍ଷୟ; କଂଗ୍ରେସୀ ନେତାମାନେ ଜେଲରୁ ଆସିବେ ଓ ଜେଲକୁ ଫେରିବେ; ତେଣୁ ସେମାନଙ୍କର କିଛି ମୂଲ୍ୟ ନାହିଁ ଓ ସାହାଯ୍ୟ କଲେ ବିପଦର ଆଶଙ୍କା ଅଛି ।

ମଧ୍ୟରାତ୍ରି ପର୍ଯ୍ୟନ୍ତ ଚେଷ୍ଟା କରି ଶେଷରେ ଖଣ୍ଡିଏ ଟ୍ରକ୍ ଠିକ କଲି । ବିହାରୀ ଡ୍ରାଇଭାର ସର୍ତ୍ତ ଲଦିଦେଲେ, ‘‘ବାଟରେ କାଦ ପଡ଼ିଲେ, ସମସ୍ତଙ୍କୁ ତଳକୁ ଆସି ଟ୍ରକ ଠେଲିବାକୁ ପଡ଼ିବ ।’’ ଆଦେଶ ମାନିନେଲି ।

ସକାଳେ ମହତାବବାବୁ ନିଃସଙ୍କୋଚ ଚିତ୍ତରେ ଡ୍ରାଇଭାରଙ୍କ ସିଟ୍ ପାଖରେ ବସିଗଲେ । ନେତାମାନଙ୍କ ସମେତ ଆମେ ପନ୍ଦରଜଣ ପର୍ଯ୍ୟନ୍ତ ଲୋକ ଟ୍ରକରେ ଛିଡ଼ା ରହିଲୁଁ । ଅଣଓସାରିଆ କଚ୍ଚା ରାସ୍ତା ଉପରେ ଧୀର ମନ୍ଥର ଗତିରେ ଟ୍ରକଟି ଚାଲିଲା । କିଛି ଦୂରରେ ପଡ଼ିଲା ପ୍ରସିଦ୍ଧ ନାମ୍ପୋ ଚଟାଣ । କାଦୁଅ ଭିତରେ ଚକଗୁଡ଼ିକ ପୋତିଗଲେ ଯାତ୍ରା ସେହିଠାରେ ସମାପ୍ତ ହେବ ଜାଣି ସମସ୍ତେ ତଳକୁ ଆସି ଟ୍ରକ୍‌ଟିକୁ ଠେଲିଲୁଁ । ମହତାବ ମଧ୍ୟ ତଳକୁ ଡେଇଁଲେ । ଚଟାଣ ଅତିକ୍ରମ କରିବାକୁ ପ୍ରାୟ ଅଧଘଣ୍ଟାଏ ଲାଗିଲା । ପୁଣି ପଡ଼ିଲା କମର୍ଦ୍ଧାର କାଦୁଅ ରାସ୍ତା ଓ ତା ପରେ ବାଉଁଶଡିହାର କାଦୁଅ । ଟ୍ରକ୍ ଠେଲି ଠେଲି ବାଟଗ୍ରାମ ଧରିଲାବେଳକୁ ଦିନ ୧୧ଟା । ଜୁନ ମାସର ପ୍ରଚଣ୍ଡ ଖରା । ଆଗରେ ବାଲି ଆଡ଼ିଆ ପରେ ବାଲି ଆଡ଼ିଆ । ଭୋଗରାଇ ହାଟ ପାଖକୁ ରାସ୍ତା ପ୍ରାୟ ପାଞ୍ଚ କିଲୋମିଟର ।

ପ୍ରଧାନମନ୍ତ୍ରୀଙ୍କ ପାଇଁ ସବାରିଟିଏ ରଖାଯାଇଥାଏ । ସେଥିରେ ବସିବା ଲାଗି ତାଙ୍କୁ ଅନୁରୋଧ କଲି । ‘‘ଭୋଗରାଇର ବାଲି ଆଡ଼ିଆ ଉପରେ ଆଗରୁ କେତେଥର ଚାଲିଛି, ଆଜି ମଧ୍ୟ ଚାଲିବି’’ ବୋଲି କହି ସେ ଆଗେଇ ଚାଲିଲେ । ଅନ୍ୟ ନେତାମାନେ ନିରୁପାୟ ଅବସ୍ଥାରେ ତାଙ୍କ ପଛେ ପଛେ ଆଗେଇଲେ । ଖାଲି ସବାରିଟି ଦେଖି ସମସ୍ତଙ୍କ ଅଲକ୍ଷ୍ୟରେ କେତେବେଳେ କରୁଣାକର ପାଣିଗ୍ରାହୀ ସେଥିରେ ବସିଗଲେ । ଯେଉଁଠାରେ ଗାଁ ପଡୁଥାଏ, ଗ୍ରାମବାସୀମାନେ ଫୁଲ ଧରି ଛିଡ଼ା ରହିଥାନ୍ତି ଓ ମହତାବଙ୍କ ଜୟଧ୍ୱନି ଦେଉଥାନ୍ତି । ଛୋଟ ଛୋଟ ପିଲାମାନେ ସବାରିରେ ବସିଥିବା ଭଦ୍ରବ୍ୟକ୍ତିଙ୍କୁ ମହତାବ ବୋଲି ଭାବିନେଇ ତାଙ୍କରି ଉପରେ ଫୁଲତକ ଉଜାଡ଼ି ଦେଉଥାନ୍ତି ।

ଦିନ ୧ଟା ପରେ ମହତାବ ଭୋଗରାଇ ହାଟ ନିକଟରେ ପହଞ୍ଚିଲାବେଳକୁ ଅନେକ ଲୋକ ସ୍ୱାଗତ କରିବା ଲାଗି ରୁଣ୍ଡ ହୋଇଥାନ୍ତି । ହଠାତ୍ ଦେଖିଲି, କେତେକ ଲୋକ ପଛରେ ଆସୁଥିବା ସବାରି ଚାରିପାଖରେ ଘେରିଗଲେଣି । ପାଖକୁ ଯାଇ ଆବିଷ୍କାର କଲି, ଭିତରେ ଫୁଲଗଦା ତଳେ ଗାଢ଼ ନିଦରେ ଶୋଇରହିଛନ୍ତି କରୁଣାକର ପାଣିଗ୍ରାହୀ । ମୋ ଡାକ ଶୁଣି ଅପ୍ରସ୍ତୁତ ଅବସ୍ଥାରେ ସେ ବାହାରି ଆସିଲେ । ହସି ହସି ମହତାବବାବୁ ବିଦ୍ରୁପ କଲେ, "କିହୋ, କରୁଣାକରବାବୁ, ଆରାମରେ ଶୋଇଗଲ । ଖରା ଓ ଗରମ ଜାଣିପାରିଲ ନାହିଁ । ତୁମେ ପରା ଏ ଅଞ୍ଚଳର ପ୍ରତିନିଧି ?" ଜଣେ ବୟସ୍କ ନେତା କମେଣ୍ଟ ଦେଲେ, "ମୋର ଅନୁମାନ, ସବାରିକୁ କରୁଣାକରବାବୁଙ୍କ ଶବାଧାର ବୋଲି ଭାବିନେଇ ଲୋକେ ଫୁଲମାଳ ଥୋଇଛନ୍ତି ।"

ଅପରାହ୍ଣ ୪ଟା ବେଳେ ଗୋଟିଏ ବଡ଼ ଧରଣର ଜନସଭାରେ ମହତାବବାବୁ ଉଦ୍‌ବୋଧନ ଦେଲେ । ତାଙ୍କର ସ୍ୱଭାବସୁଲଭ ଶୈଳୀରେ ଆଗାମୀ ଦିନର ସମସ୍ୟାଗୁଡ଼ିକ ପ୍ରତି ସେ ଲୋକଙ୍କର ଚିନ୍ତା ଆକର୍ଷଣ କଲେ । ରାତିରେ ହେଲା ପ୍ରବଳ ବର୍ଷା । ସକାଳେ ଖବର ପାଇଲି, ବାଟଗ୍ରାମ ଠାରୁ ଟ୍ରକ୍ ଡ୍ରାଇଭର ଗାଡ଼ି ନେଇ ଚାଲିଯାଇଛି । ଦୁର୍ଭାଗ୍ୟକୁ ସବାରିବାହକମାନେ ମଧ୍ୟ ଚାଲିଯାଇଥିଲେ । ଭୋଗରାଇଠାରୁ ଜଳେଶ୍ୱର ପର୍ଯ୍ୟନ୍ତ ମହତାବବାବୁ କିପରି ଫେରିବେ ଚିନ୍ତା କରିପାରିଲି ନାହିଁ । ବର୍ଷା ଛାଡ଼ିଯାଇଥାଏ, କିନ୍ତୁ ଆକାଶ ଥାଏ ମେଘାଚ୍ଛନ୍ନ । ସେତେବେଳକୁ ବାଲେଶ୍ୱରରୁ ଆସିଥିବା ନେତାମାନେ ମୋତେ ଗାଳିବର୍ଷଣ କରୁଥାନ୍ତି । "ରାସ୍ତାଘାଟ ନ ଥିବା ଏପରି ଅପନ୍ତରା ଜାଗାକୁ ପ୍ରଧାନମନ୍ତ୍ରୀଙ୍କୁ ଆଣିବା ଉଚିତ ହେଲା କି ?" ଏହି ପ୍ରକାର ପ୍ରଶ୍ନବାଣରେ ଜର୍ଜରିତ ହେଲି । କିନ୍ତୁ ସହାସ୍ୟ ବଦନରେ ମହତାବବାବୁ ଆଶ୍ୱାସନା ଦେଲେ, "ମନ୍ମଥ, ଦୁଃଖ କର ନାହିଁ । ଦହମୁଣ୍ଡା ରାସ୍ତାରେ ଯାଇ ସନ୍ଧ୍ୟାବେଳକୁ ଆମେ ଜଳେଶ୍ୱରରେ ପହଞ୍ଚି ରାତିଗାଡ଼ି ଧରିପାରିବା ।"

ବିଲ ବନ୍ଧ ଉପରେ ପାଣି ଓ କାଦୁଅ ପ୍ରତି ଭ୍ରୁକ୍ଷେପ ନକରି ମହତାବବାବୁ ଖାଲିଗୋଡ଼ରେ ଆଗେଇ ଚାଲିଲେ । ତାଙ୍କ ପଛେ ପଛେ ଅଗତ୍ୟା ଅନ୍ୟମାନେ ଚାଲିଲେ । ମୁଁ ପ୍ରାୟ ମାଇଲେ ବାଟ ଗଲାପରେ ସେ କହିଲେ, "କଷ୍ଟ କରି ତୁମେ କାହିଁକି ଜଳେଶ୍ୱର ଯିବ ? ଘରେ ଯାଇ ବିଶ୍ରାମ ନିଅ ।" ସେଦିନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ସକାଳ ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଚାଲିବାକୁ ପଡ଼ିଥିଲା । ତାହା ଥିଲା ସେତେବେଳେ ଭୋଗରାଇର ରାସ୍ତାଘାଟର ଅବସ୍ଥା, ଏବଂ ଗାନ୍ଧିଯୁଗର କଂଗ୍ରେସ ନେତାମାନଙ୍କର ଅକାତର କଷ୍ଟ ସ୍ୱୀକାରର ନମୁନା ।

୧୯୪୬ ଜୁନମାସରେ ଦ୍ୱିତୀୟ ଶ୍ରେଣୀରେ ଅନାର୍ସ ସହ ବି.ଏ. ପାଶ୍ କଲି । ସାର୍ଟିଫିକେଟ ଆଣିବା ଲାଗି କଟକ ଯାଇଥିଲାବେଳେ ବୀରେନ୍ ମିତ୍ରଙ୍କ ସହିତ ସାକ୍ଷାତ କଲି । ସେ ମେଡ଼ିକାଲ କଲେଜ ହସ୍‌ପିଟାଲରେ ଚିକିତ୍ସାଧୀନ ଥିଲେ । ସେ ଦିନ ତାଙ୍କ କେବିନରେ ଯେଉଁ ନାର୍ସ ପଥ୍ୟ ଖୁଆଉଥିବା ଦେଖିଥିଲି, ପରେ ବୀରେନ୍‌ବାବୁ ତାଙ୍କୁ ବିବାହ କରିଥିଲେ । ମୁଁ ଏମ୍.ଏ. ପଢ଼ିବା କଥା ଶୁଣି ସେ ମୋତେ ଗାଳି ଦେଲେ । "ଆରେ, ଦେଶ ସ୍ୱାଧୀନ ହେବ । ଆମ ସାଙ୍ଗରେ ମିଶି ରାଜନୀତି କର । ଏମ୍.ଏ. ପଢ଼ିଲେ କ'ଣ ମିଳିବ ?"

ତେଣେ, ମୋ ବଡ଼ମାମୁଁ କାଳୀକିଙ୍କର ସାମଲ ଡେପୁଟି କଲେକ୍ଟର ପଦ ପାଇଁ ଦରଖାସ୍ତ କରିବା ଲାଗି ପରାମର୍ଶ ଦେଲେ । ଆସନ୍ନପ୍ରାୟ ଗଡ଼ଜାତମିଶ୍ରଣ ଯୋଗୁଁ ସେବର୍ଷ ଅନେକ ଗୁଡ଼ିଏ ଡେପୁଟି କଲେକ୍ଟର ପଦ ସୃଷ୍ଟି ହୋଇଥାଏ । ମାମୁଁ ଥାନ୍ତି ଉଚ୍ଚପଦସ୍ଥ ଅଫିସାର । ଦରଖାସ୍ତ ପୂରଣ ପାଇଁ ମୋତେ ବାଧ୍ୟ କଲେ । ଆଇ.ଏ.ଏସ୍. ଓ ଓ.ଏ.ଏସ୍. ପ୍ରଭୃତି ପ୍ରତିଯୋଗିତାମୂଳକ ପରୀକ୍ଷା ଆବଶ୍ୟକ ନଥାଏ । ଅନାର୍ସ ଗ୍ରାଜୁଏଟ ହେଲେ ଯଥେଷ୍ଟ ।

ଘରକୁ ଆସି ଏମ୍.ଏ. ପଢ଼ିବି ବୋଲି ବାପାଙ୍କୁ କହିବାରୁ ସେ ଖୁବ୍ ଖୁସି ହେଲେ । ବି.ଏ. ପରେ ଚାକିରି କଲେ ତାଙ୍କର ଗଭୀର ଦୁଃଖ ହେବ ବୋଲି ସ୍ତ୍ରୀ ରାଜଶ୍ରୀ ମତ ପ୍ରକାଶ କଲେ । ସେତେବେଳେ ରେଭେନ୍‌ସା କଲେଜରେ ଇତିହାସରେ ଏମ୍.ଏ. ପଢ଼ିବା ବ୍ୟବସ୍ଥା ନଥାଏ । ତେଣୁ ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟକୁ ଦରଖାସ୍ତ ପଠାଇଲି । ସିଟ୍ ମିଳିବ ବୋଲି ଚିଠି ପାଇ ଅମାବାସ୍ୟା ତିଥି ଓ ପ୍ରବଳ ବର୍ଷା ପ୍ରତି ଭ୍ରୂକ୍ଷେପ ନକରି ଘରୁ ବାହାରି ଗଲି ।

# ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟ



## ଏମ୍.ଏ. ଅଧ୍ୟୟନ (୧୯୪୬–୪୮)

### ସ୍ୱାଧୀନତା ପ୍ରାପ୍ତି ସମୟର ଏଲ୍ଲାହାବାଦ

୧୯୪୬ ମସିହା ଜୁଲାଇ ମାସର କୌଣସି ଏକ ସନ୍ଧ୍ୟାରେ ଏଲ୍ଲାହାବାଦରେ ପହଞ୍ଚି 'ପ୍ରୟାଗ ଆଶ୍ରମ' ନାମକ ବସାଘରେ ଆଶ୍ରୟ ନେଲି । ତହିଁ ପରଦିନ ୧୦ଟା ବେଳେ ବିଶ୍ୱବିଦ୍ୟାଳୟରେ ଏଡ଼୍ମିଶନ ନେବା କଥା । ସକାଳେ ଶୁଣିଲି, ସହରର ସେହି ଅଞ୍ଚଳରେ କର୍ଫ୍ୟୁ ଜାରି କରାଗଲାଣି, କେହି ଘରୁ ବାହାରିପାରିବେ ନାହିଁ । ପାଖ କୋଠରିରେ ରହୁଥିବା ନେପାଳ ରାଜାଙ୍କର ଜଣେ ଦୂରସମ୍ପର୍କୀୟ ଭାଇ ଜଣାଇଲେ ଯେ ରାତିରେ ହିନ୍ଦୁମୁସଲମାନ ସାମ୍ପ୍ରଦାୟିକ ଦଙ୍ଗାରେ କେତେଜଣ ମରିଛନ୍ତି, ସେଥିପାଇଁ କର୍ଫ୍ୟୁ । ସେହି ନେପାଳୀ ଛାତ୍ର ମଧ୍ୟ ଭର୍ତ୍ତି ହେବାକୁ ଆସିଥିଲେ । ଦୁହେଁ ମିଶି ମୁଖ୍ୟ ରାସ୍ତାରେ ନ ଚାଲି, ଗଳି କନ୍ଦି ପଛଦେଇ ଲୁଚି ଛପି ଯଥାସମୟରେ ବିଶ୍ୱବିଦ୍ୟାଳୟ ଅଫିସରେ ଏଡ଼୍ମିଶନ ଫି ଦାଖଲ କଲୁଁ । କିଛିଦିନ ପରେ ମ୍ୟାକ୍ଡୋନାଲ୍ଡ ହିନ୍ଦୁ ହଷ୍ଟେଲରେ ସ୍ଥାନ ପାଇଲି । ଏବେ ସେହି ଛାତ୍ରାବାସର ନାମ 'ମଦନମୋହନ ମାଲବ୍ୟ ହଷ୍ଟେଲ' ।

ଏଲ୍ଲାହାବାଦରେ ଯେଉଁ ଦୁଇବର୍ଷ ରହିଲି, ସେହି ସମୟ ଥିଲା ଦେଶ ପ୍ରତି ଏକ ସଙ୍ଗୀନ ସମୟ । ସେତେବେଳେ କଂଗ୍ରେସ ରାଜନୀତିର କେନ୍ଦ୍ରସ୍ଥାନ ଥାଏ ସେହି ସହର । ସେହିଠାରେ ଥାଏ ପଣ୍ଡିତ ମୋତିଲାଲ ନେହରୁଙ୍କ 'ଆନନ୍ଦ ଭବନ'– ଜାତୀୟ କଂଗ୍ରେସ ଉଦ୍ଦେଶ୍ୟରେ ଉତ୍ସର୍ଗିତ ପ୍ରାସାଦ । ମୁଖ୍ୟ ଅଟ୍ଟାଳିକାର ନାମ ରଖାଯାଇଥାଏ 'ସ୍ୱରାଜ ଭବନ' ଏବଂ ଜାତୀୟ କଂଗ୍ରେସର ମୁଖ୍ୟ କାର୍ଯ୍ୟାଳୟ ରୂପେ ଖ୍ୟାତି ଲଭିଥାଏ । ଭାରତର ତୁଙ୍ଗ ନେତାମାନେ ସେଠାକୁ ଆସୁଥାନ୍ତି । ସେମାନଙ୍କ ଦର୍ଶନଲାଭ ପାଇଁ ସୁଯୋଗ ମିଳୁଥାଏ । ସନ୍ଧ୍ୟାବେଳେ ଗଙ୍ଗାଯମୁନାର ସଙ୍ଗମ ସ୍ଥାନ ନଦୀକୂଳରେ ଓ ଆନନ୍ଦଭବନର ପ୍ରାଙ୍ଗଣ ମଧ୍ୟରେ ବୁଲିଲାବେଳେ ଭଲ ଲାଗୁଥାଏ । ତେଣେ, ସହରର କେନ୍ଦ୍ରସ୍ଥଳସ୍ଥ ଗୋଟିଏ ସୁଦୀର୍ଘ ପଡ଼ିଆରେ ଜାତୀୟ ନେତାମାନଙ୍କ ଉଦ୍‌ବୋଧନ ଶୁଣିବା ଲାଗି ଅବକାଶ ମିଳୁଥାଏ । ସ୍ୱାଧୀନତାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ମାସଗୁଡ଼ିକରେ ଜବାହାରଲାଲ ନେହରୁ, ମୌଲାନା ଆବୁଲ

କଲମ ଆଜାଦ, ଆଚାର୍ଯ୍ୟ କୃପାଲନୀ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ସରୋଜିନୀ ନାଇଡୁ, ସେଖ୍ ମହମ୍ମଦ ଆବଦୁଲ୍ଲା, ଶାହ ନୱାଜ୍ ଖାଁ, ବିଜୟଲକ୍ଷ୍ମୀ ପଣ୍ଡିତ, ଗୋବିନ୍ଦବଲ୍ଲଭ ପନ୍ଥ, ରାଫି ଆହମ୍ମଦ କିଦ୍‌ୱାଇ ପ୍ରମୁଖ ମହାନ୍ ବ୍ୟକ୍ତିମାନଙ୍କୁ ନିକଟରୁ ଦେଖିବାକୁ ପାଇ ଛାତ୍ରଜୀବନ ସାର୍ଥକ ହେଲାପରି ମନେ ହେଉଥାଏ । ସଂକଳ୍ପ ଆସିଥାଏ, ଯେଉଁ ନେତା ଯେଉଁ ସ୍ଥାନକୁ ଆସିଲେ ସୁଦ୍ଧା ତାଙ୍କୁ ଦେଖିବା ଓ ଶୁଣିବା ଲାଗି ନିଶ୍ଚୟ ଯିବି ।

ଅପର ପକ୍ଷରେ, ସମଗ୍ର ଉତ୍ତରଭାରତରେ ସେତେବେଳେ ଯେଉଁ ସାମ୍ପ୍ରଦାୟିକ ଅନ୍ତର୍ଯୁଦ୍ଧ ବ୍ୟାପିଯାଇଥାଏ, ତାହାର ପ୍ରଭାବରେ ଏଲ୍ଲାହାବାଦ ସହର ଥରହର ହେଉଥାଏ । ମୁକ୍ତିସଂଗ୍ରାମର ଅବସାନ, ସ୍ୱାଧୀନତାପ୍ରାପ୍ତି, ଓ ଦେଶ ବିଭାଜନ ପ୍ରଭୃତି ଯୁଗାନ୍ତକାରୀ ଘଟଣାମାନ ଘଟିଯାଉଥିବାବେଳେ, ସେଠାକାର ଜଣେ ଛାତ୍ର ଭାବରେ ଅନେକ ଦୃଶ୍ୟ ଦେଖିବା ନିମନ୍ତେ ସମୟଟି ଥାଏ ପ୍ରକୃଷ୍ଟ ।

## କେତେଗୋଟି ସଭାର ସ୍ମୃତି

୧୯୪୬ ଦୁର୍ଗାପୂଜା ପୂର୍ବରୁ ଦିନେ ବିଶ୍ୱବିଦ୍ୟାଳୟର ଏକ ନିକଟବର୍ତ୍ତୀ ସ୍ଥାନରେ ଗୋଟିଏ ମ୍ୟୁଜିୟମ ଭବନର ମୂଳଭିତ୍ତି ସ୍ଥାପନ ଲାଗି ଜବାହାରଲାଲ ନେହରୁ ଆସିବେ ଜାଣି ଅନେକ ଆଗରୁ ଆସର ଉପରେ ନେହରୁଙ୍କ ବସିବା ପାଇଁ ରଖାଯାଇଥିବା ମୋଟ ତକିଆ ପଛରେ ଧୀର ସ୍ଥିର ଭାବରେ ବସିଗଲି । ଉଦ୍ୟୋକ୍ତାମାନେ ସେଥିରେ ବାଧାଦେଲେ ନାହିଁ । ନେହରୁ ଆସି ତକିଆ ଉପରେ ବସିଲେ । ପାଖରେ ବସିଲେ ବିଜୟଲକ୍ଷ୍ମୀ ପଣ୍ଡିତ । ଅତି ନିକଟରେ ବସି ମୁଁ ଭାରତର ସେହି ପ୍ରଖ୍ୟାତ ଭାଇଭଉଣୀଙ୍କୁ ମନ ଭର୍ତ୍ତିକରି ଦେଖିନେଉଥାଏ । ପଣ୍ଡିତମାନେ ମନ୍ତ୍ରପାଠ କଲାପରେ ନେହରୁଙ୍କ ହାତରେ କ୍ଷୁଦ୍ର ମାଟି ପାତ୍ରଟିଏ ଧରାଇଦିଆଗଲା । ସେଥିରେ ଥାଏ ସୁବାସିତ ରକ୍ତଚନ୍ଦନ । ସେଥିରୁ ସେ ଗୋଟିଏ ଟୋପା ନିଜ କପାଳରେ ଓ ଅନ୍ୟ ଟୋପାଟିଏ ବିଜୟଲକ୍ଷ୍ମୀଙ୍କ କପାଳରେ ଲଗାଇଲେ । ପଛକୁ ଚାହିଁ ପାତ୍ରଟି ତଳେ ଥୋଇଦେଲା ପୂର୍ବରୁ ମୁଁ ହାତରେ ଧରିନେଲି । ମନେହେଲା, ଅମୂଲ୍ୟ ରତ୍ନଟିଏ ପାଇଯାଇଛି । ପୂଜାଛୁଟିରେ ଘରକୁ ଆସି ଶୁଖିଲା ଚନ୍ଦନ ଥିବା ସେହି ପାତ୍ରଟିକୁ ମୋ ସ୍ତ୍ରୀଙ୍କୁ ଉପହାର ଦେଇ କହିଲି, "ଏଥିରେ ଜବାହାରଲାଲ ନେହରୁଙ୍କ ହାତ ଓ ଆଙ୍ଗୁଳି ଲାଗିଛି । ସାଇତି ରଖିଦିଅ ।" ଆଜିପର୍ଯ୍ୟନ୍ତ ସେହି ପୁରୁଣା ଜିନିଷଟି ଗୋଟିଏ ସୁଟ୍‌କେଶ ଭିତରେ ରହିଛି ।

ସେହି ୧୯୪୬ ମସିହାରେ ଆଉ ଦିନେ ନେହରୁ ଆସିଲେ ବିଶ୍ୱବିଦ୍ୟାଳୟ ଛାତ୍ରସଂସଦରେ ଉଦ୍‌ବୋଧନ ଦେବାଲାଗି । ତାଙ୍କ ସହିତ ଆସିଥାନ୍ତି ଅନ୍ୟ କେତେଜଣ ବିଶିଷ୍ଟ ନେତା ଓ ସୁଭାଷଚନ୍ଦ୍ର ବୋଷଙ୍କ ପୁତୁରା । ଜନଗହଳି ମଧ୍ୟରେ ବରିଷ୍ଠ

ଅଧ୍ୟାପକମାନେ ମଧ୍ୟ ବସିବାକୁ ସ୍ଥାନ ନପାଇ କାନ୍ଥପାଖରେ ଛିଡ଼ା ହୋଇ ରହିଲେ । ଛାତ୍ରସଂସଦ ସଭାପତି ନେହରୁଙ୍କୁ ସ୍ୱାଗତ କଲାବେଳେ ସ୍ୱାଧୀନତା ସଂଗ୍ରାମ ବିଷୟ ଉଲ୍ଲେଖ କରି କିଛି ଭୁଲ୍‌କଥା କହିପକାଇଲେ । ସଙ୍ଗେ ସଙ୍ଗେ ନେହରୁ ଉଠିଆସି ତାଙ୍କ ହାତରୁ ମାଇକ୍ ଛଡ଼ାଇନେଇ ଭର୍ତ୍ସନା କରି କହିଲେ, "ଦେଶ ସ୍ୱାଧୀନ ହେବାକୁ ଯାଉଛି, ଅଥଚ ବିଶ୍ୱବିଦ୍ୟାଳୟର ଛାତ୍ର ହୋଇ ସୁଦ୍ଧା ତୁମେ ସଂଗ୍ରାମ ସମ୍ବନ୍ଧରେ ଭୁଲ୍ କଥାମାନ କହୁଛ ?" ଭୁଲ୍‌ଗୁଡ଼ିକୁ ସଂଶୋଧନ କରି ଦୁଇପଦ କହିଲାପରେ ପୁଣି ସେ ଛାତ୍ରସଭାପତିଙ୍କ ହାତକୁ ମାଇକ୍ ଧରାଇଦେଲେ । ବୁଦ୍ଧିମାନ ଛାତ୍ରଜଣକ କହିଲେ, "ମୁଁ ଯଦି ଆଜି ଭୁଲ୍ କରି ନଥାନ୍ତି, ତେବେ ସଂଶୋଧନ ଲାଗି ପଣ୍ଡିତ ଜବାହାରଲାଲ ନେହରୁଙ୍କୁ ଶିକ୍ଷକ ଭାବେ ପାଇ ନଥାନ୍ତି ।"

ଆଉ ଦିନେ ଛାତ୍ରସଂସଦରେ ଭାଷଣ ଦେବାକୁ ଆସିଲେ ସେଖ୍ ମହମ୍ମଦ ଆବଦୁଲ୍ଲା । ଉତ୍ତରଭାରତରେ ସେତେବେଳେ ରକ୍ତର ନଦୀ ବହିଯାଉଥାଏ । ମାନବିକ ମୂଲ୍ୟବୋଧ ବିସର୍ଜନ ଦେଇ ହିନ୍ଦୁ ଓ ମୁସଲମାନମାନେ ପରସ୍ପରକୁ ନୃଶଂସ ଭାବରେ ହତ୍ୟା କରୁଥାନ୍ତି । ସେଖ୍ ଆବଦୁଲ୍ଲା ଓଜସ୍ୱିନୀ ଭାଷାରେ ସାମ୍ପ୍ରଦାୟିକ ଶାନ୍ତି ସ୍ଥାପନ ଲାଗି ଛାତ୍ରମାନଙ୍କୁ ଆପ୍ରାଣ ଉଦ୍ୟମ କରିବାକୁ ପ୍ରେରଣା ଦେଲେ । ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣଶକ୍ତି ଥାଏ ବୋଲି ଅନୁଭବ କରିପାରିଥିଲି ।

୧୯୪୭ ମସିହାର ଆରମ୍ଭକାଳରେ ଦିନେ ଆସିଲେ ସରୋଜିନୀ ନାଇଡୁ । ଜୀବନରେ ଦେଶ ବିଦେଶରେ ଅନେକ ମହାନ୍ ବ୍ୟକ୍ତିଙ୍କର ଭାଷଣ ଶୁଣିଛି । କିନ୍ତୁ, ସରୋଜିନୀ ନାଇଡୁଙ୍କ ହୃଦୟସ୍ପର୍ଶୀ ଭାଷଣର ସମତୁଲ୍ୟ ଭାଷଣ ଅନ୍ୟ କୌଣସି ବ୍ୟକ୍ତିଙ୍କ ମୁଖରୁ କେବେହେଲେ ଶୁଣିନାହିଁ । ତାଙ୍କ ଭାଷା ଓ କଥନଶୈଳୀ ମଧ୍ୟରେ ପରିପୂର୍ଣ୍ଣ ରହିଥାଏ ଭାବପ୍ରବଣତା, ଦେଶାତ୍ମବୋଧ ଓ କାବ୍ୟିକ ଉତ୍ସ । ଶ୍ରୋତାମାନଙ୍କ ମନରେ ହର୍ଷ ବା ବିଷାଦ ସଞ୍ଚାର କରିବା ଶକ୍ତି ତାଙ୍କ କଣ୍ଠସ୍ୱରରେ ନିହିତ ଥିଲା । ନିଜ ବାଲ୍ୟକାଳ କଥା ବର୍ଣ୍ଣନା କଲାବେଳେ ସେ ଆମମାନଙ୍କୁ ଠିକ୍ ସେହି ସମୟକୁ ନେଇପାରିଥିଲେ । ମହାତ୍ମା ଗାନ୍ଧିଙ୍କ କଥା ଉଲ୍ଲେଖ କଲାବେଳେ ଆମମାନଙ୍କ ମନରେ ସେ ତାଙ୍କ ପ୍ରତି ଅଗାଧ ଭକ୍ତି ଉଦ୍ରେକ କରିପାରୁଥାନ୍ତି । ଭାବବ୍ୟକ୍ତିର ମାଧୁର୍ଯ୍ୟ ନିମନ୍ତେ ଯଥାର୍ଥଭାବେ ସରୋଜିନୀ ଦେବୀଙ୍କୁ Nightingale of India ବୋଲି କୁହାଯାଉଥାଏ । ତାଙ୍କ ଭାଷଣ ଶୁଣିବାର ଦଶବର୍ଷ ପରେ ଲଣ୍ଡନ ସହରରେ ଶୁଣିଥିଲି ବିଲି ଗ୍ରାହାମ ନାମକ ଜଣେ ଖ୍ରୀଷ୍ଟଧର୍ମପ୍ରବକ୍ତାଙ୍କ ତାତ୍ତ୍ୱିକ ଅଭିଭାଷଣ । ଲକ୍ଷାଧିକ ନରନାରୀ ମନ୍ତ୍ରମୁଗ୍ଧ ଅବସ୍ଥାରେ ତାଙ୍କୁ ଶୁଣିଥିବା ଦେଖିଥିଲି । ସେତେବେଳେ ମୋର ମନେ ପଡ଼ିଥିଲା ସରୋଜିନୀ ନାଇଡୁଙ୍କ ବାଗ୍ମିତାର ମହତ୍ତ୍ୱ ।

ସ୍ୱାଧୀନତା ଆସିଯାଉଥାଏ । ଦିନେ ସନ୍ଧ୍ୟାରେ ଏଲ୍ଲାହାବାଦର ଗୋଟିଏ ମଇଦାନରେ ବିଜୟଲକ୍ଷ୍ମୀ ପଣ୍ଡିତ ଭାଷଣ ଦେବେ ଶୁଣି ସେଠାକୁ ଦୌଡ଼ିଲି । ହଜାର ହଜାର ଲୋକ ଆଗ୍ରହରେ ଅପେକ୍ଷା କରିଥାନ୍ତି । ମଞ୍ଚ ଉପରେ ଥାନ୍ତି କେତେଜଣ ସ୍ଥାନୀୟ ନେତା । ନଗର କଂଗ୍ରେସ କମିଟିର ସଭାପତି ବିଶ୍ୱମ୍ଭରନାଥ ପାଣ୍ଡେ ମାଇକ୍ ଯୋଗେ ଉଚ୍ଚ ସ୍ୱରରେ ସମସ୍ତଙ୍କୁ ଧୈର୍ଯ୍ୟ ସହିତ ଅପେକ୍ଷା କରିବା ଲାଗି ଅନୁରୋଧ କରୁଥାନ୍ତି । ଘଣ୍ଟାଏ ବିଳମ୍ବ ହେଲା । ତଥାପି ବିଜୟଲକ୍ଷ୍ମୀ ଆସୁ ନଥାନ୍ତି । ପାଣ୍ଡେ ମହାଶୟ ହଠାତ୍ ଘୋଷଣା କଲେ, ''ଲକ୍ଷ୍ନୌଠାରୁ ଆସୁଥିଲାବେଳେ ଜରୁରୀ ବାର୍ତ୍ତା ପାଇ ଶ୍ରୀମତୀ ପଣ୍ଡିତ ଅଧାବାଟରୁ ଫେରିଯିବାକୁ ବାଧ୍ୟ ହେଲେ । ତାଙ୍କ ପରିବର୍ତ୍ତେ ଭାଷଣ ଦେବେ ଶ୍ରୀଯୁକ୍ତ ଲାଲବାହାଦୁର ଶାସ୍ତ୍ରୀ ।'' ଜଣେ କ୍ଷୁଦ୍ରାକୃତି ବ୍ୟକ୍ତି ମାଇକ୍ ପାଖକୁ ଆସିଲାବେଳକୁ ଲୋକମାନେ ସଭାସ୍ଥାନ ଛାଡ଼ି ଗଲେ ଓ ଶାସ୍ତ୍ରୀମହୋଦୟ ଅପମାନିତ ବୋଧକଲେ । ଭାଷଣ ଆରମ୍ଭ ହେଲାବେଳକୁ ସଭାରେ କେହି ନଥାନ୍ତି । ସେଦିନ କିଏ ବା ଅନୁମାନ କରିଥାନ୍ତା ଯେ ସେହି ଲାଲବାହାଦୁର ଦିନେ ଭାରତର ପ୍ରଧାନମନ୍ତ୍ରୀ ହେବେ !

ଆଉଦିନେ ଉଦ୍‌ବୋଧନ ଦେବାକୁ ଆସିଲେ ଆଜାଦ ହିନ୍ଦ୍ ଫୌଜର ଅନ୍ୟତମ ଖ୍ୟାତନାମା ସେନାଧ୍ୟକ୍ଷ ଶାହ ନୱାଜ୍ ଖାଁ । ସେ ତ ଥିଲେ ଜଣେ ସୈନିକ । ଜନସମାବେଶରେ ରାଜନୈତିକ ଭାଷଣ ଦେବାଲାଗି ତାଙ୍କର ଅଭିଜ୍ଞତା ନଥାଏ । ଅପ୍ରସ୍ତୁତ ଅବସ୍ଥାରେ ଲେଖି ଆଣିଥିବା ଭାଷଣଟିର ପୃଷ୍ଠା ଲେଉଟାଇବାକୁ ଲାଗିପଡ଼ିଥିଲେ । ସେତେବେଳେ ବଜ୍ରଗମ୍ଭୀର ସ୍ୱରରେ ମାଇକ୍‌ରେ ଗଳାଫଟାଇ ବିଶ୍ୱମ୍ଭର ନାଥ ପାଣ୍ଡେ ଭବିଷ୍ୟବାଣୀ ଘୋଷଣା କରୁଥିଲେ, ''ଆମର ଆଶା, ଦେଶବାସୀଙ୍କ ଆଶା, ଭାରତ ସ୍ୱାଧୀନ ହେଲାପରେ ଦେଶର ପ୍ରଧାନ ସେନାପତି ହେବେ ଶାହ ନୱାଜ୍ ଖାଁ ।'' ପାଖରେ ବସିଥିବା ଜଣେ ଶ୍ରୋତା କମେଣ୍ଟ ଦେବା ଶୁଣିଲି, ''ପାଣ୍ଡେଙ୍କୁ କିଛି ମାଲୁମ୍ ନାହିଁ । ପ୍ରଧାନ ସେନାପତି କିଏ ଓ କିପରି ହୁଅନ୍ତି, କିଛି ନ ଜାଣି ବଡ଼ ବଡ଼ କଥା ।''

ସ୍ୱାଧୀନତା ପ୍ରାପ୍ତିର କିଛିଦିନ ପରେ ଗୋଟିଏ ବିଶାଳ ଜନସମାବେଶରେ ଉଦ୍‌ବୋଧନ ଦେବାକୁ ଆସିଥିଲେ ତତ୍‌କାଳୀନ କଂଗ୍ରେସ ସଭାପତି ଆଚାର୍ଯ୍ୟ ଜେ.ବି.କୃପାଲନୀ । ମଞ୍ଚ ଉପରେ ଜଳୁଥାଏ ଅନେକ ଗୁଡ଼ିଏ ବାର୍‌ଲାଇଟ୍ । ପୋକ ପତଙ୍ଗ ଗୁଡ଼ିକ ବିପୁଳ ସଂଖ୍ୟାରେ ବିଜୁଳିବତି ଚାରିପାଖରେ ଉଡ଼ିବୁଲୁଥାନ୍ତି । ବିଶ୍ୱମ୍ଭରନାଥ ପାଣ୍ଡେ କଂଗ୍ରେସ ସଭାପତିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନବେଳେ ମତ ଦେଲେ, ''ସ୍ୱାଧୀନତା ଲାଭ ବେଳେ ଜାତୀୟ କଂଗ୍ରେସର ସଭାପତି ଥିବା ଆଚାର୍ଯ୍ୟ କୃପାଲନୀଙ୍କ ନାମ ଭାରତ ଇତିହାସରେ ଚିରଦିନ ଲାଗି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ ।''

କୃପାଳନୀ ଭାଷଣ ଦେବାକୁ ଛିଡ଼ା ହେଲେ । ସେତେବେଳେ ତାଙ୍କ ପଞ୍ଜାବି ଜାମା ଭିତରେ କେତେଗୁଡ଼ିଏ ପୋକ ପଶିଗଲେ । ଅସ୍ୱସ୍ତି ଅନୁଭବ କରି ସେ ଜାମା ଭିତରକୁ ଦୁଇହାତ ଭର୍ତ୍ତିକରି ପୋକଗୁଡ଼ିକୁ ବାହାର କରିବାକୁ ଲାଗିପଡ଼ିଲେ । ତାଙ୍କ ଅଙ୍ଗଭଙ୍ଗୀ ଦେଖି କେହି କେହି ହସିବାକୁ କୁଣ୍ଠାବୋଧ କଲେ ନାହିଁ । ମୁଁ ଭାବୁଥାଏଁ, ପିଠିରେ ପୋକ କାମୁଡ଼ିଲେ ମଧ୍ୟ କଂଗ୍ରେସ ସଭାପତିଙ୍କ ପକ୍ଷରେ ସେପରି ବିଚଳିତ ହେବା ଉଚିତ ନଥିଲା । କୃପାଳନୀ ତାଙ୍କ ବକ୍ତବ୍ୟ ଆରମ୍ଭରେ ବିଦ୍ରୂପ ଛଳରେ କହିଥିଲେ, ''ଇତିହାସରେ କେଉଁ ମହାପୁରୁଷମାନଙ୍କର ନାମ ଚିରସ୍ଥାୟୀ ରହେ, ସେ କଥା ପାଣ୍ଡେଜୀଙ୍କୁ ଜଣା ନାହିଁ । ଯୁଗ ଯୁଗ ବ୍ୟାପୀ ଭବିଷ୍ୟତ ବଂଶଧରମାନେ କେବଳ ମାତ୍ର ଗୋଟିଏ ନାମ ମନେ ରଖିବେ— ମୋହନଦାସ କରମଚାନ୍ଦ ଗାନ୍ଧି ।''

## ଏମ୍.ଏ. ପଢ଼ିଲାବେଳର କେତୋଟି ଘଟଣା

ଅତ୍ୟନ୍ତ ନଗଣ୍ୟ ତଥା ଅତୀବ ଗୁରୁତ୍ୱପୂର୍ଣ୍ଣ ଘଟଣାଗୁଡ଼ିକ ମଧ୍ୟରୁ ଯେକୌଣସି ସମୟର ପରିଚୟ ମିଳିଥାଏ । ୧୯୪୬ ଜୁଲାଇରୁ ୧୯୪୮ ମାର୍ଚ୍ଚମାସ ମଧ୍ୟରେ ସେହିପ୍ରକାର କେତେକ ଘଟଣା ସ୍ୱଚକ୍ଷୁରେ ଦେଖିଥିଲି । ସେଥିମଧ୍ୟରୁ ଅଳ୍ପ କେତୋଟି ସଂକ୍ଷେପରେ ଉଲ୍ଲେଖ କରୁଛି ।

୧୯୪୬ ମସିହା ଅଗଷ୍ଟ ୧୬ ତାରିଖ । ହିନ୍ଦୁ ହଷ୍ଟେଲ ଓ ବିଶ୍ୱବିଦ୍ୟାଳୟ ମଧ୍ୟରେ ବେଶ୍ କିଛି ଦୂରତ୍ୱ ଥାଏ । ଦଶଟା ପୂର୍ବରୁ ଖାଇସାରି କ୍ଲାସ୍‌କୁ ଯାଉଥିଲି । ହଷ୍ଟେଲର ଗୋଟିଏ ପାଖରେ ଥିବା ମୁଖ୍ୟରାସ୍ତା ଉପରେ ଦେଖିଲି, ଗୋଟିଏ ବୀଭତ୍ସ ପଟୁଆର ଆଗେଇ ଚାଲିଛି । ଲୋକମାନଙ୍କର ବେଶଭୂଷାରୁ ଜାଣିଲି, ସମସ୍ତେ ମୁସଲମାନ । ଅନେକେ ଲୁଙ୍ଗି ପିନ୍ଧିଥାନ୍ତି, କେତେକଙ୍କ ମୁଣ୍ଡରେ ଥାଏ ଟୋପି ଏବଂ ଅଧିକାଂଶଙ୍କ ହାତରେ ଥାଏ ଲାଠି କିମ୍ବା ଲୁହାର ଛଡ଼ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ସେମାନେ ଉତ୍କଟ ଚିତ୍କାର ସହ ଆଗେଇ ଚାଲିଥାନ୍ତି । କ୍ଲାସ୍‌ରେ ପହଞ୍ଚି ଶୁଣିଲି, ମହମ୍ମଦ ଆଲି ଜିନ୍ନାଙ୍କ ଆହ୍ୱାନରେ ସେହି ଦିନ ସମଗ୍ର ଦେଶରେ ମୁସଲମାନମାନେ ପାଳନ କରୁଛନ୍ତି Direct Action Day ବା 'ପ୍ରତ୍ୟକ୍ଷ କାର୍ଯ୍ୟ ଦିବସ' । ସନ୍ଧ୍ୟାବେଳକୁ ହଷ୍ଟେଲରେ ଦେଖିଲି ସରଗରମ ଅବସ୍ଥା । ଛାତ୍ରମାନେ ସାରାରାତି ଅସ୍ତ୍ରଶସ୍ତ୍ର ଓ ଲାଠି ଧରି ହଷ୍ଟେଲ ଚାରିପାଖରେ ଜଗି ରହିବାକୁ ପ୍ରସ୍ତୁତ ହେଲେ । ସହରରେ ଦଙ୍ଗା ହାଙ୍ଗାମା ଆରମ୍ଭ ହୋଇଯାଇଥାଏ ।

ତହିଁ ପରଦିନର ଘଟଣା । ଦିନ ପ୍ରାୟ ୧୧ଟା । ଆମ କ୍ଲାସ୍‌ରେ ପଢ଼ାଉଥାନ୍ତି ଅଧ୍ୟାପକ ବାରାଣସୀ ପ୍ରସାଦ ସାକ୍‌ସେନା । ହଠାତ୍ ପାର୍ଶ୍ୱବର୍ତ୍ତୀ କ୍ଲାସ୍‌ରୁମ୍ ଭିତରେ ପ୍ରବଳ ପାଟିତୁଣ୍ଡ ଶୁଭିଲା । ଆମମାନଙ୍କୁ ଧୀରସ୍ଥିର ଭାବରେ ବସିବାକୁ କହି

ଅଧ୍ୟାପକ ସାକ୍‌ସେନା ବାହାରକୁ ଦୌଡ଼ିଗଲେ । କିଛି ସମୟ ପରେ ଫେରିଲାବେଳକୁ ତାଙ୍କ ପୋଷାକରେ ଚାରିଆଡ଼େ ରକ୍ତର ଛିଟା । ଦୁଃଖରେ ଚେୟାର ଉପରେ ବସିପଡ଼ି ରୁଦ୍ଧ କଣ୍ଠରେ କହିଲେ, "କ୍ଲାସ୍ ମଧ୍ୟରେ ଛୁରିକାଘାତ । ବୋଧହୁଏ, ପିଲାଟିର ଜୀବନ ରକ୍ଷା କରିପାରିଛି ! କ'ଣ ହେଲା ଦେଶର ଅବସ୍ଥା !"

ସେତେବେଳେ ଉତ୍ତ୍ୟକ୍ତ କେତେକ ଛାତ୍ର ବାହାରେ ଦୌଡ଼ାଦୌଡ଼ି କରୁଥିବା ଦେଖାଗଲା । କ୍ଲାସ୍ ବନ୍ଦ ହେଲା । ଅନ୍ୟ କ୍ଲାସ୍‌ରେ ପଢୁଥିବା ଆଫଗାନିସ୍ତାନର ରାଜବଂଶୀୟ ଜଣେ ଛାତ୍ରକୁ ହିନ୍ଦୁ ଛାତ୍ରମାନେ ବାରମ୍ବାର ଛୁରିକାଘାତ କରୁଥିଲା ବେଳେ ସାକସେନା ସାହେବ ତା ଉପରେ ଶୋଇପଡ଼ି କାବୁଲି ପିଲାଟିର ପ୍ରାଣ ରକ୍ଷା କରିପାରିଥିଲେ ।

ସନ୍ଧ୍ୟାବେଳକୁ ଖବର ମିଳିଲା, କଲିକତା ମହାନଗରୀରେ ଭୟଙ୍କର ସଂଘର୍ଷ ଆରମ୍ଭ ହୋଇଯାଇଛି । ଉଲ୍ଲେଖଯୋଗ୍ୟ, ସେଠାରେ ଘଟିଥିବା ଦଙ୍ଗାହାଙ୍ଗାମାରେ ମାତ୍ର ଚାରିଟି ଦିନ ମଧ୍ୟରେ ପାଞ୍ଚ ହଜାରରୁ ଅଧିକ ସଂଖ୍ୟକ ଆବାଳବୃଦ୍ଧବନିତା ପ୍ରାଣ ହରାଇଥିଲେ ଏବଂ ପନ୍ଦରହଜାରରୁ ଉର୍ଦ୍ଧ୍ୱସଂଖ୍ୟକ ନରନାରୀ ଗୁରୁତର ଭାବେ ଆହତ ହୋଇଥିଲେ । ସେହି 'କଲିକତା ହତ୍ୟାକାଣ୍ଡ' ପରେ ପରେ ଆରମ୍ଭ ହୋଇଗଲା ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ ପାଖରୁ ଆସାମ ପର୍ଯ୍ୟନ୍ତ ହିନ୍ଦୁମୁସଲମାନ ଗୃହଯୁଦ୍ଧ । ଏଲ୍ଲାହାବାଦ ସେଥିରୁ ବାଦ୍ ପଡ଼ିଲା ନାହିଁ ।

ଗୋଟିଏ ରାତି । ସନ୍ଧ୍ୟା 'ଶୋ' ଦେଖିବାକୁ ସହରର ସିଭିଲ୍ ଲାଇନରେ ଥିବା ସିନେମାହଲ୍‌କୁ ଯାଇଥିଲି । ରାତି ୯ଟା ପରେ 'ଶୋ' ଶେଷ ହେଲା । ହଷ୍ଟେଲକୁ ଫେରିବା ଲାଗି ଟାଙ୍ଗା ଗାଡ଼ିରେ ବସିଲି । ଅପରିଚିତ ଚାରିଜଣ ଲୋକ ସେଥିରେ ବସିଲେ । ହଷ୍ଟେଲ ଗେଟ୍ ପାଖରେ ଗଭୀର ଅନ୍ଧକାର । ଟାଙ୍ଗାବାଲାକୁ ପଇସା ଦେଇ ଅଳ୍ପ ଦୂର ଯାଇଛି, ବିକଟ ଆର୍ତ୍ତନାଦ ଶୁଣି ହତଭମ୍ବ ଭାବରେ ଛିଡ଼ା ରହିଲି । ହାତରେ ଟର୍ଚ୍ଚ ଧରି କେତେଜଣ ଛାତ୍ର ବାହାରିଆସିଲେ । ମୁସଲମାନ ଟାଙ୍ଗାବାଲାଟିକୁ ଛୁରି ଭୁଷିଦିଆଯାଇଥାଏ । ରକ୍ତ ଜୁଡ୍‌ବୁଡ୍ଡୁ ଅବସ୍ଥାରେ ଛଟପଟ ହୋଇ ସେ ମରିଯିବା ଦେଖିଲି । କିଏ ମଲା ବା କିଏ ମାରିଲା, ବୁଝିବା ପାଇଁ କେହି ନଥାଏ । ଅନ୍ତର୍ଯୁଦ୍ଧର ସମୟ ।

ସେହିବର୍ଷ ପୂଜାଛୁଟିରେ ଘରକୁ ଯାଇଥିଲି । ଫେରିଲାବେଳେ କଲିକତା ଷ୍ଟେସନରୁ ଗାଡ଼ି ଧରିଲି । ବିହାର ପ୍ରଦେଶ ମଧ୍ୟରେ ଗାଡ଼ି ଚାଲିଥାଏ । ମଧ୍ୟରାତ୍ରି ସମୟ । କୌଣସି ଗୋଟିଏ ଷ୍ଟେସନରେ ଦୁଇଜଣ ବୁଢ଼ା ମୁସଲମାନ ସାଙ୍ଗରେ ଦୁଇଟି ଅଳ୍ପ ବୟସ୍କ ବାଳକଙ୍କୁ ଧରି ଡବା ଭିତରକୁ ଉଠିଲେ । ପରେ ପରେ ଆଉ କେତେଜଣ ପାସେଞ୍ଜର । ଗାଡ଼ି ଛାଡ଼ିଲାପରେ ସେହି ଦୁଇ ବୁଢ଼ା ଓ ଦୁଇ

ବାଳକଙ୍କୁ ଚଳନ୍ତା ଗାଡ଼ିରୁ ତଳକୁ ଫୋପାଡ଼ି ଦିଆଯିବ ବୋଲି ବିହାରୀ ହିନ୍ଦୁମାନେ ଧମକ ଚମକ ଦେବାକୁ ଆରମ୍ଭ କଲେ । ଅକଥ୍ୟ ଭାଷା ସାଙ୍ଗକୁ ଅସଭ୍ୟ ବ୍ୟବହାର । ବୁଢ଼ା ଦୁଇଜଣ ଆତଙ୍କରେ ଚାହିଁ ରହି ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିଥାନ୍ତି । ପିଲା ଦୁଇଟିର କରୁଣ ଚାହାଣି ଭୁଲିବାର ନୁହେଁ । ସେପରି ଦୃଶ୍ୟ ସହ୍ୟ କରିବା ସମ୍ଭବ ହେଲା ନାହିଁ । ହାତ ଯୋଡ଼ି ଦୁର୍ବୃତ୍ତମାନଙ୍କୁ ଅନେକ ଅନୁନୟ ବିନୟ କଲି । ସେତେବେଳେ ବିହାରପ୍ରଦେଶରେ ମୁସଲମାନ ନିପାତ ଚାଲିଥାଏ । ଟ୍ରେନ୍‌ରୁ ଲୋକଙ୍କୁ ଫିଙ୍ଗିଦେବା ଥାଏ ନିୟମିତ ବ୍ୟାପାର । ଯାହା ହେଉ, ମୋର କାକୁତି ମିନତି ଫଳପ୍ରଦ ହେଲା, ଯଦିଚ ଅନେକ ପ୍ରକାର ଗାଳି ଶୁଣିଲି । ରାତି ପାହିଲାପରେ ସେହି ହତଭାଗ୍ୟ ବୃଦ୍ଧ ଓ ବାଳକମାନଙ୍କ ମନରେ ସାହସ ସଞ୍ଚାର ହେବା ଦେଖିପାରିଲି । ସେମାନଙ୍କ ପାଖରେ କିଛି ଜିନିଷ ନଥିଲା । ଅନୁମାନ ହେଲା, କେବଳ ପ୍ରାଣ ବଞ୍ଚାଇ ସେମାନେ କେଉଁ ଦୂରବର୍ତ୍ତୀ ସ୍ଥାନକୁ ପଳାଇଯାଉଛନ୍ତି ।

୧୯୪୬ରେ ମୋ ଜୀବନର ପ୍ରଥମ ବହିଟି ଲେଖିଥିଲି ସେହି ହିନ୍ଦୁ ହଷ୍ଟେଲରେ । ନାମ ଥିଲା 'ପ୍ରାଚ୍ୟରେ ପାଶ୍ଚାତ୍ୟବାସୀ' (Westerners in the East) । ପୁସ୍ତକଟି ଉତ୍ସର୍ଗ କରିଥିଲି ହରେକୃଷ୍ଣ ମହତାବଙ୍କ ନାମରେ । ବଣିକ ଭାବରେ ଭାରତକୁ ଆସି ସାମ୍ରାଜ୍ୟ ସ୍ଥାପନ କରିଥିବା ଇଂରାଜ ଜାତି ପ୍ରତି ବିଷୋଦ୍‌ଗାର କରି କେତେକ କଥା ଲେଖିଥିଲି । ଫଳସ୍ୱରୂପ, ଛାତ୍ର ନେତାମାନଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା । ସେମାନଙ୍କ ମଧ୍ୟରେ ଜଣେ ଥିଲେ ନାରାୟଣଦତ୍ତ ତିୱାରୀ । ଦିନେ ବିଶ୍ୱବିଦ୍ୟାଳୟ ଅଫିସ ଉପରେ କଂଗ୍ରେସର ତ୍ରିରଙ୍ଗ ପତାକା ଉଡ଼ାଇବା ଲାଗି ଯୋଜନା କଲୁଁ । ଆଶା ଥିଲା, ଅନେକ ଛାତ୍ର ଆମ ସହିତ ଯୋଗ ଦେବେ । କିନ୍ତୁ ନିର୍ଦ୍ଦିଷ୍ଟ ତାରିଖର ଅତି ପ୍ରତ୍ୟୁଷରେ ଅଫିସ ଆଗରେ ପହଞ୍ଚି ଦେଖିଲି ମାତ୍ର ଛଅଜଣ ପିଲା । ନାରାୟଣଦତ୍ତ କହିଲେ, "ଆପଣମାନେ ସ୍ଲୋଗାନ ଦିଅନ୍ତୁ, ଅନ୍ୟମାନେ ଆସିଯିବେ ।" କିଛି ସମୟ ଉଚ୍ଚସ୍ୱରରେ ଧ୍ୱନି ଦିଆଗଲା । କିନ୍ତୁ ଶୀତର ପ୍ରକୋପରେ ସେତେ ସକାଳେ କେହି ଆସିଲେ ନାହିଁ ଦେଖି ନିରାଶ ହେବାକୁ ହେଲା । ସେଦିନର ସେହି ଶୀର୍ଣ୍ଣକାୟ କ୍ଷୁଦ୍ରାକୃତି ଛାତ୍ର ନାରାୟଣଦତ୍ତ ତିୱାରୀ ଭବିଷ୍ୟତରେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ହୋଇଥିଲେ ଓ ୧୯୯୪ ମସିହାରେ କଂଗ୍ରେସର ମୁଖ୍ୟ ସ୍ରୋତରୁ ବାହାରିଯାଇ ପ୍ରଧାନମନ୍ତ୍ରୀ ପି.ଭି. ନରସିଂହ ରାଓଙ୍କ ବିପକ୍ଷରେ ଯେଉଁ କଂଗ୍ରେସଦଳ ଗଠନ କଲେ, ସେଥିରେ ଯୋଗଦେବା ଲାଗି ଅନୁରୋଧ କରି ମୋ ପାଖକୁ ସ୍ୱତନ୍ତ୍ର ବାର୍ତ୍ତାବହ ପଠାଇଥିଲେ । ଆଶ୍ଚର୍ଯ୍ୟାନ୍ୱିତ ହେଲି, ପ୍ରାୟ ପଚାଶବର୍ଷ ପରେ ମଧ୍ୟ ସେ ମୋତେ ମନେ ରଖିଛନ୍ତି ।

ସେହି ସମୟର ଆଉ ଗୋଟିଏ ଘଟଣା । ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟର କୁଳପତି ପଦରେ ଅଧିଷ୍ଠିତ ହେଲେ ଅଧ୍ୟାପକ ଡକ୍ଟର ତାରାଚାନ୍ଦ୍ । ସେ ଥିଲେ ଜଣେ ବିଶିଷ୍ଟ ଐତିହାସିକ ତଥା ରାଜନୀତିବିଜ୍ଞାନ ଅଧ୍ୟାପକ । ଆମକୁ 'ରାଜନୈତିକ ଦର୍ଶନ' ବିଷୟଟି ପଢ଼ାଉଥାନ୍ତି । ଏକେ ତ ତାଙ୍କର ନାମ ଥାଏ 'ତାରା ଚାନ୍ଦ'– ଇସ୍‌ଲାମ୍‌ଧର୍ମର ପବିତ୍ର ସଙ୍କେତ 'ଚନ୍ଦ୍ର ଓ ନକ୍ଷତ୍ର' । ତା'ପରେ ପୁଣି ସେ ଲେଖିଥିଲେ 'ଭାରତରେ ଇସ୍‌ଲାମ୍' (Islam in India) ନାମକ ପୁସ୍ତକ । କୁଳପତି ହେଲାପରେ ସେ ମୁସଲମାନ ଛାତ୍ରମାନଙ୍କ ଦାବି ଅନୁଯାୟୀ ସ୍ୱତନ୍ତ୍ର ମୁସଲିମ୍ ଛାତ୍ରସଂସଦ ଗଠନ କରିବାକୁ ଅନୁମତି ଦେବେ ବୋଲି ଗୁଜବ୍ ଶୁଣାଗଲା । କଥାଟି ସତ୍ୟ ବା ମିଥ୍ୟା, ସେକଥା ବିଚାର ନକରି କେତେକ ଉତ୍ତ୍ୟକ୍ତ ହିନ୍ଦୁଛାତ୍ର କୁଳପତିଙ୍କ ପ୍ରକୋଷ୍ଠରେ ପଶିଯାଇ ତାଙ୍କ ଗଳାରେ ଛିଣ୍ଡା ଜୋତାର ମାଳଟିଏ ପିନ୍ଧାଇଦେଇ ସ୍ଲୋଗାନ ଦେଲେ, "ନିକାଲ୍ ଯାଓ ତାରା ଚାନ୍ଦ୍, ତୁମ୍ ହିନ୍ଦୁ ନେହି ମୁସଲମାନ୍ ।"

୧୯୪୭ ମସିହା ଆସିଗଲା । ସ୍ୱାଧୀନତାର ବର୍ଷ । ବର୍ଷର ଆରମ୍ଭରୁ ସହରଟି ଉତ୍ତପ୍ତ ଅବସ୍ଥା ଧାରଣ କଲା । କେତେବେଳେ ଦଙ୍ଗାହାଙ୍ଗାମା ଓ ସାନ୍ଧ୍ୟଆଇନ ତ ଆଉ କେତେବେଳେ ସଭାସମିତି ଓ ନେତାମାନଙ୍କ ଆଗମନ । ସେହିପରି ପରିବେଶ ମଧ୍ୟରେ ଏଲ୍ଲାହାବାଦକୁ ଦିନେ ଆସିଲେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ସର୍ବୋଚ୍ଚ ପରିଚାଳକ ଗୋଲୱାଲକାର । ଗୋଟିଏ ସୁବିଶାଳ ର୍ୟାଲିରେ ସେ ଅଭିବାଦନ ଗ୍ରହଣ କଲେ । ହାଫ୍‌ପ୍ୟାଣ୍ଟ ଓ ହାଫ୍‌ସାର୍ଟ ପରିହିତ ସହସ୍ର ସହସ୍ର ଆର.ଏସ୍.ଏସ୍. ଯୁବକ ହାତରେ ଲାଠି ଧରି ସେମାନଙ୍କର ସାମରିକ ଆଦବ କାୟଦା ପ୍ରଦର୍ଶନ କଲେ । ର୍ୟାଲି ଦେଖିସାରି ସନ୍ଧ୍ୟାବେଳେ ଫେରିବା ବାଟରେ ଦେଖିଲି, ବଡ଼ ବଡ଼ ଗଛ ତଳେ, ଫୁଟ୍‌ପାଥ ଉପରେ, ବାହାର ଅଞ୍ଚଳରୁ ଆସିଥିବା ଯୁବକମାନେ ଦଳ ଦଳ ହୋଇ ବସିଛନ୍ତି । କୌତୂହଳରେ ଜଣକୁ ପଚାରିଲି, "ଶୀତରାତିରେ ଆପଣମାନେ ରହିବେ କେଉଁଠି, ଖାଇବେ କ'ଣ ?" ସେ ପଚାରିଲେ, "ଆପଣ କିଏ ? କ'ଣ କରନ୍ତି ?" ଇତିହାସରେ ଏମ୍.ଏ. ପଢ଼ୁଛି ବୋଲି ମୁଁ ଉତ୍ତର ଦେଲି । ହସିଦେଇ ସେ କହିଲେ, "ଇତିହାସରେ ମହାରାଣା ପ୍ରତାପ ଓ ଛତ୍ରପତି ଶିବାଜୀଙ୍କ କଥା ପଢ଼ିଛନ୍ତି ? ସେମାନଙ୍କ ସୈନ୍ୟମାନେ ଶୀତ ବା ଗ୍ରୀଷ୍ମ ପ୍ରତି କାତର ଥିଲେ କି ?" ତା ପରେ, ପାଖରେ ଥିବା ଥଳିଟିଏ ଦେଖାଇ କହିଲେ, "ଆମେ ପ୍ରତ୍ୟେକେ ଘର ପାଖରୁ ଶୁଖିଲା ରୋଟି ଆଣିଛୁଁ । ତାହା ହିଁ ଯଥେଷ୍ଟ ।"

ଦିନେ ସନ୍ଧ୍ୟାରେ ଦୁଇଜଣ ଯୁବକ ହିନ୍ଦୁ ହଷ୍ଟେଲ ହଲରେ ଭାଷଣ ଦେଲେ । ସେମାନେ ଥିଲେ ପଞ୍ଜାବପ୍ରଦେଶର ଦଙ୍ଗାହାଙ୍ଗାମାଗ୍ରସ୍ତ ଅଞ୍ଚଳରୁ ପ୍ରାଣ ଧରି ପଳାଇ

ଆସିଥିବା ଉଦ୍‌ବାସ୍ତୁ । ପଞ୍ଜାବରେ ଚାଲିଥିବା ନୃଶଂସ ବର୍ବରତାର ବୀଭତ୍ସ ଘଟଣାମାନ ସେମାନେ ଅଗ୍ନିବର୍ଷୀ ଭାଷାରେ ବର୍ଣ୍ଣନା କଲେ । ଛାତ୍ରମାନଙ୍କୁ ଉତ୍ତ୍ୟକ୍ତ ଓ ଉତ୍ତେଜିତ କରିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ପ୍ରତିହିଂସା ଓ ପ୍ରତିଶୋଧ ନିମନ୍ତେ ସେମାନେ ଆହ୍ୱାନ ଦେଲେ । ସତକୁ ସତ, ମଧ୍ୟରାତ୍ର ବେଳକୁ ହିନ୍ଦୁ ହଷ୍ଟେଲ ଥରହର ହୋଇଉଠିଲା । ସଙ୍ଗଠିତ ଭାବରେ ଅନେକ ଛାତ୍ର ଅସ୍ତ୍ରଶସ୍ତ୍ର ଧରି କିଛି ଦୂରରେ ଥିବା ମୁସଲିମ୍ ଛାତ୍ରାବାସ ଉପରେ ଚଢ଼ାଉ କରିବା ନିମନ୍ତେ ବାହାରି ପଡ଼ିଲେ । ଯୋଜନା ଥିଲା, ଅନ୍ଧକାର ମଧ୍ୟରେ ଗୋପନରେ ଓ ନୀରବରେ ଯାଇ ଅତର୍କିତ ଭାବରେ ଶତ୍ରୁଛାତ୍ରାବାସ ଘେରିଯାଇ ଅନ୍ତେବାସୀମାନଙ୍କୁ ହତ୍ୟା କରାଯିବ । ଯେଉଁ ଛାତ୍ର ଏପରି ଅଭିଯାନର ସେନାପତି ଥିଲେ, ତାଙ୍କର ନାମ ଥିଲା 'ରାମାୟଣୀ' । ସୁଦୀର୍ଘ ବପୁ ଓ ହିଂସ୍ର ମୁଖମଣ୍ଡଳ ଥିଲା ତାଙ୍କ ରୂପର ବିଶେଷତ୍ୱ । ଯୋଦ୍ଧାମାନେ ଅଗ୍ରସର ହେଲାପୂର୍ବରୁ ଗୁପ୍ତଚରମାନେ ସମ୍ବାଦ ଦେଲେ ଯେ, କୌଣସି ସୂତ୍ରରୁ ଆକ୍ରମଣର ଆଭାସ ପାଇ ମୁସଲିମ୍ ହଷ୍ଟେଲର ଛାତ୍ରମାନେ ପଳାଇଯାଇ ଅଧ୍ୟାପକମାନଙ୍କ ଘରେ ଆଶ୍ରୟ ନେଇଛନ୍ତି ଓ ଛାତ୍ରାବାସ ଶୂନ୍ୟ ପଡ଼ିଛି । ରାମାୟଣୀ କପାଳରେ ହାତ ମାରି କାନ୍ଦି ପକାଇଲେ ।

## ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କେତୋଟି ଘଟଣା

ହିଂସ୍ର ପରିବେଶ, ରଣ ହୁଙ୍କାର ଓ ରକ୍ତପାତ ମଧ୍ୟରେ ଶେଷରେ ଅଗଷ୍ଟ ମାସ ୧୪ ତାରିଖ ଶେଷ ହେଲା ଏବଂ ମଧ୍ୟରାତ୍ରିରେ ୧୫ ତାରିଖର ଶୁଭାରମ୍ଭ ହେଲା । ଘଡ଼ି କଣ୍ଟା ଠିକ୍ ୧୨ଟାରେ ପହଞ୍ଚିଲା ମୁହୂର୍ତ୍ତରେ ଭାରତର ସ୍ୱାଧୀନତା ବିଘୋଷିତ ହେଲା । ସନ୍ଧ୍ୟାବେଳରୁ ସାରା ରାତିଟି ବୁଲି ବୁଲି ସହରର ଆଲୋକସଜ୍ଜା ଦେଖିବା ଲାଗି ଆମେ ବାହାରି ଯାଇଥିଲୁଁ । ସେ ରାତିରେ ଅନ୍ଧକାର ନଥାଏ । ସହରର କେନ୍ଦ୍ରସ୍ଥଳ 'ଚୌକ' ଠାରେ ଅନେକ ଊର୍ଦ୍ଧ୍ୱରେ ଆଲୋକମଣ୍ଡିତ ଭାରତର ମାନଚିତ୍ର ଓ ମହାତ୍ମା ଗାନ୍ଧିଙ୍କର ସୁବିଶାଳ ମୂର୍ତ୍ତି ଶୋଭା ପାଉଥାଏ । ଅବଶ୍ୟ, ସେହି ଅବିସ୍ମରଣୀୟ ରଜନୀରେ ଗାନ୍ଧି ଥିଲେ ଭାରତର ରାଜଧାନୀ ଦିଲ୍ଲୀରେ ନୁହେଁ, କଲିକତା ମହାନଗରୀର ଗୋଟିଏ ଆଲୋକବିହୀନ ପରିତ୍ୟକ୍ତ ମୁସଲମାନ କୋଠିର ନିଭୃତ କକ୍ଷ ମଧ୍ୟରେ ପ୍ରାର୍ଥନାରତ ଓ ଚିନ୍ତାଗ୍ରସ୍ତ ଅବସ୍ଥାରେ ।

ସ୍ୱାଧୀନତାର କିଛିଦିନ ପରେ ଓଡ଼ିଶାର ଗଭର୍ଣ୍ଣର ରୂପେ ନିଯୁକ୍ତି ପାଇଥିବା କୈଳାସନାଥ କାଟଜୁ ଏଲ୍ଲାହାବାଦରେ ଥିବା ତାଙ୍କ ବାସଗୃହକୁ ଆସିଥିଲେ । ମୋର କେତେଜଣ ସହପାଠୀ କହିଲେ, ''ଆମେ କାଟଜୁଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ଯାଉଛୁଁ । ତୁମେ ଓଡ଼ିଶାର ଛାତ୍ର । ଆମ ସାଙ୍ଗରେ ଚାଲ ।'' କାଟ୍‌ଜୁଙ୍କ ଘରେ ପହଞ୍ଚିଲୁଁ । ଆମକୁ ଶ୍ରଦ୍ଧା ସହ ଡ୍ରଇଁରୁମ୍‌ରେ ବସାଇଲେ । ମିଷ୍ଟାନ୍ନ ଆସିଗଲା ।

କଥାବାର୍ତ୍ତାବେଳେ ସେ ଯାହା କହିଥିଲେ, ସେଥିମଧ୍ୟରୁ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ କଥା ଆଜିପର୍ଯ୍ୟନ୍ତ ମନେଅଛି । ସେ ହିନ୍ଦୀରେ କହିଥିଲେ, ମୁଁ ତାହାର ଓଡ଼ିଆ ଅନୁବାଦ ତଳେ ଲେଖୁଛି ।

''ଗଭର୍ଣ୍ଣର ପଦରେ ନିଯୁକ୍ତି ପାଇ ମହାତ୍ମା ଗାନ୍ଧିଙ୍କ ଆଶୀର୍ବାଦ ଭିକ୍ଷା ନିମନ୍ତେ ଯାଇଥିଲି । ଗାନ୍ଧି କହିଲେ, 'କୈଳାସନାଥ, ତୁମେ ଲାଟ୍ ହେଲ । କିନ୍ତୁ ମନେରଖ, ତୁମେ ବ୍ରିଟିଶ ସାମ୍ରାଜ୍ୟର ଲାଟସାହେବ ନୁହଁ, ସ୍ୱାଧୀନ ଭାରତର ଲାଟ ! ଇଂରେଜ ଲାଟମାନଙ୍କ ଅନୁକରଣ କରିବ ନାହିଁ । ଚାଣକ୍ୟ ଯେପରି କୁଡ଼ିଆରେ ରହି ଲୋକଙ୍କ ଗୁହାରି ଶୁଣୁଥିଲେ, ତୁମେ ସେହିପରି କାମ କରିବ । ମନ୍ତ୍ରୀମାନେ ପ୍ରଦେଶ ଶାସନ କରିବେ, ତୁମେ ଲାଟ ଭାବରେ ଗରିବ ଜନତାର ସେବା କରିବ ।' ଗାନ୍ଧିଙ୍କ କଥା ଶୁଣି ମୋତେ ଭୟ ଆସୁଛି । ତାଙ୍କ ଉପଦେଶ କ'ଣ ପାଳନ କରିପାରିବି ? ହଁ, ସମ୍ରାଟ ଭାବରେ ଚନ୍ଦ୍ରଗୁପ୍ତ ଦେଶ ଶାସନ କଲାବେଳେ ସଶସ୍ତ୍ର ଦେହରକ୍ଷୀମାନେ ତାଙ୍କୁ ଘେରି ରହିଥିଲେ ଓ ସେ ରହୁଥିଲେ ସୁଦୃଢ଼ ରାଜପ୍ରାସାଦ ମଧ୍ୟରେ । କିନ୍ତୁ ତାଙ୍କ ପ୍ରଧାନମନ୍ତ୍ରୀ ଚାଣକ୍ୟ ରହୁଥିଲେ ଗୋଟିଏ କ୍ଷୁଦ୍ର ଚାଳଘର ଭିତରେ । ଫାଟକ ପାଖରୁ ଖଣ୍ଡିଏ ଦଉଡ଼ି ଟଣାଯାଇ ସେଥିରୁ ଘର ଭିତରେ ଘଣ୍ଟିଟିଏ ଝୁଲାଇ ଦିଆଯାଇଥାଏ । ଯେ କୌଣସି ବ୍ୟକ୍ତି ଦଉଡ଼ି ଟାଣି ଘଣ୍ଟାଧ୍ୱନି ଦେଇ ତାଙ୍କ ନିକଟକୁ ଆସି ଆପତ୍ତି ଅଭିଯୋଗ ଜଣାଉଥିଲେ ।''

ଗାନ୍ଧିଙ୍କ ଉପଦେଶ ବିଷୟ କହିସାରି କାଟଜୁ ଦୀର୍ଘଶ୍ୱାସ ତ୍ୟାଗ କଲେ । ବୋଧହୁଏ ସେ ଚିନ୍ତା କରୁଥିଲେ, ଗାନ୍ଧିଙ୍କ ପରିକଳ୍ପିତ ସରଳ ନିରାଡ଼ମ୍ବର ଗଭର୍ଣ୍ଣର ହେବା କ'ଣ ସମ୍ଭବ ! ବାସ୍ତବ ପକ୍ଷରେ, ଆଜି ଯଦି ମହାତ୍ମା ଗାନ୍ଧି ଭାରତର ବିଭିନ୍ନ ରାଜ୍ୟର ରାଜଭବନଗୁଡ଼ିକ ଦେଖିପାରନ୍ତେ, ପ୍ରତ୍ୟେକ ରାଜଭବନର ରାଜକୀୟ ପରିବେଶ ଓ ବ୍ୟୟବହୁଳ ବ୍ୟବସ୍ଥା ଦେଖି ସେ ଜାଣିପାରନ୍ତେ– ତାଙ୍କ କଳ୍ପିତ ସ୍ୱାଧୀନ ଭାରତ ତାଙ୍କ ମୃତ୍ୟୁ ପରେ ଦିବାସ୍ୱପ୍ନ ପରି ଉଭେଇ ଯାଇଛି !

ଅନ୍ୟ ଗୋଟିଏ ଘଟଣା । ଦିନଟି ଥିଲା ୧୯୪୭ ମସିହା ସେପ୍ଟେମ୍ବର ମାସ ୯ ତାରିଖ । ସକାଳେ ଖବରକାଗଜରୁ ଦେଖିଲି, ସେହିଦିନ ମହାତ୍ମା ଗାନ୍ଧି କଲିକତାରୁ ଦିଲ୍ଲୀ ଅଭିମୁଖେ ଟ୍ରେନ୍‌ଯୋଗେ ଯାତ୍ରା କରିବେ ଓ ଏଲ୍ଲାହାବାଦ ଷ୍ଟେସନରେ ଗାଡ଼ି ପହଞ୍ଚିବ ଦିନ ଗୋଟାଏ ବେଳେ । ଅନେକ ଆଗରୁ ଷ୍ଟେସନକୁ ଦୌଡ଼ିଲି । ୧୧ଟା ବେଳକୁ ସେଠାରେ ପହଞ୍ଚିଲାବେଳକୁ ସମସ୍ତ ପ୍ଲାଟ୍‌ଫର୍ମଟି ଜନାକୀର୍ଣ୍ଣ ହୋଇସାରିଥାଏ । ଜାଗା ଟିକିଏ ଠିକ୍ କଲାବେଳକୁ ଠେଲାପେଲା ମଧ୍ୟରେ ସେଠାରୁ ସ୍ଥାନଚ୍ୟୁତ ହେଉଥାଏଁ । କ୍ରମାନ୍ୱୟଭାବେ ଲୋକସଂଖ୍ୟା ବଢ଼ିଚାଲିଲା । ଦଳାଚକଟାରୁ ରକ୍ଷା ପାଇବା ଲାଗି ପ୍ଲାଟ୍‌ଫର୍ମ ବାହାରେ ଯାଇ

ଛିଡ଼ା ହେଲି । ଦିନ ପ୍ରାୟ ୧ଟା ବେଳେ ଗାଡ଼ିର ଇଞ୍ଜିନ୍ ଦିଶିଲା । ଧୀର ଗତିରେ ଗାଡ଼ିଟି ପ୍ରବେଶ କରୁଥିଲାବେଳେ ଦେଖିପାରିଲି କେତେଗୁଡ଼ିଏ ବଗିର ଉନ୍ମୁକ୍ତ ଦ୍ୱାରଦେଶରେ ତ୍ରିରଙ୍ଗ ପତାକା ଧରି ଜଣେ ଜଣେ ବରିଷ୍ଠ ନେତା ଛିଡ଼ା ରହିଥାନ୍ତି । ସେମାନଙ୍କ ମଧ୍ୟରେ ଜଣେ ଥିଲେ ସ୍ୱାଧୀନତା ପୂର୍ବବର୍ତ୍ତୀ ଅବିଭକ୍ତ ବଙ୍ଗପ୍ରଦେଶର ଦୁର୍ଦ୍ଧାନ୍ତ ପ୍ରଧାନମନ୍ତ୍ରୀ ସୁରାବର୍ଦ୍ଦୀ । ଯେଉଁ ବ୍ୟକ୍ତିଙ୍କ ନିର୍ଦ୍ଦେଶରେ ଭୟଙ୍କର 'କଲିକତା ହତ୍ୟାକାଣ୍ଡ' ସଂଘଟିତ ହୋଇଥିଲା ଓ ଅସଂଖ୍ୟ ନରନାରୀ ନିହତ ହୋଇଥିଲେ, ଘଟଣାକ୍ରମେ ସେହି ସୁରାବର୍ଦ୍ଦୀ ଦେଶ ବିଭାଜନ ବେଳର ହିଂସ୍ର ହିନ୍ଦୁଜନତା ହାତରୁ କଲିକତାର ମୁସଲମାନମାନଙ୍କୁ ରକ୍ଷା କରିବା ନିମନ୍ତେ ଗାନ୍ଧିଙ୍କର ଶରଣ ପଶିଥିଲେ । ତାଙ୍କ ଉପରେ ଲୋକଙ୍କର ଦୃଷ୍ଟି ପଡ଼ିଲାକ୍ଷଣି ପାଟି ଶୁଭିଲା ''ସୁରାବର୍ଦ୍ଦୀ, ସୁରାବର୍ଦ୍ଦୀ ।''

ଟ୍ରେନ୍‌ର ଡବା ପରେ ଡବା ଧୀର ମନ୍ଥର ଗତିରେ ଆଗେଇ ଚାଲିଥାଏ । ହଠାତ୍ ବନ୍ଦ ହେଲାବେଳକୁ ମୋ ଆଗରେ ଥାଏ ଗାଡ଼ିର ଶେଷ ଡବାଟି । ଆଖି ପଡ଼ିଗଲା, ଭିତରେ ମହାତ୍ମା ଗାନ୍ଧି । କ୍ଷଣିକର ଉନ୍ମାଦନା ଫଳରେ ଖୋଲା ପ୍ରବେଶପଥରେ ଭିତରକୁ ଉଠିପଡ଼ିଲି । ମୁହୂର୍ତ୍ତକ ପାଇଁ ତାଙ୍କର ଉନ୍ମୁକ୍ତ ବକ୍ଷଦେଶ ଓ ଦୀପ୍ତିମାନ ଉଜ୍ଜ୍ୱଳ ମୁଖମଣ୍ଡଳ ଦିଗକୁ ଚାହିଁଥିଲାବେଳେ ସହସା ଧସେଇ ପଶିଆସିଲେ ଏକ ଦଳ ଶିଖ୍ । ସେମାନଙ୍କ ଧକ୍କାରେ ଡବାର ଅନ୍ୟ ଦ୍ୱାର ଦେଇ ତଳକୁ କଚାଡ଼ି ପଡ଼ିଲି । ଗୋଡ଼ର ଗୋଟିଏ ଚପଲ କେଉଁଠାରେ ପଡ଼ିଲା ଜାଣିପାରିଲି ନାହିଁ, ବୋଧହୁଏ ମହାତ୍ମାଙ୍କ ବଗି ଭିତରେ ନୁହେଁ । ତଳେ ପଥର ଗେଟି ଉପରୁ ଉଠିଲାବେଳକୁ ଆଣ୍ଠୁ ଦୁଇଟିରୁ ରକ୍ତ ଝରୁଥାଏ । ଛିଡ଼ା ହୋଇ ଝରକାବାଟେ ଭିତରର ଦୃଶ୍ୟ ଦେଖିପାରିଲି । ଶିଖ୍‌ମାନେ କ'ଣ କହୁଥାନ୍ତି ତାହା ଶୁଣି ହେଲା ନାହିଁ । ଗାନ୍ଧି ମଧ୍ୟ ଧୀରେ ଧୀରେ କିଛି ଉପଦେଶ ଦେଉଥିଲେ । ତାଙ୍କ ଦୁଇପାଖେ ବସିଥାନ୍ତି ତାଙ୍କର ଦୁଇ ନାତୁଣୀ । କିଛି ସମୟ ପରେ ଗାଡ଼ି ଛାଡ଼ିଦେଲା ।

ଷ୍ଟେସନ୍‌କୁ ଆସିଲାବେଳେ ଓଡ଼ିଶାର ଜଣେ ସହପାଠୀଙ୍କୁ ସାଙ୍ଗରେ ଡାକିଥିଲି । ସେ କହିଥିଲେ, ''ଗାନ୍ଧିଙ୍କୁ ଦେଖିବା ଦିନ କ'ଣ ସରିଯାଉଛି ଯେ ଷ୍ଟେସନରେ ଯାଇ ଦେଖିବା ! ପରୀକ୍ଷା ପରେ ଦିଲ୍ଲୀ ଯାଇ ଭଲଭାବରେ ଦର୍ଶନ କରିବା ।'' କିଏ ବା ଅନୁମାନ କରିଥାନ୍ତା ଯେ ମହାତ୍ମାଙ୍କ କ୍ରୁଶବିଦ୍ଧ ହେବା ଦିନ ପାଖେଇ ଆସିଲାଣି ! ହଷ୍ଟେଲରେ ପହଞ୍ଚି ଆଣ୍ଠୁରୁ ମାଟିମିଶା ରକ୍ତ ସଫା କଲାବେଳେ ଜଣେ ସାଙ୍ଗ ପଚାରିଲେ, ''କ୍ୟା ହୁଆ ?'' ମୋର ବର୍ଣ୍ଣନା ଶୁଣି ସେ ଅଟ୍ଟହାସ୍ୟ ପୂର୍ବକ କହିଥିଲେ, ''ଆଚ୍ଛା ହୁଆ !'' ପ୍ରକୃତ ପକ୍ଷେ, ସେହି 'ଆଚ୍ଛା ହୁଆ'ର ଅନୁଭୂତିଟି ଚିରସ୍ମରଣୀୟ ରହିଲା ।

୧୯୪୮ ମସିହା ଜାନୁଆରୀ ୩୦ ତାରିଖ । ସନ୍ଧ୍ୟା ୫ଟା ବେଳେ ହିନ୍ଦୁ ହଷ୍ଟେଲ ହଲ୍‌ରେ କୈଳାସ ନାଥ କାଟଜୁଙ୍କର ଭାଷଣ କାର୍ଯ୍ୟକ୍ରମ ଥାଏ । ଯଥାସମୟରେ ସେ ଆସିଗଲେ । ହଲ୍‌ଟି ପରିପୂର୍ଣ୍ଣ ଥାଏ । ଜଣେ ଅଧ୍ୟାପକ ତାଙ୍କୁ ସ୍ୱାଗତ କରିବାବେଳେ କିଛି ସମୟ କହିଲେ । ମଞ୍ଚ ଉପରକୁ ଉଠି କାଟଜୁ ଭାଷଣ ଆରମ୍ଭ କରିବା ମୁହୂର୍ତ୍ତରେ ତାଙ୍କର ବ୍ୟକ୍ତିଗତ ସହକାରୀ ବାହାରୁ ଦୌଡ଼ିଆସି କାନ ପାଖରେ କ'ଣ କହୁଥିବା ଦେଖାଗଲା । ତତ୍‌କ୍ଷଣାତ୍ ମାଇକ୍ ଛାଡ଼ି କାଟଜୁ ମଞ୍ଚ ତଳକୁ ଡେଇଁପଡ଼ି ବାହାରକୁ ଚାଲିଗଲେ । ତଡ଼ିତ୍ ଗତିରେ ସମ୍ବାଦ ପ୍ରଚାର ହୋଇଗଲା— ମହାତ୍ମା ଗାନ୍ଧି ଆଉ ନାହାନ୍ତି ।

ଶୀତଋତୁର ଅନ୍ଧାରିଆ ସନ୍ଧ୍ୟା ମାଡ଼ିଆସୁଥାଏ । ଆମେ କେତେଜଣ ଦୌଡ଼ିଲୁଁ ସିଭିଲ ଲାଇନରେ ଥିବା ଗୋଟିଏ ସମ୍ବାଦପତ୍ରର କାର୍ଯ୍ୟାଳୟ ଦିଗକୁ । ଅଧା ରାସ୍ତାରେ ପହଞ୍ଚିଛି, ବିପରୀତ ଦିଗରୁ ଫେରୁଥାନ୍ତି ମୋର ବନ୍ଧୁ ଓଡ଼ିଆ ଛାତ୍ର ବୈଦ୍ୟନାଥ ମିଶ୍ର । ପଚାରିଲି, "ବୈଦ୍ୟନାଥବାବୁ, କଥା କ'ଣ ସତ୍ୟ ?" ବିମର୍ଷ ମନରେ ଉତ୍ତର ଦେଲେ, "ହଁ ।" ତଥାପି ସମ୍ବାଦପତ୍ର ଅଫିସ ଆଗରେ ପହଞ୍ଚିଲି । ଅସଂଖ୍ୟ ଲୋକ ନୀରବ ନିସ୍ପନ୍ଦ ଭାବରେ ଛିଡ଼ା ହୋଇଥାନ୍ତି । ଫାଟକ ଦେହରେ ଖଣ୍ଡିଏ ସୁଦୀର୍ଘ କାଗଜରେ ପ୍ରକାଣ୍ଡ ପ୍ରକାଣ୍ଡ ଅକ୍ଷରରେ ଲେଖା ରହିଥାଏ—"Mahatma Gandhi Assassinated" । ଅବିଳମ୍ବେ ରାସ୍ତାଘାଟ ଜନଶୂନ୍ୟ ହେଲା । ଆଲୋକ ବତି ନିଭିଗଲା । ସମଗ୍ର ସହରରେ ବ୍ୟାପିଗଲା ଶ୍ମଶାନର ନୀରବତା । ସେଦିନର ସେହି ଶୋକାତୁର ରାତ୍ରିରେ ଭାରତ ଭୂମିରେ ନଥାନ୍ତି ମହାତ୍ମା ଗାନ୍ଧି ।

ତାହାର ଦଶଦିନ ପରେ ଏଲ୍ଲାହାବାଦ ବା ପ୍ରୟାଗଠାରେ ଗଙ୍ଗାଯମୁନା ସଙ୍ଗମ ସ୍ଥଳରେ ବିସର୍ଜନ କରାଗଲା ଗାନ୍ଧିଙ୍କର ଚିତାଭସ୍ମ । ସେଦିନର ଅଭୂତପୂର୍ବ ଦୃଶ୍ୟ ଯେଉଁମାନେ ଦେଖିଥିବେ, ସେମାନଙ୍କ ପକ୍ଷରେ ତାହା ଭୁଲିବା ସମ୍ଭବ ନୁହେଁ । କୁହାଯାଇଛି, ଅତୀତ କିମ୍ବା ବର୍ତ୍ତମାନ କାଳରେ ଭାରତର କୌଣସି ଗୋଟିଏ ସ୍ଥାନରେ ୪୦ ଲକ୍ଷ ଲୋକଙ୍କର ସମାବେଶ କେବେହେଲେ ଦେଖିବାକୁ ମିଳିନାହିଁ । ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସେହି ଦୃଶ୍ୟ ଦେଖିବା ଉଦ୍ଦେଶ୍ୟରେ ପ୍ରଭାତ ସମୟରୁ ବାହାରି ଯାଇଥିଲି । ଏଲ୍ଲାହାବାଦ ରେଳଷ୍ଟେସନରେ ଗାନ୍ଧିଙ୍କ ଚିତାଭସ୍ମ ଥିବା ପାତ୍ରଟି ହାତରେ ଧରି ତାଙ୍କ ପୁତ୍ର ଗାଡ଼ିରୁ ବାହାରି ଆସିଥିଲେ । ପାଖରେ ଥିଲେ ଜବାହାରଲାଲ ନେହରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରମୁଖ ତୁଙ୍ଗ ନେତୃବର୍ଗ । ପୁଷ୍ପସୁଶୋଭିତ ଟ୍ରକ୍‌ଟିରେ କଳସର ଦୁଇ ପାଖରେ ବସିଥିଲେ ନେହରୁ ଓ ପଟେଲ । ଗାଡ଼ି ପଛରେ ଚାଲିଲେ ବିଭିନ୍ନ ରାଷ୍ଟ୍ରର ପ୍ରତିନିଧି ଓ ଅନ୍ୟ ନେତାମାନେ ।

ଉଭୟ ପାର୍ଶ୍ୱରେ ଜନସମାଗମର ସୀମା ନଥାଏ । ସଙ୍ଗମ ସ୍ଥାନଟି ଜନସମୁଦ୍ର ସଦୃଶ ଦେଖାଯାଉଥାଏ । ସୁସଜ୍ଜିତ ବାଷ୍ପୀୟପୋତରେ ଚିତାଭସ୍ମ ନିଆଗଲା ନଦୀବକ୍ଷକୁ । ବହୁତ ଦୂରରୁ ଛିଡ଼ା ହୋଇ ଅସ୍ଥି ବିସର୍ଜନର ଦୃଶ୍ୟ ଆମେ ଦେଖିଲୁଁ । ଲକ୍ଷ ଲକ୍ଷ ଲୋକ ଗଙ୍ଗାଯମୁନାରେ ବୁଡ଼ ଦେଲେ । ଇତିହାସର ଗୋଟିଏ ମହାନ ଅଧ୍ୟାୟ ସମାପ୍ତ ହେଲାପରି ଜଣାଯାଉଥାଏ ।

ଏମ୍.ଏ. ଶେଷ ପରୀକ୍ଷାକୁ ଦୁଇ ମାସରୁ କମ୍ ସମୟ ଥାଏ । ମନ ଦେଇ ଦିନରାତି ପାଠ ପଢ଼ିଲି । ଗୋଟିଏ ରବିବାରର ସନ୍ଧ୍ୟାସମୟ । କୋଠରିଟି ଭିତରୁ ବନ୍ଦ କରି ଏକାଗ୍ର ଚିତ୍ତରେ ପଢୁଥିଲି । ଦରଜାରେ ମୃଦୁ ଆଘାତ ଶୁଣି କବାଟ ଫିଟାଇଲି । ପଶିଆସିଲେ ଜଣେ ବୃଦ୍ଧ ଭଦ୍ରଲୋକ । ବଙ୍ଗଳାରେ କହିଲେ, ‘‘ମୁଁ ଜଣେ ପଳାତକ ।’’

ଆଖିରୁ ଲୁହ ଗଡ଼ିଯାଉଥାଏ । ଦାଢ଼ି ଓ ନିଶ ଅଧାଅଧି ପାଚିଯାଇଥିଲା । ମୋ ଖଟ ଉପରେ ବସିପଡ଼ି ବର୍ଣ୍ଣନା କରିଗଲେ ତାଙ୍କର ମର୍ମାନ୍ତିକ ଦୁଃଖ– ପୁତ୍ର ନିହତ, କନ୍ୟା ଅପହୃତା, ସ୍ତ୍ରୀଙ୍କ ସହ ପଳାଇ ଆସିଛନ୍ତି, ଇତ୍ୟାଦି । କଥା ଶେଷରେ ଜଣାଇଲେ, ‘‘ଦରଜାରେ ଆପଣଙ୍କ ନାମରୁ ଜାଣିଲି ଆପଣ ବଙ୍ଗାଳୀ । କିଛି ସାହାଯ୍ୟ ପାଇବା ଆଶାରେ କବାଟରେ ହାତ ମାରିଲି ।’’ ହଠାତ୍ କାହିଁକି କେଜାଣି ମୋ ପାଟିରୁ ବାହାରିଗଲା, ‘‘ମୁଁ ବଙ୍ଗାଳୀ ନୁହେଁ, ସାହାଯ୍ୟ ଦେବା ଶକ୍ତି ନାହିଁ ।’’ ଉଦାସ ନୟନରେ ଦୀର୍ଘଶ୍ୱାସ ଛାଡ଼ି ସେ ବାହାରି ଚାଲିଗଲେ । ମୁଁ କବାଟ କିଳି ପଢ଼ିବାକୁ ବସିଲି ।

ଅକସ୍ମାତ୍ ମନମଧ୍ୟରେ ଗୋଟିଏ ପ୍ରକାର ଅସ୍ୱାଭାବିକ ପ୍ରତିକ୍ରିୟା ଅନୁଭବ କଲି । ଟଙ୍କାଟିଏ ଦେଇପାରିଥାନ୍ତି, ଈଷତ୍ ଦୟା ଆସିଲା ନାହିଁ କାହିଁକି ? ଅନୁତାପ ପୀଡ଼ାରେ ପ୍ରକାଣ୍ଡ ହଷ୍ଟେଲର ଏ ପାଖରୁ ସେ ପାଖ ବୃଦ୍ଧ ପଳାତକଙ୍କୁ ଖୋଜିଲି । କିନ୍ତୁ ପାଇଲି ନାହିଁ । ଶୁଣିଥିଲି, ସହରର ଉପକଣ୍ଠରେ ରିଫ୍ୟୁଜି ଛାଉଣୀମାନ ସ୍ଥାପନ କରାଯାଇଛି । ସେଠାରେ ତାଙ୍କୁ ଖୋଜିବି ବୋଲି ଠିକ୍ କଲି । ରାତିରେ ବିବେକ ଦଂଶନ ଭୋଗିଲି । ନିଦ ହେଲା ନାହିଁ ।

ତହିଁ ପରଦିନ ଅପରାହ୍ନରେ ପଳାତକ ଶିବିର ରାସ୍ତାରେ ଚାଲିଲି । ବୃଦ୍ଧଙ୍କୁ ସାହାଯ୍ୟ ଦେଇ ନୈତିକ ଗ୍ଳାନିରୁ ମୁକ୍ତି ପାଇବା ଥିଲା ଉଦ୍ଦେଶ୍ୟ । ଗଲାବେଳେ ଫୁଟ୍‌ପାଥ ଉପରେ ଦେଖିଲି ଜଣେ ବୃଦ୍ଧ ଶିଖ ବଡ଼ ବଡ଼ ପାଚିଲା ପିଜୁଳି ବିକ୍ରି କରୁଛନ୍ତି । ଖାଇବା ପାଇଁ ଲୋଭ ହେଲା । କିଣିବା ଲାଗି ନଇଁପଡ଼ିଲି । କିନ୍ତୁ ଦେଖିଲି, ତାଙ୍କ ଟୋକେଇ ପାଖରେ ମାଟି ଉପରେ ବସିରହି ସେ ଗୋଟିଏ ଛୋଟ ଅଇନାରେ ନିଜର ମୁହଁଟିକୁ ନିବିଷ୍ଟ ମନରେ ଚାହିଁରହିଛନ୍ତି । ହିନ୍ଦୀରେ

କହିଲି, "ମୁଁ ଫଳ କିଣିବା ପାଇଁ ନଇଁ ରହିଛି, ମୋତେ ନ ଚାହିଁ ତୁମେ ତୁମର ମୁହଁରେ କ'ଣ ଦେଖୁଛ ?" ମୋ ଆଡ଼କୁ ନ ଚାହିଁ ସେ ଉତ୍ତର ଦେଲେ, "ଦେଖୁଛି ଭାଗ୍ୟର ଖେଳ । କାଲି ଥିଲି ଲକ୍ଷପତି, ଆଜି ବାଟପାଖର ଫଳ ବିକାଳି ।" ("ଦେଖ୍ ରହା ହୁଁ ତକଦିର୍ କା ଖେଲ୍ । କାଲ୍ ଥା ମେ ଲାଖପତି, ଆଜ୍ ଫୁଟପାଥ୍‌କା ଫଲ୍ ବେଚନାବାଲା") । ଟଙ୍କାଟିଏ ଦେଇ ଦୁଇଗଣ୍ଡା ପିଜୁଳି କିଣି ଆଉ ଗୋଟିଏ ଟଙ୍କା ତାଙ୍କ ଟୋକେଇ ପାଖରେ ଥୋଇଦେଲି । ପଳାତକ ଛାଉଣୀ ପାଖକୁ ଯିବା ଲାଗି ସାହସ ହେଲାନାହିଁ ।

ଯେଉଁ ବୃଦ୍ଧ ବଙ୍ଗାଳୀ ପଳାତକଙ୍କୁ ନିରାଶ କରିଥିଲି, ତାଙ୍କ ରୂପଟି ମଧ୍ୟେ ମଧ୍ୟେ ମନେ ପଡୁଥାଏ । ଅପରାଧର ପ୍ରାୟଶ୍ଚିତ୍ତ ନିମନ୍ତେ ପରୀକ୍ଷା ପରେ ଖଣ୍ଡିଏ ଉପନ୍ୟାସ ଲେଖିଥିଲି "ଅସ୍ତ ରାଗ", ଗୋଟିଏ ପଳାତକ ପରିବାରର କାହାଣୀ । ୧୯୫୩ରେ ସେହି ପାଣ୍ଡୁଲିପିଟି ମୋ ସ୍ତ୍ରୀ କଟକର 'ଛାତ୍ରବନ୍ଧୁ ପୁସ୍ତକାଳୟ'କୁ ପ୍ରକାଶ ଲାଗି ଦେଇଥିଲେ । କାଶୀନାଥ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ସେହି ବହିଟି ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥିଲା । ତାହାର ଚାଳିଶ ବର୍ଷ ପରେ ଅବିକଳ ଭାବରେ ବହିଟି ଆଉ ଥରେ ପ୍ରକାଶ କଲେ ମୋର ପ୍ରକାଶକ ବନ୍ଧୁ ପୀତାମ୍ବର ମିଶ୍ର, 'ବିଦ୍ୟାପୁରୀ ପ୍ରକାଶନୀ' ସଂସ୍ଥା ଦ୍ୱାରା । ଅପରିଣତ ବୟସରେ ଲେଖିଥିବା ବହିଟି ପଢ଼ିଲେ ଏବେ ହସ ଲାଗେ ।

## ଏଲ୍ଲାହାବାଦରୁ ବିଦାୟ

ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟରେ ବିତିଥିବା ଦୁଇଟି ବର୍ଷ ଥିଲା ପ୍ରକୃତପକ୍ଷେ ସୁଖଦାୟକ ଓ ଶିକ୍ଷାମୂଳକ । ସେତେବେଳର ଅଧ୍ୟାପକମାନେ ଥିଲେ ମହାମନା ବ୍ୟକ୍ତି । ସେମାନଙ୍କ ଚିନ୍ତାରେ ଆଞ୍ଚଳିକ ମନୋଭାବ କିମ୍ବା ପକ୍ଷପାତିତାର ପ୍ରଶ୍ନ ନଥାଏ । ସେଥିପାଇଁ ଅଧିକାଂଶ ଓଡ଼ିଆ ଛାତ୍ର ବିଭିନ୍ନ ବିଷୟରେ ପ୍ରଥମ ଶ୍ରେଣୀରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେଉଥିଲେ । ପରୀକ୍ଷା ଶେଷ ହେଲାପରେ ପୂଜ୍ୟ ଅଧ୍ୟାପକ ତଥା ପ୍ରଖ୍ୟାତନାମା ଐତିହାସିକ ଈଶ୍ୱରୀ ପ୍ରସାଦ, ତାରାଚାନ୍ଦ, ବାରାଣସୀ ପ୍ରସାଦ ସାକସେନା, ବିଶ୍ୱେଶ୍ୱର ପ୍ରସାଦ, ଓ.ପି.ଭଟନାଗର ଓ ରାମ ପ୍ରସାଦ ତ୍ରିପାଠୀଙ୍କ ନିକଟରୁ ବିଦାୟ ନେବାକୁ ଯାଇଥିଲି । ଅନେକ ବର୍ଷ ପରେ ମଧ୍ୟ ଈଶ୍ୱରୀପ୍ରସାଦ ଓ ସାକ୍‌ସେନା ମୋର ନାମ ମନେ ରଖିଥିଲେ ଶୁଣି ଆଶ୍ଚର୍ଯ୍ୟ ହେଉଥିଲି ।

ସେଠାକାର ସ୍ଥାନୀୟ ଛାତ୍ରମାନଙ୍କର ଅମାୟିକ ବନ୍ଧୁତ୍ୱ ଭୁଲିହୁଏ ନା । ଏଲ୍ଲାହାବାଦ ଥିଲା ଏପରି ଗୋଟିଏ ସ୍ଥାନ ଯେଉଁଠାରେ ବାହାର ପ୍ରଦେଶରୁ ଆସୁଥିବା ପିଲାମାନଙ୍କୁ କେହି ପର ବୋଲି ଭାବୁ ନଥିଲେ । ମୋର ସହପାଠୀମାନଙ୍କ ମଧ୍ୟରୁ ଭବିଷ୍ୟତରେ

ଅନେକେ ଉଚ୍ଚ ପଦପଦବୀ ଲାଭ କରିଥିଲେ । ଆଜିପର୍ଯ୍ୟନ୍ତ କେହି କେହି ଚିଠି ଲେଖି ସେଠାକାର ଛାତ୍ରଜୀବନ ସ୍ମରଣ କରାଇଦିଅନ୍ତି ।

ସେତେବେଳେ ସେଠାରେ ପଢୁଥିବା ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ଥିଲେ ରଙ୍ଗନାଥ ମିଶ୍ର, ବୈଦ୍ୟନାଥ ମିଶ୍ର, ଗୋପାଳ ଚନ୍ଦ୍ର ପଟ୍ଟନାୟକ, ହରିହର ପଟ୍ଟନାୟକ, ଭବାନୀଚରଣ ରାୟ, ବିମଳକିଶୋର ମିଶ୍ର, ଗୋପୀନାଥ ପାଣିଗ୍ରାହୀ ଓ କାଙ୍ଗାଳିଚରଣ ପତି । ମଧ୍ୟେ ମଧ୍ୟେ ଗୋଟିଏ ସ୍ଥାନରେ ଏକତ୍ରିତ ହୋଇ ଦେଶବିଦେଶ କଥା ଆଲୋଚନା କରାଯାଉଥାଏ । ଭବିଷ୍ୟତରେ ଏମାନେ ପ୍ରତ୍ୟେକେ ଉଚ୍ଚ ଆସନରେ ପ୍ରତିଷ୍ଠିତ ହୋଇଥିଲେ ।

ରଙ୍ଗନାଥ ମିଶ୍ରଙ୍କ ନାମ ଉଲ୍ଲେଖ କଲାବେଳେ ଗୋଟିଏ କଥା ମନେପଡୁଛି । ହଷ୍ଟେଲରେ ନ ରହି ସେ 'ରକ୍ସି' ନାମକ ବସାଘରେ ରହୁଥାନ୍ତି । ଦିନେ କ୍ଲାସରୁ ଫେରିଲାବେଳେ ତାଙ୍କ ବସାଘର ପାଖ ରାସ୍ତାରେ ବଡ଼ ବଡ଼ 'ଅମୃଦ୍' ବା ପିଜୁଳି ବିକ୍ରି ହେଉଥିବା ଦେଖିଲି, ଟଙ୍କାଟିରେ ଚାରିଗଣ୍ଡା । ପକେଟରେ ଟଙ୍କା ନ ଥାଏ । ରଙ୍ଗନାଥବାବୁଙ୍କ ରୁମ୍ ଭିତରକୁ ଯାଇ ବହି ସେଲ୍ଫ ଉପରେ ଥିବା ଟଙ୍କାରୁ ତାଙ୍କୁ କହି ଗୋଟିଏ ଟଙ୍କା ଉଠାଇଆଣିଲି । ତାଙ୍କ ସମ୍ମାନ ପ୍ରତି ଆଞ୍ଚ ଆସିବ ଭାବି ଟଙ୍କାଟି ଫେରାଇଦେବାକୁ ସଂକୋଚ ବୋଧ କଲି । ଯେତେହେଲେ ସେ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପୁତ୍ର ! କିନ୍ତୁ ଋଣ ପରିଶୋଧ ନ କରିଥିବା କଥାଟି ମନେ ରହିଗଲା । ମୁଁ ଏମ୍.ଏ. ପାଶ୍ କଲାପରେ ମୋର ସାର୍ଟିଫିକେଟଟି ଆଣି ସେ ରେଜିଷ୍ଟାର୍ଡ଼ ଡାକ ଯୋଗେ ପଠାଇଥିଲେ ।

୧୯୮୪ ମସିହା ବେଳକୁ ରଙ୍ଗନାଥ ବାବୁ ଥିଲେ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି । ମୁଁ ଥାଏ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି । ଛାତ୍ର ସଂସଦର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ରୂପେ ତାଙ୍କୁ ନିମନ୍ତ୍ରଣ କରି ଆଣିଲି । ଆନୁଷ୍ଠାନିକ ଭାବରେ ପରିଚୟ ଦେଲାବେଳେ, ଲଫାଫାରେ ଥିବା ଖଣ୍ଡିଏ ଶହେଟଙ୍କିଆ ନୋଟ୍ ତାଙ୍କ ହାତକୁ ବଢ଼ାଇ ଦେଇ କହିଲି, "୧୯୪୮ ମସିହାରେ ଆପଣଙ୍କ ପାଖରୁ ଧାର ନେଇଥିବା ଗୋଟିଏ ଟଙ୍କା ଏବେ ଚକ୍ରବୃଦ୍ଧି ହାରରେ ସୁଧ ସମେତ ଏକଶତ ଟଙ୍କା ହୋଇଥିବ ବୋଲି ମୋର ଅନୁମାନ । ଋଣ ପରିଶୋଧ ନ କରିବା ଅପରାଧରୁ ମୁକ୍ତି ପାଇବା ଲାଗି ସେହି ଟଙ୍କା ଆପଣଙ୍କୁ ବିଳମ୍ବରେ ହେଲେ ମଧ୍ୟ ଆଜି ୩୬ ବର୍ଷ ପରେ ଫେରାଇଦେଉଛି ।" ମୋ ହାତରୁ ଖାମ୍‌ଟି ଧରିନେଇ ସେ କହିଲେ, "ଆପଣ ସିନା ଋଣ ପରିଶୋଧ କରି ପାପମୁକ୍ତ ହେଲେ, କିନ୍ତୁ ମୁଁ ସୁଧ ଗ୍ରହଣ କରି ପାପ ଅର୍ଜନ କରିବି କାହିଁକି ?" ଛାତ୍ରମାନଙ୍କ

କରତାଳି ମଧ୍ୟରେ ସେ ପ୍ରସାଦ ହରିଚନ୍ଦନ ନାମକ ଛାତ୍ରଙ୍କ ହାତରେ ଟଙ୍କା ଧରାଇଦେଲେ । ପ୍ରସାଦ ସେତେବେଳେ ବାଣୀବିହାର ପରିସରରେ ବୃକ୍ଷରୋପଣ କାର୍ଯ୍ୟର ପରିଚାଳନା କରୁଥିଲେ ଓ ସେଥିରେ ଟଙ୍କା ବିନିଯୋଗ କରିବା ଲାଗି ରଙ୍ଗନାଥ ମିଶ୍ର ତାଙ୍କୁ ପରାମର୍ଶ ଦେଲେ । ପ୍ରସାଦ ହରିଚନ୍ଦନ ଏବେ ସର୍ବଭାରତୀୟ ସ୍ତରରେ ଜଣେ ଯୁବନେତା ଭାବେ ପରିଚିତ ଓ ଓଡ଼ିଶା ବିଧାନ ସଭାର ସଦସ୍ୟ ।

ଏଲ୍ଲାହାବାଦରେ ଓଡ଼ିଆ ଛାତ୍ର ହରିହର ପଟ୍ଟନାୟକ ଥିଲେ ମୋର ଅନ୍ତରଙ୍ଗ ବନ୍ଧୁ । ଥରେ ହିନ୍ଦୁ ହଷ୍ଟେଲର ଗୋଟିଏ ଉତ୍ସବରେ ତ୍ରିରଙ୍ଗ ପତାକା ଉତ୍ତୋଳନ କରିବା ଲାଗି ଆସିଥିଲେ ନଗର କଂଗ୍ରେସ କମିଟିର ସଭାପତି ବିଶ୍ୱମ୍ଭର ନାଥ ପାଣ୍ଡେ । ତାଙ୍କର ନିଘଞ୍ଚ କଳାଦାଢ଼ି, ଲମ୍ବା କେଶ, ବଡ଼ ବଡ଼ ଆଖି ଓ ଗମ୍ଭୀର ମୁଖମଣ୍ଡଳ ଦେଖି କେତେଜଣ ଛାତ୍ର ପରସ୍ପର ମଧ୍ୟରେ ହସ କୌତୁକ କରୁଥିଲେ । ମୁଁ ଓ ହରିହରବାବୁ ସେମାନଙ୍କ ସହିତ ମିଶିଗଲୁଁ । ପାଣ୍ଡେଜୀଙ୍କର ଦୃଷ୍ଟି ଆମ ଉପରେ ପଡ଼ିଗଲା । କ୍ଷିପ୍ର ଗତିରେ ଆଗେଇ ଆସି କଠୋର ସ୍ୱରରେ ସେ ବାକ୍ୟ ବର୍ଷଣ କଲେ, ‘‘ଦେଶ୍ ଆଜାଦ୍ ହୋନେବାଲା ହେ । ଆପ୍ ସବ୍‌କୋ ଅନୁଶୀଲନ୍ ଶିଖ୍‌ନା ଚାହିୟେ ।’’

୧୯୮୩ରେ ସେହି ପାଣ୍ଡେ ମହୋଦୟ ଓଡ଼ିଶାର ରାଜ୍ୟପାଳ ହେଲେ । ସେତେବେଳେ ମୁଁ ଥାଏ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଓ ହରିହର ପଟ୍ଟନାୟକ ଥାନ୍ତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି । ଦିନେ ରାଜ୍ୟପାଳଙ୍କୁ ବାଣୀବିହାର ଛାତ୍ର ସଂସଦରେ ଉଦ୍‌ବୋଧନ ଦେବାଲାଗି ଡାକିଲି । ତାଙ୍କର ପରିଚୟ ଦେଲାବେଳେ ୩୭ ବର୍ଷ ଆଗେ ଶୁଣିଥିବା ତାଙ୍କର ସେହି ବାକ୍ୟଟି ଉଦ୍ଧାର କଲି । ଆଜି ପର୍ଯ୍ୟନ୍ତ ହରିହର ବାବୁଙ୍କ ସହିତ ଦେଖାହେଲେ ସେ ମୋତେ ପ୍ରଥମେ କହନ୍ତି, ‘‘ଆପ୍‌କୋ ଅନୁଶୀଲନ୍ ଶିଖନା ଚାହିୟେ ।’’ ଛାତ୍ରଜୀବନର ହସଖୁସିର କଥାଗୁଡ଼ିକ ମୃତ୍ୟୁ ପର୍ଯ୍ୟନ୍ତ ମନେ ରହିଯାଏ ।

ଏଲ୍ଲାହାବାଦରୁ ବିଦାୟ ନେଲାବେଳେ ମନରେ ଗଭୀର ଦୁଃଖ ଅନୁଭବ କରିଥିଲି । ଅଧ୍ୟୟନ ବେଳର ଅବସାନ ଘଟିଲା ବୋଲି ଭାବିଲାବେଳକୁ ଅଜ୍ଞାତ ଭବିଷ୍ୟତର ବୋଝ ମୁଣ୍ଡ ଉପରକୁ ଆସିଗଲା ଜାଣି ମନରେ ଆଶଙ୍କା ଜାତ ହେଲା ।

# ଫକୀରମୋହନ କଲେଜରେ ଅଧ୍ୟାପନା (୧୯୪୮ – ୫୩)



## ସିଂହଳ ଯାତ୍ରା

### ବ୍ୟାସକବିଙ୍କ ଜରାଜୀର୍ଣ୍ଣ ଘରେ ଅବସ୍ଥାନ

୧୯୪୮ ଜୁନ ମାସରେ ଏମ୍.ଏ.ପରୀକ୍ଷା ଫଳ ବାହାରିଲା । କେତେଗୋଟି ନୂତନ ସରକାରୀ କଲେଜ ସ୍ଥାପନ କରାଯାଇଥିବାରୁ ଅଧ୍ୟାପକ ଚାକିରି ପାଇବା ସହଜ ହେଲା । ଜୁଲାଇ ମାସ ୧୫ ତାରିଖରେ, ବାଲେଶ୍ୱର କଲେଜରେ ଯୋଗ ଦେବା ଲାଗି ଡି.ପି.ଆଇ.ଙ୍କ ଆଦେଶପତ୍ର ପାଇଲି । ବାପା ଖୁସି ହୋଇ କହିଲେ, ‘‘ତୋ ମାମୁଁ କାଳୀକିଙ୍କର ଅଧ୍ୟାପକ ହେବାଲାଗି ଅନେକ ଆଶା କରିଥିଲା, କିନ୍ତୁ ସେ ଚାକିରି ନପାଇ ଡେପୁଟି କଲେକ୍ଟର ହେଲା । ଯାହାହେଉ, ଭଗବାନ ତୋ କପାଳରେ ଅଧ୍ୟାପକ ପଦ ରଖିଥିଲେ ।’’ଦରମା କେତେ ବୋଲି ପଚାରିବାରୁ ମୁଁ କହିପାରିଲି ନାହିଁ । ବାପାଙ୍କ ଧାରଣା ଥାଏ, ପୁଅ ମୋଟା ଦରମା ପାଇବ ।

ବାଲେଶ୍ୱରରେ ପହଞ୍ଚି ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ରାମଚନ୍ଦ୍ର ପଟ୍ଟନାୟକଙ୍କ ଘରେ ଆଶ୍ରୟ ନେଲି । ୧୭ ତାରିଖ ଦିନ କଲେଜରେ ଯୋଗଦାନ କରି ବସାଘର ଖୋଜିଲି । ସହରରେ ପକ୍କାଘରର ସଂଖ୍ୟା ଥାଏ ନଗଣ୍ୟ । ଯେଉଁମାନଙ୍କର ଥାଏ, ସେମାନେ ନିଜ ପରିବାର ସହ ସେଥିରେ ରହୁଥାନ୍ତି । ଭଡ଼ା ଦେବା ଉଦ୍ଦେଶ୍ୟରେ ଘର ତିଆରି ବ୍ୟବସ୍ଥା ସେ ସମୟରେ ଓଡ଼ିଶାର ପ୍ରାୟ କୌଣସି ସହରରେ ପ୍ରଚଳିତ ହୋଇ ନଥାଏ । ଅନ୍ୟ ଅଧ୍ୟାପକମାନେ ପରିବାର ସହ ଚାଳ ଘରେ ରହିଥିବା ଦେଖିଲି । କେହି କେହି ମେସ୍ କରି ରହିଥାନ୍ତି । କେବଳ ଅଧକ୍ଷଙ୍କ ରହିବା ଲାଗି ମଲ୍ଲିକାଶପୁରର ଜଣେ ଭଦ୍ରଲୋକଙ୍କର ଖାଲି ପଡ଼ିଥିବା ବଡ଼ ପକ୍କାଘରଟିଏ ସରକାର ଭଡ଼ା ନେଇଥିଲେ । କଲେଜ ପାଇଁ ସ୍ୱତନ୍ତ୍ର ବିଲ୍‌ଡିଂ ତିଆରି ହୋଇ ନଥାଏ । ହାଇସ୍କୁଲ ପିଲାମାନେ ସକାଳେ ପଢ଼ିସାରିଲା ପରେ, ସେମାନଙ୍କ କ୍ଲାସରୁମ୍ ଗୁଡ଼ିକରେ କଲେଜ ପିଲାଙ୍କ କ୍ଲାସ ହେଉଥାଏ । ଯେଉଁ ହଷ୍ଟେଲରେ ରହି ଆମେ ମେଟ୍ରିକ୍ ପଢ଼ିଥିଲୁଁ, ସେହି ହଷ୍ଟେଲ ହୋଇଥାଏ କଲେଜ ପିଲାଙ୍କ ଛାତ୍ରାବାସ ।

ପକ୍କାଘରଟିଏ ଖୋଜି ବୁଲିଲା ବେଳେ ଶୁଣିପାରିଲି, ମଲ୍ଲିକାଶପୁର ଗାଁରେ ବ୍ୟାସକବି ଫକୀରମୋହନ ସେନାପତିଙ୍କ ଜରାଜୀର୍ଣ୍ଣ କୋଠାଟି ସଦ୍ୟ ମରାମତି କରାଯାଇଛି ଓ ଜଣେ ଓକିଲଙ୍କ ଜିମାରେ ରହିଛି । ତାଙ୍କ ପାଖରେ ପହଞ୍ଚିଲି । ଚାବିଧରି ସେ ଘର ଦେଖାଇବାକୁ ନେଇଗଲେ । ବଣବୁଦା ପରିପୂର୍ଣ୍ଣ ଶାନ୍ତିକାନନ ନିକଟରେ ଥାଏ ଗୋଟିଏ ଏକତାଲା ବିଶିଷ୍ଟ ପକ୍କାଘର । ତାହାକୁ ଦୁଇଭାଗ କରି ତିନି କୋଠରି ବିଶିଷ୍ଟ ଦୁଇଟି କ୍ୱାର୍ଟାର୍‌ସରେ ପରିଣତ କରାଯାଇଥାଏ । ମରାମତି ସତ୍ତ୍ୱେ କାନ୍ଥ ଓ ଛାତର ଅବସ୍ଥା ଦେଖି ଡର ଲାଗିଲା । ଓକିଲ ମହାଶୟ ପ୍ରଥମେ ପୂର୍ବପାଖର ତିନିଟା ରୁମ୍ ଫିଟାଇ କହିଲେ, ''ଜଣେ ଶିଖ ଏହି ପାଖରେ କିଛି ଦିନ ଥିଲେ, ହଠାତ୍ ଜ୍ୱରରେ ମରିଗଲେ । ସପ୍ତାହେ ହେଲା ଘରଟି ଖାଲି ପଡ଼ିଛି ।'' ତାହା ଶୁଣି ମୁଁ ପଶ୍ଚିମ ପାଖରେ ରହିବି ବୋଲି କହିଲି । କିନ୍ତୁ ସେହି ରୁମ୍ ତିନିଟିକୁ ଲାଗି ରହିଥାଏ ଆଉ କେତେଗୁଡ଼ିଏ କୋଠରିର ଧ୍ୱଂସାବଶେଷ । କ୍ଷୁଦ୍ର ପାହାଡ଼ ସଦୃଶ ସ୍ତୂପ ଉପରେ ପୁଣି ନାନା ପ୍ରକାର ଛୋଟ ବଡ଼ ଗଛ ଓ ଗୁଳ୍ମଲତା । ତଥାପି, ସେହି ଅଂଶଟିରେ ରହିବି ବୋଲି ଠିକ୍ କଲି । ମାସିକ ଭଡ଼ା ଟ ୩୦.୦୦ । ସନ୍ଧ୍ୟାବେଳେ ଓକିଲ ମହୋଦୟ ଘରର ଚାବି ଧରାଇଦେଇ ବିଦାୟ ନେଲେ ।

କୋଠାଟିର ଚାରିପାଖ ନିର୍ଜନ ଓ ଅନ୍ଧକାରାଚ୍ଛନ୍ନ । ଘର ପଛପାଖ ପ୍ରାଚୀର ଠାରୁ କିଛି ଦୂରରେ ଥାଏ ଗୋଟିଏ ଛୋଟ ପୋଖରୀ ବା ଗଡ଼ିଆ । ବଣବୁଦା ବେଷ୍ଟିତ ସେହି ଗଡ଼ିଆ ବୋଧହୁଏ ବ୍ୟାସକବିଙ୍କ ପରେ ଆଉ କେହି ବ୍ୟବହାର କରି ନଥିବେ । ଝଙ୍ଜି ଓ ଦଳ ପରିପୂର୍ଣ୍ଣ ଗଡ଼ିଆରେ ପାଣି ଥିଲା, କିନ୍ତୁ ବାହାରକୁ ଦିଶୁ ନଥାଏ । କୋଠାର ଆଗ ପାଖ ରାସ୍ତାର ଅପର ପାର୍ଶ୍ୱରେ ଥିଲା ଦୁଇଟି ଚାଳଘର । ସେଥିରେ ପଡ଼ୋଶୀ ପରିବାର ଥିବେ ଜାଣି ଖୁସି ହେଲି । କିଛି ଦୂରରେ ଥିଲା ବାଲେଶ୍ୱରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭୈରବଚନ୍ଦ୍ର ମହାପାତ୍ରଙ୍କ ବାସଗୃହ । ଆଉ ଟିକିଏ ଦୂରରେ ଥିଲା ଖୋଦ୍ ଅଧ୍ୟକ୍ଷଙ୍କ ସରକାରୀ କ୍ୱାର୍ଟାରସ୍ । ସୁତରାଂ, ଫକୀରମୋହନ କୋଠାରେ ରହିବା ଲାଗି ଅନିଚ୍ଛା ପ୍ରକାଶ ପାଇଁ କାରଣ ନଥାଏ । ଭୟ ଥାଏ କେବଳ ଫାଟି ରହିଥିବା କାନ୍ଥ ଓ ତତ୍‌ସଂଲଗ୍ନ ଧ୍ୱଂସସ୍ତୂପ ପ୍ରତି । ଘର ପାଖରେ ବା ଅଗଣାରେ କୂଅ ନ ଥିଲେ ସୁଦ୍ଧା, ଗଡ଼ିଆ ପାଣି ବ୍ୟବହାର କଲେ କ୍ଷତି ନାହିଁ ବୋଲି ଓକିଲ କହିଯାଇଥିଲେ । ମଲ୍ଲିକାଶପୁର ଅଞ୍ଚଳକୁ ବିଜୁଳି ବତି କିମ୍ବା ପାଇପ୍ ପାଣି ଆସିବାକୁ ସେତେବେଳେ ଅନେକ ବର୍ଷ ବାକି ଥାଏ ।

ପକେଟରେ ଚାବି ରଖି ହଷ୍ଟେଲ ସୁପରିନଟେଣ୍ଡେଣ୍ଟଙ୍କ ଘରକୁ ଚାଲିଗଲି । ରାତି ପ୍ରାୟ ୧୦ଟା ବେଳେ ସେଠାରେ ରାତ୍ରିଭୋଜନ ଶେଷ କରି ହାତରେ ବିଛଣାପତ୍ର ଧରି ଫକୀରମୋହନ କୋଠାକୁ ଫେରିଲି । କଲେଜ ନିକଟରୁ ସ୍ଥାନଟି ବିଶେଷ ଦୂର ନ ହେଲେ ମଧ ସଂକୀର୍ଣ୍ଣ ରାସ୍ତାର ଦୁଇ ପାଖରେ ଥାଏ କଣ୍ଟାବାଡ଼, ଅପର୍ଯ୍ୟାପ୍ତ ଘାସ ଓ ବୁଦା । ସନ୍ଧ୍ୟା ପରେ ଅସରାଏ ବର୍ଷା ହୋଇଯାଇଥାଏ । ସର୍ପଦଂଶନରୁ ରକ୍ଷାପାଇବା ଲାଗି ଲଣ୍ଠନଟି ତେଜରେ ଜଳାଇରଖି କୋଠା ପାଖରେ ପହଞ୍ଚି ଚାରିଦିଗକୁ ଚାହିଁ ଜାଣିପାରିଲି, ମଲ୍ଲିକାଶପୁରରେ ଜନମାନବ ଅଛନ୍ତି କି ନାହିଁ, ତାହା ରାତ୍ରିକାଳରେ ଜାଣିବା ସମ୍ଭବ ନୁହେଁ ।

ସେହି ରାତିଟି କଥା ଭଲଭାବରେ ମନେଅଛି । କବାଟ ଫିଟାଇ ବଡ଼ କୋଠରିଟି ମଧ୍ୟରେ ଚଟାଣ ଉପରେ ଶତରଞ୍ଜି ମେଲାଇ ବିଛଣା ପ୍ରସ୍ତୁତ କଲି । ସେହି କୋଠରିଟି ଥିଲା ବ୍ୟାସକବିଙ୍କର ଶୟନକକ୍ଷ । ଗୋଡ଼ରୁ କାଦୁଅ ଧୋଇବା ଲାଗି ଗଡ଼ିଆ ଘାଟକୁ ଗଲି । ଚାରିଆଡ଼େ ଗଭୀର ଅନ୍ଧକାର । ଏକାକୀ ରହିବାକୁ ଭୟ ଲାଗିଲା । ଗଡ଼ିଆର ପଶ୍ଚିମ କୂଳରେ ଥିବା କୁଡ଼ିଆଟିରେ କିଏ ଜଣେ ଭୟଙ୍କର ଭାବରେ କାଶୁଥିବାର ଶବ୍ଦ ଶୁଣିଲି । ଲଣ୍ଠନଟି ଧରି କଣ୍ଟାବୁଦା ଡେଇଁ ସେଠାରେ ପହଞ୍ଚିଲି । ଜଣେ ଆଦିବାସୀ ବୁଢ଼ା କୁଡ଼ିଆ ଦୁଆରେ ଶୋଇରହି ବିଡ଼ି ଟାଣୁଥାନ୍ତି । ତାଙ୍କୁ କହିଲି, "ଆଜି ଠାରୁ ମୁଁ ଫକୀରମୋହନ କୋଠାରେ ରହିଲି । ରାତିରେ ମୋ ଘରେ ଶୋଇବ ଆସ ।"ବିସ୍ଫାରିତ ନୟନରେ ମୋ ମୁହଁକୁ ଚାହିଁରହି ବୃଦ୍ଧ ପଚାରିଲେ, "କୋଠାରେ ରାତିରେ ତୁମେ ରହିବ ?" ଗୋଟିଏ ଟଙ୍କା ଦେବି ବୋଲି ପ୍ରଲୋଭନ ଦେଖାଇଲି । ପାଶ ମୋଡ଼ିଦେଇ ସେ କହିଦେଲେ, "ମୋତେ ଡର ଲାଗିବ ।"

ଭିତରୁ କବାଟ ବନ୍ଦକରି ଓ ଲଣ୍ଠନଟି ଜାଳିରଖି ମଶାରି ଭିତରେ ପଶିଲି । ରାତିର ନିସ୍ତବ୍ଧତା ମଧ୍ୟରେ ସବୁ ଦିଗରୁ ଭାସିଆସୁଥାଏ ଅବିଚ୍ଛିନ୍ନ ଝିଲ୍ଲିସ୍ୱନ । ଭୌତିକ ପରିବେଶ ସତ୍ତ୍ୱେ ଭୂତ ପ୍ରେତ ନାହିଁ ବୋଲି ନିଜକୁ ନିର୍ଭର ସାହସ ଦେଇ ଆଖି ବୁଜିଲି । ତଥାପି, ପାଖଘରେ ଶିଖ ସର୍ଦ୍ଦାରଙ୍କ ମୃତ୍ୟୁ ଓ ଆଦିବାସୀ ବୃଦ୍ଧଙ୍କର ଭାବଭଙ୍ଗିରୁ କିଛି କିଛି ଭୟ ଆପେ ଆପେ ମନକୁ ଗ୍ରାସ କରିନେଉଥାଏ । ପ୍ରାୟ ମଧ୍ୟରାତ୍ରି ବେଳକୁ ନିଦ ଲାଗିଆସିଲା । ବାହାରେ ହେଉଥାଏ ଝିପି ଝିପି ବର୍ଷା । ହଠାତ୍ କୌଣସିପ୍ରକାର ଅସ୍ୱାଭାବିକ ଶବ୍ଦ ଶୁଣି ନିଦ ଛାଡ଼ିଗଲା । ପାଖରେ ଥିବା ଧ୍ୱଂସାବଶେଷ ଉପରୁ କୌଣସି ଅଶରୀରୀର ଅବତରଣଧ୍ୱନି ପରି ସଂକେତ ମିଳିଲା । ତା ପରେ ଶୁଭିଲା ଖଡ଼ମ ମାଡ଼ି କାହାରି ଚାଲିବା ଶବ୍ଦ ।

ମୋ ଶୋଇବା କୋଠରିକୁ ଲାଗିଥିବା ଅଗଣାର ସିମେଣ୍ଟ ମେଜିଆ ଉପରେ ସେହି ଶବ୍ଦ । ତା'ପରେ ବାରଣ୍ଡା ଉପରେ । ଭୟରେ ଦେହ ଘର୍ମାକ୍ତ ହେଲା । କାନ ଡେରି ଶୁଣିଲି, ବାରଣ୍ଡାକୁ ଲାଗିଥିବା ପାହାଚ ପରେ ପାହଚ ଚଢ଼ି ଖଡ଼ମପରିହିତ ବ୍ୟକ୍ତିଙ୍କ ଛାତଉପରକୁ ଉଠିବା ଶବ୍ଦ । ଚୋର କେବେହେଲେ କଠଉ ମାଡ଼ି ଚୋରି କରିବାକୁ ଆସିବ ନାହିଁ । ତେବେ, ଏ କ'ଣ ସ୍ୱୟଂ ବ୍ୟାସକବିଙ୍କ ପ୍ରେତାତ୍ମା ରାତ୍ରିକାଳରେ ଆସିଛନ୍ତି ନିଜର ପରିତ୍ୟକ୍ତ କୋଠାଟିକୁ ଦେଖିବା ପାଇଁ ! ଭୟଭୀତ ଅବସ୍ଥାରେ ମଶାରି ଭିତରେ ବସିରହି ଶୁଣିବାକୁ ପାଇଲି, ଛାତ ଉପରେ ଏପାଖରୁ ସେ ପାଖ ସେହି ଠକ୍ ଠକ୍ ପାଦଚାରଣ ଧ୍ୱନି ।

ଲଣ୍ଠନ ଧରି ଉପରକୁ ଯିବାଲାଗି ସଂକଳ୍ପ ନେଲି । ଯଦି ବ୍ୟାସକବିଙ୍କୁ ଦେଖିବାକୁ ପାଇବି, ତାହା ହେବ ପରମ ସୌଭାଗ୍ୟ । କବାଟ ଫିଟାଇ ବାହାରକୁ ଆସିଲି । ଅଜ୍ଞାତ ଆଶଙ୍କା ସତ୍ତ୍ୱେ ଧୀରେ ଧୀରେ ପାହାଚ ପଥରେ ଉପରକୁ ଉଠିଲି । ଛାତ ଉପରେ ଦେଖିଲି, ପ୍ରକାଣ୍ଡ ଆକାରର ରାମଛେଳିଟିଏ ଛିଡ଼ା ହୋଇ ଗୁଳ୍ମରାଜି ଚର୍ବଣ କରିବାରେ ଲାଗିଛି । ତା ପାଟି ତଳକୁ ଝୁଲି ରହିଥାଏ ମଧ୍ୟଯୁଗୀୟ କୌଣସି ସୁଲତାନଙ୍କ ସୁଦୃଶ୍ୟ ଶ୍ମଶ୍ରୁ ସଦୃଶ ଦାଢ଼ି । ମୋତେ ଦେଖି ରାମଛେଳିଟି ନିଃସଂକୋଚ ଚିତ୍ତରେ ଛାତ ଦୁଆର ପର୍ଯ୍ୟନ୍ତ ଆସି ପାହାଚ ପଥରେ ତଳକୁ ଚାଲିଲା । ତା ଖୁରାର ଶବ୍ଦ ଥାଏ ଠିକ୍ କଠଉର ଶବ୍ଦ ପରି । ମୋର ଭ୍ରମ ଭାଙ୍ଗିଲା ଓ ସେଥିସହ ଭୟ । ଅବଚେତନ ସ୍ତରରେ ଥିବା ପ୍ରେତାତ୍ମାବିଶ୍ୱାସ ସହିତ ସେ ରାତିରେ ମିଶିଯାଇଥାଏ ଜରାଜୀର୍ଣ୍ଣ କୋଠାର କରୁଣ ନିସ୍ତବ୍ଧତା ଏବଂ ସେଥିମଧ୍ୟରେ ପରଲୋକଗତ ବ୍ୟାସକବିଙ୍କ ଚିନ୍ତା, ଯାହାର ପ୍ରତିକ୍ରିୟା ସ୍ୱରୂପ ମନରେ ସୃଷ୍ଟି ହୋଇଥିଲା ଅବାନ୍ତର ଆଶଙ୍କା ।

କିଛିଦିନ ପରେ ଘରର ପୂର୍ବ ଅଂଶଟିରେ ରହିଲି । ରହିବାସ୍ଥାନର ମହତ୍ତ୍ୱ ମଧ୍ୟ ଅବିଳମ୍ବେ ଉପଲବ୍ଧି କରିପାରିଲି । ଅନେକ ବର୍ଷ ଯାବତ୍ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଥିବା ବ୍ୟାସକବିଙ୍କ କୋଠାରେ ଜଣେ କଲେଜ ଅଧ୍ୟାପକ ରହିଛନ୍ତି ଜାଣି ମଲ୍ଲିକାଶପୁରର ବିଶିଷ୍ଟ ବ୍ୟକ୍ତିମାନେ ମୋର ସୁବିଧା ଅସୁବିଧା ବୁଝିବାକୁ ଆସିଲେ । ପଡ଼ୋଶୀମାନେ ବଣବୁଦା କାଟି ସ୍ଥାନଟିକୁ ପରିଷ୍କାର କଲେ । ମ୍ୟୁନିସିପାଲିଟି ଚେୟାରମ୍ୟାନ ଜ୍ଞାନରଞ୍ଜନ ପଟ୍ଟନାୟକ ଗଡ଼ିଆଟିକୁ ଦଳମୁକ୍ତ କରିଦେଲେ । ସ୍ଥାନୀୟ ମୋକ୍ତାର ଅଚ୍ୟୁତାନନ୍ଦ ଦାସ ମୋର ପରମବନ୍ଧୁ ରୂପେ ଅନେକ ସାହାଯ୍ୟ କଲେ । ସେତେବେଳେ ସେ ଥିଲେ ନବଗଠିତ 'ଫକୀରମୋହନ ସାହିତ୍ୟ ପରିଷଦ'ର ସମ୍ପାଦକ । ତାଙ୍କର ଅନୁଗାମୀ ଥିଲେ ମୋର ଛାତ୍ର ଶ୍ୟାମସୁନ୍ଦର ମହାପାତ୍ର

(ପରବର୍ତ୍ତୀ ସମୟର ଏମ୍.ପି. ଓ ନିଖିଳ ଭାରତ କଂଗ୍ରେସ କମିଟିର ଅନ୍ୟତମ ସାଧାରଣ ସମ୍ପାଦକ) । ସମସ୍ତଙ୍କ ଉଦ୍ୟମରେ 'ଶାନ୍ତି କାନନ'କୁ ନୂତନ ରୂପ ଦିଆଗଲା । ଜଙ୍ଗଲ ପରିବର୍ତ୍ତେ ସ୍ଥାନଟି ସୁନ୍ଦର ଉଦ୍ୟାନରେ ପରିଣତ ହେଲା ।

ବସାଘର ମିଳିଛି ଜାଣି ବାପା ନୌକାରେ ଖଟ, ଚେୟାର, ଟେବୁଲ ଓ ଆସବାବପତ୍ର ପଠାଇଦେଲେ । ଅଳ୍ପଦିନ ପରେ ମୋ ମା, ସାନଭାଇ ମନୋଜ, ସ୍ତ୍ରୀ ଓ ଶିଶୁକନ୍ୟା 'ଝାନସି' ସେଠାରେ ଆସି ରହିଲେ । ମଧ୍ୟେ ମଧ୍ୟେ ଆମ ଘରେ ସାହିତ୍ୟ ପରିଷଦର ଆସର ବସିଲା । ଦିନେ ଶାନ୍ତିକାନନରେ ଅନୁଷ୍ଠିତ ସାହିତ୍ୟିକ ସମାବେଶରେ କବି ସଚ୍ଚି ରାଉତରାୟ ଉଦ୍‌ବୋଧନ ଦେଲେ । ସଭା ଶେଷ ହେଲାପରେ ସେ ଫକୀରମୋହନଙ୍କ ବାସଗୃହ ଦେଖିବାକୁ ଆସିଲେ । କୋଠରି ପରେ କୋଠରି ଦେଖିସାରି ମୋତେ କହିଲେ, "ଯେଉଁ ଘରେ ଅଛନ୍ତି, ସେଠାରେ ସ୍ୱୟଂ ବ୍ୟାସକବି ସାହିତ୍ୟସାଧନା କରୁଥିଲେ । ଆପଣ ଲେଖନୀଚାଳନା କରନ୍ତୁ ।" ଉତ୍ତର ଦେଲି, "କାହିଁ ପାହାଡ଼, ଆଉ କାହିଁ ଉଇହୁଙ୍କା !"

ବାସ୍ତବ ପକ୍ଷେ, ବ୍ୟାସକବିଙ୍କ ଆଶିଷ ପଡ଼ିଥିଲା ମୋ ସାନଭାଇ ମନୋଜ ଉପରେ । ସେ ଫକୀରମୋହନ କୋଠାରେ ରହି ପଢ଼ିବା ଆଶାରେ ଅନ୍ୟ ଗୋଟିଏ ହାଇସ୍କୁଲ ଛାଡ଼ି ବାଲେଶ୍ୱର ଜିଲ୍ଲାସ୍କୁଲରେ ଭର୍ତ୍ତି ହେଲା । ନବମ ଶ୍ରେଣୀରେ ପଢ଼ିବା ସମୟରୁ ତା'ର ଲେଖନୀଚାଳନା ଦେଖି କେହି କେହି ବିସ୍ମିତ ହେଲେ । ସେହି ସମୟରେ ସେ ଲେଖିଥିଲା ତାହାର ପ୍ରଥମ ଦୁଇଟି ପୁସ୍ତିକା "ବିପ୍ଳବୀ ଫକୀରମୋହନ" ଓ "ଶତାବ୍ଦୀର ଆର୍ତ୍ତନାଦ" । ଭବିଷ୍ୟତରେ ମନୋଜର ବିଭିନ୍ନ ଲେଖାରେ ଗୋଟିଏ କଥା ସୂଚିତ ହୋଇଛି ଯେ, ବ୍ୟାସକବିଙ୍କ ବାସସ୍ଥାନର ପ୍ରଭାବ ଓ ପ୍ରେରଣା ତାଙ୍କର ସେହି ଅଳ୍ପ ବୟସରୁ ମାନସିକ ସ୍ତରରେ ପ୍ରତିଫଳିତ ହୋଇଥିଲା । ମନୋଜ ଆଜି ଓଡ଼ିଶାର ଅନ୍ୟତମ ସ୍ୱନାମଧନ୍ୟ ସାହିତ୍ୟିକ ତଥା ଆନ୍ତର୍ଜାତିକ ସ୍ତରରେ ଇଂରାଜୀ ଭାଷାରେ ଜଣେ ସୁପ୍ରତିଷ୍ଠିତ ଲେଖକ । ଜନ୍ମଗତ କଳା ବା ପ୍ରକୃତିପ୍ରଦତ୍ତ ପ୍ରତିଭା ବୋଲି ସତ୍ତା ନିଶ୍ଚୟ ରହିଛି । ସୃଜନଶୀଳ କବି ଓ କଥାକାର ହେବାପାଇଁ ମନୋଜର ପ୍ରତିଭା ସେହି ଫକୀରମୋହନ କୋଠାରେ ଥିବା ସମୟରୁ ଅଙ୍କୁରିତ ହୋଇଥିଲା ।

ଇତିହାସ ଅଧ୍ୟାପକ ଭାବେ ମୋତେ କିଛି ଲେଖିବାକୁ ହେବ ବୋଲି ଭାବି ସେହି କୋଠାରେ ଥିଲାବେଳେ ମୁଁ ଲେଖିଥିଲି "Glimpses of Kalinga History".

ସେଠାରେ ଦୁଇବର୍ଷ ରହିଲାପରେ କଲେଜ ନିକଟବର୍ତ୍ତୀ 'ଉଷା ମେସ୍' ନାମରେ ପରିଚିତ ଥିବା ଗୋଟିଏ ବଡ଼ ଆକାରର ଘରକୁ ଚାଲିଆସିଲି । କାରଣ, ବ୍ୟାସକବିଙ୍କ

ଘରର ଆବଶ୍ୟକୀୟ ମରାମତି ନ ହେବା ଯୋଗୁଁ କୋଠାର ଛାତ ଫାଟିବାକୁ ଲାଗିଲା । ପରବର୍ତ୍ତୀ ସମୟରେ ସେହି ପୁରାତନ ଘରଟିକୁ ସମ୍ପୂର୍ଣ୍ଣଭାବରେ ଭାଙ୍ଗିଦେଇ ଅବିକଳ ସେହି ଢାଞ୍ଚାରେ ନୂତନ ସୌଧଟିଏ ନିର୍ମାଣ କରାଗଲା, ବ୍ୟାସକବିଙ୍କ ସ୍ମୃତି ବହନ ନିମନ୍ତେ । ଅଧୁନା ତାଙ୍କ 'ଶାନ୍ତିକାନନ' ସହରର ଏକ ମୁଖ୍ୟ ସାଂସ୍କୃତିକ ପୀଠ ରୂପେ ବିବେଚିତ ହୁଏ ।

## ଲଙ୍କା ବା ସିଂହଳ ଯାତ୍ରା ୧୯୪୯

ଫକୀରମୋହନ କଲେଜରେ ଯୋଗ ଦେବାର କେତୋଟି ମାସ ପରେ ଜୀବନର ପ୍ରଥମ ବିଦେଶଯାତ୍ରା ଲାଗି ସୁଯୋଗ ପାଇଲି, ଅବଶ୍ୟ ଦୈବାତ୍‌କ୍ରମେ । ୧୯୪୮ ଜୁଲାଇରେ ଚାକିରି ଆରମ୍ଭ କଲାବେଳେ କଲେଜ ଅଧ୍ୟକ୍ଷ ଥାନ୍ତି ଭୈରବନାଥ ରୋହାତଗି । ରେଭେନ୍‌ସାରେ ପଢ଼ିଲାସମୟରେ ସେ ମୋର ଅର୍ଥନୀତି ଅଧ୍ୟାପକ ଥିଲେ । ତେଣୁ ମୋ ପ୍ରତି ତାଙ୍କର ବ୍ୟକ୍ତିଗତ ଶ୍ରଦ୍ଧା ରହିଥାଏ । ଥରେ 'ପ୍ରଧାନମନ୍ତ୍ରୀ' ହରେକୃଷ୍ଣ ମହତାବ କଲେଜକୁ ଆସିଥିଲେ । ତାଙ୍କର 'ଓଡ଼ିଶା ଇତିହାସ' ଗ୍ରନ୍ଥଟି ସଦ୍ୟ ପ୍ରକାଶିତ ହୋଇଥାଏ । ସ୍ୱତନ୍ତ୍ରଭାବେ ମୋତେ ଡାକି ସେହି ବହି ବିଷୟରେ କିଛି ସମୟ ଆଲୋଚନା କଲେ । ମହତାବଙ୍କ ବିଦାୟ ପରେ ବିଚକ୍ଷଣ ରୋହାତଗି ମହୋଦୟ ମୋତେ ଉପଦେଶ ଦେଇଥିଲେ, ''ରାଜନୈତିକ ବ୍ୟକ୍ତିମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିବା ଭଲ ନୁହେଁ ।''

ଅଳ୍ପ କେତେକ ସପ୍ତାହ ପରେ ତାଙ୍କର ବଦଳି ହେଲା ଓ ନୂଆ ଅଧ୍ୟକ୍ଷ ଭାବରେ ଆସିଲେ ଅଧ୍ୟାପକ ଘନଶ୍ୟାମ ଦାଶ । ରେଭେନ୍ସା କଲେଜରେ ସେ ମୋର ଇତିହାସ ଅଧ୍ୟାପକ ଥିଲେ । ତାଙ୍କ ଆସିବାଦିନ ଦଳେ ଛାତ୍ରଙ୍କୁ ସାଙ୍ଗରେ ନେଇ ଷ୍ଟେସନରୁ ତାଙ୍କୁ ଆଣିବାକୁ ଗଲି । ମଲ୍ଲିକାଶପୁର ଠାରେ ଥିବା ଅଧ୍ୟକ୍ଷଙ୍କ ବାସଭବନରେ ଛାଡ଼ିଲାବେଳେ ସେ ଜଣାଇଲେ, ''ତୁମେ ମୋ ପୁଅ । ସେଥିପାଇଁ ତୁମ ଘରେ ଖିଆପିଆ କରିବି ଠିକ୍ କରି ସାଙ୍ଗରେ ପରିବାର ନ ଆଣି ଏକାକୀ ଆସିଛି ।''ମୋ ବସାଘର ଅଳ୍ପ ଦୂରେ ଥିବାଯୋଗୁଁ ଦିନରେ ଓ ରାତିରେ ଭୋଜନ ପାଇଁ ଉପସ୍ଥିତ ହେବେ ବୋଲି ସିଦ୍ଧାନ୍ତଟି ଲଦିଦେଇ ତିନି ମାସ ପରେ ପରିବାର ଆଣିବେ ବୋଲି ସୂଚନା ଦେଲେ । ପ୍ରକୃତ ପକ୍ଷେ, ସେହି ତିନିମାସ ଥିଲା ମୋ ସ୍ତ୍ରୀଙ୍କ ପ୍ରତି ଗୋଟିଏ ଦୁର୍ବହ ସମୟ । ଅଧ୍ୟକ୍ଷଙ୍କ ପାଇଁ ଉତ୍ତମ ଜଳଖିଆ ଓ ଖାଦ୍ୟ ପ୍ରସ୍ତୁତ କରିବାକୁ ତାଙ୍କୁ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଲା । ଦିନେ ଦିନେ ଘନଶ୍ୟାମବାବୁ ତାଙ୍କର ବିଶିଷ୍ଟ ଅତିଥିମାନଙ୍କୁ ଆମ ଘରେ ଖାଇବା ଲାଗି ନିମନ୍ତ୍ରଣ କରି ଆଣୁଥିଲେ । ତାହା ପୁଣି ଦିନ ବା ରାତିର ବିଳମ୍ବିତ

ପ୍ରହରରେ । ଗୁରୁସେବା କର୍ତ୍ତବ୍ୟ ବୋଲି ଜାଣି, ତାଙ୍କର ପରିଚର୍ଯ୍ୟା କରିବା ବ୍ୟତୀତ ଅନ୍ୟ ଉପାୟ ନଥାଏ ।

ଘନଶ୍ୟାମ ବାବୁ ମନମର୍ଜି ବା ଖାମ୍‌ଖିଆଲ ଅନୁସାରେ କାର୍ଯ୍ୟ କରୁଥିଲେ । ସ୍ୱାଧୀନତା ପରେ କଲେଜ ଛାତ୍ରମାନଙ୍କ ପାଇଁ ବର୍ଷକୁ ଥରେ ଶିକ୍ଷାମୂଳକ ଭ୍ରମଣରେ ଯିବା ଲାଗି ବ୍ୟବସ୍ଥା ହୋଇଥାଏ । କୋଡ଼ିଏଜଣ ଛାତ୍ରଙ୍କୁ ମନୋନୀତ କରି ସେ ନିଜେ ଦକ୍ଷିଣଭାରତ ଭ୍ରମଣରେ ଯିବେ ବୋଲି ଠିକ୍ କଲେ । ସେଥିପାଇଁ ଡି.ପି.ଆଇ.ଙ୍କ ଅନୁମତି ନେବା ଲାଗି ସେ ଦୁଇଦିନ ଆଗରୁ କଟକ ଚାଲିଗଲେ । ମୋତେ ଆଦେଶ ଦେଇଗଲେ, ଓ୍ୱାଲଟେୟାର ପର୍ଯ୍ୟନ୍ତ ସମସ୍ତଙ୍କର ଟିକଟ କାଟି ବାଲେଶ୍ୱର ଷ୍ଟେସନରୁ କଟକ ପର୍ଯ୍ୟନ୍ତ ନେଇଯିବା ପାଇଁ । ସେଠାରୁ ମୁଁ ଫେରିଆସିବି ଓ ଅଧ୍ୟକ୍ଷ ନିଜେ ପରିଚାଳକ ଭାବରେ ଗାଡ଼ିକୁ ଉଠିବେ । ଛାତ୍ରଦଳରେ ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କୁ ମଧ୍ୟ ଅନ୍ତର୍ଗତ କରାଯିବ ବୋଲି କହିଗଲେ । କାରଣ, ସେ ଦକ୍ଷିଣଭାରତ ପର୍ଯ୍ୟଟନର କାହାଣୀ ଲେଖିବେ ।

୧୯୪୯ ମସିହା ଫେବ୍ରୁଆରୀ ୧୭ ତାରିଖ । ସନ୍ଧ୍ୟାବେଳେ କୋଡ଼ିଏଜଣ ଛାତ୍ର ଓ କୁଞ୍ଜବିହାରୀ ଦାଶଙ୍କୁ ମାନ୍ଦ୍ରାଜ ମେଲରେ ବସାଇ କଟକ ଷ୍ଟେସନରେ ପହଞ୍ଚିଲି । ଶୀତରାତିର ନିର୍ଜନ ପ୍ଲାଟଫର୍ମରେ ଅଧ୍ୟକ୍ଷ ମହୋଦୟଙ୍କ ପରିବର୍ତ୍ତେ ଦେଖିଲି ତାଙ୍କର ଚପରାସୀଙ୍କୁ । ସେ ଆଦେଶନାମାଟି ଧରାଇଦେଲେ । ଲେଖାଥିଲା, ‘‘ଯେହେତୁ ମୁଁ କଲେଜ ଅଧ୍ୟକ୍ଷ, ଏକ୍ସକାର୍ସନରେ ଯିବା ଲାଗି ମୋତେ ଅନୁମତି ମିଳିଲା ନାହିଁ । ସୁତରାଂ, ପାର୍ଟିର ଲିଡର ଭାବେ ତୁମକୁ ଯିବା ଲାଗି ଆଦେଶ ଦିଆଗଲା ।’’ ଚିଠାଟି ପଢ଼ିସାରିଲା ବେଳକୁ ଟ୍ରେନ୍ ଛାଡ଼ିବା ସମୟ ଆସିଗଲା । ପିନ୍ଧିଥିବା ପେଣ୍ଟ୍, ସାର୍ଟ୍ ଓ କୋଟଟି ଛଡ଼ା ସାଙ୍ଗରେ ଅନ୍ୟ କିଛି ପୋଷାକ ବା ବିଛଣାପତ୍ର ନଥିଲା । ତ୍ରସ୍ତ ବ୍ୟସ୍ତ ହୋଇ କୁଞ୍ଜବିହାରୀବାବୁଙ୍କୁ ପାର୍ଟିର ଦଳପତି ଭାବରେ ଯିବାଲାଗି ଅନୁରୋଧ କଲି । ସହାସ୍ୟ ବଦନରେ ସେ ଉତ୍ତର ଦେଲେ, ‘‘ମୁଁ ଜଣେ କବି । ଦକ୍ଷିଣଭାରତର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଯାଉଛି । ଛାତ୍ରମାନଙ୍କୁ ସମ୍ଭାଳିବା ମୋ ପକ୍ଷରେ ସମ୍ଭବ ନୁହେଁ । ଆପଣ ଆଗ ଷ୍ଟେସନରେ ନୂଆ ପେଣ୍ଟ ସାର୍ଟ କିଣିନେବେ । ଅଧ୍ୟକ୍ଷଙ୍କ ଆଦେଶ ମାନି ଆପଣଙ୍କୁ ଯିବାକୁ ହେବ ।’’ ଗିରୀଶଚନ୍ଦ୍ର ପାତ୍ର ଓ ବଳଭଦ୍ର ପାତ୍ର ନାମକ ଦୁଇଜଣ ଛାତ୍ର ଅନୁନୟ ଜଣାଇଲେ, ‘‘ସାର୍, ବିଛଣା କଥା ଚିନ୍ତା କରନ୍ତୁ ନାହିଁ, ଆମେମାନେ ଦେଇଦେବୁଁ ।’’ଟ୍ରେନ ଛାଡ଼ିଲା । ପକେଟରେ ନିଜସ୍ୱ ପଚାଶ ଟଙ୍କା ଥିବା ଦେଖି କିଞ୍ଚିତ୍ ଆଶ୍ୱସ୍ତ ହେଲି ।

ଯେକୌଣସି ଭ୍ରମଣକାଳରେ ଯଥେଷ୍ଟ ଆନନ୍ଦ ଥାଏ, କିନ୍ତୁ ସେଥିସଙ୍ଗେ ଅନେକ କିଛି କଷ୍ଟ । ଅଧ୍ୟକ୍ଷ ନ ଆସିବା ଯୋଗୁଁ ଛାତ୍ରମାନଙ୍କ ମଧ୍ୟରେ ଆନନ୍ଦଲହରୀ ଖେଳିଗଲା । କୁଞ୍ଜବାବୁ ମଧ୍ୟ ନିଜକୁ ମୁକ୍ତ ବିହଙ୍ଗମ ବୋଲି ବୋଧକଲେ । ସେ ଥିଲେ ଅତ୍ୟନ୍ତ ସରଳ ଓ ଅମାୟିକ ବ୍ୟକ୍ତି । ତାଙ୍କ ମତିଗତି ଦେଖି ଅନୁମାନ କରିପାରିଲି, କୋଡ଼ିଏଜଣ ପିଲାଙ୍କ ବୋଝ ଯାହା, ବିଶାଳବପୁଧାରୀ ଏକା କୁଞ୍ଜବିହାରୀବାବୁଙ୍କ ବୋଝ ତା ଠାରୁ ଅନେକ ବେଶି । ଗାଡ଼ି ଛାଡ଼ିଲାକ୍ଷଣି ତୃତୀୟଶ୍ରେଣୀ ବଗିର ପାଇଖାନା ଦ୍ୱାର ପାଖରେ ଶତରଞ୍ଜି ମେଲାଇ ଓ କମ୍ବଳ ଘୋଡ଼ିହୋଇ ଆରାମରେ ଶୋଇଗଲେ । ଅନ୍ୟମାନେ ବସିଲେ ବା ଶୋଇଲେ, ସେଥିପ୍ରତି ତାଙ୍କର ଧ୍ୟାନ ନଥାଏ । ଅଧ୍ୟକ୍ଷଙ୍କ ଚପରାସୀ ମୋ ହାତରେ ଧରାଇଦେଇଥିବା ସମସ୍ତଙ୍କ ରେଳଭଡ଼ା ଓ ଖାଇବାଖର୍ଚ୍ଚର ଟଙ୍କା ଥଳିଟି ପାଖରେ ରଖି ସାରାରାତି ଚେଇଁରହିଲି । ପିଲାମାନେ ନିଜ ନିଜ ପାଇଁ ତଳେ ଓ ଉପରେ ଜାଗା ଦଖଲ କରି ଶୋଇପଡ଼ିଲେ । ସେମାନଙ୍କ ଜିନିଷ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ପଡ଼ିଲା । ଅବଶ୍ୟ, ସେ ସମୟରେ ଆଜିକାଲିକା ପରି ରେଳଗାଡ଼ିରେ ଜିନିଷପତ୍ର ବିଶେଷ ଚୋରି ହେଉ ନଥାଏ । ସେତେ ବେଳେ ଟ୍ରେନ୍‌ରେ ରିଜାର୍‌ଭେସନ ବ୍ୟବସ୍ଥା ନଥିଲା । ପ୍ରତ୍ୟେକ ସ୍ଥାନରୁ ଅନ୍ୟ ସ୍ଥାନକୁ ଟିକଟ କିଣିବାକୁ ହେଉଥାଏ ।

ତହିଁ ପରଦିନ ୱାଲଟେୟାର ଷ୍ଟେସନରେ ପିଲାମାନଙ୍କୁ ରଖି ହୋଟେଲ ଖୋଜିବାକୁ ବାହାରିଗଲି । ଟଙ୍କା ବ୍ୟାଗ ହାତରେ ଥିବାରୁ ଦୁଇଜଣ ଛାତ୍ର ବଡିଗାର୍ଡ ଭାବରେ ଚାଲିଲେ । କୁଞ୍ଜବାବୁ ସହର ଦେଖିବା ଲୋଭ ସମ୍ଭାଳିପାରିଲେ ନାହିଁ । ବାଟରେ ଜଣେ ତେଲେଗୁ ଭଦ୍ରଲୋକଙ୍କ ସହିତ ବନ୍ଧୁତା ସ୍ଥାପନ କରି ମଧୁର ବାକ୍ୟବିନିମୟ ବଳରେ ରହିବା ସ୍ଥାନଟି ଯୋଗାଡ଼ କରିନେଲେ । ଭଦ୍ରବ୍ୟକ୍ତିଙ୍କ ନାମ ଥାଏ ମାଛି ରାଜୁ ସୁବ୍‌ବାରାଓ । ସେ ଜଣେ ଚଳଚିତ୍ର ନିର୍ମାତା । ତାଙ୍କ ପ୍ରତିଷ୍ଠିତ ହାଇସ୍କୁଲର ଉପର ତାଲାରେ ବଡ଼ ହଲଟିଏ ଆମକୁ ରହିବାକୁ ଦେଲେ । ସୁବିଧା ଅସୁବିଧା ବୁଝିବା ସହ ଦର୍ଶନୀୟ ସ୍ଥାନଗୁଡ଼ିକୁ ଯିବା ଲାଗି ଘୋଡ଼ାଗାଡ଼ି ବନ୍ଦୋବସ୍ତ କରିଦେଲେ । ସ୍ୱାଧୀନତାର ଅବ୍ୟବହିତ ପରେ ଭାରତର ବିଭିନ୍ନ ଅଞ୍ଚଳର ଲୋକଙ୍କ ମଧ୍ୟରେ ଥିବା ସଦ୍‌ଭାବର ତାହା ଥିଲା ଗୋଟିଏ ନମୁନା । ଓଡ଼ିଶାର ଛାତ୍ରମାନଙ୍କ ପ୍ରତି ଜଣେ ତେଲେଗୁ ଭଦ୍ରବ୍ୟକ୍ତିଙ୍କର ଅକୁଣ୍ଠ ସାହାଯ୍ୟ ଆମକୁ ବିମୋହିତ କରିଥିଲା ।

ସେଠାରେ ଦୁଇଦିନ ରହଣିକାଳରେ ଛାତ୍ରମାନଙ୍କର ବିଭିନ୍ନ ମତିଗତି ଦେଖିପାରିଲି । କେହି କେହି ନୂଆ ନୂଆ ଜାଗା ଦେଖିବା ଅପେକ୍ଷା ନୂଆ ନୂଆ ଖାଦ୍ୟ ଖାଇବା ଲାଗି ବ୍ୟଗ୍ର ତ ଆଉ କେହି କେହି ବୁଲିବା ଅପେକ୍ଷା ଶୋଇବା ପାଇଁ କିମ୍ବା ସିନେମା ଦେଖିବା ପାଇଁ ବ୍ୟସ୍ତ । ସେମାନଙ୍କୁ ଧମକ ଚମକ ଦେଇ ଶୃଙ୍ଖଳିତ

କଲାବେଳକୁ ତେଣେ ଥାଆନ୍ତି କବି ଓ ଭାବୁକ କୁଞ୍ଜବାବୁ । ବୟସରେ ବଡ଼ ଓ ଚାକିରିରେ ସିନିଅର, ପୁଣି ହିତୈଷୀ ବନ୍ଧୁ । ତାଙ୍କ ପରି ଲୋକଙ୍କୁ ସମୟାନୁବର୍ତ୍ତିତା ଶିକ୍ଷା ଦେବାର ଧୃଷ୍ଟତା ମୋର ନଥାଏ । ସକାଳେ ଉଠି ଦେଖିଲାବେଳକୁ ଦଳେ ଛାତ୍ରଙ୍କୁ ନେଇ ସମୁଦ୍ରକୂଳରେ ସୂର୍ଯ୍ୟୋଦୟ ଦେଖିବାକୁ ଚାଲିଗଲେଣି, ଅଥଚ ପାଞ୍ଚଖଣ୍ଡି ଘୋଡ଼ାଗାଡ଼ି ଠିକ୍ କରି ସୁବ୍ବାରାଓ ମହୋଦୟ ସାତ ମାଇଲ ଦୂରବର୍ତ୍ତୀ ସୀମାଚଳମ୍ ପାହାଡ଼ ଓ ମନ୍ଦିରକୁ ନେଇଯିବା ଲାଗି ପ୍ରସ୍ତୁତ । କବିମାନେ ଘଡ଼ି କଣ୍ଟା ଭୁଲିଯାଇ ସମୁଦ୍ର ଓ ସୂର୍ଯ୍ୟଙ୍କୁ ଦେଖନ୍ତି ବୋଲି ମୋତେ ହସି ହସି କହିଦେଲେ ।

ୱାଲଟେୟାର ଠାରୁ ମାନ୍ଦ୍ରାଜ ଆସି ସେଠାରେ ତିନିଦିନ ଡେରା ପକାଇଲୁଁ । ସହରର ଭିନ୍ନ ଭିନ୍ନ ସ୍ଥାନ ଦେଖିସାରି ଦିନେ ସନ୍ଧ୍ୟାବେଳେ ସମୁଦ୍ରକୂଳରେ ବସିଥିବା ଅବସ୍ଥାରେ ଜଣେ ତାମିଲ ଯୁବକଙ୍କ ସହିତ କଥାବାର୍ତ୍ତା ହେଲା । ସେ ପଚାରିଲେ, "ଆପଣମାନଙ୍କ ଦକ୍ଷିଣ ଭାରତ ଯାତ୍ରା ଶେଷ ହେବ କେଉଁଠି ?" ମୁଁ କହିଲି, "ସେତୁବନ୍ଧ ରାମେଶ୍ୱର ।" ସେ ପଚାରିଲେ, "ଯଦି ରାମେଶ୍ୱର ପର୍ଯ୍ୟନ୍ତ ଯିବେ, ସେଠାରୁ ସିଂହଳ ଯିବେ ନାହିଁ କାହିଁକି ?" ତାଙ୍କ ପ୍ରଶ୍ନ ଶୁଣି ମୁଁ ବିସ୍ମୟ ପ୍ରକାଶ କଲି । ଭାରତ ବାହାରେ ଥିବା ଦରିଆପାରି ଗୋଟିଏ ଦେଶକୁ ଯିବା ଲାଗି ଅନୁମତି ଦେବ କିଏ ? ପାଶ୍‌ପୋର୍ଟ୍ ମିଳିବ କିପରି ? ତଥାପି କହିଲି, "ଆପଣଙ୍କ ପ୍ରସ୍ତାବ ଅତି ଉତ୍ତମ, କିନ୍ତୁ ତାହାକୁ କାର୍ଯ୍ୟକାରୀ କରିବା ସମ୍ଭବ ନୁହେଁ ।"

ଉଚ୍ଚଶିକ୍ଷିତ ଯୁବକ ତାଙ୍କର ପରିଚୟ ଦେଲେ । ୧୯୪୭ ରେ ଭାରତର ସ୍ୱାଧୀନତା ଲାଭ ପରେ, ୧୯୪୮ ମସିହା ଫେବ୍ରୁଆରୀ ମାସରେ ବ୍ରିଟିଶ ସରକାର ସିଂହଳ ଦେଶକୁ ସ୍ୱାଧୀନତା ପ୍ରଦାନ କଲେ । ଉଭୟ ଭାରତ ଓ ସିଂହଳ ବ୍ରିଟିଶ କମନ୍‌ଓ୍ୱେଲଥ୍‌ର ସଦସ୍ୟ ରାଷ୍ଟ୍ରରୂପେ ରହିଲେ । ମାନ୍ଦ୍ରାଜ ଠାରେ ଅବସ୍ଥିତ ସିଂହଳୀୟ ଦୂତାବାସରେ କାମ କରନ୍ତି ବୋଲି ଜଣାଇ ସେ କହିଲେ, "ଆପଣମାନେ ସହଜରେ ସିଂହଳ ଯାଇପାରିବେ । ପାଶ୍‌ପୋର୍ଟ୍ ଦରକାର ନାହିଁ ।"

ତାଙ୍କ ପରାମର୍ଶ ଅନୁଯାୟୀ ତହିଁ ପରଦିନ ସିଂହଳ ଦୂତାବାସରେ ସମସ୍ତଙ୍କର ନାମ, ବୟସ ଓ ସ୍ୱଳ୍ପକାଳ ଭ୍ରମଣ ଉଦ୍ଦେଶ୍ୟ ଇତ୍ୟାଦି ଲେଖାଇ ସିଂହଳ ଯିବାକୁ ପ୍ରସ୍ତୁତ ହେଲୁଁ ।

କିନ୍ତୁ ଗଲାବେଳେ ଯଥାସ୍ଥାନରେ ହଇଜା ଇଞ୍ଜେକ୍‌ସନ୍ ନେବାକୁ ହେବ ବୋଲି କୁହାଗଲା । ଦରଖାସ୍ତ ଦାଖଲ କଲି । ସିଂହଳ ଯାତ୍ରା ପାଇଁ ଅନୁମତି ମିଳିଗଲା । ଟଙ୍କା ଅଣ୍ଟିବ କି ନାହିଁ, ସେ କଥା ଭାବିଲି ନାହିଁ । ବେପରୁଆ ଭାବରେ

କାମ କରିବା ପାଇଁ ସାହସ ବାନ୍ଧିଲି । ସିଂହଳରେ ପହଞ୍ଚି ସେଠାରେ ଥିବା ଭାରତୀୟ ହାଇକମିସନରଙ୍କ ଅଫିସରେ ସିଧାସଳଖ ପହଞ୍ଚିବି ବୋଲି ଠିକ୍ କଲି । ସେ ନିଶ୍ଚୟ ଛାତ୍ରମାନଙ୍କ ରହିବା ବ୍ୟବସ୍ଥା କରିଦେବେ ବୋଲି ବିଶ୍ୱାସ ହେଲା ।

ମାନ୍ଦ୍ରାଜ ଠାରୁ ମଦୁରାଇ ଯାଇ ସେଠାରେ ମୀନାକ୍ଷୀ ମନ୍ଦିର ଦେଖିଲୁଁ । ତା'ପରେ ଟ୍ରେନ୍ ଧରିଲୁଁ ମଦୁରାଇ ଠାରୁ ରାମେଶ୍ୱରମ୍ । ସେଠାରେ ପହଞ୍ଚିବା ପୂର୍ବରୁ ଆରମ୍ଭ ହୋଇଯାଇଥାଏ ରାମାୟଣବର୍ଣ୍ଣିତ ସେତୁବନ୍ଧ, ପାମ୍ବନ ନାମକ ପୟଃପ୍ରଣାଳୀ ମଧ୍ୟରେ ମାଡ଼ି ରହିଥାଏ ମାଟି ଓ ପଥର ଉପରେ ସଂକୀର୍ଣ୍ଣ ରେଳପଥ । କେଉଁ ଅଜ୍ଞାତ ଅତୀତରେ ମହାକବି ବାଲ୍ମୀକି ବୋଧହୁଏ ସେହି ସ୍ଥାନ ଦର୍ଶନ କଲାପରେ ସେତୁବନ୍ଧର କଳ୍ପନା କରିଥିଲେ । ଖଣ୍ଡିକ ପରେ ଖଣ୍ଡିଏ ସୁବୃହତ୍ ପ୍ରସ୍ତରଖଣ୍ଡ ଏପରି ଭାବରେ ପାଖକୁ ପାଖ ଲାଗିରହିଥାଏ, ଯାହା ଦେଖିଲେ ଜଣାଯାଏ, ସତେଯେପରି ପ୍ରକୃତି ହିଁ ସେହିପରି ସଂକୀର୍ଣ୍ଣ ସୁଦୀର୍ଘ ସେତୁ ସ୍ୱରୂପ ପଥଟି ସମୁଦ୍ରଗର୍ଭରେ ଗଠନ କରିଛି । ଯେ ହେତୁ, ସେପରି ପଥ ନିର୍ମାଣ କରିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ, ସେଥିପାଇଁ ବାଲ୍ମୀକି ତାହାକୁ ସ୍ୱୟଂ ରାମଚନ୍ଦ୍ରଙ୍କ ବାନରବାହିନୀ ଦ୍ୱାରା ସୃଜିତ ସେତୁବନ୍ଧ ବୋଲି ବର୍ଣ୍ଣନା କରିଥିଲେ ।

ପାମ୍ବନ ପ୍ରଣାଳୀ ପରେ ରହିଛି ପାମ୍ବନ ଦ୍ୱୀପ । ତାପରେ ପଡ଼ିଲା ରାମେଶ୍ୱରମ୍ । ସେଠାରୁ ପୁଣି ଆରମ୍ଭ ହେଲା ସେହି ସଂକୀର୍ଣ୍ଣ ସେତୁ ସଦୃଶ ମାଟି ଓ ପଥରର ପଥ । ସେତୁ ଶେଷ ହେଲା ଧନୁଷ୍କୋଟି ନାମକ ସ୍ଥାନରେ । ୩୦ ମାଇଲ ବା ୪୮ କିଲୋମିଟରବ୍ୟାପୀ ସୁଦୀର୍ଘ ସେତୁବନ୍ଧ ହେଉଛି ପୃଥିବୀର ଅନ୍ୟତମ ଚିତ୍ତାକର୍ଷକ, ରମଣୀୟ ଓ ଦ୍ରଷ୍ଟବ୍ୟ ପଥ ।

ସେହିଠାରୁ ଆରମ୍ଭ ହେଲା ଆମମାନଙ୍କ ଜଳଯାତ୍ରା । ଅଗଭୀର ପାକ୍ ପ୍ରଣାଳୀ ପୃଥକ କରିଛି ଭାରତଭୂମିରୁ ସିଂହଳ ଦ୍ୱୀପକୁ । ଦୁଇ ଦେଶ ମଧ୍ୟରେ ବ୍ୟବଧାନ ମାତ୍ର ୨୨ ମାଇଲ । ଜାହାଜ ଚାଲିଲାବେଳେ ଦେଖାଯାଉଥାଏ ଗୋଟିଏ ଦିଗରେ ବଙ୍ଗୋପସାଗର ଓ ଅନ୍ୟ ପାଖରେ ମାନ୍ନାର ଉପସାଗର । ଉଭୟ ଉପସାଗର ହେଉଛି ଭାରତ ମହାସାଗରର ଅଂଶବିଶେଷ । ଅଳ୍ପ ସମୟ ପାଇଁ ହେଲେ ମଧ୍ୟ ବିଦେଶକୁ ଯିବାଲାଗି ସେହି ପ୍ରଥମ ଜଳଯାତ୍ରା ମନ ମଧ୍ୟରେ ଶିହରଣ ସୃଷ୍ଟି କରୁଥାଏ । ଦୂରରୁ ସିଂହଳ ଦ୍ୱୀପର ଦୃଶ୍ୟ ଦୃଷ୍ଟିଗୋଚର ହେଉଥାଏ । ପ୍ରାୟ ଏକଘଣ୍ଟା ପରେ ଛୋଟ ଜାହାଜଟି ସିଂହଳ ଦ୍ୱୀପର ପାର୍ଶ୍ୱବର୍ତ୍ତୀ ମାନ୍ନାର ନାମକ ଦ୍ୱୀପର ତାଲାଇମାନ୍ନାର ଠାରେ ଲାଗିଲା ।

## ଲଙ୍କା ଦର୍ଶନ

ସିଂହଳ ଦେଶ, ଆଜି ତାହାର ନାମ ଶ୍ରୀଲଙ୍କା । ମହାକାବ୍ୟ ରାମାୟଣ ଓ ଭାରତୀୟ ପୁରାଣରେ ଏହି ସ୍ଥାନ ଲଙ୍କା ନାମରେ ବିଦିତ । ସଂସ୍କୃତ ଶବ୍ଦ 'ସିଂହଳ ଦ୍ୱୀପ'ର ଅପଭ୍ରଂଶ ରୂପେ ଇଂରେଜମାନେ ତାହାର ନାମ ରଖିଥିଲେ ସିଲୋନ (Ceylon) । ସ୍ୱର୍ଣ୍ଣଲଙ୍କାର ଦାନବରାଜ ଦଶାନନ ବା ରାବଣଙ୍କ ନାମ ଭାରତର ଆବାଳବୃଦ୍ଧବନିତାଙ୍କୁ ଜଣାଅଛି । ସିଂହଳ ଦ୍ୱୀପରେ ଅବତରଣ କଲାପରେ ଜଣାଗଲା, ବାସ୍ତବିକ ସେହି ଦେଶ ହେଉଛି ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଅତ୍ୟନ୍ତ ମନୋମୁଗ୍ଧକର ।

ଦଳବଳ ସହ ସେଠାରେ ପହଞ୍ଚିଲି ସତ୍ୟ । କିନ୍ତୁ ଦଳପତି ଭାବରେ ପ୍ରଥମ ଚିନ୍ତା ହେଲା, କେଉଁଠାକୁ ଯିବି, କେଉଁଠାରେ ରହିବି । ଟ୍ରେନ୍ ଯୋଗେ ରାଜଧାନୀ କଲେମ୍ବୋରେ ପହଞ୍ଚିବା ଛଡ଼ା ଅନ୍ୟ ଉପାୟ ନଥିଲା । ତାଲାଇମାନ୍ନାର ଷ୍ଟେସନରେ ପିଲାମାନେ ଅମୃତଭଣ୍ଡା ଦେଖି ଲୋଭ ସମ୍ଭାଳିପାରିଲେ ନାହିଁ । ସେଗୁଡ଼ିକର ଆକାର ଅସ୍ୱାଭାବିକ ରୂପେ ବଡ଼ ଥାଏ । ଯେତେ ଇଚ୍ଛା ସମସ୍ତେ ଫଳଗୁଡ଼ିକ ଖାଇଲେ ଓ ପଇଡ଼ପାଣି ପିଇଲେ । ପ୍ଲାଟ୍‌ଫର୍ମ ପାଖରେ ଥିବା ଅମୃତଭଣ୍ଡା ଗଛ ଦେଖି ଚକିତ ହେବାକୁ ହେଲା । ଗଛର ମୂଳ ପାଖରୁ ଫଳଗୁଡ଼ିକ ଝୁଲି ରହିଥାଏ । ଆମ ଦେଶର ଜଳବାୟୁରେ ସେ ଫଳ ଫଳିଥାଏ ଗଛର ଉପରିଭାଗରେ, କିନ୍ତୁ ସେ ଦେଶରେ ଆମୂଳଚୂଳ ।

ସିଂହଳ ଗୋଟିଏ କ୍ଷୁଦ୍ର ଦେଶ । ଉତ୍ତରରୁ ଦକ୍ଷିଣସୀମା ମଧ୍ୟରେ ବ୍ୟବଧାନ ହେଉଛି ମାତ୍ର ୨୭୨ ମାଇଲ ବା ୪୩୫ କିଲୋମିଟର । ପୂର୍ବରୁ ପଶ୍ଚିମସୀମା ମଧ୍ୟରେ ସର୍ବାଧିକ ଦୂରତ୍ୱ ମାତ୍ର ୧୪୦ ମାଇଲ । ତେଣୁ ରେଳଗାଡ଼ିରେ କଲମ୍ବୋ ସହରରେ ପହଞ୍ଚିବାକୁ ଅଳ୍ପ କେତୋଟି ଘଣ୍ଟା ଲାଗିଲା । ପଶ୍ଚିମ ସାଗରତୀରରେ ଶୋଭାମୟୀ ରାଜଧାନୀ କଲମ୍ବୋ । ବିଛଣାପତ୍ର ଧରି ଷ୍ଟେସନରୁ ସିଧା ଚାଲିଲୁଁ ଭାରତୀୟ ଦୂତବାସ ଦିଗକୁ । ଆଶଙ୍କା ଥାଏ, ପୂର୍ବରୁ ଆନୁଷ୍ଠାନିକ ଭାବେ ଆସିବା ସମ୍ବାଦ ନ ଦେଇ ଅକସ୍ମାତ ପହଞ୍ଚିବା ଦ୍ୱାରା ସେଠାରେ ଆମକୁ ସ୍ୱାଗତ ଅଥବା ଭର୍ତ୍ସନା କରାଯିବ । ସମୁଦ୍ରକୂଳରେ ଛିଡ଼ା ହୋଇଥାଏ ପ୍ରକାଣ୍ଡ ଅଟ୍ଟାଳିକା । ସମୟ ସେତେବେଳକୁ ପ୍ରାୟ ଅପରାହ୍ନ ୪ଟା । ଭାରତୀୟ ହାଇକମିଶନର ଥାନ୍ତି ଭି.ଭି.ଗିରି (ଭବିଷ୍ୟତରେ ସେ ହୋଇଥିଲେ ଭାରତର ରାଷ୍ଟ୍ରପତି) । ଅଫିସ ଦ୍ୱାରଦେଶରେ ଜିନିଷପତ୍ର ଥୋଇ ମୁଁ ଭିତରକୁ ପଶିଲି । ହାଇକମିଶନରଙ୍କ ସେକ୍ରେଟାରୀଙ୍କ ନିକଟରେ ହାଜର ହୋଇ ଜଣାଇଲି ଯେ, ଓଡ଼ିଶାର କୋଡ଼ିଏ ଜଣ ଛାତ୍ର ଓ ଦୁଇଜଣ ଅଧ୍ୟାପକ ସିଂହଳ ଭ୍ରମଣରେ ଆସିଛୁଁ, ଆପଣ ଦୟାପୂର୍ବକ

ରହିବା ଓ ବୁଲିବା ବ୍ୟବସ୍ଥା କରିଦିଅନ୍ତୁ । ସୁଖର ବିଷୟ, ସେ ବିରକ୍ତ ହେବା ପରିବର୍ତ୍ତେ ଖୁସି ହେଲେ । ତାହା ଥିଲା ସ୍ୱାଧୀନତା ପ୍ରାପ୍ତି ପରେ ପରେ ଭାରତୀୟ ଦୂତାବାସର କର୍ମଚାରୀମାନଙ୍କର ଦେଶବାସୀଙ୍କ ପ୍ରତି କର୍ତ୍ତବ୍ୟବୋଧ । ସମୟକ୍ରମେ ସେପରି ବ୍ୟବହାର ଆଉ ଦେଖିବାକୁ ମିଳିଲା ନାହିଁ । ଅମଲାତାନ୍ତ୍ରିକ ଆଦବକାୟଦା ମଧ୍ୟରେ ଭାରତୀୟ କର୍ମଚାରୀମାନେ ନିଜ ଦେଶରୁ ଆସିଥିବା ଲୋକଙ୍କ ପ୍ରତି କଠୋର ମନୋଭାବ ଦେଖାଇବାକୁ ଉଚିତ ମଣିଲେ । ବାରମ୍ବାର ବିଦେଶ ଯାତ୍ରାବେଳେ ବିଭିନ୍ନ ଦେଶରେ ଭାରତୀୟ ଦୂତାବାସର କର୍ମଚାରୀମାନଙ୍କର ବ୍ୟବହାର ଦେଖି ମୁଁ ବ୍ୟଥିତ ହୋଇଛି । ବିଶେଷତଃ ଇଂଲଣ୍ଡରେ ।

ସେ ଯାହାହେଉ, ଦୂତାବାସର ମୁଖ୍ୟ ଶାସନସଚିବ ତତ୍‌କ୍ଷଣାତ୍ ଫୋନ୍ ଯୋଗେ Y.M.C.A.ର ଅଧ୍ୟକ୍ଷଙ୍କୁ ଆସିବା ଲାଗି ଅନୁରୋଧ କଲେ । ଅଳ୍ପସମୟ ମଧ୍ୟରେ ସେ ଗୋଟିଏ ଭ୍ୟାନ୍ ଧରି ପହଞ୍ଚିଗଲେ ଓ ଆମମାନଙ୍କୁ ସେଥିରେ ନେଇଗଲେ । ତାଙ୍କ ବିଲ୍ଡିଂର ଉପର ତାଲାରେ ଥିବା ପ୍ରଶସ୍ତ ହଲ୍‌ଟିଏ ଆମକୁ ରହିବା ଲାଗି ଦିଆଗଲା ।

ଅଧ୍ୟକ୍ଷଙ୍କ ନାମ ଥିଲା ବିଜୟ ସିଂହ । ଧର୍ମରେ ଖ୍ରୀଷ୍ଟିୟାନ୍ । ସନ୍ଧ୍ୟା ଆସିଯାଇଥାଏ । ଆରାମରେ ରାତ୍ରିଯାପନ ଲାଗି ପରାମର୍ଶ ଦେଇ ସେ ଆଗାମୀ ସକାଳେ ଆସିବେ ବୋଲି କହିଲେ । ଯିବା ପୂର୍ବରୁ ସିଂହଳର ଦର୍ଶନୀୟ ସ୍ଥାନଗୁଡ଼ିକ ସମ୍ପର୍କରେ ଗୁଡ଼ାଏ ପୁସ୍ତିକା ମୋ ହାତରେ ଧରାଇଦେଇ କହିଲେ, "ଏଥିରୁ ସିଂହଳ ବିଷୟରେ ଅନେକ କଥା ଜାଣିପାରିବେ । କେଉଁ କେଉଁ ସ୍ଥାନ ଦେଖିବାକୁ ଇଚ୍ଛା, ତାହା ଠିକ୍ କରିଥିବେ । ସକାଳେ ଦେଖାହେଲେ କଥାବାର୍ତ୍ତା ହେବା ।" ସେହି ଅପରିଚିତ ବିଦେଶୀଙ୍କ ବ୍ୟବହାର ମୋତେ ମୁଗ୍ଧ କଲା ।

ଛାତ୍ରମାନଙ୍କ ସହିତ ରାତ୍ରିଭୋଜନ ପରେ ଗୋଟିଏ ନିଭୃତ ସ୍ଥାନରେ ବସି ପୁସ୍ତିକାଗୁଡ଼ିକ ପଢ଼ିଲି । ଖଣ୍ଡିକରେ ରହିଥାଏ ସିଂହଳ ଇତିହାସର ସଂକ୍ଷିପ୍ତ ଟିପ୍ପଣୀ । ସେତେବେଳ ପର୍ଯ୍ୟନ୍ତ ସେଦେଶର ଇତିବୃତ୍ତ ସମ୍ପର୍କରେ ମୋର କୌଣସି ଧାରଣା ନଥାଏ । ପଢ଼ିଲାବେଳେ ଅକସ୍ମାତ୍ ଆଖି ଖୋଲିଗଲା, ବାରମ୍ବାର 'କଳିଙ୍ଗ' ନାମଟିକୁ ଦେଖି । ପ୍ରଥମ ପୃଷ୍ଠାରେ ଲେଖାଥିଲା, ବୁଦ୍ଧଙ୍କ ମହାପରିନିର୍ବାଣ ସମୟରେ ଜଣେକୌ କଳିଙ୍ଗରାଜକନ୍ୟାଙ୍କ ବଂଶଧର ବିଜୟସିଂହ ତାଙ୍କର ଦଳବଳ ସହ ଆସିଥିଲେ ଲଙ୍କାଦ୍ୱୀପକୁ । ତାଙ୍କ ପିତାଙ୍କ ନାମ ଥିଲା ସିଂହବାହୁ ଓ ସେ କଳିଙ୍ଗର ଗୋଟିଏ ସ୍ଥାନରେ ନୂତନ ରାଜଧାନୀ ସ୍ଥାପନ କରି ତାହାର ନାମ ରଖିଥିଲେ ସିଂହପୁର । ତରୁଣ ପୁତ୍ର ବିଜୟସିଂହଙ୍କ ଦୁର୍ଦ୍ଦାନ୍ତ ସ୍ୱଭାବ ଦେଖି ସେ ତାଙ୍କୁ ରାଜ୍ୟରୁ ବାହାର କରିଦେଇଥିଲେ । ସ୍ୱଦେଶରୁ ବିତାଡ଼ିତ ହୋଇ ରାଜପୁତ୍ର ବିଜୟସିଂହ ଲଙ୍କାଦ୍ୱୀପ

ଜୟପୂର୍ବକ ସେଠାକାର ରାଜା ହେଲେ ଏବଂ ନିଜ ଜନ୍ମସ୍ଥାନ ସିଂହପୁର ନାମାନୁଯାୟୀ ଅଧିକୃତ ଦ୍ୱୀପର ନାମ ରଖିଥିଲେ ସିଂହଳ । ପାଲି ଭାଷାରେ ଲିଖିତ ସିଂହଳର ପ୍ରାଚୀନ ଇତିବୃତ୍ତ 'ଦୀପ ବଂଶ' ଓ 'ମହାବଂଶ'ରେ ବିଜୟ ସିଂହଙ୍କ ପୂର୍ବପୁରୁଷମାନଙ୍କ ସମ୍ପର୍କରେ ତଥା ତାଙ୍କଦ୍ୱାରା ସିଂହଳ ବିଜୟ ବିଷୟ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ରହିଛି । ସିଂହଳ ଇତିହାସରେ ସେହି ହେଉଛନ୍ତି ସେ ଦେଶର ପ୍ରଥମ ଆର୍ଯ୍ୟ ନରପତି । ସୁଦୂର ଅତୀତରେ ଜଣେ କଳିଙ୍ଗ ରାଜପୁତ୍ରଙ୍କର ରୋମାଞ୍ଚକର ଅଭିଯାନର ବିବରଣୀ ପଢ଼ି ଅପାର ଆନନ୍ଦ ଅନୁଭବ କଲି । ସେଥିସହ ଅନୁଭବ କଲି ଗୋଟିଏ ଅଭିନବ ପ୍ରେରଣା । ସିଂହଳରୁ ପ୍ରତ୍ୟାବର୍ତ୍ତନ ପରେ ମୁଁ ମୋର 'କଳିଙ୍ଗ ଇତିହାସ' ଲେଖିଲାବେଳେ ସେଥିରେ ପ୍ରାଚୀନ କଳିଙ୍ଗ ଓ ସିଂହଳ ମଧ୍ୟରେ ଥିବା ସମ୍ପର୍କ ବିଷୟ ସଂକ୍ଷେପରେ ଲେଖିଥିଲି ।

ବିଜୟସିଂହଙ୍କ ସିଂହଳ ଅଧିକାର ସମୟରୁ ଉଭୟ ଦେଶ ମଧ୍ୟରେ ବରାବର ଲାଗିରହିଥିବା ସମ୍ପର୍କ କଥା ପୁସ୍ତିକାରୁ ସ୍ପଷ୍ଟ ହୋଇଉଠୁଥାଏ । ଦିନେ କଳିଙ୍ଗର ତାମ୍ରଲିପ୍ତି ବନ୍ଦରରୁ ସମ୍ରାଟ ଅଶୋକ ତାଙ୍କ କନ୍ୟା ସଂଘମିତ୍ରାଙ୍କୁ ସିଂହଳ ଦ୍ୱୀପରେ ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ପଠାଇଥିଲେ । ସଂଘମିତ୍ରା ସାଙ୍ଗରେ ନେଇଯାଇଥିଲେ ବୋଧିଦ୍ରୁମର ଗୋଟିଏ ଶାଖା । ସେହି ଶାଖାଟି ତତ୍କାଳୀନ ରାଜଧାନୀ ଅନୁରାଧାପୁର ଠାରେ 'ମହାମେଘ' ନାମକ ଉଦ୍ୟାନରେ ରୋପଣ କରାଯାଇଥିଲା । ସିଂହଳୀୟ ବୌଦ୍ଧମାନଙ୍କ ପ୍ରତି ସେହି ଉଦ୍ୟାନ ହେଉଛି ସର୍ବପ୍ରଧାନ ତୀର୍ଥସ୍ଥାନ । ଅନେକ ପରେ, ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ, କଳିଙ୍ଗର ଦନ୍ତପୁରୀ ନାମକ ସ୍ଥାନରେ ସଂରକ୍ଷିତ ଥିବା ବୁଦ୍ଧଙ୍କର ପବିତ୍ର ଦନ୍ତ କଳିଙ୍ଗରାଜକନ୍ୟା ହେମମାଳା ଓ ତାଙ୍କ ସ୍ୱାମୀ ଦନ୍ତକୁମାର ବୌଦ୍ଧଦେଶ ସିଂହଳଦ୍ୱୀପକୁ ନେଇଯାଇଥିଲେ ଏବଂ ସେଠାକାର ରାଜାଙ୍କ ହସ୍ତରେ ଅର୍ପଣ କରିଥିଲେ । ସେହି ପବିତ୍ର ଦନ୍ତ ଏବେ କାଣ୍ଡି ନାମକ ସହରରେ ଥିବା ବୌଦ୍ଧମନ୍ଦିର ମଧ୍ୟରେ ପୂଜା ପାଉଛି । ଏହିସବୁ ବିଷୟ ପଢ଼ିଲାବେଳେ ପରମ ଆତ୍ମତୃପ୍ତି ଲାଭ କରିଥିଲି । ନିଦ୍ରା ଭୁଲି ରାତି ୨ଟା ପର୍ଯ୍ୟନ୍ତ ପୁସ୍ତିକାଗୁଡ଼ିକ ପଢ଼ିଗଲି ।

ତହିଁ ପରଦିନ ସକାଳେ ବନ୍ଧୁ ବିଜୟସିଂହଙ୍କୁ କହିଲି, ''ସିଂହଳଦ୍ୱୀପର ପ୍ରଥମ ରାଜା ଥିଲେ ଆମ କଳିଙ୍ଗଭୂମିରୁ ଆସିଥିବା ଆର୍ଯ୍ୟବୀର ବିଜୟସିଂହ, ଏବଂ ଆପଣଙ୍କ ନାମ ମଧ୍ୟ ସେହି ବିଜୟ ସିଂହ । ଅତଏବ ଆପଣ ହେଉଛନ୍ତି ପ୍ରାଚୀନ ସିଂହଳୀୟ ଆର୍ଯ୍ୟମାନଙ୍କର ବଂଶଧର ଓ ଆମେ ହେଉଛୁଁ ପ୍ରାଚୀନ କଳିଙ୍ଗବାସୀଙ୍କ ଦାୟାଦ, ତେଣୁ ପରସ୍ପରର ପରମ ମିତ୍ର ।'' ମୋ କଥା ଶୁଣି ସେ ଅତ୍ୟନ୍ତ ପ୍ରୀତ ହେଲେ । କିଛି ସମୟ ଇତିହାସ ଚର୍ଚ୍ଚା ପରେ ପଚାରିଲେ, ''ସିଂହଳର

କେଉଁ କେଉଁ ଜାଗାକୁ ଯିବାପାଇଁ ଠିକ୍ କଲେ ?'' ମୁଁ କହିଲି, ''ଚାରିଦିନ ରହଣି ମଧ୍ୟରେ ଦୁଇଟି ସ୍ଥାନ ଦେଖିବାକୁ ଇଚ୍ଛା, ଯଥା : ଅନୁରାଧାପୁର ଓ କାଣ୍ଡି ।''

ବିଜୟବାବୁ ଥିଲେ ବଳିଷ୍ଠ, ସ୍ୱାସ୍ଥ୍ୟବାନ ଓ ମଧ୍ୟବୟସ୍କ ବ୍ୟକ୍ତି । ତାଙ୍କର ପୋଷାକପରିଚ୍ଛଦ ଥିଲା ସାହେବୀ ଢଙ୍ଗର । ଦୁଇକପ୍ ଚା ମଗାଇ ମୋ ସହିତ ଆଲୋଚନା ଆରମ୍ଭ କଲେ । ମୋତେ ବୁଝାଇଲେ, ''ଅନୁରାଧାପୁର ଓ କାଣ୍ଡି ଭବିଷ୍ୟତରେ ଯେକୌଣସି ସମୟରେ ଆସି ଦେଖିପାରିବେ । କିନ୍ତୁ ମୁଁ ଗୋଟିଏ ସ୍ଥାନ ଦେଖିବାକୁ କହିବି, ଯାହା ଜୀବନରେ ଭୁଲିପାରିବେ ନାହିଁ । ଆପଣଙ୍କ ସୌଭାଗ୍ୟକୁ ସେହି ସ୍ଥାନ ଏବେ ଦର୍ଶନ ନିମନ୍ତେ ଖୋଲା ରହିଛି, ମାତ୍ର ଦଶଦିନ ପାଇଁ ।'' ସେ ବର୍ଣ୍ଣନା କଲେ ଆଦାମ୍ ଗିରିଶୃଙ୍ଗ କଥା (Adams Peak) । ସାତ ହଜାର ତିନିଶହ ଫୁଟ ଉଚ୍ଚତା ବିଶିଷ୍ଟ ସେହି ଶୃଙ୍ଗ ପ୍ରତ୍ୟେକ ବର୍ଷ କେବଳ ଦଶଦିନ ଲାଗି ଯାତ୍ରୀମାନଙ୍କ ପାଇଁ ମୁକ୍ତ ରହେ । ସେହି ସମୟ ମଧ୍ୟରେ ସେଠାକୁ ଆସନ୍ତି ଚୀନ, ଜାପାନ, ତିବ୍ବତ, ବ୍ରହ୍ମ ଓ ଶ୍ୟାମ ପ୍ରଭୃତି ଦେଶରୁ ଶତ ଶତ ବୌଦ୍ଧ ତୀର୍ଥଯାତ୍ରୀ । ବୌଦ୍ଧ ବିଶ୍ୱାସରେ ସେହି ଗିରିଶୃଙ୍ଗର ଶୀର୍ଷବିନ୍ଦୁରେ ଥିବା ବୃହଦାକାର ପଦଚିହ୍ନଟି ହେଉଛି ସ୍ୱୟଂ ବୁଦ୍ଧଙ୍କର ପଦଚିହ୍ନ । ହିନ୍ଦୁମାନଙ୍କ ବିଶ୍ୱାସରେ ତାହା ହେଉଛି ଶିବଙ୍କର ପାଦଚିହ୍ନ । ଖ୍ରୀଷ୍ଟିଆନମାନେ ବିଶ୍ୱାସ କରନ୍ତି, ସେଠାକୁ ଯିଶୁଖ୍ରୀଷ୍ଟ ଆସିଥିଲେ । ମୁସଲମାନମାନେ ସେହି ଚିହ୍ନକୁ ଆଦାମଙ୍କ ପାଦଚିହ୍ନ ବୋଲି କହନ୍ତି । ଏହିଦୃଷ୍ଟିରୁ ଆଦାମ ଶୃଙ୍ଗ ହେଉଛି ସବୁ ଧର୍ମାବଲମ୍ବୀମାନଙ୍କର ତୀର୍ଥସ୍ଥାନ ।

ସ୍ଥାନର ମହତ୍ତ୍ୱ ବର୍ଣ୍ଣନା କଲାପରେ ସେ ଏକଥା ମଧ୍ୟ ଜଣାଇଲେ ଯେ, ପ୍ରାକୃତିକ ବା ଭୌଗୋଳିକ ଦୃଷ୍ଟିରୁ ଏକକ ଭାବରେ ଦଣ୍ଡାୟମାନ ଥିବା ସେପରି ତ୍ରିଭୁଜାକାର ସୁଦୀର୍ଘ ଗିରିଶୃଙ୍ଗ ପୃଥିବୀର ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ସେଥିପାଇଁ ତା ଉପରେ ଛିଡ଼ା ହେଲେ ଦୂରବର୍ତ୍ତୀ ସମୁଦ୍ର, ଦିଗ୍‌ବଳୟ ଓ ଅରଣ୍ୟରାଜିର ଯେଉଁପ୍ରକାର ମନୋମୁଗ୍ଧକର ଶୋଭା ଦୃଷ୍ଟିଗୋଚର ହୁଏ, ସେପରି ଦୃଶ୍ୟ ଅନ୍ୟ କୌଣସି ସ୍ଥାନରେ ଦେଖିପାରିବା ସମ୍ଭବ ନୁହେଁ । ସର୍ବୋପରି, ଯେଉଁ ଯାତ୍ରୀମାନେ ରାତ୍ରିର ଶେଷ ପ୍ରହରରେ ସେଠାରେ ପହଞ୍ଚିପାରନ୍ତି, ସେମାନେ ପୂର୍ବାକାଶରେ ପ୍ରଭାତୀ ତାରା ଓ ସୂର୍ଯ୍ୟଙ୍କର ଉଦୟକାଳୀନ ଯେଉଁ ଦୃଶ୍ୟ ଦେଖନ୍ତି, ସେପରି ଦୃଶ୍ୟ ଧରାପୃଷ୍ଠରେ କୌଣସିଠାରେ ଦେଖିବାକୁ ମିଳେ ନାହିଁ ! କେବଳ ସେତିକି ନୁହେଁ, ଉଷାକାଳରେ ଆଦାମ ଶୃଙ୍ଗର ଯେଉଁ ସୁଦୀର୍ଘ ଛାୟା ପଶ୍ଚିମ ଦିଗନ୍ତ ପର୍ଯ୍ୟନ୍ତ ବ୍ୟାପିଯାଏ, ତାହା ହୁଏ ଏକ କଳ୍ପନାତୀତ ଦୃଶ୍ୟ । ସେଥିଯୋଗୁଁ,

କେହି କେହି ବିଶ୍ୱାସ କରନ୍ତି ଯେ, ଧରାବକ୍ଷରେ ସେହି ଛାୟା ହେଉଛି ସ୍ୱୟଂ ଭଗବାନଙ୍କର ଛାୟା ।

ବିଜୟବାବୁ ଶେଷରେ ଉପଦେଶ ଦେଲେ, ଯେହେତୁ ଆମେ ଯଥାସମୟରେ ଆସିଛେ, ଆଦାମ ଶୃଙ୍ଗ ଆରୋହଣର ସୁବର୍ଣ୍ଣ ସୁଯୋଗ ହରାଇବା ଉଚିତ ହେବ ନାହିଁ । ତାଙ୍କ ବର୍ଣ୍ଣନା ଶୁଣି ମୁଁ ବିନା ଦ୍ୱିଧାରେ ସେଠାକୁ ଯିବି ବୋଲି ଘୋଷଣା କଲି । ଛାତ୍ରମାନେ ପର୍ବତାରୋହଣ ଆଶାରେ ଅଧୀର ହୋଇଉଠିଲେ । ପରିହାସ ଛଳରେ କୁଞ୍ଜବିହାରୀବାବୁଙ୍କୁ କହିଲି, "ଛାତ୍ରମାନେ ଓ ମୁଁ ସାତହଜାର ଫୁଟ ଉପରକୁ ନିଶ୍ଚୟ ଉଠିଯାଇ ପାରିବୁଁ । କିନ୍ତୁ, ମୋଟା ଦେହ ନେଇ ଆପଣ ଉଠିବେ କିପରି ? ସୀମାଚଳମ ପାହାଡ଼ର ଆଠଶହ ଫୁଟ ଉପରକୁ ଉଠିଲାବେଳେ ଆପଣ ଦମ୍ ହରାଇ ହନ୍ତସନ୍ତ ହୋଇପଡୁଥିଲେ !" ଅତ୍ୟାଗ୍ରହ ପ୍ରକାଶ କରି କୁଞ୍ଜବାବୁ ସଦୟେ ଉତ୍ତର ଦେଲେ, "ମରିବାକୁ ଥିଲେ ମରିବି, କିନ୍ତୁ ଆଦାମ ଶୃଙ୍ଗ ଅଲବତ୍ ଚଢ଼ିବି । ସେଠାରେ ମଲେ ସ୍ୱର୍ଗକୁ ଯିବି ।" ସମସ୍ତଙ୍କ ଉତ୍ସାହ ଦେଖି ବିଜୟସିଂହ ଖୁସି ହେଲେ ।

ଠିକ୍ ହେଲା, ସେ ଦିନଟି କଲେମ୍ବୋ ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖାଯିବ । ତହିଁ ପରଦିନ ଆରମ୍ଭ ହେବ ଆଦାମ ଶୃଙ୍ଗ ଅଭିମୁଖେ ଅଭିଯାନ । ସନ୍ଧ୍ୟା ପୂର୍ବରୁ ପର୍ବତର ପାଦଦେଶରେ ପହଞ୍ଚି, ସାରା ରାତି ଉପରକୁ ଉଠି ଉଠି ରାତ୍ରିର ଶେଷ ପ୍ରହରରେ ଶୃଙ୍ଗ ଶିଖରରେ ପହଞ୍ଚିବାର ସଂକଳ୍ପ ନିଆଗଲା । ଯଥା ସମୟରେ ବାସ୍‌ଟିଏ ପଠାଇ ଦିଆଯିବ କହି ବିଜୟବାବୁ ସେଦିନ ପାଇଁ ବିଦାୟ ନେଲେ ।

ତହିଁ ପରଦିନ ଲକ୍‌ଜରୀ ବାସ୍‌ଟିଏ ଶସ୍ତା ଭଡ଼ାରେ ଠିକ୍‌କରି ବିଜୟସିଂହ ସେଥିରେ ଆମକୁ ବସାଇଦେଲେ । କଲମ୍ବୋଠାରୁ ଆଦାମ ଶୃଙ୍ଗ ପର୍ଯ୍ୟନ୍ତ ଦୂରତ୍ୱ ଥାଏ ପ୍ରାୟ ଶହେ ମାଇଲ । ଦୀର୍ଘ ଯାତ୍ରାପଥରେ ସିଂହଳଦ୍ୱୀପର ପ୍ରାକୃତିକ ସୌନ୍ଦର୍ଯ୍ୟରାଜି ଆମକୁ ତନ୍ମୟ କଲା । ସଂକୀର୍ଣ୍ଣ ରାସ୍ତାର ଉଭୟ ପାଖରେ ଥାଏ ଚିରହରିତ୍ ଅରଣ୍ୟ, ସ୍ଥାନେ ସ୍ଥାନେ ଅନୁଚ୍ଚ ପାହାଡ଼, ସଂକୀର୍ଣ୍ଣ ସ୍ରୋତସ୍ୱିନୀ, ସବୁଜ ଶସ୍ୟକ୍ଷେତ୍ର ଓ କ୍ଷୁଦ୍ର କ୍ଷୁଦ୍ର ପଲ୍ଲୀ । ଦେଖିବାକୁ ମିଳୁଥାଏ ସୁବିସ୍ତୀର୍ଣ୍ଣ ଚା ବଗିଚା । ସେଥିରେ ପୁରୁଷ ଓ ନାରୀମାନେ ପ୍ରାୟ ସମାନ ଢଙ୍ଗରେ ଲୁଗା ପିନ୍ଧି କାମ କରୁଥିଲାବେଳେ କିଏ ପୁରୁଷ ଓ କିଏ ମହିଳା ଜାଣିହେଉ ନଥାଏ । ଉଭୟଙ୍କ ମୁଣ୍ଡରେ ଥାଏ ଏକାପ୍ରକାର ଆଚ୍ଛାଦନ । ଚା ବଗିଚା ପରେ ପରେ ଆସିଯାଉଥାଏ ଅସରନ୍ତି ଭାବରେ ଧାଡ଼ି ଧାଡ଼ି ରବରଗଛ । ଗଛର ବଲ୍‌କଲ ତଳେ ଟଣାଯାଇଥାଏ ବକ୍ରାକାରର ରେଖା ଓ ସେଥିରୁ ଝରିଆସୁଥାଏ ତରଳ

ରବର । ପରିବ୍ୟାପ୍ତ ଅରଣ୍ୟଗୁଡ଼ିକ ଦେଖି ମନେହେଉଥାଏ ସତେଯେପରି ସିଂହଳ ହେଉଛି ଘନାବୃତ ବନାନୀର ଦ୍ୱୀପ । ଉପରେ ମେଘବିମୁକ୍ତ ନୀଳ ଆକାଶ ଓ ତଳେ ଘନସବୁଜ ଭୂମି । ଛାତ୍ରମାନେ ଗୀତ ଗାଇବାରେ ଲାଗିଥାନ୍ତି । କୁଞ୍ଜବାବୁ ବେଳେବେଳେ ବାସ୍ ରଖିବାକୁ କହି ପାହାଡ଼ ବା ଝରଣାର ସୌନ୍ଦର୍ଯ୍ୟ ଉପଭୋଗ କରୁଥାନ୍ତି ।

ସନ୍ଧ୍ୟାର ଅଳ୍ପ ସମୟ ପୂର୍ବରୁ ବାସ୍‌ଟି ପହଞ୍ଚିଲା ଆଦାମପର୍ବତର ପାଦଦେଶରେ ବ୍ୟାପିରହିଥିବା ଅରଣ୍ୟ ପାଖରେ । ସେଠାରୁ ଶୃଙ୍ଗ ପର୍ଯ୍ୟନ୍ତ ଦୂରତ୍ୱ ଥାଏ ପ୍ରାୟ ପାଞ୍ଚମାଇଲ । ପଥର ଗେଟିପୂର୍ଣ୍ଣ ଜଙ୍ଗଲ ରାସ୍ତାରେ ଚାଲିବାକୁ ହେଲା । ଶେଷରେ ଦେଖିବାକୁ ମିଳିଲା ଅଦୂରରେ ଦଣ୍ଡାୟମାନ ଆକାଶଚୁମ୍ବୀ ପର୍ବତ । ସେହି ବିଶାଳାକୃତି ପର୍ବତର ଶୀର୍ଷଭାଗରେ ଦେଖାଗଲା ଗୋଟିଏ ଶଙ୍ଖାକୃତି ଶୃଙ୍ଗ । ନିକଟରେ ଅନ୍ୟ ପାହାଡ଼ ପର୍ବତ ନଥାଏ, ଘେରି ରହିଥାଏ ଗହନ ଅରଣ୍ୟ । ପର୍ବତର ପାଦଦେଶରେ ଯାତ୍ରୀମାନଙ୍କ ନିମନ୍ତେ ମୁକ୍ତ ପ୍ରାଙ୍ଗଣମାନ ପ୍ରସ୍ତୁତ କରାଯାଇଥାଏ । ପଡ଼ିଥାଏ ଅନେକ ତମ୍ବୁ । ଅସ୍ଥାୟୀ ଜଳଖିଆ ଦୋକାନ ଓ ହୋଟେଲ ଆଗରେ ଲୋକଙ୍କର ଭିଡ଼ ଲାଗିଥାଏ । ଚାରିଆଡ଼େ ଦେଖିବାକୁ ମିଳିଲା ବୌଦ୍ଧ ସନ୍ନ୍ୟାସୀମାନଙ୍କର ସମାବେଶ । ଦଳ ଦଳ ହୋଇ ଘାସ ଉପରେ ବସି ସେମାନେ ପ୍ରାର୍ଥନା କରୁଥାନ୍ତି । କେତେକ ସ୍ଥାନରେ ଧର୍ମଶାସ୍ତ୍ର ପଢ଼ା ହେଉଥାଏ । ସବୁଦିଗରୁ ଧର୍ମସଙ୍ଗୀତର ମଧୁର ମୂର୍ଚ୍ଛନା ଭାସିଆସୁଥିଲା । ଜଣେ କିଏ ଗାଉଥିବା ଧାଡ଼ିଟି ବୋଧହୁଏ ଥାଏ, ‘‘ରଠ ସାଠ ହଟ ଯୋଗେ ଗୌତମ ଶରଣଂ ।’’

ଜଣେ ବୌଦ୍ଧସନ୍ନ୍ୟାସୀଙ୍କ ସହିତ କଥାବାର୍ତ୍ତା କରି ବୁଝିଲି, ଶୃଙ୍ଗର ସର୍ବୋଚ୍ଚ ଦେଶରେ ଗୋଟିଏ ସମତଳ ସ୍ଥାନ ରହିଛି ଯାହାର ଆୟତନ ୭୫ ଫୁଟ ଲମ୍ବ ଓ ୨୫ ଫୁଟ ଓସାର । ମୁଁ ପଚାରିଲି, ସେତିକି ଜାଗାରେ ଏତେ ଲୋକ ଛିଡ଼ା ହେବେ କିପରି ? ସେ ଉତ୍ତର ଦେଲେ, ‘‘ତଳେ ଯେତିକି ଲୋକଙ୍କୁ ଦେଖୁଛ, ସେମାନେ ସମସ୍ତେ ସେଠାରେ ପହଞ୍ଚିପାରିବେ ନାହିଁ । ଅଧିକାଂଶ ବାଟରେ ରହିଯିବେ । ବୃଦ୍ଧବ୍ୟକ୍ତିମାନେ ବାଟରେ ବାରମ୍ବାର ବିଶ୍ରାମ ନେଇ ଆଗାମୀ କାଲି ଉପରେ ପହଞ୍ଚିବେ । ପ୍ରଭାତ ପୂର୍ବରୁ ସେଠାରେ ଖୁବ୍ କମ୍ ଲୋକଙ୍କୁ ଦେଖିବାକୁ ମିଳେ ।’’

ଛାତ୍ରମାନଙ୍କୁ ନେଇ ଗୋଟିଏ ଛୋଟ ହୋଟେଲରେ ଭୋଜନକାର୍ଯ୍ୟ ଶେଷ କଲି । ଯେତେଶୀଘ୍ର ସମ୍ଭବ ପର୍ବତ ଆରୋହଣ ଉଚିତ ବୋଲି ସେମାନଙ୍କୁ ପ୍ରେରଣା ଦେଲି । ଦେଖିଲି, ଯାତ୍ରୀମାନଙ୍କ ମଧ୍ୟରେ ବୁଢ଼ାବୁଢ଼ୀଙ୍କର ଅଭାବ ନାହିଁ । ବୁଦ୍ଧଙ୍କ ପ୍ରତି ଗଭୀର ଭକ୍ତି ଯୋଗୁଁ ସେମାନଙ୍କ ମନୋବଳ ଯଥେଷ୍ଟ ଥାଏ ।

ଚାହୁଁ ଚାହୁଁ ବୌଦ୍ଧ ସନ୍ୟାସୀମାନେ ଉପରକୁ ଉଠିବା ଲାଗି ପ୍ରସ୍ତୁତ ହେଲେ । ଅଧିକାଂଶଙ୍କ ହାତରେ ଥାଏ ଖଣ୍ଡିଏ ଲେଖାଏଁ ବାଡ଼ି । ତାହାରି ଉପରେ ଭରା ଦେଇ ଚାଲିବାକୁ ହେବ । ଗୋଟିଏ ଦାତବ୍ୟ ଅନୁଷ୍ଠାନର ସ୍ୱେଚ୍ଛାସେବୀମାନେ ଲୋକଙ୍କୁ ଯଷ୍ଟି ଦାନକରିବା ଦେଖିଲି । ମୁଁ ଓ କୁଞ୍ଜବାବୁ ବାଡ଼ି ଖଣ୍ଡିଏ ଖଣ୍ଡିଏ ଧରିଲୁଁ । ବୌଦ୍ଧ ଭିକ୍ଷୁମାନେ ଗୁଡ଼ ଓ ମିଶ୍ରି ଜାତୀୟ ମିଠା ବାଣ୍ଟିବାରେ ଲାଗିଥାନ୍ତି । ପର୍ବତ ଆରୋହଣ ବେଳେ ପାଟିରେ ପକାଇଲେ ଶକ୍ତି ଆସେ ।

ଅନ୍ଧକାର ଘନୀଭୂତ ହେଲା । ସେତେବେଳକୁ ପର୍ବତର ପାଦଦେଶରୁ ଶୃଙ୍ଗର ଶୀର୍ଷସ୍ଥାନ ପର୍ଯ୍ୟନ୍ତ ରହିଥିବା ସଂକୀର୍ଣ୍ଣ ପଥର ଉଭୟ ପାର୍ଶ୍ୱରେ ଅସଂଖ୍ୟ ବିଜୁଳି ବତି ମିଞ୍ଜି ମିଞ୍ଜି ହୋଇ ଜଳିଉଠିଲା । ଦୀର୍ଘ ସାତ ହଜାର ଫୁଟ ଊର୍ଦ୍ଧ୍ୱକୁ ବ୍ୟାପୀ ରହିଥିବା ସେହି ଆଲୋକମାଳା ଏକ ଐଶିକ ଦୃଶ୍ୟ ରୂପେ ଜଣାଯାଉଥାଏ । ଶୃଙ୍ଗର ଶେଷ ଭାଗରେ ଥିବା କ୍ଷୁଦ୍ର କ୍ଷୁଦ୍ର ବତିଗୁଡ଼ିକ ମିଶି ଯାଇଥାଏ ମହାକାଶର ନକ୍ଷତ୍ରରାଜି ସହିତ । ସନ୍ୟାସୀମାନଙ୍କ ସମବେତ କଣ୍ଠରୁ ଶୁଣାଯାଉଥାଏ, ''ବୁଦ୍ଧଂ ମେ ଶରଣଂ, ଧର୍ମଂ ମେ ଶରଣଂ, ସଂଘଂ ମେ ଶରଣଂ ।''

ରାତ୍ର ପ୍ରାୟ ଦୁଇଘଡ଼ି ବେଳେ ଯାତ୍ରା ଆରମ୍ଭ କରିବା ପାଇଁ ସଂକେତ ମିଳିଲା । ଯାତ୍ରୀଦଳ ଧୀରେ ଧୀରେ ଉପରକୁ ଉଠିବାକୁ ଲାଗିଲେ । ଆମେ ମଧ୍ୟ ଚାଲିଲୁଁ । ପ୍ରାୟ ପାଞ୍ଚ ଶହ ଫୁଟ ଉଠିଲା ବେଳକୁ ଜଣାଗଲା, ଯାତ୍ରାଟି ସହଜସାଧ୍ୟ ନୁହେଁ । ଛାତିରେ ବେଦନା ସାଙ୍ଗକୁ ନିଃଶ୍ୱାସ ପ୍ରଶ୍ୱାସରେ କଷ୍ଟ ଅନୁଭବ କଲି । ରାସ୍ତାର ଗୋଟିଏ ଗୋଟିଏ ଅଂଶରେ ଛୋଟ ଛୋଟ ପାହାଚ ଥାଏ, ଅନ୍ୟତ୍ର ପଥୁରିଆ ମାଟି । ସ୍ଥାନେ ସ୍ଥାନେ ବିଶ୍ରାମ ନେବା ଲାଗି ଜାଗା ଥାଏ । କିଛି ସମୟ ବସିରହି ଦମ୍ ନେଲାପରେ ପୁଣି ଉପରକୁ ଚାଲିବା କଥା । ଏକହଜାର ଫୁଟ ଅତିକ୍ରମ କଲାପରେ ସାହସ ଭାଙ୍ଗିପଡ଼ିଲା । ଅନେକ ଯାତ୍ରୀ ସେହିଠାରୁ ତଳକୁ ଫେରିବା ଦେଖି ଅନୁମାନ କଲି, ସମସ୍ତଙ୍କ ପକ୍ଷରେ ଆଦାମଶୃଙ୍ଗ ଉଠିବା ସମ୍ଭବ ନୁହେଁ । ସେତେବେଳକୁ ପାଞ୍ଚ ସାତ ଜଣ ଛାତ୍ର କରୁଣ ସ୍ୱରରେ ମିନତି ଜଣାଇଲେ, ''ସାର, ଆମେ ତଳକୁ ଫେରିଯିବୁଁ ।'' ''ତୁମର ଇଚ୍ଛା'' ବୋଲି କହି ବସିପଡ଼ିଲି । ଅଧଘଣ୍ଟାଏ ବସିରହିଲା ପରେ ପୁଣି ଚାଲିବାକୁ ହେଲା । ବୌଦ୍ଧମାନେ ସୁନ୍ଦର ସ୍ୱରରେ ଧ୍ୱନି ଦେଉଥାନ୍ତି, ''ସୁମନ ସମନ ଦେବୀ ପିହିଟାଏ ।'' ଛାତ୍ରମାନେ ମଧ୍ୟ ସେହି ଧ୍ୱନିଦେଇ ଆଗେଇ ଚାଲିଲେ ।

ଯେତିକି ଦୂର ଉପରକୁ ଉଠାଯାଉଥାଏ, ସେତିକି ମାତ୍ରାରେ ଶକ୍ତି କମି ଆସୁଥାଏ । ଅଧାଅଧି ରାସ୍ତା ଉଠିଲା ବେଳକୁ ମଧ୍ୟରାତ୍ରି ହୋଇଯାଇଥାଏ ।

ଅନେକ ଯାତ୍ରୀ ପଥପ୍ରାନ୍ତର ଅରଣ୍ୟ ମଧ୍ୟରେ ରହିଯିବା ଦେଖିଲି । ବୋଧହୁଏ, ରାତି ପାହିଲେ ପୁଣି ଚାଲିବେ । ସେମାନଙ୍କ ପ୍ରତି ସୂର୍ଯ୍ୟୋଦୟର ଆକର୍ଷଣ ନଥାଏ, ବୁଦ୍ଧଙ୍କ ପାଦଚିହ୍ନ ଥିଲା ଏକମାତ୍ର ଚୁମ୍ବକ । କୁଞ୍ଜବିହାରୀଙ୍କୁ ଅଣନିଶ୍ୱାସୀ ଅବସ୍ଥାରେ ଦେଖି ଦୁଃଖ ହେଲା । ତାଙ୍କୁ କହିଲି, "ଅଧାବାଟରୁ ବେଶି ଛାତ୍ର ଫେରିଗଲେଣି । ସୂର୍ଯ୍ୟୋଦୟ ଦେଖିବାକୁ ହେଲେ ବିଳମ୍ବ ନକରି ଚାଲିବାକୁ ହେବ ।" ପ୍ରଶାନ୍ତକୁମାର ଚାନ୍ଦ୍ ନାମକ ସବଳକାୟ ଜଣେ ଛାତ୍ର କୁଞ୍ଜବାବୁଙ୍କ ବାହୁତଳେ କାନ୍ଧ ରଖି ତାଙ୍କୁ ଚାଲିବାକୁ ସାହାଯ୍ୟ କଲେ ।

ପୁନର୍ବାର ଆରମ୍ଭ ହେଲା ପାହାଚ ପରେ ପାହାଚ । ପାଟିରେ ମିଠା ରଖି ଓ ବାଡ଼ି ଉପରେ ବଳ ଦେଇ ଆଗେଇ ଚାଲିଲୁଁ । କ୍ରମେ କ୍ରମେ ରାସ୍ତାଟି ଉପରକୁ ସିଧା ଆକାର ଧାରଣ କରୁଥାଏ । ସେଥି ଯୋଗୁଁ ସତର୍କତା ସହ ଭଡ଼ା ପରେ ଭଡ଼ା ପକାଇବା ଦରକାର ହେଲା । ଊର୍ଦ୍ଧ୍ୱକୁ ଚାହିଁଲାବେଳକୁ ଶୃଙ୍ଗ ଉପରେ ନକ୍ଷତ୍ରରାଜି ବିରାଜ କରୁଥିଲା ପରି ଦେଖାଯାଉଥାଏ । ସେହିପ୍ରକାର ସ୍ୱର୍ଗୀୟ ଦୃଶ୍ୟ ଥାଏ ଉଠିବା ଲାଗି ପ୍ରେରଣା ।

ରାତ୍ରିର ଅନ୍ତିମ ପ୍ରହରର ଶେଷବେଳକୁ ଆଦାମ ଶୃଙ୍ଗର ଶୀର୍ଷବିନ୍ଦୁରେ ପହଞ୍ଚିହେଲା । ସାଙ୍ଗରେ ଥାନ୍ତି କୁଞ୍ଜବିହାରୀ ବାବୁ ଓ ଛଅଜଣ ଛାତ୍ର । ସେତେବେଳକୁ ଉପରିଭାଗର ସମତଳ ସ୍ଥାନଟି ଯାତ୍ରୀମାନଙ୍କ ଦ୍ୱାରା ଭରପୂର ହୋଇଯାଇଥାଏ । ଠେଲାପେଲା ମଧ୍ୟରେ ଧୀରେ ଧୀରେ ଆଗେଇ ଚାଲି ପବିତ୍ର ପଦଚିହ୍ନ ନିକଟରେ ପହଞ୍ଚିଲୁଁ । ତାହା ଥିଲା ଗୋଟିଏ ବିଚିତ୍ର ପାଦ ସଦୃଶ ଚିହ୍ନ । ପ୍ରକାଣ୍ଡ ଖଣ୍ଡିଏ ପାଷାଣ ଉପରେ ରହିଥାଏ ମନୁଷ୍ୟ ପାଦର ଆକୃତି ରୂପକ ବିଶାଳ ଗହ୍ୱରଟିଏ । ତାହାର ଲମ୍ବ ହେଉଛି ପାଞ୍ଚଫୁଟ ଚାରି ଇଞ୍ଚ ଓ ଓସାର ଦୁଇଫୁଟ ଛଅ ଇଞ୍ଚ । ଚାରିପାଖରେ ମାଟିପାତ୍ରର ଦୀପଗୁଡ଼ିକ ଜଳୁଥାଏ । ପାଦଚିହ୍ନ ନିକଟରେ ସିଂହଳୀୟ ଓ ବିଦେଶାଗତ ବୌଦ୍ଧମାନେ ଲୋଟିଯାଉଥାନ୍ତି । ଅସ୍ପଷ୍ଟ ସ୍ୱରରେ ସେମାନଙ୍କ ମୁଖରୁ ମନ୍ତ୍ର ନିର୍ଗତ ହେଉଥାଏ । ବୌଦ୍ଧଜଗତ ପ୍ରତି ସେହି ସ୍ଥାନ ଯେ କେତେଦୂର ପବିତ୍ର ଥାଏ, ତାହା ଯାତ୍ରୀମାନଙ୍କ ଭକ୍ତିଭାବରୁ ଜାଣିପାରିଲି ।

ଶୃଙ୍ଗର ପୂର୍ବପ୍ରାନ୍ତରେ ରହି ସୂର୍ଯ୍ୟୋଦୟ ପ୍ରତି ଅପେକ୍ଷା କରିବା ଥିଲା ଆମର ପ୍ରକୃତ ଉଦ୍ଦେଶ୍ୟ । କୌଣସି ପ୍ରକାରେ ସ୍ଥାନଟିକୁ ଘେରିରଖିଥିବା ଲୁହାରେଲିଂ ଧରି ଛିଡ଼ା ହେବାପାଇଁ ଜାଗା ଟିକିଏ ଯୋଗାଡ଼ କରିନେଲି । ଆକାଶରେ ଗ୍ରହନକ୍ଷତ୍ରମାନଙ୍କର ଉଜ୍ଜ୍ୱଳ ଜ୍ୟୋତିରୁ ଜଣାଗଲା, ସେପରି ଜ୍ୟୋତି ଦେଖିବା ସମ୍ଭବ କେବଳ ସ୍ଥାନର ଉଚ୍ଚତା ଯୋଗୁଁ । ରାତି ବାକି ଥାଏ । ଚାହୁଁ ଚାହୁଁ

ପୂର୍ବ ଦିଗ୍‌ବଳୟ ଉପରେ ପାହାନ୍ତିତରା ବା ଶୁକ୍ରଗ୍ରହ ଆକସ୍ମିକ ଭାବରେ ଅନ୍ଧକାର ଭେଦ କରି ଆକାଶ ପଥକୁ ଉଦିତ ହେଲେ । ସେହି ପାହାନ୍ତିତରାକୁ ପିଲାକାଳରୁ ଦେଖି ଆସିଥିଲି । କିନ୍ତୁ ଆଦାମ ଗିରିଶୃଙ୍ଗ ଉପରୁ ସେ ଦେଖାଯାଉଥାନ୍ତି ଅସ୍ୱାଭାବିକ ରୂପେ ତେଜସ୍କର ଓ ଦୀପ୍ତିମାନ । ଉଷାର ଆଗମନୀ ସୂଚନା ଦେଇ ସେହି ତରା ଧୀରେ ଧୀରେ ଆକାଶରେ ଉଠୁଥିବାର ଦୃଶ୍ୟ ମନକୁ ତନ୍ମୟ କରିଦେଲା । ଭୂତଳରେ ରହି ଦିଗ୍‌ବଳୟ ଦେଖିବା ଓ ସାତସହସ୍ର ଫୁଟ ଊର୍ଦ୍ଧ୍ୱରେ ରହି ଦିଗ୍‌ବଳୟ ଦେଖିବା ମଧ୍ୟରେ ପାର୍ଥକ୍ୟ ଅନୁଭବ କରିବା କଷ୍ଟକର ହେଲା ନାହିଁ । ସେଦିନ ଉଷାର ସେହି ଦିଗ୍‌ବଳୟ ଥିଲା ସୀମାହୀନ ଦୂରଦୂରାନ୍ତର ସୁବିମଳ ଦିଗ୍‌ବଳୟ ।

ନିମିଷ ପରେ ନିମିଷ ବିତିଯାଉଥାଏ । ସେଥି ସଙ୍ଗେ ସମସ୍ତଙ୍କର ଉତ୍କଣ୍ଠା ବଢ଼ିଉଠୁଥାଏ ସୂର୍ଯ୍ୟୋଦୟ ମୁହୂର୍ତ୍ତ ପ୍ରତି । କିନ୍ତୁ ତା ପୂର୍ବରୁ ଅରୁଣୋଦୟର ପ୍ରାକ୍କାଳରେ ସହସା ଦେଖାଗଲା ପଶ୍ଚିମ ଆକାଶମଣ୍ଡଳ ଉପରେ ଏକ ଆଶ୍ଚର୍ଯ୍ୟଜନକ ଦୃଶ୍ୟ । ପଶ୍ଚିମ ଚକ୍ରବାଳ ପର୍ଯ୍ୟନ୍ତ ବ୍ୟାପିଯାଇଥାଏ ଆଦାମଶୃଙ୍ଗର ସୁଦୀର୍ଘ ଛାୟା । ବୋଧହୁଏ, ବାୟୁମଣ୍ଡଳରେ ରହିଥିବା ଜଳକଣା ଓ ଧୂଳିକଣାର କୁହେଳି ସଦୃଶ ଧଳା ଆବରଣ ଉପରେ ଶୃଙ୍ଗର କଳାଛାଇ ପଡ଼ିବା ଥାଏ ଗୋଟିଏ ପ୍ରାକୃତିକ ବ୍ୟାପାର । କିନ୍ତୁ ସମବେତ ଭକ୍ତମାନଙ୍କ ହର୍ଷଧ୍ୱନିରୁ ସୂଚିତ ହେଲା ସେମାନଙ୍କର ପ୍ରଚଳିତ ଧର୍ମୀୟ ବିଶ୍ୱାସ— ସେହି ଛାୟା ହେଉଛି ସ୍ୱୟଂ ପରମପିତା ପରମେଶ୍ୱରଙ୍କ ଛାୟା !!

ତେଣେ ପୂର୍ବ ଦିଗ୍‌ବଳୟ ଉଜ୍ଜ୍ୱଳ ଆକାର ଧାରଣ କଲା । କେତେଦୂର ପର୍ଯ୍ୟନ୍ତ ଆଖି ପଡୁଥାଏ, ତାହା କଳନା କରିବା କଷ୍ଟକର । ଦେଖୁଁ ଦେଖୁଁ, ସୂର୍ଯ୍ୟଙ୍କର ପ୍ରଥମ ରଶ୍ମିରେଖା ଚକ୍ରବାଳ ଉପରେ ଆକାଶ ଭେଦ କରି ଊର୍ଦ୍ଧ୍ୱକୁ ଉଠିଲା । ତାହା ଥିଲା ଏକ ଅଭୂତପୂର୍ବ ଦୃଶ୍ୟ । ସୂର୍ଯ୍ୟୋଦୟ ତ ଜନ୍ମକାଳରୁ ଦେଖିବାକୁ ମିଳେ । କିନ୍ତୁ ସ୍ଥାନର ଉଚ୍ଚତା ଓ ଦିଗନ୍ତରେଖାର ଦୂରତ୍ୱ ଯୋଗୁଁ ଆଦାମ ଶୃଙ୍ଗ ଶୀର୍ଷରୁ ଦେଖିଥିବା ସୂର୍ଯ୍ୟୋଦୟ ଜୀବନରେ ଅନ୍ୟତ୍ର କେଉଁଠାରେ ଦେଖିନାହିଁ । ନିର୍ମଳ ନୀଳ ଆକାଶ ସେହି ସୂର୍ଯ୍ୟୋଦୟ ଶୋଭାକୁ ଦ୍ୱିଗୁଣିତ କରିଥାଏ । ଗୋଲାକାର ରବିର ପ୍ରଥମ ବଳୟାଂଶ ଆକାଶ ଭେଦ କଲାବେଳକୁ ତାହାର ଆକାର ଅନେକ ବଡ଼ ଦିଶୁଥାଏ । ନିମିଷ ମଧ୍ୟରେ ପୃଥିବୀର ପୂର୍ବସୀମାନ୍ତରେ ରକ୍ତମନ୍ଦାର ରଙ୍ଗର ଗୋଲାକାର ଜ୍ୟୋତିର୍ମୟ ସୂର୍ଯ୍ୟର ଆବିର୍ଭାବ ଦେଖି ବୌଦ୍ଧମାନେ ମସ୍ତକ ଅବନତ କଲେ । କେତୋଟି ମୁହୂର୍ତ୍ତ ନିସ୍ତବ୍ଧତା ଖେଳିଗଲା । ସୂର୍ଯ୍ୟ ଆକାଶକୁ ଉଠିବାକୁ ଲାଗିଲେ । ଦିଗ ଦିଗନ୍ତ ଆଲୋକିତ ହେଲା । ଆଦାମଶୃଙ୍ଗରୁ ଦେଖା ଯାଉଥାଏ ବହୁ ଦୂରବର୍ତ୍ତୀ ସ୍ଥାନଗୁଡ଼ିକର ପାହାଡ଼ ପର୍ବତ, ଅରଣ୍ୟାନୀ ଓ ନଦୀ ଉପତ୍ୟକାର ଅସ୍ପଷ୍ଟ ଦୃଶ୍ୟମାନ । ଯାତ୍ରୀମାନେ ତଳକୁ ଚାଲିଲେ । ପୂର୍ବ ଆକାଶରେ ମେଘମାଳାର

ଆବିର୍ଭାବ ଦେଖାଗଲା । ଦୀର୍ଘଶ୍ୱାସ ତ୍ୟାଗ କରି ମୁଁ ରାସ୍ତା ଧରିଲି । ଜାଣିପାରିଥିଲି, ସେହି ରାତ୍ରି ଓ ପ୍ରଭାତର ଦୃଶ୍ୟ ଆଉ କେବେ ଦେଖିବାକୁ ମିଳିବ ନାହିଁ ।

ପର୍ବତ ତଳେ ଛାତ୍ରମାନେ ଅପେକ୍ଷା କରିଥିଲେ । ଯେଉଁମାନେ କୃତିତ୍ୱର ଗୌରବ ସହ ଫେରିଲେ, ସେମାନେ ଅନ୍ୟମାନଙ୍କୁ ଧିକ୍କାର ଦେଲେ । ବୌଦ୍ଧ ଯାତ୍ରୀମାନେ ଶ୍ରାନ୍ତ କ୍ଲାନ୍ତ ଅବସ୍ଥାରେ ଏଣେ ତେଣେ ଶୋଇପଡ଼ିଲେ । କିନ୍ତୁ ସର୍ବତ୍ର ପ୍ରାର୍ଥନା ଲାଗିରହିଥାଏ । ଆମେ ବାସ୍‌ରେ ବସିଲୁଁ । ଫେରିବା ପଥରେ କେତେଗୋଟି ଛୋଟ ସହର ଦେଖି ଅପରାହ୍ନରେ କଲମ୍ବୋ ଠାରେ ପହଞ୍ଚିଲାବେଳକୁ ବିଜୟ ସିଂହ ଅପେକ୍ଷା କରିଥାନ୍ତି । ତାଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରି ମୁଁ କହିଥିଲି, "ଆଦାମ ଶୃଙ୍ଗ ଜୀବନରେ ଚିରସ୍ମରଣୀୟ ରହିବ । ସେଥିସଙ୍ଗେ ଆପଣଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ମନେ ରଖିବି ।"

ମୋର ଅନୁରୋଧକ୍ରମେ ସେ ମୋତେ ସିଂହଳ ଇତିହାସ ଉପରେ ଲିଖିତ ପୁସ୍ତକଗୁଡ଼ିକର ଗୋଟିଏ ତାଲିକା ଆଣି ଦେଇଥିଲେ । ପ୍ରାଚୀନ ଓ ମଧ୍ୟଯୁଗୀୟ ସିଂହଳ ସହିତ କଳିଙ୍ଗର ସମ୍ପର୍କ ବିଷୟରେ ଅନେକ ତଥ୍ୟ ମିଳିବ ଜାଣି ସେଥି ସମ୍ବନ୍ଧରେ କିଛି ଲେଖିବା ଲାଗି ସଂକଳ୍ପ ନେଲି । ପରବର୍ତ୍ତୀ ସମୟରେ ସେହି ବିଷୟରେ ସନ୍ଦର୍ଭମାନ ରଚନା କରି ମୋର ସିଂହଳ ଯାତ୍ରା ସଫଳ କରିଥିଲି । ୧୯୭୦ ମସିହାରେ ଅଷ୍ଟ୍ରେଲିଆର ରାଜଧାନୀ କାନବେରା ସହରରେ ଅନୁଷ୍ଠିତ ପ୍ରାଚ୍ୟବିଦ୍ୟାବିତ୍ ସମ୍ମେଳନରେ ସେହି ବିଷୟକ ସନ୍ଦର୍ଭ ପାଠ କରିବା ନିମନ୍ତେ ନିମନ୍ତ୍ରଣ ପାଇଥିଲି ।

ସିଂହଳ ଓ ଦକ୍ଷିଣଭାରତ ଭ୍ରମଣ ଶେଷ କରି ବାଲେଶ୍ୱର କଲେଜରେ ଫେରି ପହଞ୍ଚି ଅଧ୍ୟକ୍ଷ ଘନଶ୍ୟାମ ଦାଶଙ୍କୁ ଧନ୍ୟବାଦ ଦେଲି ।

## ଅଧ୍ୟାପକ ଓ ଅଧ୍ୟକ୍ଷମାନଙ୍କ କଥା

ସ୍ୱାଧୀନତା ପୂର୍ବେ ଓଡ଼ିଶାରେ କଲେଜ ବୋଇଲେ କେବଳ ରେଭେନ୍‌ସା କଲେଜ ବୁଝାଉଥାଏ । ପାରଳାଖେମୁଣ୍ଡି ଠାରେ ଆଉ ଗୋଟିଏ କଲେଜ ଥାଏ । ସ୍ୱାଧୀନତାର ଅବ୍ୟବହିତ ପୂର୍ବେ ଓ ତା ପରେ କେତେଗୋଟି ନୂତନ କଲେଜ ସ୍ଥାପିତ ହେଲା । କଲେଜସଂଖ୍ୟା ବଢ଼ିଲାବେଳକୁ ଅଧ୍ୟାପକସଂଖ୍ୟା ମଧ୍ୟ ବଢ଼ିଲା । ତଦ୍ୱାରା, ଭାରତର ଅନ୍ୟ ସ୍ଥାନରୁ ବିଦ୍ୱାନ ବ୍ୟକ୍ତିମାନେ ଓଡ଼ିଶା ଶିକ୍ଷା ବିଭାଗରେ ଅଧ୍ୟାପକରୂପେ ଯୋଗ ଦେବାଲାଗି ସୁଯୋଗ ପାଇଲେ ।

ମୁଁ ଫକୀରମୋହନ କଲେଜରେ ଥିଲାବେଳେ, ପୂର୍ବବଙ୍ଗରୁ ଚାଲିଆସିଥିବା କ୍ଷିତୀଶଚନ୍ଦ୍ର ଦେବ ଓ ହୀରାଲାଲ ଦେବନାଥ, କାଶ୍ମୀର ଉପତ୍ୟକାରୁ ଚାଲିଆସିଥିବା

ମୋହନଲାଲ ମୁଞ୍ଜୁ, ଆନ୍ଧ୍ର ଅଞ୍ଚଳର ଆର.ସୁବ୍ବାରାଓ ଓ କେ.ଭି.ରାଓ ସେଠାରେ ଅଧ୍ୟାପକ ଥିଲେ । ଅଧ୍ୟକ୍ଷ ବି.ଏନ.ରୋହାତଗି ଥିଲେ ଜଣେ ବିହାରୀ । ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରେ ଥିଲେ ରାମଚନ୍ଦ୍ର ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପଟ୍ଟନାୟକ, ଦୟାନିଧି ମହାପାତ୍ର, କ୍ଷେତ୍ରମୋହନ ପଟ୍ଟନାୟକ, କ୍ଷୀରୋଦଚନ୍ଦ୍ର ପଟ୍ଟନାୟକ, ସିଦ୍ଧେଶ୍ୱର ହୋତା, କୁଞ୍ଜବିହାରୀ ଦାଶ, ଶ୍ରୀରାମଚନ୍ଦ୍ର ଦାଶ, ବିକ୍ରମ ଜେନା, ତ୍ରିଲୋଚନ ମିଶ୍ର,ଜୟକୃଷ୍ଣ ମିଶ୍ର, ଜାନକୀବଲ୍ଲଭ ମହାନ୍ତି ଓ ନବକିଶୋର ମିଶ୍ର ଇତ୍ୟାଦି । ଅଧ୍ୟାପକମାନଙ୍କ ସର୍ବମୋଟ ସଂଖ୍ୟା ଥିଲା ପ୍ରାୟ ୨୫ । ମୁଁ ଚାକିରିରେ ଯୋଗଦେଲାବେଳେ ଜଣେ ଲେକ୍‌ଚାରରଙ୍କ ମାସିକ ଦରମା ଥାଏ ମାତ୍ର ୧୨୫ ଟଙ୍କା । କିଛିଦିନ ପରେ ତାହା ୨୦୦ ଟଙ୍କାକୁ ବୃଦ୍ଧି ପାଇଥିଲା । ଅଥଚ ଟଙ୍କାର କ୍ରୟଶକ୍ତି ବେଶି ଥିବାଯୋଗୁଁ ସେତିକି ବେତନରେ ସ୍ୱାଚ୍ଛନ୍ଦ୍ୟରେ ଚଳି ହେଉଥାଏ । ସେ ସମୟର ଅଧ୍ୟାପକମାନଙ୍କ ପ୍ରତି ଛାତ୍ରମାନଙ୍କର ଭକ୍ତି ଏବଂ ନାଗରିକମାନଙ୍କ ସମ୍ମାନ ବିଷୟ ଭାବିଲେ ମନକୁ ଗର୍ବ ଆସେ । ଧାରଣା ଥାଏ, ଅଧ୍ୟାପକମାନେ ନିଶ୍ଚୟ ଜ୍ଞାନୀ ବ୍ୟକ୍ତି । ଆନୁଷ୍ଠାନିକ ଉତ୍ସବରେ କିମ୍ବା ସଭାସମିତିରେ ସେମାନଙ୍କୁ ଯଥାଯୋଗ୍ୟ ମର୍ଯ୍ୟାଦା ମିଳୁଥାଏ । ରାଜନୈତିକ ନେତା ଓ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀମାନେ ସେମାନଙ୍କୁ ଅକୁଣ୍ଠ ସମ୍ମାନ ଜଣାଉଥାନ୍ତି ।

ଫକୀରମୋହନ କଲେଜରେ ପାଞ୍ଚବର୍ଷ ଚାକିରିକାଳ ମଧ୍ୟରେ ଚାରିଜଣ ଅଧ୍ୟକ୍ଷଙ୍କ ଅଧୀନରେ କାମ କରିଥିଲି । ସେମାନେ ଥିଲେ ଭୈରବନାଥ ରୋହାତଗି, ଘନଶ୍ୟାମ ଦାଶ, ଭି.ଭି.ଜନ୍ ଓ ପି.ଏସ୍.ସୁନ୍ଦରାମ୍ । ରେଭେନ୍‌ସାରେ ପଢ଼ିବାବେଳେ ଏମାନେ ସମସ୍ତେ ଥିଲେ ଭିନ୍ନ ଭିନ୍ନ ବିଷୟରେ ମୋର ଅଧ୍ୟାପକ । ତେଣୁ, ମୋ ପକ୍ଷରେ କୌଣସି ଅଧ୍ୟକ୍ଷଙ୍କୁ ଭୟ କରିବାର କାରଣ ନଥାଏ । ଅପର ପକ୍ଷରେ, ପ୍ରତ୍ୟେକଙ୍କୁ ସାହାଯ୍ୟ କରିବା ଥାଏ ନିଜର ନୈତିକ କର୍ତ୍ତବ୍ୟ । ଘନଶ୍ୟାମ ଦାଶ ଅଧ୍ୟକ୍ଷ ଥିଲାବେଳେ ଥରେ ଛାତ୍ରମାନେ ଧର୍ମଘଟ କଲେ । ସେମାନଙ୍କ ନେତା ଥିଲେ ଶ୍ୟାମସୁନ୍ଦର ମହାପାତ୍ର । ଭବିଷ୍ୟତରେ ନେତା ହେବାକୁ ହେଲେ ଛାତ୍ରଜୀବନରୁ ବିଶୃଙ୍ଖଳା ସୃଷ୍ଟି ଓ ବିକ୍ଷୋଭ ପ୍ରଦର୍ଶନ ପ୍ରଭୃତି ନେତୃତ୍ୱ କୌଶଳରେ ତାଲିମ ନେବା ଆବଶ୍ୟକ ବୋଲି ବୋଧହୁଏ ଶ୍ୟାମବାବୁ ଜାଣିଥିଲେ । ଇଂରେଜ ଅଧ୍ୟାପକଙ୍କ ବିରୋଧରେ ଛାତ୍ରଜୀବନରେ ଲଢ଼ିଥିଲେ ବୋଲି ତ ସୁଭାଷଚନ୍ଦ୍ର ବୋଷ ଦିନେ ନେତାଜୀ ହୋଇପାରିଲେ ! ଗାନ୍ଧିଯୁଗର ଅନେକ ବଡ଼ ବଡ଼ ନେତା ସେମାନଙ୍କ ଛାତ୍ରଜୀବନରେ ନିଜ ନିଜ ସଂଗଠନଶକ୍ତିର ପରିଚୟ ଦେବାକୁ କ୍ଷମ ହେଲା ପରେ ସିନା ଉପରକୁ ଉଠିଥିଲେ ! ସୁତରାଂ, ସ୍ୱାଧୀନତା ପରେ ମଧ୍ୟ ଛାତ୍ରନେତାମାନେ ପାଠପଢ଼ିବା ଅପେକ୍ଷା କର୍ତ୍ତୃପକ୍ଷଙ୍କ ମୁକାବିଲା କରିବା କାମକୁ ଅଧିକ ଗୁରୁତ୍ୱ ଦେଲେ ।

କେତେଗୁଡ଼ିଏ ଦାବିକୁ କେନ୍ଦ୍ରକରି ଅଧ୍ୟକ୍ଷଙ୍କ ବିରୋଧରେ ଶ୍ୟାମସୁନ୍ଦର ଛିଡ଼ା ହେଲେ । କିଛି ଦିନ ପାଇଁ ଆନ୍ଦୋଳନ ଚାଲିଲା । ଘନଶ୍ୟାମବାବୁ ଥିଲେ ମୋର ଶିକ୍ଷକ, ତେଣେ ଶ୍ୟାମ ମୋର ଛାତ୍ର । ତେଣୁ, ସଂକଟରେ ପଡ଼ିଲି । ଧର୍ମଘଟକୁ ତୀବ୍ରତର କରିବା ଲାଗି କଟକରୁ ଅଖିଳମୋହନ ପଟ୍ଟନାୟକ ପ୍ରମୁଖ ଛାତ୍ରନେତାମାନେ ଆସିଗଲେ । ବାଲେଶ୍ୱରର ବିଶିଷ୍ଟ କଂଗ୍ରେସନେତା କରୁଣାକର ପାଣିଗାହୀ ନିଜର ଲୋକପ୍ରିୟତା ବୃଦ୍ଧି ନିମନ୍ତେ ଛାତ୍ରମାନଙ୍କୁ ସମର୍ଥନ ଦେଲେ । ମୁଁ ଅଧ୍ୟକ୍ଷଙ୍କୁ ସମର୍ଥନ କରୁଥିବାରୁ ମୋତେ ସେ 'Public Enemy No.1' ବୋଲି ପ୍ରକାଶ୍ୟରେ ଘୋଷଣା କଲେ । ସେପରି ବ୍ୟକ୍ତିଙ୍କୁ ପାନେ ଶିକ୍ଷା ଦେବାପାଇଁ ଘନଶ୍ୟାମବାବୁଙ୍କୁ ପରାମର୍ଶ ଦେଲି ଯେ, ଛାତ୍ରମାନଙ୍କ ବଡ଼ ବଡ଼ ଦାବିଗୁଡ଼ିକ ସରକାର ପୂରଣ କରିବା କଥା ଏବଂ ତେଣୁ ଯେଉଁ ନେତାମାନେ ନିଆଁରେ ଘିଅ ଢାଳୁଛନ୍ତି, ସେହିମାନଙ୍କର ଗୋଟିଏ କମିଟି ଗଠନ କରି ଶିକ୍ଷାମନ୍ତ୍ରୀଙ୍କୁ ଭେଟିବା ଲାଗି ସେମାନଙ୍କୁ ଦାୟିତ୍ୱ ଦେଇଦିଅନ୍ତୁ । କଲେଜ ଓ ହଷ୍ଟେଲ ପାଇଁ ନୂଆ ବିଲ୍ଡିଂ ହେବ କି ନାହିଁ, ସେକଥା ପାଣିଗ୍ରାହୀ ମହୋଦୟ ଉଚ୍ଚସ୍ତରରେ ଠିକ୍ କରନ୍ତୁ । ଛୋଟ ଛୋଟ ଦାବିଗୁଡ଼ିକ ଅଧ୍ୟାପକମାନେ ବିଚାର କରିବେ ବୋଲି ଘୋଷଣା କରନ୍ତୁ । ଶେଷରେ ଅଧ୍ୟକ୍ଷ ତାହାହିଁ କଲେ । ଘର୍ମଘଟ ସମାପ୍ତ ହେଲା । ଶ୍ୟାମସୁନ୍ଦର ମହାପାତ୍ରଙ୍କ ପାଇଁ ରାଜନୈତିକ ସୋପାନ ସେହି ସମୟରୁ ଖୋଲା ରହିଲା ।

କିଛିଦିନ ପରେ, କରୁଣାକରବାବୁ ସରକାରଙ୍କୁ ଧରାଧରି କରି ଫକୀରମୋହନ କଲେଜରୁ ଅଧ୍ୟାପକ ଶ୍ରୀରାମଚନ୍ଦ୍ର ଦାଶଙ୍କୁ ଜୟପୁର କଲେଜକୁ ବଦଳି କରାଇଲେ ଓ ଅଧ୍ୟକ୍ଷ ଘନଶ୍ୟାମ ଦାଶଙ୍କୁ ରେଭେନ୍ସା କଲେଜକୁ । କଲେଜଗୁଡ଼ିକରେ ରାଜନୈତିକ ହସ୍ତକ୍ଷେପର ଦିନକାଳ ସେତେବେଳକୁ ଆସି ଯାଇଥାଏ ।

ନୂତନ ଅଧ୍ୟକ୍ଷ ଭାବରେ ଆସିଲେ ଭି.ଭି.ଜନ୍ । ତାଙ୍କ ପରି ଉଦାର ବ୍ୟକ୍ତିଙ୍କ ଅଧୀନରେ କାର୍ଯ୍ୟ କରିବା ଥିଲା ପ୍ରକୃତରେ ଗୋଟିଏ ଆନନ୍ଦ । ଏ ବିଷୟରେ ଗୋଟିଏ ଦୃଷ୍ଟାନ୍ତ ଦେଉଛି । ଦିନେ କଲେଜ ଛୁଟି ହେବା ସମୟରେ ମୋତେ ଅଫିସକୁ ଡାକି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଦୀର୍ଘ ରିପୋର୍ଟଟିଏ ଲେଖି ତହିଁପରଦିନ ୧୦ଟା ବେଳେ ଦାଖଲ କରିବାକୁ ଆଦେଶ ଦେଲେ । ଅଳ୍ପସମୟ ମଧ୍ୟରେ ସେପରି ରିପୋର୍ଟ ଲେଖିବା ସମ୍ଭବ ନୁହେଁ ବୋଲି ଜାଣି ମୁଁ ଅନିଚ୍ଛା ପ୍ରକାଶ କଲି । ସେଥିଲେ ବିରକ୍ତ ହୋଇ ସେ କହିଲେ, "Try to know how to obey."ନିଜର ରାଗ ଚାପିରଖି ମୁଁ ବାହାରି ଆସିଲି ଓ ଅନ୍ୟମାନଙ୍କୁ କହିଲି, "ଅଧ୍ୟକ୍ଷ ହେଲେ ବୋଲି ଅଧ୍ୟାପକମାନଙ୍କୁ ମନ ଇଚ୍ଛା ହୁକୁମ ଦେବେ !"

ସନ୍ଧ୍ୟାପରେ ବିମର୍ଷ ମନରେ ନିଜ କୋଠରିରେ ବସି ଲେଖିପାରିବି କି ନାହିଁ ଚିନ୍ତା କରୁଥିଲି । କବାଟରେ ମୃଦୁ ଆଘାତ ଶୁଣି ଫିଟାଇଲାବେଳକୁ ଆଗରେ ଭି.ଭି.ଜନ୍ । ଘରଭିତରକୁ ପଶିଆସି ଚେୟାରରେ ବସି ହସି ହସି କହିଲେ, ''କାଗଜ ବାହାର କର । ମୁଁ ରିପୋର୍ଟ ଡକାଇଦେବି ।'' ଦୁଇଘଣ୍ଟା ସମୟ ବସିରହି ସେ ସମ୍ପୂର୍ଣ୍ଣ ଲେଖାଟି ସୁନ୍ଦରଭାବରେ ଡକାଇଦେଲେ । ଗଲାବେଳେ କହିଲେ, ''କଲେଜରେ ମୁଁ ତୁମର ଅଧ୍ୟକ୍ଷ, ବାହାରେ ପୂର୍ବପରି ତୁମର ଶିକ୍ଷକ ।'' ଜନ୍ ସାହେବ ପରବର୍ତ୍ତୀ ସମୟରେ ରାଜସ୍ଥାନର ଜୟପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ଓ ପରେ ଭାରତ ସରକାରଙ୍କ 'ସଂଖ୍ୟାଲଘୁ କମିସନ'ର ସଦସ୍ୟ ।

ତାଙ୍କ ପରେ ଅଧ୍ୟକ୍ଷ ହୋଇ ଆସିଲେ ପି.ଏସ୍. ସୁନ୍ଦରାମ୍ । ପ୍ରଥମରୁ ତାଙ୍କ ସହିତ ମୋର ମନୋମାଳିନ୍ୟ ଲାଗିରହିଲା । ମୋ ସାନଭାଇ ସେତେବେଳେ କଲେଜଛାତ୍ର । ବାମପନ୍ଥୀ ଛାତ୍ରନେତା ଭାବେ ତା'ର ପ୍ରଭାବ ଥାଏ । ଛାତ୍ରସଂସଦର କର୍ମକର୍ତ୍ତାମାନେ ତା' ପ୍ରତି ଅନୁରକ୍ତ ଥିଲେ । ତେଣୁ, ଅଧ୍ୟକ୍ଷ ମହୋଦୟ ମନୋଜକୁ ସନ୍ଦେହ ଚକ୍ଷୁରେ ଦେଖିବା ସହ ମୋ ପ୍ରତି ଅସନ୍ତୁଷ୍ଟ ରହିଲେ । ସାମାନ୍ୟ ସାମାନ୍ୟ ବିଷୟରେ ମତପାର୍ଥକ୍ୟ ଦେଖାଦେଲା । ଥରେ ସେ ନୋଟିସ୍ ଦେଲେ, ରବିବାର ଦିନ ଛାତ୍ର ଓ ଅଧ୍ୟାପକମାନେ ମିଳିତଭାବରେ କଲେଜ ପଡ଼ିଆରେ ଗୁଗୁଚିଆ ଘାସ ଉପାଡ଼ି ସମାଜସେବାର ପରିଚୟ ଦେବେ । ମୁଁ ପ୍ରତିବାଦ କଲି ଯେ ସମାଜସେବା ନିମନ୍ତେ ଛାତ୍ରଶକ୍ତିକୁ ବଡ଼ ବଡ଼ କାମରେ ଲଗାଇବା ଉଚିତ, ଯଥା: ହସପିଟାଲ ପରିସର ଓ ନାଳନର୍ଦ୍ଦମା ପରିଷ୍କାର, ଗଳି ବସ୍ତିରେ ରାସ୍ତା ସଫେଇ, କିମ୍ବା ଅସ୍ୱାସ୍ଥ୍ୟକର ସ୍ଥାନରୁ ଆବର୍ଜନା ନିଷ୍କାସନ ଇତ୍ୟାଦି । ମୋ କଥା ଶୁଣି ସେ କ୍ରୋଧାନ୍ୱିତ ହେଲେ । ସତକୁ ସତ, ତାଙ୍କ ଗୁଗୁଚିଆ ଉପାଡ଼ିବା କାମ ଲାଗି ସଂବାଦପତ୍ରରେ ବିଦ୍ରୂପାତ୍ମକ ସମାଲୋଚନା ବାହାରିଲା ।

ଆଉ ଥରେ, ମନ୍ତ୍ରୀ ସୋନାରାମ ସୋରେନ କଲେଜକୁ ଆସିବା କାର୍ଯ୍ୟକ୍ରମ ଥାଏ । ସେ ଥିଲେ ସୁନ୍ଦରାମଙ୍କ ଛାତ୍ର । ଫୁଲତୋଡ଼ା ହାତରେ ଧରି ମନ୍ତ୍ରୀମହୋଦୟଙ୍କୁ କଲେଜ ଗେଟ୍ ପାଖରେ ସ୍ୱାଗତ କରିବା ଲାଗି ଅଧ୍ୟକ୍ଷ ପ୍ରସ୍ତୁତ ହେବା ଦେଖି ମୁଁ ପ୍ରତିବାଦ କଲି । କହିଲି, ''ମନ୍ତ୍ରୀ ଆପଣଙ୍କର ଛାତ୍ର । ତାଙ୍କୁ ରିସିଭ୍ କରିବା ପାଇଁ ଆପଣ ଛିଡ଼ା ହୋଇ ରହିବା ଶୋଭନୀୟ ହେବ ନାହିଁ । ଆମେମାନେ ତାଙ୍କୁ ସ୍ୱାଗତ କରି ନେଇଆସିବୁଁ ।'' ସେଥିରେ ସେ ରାଜି ହେଲେ ନାହିଁ । ନିଜେ ଯାଇ ଗେଟ ପାଖରେ ଛିଡ଼ା ହେଲେ । ବର୍ଷା ହେଉଥାଏ । ମନ୍ତ୍ରୀଙ୍କ ଗାଡ଼ି ଗେଟ୍ ପାଖରେ ନରହି ସିଧା ଅଫିସ ପାଖକୁ ଚାଲିଆସିଲା । ସୁନ୍ଦରାମ୍ ବର୍ଷାରେ ଭିଜି ଭିଜି ଗେଟ୍ ପାଖରୁ ଦୌଡ଼ିଆସିଲାବେଳେ କେହି କେହି ଛାତ୍ର

ହସିଲେ । ଅନ୍ୟ ଅଧ୍ୟାପକମାନେ ମନ୍ତ୍ରୀଭକ୍ତିର ପରାକାଷ୍ଠା ଦେଖାଇବା ଲାଗି ଗେଟ୍ ପାଖକୁ ନ ଯିବା ଦ୍ୱାରା ଅଧ୍ୟକ୍ଷଙ୍କ ମନରେ କ୍ଷୋଭ ଆସିଲା ଓ ସେଥିପାଇଁ ବୋଧହୁଏ ମୋତେ ଦାୟୀ କଲେ । ଅବଶ୍ୟ, ସେ ଫାଟକ ପାଖକୁ ଯାଉଥିଲାବେଳେ ମୁଁ ଅଧ୍ୟାପକବନ୍ଧୁମାନଙ୍କୁ କହିଥିଲି, "ନିଜର ଆତ୍ମସମ୍ମାନ ବିସର୍ଜନ ଦେଇ କ୍ଷମତାସୀନ ମନ୍ତ୍ରୀମାନଙ୍କୁ ମାତ୍ରାଧିକ ସମ୍ମାନ ଜଣାଇବା ଶିକ୍ଷକଗୋଷ୍ଠୀ ପକ୍ଷରେ କଦାପି ଉଚିତ ନୁହେଁ । ଅଧ୍ୟାପକମାନେ ଜିଲ୍ଲାମାଜିଷ୍ଟ୍ରେଟ୍ ବା ପୋଲିସ୍‌ସାହେବ ନୁହନ୍ତି ।" କେହି ଜଣେ ବନ୍ଧୁ ମୋ କଥାଟି ଅଧ୍ୟକ୍ଷଙ୍କୁ କହିଦେଲେ । ଦିନକ ପରେ ମୋତେ ଲକ୍ଷ୍ୟକରି ସୁନ୍ଦରାମ କହିଥିଲେ, "I stood at the gate not to receive a student, but to receive an Hon'ble Minister. That is official etiquette." ।

ଏହିପରି ଆଉ କେତେଗୁଡ଼ିଏ ବିଷୟରେ ମତପାର୍ଥକ୍ୟ ଯୋଗୁଁ ଠିକ୍ କଲି, ବାଲେଶ୍ୱର କଲେଜରୁ ବଦଳି ହୋଇ ପୁରୀ କଲେଜକୁ ଚାଲିଯିବି । ଏପରିବେଳେ ସୁନ୍ଦରାମ୍ ନିଜେ ଦାରୁଣ ଅସୁବିଧାରେ ପଡ଼ିଲେ । ଗୋଟିଏ ସଭାରେ ସେ ହିନ୍ଦୁ ମନ୍ଦିରଗୁଡ଼ିକରେ ପ୍ରଚଳିତ ଥିବା କେତେକ ପ୍ରଥାର କଟୁ ସମାଲୋଚନା କରିବା ଫଳରେ ବାଲେଶ୍ୱର ସହରର କେତେଜଣ ବରିଷ୍ଠ ନାଗରିକ ତାଙ୍କ ବିରୋଧରେ ଅଦାଲତରେ ମୋକଦ୍ଦମା ଦାୟେର କଲେ । ତାଙ୍କର ସେହି ବିପଦବେଳେ ମୁଁ ଅଭିଯୋଗକାରୀମାନଙ୍କ ସହିତ କଥାବାର୍ତ୍ତା କରି ସମସ୍ୟାର ସମାଧାନ କରିବାକୁ ସମର୍ଥ ହେଲି । ସୁନ୍ଦରାମ୍‌ଙ୍କୁ ବାରମ୍ବାର କୋର୍ଟକୁ ଯିବାକୁ ପଡ଼ିଥିଲା । କିନ୍ତୁ ଶେଷରେ ମୋକଦ୍ଦମା ଉଠାଇ ନିଆଗଲା ।

ସେତେବେଳକୁ ମୁଁ ପୁରୀ ବଦଳି ହେବାଲାଗି ଡି.ପି.ଆଇ.ଙ୍କୁ ଅନୁରୋଧ କରିସାରିଥିଲି ଏବଂ ଗ୍ରୀଷ୍ମଛୁଟି ମଧ୍ୟରେ ସେ ବଦଳି ଆଦେଶ ଦେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଥିଲେ । ତେଣେ, ସୁନ୍ଦରାମ୍ 'ଓଡ଼ିଶା ପାବ୍ଲିକ୍ ସାର୍ଭିସ୍ କମିଶନ୍'ର ସଦସ୍ୟ ରୂପେ ନିଯୁକ୍ତି ପାଇ ବାଲେଶ୍ୱରରୁ ବିଦାୟ ନେଲେ । ଅଥଚ, ମୁଁ ମୋ ବଦଳି ରଦ୍ଦ କରିବା ପାଇଁ ଉଦ୍ୟମ କଲି ନାହିଁ ।

ପରବର୍ତ୍ତୀ ସମୟରେ ପି.ଏସ୍. ସୁନ୍ଦରାମ୍‌ଙ୍କ ସହିତ କଟକରେ ଦେଖା ହେଲେ ସେ ମୋତେ ଯଥେଷ୍ଟ ଶ୍ରଦ୍ଧା ଦେଖାଉଥାନ୍ତି । ଯେଉଁ ଛାତ୍ର ମନୋଜ ପ୍ରତି ଏକଦା ତାଙ୍କର ବିରକ୍ତିଭାବ ଥାଏ, ସେହି ମନୋଜ ସାହିତ୍ୟିକ ଭାବେ ପ୍ରସିଦ୍ଧି ଲାଭ କଲାପରେ ଥରେ ଭାଷଣ ଦେବାଲାଗି ବୋମ୍ବେ ଯାଇଥାଏ । ସେହି ତାତ୍ତ୍ୱିକ ସଭାରେ ବୃଦ୍ଧ ସୁନ୍ଦରାମ୍ ଉପସ୍ଥିତ ଥାଆନ୍ତି । ସଭା ପରେ ସେ ମନୋଜଙ୍କୁ ନିଜ ଘରକୁ ଡାକିନେଇ ରାତ୍ରି ଭୋଜନରେ ଆପ୍ୟାୟିତ କରିଥିଲେ । ତା'ପରେ,

ମନୋଜ ଦ୍ୱାରା ସମ୍ପାଦିତ ହେଉଥିବା ଇଂରାଜୀ ମାସିକ ପତ୍ରିକା 'Heritage'ରେ ସେ ତାଙ୍କର ପ୍ରବନ୍ଧମାନ ପ୍ରକାଶ କରାଉଥିଲେ । ଜୀବନକାଳ ମଧ୍ୟରେ କିଏ କେତେବେଳେ ଅନ୍ୟ କାହାକୁ ଭୁଲ୍ ବୁଝିବା ଅଥବା ଭଲ ନ ପାଇବା ହେଉଛି ଗୋଟିଏ ସ୍ୱାଭାବିକ ବ୍ୟାପାର, କିନ୍ତୁ ସେହିପ୍ରକାର ସାମୟିକ ମନୋଭାବ ଯେ ସବୁଦିନ ପାଇଁ ସ୍ଥାୟୀ ହୁଏ ନାହିଁ, ଏହା ମଧ୍ୟ ଏକ ସ୍ୱାଭାବିକ ସତ୍ୟ ।

## ବାଲେଶ୍ୱରରୁ ବିଦାୟ

୧୯୫୩ ମସିହା ଜୁଲାଇମାସରେ ଫକୀରମୋହନ କଲେଜରୁ ବିଦାୟ ନେଲି । ଯେଉଁ ଅଧ୍ୟାପକ ଓ ନାଗରିକମାନଙ୍କ ସହିତ ନିବିଡ଼ ସମ୍ପର୍କ ରହିଆସିଥିଲା, ସେମାନଙ୍କ ପାଖରୁ ଚାଲିଆସିବା ଦୁଃଖଦାୟକ ଥିଲା । କିନ୍ତୁ, ଚାକିରିକାଳରେ ସ୍ଥାନରୁ ସ୍ଥାନାନ୍ତର ହେବା ହେଉଛି ଗୋଟିଏ ପ୍ରକାର ନିୟମ । ନିଜ ଇଚ୍ଛାରେ ପୁରୀ ପରି ଏକ ରମଣୀୟ ସ୍ଥାନ ଓ ପବିତ୍ର ତୀର୍ଥସ୍ଥଳକୁ ଯାଉଥିବାରୁ ମନକୁ ଆନନ୍ଦ ଆସୁଥାଏ ।

ବାଲେଶ୍ୱରରେ ଥିଲା ସମୟରେ 'କଳିଙ୍ଗ ଇତିହାସ', 'ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା' ଏବଂ 'ଭାରତ ସଂବିଧାନର ସାରାଂଶ' ନାମରେ ତିନିଖଣ୍ଡି ବହି ଲେଖିଥିଲି । ଲେଖିବା ପାଇଁ ଅଭିଜ୍ଞତା ଆସି ନଥାଏ । କେବଳ ଆଗ୍ରହ ବଳରେ ଲେଖିଥିଲି । ସେଗୁଡ଼ିକ ଲେଖି ନଥିଲେ କିଛି କ୍ଷତି ହୋଇ ନଥାନ୍ତା । କିନ୍ତୁ ପ୍ରଥମରୁ ଲେଖିବାକୁ ଅଭ୍ୟାସ କରି ନଥିଲେ ଆଗାମୀ ସମୟରେ ଲେଖିବା ଲାଗି ସାମର୍ଥ୍ୟ ଆସି ନଥାନ୍ତା । ସେହି ସମୟରେ, ମେଟ୍ରିକ୍ୟୁଲେସନ ପିଲାଙ୍କ ପାଇଁ ଲେଖିଥିବା ଖଣ୍ଡିଏ ପାଠ୍ୟପୁସ୍ତକ 'ଭାରତ ଇତିହାସ' ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁମୋଦିତ ହୋଇ ସାରା ଓଡ଼ିଶାରେ ଚଳୁଥିଲା । ପୁରୀଠାରେ ଜଗନ୍ନାଥଙ୍କ ସମ୍ପର୍କରେ ଗବେଷଣା କରିବି ବୋଲି ଆଶାନ୍ୱିତ ହୋଇ ସାମନ୍ତ ଚନ୍ଦ୍ରଶେଖର କଲେଜକୁ ଚାଲିଲି ।

# ପୁରୀ ସାମନ୍ତଚନ୍ଦ୍ରଶେଖର କଲେଜରେ ଅଧ୍ୟାପନା (୧୯୫୩–୫୪)



## ଲଣ୍ଡନଯାତ୍ରା ଲାଗି ପ୍ରସ୍ତୁତି

### ପୁରୀ ଅବସ୍ଥାନ ସମୟର କେତୋଟି ଘଟଣା

ଥରେ କୌଣସି ଏକ ଇଂରାଜୀ ପତ୍ରିକାରେ ପୁରୀ ଜିଲ୍ଲା ବିଷୟରେ ଏହି ବାକ୍ୟଟି ଲେଖିଥିଲି : "Orissa without Puri is like Greece without Athens or Italy without Rome."ପ୍ରକୃତପକ୍ଷେ, ଓଡ଼ିଶାର ସାଂସ୍କୃତିକ ମାନଚିତ୍ରରୁ ଯଦି ପୁରୀ ଜିଲ୍ଲାକୁ ଅପସାରଣ କାରାଯିବ, ତେବେ ଧର୍ମ,ଦର୍ଶନ,ସ୍ଥାପତ୍ୟ, କଳା,ଭାସ୍କର୍ଯ୍ୟ ଓ ଆଧ୍ୟାତ୍ମିକତା ଦୃଷ୍ଟିରୁ ଉତ୍କଳ ଖଣ୍ଡମଣ୍ଡଳ ଯେ ଦରିଦ୍ର ସୂଚିତ ହେବ, ଏଥିରେ ସନ୍ଦେହ ନାହିଁ । ଭାରତର ସାଂସ୍କୃତିକ ଇତିହାସରେ ମଧ୍ୟ ପୁରୀର ମହତ୍ତ୍ୱ ଓ ମର୍ଯ୍ୟାଦା ତାତ୍ପର୍ଯ୍ୟପୂର୍ଣ୍ଣ । ସେପରି ସ୍ଥାନରେ ଅବସ୍ଥାନ କରିବା ସୌଭାଗ୍ୟର ବିଷୟ ବୋଲି ଭାବିନେଇଥିଲି ।

ଚକ୍ରତୀର୍ଥ ନିକଟରେ 'ବେ ଭିଉ' ନାମକ ହୋଟେଲରେ ରହି ବସାଘରଟିଏ ଖୋଜିବାକୁ ଲାଗିଲି । ସମୁଦ୍ରର ବେଳାଭୂମି ନିକଟରେ କେତେ ପ୍ରକାର ପ୍ରକାଣ୍ଡ ପ୍ରକାଣ୍ଡ ଅଟ୍ଟାଳିକା ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଥାଏ । ଓଡ଼ିଶା ଓ ବାହାରର ରାଜା, ଜମିଦାରମାନେ ସେହିସବୁ ଘର ନିର୍ମାଣ କରିଥିଲେ, କିନ୍ତୁ ଦୀର୍ଘକାଳ ପାଇଁ ସେଥିରେ ରହିପାରି ନଥିଲେ । ସମୁଦ୍ରର ଲୁଣି ପବନରେ ପକ୍କାସୌଧର ଯେଉଁ ଦ୍ରୁତ ଅବକ୍ଷୟ ଘଟୁଥାଏ, ସେଥିରୁ ସେଗୁଡ଼ିକୁ ରକ୍ଷା କରିବା ବୋଧହୁଏ ସମ୍ଭବ ନଥାଏ । ଘରଗୁଡ଼ିକ ଦେଖି ମନେ ହେଉଥାଏ, କେତେଦିନ ବା ମନୁଷ୍ୟର ବାସସ୍ଥାନ, କେତେଦିନ ତାହାର ସ୍ଥାୟିତ୍ୱ ? ଅଧ୍ୟାପକ କାହ୍ନୁଚରଣ ମିଶ୍ରଙ୍କ ଦୟାରୁ ଶେଷରେ ବସାଘରଟିଏ ପାଇଲି । ସେ ଜଣେ ପରୋପକାରୀ ବ୍ୟକ୍ତି ଓ ମୋର ହିତୈଷୀ ବନ୍ଧୁ ଭାବେ ଅନେକ ବିଷୟରେ ସାହାଯ୍ୟ କଲେ ।

'ବେ ଭିଉ' ହୋଟେଲରେ ଥିଲାବେଳେ ଦିନକର କଥା । 'ଜଗନ୍ନାଥ ଧର୍ମ' ବିଷୟରେ ଗବେଷଣା କରିବା ଆଶା ନେଇ ପ୍ରଥମେ ପଣ୍ଡିତ ସଦାଶିବ ରଥଶର୍ମାଙ୍କ

ସହିତ ସାକ୍ଷାତ କରିବି ବୋଲି ତାଙ୍କ ପାଖକୁ ଜଣେ ଛାତ୍ରଙ୍କୁ ପଠାଇଲି । ଫେରିଆସି ଛାତ୍ରଟି ଖବର ଦେଲେ, ପଣ୍ଡିତମହାଶୟ ଆପଣଙ୍କ ହୋଟେଲ ଆଗରେ ଥିବା ଅଟ୍ଟାଳିକାକୁ ସନ୍ଧ୍ୟାବେଳେ ଆସିବେ, ଏବଂ ସେଠାରେ ଶାସ୍ତ୍ରପାଠ ଶେଷ କରି ଆପଣଙ୍କୁ ଭେଟିବେ । ସନ୍ଧ୍ୟା ହେଲା । ତାଙ୍କୁ ପାଛୋଟି ଆଣିବାକୁ ସମୁଦ୍ର କୂଳର ସେହି ନିର୍ଦ୍ଦିଷ୍ଟ କୋଠା ଆଗରେ ଅପେକ୍ଷା କଲି । କିଛି ସମୟ ପରେ ଦେଖିଲି, କୋଠାର ଫାଟକ ଆଡ଼କୁ ବାହାରିଆସିଲେ ପାଞ୍ଚଜଣ ସୁନ୍ଦରୀ ବଙ୍ଗୀୟା ତରୁଣୀ । ସେମାନଙ୍କ ବେଶଭୂଷା ଚମକପ୍ରଦ ଥିଲା । ସେମାନେ ସମୁଦ୍ର କୂଳରେ ବୁଲିବାକୁ ଚାଲିଲେ । କିଛି ସମୟ ପରେ ବାହାରି ଆସିଲେ ପଣ୍ଡିତ ରଥଶର୍ମା । ପରିଚୟ ଦେଇ ମୋ ହୋଟେଲକୁ ନେଇଗଲି । ସେ କହିଲେ, ''ଆପଣ ବୋଧହୁଏ ସେହି ଝିଅମାନଙ୍କୁ ଦେଖି କ'ଣ ଭାବିଥିବେ !''

ତା'ପରେ ବର୍ଣ୍ଣନା କଲେ ଯେଉଁ ବଙ୍ଗାଳୀ ଲକ୍ଷପତିଙ୍କୁ ସେ ଧର୍ମତତ୍ତ୍ୱ ଶୁଣାଇବାକୁ ଆସନ୍ତି, ତାଙ୍କର ଅଦ୍ଭୁତ ବିଶ୍ୱାସ କଥା । ତାନ୍ତ୍ରିକ ଗୁରୁଙ୍କ ପାଖରୁ ସେ ଶିକ୍ଷା ପାଇଛନ୍ତି ଯେ, ଦୈହିକ କାମନା ବାସନାର ମୋହ ଓ ଇନ୍ଦ୍ରିୟାସକ୍ତି ଭିତରେ ବୁଡ଼ି ରହି ମୋକ୍ଷର ସନ୍ଧାନ କରିବା ହେଉଛି ଗୋଟିଏ କଠିନ ସାଧନା । ସେଥିପାଇଁ ସେ ତରୁଣୀମାନଙ୍କୁ ସଂଗ୍ରହ କରି କିଛିଦିନ ପାଇଁ ଆସିଛନ୍ତି । ''ସାକୀମାନଙ୍କ ହାତରୁ ସୁରାପାନ କରନ୍ତି । ମୋ ପାଖରୁ ତତ୍ତ୍ୱଜ୍ଞାନ ଶୁଣନ୍ତି । କିଛି ପଇସା ମିଳୁଛି । ଶାସ୍ତ୍ରପାଠ କରିବାକୁ ଆସୁଛି ।'' ରଥଶର୍ମାଙ୍କ ମୁଖରୁ ଅନେକ କଥା ଶୁଣିଲି । ଶ୍ରୀକ୍ଷେତ୍ର ଏପରି ଏକ ପୀଠ, ଯେଉଁଠାକୁ ନିଷ୍କାମ ସାଧୁ ସନ୍ନ୍ୟାସୀ, କାପାଳିକ, ତନ୍ତ୍ରସାଧକ, ଶାକ୍ତ, ପରମ ବୈଷ୍ଣବ, ତତ୍ତ୍ୱଜ୍ଞାନୀ ଓ ଭିନ୍ନ ଭିନ୍ନ ମତାବଲମ୍ବୀ କେଉଁ ଅଜ୍ଞାତ ଅତୀତରୁ କ୍ରମାଗତଭାବେ ଆସୁଛନ୍ତି । ଅସଂଖ୍ୟ ଯାତ୍ରୀ ଆସନ୍ତି ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ । କିନ୍ତୁ ପୁରୀଧାମର ପ୍ରଚ୍ଛନ୍ନ ପାତାଳ ଦେଶରେ ଯେ କେତେ ପ୍ରକାର ଦର୍ଶନ ଓ ନିଗୂଢ଼ ତତ୍ତ୍ୱର ଭଣ୍ଡାରଘର ରହିଛି, ତାହା କଳନାତୀତ । ରଥଶର୍ମା ସେଦିନ କହିଥିଲେ, ପୁରୀର ମନ୍ଦିର ଓ ମଠଗୁଡ଼ିକରେ ରହିଥିବା ଅସଂଖ୍ୟ ତାଳପତ୍ରପୋଥିରେ ଯେ କେତେ ପ୍ରକାର ଜ୍ଞାନ ବିଜ୍ଞାନର ବିବରଣୀ ରହିଛି, ତାହା ଚିନ୍ତା କରିବା କଷ୍ଟକର ।

ପଣ୍ଡିତମହାଶୟ ମୋତେ ପୁରୀର ବିଭିନ୍ନ ସ୍ଥାନ ମଧ୍ୟେ ମଧ୍ୟେ ବୁଲାଇ ଦେଖାଇଲେ । ଜିଲ୍ଲାର କେତେକ ଦୂରବର୍ତ୍ତୀ ସ୍ଥାନକୁ ମଧ୍ୟ ସାଙ୍ଗରେ ଗଲୁଁ । ରଘୁନନ୍ଦନ ଲାଇବ୍ରେରୀରେ ପଢ଼ାପଢ଼ି କରିବା ଲାଗି ସୁବିଧା କରିଦେଲେ । ସେଥିସଙ୍ଗେ ଜଣାଇଲେ ଯେ, ଜଗନ୍ନାଥ ଧର୍ମ ଉପରେ ଗବେଷଣା କରିବା ସହଜ ବ୍ୟାପାର ନୁହେଁ । ''କେବଳ ମନ୍ଦିରର ଇତିହାସ ଉପରେ ଆଲୋକପାତ କଲେ ଆପଣଙ୍କ

ପରିଶ୍ରମ ସାର୍ଥକ ହେବ । ଧର୍ମ,ତତ୍ତ୍ୱ ଓ ଦର୍ଶନ ଇତ୍ୟାଦି ଜାଣିବାକୁ ସାରା ଜୀବନକାଳ ବି ଯଥେଷ୍ଟ ନୁହେଁ ।''

ଦିନେ ସନ୍ଧ୍ୟାବେଳେ ପଣ୍ଡିତ ରଥଶର୍ମା ମୋତେ ପୁରୀର ଗଜପତି ରାଜା ରାମଚନ୍ଦ୍ରଦେବଙ୍କ ଉଆସକୁ ନେଇଗଲେ । ରାଜାଙ୍କୁ ପ୍ରଣାମ ଜଣାଇ ମୁଁ ଚେୟାରରେ ବସିଲି । କିନ୍ତୁ ସେ ରାଜାଙ୍କ ପାଦତଳେ ଚଟାଣ ଉପରେ ଚିତ୍‌ହୋଇ ଶୋଇ ରହିଲେ । ଗଜପତିଙ୍କ ଆଦେଶ ମାନି ଉଠିଲେ ସତ, କିନ୍ତୁ କଥାବାର୍ତ୍ତା ଶେଷ ହେଲା ପର୍ଯ୍ୟନ୍ତ ହାତ ଯୋଡ଼ି ଛିଡ଼ା ରହିଲେ । ତାଙ୍କର ରାଜଭକ୍ତି ଦେଖି ଜାଣିପାରିଲି, କର୍ପୂର ଉଡ଼ିଯାଇଥିଲେ ସୁଦ୍ଧା କନାଟିର ସୁଗନ୍ଧ ରହିଆସିଛି । ଯେତେ ହେଲେ, ଜନମାନସରେ ଗଜପତି ରାଜା ଏବେ ମଧ୍ୟ 'ଚଳନ୍ତି ବିଷ୍ଣୁ' । ବୃଦ୍ଧ ରାଜାଙ୍କର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଥାଏ । ଚିଲମରୁ ଲାଗିଥିବା ଲମ୍ବ ନଳୀ ଦେଇ ଧୂମ୍ରପାନ କଲାବେଳେ ତାଙ୍କର କ୍ରମାଗତ କାଶିବା ଦେଖି ଦୁଃଖ ହେଲା । ଯେଉଁ ଆଲୋଚନା ଉଦ୍ଦେଶ୍ୟରେ ଯାଇଥିଲି, ସେଥିରୁ ବିରତ ରହିଲି ।

ଅନ୍ୟ ଏକ ସନ୍ଧ୍ୟାରେ ରଥଶର୍ମା ମୋତେ ଏମାର ମଠର ମହନ୍ତ ମହାରାଜଙ୍କ ନିକଟକୁ ନେଇଗଲେ । ଆସର ଉପରେ ଭଜନ ଚାଲିଥାଏ । ମହନ୍ତ ମହାରାଜ ଶେଯ ଉପରେ ବସିଥାନ୍ତି । ତାଙ୍କୁ ଉଠାଇବା ଓ ବସାଇବା ଲାଗି ଦୁଇଜଣ ସେବକ ନିଯୁକ୍ତ ଥିଲେ । ପାଶ ମୋଡ଼ିବା ପାଇଁ ମଧ୍ୟ ଶକ୍ତି ନଥାଏ । ସେପରି ପୃଥୁଳକାୟ ବ୍ୟକ୍ତିଙ୍କୁ କ୍ୱଚିତ ଦେଖିବାକୁ ମିଳେ ।

ଦିନେ ଏମାରମଠର ଉପର ତାଲାରେ ସି.ଡ଼ି. ଦେଶମୁଖଙ୍କୁ ସମ୍ବର୍ଦ୍ଧନା ଦେବାଲାଗି ବିଶିଷ୍ଟ ବ୍ୟକ୍ତିମାନେ ଏକତ୍ରିତ ହେଲେ । ପଣ୍ଡିତ ରଥଶର୍ମା କାଚବନ୍ଧାଇ ପୁରାତନ ଦସ୍ତାବିଜ୍‌ଟିଏ ମୋତେ ଦେଖାଇ କହିଲେ, ''ଏହା ହେଉଛି ଚନ୍ଦନ ହଜୁରୀଙ୍କ ନିକଟକୁ ଝାନସିରାଣୀ ଲକ୍ଷ୍ମୀବାଇଙ୍କ ଲିଖିତ ପତ୍ର ।'' ସେହି ପତ୍ରର ଗୁରୁତ୍ୱ ବିଷୟ ବର୍ଣ୍ଣନା କରି ଦେଶମୁଖଙ୍କୁ ଦେଖାଇବା ନିମନ୍ତେ ମୋତେ ସେ ଅନୁରୋଧ କଲେ । ଦେଶମୁଖ ଆସନ ଗ୍ରହଣ କଲାପରେ ମୁଁ ୧୮୫୭ ମସିହାର ପ୍ରଖ୍ୟାତ ଭାରତୀୟ ବିଦ୍ରୋହ ବିଷୟ ଉଲ୍ଲେଖ କରି ଝାନ୍‌ସିରାଣୀଙ୍କ ପତ୍ରଖଣ୍ଡିକ ତାଙ୍କ ହାତରେ ଅର୍ପଣ କଲି । ଦେଶମୁଖ ଭାବବିହ୍ୱଳ ଭାବରେ ତାହାକୁ ମୁଣ୍ଡରେ ଲଗାଇଲେ ଓ ଅଶ୍ରୁପୂର୍ଣ୍ଣ ନୟନରେ କହିଲେ, ''ଝାନ୍‌ସି ରାଣୀଙ୍କ ସ୍ୱହସ୍ତଲିଖିତ ପତ୍ର ସ୍ପର୍ଶ କଲାବେଳେ ଦେହରେ ଶିହରଣ ଆସୁଛି ।'' ଅବଶ୍ୟ, ପରବର୍ତ୍ତୀ ସମୟରେ ସେହି ପତ୍ରଟିର ସତ୍ୟତା ଉପରେ ବାଦାନୁବାଦ ଚାଲିଲା । ହରେକୃଷ୍ଣ ମହତାବଙ୍କ ପାଖରୁ ମୁଁ ଗାଳି ଶୁଣିଲି ।

## ଉତ୍ତରଭାରତ ଭ୍ରମଣ

ବାଲେଶ୍ୱର କଲେଜରେ ଥିଲାବେଳେ ଛାତ୍ରମାନଙ୍କୁ ନେଇ ଦକ୍ଷିଣଭାରତ ଓ ସିଂହଳ ଯାଇଥିଲି । ପୁରୀ କଲେଜରେ ଅଧ୍ୟାପନା କାଳରେ ୧୯୫୩ ମସିହା ପୂଜାଛୁଟିରେ ଅଧ୍ୟକ୍ଷ ଏମ.ଏ.ଜନ ୧୫ ଜଣ ଛାତ୍ରଙ୍କୁ ନେଇ ଉତ୍ତରଭାରତ ଭ୍ରମଣ ଲାଗି ମୋତେ ପଠାଇଲେ । ସେହି ଅବକାଶରେ କଲିକତା, ଗୟା, ବୁଦ୍ଧଗୟା, ବାରାଣସୀ, ସାରନାଥ, ଆଗ୍ରା, ଫତେପୁରସିକ୍ରୀ, ମଥୁରା, ବୃନ୍ଦାବନ ଓ ଦିଲ୍ଲୀ ବୁଲିବା ଲାଗି ସୁଯୋଗ ମିଳିଲା । ଆଗାମୀ ଦିନରେ ଏହିସବୁ ସ୍ଥାନକୁ ବାରମ୍ବାର ଯିବାକୁ ପଡ଼ିଛି । କିନ୍ତୁ ପ୍ରଥମ ଥର ଲାଗି ଗୋଟିଏ ନୂତନ ସ୍ଥାନ ଦେଖିଲାବେଳେ ଯେଉଁପ୍ରକାର ଆନନ୍ଦ ମିଳିଥାଏ, ସେହିସ୍ଥାନ ପୁଣି ଥରେ ଦେଖିଲାବେଳକୁ ସେପରି ଆନନ୍ଦ ମିଳି ନଥାଏ ।

ଭବିଷ୍ୟତରେ କାଶ୍ମୀର ପାଖରୁ କୁମାରିକା ଅନେକ ସ୍ଥାନ ବୁଲି ଦେଖିବାକୁ ସୁବିଧା ପାଇଥିଲି । ଭାରତଭୂମିରେ ଯେତେ ଦର୍ଶନୀୟ ସ୍ଥାନ ଦେଖିଲେ ମଧ୍ୟ, ତାହାର ଶେଷ ନଥାଏ । ଏ ବହିରେ ନିଜ ଦେଶ ମଧ୍ୟରେ ଦେଖିଥିବା ଜାଗାଗୁଡ଼ିକର ବର୍ଣ୍ଣନା କରିବି ନାହିଁ, ଲେଖିବି ବିଦେଶ ଭ୍ରମଣର କାହାଣୀ । ଏତିକି କଥା ଉଲ୍ଲେଖ କରୁଛି, ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ଦଶନ୍ଧିରେ ଭାରତର ଯେଉଁ ସ୍ଥାନମାନ ଦେଖିଥିଲି, ସେହିସବୁ ସ୍ଥାନ ପରବର୍ତ୍ତୀ ସମୟରେ ଦେଖିଲାବେଳକୁ ଆକାଶ ପାତାଳ ପ୍ରଭେଦ ଲକ୍ଷ୍ୟ କରି ହେଉଥାଏ । ବୋଧଗୟା ଓ ସାରନାଥ ପ୍ରଭୃତି ପବିତ୍ର ପୀଠ ସେତେବେଳେ ନିର୍ଜନ ଓ ନିଃଶବ୍ଦ ପରିବେଶ ମଧ୍ୟରେ ଶୋଭା ପାଉଥାଏ । ସତେଯେପରି ପ୍ରାକୃତିକ ସୌନ୍ଦର୍ଯ୍ୟଭରା ସେହି ସ୍ଥାନଗୁଡ଼ିକ ଆଧ୍ୟାତ୍ମିକ ଚେତନା ନିମନ୍ତେ ମନୁଷ୍ୟକୁ ଆହ୍ୱାନ କରୁଥାଏ । ଅଧୁନା ସେଗୁଡ଼ିକ ଜନାକୀର୍ଣ୍ଣ ଓ କୋଳାହଳମୟ । ଦୋକାନ ବଜାର, ତିବ୍ବତୀୟ ଶରଣାର୍ଥୀମାନଙ୍କ ଆଶ୍ରୟଗୃହ ଓ ପର୍ଯ୍ୟଟକମାନଙ୍କ ପାଇଁ ପାନ୍ଥନିବାସ ଓ ହୋଟେଲ ଇତ୍ୟାଦିରେ ପରିପୂର୍ଣ୍ଣ ଅବସ୍ଥାରେ ଆଜିର ବୋଧଗୟା ଓ ସାରନାଥ ନିଜତ୍ୱ ହରାଇ ବସିଛି । ସମୟର ଗତିପଥରେ ବିଗତ ଦିନର ପବିତ୍ରତା ଚିରଦିନ ଲାଗି ବିଲୀନ ହୋଇଯାଇଛି ।

## ବିଲାତଯାତ୍ରା ପାଇଁ ପ୍ରସ୍ତୁତି

ସ୍ୱାଧୀନତା ପରେ ଉଚ୍ଚଶିକ୍ଷାର ପ୍ରସାରଲାଭ ସଙ୍ଗେ ଉଚ୍ଚତର ଡିଗ୍ରୀ ପାଇଁ ଅଧ୍ୟାପକ ମହଲରେ ଆଲୋଡ଼ନ ସୃଷ୍ଟି ହେଲା । ବିଦେଶରୁ ପିଏଚ୍.ଡି.ଡିଗ୍ରୀ ହାସଲ ନକଲେ ଚାକିରିରେ ପ୍ରମୋସନ ଓ ପ୍ରଫେସର ପଦ ମିଳିବ ନାହିଁ ବୋଲି ସମସ୍ତେ ଜାଣିଲେ । ଓଡ଼ିଶା ସରକାର ମଧ୍ୟ ବୃତ୍ତି ଦେଇ ପ୍ରଥମ କିସ୍ତିରେ

ରେଭେନ୍‌ସା କଲେଜର କେତେଜଣ ବରିଷ୍ଠ ଅଧ୍ୟାପକଙ୍କୁ ବିଲାତ ପଠାଇଲେ । ସେମାନଙ୍କ ମଧ୍ୟରେ ଥାନ୍ତି ସଦାଶିବ ମିଶ୍ର ଓ ବଂଶୀଧର ସାମନ୍ତରାୟ ।

କ୍ରମେ କ୍ରମେ ତରୁଣ ପିଢ଼ିର ଅଧ୍ୟାପକମାନେ ବିଦେଶ ଯିବାକୁ ଆଶା ବାନ୍ଧିଲେ । ତେଣେ, ଅଧ୍ୟାପକ ଶ୍ରେଣୀରେ ଦୁଇଟି ଗୋଷ୍ଠୀ ରହିଛି ବୋଲି କେହି କେହି କହିଲେ, ଯଥା ବିଲାତିମାର୍କା ଓ ଦେଶୀ ମାର୍କା । ଥରେ ଅଧ୍ୟାପକ ଶ୍ରୀରାମ ଚନ୍ଦ୍ର ଦାଶ ଗୋଟିଏ ଗପ କହିଥିଲେ । ତାହା ଥିଲା, ଦିନେ ରେଭେନ୍‌ସା କଲେଜର ଚାରିଜଣ ଅଧ୍ୟାପକଙ୍କ ପତ୍ନୀମାନେ ଏକତ୍ର ବସି ତାସ ଖେଳୁଥିଲାବେଳେ ଜଣେ ମହିଳା ଅନ୍ୟଜଣଙ୍କୁ ପଚାରିଲେ, ‘‘ତମ ହଜ୍‌ବେଣ୍ଡ୍ ଫରେନ୍ ଯାଇଥିଲେ ?’’ ଉତ୍ତରରେ ‘ନା’ ଶୁଣି ସେ ତତ୍‌କ୍ଷଣାତ୍ ତାସ ଖେଳ ବନ୍ଦ କରି ତାଚ୍ଛିଲ୍ୟ ସହ ଉଠି ଚାଲିଗଲେ । ଅପମାନିତା ମହିଳା ଜଣକ ଘରକୁ ଫେରିଆସି ସ୍ୱାମୀଙ୍କ ଆଗରେ କାନ୍ଦି କାନ୍ଦି କାକୁତି ଜଣାଇଲେ, ‘‘ତୁମେ ଯଦି ବିଦେଶ ନ ଯିବ, ମୁଁ ଖାଇବା ପିଇବା ଛାଡ଼ିଦେବି ।’’ ଅଗତ୍ୟା, ସ୍ତ୍ରୀହତ୍ୟା ପାପରୁ ରକ୍ଷା ପାଇବା ଲାଗି ସ୍ୱାମୀ ଟଙ୍କା କରଜ କରି ବିଲାତ ଧାଇଁଲେ । ଶ୍ରୀରାମବାବୁ ଆଉ ଥରେ ବର୍ଣ୍ଣନା କଲେ, ‘‘ବିଲାତ ଫେରନ୍ତାମାନେ ଖରାପ ପଢ଼ାଇଲେ ମଧ୍ୟ ପିଲାମାନେ ଭଲ କହିବେ, ଅନ୍ୟମାନେ ଭଲ ପଢ଼ାଇଲେ ବି ଖରାପ ।’’

ଥରେ କଲିକତା ବିଶ୍ୱବିଦ୍ୟାଳୟକୁ ଯାଇଥିଲି । ସେଠାରେ ବିଦେଶୀମାର୍କା ଓ ସ୍ୱଦେଶୀମାର୍କା ଅଧ୍ୟାପକମାନଙ୍କ ମଧ୍ୟରେ ଥିବା ଜାତିଭେଦ କଥା ଶୁଣିବାକୁ ପାଇଲି । ପ୍ରବାଦ ଶୁଣିଲି, କୌଣସି ଜଣେ ଅଧ୍ୟାପକ କ୍ଲାସରେ ଲେକ୍‌ଚାର ଆରମ୍ଭ ପୂର୍ବରୁ ପ୍ରତ୍ୟେକ ଥର ପ୍ରଥମ ବାକ୍ୟଟି ଉଚ୍ଚାରଣ କରୁଥିଲେ, ‘‘When I was in London.... ।’’ ତାଙ୍କର ସେହି ବଦ ଅଭ୍ୟାସକୁ ଈର୍ଷାନ୍ୱିତ ସହକର୍ମୀମାନେ କହୁଥିଲେ‘‘Colonial mentality.’’ ।

ଏ ସମ୍ପର୍କରେ ନିଜର ଗୋଟିଏ ପ୍ରତ୍ୟକ୍ଷ ଅନୁଭୂତି କଥା କହୁଛି । ମୁଁ ଲଣ୍ଡନରେ ପଢୁଥିଲାବେଳେ ମୋ ବସାରେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଜଣେ ମଧ୍ୟବୟସ୍କ ଡାକ୍ତର ଅଧ୍ୟାପକ ହଠାତ୍ ଯାଇ ହାଜର ହେଲେ ଓ କହିଲେ, ‘‘ମୁଁ ଏମ୍.ଆର.ସି.ପି.ପଢ଼ିବାକୁ ଆସିଛି । ଏଡମିଶନ ପାଇଁ ଆଗରୁ ଦରଖାସ୍ତ କରିନାହିଁ । ଆପଣଙ୍କ ସାହାଯ୍ୟ ଦରକାର ।’’ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହେଲି । ସେ ବର୍ଣ୍ଣନା କଲେ, ତାଙ୍କ ଶ୍ୱଶୁର ନିଜେ ହେଉଛନ୍ତି ମେଡିକାଲ କଲେଜର ପ୍ରିନ୍‌ସିପାଲ । ଦିନେ କ୍ଲାସ୍ ପରିଦର୍ଶନ କଲାବେଳେ ଦେଖିଲେ ତାଙ୍କ ଜାମାତା ପାଞ୍ଚ ମିନିଟ ବିଳମ୍ବରେ କ୍ଲାସକୁ ଯାଉଛନ୍ତି । ସଙ୍ଗେ ସଙ୍ଗେ ଛାତ୍ରମାନଙ୍କ ଆଗରେ ତାଙ୍କୁ କହିଦେଲେ, ‘‘ତୁମେ ଇଂଲଣ୍ଡରେ ପଢ଼ିଥିଲେ ପଙ୍କ୍‌ଚୁଆଲିଟି କ’ଣ

ଶିଖିଥାନ୍ତ ।'' ସେତିକି ଭର୍ତ୍ସନାରେ ଆତ୍ମାଭିମାନୀ ଜାମାତା ଅଧ୍ୟାପକ ଅବିଳମ୍ବେ ପାଶ୍‌ପୋର୍ଟ୍ ଯୋଗାଡ଼ କରି ସିଧା ଲଣ୍ଡନ ଚାଲିଆସିଲେ । ଅଧ୍ୟାପକ ମହୋଦୟଙ୍କ ପ୍ରକମ୍ପିତ ଓଠ ଦୁଇଟିରୁ ତାଙ୍କ କ୍ରୋଧ ପ୍ରକଟିତ ହୋଇଉଠୁଥାଏ ।

ଏ ସବୁ ଲେଖିବାର ଅର୍ଥ, ସେ ସମୟରେ ବିଲାତି ଡିଗ୍ରୀଧାରୀ ଅଧ୍ୟାପକମାନଙ୍କର ଗୋଟିଏ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲା । ଅବଶ୍ୟ, ଏହି ମର୍ଯ୍ୟାଦାବାନ୍‌ମାନେ ରେଭେନସା କଲେଜରେ କେନ୍ଦ୍ରୀଭୂତ ଥିଲେ, କାରଣ ସେଠାରେ ପୋଷ୍ଟଗ୍ରାଜୁଏଟ୍ ବିଭାଗଗୁଡ଼ିକ ରହିଥାଏ । ଆଣ୍ଡାର-ଗ୍ରାଜୁଏଟ୍ କଲେଜଗୁଡ଼ିକରେ ବିଦେଶ ଯିବା ମୋହ ପ୍ରାୟ ନଥାଏ । ସେ ଯାହା ହେଉ, ୧୯୫୪ ଆରମ୍ଭରେ ଶୁଣିଲି, ଅଧ୍ୟାପକ ବିଦ୍ୟାଧର ମିଶ୍ର ଓ ଗଣେଶ୍ୱର ମିଶ୍ର ଲଣ୍ଡନ ଗଲେଣି ଏବଂ ଶ୍ରୀରାମଚନ୍ଦ୍ର ଦାଶ ଗଲେଣି ବାର୍ଲିନ୍ । ସେମାନେ ମୋ ଠାରୁ ବୟସରେ ବଡ଼ ଓ ଚାକିରିରେ ସିନିଅର । ସରକାରୀ ଟଙ୍କାରେ ବା ନିଜ ଖର୍ଚ୍ଚରେ ପଢ଼ିବାକୁ ଗଲେ, ସେ କଥା ଜାଣିପାରିଲି ନାହିଁ । ଅଥଚ, ବିଦେଶ ଯିବା ଲାଗି ଅସ୍ଥିର ହେଲି । ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା ବିଭାଗର ମୁଖ୍ୟଙ୍କ ନିକଟକୁ ମୋର 'କଳିଙ୍ଗ ଇତିହାସ' ବହିଟିକୁ ପଠାଇଲି ଓ ସେଠାରେ ପିଏଚ.ଡି. ପଢ଼ିବା ନିମନ୍ତେ ଆବେଦନ ଜଣାଇଲି । ଉତ୍ତର ଆସିଲା, ସ୍ଥାନ ମିଳିବ ।

ସନ୍ଧାନରୁ ଜାଣିଲି, ଜଳଜାହାଜରେ ଯିବା ଆସିବା ପାଇଁ ୩ ହଜାର ଟଙ୍କା ବ୍ୟତୀତ ସେଠାରେ ଦୁଇବର୍ଷ ପଢ଼ିବା ଓ ରହିବା ଖର୍ଚ୍ଚ ହେବ ୨୦ ହଜାର ଟଙ୍କା । ସେତେବେଳେ ଏତେଗୁଡ଼ିଏ ଟଙ୍କାର ମୂଲ୍ୟ ଅନେକ ଥାଏ । ଉଚ୍ଚ ଶିକ୍ଷା ନିମନ୍ତେ ବୃତ୍ତି ପାଇଁ ସରକାରୀ ସ୍ତରରେ ଉଦ୍ୟମ କରିବାକୁ ଇଚ୍ଛା ହେଲା ନାହିଁ । ଅପର ପକ୍ଷରେ, ଟଙ୍କା ଚିନ୍ତାରେ ବିବ୍ରତ ହେଲି । ସେହିପରି ବେଳେ ବାପା ପୁରୀ ଆସିଲେ । ଅଧ୍ୟାପକ କାହ୍ନୁଚରଣ ମିଶ୍ର ବାପାଙ୍କୁ ଟଙ୍କାକଥା କହିବେ ବୋଲି ଭରସା ଦେଲେ । ଦିନେ ସନ୍ଧ୍ୟାବେଳେ ମୋ ବସାରେ ପହଞ୍ଚି କାହ୍ନୁବାବୁ ବାପାଙ୍କୁ ଭେଟିଲେ । କବାଟ ବାହାରେ ଲୁଚିରହି ଉଭୟଙ୍କ କଥାବାର୍ତ୍ତା ଶୁଣିଲି । ଅଧ୍ୟାପକ ମିଶ୍ର ନିଜ ବାକ୍‌ଚାତୁରୀ ବଳରେ ପିଏଚ.ଡି.ପାଠର ତାତ୍ତ୍ୱିକ ମହତ୍ତ୍ୱ ଏପରି ପ୍ରାଞ୍ଜଳ ଭାବରେ ବଖାଣିଗଲେ ଯେ, ସତେଯେପରି ସେହି ବିଦ୍ୟା ବିନା ନା ମିଳିବ ପ୍ରକୃତ ଜ୍ଞାନ, ନା ମିଳିବ ପ୍ରଫେସର ପଦ ।

କାହ୍ନୁବାବୁଙ୍କ ମନ୍ତ୍ର କାମ ଦେଲା । ସେ ଚାଲିଗଲା ପରେ ବାପା ଖୁସିମନରେ ମୋତେ ବିଲାତଯିବା ଖର୍ଚ୍ଚ ଦେବେ ବୋଲି କହିଲେ । ସେତେବେଳେ ତାଙ୍କ ପାଖରୁ ଗୋଟିଏ ମଜା କଥା ଶୁଣିଥିଲି । ମୋ ବଡ଼ ମାମୁଁ କାଳୀକିଙ୍କର ସାମଲ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏସ୍‌ସି.ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ

ଅଧିକାର କଲାପରେ ବିଲାତ ଯିବାପାଇଁ ବ୍ୟାକୁଳ ହୋଇ ଆମର ଜଣେ ଧନଶାଳୀ ବନ୍ଧୁଙ୍କ ଘରେ ଟଙ୍କା କରଜ କରିବା ଲାଗି ଦ୍ୱାରସ୍ଥ ହେଲେ । ଲକ୍ଷପତି ବନ୍ଧୁ ସେତେବେଳେ ଜଣାଇଥିଲେ, ''ମୁଁ 'ବ' ବର୍ଗର ଲୋକଙ୍କ ସହିତ ଟଙ୍କା କାରବାର କରେ ନାହିଁ । 'ବ' ବର୍ଗର ଅର୍ଥ ହେଲା ବ୍ରାହ୍ମଣ, ବୈଷ୍ଣବ ଓ ବନ୍ଧୁ । ବ୍ରାହ୍ମଣଙ୍କୁ ଧାର ଫେରସ୍ତ ମାଗିଲେ ସେ ଟଙ୍କା ପରିବର୍ତ୍ତେ ଅଭିଶାପ ଦିଅନ୍ତି; ବୈଷ୍ଣବ ଦରିଦ୍ର ଯୋଗୁଁ ଋଣ ପରିଶୋଧ ନ କରି ଆଖିରୁ ଲୁହ ଗଡ଼ାନ୍ତି ଓ ବନ୍ଧୁଙ୍କୁ ଟଙ୍କା ଫେରସ୍ତ ମାଗିଲେ ସେ ବରାବର ପାଇଁ ସମ୍ପର୍କ ଛିନ୍ନ କରିଦିଅନ୍ତି '' ମାମୁଁ ନିରାଶ ହୋଇ ଫେରିଥିଲେ । ବିଲାତରେ ପାଠ ପଢ଼ି ପରିଜାସାହେବଙ୍କ ଭଳି ଅଧ୍ୟାପକ ହେବାର ଆଶା ତାଙ୍କର ସେହିଠାରେ ଶେଷ ହେଲା ।

ଏଠାରେ ଆଉ ଗୋଟିଏ କଥା ଉଲ୍ଲେଖ କରୁଛି । ଉଚ୍ଚଶିକ୍ଷା ପାଇଁ ଅର୍ଥବ୍ୟୟ କରିବା ଉଚିତ, ଅଥବା ସେହି ଅର୍ଥ ଅନ୍ୟ ଉପାୟରେ ସଦ୍‌ବ୍ୟବହାର କରାଯିବା ଉଚିତ, ସେହି ବିଷୟର ଏକ ନମୁନା ! ପୁରୀ କଲେଜରେ ସେତେବେଳେ ସୁବୋଧ ନନ୍ଦ ନାମରେ ଜଣେ ଦର୍ଶନ ଅଧ୍ୟାପକ ଥିଲେ । ସେ ମେଦିନୀପୁର ଜିଲ୍ଲାର ଜଣେ ଜମିଦାରଙ୍କ କନିଷ୍ଠପୁତ୍ର । ପିତୃଶ୍ରାଦ୍ଧ ସମାପନ କରି କେଶହୀନ ମୁଣ୍ଡ ସହ କଲେଜରେ ପହଞ୍ଚି ହସ ହସ ବଦନରେ ମୋତେ ଶୁଭସଂବାଦ ଜଣାଇଲେ ଯେ, ସେ ସାନପୁଅ ହୋଇଥିବାରୁ ତାଙ୍କ ବାପା ସ୍ୱତନ୍ତ୍ରଭାବେ ତାଙ୍କ ନାମରେ ୨୫ ହଜାର ଟଙ୍କା ପାଶ୍‌ବୁକ୍‌ରେ ରଖିଯାଇଛନ୍ତି । ମୁଁ କହିଲି, ''ସୁବୋଧବାବୁ, ଏତେଗୁଡ଼ାଏ ଟଙ୍କା ପାଇଗଲେ, ଚାଲନ୍ତୁ ସାଙ୍ଗରେ ବିଲାତ ଯିବା''। ଭାବିଚିନ୍ତି ଗୋଟିଏ ଦିନ ପରେ ସେ ଉତ୍ତର ଦେବେ ବୋଲି କହିଲେ । ଦିନକ ପରେ ତାଙ୍କ ବସାକୁ ଯାଇ ସାକ୍ଷାତ୍ କଲି । ପକେଟରୁ ଖଣ୍ଡିଏ କାଗଜ ବାହାର କରି ସେଥିରେ ଅଙ୍କ କଷି କଷି ସେ କହିଲେ, ''ପଚିଶହଜାର ଟଙ୍କାରେ ପୁରୀ ସହରରେ ୬ ବଖରା ଘର ତୋଳିଦେଲେ, ବଖରା ପିଛା ମାସକୁ ୫୦ ଟଙ୍କା ହିସାବରେ ୩୦୦ ଟଙ୍କା ଭଡ଼ା ମିଳିବ । ଅଥଚ, ବିଦେଶରେ ସେତିକି ଟଙ୍କା ପାଣିରେ ଫୋପାଡ଼ି ପିଏଚ.ଡି.ଡିଗ୍ରୀ ପାଇଲେ ମାସକୁ ମାତ୍ର ୧୫୦ ଟଙ୍କା ବେତନ ବଢ଼ିବ । ପୁଣି ଡିଗ୍ରୀ ନପାଇଲେ ସର୍ବନାଶ । ଆପଣଙ୍କ ପଟିରେ ପଡ଼ି ବିଲାତ ଯିବା ଭୁଲ୍ ମୁଁ କରିବି ନାହିଁ ।''

ବାପାଙ୍କ ପାଖରୁ ସାହସ ପାଇ ପାଶପୋର୍ଟ୍ ପାଇଁ ଲାଗିପଡ଼ିଲି । ସେଥିଲାଗି ଦୁଇଥର କଲିକତା ଯିବାକୁ ହେଲା । ପାଶ୍‌ପୋର୍ଟ ମିଳିଲାପରେ ପୁଣିଥରେ କଲିକତା ଯାଇ 'ଟମାସ୍ ଆଣ୍ଡ୍ କୁକ୍' ଜଳଜାହାଜ କୋମ୍ପାନୀ ପାଖରୁ ବମ୍ବେ ଠାରୁ ଇଂଲାଣ୍ଡ ଜାହାଜ ଟିକଟ କିଣିଲି, ତା ପରେ ବିନା ବେତନରେ ଦୁଇବର୍ଷ ଛୁଟି ଲାଗି

ଦରଖାସ୍ତ ଧରି ଡି.ପି.ଆଇ. ବଳଭଦ୍ର ପ୍ରସାଦଙ୍କ ପାଖକୁ ଗଲି । ରାଗିଉଠି ସେ କହିଲେ, "କ'ଣ ଓଡ଼ିଶା ସରକାରଙ୍କୁ ଜାହାଜ କୋମ୍ପାନୀ ବୋଲି ଭାବିଛ ? ଟିକଟ କାଟିଲା ପରି ଇଚ୍ଛା ମୁତାବକ ଛୁଟି ପାଇଯିବ ?" ପ୍ରସାଦ ମହୋଦୟ ୧୯୪୨ ମସିହାର ଅଫିସ ପୋଡ଼ି ସମୟରୁ ମୋ ପ୍ରତି କେବେହେଲେ ସନ୍ତୁଷ୍ଟ ନଥିଲେ, ବିଶେଷତଃ, ବି.ଏ. ପଢ଼ିଲାକାଳର ନେତୃତ୍ୱ ଦୃଷ୍ଟିରୁ । ମୁଁ ମଧ୍ୟ ରେଭେନ୍‌ସାରେ ଚାରିବର୍ଷ ଥିବା ସମୟରେ ତାଙ୍କୁ କେବେହେଲେ ନମସ୍କାର ଦେଇ ନଥିଲି ।

ଡିସେମ୍ବର ୨୦ ତାରିଖରେ ବୋମ୍ବେ ଠାରୁ ଜାହାଜ ଛାଡ଼ିବ । ତାହାର ଅଳ୍ପ କିଛି ଦିନ ପୂର୍ବରୁ ଦରଖାସ୍ତ ନେଇ ଡ଼ି.ପି.ଆଇ.ଙ୍କ ଅଫିସକୁ ଯାଇଥିଲି । ଛୁଟି ପାଇଁ ତାଙ୍କର ନାସ୍ତିବାଣୀ ଶୁଣି ହତାଶ ହେବା ପରିବର୍ତ୍ତେ ଦୌଡ଼ିଲି ଶିକ୍ଷା ସେକ୍ରେଟାରୀ ରତ୍ନାକର ଷଡ଼ଙ୍ଗୀଙ୍କ ପାଖକୁ । ସବୁକଥା ଶୁଣି ସେ କହିଲେ, "ନିଜ ହାତରୁ ଟଙ୍କା ଖର୍ଚ୍ଚ କରି ଉଚ୍ଚଶିକ୍ଷା ପାଇଁ ଯିବ, ପୁଣି ବିନା ବେତନରେ । କେଉଁ କାରଣ ଯୋଗୁଁ ଡି.ପି.ଆଇ.ଛୁଟି ନ ଦେବେ ? ମୁଁ ତୁମକୁ ସାହାଯ୍ୟ କରିବି ।" ତାଙ୍କ ଦୟାରୁ ଗୋଟିଏ ଦିନ ମଧ୍ୟରେ ଛୁଟି ଅର୍ଡ଼ର ପାଇଗଲି ।

ସାମନ୍ତ ଚନ୍ଦ୍ରଶେଖର କଲେଜରୁ ୧୯୫୪ ଡିସେମ୍ବର ମାସରେ ବିଦାୟ ନେଲି । ଗୋଟିଏ ଶୀତରାତିରେ ଷ୍ଟେସନଠାକୁ ଯେଉଁ ଛାତ୍ରମାନେ ଗାଡ଼ିକୁ ଉଠାଇଦେବା ଲାଗି ଆସିଥିଲେ, ସେମାନଙ୍କର ଅଶ୍ରୁଳ ଆଖି ଭୁଲି ପାରିନାହିଁ ।

# ଇଂଲଣ୍ଡରେ ଦୁଇବର୍ଷ ଅଧ୍ୟୟନ
## (୧୯୫୫–୫୬)



### କେତେକ ବ୍ୟକ୍ତି, ସ୍ଥାନ ଓ ଘଟଣାର ସ୍ମୃତି

### ଜଳଯାତ୍ରାର ସ୍ମୃତି : ବୋମ୍ବେଠାରୁ ଡୋଭାର

୧୯୫୪ ମସିହା ଡିସେମ୍ବର ୨୦ ତାରିଖ ସନ୍ଧ୍ୟାବେଳେ 'ଷ୍ଟ୍ରାଥ୍‌ନାଭାର' ନାମକ ପ୍ରକାଣ୍ଡ ଯାତ୍ରିବାହୀ ଜଳଜାହାଜଟି ବୋମ୍ବେ ବନ୍ଦରରୁ ପଶ୍ଚିମ ଦିଗକୁ ଯାତ୍ରା ଆରମ୍ଭ କଲା । ବିଦେଶ ଗମନର ସେହି ମୁହୂର୍ତ୍ତରେ ମନରେ ଅପାର ଆନନ୍ଦ ଖେଳିଯାଉଥାଏ । ଜାହାଜର ଡେକ୍ ଉପରୁ ଦିଶୁଥିବା ବୋମ୍ବେ ସହରର ଆଲୋକମାଳା ଅଳ୍ପ ସମୟ ମଧ୍ୟରେ ଦୃଷ୍ଟିପଥରୁ ଉଭେଇଗଲା । ତାହା ପରେ ପରେ ଅନ୍ଧକାର ଗର୍ଭରେ ଲୁଚିଗଲା ଭାରତ ଉପକୂଳର ଦୃଶ୍ୟ ।

ଜାହାଜଟି ଆସୁଥାଏ ସୁଦୂର ପ୍ରାଚ୍ୟରୁ । ବନ୍ଦର ପରେ ବନ୍ଦରରୁ ଯାତ୍ରୀ ନେଇ ଇଂଲଣ୍ଡ ଅଭିମୁଖେ ଯାତ୍ରା କରିବ । ବିଭିନ୍ନ ଦେଶର ନରନାରୀଙ୍କୁ ଦେଖି ଜାଣିଲି, କିଛିଦିନ ଲାଗି ଜାହାଜଟି ହେବ ସାଗରବକ୍ଷରେ ଭାସମାନ ଗୋଟିଏ କ୍ଷୁଦ୍ରଦ୍ୱୀପ ପରି, ଯେଉଁଥିରେ ଥିବେ ଅନେକ କିସମର ମନୁଷ୍ୟ । ରାତ୍ରିଭୋଜନର ଘଣ୍ଟି ବାଜିଲା । ପ୍ରଶସ୍ତ ଡାଇନିଂ ହଲ । ଚାରିଜଣ ଲେଖାଏଁ ଲୋକଙ୍କ ଏକତ୍ର ଭୋଜନ ପାଇଁ ପୃଥକ ଟେବୁଲମାନ ରହିଥାଏ । ମୋ ପାଖରେ ବସିଲେ ତିନିଜଣ ଭାରତୀୟ । ସେମାନେ ଥିଲେ, ଦିଲ୍ଲୀର ଡାକ୍ତର ବି.ଏସ.ଜୈନ, କଲିକତାର ଇଞ୍ଜିନିୟର ଘୋଷ ଦସ୍ତିଦାର ଓ ସୈନ୍ୟବିଭାଗରୁ ବିତାଡ଼ିତ ପଞ୍ଜାବୀ ଯୁବକ ପେହଲାଦ୍ ସିଂହ ଭାଲ୍ଲା । ଟେବୁଲ ଉପରେ 'ମେନ୍ୟୁ' କାଗଜ ଥୁଆ ହୋଇଥାଏ । ଜଣେ ପରିଚାରକ ଅର୍ଡ଼ର ନେବାକୁ ଆସିଲେ । ମିଷ୍ଟର ଘୋଷ ଦସ୍ତିଦାର 'ବିଫ୍' ପ୍ରତି ଆଙ୍ଗୁଳି ଦେଖାଇବାରୁ ମୁଁ କହିଲି, "ଆପଣ ପରା ହିନ୍ଦୁ ! ଅଖାଦ୍ୟ ଖାଇବେ କିପରି ?" କଟାକ୍ଷପାତ ପୂର୍ବକ ସେ ଉତ୍ତର ଦେଲେ, "ଯେ ଦେଶେ ଯାବ, ସେଇ ଦେଶେର୍ ଖାଦ୍ୟ ଖାବ । କଥାୟ୍ ବଲେ While in Rome, do as the Romans do." ତାଙ୍କ ସହିତ ଅଧିକ ଯୁକ୍ତିତର୍କ ନିରର୍ଥକ ଜାଣି ନୀରବ ରହିଲି ।

କେବିନ୍ ଭିତରେ ଥିବା ଉପର ବର୍ଥଟିରେ ଶୋଇଥିବା ଅବସ୍ଥାରେ ଗୁଡ଼ ଗୋଲାକାର କାଚଝରକା ଦେଇ ଦେଖୁଥାଏଁ ଆରବସାଗରର ଲହରୀମାଳା । ଜଳ ଉପରେ ଭାସି ଭାସି ଗଲାପରି ଜଣାଯାଉଥାଏ । ଦିଶୁଥାଏ ନୀଳ ଆକାଶର ନକ୍ଷତ୍ରରାଜି । ଊର୍ଦ୍ଧ୍ୱରେ ଆକାଶ, ତଳେ ସମୁଦ୍ର । ସେପରି ଅପରୂପ ଶୋଭା କଦାଚିତ୍ ଦେଖିବାକୁ ମିଳେ । ପ୍ରଭାତ କାଳରେ ଜାହାଜର ଉପରିଭାଗରୁ ଯେଉଁ ସୂର୍ଯ୍ୟୋଦୟ ଦେଖିଲି, ତାହା ମଧ୍ୟ ମନୋରମ । ଜଣାଗଲା, ସ୍ଥଳଭାଗ ପାଖରୁ ବହୁତ ଦୂରରେ ସମୁଦ୍ରବକ୍ଷରେ ଯେଉଁ କେତେଦିନ ବିତିବ, ତାହାର ଅନୁଭୂତି ହେବ ବିଚିତ୍ର ପ୍ରକାରର । ଜନ କୋଳାହଳ, ପୃଥିବୀର ଧୂଳି ମାଟି, ସହରର ଆବର୍ଜନା ଓ ଅଶୁଦ୍ଧ ବାୟୁମଣ୍ଡଳ ପାଖରୁ ସମ୍ପୂର୍ଣ୍ଣ ପୃଥକ ଥାଏ ସାଗରବକ୍ଷର ପରିବେଶ । ଘେରିରହିଥାଏ ସୀମାହୀନ ଜଳରାଶି, ନିର୍ମଳ ଆକାଶ ଓ ବିଶୁଦ୍ଧ ପବନ । ମନେ ହେଉଥାଏ, ଯେଉଁ ତିନିଟି ସପ୍ତାହ ଜାହାଜରେ କଟିବ, ସେହି ଦିନଗୁଡ଼ିକ ହେବ ଏକ ଉପଭୋଗ୍ୟ ସମୟ ।

କିନ୍ତୁ ଦିନକ ପରେ ଆରମ୍ଭ ହେଲା 'ସମୁଦ୍ର ଜ୍ୱର' ବା Sea Sickness । ଏହି ପୀଡ଼ା ସବୁ ଯାତ୍ରୀଙ୍କୁ ହୁଏ ନାହିଁ । କ୍ୱଚିତ୍ ଜଣେ ଜଣେ ଏଥିରେ ଆକ୍ରାନ୍ତ ହୁଅନ୍ତି । ପ୍ରଥମେ ମୁଣ୍ଡ ଝିମିଝିମି କଲା ଓ ସଙ୍ଗେ ସଙ୍ଗେ ଆରମ୍ଭ ହେଲା ଛାତି ଓ ପେଟରେ ଦରଜ । ପେଟରେ ଯାହା ଥାଏ, ପାଟିବାଟେ ବାହାରିଗଲା । ଦେହରୁ ଝାଳ ବୋହିଲା । ଜାହାଜର ଡାକ୍ତରଙ୍କ ପାଖକୁ ଯିବାକୁ ଶକ୍ତି ନଥାଏ । ଡେକ୍ ଉପରେ ଆରାମଚେୟାରରେ ବସି ଅସ୍ଥିର ହେଉଥିଲାବେଳେ ଜଣେ ଇଂରାଜ ଯୁବକ ମୁଣ୍ଡରେ ହାତ ବୁଲାଇ ଆଶ୍ୱାସନା ଦେଲେ, ଗୋଟିଏ ଦିନ ପରେ ଏ ଜ୍ୱର ଛାଡ଼ିଯିବ । କିନ୍ତୁ ଗୋଟିଏ ଦିନ ସେପରି ଯନ୍ତ୍ରଣା ସହ୍ୟ କରିପାରିବି ନାହିଁ ବୋଲି ମୁଁ ବିକଳ ଭାବରେ ଜଣାଇଲି । ସେ କହିଲେ, "ଆସ, ଏକ ଗ୍ଲାସ ବିୟର ବା ଏକ ପେଗ୍ ହୁଇସ୍କି ପିଇଦେଲେ ସମୁଦ୍ରଜ୍ୱର ଏକ ମିନିଟ୍ ମଧ୍ୟରେ ଛାଡ଼ି ପଳାଇବ ।" ହାତ ଧରି ସେ ମୋତେ 'ବାର୍' ପାଖକୁ ନେଇଗଲେ ଓ ଅଧଗ୍ଲାସ ମଦ ଧରାଇଦେଲେ । ଅସ୍ୱାଭାବିକ କଷ୍ଟରୁ ରକ୍ଷା ପାଇବା ନିମନ୍ତେ ମୁଁ ଏକା ଢୋକରେ ସବୁତକ ପିଇଦେଲି । ସେଥିସଙ୍ଗେ ଆରମ୍ଭ ହେଲା ଅକଥନୀୟ ଯନ୍ତ୍ରଣା । ମହୌଷଧି ପରିବର୍ତ୍ତେ ସେତକ ମଦ ବିଷପରି କାମ କଲା । ଇଂରେଜ ବନ୍ଧୁ ଦୌଡ଼ିଯାଇ ଡାକ୍ତର ଡାକିଆଣିଲେ । ଔଷଧ ଖାଇ, ଦାରୁଣ ଅସ୍ୱସ୍ତି ଭୋଗକରି ବିଛଣା ଉପରେ ପଡ଼ିରହିଲି । ଲଣ୍ଡନଯାତ୍ରା ଅନ୍ତିମ ଯାତ୍ରାରେ ପରିଣତ ହେବ ବୋଲି ଭାବିଲି । ଆଶ୍ଚର୍ଯ୍ୟର ବିଷୟ, ମାତ୍ର କେତୋଟି ଘଣ୍ଟା ପରେ ପୀଡ଼ା ସମ୍ପୂର୍ଣ୍ଣଭାବେ ଛାଡ଼ିଗଲା । ସେହି ଅନୁଭୂତିରୁ ଏତିକି ଉପକାର ହେଲା, ମଦ୍ୟ ପ୍ରତି ଭୟ ।

ବହୁତାଲା ବିଶିଷ୍ଟ ପ୍ରକାଣ୍ଡକାୟ ଜାହାଜରେ ଜଳଯାତ୍ରା ହେଉଛି ପ୍ରକୃତପକ୍ଷେ ଉପଭୋଗ୍ୟ । ଡେକ୍‌ଗୁଡ଼ିକ ଉପରେ ଗଣ୍ଡା ଗଣ୍ଡା ଆରାମଚେୟାର ପଡ଼ିଥାଏ । ପରିଚାରକମାନେ ପ୍ରତ୍ୟେକ ଅଧଘଣ୍ଟାକୁ ଚା, କଫି କିମ୍ବା ଆଇସ୍‌କ୍ରୀମ ଧରାଇ ଦେଉଥାନ୍ତି । ମଦ୍ୟପାୟୀମାନେ 'ବାର୍' ଭିତରେ ମନଇଚ୍ଛା ପିଇ ଆସି ଆରାମରେ ବସିଯାଉଥାନ୍ତି । ସୁସଜ୍ଜିତ ଡ୍ରଇଂରୁମ୍ ଗୁଡ଼ିକରେ ପଡ଼ିଥାଏ ମୂଲ୍ୟବାନ ସୋଫା । ଟେବୁଲ ଉପରେ ନାନାପ୍ରକାର ମେଗାଜିନ୍ । ବେଳେବେଳେ ଅପରିଚିତ ଯାତ୍ରୀମାନଙ୍କ ସହିତ ଆଳାପ କରିବା ପାଇଁ ସୁଯୋଗ ମିଳୁଥାଏ । ସନ୍ଧ୍ୟାପରେ ଖୋଲା ଡେକ୍ ଉପରେ ବୃଦ୍ଧବୃଦ୍ଧା ଓ ତରୁଣତରୁଣୀମାନେ 'ବଲ୍‌ଡାନ୍ସ' କରନ୍ତି । ପାଶ୍ଚାତ୍ୟ ସଂସ୍କୃତିରେ ତାହା ଅପରିହାର୍ଯ୍ୟ । ବୁଢ଼ାବୁଢ଼ୀଙ୍କ ନାଚ ଦେଖି ହସ ଲାଗୁଥାଏ । ମଧ୍ୟେ ମଧ୍ୟେ ଚଳଚ୍ଚିତ୍ର ପ୍ରଦର୍ଶନ କରାଯାଏ । ସଂକ୍ଷେପରେ, ଆମୋଦ ପ୍ରମୋଦ ଉପଭୋଗ ଓ ବିଶ୍ରାମ ଲାଗି ଜଳଯାତ୍ରା ହେଉଛି ଏକ ଅପୂର୍ବ ସୁଯୋଗ । ଏସବୁ ସତ୍ତ୍ୱେ, ସ୍ଥଳବାସୀ ମନୁଷ୍ୟ ପକ୍ଷରେ କିଛିଦିନ ଜଳଭାଗରେ ରହିଲାପରେ ପୁଣିଥରେ ସ୍ଥଳଦେଶରେ ପହଞ୍ଚିବା ଲାଗି ମନ ବ୍ୟାକୁଳ ହୋଇଉଠେ । ବୋମ୍ବେ ଠାରୁ ପରବର୍ତ୍ତୀ ବନ୍ଦର ଏଡ଼େନ୍ ପର୍ଯ୍ୟନ୍ତ ଦୂରତ୍ୱ ଥାଏ ୨ ହଜାର ୭ ଶହ କିଲୋମିଟର । ପାଞ୍ଚଦିନ ପରେ ସେଠାରେ ଜାହାଜ ପହଞ୍ଚିଲା । କେତେକ ଘଣ୍ଟା ପାଇଁ ଏଡ଼େନ୍ ସହରରେ ବୁଲିବା ଲାଗି ଯାତ୍ରୀମାନଙ୍କୁ ଅନୁମତି ମିଳିଲା । ସବୁ ରାସ୍ତାରେ ଛୋଟ ବଡ଼ ଦୋକାନ । ଭାରତୀୟ ବ୍ୟବସାୟୀମାନେ ସେହି ସ୍ଥାନକୁ ସେମାନଙ୍କ ବଜାରରେ ପରିଣତ କରିଥାନ୍ତି । 'ଡିଉଟି ଫ୍ରି' ବନ୍ଦରରେ ଶସ୍ତା ମୂଲ୍ୟରେ ଜିନିଷଗୁଡ଼ିକ ବିକ୍ରି ହେଉଥିବାରୁ ଯାତ୍ରୀମାନେ ଅନେକ ଜିନିଷ କିଣିଲେ । କଲମଦୋକାନରେ ଦେଖିଲି, ଯେଉଁ ପାର୍କାର କଲମର ଦାମ କଲିକତାରେ ୩୦ ଟଙ୍କା, ଏଡ଼େନ୍‌ରେ ତାହାର ମୂଲ୍ୟ ୨୦ ଟଙ୍କା ।

ଏଡେନ୍ ବନ୍ଦର ଛାଡ଼ି ଜାହାଜ ପ୍ରବେଶ କଲା ଲୋହିତସାଗରରେ । ପୂର୍ବଭାଗରେ ଦିଶୁଥାଏ ଆରବଦେଶର ମରୁଭୂମି ଓ ସ୍ଥାନେ ସ୍ଥାନେ ବୃକ୍ଷ ଓ ତୃଣହୀନ ପ୍ରକାଣ୍ଡ ପ୍ରକାଣ୍ଡ ପାହାଡ଼ । ଭାରତର ପାହାଡ଼ପର୍ବତ ପାଖରୁ ସେଗୁଡ଼ିକର ଦୃଶ୍ୟ ସମ୍ପୂର୍ଣ୍ଣ ଭିନ୍ନ । ଶୁଷ୍କ, ରୁକ୍ଷ, ଧୂସର ବର୍ଣ୍ଣର ବିଶାଳ ପାହାଡ଼ଗୁଡ଼ିକ ଭୟପ୍ରଦ ଦେଖାଯାଉଥାଏ । ଲୋହିତସାଗର ଶେଷରେ ପଡ଼ିଲା ସୁଏଜ କେନାଲ । ସେହି ସଂକୀର୍ଣ୍ଣ କେନାଲର ଉଭୟ ତଟରେ ବ୍ୟାପିରହିଥାଏ ଦିଗନ୍ତବିସ୍ତାରୀ ମରୁଭୂମି । ଧୀର ଭାବରେ ଗତିକରି ଜାହାଜଟି ଅନେକ ସମୟ ପରେ ସୁଏଜ୍ ଅତିକ୍ରମ କଲା । ତାପରେ ପଡ଼ିଲା ପୋର୍ଟ ସୈୟଦ ନାମକ ବନ୍ଦର । ସେଠାକାର ସ୍ଥଳଭାଗରେ କିଛିସମୟ ଲାଗି ଯାତ୍ରୀମାନେ ବିଚରଣ କଲେ । ଲୋହିତସାଗରର ଦୀର୍ଘତା ହେଉଛି ଦେଢ଼ ହଜାର କିଲୋମିଟର ।

ପୋର୍ଟ ସୈୟଦ ଠାରୁ ଆରମ୍ଭ ହେଲା ଭୂମଧ୍ୟସାଗର। ଦିନ ପରେ ଦିନ ସେହି ଧୀର ଶାନ୍ତ ସମୁଦ୍ରରେ ଜାହାଜ ଚାଲିଥିଲାବେଳେ ଜଳରାଶି ଓ ଆକାଶର ଶୋଭା ଅପରୂପ ଜଣାଯାଉଥାଏ। ସିସିଲିଦ୍ୱୀପ ଓ କର୍ସିକାଦ୍ୱୀପର ପାଖ ଦେଇ ସପ୍ତାହକ ପରେ ଜାହାଜ ପହଞ୍ଚିଲା ଫ୍ରାନ୍ସଦେଶ ଉପକୂଳରେ ମାର୍ସାଇ ବନ୍ଦରରେ। ପୋର୍ଟ ସୈୟଦ ଠାରୁ ମାର୍ସାଇ ପର୍ଯ୍ୟନ୍ତ ଦୂରତ୍ୱ ଥାଏ ୨ ହଜାର ୪ ଶହ କିଲୋମିଟର। ସେଠାରେ ସକାଳ ପାଖରୁ ସନ୍ଧ୍ୟା ପର୍ଯ୍ୟନ୍ତ ଜାହାଜ ରହିଲା। ସେହି ସମୟ ମଧ୍ୟରେ ମାର୍ସାଇ ସହରଟି ଦେଖିଆସିଲି। ବସ୍‌ରେ ବସି ଏଣେ ତେଣେ ଗଲାବେଳେ ଫରାସୀଜାତିର ବିଳାସମୟ ଜୀବନଯାତ୍ରାର ଅନେକ ପରିଚୟ ମିଳୁଥାଏ। ମାର୍ସାଇ ଠାରୁ ୧୧ ଶହ କିଲୋମିଟର ଦୂରରେ ପଡ଼ିଲା ସ୍ପେନ ଦେଶର ଉପକୂଳରେ ଥିବା ବ୍ରିଟିଶ୍ ଶାସିତ ଜିବ୍ରାଲ୍‌ଟର୍ ନାମକ ସ୍ଥାନ। ସେହିଠାରେ ଶେଷ ହେଲା ଭୂମଧ୍ୟସାଗର।

ସେଠାରୁ ଜାହାଜ ପ୍ରବେଶ କଲା ଆଟଲାଣ୍ଟିକ ମହାସାଗରରେ। ସେହି ମହାସାଗରର ଗୋଟିଏ ଅଂଶ ହେଉଛି ବିସ୍କେ ଉପସାଗର। ବାତ୍ୟାସଂକୁଳ ଜଳଭାଗରେ ଜାହାଜଟି ଅଧିକାଂଶ ସମୟ ଟଳମଳ ଅବସ୍ଥାରେ ଚାଲିଲା। ସେତେବେଳେ କେତେକ ଯାତ୍ରୀ ସମୁଦ୍ରଜ୍ୱରରେ ଆକ୍ରାନ୍ତ ହେବା ଦେଖିଲି। ବିସ୍କେ ଅତିକ୍ରମ ପରେ ଆସିଲା ଇଂଲିଶ୍ ପ୍ରଣାଳୀ ଓ ତା'ପରେ ଡୋଭାର ପ୍ରଣାଳୀ। ଜିବ୍ରାଲ୍‌ଟରଠାରୁ ଡୋଭାର ପର୍ଯ୍ୟନ୍ତ ଦୂରତ୍ୱ ଥାଏ ୨ ହଜାର ୧ ଶହ କିଲୋମିଟର। ତିନି ସପ୍ତାହବ୍ୟାପୀ ଜଳଯାତ୍ରାର ସମାପ୍ତି ସେହିଠାରେ ଘଟିଲା। ସେଠାରୁ ଟ୍ରେନ୍ ଯୋଗେ ପହଞ୍ଚିଲି ଲଣ୍ଡନ ସହରରେ। ସେ ଦିନ ଥିଲା ୧୯୫୫ ମସିହା ଜାନୁଆରୀ ୧୦ ତାରିଖ।

## କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଦର୍ଶନ ସ୍ମୃତି

ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କାଳର ଅନୁଭୂତି ଏଠାରେ ଲେଖିବି ନାହିଁ। ଅନ୍ୟ ପକ୍ଷରେ, ସେଠାରେ ଥିଲାବେଳେ ଯେଉଁ କେତେଜଣ ମହାନ ବ୍ୟକ୍ତିଙ୍କୁ ନିକଟରୁ ବା ଦୂରରୁ ଦେଖିଥିଲି, ସେମାନଙ୍କ ସମ୍ବନ୍ଧରେ ଅଳ୍ପ କିଛି ଲେଖିବି। ସେଥିସଙ୍ଗେ କେତେଗୁଡ଼ିଏ ଦର୍ଶନୀୟ ସ୍ଥାନ ବିଷୟ ଉଲ୍ଲେଖ କରିବି ଏବଂ କେତୋଟି ସ୍ମରଣୀୟ ଘଟଣା କଥା।

ଜାହାଜରେ ଆସୁଥିଲାବେଳେ ମନରେ ଗୋଟିଏ ସଂକଳ୍ପ ଆସିଥିଲା, ଲଣ୍ଡନରେ ପ୍ରଥମେ ଦେଖିବି ଦୁଇଜଣ ରାଜନୈତିକ ବ୍ୟକ୍ତିଙ୍କୁ। ଜଣେ ହେଉଛନ୍ତି, କ୍ଲିମେଣ୍ଟ ରିଚାର୍ଡ଼ ଆଟଲୀ, ଯାହାଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଭାରତବାସୀ ସ୍ୱାଧୀନତା ଲାଭ କରିଥିଲେ ଏବଂ ଅନ୍ୟ ଜଣେ ଉଇନ୍‌ଷ୍ଟନ ଚାର୍ଚ୍ଚିଲ, ଯିଏକି ଭାରତକୁ ସ୍ୱାଧୀନତା ପ୍ରଦାନ ବିଷୟ କେବେହେଲେ ଚିନ୍ତାକରି ନଥିଲେ ଏବଂ ମହାତ୍ମା ଗାନ୍ଧିଙ୍କୁ ବ୍ରିଟିଶ

ସାମ୍ରାଜ୍ୟର ପ୍ରଧାନ ଶତ୍ରୁ ରୂପେ ବିବେଚନା କରୁଥିଲେ। ତା'ପରେ ଦେଖିବି ଇଂଲଣ୍ଡର ରାଣୀଙ୍କୁ, ଇତ୍ୟାଦି ଇତ୍ୟାଦି। ରାଣୀଙ୍କୁ ଅବଶ୍ୟ ଭିନ୍ନ ଭିନ୍ନ ଜାତୀୟ ଉତ୍ସବରେ ଅଂଶଗ୍ରହଣ କରୁଥିବା ଅବସ୍ଥାରେ ସମସ୍ତେ ଦେଖିପାରୁଥିଲେ। ମୁଁ ମଧ୍ୟ ସେହି ସୁଯୋଗର ସୁବିଧା ନେଇ କେତେଥର ତାଙ୍କୁ ଓ ତାଙ୍କ ସ୍ୱାମୀ ଡିଉକ୍ ଅଫ୍ ଏଡିନବରାଙ୍କୁ ଦେଖିଲି। କିନ୍ତୁ ଆଟଲୀ ଓ ଚାର୍ଚ୍ଚିଲଙ୍କୁ ଦେଖିବା ଲାଗି କିଛି ଅଧ୍ୟବସାୟ କରିବାକୁ ପଡ଼ିଥିଲା। ଲଣ୍ଡନରେ ଥିଲାବେଳେ ଭାରତରୁ ଜବାହାରଲାଲ ନେହରୁ, ଆବୁଲ କାଲାମ ଆଜାଦ, କୃଷ୍ଣ ମେନନ ଓ ଇନ୍ଦିରା ଗାନ୍ଧି ସେଠାକୁ ଆସିଥିଲେ। ସେମାନଙ୍କୁ ମଧ୍ୟ ଦେଖିଥିଲି। ସେହିସବୁ କଥା ସଂକ୍ଷେପରେ ଉଲ୍ଲେଖ କରୁଛି।

## ଚାର୍ଚ୍ଚିଲ

ଜଣେ ପ୍ରଖର ସାମ୍ରାଜ୍ୟବାଦୀ ଭାବରେ ଚାର୍ଚ୍ଚିଲ ବିଶ୍ୱବାସୀଙ୍କ ନିକଟରେ ସୁପରିଚିତ। ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ୧୯୪୦ ରୁ ୧୯୪୫ ପର୍ଯ୍ୟନ୍ତ ସେ ଥିଲେ ଇଂଲଣ୍ଡର ଯୁଦ୍ଧକାଳୀନ ପ୍ରଧାନମନ୍ତ୍ରୀ। ଯୁଦ୍ଧ ପରବର୍ତ୍ତୀ ସାଧାରଣ ନିର୍ବାଚନରେ ତାଙ୍କ ରକ୍ଷଣଶୀଳ ଦଳର ପରାଜୟ ଘଟିଥିଲା ଓ ଶ୍ରମିକଦଳର ନେତା କ୍ଲିମେଣ୍ଟ ଆଟଲୀ ପ୍ରଧାନମନ୍ତ୍ରୀ ହୋଇଥିଲେ। କିନ୍ତୁ ୧୯୫୧ ମସିହା ନିର୍ବାଚନରେ ଆଟଲୀଙ୍କ ଦଳର ପରାଜୟ ଘଟିଲା ଓ ଚାର୍ଚ୍ଚିଲ ଦ୍ୱିତୀୟ ଥର ପାଇଁ ବ୍ରିଟେନର ପ୍ରଧାନମନ୍ତ୍ରୀ ହେଲେ।

୧୯୫୫ ଜାନୁଆରୀ ମାସରେ ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହେବା ସମୟରେ ଚାର୍ଚ୍ଚିଲ ଥାନ୍ତି ପ୍ରଧାନମନ୍ତ୍ରୀ। ସେତେବେଳକୁ ତାଙ୍କର ବୟସ ଥିଲା ୮୦ ରୁ ଊର୍ଦ୍ଧ୍ୱ। ଭର୍ତ୍ତି ହେବାର ଅଳ୍ପଦିନ ପରେ ଦିନେ ଶୁଣିଲି, ସହରର କୌଣସି ଏକ ସ୍ଥାନରେ ପ୍ରଧାନମନ୍ତ୍ରୀଙ୍କ ତୈଳଚିତ୍ର ଉନ୍ମୋଚନ କରିବେ ଶ୍ରମିକଦଳର ନେତା ଆଟଲୀ। ଜଣେ ଇଂରେଜ ସହପାଠୀଙ୍କ ସହିତ ସେଠାକୁ ଚାଲିଲି। ହଲ୍‌ଟି ପରିପୂର୍ଣ୍ଣ ରହିଥାଏ। ବାହାରେ ଅନେକ ଲୋକ ରୁଣ୍ଡ ଥାନ୍ତି। ବନ୍ଧୁଙ୍କ ସାହାଯ୍ୟକ୍ରମେ କୌଣସିପ୍ରକାରେ ପଛରେ ଜାଗାଟିଏ ମିଳିଲା। ଅନେକ ଦୂରରେ ଥିବା ଆଗଧାଡ଼ିରେ ଗୋଟିଏ ସ୍ୱତନ୍ତ୍ର ଚେୟାରରେ ବସିଥାନ୍ତି ବୃଦ୍ଧ ଚାର୍ଚ୍ଚିଲ।

ବିପରୀତ ଧାଡ଼ିରେ ବସିଥାନ୍ତି ଆଟଲୀ। ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଟଙ୍ଗା ରହିଥାଏ ଭେଲଭେଟ୍ ଆବରଣ ତଳେ ଏକ ମସ୍ତବଡ଼ ଫ୍ରେମ୍। ସହପାଠୀଙ୍କ ପାଖରୁ ଶୁଣିଲି, ହଲ ମଧ୍ୟରେ ଅଛନ୍ତି ବ୍ରିଟିଶ ମନ୍ତ୍ରିମଣ୍ଡଳ ଓ ପାର୍ଲିଆମେଣ୍ଟର ଅଧିକାଂଶ ସଭ୍ୟ ଏବଂ ଇଂଲଣ୍ଡର ଅନେକ ମାନ୍ୟଗଣ୍ୟ ବ୍ୟକ୍ତି। ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ କକ୍ଷଟି ଥାଏ ସମ୍ପୂର୍ଣ୍ଣ ନୀରବତାର ଆଧାର। ଉଦ୍ୟୋକ୍ତା

ମହୋଦୟ ଯଥାସମୟରେ କ୍ଲିମେଣ୍ଟ ଆଟଲୀଙ୍କୁ ତୈଳଚିତ୍ର ଉନ୍ମୋଚନ ନିମନ୍ତେ ନିର୍ଦ୍ଦିଷ୍ଟ ସ୍ଥାନକୁ ପାଛୋଟି ନେଲେ। ଆଟଲୀ ସାହେବ ଧଳାରଙ୍ଗର ମୋଟା ରଜ୍ଜୁଟିଏ ଧରି ଛିଡ଼ା ହେଲେ। ତାହାକୁ ଟାଣିଦେବା ପୂର୍ବରୁ ଆରମ୍ଭ କଲେ ତାଙ୍କର ବକ୍ତବ୍ୟ।

ଭାଷଣର ସାରାଂଶ ଥିଲା, ଜାଠ ପ୍ରଧାନମନ୍ତ୍ରୀ ଚାର୍ଚ୍ଚିଲଙ୍କର କ୍ଷମତାରୁ ପତନ ଲାଗି ସେ ଅହରହ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନାରତ। କାରଣ, ତାଙ୍କର ରକ୍ଷଣଶୀଳ ନୀତି ଯୋଗୁଁ ଦେଶର ଅଶେଷ ଅହିତ ସାଧିତ ହେଉଛି। ଶ୍ରମିକ ଦଳ ଜନ-ବିରୋଧୀ ସରକାରଙ୍କ ପରାଜୟ ଲାଗି ସଦାସର୍ବଦା ଉଦ୍ୟମ କରିବା ଉଚିତ ମନେକରେ। ଜାଠ ସରକାରର ତୀବ୍ର ନିନ୍ଦା ଓ ତାହାର କାର୍ଯ୍ୟାବଳୀର ସମାଲୋଚନା କରିବା ହେଉଛି ଦେଶବାସୀଙ୍କର ପ୍ରଧାନ କର୍ତ୍ତବ୍ୟ, ଇତ୍ୟାଦି ଇତ୍ୟାଦି।

ଆଶ୍ଚର୍ଯ୍ୟବୋଧ ହେଉଥାଏ, ଯେଉଁ ବ୍ୟକ୍ତିଙ୍କର ଚିତ୍ର ଉନ୍ମୋଚନ ନିମନ୍ତେ ଆଟଲୀ ଆମନ୍ତ୍ରିତ ହୋଇ ଆସିଥାନ୍ତି, ସେହି ବ୍ୟକ୍ତିଙ୍କର ଏପରି କଠୋର ସମାଲୋଚନା କରୁଛନ୍ତି କିପରି? ଏହା କଣ ସୌଜନ୍ୟ ବା ଶାଳୀନତା! ଅଧିକ ଆଶ୍ଚର୍ଯ୍ୟର ବିଷୟ ଥାଏ, ଶ୍ରୋତାମାନେ ନୀରବରେ ବସିରହି ବିପକ୍ଷ ନେତାଙ୍କର ଜ୍ୱାଳାମୟ ଭାଷଣ ଅମ୍ଳାନ ବଦନରେ ଶୁଣିଯାଉଥାନ୍ତି। କେହି ଜଣେ ହେଲେ ପ୍ରତିବାଦ ଜଣାଇଲେ ନାହିଁ, କିମ୍ବା କମେଣ୍ଟଟିଏ ଉଚ୍ଚାରଣ କଲେ ନାହିଁ। ପଥରମୂର୍ତ୍ତି ପରି ବସିରହି ଚାର୍ଚ୍ଚିଲ ନିଜର ନିନ୍ଦା ଶୁଣୁଥିଲେ। ପ୍ରାୟ ୧୫ ମିନିଟ ଭାଷଣ ଦେଲାପରେ ଆଟଲୀ ରଜ୍ଜୁଟିକୁ ଟାଣିଦେବା ପୂର୍ବରୁ ଦୃଢ଼ ସ୍ୱରରେ ତାଙ୍କର ଶେଷବାକ୍ୟଟି ଉଚ୍ଚାରଣ କଲେ, "Having said all these words, let me now enjoy the privilege and honour of unveiling the portrait of the greatest Englishman since William Shakespeare– Winston Leonard Spencer Churchill."

ଆଟଲୀଙ୍କର ଏହି ଶେଷବାକ୍ୟଟି ଶେଷ ହେଲାମାତ୍ରେ ବିପୁଳ କରତାଳିରେ ସ୍ଥାନଟି ମୁଖରିତ ହୋଇଉଠିଲା। ପ୍ରାୟ ଦୁଇମିନିଟ୍ ପର୍ଯ୍ୟନ୍ତ କରତାଳି ଲାଗିରହିଲା ପରେ ନୀରବତା ଫେରିବା ଅବକାଶରେ ଆଟଲୀ ରଜ୍ଜୁଟି ଟାଣିଦେଲେ ଓ ଚାର୍ଚ୍ଚିଲଙ୍କ ତୈଳଚିତ୍ର ଉନ୍ମୋଚିତ ହେଲା। ଦର୍ଶକ ଓ ଶ୍ରୋତାମାନେ ପୁନର୍ବାର ବିପୁଳ କରତାଳି ଦେଲେ। ଏହି ସାମାନ୍ୟ ଘଟଣାରୁ ବ୍ରିଟିଶ ରାଜନୀତିର ପରିଚୟ ପାଇଲି। ନୀତିଗତ ସ୍ତରରେ ବରିଷ୍ଠ ନେତାମାନଙ୍କ ମଧ୍ୟରେ ତୀବ୍ର ବାଦବିବାଦ ଥିବା ସତ୍ତ୍ୱେ, ପରସ୍ପରକୁ ଯଥାଯୋଗ୍ୟ ସମ୍ମାନ ଦେବାଲାଗି ରାଷ୍ଟ୍ରନୀତିଜ୍ଞମାନେ କାତର ନଥିଲେ।

ଏହି ଘଟଣାର କେତୋଟି ସପ୍ତାହ ପରେ, ୧୯୫୫ ମସିହା ଏପ୍ରିଲ ୫ ତାରିଖ ଦିନ, ଉଇନଷ୍ଟନ ଚାର୍ଚ୍ଚିଲ ବାର୍ଦ୍ଧକ୍ୟଜନିତ କାରଣରୁ ପ୍ରଧାନମନ୍ତ୍ରୀ ପଦରୁ

ଅବସର ଗ୍ରହଣ କଲେ ଏବଂ ତାଙ୍କ ମନୋନୀତ ଜାଠନେତା ଏଣ୍ଟୋନୀ ଏଡେନ୍ ପ୍ରଧାନମନ୍ତ୍ରୀ ହେଲେ ।

ଅନ୍ୟ ଗୋଟିଏ ଦିନର କଥା । ଅବସର ନେବାପରେ ଥରେ ଗୋଟିଏ ସାମ୍ବାଦିକ ସମ୍ମିଳନୀରେ ଚାର୍ଚ୍ଚିଲଙ୍କୁ ଦେଖିବାକୁ ମିଳିବ ଶୁଣି ସେଠାକୁ ଗଲି । ସମ୍ବାଦପତ୍ରର ପ୍ରତିନିଧିମାନେ ବହୁସଂଖ୍ୟାରେ ଉପସ୍ଥିତ ଥାନ୍ତି । ଚାର୍ଚ୍ଚିଲ ତାଙ୍କ ଶାସନକାଳ ଓ ମହାଯୁଦ୍ଧ ସମ୍ପର୍କରେ ମତାମତ ଦେଉଥିଲେ । ଶେଷବେଳକୁ ଜଣେ ସାମ୍ବାଦିକ ପଚାରିଦେଲେ, "ଆପଣଙ୍କର ଧନସମ୍ପତ୍ତି ଦେଖି ଅନୁମାନ କରାଯିବକି ଯେ ଆପଣ ଯୁଦ୍ଧକାଳୀନ ପ୍ରଧାନମନ୍ତ୍ରୀ ଭାବେ ଅବୈଧ ଭାବରେ ବିତ୍ତ ସଂଗ୍ରହ କରିଥିଲେ, ଅଥଚ ସେହି ଜାତୀୟ ମିଳିତ ସରକାରରେ ଉପ-ପ୍ରଧାନମନ୍ତ୍ରୀ ଥିବା ଆଟଲୀ ନ୍ୟାୟପରାୟଣ ଥିବା ଯୋଗୁଁ ଏବେ ଅତ୍ୟନ୍ତ ଦରିଦ୍ର ଅବସ୍ଥାରେ ଜୀବନ ବିତାଉଛନ୍ତି ?"

ଚତୁର ଚାହାଣି ସହ ଈଷତ୍ ହସିଦେଇ ଚାର୍ଚ୍ଚିଲ ଉତ୍ତର ଦେଲେ, "ମୁଁ ଯଦି ପ୍ରଧାନମନ୍ତ୍ରୀ ଥିଲାବେଳେ ଅଗାଧ ଅର୍ଥ ଆତ୍ମସାତ୍ କରିଥିଲି, ତେବେ ମୋର ଉପ-ପ୍ରଧାନମନ୍ତ୍ରୀ ଭାବରେ ଆଟଲୀ ମଧ୍ୟ ସେଥିରୁ ଅଧାଅଧି ଭାଗ ନେଇପାରିଥାନ୍ତେ । ଯଦି ତା ନକଲେ, ମୁଁ କହିବି ସେ ଜଣେ ନିର୍ବୋଧ ବ୍ୟକ୍ତି । ଯଦି ସେ ସାଧୁ ଓ ସଚ୍ଚୋଟ ପୁରୁଷ, ତେବେ ସେ ମୋର ଦୁର୍ନୀତିଗୁଡ଼ିକ ପଦାରେ ପକାଇଲେ ନାହିଁ କାହିଁକି ?" ସାମ୍ବାଦିକମାନଙ୍କ ମଧ୍ୟରେ ହାସ୍ୟରୋଳ ଖେଳିଗଲା । କିଛି ସମୟ ପରେ ଚାର୍ଚ୍ଚିଲ ପୁଣି ହସି ହସି କହିଲେ, "ମୁଁ ଡିଉକ୍ ଅଫ୍ ମାର୍ଲବୋରୋଙ୍କ ବଂଶଧର । ତାଙ୍କର ଦୁର୍ଗ ଓ ପ୍ରାସାଦ ମୁଁ ଭୋଗ କରିପାରିଲି ନାହିଁ । ତେବେ, ମୋର ପୂର୍ବପୁରୁଷମାନଙ୍କର କୋଠାଘରେ ମୁଁ ରହିଛି । ମୋର ଆଡ଼ମ୍ବର ଦେଖି ଯଦି ଭାବୁଛ ଯେ ମୁଁ ଜାତୀୟ ସମ୍ପଦ ଅପହରଣ କରି ବିଳାସବ୍ୟସନ ଭୋଗ କରୁଛି, ତେବେ ମୁଁ ଏତିକି କହିବି, ଚାର୍ଚ୍ଚିଲ ଦ୍ୱାରା ଲିଖିତ ମହାଯୁଦ୍ଧର ଇତିହାସ ଓ ଅନ୍ୟାନ୍ୟ ପୁସ୍ତକ ପୃଥିବୀର ଶତ ସହସ୍ର ଲାଇବ୍ରେରୀରେ ସ୍ଥାନ ପାଏ ଓ ଲେଖକ ଚାର୍ଚ୍ଚିଲ ପ୍ରକାଶକମାନଙ୍କ ପାଖରୁ ପ୍ରଚୁର ଅର୍ଥ ପାଏ । ଆଟଲୀର ଦାରିଦ୍ର୍ୟ ଦେଖି ତୁମର ଯଦି ଦୟା ହେଉଛି, ତାଙ୍କୁ ମଧ୍ୟ ମୋ ପରି ଲେଖନୀ ଚାଳନା କରିବାକୁ ଉପଦେଶ ଦିଅ ।" ପୁନର୍ବାର ହାସ୍ୟରୋଳ ଖେଳିଗଲା । ସମସ୍ତେ ଜାଣିଥିଲେ, ଚାର୍ଚ୍ଚିଲ ଦୁର୍ଦ୍ଧର୍ଷ ହେଲେ ସୁଦ୍ଧା ଦୁର୍ନୀତିଗ୍ରସ୍ତ ନୁହେଁ ।

### ଆଟଲୀ

ଆଟଲୀଙ୍କ ସରଳ ଓ ନିରାଡ଼ମ୍ବର ଜୀବନଯାତ୍ରା ସମ୍ପର୍କରେ ଅନେକ କାହାଣୀ ଶୁଣାଯାଉଥାଏ । ଜଣେ ଦରିଦ୍ର ଶ୍ରମିକ ପରି ସେ ଚଳୁଥାନ୍ତି ଓ ଶୀତରାତିରେ ନିଜ କୋଠରିକୁ ଉଷ୍ମ ରଖିବା ଲାଗି ତାଙ୍କ ଘରେ ଇଲେକ୍ଟ୍ରିକ୍ ହିଟରଟିଏ

ନଥାଏ । ତେଣୁ, ଶୟନକକ୍ଷରେ କାଠ ଜାଳି ଶୀତପ୍ରକୋପରୁ ରକ୍ଷା ପାଉଥାନ୍ତି । ଅଥଚ, ସେ ଥିଲେ ମହାଯୁଦ୍ଧ ବେଳେ ଉପ-ପ୍ରଧାନମନ୍ତ୍ରୀ ଓ ଯୁଦ୍ଧପରେ ୧୯୪୫ ରୁ ୧୯୫୧ ପର୍ଯ୍ୟନ୍ତ ଇଂଲଣ୍ଡର ପ୍ରଧାନମନ୍ତ୍ରୀ । ଚାର୍ଚ୍ଚିଲଙ୍କ ପ୍ରବଳ ବାଧା ସତ୍ତ୍ୱେ ୧୯୪୭ରେ ସେ ଭାରତକୁ ସ୍ୱାଧୀନତା ଦେଇଥିଲେ, ଯଦିଚ ସେଥିସଙ୍ଗେ ପାକିସ୍ତାନ ଗଠନ କରିଥିଲେ ।

ତାଙ୍କ ଘର ଦେଖିବା ଲାଗି ଇଚ୍ଛା ହେଲା । ୧୯୫୫ ଶେଷବେଳକୁ ଶ୍ରମିକ ଦଳର ନେତୃତ୍ୱରୁ ଅବସର ନେଇ ସେ ନିଜ ଘରେ ରହୁଛନ୍ତି ବୋଲି ଜାଣିଲି । ପଚାରି ପଚାରି ଦିନେ ଅପରାହ୍ନରେ ଲଣ୍ଡନସହରର ପୂର୍ବାଞ୍ଚଳରେ ଥିବା ତାଙ୍କ ବାସଗୃହ ଇଲାକାରେ ପହଞ୍ଚିଲି । ଛୋଟ ଛୋଟ ଫ୍ଲାଟ୍ ମଧ୍ୟରେ କେଉଁଟିରେ ସେ ଥିବେ, ତାହା ଜାଣିବା ସମ୍ଭବ ହେଲା ନାହିଁ । ବିସ୍ତୀର୍ଣ୍ଣ ଅଞ୍ଚଳରେ ଘରକୁ ଘର ଗେଟ୍ ପାଖରେ ନେମ୍‌ପ୍ଲେଟ ଖୋଜିବା ମଧ୍ୟ ସମ୍ଭବ ନଥାଏ । ତେଣୁ ବାଧ ହୋଇ ଫେରିଆସୁଥିଲି । ଏପରିବେଳେ ଫୁଟ୍‌ପାଥିରେ ଚାଲିଥିବା ଜଣେ ବ୍ୟକ୍ତିଙ୍କୁ ଦୂରରୁ ଦେଖିପାରି ଜାଣିନେଲି, ସେ ହେଉଛନ୍ତି ଆଟଲୀ । ଡାହାଣ ହାତରେ ଛତା ଓ ବାଁ ହାତରେ ଛୋଟ ସୁଟକେଶ୍‌ଟିଏ ଧରି ସେ ଚାଲିଥାନ୍ତି । ପେଣ୍ଟ୍ ଓ କୋଟ୍ ମଇଳା ଦିଶୁଥାଏ । ପୁଣି କୋଟ୍‌ଟିର ଦୁଇ ହାତର କହୁଣି ପାଖରେ ତାଳି ପଡ଼ିଥାଏ । ସେପରି ତାଳିପକା ପୋଷାକ ସାଧାରଣତଃ ଇଂଲଣ୍ଡର ଦରିଦ୍ର ଲୋକମାନଙ୍କ ଦେହରେ ଦେଖିବାକୁ ମିଳେ । ଅଳ୍ପଦୂରରେ ଛିଡ଼ା ରହି ଶ୍ରମିକ ନେତାଙ୍କ ଚାଲୁଥିବା ଦୃଶ୍ୟ ଦେଖିଲି । ବିଶ୍ୱାସ କରିହେଲା ନାହିଁ, ଏହି ବ୍ୟକ୍ତି ଥିଲେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ।

ଭାରତର ହିତୈଷୀ ବୋଲି ଭାବି ଯେଉଁ ବ୍ୟକ୍ତିଙ୍କୁ ଏତେ ଆଗ୍ରହରେ ଦେଖିବାକୁ ଯାଇଥିଲି, ଭବିଷ୍ୟତରେ ତାଙ୍କ ପ୍ରତି ମୋର ସେହି ଧାରଣା ବଦଳିଗଲା । ଆଟଲୀଙ୍କୁ ଦେଖିଥିବା ସମୟର ଦୀର୍ଘ ୨୫ ବର୍ଷ ପରେ ଗୋପନ ଐତିହାସିକ ତଥ୍ୟାବଳୀରୁ ଜାଣିପାରିଥିଲି ଯେ, ଚାର୍ଚ୍ଚିଲଙ୍କ ପରି ସେ ମଧ୍ୟ ଭାରତକୁ ଖଣ୍ଡବିଖଣ୍ଡିତ କରିବାକୁ ଚାହିଁଥିଲେ । ସାମ୍ରାଜ୍ୟବାଦୀ ଇଂରେଜ ରାଜନୀତିଜ୍ଞମାନେ ସଦାବେଳେ ଇଂଲଣ୍ଡର ସ୍ୱାର୍ଥକୁ ଦୃଷ୍ଟିରେ ରଖି ନୀତି ନିର୍ଦ୍ଧାରଣ କରିଥାନ୍ତି, ଏଥିରେ ମୋର ସନ୍ଦେହ ନାହିଁ ।

## ରାଣୀ ଦ୍ୱିତୀୟ ଏଲିଜାବେଥ୍

ଇଂଲଣ୍ଡର ରାଣୀ ପ୍ରଥମ ଏଲିଜାବେଥ୍ ତାଙ୍କ ରାଜତ୍ୱର ଅନ୍ତିମ ସମୟରେ ଭାରତ ସହିତ ବାଣିଜ୍ୟ ନିମନ୍ତେ ଯେଉଁ ବଣିକ ଦଳକୁ ସନନ୍ଦ ପ୍ରଦାନ କରିଥିଲେ, ସେହି ଇଷ୍ଟ ଇଣ୍ଡିଆ କୋମ୍ପାନୀ ଯଥା ସମୟରେ ବ୍ରିଟିଶ-ଭାରତୀୟ ସାମ୍ରାଜ୍ୟ

ଗଠନ କରିପାରିଥିଲା । ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱ କାଳରେ ତାଙ୍କୁ କୁହାଯାଉଥାଏ 'ଭାରତେଶ୍ୱରୀ' ବା ଭାରତସାମ୍ରାଜ୍ଞୀ । କିନ୍ତୁ, ୧୯୫୨ ମସିହାରେ ଷଷ୍ଠ ଜର୍ଜଙ୍କ ମୃତ୍ୟୁପରେ ତାଙ୍କ କନ୍ୟା ଦ୍ୱିତୀୟ ଏଲିଜାବେଥ୍ ସିଂହାସନକୁ ଆସିଲାବେଳକୁ ସେହି ସାମ୍ରାଜ୍ୟ ଆଉ ନଥାଏ । ଷଷ୍ଠ ଜର୍ଜ ଥିଲେ ଭାରତର ଶେଷ ସମ୍ରାଟ । ୧୯୫୩ ଜୁନ ମାସରେ ରାଣୀ ଏଲିଜାବେଥ୍‌ଙ୍କ ଅଭିଷେକ ଉତ୍ସବରେ ଯୋଗ ଦେବାଲାଗି ଆସିଥିଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ ।

ଅଧିକାଂଶ ସମୟ ରାଣୀ ରହୁଥିଲେ ବକିଂହାମ୍ ରାଜପ୍ରାସାଦରେ । ସେଥିଯୋଗୁଁ, ସେହି ପ୍ରାସାଦ ଆଗରେ ଅନେକ ସମୟରେ ଜନସମାଗମ ଦେଖିବାକୁ ମିଳୁଥାଏ । ଅଶ୍ୱାରୋହୀ ପ୍ରାସାଦରକ୍ଷୀମାନଙ୍କର ଚାକ୍‌ଚକ୍ୟ, ରାଜପ୍ରାସାଦ ଆଗରେ ଥିବା ଭିକ୍ଟୋରିଆଙ୍କ ମାର୍ବଲ ପ୍ରତିମୂର୍ତ୍ତି ଓ ପାଶ୍ୱବର୍ତ୍ତୀ ଉଦ୍ୟାନର ଶୋଭା ଦେଖିବାକୁ ପ୍ରାୟ ପ୍ରତ୍ୟେକ ଦିନ ସେଠାକୁ ନାଗରିକ ତଥା ପର୍ଯ୍ୟଟକମାନେ ଆସିଥାନ୍ତି । ଗବେଷଣା ଲାଗି ଯେଉଁ ଆର୍କାଇଭସ୍‌କୁ ମୁଁ ନିୟମିତ ଆସୁଥାଏଁ, ତାହା ଥାଏ ରାଜପ୍ରାସାଦ ନିକଟରେ । ତେଣୁ, ଆର୍କାଇଭସ୍ ବନ୍ଦ ହେଲାପରେ ସେଠାରେ ବୁଲିବାକୁ ଭଲ ଲାଗୁଥାଏ । ବେଳେବେଳେ, ରାଜପ୍ରାସାଦରୁ ବାହାରିଲା ବେଳେ ରାଣୀଙ୍କୁ ଦେଖିପାରୁଥିଲି । ଆନୁଷ୍ଠାନିକ ଉତ୍ସବରେ ଯୋଗଦେବା ଲାଗି ରାଣୀ ଘୋଡ଼ାରେ କିମ୍ୱା ଗାଡ଼ିରେ ବସି ଗଲାବେଳେ ରାସ୍ତାର ଦୁଇପାଖରେ ଅସଂଖ୍ୟ ଲୋକ ତାଙ୍କୁ ଦେଖୁଥାନ୍ତି । ଇଂରେଜମାନଙ୍କର ରାଜଭକ୍ତି ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ । ରାଣୀଙ୍କର କୌଣସି କ୍ଷମତା ନଥାଏ, ତଥାପି ତାଙ୍କୁ ଯେଉଁ ସମ୍ମାନ ଦିଆଯାଉଥାଏ, ତାହା ଥିଲା ଗଣତାନ୍ତ୍ରିକ ବ୍ରିଟେନ୍‌ର ଏକ ପରମ୍ପରା । ସାମାଜିକ ମୂଲ୍ୟବୋଧର ଆଦର୍ଶଭାବେ ରାଣୀ ବା ରାଜାଙ୍କୁ ଦେଖିବା ନିମନ୍ତେ ଜାତିପ୍ରାଣରେ ପ୍ରଚ୍ଛନ୍ନ ଆଗ୍ରହ ରହିଥାଏ ।

ଦିନେ ରାଣୀ କୌଣସି ଏକ ବିଦେଶଗସ୍ତରୁ ଫେରିଆସିଲେ । ସାଧାରଣତଃ ବିଦେଶରୁ ଫେରିଲାପରେ ସେ ପ୍ରାସାଦର ବାଲକୋନି ଉପରେ ଛିଡ଼ା ରହି ବାହାରେ ଅପେକ୍ଷା କରିଥିବା ଶତ ଶତ ନରନାରୀଙ୍କୁ ହାତ ହଲାଇ ଶ୍ରଦ୍ଧାଜ୍ଞାପନ କରିଥାନ୍ତି । ସେଦିନ କିନ୍ତୁ ରାଣୀଙ୍କ ଗାଡ଼ି ପ୍ରାସାଦ ପ୍ରାଙ୍ଗଣକୁ ପଶିଗଲାପରେ ଅନେକ ସମୟ ଧରି ବାଲକୋନି ଉପରେ ତାଙ୍କୁ ଦେଖିବାକୁ ମିଳିଲା ନାହିଁ । ସମବେତ ଜନତା ମୃଦୁ ସ୍ୱରରେ ବାରମ୍ୱାର ଧ୍ୱନି ଦେଲେ, "ଆମେ ରାଣୀଙ୍କୁ ଦେଖିବାକୁ ଚାହୁଁ ।" କ୍ରମେ ସେହି ଧ୍ୱନି ଉଚ୍ଚସ୍ୱରରେ ଉଚ୍ଚାରିତ ହେଲା । ଘଣ୍ଟାଏ ପର୍ଯ୍ୟନ୍ତ ସ୍ଲୋଗାନ ଲାଗିରହିବା ସତ୍ତ୍ୱେ ରାଣୀ ବାହାରିଲେ ନାହିଁ । ସନ୍ଧ୍ୟା ଆସିଯାଉଥାଏ । ନିରାଶ ହୋଇ ଲୋକମାନେ ଫେରିଗଲେ । ମନେ ମନେ ଭାବିଲି, ଗୋଟିଏ ମିନିଟ

ପାଇଁ ରାଣୀ ବାଲକୋନିରେ ଛିଡ଼ା ହୋଇଥିଲେ କ'ଣ ବା କ୍ଷତି ହୋଇଥାନ୍ତା ! ପରେ ଶୁଣିଲି, ରାଣୀ ପ୍ରାସାଦ ମଧ୍ୟରେ ପ୍ରବେଶ କଲାମାତ୍ରେ ସେଦିନ ପାର୍ଲିଆମେଣ୍ଟରେ ତାଙ୍କ ବିଦେଶଯାତ୍ରା ସମ୍ପର୍କରେ ହୋଇଥିବା ଆଲୋଚନା ବିଷୟଟି ତାଙ୍କୁ ଜଣାଇ ଦିଆଯାଇଥିଲା । ସେ ଶୁଣିପାରିଲେ ଯେ, ବିପକ୍ଷ ଦଳର ନେତାମାନେ ରାଣୀଙ୍କ ଖର୍ଚ୍ଚବହୁଳ ଗସ୍ତ ପାଇଁ ଅସନ୍ତୋଷ ପ୍ରକାଶ କରି ସରକାରୀ ଦଳକୁ ସମାଲୋଚନା କରିଛନ୍ତି । ସେହି ସମ୍ବାଦରେ ସେ ଏତେଦୂର ମର୍ମାହତ ହେଲେ ଯେ ନିଜ ଶଯ୍ୟାକକ୍ଷରୁ ଅନେକ ସମୟ ବାହାରିଲେ ନାହିଁ । ତାଙ୍କ ଗସ୍ତ ଲାଗି ବ୍ୟୟ ମଞ୍ଜୁର କରିଥିଲେ ସରକାର, ଅଥଚ ବିପକ୍ଷ ଦଳର ନିନ୍ଦାସୂଚକ ପ୍ରସ୍ତାବ ଯୋଗୁଁ ରାଣୀଙ୍କର ହିଁ ସମ୍ମାନହାନି ଘଟିଲା । ବୁଝିପାରିଲି, ଇଂଲଣ୍ଡର ରାଜା ବା ରାଣୀ ହେବାର ଅର୍ଥ, ଜନସାଧାରଣଙ୍କ ତୀକ୍ଷ୍ଣ ଦୃଷ୍ଟିରେ ରହିବାକୁ ପଡ଼ିବ ।

ଏଠାରେ ଗୋଟିଏ କଥା ଉଲ୍ଲେଖ କରିବି । ଲଣ୍ଡନସହରର କେନ୍ଦ୍ରାଞ୍ଚଳରେ ରହିଛି ହାଇଡ୍‌ପାର୍କ କର୍ଣ୍ଣର ନାମକ ଗୋଟିଏ ବିଚିତ୍ର ସ୍ଥାନ । ବିସ୍ତୃତ ଗୋଟିଏ ପାର୍କ ପାଖରେ ଜାଗାଟି ଦେଖିବାକୁ ମିଳେ । ସେଠାରେ ପ୍ରତ୍ୟେକ ଅପରାହ୍ନରେ ଲୋକସମାଗମ ଦେଖାଯାଏ । କେତେଖଣ୍ଡି କାଠର ବେଞ୍ଚ ପଡ଼ିଥାଏ ଓ ଏଣେ ତେଣେ କେତେଗୁଡ଼ିଏ ଟୁଲ୍ । ସେହି ଟୁଲ୍ ଉପରେ ଛିଡ଼ା ରହି ଯେକୌଣସି ବ୍ୟକ୍ତି, ବୃଦ୍ଧ ବା ବାଳକ, ପୁରୁଷ ବା ମହିଳା, କୃଷ୍ଣାଙ୍ଗ ନିଗ୍ରୋ ବା ଶ୍ୱେତାଙ୍ଗ ସାହେବ, ବିଦେଶୀ ବା ଇଂରେଜ, ଯାହାର ଇଚ୍ଛା ସେ ଯେକୌଣସି ବିଷୟରେ ଭାଷଣ ଦିଅନ୍ତି । ପ୍ରତ୍ୟେକ ବକ୍ତାଙ୍କ ଚାରିପାଖରେ କିଛି କିଛି ଶ୍ରୋତା ଛିଡ଼ା ରହି ବକ୍ତୃତା ଉପଭୋଗ କରନ୍ତି । ଏହା ହେଉଛି ସେଠାକାର ପ୍ରତିଦିନର ବ୍ୟାପାର । ସେଠାରେ କାହାରି ପ୍ରତି ଆକ୍ଷେପ ବା ନିନ୍ଦା କରିବା ଲାଗି ବକ୍ତାମାନଙ୍କର ଅବାଧ ସ୍ୱାଧୀନତା ଥାଏ । ସମସ୍ତ ପ୍ରକାର କ୍ରୋଧ ବା ଅଭିଯୋଗ ମନ ମଧ୍ୟରୁ ଉଦ୍‌ଗାର ନିମନ୍ତେ ସତେ ଯେପରି ବ୍ରିଟିଶ ଗଣତନ୍ତ୍ର ସେପରି ସ୍ଥାନଟିଏ ସୃଷ୍ଟି କରିଛି ।

ଥରେ ଜଣେ କୃଷ୍ଣାଙ୍ଗ ନିଗ୍ରୋ ସାହେବମାନଙ୍କ ଧଳାରଙ୍ଗକୁ ଏପରି ଅପମାନଜନକ ଭାଷାରେ ବର୍ଣ୍ଣନା କଲେ, ତାହା ଶୁଣି ଇଂରେଜମାନେ ମଧ୍ୟ କରତାଳି ଦେବା ଦେଖିଲି । ସରକାରଙ୍କ ବିପକ୍ଷରେ ନାନା ପ୍ରକାର କଥା ସେଠାରେ କୁହାଯାଏ । କେତେଥର ସେଠାରେ ଶୁଣିପାରୁଥିଲି ଇଂଲଣ୍ଡର ରାଜବଂଶ ବିରୋଧରେ ଦାରୁଣ ଅଭିଯୋଗ, ଯଥା ଦରିଦ୍ରମାନଙ୍କ ଘର ନଥିଲାବେଳେ ରାଣୀଙ୍କ ପରିବାର ପାଇଁ କାହିଁକି ଅନେକଗୁଡ଼ିଏ ରାଜପ୍ରାସାଦ ରହିବ, ଲୋକଙ୍କୁ ରୋଟି ମିଳୁ ନଥିଲା ବେଳେ କାହିଁକି ରାଜବଂଶର ପ୍ରତ୍ୟେକ ବ୍ୟକ୍ତି ଧନରତ୍ନ ଠୁଳ କରିଥିବେ, ଗଣତାନ୍ତ୍ରିକ

ଦେଶରେ କାହିଁକି ରାଜବଂଶର ପ୍ରତିପୋଷଣ ନିମନ୍ତେ ରାଜକୋଷରୁ ଅମାପ ଅର୍ଥ ବ୍ୟୟ କରାଯିବ, ଇତ୍ୟାଦି ଇତ୍ୟାଦି। ସେପରି କଥାମାନ ଶୁଣି ଦିନେ ମୋର ଜଣେ ଇଂରେଜ ଅଧ୍ୟାପକଙ୍କୁ ପଚାରିଲି, ''ରାଣୀ ଓ ତାଙ୍କ ପରିବାର ବିରୋଧରେ କଟୁବାକ୍ୟ ପ୍ରୟୋଗ କରିବାକୁ ସରକାର ପ୍ରଶ୍ରୟ ଦିଅନ୍ତି କାହିଁକି ?''

ସେ ଉତ୍ତର ଦେଇଥିଲେ, ''ତାହା ହିଁ ହେଉଛି ବ୍ରିଟିଶ ଗଣତନ୍ତ୍ରର ବିଶେଷତ୍ୱ।'' ସେ ବୁଝାଇବାକୁ ଯାଇ କହିଲେ, ବୈଧାନିକ ରୀତିରେ ରାଜତନ୍ତ୍ର ବିପକ୍ଷରେ କୌଣସି କଥା କହିବାକୁ ହେଲେ ତାହା କେବଳ ଲୋକନିର୍ବାଚିତ ପ୍ରତିନିଧିମାନେ ପାର୍ଲିଆମେଣ୍ଟ କକ୍ଷରେ କହିପାରିବେ, ରାସ୍ତାଘାଟରେ କିମ୍ବା ସଭା ସମିତିରେ ନୁହେଁ। ସାଧାରଣ ଲୋକଙ୍କର ଯଦି ବିରକ୍ତିଭାବ ପ୍ରକାଶ କରିବାକୁ ଥାଏ, ସେଥିପାଇଁ ସ୍ଥାନ ହେଉଛି ହାଇଡ୍ ପାର୍କ୍ କର୍ଣ୍ଣର୍।

ଏହାପରେ ସେ ଗୋଟିଏ ଗଳ୍ପ କହିଲେ । ଥରେ ଜଣେ ଆମେରିକୀୟ ପର୍ଯ୍ୟଟକ ହାଇଡ୍‌ପାର୍କ ପାଖ ରାସ୍ତାରେ କାର୍ ଚଳାଇ ଯାଉଥିଲେ । ହଠାତ୍ ସେ ଶୁଣିପାରିଲେ ଜଣେ ବକ୍ତା ରାଜବଂଶ ବିରୋଧରେ ବିଷୋଦ୍‌ଗାର କରୁଛନ୍ତି । ଗାଡ଼ିରେ ବସିରହି ସେ ଭାଷଣ ଶୁଣିବାକୁ ଲାଗିଲେ, କିନ୍ତୁ ଗାଡ଼ିର ଷ୍ଟାର୍ଟ ବନ୍ଦ କରିବାକୁ ଭୁଲିଗଲେ । ଦେଖିଲେ, ଜଣେ ପୋଲିସ ଅଫିସର ସେହି ଦିଗକୁ ଆସୁଛନ୍ତି । ଭାବିଲେ, ବକ୍ତାଙ୍କୁ ଗିରଫ କରିବା ପାଇଁ ସେ ଆସିଗଲେଣି । କିନ୍ତୁ, ପୋଲିସ ବକ୍ତାଙ୍କ ପାଖକୁ ନ ଯାଇ ତାଙ୍କ ଗାଡ଼ି ନିକଟକୁ ଆସି ଆଦେଶ ଦେଲେ, ''ଆପଣଙ୍କ ଗାଡ଼ିରୁ ଶବ୍ଦ ବାହାରୁଛି । ଦୟାପୂର୍ବକ ଷ୍ଟାର୍ଟ ବନ୍ଦ କରନ୍ତୁ । ଶ୍ରୋତାମାନଙ୍କୁ ପରିଷ୍କାର ଭାବରେ ଶୁଣିବାକୁ ସୁଯୋଗ ଦିଅନ୍ତୁ ।'' ଏତିକି କହି ପୋଲିସ ଅଫିସର ନିଜେ ନୀରବରେ ଛିଡ଼ା ରହି ଭାଷଣ ଶୁଣିବାକୁ ଲାଗିଲେ ।

କ୍ରମେ କ୍ରମେ ମୋର ଧାରଣା ବଦ୍ଧମୂଳ ହୋଇଥିଲା ଯେ, ଇଂଲଣ୍ଡ ଦେଶରେ ସର୍ବାଧିକ ଅସହାୟା ମହିଳା ଥିଲେ ରାଣୀ ଏଲିଜାବେଥ୍ । ଦେଶବାସୀଙ୍କ ରାଜଭକ୍ତି କେବଳ ସାମ୍ବିଧାନିକ ଓ ବାହ୍ୟ ଥିଲା ଅଥବା ପ୍ରକୃତ ଆନ୍ତରିକ ଥିଲା, ତାହା ଜାଣିବା କଷ୍ଟକର ଥାଏ । ଥରେ, ଗାଡ଼ିକୁ ଉଠିଲାବେଳେ ଗୋଡ଼ ଖସିଯାଇ ରାଣୀ ମାଟିଉପରେ ପଡ଼ିଗଲେ । ତାଙ୍କର ସେହି ପଡ଼ିଥିବା ଚିତ୍ର ସମ୍ବାଦପତ୍ର ଓ ମେଗାଜିନରେ ବାହାରିଗଲା । ଜଣେ ସାଧାରଣ ବ୍ୟକ୍ତି ସେପରି ପଡ଼ିଯାଇଥିଲେ ତାଙ୍କର ଫଟୋ କେହି ଉଠାଇ ନଥାନ୍ତେ । କିନ୍ତୁ ଯେହେତୁ ସେ ରାଣୀ, ନିମିଷ ମଧ୍ୟରେ ଫଟୋ ଉଠିଗଲା ଓ ପୁଣି ସମସ୍ତଙ୍କ ଦେଖିବା ନିମନ୍ତେ ଖବରକାଗଜରେ ବାହାର କରାଗଲା । ଭାବିଥିଲି, ନିଜର ସେପରି ଅବସ୍ଥାର ଚିତ୍ର ଦେଖି ଏଲିଜାବେଥ୍ କେତେଦୂର ବ୍ୟଥିତ ହୋଇ ନଥିବେ !

## ଏଣ୍ଟୋନୀ ଏଡେନ ଓ ତାଙ୍କ ବିଶିଷ୍ଟ ଅତିଥିଦ୍ୱୟ

ଚାର୍ଚ୍ଚିଲଙ୍କ ଅବସର ଗ୍ରହଣ ପରେ ତାଙ୍କ ମନ୍ତ୍ରିମଣ୍ଡଳରେ ଉପ-ପ୍ରଧାନମନ୍ତ୍ରୀ ଥିବା ଏଣ୍ଟୋନୀ ଏଡେନ୍ ପ୍ରଧାନମନ୍ତ୍ରୀ ହେଲେ । ଦିନେ ସମ୍ବାଦପତ୍ରରେ ପଢ଼ିଲି, ସେଦିନ ସନ୍ଧ୍ୟାବେଳେ ପ୍ରଧାନମନ୍ତ୍ରୀଙ୍କ ୧୦ ନମ୍ବର ଡାଉନିଂ ଷ୍ଟ୍ରିଟ୍ ବାସଭବନକୁ ସୋଭିଏତ ସଂଘର ଦୁଇ ତୁଙ୍ଗ ନେତା କୃଶ୍ଚେଭ୍ ଓ ବୁଲଗାନିନ୍ ରାତ୍ରିଭୋଜନ ଲାଗି ଆସିବେ । ସେମାନଙ୍କୁ ଦେଖିବା ପାଇଁ ସେଠାକୁ ଗଲି । ଡାଉନିଂ ଷ୍ଟ୍ରିଟ୍‌କୁ ପ୍ରବେଶ ସ୍ଥାନରେ ଲଣ୍ଡନ ପୋଲିସ ପଥ ଅବରୋଧ କରିଥାନ୍ତି । ତଥାପି କେତେକ ଲୋକ ପ୍ରଧାନମନ୍ତ୍ରୀଙ୍କ ବାସଭବନ ପର୍ଯ୍ୟନ୍ତ ଜଣକ ପରେ ଜଣେ ପଶିଯାଉଥିବା ଦେଖିଲି । ସମ୍ବାଦପତ୍ରର ପ୍ରତିନିଧି ଓ ଫଟୋଗ୍ରାଫରମାନଙ୍କର ଭିଡ଼ ଲାଗିଥାଏ । ଜଣେ ଭାରତୀୟ ଛାତ୍ର ବୋଲି ନିଜର ପରିଚୟ ଦେଇ ପୋଲିସର ସୌଜନ୍ୟକ୍ରମେ ମୁଁ ମଧ୍ୟ କୌଣସିପ୍ରକାରେ ୧୦ ନମ୍ବର ଘରର ଠିକ୍ ସାମ୍ନା ରାସ୍ତାରେ ଛିଡ଼ା ହୋଇପାରିଲି । ରାସ୍ତାଟି ସଂକୀର୍ଣ୍ଣ ଥିବାରୁ ନେତାମାନଙ୍କୁ ଦେଖିବା ସହଜ ହେଲା ।

ସନ୍ଧ୍ୟା ଠିକ୍ ୮ଟା ସମୟରେ ପ୍ରଧାନମନ୍ତ୍ରୀଙ୍କ ବାସଭବନର ରୁଦ୍ଧ ପ୍ରବେଶଦ୍ୱାର ଖୋଲିଲା । ଏଣ୍ଟୋନୀ ଏଡ଼େନ ଓ ତାଙ୍କ ବୈଦେଶିକ ବ୍ୟାପାର ମନ୍ତ୍ରୀ ହ୍ୟାରୋଲ୍ଡ ମ୍ୟାକ୍‌ମିଲାନ୍ ଅତିଥିମାନଙ୍କୁ ସ୍ୱାଗତ କରିବା ଲାଗି ବାହାରି ଆସିଲେ । ଅବିଳମ୍ବେ ଗୋଟିଏ ମସ୍ତବଡ଼ କଳାରଙ୍ଗର ଗାଡ଼ିରୁ ସୋଭିଏତ୍ ନେତାଦ୍ୱୟ ବାହାରିଲେ । ସଙ୍ଗେ ସଙ୍ଗେ ସେମାନେ ଭିତରକୁ ପଶିଗଲେ ଓ ଦ୍ୱାର ବନ୍ଦ ହେଲା । ନୀରବରେ ଦର୍ଶକମାନେ ସେଠାରୁ ଫେରିଲେ ।

ପରଦିନ ସମ୍ବାଦପତ୍ରରେ ବାହାରିଲା, ନୈଶ ଭୋଜିରେ ବୁଲଗାନିନ ନିଜ ସାଙ୍ଗରେ ଆଣିଥିବା ଖାଦ୍ୟ ପ୍ୟାକେଟଟି ଖୋଲି ସେଥିରୁ ଭୋଜନ କଲେ, କାରଣ ନିଜର ଦୈନନ୍ଦିନ ଖାଦ୍ୟ ଛଡ଼ା ଅନ୍ୟ କୌଣସି ଖାଦ୍ୟ ତାଙ୍କୁ ସହ୍ୟ ହୁଏ ନାହିଁ । ସେହିପରି, ନିଜ ପକେଟରୁ ବୋତଲ କାଢ଼ି ସେଥିରୁ 'ଭଡ୍‌କା' ନାମକ ମଦ ପାନକଲେ, ଇଂଲିଶ୍ ମଦ ଛୁଇଁଲେ ନାହିଁ ।

କିଛିଦିନ ପରେ ଗୋଟିଏ ପରିପୂର୍ଣ୍ଣ ହଲରେ ଶ୍ରମିକନେତା ଅନୁରିନ୍ ବେଭାନ ଭାଷଣ ଦେବା ଶୁଣିଲି । ସେ ପ୍ରଧାନମନ୍ତ୍ରୀ ଏଡେନଙ୍କ ଶାନ୍ତିନୀତିର ସମାଲୋଚନା କରି କହିଲେ, "ବିଶ୍ୱଶାନ୍ତି ନିମନ୍ତେ ଯଦି କୌଣସି ବ୍ୟକ୍ତି ବର୍ତ୍ତମାନ ସମୟରେ ପ୍ରକୃତ ଉଦ୍ୟମ କରୁଥାନ୍ତି, ସେ ହେଉଛନ୍ତି ଭାରତର ଜବାହାରଲାଲ ନେହରୁ, ଇଂଲଣ୍ଡର ଏଣ୍ଟୋନୀ ଏଡେନ ନୁହନ୍ତି ।" ସଭାକକ୍ଷରେ ବିପୁଳ କରତାଳିରୁ ଜାଣିପାରିଲି, ନେହରୁଙ୍କ ବ୍ୟକ୍ତିତ୍ୱ ଓ ନୀତି ପ୍ରତି ବ୍ରିଟିଶ ଜାତିର ସମ୍ମାନ ରହିଛି ।

## ନେହରୁ, କୃଷ୍ଣମେନନ, ଇନ୍ଦିରା ଓ ଆଜାଦ

ମୋର ଲଣ୍ଡନ ରହଣି ସମୟରେ ଥରେ ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ ଲଣ୍ଡନ ଆସିଥିଲେ । ତାଙ୍କ ସାଙ୍ଗରେ ଥାନ୍ତି କନ୍ୟା ଇନ୍ଦିରା ଓ ବନ୍ଧୁ କୃଷ୍ଣ ମେନନ । ଭାରତୀୟ ଦୂତାବାସରେ ପ୍ରବାସୀ ଭାରତୀୟମାନଙ୍କୁ ସମ୍ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ଦୂତାବାସ ନିକଟରେ ପହଞ୍ଚିଲାବେଳକୁ ନେହରୁଙ୍କୁ ଦେଖିବାଲାଗି ରାସ୍ତାର ଦୁଇ ପାଖରେ ଶହ ଶହ ଇଂରେଜ ନରନାରୀ ଅପେକ୍ଷା କରିଥାନ୍ତି । ତେଣେ, ଗୋଟିଏ କୋଣରେ ଦୁଇଜଣ ଭାରତୀୟ ହାତରେ ଦୁଇଟି ବଡ଼ ବଡ଼ ପ୍ଲାକାର୍ଡ଼ ଧରି ଛିଡ଼ା ରହିଥାନ୍ତି । କୌଣସି ବିଷୟରେ ପ୍ରତିବାଦ ଜଣାଇବା ପାଇଁ ସେମାନେ ସେପରି ପନ୍ଥା ଧରିଥିଲେ । ଦୁଃଖ ଆସିଲା, ବିଦେଶରେ ନିଜ ଦେଶର ପ୍ରଧାନମନ୍ତ୍ରୀଙ୍କ ବିପକ୍ଷରେ ବିକ୍ଷୋଭ ପ୍ରଦର୍ଶନ କରିବା ଉଚିତ ନୁହେଁ । ନେହରୁଙ୍କ ଆସିବା ସମୟ ହୋଇଗଲା । ଠିକ୍ ଗୋଟିଏ ମିନିଟ ଆଗରୁ କେଉଁ ଅଜଣା ଜାଗାରୁ କେତେଜଣ ଲଣ୍ଡନ ପୋଲିସ ବାହାରି ଆସି ବିନା ବାକ୍ୟବ୍ୟୟରେ ସେହି ଦୁଇ ଭାରତୀୟଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ନେଇଗଲେ । ଦୃଶ୍ୟଟି ସମସ୍ତେ ଦେଖିଲେ, କିନ୍ତୁ କେହି ହସିଲେ ନାହିଁ ।

ସାହେବମାନଙ୍କ ହର୍ଷଧ୍ୱନି ମଧ୍ୟରେ ନେହରୁ ଦୂତାବାସ ମଧ୍ୟକୁ ପ୍ରବେଶ କଲେ । ଇନ୍ଦିରା ଓ କୃଷ୍ଣ ମେନନ ପଛେ ପଛେ ଚାଲିଲେ । ଆମେ ସମସ୍ତେ ନିର୍ଦ୍ଦିଷ୍ଟ ହଲ ଭିତରେ ବସିଲୁଁ । ନେହରୁ ଚେୟାରରେ ବସିଲାମାତ୍ରେ ଜଣେ ପୃଥୁଳକାୟ ପଗଡ଼ିଧାରୀ ଉତ୍ତରଭାରତୀୟ ଭଦ୍ରବ୍ୟକ୍ତି ଛିଡ଼ା ହୋଇ ବକ୍ତବ୍ୟ ଆରମ୍ଭ କଲେ, "ଆପ୍ ତୋ ଭାରତମାତା କି ଏକ୍ ଉଜ୍ଜ୍ୱଳ ରତ୍ନ ଅଉର୍ ଦେଶ କି ମହାନ ନେତା ହୈଁ..।" ସଙ୍ଗେ ସଙ୍ଗେ ନେହରୁ କହିଉଠିଲେ, "ହୋ ଗୟା, ହୋ ଗୟା, ବହୁତ୍ କୁଛ୍ ହୋ ଗୟା । ଆପ୍ ମେହରବାନି କରକେ ବୈଠ୍ ଜାଇୟେ ।" ଅପ୍ରସ୍ତୁତ ଭାବରେ ସେହି ବ୍ୟକ୍ତି ତଳେ ବସିପଡ଼ିଲେ । ନେହରୁ ବସିରହି ତାଙ୍କର ସଂକ୍ଷିପ୍ତ ଭାଷଣ ଦେଲେ ।

ବାହାରକୁ ଆସିଲାପରେ ଦେଖିଲେ, ବହୁସଂଖ୍ୟକ ଇଂରେଜ ତାଙ୍କୁ ଦେଖିବା ଉଦ୍ଦେଶ୍ୟରେ ଛିଡ଼ା ରହିଛନ୍ତି । ଅକସ୍ମାତ୍ ନିଜର ସ୍ୱଭାବସୁଲଭ ଢଙ୍ଗରେ ଗାଡ଼ିର ଇଞ୍ଜିନ ଉପରକୁ ଉଠିପଡ଼ି ସେ କିଛି ସମୟ ଛିଡ଼ା ରହି ସମସ୍ତଙ୍କୁ ହାତ ହଲାଇ ଶୁଭେଚ୍ଛା ଜଣାଇଲେ । ସାହେବମାନେ ଖୁସିରେ କରତାଳି ଦେଲେ ।

ସେହିଦିନ ସନ୍ଧ୍ୟାରେ Y.M.C.A. ପ୍ରେକ୍ଷାଗାର ମଧ୍ୟରେ ଇନ୍ଦିରାଗାନ୍ଧିଙ୍କର ପ୍ରେସ୍ ସହିତ ସାକ୍ଷାତକାର ଥାଏ । ସେତେବେଳେ ସେ ନେହରୁଙ୍କ କନ୍ୟା ଭାବରେ ଲଣ୍ଡନ ଆସିଥିଲେ, ରାଜନୈତିକ ବ୍ୟକ୍ତି ଭାବରେ ନୁହେଁ । ତେଣୁ ସାମ୍ବାଦିକମାନେ

ତାଙ୍କୁ ଭାରତୀୟ ସଂସ୍କୃତି ଓ ସାମାଜିକ ସଂସ୍କାର ପ୍ରଭୃତି ବିଷୟରେ ପ୍ରଶ୍ନ ପଚାରିଲେ । ପ୍ରତ୍ୟେକ ପ୍ରଶ୍ନର ଉତ୍ତର ସେ ତୀକ୍ଷ୍ଣ ସ୍ୱରରେ ଦେଉଥିଲେ ।

ତାହାର କିଛିଦିନ ପରେ ମୌଲାନା ଆବୁଲ କାଲାମ ଆଜାଦ ଲଣ୍ଡନ ଆସିଲେ । ସେ ଥିଲେ ଭାରତର ଶିକ୍ଷାମନ୍ତ୍ରୀ । ଭାରତୀୟ ଛାତ୍ରମାନଙ୍କର ସୁବିଧା ଅସୁବିଧା ବିଷୟ ଅବଗତ ହେବା ନିମନ୍ତେ ସେ ଗୋଟିଏ ବୈଠକ ଡକାଇଲେ । ଦୂତାବାସର ସଭାକକ୍ଷରେ ବୈଠକ ବସିଲା । କେତେଜଣ ଛାତ୍ର ମୋତେ ବାଧ୍ୟ କଲେ ଯେ ଲଣ୍ଡନ ସହରରେ ବଡ଼ ଧରଣର ଗୋଟିଏ ଭାରତୀୟ ଛାତ୍ରାବାସ ନିର୍ମାଣ ପାଇଁ ମୁଁ ଶିକ୍ଷାମନ୍ତ୍ରୀଙ୍କୁ ଅନୁରୋଧ ଜଣାଇବି । ମୌଲାନା ଆଜାଦ ଇଂରାଜୀ ଭାଷା ଉତ୍ତମ ଭାବେ ଜାଣିଥିଲେ ସୁଦ୍ଧା ସେଥିରେ କଥା କହନ୍ତି ନାହିଁ ବୋଲି ମୋତେ ଜଣାଥାଏ । ମୁଁ ମଧ୍ୟ ହିନ୍ଦୀରେ କହିପାରିବି ନାହିଁ ବୋଲି ଜାଣିଥିଲି । ତେଣୁ, ବାଧ୍ୟ ହୋଇ ଇଂରାଜୀରେ ଆପତ୍ତି ଉତ୍ଥାପନ କଲି ଯେ ଭାରତୀୟ ଛାତ୍ରମାନେ ଏଣେ ତେଣେ ଇଂରେଜ ଲ୍ୟାଣ୍ଡଲେଡ଼ିମାନଙ୍କ ଭଡ଼ାଘରେ ରହି ନାନା ପ୍ରକାର ଅସୁବିଧା ଭୋଗୁଛନ୍ତି, କଲେଜ ଠାରୁ ଦୂରବର୍ତ୍ତୀ ଜାଗାରେ ରହି ହଇରାଣ ହେଉଛନ୍ତି ଓ ଖାଇବା ପିଇବାରେ କଷ୍ଟ ପାଉଛନ୍ତି, ଇତ୍ୟାଦି । ବ୍ୟଙ୍ଗ ଓ କୌତୁକ ଛଳରେ ସେ ହସି ହସି ଉର୍ଦ୍ଦୁରେ କହିଲେ, ''ହଷ୍ଟେଲ ତିଆରି କରିଦେଲେ ଏକାପାଖରେ ରହି ହସଖୁସି, ମଉଜ ମଜଲିସ୍‌ରେ ସମୟ କଟାଇବାକୁ ମଉକା ପାଇବ । ପାଠ କମ୍ ପଢ଼ିବ, କଥା ବେଶି କହିବ । ନା, ମୁଁ ଚାହେଁ ଆମର ପିଲାମାନେ କଷ୍ଟ, ଅସୁବିଧା ଭୋଗ କରିବାକୁ ଶିଖନ୍ତୁ । ଇଂରେଜମାନଙ୍କ ଘରେ ରହି ସେମାନେ ଯେପରି ସବୁ କିସମର କାମ କରନ୍ତି, ସେହିପରି ଗୁଣ ଅନୁକରଣ କରନ୍ତୁ । ଇଉରୋପୀୟମାନଙ୍କ ଚାଲିଚଳଣ, ଆଦବକାୟଦା, କାର୍ଯ୍ୟକୁଶଳତା ମଧ୍ୟରେ ଯାହା କିଛି ଭଲ, ସେସବୁ ଦେଖି ନିଜର ବ୍ୟକ୍ତିତ୍ୱ ବିକାଶ କରିବା ଦରକାର ।'' ଆଜାଦଙ୍କ ରହସ୍ୟପୂର୍ଣ୍ଣ କଥାରେ ଆମେ ଆମର ଦାବି କଥା ଭୁଲିବସିଲୁଁ ।

ଲଣ୍ଡନ ରହଣି କାଳରେ ଇଂଲଣ୍ଡର ଅନ୍ୟ କେତେଜଣ ବିଶିଷ୍ଟ ବ୍ୟକ୍ତି ଓ ଶିକ୍ଷାବିତ୍‌ମାନଙ୍କୁ ଦେଖିଥିଲି । ସେମାନଙ୍କ କଥା ଲେଖୁନାହିଁ ।

## କେତେକ ଦର୍ଶନୀୟ ସ୍ଥାନର ସ୍ମୃତି

ଇଂଲଣ୍ଡ ଦେଶର ଆକାର ଅତି କ୍ଷୁଦ୍ର । ସେ ଦେଶର ଇତିହାସ ସୁପ୍ରାଚୀନ ନୁହେଁ, କିମ୍ବା ସଭ୍ୟତା ମହାନ ନୁହେଁ । ଅନେକ ଦୃଷ୍ଟିରୁ ସେଠାରେ ମହତ୍ତ୍ୱପୂର୍ଣ୍ଣ ଦର୍ଶନୀୟ ସ୍ଥାନମାନ ଆଶା କରିବା ଉଚିତ ନୁହେଁ । ଭାରତର ଏଲୋରା ବା ଅଜନ୍ତା, କୋଣାର୍କ ବା ତାଜମହଲ ପ୍ରଭୃତି ଆକର୍ଷଣୀୟ ସ୍ଥାନ ଇଂଲଣ୍ଡରେ ବା ମିଳିବ କୁଆଡୁ ! ସେ ଦେଶର ଉଇଣ୍ଡସର ଓ ଏଡିନବରା ଦୁର୍ଗ ଦୁଇଟି ଦେଖିଲା

ପରେ ମନେହେଲା ଆମ ଦେଶର ଚିତୋର, ରାଣ୍ଥାମ୍ଭୋର, ଗୋଲକୋଣ୍ଡା, ଆଗ୍ରାଦୁର୍ଗ ଓ ଲାଲକିଲ୍ଲା ତୁଳନାରେ ସେଗୁଡ଼ିକ ଅତ୍ୟନ୍ତ ନଗଣ୍ୟ । ସେହିପରି, ଇଂଲଣ୍ଡର ବକିଂହାମ୍ ଓ କେନସିଙ୍ଗଟନ ପ୍ରଭୃତି ରାଜପ୍ରାସାଦ ଆମ ଦେଶର ଉଦୟପୁର ଓ ଜୟପୁର ପ୍ରଭୃତି ସ୍ଥାନର ରାଜପ୍ରାସାଦ ଆଗରେ କିଛି ନୁହେଁ । ପ୍ରାଚୀନ କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟମଣ୍ଡିତ ସ୍ଥାନ ସେ ଦେଶରେ ପ୍ରାୟ ନାହିଁ । ଭାରତୀୟ ମନ୍ଦିରରାଜିର କାରୁକାର୍ଯ୍ୟମୟ ବୈଚିତ୍ର୍ୟ ସହିତ ବ୍ରିଟିଶ୍ ଗିର୍ଜାଗୁଡ଼ିକର ସୌନ୍ଦର୍ଯ୍ୟ ତୁଳନା କରାଯାଇ ପାରିବ ନାହିଁ । ସେହିପରି, ପ୍ରାକୃତିକ ଶୋଭାମୟ ଶ୍ରୀନଗର, ସିମଲା ଓ ନୈନିତାଲ ପ୍ରଭୃତି ଶୈଳନିବାସ ଖୋଜି ପାଇବା ଅସମ୍ଭବ । ଗଙ୍ଗା, ଯମୁନା, ନର୍ମଦା, କୃଷ୍ଣା ଓ କାବେରୀ ପରି ନଦୀ ମଧ୍ୟ ନାହିଁ । ସଂକ୍ଷେପରେ, ପର୍ଯ୍ୟଟକମାନଙ୍କ ପାଇଁ ଇଂଲଣ୍ଡ ଉପଯୁକ୍ତ ସ୍ଥାନ ନ ହେବା କଥା ।

ଅପର ପକ୍ଷରେ, ସାମ୍ରାଜ୍ୟ ଓ ଶକ୍ତି ବିସ୍ତାର ଯୁଗରେ ଇଂରେଜମାନେ ପୃଥିବୀର ଅଧିକାଂଶ ଦେଶର ମହାର୍ଘ ଐତିହାସିକ ସମ୍ପଦ ଅପହରଣ ପୂର୍ବକ ନିଜ ଦେଶରେ ସଞ୍ଚିତ କରିପାରିଥିଲେ । ଅନ୍ୟାନ୍ୟ ସଭ୍ୟତାର ଲୁଣ୍ଠିତ ପ୍ରାଚୀନ ଭାସ୍କର୍ଯ୍ୟ, ଚିତ୍ରକଳା, ଧନରତ୍ନ, ହୀରାନୀଳା, ମୋତି ମାଣିକ୍ୟ, ହସ୍ତଶିଳ୍ପ, ପାଣ୍ଡୁଲିପି ଓ ଯାବତୀୟ ଆକର୍ଷଣୀୟ ସାମଗ୍ରୀମାନ ବ୍ରିଟିଶ ମିଉଜିୟମ୍ ଓ ଭିନ୍ନ ଭିନ୍ନ ଯାଦୁଘର ତଥା ଚିତ୍ରଶାଳାଗୁଡ଼ିକରେ ସଂରକ୍ଷିତ ରହିଥିବାରୁ ସେହିସବୁ ସ୍ଥାନ ଦର୍ଶନୀୟ ରୂପ ଧାରଣ କରିଛି । ପ୍ରାଚୀନ ମିଶରଦେଶର ପାଞ୍ଚହଜାର ବର୍ଷର 'ମାମି' ବା ମୃତଦେହ ପାଖରୁ ଆରମ୍ଭ କରି ଅତୀତ ଯୁଗର ନାନାବିଧ ଶିଳାଲିପି, ମୂର୍ତ୍ତି, ପୁରାତନ ପଦାର୍ଥ, ରାଜା ସମ୍ରାଟମାନଙ୍କର ସିଂହାସନ, ଅଳଙ୍କାର, ଅସ୍ତ୍ରଶସ୍ତ୍ର ଓ ପୋଷାକ ପରିଛଦ ଇତ୍ୟାଦି ସମେତ ମଧ୍ୟଯୁଗର ଓ ଆଧୁନିକ ଯୁଗର ଚାରୁକଳା ଓ ହସ୍ତଶିଳ୍ପ ପ୍ରଭୃତିର ଭଣ୍ଡାର ଘର ରୂପେ ଲଣ୍ଡନ ସହର ବିଶ୍ୱବିଦିତ । କେବଳ ଭାରତରୁ ଇଂରେଜମାନେ ଯେ କେତେ ମୂଲ୍ୟବାନ ସାମଗ୍ରୀ ନେଇ ଯାଇଥିଲେ, ତାହା କଳନା କରିବା କଷ୍ଟକର । ସେଥିମଧ୍ୟରେ କୋହିନୂର ସିନା ଗୋଟିଏ । ବ୍ରିଟିଶ ମିଉଜିୟମରେ ଗଚ୍ଛିତ ଥିବା କେବଳ ଭାରତୀୟ ପାଣ୍ଡୁଲିପି ଓ ତାଳପତ୍ର ପୋଥିଗୁଡ଼ିକର ସଂଖ୍ୟା ୩୦ ସହସ୍ର ବୋଲି ଶୁଣିଥିଲି ।

ପ୍ରତ୍ୟେକ ବର୍ଷ ଗ୍ରୀଷ୍ମଋତୁରେ ପୃଥିବୀର ବିଭିନ୍ନ ଦେଶରୁ ନିୟୁତ ନିୟୁତ ପର୍ଯ୍ୟଟକ ଲଣ୍ଡନ ଆସନ୍ତି ଆମୋଦ ପ୍ରମୋଦ ଓ ଆରାମ ପାଇଁ ଏବଂ ସେଥିସଙ୍ଗେ ଏଠାକାର ମିଉଜିୟମ, ସଂଗ୍ରହାଳୟ, ଚିତ୍ରଶାଳା ଓ ପ୍ରଦର୍ଶନଶାଳା ଦେଖିବା ନିମନ୍ତେ । ସେଥିସହ ସେମାନେ ଦେଖନ୍ତି ରାଜପ୍ରାସାଦ, ପାର୍ଲିଆମେଣ୍ଟ ଭବନ, ଲଣ୍ଡନ ଟାୱାର, ଟେମସ୍ ପୋଲ, ୱେଷ୍ଟମିନ୍‌ଷ୍ଟାର ଆବି ଓ ସେଣ୍ଟପଲ୍ ଗିର୍ଜା ପ୍ରଭୃତି ସ୍ଥାନ ।

## ବ୍ରିଟିଶ୍ ମିଉଜିୟମ

ଲଣ୍ଡନ ବିଶ୍ୱବିଦ୍ୟାଳୟକୁ ଲାଗିଥାଏ ବ୍ରିଟିଶ ମିଉଜିୟମ ଓ ଲାଇବ୍ରେରୀ । ଲାଇବ୍ରେରୀରେ ଅଧ୍ୟୟନ କରିବାକୁ ସେଠାକୁ ମୋତେ ଯିବାକୁ ହେଉଥିଲା । ସେହି ପାଠାଗାରର ସୁଖ୍ୟାତି ଥାଏ ଯେ ସେଠାକାର ସୁପ୍ରଶସ୍ତ ପଢ଼ିବା କକ୍ଷ ମଧ୍ୟରେ ପିନ୍‌କଣ୍ଟାଟିଏ ପଡ଼ିଗଲେ ବି ତାହା ଜଣାପଡ଼ିଯାଏ । ଏହାକୁ କୁହାଯାଏ, 'ପିନ୍ ଡ୍ରପ୍ ସାଇଲେନ୍ସ' । ବାସ୍ତବିକ୍, ତାହାହିଁ ଥାଏ ସେହି ପାଠାଗାରର ବିଶେଷତ୍ୱ । ଶତାଧିକ ଅଧ୍ୟୟନରତ ବ୍ୟକ୍ତି ନୀରବ ଭାବରେ ପଢ଼ିବା ଲେଖିବାରେ ନିମଗ୍ନିତ ରହନ୍ତି, କେହି କାହାରି ସାଙ୍ଗରେ କଥାବାର୍ତ୍ତା କରିବାର ପ୍ରଶ୍ନ ନଥାଏ । ଏକଦା ସେହିଠାରେ କାର୍ଲ ମାର୍କସ୍ ବର୍ଷ ପରେ ବର୍ଷ ସାମ୍ୟବାଦ ବିଷୟରେ ଗବେଷଣା କରିଥିଲେ । ଇଂଲଣ୍ଡ ତଥା ପୃଥିବୀର ଅସଂଖ୍ୟ ବିଦ୍ୱାନ ବ୍ୟକ୍ତିଙ୍କ ପାଇଁ ବ୍ରିଟିଶ ଲାଇବ୍ରେରୀ ହେଉଛି ବିଦ୍ୟାର ଭଣ୍ଡାର ଘର ।

ଲାଇବ୍ରେରୀକୁ ଲାଗି ରହିଛି ମିଉଜିୟମ । ସେହି ସୁବିଶାଳ ଅଟ୍ଟାଳିକା ମଧ୍ୟରେ ଗଚ୍ଛିତ ରହିଛି ସତେ ଯେପରି ସମଗ୍ର ବିଶ୍ୱର ଐତିହ୍ୟ ବିଭବ । ବାରମ୍ବାର ସେହି ସୌଧର ଭିନ୍ନ ଭିନ୍ନ କକ୍ଷ ମଧ୍ୟରେ ବହୁବିଧ ପ୍ରାଚୀନ ସାମଗ୍ରୀ ଦେଖିଲା ବେଳେ ଅତୀତ ଓ ମଧ୍ୟଯୁଗର ମାନବ ସଭ୍ୟତା ସମ୍ପର୍କରେ ସମ୍ୟକ ଧାରଣା ଆସିଯାଉଥାଏ । ବ୍ରିଟିଶ ଜାତି ପୃଥିବୀର ନାନା ପ୍ରାନ୍ତରୁ ମହାର୍ଘ ଐତିହାସିକ ଉପାଦାନମାନ ସଂଗ୍ରହ କରି ଗଚ୍ଛିତ ରଖିଥିବା ନିମନ୍ତେ ଗୋଟିଏ ସ୍ଥାନରେ ବିଶ୍ୱ ଇତିହାସର ଅନେକ ପରିଚୟ ମିଳିପାରୁଛି ।

ଦିନେ ପ୍ରାଚୀନ ମିଶରୀୟ ଫ୍ୟାରୋ ବା ରାଜାମାନଙ୍କର ସଂରକ୍ଷିତ ଶବଗୁଡ଼ିକ ଦେଖିବା ଲାଗି 'ମିଶର ହଲ' ମଧ୍ୟରେ ପ୍ରବେଶ କଲି । ପାଞ୍ଚ ହଜାର ବର୍ଷ ପୂର୍ବକାଳର ପୁରାତନ ଶବମାନ ସେହି କକ୍ଷରେ ରଖାଯାଇଥାଏ । ନୀଳ ସଭ୍ୟତା ଯୁଗର ମିଶରୀୟମାନେ ଏପରି ଏକ ପ୍ରଲେପ ଉଦ୍ଭାବନ କରିପାରିଥିଲେ, ଯେଉଁ ପ୍ରଲେପ ମୃତବ୍ୟକ୍ତିଙ୍କ ଶରୀର ଉପରେ ପ୍ରୟୋଗ କରି ଶବଗୁଡ଼ିକୁ ଦୀର୍ଘକାଳବ୍ୟାପୀ ଅକ୍ଷତ ଅବସ୍ଥାରେ ରଖାଯାଉଥିଲା । ସେମାନଙ୍କର ବିଶ୍ୱାସ ଥାଏ, ଆତ୍ମା ଅମର ଓ ଦିନେ ନା ଦିନେ ନିଜର ପରିତ୍ୟକ୍ତ ଶରୀରକୁ ଫେରିଆସିବ । ସେଥିଲାଗି ରାଜାମାନେ ନିଜ ନିଜ ଶବକୁ ଅକ୍ଷତ ଅବସ୍ଥାରେ ରଖିବା ଉଦ୍ଦେଶ୍ୟରେ ସୁବିଶାଳ ପିରାମିଡ୍‌ମାନ ନିର୍ମାଣ କରିଥିଲେ । ସାଧାରଣ ଦେଶବାସୀଙ୍କର ମଧ୍ୟ ସେହିପରି ବିଶ୍ୱାସ ଥାଏ । ତେଣୁ, ସେମାନଙ୍କ ମଧ୍ୟରୁ କାହାରି କାହାରିର ମୃତଦେହ ଉପରେ ଅନ୍ୟମାନେ ପ୍ରଲେପ ଲଗାଇ ନିରାପଦ ସ୍ଥାନରେ ପୋତି ରଖିଥିଲେ । ସେହି 'ମାମି'ଗୁଡ଼ିକ ଦେଖିବାପାଇଁ ଅନେକ ଦର୍ଶକ ଆସିଥାନ୍ତି । ମୁଁ ମଧ୍ୟ ଦିନେ ପହଞ୍ଚିଲି ।

ମିଶର ହଲର ଦ୍ୱାରଦେଶରେ ବସିଥାନ୍ତି ଜଣେ ବୃଦ୍ଧ ମାମୁଲି ଜଗୁଆଳ । ତାଙ୍କୁ କହିଲି, ‘‘ମୁଁ ରାଜାମାନଙ୍କର ଶବ ଦେଖିବାକୁ ଯିବି ।’’ ଉତ୍ତର ପାଇଲି, ‘‘ଏଠାରେ କେବଳ ପ୍ରଜାମାନଙ୍କର ଶବ ରହିଛି ।’’ କୌତୁକ ଛଳରେ ମୁଁ କହିଲି, ‘‘ତା ହେଲେ, ବ୍ରିଟିଶ୍ ମିଉଜିୟମର ମୂଲ୍ୟ ବୋଲି କିଛି ନାହିଁ ।’’ ଚୌକିରୁ ଉଠିପଡ଼ି ସେ ଭଦ୍ରଭାବରେ ପଚାରିଲେ, ‘‘ଆପଣ ବୋଧହୁଏ ଭାରତୀୟ, ତେବେ ହିନ୍ଦୁ ନା ମୁସଲମାନ ?’’ ମୁଁ ନିଜକୁ ହିନ୍ଦୁ ବୋଲି ପରିଚୟ ଦେବାରୁ ସେ କହିଲେ, ‘‘ହିନ୍ଦୁ ବିଶ୍ୱାସ ଅନୁଯାୟୀ ସବୁ ମନୁଷ୍ୟର ଦେହ ପାଞ୍ଚଟି ପ୍ରାକୃତିକ ଉପାଦାନ, ଯଥା— କିଛି ମାଟି, କିଛି ଜଳ, କିଛି ଆଲୋକ, କିଛି ପବନ ଓ କିଛି ଶୂନ୍ୟ (କ୍ଷିତି, ଅପ୍, ତେଜସ୍, ମରୁତ୍, ବ୍ୟୋମ) ବା ପଞ୍ଚଭୂତରେ ଗଠିତ । ସୁତରାଂ, ସବୁ ଶବ ସମାନ, ପୋତିଦେଲେ ସେହି ମାଟି, ପୋଡ଼ିଦେଲେ ବି ସେହି ମାଟି । ତେଣୁ, ରାଜା ଓ ପ୍ରଜାର ଶରୀର ମଧ୍ୟରେ ପାର୍ଥକ୍ୟ କ’ଣ ? ମୃତ୍ୟୁ ପରେ କିଏ ରାଜା, କିଏ ପ୍ରଜା ?’’

ତାଙ୍କର ତତ୍ତ୍ୱଜ୍ଞାନ ଦେଖି ମୁଁ ରହସ୍ୟ କଲି, ‘‘ମିଶରୀୟ ରାଜାମାନଙ୍କର ଶବର ବିଶେଷତ୍ୱ ହେଲା, ସେମାନେ ବିଶ୍ୱାସ କରୁଥିଲେ ଯେ ମୃତ୍ୟୁପରେ ସେମାନଙ୍କ ଆତ୍ମା ସୂର୍ଯ୍ୟଙ୍କ ରଥରେ ବସି ନକ୍ଷତ୍ରରାଜ୍ୟ ପରିକ୍ରମା କରିବାକୁ ଯାଆନ୍ତି ଓ ଭ୍ରମଣ ଶେଷରେ ଶବ ମଧ୍ୟକୁ ଫେରିଆସନ୍ତି । ସେଥିଲାଗି ମୁଁ ରାଜାମାନଙ୍କ ପବିତ୍ର ଶରୀର ଦର୍ଶନ କରିବାକୁ ବାସନା କରିଥିଲି ।’’ ଜଗୁଆଳ ଉତ୍ତର ଦେଲେ, ‘‘ପ୍ରଜାମାନଙ୍କର ମଧ୍ୟ ପୁନର୍ଜୀବନ ପାଇଁ ପ୍ରବଳ ଆଶା ଥାଏ, ଯଦିଚ ନକ୍ଷତ୍ରଲୋକରେ ଭ୍ରମଣ କରିବାକୁ ସେମାନଙ୍କ ଶକ୍ତି ନ ଥାଏ । ସୂର୍ଯ୍ୟଙ୍କୁ ସାରଥି ଭାବରେ ନିଯୁକ୍ତ କରିବାକୁ ସେମାନଙ୍କୁ ବା ଅର୍ଥ ମିଳିଥାନ୍ତା କେଉଁଠୁ ? ଆଧୁନିକ ମନୁଷ୍ୟ ଭାବରେ ଆପଣ ପ୍ରଜାଙ୍କର ଶବ ଦେଖିବା ଯାହା, ରାଜାଙ୍କର ଦେହ ଦେଖିବା ମଧ୍ୟ ତାହା ।’’ କୌତୁକ କରି ସେ ପୁଣି କହିଲେ, ‘‘ଯଦି ରାଜାମାନଙ୍କ ଶବ ଦେଖିବାକୁ ଇଚ୍ଛା, ତେବେ ମିଶରଦେଶକୁ ଯାଆନ୍ତୁ । ସେଠାକାର ଲୋକମାନେ ଫାୟାରୋଙ୍କୁ ଫେରିପାଇବା ଲାଗି ଶବଗୁଡ଼ିକୁ ରଖିଛନ୍ତି, ସେମାନେ ଫେରିଆସିଲେ ରାଜତ୍ୱ କରିବେ । ଆମେ ଇଂଲିଶ ଲୋକେ କେବଳ ଦରିଦ୍ର ପ୍ରଜାଙ୍କ ଶବଗୁଡ଼ିକୁ ଶ୍ରଦ୍ଧାରେ ସାଇତି ରଖିଛୁଁ, ଜୀବନ ଫେରି ପାଇଲେ ଆମ ସାଙ୍ଗରେ କାମ କରିବେ ବୋଲି ।’’

ମିଉଜିୟମର ସାମାନ୍ୟ ଜଣେ କକ୍ଷ-ରକ୍ଷୀଙ୍କର ଜ୍ଞାନ ଓ ରସିକତା ଦେଖି ତାଙ୍କୁ ଧନ୍ୟବାଦ ଜଣାଇ ‘ମାମ୍ମି’ଗୁଡ଼ିକୁ ଦେଖିଲି । କାଚବାକ୍ସ ଭିତରେ ଶବଗୁଡ଼ିକ ଶୋଇଥାନ୍ତି । ଧନ୍ୟ ଥିଲା ସେହି ନୀଳନଦୀକୂଳର ମିଶରୀୟ ସଭ୍ୟତା ! ଧନ୍ୟ

ଥାଏ ସେମାନଙ୍କର ବିଜ୍ଞାନ ! ହଜାର ହଜାର ବର୍ଷ ପରେ ମଧ୍ୟ ଶୁଷ୍କଚର୍ମ ବିଶିଷ୍ଟ ଶବଗୁଡ଼ିକର ଅଙ୍ଗପ୍ରତ୍ୟଙ୍ଗ ଓ ମୁଖମଣ୍ଡଳ ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ ।

ବ୍ରିଟିଶ ମିଉଜିୟମର ପ୍ରତ୍ୟେକ ହଲ ଭିତରେ ରହିଛି ଚମକପ୍ରଦ ଦ୍ରଷ୍ଟବ୍ୟ ପଦାର୍ଥ । 'ଭାରତ ହଲ' ଭିତରେ ରହିଛି ମଧ୍ୟଯୁଗୀୟ ରାଜାମାନଙ୍କର ମହାର୍ଘ ବ୍ୟବହାର୍ଯ୍ୟ ସାମଗ୍ରୀମାନ । ମୋଗଲ ସମ୍ରାଟମାନଙ୍କର ରତ୍ନଖଚିତ ତରବାରି ଓ ଛୁରିକା,ସେମାନଙ୍କ ବହୁମୂଲ୍ୟ ପୋଷାକପରିଚ୍ଛଦ, ଆସବାବପତ୍ର ଓ ଖାଇବା ପାତ୍ର ଇତ୍ୟାଦି ଦେଖିଲେ ସେକାଳର ରାଜକୀୟ ବିଭବର ପରିଚୟ ମିଳେ । ମହାରାଜା ରଣଜିତ୍ ସିଂହଙ୍କର ଅପହୃତ ସିଂହାସନ ଦେଖିଲି । ଭାରତୀୟ ସାମଗ୍ରୀଗୁଡ଼ିକର ବର୍ଣ୍ଣନା କଲେ ଖଣ୍ଡିଏ ବଡ଼ ଗ୍ରନ୍ଥ ଲେଖାଯାଇ ପାରିବ । ମିଉଜିୟମ୍‌ର ତଳ କକ୍ଷରେ ଥିବା ବୁଦ୍ଧଙ୍କର ସୁବିଶାଳ ପ୍ରସ୍ତରମୂର୍ତ୍ତି ଦର୍ଶକମାନଙ୍କୁ ସ୍ତମ୍ଭୀଭୂତ କରିଥାଏ ।

## ଉଏଷ୍ଟମିନ୍‌ଷ୍ଟାର ଆବି

ଅନ୍ୟ ଯେଉଁ ଏକ ସ୍ଥାନରେ ବୁଲିବାକୁ ଭଲ ଲାଗୁଥାଏ, ତାହା ଥିଲା ଉଏଷ୍ଟ ମିନ୍‌ଷ୍ଟାର ଆବି । ତାହା ହେଉଛି ଗୋଟିଏ ସୁଲମ୍ବିତ ସମାଧିକକ୍ଷ ଓ ପ୍ରାର୍ଥନାଗୃହ । ଇଂଲଣ୍ଡର ରାଜା, ରାଣୀ, ପ୍ରଧାନମନ୍ତ୍ରୀ, ସାମ୍ରାଜ୍ୟ ନିର୍ମାତା, ସେନାପତି ଓ ବିଭିନ୍ନ ବର୍ଗର ମହାନ ବ୍ୟକ୍ତିମାନଙ୍କ ଶବ ସେହି ଆବି ମଧ୍ୟରେ ସମାଧି ପାଇଛି । ଅବଶ୍ୟ, କବି ସେକସ୍‌ପିୟାର, ମିଲଟନ ଓ ସେନାପତି ନେଲସନ୍ ପ୍ରଭୃତି ଅନ୍ୟ କେତେକ ପ୍ରଖ୍ୟାତ ବ୍ୟକ୍ତିଙ୍କ ସମାଧି ସ୍ଥଳ ଅନ୍ୟ ସ୍ଥାନଗୁଡ଼ିକରେ ରହିଛି । ଅନେକଗୁଡ଼ିଏ ସମାଧି ଉପରେ ଦେଖିବାକୁ ମିଳେ ମୃତ ବ୍ୟକ୍ତିମାନଙ୍କର ପ୍ରସ୍ତର ମୂର୍ତ୍ତି, ଦଣ୍ଡାୟମାନ ବା ଶାୟିତ ଅବସ୍ଥାରେ । ଏକାଦଶ ଶତାବ୍ଦୀର ଆରମ୍ଭ କାଳରୁ ଇଂଲଣ୍ଡର ସବୁ ରାଜା ବା ରାଣୀଙ୍କର ଅଭିଷେକ ଉତ୍ସବ ଆବିର ପ୍ରାର୍ଥନାକକ୍ଷରେ ସମ୍ପାଦିତ ହୋଇଆସିଛି ।

ଗୋଟିଏ ଦିନର କଥା । ଆବି ନିକଟରେ ଥିବା କମନଉଏଲଥ୍ ଗବେଷଣାଗାରର ଉପର ତାଲାରେ ବସି ରେକର୍ଡ଼ପତ୍ର ଦେଖୁଥାଏଁ । ତଳେ ରାଜପଥ ଉପରେ ସୁମଧୁର ବାଦ୍ୟଧ୍ୱନି ଶୁଣି ଝରକାବାଟେ ଚାହିଁ ଦେଖିଲି, ଦୀର୍ଘ ଶୋଭାଯାତ୍ରା ଆଗେଇଚାଲିଛି । ଆଗରେ ଚାଲିଛନ୍ତି ଶତ ଶତ ସୈନିକ । ସେମାନଙ୍କ ବନ୍ଧୁକ ସଙ୍ଗୀନଗୁଡ଼ିକ ତଳକୁ ରହିଥାଏ । ପଛରେ ଚାଲିଥାଏ ପ୍ରକାଣ୍ଡ ଗୋଟିଏ ସୁଶୋଭିତ ଓ ପୁଷ୍ପମଣ୍ଡିତ ଟ୍ରକ୍ । ତା ଉପରେ ଛିଡ଼ା ରହିଥାନ୍ତି ସେଲ୍ୟୁଟ୍ ଦେବା ଅବସ୍ଥାରେ ମେଡ଼ାଲଖଚିତ ପୋଷାକ ପରିହିତ ସେନାଧକ୍ଷମାନେ । ଜଣେ କର୍ମଚାରୀଙ୍କୁ ପଚାରି ବୁଝିଲି, ବିଗତ ମହାଯୁଦ୍ଧର ଜନୈକ ପ୍ରଖ୍ୟାତ ସେନାପତିଙ୍କ ଶବାଧାର ନିଆଯାଉଛି ଉଏଷ୍ଟମିନ୍‌ଷ୍ଟାର ଆବି ମଧ୍ୟରେ ସମାଧିସ୍ଥ କରିବା ଲାଗି । ସେହି ଦୃଶ୍ୟ ଦେଖିବା

ପାଇଁ ତଳକୁ ଚାଲିଗଲି ଏବଂ ଶୋଭାଯାତ୍ରାର ପଛରେ ଚାଲିଥିବା ଲୋକଙ୍କ ସାଙ୍ଗରେ ମିଶିଗଲି ।

ସାମରିକ ବାହିନୀ ଆବି ସମ୍ମୁଖରେ ଛିଡ଼ା ହୋଇ ରହିଲେ । ଟ୍ରକ୍ ଉପରୁ ସେନାଧକ୍ଷମାନେ ତଳକୁ ଆସିଲେ । କିନ୍ତୁ ସେମାନଙ୍କ କାନ୍ଧଦେଶରେ ମୃତ ସେନାପତିଙ୍କ କଫିନ୍ ବା ଶବାଧାର ଦେଖିଲି ନାହିଁ । କେବଳ ଜଣକ ହାତରେ ଥାଏ ଗୋଟିଏ ବଡ଼ ଆକାରର ଉଜ୍ଜ୍ୱଳ ପାତ୍ର । ଆବି ମଧ୍ୟକୁ ସେମାନେ ପ୍ରବେଶ କଲାପରେ ଠେଲିପେଲି ଅନ୍ୟ ଦର୍ଶକମାନଙ୍କ ସହିତ ମୁଁ ମଧ୍ୟ ଭିତରକୁ ଗଲି । କୌଣସି ଏକ ନିର୍ଦ୍ଦିଷ୍ଟ କୋଣରେ ଗାତଟିଏ ଖୋଳା ରହିଥାଏ । ତା ଚାରିପାଖରେ ସେନାଧକ୍ଷମାନେ ଘେରି ରହିଲେ । ପାତ୍ର ଧରିଥିବା ବ୍ୟକ୍ତି ଗାତ ପାଖକୁ ଆସି ତା ଭିତରକୁ ପାତ୍ରରେ ରହିଥିବା ମେଞ୍ଚାଏ ପାଉଁଶ ଢାଳିଦେଲେ । ସଙ୍ଗେ ସଙ୍ଗେ ମାଟିଦ୍ୱାରା ଗାତଟିକୁ ଭର୍ତ୍ତି କରିଦିଆଗଲା । ସେଥିଉପରେ ରଖାଗଲା ଖଣ୍ଡିଏ ମାର୍ବଲ ଫଳକ । ଉପରେ ଲେଖାଥାଏ ସେନାପତିଙ୍କ ନାମ, ଜନ୍ମ ଓ ମୃତ୍ୟୁ ତାରିଖ ।

ସାହସ କରି ଜଣେ ସାମରିକ ବ୍ୟକ୍ତିଙ୍କୁ ପଚାରିଲି, ''ସେନାପତିଙ୍କ କଫିନ୍ କୁଆଡ଼େ ଗଲା ?'' ତୀକ୍ଷ୍ଣଦୃଷ୍ଟିରେ ମୋ ମୁହଁକୁ ଚାହିଁ ସେ ସହାସ୍ୟବଦନରେ ଉତ୍ତର ଦେଲେ, ''ଆଜି ତାରିଖର ସମ୍ବାଦପତ୍ରଗୁଡ଼ିକରୁ ଜାଣିପାରିବ କଫିନ୍ କୁଆଡ଼େ ଗଲା ।'' ପାଠାଗାରକୁ ଫେରିଆସି ସେଦିନର ଖବରକାଗଜଗୁଡ଼ିକ ପଢ଼ିଲି । ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା ସେନାପତିଙ୍କ ଅନ୍ତିମ ଇଚ୍ଛା । ସେ ଲେଖିଯାଇଥିଲେ, ''ଭାରତର ହିନ୍ଦୁମାନେ ଯେପରି ସେମାନଙ୍କ ମୃତବ୍ୟକ୍ତିମାନଙ୍କୁ ଅଗ୍ନିରେ ଦଗ୍ଧ କରିଦିଅନ୍ତି, ମୋ ଦେହକୁ ସେହିପରି ପୋଡ଼ିଦେବ । ଚିତାର ଭସ୍ମକୁ ସମାଧିସ୍ଥ କରିବ ।'' ସେନାପତିଙ୍କ ଶେଷ ବାକ୍ୟଟି ଥିଲା, ''The universe will remain much cleaner if the humanity adopts the Hindu mode of burning the dead bodies instead of burying under the earth.''

**ପାର୍ଲିଆମେଣ୍ଟ ଭବନ** – ଉଏଷ୍ଟମିନ୍‌ଷ୍ଟାର ଆବି ନିକଟରେ ରହିଛି ବ୍ରିଟିଶ ପାର୍ଲିଆମେଣ୍ଟ ଭବନ । ମଧ୍ୟଯୁଗୀୟ ସ୍ଥାପତ୍ୟ ଶୈଳୀରେ ନିର୍ମିତ ସେହି ଭବନ ଅତୀବ ଆକର୍ଷଣୀୟ । ସୌଧର ପୂର୍ବ ପାଖରେ ରହିଛି ପ୍ରସିଦ୍ଧ 'ବିଗ୍ ବେନ' ବା ସୁଉଚ୍ଚ ଘଣ୍ଟାଗମ୍ବୁଜ । ପ୍ରତ୍ୟେକ ଘଣ୍ଟା ଶେଷରେ ସେଠାରୁ ଉଚ୍ଚଧ୍ୱନିରେ ଘଣ୍ଟି ବାଜିଥାଏ । ଦ୍ୱିତୀୟ ମହାଯୁଦ୍ଧ ବେଳେ ଜର୍ମାନମାନେ ବୋମାବର୍ଷଣ ଦ୍ୱାରା ପାର୍ଲିଆମେଣ୍ଟ ଛାତ ଧ୍ୱଂସ କରିଦେଇଥିଲେ । ଯୁଦ୍ଧପରେ ତାହାର ମରାମତି କରାଯାଇଥିଲା । ବାରମ୍ବାର ପାର୍ଲିଆମେଣ୍ଟ ଭବନକୁ ଯାଇ ହାଉସ୍ ଅଫ କମନ୍‌ସର ଦର୍ଶକଗ୍ୟାଲେରୀରେ ବସି

ଅଧିବେଶନ ଦେଖିବାକୁ ସୁଯୋଗ ମିଳୁଥାଏ । ସଭ୍ୟମାନଙ୍କର ତର୍କବିତର୍କ ଓ ବାଦାନୁବାଦ ସତେଜ ରଖିବା ଲକ୍ଷ୍ୟ ନେଇ କକ୍ଷଟିକୁ ଛୋଟ ଆକାରରେ ଗଠନ କରାଯାଇଥିଲା । ସେଥିପାଇଁ ସମସ୍ତେ ଖୁନ୍ଦାଖୁନ୍ଦି ହୋଇ ବସିଥିବା ଦେଖାଯାଏ । ସରକାରୀ ଦଳର ମନ୍ତ୍ରୀମାନଙ୍କ ମୁଖାମୁଖୀ ଅବସ୍ଥାରେ ବସନ୍ତି ବିପକ୍ଷ ଦଳର ଛାୟା ମନ୍ତ୍ରୀମାନେ । ଉଭୟ ଗୋଷ୍ଠୀର ମଝିରେ ଥାଏ ଅଣଓସାରିଆ ଟେବୁଲ । ମଞ୍ଚ ଉପରେ ବସିଥିବା ବାଚସ୍ପତିଙ୍କ ରୂପ ବିଚିତ୍ର ଦିଶେ । ମଧ୍ୟଯୁଗୀୟ ପୋଷାକ ପିନ୍ଧି ଓ ମୁଣ୍ଡରେ ପରଚୂଳ ବା ଉଇଗ୍ ଲଗାଇ ସେ ବସନ୍ତି । ବ୍ରିଟିଶ ଜାତି ଆଧୁନିକ ଓ ପ୍ରଗତିପନ୍ଥୀ ହେଲେ ମଧ, ଅନେକ କ୍ଷେତ୍ରରେ ପୂର୍ବକାଳର ପରମ୍ପରାମାନ ବଜାୟ ରଖିବାକୁ ଭଲପାଆନ୍ତି ।

**ଟ୍ରାଫାଲଗାର ସ୍କୋୟାର –** ଲଣ୍ଡନସହରର କେନ୍ଦ୍ରସ୍ଥଳରେ ରହିଛି ଟ୍ରାଫାଲଗାର ସ୍କୋୟାର । ତାହାର ମଧ୍ୟସ୍ଥାନରେ ରହିଛି ଫରାସୀ ମହାବୀର ନେପୋଲିୟନ ବୋନାପାର୍ଟଙ୍କ ନୌବାହିନୀକୁ ଟ୍ରାଫାଲଗାର ନାମକ ସ୍ଥାନର ଜଳଯୁଦ୍ଧରେ ପରାସ୍ତ କରିଥିବା ବ୍ରିଟିଶ ନୌ ସେନାପତି ଲର୍ଡ଼ ନେଲସନଙ୍କ ପ୍ରତିମୂର୍ତ୍ତି । ଅତ୍ୟୁଚ୍ଚ ବିଜୟସ୍ତମ୍ଭର ଶୀର୍ଷସ୍ଥାନରେ ମୂର୍ତ୍ତିଟି ଦଣ୍ଡାୟମାନ ରହି ଅନେକ ଦୂରରୁ ଦର୍ଶକମାନଙ୍କର ଦୃଷ୍ଟି ଆକର୍ଷଣ କରେ । ସ୍ତମ୍ଭର ଚାରିପାଖରେ ଥିବା ମୁକ୍ତସ୍ଥାନରେ ସଦାବେଳେ ଜନସମାଗମ ଦେଖିବାକୁ ମିଳେ । ବିଶାଳକାୟ ପଥରନିର୍ମିତ ଚାରିଟି ସିଂହମୂର୍ତ୍ତି ଓ ଦୁଇଟି ଉତ୍ସ ସ୍ଥାନଟିର ଶୋଭାବୃଦ୍ଧି କରିଛି । ଖ୍ରୀଷ୍ଟମାସ ପ୍ରଭୃତି ଉତ୍ସବ ଓ କେତେକ ସଭାସମିତି ସେଠାରେ ଆୟୋଜନ କରାଯାଏ ।

**ଜାତୀୟ ଚିତ୍ରଶାଳା –** ଟ୍ରାଫାଲଗାର ସ୍କୋୟାରର ଉତ୍ତରଦିଗରେ ରହିଛି ଇଂଲଣ୍ଡର ଜାତୀୟ ଚିତ୍ରଶାଳା ବା ନେସନାଲ ଆର୍ଟ ଗ୍ୟାଲେରୀ । ସେଥିରେ ରଖାଯାଇଛି ରେନେସାଁ ଯୁଗର ସୁମହାନ ଚିତ୍ରକରମାନଙ୍କ ଦ୍ୱାରା ଅଙ୍କିତ ଅମର ଚିତ୍ରପଟ ଓ ସେଥିସହ ପାଶ୍ଚାତ୍ୟ ଦେଶମାନଙ୍କର ଅନେକାନେକ ପ୍ରଖ୍ୟାତ ଶିଳ୍ପୀମାନଙ୍କର କୃତିକାର୍ଯ୍ୟ । ପୃଥିବୀର କଳାପ୍ରିୟ ଲୋକଙ୍କ ନିମନ୍ତେ ଏହି ଗ୍ୟାଲେରୀ ହେଉଛି ଗୋଟିଏ ତୀର୍ଥସ୍ଥାନ । ଥରେ ଜଣେ ଇଂରେଜ କର୍ମଚାରୀଙ୍କୁ ପଚାରିଲି, ‘‘ଇଟାଲୀ, ଫ୍ରାନ୍ସ ଓ ହଲାଣ୍ଡ ପ୍ରଭୃତି ଦେଶର ଅସଂଖ୍ୟ ଚିତ୍ରଭରା ଏହି ସ୍ଥାନକୁ ବିଶ୍ୱ ଆର୍ଟ ଗ୍ୟାଲେରୀ ବୋଲି ନକହି ଇଂଲଣ୍ଡର ଜାତୀୟ ଗ୍ୟାଲେରୀ କହିବା ବୋଧହୁଏ ଠିକ୍ ନୁହେଁ ।’’ ପରିହାସର ଅର୍ଥ ବୁଝିପାରି ସେ ବ୍ୟଙ୍ଗ ଛଳରେ ଉତ୍ତର ଦେଲେ, ‘‘ଯଦି ସେହିସବୁ ଦେଶରୁ ଆମ ଜାତିର ଲୋକମାନେ ଏହିସବୁ ଅମୂଲ୍ୟ ସମ୍ପଦ ଆଣି ନଥାନ୍ତେ, ତେବେ ଦୁଇ ଦୁଇଟି ମହାଯୁଦ୍ଧ ମଧ୍ୟରେ ଏହିସବୁ ଚିତ୍ର ଚିରଦିନ ପାଇଁ ଧ୍ୱଂସ ପାଇ ଯାଇଥାନ୍ତା । ତେଣୁ, ଏସବୁ ହେଉଛି ଆମର ଜାତୀୟ

ସମ୍ପତ୍ତି ।'' ନ୍ୟାସନାଲ ଗ୍ୟାଲେରୀ ପରି ଅନ୍ୟ ଏକ ଚିତ୍ରଶାଳା ଦେଖିବାକୁ ମିଳେ ଟେମସ୍ ନଦୀ କୂଳରେ ଥିବା ଟେଟ୍ ଗ୍ୟାଲେରୀ ।

**ଚାରିଙ୍ଗ୍ କ୍ରଶ୍** – ନେଲସନ ସ୍ମୃତିସ୍ତମ୍ଭର ଦକ୍ଷିଣରେ ଚାରିଙ୍ଗ୍ କ୍ରଶ୍ ନାମକ ସ୍ଥାନରେ ଦେଖିବାକୁ ମିଳେ ରାଜା ପ୍ରଥମ ଚାର୍ଲସଙ୍କ ପ୍ରତିମୂର୍ତ୍ତି । ରାଜତନ୍ତ୍ର ବିରୋଧରେ ବ୍ରିଟିଶଜାତିର ସଂଘର୍ଷ କାଳରେ ଏହି ରାଜାଙ୍କର ମୁଣ୍ଡଚ୍ଛେଦ କରାଯାଇଥିଲା । ଯେଉଁ ସ୍ଥାନରେ ତାଙ୍କର ପ୍ରତିମୂର୍ତ୍ତି ରହିଛି, ସେହିଠାରେ ପୁଣି ତାଙ୍କର ପୁତ୍ର ଦ୍ୱିତୀୟ ଚାର୍ଲସ ରାଜା ହେଲାପରେ ପିତାଙ୍କ ଶତ୍ରୁମାନଙ୍କର ମୁଣ୍ଡଚ୍ଛେଦ କରିଥିଲେ ।

**ଟାୱାର ଅଫ୍ ଲଣ୍ଡନ** – ବୁଲିବାକୁ ଯାଉଥାଏଁ ଟେମସ୍‌ନଦୀ କୂଳରେ ଥିବା ଅନ୍ୟ ଏକ ଐତିହାସିକ ସ୍ଥାନକୁ, ଯାହାର ନାମ ଟାୱାର ଅଫ୍ ଲଣ୍ଡନ । ବହୁ ପ୍ରାଚୀନ କାଳରେ ରୋମାନ ସୈନ୍ୟମାନେ ସେହିସ୍ଥାନ ଅଧିକାରପୂର୍ବକ ଅଳ୍ପସମୟ ଲାଗି ସେଠାରେ ବସତି ସ୍ଥାପନ କରିଥିଲେ । ସେମାନଙ୍କର ସହସ୍ରବର୍ଷ ପରେ ଇଂଲଣ୍ଡର ରାଜାମାନେ ଦୁର୍ଗ ନିର୍ମାଣ କରି ସେଠାରେ ରହୁଥିଲେ । ବସ୍ତୁତଃ ସେହି ଦୁର୍ଗ ଥିଲା ପୁରାତନ ରାଜାମାନଙ୍କର ରାଜପ୍ରାସାଦ । ଦୁର୍ଗ ଚାରିପାଖରେ ଗଭୀର ପରିଖାଟିଏ ରହିଛି । ପୋଲଦ୍ୱାରା ଦୁର୍ଗ ମଧ୍ୟକୁ ପ୍ରବେଶ କରିବା ପଥଟିର ନାମ ହେଉଛି 'ଦେଶଦ୍ରୋହୀ ଦରଜା' । କାରଣ, ସେହି ବାଟରେ ବନ୍ଦୀମାନଙ୍କୁ ଦୁର୍ଗ ମଧ୍ୟକୁ ଅଣାଯାଉଥାଏ ଓ ଅନେକଙ୍କୁ ପ୍ରକାଶ୍ୟରେ ହତ୍ୟା କରାଯାଉଥାଏ । ଯେଉଁ ପ୍ରକାଣ୍ଡ ପଥରଟି ଉପରେ 'ଦେଶଦ୍ରୋହୀ'ଙ୍କର ମୁଣ୍ଡଚ୍ଛେଦ ହେଉଥାଏ, ତାହା ସେଠାରେ ଦର୍ଶନୀୟ ପଦାର୍ଥ ଭାବେ ରଖାଯାଇଛି । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ରିଟିଶ ରାଜାମାନେ ସେହି ଦୁର୍ଗରେ ଅବସ୍ଥାନ କରୁଥିଲେ । ସେ କାଳର ଅସ୍ତ୍ରଶସ୍ତ୍ର, ବର୍ଚ୍ଛା, ସାଞ୍ଜୁ ଓ ଯୁଦ୍ଧବର୍ମ ପ୍ରଭୃତି ଦର୍ଶକମାନେ ଦେଖିବାକୁ ପାଆନ୍ତି ।

ଦୁର୍ଗର କୌଣସି ଏକ ଜାଗାର ଭୂଗର୍ଭରେ ରହିଛି ଗୋଟିଏ 'ରତ୍ନଗୃହ' । ସେଥିମଧ୍ୟରେ ଗଚ୍ଛିତ ଅଛି ପୂର୍ବତନ ରାଜାମାନଙ୍କର ଧନରତ୍ନ । ଶୁଣିଲି, ଭାରତରୁ ନିଆଯାଇଥିବା 'କୋହିନୂର' ହୀରାଟି ମଧ୍ୟ ସେଠାରେ ସୁରକ୍ଷିତ ଅବସ୍ଥାରେ ରଖାଯାଇଛି । ଏହି ଅମୂଲ୍ୟ ରତ୍ନଟିର ପ୍ରକୃତ ରହସ୍ୟ କୁହେଳିକାମୟ । ଅନେକେ କହିଥାନ୍ତି, କୋହିନୂର ବ୍ରିଟିଶ ରାଜମୁକୁଟରେ ଖଚିତ ଅଛି । ଅଥଚ, ଆଉ କେହି କେହି କହନ୍ତି, କୋହିନୂର ରହିଛି ଟାୱାର ଅଫ୍ ଲଣ୍ଡନର ଭୂତଳସ୍ଥିତ ଗୁପ୍ତଗୃହରେ । ସେହି ହୀରାର ଅବିକଳ ନକଲ ପୁଣି ରଖାଯାଇଛି କେନ୍‌ସିଂଟନ ନାମକ ଯାଦୁଘର ମଧ୍ୟରେ । ଭାରତରୁ ସେହି ହୀରା କିପରି ଭାବରେ ଲଣ୍ଡନ ନିଆଯାଇଥିଲା, ତାହା ପରେ ଉଲ୍ଲେଖ କରିବି, ଯେଉଁ କଥା ମୁଁ ନିଜେ ବ୍ରିଟିଶ ରେକର୍ଡ଼ରୁ ବାହାର କରିଥିଲି ।

ଲଣ୍ଡନରେ ଦେଖିଥିବା ଅନ୍ୟ ଦର୍ଶନୀୟ ସ୍ଥାନମାନ ବର୍ଣ୍ଣନା କଲେ ବହିର ଆକାର ବଢ଼ିଯିବ । ସେଥିପାଇଁ ସେଥିରୁ କ୍ଷାନ୍ତ ରହିଲି । ନିମ୍ନରେ କେତୋଟି ଘଟଣାର ସ୍ମୃତି ଉଲ୍ଲେଖ କରୁଛି ।

## ଗୋଟିଏ ଅନୁଭୂତି : ଜଣେ ଅବିସ୍ମରଣୀୟ ବ୍ୟକ୍ତି

୧୯୫୫ ମସିହା ଜୁଲାଇ ମାସ । ଗ୍ରୀଷ୍ମଛୁଟି ପାଇଁ ବିଶ୍ୱବିଦ୍ୟାଳୟ ବନ୍ଦ ହେଲା । ସେଦିନ ନୋଟିସ୍ ବୋର୍ଡ଼ ଆଗରେ ଅନେକ ଛାତ୍ରଙ୍କୁ ଧାଡ଼ି ଲାଗିଥିବା ଦେଖିଲି । ସମସ୍ତେ ଇଂରେଜ । ଶୁଣିଲି, ଯେଉଁ ଛାତ୍ରମାନେ ମାସକ ଲାଗି କାମକରି ଅର୍ଥ ଆୟ କରିବାକୁ ଇଚ୍ଛା କରନ୍ତି, ସେମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ଗୋଟିଏ ଗୋଟିଏ ଜାଗାରେ କାମ କରିବାକୁ ନାମ ଦେବେ । ସହପାଠୀ ମାଲ୍‌କମ୍ ମୋତେ ତାଙ୍କ ଦଳରେ ଯୋଗ ଦେବାକୁ କହିଲେ, ଯେଉଁ ଦଳରେ ‘ତରୁଣ ସାମ୍ୟବାଦୀ’ମାନେ ଯାଉଥିଲେ । ଏକେତ ମାସଟିଏ କାମ କଲେ ପ୍ରଚୁର ଟଙ୍କା ମିଳିବ, ଦ୍ୱିତୀୟରେ ନୂଆ ଅଭିଜ୍ଞତା ହାସଲ ହେବ । ମୁଁ ଖୁସିମନରେ ମୋର ନାମ ଦେଇଦେଲି ।

୨୫ ଜଣିଆ ଏକ ଦଳ ଛାତ୍ର ଯାଇ ପହଞ୍ଚିଲୁଁ ଲଣ୍ଡନସହର ବାହାରେ ଥିବା ଗୋଟିଏ ପୋଲିସ୍ ଟ୍ରେନିଂ କ୍ୟାମ୍ପରେ । ମାସକ ଲାଗି ସେଠାରେ ସାତଶହ ନବନିଯୁକ୍ତ ଲଣ୍ଡନପୋଲିସଙ୍କୁ ତାଲିମ ଦିଆଯିବ । ସମସ୍ତଙ୍କ ପାଇଁ ହାଟ ବଜାର, ପୂଝାରୀମାନଙ୍କ ତତ୍ତ୍ୱାବଧାନରେ ରନ୍ଧାବଢ଼ା, ଖାଦ୍ୟ ପରିବେଷଣ, ବାସନ ଧୁଆଧୁଇ, ଘର ପରିଷ୍କାର, ବିଛଣା ପ୍ରସ୍ତୁତି ପ୍ରଭୃତି ଯାବତୀୟ କାର୍ଯ୍ୟର ଦାୟିତ୍ୱ ଆମ ଦଳକୁ ଦିଆଗଲା । ପୋଲିସମାନେ ସେଠାରେ ପହଞ୍ଚିବାର ଦୁଇଦିନ ଆଗରୁ ଆମ କର୍ମୀଦଳ ସେଠାରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ମୁଁ ଥିଲି ଏକମାତ୍ର ଭାରତୀୟ ଛାତ୍ର । ଶ୍ରମିକଦଳର ବରିଷ୍ଠ ନେତାମାନଙ୍କର ପୁଅ ପୁତୁରାମାନେ ଆମ ଦଳରେ ଥିଲେ । ସେ ଦେଶରେ କାମ ହେଉଛି କାମ, ସବୁ କାମ ସମାନ, ଉଚ୍ଚ ବା ନୀଚ କାମ ଭିତରେ ବାଛ ବିଚାର ନଥାଏ । ସମସ୍ତେ ଏକତ୍ରିତ ହେଲାପରେ ନିଜ ନିଜ ମଧ୍ୟରେ କର୍ମବଣ୍ଟନ ଲାଗି ବିଚାରବିମର୍ଶ ଚାଲିଲା । ମୋତେ ପଚରାଗଲା, ମାଂସ କାଟିବି ନା ପରିବା କାଟିବି, ବାସନ ଧୋଇବି କିମ୍ବା ଘର ସଫା କରିବି, ଖାଦ୍ୟ ପରିବେଷଣ କରିବି ଅଥବା ବିଛଣା ପ୍ରସ୍ତୁତ କରିବି, ଇତ୍ୟାଦି । ସବୁଥିରେ ମୋ ମୁହଁରୁ ‘ନା’ ‘ନା’ ଶବ୍ଦ ଶୁଣି ସେମାନେ ଜାଣିପାରିଲେ ଯେ ମୁଁ ଗୋଟିଏ ଅଯୋଗ୍ୟ ଓ ଅପଦାର୍ଥ ଯୁବକ । ତଥାପି, ସାଙ୍ଗରେ ଆସିଥିବାରୁ ମୋ ପ୍ରତି ସହାନୁଭୂତିର ଅଭାବ ନଥାଏ । ଶେଷରେ ଠିକ୍ ହେଲା, ଖାଇବା ହଲ ଭିତରେ ଥିବା ଛୋଟିଆ ମନୋହରୀ ଦୋକାନରେ ବସି ଜିନିଷ ବିକିବି ।

କୋଠରିଟି ଦେଖାଇଦିଆଗଲା । ଥାକଗୁଡ଼ିକରେ ରହିଥାଏ ସ୍ନୋ, ପାଉଡ଼ର, ସାବୁନ, ଟୁଥ୍‌ବ୍ରସ୍, ଟୁଥ୍‌ପେଷ୍ଟ, କାଗଜ, କାଳି, କଲମ, ପେନ୍‌ସିଲ ଓ ଚକୋଲେଟ୍ ପ୍ରଭୃତି ଅନେକ ପ୍ରକାର ସାମଗ୍ରୀ । ପ୍ରତ୍ୟେକ ଜିନିଷ ଉପରେ ଦାମ୍ ଲେଖାଥାଏ । ଟେବୁଲ୍ ଉପରେ ଥାଏ ପଇସା ପକାଇବା ବାକ୍ସ । ପୋଲିସ ଗ୍ରାହକମାନେ ଯାହା ମାଗିବେ, ଥାକ ଉପରୁ ଆଣି ସେମାନଙ୍କୁ ଦେବାକୁ ହେବ । ସେମାନେ ବାକ୍ସର ଗାତରେ ଟଙ୍କା ପକାଇବେ । ବଳକା ପଇସା ଫେରିପାଇବାକୁ ଥିଲେ ଗୋଟିଏ ବୋତାମ ଟିପିଲେ ହିସାବ ଅନୁସାରେ ବାକି ପଇସାତକ ବାହାରି ଆସିବ । ମୁଁ କେବଳ ଟେବୁଲ ପଛରେ ଥିବା ଚେୟାରରେ ବସି ଦୋକାନ ପରିଚାଳନା କରିବି । ସେପରି ଗୋଟିଏ ସହଜ କାମ ପାଇ ବେଶ୍ ଖୁସି ହେଲି ଓ ବନ୍ଧୁମାନଙ୍କୁ ଧନ୍ୟବାଦ ଦେଲି ।

ତାଲିମ୍ ଶିବିର ଉଦ୍‌ଘାଟିତ ହେଲା । ପୋଲିସଦଳ ଆସିଗଲେ । କ୍ୱଚିତ୍ ଜଣେ ଜଣେ ଗ୍ରାହକ ଆସି ଜିନିଷ କିଣୁଥିଲେ । ବିନା କାମରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ବସିରହି ମୁଁ ଖବରକାଗଜ ଓ ମେଗାଜିନ ପଢ଼ିବାରେ ସମୟ କଟାଇଲି । ଅନ୍ୟମାନେ ଯଥେଷ୍ଟ ପରିଶ୍ରମ କରୁଥିବା ଦେଖିଲି । ସାଙ୍ଗସାଥୀମାନଙ୍କ ମେଳରେ ଦିନଗୁଡ଼ିକ ଖୁବ୍ ଆନନ୍ଦରେ ବିତିଲା । ସେହିପରି ସମୟରେ ଜଣେ ବିଚିତ୍ର ବ୍ୟକ୍ତିଙ୍କ ସହିତ ମିତ୍ରତା ଜମିଲା ।

ମନୋହରୀ ଦୋକାନର ଅଧା ଭାଗରେ ଥିଲା କ୍ଷୁଦ୍ର କ୍ୟାଣ୍ଟିନ୍‌ଟିଏ । ତାହାର ଦାୟିତ୍ୱରେ ଥାନ୍ତି ପୋଲିସ ଅନୁଷ୍ଠାନର ଜଣେ ସ୍ଥାୟୀ ବା ଅସ୍ଥାୟୀ କର୍ମଚାରୀ । ବାମନାକୃତି ବୃଦ୍ଧବ୍ୟକ୍ତିଙ୍କର ପାଟିରେ ଦାନ୍ତ ନଥାଏ ଓ ମୁଣ୍ଡର ବାଳ ଥାଏ ଧଳା । ହସ ହସ ମୁହଁରେ ମୋ ସହିତ ଆଳାପ କରୁଥାନ୍ତି, ମଧ୍ୟେ ମଧ୍ୟେ ଉଚ୍ଚ ସ୍ୱରରେ ଗୀତ ଗାଉଥାନ୍ତି ଓ ଅନେକ ସମୟରେ ଅନ୍ୟମନସ୍କ ଥାନ୍ତି । କେହି ପଦସ୍ଥ ପୋଲିସ କର୍ମକର୍ତ୍ତା ଚା, କଫି, ଟୋଷ୍ଟ କିମ୍ବା ଓମ୍‌ଲେଟ ମାଗିଦେଲେ, ସଙ୍ଗେ ସଙ୍ଗେ ତିଆରି କରି ଗରମ ଗରମ ପରଶିବା ଥିଲା ତାଙ୍କର କାମ । ସେହି କାମ କଲାବେଳେ ତାଙ୍କର ଅସ୍ୱାଭାବିକ ସ୍ୱଭାବର ପରିଚୟ ପାଇ ମୁଁ ଆଚମ୍ୱିତ ହେଉଥାଏଁ । ଥରେ ଜଣେ ବରିଷ୍ଠ ଅଫିସର ଅର୍ଡ଼ର ଦେଲେ, ମୋ ଚା'ରେ ଚିନି ଦେବ ନାହିଁ । ଅଥଚ, ବୃଦ୍ଧ ବ୍ୟକ୍ତି ତିନି ଚାମଚ ଚିନି ପକାଇ ଚା ତିଆରି କଲେ । କପ୍‌ଟି ପାଟିରେ ଲଗାଇ ଅଫିସର ମହୋଦୟ ରାଗରେ ଚାଲିଗଲେ । ଆଉ ଜଣେ ଥରେ ମାଗିଲେ, ଚିନି ପଡ଼ିଥିବା ଚା । ତାଙ୍କୁ ବିନା ଚିନିରେ ତିଆରି କରିଥିବା କପ୍‌ଟି ଧରାଇ ଦିଆଗଲା । ସେ ରାଗରେ ଗର୍ଜନ ତର୍ଜନ କରିବା ଦେଖିଲି । ଜଣେ ମାଗିଲେ ଗରମ ଦୁଇପିସ୍ ଟୋଷ୍ଟ । ବୃଦ୍ଧ ଥୋଇଦେଲେ ସକାଳ ପାଖରୁ ଥୁଆ ହୋଇଥିବା ଥଣ୍ଡା ଟୋଷ୍ଟ । ସେ ଫୋପାଡ଼ି

ଦେଇ ଚାଲିଗଲେ । ଆଉ ଜଣେ ଅଫିସାର ସିଝା ଅଣ୍ଡା ଅର୍ଡ଼ାର କଲେ, ବୃଦ୍ଧ ଥୋଇଦେଲେ ଓମ୍‌ଲେଟ୍ । ଅଫିସର ତାହା ଖାଇଲେ, କିନ୍ତୁ ଅନିଚ୍ଛା ସହକାରେ ।

ଦିନେ ସନ୍ଧ୍ୟାବେଳେ ତାଙ୍କୁ ପଚାରିଲି, "ଆପଣଙ୍କ ନାମ ଜାଣିପାରିଲି ନାହିଁ !" ଉତ୍ତର ଦେଇଥିଲେ, "A man is a man. What is there in a name ? Call me just as Friend." ଅନ୍ୟମାନେ ତାଙ୍କୁ ଅର୍ଦ୍ଧପାଗଳ ବୁଢ଼ା ବୋଲି କହୁଥାନ୍ତି । କିନ୍ତୁ ତାଙ୍କର ରସିକତା ଓ ଦୟାର୍ଦ୍ର ମନୋଭାବ ଦେଖି ମୁଁ ତାଙ୍କୁ ସମ୍ମାନ ଦେଉଥିଲି । ଥରେ ବେସିନ୍‌ରେ ମୁହଁ ଧୋଇ ହାତ ଝାଡୁଥିଲାବେଳେ ଆଇନା କାଚର କୋଣଟିଏ ମୋ ପାପୁଲିରେ ଗଳିଯାଇ ରକ୍ତ ଝରିଲା । ବୃଦ୍ଧ ଦୌଡ଼ିଆସି ରକ୍ତ ଚାପିରଖି ପାଟିକରି ଅନ୍ୟମାନଙ୍କୁ ଡାକିଲେ ଓ ହାତରେ ପଟି ଲଗାଇଲେ । କ୍ରମେ କ୍ରମେ ତାଙ୍କ ସହିତ ବନ୍ଧୁତା ବଢ଼ିଲା ।

ଦିନେ ସକାଳ ୯ଟା ବେଳେ ମୁଁ ମୋ ସ୍ଥାନରେ ବସିଥାଏଁ । ବୁଢ଼ା ତାଙ୍କ ଚେୟାରରେ ବସି ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଉଥାନ୍ତି । ସହସା ଆସିଗଲେ କେତେଜଣ ପଦସ୍ଥ ଅଫିସାରଙ୍କ ସହିତ ତାଲିମ୍‌କେନ୍ଦ୍ରର ଅଧ୍ୟକ୍ଷ । ବୁଢ଼ାଙ୍କୁ ଆଦେଶ ଦେଲେ, "ଠିକ୍ ୧୦ଟା ବେଳେ ସ୍କଟ୍‌ଲ୍ୟାଣ୍ଡ ୟାର୍ଡ଼ର ସର୍ବୋଚ୍ଚ ଅଧିନାୟକ କ୍ୟାମ୍ପ ପରିଦର୍ଶନ ନିମନ୍ତେ ପହଞ୍ଚିବେ । ଡାଇନିଂହଲ ଦେଖିବାକୁ ଆସିବେ । ସେ ଆସିଲାମାତ୍ରେ ଟୋଷ୍ଟ, ଓମ୍‌ଲେଟ ଓ ଏକ କପ୍ କଫି ଟେବୁଲ ଉପରେ ରଖିଦେବ । ଖାଇସାରି ସେ ଅନ୍ୟତ୍ର ବୁଲି ଦେଖିବେ ।" ଏତକ କହି ସେମାନେ ଚାଲିଗଲେ । ବୁଢ଼ା ହସି ହସି ବେଦମ୍ । ତାଙ୍କୁ ପରାମର୍ଶ ଦେଲି, "ଲଣ୍ଡନ ପୋଲିସବିଭାଗର ମୁଖ୍ୟ ଅର୍ଡ଼ିନାରୀ ଲୋକ ନୁହନ୍ତି । ଯାହା ତିଆରି କରିବେ, ଅତି ଉତ୍ତମ ହେବା ଦରକାର ।"

ଯଥାସମୟରେ ପୋଲିସମୁଖ୍ୟ ଆସିଗଲେ । ସାଙ୍ଗରେ ପ୍ରାୟ ଏକ ଡଜନ ଅଫିସାର । ବୁଢ଼ା ତରତରରେ ଖଣ୍ଡିଏ ବାଜେ ପ୍ଲେଟ୍‌ରେ ପୋଡ଼ିଯାଇଥିବା ଟୋଷ୍ଟ, ଅଧାଅଧି ଅଣ୍ଡାର ଓମଲେଟ୍ ଓ କଫି ବଦଳରେ କପେ ଚା ନେଇ ନିର୍ଦ୍ଦିଷ୍ଟ ଟେବୁଲ ଉପରେ ଥୋଇଦେଲେ । ପୋଲିସମୁଖ୍ୟ ଚେୟାରରେ ବସି ପ୍ରଥମେ ମଇଳା ଦିଶୁଥିବା ପ୍ଲେଟ୍‌ଟିକୁ ଚାହିଁଲେ, ତାପରେ ପୋଡ଼ା ପାଉଁରୁଟି ହାତରେ ଧରି ଦେଖିଲେ ଏବଂ ଶେଷରେ ଚା କପ୍‌ରେ ଓଠ ଲଗାଇ ମୁହୂର୍ତ୍ତ ମଧ୍ୟରେ ଉଠି ଚାଲିଗଲେ । ଅଧ୍ୟକ୍ଷଙ୍କ ମୁହଁକୁ ଚାହିଁ ଅନୁମାନ କଲି, ସେ ନିଶ୍ଚୟ ଲଜ୍ଜିତ ହୋଇଛନ୍ତି, କାରଣ ତାଙ୍କ ମୁନିବ କିଛି ନଖାଇ ବାହାରିଗଲେ । ସମସ୍ତେ ବିଦାୟ ନେଲାପରେ ବୁଢ଼ା ଖୁସିମନରେ ଗୀତ ଗାଇଲେ । ଅନ୍ୟ ଛାତ୍ରମାନଙ୍କ ସହିତ ମୁଁ ସ୍କଟ୍‌ଲ୍ୟାଣ୍ଡ ୟାର୍ଡ଼ ମୁଖ୍ୟଙ୍କ ଭାଷଣ ଶୁଣିବାକୁ ଚାଲିଗଲି ।

ଦିନ ପ୍ରାୟ ୩ଟା ବେଳେ ଦୋକାନରେ ବସିଥିଲି । ବୁଢ଼ା ତାଙ୍କ ଜାଗାରେ ଥାନ୍ତି । ଜଣେ ପୋଲିସ ଅଫିସାର ସିଧା ପଶିଆସି ସିଲ୍ ମରାଥିବା ଖଣ୍ଡିଏ ଲଫାଫା ବୁଢ଼ାଙ୍କ ହାତରେ ଧରାଇଦେଇ ବାହାରିଗଲେ । ବୁଢ଼ା କାଗଜଟି ପଢ଼ିସାରି ମୋ ହାତକୁ ବଢ଼ାଇଦେଲେ । ସେଥିରେ ଗୋଟିଏ ଧାଡ଼ି ଲେଖାଥିଲା, "ତୁମକୁ ଚାକିରିରୁ ବରଖାସ୍ତ କରାଗଲା ।" ବୁଢ଼ା କହିପକାଇଲେ, "ଦେଖିଲ, ପୋଲିସମୁଖ୍ୟ କିଛି ନ ଖାଇ ଚାଲିଗଲେ, ସେ ପାଇଁ ମୋ ଚାକିରି ଗଲା । ମୁଁ ଖାଇବାକୁ ପାଇବି କି ନାହିଁ, ସେ କଥା ମୋ ମୁନିବ ଭାବିଲେ ନାହିଁ ।"

ଦୁଃଖିତ ମନରେ ମୁଁ କହିଲି, "ଆପଣ ପୋଲିସମୁଖ୍ୟଙ୍କୁ ଖରାପ ଖାଦ୍ୟ ଦେଲେ କାହିଁକି ? ପରିଷ୍କାର ପ୍ଲେଟ୍‌ରେ ଭଲ ଟୋଷ୍ଟ ପରଶିଥିଲେ କ'ଣ କ୍ଷତି ହୋଇଥାନ୍ତା ? କଫି ବଦଳରେ ଚା ଦେଲେ କାହିଁକି ?" ମୋ ମୁହଁକୁ ଉଦାସ ନୟନରେ ଚାହିଁରହି ସେ ପଚାରିଲେ, "ତୁମେ କ'ଣ ମୋତେ ପାଗଳ ବୋଲି ଭାବୁଛ ?" ମୁଁ ନୀରବ ରହିବା ଦେଖି ସେ ଗମ୍ଭୀର ସ୍ୱରରେ କହିଲେ, "ମଣିଷର କ୍ରୋଧ, ଗର୍ବ ଓ ଅହଂକାର ଉପଭୋଗ କରିବା ଲାଗି ମୁଁ ପାଗଳାମି କରେ, କିନ୍ତୁ ମୁଁ ପାଗଳ ନୁହେଁ ।" ତାଙ୍କ ବାକ୍ୟଟିର ତାତ୍ପର୍ଯ୍ୟ ବୁଝି ନ ପାରି ମୁଁ ଶୂନ୍ୟଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ରହିଲି । ବୃଦ୍ଧ କିଛି ସମୟ ପାଇଁ ବାହାରକୁ ଚାଲିଗଲେ ।

ସନ୍ଧ୍ୟାବେଳେ ମୋତେ ପାଖରେ ବସାଇ ବୃଦ୍ଧ ତାଙ୍କର ଅତୀତ କାହାଣୀ ଶୁଣାଇଲେ । ପ୍ରଥମେ ସୂଚନା ଦେଲେ, ନିଜ କଥା ସେ କାହାରିକୁ କହନ୍ତି ନାହିଁ, କେବେହେଲେ କହି ନାହାନ୍ତି । ଯେଉଁ ନାମରେ ସେ ଏବେ ପରିଚିତ, ତାହା ମଧ୍ୟ ଠିକ୍ ନୁହେଁ । "ଆମ ଦେଶର ମଣିଷମାନେ ଲୁହାର ଯନ୍ତ୍ର ପରି କାମ କରନ୍ତି, ଅନ୍ୟ ମଣିଷର ଅବସ୍ଥା ବୁଝିବାଲାଗି ସେମାନଙ୍କର ମନ ବା ହୃଦୟ ବୋଲି ଜିନିଷଟି ନ ଥାଏ । ତୁମ ଦେଶର ଲୋକମାନେ ଭିନ୍ନ ଉପାଦାନରେ ଗଢ଼ା । ସେଥିପାଇଁ ତୁମ ଆଗରେ କହୁଛି । କାହାକୁ କହିବ ନାହିଁ ।" ଏହାପରେ, ଶୁଷ୍କ ଆଖି ଦୁଇଟି ଖୋଲା ରଖି ସେ କହିଗଲେ–

ସେ ଥିଲେ ବ୍ରିଟିଶ ସରକାରଙ୍କର ଜନୈକ ଉଚ୍ଚପଦସ୍ଥ କର୍ମଚାରୀ । ତାଙ୍କର ଥିଲେ ଚାରିପୁଅ ଓ ଜଣେ ଝିଅ । ମହାଯୁଦ୍ଧ ସମୟରେ ଚାରିପୁତ୍ର ଓ ଜାମାତା ଆଫ୍ରିକା, ଇଟାଲୀ ଓ ମିଶର ପ୍ରଭୃତି ସ୍ଥାନରେ ରଣଭୂମିରେ ବୀରତ୍ୱ ପ୍ରଦର୍ଶନ କରି ବ୍ରିଗାଡ଼ିଆର ଓ କର୍ଣ୍ଣେଲ ପ୍ରଭୃତି ପଦବୀକୁ ପଦୋନ୍ନତି ପାଇଥିଲେ । ସେମାନଙ୍କ ସ୍ତ୍ରୀ ଓ ଛୋଟ ଛୋଟ ପିଲାପିଲିଙ୍କୁ ପାଖରେ ରଖି ବୃଦ୍ଧ ଓ ତାଙ୍କ ପତ୍ନୀ ଲଣ୍ଡନ ସହରରେ ନିଜ ବାସଗୃହରେ ରହୁଥିଲେ । ମହାଯୁଦ୍ଧ ଶେଷ ହୋଇ

ଆସୁଥାଏ । ୧୯୪୪ ମସିହା ଡିସେମ୍ବର ବେଳକୁ ପୁତ୍ରମାନେ ଓ ଜାମାତା ଯୁଦ୍ଧକ୍ଷେତ୍ରରୁ ଅବ୍ୟାହତି ପାଇ ଘରେ ଆସି ପହଞ୍ଚିଲେ । ସମସ୍ତଙ୍କୁ ଅକ୍ଷତ ଅବସ୍ଥାରେ ଫେରିପାଇ ବୃଦ୍ଧଙ୍କର ଆନନ୍ଦର ସୀମା ନଥାଏ । ସେହି ମାସର ଶେଷ ତାରିଖର କଥା । ନବବର୍ଷର ଉତ୍ସବ ନିମନ୍ତେ ସମସ୍ତେ ପ୍ରସ୍ତୁତ ହେଲେ ।

ରାତ୍ରିକାଳରେ ଗୋଟିଏ ନିରାପଦ କୋଠରି ମଧ୍ୟରେ ସମସ୍ତେ ନିଦ୍ରାଗଲେ । ମଧ୍ୟରାତ୍ରରେ ଘଟିଲା ପ୍ରଚଣ୍ଡ ବିସ୍ଫୋରଣ । ସେତେବେଳେ ଜର୍ମାନମାନେ ରୋବୋଟ ନାମକ ବୋମା ଓ ଭି—୨ ନାମକ ଦୂରଗାମୀ ରକେଟମାନ ଲଣ୍ଡନ ଉପରକୁ ନିକ୍ଷେପ କରୁଥାନ୍ତି । ପ୍ରଭାତ ସମୟରେ ବୃଦ୍ଧଙ୍କର ଜ୍ଞାନ ଫେରିବାପରେ ଦେଖିଲେ, ସ୍ତ୍ରୀ,ପୁତ୍ର, କନ୍ୟା ଓ ନାତି ନାତୁଣୀ ସମସ୍ତଙ୍କର ଖଣ୍ଡଛିନ୍ନ ମୃତଦେହ ଚାରିଆଡ଼େ ବିଞ୍ଚି ହୋଇ ପଡ଼ିରହିଛି ।

''ସେହି ଦୃଶ୍ୟ ଦେଖିଲାପରେ ନିମିଷ ପାଇଁ ଭାବିଥିଲି, ମୁଁ କିପରି ଓ କାହିଁକି ବଞ୍ଚିଗଲି ! ତତ୍‌କ୍ଷଣାତ୍ ମନକୁ ଗୋଟିଏ ଚିନ୍ତା ଗ୍ରାସକଲା, ଯଦି ବଞ୍ଚିଯାଇଛି, ତେବେ ସେହି ମୁହୂର୍ତ୍ତରୁ ନିଜର ନାମ ଓ ପରିଚୟ ସମ୍ପୂର୍ଣ୍ଣରୂପେ ଭୁଲିଯାଇ ବଞ୍ଚିରହିବି । ଭାଙ୍ଗିଯାଇଥିବା ଘରର କାନ୍ଥ ଡେ଼ଇଁ ବାହାରକୁ ଆସି ରାସ୍ତା ଉପରେ ବସିରହିଲି । ସ୍ୱେଚ୍ଛାସେବୀମାନେ ମଡ଼ାଗୁଡ଼ିକୁ କାର୍ପେଟରେ ଜମାକରି ମୋ ଆଖି ଆଗରେ ଅଳିଆଟ୍ରକ୍‌ରେ ଥୋଇଲେ । ପଡ଼ିଶାମାନଙ୍କ ଘରେ ମଧ୍ୟ ପ୍ରାୟ ସେହି ଅବସ୍ଥା । ଶବଗୁଡ଼ିକୁ ନେଇ ଟ୍ରକ୍ ଚାଲିଗଲା । ଦୂରରେ ରହି ଯେଉଁମାନେ ଦେଖିଥିଲେ, ସେମାନେ ଜାଣିଥିଲେ, ମୁଁ ମରିଯାଇଛି । ହଁ, ମୁଁ ପ୍ରକୃତପକ୍ଷେ ମରିଯାଇଥିଲି ।

''ଦଶବର୍ଷ ବିତିଗଲାଣି । ଏଣେତେଣେ ଚାକରକାମ କରି ପ୍ରାଣ ଧରିଛି । ସେଥିସଙ୍ଗେ ମୋ ନିଜ ରୀତିରେ ଜୀବନଟିକୁ ଉପଭୋଗ ମଧ୍ୟ କରିପାରୁଛି ।''

ବୃଦ୍ଧ ନୀରବ ରହିଲେ । ମୋ ଆଖିକୁ ଲୁହ ଆସିଲା । କହିଲି, ''ପ୍ରିୟ ବନ୍ଧୁ, ଆପଣ ପାଗଳ ନୁହନ୍ତି, ଜଣେ ଦାର୍ଶନିକ । ଅନିତ୍ୟ ଓ ଅସତ୍ୟ ସଂସାରର ପରିଚୟ ପାଇଛନ୍ତି ଆପଣ । ଆପଣ ଚିହ୍ନିପାରିଛନ୍ତି ମନୁଷ୍ୟକୁ, ଘୃଣା କରୁଛନ୍ତି କ୍ଷଣଭଙ୍ଗୁର ମନୁଷ୍ୟର ଗର୍ବ ଏବଂ ଅହଂ ।'' ''ଠିକ୍ କହିଛ'' ବୋଲି ମୋତେ ଧନ୍ୟବାଦ ଦେଇ ସେ ଆବୃତ୍ତି କଲେ କବି ସେକସ୍‌ପିୟାରଙ୍କର ମନୁଷ୍ୟ ଜୀବନ ସମ୍ବନ୍ଧରେ ପ୍ରସିଦ୍ଧ କଥନଟି—

> "It is a tale told by an idiot,
> Full of sound and fury
> signifying nothing."

ବୃଦ୍ଧଙ୍କ ଅଲକ୍ଷ୍ୟରେ ମୁଁ ଚାଲିଲି ତାଲିମକେନ୍ଦ୍ରର ଅଧ୍ୟକ୍ଷଙ୍କ ପ୍ରକୋଷ୍ଠକୁ। ନିଜକୁ ଲଣ୍ଡନ ବିଶ୍ୱବିଦ୍ୟାଳୟରର ଛାତ୍ର ବୋଲି ପରିଚୟ ଦେଇ ବୃଦ୍ଧଙ୍କୁ କାମରେ ରଖିବାଲାଗି ପ୍ରାର୍ଥନା ଜଣାଇଲି। "ଆଗାମୀ କାଲି ନିଷ୍ପତ୍ତି ନେବି" ବୋଲି ସେ ଆଶ୍ୱାସନା ଦେଲେ। ସେ ରାତିରେ ଶୋଇରହି ମୁଁ ବୃଦ୍ଧଙ୍କ ଜୀବନୀ କଥା ଭାବୁଥାଏଁ। ସେଥିସଙ୍ଗେ ଭାବୁଥାଏଁ, ଯୁଦ୍ଧକାଳୀନ ସେହି ବୀଭତ୍ସ ରଜନୀର ଦୃଶ୍ୟ। ମନେପଡ଼ିଲା, ପ୍ରଖ୍ୟାତ ଜାର୍ମାନ ଆଦର୍ଶବାଦୀ ଦାର୍ଶନିକ ହିଗେଲ୍‌ଙ୍କ କଥା। ଯୁଦ୍ଧର ଉପକାରିତା ସମ୍ବନ୍ଧରେ ସେ ମତ ଦେଇଥିଲେ, ଧ୍ୱଂସ ହିଁ ମନୁଷ୍ୟର ନୈତିକ ଚେତନା ଉଦ୍ରେକ କରେଯେ ଧନ ଓ ଜୀବନ ପ୍ରଭୃତି ସମସ୍ତ ପାର୍ଥିବ ମୋହ କ୍ଷଣସ୍ଥାୟୀ। ସେ କହିଥିଲେ, "It is necessary that what is finite, such as life and property, should have its contingent nature exposed." ତାଙ୍କ ମତ ଉପରେ ଟିପ୍ପଣୀ ଦେଇ ଅନ୍ୟ ଜଣେ କହିଥିଲେ, "Surely there is no quicker and more vivid way of pointing out this great moral lesson than the horrors of war." ମୃତ୍ୟୁ ଓ ଧ୍ୱଂସର ଅନୁଭୂତି ମଧ୍ୟରୁ ବୃଦ୍ଧ ଯେଉଁ ଶିକ୍ଷା ପାଇଥିଲେ, ତଦ୍ୱାରା ସେ ବିଚିତ୍ର ରୀତିରେ ଜୀବନ ଯାପନ କରୁଥିଲେ ବୋଲି ଧାରଣା ହେଲା।

ତହିଁ ପରଦିନ ଦୋକାନକୁ ଆସିଲାବେଳକୁ ସେ ଆଉ ତାଙ୍କ ସ୍ଥାନରେ ନଥାନ୍ତି। ରାତିରେ ବିଛଣାପତ୍ର ଧରି ସେ ଚାଲିଯାଇଥିଲେ। ବୃଦ୍ଧଙ୍କ ସହିତ ପୁଣି କେବେ ସାକ୍ଷାତ ହେଲା ନାହିଁ। କିନ୍ତୁ ସେହି ଅଭିନବ ବ୍ୟକ୍ତିଙ୍କ ଅଲିଭା ସ୍ମୃତି ଚିରଦିନ ପାଇଁ ମାନସପଟରେ ଅଙ୍କିତ ହୋଇ ରହିଲା।

## ଅଧ୍ୟାପକ ଫିଲିପସ୍‌ଙ୍କ ପୁତ୍ରବିୟୋଗ ପ୍ରସଙ୍ଗ

ଲଣ୍ଡନରେ ପିଏଚ୍.ଡି. କରୁଥିବାବେଳେ ମୋର ଗାଇଡ୍ ଥାନ୍ତି ପ୍ରଫେସର ସିରିଲ୍ ହେନରୀ ଫିଲିପ୍‌ସ୍। ସେତେବେଳେ ସେ ଥିଲେ ପ୍ରାଚ୍ୟବିଦ୍ୟା ବିଭାଗର ନିର୍ଦ୍ଦେଶକ। ଆଧୁନିକ ଭାରତ ଇତିହାସ ବିଷୟରେ ସେ କେତେଗୁଡ଼ିଏ ସାରଗର୍ଭକ ପୁସ୍ତକ ରଚନା କରିଥିଲେ। ଥରେ ସେ ଗାନ୍ଧିଜୟନ୍ତୀ ଉପଲକ୍ଷେ ଭାରତୀୟ ଦୂତାବାସରେ ଭାଷଣ ଦେବା ଅବକାଶରେ ଗାନ୍ଧିଙ୍କ ସମ୍ପର୍କରେ ଅନେକ ନୂତନ ତଥ୍ୟ ଅବତାରଣା କରି ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ। ତାଙ୍କର ଶେଷୋକ୍ତ ବାକ୍ୟଟି ମୁଁ ଟିପି ରଖିଥିଲି। ତାହା ଥିଲା, "ବ୍ରିଟିଶ ଶକ୍ତି ବିପକ୍ଷରେ ପାଞ୍ଚଜଣ ଐତିହାସିକ ପୁରୁଷ ପ୍ରବଳ ସଂଗ୍ରାମ କରିଥିଲେ। ସେମାନେ ଥିଲେ ସ୍ପେନଦେଶର ରାଜା ଦ୍ୱିତୀୟ ଫିଲିପ୍, ଫରାସୀ ସମ୍ରାଟ ନେପୋଲିୟନ ବୋନାପାର୍ଟ, ଜାର୍ମାନ କାଇଜାର ଦ୍ୱିତୀୟ

ଉଇଲିୟମ, ନାଜି ଜାର୍ମାନୀର ସ୍ୱୈରଶାସକ ଏଡ଼ୋଲ୍ଫ ହିଟଲାର ଏବଂ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଗ୍ରସାରଥି 'ଅର୍ଦ୍ଧନଗ୍ନ ଫକୀର' ମୋହନଦାସ କରମଚାନ୍ଦ ଗାନ୍ଧି। ସେମାନଙ୍କ ମଧ୍ୟରୁ ପ୍ରଥମ ଚାରିଜଣ ଦୁର୍ଦ୍ଧର୍ଷ ରଣବୀରଙ୍କୁ ପରାସ୍ତ କରି ବ୍ରିଟିଶ ଜାତି ଗର୍ବିତ। ଅପର ପକ୍ଷରେ, ନିରସ୍ତ୍ର ମହାତ୍ମା ଗାନ୍ଧିଙ୍କ ହସ୍ତରେ ପରାଜୟ ବରଣ କରି ବ୍ରିଟିଶ ଜାତି ଗୌରବାନ୍ୱିତ।''

ଅଧ୍ୟାପକ ଫିଲିପ୍ସ୍ ଆମର କ୍ଲାସ ନେଉଥିଲେ। ପ୍ରତ୍ୟେକ ସପ୍ତାହରେ ଜଣେ ଜଣେ ପିଏଚ୍.ଡି. ଛାତ୍ରଙ୍କୁ ସେମିନାରରେ ପ୍ରବନ୍ଧ ପଢ଼ିବାକୁ ହେଉଥାଏ ଓ ସେଥି ଉପରେ ଅନ୍ୟମାନେ ଆଲୋଚନା କରନ୍ତି। ସେଦିନ ମୋତେ ଆଦେଶ ଦେଲେ, ''ଆଗାମୀ କାଲି ତୁମେ ପଢ଼ିବ।'' ଚାରିଟାବେଳେ କ୍ଲାସରୁ ଫେରିଲି। ବସାରେ ପହଞ୍ଚି ଦୁଃସମ୍ବାଦ ପାଇଲି, ଅଧ୍ୟାପକ ଫିଲିପସ୍‌ଙ୍କ ପନ୍ଦରବର୍ଷ ବୟସ୍କ ଏକମାତ୍ର ପୁତ୍ର ଫୁଟବଲ ଖେଳୁଥିଲାବେଳେ ଛାତିରେ ବଲ୍ ବାଜି ବର୍ତ୍ତମାନ ମରିଗଲେ। ଖେଳପଡ଼ିଆରେ ପହଞ୍ଚିଲାବେଳକୁ ମୃତ ବାଳକକୁ ଶବାଧାରରେ ରଖାଯାଉଥାଏ। ଅନେକ ଅଧ୍ୟାପକ ଓ ଛାତ୍ର ରୁଣ୍ଡ ଥାନ୍ତି। ଫିଲିପ୍ସ ମଧ୍ୟ ଅଦୂରରେ ଛିଡ଼ାରହି ସେହି କରୁଣ ଦୃଶ୍ୟ ଦେଖୁଥିଲେ।

ଫେରିଆସି ଭାବିଲି, ଆଗାମୀ କାଲି କ୍ଲାସ ହେବନାହିଁ, ତେଣୁ ରାତି ଭିତରେ ପ୍ରବନ୍ଧ ଲେଖିବା ଅନାବଶ୍ୟକ। କିନ୍ତୁ ତହିଁ ପରଦିନ ବିଶ୍ୱବିଦ୍ୟାଳୟରେ ପହଞ୍ଚି ଶୁଣିଲି, କ୍ଲାସ ହେବ। କ୍ଲାସ କକ୍ଷରେ ପଶିଲି। ଅଧ୍ୟାପକ ଫିଲିପସ୍ ଆସିଲେ ଓ ମୋତେ ପ୍ରବନ୍ଧ ପଢ଼ିବାକୁ କହିଲେ। ସଲଜ୍ଜ ଅବସ୍ଥାରେ ଛିଡ଼ା ହୋଇ ମୁଁ କହିଲି, ''ସାର୍, ଭାବିଥିଲି ଆପଣ ଆଜି କ୍ଲାସ ନେବେ ନାହିଁ।'' ବିରକ୍ତିଭାବ ପ୍ରକାଶ ନକରି ସେ କହିଲେ, ''ମୁଁ ବୁଝିପାରୁଛି। ଭାବିଥିବ, ପୁତ୍ରଶୋକରେ ଅଧୀର ଅଧ୍ୟାପକ ଛୁଟିନେଇ ଘରେ ରହିବେ। ତୁମର ଭାବନା ଭୁଲ ନୁହେଁ। କିନ୍ତୁ ମୁଁ ଅନ୍ୟ ଏକ ଚିନ୍ତାରେ ନିଜକୁ ସାନ୍ତ୍ୱନା ଦେଲି।'' ତାଙ୍କର ସେହି ଚିନ୍ତାଟି ସେ ଏହିଭାବରେ ବ୍ୟକ୍ତ କରିଥିଲେ, "God gave me a son. At His Will He took him away from me. Who am I to brood over the work of God?''

ଅନ୍ୟ ଜଣେ ସହପାଠୀ କ୍ଲାସରେ ପ୍ରବନ୍ଧ ପଢ଼ିଲେ। ନିୟମିତ ଯେପରି ଆଲୋଚନା ହୁଏ, ତାହା ହିଁ ହେଲା। ଅଧ୍ୟାପକ ଫିଲିପ୍ସ୍ ଆଲୋଚନାରେ ଅଂଶଗ୍ରହଣ କଲେ। ତାଙ୍କ ମୁଖରେ ଲେଶ୍ ମାତ୍ର ଦୁଃଖ କେହି ଦେଖିପାରିଲେ ନାହିଁ।

## ଜଣେ ପୂର୍ବତନ ବଡ଼ଲାଟ୍‌ଙ୍କ ଘରେ ତିନି ଦିନ

୧୯୫୭ ମସିହାରେ ପଡୁଥାଏ ଇଂରେଜ-କଥିତ 'ସିପାହୀ ବିଦ୍ରୋହ' ବା ପ୍ରଖ୍ୟାତ ଭାରତୀୟ ବିପ୍ଳବର ଶତବାର୍ଷିକୀ। ତାହାର ଦୁଇବର୍ଷ ପୂର୍ବରୁ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଭାଗ ପକ୍ଷରୁ ସେହି ଐତିହାସିକ ଘଟଣା ସମ୍ପର୍କରେ ଆଲୋଚନା ଲାଗି କେତେଗୁଡ଼ିଏ ପାଠଚକ୍ର ଆୟୋଜିତ ହେଲା। ଦିନେ ଗୋଟିଏ ସେମିନାର ପରେ ମୋର ଗାଇଡ଼ ସିରିଲ୍ ହେନରୀ ଫିଲିପସ୍‌ଙ୍କୁ କହିଲି, ସିପାହୀ ବିଦ୍ରୋହର ଅବ୍ୟବହିତ ପୂର୍ବେ ଯେଉଁ ବ୍ୟକ୍ତି ଭାରତର ବଡ଼ଲାଟ ଥିଲେ, ତାଙ୍କର ବ୍ୟକ୍ତିଗତ କାଗଜପତ୍ର ଅନୁଧ୍ୟାନ କଲେ ସେଥିରୁ ଅନେକ ତଥ୍ୟ ବାହାରିପାରେ। କାରଣ, ତାଙ୍କ ଶାସନକାଳରେ ସେ ଯେଉଁପ୍ରକାର ନୀତି ପ୍ରୟୋଗ କରି ଭାରତୀୟ ରାଜାମାନଙ୍କର ରାଜ୍ୟ ଛଡ଼ାଇ ନେଇଥିଲେ ଓ ପୁରାତନ ରାଜବଂଶଗୁଡ଼ିକୁ ଅପଦସ୍ଥ କରିଥିଲେ ତାହା ଥିଲା ବିଦ୍ରୋହର ଅନ୍ୟତମ କାରଣ। ସରକାରୀ ରେକର୍ଡ଼ ଓ ରିପୋର୍ଟରୁ ପ୍ରକୃତ ତଥ୍ୟ ମିଳେ ନାହିଁ, ସତ୍ୟ ଜଣାପଡ଼େ ବ୍ୟକ୍ତିଗତ ଡାୟେରୀ ଓ ଅତି ଗୋପନୀୟ ଚିଠିପତ୍ରରୁ। ଅଧ୍ୟାପକ ଫିଲିପ୍‌ସ କହିଲେ, ''ନୂଆ ତଥ୍ୟ ଆବିଷ୍କାର ଆଶା ନେଇ ତୁମେ ବଡ଼ଲାଟଙ୍କ ଘରକୁ ଗଲେ ମୁଁ ଖୁସି ହେବି।''

ସେହି ବଡ଼ଲାଟ ଥିଲେ ଲର୍ଡ଼ ଡ୍ୟାଲହାଉସୀ। ୧୮୪୮ ମସିହାରୁ ୧୮୫୬ ପର୍ଯ୍ୟନ୍ତ ସେ ଭାରତ ଶାସନ କରିଥିଲେ। ତାଙ୍କର ପ୍ରଥମ କୃତିତ୍ୱ ଥିଲା, ପଞ୍ଜାବ ଓ ନିମ୍ନ ବ୍ରହ୍ମଦେଶ ଜୟକରି ସେ ହିନ୍ଦୁକୁଶ ପାଖରୁ ବ୍ରହ୍ମଦେଶ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷକୁ ରାଜନୈତିକ ଏକତା ପ୍ରଦାନ କରିଥିଲେ। ଦ୍ୱିତୀୟରେ, ଏ ଦେଶରେ ରେଳପଥ, ଟେଲିଗ୍ରାଫ୍, ଆଧୁନିକ ଡାକପ୍ରଥା ଓ ମାତୃଭାଷାରେ ଶିକ୍ଷାଦାନ ବ୍ୟବସ୍ଥା ଇତ୍ୟାଦି ପ୍ରଚଳନ ଦ୍ୱାରା ସେ ଭାରତବାସୀଙ୍କୁ ପ୍ରଗତିପଥରେ ଆଗେଇ ନେଇଥିଲେ। ଅପର ପକ୍ଷରେ, ସେ 'ରାଜସ୍ୱତ୍ୱ ଲୋପନୀତି' ପ୍ରୟୋଗ କରି ସାତାରା, ଉଦୟପୁର, ନାଗପୁର, ସମ୍ବଲପୁର, ଝୈତପୁର ଓ ଝାନ୍‌ସୀ ଇତ୍ୟାଦି ଦେଶୀୟ ରାଜ୍ୟକୁ ବ୍ରିଟିଶ ସାମ୍ରାଜ୍ୟରେ ମିଶାଇ ଦେଇଥିଲେ। ତାହାଛଡ଼ା, ସେ ନାନା ଉପାୟରେ ବେରାର, କର୍ଣ୍ଣାଟ, ତାଞ୍ଜୋର ଓ ଅଯୋଧ୍ୟା ପ୍ରଭୃତି ଦେଶୀୟ ରାଜ୍ୟର ବିଲୋପ ସାଧନ କରିଥିଲେ। ସଂକ୍ଷେପରେ, ଏକାଧାରେ ସେ ଥିଲେ ଜଣେ ପ୍ରଖର ସାମ୍ରାଜ୍ୟବାଦୀ ଓ ଦୂରଦ୍ରଷ୍ଟା ସଂସ୍କାରକ। ମାତ୍ର ୩୬ ବର୍ଷ ବୟସରେ ଭାରତର କନିଷ୍ଠତମ ବଡ଼ଲାଟ ଭାବରେ କାର୍ଯ୍ୟଭାର ଗ୍ରହଣ କରି ଡ୍ୟାଲହାଉସୀ ଅଳ୍ପ ସମୟ ମଧ୍ୟରେ ଅନେକ କାର୍ଯ୍ୟ କରିପାରିଥିଲେ। କିନ୍ତୁ ତାଙ୍କ ବିଦାୟ ନେବାର ବର୍ଷକ ମଧ୍ୟରେ ଆରମ୍ଭ ହୋଇଥିଲା ଭାରତୀୟ ବିଦ୍ରୋହ। ବିଦ୍ରୋହ ଫଳରେ ସୁଦୃଢ଼ ବ୍ରିଟିଶ ସାମ୍ରାଜ୍ୟ ଲୋପ ପାଇବା ଅବସ୍ଥାକୁ ଆସିଯାଇଥିଲା। ଅନେକେ ସେହି ବିଦ୍ରୋହ

ନିମନ୍ତେ ତାଙ୍କୁ ଦାୟୀ କଲେ ଓ ନାନା ପ୍ରକାର ନିନ୍ଦା ସହ୍ୟକରି ଭଗ୍ନ ମନପ୍ରାଣରେ ମାତ୍ର ୪ ବର୍ଷ ମଧ୍ୟରେ ସେ ମୃତ୍ୟୁମୁଖରେ ପଡ଼ିଥିଲେ। ସେହିପରି ଜଣେ ପ୍ରସିଦ୍ଧ ବଡ଼ଲାଟଙ୍କ ଘରକୁ ଯାଇ ତାଙ୍କ କାଗଜପତ୍ର ଦେଖିବାକୁ ଆଗ୍ରହ ବଢ଼ିଲା।

ବଡ଼ଲାଟଙ୍କ ଜନ୍ମସ୍ଥାନ ଥାଏ ସ୍କଟଲ୍ୟାଣ୍ଡର ମିଡ଼୍‌ଲୋଥିଆନ ନାମକ ଅଞ୍ଚଳରେ। ସେଠାରେ ତାଙ୍କ ପୂର୍ବପୁରୁଷମାନଙ୍କର ଦୁର୍ଗଟିଏ ରହିଛି ବୋଲି ସମ୍ବାଦ ସଂଗ୍ରହ କଲି। ତାଙ୍କର ପୁଅ ନ ଥିବାରୁ ଝିଅଙ୍କ ଝିଅର ଝିଅ, ଅର୍ଥାତ୍ ଅଣନାତୁଣୀ ଥିଲେ ଦୁର୍ଗ ଓ ସମ୍ପତ୍ତିର ଅଧିକାରିଣୀ। ଅଜ୍ଞାତ ଦୂରବର୍ତ୍ତୀ ସ୍ଥାନ, ଅପରିଚିତ ବିଦେଶୀ ଅଭିଜାତ ବଂଶ ଓ ବୃଦ୍ଧା ଅଣନାତୁଣୀ ଇତ୍ୟାଦି କଥା ଜାଣି ସୁଦ୍ଧା ଲଣ୍ଡନରୁ ପ୍ରଥମେ ଯାଇ ସ୍କଟଲ୍ୟାଣ୍ଡର ରାଜଧାନୀ ଏଡିନ୍‌ବରା ସହରରେ ପହଞ୍ଚିଲି। ସେଠାରେ ଡ୍ୟାଲହାଉସୀ ବଂଶର ଠିକଣା ସଂଗ୍ରହ କରି ଚିଠି ଲେଖିଲି। ବଡ଼ଲାଟଙ୍କ ଅଣନାତୁଣୀ ଲେଡି ଏଡିଥ୍ ବ୍ରାଉନ୍ ନିଜେ ଉତ୍ତର ପଠାଇଲେ, ତାଙ୍କ ପୂର୍ବପୁରୁଷଙ୍କ ସମ୍ପର୍କରେ ଜାଣିବା ଲାଗି ଉତ୍ସୁକ ଥିବା ଜଣେ ଭାରତୀୟ ଛାତ୍ରଙ୍କୁ ସେ ଶ୍ରଦ୍ଧା ସହ ସ୍ୱାଗତ କରିବେ।

ଇଂଲଣ୍ଡର ଉତ୍ତରଭାଗରେ ସୁଦୂର ସ୍କଟଲ୍ୟାଣ୍ଡର ପାର୍ବତ୍ୟ ଅଞ୍ଚଳ ପ୍ରାକୃତିକ ଶୋଭାରେ ପରିପୂର୍ଣ୍ଣ। ଶୀତର ପ୍ରାବଲ୍ୟ ସତ୍ତ୍ୱେ ସହରଠାରୁ ଦୂରବର୍ତ୍ତୀ ସ୍ଥାନରେ ଥିବା କୋଲ୍‌ଷ୍ଟୋନ ନାମକ ଜାଗାରେ ବସ୍‌ଯୋଗେ ପହଞ୍ଚିଲି। ସେଠାରୁ ସନ୍ଧାନ ନେଇ ଭଡ଼ା ଟ୍ୟାକ୍ସିରେ ଡ୍ୟାଲହାଉସୀ ଦୁର୍ଗକୁ ଗଲି। ପରିତ୍ୟକ୍ତ ଓ ଜରାଜୀର୍ଣ୍ଣ ଦୁର୍ଗର ତତ୍ତ୍ୱାବଧାରକ ଜଣାଇଲେ ଯେ, ଡ୍ୟାଲହାଉସୀଙ୍କ ଅଣନାତୁଣୀ ରହନ୍ତି ଅନ୍ୟ ଏକ ସ୍ଥାନରେ ଥିବା ପୂର୍ବତନ ବଡ଼ଲାଟଙ୍କ ନିଜ ନିର୍ମିତ ସୌଧରେ। ସେ ମୋତେ ସେଠାକୁ ନେଇଗଲେ। ଲେଡି ଏଡ଼ିଥ୍ ଆଦର ସହକାରେ ମୋତେ ପାଛୋଟି ନେଲେ।

ତିନିଦିନ ପାଇଁ ତାଙ୍କ ଆତିଥ୍ୟ ଉପଭୋଗ କଲି। ପହଞ୍ଚିଲାପରେ ସର୍ବପ୍ରଥମେ ସେ ମୋତେ ନେଇଗଲେ ଉପର ତାଲାରେ ଥିବା ଡ୍ୟାଲହାଉସୀଙ୍କ ଲାଇବ୍ରେରୀ କକ୍ଷକୁ। ସେଠାରେ ଅନେକଗୁଡ଼ିଏ ପୁରାତନ ବହି ରହିଥାଏ। ଗୋଟିଏ ଆଲମାରୀରେ ଭର୍ତ୍ତି ଥାଏ ବଡ଼ଲାଟଙ୍କ ସ୍ୱହସ୍ତଲିଖିତ ଚିଠିପତ୍ର, ତାଙ୍କର ବ୍ୟକ୍ତିଗତ ଡାୟେରୀ ଓ ଅନ୍ୟାନ୍ୟ କାଗଜପତ୍ର। ଆଲମାରୀ ଫିଟାଇ ଦେଖାଇଦେଲେ, ଆତ୍ମଚରିତ ଲେଖାଥିବା ୪୮ଟି ପାଣ୍ଡୁଲିପି ଗ୍ରନ୍ଥ ମଧ୍ୟରେ ଥିବା ଭାରତୀୟ ଶାସନ କାଳର କେତେଗୋଟି ଗ୍ରନ୍ଥ ଖଣ୍ଡ। ହାତଲେଖା ଗ୍ରନ୍ଥଗୁଡ଼ିକ ସୁନ୍ଦରଭାବେ ବନ୍ଧା ଯାଇଥାଏ। ଟିକିଏ ଦୂରକୁ ନେଇଯାଇ ଲେଡି ଏଡିଥ୍ କହିଲେ, ''ଏହି ଚେୟାରରେ ଡ୍ୟାଲହାଉସୀ ବସୁଥିଲେ ଏବଂ ଏହି ଟେବୁଲ ଉପରେ ଲେଖୁଥିଲେ ଓ ପଢୁଥିଲେ। ଆପଣ ଏହିଗୁଡ଼ିକ ବ୍ୟବହାର କରିବେ।''

ତାହାପରେ ସେ ମୋତେ ନେଇଗଲେ ମୋ ପାଇଁ ନିର୍ଦ୍ଦିଷ୍ଟ ଥିବା ଶୋଇବା ଘରଟି ଦେଖାଇଦେବାକୁ। କହିଲେ, ''ଏହି କୋଠରି ଥିଲା ଭାରତରୁ ଫେରିଲାପରେ ବଡ଼ଲାଟଙ୍କ ଶୟନକକ୍ଷ। ତାଙ୍କ ପଲଙ୍କରେ ଆପଣଙ୍କଲାଗି ବିଛଣା କରାଯାଇଛି। ଏହି ଘରେ ରହିବେ ଓ ଶୋଇବେ।'' କୋଠରି ଭିତରେ ରହିଥାଏ ଗୋଟିଏ ପୁରାତନ ଟେବୁଲ୍। ତାହାର କାରୁକାର୍ଯ୍ୟ ଦେଖି ଆଚମ୍ବିତ ହେଲି। ଏଡିଥ୍ ଜଣାଇଲେ, ''ଏହି ଟେବୁଲ୍‌ଟି ବଡ଼ଲାଟଙ୍କ ବିଦାୟ କାଳରେ ଭାରତୀୟ ରାଜାମାନେ ତାଙ୍କୁ ଉପହାର ଦେଇଥିଲେ। ପ୍ରତ୍ୟେକ ବଡ଼ ବଡ଼ ଦେଶୀୟ ରାଜ୍ୟର ବିଭିନ୍ନ ରଙ୍ଗର ଉତ୍କୃଷ୍ଟ କାଠଖଣ୍ଡଗୁଡ଼ିକୁ ଯୋଗକରି କାରିଗରମାନେ ଏପରି ସୁଦୃଶ୍ୟ ଟେବୁଲ ତିଆରି କରିଥିଲେ।''

ମଧ୍ୟାହ୍ନ ଭୋଜନ ପରେ ଲେଡି ଏଡିଥ୍ ମୋତେ ନେଇଗଲେ ତଳତାଲାର ଗୋଟିଏ ସୁରକ୍ଷିତ କୋଠରି ମଧ୍ୟକୁ। ଦେଓ୍ୱାଲର ଅନେକ ଜାଗାରେ ଲର୍ଡ଼ ଡ୍ୟାଲହାଉସୀଙ୍କ ଚିତ୍ରମାନ ଟଙ୍ଗା ରହିଥାଏ। ବଡ଼ଲାଟ ଥିଲାବେଳେ ଅଙ୍କିତ ହୋଇଥିବା ତୈଳଚିତ୍ରଟି ଗୋଟିଏ କାନ୍ଥର ମଧ୍ୟଭାଗରେ ଶୋଭା ପାଉଥାଏ। ଅନ୍ୟତ୍ର ଥାଏ କେତେଜଣ ଭାରତୀୟ ରାଜାଙ୍କର ଚିତ୍ର। ତା ମଧ୍ୟରେ ଖଣ୍ଡିଏ ଥିଲା ପଞ୍ଜାବ ବିଜୟ ସମୟରେ ସେଠାକାର ଅପଦାର୍ଥ ରାଜା ଦିଲୀପ ସିଂହଙ୍କର। ତାଙ୍କରି ନିକଟରୁ ଡ୍ୟାଲହାଉସୀ ବିଶ୍ୱବିଖ୍ୟାତ କୋହିନୂର ହୀରାଟିକୁ ଛଡ଼ାଇନେଇ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କ ପାଖକୁ ଉପଢୌକନ ରୂପେ ପଠାଇ ଦେଇଥିଲେ।

ମୁଁ ମନଯୋଗ ସହକାରେ ଛବିଗୁଡ଼ିକ ଦେଖୁଥିଲାବେଳେ ଏଡିଥ୍ ଲୁହାର ଆଲମାରୀ ଭିତରୁ ମୁକ୍ତାର ହାରଟିଏ କାଢ଼ି ମୋତେ ଦେଖିବାକୁ ଦେଲେ। ବଡ଼ ବଡ଼ ଉଜ୍ଜ୍ୱଳ ମୁକ୍ତାଗୁଡ଼ିକର ହାର। କହିଲେ, ''କୌଣସି ଜଣେ ଜାରତୀୟ ରାଜା ବଡ଼ଲାଟଙ୍କୁ ଏହି ହାର ଉପହାର ଦେଇଥିଲେ।'' ହାତରେ ରଖି ଦେଖୁଥିଲାବେଳେ ଜାଣିପାରିଲି, ଯେଉଁ ଧାତୁ ଉପରେ ମୁକ୍ତାଗୁଡ଼ିକ ଖଚିତ ରହିଛି, ତାହା ଏତେଦୂର ପୁରୁଣା ହେଲାଣି ଯେ, ସତେଯେପରି କେତୋଟି ମୁକ୍ତା ସେଥିରୁ ଖସିପଡ଼ିବ। ତତ୍‌କ୍ଷଣାତ୍ କହିଲି, ''ବେଶି ସମୟ ହାତରେ ରଖିବାକୁ ସାହସ ହେଉନାହିଁ। ଯଦି କେତୋଟି ମୁକ୍ତା ହଜିଯିବ, ଆପଣ ମୋତେ ସନ୍ଦେହ କରିବେ।''

ହସି ହସି ଏଡିଥ୍ ଉତ୍ତର ଦେଲେ, ''ବ୍ରିଟିଶ ସରକାର ମୋ ମରିବା ପ୍ରତି ଆଗ୍ରହରେ ଅପେକ୍ଷା କରିଛନ୍ତି। ମୁଁ ଆଖି ବୁଜିଲାକ୍ଷଣି ଡ୍ୟାଲହାଉସୀଙ୍କର ସମସ୍ତ ମହାର୍ଘ ସାମଗ୍ରୀ ମିଉଜିୟମ୍‌କୁ ନେଇଯିବେ। ତେଣୁ, ଆପଣଙ୍କ ଦେଶର ମୁକ୍ତା ଆପଣଙ୍କ ହାତରେ ରହିଗଲେ ମୁଁ ବରଂ ଖୁସି ହେବି।'' ତାଙ୍କର ସେହି ରହସ୍ୟ ଉପଭୋଗ କଲି।

ହାରଟି ଫେରାଇ ଦେଲାପରେ ସେ ଆଲମାରୀ ଭିତରୁ ବାହାର କଲେ ଖଣ୍ଡିଏ ସୁଦୀର୍ଘ ତରବାରି। ଅସିଟିର ଖୋଳ ଉପରେ ଖଚିତ ଥାଏ ମଣିମାଣିକ୍ୟ ଓ ବେଷ୍ଟଟି ତିଆରି ହୋଇଥାଏ ଉଜ୍ଜ୍ୱଳ ଧାତୁରେ, ବୋଧହୁଏ ସୁନା। କହିଲେ, "ଏହି ଖଡ୍ଗଟି ଥିଲା ଦିଲୀପ ସିଂହଙ୍କର ରାଜକୀୟ ମର୍ଯ୍ୟାଦାସୂଚକ ଅସି। ଏହାକୁ ହାତରେ ଧରନ୍ତୁ।" କୌତୁକ ଛଳରେ କହିଲି, "ଯଦି ତରବାରିଟି ମହାରାଜା ରଣଜିତ ସିଂହଙ୍କର ହୋଇଥାନ୍ତା, ସେଥିରେ ମୁଁ ଚୁମ୍ବନ ଦେଇଥାନ୍ତି। ହାତରେ ଉଠାଇ କପାଳରେ ଲଗାଇଥାନ୍ତି। କିନ୍ତୁ ସିଂହାସନଚ୍ୟୁତ ତାଙ୍କ ଅଯୋଗ୍ୟ ବଂଶଧରଙ୍କ ଅସି ହାତରେ ଧରିବାକୁ ଇଚ୍ଛା ହେଉନାହିଁ।" ଏତିକି ମୋ କଥାର ଭାବାର୍ଥ ବୁଝି ଅସିଟିକୁ ରଖିଦେଲେ। କୋଠରି ମଧ୍ୟରେ ଥିବା ହାତୀଦାନ୍ତର କାରୁକାର୍ଯ୍ୟପୂର୍ଣ୍ଣ ସାମଗ୍ରୀ, ଚନ୍ଦନକାଠର ବାକ୍ସ ଓ ମୂଲ୍ୟବାନ ପଥରନିର୍ମିତ ଆସବାବପତ୍ର ଦେଖିବାକୁ କିଛି ସମୟ ଲାଗିଲା। ଅପରାହ୍ଣ ୩ଟା ବେଳେ ମୁଁ କହିଲି, "ବର୍ତ୍ତମାନ ଠାରୁ ରାତ୍ରିଭୋଜନ ପର୍ଯ୍ୟନ୍ତ ମୋତେ ବଡ଼ଲାଟଙ୍କ ଲାଇବ୍ରେରୀ କକ୍ଷରେ ବନ୍ଦୀ ଅବସ୍ଥାରେ ରଖିଦିଅନ୍ତୁ। ମୋ ପକ୍ଷରେ ତାଙ୍କର ସ୍ୱହସ୍ତଲିଖିତ କାଗଜପତ୍ର ଏସବୁ ମହାର୍ଘ ପଦାର୍ଥଠାରୁ ଅନେକ ବେଶି ମୂଲ୍ୟବାନ।"

ରାତି ୯ଟା ପର୍ଯ୍ୟନ୍ତ ବଡ଼ଲାଟଙ୍କ ଫାଇଲଗୁଡ଼ିକ ଦେଖିଲି। କାଚଝରକା ବାଟେ ମଝେ ମଝେ ବାହାରକୁ ଚାହିଁ ବହୁ ଦୂରଯାଏ ବ୍ୟାପିରହିଥିବା ସବୁଜ ତୃଣଭୂମିର ସୌନ୍ଦର୍ଯ୍ୟ ଦେଖୁଥାଏଁ। ପଡ଼ିଆ ଭିତରେ ଅନେକ ଗୁଡ଼ିଏ ଶଶା ଏଣେତେଣେ ଦୌଡୁଥାନ୍ତି। ଆଖିପାଇଲା ପର୍ଯ୍ୟନ୍ତ କୌଣସି ଦିଗରେ ଅନ୍ୟଲୋକର ଘର ଦେଖିଲି ନାହିଁ। ପ୍ରାକୃତିକ ଶୋଭା ସହିତ ସ୍ଥାନର ନୀରବ ପରିବେଶ ମନକୁ ଅପାର ତୃପ୍ତି ଆଣି ଦେଉଥାଏ।

ବଡ଼ଲାଟଙ୍କ ଭାରତ ଶାସନ ସମୟର ପାଞ୍ଚଟି ଗ୍ରନ୍ଥଖଣ୍ଡରୁ ଖଣ୍ଡିଏମାତ୍ର ପଢ଼ିସାରିଲାବେଳକୁ ଖାଇବା ପାଇଁ ଡାକ ଆସିଲା। ଆଗାମୀ କାଲି ଆଉଗୁଡ଼ିକୁ ପଢ଼ିବି ବୋଲି ଠିକ୍ କଲି। ମନକୁ ପ୍ରଶ୍ନ ଆସୁଥାଏ, ଜଣେ କର୍ମରତ ବଡ଼ଲାଟ ଯୁଦ୍ଧ ଓ ଶାସନକାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ସେପରି ସାବଲୀଳ ବର୍ଣ୍ଣନାଶୈଳୀରେ ଆମ ଦେଶରେ ଦେଖିଥିବା ପାହାଡ଼ ପର୍ବତ, ନଦ ନଦୀ, ପଶୁପକ୍ଷୀ, ବୃକ୍ଷଲତା ଓ ବିଭିନ୍ନ ସ୍ଥାନଗୁଡ଼ିକ ବିଷୟରେ ଲେଖିବାକୁ ସମୟ ପାଉଥିଲେ କିପରି ?

ଶୋଇଲାବେଳେ ଦେଖିଲି, ପଲଙ୍କ ଉପରେ ମୋ ପାଇଁ ନୂତନ ଶଯ୍ୟା ପ୍ରସ୍ତୁତ କରାଯାଇଛି। କୋଠରିଟିକୁ ଉଷ୍ମ ରଖିବାଲାଗି ହିଟର ଜାଳିଦିଆଯାଇଛି। କୋମଳ ଶଯ୍ୟା ଉପରେ ଶୋଇରହି ଭାବୁଥାଏଁ, ଶହେବର୍ଷ ପୂର୍ବେ ସେହି ପଲଙ୍କ ଉପରେ ନିଦ୍ରା ଯାଉଥାନ୍ତି ଇଂଲଣ୍ଡର ସେହି ପ୍ରଖ୍ୟାତ ଆର୍ଲ, ଲର୍ଡ଼ ଡ୍ୟାଲହାଉସୀ !

ଦ୍ୱିତୀୟ ଦିନ ପ୍ରଭାତସମୟରୁ ପଢ଼ିବାକୁ ବସିଗଲି । ସେହିଠାକୁ ମୋ ପାଇଁ ଜଳଖିଆ ପଠାଇଦିଆଗଲା । ସେଥିରୁ ଜାଣିଲି, ଏଡ଼ିଥ୍ ମୋ ସମୟର ମୂଲ୍ୟ ବୁଝିପାରିଛନ୍ତି । କେତେକଥା ପଢ଼ିଲି, ଅନେକ କଥା ଜାଣିଲି । ଉଲ୍ଲେଖଯୋଗ୍ୟ, ଇଂରେଜ ଶାସକମାନେ ସରକାରୀ ଭାବରେ ଯେଉଁପ୍ରକାର ନୀତି ଘୋଷଣା କରୁଥିଲେ, ସେଥିରେ ଅନେକାଂଶରେ ପ୍ରକୃତ ସତ୍ୟ ଲେଖା ନଥାଏ । ଅଥଚ, ବ୍ୟକ୍ତିଗତ ଡାଏରୀରେ ସେମାନେ ଖୋଲାଖୋଲି ଭାବରେ ଭିତିରି କଥା ଓ ମନର ଚିନ୍ତାମାନ ନିଜ ହାତରେ ଲିପିବଦ୍ଧ କରିଯାଉଥିଲେ । ସେହିସବୁ ଲେଖା ସେମାନଙ୍କ ମୃତ୍ୟୁର ଅନେକବର୍ଷ ପରେ ଲୋକଲୋଚନକୁ ଅଣାଯାଇପାରିବ ବୋଲି ସେମାନେ କଡ଼ାକଡ଼ି ନିର୍ଦ୍ଦେଶନାମା ଜାରୀ କରୁଥିଲେ । ଏଠାରେ ଗୋଟିଏ ଦୃଷ୍ଟାନ୍ତ ଦେଉଛି । ଡ୍ୟାଲହାଉସୀ ଭାରତର ଅଯୋଧ୍ୟା ରାଜ୍ୟରେ କୁଶାସନ ଚାଲିଛି ବୋଲି ଘୋଷଣା କରି ତାଙ୍କ ଶାସନର ଶେଷବର୍ଷ ୧୮୫୬ରେ ସେଠାକାର ନବାବ ଓ୍ୱାଜିଦ୍ ଆଲିଙ୍କୁ ସିଂହାସନଚ୍ୟୁତ କଲେ ଓ ତାଙ୍କ ରାଜ୍ୟକୁ ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନ ତଳକୁ ଆଣିଲେ । ତାଙ୍କର ସେପରି ରାଜ୍ୟଲିପ୍ସା ଅନୁମାନ କରି ବ୍ରିଟିଶ ମନ୍ତ୍ରିମଣ୍ଡଳ ଅସନ୍ତୋଷ ପ୍ରକାଶ କରିବା ଦେଖି ସେ କୈଫିୟତ ଦେଲେ, "ନିୟୁତ ନିୟୁତ ପ୍ରଜାଙ୍କର ଦୁର୍ଦ୍ଦଶା ଦେଖି ସୁଦ୍ଧା ଆଉ ଅଧିକ କାଳ ନିଶ୍ଚେଷ୍ଟ ରହିଲେ ବ୍ରିଟିଶ ସରକାର ଭଗବାନଙ୍କ ଓ ମନୁଷ୍ୟର ଦୃଷ୍ଟିରେ ଅପରାଧୀ ହେବେ ।" ଅଥଚ, ଆଠବର୍ଷ ପୂର୍ବେ ଭାରତ ଆଗମନ ପୂର୍ବରୁ ସେ ନିଜ ଡାଏରୀରେ ଲେଖିଥିଲେ ଯେ, ବଡ଼ଲାଟ ଭାବରେ ସେଠାରେ ତାଙ୍କର ସର୍ବପ୍ରଧାନ କାର୍ଯ୍ୟ ହେବ ଗାଙ୍ଗେୟ ଉପତ୍ୟକାରେ ଅବସ୍ଥିତ ସୁବିସ୍ତୀର୍ଣ୍ଣ ଅଯୋଧ୍ୟାରାଜ୍ୟରୁ ନବାବଙ୍କ ଶାସନ ଲୋପ କରି ସେଠାରେ ସେ ବ୍ରିଟିଶ ଶାସନ ପ୍ରତିଷ୍ଠା କରିବେ ।

ବଡ଼ଲାଟଙ୍କ କାଗଜପତ୍ରରୁ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ବାହାର କରି ସେ ସବୁ ଟିପିନେଲି । ସେଥିସଙ୍ଗେ ମିଳୁଥାଏ ରହସ୍ୟମୟ କାହାଣୀ । ସେଥିରୁ ଗୋଟିଏ କଥା ଏଠାରେ ଉଲ୍ଲେଖ କରିବି – ଭାରତର ପଞ୍ଜାବ ରାଜକୋଷରୁ ଅପହୃତ କୋହିନୂର ହୀରା କିପରିଭାବରେ ଇଂଲଣ୍ଡକୁ ପଠାଯାଇଥିଲା ।

ଅତୀତର କେଉଁ ଅଜ୍ଞାତ ଯୁଗରେ ସେହି ସୁବୃହତ ସମୁଜ୍ଜ୍ୱଳ ହୀରା କେଉଁ ହିନ୍ଦୁରାଜାଙ୍କର ସମ୍ପତ୍ତି ଥିଲା, ତାହା ଜାଣିବା କଷ୍ଟକର । ଅତୀତରେ ତାହାର ନାମ କ'ଣ ଥିଲା, ସେକଥା ମଧ୍ୟ ଜଣାଯାଏ ନାହିଁ । କଥିତ ଅଛି, ମାଳବର ହିନ୍ଦୁରାଜାଙ୍କ ନିକଟରୁ ଦିଲ୍ଲୀର ସୁଲତାନ ଆଲାଉଦ୍ଦୀନ ଖିଲଜୀ ସେହି ହୀରାଟିକୁ ଛଡ଼ାଇ ନେଇଥିଲେ । ତାହାପରେ ପୁଣି ଗ୍ୱାଲିଅରର ହିନ୍ଦୁ ରାଜା ସେହି ରତ୍ନ ହସ୍ତଗତ କରିଥିଲେ । ପରେ ପରେ ମୋଗଲ ବାଦଶାହ ବାବର ହୀରାଟି ପାଇଲେ

ଓ ମୋଗଲ ରାଜବଂଶର ସର୍ବଶ୍ରେଷ୍ଠ ରତ୍ନ ରୂପେ ତାଙ୍କ ବଂଶଧରମାନେ ତାହାକୁ ଅତି ସାବଧାନରେ ସାଇତି ରଖିଲେ। କିନ୍ତୁ, ମୋଗଲ ସାମ୍ରାଜ୍ୟର ପତନ କାଳରେ ୧୭୩୯ ମସିହାରେ ପାରସ୍ୟର ରାଜା ନାଦିରଶାହ ଦିଲ୍ଲୀ ଆକ୍ରମଣ କରି ଦୁର୍ବଳ ମୋଗଲ ସମ୍ରାଟ ମହମ୍ମଦ ଶାହଙ୍କ ମୁକୁଟରେ ଥିବା ମଣିଟିକୁ କୌଶଳରେ ଛଡ଼ାଇନେଲେ ଓ ତାହାର ନାମ ରଖିଲେ 'କୋହିନୂର'। କିଛି ସମୟ ପରେ ସେହି ହୀରା କାବୁଲର ରାଜାମାନଙ୍କର ହସ୍ତଗତ ହେଲା। ଶେଷରେ, ପଞ୍ଜାବକେଶରୀ ମହାରାଜା ରଣଜିତ ସିଂହ ଆଫଗାନମାନଙ୍କ ନିକଟରୁ କୋହିନୂର ହୀରା ଅଧିକାର କରିନେଲେ। କଥିତ ଅଛି, ରଣଜିତ ସିଂହ ତାଙ୍କ ମୃତ୍ୟୁ ପୂର୍ବରୁ ସେହି ଅମୂଲ୍ୟ ହୀରାଟିକୁ ହିନ୍ଦୁଜଗତର ପରମ ଆରାଧ ଜଗନ୍ନାଥଙ୍କ ନିକଟରେ ସମର୍ପଣ କରିବା ଲାଗି ସଂକଳ୍ପ ନେଇଥିଲେ। କିନ୍ତୁ ମହାରାଜାଙ୍କର ସେହି ଅଭିଳାଷ ପୂର୍ଣ୍ଣ ହେଲା ନାହିଁ। ଇଂରେଜମାନେ ପଞ୍ଜାବ ଜୟ କରିବା ସମୟରେ ହୀରାଟି ରହିଥାଏ ରଣଜିତ ସିଂହଙ୍କ ପତ୍ନୀ ରାଣୀ ଜିନ୍ଦନ ଓ ତାଙ୍କ ପୁତ୍ର ଦିଲୀପ ସିଂହଙ୍କ ପାଖରେ। ପଞ୍ଜାବ ବିଜେତା ଲର୍ଡ଼ ଡ୍ୟାଲହାଉସୀ ଅନାୟାସରେ ସେମାନଙ୍କ ରାଜକୋଷରୁ କୋହିନୂର ଅପହରଣ କରିନେଲେ।

ଏ ସବୁ ହେଉଛି ଇତିହାସର କଥା। ବଡ଼ଲାଟଙ୍କ କାଗଜପତ୍ରରୁ ପାଇଲି ସେହି ରତ୍ନଟିକୁ ଭାରତରୁ ଲଣ୍ଡନ ପ୍ରେରଣ କରିବାର ଚାଞ୍ଚଲ୍ୟକର କାହାଣୀ। କୋହିନୂର ହସ୍ତଗତ ହୋଇଥିବା ସମ୍ବାଦ ଇଂଲଣ୍ଡରେ ପହଞ୍ଚିବାକ୍ଷଣି ମହାରାଣୀ ଭିକ୍ଟୋରିଆ ରତ୍ନଟି ପାଇବା ନିମନ୍ତେ ଅଧୀର ହୋଇଉଠିଲେ। ଯେତେହେଲେ ସେ ଥିଲେ ଜଣେ ମହିଳା ଓ ପୃଥିବୀର ପ୍ରସିଦ୍ଧ ହୀରା ପ୍ରତି ତାଙ୍କର ଦୁର୍ବଳତା ସ୍ୱାଭାବିକ ଥାଏ। ବ୍ରିଟିଶ ପ୍ରଧାନମନ୍ତ୍ରୀ ମହାରାଣୀଙ୍କ ଲୋଭ ବିଷୟ ବଡ଼ଲାଟଙ୍କୁ ଜଣାଇବା ସଙ୍ଗେ ତୁରନ୍ତ ତାହାକୁ ଲଣ୍ଡନ ପଠାଇବା ଲାଗି ନିର୍ଦ୍ଦେଶ ଦେଲେ। କିନ୍ତୁ କିପରିଭାବରେ ପଠାଯାଇ ପାରିବ, ତାହା ହିଁ ହେଲା ବଡ଼ଲାଟଙ୍କ ସମସ୍ୟା।

ସେତେବେଳେ ଜଳଜାହାଜର ଆକାର ପ୍ରକାର ଉନ୍ନତ ନଥାଏ। ଭାରତରୁ ଲଣ୍ଡନ ଯିବାକୁ ପ୍ରାୟ ତିନିମାସ ସମୟ ଲାଗୁଥାଏ। କୌଣସି ଗୋଟିଏ ପାସେଞ୍ଜର ଜାହାଜରେ ପଠାଇବାକୁ ହେବ, କିନ୍ତୁ କଥାଟି ଜଣାପଡ଼ିଗଲେ ଭୟଙ୍କର ବିପଦର ସମ୍ଭାବନା ଅଛି ବୋଲି ବଡ଼ଲାଟ ଅନୁମାନ କଲେ। ଅନେକ ଚିନ୍ତାକରି ଶେଷରେ ଠିକ୍ କଲେ, ନିଜର ଦୁଇଜଣ ଆତ୍ମୀୟ ଯୁବକଙ୍କ ହାତରେ ଅତ୍ୟନ୍ତ ଗୋପନରେ ହୀରାଟି ପଠାଇବେ, ଯେଉଁ ବିଷୟ ଜାହାଜର କୌଣସି ତୃତୀୟ ବ୍ୟକ୍ତି ଜାଣିପାରିବେ ନାହିଁ। ସେହି ଦୁଇ ଯୁବକ ସର୍ବଦା ଏକତ୍ର ରହିବେ, ରାତିରେ ଜଣେ ଶୋଇଲାସମୟରେ ଅନ୍ୟ ଜଣେ ଚାହିଁରହିବେ। ଗୋଟିଏ ଛୋଟ ମୁଣା ଭିତରେ ରଖି ହୀରାକୁ

ତଳିପେଟରେ ବାନ୍ଧି ତା ଉପରେ ମୋଟା ପୋଷାକ ପିନ୍ଧିବାକୁ ହେବ। ଦରକାରବେଳେ ଜଣକ ତଳିପେଟରୁ ଅନ୍ୟ ଜଣକ ତଳି ପେଟକୁ ସ୍ଥାନାନ୍ତରିତ କରାଯିବ। ଅହରହ ସତର୍କତା ମଧ୍ୟରେ ତିନିମାସ ବିତାଇବାକୁ ହେବ।

ବୋମ୍ବେ ବନ୍ଦରରୁ କ୍ଷୁଦ୍ର ଜାହାଜଟି ଛାଡ଼ିଲା। ସମୁଦ୍ରରେ ଅନେକ ଦୂର ଗଲାପରେ ଜାହାଜରେ ହଇଜା ଲାଗିଲା। କେତେଜଣ ପାସେଞ୍ଜର ଆକ୍ରାନ୍ତ ହେଲେ ଓ ପ୍ରାଣ ହରାଇଲେ। ଅନ୍ୟମାନଙ୍କ ମଧ୍ୟରେ ଆତଙ୍କ ଖେଳିଗଲା। କୋହିନୂର ରଖିଥିବା ଯୁବକ ଦୁଇଜଣ ଭୟରେ ଥରହର ହେଲେ। ଭାବିଲେ, ଯଦି ହଇଜାରେ ସେମାନେ ମରିବେ, ତେବେ ରତ୍ନଟି ମହାରାଣୀ ବା ପାଇବେ କିପରି! ଭାଗବାନଙ୍କୁ ଡାକି ଡାକି ସେମାନଙ୍କର ଦିନ କଟୁଥାଏ। କିଛିଦିନ ପରେ ଜାହାଜ ଗୋଟିଏ ବନ୍ଦରରେ ଲାଗିଲା। ରୋଗୀମାନଙ୍କୁ ସେଠାରେ ଛାଡ଼ିଦେବାଲାଗି କପ୍ତାନ ନିଷ୍ପତ୍ତି ନେଲାବେଳକୁ ସ୍ଥାନୀୟ ଲୋକମାନେ ଜାଣିପାରିଲେ, ଜାହାଜରେ ହଇଜା ଲାଗିଛି। ସଙ୍ଘବଦ୍ଧ ଭାବରେ ଆକ୍ରମଣ କରି ସେମାନେ ଜାହାଜକୁ ଜଳରେ ବୁଡ଼ାଇଦେବେ ବୋଲି ଧମକ ଦେଲେ। କପ୍ତାନ ଭୟରେ ଜାହାଜ ନେଇ ପଳାଇଗଲେ।

ଜାହାଜ ପହଞ୍ଚିଲା ଆଟଲାଣ୍ଟିକ ମହାସାଗରରେ। ସେଠାରେ ଆରମ୍ଭ ହେଲା ପ୍ରଚଣ୍ଡ ଝଡ଼ତୋଫାନ। ଜାହାଜ ଟଳମଳ ହେବା ଦେଖି ଯାତ୍ରୀମାନେ ଜୀବନ ପ୍ରତି ଆଶା ହରାଇ ବିଶୃଙ୍ଖଳ ହୋଇଉଠିଲେ। କୋହିନୂର ରଖିଥିବା ଯୁବକମାନେ ଜାହାଜ ବୁଡ଼ିଯିବ ଭାବି ଅନୁମାନ କଲେ ଯେ ରତ୍ନଗର୍ଭା ସମୁଦ୍ର ତଳେ କୋହିନୂର ସ୍ଥାନ ପାଇବ ବୋଲି ବୋଧହୁଏ ଈଶ୍ୱରଙ୍କର ଇଚ୍ଛା।

ଯାହାହେଉ, ଶେଷରେ ଦିନେ ଜାହାଜ ଇଂଲଣ୍ଡ ଉପକୂଳରେ ଲାଗିଲା। ନିର୍ବାକ ଭାବରେ ଛଦ୍ମବେଶଧାରୀ ଦୁଇ ଯୁବକ ବନ୍ଦର ପାଖରୁ ସିଧାସଳଖ ଯାଇ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ହାଜର ହେଲେ ଓ ତଳିପେଟରୁ ମୁଣା ବାହାର କରି ତାଙ୍କ ହାତରେ ଧରାଇଦେଲେ। ପ୍ରଧାନମନ୍ତ୍ରୀ ମୁହୂର୍ତ୍ତ ମଧ୍ୟରେ ଦୌଡ଼ିଲେ ମହାରାଣୀଙ୍କ ପ୍ରାସାଦକୁ। ଭିକ୍ଟୋରିଆ ଦିନ ଗଣୁଥାନ୍ତି। କୋହିନୂର ମଣି ହାତରେ ପାଇ ହର୍ଷରେ ଆତ୍ମହରା ହୋଇପଡ଼ିଲେ। ଭାରତର ସେହି ଦୁର୍ମୂଲ୍ୟ ହୀରକ ଚିରଦିନ ଲାଗି ଶ୍ୱେତଦ୍ୱୀପକୁ ଚାଲିଗଲା।

ରାତିରେ ଖାଇଲାବେଳେ ଲେଡି ଏଡିଥ୍‌ଙ୍କୁ ଗପଟି କହିଲି। ସେ ଥଟ୍ଟାରେ କହିଲେ, ‘‘ନିର୍ବୋଧ ବଡ଼ଲାଟ ହୀରା ବିଷୟ ସରକାରଙ୍କୁ ନ ଜଣାଇ ନିଜ ପାଖରେ ରଖିଥିଲେ ଆମେ ତାକୁ ଅଳଙ୍କାର କରିଥାନ୍ତୁ।’’ ମୁଁ କହିଲି, ‘‘ଅତୀତରେ ରାଜା, ମହାରାଜା, ସୁଲତାନ ବା ବାଦଶାହ ସମସ୍ତଙ୍କ ବଂଶ ପ୍ରତି ସେହି ରତ୍ନ ବିପଦ ସୃଷ୍ଟି କରିଥିଲା। ଆପଣଙ୍କ ପ୍ରପିତାମହ ବିଜ୍ଞବ୍ୟକ୍ତି ଥିବାରୁ ନିଜ ବଂଶ

ପ୍ରତି ବିପଦ ସଞ୍ଚୟ ନକରି ଇଂଲଣ୍ଡର ରାଜବଂଶ ହସ୍ତକୁ ତାହା ହସ୍ତାନ୍ତର ପୂର୍ବକ ଠିକ୍ କାମ କରିଥିଲେ।''

ତୃତୀୟ ଦିନ ଅପରାହ୍ନରେ 'ଡ୍ୟାଲହାଉସୀ ଦୁର୍ଗ' ଓ ବଡ଼ଲାଟଙ୍କ ସମାଧିସ୍ଥଳ ଦେଖିବି ବୋଲି ଏଡିଥିଙ୍କୁ ଅନୁରୋଧ କଲି। ସେ ନିଜେ ଗାଡ଼ି ଚଳାଇଲେ। ମୁଁ ପାଖରେ ବସିଲି। ରାସ୍ତାର ଉଭୟ ପାଖରେ ଅନିର୍ଦ୍ଦିଷ୍ଟ ଦୂରତ୍ୱଯାଏ ବ୍ୟାପି ରହିଥାଏ ସବୁଜ ଘାସ ଭୂମି। ସେଥିରେ ଚରୁଥାନ୍ତି ମେଷପଲ। ରାସ୍ତାକଡ଼ରେ ଜଣେ ବୃଦ୍ଧ ମେଷପାଳକଙ୍କୁ ଦେଖି ସେ ହଠାତ୍ ଗାଡ଼ି ବନ୍ଦ କରି ବାହାରିଗଲେ। ତାଙ୍କ ସହିତ କଥାବାର୍ତ୍ତା ପରେ ଫେରିଆସି ଜଣାଇଲେ, ସେହି ମେଷପାଳକ ହେଉଛନ୍ତି ଜଣେ ସ୍ୱନାମଧନ୍ୟ କବି।

ଜରାଜୀର୍ଣ୍ଣ ଦୁର୍ଗଟି ମଧ୍ୟରେ କିଛି ସମୟ କଟାଇଲି। ନିକଟରେ ରହିଥାଏ ଲର୍ଡ଼ ଡ୍ୟାଲହାଉସୀଙ୍କ ସମାଧି। ପରିତ୍ୟକ୍ତ ଜାଗାଟି ବଣବୁଦା ଓ ଗୁଳ୍ମଲତା ଦ୍ୱାରା ଆଚ୍ଛାଦିତ ଥାଏ। କୌଣସିପ୍ରକାରେ ରାସ୍ତା କାଟି ସମାଧି ପାଖକୁ ଗଲି ଓ ଖଣ୍ଡିଏ ପଥର ଉପରେ କିଛିସମୟ ପାଇଁ ବସିରହିଲି। ସନ୍ଧ୍ୟା ଆସିଯାଉଥାଏ। ଦୁର୍ଗରକ୍ଷୀଙ୍କର ସାତ ଆଠ ବର୍ଷର ଝିଅଟିକୁ ମୋତେ ଡାକିନେବାକୁ ଏଡିଥ୍ ପଠାଇଲେ। ମୁଁ ଉଠିଲି । ପାଖର ଗୋଟିଏ ବୁଦାରୁ ବଣୁଆ ଫୁଲଟିଏ ଆଣି ସମାଧି ଉପରେ ରଖିଲି। ଝିଅଟିର ମୁହଁକୁ ଚାହିଁଥିଲାବେଳେ ଅକସ୍ମାତ୍ ମନେପଡ଼ିଲା– ଓଡ଼ିଶାର ଏକ ଦୂର ପଲ୍ଲୀଗାଁରେ ଛାଡ଼ି ଆସିଥିବା ମୋର ଠିକ୍ ସେହି ବୟସର ଝିଅ 'ଝାନ୍ସି' କଥା।

ଲଣ୍ଡନ ଫେରିଆସି ଅଧ୍ୟାପକ ଫିଲିପ୍‌ସଙ୍କୁ ମୋ ଅଭିଜ୍ଞତା କଥା ଜଣାଇଲି। ଖୁସି ହୋଇ ସେ ଧନ୍ୟବାଦ ଦେଲେ।

## ଅଧ୍ୟୟନ ଶେଷ ଓ ସ୍ୱଦେଶ ଫେରିବା ସମସ୍ୟା

୧୯୫୬ ମସିହା ଡିସେମ୍ବର ମାସ ମଧ୍ୟଭାଗରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଡିଗ୍ରୀ ହାସଲ କଲି। ପାଖରେ ଟଙ୍କା ଶେଷ ହୋଇ ଆସିଥାଏ। ଦେଶକୁ ଫେରିବାଲାଗି ମନ ଅସ୍ଥିର ହେଲା। କିନ୍ତୁ, ଫେରିବି କିପରି! ଅକ୍ଟୋବର-ନଭେମ୍ବର ମାସରେ ସୁଏଜ କେନାଲକୁ କେନ୍ଦ୍ରକରି ଗୋଟିଏ ପକ୍ଷରେ ମିଶର ଓ ଅନ୍ୟ ପକ୍ଷରେ ଇଂଲଣ୍ଡ, ଫ୍ରାନ୍ସ ଓ ଇସରାଏଲ ମଧ୍ୟରେ ତୁମୁଳ ଯୁଦ୍ଧ ଘଟିଯାଇଥାଏ। ସେହି ଯୁଦ୍ଧରେ ସୁଏଜ କେନାଲର ଉଭୟପାଖ ଧ୍ୱସ୍ତ ବିଧ୍ୱସ୍ତ ହେବା ସଙ୍ଗେ କେନାଲଟିର ଅଶେଷ କ୍ଷତି ଘଟିଥିଲା। ସେଥିଯୋଗୁଁ କେନାଲ ମଧ୍ୟରେ ଜାହାଜ ଚଳାଚଳ ଅନିର୍ଦ୍ଦିଷ୍ଟ ସମୟ ପାଇଁ ବନ୍ଦ ରହିଥାଏ।

ଉଡ଼ାଜାହାଜରେ ଫେରିବାଲାଗି ଟଙ୍କା ନଥାଏ। ଜଳଜାହାଜରେ ଫେରିବାକୁ ହେଲେ ଆଟ୍‌ଲାଣ୍ଟିକ ମହାସାଗର ପଥରେ ଆଫ୍ରିକା ମହାଦେଶର ଉତ୍ତମାଶା ଅନ୍ତରୀପ ପର୍ଯ୍ୟନ୍ତ ଓ ସେଠାରୁ ଭାରତ ମହାସାଗରରେ ବୋମ୍ବେ ପର୍ଯ୍ୟନ୍ତ ଆସିବାକୁ ହେବ। ସେହି ବାଟରେ ମାସକୁ ଯେଉଁ ଖଣ୍ଡିଏ ଦୁଇଖଣ୍ଡି ଜାହାଜ ଆସୁଥାଏ, ତାହାର ଯାତ୍ରୀଭଡ଼ା ଅନେକ ବେଶୀ। ସେଥିପାଇଁ ଅର୍ଥ ନଥାଏ। ନିଜକୁ ଅସହାୟ ବୋଧ କରି ଏଣେ ତେଣେ ଟ୍ରାଭଲ୍ ଏଜେଣ୍ଟ ଓ ବିମାନ କୋମ୍ପାନୀ ଅଫିସଗୁଡ଼ିକୁ ଦୌଡ଼ାଦୌଡ଼ି କଲି।

ସୁଏଜ ସଂକଟ ଯୋଗୁଁ ଲଣ୍ଡନ ଥରହର ହେଉଥାଏ। ପ୍ରଧାନମନ୍ତ୍ରୀ ଏଣ୍ଟୋନୀ ଏଡେନ ତାଙ୍କ ପଦରୁ ଇସ୍ତଫା ଦେଇଥାନ୍ତି। ଅସଂଖ୍ୟ ଇଉରୋପୀୟ ଓ ମଧ୍ୟପ୍ରାଚ୍ୟ ଅଞ୍ଚଳର ଲୋକ ନିଜ ନିଜ ଦେଶକୁ ଫେରି ନପାରି ଅସୁବିଧା ଭୋଗ କରୁଥାନ୍ତି। ସେହିପ୍ରକାର ପରିସ୍ଥିତିରେ ମୋର ଭାରତ ପ୍ରତ୍ୟାବର୍ତ୍ତନ ଏକ ଦୁଃସାହସିକ ଅଭିଯାନରେ ପରିଣତ ହେଲା। ଲଣ୍ଡନରୁ ଗ୍ରୀସ୍ ଓ ଗ୍ରୀସଠାରୁ ଲେବାନନ ପର୍ଯ୍ୟନ୍ତ ବିମାନ ଯୋଗେ ଏବଂ ସେଠାରୁ କୁଏତ ପର୍ଯ୍ୟନ୍ତ ଆକାଶମାର୍ଗରେ ଆସି ସେଠାରୁ ପାରସ୍ୟ ଉପସାଗର ମଧ୍ୟରେ ମୁସଲମାନ ଜଗତର ଏ ଦେଶରୁ ସେ ଦେଶ ଜଳପଥରେ ଆସି ପାକିସ୍ତାନର କରାଚି ବନ୍ଦର ଓ ସେଠାରୁ ଆସି ଶେଷରେ ବୋମ୍ବେଠାରେ ପହଞ୍ଚିଲି। ଅଶେଷ କଷ୍ଟ ଓ ଅସୁବିଧା ମଧ୍ୟରେ ଅତିକ୍ରମ କରିଥିବା ସେହି ଦୀର୍ଘଯାତ୍ରା କଥା ସ୍ମରଣ କଲେ ମନେହୁଏ, ତାହା ଥିଲା ଜୀବନର ସର୍ବାଧିକ ରୋମାଞ୍ଚକର ଭ୍ରମଣ !



ବକିଂହାମ୍ ରାଜପ୍ରାସାଦ ସମ୍ମୁଖରେ ଲେଖକ (୧୯୫୫)



ବକିଂହାମ୍ ରାଜପ୍ରାସାଦ




ୱେଷ୍ଟ ମିନିଷ୍ଟାର ଆବି




ବ୍ରିଟିଶ ପାର୍ଲିଆମେଣ୍ଟ ଭବନ




ଟାୱାର ଅଫ୍ ଲଣ୍ଡନ

# ଇଂଲଣ୍ଡରୁ ଭାରତ ପାରସ୍ୟ ଉପସାଗର ପଥରେ ଉଦ୍‌ବେଗକର ଯାତ୍ରା



### ଲଣ୍ଡନରେ ଶେଷ ସପ୍ତାହ

ସ୍ୱଦେଶ ଫେରିବା ଚିନ୍ତାରେ ଡିଗ୍ରୀଲାଭ ଆନନ୍ଦ ହଜି ଯାଇଥାଏ । ଅଟକି ରହିଥିବା ବିଦେଶୀମାନେ ନିଜ ନିଜ ଦେଶକୁ କିପରି ଭାବରେ ଫେରୁଥିବେ, ସେହି ସନ୍ଧାନରେ ଦୁଇଦିନ ଧରି ଏଣେ ତେଣେ ବୁଲିଲି । ଦେଖିଲି, ଅନେକେ ହେଉଛନ୍ତି ମଧ୍ୟପ୍ରାଚ୍ୟର ଧନଶାଳୀ ବ୍ୟବସାୟୀ । ବିମାନଯୋଗେ ଫେରିବା ପାଇଁ ସେମାନେ ଧାଡ଼ି ଲାଗିଥାନ୍ତି । ଭାବିଲି, ଭାରତୀୟ ଛାତ୍ରମାନଙ୍କ ପାଇଁ ଏୟାର ଇଣ୍ଡିଆ ବିମାନ ଭଡ଼ାରେ କନ୍‌ସେସନ ମିଳୁଥିବ । କୋମ୍ପାନୀ ଅଫିସକୁ ଚାଲିଲି । ବାଟରେ ଦେଖିଲି, ଚଳଚ୍ଚିତ୍ର ତାରକା ରାଜକାପୁର ଓ ନର୍ଗିସ୍ ସେହି ରାସ୍ତାରେ ହାତକୁ ହାତ ଧରି ପାଶ୍ଚାତ୍ୟ ଢଙ୍ଗରେ ଚାଲିଛନ୍ତି। ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା ହେଲା। ଅଫିସ ମଧ୍ୟରେ ଟିକଟ କିଣିବାକୁ ସେମାନେ ଛିଡ଼ା ହେଲେ। ବିମାନଭଡ଼ାର ଅଙ୍କଟି ଶୁଣି ନିରାଶ ହେଲି। ଛାତ୍ରମାନଙ୍କ ଲାଗି ରିହାତି ନାହିଁ ବୋଲି ମୋତେ କୁହାଗଲା। ରାଜକାପୁର ଟିକଟ୍ କିଣି ବାହାରି ଆସିଲାବେଳେ ମୋତେ ପଚାରିଲେ, ‘‘ଆମ ଦୁହିଙ୍କ ଅଭିନୀତ ଚଳଚ୍ଚିତ୍ର ଆପଣ ଦେଖନ୍ତି?’’ ମୁଁ ‘ହଁ’ ବୋଲି କହିବାରୁ ପୁଣି ପଚାରିଲେ, ‘‘କେଉଁ ଛବିଟି ସବୁଠାରୁ ଭଲ ଲାଗିଥିଲା?’’ ଉତ୍ତର ଦେଲି, ‘‘ଆହ୍’ ନାମକ ଫିଲ୍ମଟି ବାସ୍ତବିକ ମର୍ମସ୍ପର୍ଶୀ। ସେଥିରେ ଉଚ୍ଚତର ଆଦର୍ଶ ଦେଖିବାକୁ ମିଳିଛି ଏବଂ ଆପଣଙ୍କର ଉତ୍କୃଷ୍ଟ ଅଭିନୟ।’’

ଫେରିବାବେଳେ ଗୋଟିଏ ପଞ୍ଚତାରକା ହୋଟେଲ ସମ୍ମୁଖରେ ବହୁସଂଖ୍ୟକ ନରନାରୀଙ୍କୁ ନୀରବରେ ଛିଡ଼ା ହୋଇଥିବା ଦେଖିଲି। ସେତେବେଳେ ସୁଏଜ୍ ସଂକଟ ସମାଧାନ ନିମନ୍ତେ ଲଣ୍ଡନ ସହରକୁ ବିଶ୍ୱର ବଡ଼ ବଡ଼ ରାଷ୍ଟ୍ରନୀତିଜ୍ଞମାନେ ଆସୁଥାନ୍ତି। ମୋର ଅନୁମାନ ହେଲା, ବୋଧହୁଏ ଯୁକ୍ତରାଷ୍ଟ୍ର କିମ୍ବା ସୋଭିଏତ୍ ଦେଶରୁ କେହି

ଆସିଥିବେ। ଭିଡ଼ ମଧ୍ୟରେ ମୁଁ ମଧ୍ୟ ଛିଡ଼ା ହୋଇ ରହିଲି। ଇଂରେଜମାନେ ସାଧାରଣତଃ ବିଶେଷ କଥାବାର୍ତ୍ତା କରନ୍ତି ନାହିଁ। ଦଳ ଦଳ ଛିଡ଼ା ରହି ବିନା ବାକ୍ୟବ୍ୟୟରେ ବେଲକୋନି ଦିଗକୁ ଚାହିଁରହିଥିବା ଦୃଶ୍ୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ଦେଖିଲାପରେ ମୋର ଧୈର୍ଯ୍ୟଚ୍ୟୁତି ଘଟିଲା। ହୋଟେଲ ଦ୍ୱାରପାଳଙ୍କ ପାଖକୁ ଯାଇ ବୁଝିଲି, ''ହଲିଉଡ୍ ତାରକା ମେରିଲିନ୍ ମନରୋଙ୍କୁ ଦେଖିବା ଲାଗି ଲୋକମାନେ ଅପେକ୍ଷା କରିଛନ୍ତି। ତେବେ ସେ ବାଲକୋନି ଉପରେ ଆବିର୍ଭାବ ହେବେ କି ନାହିଁ, ସେ କଥା ଜଣାନାହିଁ।''

ଭିଡ଼ ଭିତରେ ଛିଡ଼ା ରହିଥାନ୍ତି ଦୁଇଜଣ ଆରବଦେଶୀୟ ଭଦ୍ରବ୍ୟକ୍ତି। ପାଖଦେଇ ଚାଲିଗଲାବେଳେ ମୋତେ ଭାରତୀୟ ବୋଲି ଜାଣିପାରି ଜଣେ ପଚାରିଲେ, ''କହିପାରିବେ, ମିଉଜିୟମ୍ ଷ୍ଟ୍ରିଟ୍ ଏଠାରୁ କେତେ ବାଟ? ସେଠାରେ ଖୋଲା ଯାଇଥିବା ପଟେଲ ଟ୍ରାଭଲ୍ କୋମ୍ପାନୀର ଠିକଣା ଆପଣଙ୍କୁ ଜଣାଅଛି?'' ଉତ୍ତର ଦେଲି, ''ମିଉଜିୟମ ଷ୍ଟ୍ରିଟ୍ ବ୍ରିଟିଶ ମିଉଜିୟମ ଆଗରେ। କିନ୍ତୁ ପଟେଲ କୋମ୍ପାନୀ ଠିକଣା ଜାଣେ ନାହିଁ।''

କ୍ଷିପ୍ରଗତିରେ ଚାଲିଲି ସେହି ଷ୍ଟ୍ରିଟ୍ ଦିଗକୁ। ଆଶା ସଞ୍ଚାର ହେଲା, ପଟେଲ କୋମ୍ପାନୀ ବୋଧହୁଏ ଅଟକିଥିବା ଯାତ୍ରୀମାନଙ୍କ ଫେରିବା ବ୍ୟବସ୍ଥା କରୁଥିବ। ଖୋଜି ଖୋଜି ଦେଖିଲାବେଳକୁ ଛୋଟିଆ କୋଠରି ମଧ୍ୟରେ ଦୁଇଜଣ ଗୁଜରାଟୀ ଟାଇପ୍‌ମେସିନଟିଏ ଟେବୁଲ ଉପରେ ରଖି ବସିଛନ୍ତି। ମୋତେ ଦୁଆର ପାଖରେ ଦେଖିଲାମାତ୍ରେ ଜଣେ ଉଠିପଡ଼ି ପଚାରିଦେଲେ ''ଆପଣ ଇଣ୍ଡିଆ ଫେରିବେ କି? ଆମେ ଘରୋଇଭାବରେ ଉଡ଼ାଜାହାଜ ଭଡ଼ା ନେଇ ଲଣ୍ଡନରୁ ଏଥେନ୍ସ, ଏଥେନ୍ସରୁ ବିରୁଟ୍ ଓ ବାଗଦାଦ୍ ଏବଂ ସେଠାରୁ ପାରସ୍ୟ ଉପସାଗର ପର୍ଯ୍ୟନ୍ତ ଯାତ୍ରୀମାନଙ୍କୁ ନେବାଲାଗି ବନ୍ଦୋବସ୍ତ କରୁଛୁଁ। ଖୁବ୍ କମ୍ ଟଙ୍କାରେ।'' ମୁଁ ସଙ୍ଗେ ସଙ୍ଗେ 'ହଁ' ଭରିଲି ଓ ପଚାରିଲି ''ପାରସ୍ୟ ଉପସାଗରରୁ ବୋମ୍ବେ ଯିବା ଲାଗି ବ୍ୟବସ୍ଥା କ'ଣ?''

ଏକାନିଶ୍ୱାସକେ ଅନର୍ଗଳଭାବରେ ପଟେଲ ମହାଶୟ ହିନ୍ଦୀରେ କହିଗଲେ ଯେ, କୁଏତ୍ ଠାରୁ ମାଲବାହୀ ଜଳ ଜାହାଜରେ ଯିବାକୁ ହେବ। ପାସେଞ୍ଜର ଜଳଜାହାଜରେ ସ୍ଥାନ ଯୋଗାଡ଼ କରିବା ସମ୍ଭବ ହେଲାନାହିଁ। ହେଲେ, କିଛି ଅସୁବିଧା ହେବ ନାହିଁ। ଜାହାଜର ଉପର ଡେକ୍‌ରେ ରହିବେ। ସମୁଦ୍ରର ଶୋଭା ଦେଖିବେ। ଶୀତ ନଥିବ। ବାଟରେ କେତେଗୁଡ଼ିଏ ବନ୍ଦର ଦେଖିପାରିବେ। ଏପରି ସୁଯୋଗ କ୍ୱଚିତ୍ ମିଳିଥାଏ। ତାପରେ ପାକିସ୍ତାନ ଦେଖିବେ। ସେଠାରୁ ବୋମ୍ବେ। ମାତ୍ର ପନ୍ଦର ଦିନ ମଧ୍ୟରେ ଏତେଗୁଡ଼ାଏ ସ୍ଥାନ ଦେଖିବା ସୌଭାଗ୍ୟର ବିଷୟ, ପୁଣି

ସାମାନ୍ୟ ୧୫୫ ପାଉଣ୍ଡ ଭଡ଼ାରେ। ଆମେ ଆପଣମାନଙ୍କ ପରି ଅଟକିଥିବା ଲୋକଙ୍କ ଲାଗି ବହୁକଷ୍ଟରେ ଏପରି ବ୍ୟବସ୍ଥା କରିଛୁଁ। ବର୍ତ୍ତମାନ ଟଙ୍କା ନଦେଲେ ସିଟ୍ ପାଇବେ ନାହିଁ। ଉଡ଼ାଜାହାଜରେ କେବଳ ୩୦ ଜଣ ଯାତ୍ରୀ ଯାଇ ପାରିବେ। ପାକିସ୍ତାନୀ ଓ ଆରବମାନେ ପ୍ରାୟ ସବୁ ସିଟ୍ ବୁକ୍ କରିଦେଲେଣି। ଏଥିରେ ଆପଣଙ୍କ ଇଚ୍ଛା।

ମୁଁ ପକେଟରୁ ୧୫୫ ପାଉଣ୍ଡ କାଢ଼ି ପଟେଲଙ୍କ ହାତରେ ଧରାଇଦେଲି। ଦିନକପରେ ଟିକଟ ମିଳିବ ବୋଲି ସେ ଜଣାଇଲେ। ସେତେବେଳେ ପାଉଣ୍ଡଟିର ମୂଲ୍ୟ ଥାଏ ୧୩ ଟଙ୍କା। ତିନିଦିନ ପରେ ଉଡ଼ାଜାହାଜ ଛାଡ଼ିବ ବୋଲି କୁହାଗଲା। ନିର୍ଦ୍ଦେଶ ଦିଆଗଲା, ‘‘ସାଙ୍ଗରେ ଗୋଟିଏ ମାତ୍ର ସୁଟ୍‌କେଶ ନେବେ। ଛୋଟ ଉଡ଼ାଜାହାଜର ପେଟଟି ଛୋଟ।’’

ଖୁସିମନରେ ତରତର ହୋଇ ଚାଲିଲାବେଳକୁ ବ୍ରିଟିଶ ମିଉଜିୟମ ଆଗରେ ଆଖି ପଡ଼ିଲା ଚାରିଜଣ ପଗଡ଼ିପରିହିତ ଶିଖ୍‌ଙ୍କ ଉପରେ। ମୋତେ ଘେରିଯାଇ ଚାରିଜଣଯାକ ହାତଯୋଡ଼ କରି ଛିଡ଼ା ହୋଇଗଲେ। ଭଙ୍ଗା ଭଙ୍ଗା ହିନ୍ଦୀରେ ବିକଳ ଭାବରେ ସେମାନଙ୍କ ଦୁଃଖ ଜଣାଇ ମୋର ସାହାଯ୍ୟ ଭିକ୍ଷା କଲେ। ଟିପ୍ପଣୀ ହେଲା, ସେମାନେ ଚାରିଭାଇ, ନିରକ୍ଷର ନିପଟ ମଫସଲୀ ପଞ୍ଜାବୀ କୃଷକ। ସେମାନଙ୍କ ପିତା ଦିଲ୍ଲୀରେ ଜଣେ ଇଂରେଜ ସାମରିକ ଅଫିସରଙ୍କ ଘରେ ପୂଝାରୀ କାମରେ ନିଯୁକ୍ତ ଥାନ୍ତି। ଅନେକ ଦିନ ଆଗର କଥା। ଚାରି ଭାଇ ପିଲା ଥିଲେ। ସାହେବ ସ୍ୱଦେଶକୁ ଫେରିଲା ବେଳେ ତାଙ୍କ ପୂଝାରୀକୁ ସାଙ୍ଗରେ ଲଣ୍ଡନ ନେଇଗଲେ, କାରଣ ପଞ୍ଜାବୀ ଖାଦ୍ୟକୁ ସେ ଅତିଶୟ ଭଲ ପାଉଥିଲେ। ମୋଟା ଦରମା, ପୁଣି ବିଲାତରେ ରହିବାର ଭାଗ୍ୟ। ସ୍ତ୍ରୀ ଓ ଚାରିପୁଅଙ୍କୁ ଛାଡ଼ି ସେ ଦେଶାନ୍ତର ହେଲେ ଏବଂ କେବେ ହେଲେ ଫେରିଲେ ନାହିଁ। କେତେକ ବର୍ଷ ବିତିଗଲା। ସାହେବ ଥିଲେ ଅବିବାହିତ। ତାଙ୍କର ସୁନ୍ଦର ଘର ଓ ଅନେକ ଅର୍ଥ ଥାଏ। ତାଙ୍କ ବୃଦ୍ଧାବସ୍ଥାରେ ଅକାତର ଭାବେ ସେବା କରିଥିବାରୁ ମୃତ୍ୟୁ ପୂର୍ବରୁ ସାହେବ ସେହି ବିଶ୍ୱସ୍ତ ସେବକଙ୍କ ନାମରେ ନିଜର ସବୁ ସମ୍ପତ୍ତି ରେଜେଷ୍ଟ୍ରି କରିଦେଲେ। ପଞ୍ଜାବୀ ପୂଝାରୀ ଅକସ୍ମାତ ଧନଶାଳୀ ହେଲାପରେ ଜଣେ ଇଂରେଜ ମହିଳାଙ୍କୁ ବିବାହ କଲେ। କିନ୍ତୁ କିଛି ବର୍ଷ ପରେ ସ୍ୱାମୀଙ୍କୁ ଛାଡ଼ି ସେ ଚାଲିଗଲେ।

ଶେଷରେ ବୃଦ୍ଧାବସ୍ଥାରେ ପଞ୍ଜାବୀଙ୍କର ମୃତ୍ୟୁ ହେଲା। ବ୍ରିଟିଶ ସରକାର ଭାରତୀୟ ଦୂତାବାସକୁ ମୃତବ୍ୟକ୍ତିଙ୍କ ବଂଶଧରମାନଙ୍କୁ ଖବର ଦେବାକୁ ଅନୁରୋଧ ଜଣାଇଲେ ଯେ ସେମାନେ ପରିଚୟପତ୍ର ଦାଖଲ କରି ପିତାଙ୍କ ଘରଦ୍ୱାର ଦଖଲ କରିବେ।

ଯଥାସମୟରେ ହଠାତ୍ ଦିନେ ଚାରିପୁଅଙ୍କ ପାଖରେ ନୋଟିସ୍ ପହଞ୍ଚିଲା, ସେମାନେ ତୁରନ୍ତ ଆସି ମୃତ ପିତାଙ୍କର ସମ୍ପତ୍ତି ଗ୍ରହଣ କରିବେ। ତେଣୁ, ଚାରିଭାଇ ଦୁଇମାସ ତଳେ ଆସିଥିଲେ। ପିତାଙ୍କ ଘର ଓ ଆସବାବପତ୍ର ବିକ୍ରୟ କରି ସରକାର ପ୍ରାପ୍ୟ ଟଙ୍କାତକ ବ୍ୟାଙ୍କ୍ ମାଧ୍ୟମରେ ଭାରତ ପଠାଇଦେଇଛନ୍ତି। କେବଳ ଫେରିବା ଲାଗି କିଛି ଟଙ୍କା ସେମାନଙ୍କୁ ମିଳିଛି। ଅଥଚ, କିପରି ଫେରିବେ, ତାହା ଠିକ୍ କରିପାରୁ ନାହାନ୍ତି। 'ପଟେଲ କୋମ୍ପାନୀ' ନାମ ଶୁଣି ସକାଳ ପାଖରୁ ଖୋଜି ବୁଲୁଛନ୍ତି। ଇଂରାଜୀ ଜଣାନାହିଁ, ଦସ୍ତଖତ କରି ଜାଣି ନାହାନ୍ତି। ପରିଷ୍କାର ହିନ୍ଦୀରେ ମଧ୍ୟ କଥା କହିବାକୁ ଅସମର୍ଥ।

ବଡ଼ଭାଇ ମୋହନ ସିଂହ ମୋ ହାତ ଧରିପକାଇ ସାହାଯ୍ୟ କରିବାକୁ ଅନୁରୋଧ କଲେ। ମଧ୍ୟବୟସ୍କ ବ୍ୟକ୍ତି। ଦାଢ଼ି ଅଧାଅଧି ପାଚିଯାଇଥାଏ। ଚାରିଭାଇଙ୍କୁ ନେଇ ମୁଁ ପଟେଲ କୋମ୍ପାନୀ ପାଖରୁ ସେମାନଙ୍କ ଟିକଟ କରାଇଦେଲି। ସେହି ସମୟରୁ ଚାରି ଶିଖ୍ ଭାଇ ହେଲେ ମୋର ମସ୍ତବଡ଼ ବୋଝ। ସେଥିସଙ୍ଗେ, ଅଜଣା ପଥର ସାଥୀ।

ଫେରିବା ଦିନ ଆସିଯାଉଥାଏ। ଯେଉଁ ଇଟାଲୀୟ ହୋଟେଲରେ ରୁମ୍‌ଟିଏ ଭଡ଼ାନେଇ ରହିଥିଲି, ତାହାର ମାଲିକାଣୀଙ୍କୁ ସମସ୍ତେ ସିନୋରିନା ବୋଲି ଡାକୁଥିଲେ। ସେହି ବୃଦ୍ଧା ମହିଳା ମଝେ ମଝେ ରବିବାର ଦିନ ମୋତେ ଗୋଟିଏ ଗିର୍ଜାକୁ ନେଇଯାଉଥାନ୍ତି। ମୁଁ ଯାଉଥାଏଁ, ଗିର୍ଜାଗୃହର ପ୍ରାର୍ଥନା ଶୁଣିବା ଉଦ୍ଦେଶ୍ୟରେ। ସେ ଭାବୁଥାନ୍ତି, ମୋତେ ଦିନେ ନା ଦିନେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇ ପାରିବେ। ଭାରତ ଫେରିବି ଜାଣି ସେ କାଳବିଳମ୍ବ ନକରି ମୋତେ ଧର୍ମାନ୍ତରିତ କରିବେ ବୋଲି ଜିଦ୍ ଧରି ବସିଲେ। ସେହି ନିର୍ବୋଧ ଧର୍ମାନ୍ଧ ମହିଳାଙ୍କ କଥାବାର୍ତ୍ତା ଶୁଣି ମୋତେ ହସ ଲାଗୁଥାଏ। ତାଙ୍କୁ କହିଲି, ''ମୁଁ ହିନ୍ଦୁ ହେଲେ ସୁଦ୍ଧା, ଯିଶୁଙ୍କ ପ୍ରତି ମୋର ଅଗାଧ ଭକ୍ତି ରହିଛି ଓ ରହିବ। ତେଣୁ, ଖ୍ରୀଷ୍ଟିଆନ ହେବାର ଆବଶ୍ୟକତା ନାହିଁ।'' ସେ ପ୍ରଲୋଭନ ଦେଖାଇଲେ ଯେ, ଖ୍ରୀଷ୍ଟିଆନ ହେଲାପରେ ଇହକାଳ ଓ ପରକାଳରେ ଅପାର ସୁଖ ଶାନ୍ତି ମିଳିବ। ମୋତେ ଅଟଳ ରହିବା ଦେଖି ଶେଷରେ ଦୀର୍ଘଶ୍ୱାସ ତ୍ୟାଗକରି ବୃଦ୍ଧା ସାନ୍ତ୍ୱନାବାଣୀ ଶୁଣାଇଲେ, ''ହେଉ, ନିଜ ଦେଶକୁ ଯାଅ। ମୃତ୍ୟୁ ପରେ ସ୍ୱର୍ଗର ଦ୍ୱାରଦେଶରେ ତୁମକୁ ଦେଖିଲେ ମୁଁ ଦ୍ୱାରପାଳକୁ କହିବି, ଏ ପାପୀ ନୁହେଁ, ଏହାଙ୍କୁ ଭିତରକୁ ଯିବାକୁ ଦିଅ।'' ରହସ୍ୟ କରି ମୁଁ କହିଲି, ''ସିନୋରିନା, ଆପଣ ସ୍ୱର୍ଗକୁ ବୋଧହୁଏ ଏହି ଇଟାଲୀୟ ହୋଟେଲ ବୋଲି ଭାବିଛନ୍ତି। ସେଠାରେ ଆପଣ ଚୌକି ଉପରେ ପ୍ରବେଶପଥରେ ବସିଥିବେ। ମ୍ୟାନେଜରଙ୍କୁ କହିବେ, ଏହି ବ୍ୟକ୍ତିଙ୍କ

ପାଶପୋର୍ଟ ଠିକ୍ ଅଛି, ହୋଟେଲରେ ରହିବାକୁ ରୁମ୍‌ଟିଏ ଦିଅ।'' ମୋ କଥା ସେ ବୁଝିପାରିଲେ କି ନାହିଁ ଜାଣିପାରିଲି ନାହିଁ।

ଡିସେମ୍ବର ମାସ ଶେଷ ଦିନ। ପ୍ରଚଣ୍ଡ ଶୀତ। ବରଫ ପଡୁଥାଏ। ରାତି ୪ଟାବେଳେ ଉଡ଼ାଜାହାଜ ଘାଟିରେ ପହଞ୍ଚିବାକୁ ହେବ। ସନ୍ଧ୍ୟାବେଳେ ବିଦାୟକାଳୀନ ସାକ୍ଷାତ ପାଇଁ ଆସିଲେ ଇଲା ଦାଶ ଓ ଆକୁଳାନନ୍ଦ ଷଡ଼ଙ୍ଗୀ। ଇଲା ଥିଲେ ଅଧ୍ୟାପକ ଘନଶ୍ୟାମ ଦାଶଙ୍କ କନ୍ୟା। ଘନଶ୍ୟାମ ବାବୁ ମୋତେ ତାଙ୍କର ଧର୍ମପୁଅ ବୋଲି ଘୋଷଣା କରିଥିବା ହେତୁ ଇଲା ମୋତେ ଭାଇ ବୋଲି ଡାକୁଥିଲେ। ମୁଁ ଲଣ୍ଡନରେ ଥିଲାବେଳେ ଘନଶ୍ୟାମ ବାବୁ ବାରମ୍ବାର ଚିଠି ଲେଖୁଥିଲେ ଯେ, ଇଲା ଶାନ୍ତିନିକେତନରେ ଚିତ୍ରବିଦ୍ୟା ପଢ଼ିସାରିଛି ଓ ଲଣ୍ଡନ ସ୍କୁଲ୍ ଅଫ୍ ଆର୍ଟସ୍‌ରେ ତାଙ୍କୁ ଭର୍ତ୍ତି କରାଇବା ଲାଗି ଚେଷ୍ଟାକର। ଶେଷରେ, ଇଲାଙ୍କୁ ଲଣ୍ଡନ ପଠାଇଦେବାକୁ ଲେଖିଲି ଓ ସେ ଆସିଲାପରେ ତାଙ୍କୁ ନେଇ ଆର୍ଟସ୍ ସ୍କୁଲରେ ହାଜର କରାଇଲି। ମୋତେ ବିଦାୟ ଜଣାଇବାକୁ ଆସିବା ଦେଖି କେତେଗୁଡ଼ିଏ ବ୍ୟବହାର୍ଯ୍ୟ ଜିନିଷ ତାଙ୍କ ହାତରେ ଧରାଇ ଦେଲି, କାରଣ ସେ ସବୁ ସାଙ୍ଗରେ ଆଣିବା ସମ୍ଭବ ନଥାଏ। ସେତେବେଳେ ଅନୁମାନ କରିବା ଅସମ୍ଭବ ଥିଲା ଯେ ଭବିଷ୍ୟତରେ ଇଲା ହେବେ ଶିଳ୍ପପତି ବଂଶୀଧର ପଣ୍ଡାଙ୍କ ସହଧର୍ମିଣୀ ଓ କୋଟିପତି। ଅବଶ୍ୟ ସେ ମୋତେ ବରାବର ଭାଇ ଭାବରେ ସମ୍ମାନ ଦେଇ ଆସିଛନ୍ତି। ଏପରିକି, ୧୯୭୭ ମସିହାରେ ଭାରତୀୟ ଇତିହାସ କଂଗ୍ରେସର ଭୁବନେଶ୍ୱର ଅଧିବେଶନବେଳେ ମୋ ଅନୁରୋଧକ୍ରମେ ସେ ୧୨ଶହ ଡେଲିଗେଟ୍‌ଙ୍କୁ ଏକ ରାତ୍ରିଭୋଜନରେ ଆପ୍ୟାୟିତ କରିଥିଲେ।

ଆକୁଳାନନ୍ଦ ଷଡ଼ଙ୍ଗୀ ଲଣ୍ଡନରେ ଏମ୍.ଆର.ସି.ପି. ପଢୁଥିଲେ। ମୋର ଓଜନଦାର ଗରମ ପରିଚ୍ଛଦଟି ପାଇଁ ସୁଟ୍‌କେଶ୍‌ରେ ସ୍ଥାନ ନଥିବାରୁ ଆକୁଳାନନ୍ଦବାବୁଙ୍କ ହାତରେ ତାହା ଧରାଇଦେଲି। ଭବିଷ୍ୟତରେ ଡକ୍ଟର ଷଡ଼ଙ୍ଗୀ କଟକ ମେଡ଼ିକାଲ କଲେଜର ମେଡ଼ିସିନ୍ ବିଭାଗର ମୁଖ୍ୟ ରୂପେ ଦାୟିତ୍ୱ ତୁଲାଇଥିଲେ ଓ ମୋ ସହିତ ଘନିଷ୍ଠ ସମ୍ପର୍କ ରଖିଥିଲେ।

ସେମାନେ ଚାଲିଗଲାପରେ ଆସିଲେ ମୋର ସହପାଠୀ ଭବାନୀ ଚରଣ ରାୟ। ସେ ସେତେବେଳେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି. କରୁଥିଲେ। ମୋର ଥେସିସ୍ ପ୍ରସ୍ତୁତିକାଳରେ ମୋତେ ଅନେକ ସାହାଯ୍ୟ କରିଥିଲେ। ତାଙ୍କୁ କହିଲି, ''ଯେଉଁ ପ୍ରକାର ଦଦରା ଉଡ଼ାଜାହାଜରେ ଯାଉଛି, ସେଥିରେ ଦୁର୍ଘଟଣାରେ ମରିବା ସମ୍ଭାବନା ଯଥେଷ୍ଟ। ମରିଗଲେ ଆପଣ ମୋ ବାପା, ମା, ସ୍ତ୍ରୀ ଓ ପୁଅଝିଅଙ୍କୁ ସାନ୍ତ୍ୱନା ଦେବେ।'' ''କାହିଁକି ଭୟ କରୁଛନ୍ତି, ନିରାପଦରେ ଘରେ ପହଞ୍ଚିବେ।

ମୁଁ ରାତି ୩ଟା ବେଳକୁ ଆସି ପହଞ୍ଚିବି। ବିମାନବନ୍ଦରରେ ଛାଡ଼ି ଆସିବି।'' ସେ କହିଗଲେ।

ବାହାରେ ବରଫ ପଡୁଥାଏ। ତଥାପି ସେହି ପ୍ରଚଣ୍ଡ ଶୀତରାତିରେ ଭବାନୀବାବୁ ତାଙ୍କର ଦୂରବର୍ତ୍ତୀ ବସାଘର ଠାରୁ ଆସି ଠିକ୍ ୩ଟା ବେଳେ ପହଞ୍ଚିଲେ। ଟ୍ୟାକ୍ସିରେ ବିମାନଘାଟିକୁ ଚାଲିଲୁଁ। ସେଠାରେ ଅନ୍ୟଜଣେ ବନ୍ଧୁ ନିକୁଞ୍ଜବିହାରୀ ରାଉତ ଅନେକ ଦୂରରୁ ଆସି ବିଦାୟ ଦେବାଲାଗି ଉପସ୍ଥିତ ଥିଲେ। ବିମାନଘାଟି ନାମଧେୟ ଗୋଟିଏ ପଡ଼ିଆରେ କ୍ଷୁଦ୍ରାକୃତି ଉଡ଼ାଜାହାଜଟି ଛିଡ଼ା ଥାଏ। ଗୋଟିଏ କୋଠରି ମଧ୍ୟରେ କମ୍ବଳ ଘୋଡ଼ି ଯାତ୍ରୀମାନେ ବସିଥାନ୍ତି। ସମସ୍ତେ ଥିଲେ ଆରବ, ପାରସ୍ୟ ଓ ପାକିସ୍ତାନର ମୁସଲମାନ। ସେମାନଙ୍କ ବେଶଭୂଷା ଓ ବିଶୃଙ୍ଖଳ ଚାଲିଚଳନ ଦେଖି ନିକୁଞ୍ଜବାବୁ ହସି ହସି ବେଦମ ହେଲେ। କେତେଜଣ ବୁର୍ଖା ପିନ୍ଧିଥିବା ମହିଳା ଛୋଟ ଛୋଟ ପିଲାମାନଙ୍କୁ କୋଳରେ ଧରିଥାନ୍ତି। ଶିଖ୍ ଚାରିଭାଇ ଅନ୍ଧକାର ମଧ୍ୟରେ ମୋତେ ଅପେକ୍ଷା କରିଥିଲେ। ପାସ୍‌ପୋର୍ଟ ଯାଞ୍ଚବେଳେ ଜଣାଗଲା, ୩୦ ଜଣ ଯାତ୍ରୀଙ୍କ ଭିତରେ ମୁଁ, ଚାରିଜଣ ଶିଖ ଓ ଜଣେ ଗୁଜରାଟୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଥିଲେ ମଧ୍ୟପ୍ରାଚ୍ୟ ଓ ପାକିସ୍ତାନର ଲୋକ। ପଟେଲ ଭ୍ରାତାଦ୍ୱୟ ଯେ ଅର୍ଥଲାଭ ଆଶାରେ ଏତେଗୁଡ଼ାଏ ଦୁଃସ୍ଥ ବ୍ୟକ୍ତିଙ୍କ ସ୍ୱଦେଶ ଫେରିବା ବ୍ୟବସ୍ଥା କରିପାରିଛନ୍ତି, ସେଥିପାଇଁ ସେମାନଙ୍କୁ ଅଶେଷ ଧନ୍ୟବାଦ ଦେଲି। ଭବାନୀବାବୁ ଓ ନିକୁଞ୍ଜବାବୁଙ୍କ ନିକଟରୁ ବିଦାୟ ନେଇ ଶିଖ୍‌ମାନଙ୍କ ସହିତ ବିମାନ ଭିତରେ ପଶିଲି। ବିମାନଚାଳକ ଥିଲେ ଜଣେ ଇଟାଲୀୟ। ଉଡ଼ାଜାହାଜଟି ଥାଏ ଗୋଟିଏ ଇଟାଲୀୟ କୋମ୍ପାନୀର।

## ଇଂଲଣ୍ଡରୁ ଗ୍ରୀସ୍

ଆକାଶମାର୍ଗରେ ପ୍ରଥମ ଥର ଉଡ଼ିଲାବେଳେ ମନକୁ ମରଣଭୟ ଗ୍ରାସକରେ ବୋଲି ଅବିଳମ୍ବେ ଅନୁଭବ କରିପାରିଲି। ନିଜ ତଳିପେଟରେ ସିଟ୍ ବେଲ୍ଟ ବାନ୍ଧିସାରି ପାଖରେ ବସିଥିବା ମୋହନ ସିଂହଙ୍କ ପେଟରେ ବେଲ୍ଟ ବାନ୍ଧିଲାବେଳେ ସେ ଆଖିବୁଜି ଗୁଣୁ ଗୁଣୁ ସ୍ୱରରେ ଗୁରୁସ୍ତୁତି ଆରମ୍ଭ କରିଦେଲେ। ଜଣେ ବିମାନକର୍ମଚାରୀ ମା ମାନଙ୍କ କୋଳରେ ପିଲାମାନଙ୍କୁ ବସାଇ ବେଲ୍ଟବାନ୍ଧିଲା ସମୟରେ କନ୍ଦାକଟା ଚାଲିଲା। ବିମାନ ଉପରକୁ ଉଠିଲା। ପାଟି ଚିତ୍କାରରୁ ଜଣାଗଲା, ସମସ୍ତେ ଆତଙ୍କିତ। ଅନ୍ଧକାର, କୁହୁଡ଼ି ଓ ମେଘାଚ୍ଛନ୍ନ ଆକାଶ ମଧ୍ୟରେ କ୍ଷୁଦ୍ର ବିମାନଟି ଦୋଦୁଲ୍ୟମାନ ଅବସ୍ଥାରେ ଉଡ଼ିଚାଲିଲା। ଭୟରୁ ରକ୍ଷାପାଇବା ଲାଗି ଭଗବାନଙ୍କ ନାମରେ ଶପଥ ନେଲି, ଜୀବନରେ ଆଉ କେବେ ହେଲେ ଉଡ଼ାଜାହାଜରେ ଉଡ଼ିବି ନାହିଁ। ମନୁଷ୍ୟ ଯେ କେତେଥର ଏପରି ଶପଥମାନ ଭଙ୍ଗ କରେ, ତାହା କହିବା ଅନାବଶ୍ୟକ।

ଇଂଲଣ୍ଡ ଛାଡ଼ି ଫ୍ରାନ୍ସଦେଶର ଆକାଶରେ ବିମାନ ଉଡ଼ିଲାବେଳକୁ ମେଘମାଳା ନଥାଏ । ଛୋଟିଆ ଉଡ଼ାଜାହାଜଟି ଅଧିକ ଉର୍ଦ୍ଧ୍ୱରେ ନ ଉଡ଼ି ଅନୁଚ୍ଚରେ ଉଡୁଥାଏ । ଝରକା ପାଖରେ ବସି ଫ୍ରାନ୍ସଦେଶର ସମତଳ ଭୂମି, ନଗରାଞ୍ଚଳ ଓ ପାହାଡ଼ ପର୍ବତ ଗୁଡ଼ିକର ଦୃଶ୍ୟ ଉପଭୋଗ କରିପାରିଲି । ଫ୍ରାନ୍ସ ଅତିକ୍ରମ କଲାପରେ ଦେଖାଗଲା ଆଲପସ୍ ପର୍ବତମାଳାର ଅପରୂପ ଦୃଶ୍ୟ । ପୃଥିବୀପୃଷ୍ଠରେ ହିମାଳୟ ପର୍ବତମାଳା ତଳକୁ ହେଉଛି ଆଲପସ୍ ପର୍ବତମାଳାର ଉଚ୍ଚତା । ଶୃଙ୍ଗ ପରେ ଶୃଙ୍ଗ ଆକାଶ ଭେଦି ରହିଥାଏ । ବରଫ ଆଚ୍ଛାଦିତ ଶୃଙ୍ଗ । ତଳଦେଶରେ ଦିଶୁଥାଏ ଘନନୀଳ ରଙ୍ଗର ଅରଣ୍ୟ । ଚିତ୍ରପଟରେ ଅଙ୍କିତଥିବା ଛବି ପରି ଆଲପସ୍‌ର ସୌନ୍ଦର୍ଯ୍ୟ କ୍ରମାଗତଭାବେ ବିକଶିତ ହୋଇଉଠୁଥାଏ । ଚାରିଦିଗକୁ ବ୍ୟାପିରହିଥାଏ ଅନିର୍ଦ୍ଦିଷ୍ଟ ପର୍ବତରାଜି । ବିମାନ ଉଡୁଥାଏ ସୁଇଜାରଲ୍ୟାଣ୍ଡ ଉପରେ । ସୁବିସ୍ତୀର୍ଣ୍ଣ ସମତଳ ଭୂମିଗୁଡ଼ିକ ବରଫରେ ଧଳା ଦିଶୁଥାଏ । ତେଣେ, ଶୁଭ୍ର ତୁଷାରାଚ୍ଛନ୍ନ ଗିରିଶୃଙ୍ଗଗୁଡ଼ିକ ଉଜ୍ଜ୍ୱଳ ସୂର୍ଯ୍ୟକିରଣରେ ଝଲସି ଉଠୁଥାଏ ।

କିଛିସମୟ ପରେ ଆସିଗଲା ଇଟାଲୀୟ ଆଲପସ୍ । ଚାହୁଁ ଚାହୁଁ ଆକାଶ ଘନ ମେଘାଚ୍ଛନ୍ନ ହେଲା । ପରେ ପରେ ଆରମ୍ଭ ହେଲା ଝଡ଼ଝଞ୍ଜା । ବିମାନର ଝରକା ବାହାରେ ତଡ଼ିତ ଲହରୀ ଖେଳିଯାଉଥାଏ । ଅନ୍ଧକାର ଭିତରେ ମେଘମାଳା ଭେଦ କଲାବେଳେ ପର୍ବତଶୃଙ୍ଗରେ ଧକ୍କା ବାଜିଲେ ଦୁର୍ଘଟଣାରେ ସମସ୍ତେ ମରିବେ ବୋଲି ଜଣେ ଆରବ ମୋଲ୍ଲା ପାଟିକରି ଅନ୍ୟମାନଙ୍କୁ ଭୟଭୀତ କରାଇବା ଶୁଣିଲି । ମୋତେ ମଧ୍ୟ ଭୟ ଲାଗିଲା, ଅନୁଚ୍ଚରେ ଉଡୁଥିବା ଉଡ଼ାଜାହାଜ ପର୍ବତଶୃଙ୍ଗରେ ଧକ୍କା ଲାଗିବା ଅସମ୍ଭବ ନୁହେଁ ।

ଆଲପସ୍ ପର୍ବତମାଳା ଶେଷ ହେଲା । ବିମାନ ଉଡ଼ିଲା ଇଟାଲୀର ଉପତ୍ୟକା ଉପରେ । ସେତେବେଳକୁ ଅପରାହ୍ନ । କିନ୍ତୁ ଅକାଶ ମେଘୁଆ ଥାଏ । ସ୍ଥଳଭାଗ ଦିଶିଲା ନାହିଁ । ଇଟାଲୀ ପରେ କିଛି ସମୟ ଭୂମଧ୍ୟସାଗର ଉପରେ ଉଡ଼ିଯାଇ ବିମାନଟି ଗ୍ରୀସ୍‌ଦେଶ ଉପରେ ଉଡ଼ିଲା । ସନ୍ଧ୍ୟାବେଳେ ଆସିଗଲା ଏଥେନ୍ସ ବିମାନବନ୍ଦର । ସେହିଠାରେ ବିମାନଟି ଅବତରଣ କଲା । ତଳକୁ ଆସିଲାପରେ ଜଣେ ମଧ୍ୟବୟସ୍କ ବ୍ୟକ୍ତି ପାଖକୁ ଆସି ନିଜର ପରିଚୟ ଦେଲେ ଯେ, ସେ ଜଣେ ପାକିସ୍ତାନୀ ବାରିଷ୍ଟର, କରାଚି ଯିବେ । ନାମ ନାସିର୍‌ଉଦ୍ଦୀନ୍ ଖାଁ । ରହସ୍ୟ ଛଳରେ କହିଲେ, ‘‘ପଟେଲ କୋମ୍ପାନୀର ଉଡ଼ାଜାହାଜରେ ଆସିବା ମାନେ ମୃତ୍ୟୁ ସହିତ ଦୋସ୍ତି କରିବା । ଏଇଥିରେ ପୁଣି ବିରୁତ୍ ପର୍ଯ୍ୟନ୍ତ ଯିବାକୁ ହେବ । ଖୋଦାଙ୍କ ମେହେରବାନି, ବାଟରେ ଆଲ୍‌ପସ୍ ନାହିଁ । ତଳକୁ ଯଦି ଖସିପଡ଼ିବ, ଆମେ ଭୂମଧ୍ୟସାଗରରେ ସନ୍ତରଣ କରିପାରିବା ।’’ ମୁଁ କୌତୁକ କଲି, ‘‘ଆଲ୍‌ପସ୍ ଉପରେ ପଡ଼ିଥିଲେ

ଶବଗୁଡ଼ିକ ବରଫର କବର ତଳେ ଅକ୍ଷତ ରହନ୍ତା। ଦରିଆରେ ପଡ଼ିଲେ, ସାର୍କ ଗୁଡ଼ାକ ଜୀଅନ୍ତା ଦେହକୁ କାମୁଡ଼ି କାମୁଡ଼ି ଖାଇବେ।''

ବିମାନ ବନ୍ଦରର ଶେଷ ସୀମାରେ ଥିବା ଗୋଟିଏ କ୍ଷୁଦ୍ର ବିଶ୍ରାମକକ୍ଷରେ ସମସ୍ତେ ଏକତ୍ରିତ ହେଲୁଁ। ଆମପରି ପାସେଞ୍ଜରମାନଙ୍କ ପାଇଁ ମୁଖ୍ୟ ବିଶ୍ରାମଭବନ ଖୋଲା ନଥାଏ।

## ଏଥେନ୍ସ ନଗରୀରେ ଗୋଟିଏ ଦିନ

ଛୋଟିଆ କୋଠରିଟିର ମେଜିଆରେ ଶୋଇ ରାତି କଟାଇବାକୁ ହେବ ଜାଣି ଶଙ୍କିତ ହେଲି। ପ୍ରଚଣ୍ଡ ଶୀତ। ହାତରେ ଖଣ୍ଡିଏ କମ୍ବଳ ଥାଏ। ଭଲ ରୁମ୍‌ଟିଏ ପାଇବା ଉଦ୍ଦେଶ୍ୟରେ ପାକିସ୍ତାନୀ ବାରିଷ୍ଟରଙ୍କ ସହିତ ବିମାନବନ୍ଦରର କର୍ମକର୍ତ୍ତାଙ୍କୁ ଭେଟିଲି। ରାତିକ ପାଇଁ ରୁମ୍ ଭଡ଼ାର ଭାଉ ଶୁଣି ନିରାଶ ହେବାକୁ ହେଲା। ଶେଷରେ ଆମପାଇଁ ଉଦ୍ଦିଷ୍ଟ ଥିବା କୋଠରିଟିକୁ ଫେରିଲୁଁ। ସେତେବେଳକୁ ମେଜିଆ ଉପରେ ଚଦର ପକାଇ ଅନ୍ୟମାନେ ଶୋଇ ପଡ଼ିଥାନ୍ତି। ଆଖି ପଡ଼ିଲା ଜଣେ ମୁସଲମାନ ମହିଳା ଓ ତାଙ୍କର ଶିଶୁଟି ଉପରେ। ଛୁଆଟି ଶୀତରେ ଥରୁଥାଏ। ବାପା ଯାଇଥାନ୍ତି କିଛି ଖାଦ୍ୟ ଆଣିବା ପାଇଁ। ମା'ଙ୍କ ଆଖି ଦୁଇଟି ମୋର କମ୍ବଳ ଉପରେ ନିବଦ୍ଧ ଥାଏ। ବୋଧହୁଏ ଭାବୁଥାନ୍ତି, କମ୍ବଳଖଣ୍ଡିକ ପାଇଲେ ଛୁଆଟି ବଞ୍ଚିଯିବ। ପାଖକୁ ଯାଇ କମ୍ବଳଟି ଛୁଆ ଉପରେ ଘୋଡ଼ାଇ ଦେଲି। ଉଭୟ ମା ଓ ଶିଶୁ ତା ଭିତରେ ଗଳିଗଲେ। ପାରସିକ ସ୍ୱାମୀଜଣକ ଫେରିଆସି ମୋତେ ଧନ୍ୟବାଦ ଦେଲେ, କିନ୍ତୁ ତାଙ୍କ ଭାଷା ବୁଝିପାରିଲି ନାହିଁ। ଶିଖ୍ ଭାଇମାନେ ନିଘୋଡ଼ ନିଦରେ ଶୋଇପଡ଼ିଥାନ୍ତି।

ପଟେଲ କୋମ୍ପାନୀର ଚଉଦ ପୁରୁଷ ଉଦ୍ଦେଶ୍ୟରେ ଦୋ-ଅକ୍ଷରୀ ଓ ପାଞ୍ଚ-ଅକ୍ଷରୀ ଶବ୍ଦଗୁଡ଼ିକ ବର୍ଷଣ କରିସାରି ପାକିସ୍ତାନୀ ବନ୍ଧୁ କହିଲେ, ''ଏହି ଅନ୍ଧକୂପ ଭିତରେ ଏତେଗୁଡ଼ିଏ ଲୋକଙ୍କ ସାଙ୍ଗରେ ରହିଲେ ସେମାନଙ୍କ ନିଃଶ୍ୱାସପ୍ରଶ୍ୱାସରେ ଆମକୁ ଯକ୍ଷ୍ମା ଧରିବ। ଚାଲନ୍ତୁ, ଅନ୍ୟ ସ୍ଥାନଟିଏ ଖୋଜିବା।'' ଏୟାରପୋର୍ଟର ପ୍ରାୟ ସବୁ କୋଠରି ଭିତରୁ ବନ୍ଦ ଥାଏ। ଏ ପାଖରୁ ସେ ପାଖ ଦୌଡ଼ି ଦୌଡ଼ି ଶେଷରେ ଗୋଟିଏ ଛୋଟ ମଦବିକ୍ରୟ କୋଠରି ଦେଖି ବାରିଷ୍ଟର ମହୋଦୟ ମୋତେ ଟାଣିନେଇ ଭିତରେ ପଶିଗଲେ। ଶୀତରେ ଦେହ କମ୍ପୁଥାଏ। ଚାରିପେଗ୍ ବ୍ରାଣ୍ଡି ପିଇପକାଇ ସେ ଗ୍ରୀକ୍ ଦୋକାନୀ ସାଙ୍ଗରେ ଦୋସ୍ତି ଜମାଇଦେଲେ। କିଛିସମୟ ପରେ ଦୋକାନୀ ଆମ ଦୁଇଙ୍କ ପାଇଁ ଦୁଇଟି ଆରାମ ଚେୟାର ବନ୍ଦୋବସ୍ତ କଲେ। ତାହାରି ଉପରେ ନିଦ୍ରାହୀନ ଅବସ୍ଥାରେ ଶୀତରାତିଟି କଟିଲା।

ତହିଁ ପରଦିନ ମଧ୍ୟରାତ୍ର ବେଳକୁ ଆମ ଉଡ଼ାଜାହାଜ ଏଥେନ୍ସ ଠାରୁ ବିରୁତ୍ ଯିବ ବୋଲି ପାଇଲଟ୍ ଆଗରୁ ଜଣାଇଥିଲେ। ରାତି ମଧ୍ୟରେ ସଂକଳ୍ପ ନେଲି, ଦିନସାରା ଏଥେନ୍ସ ସହର ବୁଲି ବୁଲି ଦେଖିବି। ଠିକ୍ କଲି, ସହରର ଅଟ୍ଟାଳିକା ଦେଖି ଲାଭ ନାହିଁ, ଦେଖିବାକୁ ଯିବି ପ୍ରାଚୀନ ଗ୍ରୀକ୍ ସଂସ୍କୃତିର ସନ୍ତକ ରୂପେ ବିବେଚିତ ଆକ୍ରୋପୋଲି ନାମକ କ୍ଷୁଦ୍ର ପାହାଡ଼ ପାଖକୁ, ଯା' ଉପରେ ରହିଛି ଗ୍ରୀକ୍ ସ୍ଥାପତ୍ୟର ସର୍ବଶ୍ରେଷ୍ଠ ନିଦର୍ଶନ ପାର୍ଥେନନ୍ ମନ୍ଦିରର ଧ୍ୱଂସାବଶେଷ । ଗ୍ରୀସ୍ ଦେଶର ଇତିହାସ ସମ୍ବନ୍ଧରେ ଧାରଣା ଥାଏ। ପାଶ୍ଚାତ୍ୟ ସଭ୍ୟତାର ଜନନୀ ସଦୃଶ ପ୍ରାଚୀନ ଗ୍ରୀସ୍। ଗ୍ରୀକ୍ ନଗରରାଜ୍ୟଗୁଡ଼ିକ ମଧ୍ୟରେ ସର୍ବପ୍ରସିଦ୍ଧ ଥାଏ ଏଥେନ୍ସ। ସେହି ନଗରରାଜ୍ୟରେ ସୁଦୂର ଅତୀତରେ ଜନ୍ମଲାଭ କରିଥିଲା ଗଣତନ୍ତ୍ରନାମଧେୟ ଶାସନବ୍ୟବସ୍ଥା। ସେହି ରାଜ୍ୟରେ ଜନ୍ମିଥିଲେ ପେରିକ୍ଲିସ୍, ସକ୍ରେଟିସ୍, ପ୍ଲାଟୋ ଓ ହେରୋଡୋଟାସ୍ ପ୍ରମୁଖ ମହାନ ମନୀଷୀ।

ସକାଳ ହେଲା। ମଦ୍ୟଦୋକାନୀଙ୍କ କ୍ୟାଣ୍ଟିନ୍‌ରେ ଜଳଖିଆ ଶେଷ କରି ପାକିସ୍ତାନୀ ବନ୍ଧୁଙ୍କୁ ଆକ୍ରୋପୋଲି ଭ୍ରମଣ ବିଷୟ ପ୍ରସ୍ତାବ ଦେଲି। ସେ ରାଜି ହେଲେ। ଉଭୟେ ମିଶି ଟ୍ୟାକ୍ସି ଭଡ଼ା କରି ସେଠାକୁ ଯିବାକଥା ଠିକ୍ ହେଲା। ଶିଖ୍ ବନ୍ଧୁମାନଙ୍କୁ ଜଳଖିଆ ଖୁଆଇ ସେମାନଙ୍କ ହେପାଜତ୍‌ରେ ସୁଟକେଶ ରଖିଲି। ସେତେବେଳକୁ ଚତୁର ନାସିରୁଦ୍ଦୀନ ଖାଁ ଦୋକାନୀ ସହିତ କଥାବାର୍ତ୍ତା କରି କମ୍ ଭଡ଼ାରେ ଗାଡ଼ିଟିଏ ଠିକ୍ କରିସାରିଥିଲେ। ସେତିକି ନୁହେଁ, ଦୋକାନୀର ଇଂରାଜି ଜାଣିଥିବା ପୁଅକୁ ମଧ୍ୟ ଆମର ଗାଇଡ୍ ଭାବରେ ନେବା ଲାଗି ବ୍ୟବସ୍ଥା କରିଥିଲେ।

ଏଥେନ୍ସ ଭ୍ରମଣ ଆରମ୍ଭ ହେଲା। ରମଣୀୟ ସହର। ଗୋଟିଏ ଅଂଶରେ ଦେଖିବାକୁ ମିଳେ ପୁରାତନ ଏଥେନ୍ସର କେତେଗୁଡ଼ିଏ ପ୍ରସିଦ୍ଧ ସ୍ଥାନ। ସେଠାକାର ରାସ୍ତାର ଦୁଇପାଖରେ ଦେଖିବାକୁ ମିଳିଲା ଅନେକଗୁଡ଼ିଏ ଛୋଟ ଛୋଟ ଦୋକାନ। ବିକ୍ରି ହେଉଥାଏ ଅତୀତ ଯୁଗର ମୂଳ ମନ୍ଦିର, ମୂର୍ତ୍ତି ଓ ଭାସ୍କର୍ଯ୍ୟଗୁଡ଼ିକର କ୍ଷୁଦ୍ର କ୍ଷୁଦ୍ର ପ୍ରତିକୃତିମାନ। ତିଆରି ହୋଇଥାଏ ତମ୍ବା ପ୍ରଭୃତି ଧାତୁରେ। କିଣିବାକୁ ଇଚ୍ଛା ହେଲେ ମଧ୍ୟ ଅର୍ଥ ନଥାଏ। କେବଳ ଦେଖି ଦେଖି ତୃପ୍ତିଲାଭ କଲି। ଦୋକାନପୂର୍ଣ୍ଣ ରାସ୍ତାଗୁଡ଼ିକ ପରେ ପଡ଼ିଲା ପ୍ଲାକା ନାମକ ଗୋଟିଏ ଛକ, ଆକ୍ରୋପୋଲି ପାହାଡ଼ର ଠିକ୍ ତଳଦେଶରେ। ସେଠାରେ ରହିଥାଏ ଛୋଟ ଛୋଟ ଯାତ୍ରୀନିବାସ। ବିଦେଶାଗତ ପର୍ଯ୍ୟଟକମାନଙ୍କ ଉପଭୋଗ ଲାଗି ରଖାଯାଇଥାଏ ପ୍ରାଚୀନ ଯୁଗୀୟ ଚେୟାର, ଟେବୁଲ ଓ ବିଭିନ୍ନ ଆସବାବପତ୍ର।

ଆଗରେ ଦିଶିଲା ଆକ୍ରୋପୋଲି। ଉପରକୁ ଉଠିଲୁଁ। ସେଠାରେ ମୁତୟନ ଥିବା ଜଣେ ଗ୍ରୀକ୍ ଗାଇଡ୍ ସ୍ଥାନର ମହତ୍ତ୍ୱ ବିଷୟ ବୁଝାଇବାକୁ ଲାଗିଲେ।

କହିଲେ, ଏଥେନ୍ସନଗରୀରର ପ୍ରାଣପିଣ୍ଡ ହେଉଛି ଏହି ଅନୁଚ୍ଚ ପାହାଡ଼। ତା ଉପରେ ଥାଏ ଏଥେନୀୟ ଆଦିଶାସକମାନଙ୍କର ଦୁର୍ଗ ଓ ଦେବ୍ଦେବୀଙ୍କ ଆରାଧନାପୀଠ। କିନ୍ତୁ ସେହି ସ୍ଥାନ ଉପର ଦେଇ ଅନେକ ଝଡ଼ଝଞ୍ଜା ବହିଯାଇଛି। ଖ୍ରୀଷ୍ଟଜନ୍ମର ପାଞ୍ଚଶହ ବର୍ଷ ପୂର୍ବେ ପାରସ୍ୟସମ୍ରାଟ୍ ଡେରାୟାସ ଏଥେନ୍ସ ଜୟ କରିବାକୁ ଆସି ମାରାଥନ ନାମକ ସ୍ଥାନରେ ପ୍ରବଳ ଯୁଦ୍ଧ କରିଥିଲେ। କିନ୍ତୁ ଏଥେନୀୟମାନେ ବିଦେଶୀ ଆକ୍ରମଣରୁ ନିଜ ନଗରକୁ ରକ୍ଷା କରିପାରିଥିଲେ। ଡେରାୟାସଙ୍କ ପରେ ତାଙ୍କ ପୁତ୍ର ଜେରେକ୍ସାସ ବା କ୍ଷରସ୍ ଏଥେନ୍ସ ଅଧିକାର କରିବାକୁ ଆସି ବିଫଳ ହୋଇଥିଲେ। ତଥାପି ତାଙ୍କ ସୈନ୍ୟମାନେ ଆକ୍ରୋପୋଲି ଉପରେ ଥିବା ଦେବାଳୟଗୁଡ଼ିକୁ ଧ୍ୱଂସ କରିଦେଇଥିଲେ। ଶେଷରେ, ପାରସିକମାନଙ୍କର ପରାଜୟ ଓ ପଳାୟନ ପରେ ଏଥେନୀୟମାନେ ସେମାନଙ୍କ ବିଜୟ ନିମନ୍ତେ ଦେବଦେବୀମାନଙ୍କ ପ୍ରତି କୃତଜ୍ଞତା ଜ୍ଞାପନ ଉଦ୍ଦେଶ୍ୟରେ ପାହାଡ଼ ଉପରେ ନୂତନ ନୂତନ ରମଣୀୟ ମନ୍ଦିରମାନ ନିର୍ମାଣ କରିଥିଲେ। ସେହିସବୁ ସ୍ଥାପତ୍ୟକୀର୍ତ୍ତି ମଧ୍ୟରେ ସର୍ବଶ୍ରେଷ୍ଠ ଥିଲା ପାର୍ଥେନନ ମନ୍ଦିର। ଦେବୀ ଏଥେନାଙ୍କ ଆରାଧନା ନିମନ୍ତେ ସେହି ମନ୍ଦିର ନିର୍ମିତ ହୋଇଥିଲା। ମନ୍ଦିର ମଧ୍ୟରେ ଥାଏ ଦେବୀ ଏଥେନାଙ୍କ ୪୦ ଫୁଟ ଉଚ୍ଚ ବିଶାଳ ମୂର୍ତ୍ତି। ଗଠିତ ହୋଇଥିଲା ଗଜଦନ୍ତ ଓ ସ୍ୱର୍ଣ୍ଣରେ। ମନ୍ଦିର ଗାତ୍ରରେ ଅନେକ ଦେବଦେବୀଙ୍କ ମୂର୍ତ୍ତି ଖୋଦିତ ଥିଲା।

ଏହା ଥିଲା ଅତୀତର କଥା। ଆମେ ଆକ୍ରୋପୋଲି ଉପରେ ଯେଉଁ ପାର୍ଥେନନ ମନ୍ଦିର ଦେଖିବାକୁ ପାଇଲୁଁ, ତାହା ହେଉଛି ପ୍ରାଚୀନ ମନ୍ଦିରର ଗୋଟିଏ ନକଲ ମାତ୍ର। ମଧ୍ୟଯୁଗରେ ତୁର୍କମାନଙ୍କ ଆକ୍ରମଣ କାଳରେ ପୁରାତନ ମନ୍ଦିର ଧ୍ୱଂସ ପାଇଯାଇଥିଲା। ସେହି ଧ୍ୱଂସାବଶେଷଗୁଡ଼ିକ ତୁର୍କମାନେ ଏଣେତେଣେ ବିକ୍ରି କରିଦେଇଥିଲେ। ଅବଶିଷ୍ଟ ଯାହା ସବୁ ରହିଥିଲା, ସେଗୁଡ଼ିକ ଊନବିଂଶ ଶତାବ୍ଦୀର ଆରମ୍ଭରେ ଇଂରେଜମାନେ ଜାହାଜ ଭର୍ତ୍ତିକରି ନିଜ ଦେଶକୁ ନେଇଗଲେ। ଗ୍ରୀକ୍ ଭାସ୍କର୍ଯ୍ୟର ସେହିସବୁ ରମଣୀୟ ନିଦର୍ଶନମାନ ଏବେ ବ୍ରିଟିଶ ମିଉଜିୟମରେ ଦେଖିବାକୁ ମିଳିଥାଏ। ଅଧୁନା ଯେଉଁ ପାର୍ଥେନନ ଦେଖିବାକୁ ମିଳେ, ତାହା ହେଉଛି ପ୍ରାଚୀନ ମନ୍ଦିରର ଅନୁକରଣରେ ତିଆରି ହୋଇଥିବା ଗୋଟିଏ ପୁନର୍ଗଠିତ ମନ୍ଦିର। ପ୍ରାଚୀନର ଧ୍ୱଂସାବଶେଷ ଉପରେ ନୂତନର ଶୋଭାମୟ ରୂପ ଦେଖି ମୋହିତ ହେବାକୁ ହୁଏ। ଆକ୍ରୋପୋଲି ପାହାଡ଼ ଶିଖରରୁ ସମଗ୍ର ଏଥେନ୍ସ ନଗର ଦେଖିବାକୁ ମିଳେ।

ଚାରିଘଣ୍ଟା ସମୟ ଆକ୍ରୋପୋଲିଠାରେ କଟାଇ ଅପରାହ୍ନରେ ବିମାନଘାଟିକୁ ଫେରିଲୁଁ। ପରିଶ୍ରମ ଯୋଗୁଁ ସନ୍ଧ୍ୟାବେଳେ ଆଉ କୁଆଡ଼େ ଯିବାଲାଗି ଇଚ୍ଛା ହେଲା ନାହିଁ। ଉଡ଼ାଜାହାଜ ରାତ୍ରିର ଶେଷ ପ୍ରହରରେ ଛାଡ଼ିବ ବୋଲି ଶୁଣିଲି। ପୁନର୍ବାର

ସେହି ପ୍ରଚଣ୍ଡ ଶୀତ। ପୁଣିଥରେ ରାତି ଉଜାଗର। ନାସିରୁଦ୍ଦୀନ ଖାଁ ମଝେ ମଝେ ବ୍ରାଣ୍ଡି ଓ ହୁଇସ୍କି ସାଙ୍ଗରେ ମାଛଭଜା ଚାଟ୍ ଖାଇ ଖାଇ ବେଶ୍ ଖୁସି ମନରେ ସମୟ କଟାଇଲେ।

ରାତ୍ରିର ଶେଷବେଳକୁ ଆମେ ୩୦ ଜଣ ଯାତ୍ରୀ ପୁଣିଥରେ ପଟେଲ କୋମ୍ପାନୀର ଭଡ଼ା ଉଡ଼ାଜାହାଜରେ ଭର୍ତ୍ତି ହେଲୁଁ। ଦୁଇଜଣ ଇଟାଲୀୟ ପାଇଲଟ ଢଳି ଢଳି ଆସୁଥିବାର ଦେଖି ନାସିରଉଦ୍ଦୀନ କହିଲେ, "ଦେଖୁଛନ୍ତି, ନିଶା ଛାଡ଼ି ନାହିଁ, ତଥାପି ଉଡ଼ାଜାହାଜ ଚଳାଇବେ। ଆମ ଜୀବନ ସାଙ୍ଗରେ ଖେଳ ଖେଳିବେ। ଆମେ ମରିବା ଆଗରୁ ପଟେଲ ଭାଇଗୁଡ଼ାକ ମରିଯିବା ଉଚିତ।"

## ଗ୍ରୀସ୍‌ଠାରୁ ଲେବାନନ: ବିରୁତ ସହରରେ ଗୋଟିଏ ଦିନ

ଏଥେନ୍ସ ବିମାନଘାଟି ଛାଡ଼ିବାର ଅଳ୍ପ ସମୟ ପରେ ରାତି ପାହିଲା। ଆକାଶ ନିର୍ମଳ ଥାଏ। ଅନେକ ତଳେ ଦେଖା ଯାଉଥାଏ ଗ୍ରୀସ୍ ଭୂଭାଗର ଅନୁପମ ଦୃଶ୍ୟ। ଏଜିଆନ୍ ସାଗର ମଧ୍ୟରେ ଭାସମାନ ସ୍ଥଳପରି ଦିଶୁଥାଏ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ। ସମୁଦ୍ରଗର୍ଭରୁ ମୁଣ୍ଡ ଟେକି ଛିଡ଼ା ରହିଥାଏ ଅଗଣିତ ସୁଉଚ୍ଚ ଗିରିଶୃଙ୍ଗ। ପର୍ବତଗୁଡ଼ିକର ନିମ୍ନଦେଶରେ ଦିଶୁଥାଏ ସବୁଜ ସମତଳ ଭୂମି। ନୀଳ ଜଳରାଶି ଉପରେ ଫୁଲପରି ଭାସୁଥାଏ ଅନେକ ଜାହାଜ। ଆକାଶପଥରୁ ସାଗର ପରିବେଷ୍ଟିତ ଗ୍ରୀକ୍ ଦ୍ୱୀପପୁଞ୍ଜର ପ୍ରାକୃତିକ ସୌନ୍ଦର୍ଯ୍ୟ ଥାଏ ଅତୀବ ମନୋମୁଗ୍ଧକର।

ବିମାନ ଉଡ଼ିଚାଲିଲା ଭୂମଧ୍ୟସାଗର ଉପରେ ପୂର୍ବଦିଗକୁ। ଯଥାସମୟରେ ଦିଗ୍‌ବଳୟ ଉପରେ ଦେଖାଗଲା ତୁରସ୍କ ଦେଶର ସୀମା। ସ୍ଥାନଗୁଡ଼ିକର ନାମ ପାଇଲଟ କହିଦେଉଥାନ୍ତି। ତଳେ ଦେଖାଗଲା ରୋଡସ୍ ଓ ସାଇପ୍ରାସ୍ ପ୍ରଭୃତି ଦ୍ୱୀପ। ଇଉରୋପର ମେଘାଚ୍ଛନ୍ନ ଆକାଶ ଓ ଅଦୂରପ୍ରାଚ୍ୟର ମେଘବିମୁକ୍ତ ଆକାଶ ମଧ୍ୟରେ ପାର୍ଥକ୍ୟ ଅନୁଭବ କରିବା ସହଜ ଥାଏ। ଶେଷରେ, ପୂର୍ବାହ୍ଣ ପ୍ରାୟ ୧୦ଟା ବେଳେ, ବିମାନ ଅବତରଣ କଲା ଲେବାନନର ରାଜଧାନୀ ବିରୁତ୍ ବା ବେୟରୁତ୍ ସହରରେ। ଭୂମଧ୍ୟସାଗର କୂଳରେ ଅବସ୍ଥିତ ସେହି ସହରଟି ଥାଏ ମାଉଣ୍ଟ ଲେବାନନ୍ ନାମକ ପର୍ବତର ପାଦଦେଶରେ। ତ୍ରିଭୁଜାକାର ସହରଟି ସମୁଦ୍ର ମଧ୍ୟକୁ ପଶି ଆସିଥିଲା ପରି ଆକାଶମାର୍ଗରୁ ଜଣାଯାଉଥାଏ।

ସେହିଠାରୁ ପଟେଲ କୋମ୍ପାନୀର ଉଡ଼ାଜାହାଜ ଫେରିଯିବ ଶୁଣି ଖୁସି ହେଲୁଁ। ନାସିରଉଦ୍ଦୀନ ଖାଁ ବୁଝିନେଲେ ଯେ ଅନ୍ୟ ଗୋଟିଏ ବଡ଼ ବିମାନରେ ଆମମାନଙ୍କ ସ୍ଥାନ ରିଜାର୍ଭ ରହିଛି। ରାତ୍ରିକାଳରେ ତାହା ବିରୁତ୍ ଛାଡ଼ି ଦାମାସ୍କାସ ଓ ସେଠାରୁ ବାଗଦାଦ୍ ଓ ତା ପରେ କୁଏତ୍ ଯାତ୍ରା କରିବ। ବିରୁତ୍ ବିମାନଘାଟିଟି ଯଥେଷ୍ଟ

ଆରାମଦାୟକ ଥିଲା। ଇଉରୋପୀୟ ଯାତ୍ରୀମାନଙ୍କର ଭିଡ଼ ଲାଗିରହିଥାଏ। ଆମ ଦଳ ପାଇଁ ଭଲ ସ୍ଥାନଟିଏ ନିରୂପଣ କରିନେଲି ଓ ତା ପରେ କେତେଜଣ ଫରାସୀ ଟୁରିଷ୍ଟମାନଙ୍କ ସାଙ୍ଗରେ ବିରୁତ୍‌ସହର ଭ୍ରମଣ କରିବା ଲାଗି ବାହାରିଗଲି। ସଙ୍ଗୀତମୁଖରିତ ବିଶ୍ରାମକକ୍ଷ ଓ ମଦ୍ୟପାନର ସୁବିଧା ଦୃଷ୍ଟିରୁ ନାସିରୁଦ୍ଦୀନ ବାହାରକୁ ଯିବେ ନାହିଁ ବୋଲି କହିଲେ। ଶିଖ୍ ଭାଇମାନେ ଭୂରି ଭୋଜନ ପରେ ଆରାମରେ ଶୋଇପଡ଼ିବା ଦେଖି ଆଶ୍ୱସ୍ତ ହେଲି।

ବିରୁତ୍ ସହରର ପ୍ରଶସ୍ତ ରାଜପଥ, ବହୁତଳବିଶିଷ୍ଟ ସୌଧ ଓ ବିଦେଶୀ କାର୍‌ଗୁଡ଼ିକର ସଂଖ୍ୟା ଦେଖି ସେଠାକାର ଆର୍ଥିକ ସମୃଦ୍ଧିର ପରିଚୟ ପାଇଲି। ଫରାସୀମାନଙ୍କ ତତ୍ତ୍ୱାବଧାନରେ ଥିଲାବେଳେ ଲେବାନନ୍‌ର ରାଜଧାନୀ ଓ ପ୍ରଧାନ ବନ୍ଦର ଭାବରେ ବିରୁତ୍‌ସହରର ବ୍ୟାପକ ଉନ୍ନତି ଘଟିଥିଲା। ମଧ୍ୟପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡ ମଧ୍ୟରେ ବାଣିଜ୍ୟିକ ଯୋଗାଯୋଗ ଦୃଷ୍ଟିରୁ ଏହି ସହରର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଆସିଛି।

ଆଧୁନିକ ସହରାଞ୍ଚଳ ଓ ସରକାରୀ କୋଠାବାଡ଼ି ଦେଖାଇବା ପରେ ଟୁରିଷ୍ଟ୍‌ଗାଇଡ୍ ଆମକୁ ନେଇଗଲେ ଗୋଟିଏ ପୁରାତନ ସ୍ଥାନକୁ। ସେତେବେଳକୁ ସନ୍ଧ୍ୟା ଆସିଯାଇଥାଏ। ସେଠାକାର ପ୍ରକାଣ୍ଡ ପ୍ରକାଣ୍ଡ ପ୍ରସ୍ତରଖଣ୍ଡର ତଳଦେଶରେ ଥାଏ ଗୋଟିଏ ହ୍ରଦ ସଦୃଶ ସୁବିସ୍ତୃତ ଓ ସୁଗଭୀର ଜଳାଶୟ। ମଧ୍ୟଯୁଗୀୟ ବର୍ବରତାର ସ୍ମୃତି ବହନ ପୂର୍ବକ ସେହି ସ୍ଥାନଟି ଦର୍ଶକମାନଙ୍କୁ ଆକର୍ଷଣ କରିଆସିଛି। ଯେଉଁ ନାରୀମାନଙ୍କ ଚରିତ୍ର ପ୍ରତି ସନ୍ଦେହ କରାଯାଉଥାଏ କିମ୍ବା ଯେଉଁମାନେ ଅସତୀ ବୋଲି ଜଣାଯାଉଥାନ୍ତି, ସେହିମାନଙ୍କୁ ସେଠାକୁ ଧରି ଅଣାଯାଉଥାଏ। ଖଣ୍ଡିଏ ଖଣ୍ଡିଏ ନିର୍ଦ୍ଦିଷ୍ଟ ପଥର ଉପରେ ସେମାନଙ୍କୁ ଛିଡ଼ା କରାଇ ସେମାନଙ୍କ ଦେହ ଉପରକୁ ଛୋଟ ଛୋଟ ପଥରଖଣ୍ଡ ନିକ୍ଷେପ କରାହେଉଥାଏ। ପ୍ରକାଶ୍ୟରେ ଓ ଅନେକ ଲୋକଙ୍କ ସମ୍ମୁଖରେ ସେହି ହତଭାଗିନୀମାନଙ୍କୁ ନିର୍ଦ୍ଦୟ ପ୍ରହାର କଲାବେଳେ କେହି ପ୍ରତିବାଦ କରିବାକୁ ସାହସ କରୁ ନଥିଲେ। ଅସତୀର ପ୍ରାଣବାୟୁ ଉଡ଼ିଗଲା ପରେ ରକ୍ତାକ୍ତ ଶବଟିକୁ ଜଳାଶୟର ଅଗାଧ ଗର୍ଭରେ ନିକ୍ଷେପ କରାଯାଉଥାଏ। ତାହା ଥିଲା ଅଟୋମାନ ତୁର୍କ ଶାସନକାଳର ଗୋଟିଏ ଅମାନୁଷିକ ସାମାଜିକ ପ୍ରଥା। ସେହି ଭୟପ୍ରଦ ସ୍ଥାନ ଓ ସେଠାରେ ଦିଆଯାଉଥିବା ନୃଶଂସ ଦଣ୍ଡ ବିଷୟ ଦେଶବାସୀଙ୍କୁ ଜଣାଥିବା ଯୋଗୁଁ ମୁସଲମାନ ନାରୀମାନେ ସେମାନଙ୍କ ଚରିତ୍ରକୁ ବିଶୁଦ୍ଧ ରଖୁଥିଲେ। ଜଳାଶୟର କୂଳ ଭାଗରେ ଛିଡ଼ା ରହି ଗଭୀର ସ୍ଥାନ ଦିଗକୁ ଚାହିଁଲାବେଳେ ମନେ ହେଉଥାଏ, କେତେ ଅସଂଖ୍ୟ ଅଭାଗିନୀଙ୍କ କଙ୍କାଳ ଦ୍ୱାରା ପାଣିର ଗର୍ଭ ପରିପୂର୍ଣ୍ଣ ନଥିବ! କଳାରଙ୍ଗର ପାଣିକୁ ଚାହିଁ ମନରେ ଘୃଣା ଆସିଲା।

ସେତିକିବେଳେ ଗାଇଡ୍ ମହାଶୟ ଜଣେ ତରୁଣୀଙ୍କ ପ୍ରତି ଅଙ୍ଗୁଳି ଦେଖାଇ କହିପକାଇଲେ, ''ମ୍ୟାଡାମ୍, ଆପଣ ଯେଉଁ ପଥରଟି ଉପରେ ଛିଡ଼ା ରହିଛନ୍ତି, ସେଥି ଉପରେ ଅସତୀମାନଙ୍କୁ ହତ୍ୟା କରାଯାଉଥାଏ।'' ଚମକିଉଠି ତତ୍‌କ୍ଷଣାତ୍ ମହିଳା ଜଣକ ତଳକୁ ଡେଇଁପଡ଼ିଲା ସମୟରେ ତାଙ୍କର ଗୋଡ଼ ମଚକିଗଲା ଓ ସେ ତଳେ ବସିପଡ଼ି ଯନ୍ତ୍ରଣା ଅନୁଭବ କରିବା ଦେଖାଗଲା। ତାଙ୍କ ସ୍ୱାମୀ ପାଖରେ ବସି ପଦସେବା କରିବାକୁ ଲାଗିପଡ଼ିଲେ।

ଟୁରିଷ୍ଟ ଦଳରେ ଜଣେ ରହସ୍ୟପ୍ରିୟ ବୃଦ୍ଧବ୍ୟକ୍ତି ଥାଆନ୍ତି। ମୋ ସହିତ ସେ ଇଂରାଜିରେ କଥାବାର୍ତ୍ତା କରୁଥାନ୍ତି। ତାଙ୍କୁ ପଚାରିଲି, ''ଏହି 'ଅସତୀକୁଣ୍ଡ' ସମ୍ପର୍କରେ ଆପଣଙ୍କ ମତ କ'ଣ ?'' ନିଜ ପତ୍ନୀଙ୍କ ଦିଗକୁ ଚାହିଁ ସେ ଉତ୍ତର ଦେଲେ, ''ଫ୍ରାନ୍ସଦେଶରେ ଏପରି କୁଣ୍ଡଟିଏ ଥିଲେ ବୋଧହୁଏ ଫରାସୀ ଜାତି ମହିଳାଶୂନ୍ୟ ହୋଇଯାଇଥାନ୍ତା ଓ ସମାଜରେ କେବଳ ପୁରୁଷମାନେ ରହିଥାନ୍ତେ।'' ସଙ୍ଗେ ସଙ୍ଗେ ତାଙ୍କ ସ୍ତ୍ରୀ ଉତ୍ତର ଦେଲେ, ''ମୋ ମତରେ ଏ ଯୁଗରେ ଆମ ଦେଶର ପୁରୁଷମାନଙ୍କ ପାଇଁ ଏହିପରି ଗୋଟିଏ ଗୋଟିଏ ନରକ କୁଣ୍ଡ ରହିବା ଏକାନ୍ତ ଆବଶ୍ୟକ।'' ବୁଢ଼ାବୁଢ଼ୀଙ୍କ ରହସ୍ୟ ଶୁଣି ସମସ୍ତେ ହସିଲେ।

ବିରୁତ୍ ସହରରେ କେତେଗୁଡ଼ିଏ ନବନିର୍ମିତ ଆମେରିକୀୟ ଅଟ୍ଟାଳିକା ଦେଖି ରାତ୍ରିବେଳକୁ ବିମାନବନ୍ଦରକୁ ଫେରିଲୁଁ। ରାତ୍ରିଭୋଜନ ପରେ ଖଣ୍ଡିଏ ପ୍ରକାଣ୍ଡକାୟ ଜେଟ୍ ବିମାନରେ ପ୍ରବେଶ କଲୁଁ। ସେଥିରେ ଅନେକ ପାସେଞ୍ଜାର ଥିଲେ। ବିମାନଟି ବହୁ ଉର୍ଦ୍ଧ୍ୱରେ ଓ ବେଗଶୀଳ ଗତିରେ ଉଡ଼ିଚାଲିଲା। କିଛି ସମୟ ପରେ ସିରୀଆର ରାଜଧାନୀ ଦାମାସ୍କାସ ଠାରେ ଅବତରଣ କରି ସେଠାରେ ପ୍ରାୟ ଏକଘଣ୍ଟା ରହିଲା। ତା ପରେ ଉଡ଼ିଲା ପୂର୍ବଦିଗକୁ। ଅନେକ ତଳେ ଦିଶୁଥାଏ ସିରୀଆ ଓ ଇରାକ୍ ଦେଶର ସୀମାହୀନ ମରୁଭୂମି। ଗଭୀର ରାତ୍ରିର ଚନ୍ଦ୍ରାଲୋକ ତଳେ ମରୁଭୂମି କୋମଳ ରୂପ ଧାରଣ କରିଥାଏ। ଭାବୁଥାଏଁ, ସୂର୍ଯ୍ୟାଲୋକ ତଳେ ତାହାର ରୂପ କେଡ଼େ ଭୟଙ୍କର ଦେଖାଯାଉ ନଥିବ! ପୂର୍ବ ଦୁଇରାତିର ଉଜାଗର ଯୋଗୁଁ ଆରାମଦାୟକ ସିଟ୍ ଉପରେ ଗାଢ଼ ନିଦରେ ଶୋଇପଡ଼ିଲି। ରାତ୍ରିର ଶେଷବେଳକୁ ଯାତ୍ରୀମାନଙ୍କ କଥାବାର୍ତ୍ତା ଶୁଣି ନିଦ ଭାଙ୍ଗିଲା। ଜାଣିଲି, ବିମାନଟି ବାଗଦାଦ୍ ବିମାନଘାଟିରେ ଅନେକ ସମୟ ରହିବ। ତଳକୁ ଯିବାଲାଗି ଇଚ୍ଛା ହେଲାନାହିଁ। ପୁଣି ଲାଗିଗଲା ଗାଢ଼ ନିଦ। ବାଗ୍‌ଦାଦ୍ ଛାଡ଼ିବା କଥା ଜାଣିପାରିଲି ନାହିଁ।

ପରଦିନ ମଧ୍ୟାହ୍ନ ସମୟରେ ବିମାନ ଅବତରଣ କଲା କୁଏତ ବିମାନବନ୍ଦରରେ। ସେହିଠାରେ ଶେଷ ହେଲା ଆକାଶମାର୍ଗର ଯାତ୍ରା। ଜିନିଷପତ୍ର ଧରି ବାହାରି

ଆସିଲାବେଳକୁ ଦେଖିଲି, ନାସିରୁଦ୍ଦୀନ ଖାଁଙ୍କୁ ଭେଟିବା ଲାଗି ତାଙ୍କର ଦୁଇଜଣ ବନ୍ଧୁ ଉପସ୍ଥିତ ଅଛନ୍ତି। ଶିଖ୍ ଭାଇମାନଙ୍କ ସହିତ ତାଙ୍କୁ ଅପେକ୍ଷା କରି ବାହାରେ ଛିଡ଼ା ହେଲି। କିଛି ସମୟ ପରେ ପାଖକୁ ଆସି ସେ କହିଲେ, ''ମାଲବାହୀ ଜାହାଜରେ ପାରସ୍ୟ ଉପସାଗର ବାଟେ କରାଚି ଯିବାକୁ ହେଲେ ଦୁଇ ସପ୍ତାହ ଦିନ ରାତି ମୃତ୍ୟୁଯନ୍ତ୍ରଣା ଭୋଗିବାକୁ ହେବ। ମୋ ବନ୍ଧୁମାନେ ପାସେଞ୍ଜାର ଜାହାଜରେ ସିଟ୍ କରିଦେବେ। ପଟେଲ କୋମ୍ପାନୀ ଯୋଗୁଁ କିଛି ଟଙ୍କା ବରବାଦ୍ ହେଲା, କିନ୍ତୁ ଜୀବନଟା ବରବାଦ୍ କରିବି କାହିଁକି?'' ତାଙ୍କ କଥା ଶୁଣି ମନରେ ଆଶଙ୍କା ଖେଳିଗଲା। ତଥାପି, ଅନ୍ୟ ଉପାୟ ନଥାଏ। ପଟେଲ କୋମ୍ପାନୀ ଦେଇଥିବା କାଗଜ ବାହାର କରି କୁଏତୀ ହୋଟେଲର ନାମ ଦେଖିଲି। ମାଲବାହୀ ଜାହାଜ ଦିନକ ପରେ ଛାଡ଼ିବ। ସେତେବେଳ ପର୍ଯ୍ୟନ୍ତ ହୋଟେଲରେ ଆଶ୍ରୟ ନେବାକୁ ହେବ। ପାକିସ୍ତାନୀ ବନ୍ଧୁ ବିଦାୟ ନେବାଲାଗି ବ୍ୟସ୍ତ ହୋଇଉଠିଲେ। ''ମୋ କାର୍ଡ଼ଖଣ୍ଡିକ ରଖନ୍ତୁ। କରାଚି ଆସିଲେ ଆମ ଘରକୁ ଆସିବେ'', ଏତିକି କହି ସେ ସଲାମ ଆଲେକୁମ୍ ଜଣାଇ ଅନ୍ତର୍ଦ୍ଧାନ ହେଲେ। ସାଙ୍ଗରେ ଆସିଥିବା ଗୁଜରାଟୀ ଯାତ୍ରୀଙ୍କର ପତ୍ତା ପାଇଲି ନାହିଁ।

## କୁଏତରେ ଗୋଟିଏ ଦିନ

ବିମାନଘାଟିର ଅବସ୍ଥା ଦେଖି ଜାଣିପାରିଥିଲି, କୁଏତ୍ ଦେଶ ଲେବାନନ୍ ନୁହେଁ। ବାହାରେ ମୁସଲମାନୀ ଟୋପି ଓ ଦାଢ଼ିଥିବା ଲୋକଙ୍କ ବେଶଭୂଷାରୁ ଜଣାପଡୁଥାଏ ସେମାନେ ଅତିଶୟ ଅନୁନ୍ନତ ସ୍ତରର ଲୋକ। ଟ୍ୟାକ୍ସିବାଲାଙ୍କର ରୂପ ଦେଖି ପାଖକୁ ଯିବା ପାଇଁ ଇଚ୍ଛା ହେଲା ନାହିଁ। ଅଥଚ, ସହର ଭିତରକୁ ଯିବାକୁ ପଡ଼ିବ। କେତେଦୂରରେ ସହର ଓ ଆମର ହୋଟେଲ, ସେକଥା ପଚାରିବା ଲାଗି ପାର୍ଶ୍ୱବର୍ତ୍ତୀ ଗୋଟିଏ ଦୋକାନକୁ ଯିବାମାତ୍ରେ ସେଠାରେ ଲେଖାଥିବା ସତର୍କବାଣୀ ଉପରେ ନଜର ପଡ଼ିଲା– "Englishmen and dogs are not allowed." ମୁଁ ତ ଇଂଲିଶ୍‌ମ୍ୟାନ୍ ନୁହେଁ, ତଥାପି ଇଂରାଜୀରେ ପଚାରିବାକୁ ଉଚିତ ମଣିଲି ନାହିଁ। କୁଏତୀମାନଙ୍କର ପ୍ରବଳ ଇଂରେଜବିରୋଧୀ ମନୋଭାବ ଦେଖି ଆଶ୍ଚର୍ଯ୍ୟ ହେଲି। ଉପରଲିଖିତ ବାକ୍ୟଟି ଅନେକ ସ୍ଥାନରେ ଲେଖାଥିବା ଦେଖିଲି।

ମୋହନ ସିଂହ ବୁଦ୍ଧି ଦେଲେ, ''ସହର ବେଶି ଦୂରରେ ନୁହେଁ। କୋଠାଗୁଡ଼ିକ ଦେଖାଯାଉଛି। ଟ୍ୟାକ୍ସି ଯାଉଥିବା ବାଟରେ ଚାଲିଲେ ପହଞ୍ଚିଯିବା।'' ଉଚିତ ପରାମର୍ଶ ଜାଣି ରାଜି ହେଲି। ସେତେବେଳକୁ ମୋର ସୁଟ୍‌କେଶଟି ଜଣେ ଶିଖ୍‌ଭାଇ ମୁଣ୍ଡରେ ରଖିସାରିଥିଲେ। ଚାଲିଲୁଁ ସହର ଦିଗକୁ। ରାସ୍ତାରେ ଶିଖ୍‌ମାନଙ୍କର ଦାଢ଼ି ପଗଡ଼ି ଦେଖି କୁଏତୀମାନେ ବିରକ୍ତ ହେଉଥିବା ଅନୁମାନ କଲି। ଚାରି ମାଇଲ୍ ବାଟ

ଚାଲିଲାପରେ ସହର ପଡ଼ିଲା। ସେତେବେଳେ କୁଏତ୍ ଆଧୁନିକ ଆକାର ପାଇ ନଥାଏ। କେତେକ ବର୍ଷ ପରେ ତୈଳସମ୍ପଦ ଯୋଗୁଁ ସ୍ଥାନଟିର ଉନ୍ନତି ଘଟିଥିଲା।

ଅପରିଷ୍କାର ବଜାର ଓ ଗଳି ପ୍ରଗଳି ଭିତରେ ଆମର ନିର୍ଦ୍ଦିଷ୍ଟ ହୋଟେଲ ଆବିଷ୍କାର କରିବା ଲାଗି ଘଣ୍ଟାଏ ସମୟ ଲାଗିଗଲା। ଛୋଟ ମୁସଲମାନୀ ହୋଟେଲ। ଅପରିଚ୍ଛନ୍ନ ପରିବେଶ। ଭାଗ୍ୟକୁ ମୋ ନାମରେ ଜଣକିଆ କୋଠରିଟିଏ ରଖାଯାଇଥାଏ। ଶିଖ୍‌ମାନଙ୍କ ନାମରେ ପାଖ କୋଠରି ରିଜାର୍ଭ ଥାଏ। ସେ ସମୟରେ ଭାରତୀୟମାନେ ସେଠାରେ କ୍ୱଚିତ୍ ଦୋକାନପତ୍ର ଖୋଲିଥିଲେ। ଏବେ ସେମାନଙ୍କ ସଂଖ୍ୟା ଓ ବ୍ୟବସାୟ ବହୁମାତ୍ରାରେ ବଢ଼ିଯାଇଛି।

ରୁମ୍ ଭିତରେ ନିଜକୁ ଥଇଥାନ କରିବାବେଳେ କାନ୍ଥରେ ଓ ଖଟରେ ଲାଗିଥିବା ମଇଳା ଦେଖି ଘୃଣା ଆସିଲା। ବିକୃତ ଉର୍ଦ୍ଦୁରେ ମୁସଲମାନ ହୋଟେଲବାଲା କ'ଣ ଖାଇବି ବୋଲି ପଚାରିଲେ। କୁକୁଡ଼ାମାଂସ ଛଡ଼ା ଆଉ କିଛି ମାଂସ ଖାଏ ନାହିଁ ବୋଲି ଜଣାଇଦେଲି। ବେଳ ଗଡ଼ିଯାଇଥାଏ। ଭୋକରେ ଅସ୍ଥିର ଲାଗୁଥାଏ। ଅଳ୍ପ ସମୟ ମଧ୍ୟରେ ବଡ଼ ବଡ଼ ରୋଟି ଓ ଏକପ୍ଲେଟ୍ କୁକୁଡ଼ାମାଂସର ତରକାରୀ ଆସିଗଲା। ପ୍ଲେଟ୍‌ଟି ଦେଖି ଖାଇବାଲାଗି ଇଚ୍ଛା ହେଲା ନାହିଁ। ତଥାପି ଅଗତ୍ୟା ଖାଇଲି। କିନ୍ତୁ ସେହି ମାଂସପ୍ଲେଟ୍‌ଟିର ସ୍ୱାଦରୁ ଜାଣିପାରିଲି, ଆରବ୍‌ମାନେ ଯେପରି ମାଂସ ରାନ୍ଧି ଜାଣନ୍ତି ତାହା ବାସ୍ତବିକ ପ୍ରଶଂସନୀୟ।

ସନ୍ଧ୍ୟା ପୂର୍ବରୁ ମୋହନ ସିଂହଙ୍କୁ ସାଙ୍ଗରେ ଧରି ଚାଲିଲି ଜଳଜାହାଜ କୋମ୍ପାନୀର ଅଫିସକୁ। କର୍ମଚାରୀମାନେ ଇଂରାଜିରେ କଥାବାର୍ତ୍ତା କଲେ ନାହିଁ। ଆରବୀ, ଫାର୍ସୀ ଓ ହିନ୍ଦୀ ଇତ୍ୟାଦି ମିଶ୍ରିତ ଭାଷାରେ ଜଣାଇଦେଲେ ଯେ ପାସେଞ୍ଜାରମାନେ କୁଏତ ବନ୍ଦରରେ ଆଗାମୀ କାଲି ଦିନ ୧୦ଟା ବେଳେ ହାଜର ହେବେ ଓ ମାଲ ବୋଝେଇ ଶେଷ ହେଲେ ଜାହାଜ ଛାଡ଼ିବ। ଏକଥା ମଧ୍ୟ ସୂଚାଇ ଦିଆଗଲା ଯେ, ଜାହାଜର ଉପର ଡେକ୍‌ରେ ଥିବା କାଠମେଜିଆରେ ବିଛଣା ପକାଇ ଶୋଇବାକୁ ହେବ ଓ ଶହେ ପର୍ଯ୍ୟନ୍ତ ଯାତ୍ରୀ ସେହି ଗୋଟିଏ ସ୍ଥାନରେ ନିଜ ନିଜ ଜାଗାରେ ରହିବେ। ସେପରି ଜଳଯାତ୍ରା ଯେ କିପରି କଷ୍ଟଦାୟକ ହେବ, ତାହା ଅନୁମାନ କରିବା କଷ୍ଟକର ହେଲା ନାହିଁ। ପୁଣି ଶୁଣିଲି, ଯାତ୍ରୀମାନେ ଆରବ, ପାରସ୍ୟ ଓ ପାକିସ୍ତାନର ଲୋକ, ଯେଉଁମାନେ ପାସେଞ୍ଜାର ଜାହାଜରେ ମାସୁଲ ଦେଇ ନପାରି ମାଲ୍‌ଜାହାଜରେ ଯିବା ଆସିବା କରନ୍ତି। ବିମର୍ଷ ମନରେ ଫେରିଲାବେଳେ ରାସ୍ତାକଡ଼ରୁ ଖଣ୍ଡିଏ ଶତରଞ୍ଜି ଓ 'କମ୍ବଳ କିଣିଲି। କାଠଚଟାଣ ଉପରେ ତାହାହିଁ ହେବ ବିଛଣା। ତକିଆ ପାଇଁ ନିଜର କୋଟ୍ ପେଣ୍ଟ ହିଁ ଯଥେଷ୍ଟ।

ରାତିରେ ଖଣ୍ଡିଏ ପାଉଁରୋଟି ଖାଇ ଶୋଇବାକୁ ପ୍ରସ୍ତୁତ ହେଲା ସମୟରେ ମୋହନ ସିଂହ କାନ ପାଖରେ କହିଲେ, "ଲୁଟେରାମାନେ ଚୋରି କରିବେ, ମୁଁ ଆପଣଙ୍କ ରୁମ୍‌ରେ ତଳେ ଶୋଇ ଜଗି ରହିବି।" ତାଙ୍କୁ ବୁଝାଇ ଶୁଝାଇ ବିଦାୟ କଲି। ଭିତରୁ କବାଟ ବନ୍ଦ କରି ବିଛଣାରେ ଶତରଞ୍ଜି ପକାଇ ଶୋଇଲି। ଅବିଳମ୍ବେ ଗାଢ଼ ନିଦ ଲାଗିଗଲା। ରାତିର ଶେଷ ପ୍ରହରରେ କବାଟରେ ଧକ୍କା ଦେବାର ଶବ୍ଦ ଶୁଣି ଖୋଲିଲାବେଳକୁ ଜଣେ ଦୀର୍ଘକାୟ କୁଏତୀ ସିଧାସଳଖ ପଶି ଆସି ବିନା ଦ୍ୱିଧା ବା ବାକ୍ୟବ୍ୟୟରେ ମୋ ବାଥ୍‌ରୁମ୍ ଭିତରେ ପଶିଗଲେ। ରୁମ୍‌ଟି ମୋ ନାମରେ, କିନ୍ତୁ ବାଥରୁମ୍ ବ୍ୟବହାର ପାଇଁ ଯେକୌଣସି ବ୍ୟକ୍ତି ଆସିପାରିବେ ବୋଲି ଜାଣିପାରିଲି। ସେ ବାହାରିଲା ପରେ ଆଉ ଜଣେ ଆସିଗଲେ, ତା'ପରେ ଆଉଜଣେ। ଏହା ହିଁ ଥିଲା କୁଏତୀ ହୋଟେଲର ନିୟମ।

ସକାଳ ଆଠଟାବେଳକୁ ଶିଖ୍‌ଦଳ ସହିତ ବନ୍ଦର ଅଭିମୁଖେ ଚାଲିଲି। ବନ୍ଦର ଘାଟ ଉପରେ ଜମା ରହିଥାଏ ଶହ ଶହ ମାଲ୍‌ପେଟି। ଅଧିକାଂଶ ପେଟିରେ ଥାଏ ଖଜୁରି। ମାଛି ଭଣ ଭଣ କରୁଥାଏ। ପ୍ରକାଣ୍ଡ ଜାହାଜଟିର ପେଟ ଖୋଲା ରହିଥାଏ। ଉପରିଭାଗରେ ଦିଶୁଥାଏ ଖୋଲା ଡେକ୍। ତା ଉପର ଛାତରେ ଥାଏ କପ୍ତାନଙ୍କ କେବିନ ଓ ପାଖକୁ ଲାଗିଥାଏ ଆଉ କେତୋଟି କେବିନ୍। ଉଚ୍ଚ କର୍ମଚାରୀ ଓ ଫାଷ୍ଟକ୍ଲାସ୍ ଯାତ୍ରୀଭାବେ ଟିକଟ କିଣିଥିବା ଆରବ ବା ପାରସିକ ଅମୀରମାନେ ସେଥିରେ ଯାଆନ୍ତି। ବନ୍ଦରର ଗୋଟିଏ ପାଖରେ ଜାହାଜର ଉପର ଡେକ୍‌କୁ ଉଠିବା ଲାଗି ଘାଟ ପର୍ଯ୍ୟନ୍ତ ଝୁଲି ରହିଥାଏ ମୋଟା ଦଉଡ଼ିରେ ତିଆରି ହୋଇଥିବା ଶିଡ଼ି। ଚାହୁଁ ଚାହୁଁ ଜଣେ ଅମୀର ସର୍କସ କରିବା ଢଙ୍ଗରେ ସେଥିରେ ଉଠିବାକୁ ଆରମ୍ଭ କଲେ। ତାଙ୍କ ପଛରେ ମୁଣ୍ଡରେ ସୁଟ୍‌କେଶ ଓ ବିଛଣା ରଖି, ଦୁଇ ହାତରେ ଦଉଡ଼ି ଧରି ଦୁଇଜଣ କୁଲି ଉଠିବାକୁ ଲାଗିଲେ। ଦୋଦୁଲ୍ୟମାନ ଅବସ୍ଥାରେ ସେମାନଙ୍କ ଉଠିବା ଦୃଶ୍ୟ ଦେଖି ମୁଁ ଚିନ୍ତିତ ହେଲାବେଳକୁ ମୋହନ ସିଂହ ମୋତେ ଧରି ଧରି ନେଇଯିବେ ବୋଲି ଆଶ୍ୱାସନା ଦେଲେ। ମୋ ସୁଟ୍‌କେଶ ଓ ବିଛଣା ତାଙ୍କ ତଳଭାଇ ସ୍ୱରଣ ସିଂହ ଧରିଲେ। କିନ୍ତୁ ଉଠିବା ସଂକେତ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଉପରୁ ଆଦେଶ ମିଳିଲା।

ସେହିପରି ସମୟରେ ଆରମ୍ଭ ହେଲା ବନ୍ଦର ଘାଟରେ ଖଣ୍ଡଯୁଦ୍ଧ। କୋଳାହଳ ଶୁଣି ଚାହିଁଲାବେଳକୁ ଦୁଇଦଳ କୁଲିଙ୍କ ମଧ୍ୟରେ ମାଲ୍‌ପେଟି ଉଠାଇବା ଲାଗି କଳହ ଲାଗିଯାଇଥାଏ। ମୁଥ ମରାମରି ସାଙ୍ଗକୁ ଧସ୍ତାଧସ୍ତି ଓ ଠେଲାପେଲା। ତା ସାଙ୍ଗକୁ ଉକ୍ରଟ ଧ୍ୱନିରେ ରଣହୁଙ୍କାର। ପାଟି ଚିତ୍କାର ଶୁଣି ଜାହାଜର ଉର୍ଦ୍ଧ୍ୱଦେଶରେ ଆବିର୍ଭୂତ ହେଲେ ସ୍ୱୟଂ କପ୍ତାନ। କିନ୍ତୁ ସେ ନୀରବ ନିଷ୍ପନ୍ଦ ଭାବେ ଛିଡ଼ା

ରହିଲେ। ଅନ୍ୟ ଦୁଇଜଣ ଯୁବ ଅଫିସର ମଧ ତାଙ୍କ ନିକଟରେ ଛିଡ଼ା ରହି ନିର୍ବାକ୍ ଦ୍ରଷ୍ଟା ସାଜିଥାନ୍ତି। ଯୁଦ୍ଧରତ କୁଲିଦଳ ଦୁଇଟିର ସଂଖ୍ୟା ଥାଏ ୫୦ ରୁ ବେଶି। ବନ୍ଦରରେ ଥିବା ଅନ୍ୟ ଲୋକମାନେ ସେମାନଙ୍କ ନିକଟରୁ ଦୂରେଇ ଯାଉଥାନ୍ତି। କୁଲିମାନଙ୍କର ତ୍ରିପଣ୍ଡ କଳାରଙ୍ଗ ଓ ମୁକ୍ତ ବଳିଷ୍ଠ ବପୁ ଦେଖି ବୁଝିଲି, ସେମାନେ ଆଫ୍ରିକୀୟ କାଫ୍ରି ଜାତିର ଲୋକ ଓ କୁଏତ୍‌ରେ କାମ କରିବାକୁ ଆସିଥାନ୍ତି। ଦେଖୁଁ ଦେଖୁଁ ସଂଘର୍ଷ ବଢ଼ିଚାଲିଲା। କେତେଜଣଙ୍କୁ ରକ୍ତାକ୍ତ ଅବସ୍ଥାରେ ଚିତ୍କାର କରୁଥିବା ଦେଖିଲି।

ସହ୍ୟ କରି ନପାରି, କପ୍ତାନଙ୍କ ଉଦ୍ଦେଶ୍ୟରେ ତଳୁ ରୁମାଲ ହଲାଇ ତାଙ୍କର ଦୃଷ୍ଟି ଆକର୍ଷଣ କଲାପରେ ଉଚ୍ଚ ସ୍ୱରରେ କହିଲି, "Kindly ask your people to stop fighting." ସେ ହାତ ହଲାଇ ମୋତେ ଉପରକୁ ଉଠିବାଲାଗି ସଂକେତ ଦେଲେ। ସେହି ସୁଯୋଗରେ ମୁଁ ଶିଡ଼ି ଚଢ଼ିବାକୁ ଲାଗିପଡ଼ିଲି। ଶିଖ୍ ଭାଇମାନେ ମୋ ପିଛା ଧରିଲେ। ଦୋଳି ଝୁଲିଲା ପରି ଶିଡ଼ିରେ ଉଠିଲାବେଳେ ଦେହର ଭାରସାମ୍ୟ ରଖିବା କଷ୍ଟକର ହେଉଥାଏ। ଯାହା ହେଉ, ଅଳ୍ପ ସମୟ ପରେ କପ୍ତାନଙ୍କ ଆଗରେ ଛିଡ଼ା ହେବାର ସୌଭାଗ୍ୟ ଲାଭକରି ତାଙ୍କୁ ସମ୍ମାନ ଜଣାଇଲି। ତାଙ୍କ ପାଖରେ ଥିବା ଯୁବକର୍ମଚାରୀ ଇଂରାଜୀରେ ମୋତେ ଜଣାଇଲେ, "This is a common affair here. They will settle their dispute only after fighting for a time." ସତକୁ ସତ, କିଛି ସମୟ ପରେ ବନ୍ଦରଘାଟ ଶାନ୍ତ ପଡ଼ିଲା ଓ ମାଲ ବୋଝେଇ ଆରମ୍ଭ ହେଲା।

ଯୁବ ଅଫିସରଙ୍କ ପାଖରୁ ଶୁଣିଲି, ଜାହାଜଟି ଗୋଟିଏ ପର୍ତ୍ତୁଗୀଜ୍ କୋମ୍ପାନୀର ଏବଂ କପ୍ତାନଙ୍କ ନାମ ଆଲଫୋନସୋ। ସେ ନିଜେ ମଧ ଜଣେ ପର୍ତ୍ତୁଗୀଜ୍ ଓ ଜାହାଜର ମୁଖ୍ୟ ଇଞ୍ଜିନିୟର। ମୁଁ ମୋର ପରିଚୟ ଦେଲି। ଇଂଲଣ୍ଡରେ ଉଚ୍ଚ ଡିଗ୍ରୀ ପାଇଥିବାରୁ ମୋତେ କନ୍‌ଗ୍ରାଚୁଲେସନ ଜଣାଇଲେ। ତାଙ୍କର ବ୍ୟବହାର ଖୁବ୍ ଭଲ ଲାଗିଲା। ଅନ୍ୟ ପାସେଞ୍ଜାରମାନେ ଉଠିବା ପୂର୍ବରୁ ନିଜ ପାଇଁ ସୁବିଧାଜନକ ସ୍ଥାନ ନିରୂପଣ କରିନେବାକୁ ସେ ଉପଦେଶ ଦେଲେ। ତାଙ୍କ ନାମ ଥାଏ ପେଡ୍ରୋ। ଜାହାଜର ନାମ 'Gulf Queen' ବା 'ଉପସାଗରର ରାଣୀ'।

ମାଲ ବୋଝାଇ ଗର୍ଭର ଉପର ଛାତରେ ଥିବା ପ୍ରଶସ୍ତ ହଲଟି ଉପରେ ଛାତ ଥାଏ । ଚାରି ପାଖରେ ଥାଏ କାଠର ଘେର ଓ ସ୍ଥାନେ ସ୍ଥାନେ ଝରକା । ଗୋଟିଏ କୋଣରେ ଝରକା ପାଖରେ ବିଛଣା ପାରି ମୁଣ୍ଡ ପାଖରେ ସୁଟ୍‌କେଶ ରଖିଲି । ଚାରି ସର୍ଦ୍ଦାର ମୋ ପାଖରେ ସେମାନଙ୍କ ବିଛଣା ମେଲାଇଦେଲେ ।

ଚାହୁଁ ଚାହୁଁ ଦଳ ଦଳ ଯାତ୍ରୀ ଆସିଗଲେ । ବୁର୍ଖାପରିହିତା ମହିଳା, ବାଳକ ବାଳିକା, ବୃଦ୍ଧ, ମଧ୍ୟବୟସ୍କ ଓ ଯୁବକମାନଙ୍କ ଗହଣରେ ସ୍ଥାନଟି କୋଳାହଳମୟ ହୋଇଉଠିଲା । ପ୍ରତ୍ୟେକେ ନିଜ ନିଜ ସ୍ଥାନ ଠିକ୍ କରି ଜିନିଷପତ୍ର ରଖିଲେ । ସମସ୍ତେ ମୁସଲମାନ । ମଧ୍ୟପ୍ରାଚ୍ୟର ବିଭିନ୍ନ ସ୍ଥାନର ନରନାରୀ । ସଂଖ୍ୟା ଶହେରୁ ବେଶି । ଏତେସଂଖ୍ୟକ ଲୋକଙ୍କ ସାଙ୍ଗରେ ଦୁଇ ସପ୍ତାହ ସମୟ ବିତିବ ଜାଣି ଦୁଃଖରେ ମୋ ମନ ଅବସନ୍ନ ହୋଇଉଠିଲା । ଖାଇବା ସ୍ଥାନ ଓ ବାଥ୍‌ରୁମ ଦେଖିବାକୁ ଗଲି । ଯାତ୍ରୀହଲ୍ ପାଖକୁ ଲାଗି କାଠ ଦେବାଲ ପରେ ଥାଏ କେତେଗୋଟି କମନ୍ ବାଥ୍‌ରୁମ୍ । ଚାହିଁଦେଇ ମନରେ ବିକାର ଆସିଲା । ସେଠାରୁ କିଛିଦୂରରେ ଆଉ ଗୋଟିଏ ଦେବାଲ ପରେ କୁଏତୀ ପୂଝାରୀମାନେ ଅଟା ବେଲୁଥାନ୍ତି, ପରିବା ଓ ମାଂସ କାଟୁଥାନ୍ତି । ପାଖକୁ ଲାଗିଥାଏ ରନ୍ଧା ଓ ଖାଇବା ଘର । ଛୋଟିଆ ଡାଇନିଂ କୋଠରି ମଧ୍ୟରେ ବସିବା ଓ ଖାଇବା ପାଇଁ ବେଞ୍ଚଗୁଡ଼ିଏ ପଡ଼ିଥାଏ । ସେହି ଘରର ଶେଷକୁ ଲାଗିଥାଏ ଉପରକୁ ଯିବାପାଇଁ କାଠର ସଂକୀର୍ଣ୍ଣ ଶିଡ଼ି । ସାହସ ବାନ୍ଧି ଶିଡ଼ିରେ ଉଠିଲି । ଉପରେ ଥାଏ ଫାର୍ଷ୍ଟ୍‌କ୍ଲାସ ଯାତ୍ରୀଙ୍କର କେବିନ୍ ଓ ବାଥ୍‌ରୁମ । ସେହି ତାଲାର ଶେଷମୁଣ୍ଡରେ ଥାଏ କପ୍ତାନ ଓ କର୍ମଚାରୀମାନଙ୍କର କେବିନ୍ । ଛାତ ଉପରେ ଚେୟାରଗୁଡ଼ିକ ପଡ଼ିଥାଏ । ଜଣେ କର୍ମଚାରୀଙ୍କୁ ପଚାରି ମିଷ୍ଟର ପେଡ୍ରୋଙ୍କ କେବିନ୍ ପାଖକୁ ଗଲି । ଦରଜାରେ ବେଲ୍ ଦେଲାକ୍ଷଣି ସେ ବାହାରି ଆସିଲେ । ତାଙ୍କୁ ଅନୁରୋଧ କଲି, "ମୁକ୍ତ ପବନରେ ବସି ସମୁଦ୍ରର ଶୋଭା ଦେଖିବାଲାଗି ମୋତେ ଉପର ତାଲାକୁ ମଝେ ମଝେ ଆସିବାକୁ ଅନୁମତି ମିଳୁ । ଉପସାଗରୀୟ ଅନୁଭୂତି ବିଷୟରେ ପ୍ରବନ୍ଧ ଲେଖିବାକୁ ଇଚ୍ଛା ହେଉଛି ।" ସହାସ୍ୟ ବଦନରେ ସେ କହିଦେଲେ, "You are free to use this deck in day time. But, please don't bring any other person with you. Never". ଆଶ୍ୱସ୍ତ ହେଲି, ଅନ୍ତତଃ ପକ୍ଷେ ଗୋପନରେ ବାଥରୁମ୍‌ଗୁଡ଼ିକ ବ୍ୟବହାର କରିପାରିବି ।

## ପାରସ୍ୟ ଉପସାଗରରେ ଯାତ୍ରାରମ୍ଭ

ଅପରାହ୍ଣ ୩ଟା ସୁଦ୍ଧା ମାଲଭର୍ତ୍ତି କାର୍ଯ୍ୟ ଶେଷ ହେଲା । ପରେ ପରେ ପ୍ରଚଣ୍ଡ ଗର୍ଜନ ସହ ଜାହାଜ ବନ୍ଦର ଛାଡ଼ିଲା । ଆରମ୍ଭ ହେଲା ପାରସ୍ୟ ଉପସାଗରରେ ଜଳଯାତ୍ରା । ଯାତ୍ରୀମାନେ ପାଖକୁ ପାଖ ଧାଡ଼ି ଲଗାଇ ବିଛଣା ମେଲିଥାନ୍ତି । ଗାତ ସ୍ୱରୂପ ଝରକା ଭିତରେ ମୁଣ୍ଡ ପୂରାଇ ମୁଁ ଚାହିଁ ରହିଲି ସମୁଦ୍ର ଦିଗକୁ । ଜାହାଜର ଗତିରୁ ଜଣାଗଲା ସତେଯେପରି ନଦୀର ନୌକା । ପଶ୍ଚିମ ଦିଗନ୍ତରେ ଦେଖାଯାଉଥାଏ କୁଏତ ଭୂଖଣ୍ଡର ସ୍ଥଳଭାଗ । ସୂର୍ଯ୍ୟ ତଳରୁ ତଳକୁ ଚାଲିଯାଉଥାନ୍ତି ।

ସନ୍ଧ୍ୟା ପୂର୍ବରୁ ଜାହାଜ ପୂର୍ବଦିଗକୁ ଗତି ପରିବର୍ତ୍ତନ କଲା । ସେଥିସହ ସ୍ଥଳଭାଗ ଅଦୃଶ୍ୟ ହେଲା । ସୂର୍ଯ୍ୟ ମଧ୍ୟ ଅସ୍ତଗାମୀ ହେଲେ । ଶୁଣିଥିଲି, କୁଏତ ଉପକୂଳରୁ ଜାହାଜ ଚାଲିବ ପାରସ୍ୟ ଉପକୂଳକୁ, ବୁଶେର ନାମକ ବନ୍ଦର ଅଭିମୁଖେ । ସେଠାରେ ଯାତ୍ରୀ ଓ ମାଲ କାଢ଼ିବା ଓ ନେବା ଲାଗି ଗୋଟିଏ ଦିନ ରହିବ ।

ପାରସ୍ୟ ଉପସାଗର । ଆରବମାନେ ସେହି ଜଳରାଶିକୁ କହନ୍ତି 'ଆରବ ଉପସାଗର' । ନାମ ଯାହା ହେଉନା କାହିଁକି, ସେହି ଉପସାଗର ହେଉଛି ଭାରତ ମହାସାଗରର ଗୋଟିଏ ସଂକୀର୍ଣ୍ଣ ଜଳଭାଗ । ଇରାକ୍ ଦେଶର ଟାଇଗ୍ରିସ୍–ଇଉଫ୍ରେଟିସ୍ ନଦୀର ମୁହାଣ ପାଖରୁ ଆରମ୍ଭ ହୋଇ ଉପସାଗରଟି ୬୧୫ ମାଇଲ୍ ଦୂରରେ ହରମୁଜ୍ ପ୍ରଣାଳୀ ଓ ଓମାନ ଉପସାଗର ଠାରେ ଶେଷ ହୋଇଛି । ଉପସାଗରର ପଶ୍ଚିମରେ ରହିଛି କୁଏତ୍ ଓ ଆରବ, ଏବଂ ପୂର୍ବଭାଗରେ ରହିଛି ପାରସ୍ୟ ବା ଇରାନ୍ ଦେଶ । ଉଭୟ କୂଳରେ ରହିଛି କେତେଗୁଡ଼ିଏ ବନ୍ଦର । ମାଲବାହୀ ଜାହାଜଗୁଡ଼ିକ ଗୋଟିଏ ବନ୍ଦରରୁ ଅନ୍ୟ ବନ୍ଦରକୁ ଯିବା ଯୋଗୁଁ ସେତିକି ଜଳଭାଗ ଅତିକ୍ରମ କରିବାକୁ ଅନେକ ଦିନ ଲାଗିଯାଏ । ଅଗଭୀର ଜଳଭାଗରେ ଜାହାଜର ଗତି ମଧ୍ୟ ଶିଥିଳ ରହେ । ଅଥଚ, ପାସେଞ୍ଜର ଜାହାଜଗୁଡ଼ିକ ଅଳ୍ପସମୟ ମଧ୍ୟରେ ସୁଗଭୀର ଜଳପଥରେ ସେହି ଦୂରତ୍ୱ ପାରି ହୋଇଯାଏ ।

ସନ୍ଧ୍ୟା ପରେ ପରେ ଖାଇବାଘଣ୍ଟି ବାଜିଲା । ଡାଇନିଂ କକ୍ଷରେ ରୋଟି ଡାଲି ଖାଇସାରିଲା ପରେ ଶୋଇବା ସ୍ଥାନକୁ ଆସିଲି । ରାତ୍ରି ପ୍ରାୟ ୯ଟା ବେଳକୁ ସବୁ ଯାତ୍ରୀ ଶୋଇପଡ଼ିଲେ । ଶୀତ ଯୋଗୁଁ ଝରକା ଗାତଗୁଡ଼ିକ ବନ୍ଦ କରିଦିଆଗଲା । ଅନେକ ଲୋକର ଶ୍ୱାସ ପ୍ରଶ୍ୱାସ, ବୁଢ଼ାମାନଙ୍କର ଘନ ଘନ କାଶିବା ଶବ୍ଦ ଓ ଶିଶୁମାନଙ୍କର କ୍ରନ୍ଦନ ଧ୍ୱନି ମଧ୍ୟରେ ନିଦ୍ରାଭୋଗ ଅସମ୍ଭବ ବୋଲି ଜାଣିପାରିଲି । ପ୍ରାୟ ଦୁଇଘଣ୍ଟା ସମୟ ପାଶ ମୋଡ଼ି ମୋଡ଼ି ଛଟପଟ ହେଲାପରେ, ନିଃଶବ୍ଦରେ କମ୍ବଳଟି ଧରି ଡାଇନିଂକୋଠରି ଭିତରକୁ ଚାଲିଗଲି । ସେଠାରେ ବେଞ୍ଚଗୁଡ଼ିକ ଉପରେ କେତେଜଣ ଖଲାସୀ ଆରାମରେ ଶୋଇଥିବା ଦେଖି ମୁଁ ମଧ୍ୟ ଖଣ୍ଡିଏ ବେଞ୍ଚ୍ ଉପରେ କମ୍ବଳ ଘୋଡ଼ି ଶୋଇପଡ଼ିଲି । କିନ୍ତୁ, ବାଘର ଗର୍ଜନ ପରି କାହାରି କାହାରିର ନାକ ଡାକୁଥାଏ । କାନଦୁଇଟିରେ ରୁମାଲ୍ ଭର୍ତ୍ତିକରି କିଛି ମାତ୍ରାରେ ସେହି ଉତ୍କଟ ଶବ୍ଦରୁ ରକ୍ଷା ପାଇଲି । ରାତି ପାହିବା ପୂର୍ବରୁ କୋଟ୍ ପେଣ୍ଟ ପିନ୍ଧି ଓ ନେକ୍‌ଟାଇ ଭିଡ଼ି ଉପର ତାଲାକୁ ଚାଲିଗଲି । ପାଶ୍ଚାତ୍ୟ ପୋଷାକର ଯେ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି, ସେକଥା ଖଲାସୀ ଓ ନୌକରମାନଙ୍କର ସଲାମ୍ ଦେବା ଢଙ୍ଗରୁ ଜାଣିହେଲା । ଏପରିକି, ଉପର ମହଲାରେ ଥିବା ଦୁଇଜଣ ଅମୀର ମଧ୍ୟ ମୋତେ ଦେଖି ସଲାମ୍ ପକାଇଲେ ।

## ବୁଶେର୍

ସର୍ବୋଚ୍ଚ ଡେକ୍ ଉପରେ ଠିଆହୋଇ ସୂର୍ଯ୍ୟୋଦୟର ଶୋଭା ଦେଖିଲାବେଳେ ପାରସ୍ୟଦେଶର ସ୍ଥଳଭାଗ ଦେଖାଯାଉଥାଏ । କିଛି ସମୟ ପରେ ଜାହାଜ ଲାଗିଲା ବୁଶେର୍ ବନ୍ଦରରେ । କେତେଜଣ ଯାତ୍ରୀ ସେଠାରେ ବିଦାୟ ନେଲେ । ପାରସ୍ୟର ସେହି ପ୍ରସିଦ୍ଧ ବନ୍ଦର ଓ ସହର ଦେଖିବାଲାଗି ତଳକୁ ଚାଲିଲି । ପରଦିନ ସକାଳ ପର୍ଯ୍ୟନ୍ତ ଜାହାଜଟି ସେଠାରେ ରହିବ ବୋଲି କୁହାଗଲା । ମୋହନ ସିଂହ ଜିଦ୍ ଧରିଲେ, ସେପରି ଦେଶରେ ସେ ମୋତେ ଏକାକୀ ବାହାରକୁ ଯିବାକୁ ଦେବେନାହିଁ, ସାଙ୍ଗରେ ଦେହରକ୍ଷୀ ଭାବରେ ନିଶ୍ଚୟ ଯିବେ । ତଳେ ପାଶ୍‌ପୋର୍ଟ ଦେଖାଇ ବନ୍ଦର ବାହାରକୁ ଯିବାପାଇଁ ଅନୁମତି ଆଣିଲି ।

ଅତି ପ୍ରାଚୀନ ଓ ଅତି ପ୍ରସିଦ୍ଧ ଦେଶ ହେଉଛି ପାରସ୍ୟ । ଅତୀତ ଯୁଗରୁ ସେହି ଦେଶର ଖ୍ୟାତି ରହିଆସିଛି । ଅଧୁନା, ପାରସ୍ୟର ମାଟିତଳେ ଥିବା ପେଟ୍ରୋଲିୟମ ତୈଳସମ୍ପଦର ଅସରନ୍ତି ଭଣ୍ଡାର ନିମନ୍ତେ ସେହି ଦେଶ ପ୍ରତି ବଡ଼ ବଡ଼ ଶକ୍ତିମାନଙ୍କର ଲକ୍ଷ୍ୟ । ଦେଶ ଶାସନ କରୁଥାନ୍ତି ରାଜା ମହମ୍ମଦ ରେଜା ଶାହ ପହଲଭି । ତାଙ୍କ ଛବିମାନ ବୁଶେର ବନ୍ଦରକୁ ଅଳଂକୃତ କରିଥାଏ । ଜଣେ ନିରଙ୍କୁଶ ଓ ସ୍ୱେଚ୍ଛାଚାରୀ ରାଜା ହେଲେ ସୁଦ୍ଧା ନିଜ ଦେଶକୁ ମଧ୍ୟଯୁଗୀୟ ଅବସ୍ଥାରୁ ଆଧୁନିକତ୍ୱ ଦିଗକୁ ଆଗେଇନେବାକୁ ସେ ଚେଷ୍ଟିତ ଥାନ୍ତି । ଯୁକ୍ତରାଷ୍ଟ୍ର ଆମେରିକା ସହିତ ଘନିଷ୍ଠ ସମ୍ପର୍କ ସ୍ଥାପନପୂର୍ବକ ସେ ତୈଳସମ୍ପଦରୁ ପ୍ରଚୁର ଅର୍ଥ ଆୟ କରୁଥିଲେ । ସହର ଭିତରେ ଚାଲି ଚାଲି ବୁଲିଲି । ରାସ୍ତାର ଫୁଟପାଥ୍ ଉପରେ ଦରିଦ୍ର ଲୋକଙ୍କ ଅବସ୍ଥା ଦେଖି ଜଣାଯାଉଥାଏ, ରାଜା ଓ ଅମୀରମାନେ ଅଗାଧ ଐଶ୍ୱର୍ଯ୍ୟ ଭୋଗ କରୁଥିଲାବେଳେ ସାଧାରଣ ଦେଶବାସୀଙ୍କର ଅବସ୍ଥା ଶୋଚନୀୟ ଥାଏ । ଆଖି ପଡୁଥାଏ ଚାଲିଥିବା ମହିଳାମାନଙ୍କ ଉପରେ । ସାରା ଦେହ କଳା ବୁରଖା ଦ୍ୱାରା ଘୋଡ଼ାଇ ରଖି ସେମାନେ ଚଳାଚଳ କରୁଥାନ୍ତି । ବୁରଖାଗୁଡ଼ିକ ଅତ୍ୟନ୍ତ ମଇଳା ଓ ପୁରୁଣା ଦିଶୁଥାଏ । ଧୋବାଘରକୁ କେବେ ଯାଉଥାଏ କି ନାହିଁ, ତାହା ଜାଣିବା କଷ୍ଟକର । ଆଖି ଉପରେ ଥାଏ କଳା ସୂତାର ଜାଲି । ପୋଷାକପରିଚ୍ଛଦରୁ ଜଣାପଡୁଥାଏ ପାରସିକ ମହିଳାମାନଙ୍କ ସାମାଜିକ ଦୁରବସ୍ଥା । ତେଣେ, ଅଧିକାଂଶ ପୁରୁଷଙ୍କର ଦାଢ଼ି ଓ ଟୋପିରୁ ଜଣାଯାଉଥାଏ, ସେମାନେ ବିଂଶ ଶତାବ୍ଦୀର ଅନେକ ପଛରେ । ସହରର ଅନେକ ସ୍ଥାନରେ ଥାଏ ଜନାକୀର୍ଣ୍ଣ ବଜାର । ବଜାରଗୁଡ଼ିକ ପାଖରୁ କିଛି ଦୂରରେ ଥାଏ ବଡ଼ ବଡ଼ ଦୋକାନ । ସେଥିରେ ଥାଏ ବିଭିନ୍ନ ରଙ୍ଗର କାର୍ପେଟ୍, ଶାଲ ଓ ଭେଲଭେଟ୍ କପଡ଼ା । ବିଦେଶୀ ବୋଲି ଜାଣିପାରି ଦଲାଲମାନେ ମୋତେ ଦୋକାନ ଭିତରକୁ

ଟାଣି ନେଉଥାନ୍ତି । ମୂଲ୍ୟବାନ୍ କାର୍ପେଟ ବିକିବାକୁ ଭଙ୍ଗା ଭଙ୍ଗା ଇଂରାଜୀରେ କଥା କହିବାକୁ ସେମାନେ ଅଭ୍ୟସ୍ତ ଥାନ୍ତି । ସହରର ଘରଗୁଡ଼ିକ ବିଚିତ୍ର ଦିଶୁଥାଏ । ସଂକୀର୍ଣ୍ଣ ଗଳି ପ୍ରଗଳି ଭିତରେ ପଶିଗଲେ ବାହାରର ମୁଖ୍ୟ ରାସ୍ତାକୁ ଫେରିଆସିବା କଷ୍ଟକର ହେଉଥାଏ । ରାସ୍ତା ଉପରେ ଓଟ, ଖଚ୍ଚର ଓ ଗଧଗୁଡ଼ିକର ସଂଖ୍ୟା କିଛି କମ୍ ନଥାଏ ।

ବୁଲି ବୁଲି ପଥଶ୍ରାନ୍ତ ହେଲାପରେ ଗୋଟିଏ ହୋଟେଲରେ ଖାଇବାକୁ ଗଲି । ପାଖରେ ବିଲାତି ମୁଦ୍ରା ଅଛି ଶୁଣି ହୋଟେଲବାଲା ଖୁବ୍ ଖୁସି ହେଲେ । କୁଏତ୍ ପରି ଏଠାରେ ଇଂରେଜବିଦ୍ୱେଷ ମନୋଭାବ ଦେଖିଲି ନାହିଁ । ରୋଟି ଓ ମାଛଭଜା ଖାଇବା ପାଇଁ ମୋହନ ସିଂହଙ୍କ ଆଗ୍ରହ ଦେଖି ସେଥିରେ ମୁଁ ରାଜି ହେଲି । ମାଂସ ଖାଇବାକୁ ଇଚ୍ଛା ହେଲା ନାହିଁ । ଖାଉଥିଲାବେଳେ ଶୁଣିଲି, ପାରସ୍ୟ ଉପସାଗରରୁ ପ୍ରାୟ ଶହେ ପ୍ରକାର ମାଛ ଧରାଯାଏ । କେଉଁ ମାଛ ଆମକୁ ଦିଆଗଲା, ତାହା ଜାଣିହେଲା ନାହିଁ । ମାଛ ତରକାରୀ ରାନ୍ଧିବାରେ ପାରସିକମାନେ ଖୁବ୍ ଧୁରନ୍ଧର । ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରିବା ହେଉଛି ମୁସ୍‌ଲିମ୍ ସଂସ୍କୃତିର ଏକ ବିଶେଷତ୍ୱ ।

ସନ୍ଧ୍ୟାବେଳେ ଜାହାଜକୁ ଫେରିଆସି କିଣି ଆଣିଥିବା ଶୁଖିଲା ଫଳର ପ୍ୟାକେଟ୍‌ଟିଏ ମିଷ୍ଟାର ପେଡ୍ରୋଙ୍କୁ ଉପହାର ଦେଲି । ସେଥିରେ ଥାଏ କିସମିସ୍, ଫିଗ୍ ଓ ଖଜୁରୀ । ବୁଶେରାର ବଜାରଗୁଡ଼ିକରେ ଶୁଖିଲା ଫଳ ଓ ଶୁଖିଲା ମାଛ ଗଦା ଗଦା ଜମା ହୋଇଥିବା ଦେଖିବାକୁ ମିଳେ । ରାତିଟି ବେଞ୍ଚ୍ ଉପରେ କଟିଲା । ତହିଁପରଦିନ ପୂର୍ବାହ୍ନରେ ମାଲ ବୋଝାଇ ଶେଷ କରି ଜାହାଜ ଦୁଇପ୍ରହର ବେଳେ ବନ୍ଦର ଛାଡ଼ିଲା । ପେଡ୍ରୋଙ୍କ ପାଖରୁ ଜାଣିଲି, 'ଉପସାଗରର ରାଣୀ' ସେଠାରୁ ଫେରିବ ପଶ୍ଚିମଦିଗକୁ ଏବଂ ପରବର୍ତ୍ତୀ ବନ୍ଦର ହେବ ଆରବ ଦେଶର ଆଦ୍-ଦମ୍ମାମ୍ । ଦୂରତ୍ୱ ପ୍ରାୟ ୨୦୦ ମାଇଲ । ପାରସ୍ୟ ବିଷୟରେ ସାମାନ୍ୟ କିଛି ଧାରଣା ହେଲାପରେ ଆରବଦେଶ ସମ୍ପର୍କରେ କିଛି ଧାରଣା ହେବ ବୋଲି ଆନନ୍ଦିତ ହେଲି । ମୋହନ ସିଂହ କହିଲେ, ସନ୍ଧ୍ୟାପରେ ତାଙ୍କ ସବା ସାନଭାଇ ହରବିନ୍ଦର୍ ମୋତେ କୁନ୍ଦନଲାଲ ସାଇଗଲଙ୍କ ଗୀତ ଶୁଣାଇବେ । ସୁରସାଗର ସାଇଗଲଙ୍କ ସୁମଧୁର କଣ୍ଠସ୍ୱର ଭାରତର ଅନ୍ୟ କୌଣସି ଗାୟକଙ୍କ ନିକଟରେ ମିଳେ ନାହିଁ ବୋଲି ଜଣାଥାଏ । ସେଦିନ ରାତିରେ ଶିଖ୍‌ଯୁବକଙ୍କ କଣ୍ଠରୁ ସାଇଗଲଙ୍କ ଯେଉଁ କେତୋଟି ଗୀତ ଶୁଣିଲି, ତାହା ଭୁଲିହୁଏ ନାହିଁ ।

## ଆଦ୍ ଦମ୍ମାମ୍

ତହିଁପରଦିନ ଜାହାଜର ଉପର ଡେକ୍‌ରେ ଛିଡ଼ା ରହି ଆରବଭୂମିର ଅଦ୍ଭୁତ ରୂପ ଦେଖିବାକୁ ପାଇଲି । ଉତ୍ତରରୁ ଦକ୍ଷିଣ, ଦିଗନ୍ତବିସ୍ତାରୀ ସୀମାରେଖା ଉପରେ

ବଣଜଙ୍ଗଲ ବା ବୃକ୍ଷଲତାର ଆଭାସ ସୁଦ୍ଧା ନଥାଏ । ଚାରିଆଡ଼େ ମରୁଭୂମି, ସୀମାହୀନ ବାଲୁକାରାଶିର ଭୟପ୍ରଦ ଆକୃତି । ବନ୍ଦର ନିକଟରେ ଜାହାଜ ଲାଗିଲା ବେଳକୁ ଆଦ ଦମ୍ମାମ ସହରଟି ଦୃଷ୍ଟିଗୋଚର ହେଲା । ଅଳ୍ପସଂଖ୍ୟକ ବିକ୍ଷିପ୍ତ ଘରଗୁଡ଼ିକ ମରୁଭୂମି ବକ୍ଷରେ ଛିଡ଼ା ରହିଥାଏ । ବାସସ୍ଥାନଗୁଡ଼ିକ ପାଖରେ ଘାସଟିଏ ସୁଦ୍ଧା ଦେଖିବାକୁ ମିଳିଲା ନାହିଁ । ଜାହାଜରୁ ତଳକୁ ଆସିଲି । ବନ୍ଦର ସୀମାର ବାହାରକୁ ଯାଇ ସହର ଦିଗକୁ ଅଗ୍ରସର ହେଲି । ଏଠାରେ ହାଟ ବଜାର ବା ଜନବସତି ଦେଖାଗଲା ନାହିଁ । ରାସ୍ତା ଉପରେ ଚାଲିଥାନ୍ତି ଗୋଟିଏ ଗୋଟିଏ ଓଟ । ସ୍ଥାନେ ସ୍ଥାନେ ଏକମାତ୍ର ବୃକ୍ଷ ଥାଏ ଖଜୁରୀଗଛ ।

ଗୋଟିଏ ସ୍ଥାନରେ ଆରବ ଶ୍ରମିକମାନେ ରାସ୍ତା ତିଆରି କରୁଥିଲେ । ପାଖରେ ପହଞ୍ଚି ଦେଖିଲି, ଗୋଟିଏ ସାପ ମାରିବା ଲାଗି ପାଟିତୁଣ୍ଡ ଚାଲିଛି । ଲଣ୍ଡନରେ ଦୁଇବର୍ଷ ରହଣି କାଳରେ ସାପରୂପକ ଜୀବଟି କଥା ଭୁଲିଯାଇଥିଲି । ଏଠାରେ ଶୁଣିଲି, ଆରବ ମରୁଭୂମିରେ ଅଛନ୍ତି ଅତ୍ୟନ୍ତ ବିଷଧର ସର୍ପ । ନାନାପ୍ରକାର ବିଛା ମଧ । ରାସ୍ତା ଉପରେ ବଡ଼ ବଡ଼ ମାଛିର ଉପଦ୍ରବ ଦେଖିଲି । ତେଣେ, ଜାନୁଆରୀମାସ ଶୀତଋତୁରେ ସୁଦ୍ଧା ସେଠାକାର ଉତ୍ତାପ ସହ୍ୟ କରିବା କଷ୍ଟକର ହେଲା । ଛାଇ ତଳେ ଆଶ୍ରୟ ନେବାଲାଗି ମରୁ ପାର୍ଶ୍ୱର ଖଜୁରୀଗଛ ନିକଟକୁ ଚାଲିଲି । ଈଷତ୍ ପବନ ଦେହରେ ବାଜିଲାବେଳକୁ ସେଥିସହ ଭାସି ଆସିଲା ଧୂଳିକଣା । ପେଣ୍ଟ୍ ସାର୍ଟ୍ ଉପରେ ଧୂଳି ପଡ଼ିବା ଜାଣିହେଲା ନାହିଁ । କିନ୍ତୁ ମୁଣ୍ଡ ଓ କାନଦୁଇଟିରେ ବାଲି ଭର୍ତ୍ତି ହେଲା । ଆଖିରେ କଳା ଚଷମା ଥିବାରୁ ରକ୍ଷା ପାଇଗଲି । କାନରୁ ବାଲି ବାହାର କରିବା ଦେଖି ମୋହନ ସିଂହ ମତ ପ୍ରକାଶ କଲେ ଯେ, ତାଙ୍କର ପଗଡ଼ି ଯୋଗୁଁ ପଞ୍ଜାବରେ ମଧ କାନରେ ବାଲି ଲାଗେ ନାହିଁ ଏବଂ ଆରବଦେଶର ଲୋକମାନେ ଧଳାକନାରେ ମୁଣ୍ଡ ଘୋଡ଼ାଇ ରଖିବାର କାରଣ ହେଉଛି ମରୁଭୂମିର ବାଲି । ବହିରେ ପଢ଼ିଥିବା ମରୁଭୂମିର ଭୟଙ୍କର ଧୂଳିଝଡ଼ କଥା ସେତେବେଳେ ମୋ ମନେପଡ଼ିଲା ।

ବନ୍ଦରକୁ ଫେରିଆସି ଖଣ୍ଡିଏ ବେଞ୍ଚି ଉପରେ ବସିଲି । ଖଜୁରୀ ପେଟିଗୁଡ଼ିକ ଜାହାଜକୁ ଉଠାଯାଉଥାଏ । ପାଖରେ ବସିଲେ ଜଣେ ବନ୍ଦର କର୍ମଚାରୀ । ସେ ଇଂରାଜୀ ଜାଣିଥିବାରୁ କଥାବାର୍ତ୍ତା କଲି । ମହାପ୍ରତାପୀ ରାଜା, ତାଙ୍କ ଅନେକାନେକ ବେଗମ୍ ବା ଅସଂଖ୍ୟ ସନ୍ତାନସନ୍ତତିଙ୍କ ବିଷୟରେ କିଛି ପଚାରିଦେଲେ ସେ ବିରକ୍ତିଭାବ ଦେଖାଇଲେ । ଅଥଚ, ମକ୍କା ଓ ମଦିନାର ମହତ୍ତ୍ୱ ପାଖରୁ ଆରମ୍ଭ କରି ମରୁଭୂମିର ପର୍ବପାଳି ବିଷୟରେ ଅନେକ କଥା ଅନର୍ଗଳ କହିବାକୁ ଲାଗିଲେ ।

ସମୟ ସମୟରେ ପଙ୍ଗପାଳ ଦଳ ଆକାଶରୁ ମେଘମାଳା ପରି ମାଡ଼ିଆସି ଆରବଭୂମିର ସାମାନ୍ୟ ବୁଦା ଓ ପଡ଼ିଆର ଘାସସବୁ ନିଶ୍ଚିହ୍ନ କରିଦିଅନ୍ତି ବୋଲି ବର୍ଣ୍ଣନା କଲାବେଳେ ତାଙ୍କ ଦୁଃଖର ସୀମା ନଥାଏ ।

ସହରର ଉଭୟ ପାଖରେ ମରୁଭୂମିରେ ଛିଡ଼ା ରହିଥାଏ ଶହ ଶହ ସୁଉଚ୍ଚ ପେଟ୍ରୋଲ୍‌ଟାଙ୍କି । ସବୁଗୁଡ଼ିକର ରଙ୍ଗ ଥାଏ ଧଳା । ସୂର୍ଯ୍ୟକିରଣରେ ସେଗୁଡ଼ିକ ଝଲସିଉଠୁଥାଏ । ସେହି ତୈଳଭଣ୍ଡାର ଥାଏ ରାଜା ଓ ଅମୀରମାନଙ୍କର ଅର୍ଥର ଉତ୍ସ । ଅପର ପକ୍ଷରେ, ଆରବ ଜନସାଧାରଣଙ୍କ ଦାରିଦ୍ର୍ୟ ସେମାନଙ୍କ ବେଶଭୂଷାରୁ ଜାଣିହେଉଥାଏ । ଦେଶର ଜନସଂଖ୍ୟା ଅତ୍ୟନ୍ତ ଅଳ୍ପ ଥିବାରୁ ସ୍ୱେଚ୍ଛାଚାରୀ ରାଜା ଓ ଶୋଷକ ଅମୀରଗୋଷ୍ଠୀ ବିରୋଧରେ ସ୍ୱର ଉତ୍ତୋଳନ କରିବା ଲାଗି ପ୍ରଜାଙ୍କର ସାହସ ନଥାଏ । ପୃଥିବୀର ଅନ୍ୟ କୌଣସି ଦେଶରେ ଆରବ ରାଜାଙ୍କ ପରି ନିଷ୍ଠୁର ଶାସକ ଏ ଯୁଗରେ ମିଳିବେ ନାହିଁ । ଆରବ୍ୟ ଉପନ୍ୟାସରେ ବର୍ଣ୍ଣନା କରାଯାଇଥିବା ହାରେମ୍, ଉଜିର ଓମରା, ଧନରତ୍ନ, ବିଳାସବ୍ୟସନ ଓ ବ୍ୟଭିଚାରଗୁଡ଼ିକ ବଜାୟ ରଖି ଆରବ ରାଜତନ୍ତ୍ର ଅଧୁନା ଯୁକ୍ତରାଷ୍ଟ୍ର ଆମେରିକାର ସାମରିକ ବାହୁଛାୟା ତଳେ ନିରାପଦ ରହିଆସିଛି । ଆରବବାସୀ ଆଧୁନିକ ଆଇନ କାନୁନ ବିଷୟ ଜାଣିନାହାନ୍ତି । ମଧ୍ୟଯୁଗୀୟ ଇସଲାମୀୟ ବ୍ୟବସ୍ଥା ଅନୁସାରେ ଲୋକଙ୍କୁ ଦଣ୍ଡ ଭୋଗିବାକୁ ପଡୁଛି ।

ସନ୍ଧ୍ୟାବେଳେ ଜାହାଜ ବନ୍ଦର ଛାଡ଼ିଲା

**ବାହରେନ୍**

ରାତି ପାହିଲାବେଳକୁ ଜାହାଜ ରହିଥାଏ ବାହରେନ୍ ନାମକ ବନ୍ଦରରେ । ବାହରେନ୍ ହେଉଛି ଗୋଟିଏ କ୍ଷୁଦ୍ର ଦ୍ୱୀପ, ଦୈର୍ଘ୍ୟରେ ମାତ୍ର ୩୦ ମାଇଲ ଓ ପ୍ରସ୍ଥରେ ୧୦ ମାଇଲ । ତା ଚାରିପାଖରେ ରହିଥାଏ ଅନ୍ୟ କେତେଗୋଟି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ । ବହୁପୂର୍ବରୁ ବାଣିଜ୍ୟ-ବ୍ୟବସାୟ ଦୃଷ୍ଟିରୁ ଏହି ସ୍ଥାନର ଖ୍ୟାତି ରହିଆସିଛି । ଏଠାରୁ ଆରବ ଦେଶର ତୈଳସମ୍ପଦ ଅନ୍ୟ ଦେଶଗୁଡ଼ିକୁ ରପ୍ତାନୀ ହେଉଥିବା ଯୋଗୁଁ ଆନ୍ତର୍ଜାତିକ ସ୍ତରରେ ବାହରେନ୍‌ର ଗୁରୁତ୍ୱ ରହିଛି । ପାହାଡ଼ିଆ ଟାଙ୍ଗର ମାଟି ଓ ବାଲୁକାମୟ ତଟଭୂମି ଦ୍ୱାରା ଦ୍ୱୀପଟି ପରିପୂର୍ଣ୍ଣ । ଅନେକ ସ୍ଥାନରେ ଖଜୁରୀଗଛ ଓ କିଛି କିଛି ସବୁଜ ଭୂମି ଦେଖିବାକୁ ମିଳୁଥାଏ । ପେଡ୍ରୋଙ୍କ ପାଖରୁ ଶୁଣିଲି, "ଉପସାଗର ରାଣୀଙ୍କ ମୁଣ୍ଡରେ କ୍ଷତ ଦେଖା ଦେଇଛି, ଚିକିତ୍ସା ଆବଶ୍ୟକ । ସେଥିପାଇଁ ସେଠାରେ ପ୍ରାୟ ଦୁଇଦିନ ରହିବାକୁ ପଡ଼ିପାରେ ।" ଅର୍ଥାତ୍, ଇଞ୍ଜିନ୍ ମରାମତି ଦରକାର ।

ଦିନସାରା ବାହରେନ୍ ବନ୍ଦର ଓ ସହରର ଏଣେ ତେଣେ ବୁଲି ବୁଲି ଦେଖିଲି । ନାନାପ୍ରକାର ମରୁଦେଶୀୟ ଗୁଳ୍ମ ଓ ତୃଣ ଦେଖିବାକୁ ଭଲ ଲାଗୁଥାଏ । ପକ୍କା ବା ପଥରଘର ଥିଲାବେଳେ, ଦରିଦ୍ର ଲୋକମାନଙ୍କର ଖଜୁରୀ ବରଡ଼ା ଚାଳର ମାଟିଘରଗୁଡ଼ିକର ସଂଖ୍ୟା ବେଶି ଥାଏ । ରାସ୍ତାଘାଟ ଓ ଦୋକାନ ବଜାରରେ ମିଶର, ପାରସ୍ୟ, ପାଲେଷ୍ଟାଇନ୍ ଓ ପାକିସ୍ତାନ ପ୍ରଭୃତି ଦେଶର ଲୋକଙ୍କୁ ଦେଖିବାକୁ ମିଳୁଥାଏ । କେତେଜଣ ଭାରତୀୟ ଦୋକାନୀଙ୍କୁ ମଧ୍ୟ ଦେଖିବାକୁ ପାଇଲି । ବଜାରରେ ଖଜୁରୀ, ଡାଳିମ୍ବ ଓ କଦଳୀ ପ୍ରଭୃତି ଫଳ ବିକ୍ରି ହେଉଥାଏ । ଦୋକାନୀମାନେ ଇଂରାଜୀ ଜାଣିଥାନ୍ତି । କେତେକ ସ୍ଥାନରେ ଆମେରିକା ଓ ଇଂଲଣ୍ଡର ଲୋକଙ୍କୁ ଦେଖିପାରିଲି ।

ସେଦିନ ସନ୍ଧ୍ୟାବେଳେ ଉପର ତାଲାର ଡେକ୍ ଉପରେ ବସିଥାଏଁ । ଗୋଟିଏ କେବିନ ଭିତରୁ ଜଣେ ବନ୍ଧୁକଧାରୀ ମୁସଲମାନ ବାହାରି ଆସି ମୋତେ ଚେୟାରରୁ ଉଠିବା ଲାଗି ଇଙ୍ଗିତ ଦେଲେ । ତାଙ୍କ ଚେହେରା ଓ ବ୍ୟବହାର ଦେଖି ମନରେ ବିରକ୍ତି ଆସିଲା । ଭ୍ରୂକ୍ଷେପ ନକରି ମୁଁ ସମୁଦ୍ର ଦିଗକୁ ଚାହିଁରହିଲି । ଅଳ୍ପ ସମୟ ମଧ୍ୟରେ ସେହିପରି ଆଉ ଗୋଟିଏ ଲୋକ ମୋ ଆଗରେ ଛିଡ଼ା ରହି ହାତ ହଲାଇ ଛିଡ଼ା ହେବାକୁ କହିଲେ । ଜଣାଗଲା, ସତେ ଯେପରି ଦୁଇଜଣ ପଗଡ଼ିଧାରୀ ଖଲାସୀ ମୋତେ ଶୂନ୍ୟେ ଶୂନ୍ୟେ ଟେକିନେବା ଲାଗି ଉଦ୍ୟମ କରୁଛନ୍ତି । ଅନ୍ଧକାରାଚ୍ଛନ୍ନ ଡେକ୍ । ପାଖରେ ଅମୀରଙ୍କ କେବିନ୍ । ମୁଁ ତଳକୁ ଚାଲିଯିବା ପାଇଁ ଉଦ୍ୟତ ହେଲାବେଳକୁ ଫାର୍ସୀ ଭାଷାରେ କଥା କହୁଥିବା ଅବସ୍ଥାରେ ସେମାନେ ମୋ ଆଗରେ ଛିଡ଼ା ରହି ରାସ୍ତା ଓଗାଳିଲେ । ମୋତେ ଟେକିନେଇ ସମୁଦ୍ରକୁ ଫିଙ୍ଗିଦେଲେ ମଧ୍ୟ କେହି ଜାଣିପାରିବେ ନାହିଁ ବୋଲି ଆଶଙ୍କା ହେଲା । ଅସଭ୍ୟ ଦୁଇବ୍ୟକ୍ତିଙ୍କ ନିଶ ଓ ବନ୍ଧୁକ ଦେଖି ମୁହୂର୍ତ୍ତ ଲାଗି ସ୍ତମ୍ଭିତ ରହିଲି ।

ସେତିକିବେଳେ ପାଖ କେବିନ ମଧ୍ୟରୁ ଅକସ୍ମାତ୍ ବାହାରି ଆସିଲେ ମିଷ୍ଟାର ପେଡ୍ରୋ । କହିଲେ, ‘‘ଏହି କେବିନ୍‌ରେ ପାରସ୍ୟ ଦେଶର ଜଣେ ଅମୀର ଅଛନ୍ତି । ଏମାନେ ତାଙ୍କର ବଡିଗାର୍ଡ଼ । ଆପଣଙ୍କୁ ଡାକିନେବା ଲାଗି ଅମୀର ପଠାଇଥିଲେ ।’’ କାରଣ ପଚାରିବାରୁ ପେଡ୍ରୋ ଜଣାଇଲେ ଯେ, ମୋତେ ଜଣେ ଉଚ୍ଚଶିକ୍ଷିତ ଭାରତୀୟ ଯୁବକ ବୋଲି ଜାଣି ସେ କଥାବାର୍ତ୍ତା କରିବାକୁ ଚାହାନ୍ତି । ‘‘କିନ୍ତୁ ଅମୀର ଇଂରାଜୀ ଜାଣନ୍ତି ନାହିଁ । ମୁଁ ଫାର୍ସୀ ଭାଷା ଜାଣିଥିବାରୁ ମୋତେ ଅନୁବାଦକ ରୂପେ ରହିବାକୁ ସେ ଅନୁରୋଧ କରିଛନ୍ତି,’’ ଏତକି କହି ପେଡ୍ରୋ ମୋତେ କେବିନ୍ ଭିତରକୁ ନେଇଗଲେ । ମୂର୍ଖ ଦେହରକ୍ଷୀ ପହଲବାନମାନେ ବାହାରେ ରହିଲେ ।

ସୁଶୋଭିତ ସୋଫା ଉପରେ ଅମୀର ବସିଥାନ୍ତି । ତାଙ୍କ ଦୁଇପାଖରେ ଅଲଗା ଚେୟାରରେ ବସିଥାନ୍ତି ଦୁଇଜଣ ସୁଲମ୍ବିତ ଦାଢ଼ିବନ୍ତ ମୋଲ୍ଲା । ଆମକୁ ପ୍ରବେଶ କରିବା ଦେଖି ଅମୀର ଉଠିପଡ଼ିଲେ ଓ ସଲାମ ଜଣାଇ ବସିବାଲାଗି ଚେୟାର ଦେଖାଇଦେଲେ । ଅତରର ବାସନା ମହକିଉଠୁଥାଏ । ଅମୀରଙ୍କ ଦାଢ଼ି ଓ ନିଶ ସୁଦୃଶ୍ୟ ଥାଏ । ସ୍ୱାସ୍ଥ୍ୟବାନ୍ ବ୍ୟକ୍ତି, କିନ୍ତୁ ବୟସ ଜଣାଗଲା ନାହିଁ । ପେଡ୍ରୋଙ୍କୁ ଫାର୍ସି ଭାଷାରେ ଗମ୍ଭୀର ସ୍ୱରରେ ସେ କେତେଗୁଡ଼ିଏ ବାକ୍ୟ ଶୁଣାଇଲେ । ମୋତେ ଚାହିଁ ପେଡ୍ରୋ କହିଲେ, ''ଅମୀରସାହେବ ହିନ୍ଦୁଧର୍ମ ସମ୍ପର୍କରେ କିଛି ଶୁଣିବାକୁ ଚାହାନ୍ତି ।'' ମୁଁ କହିଲି, ''ମହାଶୟଙ୍କ ପ୍ରଶ୍ନର ଉତ୍ତର ଦେବାଲାଗି ଚେଷ୍ଟା କରିବି ।''

ଅମୀରଙ୍କ ତରଫରୁ ଜଣେ ମୋଲ୍ଲା ଯେଉଁ ପ୍ରଶ୍ନଟି ଉତ୍ଥାପନ କଲେ, ତାହାକୁ ଇଂରାଜୀରେ ଅନୁବାଦ କରି ପେଡ୍ରୋ ପଚାରିଲେ, ''ମୁସଲିମ୍‌ମାନେ ଯାହାଙ୍କୁ ଆଲ୍ଲା କହନ୍ତି, ହିନ୍ଦୁମାନେ ତାଙ୍କୁ କୃଷ୍ଣ କହନ୍ତି । ଈଶ୍ୱର ହେଉଛନ୍ତି ଏକ ଏବଂ ଅଦ୍ୱିତୀୟ । ହିନ୍ଦୁମାନେ କହନ୍ତି, ଈଶ୍ୱରଙ୍କର ପୁଅ ଅଛନ୍ତି, ସ୍ୱର୍ଗରେ ଅନେକ ଦେବତା ଅଛନ୍ତି । ଏପରି ଭୁଲ ବିଶ୍ୱାସ କାହିଁକି ?''

ଭାବିଲି, ଉଚ୍ଚତର ହିନ୍ଦୁଦର୍ଶନ ସମ୍ବନ୍ଧରେ ମୁଁ ଯାହା ଇଂରାଜୀରେ କହିବି, ତାହାକୁ ଫାର୍ସୀ ଭାଷାରେ ଅନୁବାଦ କରି ପେଡ୍ରୋ ଯାହା କହିବେ, ସେ ସବୁ ବଧିରମାନଙ୍କ ଆଗରେ ଗୀତ ଗାଇବା ତୁଲ୍ୟ ନିରର୍ଥକ ହେବ । ସୁତରାଂ, ସରଳ ପ୍ରଶ୍ନର ଉତ୍ତର ସହଜ ଭାବରେ ଦେବି ବୋଲି ଠିକ୍ କରି କହିଲି, ''ମୋର ସାମାନ୍ୟ ଗୋଟିଏ ପ୍ରଶ୍ନର ଉତ୍ତର ଦେଲାପରେ ମୁଁ କୃଷ୍ଣଙ୍କର ପୁଅ ବା ସ୍ୱର୍ଗର ଦେବତାମାନଙ୍କ କଥା କହିବି । ପ୍ରଶ୍ନଟି ହେଲା, ମହାପୁରୁଷ ମହମ୍ମଦ ଯେ ସ୍ୱୟଂ ଈଶ୍ୱରଙ୍କର ପ୍ରେରିତ ପୁରୁଷ, ଏହି ପବିତ୍ର ବାର୍ତ୍ତା ଦେବାକୁ ଆସିଥିଲେ ଆଲ୍ଲାଙ୍କର ସ୍ୱର୍ଗୀୟ ବାର୍ତ୍ତାବହ ଗାବ୍ରିଏଲ୍ । ଯଦି ଆଲ୍ଲାଙ୍କର ଖୋଦ୍ ବାର୍ତ୍ତାବହ ଥିଲେ ବା ଅଛନ୍ତି, ତେବେ କୃଷ୍ଣଙ୍କର ପୁତ୍ର ରହିଲେ କ୍ଷତି କ'ଣ ? ସେହିପରି, ଯେତେବେଳେ ଗାବ୍ରିଏଲ୍ ପ୍ରଫେଟ୍ ମହମ୍ମଦଙ୍କୁ ଦିନେ ଗଭୀର ରାତିରେ ସ୍ୱର୍ଗ ଦେଖାଇବାକୁ ନେଇଗଲେ, ସେତେବେଳେ ସ୍ୱର୍ଗର ଦ୍ୱାରପାଳ ଭାବେ ଛିଡ଼ା ଥାନ୍ତି ଇସ୍‌ମାଇଲ୍ । ମହମ୍ମଦ ସ୍ୱଚକ୍ଷୁରେ ଦେଖିଲେ, ଦ୍ୱାରରକ୍ଷୀ ଇସମାଇଲଙ୍କ ଆଦେଶ ପାଳନ ନିମନ୍ତେ ଦଣ୍ଡାୟମାନ ଥାନ୍ତି ବାର ସହସ୍ର ଏଞ୍ଜେଲ ବା ଦେବଦୂତ । ତାହା ଦେଖି ମହମ୍ମଦ ଆଶ୍ଚର୍ଯ୍ୟ ହୋଇ କହିଥିଲେ — କେବଳ ଆଲ୍ଲା ହିଁ ଜାଣନ୍ତି ତାଙ୍କ ସ୍ୱର୍ଗୀୟ ସୈନ୍ୟଶକ୍ତିର ସଂଖ୍ୟା । ଯଦି ମୁସଲିମ୍‌ମାନଙ୍କ ସ୍ୱର୍ଗରେ ଅସଂଖ୍ୟ ସୈନ୍ୟ ରହିପାରନ୍ତି, ତେବେ ହିନ୍ଦୁମାନଙ୍କ ସ୍ୱର୍ଗରେ ଅସଂଖ୍ୟ ଦେବତା ରହିଲେ ଅସୁବିଧା କ'ଣ ? ମୋର ଏହି ପ୍ରଶ୍ନର ଉତ୍ତର ଦେଲା ପରେ ମୁଁ ଅନ୍ୟ କଥା କହିବି ।''

ପେଡ୍ରୋ ଅନୁବାଦ କଲାପରେ, ମୋଲ୍ଲାମାନେ ନୀରବ ରହିଲେ । ସେହି ସୁଯୋଗରେ ମୁଁ ଅମୀରଙ୍କ ଆଡ଼କୁ ଚାହିଁ କହିଗଲି, ‘‘ପ୍ରାଚୀନ ପାରସ୍ୟ ଓ ପ୍ରାଚୀନ ଭାରତର ଆର୍ଯ୍ୟମାନେ ପ୍ରକୃତିର ଭିନ୍ନ ଭିନ୍ନ ଅବୟବ, ଯଥା– ଆକାଶ, ପବନ, ଆଲୋକ, ମେଘ, ସୂର୍ଯ୍ୟ ଓ ଚନ୍ଦ୍ର ଇତ୍ୟାଦି ମଧ୍ୟରେ ସର୍ବଶକ୍ତିମାନ୍ ସ୍ରଷ୍ଟା ବା ଈଶ୍ୱରଙ୍କର ସତ୍ତା ଅନୁଭବ କରିଥିଲେ ଓ ସେହି ପ୍ରାକୃତିକ ଶକ୍ତିମାନଙ୍କୁ ଦେବତା ରୂପେ ବର୍ଣ୍ଣନା କରିଥିଲେ । ହିନ୍ଦୁମାନେ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡର ସ୍ରଷ୍ଟା ଭାବରେ ଏକ ସର୍ବବ୍ୟାପୀ ପରମବ୍ରହ୍ମ ବା ପରମେଶ୍ୱରଙ୍କୁ ଭକ୍ତି କରନ୍ତି । ସୁତରାଂ, ଇସଲାମ ଧର୍ମର ଏକ ଈଶ୍ୱର ଓ ହିନ୍ଦୁ ଦର୍ଶନର ପରମ ବ୍ରହ୍ମ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ।’’ ପେଡ୍ରୋ ଅନୁବାଦ କଲେ ।

ଜଣେ ମୋଲ୍ଲା ପଚାରିଲେ, ‘‘ହିନ୍ଦୁମାନେ ମୂର୍ତ୍ତିପୂଜା କରନ୍ତି କାହିଁକି ?’’ ମୁଁ ପ୍ରଶ୍ନକଲି, ‘‘ମୁସଲମାନମାନେ କାବା ନାମକ ପଥର ସମ୍ମୁଖରେ ପ୍ରାର୍ଥନା କରିବାକୁ ଆସନ୍ତି କାହିଁକି ? କାବା କ’ଣ ଗୋଟିଏପ୍ରକାର ମୂର୍ତ୍ତି ନୁହେଁ ?’’

ପେଡ୍ରୋଙ୍କ ଅନୁବାଦ ଶେଷ ହେଲା ପୂର୍ବରୁ ଅମୀର ମହୋଦୟ ହଠାତ୍ ତାତ୍ତ୍ୱିକ ଚର୍ଚ୍ଚା ବନ୍ଦ କରି ବୈଷୟିକ ଆଲୋଚନା ଆରମ୍ଭ କଲେ । ତାଙ୍କ ବକ୍ତବ୍ୟ ବିଷୟ ଶୁଣିସାରି ପେଡ୍ରୋ ମୋତେ କହିଲେ, ‘‘ଅମୀର ଆପଣଙ୍କ ଭାରତରେ କାର୍ପେଟ ବ୍ୟବସାୟ ଲାଗି ଇଚ୍ଛା କରୁଛନ୍ତି । ବୋମ୍ବେ ସହରରେ ଅଫିସ ଖୋଲିବେ । ସେଥିରେ ଯୋଗଦେଲେ ଆପଣଙ୍କୁ ମୋଟା ଦରମା ଦେବାକୁ ପ୍ରସ୍ତୁତ ।’’

ଧର୍ମଚର୍ଚ୍ଚାରୁ ଗାଲିଚା ଗୋଦାମ ପ୍ରସ୍ତାବ ଶୁଣି ମୁଁ ଆଚମ୍ବିତ ହେଲି । ଅମୀରଙ୍କ ପକ୍ଷରୁ ପ୍ରଶ୍ନ ଆସିଲା, ‘‘ଆପଣ ସରକାରୀ ଚାକିରିରେ କେତେ ଦରମା ପାଆନ୍ତି ?’’ ‘‘ମାସିକ ଦୁଇ ହଜାର’’ ବୋଲି କହିଦେଲାରୁ ଅମୀର ଆଖି ବୁଜି ପେଡ୍ରୋଙ୍କୁ ଜଣାଇଲେ, ‘‘ତାହାର ପାଞ୍ଚଗୁଣ ଦରମା ଦିଆଯିବ ।’’ ମୁଁ ମଧ୍ୟ ଆଖି ବନ୍ଦ କରି ଉତ୍ତର ଦେଲି, ‘‘ଘରେ ଆଲୋଚନା କରି ପରେ ଚିଠିଦ୍ୱାରା ଜଣାଇବି ।’’ ଅମୀର ଉଠିପଡ଼ି ତାଙ୍କ ଠିକଣା ଲେଖାଥିବା କାର୍ଡ଼ଟିଏ କାଢ଼ି ମୋ ହାତରେ ଧରାଇଦେଲେ ଏବଂ ସସମ୍ମାନେ ସଲାମ ଜଣାଇ ବିଦାୟ ଦେଲେ । କେବିନ ବାହାରେ ମିଷ୍ଟର ପେଡ୍ରୋ ଗମ୍ଭୀର ମୁଖରେ ଉପଦେଶ ଦେଲେ, ‘‘Don’t miss this golden opportunity.’’

ପରଦିନ ବାହରେନ୍ ଠାରୁ ପୂର୍ବ ଦିଗକୁ ଜାହାଜ ଚାଲିଲା ।

**ବନ୍ଦର ଆବ୍ବାସ**

ବାହରେନ ଠାରୁ ପ୍ରାୟ ଚାରିଶହ ମାଇଲ ଦୂରରେ ପାରସ୍ୟଦେଶର ବନ୍ଦର ଆବ୍ବାସ ନାମକ ବନ୍ଦରରେ ଜାହାଜ ପହଞ୍ଚିଲାପରେ ସେଠାରେ ଅମୀର ଓ

ତାଙ୍କ ଲୋକମାନେ ଅବତରଣ କଲେ । ବିଦାୟବେଳେ ଅମୀର ମହୋଦୟ ମୋତେ ସଶ୍ରଦ୍ଧ ସଲାମ ଜଣାଇ ମୋର ଉତ୍ତର ଅପେକ୍ଷାରେ ରହିବେ ବୋଲି ଜଣାଇଲେ ।

ମଧ୍ୟଯୁଗର ପାରସ୍ୟ ସମ୍ରାଟ୍ ପ୍ରଥମ ଶାହ ଆବ୍ବାସଙ୍କ ଦ୍ୱାରା ନିର୍ମିତ ଏହି ବନ୍ଦରଟି ତାଙ୍କ ନାମ ବହନ କରୁଛି । ହରମୁଜ ପ୍ରଣାଳୀର ମୁଖଦେଶରେ ଅବସ୍ଥିତ ଏହି ବନ୍ଦର ବାଟେ ଦକ୍ଷିଣପାରସ୍ୟର ବହୁବିଧ ସାମଗ୍ରୀ ବିଦେଶକୁ ରପ୍ତାନୀ କରାଯାଏ । ବନ୍ଦରର ବାହାରକୁ ବୁଲିବାକୁ ଗଲି । ରାସ୍ତାଘାଟରେ ଅନେକ ଆଫ୍ରିକୀୟ ନିଗ୍ରୋଙ୍କୁ ଦେଖିବାକୁ ପାଇଲି । ବନ୍ଦର ଆବ୍ବାସ ଠାରେ ଶେଷ ହେଲା ପାରସ୍ୟ ଉପସାଗର ଓ ଆରମ୍ଭ ହେଲା ଆରବସାଗରର ଗୋଟିଏ ଅଂଶ, ଓମାନ୍ ଉପସାଗର ।

## ମସ୍କାଟ

ସେଠାରୁ ଜାହାଜ ଚାଲିଲା ଦକ୍ଷିଣପୂର୍ବ ଦିଗକୁ, ଓମାନ ଭୂଖଣ୍ଡର ମସ୍କାଟ ନାମକ ବନ୍ଦର ପଥରେ । ସୁବିଶାଳ ଆରବୀୟ ଉପଦ୍ୱୀପର ଦକ୍ଷିଣଭାଗରେ ଓମାନଦେଶ ଅବସ୍ଥିତ । ଦେଶର ପ୍ରାୟ ଅର୍ଦ୍ଧାଂଶ ହେଉଛି ମରୁଭୂମି । ଏହି ଅଦ୍ଭୁତ ଅଞ୍ଚଳରେ ସାରା ବର୍ଷ ଭିତରେ ମାତ୍ର ୪ ଇଞ୍ଚ ପରିମିତ ବୃଷ୍ଟିପାତ ହୁଏ ଏବଂ ଦେଶର କୌଣସି ସ୍ଥାନରେ ନଦନଦୀ ବା ହ୍ରଦ ଇତ୍ୟାଦିର ଚିହ୍ନବର୍ଣ୍ଣ ନଥାଏ । ଶୁଣିବାକୁ ପାଇଲି, ଶୁଷ୍କ ପର୍ବତଗୁଡ଼ିକର ତଳଦେଶର ଭୂଗର୍ଭରେ ସୃଷ୍ଟି ହେଉଥିବା ପାଣିକୁ ସଂକୀର୍ଣ୍ଣ କେନାଲ ଦ୍ୱାରା ଅନ୍ୟତ୍ର ନିଆଯାଇଥାଏ ।

ମସ୍କାଟ ସହର ହେଉଛି ଓମାନର ରାଜଧାନୀ । ଯଦିଚ, ଓମାନ ହେଉଛି ଗୋଟିଏ ସୁବିସ୍ତୀର୍ଣ୍ଣ ଦେଶ, ତଥାପି ତାହାର ଜନସଂଖ୍ୟା ଅତି ନଗଣ୍ୟ । ସହର ମଧ୍ୟରେ ସେଠାକାର ଜନବସତି ଓ ଅଧିବାସୀମାନଙ୍କୁ ଦେଖିଲି । ସ୍ଥାନଟି ଉଣାଅଧିକେ ଜନବହୁଳ । ସ୍ଥାନୀୟ ଆରବ ଲୋକଙ୍କ ସଂଖ୍ୟା ଅନେକ ଥିଲାବେଳେ, ଭାରତୀୟ ବଂଶୋଦ୍ଭବ ବେଲୁଚି ଓ ସିନ୍ଧୀ ମୁସଲମାନମାନଙ୍କ ସଂଖ୍ୟା କିଛି କମ୍ ନଥାଏ । ଏପରିକି, ତିନିଶହ ବର୍ଷ ପୂର୍ବେ ବାଣିଜ୍ୟ-ବ୍ୟବସାୟ ଲାଗି ଆସିଥିବା ଅଳ୍ପସଂଖ୍ୟକ ଗୁଜରାଟୀ ହିନ୍ଦୁଙ୍କ ବଂଶଧରମାନେ ମଧ୍ୟ ସେଠାକାର ସ୍ଥାୟୀ ଅଧିବାସୀ ରୂପେ ବସବାସ କରୁଥିବା କଥା ଜଣେ ହିନ୍ଦୁ ଭଦ୍ରବ୍ୟକ୍ତିଙ୍କ ନିକଟରୁ ଶୁଣିଲି । ସେ ମୋର କୌତୂହଳ ଦେଖି ଆହୁରି ମଧ୍ୟ କହିଲେ ଯେ, ସହରର ସୀମାବର୍ତ୍ତୀ ଅଞ୍ଚଳକୁ ଯାଇପାରିଲେ ଯାଯାବର ଜାତିର ଲୋକମାନଙ୍କୁ ଦେଖିବାକୁ ମିଳିବ । କିନ୍ତୁ ସେତେ ଦୂରକୁ ଯିବାଲାଗି ଇଚ୍ଛା ହେଲା ନାହିଁ । ଓମାନ ମାଟିରେ ପ୍ରଚୁର ଖଜୁରୀ ଉତ୍ପାଦନ କରାଯାଏ । ମାଂସ ଓ ମାଛ ହେଉଛି ଲୋକଙ୍କର ପ୍ରଧାନ ଖାଦ୍ୟ । ଜନବସତି ଗୁଡ଼ିକରେ ଛେଳି, ଓଟ ଓ ଗୋରୁ ରହିଥିବା ଦେଖିଲି । ଘରଦ୍ୱାରରୁ ଲୋକଙ୍କ ଦାରିଦ୍ର୍ୟ ସ୍ପଷ୍ଟ ହୋଇଉଠୁଥାଏ । ଅବଶ୍ୟ, ମୁଁ ଯାଇଥିଲା

ସମୟରେ ଓମାନର ପେଟ୍ରୋଲ୍‌ସମ୍ପଦ ଆବିଷ୍କୃତ ହୋଇ ନଥିଲା । ପରବର୍ତ୍ତୀ ସମୟରେ ସେହି ସମ୍ପଦ ଯୋଗୁଁ ଓମାନର ଅର୍ଥନୈତିକ ରୂପ ବଦଳିଯାଇଛି ।

ମସ୍‌କାଟ ବନ୍ଦରରେ ଗୋଟିଏ ଦିନ ରହିବା ମଧ୍ୟରେ ଜାହାଜରୁ ଅନେକ ଯାତ୍ରୀ ଚାଲିଯାଇଥିଲେ ଓ କେତେକ ନୂତନ ଯାତ୍ରୀ ଉଠିଥିଲେ । ସେମାନେ ଥିଲେ ପାକିସ୍ତାନୀ ବେପାରୀ କିମ୍ୱା ଶ୍ରମିକ । ଜଣେ ହିନ୍ଦୁ ଯୁବକଙ୍କୁ ମଧ୍ୟ ଉଠିବାର ଦେଖିଲି । ବେଶଭୂଷାରୁ ଜଣାଗଲା ସେ ଶିକ୍ଷିତ ଓ ଧନଶାଳୀ । ସାଙ୍ଗରେ ଆଣିଥାନ୍ତି ତିନିଟା ବଡ଼ ବଡ଼ ଚମଡ଼ା ସୁଟକେଶ୍ । ବୋମ୍ବେ ଯିବେ ବୋଲି କହିଲେ, କିନ୍ତୁ ବିଶେଷ କିଛି କଥାବାର୍ତ୍ତା ବା ଆଳାପ ମେଳାପ ପାଇଁ ପ୍ରସ୍ତୁତ ନ ଥିଲେ । ତାଙ୍କର ବ୍ୟବହାର ଦେଖି ମୁଁ ଦୂରତା ରକ୍ଷା କଲି ।

ମସ୍‌କାଟ ଠାରୁ ଜାହାଜ ଚାଲିଲା ସିଧା ପୂର୍ବଦିଗକୁ ଆରବ ସାଗରରେ । ପରବର୍ତ୍ତୀ ବନ୍ଦର ଥାଏ ପାକିସ୍ତାନର କରାଚି । ଭାରତୀୟ ଉପମହାଦେଶ ପାଖେଇ ଆସୁଛି ଜାଣି ମନରେ ଆନନ୍ଦ ଆସୁଥାଏ । ଓମାନ ଉପସାଗରରୁ କରାଚି ପର୍ଯ୍ୟନ୍ତ ଦୂରତ୍ୱ ପ୍ରାୟ ୮ଶହ ମାଇଲ । ଆରବସାଗରରେ ପୂରା ଦୁଇଦିନ ସ୍ଥଳଭାଗ ଦୃଷ୍ଟିଗୋଚର ହେଲା ନାହିଁ । ଜାନୁଆରୀ ମାସ । ଆକାଶ ମୁକ୍ତ ଓ ନିର୍ମଳ ଥାଏ । ଡେକ୍ ଉପରେ ଛିଡ଼ା ରହି ରାତ୍ରିର ଆକାଶକୁ ଚାହିଁରହିଲେ ମନରେ ଭିନ୍ନ ଅନୁଭବ ଉଦ୍ରେକ ହେଉଥାଏ । ନକ୍ଷତ୍ରରାଜି ଓ ଛାୟାପଥର ଶୋଭା ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡର ବିଶାଳତା ଉପଲବ୍ଧି କରିବା ସମ୍ଭବ ହୁଏ ସାଗରବକ୍ଷରେ । ସ୍ଥଳଦେଶରେ ବିଶ୍ୱର ଗୋଲାକାର ଦିଗ୍‌ବଳୟ ଅବଲୋକନ କରିବା ସମ୍ଭବ ନୁହେଁ । ଜଳଭାଗରେ ହିଁ ତାହା ସମ୍ଭବପର ଥାଏ ।

**କରାଚି : ଏକ ଭୟାବହ ଅନୁଭୂତି** — 'ଉପସାଗରର ରାଣୀ' ଲାଗିଲା କରାଚି ବନ୍ଦରରେ । ପାକିସ୍ତାନୀ ଯାତ୍ରୀମାନେ ସେଠାରେ ଅବତରଣ କଲେ । ଆମ ରହିଥିବା ଡେକ୍‌ଟି ପ୍ରାୟତଃ ଖାଲି ପଡ଼ିଲା । ଅଳ୍ପ କେତେଜଣ ଆରବଜାତୀୟ ଲୋକ ବୋମ୍ବେ ଯିବାପାଇଁ ରହିଗଲେ ।

ଅପରାହ୍ନ ଚାରିଟାବେଳେ କରାଚି ସହର ଭିତରକୁ ଯିବାଲାଗି ସଜବାଜ ହେଲି । ମୋହନ ସିଂହ ମଧ୍ୟ ବାହାରି ପଡ଼ିଲେ । କାହିଁକି କେଜାଣି ମୋ ମନରେ ଆଶଙ୍କା ଜାତ ହେଲା ଯେ ଜଣେ ଦାଢ଼ି ଓ ପଗଡ଼ି ଥିବା ଶିଖ୍ ରାତ୍ରିକାଳରେ କରାଚିର ରାସ୍ତାଘାଟରେ ବୁଲିବା ବୋଧହୁଏ ନିରାପଦ ନୁହେଁ । ସେଥିଯୋଗୁଁ ମୋ ସହିତ ଯିବାଲାଗି ତାଙ୍କୁ ବାରମ୍ବାର ମନା କଲି । କିନ୍ତୁ ନଛୋଡ଼ବନ୍ଧା ଭାବରେ ସେ କରାଚି ଦେଖିବେ ବୋଲି ଜିଦ୍ ଧରି ବସିଲେ ।

ଭାରତ ବିଭାଜନ ପରେ ଦଶବର୍ଷ ସମୟ ବିତିଯାଇଥାଏ । ତଥାପି ସାମ୍ପ୍ରଦାୟିକତା ଦୃଷ୍ଟିରୁ ପାକିସ୍ତାନୀ ମୁସଲମାନମାନେ ଭାରତର ହିନ୍ଦୁ ଓ ଶିଖ୍‌ମାନଙ୍କୁ ସେମାନଙ୍କର ଶତ୍ରୁ ବୋଲି ଭାବୁଥିଲେ । ମୋତେ ଜଣାଥାଏ ପାକିସ୍ତାନ ଗଠନକାଳର ମର୍ମାନ୍ତିକ କାହାଣୀ । ସେତେବେଳେ ଭାରତରୁ ପଳାଇ ଯାଇଥିବା କ୍ରୋଧାନ୍ଧ ମୁସଲମାନମାନେ ସମଗ୍ର କରାଚି ସହରରେ ହିନ୍ଦୁ ଓ ଶିଖ୍‌ମାନଙ୍କୁ ସମୂଳେ ନିଃଶେଷ କରିଦେବା ନିମନ୍ତେ ସବୁପ୍ରକାର ଉଦ୍ୟମ କରିଥିଲେ । ପଢ଼ିଥିଲି, କରାଚିର ଗୋଟିଏ ଗୁରୁଦ୍ୱାରା ଭିତରେ ଆଶ୍ରୟ ନେଇଥିବା ଛଅଶହ ଶିଖ ନରନାରୀ ଓ ବାଳକବାଳିକାଙ୍କୁ ରାତିକ ମଧ୍ୟରେ ମୁସଲମାନମାନେ ହାଣିପକାଇଥିଲେ । ପାକିସ୍ତାନର ଜନ୍ମଦାତା ମହମ୍ମଦ ଆଲି ଜିନ୍ନା ସ୍ୱାଧୀନ ପାକିସ୍ତାନରର ସର୍ବୋଚ୍ଚ ଶାସକ ଭାବେ କରାଚି ସହରରେ ପହଞ୍ଚିବା ପରେ ପରେ ସେଠାରୁ ହିନ୍ଦୁ ଓ ଶିଖମାନେ ଘରଦ୍ୱାର ଓ ଧନସମ୍ପତ୍ତି ତ୍ୟାଗ କରି ଭାରତକୁ ପଳାଇ ଆସିଥିଲେ ।

ମୋହନ ସିଂହଙ୍କୁ ବୁଝାଇଲି, "ମୋର ଦାଢ଼ି ନାହିଁ କି ପଗଡ଼ି ନାହିଁ । ମୋ ପୋଷାକରୁ ମୁଁ ହିନ୍ଦୁ କିମ୍ବା ମୁସଲମାନ, ପାକିସ୍ତାନୀ କିମ୍ବା ଇଣ୍ଡିଆନ୍, ସେ କଥା କେହି ଜାଣିପାରିବେ ନାହିଁ । ଅଥଚ, ଶିଖ୍‌ମାନେ ପୃଥିବୀର ଯେଉଁଦେଶକୁ ଗଲେ ସୁଦ୍ଧା ସେମାନେ ଭାରତୀୟ ବୋଲି ସମସ୍ତେ ଜାଣିପାରନ୍ତି । ସୁତରାଂ, ତୁମେ କରାଚି ଦେଖିବା ଆଶା ଛାଡ଼ିଦିଅ ।" ମୋ କଥାର ଅର୍ଥ ସେ ବୁଝିଲେ ନାହିଁ । ବିଶ୍ୱାସ ଆସିଲା, ସ୍ୱାଧୀନତା ଓ ଦେଶବିଭାଜନର ଦଶବର୍ଷ ପରେ ବୋଧହୁଏ ପୂର୍ବ ଶତ୍ରୁତା ଆଉ ନ ଥିବ । ତେଣୁ, ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସାଙ୍ଗରେ ନେଇଗଲି । ପାଶ୍‌ପୋର୍ଟ ଇତ୍ୟାଦି ଯଥାସ୍ଥାନରେ ଦେଖାଇ ବନ୍ଦର ପରିସର ମଧ୍ୟରୁ ବାହାରିଗଲୁଁ ।

ସହରର କେନ୍ଦ୍ରସ୍ଥାନରେ ପହଞ୍ଚିଲାବେଳକୁ ସନ୍ଧ୍ୟା ପ୍ରାୟ ୭ଟା । କୋଳାହଳମୟ ବଜାର ଭିତର ଦେଇ ଚାଲିଥିଲା ବେଳେ ଜଣେ ବୃଦ୍ଧା ମୁସଲମାନ ଭିକାରୁଣୀ ହାତ ପତାଇ ମୋ ଆଗରେ ଛିଡ଼ା ହୋଇପଡ଼ିଲା । ବନ୍ଦରରୁ ଭଙ୍ଗାଇ ଆଣିଥିବା ଅଳ୍ପ କିଛି ପାକିସ୍ତାନୀ ମୁଦ୍ରା ପକେଟରେ ଥାଏ । ସେଥିରୁ ଟଙ୍କାଟିଏ କାଢ଼ିଲାପୂର୍ବରୁ ମୋହନ ସିଂହ ତାଙ୍କ ପକେଟରୁ ଟଙ୍କାଟିଏ କାଢ଼ି ବୁଢ଼ୀହାତରେ ଧରାଇଦେଲେ । ଅକସ୍ମାତ୍ ଚିତ୍କାର ଶୁଭିଲା, "ମାରୋ ଶାଲା ହିନ୍ଦୁସ୍ଥାନୀ ସର୍ଦ୍ଦାରକୋ । ଶାଲା ମେହେରବାନୀ ଦିଖାନେ ଆୟା ।" ସଙ୍ଗେ ସଙ୍ଗେ କେତେଜଣ ଲୁଙ୍ଗି ପିନ୍ଧିଥିବା ମୁସଲମାନ ଆମକୁ ଘେରିଗଲେ । ଜଣେ ଲୋକ ବୁଢ଼ୀକୁ ଧକ୍କାଟିଏ ଦେଇ ତା ହାତରୁ ପଇସା ଛଡ଼ାଇନେଇ ମୋହନ ସିଂହର ପଗଡ଼ି ଭିତରେ ଭର୍ତ୍ତି କଲା । ଆଉ ଦୁଇଜଣ ତାଙ୍କ ହାତଦୁଇଟା ଧରି ଫୁଟ୍‌ପାଥ ପାଖ ପଡ଼ିଆ ଭିତରକୁ

ଟାଣିନେଇ ଯିବା ଦେଖି ମୁଁ ଆତଙ୍କିତ ହୋଇଉଠିଲି । ଅନ୍ଧାର ଭିତରୁ ମୋହନ ସିଂହଙ୍କ ସ୍ୱର ଶୁଭିଲା, "ମାରୋ ମତ୍, ମାରୋ ମତ୍ । ମେ କୁଛ୍ ନେହିଁ କିୟା ।"

ଜୀବନରେ ମାରିଦେବେ କିମ୍ବା କ୍ଷତବିକ୍ଷତ କରିବେ ଭାବି ମୁଁ ହତବୁଦ୍ଧି ହୋଇପଡ଼ିଲି । ପାଖ ଦେଇ ଚାଲିଯାଉଥିବା ଦୁଇଜଣ ଭଦ୍ରବେଶୀ ଲୋକଙ୍କ ହାତ ଧରିପକାଇ ମୁଁ ତତ୍‌କ୍ଷଣାତ୍ ଛାତି ପକେଟରେ ଥିବା ବାରିଷ୍ଟାର ନାସିର୍‌ଉଦ୍ଦୀନ ଖାଁଙ୍କ କାର୍ଡ଼ଖଣ୍ଡିକ କାଢ଼ି ଦେଖାଇଲି ଓ ଇଂରାଜୀରେ କହିଲି, "ଏହି ଶିଖ୍ ସର୍ଦ୍ଦାରଙ୍କୁ ନାସିରଉଦ୍ଦୀନ ସାହେବଙ୍କ ପାଖକୁ ନେଇଯାଉଛି । ସେ ତାଙ୍କର ମକ୍କେଲ । ଭିକାରୁଣୀକୁ ପଇସା ଦେବା ଦୋଷରେ ସେମାନେ ତାଙ୍କୁ ଧରିନେଇଛନ୍ତି ।" ଲୋକ ଦୁଇଜଣ କାର୍ଡ଼ଟିକୁ ଦେଖିଲେ ଓ ମୋହନ ସିଂହଙ୍କ ପାଖକୁ ଦୌଡ଼ିଗଲେ । ମୁଁ ମଧ ଦୌଡ଼ିଲି । ବେଶ୍ କେତେକ ଗୁଣ୍ଡାଶ୍ରେଣୀୟ ଲୋକ ତାଙ୍କୁ ଘେରି ରହିଥାନ୍ତି । ଅନ୍ଧାର ଭିତରେ ଭିଡ଼ ଜମିଯାଇଥାଏ । କର୍କଶ ଭାଷାରେ ଜଣେ ପାଟି କରୁଥିବା ଶୁଣିଲି– "ଶାଲା ସର୍ଦ୍ଦାର କା ଦାଢ଼ି ମେ ଆଗ୍ ଲଗା ଦୋ ।"

ଭଦ୍ରବ୍ୟକ୍ତି ଦୁଇଜଣ ଦୁର୍ବୃତ୍ତମାନଙ୍କୁ ବୁଝାଇ ଶୁଝାଇ ମୋହନ ସିଂହଙ୍କୁ ମୃତ୍ୟୁମୁଖରୁ ଉଦ୍ଧାର କଲେ । ଟ୍ୟାକ୍ସି ଡାକି ମୁହୂର୍ତ୍ତ ମଧରେ ସେଠାରୁ ପଳାଇଆସିଲୁଁ । ବାଟରେ ସେ ନୀରବ ନିଷ୍ପନ୍ଦ ଭାବରେ ମୁଣ୍ଡ ତଳକୁ କରି ବସିରହିଲେ । କଥା କହିବା ଶକ୍ତି ସେତେବେଳେ ତାଙ୍କର ନଥିଲା । ତାଙ୍କ ଶାରୀରିକ ଯନ୍ତ୍ରଣା କଥା ବୁଝିପାରି ମୁଁ ମଧ ନିର୍ବାକ୍ ରହିଲି । ଡେକ୍ ଉପରେ ତାଙ୍କୁ ବିଛଣା ଧରାଇଲାବେଳେ ଦେଖିପାରିଲି, ଆଖିପାଖ କପାଳ ଓ ଗାଲଦୁଇଟା ଫୁଲି ରହିଛି, ଦାଢ଼ି ଓ ମୁଣ୍ଡର ବାଳ ଅସ୍ୱାଭାବିକ ଦିଶୁଛି । ଭାବିଲି, କରାଚିର ରାଜପଥରେ ସେଦିନ ଆମେ ଦୁଇଜଣ ଭାରତୀୟ ହୋଇଥାନ୍ତୁ ପାକିସ୍ତାନୀମାନଙ୍କର ଚିରସ୍ଥାୟୀ କ୍ରୋଧର ଅନ୍ୟତମ ଶିକାର ।

ଏଠାରେ ଗୋଟିଏ କଥା ଉଲ୍ଲେଖ କରୁଛି । ଏହି ଦୁର୍ଭାଗ୍ୟଜନକ ଘଟଣାର ଦୀର୍ଘ ୨୪ ବର୍ଷ ପରେ ଭାରତର ଶେଷ ବ୍ରିଟିଶ ବଡ଼ଲାଟ ଲର୍ଡ଼ ଲୁଇ ମାଉଣ୍ଟବ୍ୟାଟେନଙ୍କ ଜାମାତା ଓ ଜ୍ୟେଷ୍ଠା କନ୍ୟାଙ୍କ ସ୍ୱତନ୍ତ୍ର ଅନୁମତିକ୍ରମେ ଯେତେବେଳେ ଭାରତର ସ୍ୱାଧୀନତା ଓ ଦେଶବିଭାଜନ ସମ୍ପର୍କରେ ବଡ଼ଲାଟଙ୍କ ବ୍ୟକ୍ତିଗତ କାଗଜପତ୍ର ଦେଖିବାକୁ ପାଇଲି, ସେଥିରୁ ଅନେକାନେକ ଦୁଃଖଦାୟକ ଘଟଣାମାନ ଜାଣିବାକୁ ମିଳିଲା । ପଞ୍ଜାବ ପ୍ରଦେଶକୁ ଭାରତ ଓ ପାକିସ୍ତାନ ମଧରେ ବଣ୍ଟନ କଲାବେଳେ ମୁସଲମାନବହୁଳ ପଶ୍ଚିମ ପଞ୍ଜାବର ଧର୍ମାନ୍ଧ ଆତତାୟୀମାନେ ସେଠାକାର ଶିଖମାନଙ୍କ ଦାଢ଼ିରେ ପେଟ୍ରୋଲ ଢାଳି ନିଆଁ ଲଗାଇ ଦେଉଥିଲେ । ତାହା ଜାଣି, ହିନ୍ଦୁବହୁଳ ପୂର୍ବ

ପଞ୍ଜାବର ଶିଖ୍‌ମାନେ ସେଠାକାର ମୁସଲମାନମାନଙ୍କ ଦାଢ଼ିରେ ନିଆଁ ଲଗାଇ ପ୍ରତିଶୋଧ ନେଉଥିଲେ । ଏହି ଚାଞ୍ଚଲ୍ୟକର ବିବରଣୀ ପଢ଼ିଲାବେଳେ ମୋର ମନେପଡ଼ିଥିଲା ୧୯୫୭ ମସିହା ଜାନୁଆରୀ ମାସରେ କରାଚି ରାସ୍ତାକୋଣରେ ଶୁଣିଥିବା ସେହି ଆତଙ୍କପ୍ରଦ ବାକ୍ୟଟି— ‘‘ସର୍ଦ୍ଦାରକା ଦାଢ଼ି ମେ ଆଗ୍ ଲଗା ଦୋ ।’’

ତହିଁପରଦିନ ଜାହାଜ ଚାଲିଲା କରାଚି ଠାରୁ ବୋମ୍ବେ । ତାହା ଥିଲା ଆମ ଜଳଯାତ୍ରାର ଶେଷପର୍ବ । ଦୁଇଦିନ ପରେ ଭାରତର ପଶ୍ଚିମ ଉପକୂଳ ଦୃଷ୍ଟିଗୋଚର ହେଲା ।

**ବୋମ୍ବେ**— ଜାନୁଆରୀ ୧୮ ତାରିଖ ଅପରାହ୍ନରେ ବୋମ୍ବେ ବନ୍ଦରର ଗୋଟିଏ ଅବହେଳିତ କୋଣରେ ମାଲ୍‌ଜାହାଜ ଲାଗିଲା । ପର୍ତ୍ତୁଗୀଜ ବନ୍ଧୁ ପେଡ୍ରୋଙ୍କ ନିକଟରୁ ବିଦାୟ ନେଇ ଶିଖଭାଇମାନଙ୍କ ସାଙ୍ଗରେ ଜିନିଷପତ୍ର ଧରି ତଳକୁ ଆସିଲି । ଦଉଡ଼ି ବଦଳରେ ଏଠାରେ ଲାଗିଥାଏ କାଠର ଶିଡ଼ି । ଆଗରେ ସଦର୍ପେ ଚାଲିଥାନ୍ତି ମସ୍କାଟ ଠାରେ ଉଠିଥିବା ହିନ୍ଦୁ ଯୁବକ । ତାଙ୍କୁ ସ୍ୱାଗତ କରିବା ଉଦ୍ଦେଶ୍ୟରେ ଫୁଲମାଳ ସହ କେତେଜଣ ଭଦ୍ରବ୍ୟକ୍ତି ଅପେକ୍ଷା କରିଥିବା ଦେଖିଲି । କୁଲିମାନେ ତାଙ୍କର ବଡ଼ ବଡ଼ ସୁଟ୍‌କେଶଗୁଡ଼ିକ ମୁଣ୍ଡରେ ରଖି ତଳକୁ ଆସିଲାକ୍ଷଣି କାଷ୍ଟମସ୍ ଅଫିସାରମାନେ ତାଙ୍କୁ ସସମ୍ମାନେ ବାଟ ଛାଡ଼ିଦେଲେ । ବୁଝିଲି, ସେ ଖୋଦ୍ ମୁଖ୍ୟମନ୍ତ୍ରୀଙ୍କର ଭଣଜା ।

‘ଉପସାଗରର ରାଣୀ’ଙ୍କ ରୂପ ପ୍ରତି ଶେଷଥର ଲାଗି କିଛିସମୟ ଚାହିଁ ଦେଖିଲି । ଉପର ଡେକ୍‌ରୁ ପେଡ୍ରୋ ହାତ ହଲାଉଥାନ୍ତି । ଆମ ପାଞ୍ଚଜଣଙ୍କୁ କାଷ୍ଟମ୍‌ସ୍ କକ୍ଷ ମଧ୍ୟରେ ଧାଡ଼ି ବାନ୍ଧିବାକୁ ହେଲା । ମୋ ସୁଟ୍‌କେଶ୍ ଫିଟାଇ ତନ୍ନ ତନ୍ନ କରି ଦେଖାଗଲା । କୋଡାକ୍ କ୍ୟାମେରାଟି ଉପରେ ଟ୍ୟାକ୍ସ ଭିଡ଼ିଲାବେଳକୁ ରସିଦ୍‌କାଗଜ ଦେଖାଇଲି, ଦାମ୍ ମାତ୍ର ୬ ପାଉଣ୍ଡ୍ । ଛାଡ଼ ପାଇଲି । ତା ପରେ, ଶିଖମାନଙ୍କ ସୁଟକେଶ୍‌ଗୁଡ଼ିକ ଛିନ୍ନ ଭିନ୍ନ କରି ସାର୍ଚ୍ଚ କରାଗଲା । ପୁରୁଣା ଲୁଗା ଓ କମ୍ବଳ ଛଡ଼ା ଆଉ କିଛି ନଥାଏ । କିନ୍ତୁ ଜଣେ ଭାଇଙ୍କ ହାତରେ ଥାଏ ପୁରୁଣା ଚଦରରେ ବନ୍ଧା ଯାଇଥିବା ସେମାନଙ୍କ ପିତାଙ୍କର ପୁରୁଣା ରେଡ଼ିଓଟିଏ । ସ୍ମୃତିଚିହ୍ନ ଭାବେ ଘରେ ରଖିବା ପାଇଁ ଆଣିଥାନ୍ତି । ଅଫିସାରମାନେ ହିସାବ କଷିବାକୁ ଲାଗିପଡ଼ିଲେ । ଟ୍ୟାକ୍ସ ଦେବାକୁ ପଡ଼ିବ ବୋଲି ଧମକ ଦିଆଗଲା । ଅଳ୍ପଦୂରରେ ବସିଥିବା ଜଣେ ଉଚ୍ଚପଦସ୍ଥ କାଷ୍ଟମ୍‌ସ୍‌ବାଲାଙ୍କ ଆଗକୁ ଯାଇ ମୁଁ ପାଟିକରି କହିଲି, ‘‘ଦରିଦ୍ର ଚାରିଜଣ କୃଷକଙ୍କର ପନ୍ଦରବର୍ଷର ପୁରୁଣା ରେଡ଼ିଓ ଉପରେ ଆପଣମାନଙ୍କର ଆଖି ପଡ଼ିଗଲା, ଅଥଚ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଭଣଜାର ଚାରିଟା ସୁଟ୍‌କେଶ୍

ଫିଟାଇବାକୁ ସାହସ ହେଲାନାହିଁ । ଆମେ ଟ୍ୟାକ୍ସ ଦେବୁ ନାହିଁ । ଏହିଠାରୁ ସେହି ମନ୍ତ୍ରୀଙ୍କୁ ଫୋନ୍ କରି ଡାକିବି । ସେ ଆସି ବିଚାର କରିବେ ।'' ମୋର ଉତ୍ତେଜିତ ମନୋଭାବ ଦେଖି ଅଫିସାର ଆଦେଶ ଦେଲେ, ''Let them go.''

ଦୁଇବର୍ଷ ବିଦେଶରେ ବିତାଇଲା ପରେ ଅତିଶୀଘ୍ର ଘରେ ପହଞ୍ଚିବା ଲାଗି ମନ ଅସ୍ଥିର ହେଉଥାଏ । କିନ୍ତୁ ଘର ତ ଅନେକ ଦୂରରେ । ବନ୍ଦର ପାଖରୁ ବ୍ୟାଙ୍କ୍‌କୁ ଯାଇ ବିଲାତି ପାଉଣ୍ଡ୍ ବଦଳ କରିବାକୁ ହେଲା । ସେହିଠାରୁ ଶିଖମାନଙ୍କୁ ବିଦାୟ ଦେବାକୁ ଚାହିଁଲି । ସେମାନେ ଭିକ୍ଟୋରିଆ ଟାରମିନାସ୍ ରେଲଷ୍ଟେସନ ପର୍ଯ୍ୟନ୍ତ ସାଙ୍ଗରେ ଯିବାକୁ ଅଡ଼ିଧରିଲେ । ମୋ ପରି ସେମାନଙ୍କୁ ମଧ୍ୟ ରେଳଯାତ୍ରା ନିମନ୍ତେ ଟିକଟ କିଣିବାକୁ ହେବ, ସେଥିପାଇଁ ସାହାଯ୍ୟ ଲୋଡ଼ିଲେ । କଲିକତାଗାମୀ ମୋ ଟ୍ରେନ୍ ଥାଏ ତହିଁ ପରଦିନ ସନ୍ଧ୍ୟାରେ ଓ ପଞ୍ଜାବଗାମୀ ସେମାନଙ୍କ ଟ୍ରେନ୍ ଥାଏ ରାତିରେ । ଟିକଟକିଣା ଶେଷ କରି ଷ୍ଟେସନ ପାଖରେ ଗୋଟିଏ ଛୋଟ ହୋଟେଲକୁ ଚାଲିଲି । ସେମାନେ କୌଣସି ଏକ ଗୁରୁଦ୍ୱାରାରେ ରାତି କଟାଇବେ ବୋଲି କହିଲେ । ହୋଟେଲ ସମ୍ମୁଖରେ ଅଶ୍ରୁପୂର୍ଣ୍ଣ ନୟନରେ ମୋ ନିକଟରୁ ବିଦାୟ ନେଇ ଶିଖ୍‌ଭାଇମାନେ ଜନଗହଳି ମଧ୍ୟରେ ଅଦୃଶ୍ୟ ହେଲେ । ଗଲାବେଳେ ମୋହନ ସିଂହ କହିଥିଲେ, ''ଜୀବନରେ ଆପଣଙ୍କୁ ଭୁଲିବି ନାହିଁ । ଆପଣଙ୍କ ଯୋଗୁଁ ମୋ ପ୍ରାଣ ରହିଗଲା ।'' ସନ୍ଧ୍ୟା ଆସିଯାଇଥାଏ ।

ଜଳଖିଆ ଖାଇସାରି ମୋ ରୁମ୍ ଭିତରେ ଟେବୁଲ୍ ଉପରେ ସୁଟକେଶ୍ ଓ ବିଲାତି ହ୍ୟାଣ୍ଡବ୍ୟାଗ୍‌ଟି ରଖି ବିଛଣା ଉପରେ ଗଡ଼ିପଡ଼ିଲି । ଅବଶ ଦେହ ଦରକାର କରୁଥାଏ ନିଦ । ହୋଟେଲ ମାଲିକଙ୍କୁ କହିଲି, ''ରାତିରେ ମୁଁ ଖାଇବି ନାହିଁ । ମୋ ନିଦ ଭଙ୍ଗାଇ କେହି ଡାକିବେ ନାହିଁ । ସକାଳେ ବିଳମ୍ବରେ ଉଠିବି । ମୋ ଟ୍ରେନ୍ ସନ୍ଧ୍ୟାରେ ।'' ସେ ସତର୍କ କରିଦେଲେ, ''ଭଲ ଭାବରେ ଭିତରୁ ଦରଜା ବନ୍ଦ କରି ଶୋଇବେ । ହ୍ୟାଣ୍ଡବ୍ୟାଗ୍‌ଟି ମୁଣ୍ଡ ପାଖରେ ରଖନ୍ତୁ ।''

ସକାଳ ୮ଟା ବେଳେ ନିଦ ଭାଙ୍ଗିଲା । ସାରାରାତିର ସେହି ସୁଖନିଦ୍ରା ଜୀବନରେ ବୋଧହୁଏ ଆଉ କେବେ ଭୋଗ କରି ନଥିଲି । ଜଳଖିଆ ଖାଇବାକୁ ଗଲାବେଳେ ହୋଟେଲ ମାଲିକ ମୋ ହାତକୁ କାଗଜବନ୍ଧା ପ୍ୟାକେଟ୍‌ଟିଏ ଧରାଇଦେଇ କହିଲେ, ''ଜଣେ ଶିଖ୍ ଭଦ୍ରଲୋକ ପ୍ରତ୍ୟୁଷରେ ଦେଖା କରିବାକୁ ଆସିଥିଲେ । ଆପଣ ଶୋଇଛନ୍ତି ଶୁଣି ଚାଲିଗଲେ । ପ୍ୟାକେଟ୍‌ଟି ଆପଣଙ୍କ ସ୍ତ୍ରୀଙ୍କୁ ଦେବାଲାଗି ଅନୁରୋଧ କରିଛନ୍ତି । ତାଙ୍କ ନାମ ମୋହନ ସିଂହ ।'' ଭିତରେ ଥିଲା ମୂଲ୍ୟବାନ ଓ

ସୁନ୍ଦର ବେନାରସୀ ଶାଢ଼ୀ । ମୋ ହାତରେ ଦେଇଥିଲେ ମୁଁ କଦାପି ନେଇ ନଥାନ୍ତି ଅନୁମାନ କରି ସେ ଅଲକ୍ଷ୍ୟରେ ଉପହାରଟି ରଖିଯାଇଛନ୍ତି ବୋଲି ବୁଝିପାରିଲି । ଘରେ ପହଞ୍ଚି ଚିଠି ଦେବି ବୋଲି ସୁଟ୍‌କେଶ୍ ଖୋଜିଲା ବେଳକୁ ତାଙ୍କ ଠିକଣାଟି ପାଇଲି ନାହିଁ । ମଇଳା ପୁରୁଣା କାଗଜଖଣ୍ଡିକ ସେ ଲଣ୍ଡନ ଛାଡ଼ିଲାବେଳେ ମୋ ହାତରେ ଦେଇଥିଲେ । ଭବିଷ୍ୟତରେ ଯୋଗାଯୋଗ ରଖିବା ସମ୍ଭବ ହେଲାନାହିଁ ସତ୍ୟ, କିନ୍ତୁ ସେହି ରୋମାଞ୍ଚକର ଯାତ୍ରାର ସ୍ମୃତି-ପଟରେ ଚାରି ଶିଖ୍‌ଭାଇଙ୍କର ମୁଖମଣ୍ଡଳ ସବୁଦିନ ପାଇଁ ରହିଯାଇଛି ।

ଏହିଠାରେ ଗୋଟିଏ କଥା ଲେଖିବି । ଇଂଲଣ୍ଡରେ ଦୁଇବର୍ଷ ରହଣି କାଳରେ ସେଠାକାର ପ୍ରଭାବ କିପରିଭାବରେ କାର୍ଯ୍ୟ କରିଥିଲା, ଯାହାକି ସ୍ୱଦେଶକୁ ଫେରିଲାପରେ ମଧ୍ୟ ବଳବତ୍ତର ଥିଲା, ସେହି ବିଷୟର ନମୁନା । ସେ ଦେଶରେ ପ୍ରାୟ ସବୁ ଜିନିଷର ଦାମ ସବୁ ଦୋକାନରେ ସମାନ । ଯେଉଁ ମୂଲ୍ୟ ଲେଖାଥାଏ, ତାହା ହିଁ ଦେବାକୁ ହୁଏ । ଦର କଷାକଷିର ଆବଶ୍ୟକତା ନଥାଏ । ଦୋକାନୀମାନଙ୍କୁ ସନ୍ଦେହ କରିବାର ଅବକାଶ ମଧ୍ୟ ନଥାଏ । ବୋମ୍ବେ ସହରରେ ଯେଉଁ କେତେଘଣ୍ଟା ରହିଲି, ସେଥିମଧ୍ୟରେ ପୁଅ ଝିଅ ଓ ଭଣଜାମାନଙ୍କ ପାଇଁ କିଛି କିଛି ଜିନିଷ କିଣିବି ବୋଲି ବାହାରିଗଲି । ଫୁଟ୍‌ପାଥ ଉପରେ ନାନାପ୍ରକାର ମନୋହରି ସାମଗ୍ରୀ ଦେଖି ଖୁସି ହେଲି । ବିଲାତି ହ୍ୟାଣ୍ଡବ୍ୟାଗ୍‌ଟିରେ ଟଙ୍କା ଥାଏ । ଗୋଟିଏ ଦୋକାନରୁ ଭିନ୍ନ ଭିନ୍ନ ରଙ୍ଗର ଦଶଟି ଫାଉଣ୍ଟେନ ପେନ୍ କିଣିପକାଇଲି । ପ୍ରତ୍ୟେକଟି କଲମର ଦାମ ମାତ୍ର କୋଡ଼ିଏ ଟଙ୍କା । ଖୁବ୍ ଶସ୍ତା ବୋଲି ମନେହେଲା । ଫୁଟ୍‌ପାଥିରେ ଆଉ ଗୋଟିଏ ଦୋକାନରେ ଶାଲ୍ ଓ ମାଫଲାର୍ ବିକ୍ରି ହେଉଥାଏ । ଚାରିଟି ଶାଲ କିଣିଲି । ପ୍ରତ୍ୟେକଟି ମାତ୍ର ପଚାଶ ଟଙ୍କା । ଥଳିରେ ଭର୍ତ୍ତିକରି ଦିନ ୧୨ଟା ବେଳେ ହୋଟେଲରେ ଫେରି ପହଞ୍ଚିଲି । ଜାନୁଆରୀ ମାସ ହେଲେ ମଧ୍ୟ ପ୍ରଚଣ୍ଡ ଗରମ । କୋଟ୍‌ଟି କାଢ଼ି ପକାଇ ମେନେଜାରବାବୁଙ୍କ ଟେବୁଲପଙ୍ଖା ପାଖରେ ବସିପଡ଼ି ତାଙ୍କୁ କହିଲି, "ଲଣ୍ଡନ ତୁଳନାରେ ବୋମ୍ବେରେ ସବୁ ଜିନିଷ ଅନେକ ଶସ୍ତାରେ ମିଳୁଛି ଦେଖି ଗର୍ବ ଆସୁଛି ।" ମେନେଜାରବାବୁଙ୍କୁ କଲମ ଓ ଶାଲ୍ ଦେଖାଇଲି । ଦୁଃଖିତ ମନରେ ସେ କହିଲେ, "କଲମର ମୂଲ୍ୟ କୋଡ଼ିଏଟଙ୍କା ନୁହେଁ, ପାଞ୍ଚ ଟଙ୍କା । ଶାଲ୍‌ର ଦାମ ପଚାଶ ନୁହେଁ, ଖୁବ୍ ବେଶିରେ ପଚିଶ୍ । ଉଲ ନୁହେଁ, ସୂତା । ଆପଣଙ୍କ କୋଟ୍, ପେଣ୍ଟ ଓ ଟାଇ ଏବଂ ବିଲାତି ହ୍ୟାଣ୍ଡବ୍ୟାଗ୍ ଦେଖି ସଦ୍ୟ ବିଦେଶରୁ ଫେରିଛନ୍ତି ବୋଲି ଜାଣିବାଶକ୍ତି ଏଠାକାର ଫୁଟ୍‌ପାଥ୍ ଦୋକାନୀମାନଙ୍କ ନିକଟରେ ରହିଛି । ଗୁଡ଼ାଏ ଟଙ୍କା ପାଣିରେ ପକାଇଦେଲେ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁରହିବା ଦେଖି ସେ କହିଲେ, "Bombay is not London."

**ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ** – ବୋମ୍ବେରୁ କଲିକତା, ସେଠାରୁ ଖଡ଼ଗପୁର ପର୍ଯ୍ୟନ୍ତ ଟ୍ରେନ୍ ଯୋଗେ, ଖଡ଼ଗପୁରଠାରୁ ବାସ୍ ଯୋଗେ ସାତମାଇଲ ନାମକ ସ୍ଥାନକୁ, ସେଠାରୁ ନୌକାଯୋଗେ ମିରଗୋଦା ଏବଂ ସେଠାରୁ ଦଶମାଇଲ ବାଟ ଚାଲି ଚାଲି ଶେଷରେ ଅପ୍ରତ୍ୟାଶିତ ଭାବେ ଦିନେ ରାତି ୧୧ଟା ବେଳେ ଗାଁ ଘରେ ପହଞ୍ଚିଲି । ବାପା ମା'ଙ୍କର ଆନନ୍ଦର ସୀମା ନଥାଏ । ଦୁଇବର୍ଷ ମଧ୍ୟରେ ଝିଅ ପୁଅ କିଛି ବଢ଼ିଯାଇଥିବା ଦେଖିଲି । ଗାଁ ଲୋକ ଓ ଆତ୍ମୀୟମାନେ ଦଳ ଦଳ ହୋଇ ଦେଖିବାକୁ ଆସିଲେ । ମାଇନର ପଢ଼ିଥିବା ଦୂରବର୍ତ୍ତୀ ସ୍କୁଲରେ ସମ୍ବର୍ଦ୍ଧନା ସଭାରେ ଓ ପାର୍ଶ୍ୱବର୍ତ୍ତୀ ଶ୍ରଦ୍ଧାପୁର ଠାରେ ଜନସମାବେଶରେ ବିଦେଶ ଅନୁଭୂତି ବର୍ଣ୍ଣନା କରିବାକୁ ହେଲା । ସେସମୟର ବିଲାତ-ଫେରନ୍ତାମାନଙ୍କର ଯେ ସ୍ୱତନ୍ତ୍ର ସାମାଜିକ ସ୍ୱୀକୃତି ଓ ମର୍ଯ୍ୟାଦା ଥାଏ, ତାହା ଅନୁଭବ କରିପାରିଲି ।

ଭାବିଥିଲି, ପୁରୀ କଲେଜରେ ଚାକିରିରେ ଯୋଗଦେବି । କାରଣ, ସେହିଠାରୁ ଛୁଟିନେଇ ପଢ଼ିବାକୁ ଯାଇଥିଲି । କିନ୍ତୁ ଘରେ ପହଞ୍ଚିବା ପୂର୍ବରୁ ଡି.ପି.ଆଇ.ଙ୍କ ଆଦେଶ ଆସିଯାଇଥାଏ କଟକ ରେଭେନ୍ସା କଲେଜରେ ଯୋଗଦେବା ଲାଗି । ବୁଝିପାରିଲି, ଇତିହାସରେ ପ୍ରଥମ ଲଣ୍ଡନ ପିଏଚ୍.ଡ଼ି. ଡିଗ୍ରୀଧାରୀ ଲେକ୍‌ଚାରର ରୂପେ ମୋ ସ୍ଥାନ ହେଉଛି ରେଭେନ୍ସା କଲେଜ, ଯେହେତୁ ସେଠାରେ ଏମ୍.ଏ. ପାଠ୍ୟକ୍ରମ ରହିଥାଏ ।



ପାରସ୍ୟ ଉପସାଗରରେ ମାଲବାହୀ ଜାହାଜ ଡେକରେ ଲେଖକ



ଏଥେନ୍ସ ନଗର

# ରେଭେନ୍ସା କଲେଜରେ ଅଧ୍ୟାପନା
# ୧୯୫୭ – ୧୯୫୯



## ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ

### ରେଭେନ୍ସାରେ ଥିଲାବେଳର କେତୋଟି ସ୍ମୃତି

୧୯୫୭ ଜାନୁଆରୀ ଶେଷବେଳକୁ ରେଭେନ୍ସା କଲେଜରେ ଲେକ୍ଚାରର ରୂପେ ଯୋଗଦେଲି । ଅଧିକାଂଶ ଅଧ୍ୟାପକ ଥିଲେ ମୋ ଠାରୁ ସିନିଅର । କେତେକ ଥିଲେ ମୋର ଶିକ୍ଷାଦାତା । ମୁଁ ଯୋଗଦେବାର ଅଳ୍ପ ସମୟ ପରେ ଡକ୍ଟର ସଦାଶିବ ମିଶ୍ର କଲେଜର ଅଧ୍ୟକ୍ଷ ହେଲେ । ମୋତେ ଯଥେଷ୍ଟ ଶ୍ରଦ୍ଧା କରୁଥାନ୍ତି । ଗ୍ରୀଷ୍ମଛୁଟିର ଆରମ୍ଭ ପୂର୍ବରୁ ଦିନେ କହିଲେ, "ଶୀତପ୍ରଧାନ ଇଂଲଣ୍ଡରେ ଦୁଇବର୍ଷ ରହିଆସିଲ, ଏବେ ହିମାଳୟ ପାଖରେ ତିନିସପ୍ତାହ ରହିବ ଯାଅ । ନୈନୀତାଲ ଠାରେ ଆମେରିକା ଦୂତାବାସର ସମାଚାର ସେବା (USIS) ତରଫରୁ ଗୋଟିଏ ଶିକ୍ଷାଶିବିର ଆୟୋଜନ କରାଯାଇଛି । ରେଭେନ୍ସାରୁ ତୁମର ନାମ ସୁପାରିଶ୍ କରିଛି ।"

### ନୈନୀତାଲ ଯାତ୍ରା

ମେ ମାସ । କାଠଗୋଦାମ ନାମକ ରେଳଷ୍ଟେସନ୍ରୁ ବାସ୍‌ଯୋଗେ ଯାଇ ନୈନୀତାଲ ଠାରେ ପହଞ୍ଚିଲି । ସୁଉଚ୍ଚ ପାହାଡ଼ ପର୍ବତର ପାଦଦେଶରେ ରହିଥିବା ଗିରିପଥରେ ଉପରୁ ଉପରକୁ ବାସ୍ ଚାଲିଲାବେଳେ ଦୁଇପାର୍ଶ୍ୱର ଗଭୀରତା ଦେଖିଲେ ଭୟ ଲାଗୁଥାଏ । ଆମେରିକାନ୍ ପ୍ରଫେସାରମାନେ ତାଙ୍କ ଦେଶର ସାହିତ୍ୟ ଓ ଇତିହାସ ବିଷୟରେ ପ୍ରତ୍ୟେକ ଦିନ ଲେକ୍ଚାର ଦେବାର ଯୋଜନା ଥାଏ । ଭାରତର ବିଭିନ୍ନ ସ୍ଥାନରୁ ୪୦ ଜଣ ଯୁବଅଧ୍ୟାପକ ସେଥିରେ ଯୋଗଦେବାକୁ ଆସିଥାନ୍ତି । ସମସ୍ତଙ୍କ ରହିବା ନିମନ୍ତେ ଗୋଟିଏ ବଡ଼ ହୋଟେଲ ରିଜାର୍ଭ ଥିଲା ।

ନୈନୀତାଲ ହେଉଛି ଉତ୍ତରପ୍ରଦେଶର ଉତ୍ତରସୀମାରେ ଅବସ୍ଥିତ ଏକ ଶୈଳନିବାସ ବା ଗ୍ରୀଷ୍ମନିବାସ । ସହରଟି ସିଓ୍ୱାଲିକ୍ ପର୍ବତମାଳାର ପାଦଦେଶରେ ଓ ସମୁଦ୍ରର

ଜଳପତ୍ତନ ଠାରୁ ପ୍ରାୟ ୬ ସହସ୍ର ଫୁଟ ଉଚ୍ଚରେ । ସହରର ମଧ୍ୟସ୍ଥଳରେ ରହିଛି ସୁନ୍ଦର ପ୍ରାକୃତିକ ହ୍ରଦ । ଚାରିପାଖରେ ଘେରିରହିଛି ସହରର ଘରଦ୍ୱାର ଓ ଅଟ୍ଟାଳିକା । ପୁଣି ସହର ଚାରିପାଖରେ ଅଛି ଘନ ଅରଣ୍ୟମୟ ପର୍ବତରାଜି । ଜନସଂଖ୍ୟା ଅତି ଅଳ୍ପ, ସ୍ଥାନର ପରିସର ମଧ୍ୟ ସୀମିତ । ବସ୍ତୁତଃ, ନୈନୀତାଲ୍ ହେଉଛି ଏକ ଶାନ୍ତ ସୁପ୍ତ ବସତି । ଅନେକ ଦୂରରେ ଦେଖାଯାଏ ହିମାଳୟ ପର୍ବତାମାଳାର ବରଫାବୃତ ଶୃଙ୍ଗରାଜି । ନିକଟତମ ମହାନ ଶୃଙ୍ଗର ନାମ ନନ୍ଦାଦେବୀ । ୧୮୪୧ ମସିହାରେ ଏହି ସହର ସ୍ଥାପିତ ହୋଇଥିଲା । ମେ ମାସରେ ସୁଦ୍ଧା ଶୀତର ପ୍ରକୋପ ଯଥେଷ୍ଟ ଥାଏ । ପ୍ରାକୃତିକ ଶୋଭାଭରା ଏହି ସ୍ଥାନରେ ତିନି ସପ୍ତାହ ରହଣି କାଳ ଅତ୍ୟନ୍ତ ଉପଭୋଗ୍ୟ ହୋଇଥିଲା ।

ସେତେବେଳେ ଯୁକ୍ତରାଷ୍ଟ୍ର ସରକାର ଭାରତବାସୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ପ୍ରଚୁର ଅର୍ଥ ବ୍ୟୟ କରୁଥାନ୍ତି । ବିଶେଷତଃ, ବୁଦ୍ଧିଜୀବୀ ଓ ଶିକ୍ଷିତ ମହଲରେ ପ୍ରଭାବ ବିସ୍ତାର ଲାଗି ଆମେରିକାର ପ୍ରବଳ ଆଗ୍ରହ ଥାଏ । ଆମର ରହିବା ଓ ଖାଇବା ଇତ୍ୟାଦିରେ ଅମାପ ଅର୍ଥବ୍ୟୟ ଦେଖି ଆମେରିକାନମାନଙ୍କ ଉଦ୍ଦେଶ୍ୟ ଜାଣିହେଉଥାଏ । ରାଣୀଖେତ ଓ ଆଲମୋଡ଼ା ଠାରେ ପିକ୍‌ନିକ୍, ହ୍ରଦରେ ନୌବିହାର, ନନ୍ଦାଦେବୀର ଦୃଶ୍ୟ ଦେଖିବା ଲାଗି ଘୋଡ଼ାପିଠିରେ ଅନେକ ଦୂରକୁ ନେବା ଆଣିବା କାର୍ଯ୍ୟରେ ଅକାତର ଭାବରେ ଅର୍ଥବ୍ୟୟପୂର୍ବକ ଆମେରିକୀୟ ପ୍ରଫେସରମାନେ ଆମମାନଙ୍କ ମନୋରଞ୍ଜନ କରୁଥିଲେ । ଅବଶ୍ୟ, ସେଥିସଙ୍ଗେ ଆମେରିକା ସମ୍ପର୍କରେ ଅନେକଗୁଡ଼ିଏ ସାରଗର୍ଭକ ଭାଷଣ ଦେଇ ଶିକ୍ଷା ଶିବିରର ମର୍ଯ୍ୟାଦା ମଧ୍ୟ ରକ୍ଷା କରିଥିଲେ ।

### ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଗୃହ ଦର୍ଶନ

ସେହିବର୍ଷ ଡିସେମ୍ବର ମାସରେ ଭାରତୀୟ ଇତିହାସ କଂଗ୍ରେସର ଅଧିବେଶନ ବସିଲା ଗୁଜରାଟର ବଲ୍ଲଭ ବିଦ୍ୟାନଗର ନାମକ ସ୍ଥାନରେ । ସେଠାକାର ବିଶ୍ୱବିଦ୍ୟାଳୟର କୁଳପତି ଥାନ୍ତି ଭୈଲାଲ ଭାଇ ପଟେଲ । ଦ୍ୱାର ଦ୍ୱାର ଭିକ୍ଷା ମାଗି ଓ ପଥପ୍ରାନ୍ତରେ ବାଟୋଇମାନଙ୍କ ନିକଟରୁ ଦାନ ସଂଗ୍ରହ କରି ସେ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ । ତିନିଦିନିଆ ଅଧିବେଶନ ସମାପ୍ତ ହେଲାପରେ କୁଳପତିଙ୍କ ନିର୍ଦ୍ଦେଶରେ ଡେଲିଗେଟ୍‌ମାନଙ୍କୁ ବାସ୍‌ଯୋଗେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଗ୍ରାମ ଓ ଜନ୍ମସ୍ଥାନ ଦେଖାଇବାକୁ ନିଆଗଲା । ଭାରତର ଲୌହମାନବ ସର୍ଦ୍ଦାର ପଟେଲଙ୍କ ପ୍ରତି ତାଙ୍କର ଅଗାଧ-ଭକ୍ତି ଥିବା ଜଣାଯାଉଥାଏ ।

ବାଟରେ ପଡ଼ିଲା ଗୋଟିଏ କୃଷି ମହାବିଦ୍ୟାଳୟ । ସେଠାରେ ସମସ୍ତଙ୍କ ଲାଗି ମଧ୍ୟାହ୍ନଭୋଜନର ବ୍ୟବସ୍ଥା କରାଯାଇଥାଏ । ଖାଇସାରିଲା ପରେ ମହାବିଦ୍ୟାଳୟର

ଅଧକ୍ଷ ମହୋଦୟ ଅଟ୍ଟାଳିକାର ମୂଳଭିତ୍ତି ସ୍ଥାନରେ ଥିବା ମର୍ମର ଫଳକଟି ପ୍ରତି ଆମମାନଙ୍କ ଦୃଷ୍ଟି ଆକର୍ଷଣ କରି କହିଲେ, "ଏହି ଫଳକ ସହିତ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣାର ସମ୍ପର୍କ ରହିଛି । ୧୯୪୮ ମସିହା ଜାନୁଆରୀ ମାସର ଯେଉଁ ତାରିଖରେ ସର୍ଦ୍ଦାର ପଟେଲ ଏହି ମୂଳଭିତ୍ତି ଦେବାକୁ ଆସିଥିଲେ, ସେହି ତାରିଖ ଦିନ ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ କାଶ୍ମୀର ବିବାଦକୁ ମିଳିତ ଜାତିର ନିରାପତ୍ତା ପରିଷଦ ସମ୍ମୁଖରେ ଉପସ୍ଥାପନ କରିବାଲାଗି ସିଦ୍ଧାନ୍ତ ଘୋଷଣା କରିଥିଲେ । ପଟେଲ କେବେହେଲେ ସେଥିରେ ରାଜି ହୋଇ ନଥାନ୍ତେ । କାରଣ, ଅଳ୍ପ କେତୋଟି ସପ୍ତାହ ମଧ୍ୟରେ ସମଗ୍ର କାଶ୍ମୀର ଭୂଖଣ୍ଡରୁ ଆକ୍ରମଣକାରୀମାନଙ୍କୁ ନିଶ୍ଚିହ୍ନ କରାଯାଇପାରିବ ବୋଲି ସର୍ଦ୍ଦାର ପଟେଲ ନିଶ୍ଚିତ ଥିଲେ । ନେହରୁଙ୍କ ଭୁଲ ପାଇଁ କାଶ୍ମୀର ସମସ୍ୟା ଆନ୍ତର୍ଜାତିକ ସମସ୍ୟାରେ ପରିଣତ ହେଲା । ପଟେଲ ଏଠାକୁ ଚାଲିଆସିଥିଲେ ବୋଲି ପରେ ଅନୁତାପ କରିଥିଲେ ।"

କଲେଜ ପାଖରୁ ଆମକୁ ନିଆଗଲା ସର୍ଦ୍ଦାର ପଟେଲଙ୍କ ଗ୍ରାମକୁ । ନିପଟ ମଫସଲର ଅବସ୍ଥା । ଘରକୁ ଘର ଖୁନ୍ଦି ରହିଥାଏ । ଗାଁର ରାସ୍ତାଗୁଡ଼ିକ ସଂକୀର୍ଣ୍ଣ । ପୁରୁଣାକାଳିଆ ଦୋତାଲା ପକ୍କାଘରଟିଏ ରାସ୍ତାକୁ ଲାଗି ଛିଡ଼ା ରହିଥାଏ । ଅପ୍ରଶସ୍ତ ବାରଣ୍ଡା ଓ ଛୋଟ ଛୋଟ କୋଠରି । ମଧ୍ୟବିତ୍ତ ପରିବାରର ସାଧାରଣ ବାସଗୃହ । ସେହି ଘର ଥିଲା ସର୍ଦ୍ଦାର ପଟେଲଙ୍କ ପୈତୃକ ନିବାସ । ଘରଟିର ପ୍ରତ୍ୟେକ ଅଂଶ ଆମେ ବୁଲି ବୁଲି ଦେଖିଲୁଁ । ଗାଁର ଲୋକମାନେ ଭିଡ଼ ବାନ୍ଧି ଆମକୁ ଦେଖୁଥାନ୍ତି ।

ଗୁଜରାଟର କେତେଗୋଟି ଶିଳ୍ପାଞ୍ଚଳ ଓ ବିଶେଷତଃ ଦୁଗ୍ଧ ପାଉଡରର ଉତ୍ପାଦନକେନ୍ଦ୍ର ଇତ୍ୟାଦି ଦେଖି ଜଣାଯାଉଥାଏ, ସ୍ୱାଧୀନତା ପ୍ରାପ୍ତିର ମାତ୍ର ଦଶଟି ବର୍ଷ ମଧ୍ୟରେ ସେହି ଅଞ୍ଚଳ ଦ୍ରୁତ ବିକାଶ ପଥରେ ଆଗେଇ ଯାଇଛି ।

## ଅଧକ୍ଷ ସଦାଶିବ ମିଶ୍ରଙ୍କ ସମ୍ବନ୍ଧରେ ଗୋଟିଏ ପଦ

୧୯୫୮ ମସିହାରେ ଓଡ଼ିଶା ପବ୍ଲିକ୍ ସର୍ଭିସ କମିଶନ ଦ୍ୱାରା ରିଡର ପଦକୁ ଉନ୍ନୀତ ହୋଇ ମୁଁ ରେଭେନ୍ସା କଲେଜରେ ମୁଖ୍ୟ ଇତିହାସ ଅଧ୍ୟାପକ ରୂପେ କାର୍ଯ୍ୟଭାର ଗ୍ରହଣ କଲି । ସେତେବେଳେ ପ୍ରଫେସର ପଦ ସୃଷ୍ଟି ହୋଇ ନଥିଲା ଏବଂ ସରକାର ଇତିହାସ ସ୍ନାତକୋତ୍ତର ବିଭାଗକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ହସ୍ତାନ୍ତର କରି ନଥିଲେ । ସେହି ସମୟର ଗୋଟିଏ ଘଟଣା । କଥାଟି ଲେଖୁଛି ଡକ୍ଟର ସଦାଶିବ ମିଶ୍ରଙ୍କର ମହାନୁଭବତାର ପରିଚୟ ଦେବାକୁ । ସେ ବାସ୍ତବିକ୍ ଥିଲେ ଜଣେ ଆଦର୍ଶ ଶିକ୍ଷକ ଓ ପ୍ରକୃତ ଶିକ୍ଷାଦାତା । ପ୍ରିନ୍ସିପାଲ ପଦରେ ଥାଇ ସେ

ବାରମ୍ବାର କହୁଥାନ୍ତି, ''ପ୍ରିନ୍‌ସିପାଲ ଶବ୍ଦର ଅର୍ଥ ହେଉଛି 'ପ୍ରିନ୍‌ସିପାଲ ଟିଚର', ଅନ୍ୟ କିଛି ନୁହେଁ ।''

ରିଡର ପଦ ପାଇଲା ପରେ ସରକାରୀ କ୍ୱାର୍ଟର ଦାବି କଲି । ତାଳଦଣ୍ଡା କେନାଲ କୂଳରେ ଗୋଟିଏ ଘର ଖାଲି ପଡ଼ିଥାଏ । ସେହି ଘରଟି ନେବି ବୋଲି କହିଲି । କିନ୍ତୁ ଅଧ୍ୟକ୍ଷ ସଦାଶିବବାବୁ ଛତରାବଜାର ମାଲଗୋଦାମ ପାଖରେ ଥିବା ଗୋଟିଏ ଘରକୁ ମୋ ନାମରେ ଦର୍ଶାଇ ସେହି ଘରେ ଥିବା ଅଧ୍ୟାପକଙ୍କୁ କେନାଲ ପାଖ ଘରଟି ଦେଇଦେଲେ । ମୁଁ ସିଧା ଯାଇ କହିଲି, ''ବିଲାତରୁ ଫେରି ବର୍ଷାଧିକ କାଳ ସହରରେ ଭଡ଼ାଘର ନେଇ ରହିଛି ଏବଂ ଶେଷ ପର୍ଯ୍ୟନ୍ତ ସେହି ଘରେ ରହିବି । ସରକାରୀ କ୍ୱାର୍ଟର ମୋର ଦରକାର ନାହିଁ ।'' ତାଙ୍କ ପାଖରୁ ଫେରିଆସି ଷ୍ଟାଫ୍ କମନରୁମ୍‌ରେ ପ୍ରିନ୍‌ସିପାଲଙ୍କ ଅନ୍ୟାୟ ଅବିଚାର ବିଷୟ କଡ଼ା ଭାଷାରେ ସମାଲୋଚନା କଲାବେଳେ ପାଟିରୁ ବାହାରିଗଲା, ''ଓଡ଼ିଶାର ଚାକିରି କ୍ଷେତ୍ରରେ ବ୍ରାହ୍ମଣମାନଙ୍କ ମନରୁ କେବେହେଲେ ଜାତିଆଣ ଭାବ ଯିବ ନାହିଁ ।'' ଭ୍ରମରବର ଜେନା ନାମକ ଜଣେ ତରୁଣ ଅଧ୍ୟାପକ ସେ କଥା ପ୍ରିନ୍‌ସିପାଲଙ୍କ ପାଖରେ କହିଦେଲେ, ବୋଧହୁଏ ଅତିରଞ୍ଜିତ ଆକାରରେ ।

ଦୁଇଦିନ ପରେ ସନ୍ଧ୍ୟାବେଳେ କଲେଜ ପଡ଼ିଆରେ ହଠାତ୍ ସଦାଶିବବାବୁଙ୍କ ସହିତ ଦେଖା ହୋଇଗଲା । ପାଖକୁ ଡାକି କହିଲେ, ''କୌଣସି ବ୍ୟକ୍ତିଙ୍କ କାର୍ଯ୍ୟର ନିନ୍ଦା କଲାବେଳେ ସଂଯତ ଓ ମାର୍ଜିତ ଭାଷା ବ୍ୟବହାର କଲେ ବୋଧହୁଏ କିଛି କ୍ଷତି ହୁଅନ୍ତା ନାହିଁ ।'' ମୁଁ କହିପକାଇଲି, ''Sir, Kindly excuse me.'' ସେ ଉତ୍ତର ଦେଲେ, ''ଇଂଲଣ୍ଡରେ ଏପରି କଥାକୁ କହନ୍ତି—First give a slap, and next say, 'I am sorry'.'' ତାପରେ ସେ କହିଲେ, ତୁମକୁ ମାଲଗୋଦାମ ରାସ୍ତାର ଯେଉଁ ଘର ଦେଇଛି, ସେ ଘରେ ମୁଁ ନିଜେ ଥିଲି । ମୋତେ ବେଶ୍ ଭଲ ଲାଗୁଥାଏ । ଦେଖିବ, ସେ ଘରେ ଯିଏ ଅଛନ୍ତି, ସିଏ ସେ ଘର ଛାଡ଼ି ତାଳଦଣ୍ଡା କେନାଲ ପାଖକୁ ଯିବେ ନାହିଁ ।'' ସତକୁ ସତ ତାହାହିଁ ହେଲା । ମୁଁ କେନାଲ କୂଳରେ ରହିଲି । କିଛିଦିନ ପରେ ପୁଣି ଦେଖା ହେବାରୁ ମୁଁ ତାଙ୍କୁ କହିଲି, ''ସାର୍, ଅନ୍ୟ କେହି ପ୍ରିନ୍‌ସିପାଲ ହୋଇଥିଲେ ମୋର C.C.R. ଏକାଥରକେ ନଷ୍ଟ କରିଦେଇଥାନ୍ତେ ।'' ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ ସେ କହିଲେ, ''ତା ହେଲେ, ତୁମ ଧାରଣାରେ ପ୍ରିନ୍‌ସିପାଲମାନଙ୍କ କାମ ହେଲା ଅଧ୍ୟାପକମାନଙ୍କ ଚରିତ୍ର ସଂହାର କରିବା !''

୧୯୯୪ରେ ସଦାଶିବବାବୁଙ୍କର ଦେହାବସାନ ଘଟିଥିଲା । ତାହାର ଦୁଇବର୍ଷ ପୂର୍ବେ କଟକରେ ଅନୁଷ୍ଠିତ ତାଙ୍କର ଜନ୍ମଜୟନ୍ତୀ ଉତ୍ସବରେ ସେହି ମହାନ୍ ଶିକ୍ଷକଙ୍କ

ସମ୍ମୁଖରେ ଶ୍ରଦ୍ଧାଞ୍ଜଳି ଅର୍ପଣ ବେଳେ ମୁଁ ଉପରବର୍ଣ୍ଣିତ ଘଟଣାଟି ଉଲ୍ଲେଖ କରିଥିଲି । ମୋ ବିରୋଧରେ ଚୁଗୁଲି କରିଥିବା ବନ୍ଧୁ ଭ୍ରମରବର ଜେନା ସେଠାରେ ଉପସ୍ଥିତ ଥିଲେ । ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ରାଜନୀତିବିଜ୍ଞାନର ମୁଖ୍ୟ ଅଧ୍ୟାପକ ପଦରୁ ସେତେବେଳକୁ ଅବସର ନେଇସାରିଥାନ୍ତି । ଦିନ ଚାଲିଯାଏ, କିନ୍ତୁ କଥା ରହିଯାଏ ।

ସଦାଶିବବାବୁ ଅଧକ୍ଷ ଥିଲାସମୟରେ ମୋ ବିଭାଗର ଜଣେ ଛାତ୍ର ଆତ୍ମହତ୍ୟା କଲେ । ବି.ଏ. ଅନର୍ସ୍ ପରୀକ୍ଷାରେ ପ୍ରଥମଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଏମ୍.ଏ. କ୍ଲାସରେ ଭର୍ତ୍ତି ହୋଇଥିଲେ ଏବଂ ଏମ୍.ଏ. ପ୍ରଥମଭାଗ ପରୀକ୍ଷାରେ ମଧ୍ୟ ପ୍ରଥମ ସ୍ଥାନ ପାଇଥିଲେ । ପରୀକ୍ଷା ପରେ ଗାଁକୁ ଯାଇଥିଲାବେଳେ ତାଙ୍କ ଭବିଷ୍ୟତ ଉଜ୍ଜ୍ୱଳ ଜାଣି ସ୍ଥାନୀୟ ଜଣେ ଧନୀବ୍ୟକ୍ତି ପିଲାଟିକୁ ନିଜର କନ୍ୟାଦାନ କଲେ । ପ୍ରତିଭାଶାଳୀ ଛାତ୍ର, କିନ୍ତୁ ଅତ୍ୟନ୍ତ ଦରିଦ୍ର ପରିବାରର ସନ୍ତାନ । ଅନ୍ୟମାନଙ୍କ ସାହାଯ୍ୟରେ ପାଠ ପଢୁଥାନ୍ତି । ଭାବିଥିଲେ, କନ୍ୟାଦାତା ଶ୍ୱଶୁର ଶେଷବର୍ଷ ପାଠପଢ଼ାରେ କିଛି ଅର୍ଥ ସାହାଯ୍ୟ କରିବେ । କିନ୍ତୁ, ଶ୍ୱଶୁରମହୋଦୟ ଲେଖିଦେଲେ, ଜଣେ ଅପଦାର୍ଥ ହସ୍ତରେ ଝିଅ ଦେଇ ସେ ଅନୁତପ୍ତ । ଅତ୍ୟଧିକ ଭାବପ୍ରବଣତାର ଶିକାର ହୋଇ ଛାତ୍ରଟି ଆତ୍ମହତ୍ୟା କଲେ ।

ଅଧକ୍ଷଙ୍କ ନିକଟରେ ଏହି ରିପୋର୍ଟ ଦେଲାବେଳେ ମୁଁ ପଚାରିଲି, "ଶାସ୍ତ୍ରକାରମାନେ ଜନ୍ମଦାତା ପିତାଙ୍କ ସହିତ କନ୍ୟାଦାତା ଶ୍ୱଶୁରଙ୍କୁ ସମତୁଲ୍ୟ କରିଛନ୍ତି କାହିଁକି ? ନିଜ ପିତାଙ୍କ ନିକଟରୁ ଯେଉଁ ସ୍ନେହ, ଶ୍ରଦ୍ଧା,ମମତା ଓ କର୍ତ୍ତବ୍ୟ ମିଳିଥାଏ, ତାହା କ'ଣ ଶ୍ୱଶୁରଙ୍କ ନିକଟରୁ ପାଇବା ସମ୍ଭବ ?"

ସଦାଶିବବାବୁ ବିଦ୍ରୂପ କରି କହିଲେ, "ତା ମାନେ, କେବଳ ଯୌତୁକଦାତା ଶ୍ୱଶୁରମାନେ ପିତାପଦବାଚ୍ୟ ହେବାକୁ ଯୋଗ୍ୟ, ଅନ୍ୟମାନେ ନୁହଁନ୍ତି ?" "ଯୌତୁକ ଭିନ୍ନ କଥା, ମୁଁ କହୁଛି ମାନବିକ ସ୍ନେହ ମମତା ଓ କର୍ତ୍ତବ୍ୟବୋଧ କଥା," ମୁଁ କହିଲି ।

ବିରକ୍ତି ପ୍ରକାଶ କରି ସଦାଶିବବାବୁ କହିଲେ, "ମୁଁ ଜଣେ ଅତ୍ୟନ୍ତ ଗରିବ ଘରର ପିଲା । ରେଳଷ୍ଟେସନରେ ଖବରକାଗଜ ବିକି ପାଠ ପଢ଼ିଛି । ତୁମେ ଧନୀଘରେ ଜନ୍ମିଥିଲ ବୋଲି ପ୍ରଥମରୁ ଲୋଭ-ସଂସ୍କୃତି ମଧ୍ୟରେ ବଢ଼ିଛ । ଯୌତୁକ ପରି ସାମାଜିକ ପ୍ରଥାକୁ ମୁଁ ପ୍ରବଳଭାବେ ଘୃଣା କରେ । ଏ ବିଷୟରେ କୌଣସି ଆଲୋଚନା ଲାଗି ମୁଁ ପ୍ରସ୍ତୁତ ନୁହେଁ ।"

କିଛିଦିନ ପରେ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ କନ୍ୟା ବିବାହରେ ଯୋଗଦେବାକୁ ଯାଇ ସଦାଶିବବାବୁଙ୍କ ପାଖରେ ବସିଲି । ଅନେକ ଅତିଥି ଆସୁଥାନ୍ତି । ସମସ୍ତଙ୍କ

ହାତରେ ଉପଢୌକନ ବା ଉପହାର ସାମଗ୍ରୀ । ପୁଷ୍ପଶୋଭିତ ମଞ୍ଚ ଉପରେ ଅଳଙ୍କାରବିଭୂଷିତା କନ୍ୟାଙ୍କୁ ବସାଇ ଦିଆଯାଇଥାଏ । ନିମନ୍ତ୍ରିତ ବ୍ୟକ୍ତିମାନେ ଖଟ ଉପରେ ଉପହାରମାନ ଥୋଇଦେଉଥାନ୍ତି । ଜଣେ ବଦାନ୍ୟ ବ୍ୟକ୍ତି ସୁନାର ହାରଟିଏ କାଢ଼ି କନ୍ୟାଙ୍କ ଗଳାରେ ପିନ୍ଧାଇଦେଲେ । ଅନ୍ୟ କେହି କେହି ଲଫାଫା ମଧ୍ୟରେ ମୋଟା ନୋଟ୍‌ବିଡ଼ା ରଖି ଧରାଇଦେଉଥିଲେ । କନ୍ୟାଙ୍କ ନିକଟରେ ବସିଥିବା ସଙ୍ଗିନୀମାନେ ଯଥାଯୋଗ୍ୟ ଫର୍ଦ୍ଦରେ ଦାତାମାନଙ୍କ ନାମ ଲେଖିପକାଉଥାନ୍ତି ।

ସଦାଶିବବାବୁଙ୍କୁ ପଚାରିଲି, ‘‘ଆପଣ ଯୌତୁକ ପରି ସାମାଜିକ ପ୍ରଥାକୁ ଗଭୀରଭାବେ ଘୃଣା କରନ୍ତି । ବର୍ତ୍ତମାନ ଯେଉଁ ପ୍ରଥା ସ୍ୱଚକ୍ଷୁରେ ଦେଖୁଛନ୍ତି, ସେ ପ୍ରଥା ସମ୍ପର୍କରେ ଆପଣଙ୍କ ମତାମତ କ’ଣ ? ନବ୍ୟ ଧନାଢ୍ୟ ସମ୍ପ୍ରଦାୟର ଏହି ନବ ଲୋଭ-ସଂସ୍କୃତିର ଆପଣ ସପକ୍ଷବାଦୀ ନା ବିପକ୍ଷବାଦୀ ?’’

ଚତୁରତା ସହ ବିଜ୍ଞତାକୁ ମିଶାଇଦେଇ ସେ ଉତ୍ତର ଦେଲେ, ‘‘ଆନ୍ତରିକ ସ୍ତରରେ ଅନେକ ଦୃଶ୍ୟ ଅସହ୍ୟ ହେଲେ ସୁଦ୍ଧା ଲୌକିକତା ଦୃଷ୍ଟିରୁ ସହ୍ୟ କରିବାପାଇଁ ତୁମେ, ମୁଁ ଓ ଅନ୍ୟ ସମସ୍ତେ ବାଧ୍ୟ ।’’

## ତ୍ରିଭାନ୍ଦ୍ରମ୍ ଯାତ୍ରା

୧୯୫୮ ମସିହା ଡିସେମ୍ବର ମାସରେ ଭାରତୀୟ ଇତିହାସ କଂଗ୍ରେସର ଅଧିବେଶନ କେରଳର ତ୍ରିଭାନ୍ଦ୍ରମ୍ ସହରରେ ବସିଲା । ସେଠାକୁ ସସ୍ତ୍ରୀକ ଯାଇଥିଲି । ରହିବା ଲାଗି ଉତ୍ତମ ବ୍ୟବସ୍ଥା କରାଯାଇଥାଏ । ସ୍ୱେଚ୍ଛାସେବୀମାନେ ଜଣାଇଦେଲେ, ତ୍ରିଭାନ୍ଦ୍ରମରେ ମଶା ନାହିଁ, କିନ୍ତୁ ପ୍ରତ୍ୟେକ ଘରେ ଓଡ଼ଶ ଭର୍ତ୍ତି । ରାତିରେ ଦେଖିଲାବେଳକୁ ପିମ୍ପୁଡ଼ି ଧାଡ଼ି ପରି ଓଡ଼ଶମାନେ ଖଟ ଉପରକୁ ମାଡ଼ି ଚାଲିଛନ୍ତି । ଭାରତର ଅନ୍ୟ କୌଣସି ସ୍ଥାନରେ ସେତେସଂଖ୍ୟକ ଛାରପୋକ ଆକ୍ରମଣ କରିବା କେବେହେଲେ ଦେଖି ନଥିଲି । ଶୁଣିଲି, ତ୍ରିଭାନ୍ଦ୍ରମ୍ ସହରରୁ ଓଡ଼ଶ ଧ୍ୱଂସ କରିବା ନିମନ୍ତେ ସରକାରଙ୍କ ସମସ୍ତ ଉଦ୍ୟମ ବିଫଳ ହୋଇଛି । ସେଠାକାର ଲୋକମାନେ ମଧ୍ୟ ଓଡ଼ଶ ସହିତ ବିଛଣାରେ ଶୋଇବା ପାଇଁ ଅଭ୍ୟସ୍ତ ।

ଅଧିବେଶନର ପ୍ରଥମ ଦିନ ଅପରାହ୍ନରେ କେରଳ ମୁଖ୍ୟମନ୍ତ୍ରୀ ଇ.ଏମ୍.ଏସ୍. ନମ୍ବୁଦ୍ରିପଦ ସହସ୍ରାଧିକ ଡେଲିଗେଟ୍‌ଙ୍କୁ ଜଳଯୋଗରେ ଆପ୍ୟାୟିତ କରିବାର କାର୍ଯ୍ୟକ୍ରମ ଥାଏ । ମୁଖ୍ୟମନ୍ତ୍ରୀଙ୍କ ଆଗମନ ଅପେକ୍ଷାରେ ମୁଁ ପ୍ରବେଶ ପଥର ତୋରଣ ପାଖରେ ଛିଡ଼ା ରହିଲି । ସେତେବେଳେ କେରଳରେ ଚାଲିଥାଏ କମ୍ୟୁନିଷ୍ଟ ସରକାରଙ୍କ ଶାସନ । ସାଢ଼େ ୪ଟା ବାଜିଗଲା । ମୁଖ୍ୟମନ୍ତ୍ରୀଙ୍କର ଦେଖା ନଥାଏ । ଅଥଚ, ସାମିଆନା ତଳେ ଅତିଥିମାନଙ୍କୁ ଜଳଖିଆ ପ୍ଲେଟ୍ ଧରାଇବା କାର୍ଯ୍ୟ ଆରମ୍ଭ

ହୋଇଯାଇଥାଏ । ନିମନ୍ତ୍ରକ ଆସି ନାହାନ୍ତି, କିନ୍ତୁ ଭୋଜନ ଆରମ୍ଭ ! ଅଖାଡୁଆ ବୋଧ ହେବାରୁ ଜଣେ କେରଳୀ ଛାତ୍ରଙ୍କୁ ପଚାରିଲି, "ମୁଖ୍ୟମନ୍ତ୍ରୀ କ'ଣ ଆସିବେ ନାହିଁ ?" ସେ ଉତ୍ତର ଦେଲେ, "ନିଜେ ମୁଖ୍ୟମନ୍ତ୍ରୀ ପରା ଅତିଥିମାନଙ୍କୁ ପ୍ଲେଟ୍ ଦେଉଛନ୍ତି !" "କାହିଁ ତାଙ୍କ ଗାଡ଼ି ଦେଖିଲି ନାହିଁ ? କେତେବେଳେ ଆସିଗଲେ ?" ମୁଁ ପଚାରିଲି । ଉତ୍ତର ମିଳିଲା, "ସେ ସାଇକେଲ୍‌ରେ ଆସି ୪ଟା ପାଖରୁ ଅତିଥି ଚର୍ଚ୍ଚାର ତଦାରଖ କରୁଛନ୍ତି ।"

ନମ୍ବୁଦ୍ରିପଦଙ୍କ ପାଖକୁ ଯାଇ ତାଙ୍କୁ ଦେଖିଲି । ଗୋଡ଼ରେ ଥାଏ ପୁରୁଣା ଚପଲ । ଧୋତିକୁ ଦୁଇପ୍ରସ୍ଥ କରି ଲୁଙ୍ଗି ଆକାରରେ କେରଳୀ ଢଙ୍ଗରେ ପିନ୍ଧିଥାନ୍ତି । ଦେହରେ ଖଣ୍ଡିଏ ଅର୍ଡ଼ିନାରୀ ହାଫ୍‌ସାର୍ଟ । ନିଜେ ଜଣ ଜଣକ ପାଖକୁ ଯାଇ ଜଳଖିଆ ଧରାଇଦେଉଥାନ୍ତି ଓ ହସି ହସି କଥା କହୁଥାନ୍ତି । ଜାଣିବା ଅସମ୍ଭବ, ସେ ଜଣେ ମୁଖ୍ୟମନ୍ତ୍ରୀ ! ଗାର୍ଡ଼ନ ପାର୍ଟି ପରେ ସେ ସାଇକେଲ ଚଢ଼ି ଏକାକୀ ବିଦାୟ ନେବାର ଦୃଶ୍ୟ ଦେଖିଲି ।

ଅନେକ ବର୍ଷ ପରେ । ୧୯୮୪ ରେ ମୁଁ କୁଳପତି ଥିବାବେଳେ ଓଡ଼ିଶାରେ ଗୋଟିଏ ବାମପନ୍ଥୀ ଜନସମାବେଶରେ ଉଦ୍‌ବୋଧନ ଦେବାଲାଗି ନମ୍ବୁଦିପଦଙ୍କୁ ଆମନ୍ତ୍ରଣ କରାଯାଇଥାଏ । ସେହି ସଭାରେ ଓଡ଼ିଶାବାସୀଙ୍କ ପକ୍ଷରୁ ତାଙ୍କୁ ନାଗରିକ ସ୍ୱାଗତ ସମ୍ବର୍ଦ୍ଧନା ଦେବା ନିମନ୍ତେ ମାର୍କ୍ସବାଦୀ ନେତା ହିମାଂଶୁଶେଖର ନନ୍ଦୀ ମୋତେ ନେଇ ଯାଇଥିଲେ । ୧୯୫୮ ମସିହାରେ କେରଳର ମୁଖ୍ୟମନ୍ତ୍ରୀ ନମ୍ବୁଦ୍ରିପଦଙ୍କୁ ଯେପରିଭାବରେ ଦେଖିଥିଲି, ସେହି ବିଷୟ ବର୍ଣ୍ଣନା କରି ବକ୍ତବ୍ୟ ଶେଷରେ କହିଥିଲି, "ଯଦି ଭାରତର ଅନ୍ୟ ମୁଖ୍ୟମନ୍ତ୍ରୀମାନେ ନମ୍ବୁଦ୍ରିପଦଙ୍କ ପରି ସରଳ ଓ ନିରାଡ଼ମ୍ବର ଜୀବନଯାତ୍ରାର ଆଦର୍ଶ ଦେଖାଇ ପାରିଥାନ୍ତେ, ତେବେ ସ୍ୱାଧୀନତା ପରେ ଏହି ଦରିଦ୍ର ଦେଶର ଅଶେଷ ହିତସାଧନ ସମ୍ଭବ ହୋଇଥାନ୍ତା ।"

ତିନିଦିନିଆ ଅଧିବେଶନ ଶେଷ ହେଲାପରେ ଚତୁର୍ଥ ଦିନ ତ୍ରିଭାନ୍ଦ୍ରମ୍‌ଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବାସ୍ ଯୋଗେ ଯିବାଲାଗି ବନ୍ଦୋବସ୍ତ କରାଗଲା । ଭାରତର ଶେଷ ଦକ୍ଷିଣବିନ୍ଦୁ ରୂପେ ସ୍ଥାନର ଭୌଗୋଳିକ ବିଶେଷତ୍ୱ ଓ ଧର୍ମୀୟ ମହତ୍ତ୍ୱ ଦୃଷ୍ଟିରୁ ସେହିସ୍ଥାନ ଦର୍ଶନ କରିବା ଥିଲା ଭାଗ୍ୟର ବିଷୟ । ସେତେବେଳେ କନ୍ୟାକୁମାରୀର ପରିବେଶ ଅତ୍ୟନ୍ତ ରମଣୀୟ ଥାଏ । ଶିବମନ୍ଦିର ଆଖପାଖରେ ଅଳ୍ପସଂଖ୍ୟକ ତୀର୍ଥଯାତ୍ରୀଙ୍କ ବ୍ୟତୀତ ସମଗ୍ର ସ୍ଥାନଟି ନିର୍ଜନ ଦିଶୁଥାଏ । କେପ୍ କମୋରିନ୍ ଠାରେ ଅବସ୍ଥିତ କନ୍ୟାକୁମାରୀର ଗୋଟିଏ ପାଖରେ ବଙ୍ଗୋପସାଗର ଓ ଅନ୍ୟ ପାଖରେ ଆରବ ସାଗର । ଦୁଇ ସାଗରର ଜଳରାଶି ଥାଏ ପୃଥକ୍ ରଙ୍ଗର । ପିତୃ ଓ ମାତୃତୀର୍ଥ ନାମକ ଦୁଇଟି ପ୍ରକାଣ୍ଡ ପ୍ରକାଣ୍ଡ ପାଷାଣଖଣ୍ଡ

ଉପରେ ଯାତ୍ରୀମାନେ ପୂଜା ଓ ସ୍ନାନ କରୁଥାନ୍ତି । ଏକଦା ସେହି ପ୍ରସ୍ତରଖଣ୍ଡ ଉପରେ ସ୍ୱାମୀ ବିବେକାନନ୍ଦ ଧ୍ୟାନମଗ୍ନ ହେଉଥିଲେ । ପରବର୍ତ୍ତୀ ସମୟରେ ତାଙ୍କ ଉଦ୍ଦେଶ୍ୟରେ ସେଠାରେ ଏକ ସ୍ମୃତିସୌଧ ନିର୍ମାଣ କରାଯାଇଛି । କନ୍ୟାକୁମାରୀ କୂଳରେ ସେଦିନ ସନ୍ଧ୍ୟାରେ ଦେଖିଥିବା ସୂର୍ଯ୍ୟାସ୍ତର ଦୃଶ୍ୟ ଭୁଲିହୁଏ ନାହିଁ ।

## ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ

୧୯୫୯ ମସିହା ସେପ୍ଟେମ୍ବର ମାସରେ ଅପ୍ରତ୍ୟାଶିତ ଭାବେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଚିଠି ପାଇଲି, ପ୍ରାଚ୍ୟ ବିଭାଗରେ ଉଚ୍ଚତର ଗବେଷଣା ନିମନ୍ତେ ରକ୍‌ଫେଲାର ଫେଲୋସିପ୍ ପାଇଁ ମୋତେ ମନୋନୀତ କରାଯାଇଛି । ଲେଖାଥାଏ, ସସ୍ତ୍ରୀକ ଯିବା ଆସିବା ଖର୍ଚ୍ଚ ଏବଂ ଏକବର୍ଷ କାର୍ଯ୍ୟକାଳର ଦରମା ଇତ୍ୟାଦି ଲଣ୍ଡନ ବିଶ୍ୱବିଦ୍ୟାଳୟ ବହନ କରିବ । ସମ୍ବାଦ ପାଇ ସ୍ତ୍ରୀ ରାଜଶ୍ରୀଦେବୀ ଲଣ୍ଡନ ଯିବା ସ୍ୱପ୍ନରେ ଅଧୀର ହୋଇଉଠିଲେ । ଆଠବର୍ଷ ବୟସ୍କ ପୁଅ ସିଦ୍ଧାର୍ଥ ବିଛଣା ପାଖରେ ଛିଡ଼ା ରହି ଗୋଟିଏ ସ୍ୱରରେ ଅଡ଼ି ଧରି ବସିଲା, "ମୁଁ ବିଲାତ ଯିବି ।" ଏଗାରବର୍ଷର ଝିଅ ସଂଘମିତ୍ରା, ଡାକନାମ ଝାନ୍‌ସୀ, ନୀରବ ଦୃଷ୍ଟିରେ ଚାହିଁରହି ବୋଧହୁଏ ଭାବୁଥାଏ, ବାବା ପୁଅ ଓ ଝିଅଙ୍କୁ ସମାନ ଚକ୍ଷୁରେ ଦେଖିବେ ଅଥବା ପାତର ଅନ୍ତର କରିବେ । ଉଭୟଙ୍କ ମୁହଁକୁ ଚାହିଁ ସେମାନଙ୍କୁ ସାଙ୍ଗରେ ନେଇଯିବି ବୋଲି ଜବାବ୍ ଦେଇଦେଲି ।

ସେତେବେଳେ ରେଭେନ୍‌ସା କଲେଜର ସ୍ନାତକୋତ୍ତର ଇତିହାସ ବିଭାଗକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ହସ୍ତାନ୍ତର କରିବା ଲାଗି ସରକାର ଯୋଜନା କରୁଥାନ୍ତି । ବିଦେଶକୁ ଚାଲିଗଲେ ବିଶ୍ୱବିଦ୍ୟାଳୟର ଚାକିରି ପାଇଁ ପ୍ରାର୍ଥୀ ହୋଇପାରିବି ନାହିଁ ବୋଲି ଅନୁମାନ କଲି । ସେଥିଲାଗି ଫେଲୋସିପ ଗ୍ରହଣ କରିବି ବୋଲି ଲଣ୍ଡନ ବିଶ୍ୱବିଦ୍ୟାଳୟକୁ ଜଣାଇବା ସଙ୍ଗେ ସେଠାରେ ଯୋଗଦେବା ଲାଗି କିଛି ମାସ ସମୟ ମାଗିଲି ।

ସୌଭାଗ୍ୟକୁ ଡିସେମ୍ବର ମାସ ମଧ୍ୟଭାଗରେ ମନୋନୟନ କମିଟିର ବୈଠକ ବସିଲା ଓ ମୁଁ ବିଶ୍ୱବିଦ୍ୟାଳୟରେ ରିଡାର ପଦ ଲାଗି ମନୋନୀତ ହେଲି । କୁଳପତି ପରିଜାସାହେବ ଡାକିପଠାଇ କହିଲେ, "ତୁମେ ଯେଉଁଦିନ ଚାକିରିରେ ଯୋଗ ଦେବ, ସେହିଦିନ ଲଣ୍ଡନ ଯିବା ପାଇଁ ଛୁଟି ପାଇବ ।"

୧୯୫୯ ଡିସେମ୍ବର ୧୯ ତାରିଖ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି । ସେତେବେଳକୁ ସ୍ତ୍ରୀ ଓ ଝିଅ ପୁଅର ପାସ୍‌ପୋର୍ଟ ଓ ଆମର ଜାହାଜ ଟିକଟ ପ୍ରସ୍ତୁତ ହୋଇ ରହିଥାଏ । ସେହିଦିନ ରାତିଗାଡ଼ିରେ କଟକ ଷ୍ଟେସନ୍‌ରୁ ଗାଡ଼ି ଧରିଲି କୋଚିନ୍ ଅଭିମୁଖେ । ଟ୍ରେନ୍ ଛାଡ଼ିଲା ପର୍ଯ୍ୟନ୍ତ ଛାତ୍ରମାନେ ପ୍ଲାଟ୍‌ଫର୍ମରେ ଛିଡ଼ା ରହିଥିବା ଦେଖିଲି ।

# ବିଦେଶ ଗମନ ବେଳର ଦୃଶ୍ୟ




## ମିଶର ଦେଶର ପିରାମିଡ୍, ଇଟାଲୀର ପମ୍ପେ

### କଟକଠାରୁ କୋଚିନ୍

୧୯୫୯ ମସିହା ଡିସେମ୍ବର ମାସ ୧୯ ତାରିଖ ରାତ୍ରି ୧୧ଟାରେ କଟକ ଷ୍ଟେସନରୁ ଟ୍ରେନ୍ ଛାଡ଼ିଲା । ଫାଷ୍ଟ୍‌କ୍ଲାସ୍ କମ୍ପାର୍ଟମେଣ୍ଟ୍‌ରେ ଚାରିଟା ବାର୍ଥ । ସାଙ୍ଗରେ ସ୍ତ୍ରୀ, ଝିଅ ଓ ପୁଅ । ଛାତ୍ରମାନେ ପ୍ଲାଟଫର୍ମରେ ଛିଡ଼ା ରହିଥାନ୍ତି । ସାନଭାଇ ମନୋଜ ଗାଡ଼ି ଛାଡ଼ିଲା ପର୍ଯ୍ୟନ୍ତ ପିଲା ଦୁଇଟିକୁ ହାତ ହଲାଇ ସ୍ନେହ ଜ୍ଞାପନ କରୁଥାନ୍ତି ।

ଗାଡ଼ି ଛାଡ଼ିଦେଲାକ୍ଷଣି ଅକସ୍ମାତ୍ ମନମଧ୍ୟରେ ଆଶଙ୍କା ଅନୁଭବ କଲି । ଆଗରେ ଦୂରଯାତ୍ରା । ସାଙ୍ଗରେ ସ୍ତ୍ରୀ ଓ ଦୁଇଟି ଛୋଟ ଛୋଟ ପିଲା । ପାଖରେ ଅନେକଗୁଡ଼ିଏ ଜିନିଷ । ମନୁଷ୍ୟବୋଝ ସାଙ୍ଗକୁ ମାଲ୍‌ବୋଝ ନେଇ ବିଦେଶକୁ ଯିବି । ଜାହାଜ କୋଚିନ ଠାରୁ ସିଧା ଲଣ୍ଡନ ଯିବ ନାହିଁ, ଯିବ ଇଟାଲୀର ଜେନୋଆ ନାମକ ବନ୍ଦରକୁ । ସେଠାରୁ ଟ୍ରେନ୍‌ଯୋଗେ ଇଟାଲୀ, ସୁଇଜରଲ୍ୟାଣ୍ଡ୍ ଓ ଫ୍ରାନ୍ସ ଅତିକ୍ରମ କରି ପହଞ୍ଚିବାକୁ ହେବ ଡାନ୍‌କାର୍କ ନାମକ ସ୍ଥାନରେ । ସେଠାରେ ପଡ଼ିବ ଇଂଲିଶ୍ ପ୍ରଣାଳୀ, ଯିବାକୁ ହେବ ଷ୍ଟିମାର ଯୋଗେ । ସେଠାରୁ ପୁଣି ଟ୍ରେନ୍‌ଯୋଗେ ପହଞ୍ଚିବି ଲଣ୍ଡନ ସହରରେ । ମାଲ ଗଣିଲାବେଳକୁ ଚାରିଟା ବଡ଼ ବଡ଼ ସୁଟକେଶ୍ ଓ ଚାରିଟା ବ୍ୟାଗ । ବିଲାତରେ ଏକବର୍ଷ ଚଳିବା ଲାଗି ସ୍ତ୍ରୀ ରାଜଶ୍ରୀ ସବୁପ୍ରକାର ଆବଶ୍ୟକୀୟ ପୋଷାକପତ୍ର ଓ ବ୍ୟବହାର୍ଯ୍ୟ ସାମଗ୍ରୀ ଭର୍ତ୍ତି କରି ଆଣିଥାନ୍ତି । ଏ ସବୁ ବାଦ୍ ଅଣାଯାଇଛି ବସ୍ତାଏ ଚାଉଳ । ପିଲାମାନେ ଲଣ୍ଡନରେ ଥରେ ଥରେ ଭାତ ଖାଇବେ । ପରିବାର ଓ ମାଲ ଧରି କିପରି ଗନ୍ତବ୍ୟ ସ୍ଥାନରେ ପହଞ୍ଚିବି, ସେହି ଚିନ୍ତାରେ ମନ ଅବସନ୍ନ ହୋଇଆସିଲା ।

ଝାନସୀ ଅଡ଼ିଧରିଲା ଶୋଇବ ନାହିଁ, ବାଟରେ ଚିଲିକାହ୍ରଦର ଦୃଶ୍ୟ ଦେଖିବ । ବୁଝିନେଲି, ଛୋଟ ଛୋଟ ଅବୁଝା ପିଲାମାନଙ୍କୁ ସାଙ୍ଗରେ ନେଇ ବିଦେଶ ଯିବାର ଅର୍ଥ, ଅନେକ ହଇରାଣ ହରକତ୍ ଭୋଗିବାକୁ ହେବ । ଝିଅକଥା ମାନିଲି । ଝରକା ପାଖରେ ବସାଇ ରାତି ପ୍ରାୟ ୨ଟା ପରେ ଚନ୍ଦ୍ରାଲୋକ ତଳେ ଚିଲିକାର ଦୃଶ୍ୟ ଦେଖାଇଲି ।

୨୦ ତାରିଖ ଦିନ ୧୨ଟା ବେଳେ ଟ୍ରେନ୍ ପହଞ୍ଚିଲା ୱାଲଟେୟାର ଷ୍ଟେସନରେ । ମୋ ଅନୁମତି ନେଇ ଜଣେ ଖ୍ରୀଷ୍ଟିଆନ ଧର୍ମଯାଜକ ଆମ ଡବାରେ ବେଜୱାଡ଼ା ପର୍ଯ୍ୟନ୍ତ ଯିବାପାଇଁ ବସିଲେ । ଆନ୍ଧ୍ର ଲୟୋଲ୍ଲା କଲେଜର ପ୍ରିନ୍ସିପାଲ ବୋଲି ନିଜର ପରିଚୟ ଦେଇ ସେ ମୋ ପିଲାମାନଙ୍କୁ ଯଥେଷ୍ଟ ଶ୍ରଦ୍ଧା କଲେ । ଗୋଦାବରୀ ଓ କୃଷ୍ଣାନଦୀ ପାର ହେଲାବେଳେ ଝାନ୍ସୀ ଓ ସିଦ୍ଧାର୍ଥକୁ ନଦୀ ଦୁଇଟି ବିଷୟରେ କେତେକ କଥା କହିଲି ।

୨୧ ତାରିଖ ସକାଳ ୯ଟାରେ ମାନ୍ଦ୍ରାଜ ଷ୍ଟେସନରେ ଟ୍ରେନ୍ ପହଞ୍ଚିଲା । ବିଶ୍ରାମକକ୍ଷରେ ଜିନିଷପତ୍ର ରଖି ସହରର ମୁର୍ ମାର୍କେଟ ଦେଖାଇବା ପାଇଁ ସମସ୍ତଙ୍କୁ ନେଇଗଲି । ସନ୍ଧ୍ୟା ୬ଟାରେ କୋଚିନ ଏକ୍ସପ୍ରେସ୍ ମାନ୍ଦ୍ରାଜ ଛାଡ଼ିଲା । ରାତି ପାହିଲାବେଳକୁ ଗାଡ଼ି ରହିଲା କୋଇମ୍ୱାଟୋର ଷ୍ଟେସନରେ । ବାହାରେ ପାହାଡ଼ଗୁଡ଼ିକର ଦୃଶ୍ୟ ଦେଖି ପୁଅ ଝିଅ ଆନନ୍ଦରେ ଅଧୀର ହୋଇଉଠିଲେ । ଭ୍ରମଣ ଆରମ୍ଭରେ ସେମାନଙ୍କର କୌତୂହଳ ଦେଖି ଅନୁମାନ କଲି, ବିଦେଶରେ ସେମାନେ ଅନେକ ସ୍ଥାନ ଦେଖିପାରି ନିଶ୍ଚୟ ଖୁସି ହେବେ । ଦିନ ୧ଟା ବେଳେ କୋଚିନ ବନ୍ଦର ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିଲା । ସେଠାରୁ ସମସ୍ତଙ୍କୁ ନେଇ ଉଡ୍‌ଲାଣ୍ଡ୍ ନାମକ ହୋଟେଲରେ ପହଞ୍ଚିଲି । ଜାହାଜ ଛାଡ଼ିବ ଡିସେମ୍ବର ୨୫ ତାରିଖ ସନ୍ଧ୍ୟାରେ । ସେତେବେଳ ପର୍ଯ୍ୟନ୍ତ ସେହି ହୋଟେଲରେ ରହି ଜଳଯାତ୍ରା ଲାଗି ପ୍ରସ୍ତୁତ ହେବାକୁ ହେଲା ।

କୋଚିନ୍ ପୋର୍ଟ ନାମକ ସ୍ଥାନଟି ଥାଏ ଗୋଟିଏ ପ୍ରାକୃତିକ ବନ୍ଦର । ଦ୍ୱୀପଟି ସମୁଦ୍ରବେଷ୍ଟିତ । ସେହିଠାରୁ ଜଳଜାହାଜ ସମୁଦ୍ରପଥରେ ବାହାରିଯାଏ । ସେଠାକୁ ଷ୍ଟିମାର ଯୋଗେ ଯାଇ ଲଣ୍ଡନ ପର୍ଯ୍ୟନ୍ତ ଯିବାକୁ ଥିବା ସୁଟ୍‌କେଶ୍ ଓ ଚାଉଳ ବସ୍ତା ଜାହାଜ କମ୍ପାନୀର ଅଫିସ୍‌ରେ ଦାଖଲ କଲି । ବନ୍ଦର କର୍ମକର୍ତ୍ତାମାନେ ପାଶ୍‌ପୋର୍ଟ ଓ ଅନ୍ୟାନ୍ୟ କାଗଜପତ୍ର ତଦାରଖ କଲେ । ଏର୍ନାକୁଲମ ନାମକ ସ୍ଥାନରୁ ଆୟକର ସାର୍ଟିଫିକେଟ୍ ଆଣିବାକୁ ପଡ଼ିଲା । ସବୁପ୍ରକାର ଫର୍ମାଲିଟି ଶେଷ କରିବାକୁ ପୂରା ଦୁଇଦିନ ଲାଗିଗଲା ।

## କୋଚିନ ବନ୍ଦରରୁ ସୁଏଜ୍

ଡିସେମ୍ବର ୨୫ ତାରିଖ ଖ୍ରୀଷ୍ଟମାସ୍ ଦିବସ ଅପରାହ୍ନ ୨ଟା ବେଳେ ଉଡ୍‌ଲାଣ୍ଡ ହୋଟେଲରୁ ବନ୍ଦର ଦିଗକୁ ଯାତ୍ରା କଲୁଁ । ଜଳଜାହାଜଟି ସେତେବେଳଯାଏ ଘାଟ ପର୍ଯ୍ୟନ୍ତ ଆସିନଥାଏ, ଛିଡ଼ା ରହିଥାଏ ଅନେକ ଦୂରରେ ସମୁଦ୍ରମଧ୍ୟରେ । ସାଙ୍ଗରେ ଆଣିଥିବା ସୁଟକେଶ୍ ଓ ହ୍ୟାଣ୍ଡବ୍ୟାଗ୍‌ଗୁଡ଼ିକ କାଷ୍ଟମସ୍ ଅଫିସାରମାନେ ତନ୍ନ ତନ୍ନ କରି ଦେଖିଲେ । ଦିନ ୩ଟା ବେଳେ ଜାହାଜ ବନ୍ଦରଘାଟରେ ଲାଗିଲା । ଇଟାଲୀୟ ଜାହାଜ, ନାମ ନେପ୍‌ଚୁନିଆ । ଖ୍ରୀଷ୍ଟମାସ ଉପଲକ୍ଷେ ଜାହାଜକୁ ସୁଶୋଭିତ କରାଯାଇଥାଏ । ଯାତ୍ରୀମାନଙ୍କର ପାଶପୋର୍ଟ ଓ ସ୍ୱାସ୍ଥ୍ୟ ସାର୍ଟିଫିକେଟ ଦେଖାସରିଲା ପରେ ସନ୍ଧ୍ୟା ୫ଟା ବେଳେ ଭିତରକୁ ଛଡ଼ାଗଲା । ଆମ ଚାରିଜଣଙ୍କ ପାଇଁ ରହିଥାଏ ଗୋଟିଏ ସ୍ୱତନ୍ତ୍ର କେବିନ୍ । ଭିତରର ସାଜସଜ୍ଜା, ସୁନ୍ଦର ବିଛଣା ଓ ଆସବାବପତ୍ର ଦେଖି ବିଳାସମୟ ଜଳଯାତ୍ରା ସମ୍ବନ୍ଧରେ ସନ୍ଦେହ ରହିଲା ନାହିଁ । ସେତେବେଳେ ମୋ ମନେପଡ଼ିଲା ପାରସ୍ୟ ଉପସାଗରରେ ଆସିଥିବା ମାଲବାହୀ ଜାହାଜ କଥା । ଆକାଶ ପାତାଳ ପାର୍ଥକ୍ୟ ।

ପାସେଞ୍ଜାରମାନେ ନିଜ ନିଜ କେବିନ୍‌ରେ ଥଇଥାନ ହେଲାପରେ ରାତ୍ରି ୮ଟା ସମୟରେ ଜାହାଜ ବନ୍ଦର ଛାଡ଼ିଲା । ଡେକ୍ ଉପରୁ କୋଚିନ୍ ସହରର ଆଲୋକମାଳା ଓ ସମୁଦ୍ର ଉପରେ ପଡ଼ିଥିବା ବନ୍ଦର ଆଲୋକର ପ୍ରତିବିମ୍ବ ଦେଖୁଥିଲା ଅବସ୍ଥାରେ ଜାହାଜ ଟଳମଳ ହେବାକ୍ଷଣି ମୋ ସ୍ତ୍ରୀ ସମୁଦ୍ରଜ୍ୱରରେ ଆକ୍ରାନ୍ତ ହେଲେ । ଜଣେ ବୃଦ୍ଧା ଇଟାଲୀୟ ମହିଳା ତାଙ୍କୁ କେବିନ ଭିତରକୁ ନେଇଗଲେ । କିନ୍ତୁ ଅତି ଅଳ୍ପ ସମୟ ମଧ୍ୟରେ ସେ ପୂର୍ବପରି ସୁସ୍ଥ ଅବସ୍ଥାରେ ଉପରକୁ ଫେରିଆସିଲେ । ଚାହୁଁ ଚାହୁଁ ସ୍ଥଳଭାଗର ଆଲୋକ ଅଦୃଶ୍ୟ ହେଲା ଓ ଗଭୀର ଅନ୍ଧକାର ଭେଦକରି ଜାହାଜ ସମୁଦ୍ର ବକ୍ଷରେ ଆଗେଇ ଚାଲିଲା । ସେତେବେଳକୁ ମୁକ୍ତ ଡେକ୍‌ଗୁଡ଼ିକ ଉପରେ ଖ୍ରୀଷ୍ଟିଆନ ଯାତ୍ରୀମାନେ ସମବେତ କଣ୍ଠରେ ଖ୍ରୀଷ୍ଟମାସ ସଙ୍ଗୀତ ଗାନକରି ଉତ୍ସବ ପାଳନରେ ଲାଗିଯାଇଥିଲେ ।

କିଛି ସମୟ ପରେ ରାତ୍ରିଭୋଜନର ଘଣ୍ଟି ବାଜିଲା । ସ୍ତ୍ରୀ ଓ ଛୁଆମାନଙ୍କୁ ନେଇ ପ୍ରଶସ୍ତ ଡାଇନିଂ ହଲ୍‌ରେ ପ୍ରବେଶ କଲି । ଆମ ପରିବାର ଲାଗି ଗୋଟିଏ ଟେବୁଲ ରଖାଯାଇଥାଏ । ତା ଉପରେ ଥାଏ ବଡ଼ ବଡ଼ ଦୁଇଟା କାଚପାତ୍ରରେ ଲାଲରଙ୍ଗର ମଦ । ସୁମିଷ୍ଟ ସିରାପ୍ ବୋଲି ଭାବିନେଇ ସିଦ୍ଧାର୍ଥ ଲୋଭାନ୍ୱିତ ମନରେ ଚାହିଁରହିବା ଦେଖି ତାକୁ କହିଲି, "ଅଙ୍ଗୁର ରସରେ ତିଆରି । ମହୁ ପରି ମିଠା । ଏହାର ନାମ ମଦ । ସାହେବମାନେ ପିଅନ୍ତି ।" ଏତିକି କହି ଗୋଟିଏ ଛୋଟ ଗ୍ଲାସରେ କିଛି ମଦ ଢାଳି ତାକୁ ପିଇବାକୁ ଦେଲି । ଖୁସିମନରେ

ଜିଭରେ ଲଗାଇଲାକ୍ଷଣି ପାଟି କରିଉଠିଲା, "ଏ ହେଃ, ପିତା ଲାଗୁଛି । ଗଳା କୁଣ୍ଡେଇଲାଣି ।" ପାଣିଗ୍ଲାସ୍ ଧରାଇଦେଇ କହିଲି, "ବିଲାତରେ ଏହି ଜିନିଷ ଦେଖିଲେ ପିଇବାପାଇଁ କେବେହେଲେ ଲୋଭ କରିବୁ ନାହିଁ ।" ସେତେବେଳକୁ ନାନାପ୍ରକାର ଖାଦ୍ୟ ଆସିଯାଇଥାଏ । କିନ୍ତୁ ଯେତେହେଲେ ଇଟାଲୀୟ ଖାଦ୍ୟ, ପୁଣି ଜାହାଜରେ ରନ୍ଧାଯାଇଛି । ତାହାର ବିକୃତ ବାସନା ଯୋଗୁଁ ଖାଇବାକୁ ଇଚ୍ଛା ହୁଏ ନାହିଁ । ଜାଣିପାରିଲି, ପିଲାମାନଙ୍କର ଜଳଯାତ୍ରାର ଆନନ୍ଦ ବିଦେଶୀ ଖାଦ୍ୟ ପାଇଁ ନଷ୍ଟ ହୋଇଯିବ । କେବଳ ପାଉଁରୋଟି ଓ ଆଇସ୍‌କ୍ରୀମ ଖାଇ ସେମାନେ ସେ ରାତିରେ ଶୋଇଲେ ।

ଜାହାଜ ଟଳମଳ ଅବସ୍ଥାରେ ଚାଲିଥାଏ । ଝିଅକୁ ବଡ଼ ବଡ଼ ଆଖିରେ ଚାହିଁରହିଥିବା ଦେଖି ଜାଣିଲି, ସେ ଭୟ ପାଇଯାଇଛି । ତାକୁ ବୁଝାଇଲି, "ଜାହାଜ ହଲିଲେ ସୁଦ୍ଧା ବୁଡ଼ିବ ନାହିଁ । କେତେ ସାହେବପିଲା ଯାଉଛନ୍ତି । ସେମାନଙ୍କ ସାଙ୍ଗରେ ଖେଳିବୁ । ଡରିଲେ, ସେମାନେ ହସିବେ ।" ସେ ଭୟ ମଧ୍ୟରେ ନିଦେଇ ପଡ଼ିଲା ।

ତହିଁପରଦିନ ପାଖରୁ ଭାଇ ଭଉଣୀ ଅନ୍ୟ ଛୋଟ ଛୋଟ ପିଲାଙ୍କ ସହିତ ଉପର ଡେକ୍‌ରେ ଖେଳିବାକୁ ମାତିଗଲେ । ଖେଳିଲାବେଳେ ଭାଷା ବୁଝିବା ଆବଶ୍ୟକ ନଥାଏ । ପରିଚାରକମାନେ ଆଇସ୍‌କ୍ରୀମ୍ ଯୋଗାଇ ଦେଉଥାନ୍ତି । ଜାହାଜରେ ଇଟାଲୀୟମାନଙ୍କ ସଂଖ୍ୟା ବେଶି ଥାଏ । ମହିଳାମାନେ ଆମ ପିଲାଦୁଇଙ୍କୁ ଖୁବ୍ ଶ୍ରଦ୍ଧା କରୁଥିବା ଦେଖିଲି । ମୋ ସ୍ତ୍ରୀ ମଧ୍ୟ ସେମାନଙ୍କ ସହିତ ମିଶିଗଲେ । ଯାଜକମାନେ ପ୍ରାର୍ଥନା କଲାବେଳେ ସମସ୍ତେ ଉପଭୋଗ କରୁଥିଲେ । ଖ୍ରୀଷ୍ଟମାସ ପର୍ବଟି ଜାହାଜରେ ଯଥାଯୋଗ୍ୟ ପାଳିତ ହେଉଥାଏ ।

ପୂରା ପାଞ୍ଚଦିନ ପର୍ଯ୍ୟନ୍ତ ସ୍ଥଳଭାଗର ଦେଖା ନଥାଏ । ୩୦ ତାରିଖ ପ୍ରଭାତରେ ଝାନସୀ ଓ ସିଦ୍ଧାର୍ଥ ଝରକା ପଥରେ ସ୍ଥଳଭାଗ ଦେଖିପାରି ପାଟି କଲେ । ସକାଳ ୭ଟା ବେଳକୁ ଜାହାଜ ରହିଲା ଏଡେନ୍ ବନ୍ଦରରେ । ସହର ଭିତରେ ପାଞ୍ଚଘଣ୍ଟା ସମୟ ବିତାଇବାକୁ ସୁଯୋଗ ମିଳିଲା । ମଧ୍ୟାହ୍ନବେଳକୁ ପୁନର୍ବାର ଜଳଯାତ୍ରା ।

ଲୋହିତସାଗରରେ ଜାହାଜ ଚାଲିଥାଏ । ନବବର୍ଷ ୧୯୬୦ ମସିହାର ପ୍ରଥମ ଦିବସ । ଆନନ୍ଦ ଉତ୍ସବ ଲାଗି ସମସ୍ତେ ପ୍ରସ୍ତୁତ ହେଉଥିଲାବେଳେ ହଠାତ୍ ଆରମ୍ଭ ହେଲା ପ୍ରବଳ ଝଡ଼ଝଞ୍ଜା । ଶାନ୍ତ ଲୋହିତସାଗର ଅଶାନ୍ତ ଆକାର ଧାରଣ କଲା । ଡେକ୍ ଉପରକୁ ଯେଉଁମାନେ ବାହାରିବାକୁ ଚେଷ୍ଟା କଲେ, ପବନର ପ୍ରବଳ ଧକ୍କାରେ ସେମାନେ କଚାଡ଼ି ପଡ଼ିଲେ । କେବିନ ଭିତରେ ବସିରହି ପୁଅ ପଚାରିଲା, "ଜାହାଜ ବୁଡ଼ିଗଲେ ସମସ୍ତେ ମରିଯିବା ?" ତାକୁ ସାନ୍ତ୍ୱନା ଦେଲି,

ଜାହାଜ ବୁଡ଼ିବ ନାହିଁ । ଯଦି ବୁଡ଼ିବ, ଲାଇଫ୍‌ଜ୍ୟାକେଟ ବାନ୍ଧି ସମସ୍ତେ ପାଣିରେ ଭାସିବେ । ଅନ୍ୟ ଜାହାଜ ଆସି ଲୋକଙ୍କୁ ଉଦ୍ଧାର କରିବ । ଆଲମାରୀ ଉପରେ ଥିବା ଲାଇଫ୍‌ଜ୍ୟାକେଟଗୁଡ଼ିକ କାଢ଼ି ଦେଖାଇଲି । ତଥାପି ଭୟ କମିଲା ନାହିଁ ଦେଖି ଭାଇଭଉଣୀଙ୍କୁ କଲମ୍ୱାସ୍‌ଙ୍କ ସମୁଦ୍ରଯାତ୍ରାର ଗପ ଶୁଣାଇଲି । ତନ୍ମୟ ମନରେ ଗପ ଶୁଣିଲାବେଳେ ବାହାରେ ହେଉଥିବା ତୋଫାନ ବିଷୟ ସେମାନେ ଭୁଲିଗଲେ । ବୋଧହୁଏ, ପିଲାଙ୍କ ପାଇଁ ଗଳ୍ପ ହେଉଛି ଗୋଟିଏ ସମ୍ମୋହନ ମନ୍ତ୍ର ।

ରାତ୍ରିବେଳକୁ ଝଡ଼ ଛାଡ଼ିଗଲା । ଜାହାଜ ଚାଲିଥାଏ ସୁଏଜ୍ ଉପସାଗର ଦିଗକୁ । ଲୋହିତସାଗର ସଂକୀର୍ଣ୍ଣ ହୋଇ ଆସୁଥାଏ । ୨ତାରିଖ ଦିନ ସକାଳେ ଦେଖିବାକୁ ମିଳିଲା ଉଭୟ କୂଳର ସ୍ଥଳଭାଗରୂପେ ଜନହୀନ ମରୁଭୂମି । ଏକଦା ଏହିସ୍ଥାନରେ ଏସିଆ ଓ ଆଫ୍ରିକା ମହାଦେଶଦ୍ୱୟ ପରସ୍ପରକୁ ସଂଯୋଗ କରିଥିଲା । କାଳକ୍ରମେ ସଂକୀର୍ଣ୍ଣ ଜଳରାଶି ଦ୍ୱାରା ଦୁଇ ମହାଦେଶ ବିଚ୍ଛିନ୍ନ ହୋଇଯାଇଥିଲା ।

ବ୍ରେକ୍‌ଫାଷ୍ଟ୍ ପରେ ନୋଟିସ୍‌ବୋର୍ଡ଼ରେ ଦେଖିଲି, ଯେଉଁ ଯାତ୍ରୀମାନେ ମିଶର ରାଜଧାନୀ କାଇରୋ ଓ ପିରାମିଡ଼ ଦେଖିବାକୁ ଇଚ୍ଛୁକ, ସେମାନେ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରତ୍ୟେକେ ୧୭ ପାଉଣ୍ଡ ଲେଖାଏଁ ଜମା ଦେବେ ଓ ପାଶ୍‌ପୋର୍ଟ୍ ଦାଖଲ କରିବେ । ଯଥାସ୍ଥାନରେ ପହଞ୍ଚି ଦେଖିଲି, ଲୋକେ ଧାଡ଼ି ଲାଗିଗଲେଣି । ଜଣେ ଜାର୍ମାନ ଯାତ୍ରୀ ଓ ତାଙ୍କ ସ୍ତ୍ରୀଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଥାଏ । ସ୍ତ୍ରୀ ପିରାମିଡ଼ ଦେଖିବେ ବୋଲି ଜିଦ୍ ଧରିଥିଲାବେଳେ ସ୍ୱାମୀ ମରୁଭୂମିର କଷ୍ଟ ସହ୍ୟ କରିବା ସମ୍ଭବ ନୁହେଁ ବୋଲି ବାରଣ କରୁଥିଲେ । ଜଣେ ଇଂରେଜ ଯାତ୍ରୀଙ୍କୁ ପଚାରିଲି, "ଆପଣ ପିରାମିଡ୍ ଯିବେ କି ?" ସେ ବିମର୍ଷମନରେ ଉତ୍ତର ଦେଲେ, "କିଛି ପୂର୍ବେ ଇଂରେଜ ଓ ଫରାସୀମାନଙ୍କ ସହିତ ମିଶର ଦେଶର ଯୁଦ୍ଧ ହୋଇଥିବା ଯୋଗୁଁ ଆମେ ବର୍ତ୍ତମାନ ସେମାନଙ୍କର ଶତ୍ରୁ । ତେଣୁ ପିରାମିଡ଼ ଦେଖିବାକୁ ପ୍ରବଳ ଇଚ୍ଛା ଥିଲେ ସୁଦ୍ଧା ଯାଇପାରିବି ନାହିଁ ।"

କେବିନ ଭିତରକୁ ଯାଇ ସ୍ତ୍ରୀଙ୍କୁ ପିରାମିଡ଼ ଦେଖିବାକୁ ଯିବି ବୋଲି ଜଣାଇଲି । ତାଙ୍କର ମଧ୍ୟ ପୃଥିବୀର ସେହି ମହାଶ୍ଚର୍ଯ୍ୟ ଦେଖିବା ପାଇଁ ଇଚ୍ଛା ହେଲା । କିନ୍ତୁ ପିଲାମାନଙ୍କୁ ଛାଡ଼ି ଦିନେ ଦୁଇଦିନ ଜାହାଜରୁ ଚାଲିଯିବା ଉଚିତ ହେବ ନାହିଁ ବୋଲି ବୁଝିପାରିଲେ । ପିଲାମାନଙ୍କୁ ବୁଝାଇଲି, "ସୁଏଜ କେନାଲ ଭିତରେ ଜାହାଜ ଧୀରେ ଧୀରେ ଚାଲିବ । ତୁମେ ଦୁଇକୂଳର ମରୁଭୂମି ଦେଖିବ । ଗୋଟିଏ ଦିନ ପାଇଁ ମୁଁ ଜାହାଜରେ ରହିବି ନାହିଁ । ଅନେକ ଦୂରକୁ ଯିବି । ମରୁଭୂମି ଭିତରକୁ । ପିଲାମାନେ ସେଠାକୁ ଯାଆନ୍ତି ନାହିଁ ।" ସେମାନେ ମୁହଁ ଶୁଖାଇ ବସିରହିଲେ । ଟଙ୍କା ନେଇ ଉପରେ ଦାଖଲ କଲି ଓ ମିଶର ଯିବାଲାଗି ନାମ ଲେଖାଇଲି ।

ଜାନୁଆରୀ ୨ ତାରିଖ । ଗୋଟିଏ ବାଲୁକାମୟ ଦ୍ୱୀପ ନିକଟରେ ନେପ୍‌ଚୁନିଆ ଜାହାଜ ଧୀରସ୍ଥିର ଭାବରେ ଛିଡ଼ା ହୋଇ ରହିଲା । ସମୟ ଅପରାହ୍ନ ସାଢ଼େ ୪ଟା । ଅନେକ ଦୂରରେ ଦିଶୁଥାଏ ସୁଏଜ ବନ୍ଦର । ସେଠାକୁ ଜାହାଜ ଯିବନାହିଁ ବୋଲି ଘୋଷଣା କରାଗଲା । କାଇରୋ ଯାତ୍ରୀମାନଙ୍କୁ ନେବାଲାଗି ଖୁବ୍ ଛୋଟ ଆକାରର ଚାରିଖଣ୍ଡି ଷ୍ଟିମ୍ ବୋଟ୍ ଜାହାଜ ପାଖକୁ ଉତ୍ତାଳ ତରଙ୍ଗ ଭେଦି ଡୁବୁଡୁବୁ ଅବସ୍ଥାରେ ଆସୁଥିବା ଦେଖି ଯାତ୍ରୀମାନେ ଭୟ ପାଇଗଲେ । ଆମେ ପଚିଶଜଣ ଯାତ୍ରୀ ସେଥିରେ ଯିବାପାଇଁ ଡେକ୍ ଉପରେ ଅପେକ୍ଷା କରିଥାଉଁ ।

ସୁଉଚ୍ଚ ଜାହାଜର ତଳଭାଗରେ ବୋଟ୍‌ଗୁଡ଼ିକ ଲାଗିଲା । ଦିଶୁଥାଏ କାଗଜଡଙ୍ଗା ପରି । ଲହରୀ ଉପରେ ସେଗୁଡ଼ିକ ନାଚିଲାପରି ଦେଖାଯାଉଥାଏ । ଚାହୁଁ ଚାହୁଁ କାଠର ସଂକୀର୍ଣ୍ଣ ଶିଡ଼ିଟିଏ ଜାହାଜ ଉପରୁ ତଳକୁ ଝୁଲାଇ ଦିଆଗଲା । ଥରକେ କେବଳ ଜଣେ ଲେଖାଏଁ ଯାଇପାରିବେ । ବୋଟ୍ ଭିତରକୁ ଧରିନେବା ଲାଗି ମିଶରୀୟ ପୋଲିସ୍‌ମାନେ ପ୍ରସ୍ତୁତ ରହିଥାନ୍ତି । ପ୍ରଥମେ ଯେଉଁ ଯାତ୍ରୀଟି ଶିଡ଼ିରେ ଅବତରଣ କଲେ, ତାଙ୍କର ଚାଲିବା ଢଙ୍ଗରୁ ମନର ଭୟ ଜଣାଯାଉଥାଏ । ଶେଷ ପାହାଚରେ ପାଦ ଦେଲାକ୍ଷଣି ଦୁଇଜଣ ଅପେକ୍ଷାରତ ବଳିଷ୍ଠ ପୋଲିସ୍ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକିନେଇ ବୋଟ୍ ଭିତରେ ଥୋଇଦେଲେ । ମୋ ପାଖରେ ଛିଡ଼ା ରହିଥାନ୍ତି ଚାରିଜଣ ଇଟାଲୀୟ ପ୍ରୌଢ଼ ଓ ଜଣେ ଆଇରିସ୍ ଯୁବକ । ପ୍ରଥମ ବୋଟ୍‌ଟି ଧରିବା ଆଶାରେ ସେମାନଙ୍କୁ ଆଗେଇବାକୁ କହିଲି । ଜଣେ ବ୍ୟକ୍ତି ଗଲାପରେ ମୁଁ ଚାଲିଲି । ମୋ ପରେ ପରେ ଅନ୍ୟମାନେ । ଜଣେ ମଧ୍ୟବୟସ୍କା ମହିଳାଙ୍କୁ ଯେତେବେଳେ ପୋଲିସମାନେ ଭିତରକୁ ଟେକିନେଲେ, ତାଙ୍କ କାନ୍ଧରେ ଝୁଲୁଥିବା ବ୍ୟାଗ୍‌ଟି ଜଳ ଭିତରେ ଖସିପଡ଼ିଲା । ସେ ଦୁଃଖରେ ମ୍ରିୟମାଣା ହୋଇପଡ଼ିଲେ । ଭିତରେ ଆଠଜଣ ପାସେଞ୍ଜର ବସିଗଲା ପରେ ଚାଳକ ଦ୍ରୁତ ଗତିରେ ବୋଟ୍ ଚଳାଇଲେ । ପରେ ପରେ ଅନ୍ୟ ବୋଟ୍‌ଗୁଡ଼ିକରେ ଯାତ୍ରୀମାନେ ଭର୍ତ୍ତିହେଲେ । ସମୁଦ୍ରର ଲହରୀମାଳା ଭେଦକରି ଲଞ୍ଚ୍‌ଗୁଡ଼ିକ ସୁଏଜ୍ ବନ୍ଦର ଦିଗକୁ ଗତି କଲାବେଳେ ମନରେ ଆଶଙ୍କା ଦେଖାଦେବା ସ୍ୱାଭାବିକ ଥାଏ । ଅସ୍ତଗାମୀ ରବିର ଲୋହିତ ରଶ୍ମିରେଖାରେ ଢେଉଗୁଡ଼ିକ ଉଦ୍‌ଭାସିତ ହୋଇଉଠୁଥାଏ ।

ସନ୍ଧ୍ୟାବେଳକୁ ଲଞ୍ଚ୍‌ଗୁଡ଼ିକ କୂଳଭାଗରେ ଲାଗିଲା । ବନ୍ଦର ସ୍ଥାନଟି ଜଳପତ୍ତନ ସହିତ ମିଶି ରହିଥାଏ । କିଛି ସମୟ ପାଇଁ ସ୍ଥାନଟିର ରମଣୀୟ ପ୍ରାକୃତିକ ଶୋଭା ଉପଭୋଗ କଲି । ପଚିଶ ଜଣ ଯାତ୍ରୀଙ୍କ ପାଇଁ କେତେଖଣ୍ଡି ଟ୍ୟାକ୍ସି ଛିଡ଼ା ରହିଥାଏ । ଦୁଇଜଣ ଇଟାଲୀୟ ଓ ଜଣେ ଆଇରିସ୍ ବନ୍ଧୁଙ୍କ ସହିତ

ଖଣ୍ଡିଏ ଟ୍ୟାକ୍ସିରେ ବସିଲି । ମାଡ଼ିଆସୁଥିବା ଅନ୍ଧକାର ମଧ୍ୟରେ ସୁଏଜ ବନ୍ଦରରୁ ଗାଡ଼ିଗୁଡ଼ିକ ଦୌଡ଼ି ଚାଲିଲା ମିଶରୀୟ ମରୁପଥରେ । ରାସ୍ତାର ଦୁଇପାଖରେ ଥାଏ ବାଲୁକାରାଶି, ବାଲୁକା ସ୍ତୂପ ଓ ମରୁଜାତୀୟ ବୁଦା । ମରୁଭୂମିରୁ ବହିଆସୁଥାଏ ଥଣ୍ଡା ପବନ ।

୬୫ କିଲୋମିଟର ଗଲାପରେ ଟ୍ୟାକ୍ସିଗୁଡ଼ିକ ମରୁପ୍ରାନ୍ତରେ ଥିବା ଗୋଟିଏ ବିଶ୍ରାମାଗାର ନିକଟରେ ଅଟକିଲା । ସ୍ଥାନଟିର ନାମ ସେଖ୍ ଦାଖରୁନି । ଗାଇଡ୍ କହିଲେ, ''ଆରବଜାତୀୟ ବେଦୁଇନ୍ ବା ଯାଯାବରମାନେ ସେଠାକାର ମସ୍‌ଜିଦ୍‌ରେ ପ୍ରାର୍ଥନା କରିବାକୁ ଆସନ୍ତି ।'' କେତେଜଣ ବେଦୁଇନ୍‌ଙ୍କୁ ସେଠାରେ ବସିଥିବା ଦେଖିଲି । ଧନ୍ୟ ସେହି ଯାଯାବର ଜାତି ! କୌଣସି ଦେଶରେ ସେମାନଙ୍କର ବାସସ୍ଥାନ ବା ଘରଦ୍ୱାର ବା ସମ୍ପତ୍ତି ନାହିଁ । ଚିରନ୍ତନ ବାସହୀନ ଭାବେ ସେମାନେ ସ୍ଥାନରୁ ସ୍ଥାନାନ୍ତର ଯାତ୍ରା କରନ୍ତି । କିପରି ଭାବରେ ରହନ୍ତି, ଖାଦ୍ୟ ସଂଗ୍ରହ କରନ୍ତି ଓ ଜୀବନଧାରଣ କରିଥାନ୍ତି, ସେ ସବୁ ବିଷୟ ଯୁଗେ ଯୁଗେ ପ୍ରହେଳିକାମୟ ରହିଛି । ''ସଂସାରରେ ସେମାନେ ଘର କରିବାକୁ ଆସି ନଥାନ୍ତି, ଆସିଥାନ୍ତି ଭଗବାନଙ୍କୁ ପ୍ରାର୍ଥନା କରି ଜୀବନ କଟାଇବାକୁ । ଈଶ୍ୱରଙ୍କ ରାଜ୍ୟ ହିଁ ଯାଯାବରମାନଙ୍କ ବାସଗୃହ'', ଗାଇଡ୍ ଜଣାଇଲେ ।

ବାହାରେ ପ୍ରଚଣ୍ଡ ଥଣ୍ଡା । କିଛି ସମୟ ବିଶ୍ରାମାଗାରରେ ବସିଲାପରେ ପୁଣି ଟ୍ୟାକ୍ସିରେ ବସିଲୁ । ସେଠାରୁ କାଇରୋ ପର୍ଯ୍ୟନ୍ତ ୭୫ କିଲୋମିଟର ରାସ୍ତା । ପୁନର୍ବାର ରାସ୍ତାର ଦୁଇପାଖରେ ଦିଶିଲା ଦୀର୍ଘବ୍ୟାପୀ ମରୁଭୂମି । ରାତି ୧୦ଟା ୩୦ ବେଳକୁ ରାଜଧାନୀ କାଇରୋ ଉପକଣ୍ଠରେ ଗାଡ଼ି ପହଞ୍ଚିଲା । ଦୂରରୁ ଦିଶିଲା ସହରର ଆଲୋକ । ସେତେବେଳକୁ ଗାଡ଼ି ଚାଲିଥାଏ ନୀଳନଦୀର ଉପତ୍ୟକାରେ । ଅନ୍ଧକାର ମଧ୍ୟରେ ଦେଖାଯାଉଥାଏ ନଦୀ କୂଳେ କୂଳେ ବ୍ୟାପିରହିଥିବା ସବୁଜ ଉଦ୍ଭିଦ ଓ ଗୁଳ୍ମରାଜି । କଳା ଦିଶୁଥାଏ ନୀଳନଦୀର ଜଳ । ଉପରେ ପଡ଼ିଥାଏ ଚନ୍ଦ୍ରକିରଣ । ଜଣେ ଯାତ୍ରୀ କ୍ଷଣକ ପାଇଁ ତଳକୁ ଯିବେ କହିବାରୁ ଗାଇଡ୍ କହିଲେ, ''ଘାସ ଭିତରେ ରହିଛନ୍ତି କ୍ଷୁଦ୍ର କ୍ଷୁଦ୍ର ବିଷଧର ସାପ । ରାତିରେ ତଳକୁ ଯିବାର ପ୍ରଶ୍ନ ନାହିଁ ।'' ମୋର ମନେପଡ଼ିଲା, ନୀଳନଦୀ ତଟର ସର୍ପର କାହାଣୀ । ଦିନେ ମିଶରସୁନ୍ଦରୀ କ୍ଲିଓପାଟ୍ରା ନିଜର ଫାରୁଆ ଭିତରେ ରଖିଥିବା ସର୍ପକୁ କପାଳରେ ଲଗାଇ ଆତ୍ମହତ୍ୟା କରିଥିଲେ ।

ରାତି ୧୧ଟା ସମୟରେ କାଇରୋ ସହର ମଧ୍ୟରେ ଗାଡ଼ି ପ୍ରବେଶ କଲା । ସୁପ୍ରଶସ୍ତ ରାଜପଥ, ସୁବୃହତ୍ ସୌଧରାଜି ଓ ଶୋଭାମୟ ଉଦ୍ୟାନଗୁଡ଼ିକରୁ ଜଣାଯାଉଥାଏ, ମିଶରର ରାଜଧାନୀ ହେଉଛି ଏକ ଅତ୍ୟାଧୁନିକ ନଗର । ବିଭିନ୍ନ

ରଙ୍ଗର ଆଲୋକମାଳାରେ ସହରଟି ସୁଶୋଭିତ ଦିଶୁଥାଏ । ଟ୍ୟାକ୍ସିଗୁଡ଼ିକ ରହିଲା 'କସମୋପୋଲିଟାନ' ନାମକ ବିଳାସପୂର୍ଣ୍ଣ ହୋଟେଲ ଆଗରେ । ଟୁରିଷ୍ଟ କୋମ୍ପାନୀ ପକ୍ଷରୁ ସେହିଠାରେ ଆମର ରହିବା ବ୍ୟବସ୍ଥା କରାଯାଇଥାଏ । ହୋଟେଲର ତଳଭାଗରେ ଓ ଉଭୟ ପାର୍ଶ୍ୱରେ ରହିଥାଏ ଯାତ୍ରୀମାନଙ୍କ ଆମୋଦ ପ୍ରମୋଦ ନିମନ୍ତେ କେତେଗୁଡ଼ିଏ 'ନାଇଟ୍ କ୍ଲବ୍' । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେଗୁଡ଼ିକରେ ପ୍ରଦର୍ଶିତ ହୁଏ ନର୍ତ୍ତକୀମାନଙ୍କର ନଗ୍ନନୃତ୍ୟ ।

ଇଟାଲୀୟ ଓ ଆଇରିସ୍ ବନ୍ଧୁମାନଙ୍କ ସହିତ ଭୋଜନାଳୟରେ ଖାଇବାକୁ ବସିଲି । କାଫ୍ରି ଜାତୀୟ ବବୁର୍ଚ୍ଚିମାନେ ଖାଦ୍ୟ ପରିବେଷଣ ଲାଗି ପାଖକୁ ଆସିଗଲେ । ମୁଁ ଅର୍ଡ଼ର ଦେଲି, ଭେଜିଟାରିଆନ ମିଲ୍ । ପ୍ଲେଟ୍ ଉପରେ ଆସିଗଲା ଗରମ ଚପାଟି ଉପରେ ବଡ଼ ପିଠାଟିଏ । ଭାବିଲି, ପରିବା ଚପ୍ । ଆଇରିସ୍ ବନ୍ଧୁ କହିଲେ, "ସେଇଟା ଉଟ ମାଂସର ଚପ୍ ।" ବାଧ୍ୟ ହୋଇ ପାଉଁରୋଟି ମାଗି ଖାଇଲି । ଭୋଜନ ଶେଷ ହେଲାକ୍ଷଣି ଗାଇଡ୍ ମହୋଦୟ ଜଣାଇଲେ, "କାଇରୋରେ ରାତ୍ରିଯାପନ ଅର୍ଥ, ନାଇଟ୍ କ୍ଲବରେ ଆନନ୍ଦ ଉପଭୋଗ ।" ଏତିକି କହି ସେ କେତେଗୁଡ଼ିଏ ରଙ୍ଗୀନ ଫଟୋଚିତ୍ର ଟେବୁଲରେ ଥୋଇଦେଲେ । ନର୍ତ୍ତକୀମାନଙ୍କର ରୂପ ଅନୁଯାୟୀ ଭିନ୍ନ ଭିନ୍ନ କ୍ଲବ୍ ଲାଗି ପୃଥକ୍ ପୃଥକ୍ କିସମର ପ୍ରବେଶମୂଲ୍ୟ ଲେଖା ରହିଥାଏ । କେତେଜଣ ଟୁରିଷ୍ଟ୍ ଆଗ୍ରହ ସହକାରେ ସେଗୁଡ଼ିକ ଦେଖିବାକୁ ଲାଗିଲେ । ଆଇରିସ୍ ବନ୍ଧୁ କହିଲେ, "ଚାଲନ୍ତୁ, ଦୁଇତିନି ଘଣ୍ଟା ନାଇଟ୍ କ୍ଲବ୍‌ରେ କଟାଇବା ।" ଶାରୀରିକ ଅବସନ୍ନତା ଜଣାଇ ବିଶ୍ରାମ ନେବି ବୋଲି କହିବାରୁ ଜଣେ ଇଟାଲୀୟ ବିଦ୍ରୂପ କରି କହିଲେ, "You Indians are very conservative and very very shy. You people do not know how to enjoy life." କଥାଟି ସତ୍ୟ ବୋଲି ଅନୁଭବ କଲି ।

ସାଙ୍ଗରେ ଆସିଥିବା ଯାତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ଗାଇଡ୍‌ଙ୍କ ସାଙ୍ଗରେ ବାହାରିଗଲେ । ମୁଁ ପଶିଲି ମୋ ଶୋଇବା କକ୍ଷରେ । ଅବିଳମ୍ବେ ନିଦ ଲାଗିଗଲା ।

## ବିଶ୍ୱର ସେହି ବିସ୍ମୟକର କୀର୍ତ୍ତି : ପିରାମିଡ୍

ଦିନଟି ଥିଲା ୧୯୬୦ ମସିହା ଜାନୁଆରୀ ମାସର ୩ ତାରିଖ । କସମୋପୋଲିଟାନ ହୋଟେଲର ଆରାମଦାୟକ କକ୍ଷରେ ଗାଢ଼ ନିଦରେ ଶୋଇଥିଲି । ରାତି ପାହିବାକୁ ବିଳମ୍ବ ଥାଏ । ମୁଣ୍ଡ ପାଖରେ ଥିବା ଟେଲିଫୋନ୍ ବାଜିଉଠିଲା । "ସାଢ଼େ ୫ଟା ବାଜିଛି, ଠିକ୍ ସାଢ଼େ ୬ଟାରେ ପିରାମିଡ୍ ଯାତ୍ରା ଆରମ୍ଭ ହେବ," ଏହି ବାକ୍ୟଟି ଜଣାଇ ଟେଲିଫୋନ୍ ବନ୍ଦ ହେଲା । ନିମିଷ ମଧ୍ୟରେ ଦେହରୁ ଅବସନ୍ନତା ଉଭେଇଗଲା । ଆଗ୍ରହ ଓ ପ୍ରସନ୍ନତା ମଧ୍ୟରେ ତରତରରେ ପ୍ରସ୍ତୁତ ହୋଇ ବ୍ରେକ୍‌ଫାଷ୍ଟ

ପାଇଁ ଡାଇନିଂ ହଲ୍‌କୁ ଚାଲିଲି । ଆମ ଦଳର ସମସ୍ତେ ଅବିଳମ୍ୱେ ଏକତ୍ରିତ ହେଲେ । ଜଣେ ଜାର୍ମାନ ଟୁରିଷ୍ଟ ଉପଦେଶ ଦେଲେ, "Heavy breakfast is needed to go to the Pyramids". ଫଳରସ ଏକ ଗ୍ଲାସ ପିଇଲି, ତା ପରେ ଚାରିଖଣ୍ଡ ମୋଟା ଟୋଷ୍ଟ ଓ ଶେଷରେ ଦୁଧ ପିଇ ଦେହରେ ଶକ୍ତି ଆସିଲା ବୋଲି ଭାବିନେଲି । ଅନ୍ୟମାନେ ଗୋରୁ ଓ ଓଟମାଂସର ଚପ୍ ଇତ୍ୟାଦି ପରିପୂର୍ଣ୍ଣ ରୀତିରେ ଉଦରସାତ୍ କଲେ । ନୈଶ କ୍ଲବ୍‌ରେ ରାତି ବିତାଇଥିବା କେତେଜଣଙ୍କର ନିଶା ସେତେବେଳ ପର୍ଯ୍ୟନ୍ତ ଛାଡ଼ି ନଥାଏ । କିନ୍ତୁ ସମସ୍ତଙ୍କ ମନରେ ଥାଏ ଅଦ୍ଭୁତ ଉତ୍ସାହ । ସତେଯେପରି ଅନେକ ବ୍ୟକ୍ତିଙ୍କ ଅନେକ ଦିନର ଆଶା ପୂରଣ ହେବାକୁ ଯାଉଥାଏ ।

ସକାଳ ଠିକ୍ ୭ଟା ସମୟରେ ଟୁରିଷ୍ଟ କୋମ୍ପାନୀର ଟ୍ୟାକ୍ସିଗୁଡ଼ିକରେ ଭର୍ତ୍ତିହୋଇ ବସିଗଲୁଁ । ରାଜଧାନୀ ଠାରୁ ୧୧ ମାଇଲ ଦୂରରେ ଗିଜେ ପିରାମିଡ୍ ପଥରେ ଗାଡ଼ିଗୁଡ଼ିକ ଗଡ଼ିଚାଲିଲା । ଆମ କାର୍‌ଟିରେ ଥାନ୍ତି ଜଣେ ସୁଦକ୍ଷ ଗାଇଡ୍ । ତାଙ୍କ ନାମ ଥାଏ ମୋସ୍ତା । ସହର ଭିତରର ପ୍ରତ୍ୟେକ ସ୍ଥାନଟି ବିଷୟରେ ସେ ଅନର୍ଗଳ କହିଚାଲିଥାନ୍ତି । ଗୋଟିଏ ସ୍ଥାନରେ ଅଳ୍ପ ସମୟ ଗାଡ଼ି ବନ୍ଦ କରି ଦେଖାଇଦେଲେ କାଇରୋର କେନ୍ଦ୍ରସ୍ଥଳରେ ଥିବା ପ୍ରସିଦ୍ଧ 'ମୁକ୍ତିଛକ' ବା Liberation square । ରାଜତନ୍ତ୍ରର ପତନ ପରେ ସେହିଠାରେ ଘୋଷିତ ହୋଇଥିଲା ସାଧାରଣତନ୍ତ୍ରର ଜନ୍ମ । ତାପରେ ଦେଖାଇଦେଲେ ମନ୍ତ୍ରୀମାନଙ୍କର ନିବାସସ୍ଥଳୀ । ଚାହୁଁ ଚାହୁଁ ଗାଡ଼ି ଚାଲିଲା ନୀଳନଦୀର ସେତୁ ଉପରେ । ଗଙ୍ଗା, ଗୋଦାବରୀ ବା ମହାନଦୀ ପରି ନୀଳନଦୀ ସୁଦୀର୍ଘ ନୁହେଁ । ଅଥଚ ଦିଶୁଥାଏ ଶୋଭାମୟୀ ଓ ଜଣାଯାଉଥାଏ ସୁଗଭୀର । ଗାଇଡ୍ ଜଣାଇଲେ, "ମାନବ ବସତିର ଆରମ୍ଭ କାଳରୁ ନୀଳ ହେଉଛି ମିଶରୀୟମାନଙ୍କର ଜୀବନଧାରା ସଦୃଶ ଜଳପ୍ରବାହ । ଏହି ନଦୀର ଉର୍ବର ଉପତ୍ୟକାରେ ସୁଦୂର ଅତୀତରେ ଉତ୍ପତ୍ତି ଲାଭ କରିଥିଲା ମିଶରୀୟ ସଭ୍ୟତା ।"

ଚାହୁଁ ଚାହୁଁ ସହରାଞ୍ଚଳ ଶେଷ ହେଲା । ନଗରର ବହିର୍ଭାଗରେ ଦେଖିବାକୁ ମିଳିଲା ଦୁଇଟି ସୁରମ୍ୟ ରାଜପ୍ରାସାଦ । ଗାଇଡ୍ କହିଲେ, "ପ୍ରଥମ ସୌଧଟି ହେଉଛି ମିଶରର ଶେଷ ରାଜା ଫାରୁକ୍‌ଙ୍କର ପ୍ରଥମ ପତ୍ନୀଙ୍କର ଏବଂ ଦ୍ୱିତୀୟଟି ନିର୍ମାଣ କରିଛନ୍ତି ଆରବ ଦେଶର ରାଜା ସାଉଦ୍ ।" ସେହି ଅଞ୍ଚଳର ଚାରିଦିଗରେ ସବୁଜ ତୃଣଭୂମି ଓ କୃଷିକ୍ଷେତ୍ର ସାଙ୍ଗକୁ ମାଡ଼ିରହିଥାଏ ଘନୀୟିତ ବୃକ୍ଷଲତା । ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖୁଥିଲାବେଳେ ଗାଇଡ୍ ମୋ ଦେହଟିକୁ ଈଷତ୍ ହଲାଇଦେଇ ଉଚ୍ଚ ସ୍ୱରରେ କହିଲେ, "ବର୍ତ୍ତମାନ ପଶ୍ଚିମଦିଗକୁ ଚାହିଁବା ସମୟ ।"

ଦୃଷ୍ଟି ଫେରାଇଲାକ୍ଷଣି ଆଖିରେ ପଡ଼ିଲା ଅଭୂତପୂର୍ବ ଦୃଶ୍ୟ । ଅନେକ ଦୂରରେ ଦେଖାଯାଉଥାଏ ଗାଢ଼ ନୀଳ ଆକାଶକୁ ଭେଦ କରି ପଶ୍ଚିମ ଦିଗ୍‌ବଳୟ ପର୍ଯ୍ୟନ୍ତ ଦଣ୍ଡାୟମାନ ରହିଛି ଗୋଟିକ ପରେ ଗୋଟିଏ ନଭଶ୍ଚୁମ୍ବୀ ପିରାମିଡ୍ । ଆକାଶ ମଣ୍ଡଳରୁ ନୀଳ ଉପତ୍ୟକା ବକ୍ଷକୁ ଶୂନ୍ୟରୁ ଝୁଲି ରହିଥିବା ସୁବିଶାଳ ଚିତ୍ରପଟ ପରି ପ୍ରତୀୟମାନ ହେଲା । ପୂର୍ବାକାଶର ସୂର୍ଯ୍ୟାଲୋକରେ ଉଦ୍ଭାସିତ ହୋଇଉଠୁଥାଏ ଗୋଟିଏ ଅଂଶ, ଛାୟାଆଚ୍ଛାଦିତ ଅନ୍ୟ ଅଂଶଟି ଧାରଣ କରିଥାଏ ଧୂସର ରଙ୍ଗ । ବର୍ଣ୍ଣନାତୀତ ସେହି ଦୃଶ୍ୟ ଦିଗରେ ଦୃଷ୍ଟି ନିବିଦ୍ଧ ହେଲା ।

ଅବିଳମ୍ବେ ଗାଡ଼ି ରହିଲା ମରୁପ୍ରାନ୍ତରର ଗୋଟିଏ ସ୍ଥାନରେ । ସେଠାରୁ ପିରାମିଡ୍ ପାଦଦେଶ ପର୍ଯ୍ୟନ୍ତ ଯିବା ନିମନ୍ତେ ରଖାଯାଇଥାଏ ଅନେକଗୁଡ଼ିଏ ମରୁଗାମୀ ଓଟ । ପ୍ରତ୍ୟେକ ଯାତ୍ରୀଙ୍କ ନିକଟକୁ ଆସିଗଲେ ଓଟ ସହ ଓଟଚାଳକ । ଗାଇଡ୍ ମୋକ୍ଷା ମୋତେ ଗୋଟିଏ ଓଟ ଉପରକୁ ଉଠାଇଦେଲେ । ବସିଲା ପରେ ଲଗାମ ଧରି ପାଖେ ପାଖେ ଚାଲିଲେ ଚାଳକ । ସାହାରା ମରୁଭୂମିରେ ଅଳ୍ପଦୂର ହେଲେ ମଧ୍ୟ ଓଟପିଠିରେ ସେହି ଯାତ୍ରା ମନରେ ଶିହରଣ ସଞ୍ଚାର କଲା । ତଳେ ଛିଡ଼ା ରହି ମୋକ୍ଷା ମୋର ଫଟୋଟିଏ ଉଠାଇନେଲେ ।

ଓଟ ପିଠିରୁ ଅବତରଣ କରି ଚାହିଁଲାକ୍ଷଣି ସମ୍ମୁଖରେ ଦେଖିବାକୁ ମିଳିଲା ମିଶରର ବୃହତ୍ତମ ପିରାମିଡ୍— ଗିଜେ । ବିଶ୍ୱପୃଷ୍ଠରେ ନିର୍ମିତ ମନୁଷ୍ୟଜାତିର କୀର୍ତ୍ତିମାନଙ୍କ ମଧ୍ୟରେ ସର୍ବବୃହତ୍ କୀର୍ତ୍ତି— ମହାକାଳ ପ୍ରତି ଭ୍ରୂକ୍ଷେପ ନକରି ସମୟର ଓ ପ୍ରକୃତିର ଝଡ଼ଝଞ୍ଜା ଅତିକ୍ରମ କରି ଦଣ୍ଡାୟମାନ ରହିଥିବା ଗିଜେ ପିରାମିଡ୍ !

ଧନ୍ୟ ଥିଲେ ଏହାର ନିର୍ମାତା । ଧନ୍ୟ ଥିଲା ତାଙ୍କର ବିଶ୍ୱାସ । ଧନ୍ୟ ଥିଲା ସେଯୁଗର କର୍ମଶକ୍ତି ଓ ନିର୍ମାଣ କୌଶଳ ଏବଂ ଧନ୍ୟ ଥାଏ ପଞ୍ଚଭୂତଗଠିତ ମନୁଷ୍ୟର ମର ଶରୀରକୁ ଅକ୍ଷତ ରଖିବା ନିମନ୍ତେ ସେମାନଙ୍କର ଉଦ୍ଭାବନ କ୍ଷମତା ! ପିରାମିଡ଼ର ଶୀର୍ଷ ପର୍ଯ୍ୟନ୍ତ ଆଖି ପାଉ ନଥାଏ । ତାହାର ସୁବିଶାଳ ରୂପ ସମ୍ମୁଖରେ ଆମେ ଦେଖାଯାଉଥାଉଁ କ୍ଷୁଦ୍ର କ୍ଷୁଦ୍ର ଖେଳନା ପରି । ଆତ୍ମବିସ୍ମୃତ ଅବସ୍ଥାରେ କିଛି ସମୟ ଛିଡ଼ା ହୋଇ ରହିଲି । ମୋକ୍ଷା ଆରମ୍ଭ କଲେ ତାଙ୍କର ବର୍ଣ୍ଣନା –

ଏହି ଯେଉଁ ତ୍ରିଭୁଜାକାର ଗଠନଟିକୁ ଦେଖୁଛନ୍ତି, ତାହା ନିର୍ମିତ ହୋଇଥିଲା ଖ୍ରୀଷ୍ଟଜନ୍ମର ୩ ହଜାର ବର୍ଷ ପୂର୍ବେ, ଅର୍ଥାତ୍ ଆଜିଠାରୁ ପାଞ୍ଚହଜାର ବର୍ଷ ଆଗେ । ନିର୍ମାଣ କରିଥିଲେ ମିଶରଦେଶର ଖୁଫୁ ନାମଧେୟ ରାଜା ବା ଫାରୋ । ୧୩ ଏକର ଭୂମି ଉପରେ ମାଡ଼ିରହିଛି ତ୍ରିଭୁଜର ମୂଳ । ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ, ପ୍ରତ୍ୟେକ ପାଦଦେଶ ହେଉଛି ୭୫୫ ଫୁଟ - ବା ୨୩୦ ମିଟର ଲମ୍ବ । ମୂଳ ସ୍ଥଳରୁ କ୍ରମାଗତ ଭାବରେ ତ୍ରିଭୁଜ ଆକାର ଧାରଣ କରି ପିରାମିଡ଼

ଆକାଶ ମଧ୍ୟକୁ ଭେଦିଯାଇ ତାହାର ଶୀର୍ଷବିନ୍ଦୁରେ ଶେଷ ହୋଇଛି । ଏହାର ଉଚ୍ଚତା ହେଉଛି ୪୮୧ ଫୁଟ ବା ୧୪୭ ମିଟର । ୨୩ ଲକ୍ଷ ପ୍ରକାଣ୍ଡ ପ୍ରକାଣ୍ଡ ପଥରଖଣ୍ଡରେ ଏହି ପିରାମିଡ୍ ଗଠିତ ହୋଇଛି । ପ୍ରତ୍ୟେକ ପଥରଖଣ୍ଡର ଓଜନ ହେଉଛି ଅଢ଼େଇ ଟନ୍ । ଏପରି ସୁବିଶାଳ ଓ ସୁଦୃଢ଼ କୀର୍ତ୍ତି ପୃଥିବୀର ଅନ୍ୟ କୌଣସିଠାରେ ଅନ୍ୟ କୌଣସି ମନୁଷ୍ୟଜାତି ନିର୍ମାଣ କରିପାରି ନାହିଁ । ସେଥିପାଇଁ ବିଶ୍ୱର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ପିରାମିଡ୍ ହେଉଛି ସର୍ବପ୍ରଧାନ । କୁହାଯାଏ, ‘‘ପୃଥିବୀ ସମୟକୁ ଭୟ କରେ, କିନ୍ତୁ ସମୟ ଭୟ କରେ ପିରାମିଡ୍‌କୁ ।’’ ପାଞ୍ଚହଜାର ବର୍ଷ ଚାଲିଗଲାଣି, ପିରାମିଡ୍ ଛିଡ଼ା ରହିଛି । ହଜାର ହଜାର ବର୍ଷ ଚାଲିଯିବ, ପିରାମିଡ୍ ଛିଡ଼ା ରହିଥିବ ।

ମୋଷା କହିଚାଲିଲେ ପିରାମିଡ୍ ନିର୍ମାଣର କାରଣ । ପ୍ରାଚୀନ ମିଶରୀୟମାନେ ବିଶ୍ୱାସ କରୁଥିଲେ ଯେ, ଆତ୍ମାର ମୃତ୍ୟୁ ନାହିଁ । ଶରୀର ତ୍ୟାଗ କରି ଚାଲିଗଲେ ସୁଦ୍ଧା ପୁଣିଥରେ ଆତ୍ମା ସେହି ଶରୀର ମଧ୍ୟକୁ ଫେରିଆସେ । ସେଥିପାଇଁ ସେମାନେ ନିଜ ନିଜ ଶରୀରକୁ କବର ଭିତରେ ସାଇତି ରଖିଯିବା ଲାଗି ଆଗରୁ ବ୍ୟବସ୍ଥା କରିଯାଉଥିଲେ । ରାଜାମାନଙ୍କର ଥାଏ ଅପରିସୀମ ଧନବଳ ଓ ଜନବଳ । ସେମାନେ ନିଜ ନିଜର ଶବକୁ ଅକ୍ଷତ ଅବସ୍ଥାରେ ରଖିଯିବା ନିମନ୍ତେ ମୃତ୍ୟୁ ପୂର୍ବରୁ ପିରାମିଡ୍ ନିର୍ମାଣ କରିଯାଉଥିଲେ । ଆତ୍ମା ଫେରିଆସିଲେ ଶବ ଜୀବନ୍ତ ହୋଇଉଠିବ ଓ ରାଜା ପୁନର୍ବାର ସିଂହାସନରେ ବସି ରାଜ୍ୟଶାସନ କରିବେ । ରାଜା ଖୁଫୁ ତାଙ୍କ ଲାଗି ଏହି ପିରାମିଡ୍ ନିର୍ମାଣ କରିବାକୁ ଏକଶତ ସହସ୍ର ମନୁଷ୍ୟଙ୍କୁ ଦୀର୍ଘ ୨୦ ବର୍ଷ ପାଇଁ ପରିଶ୍ରମରେ ଲଗାଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଅସଂଖ୍ୟ କ୍ରୀତଦାସ, ପଦାନତ ଇହୁଦୀ ଓ ସାଧାରଣ ପ୍ରଜା ।

ବକ୍ତବ୍ୟ ଶେଷ କରି ମୋଷା କହିଲେ, ‘‘ଯେଉଁମାନେ ପିରାମିଡ୍‌ର ଗର୍ଭସ୍ଥାନରେ ଥିବା ଫ୍ୟାରୋଙ୍କର ଶବାଧାର କକ୍ଷ ଦେଖିବାକୁ ଇଚ୍ଛା କରନ୍ତି, ସେମାନେ ନିଜ ନିଜର ଓଭାର କୋଟ ଦେହରୁ କାଢ଼ି ଗୋଟିଏ ସ୍ଥାନରେ ରଖିଦିଅନ୍ତୁ । ସୁଦୀର୍ଘ ଓ ସଂକୀର୍ଣ୍ଣ ସୁଡ଼ଙ୍ଗ ପଥରେ ଅନେକ ଉପରକୁ ଉଠିବାକୁ ପଡ଼ିବ । ଯେଉଁମାନେ ଅବଶ ବା ଦୁର୍ବଳ, ସେମାନେ ଯିବେ ନାହିଁ ।’’

ଆମ ଦଳରେ ଥିବା ୨୫ଜଣଙ୍କ ମଧ୍ୟରୁ ପ୍ରାୟ ଅଧେ ଯାତ୍ରୀ ସେହି ଗଭୀର ଅନ୍ଧକାରାଚ୍ଛନ୍ନ ଗର୍ଭପଥ ଦେଖି ଯିବେ ନାହିଁ ବୋଲି ଜଣାଇଲେ । ଗାଇଡ୍ କହିଲେ, ‘‘ହଜାର ହଜାର ବର୍ଷ ଯାବତ୍ ଏହି ସୁଡ଼ଙ୍ଗ ବନ୍ଦ ରହିଥାଏ । ଶବାଧାର କକ୍ଷକୁ ରାସ୍ତା ଅଛି ବୋଲି ଜଣାପଡ଼ିଲା ପରେ ସେଥିରୁ ବାଲି ବାହାର କରି ଦର୍ଶକମାନଙ୍କ ପାଇଁ ପଥ ଉନ୍ମୁକ୍ତ କରାଯାଇଛି ।’’

ସୁଡ଼ଙ୍ଗର ପ୍ରବେଶପଥରେ ପ୍ରଥମେ ଗାଇଡ଼ ଛିଡ଼ାହେଲେ । ତାଙ୍କ ପଛରେ ଆମେ ବାରଜଣ ଧାଡ଼ି ଲାଗି ଛିଡ଼ାହେଲୁ । ଆଗରେ ଗଭୀର ଅନ୍ଧକାର । ସଂକୀର୍ଣ୍ଣ ଗଳିରେ କେବଳ ଜଣେ ଲେଖାଏଁ ଚାଲିପାରିବେ । ମସୃଣ ପଥରେ ଉପରକୁ ଉଠିବା ସମ୍ଭବ ନଥିବା ଯୋଗୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ତା ଉପରେ କାଠର ପଟାମାନ ଖଞ୍ଜାଯାଇଥାଏ । ମୋଷା ଆମକୁ କ୍ଷିପ୍ର ପଦକ୍ଷେପରେ ଉଠିବାକୁ କହି ନିଜେ ଦୌଡ଼ିଲାପରି ଚାଲିଲେ । କେହି ଜାଣିପାରିଲେ ନାହିଁ ଯେ କାଠତକ୍ତାଗୁଡ଼ିକ ତଳେ ଥିବା ଅସଂଖ୍ୟ ଯାତ୍ରୀଙ୍କର ପଦଧୂଳି ସଦାବେଳେ ସୁଡ଼ଙ୍ଗଟିକୁ ଧୂଳିପୂର୍ଣ୍ଣ କରି ରଖିଛି । ଅଥଚ, ସେହି ବିଷାକ୍ତ ପବନ ଥିଲା ବଞ୍ଚିବା ଲାଗି ନିଃଶ୍ୱାସ ପ୍ରଶ୍ୱାସ । ଅନ୍ଧକାର ଭେଦ କରି ଅନେକ ଉପରକୁ ଉଠିଲାପରେ ଶବାଧାର କକ୍ଷରେ ଜଣକ ପରେ ଜଣେ ପହଞ୍ଚିଲୁଁ । ଗାଇଡ଼ଙ୍କ ମୁଖମଣ୍ଡଳ ଧଳାକନାରେ ଆବୃତ ଥାଏ । ରୁମାଲ ଦେଇ ମୁହଁ ପୋଛିଲାବେଳକୁ ଦେଖିଲି, ସେଥିରେ ମେଞ୍ଚା ମେଞ୍ଚା ମଇଳା ଧୂଳି । ନାକ, କାନ, ଆଖିପତା, କପାଳ ଓ ଗଳା, ସବୁ ଧୂଳିମୟ । ଆଇରିସ୍ ବନ୍ଧୁ ଜଣେ ଇଟାଲୀୟଙ୍କୁ କହିଲେ, ''ଆପଣ ଫ୍ୟାରୋଙ୍କ ଶବ ପରି ଦିଶୁଛନ୍ତି ।'' ସେ ଉତ୍ତର ଦେଲେ, ''ଆପଣ ଦିଶୁଛନ୍ତି ଫ୍ୟାରୋ ଖୁଫୁଙ୍କ ପ୍ରେତପରି ।'' ବାସ୍ତବିକ୍ ସମସ୍ତଙ୍କ ମୁହଁ କଳା ଦିଶୁଥାଏ ।

ପିରାମିଡ଼ ଗର୍ଭର ଶବାଧାର କକ୍ଷଟି ଅତିଶୟ ଛୋଟ । ଥରକୁ ମାତ୍ର କୋଡ଼ିଏ ଜଣ ବ୍ୟକ୍ତି ଖୁନ୍ଦାଖୁନ୍ଦି ହୋଇ ଛିଡ଼ା ରହିପାରିବେ । ସେତେ ଊର୍ଦ୍ଧ୍ୱକୁ ଉଠି ଆସି ସମସ୍ତେ ଅଣନିଶ୍ୱାସୀ ହୋଇପଡ଼ିଥାନ୍ତି । ମୋଷା ପକେଟରୁ ମହମବତିଟି କାଢ଼ି ଦିଆସିଲି କାଠି ଲଗାଇଲେ । କ୍ଷୁଦ୍ର କକ୍ଷଟି ଆଲୋକିତ ହୋଇଉଠିଲା । ପବନ ଓ ଈଷତ୍ ଆଲୋକ ଆସିବା ପାଇଁ କାନ୍ଥର ଗୋଟିଏ କୋଣରେ ଗାତଟିଏ ଖୋଲା ରହିଥାଏ । ସମସ୍ତଙ୍କର ଦୃଷ୍ଟି ପଡ଼ିଲା ପଥରର ଗୋଟିଏ କୁଣ୍ଡ ଉପରେ । ମୋଷା କହିଲେ, ''ଏହି କୋଠରିରେ ଥାଏ ଖୁଫୁଙ୍କର ଶବ । ଯେଉଁ ପଥରବାକ୍ସଟି ଦେଖୁଛନ୍ତି, ତା ଭିତରେ ଥାଏ ସୁନାର କଫିନ୍ । କଫିନ୍ ମଧ୍ୟରେ ରଖାଯାଇଥାଏ ରାଜାଙ୍କର ପ୍ରଲେପମଣ୍ଡିତ ଦେହ । ଏବେ ସେହି ଦେହକୁ ଏଠାରୁ ନେଇ ଗୋଟିଏ ଦୂରବର୍ତ୍ତୀ ମିଉଜିୟମରେ ରଖାଯାଇଛି । ପାଞ୍ଚହଜାର ବର୍ଷ ଆଗର ଶବ । ତାହାକୁ ଦେଖିବା ନିମନ୍ତେ ଅସଂଖ୍ୟ ପର୍ଯ୍ୟଟକ ଯାଆନ୍ତି ।''

ମୋଷା ଆହୁରି ମଧ୍ୟ ବର୍ଣ୍ଣନା କଲେ ଯେ, ଏହି ଶବାଧାର କକ୍ଷରେ ରଖାଯାଇଥିଲା ରାଜାଙ୍କର ଅସ୍ତ୍ରଶସ୍ତ୍ର, ପୋଷାକ ପରିଚ୍ଛଦ ଓ ରାଜଦଣ୍ଡ । ସେଥି ସହ ରଖାଯାଇଥାଏ ସ୍ୱର୍ଣ୍ଣପାତ୍ରଗୁଡ଼ିକ ଉପରେ ନାନାପ୍ରକାର ଖାଦ୍ୟ । ''ଫ୍ୟାରୋଙ୍କ ଆତ୍ମା ଶରୀରମଧ୍ୟରେ ପ୍ରବେଶ କଲାପରେ ସେ ନିଦରୁ ଉଠି ପ୍ରଥମେ ଆହାର କଲାପରେ ପୋଷାକ

ପିନ୍ଧି ଓ ରାଜଦଣ୍ଡ ଧାରଣ କରି ସୁଡ଼ଙ୍ଗ ପଥରେ ବାହାରି ଯାଇ ପୁନର୍ବାର ରାଜପ୍ରାସାଦରେ ପ୍ରବେଶ କରିଥାନ୍ତେ ଓ ସିଂହାସନରେ ବସିଥାନ୍ତେ । ଆମେ ଏ ପର୍ଯ୍ୟନ୍ତ ତାଙ୍କୁ ଅପେକ୍ଷା କରିଛୁଁ । କିନ୍ତୁ ସେ ଦେବଲୋକରେ ଭ୍ରମଣ ଶେଷକରି ଫେରି ଆସିନାହାନ୍ତି । ସମ୍ଭବତଃ, ନିଶ୍ଚୟ ଦିନେ ଆସିବେ ।''

କ୍ଷଣିକଲାଗି ମୋ ମନ ଚାଲିଯାଇଥାଏ ଫ୍ୟାରୋଙ୍କ ଯୁଗକୁ– କ୍ଷମତା, ବିଭବ, ସଭ୍ୟତା ଓ ଅନ୍ଧବିଶ୍ୱାସର ସେହି ସୁଦୂର ଅତୀତକୁ । ନୀଳ ସଭ୍ୟତା ସମୟର କେତେ କଥା ଓ କାହାଣୀ ମନକୁ କିଛିସମୟ ଆଚ୍ଛାଦିତ କରି ରଖିଲା ।

ହଠାତ୍ ନିଜର ମୁହଁ ପାଖରେ ହାତର ଦୁଇଟି ପାପୁଲି ରଖି ମୋଷା ଗୋଟିଏ ପ୍ରକାର ଅଦ୍ଭୁତ ଧ୍ୱନି ଉଚ୍ଚାରଣ କଲେ । ସଙ୍ଗେ ସଙ୍ଗେ ସେହି ଧ୍ୱନି ଚାରିପାଖ କାନ୍ଥରେ ବାଜିବା ସହ କ୍ରମାଗତ ପ୍ରତିଧ୍ୱନି ରୂପେ କକ୍ଷଟିକୁ ମୁଖରିତ କରିରଖିଲା । ଗାଇଡ୍ ଗର୍ବ କରି ଘୋଷଣା କଲେ, ''ପୃଥିବୀରେ ଅନ୍ୟ କୌଣସି ସ୍ଥାନ ନାହିଁ, ଯେଉଁଠାରେ ଏପରି ପ୍ରତିଧ୍ୱନି ଶୁଣାଯାଇ ପାରିବ ।'' ବିଶେଷତ୍ୱ ଥାଏ, ଏ ପାଖରୁ ସେ ପାଖ ପ୍ରତିଧ୍ୱନିର ପ୍ରତିଧ୍ୱନି ଶୁଣିବାକୁ ମିଳୁଥାଏ ।

ଶବାଧାର କକ୍ଷରୁ ତଳକୁ ଚାଲିଲାବେଳେ ସମସ୍ତେ ନାକରେ ରୁମାଲ ରଖିଲେ । ଆସିଲାବେଳେ ଗାଇଡ୍ ଧୂଳି କଥା କହିଥିଲେ ଭଲ ହୋଇଥାନ୍ତା ବୋଲି ଭାବିଲି । ସୁଡ଼ଙ୍ଗର ମଧ୍ୟସ୍ଥାନରେ ହଠାତ୍ ମୋଷା କହିଲେ, ''ଏହିଠାରୁ ଆଉ ଗୋଟିଏ ସୁଡ଼ଙ୍ଗ ରହିଛି ରାଣୀଙ୍କ ଶବାଧାର କକ୍ଷକୁ । ହାମୁଡ଼ି ହାମୁଡ଼ି ଗାତ ଭିତରେ ଯିବାକୁ ହେବ ।'' ଆମ ଦଳରୁ କେବଳ ମୁଁ ଓ ଆଇରିସ୍ ଯୁବକ ସେଥିରେ ପଶିବାକୁ ରାଜି ହେବାରୁ ଗାଇଡ୍ ମଧ୍ୟ ଆଗେଇଲେ । ଅନ୍ୟମାନେ ତଳକୁ ଚାଲିଗଲେ ।

ଅନେକ କଷ୍ଟରେ ହାମୁଡ଼ିବା ଅବସ୍ଥାରେ ଯାଇ ଖୁଫୁଙ୍କ ରାଣୀଙ୍କ ଶବାଧାର କକ୍ଷରେ ପ୍ରବେଶ କଲୁଁ । ଅତ୍ୟନ୍ତ କ୍ଷୁଦ୍ର କୋଠରି । ତା ଭିତରେ ଥାଏ ପଥରର କୁଣ୍ଡ । ମୋଷା କହିଲେ, ''ବିଶ୍ୱାସ କରାଯାଏ, ଫ୍ୟାରୋଙ୍କ ମୃତ୍ୟୁପରେ ଜୀବନ୍ତ ରାଣୀଙ୍କୁ ଶବାଧାରରେ ଶୁଆଇ ଏହିପରି କକ୍ଷରେ ରଖି ବାଲି ଭର୍ତ୍ତି କରାଯାଉଥାଏ, କାରଣ ତାଙ୍କ ଆତ୍ମା ମଧ୍ୟ ରାଜାଙ୍କ ଆତ୍ମାଙ୍କ ସହିତ ନକ୍ଷତ୍ରରାଜ୍ୟରେ ଭ୍ରମଣ କରିବ ।'' ଗଭୀର ଅନ୍ଧକାର ମଧ୍ୟରେ ତାଙ୍କର ଏହି ବାକ୍ୟଟି ଶୁଣି ଲୋମ ଟାଙ୍କୁରି ଉଠିଲା । ଫ୍ୟାରୋଙ୍କ ପତ୍ନୀ ହେବାର ଅର୍ଥ, ଜୀବିତା ଥାଇ ମଧ୍ୟ କବର ଧରିବାକୁ ହେବ !

ପିରାମିଡ୍‌ର ପାଦଦେଶରେ ପହଞ୍ଚିଲାବେଳକୁ ଦେହରେ ବଳ ନଥାଏ । ତଥାପି ମନୋବଳ ଦୃଢ଼ ରଖିବାକୁ ହେଲା । ଅନେକ ସ୍ଥାନ ଦେଖିବାକୁ ବାକି ଥାଏ ।

ପିରାମିଡ୍ ଚାରିପାଖ କାନ୍ଥ ଭେଦ କରି ରହିଥାଏ ଗହ୍ୱରସ୍ୱରୂପ କ୍ଷୁଦ୍ର କ୍ଷୁଦ୍ର କକ୍ଷ । ସେଥିମଧ୍ୟରେ ରଖାଯାଇଥିଲା ମନ୍ତ୍ରୀ ଓ ରାଜାଙ୍କ ଆତ୍ମୀୟମାନଙ୍କର ଶବାଧାର । ଊନବିଂଶ ଶତାବ୍ଦୀର ମଧ୍ୟ ସମୟ ପର୍ଯ୍ୟନ୍ତ ସେଗୁଡ଼ିକର ଅବସ୍ଥିତି ବିଷୟ କେହି ଜାଣି ନଥାନ୍ତି । କିନ୍ତୁ ୧୮୫୨ ମସିହାରେ ମିଶରର ତଦାନୀନ୍ତନ ଶାସକମାନେ ବୃହତ୍ତମ ପିରାମିଡ଼ର ପାର୍ଶ୍ୱଦେଶ ଖନନ କରି କବରଗୁଡ଼ିକ ଆବିଷ୍କାର କଲେ । 'ମାମି' ଆକାରରେ ରଖାଯାଇଥିବା ଶବଗୁଡ଼ିକୁ ମିଉଜିୟମରେ ସଂରକ୍ଷଣ କରାଗଲା । ସେହି ଖନନ ସମୟରେ ଜଣାପଡ଼ିଲା ଯେ ପିରାମିଡ଼ର ମଧ୍ୟସ୍ଥାନରେ ଥିବା ଖୁଫୁଙ୍କ ଶବାଧାର କକ୍ଷ ପର୍ଯ୍ୟନ୍ତ ଗୁପ୍ତ ସୁଡ଼ଙ୍ଗଟିଏ ରହିଛି ।

ମିଶରର ବୃହତ୍ତମ ପିରାମିଡ଼ 'ଗିଜେ' ଦଣ୍ଡାୟମାନ ରହିଛି କାଇରୋ ସହରର ନିକଟବର୍ତ୍ତୀ ସ୍ଥାନରେ । ପଶ୍ଚିମରେ ଦିଶୁଥାଏ ଅନ୍ୟ ଦୁଇଗୋଟି ପ୍ରକାଣ୍ଡକାୟ ପିରାମିଡ଼ । ମୋଷାଙ୍କୁ ପଚାରିଲି, "ସେହି ଦୁଇଟି ପିରାମିଡ଼ ଦେଖିହେବ କି ?" ସେ ଉତ୍ତର ଦେଲେ, "ଦିଶୁଛି ପାଖରେ, କିନ୍ତୁ ପ୍ରକୃତରେ ଅନେକ ଦୂରରେ । ସାହାରାର ବାଲୁକାରାଶି ଉପରେ ସେଠାକୁ ଓଟ ଉପରେ ଯିବାକୁ ହେବ । କିନ୍ତୁ ସେଥିପାଇଁ ସମୟ ନାହିଁ । କେବଳ ସେହି ଦୁଇଟି ନୁହେଁ, ୫୦ ମାଇଲ ଦୂର ପର୍ଯ୍ୟନ୍ତ ଅଞ୍ଚଳରେ ଅନେକଗୁଡ଼ିଏ ବଡ଼ ଓ ଛୋଟ ପିରାମିଡ଼ ବିକ୍ଷିପ୍ତ ଭାବରେ ଛିଡ଼ା ରହିଛି ।"

ସାହାରା ଦିଗକୁ ଦୃଷ୍ଟି ଦେଲାବେଳକୁ ମନରେ ଭୟ ଆସିଲା । ଦିଗହୀନ ଉତ୍ତପ୍ତ ବାଲୁକାରାଶି । ସୀମାନ୍ତରେ ଛିଡ଼ା ରହି ତାହାର ରୂପ ଦର୍ଶନ କରିବା ହିଁ ଯଥେଷ୍ଟ । ଭିତରକୁ ପ୍ରବେଶ କରିବାର ପ୍ରଶ୍ନ ନଥାଏ । ମୋଷା କହିଲେ, "କଳା ଚଷମା ନ ପିନ୍ଧି ସାହାରାକୁ ଦେଖିଲେ, ଆଖିର ଦୃଷ୍ଟିଶକ୍ତି ନଷ୍ଟ ହେବ ।"

### ବିଶ୍ୱର ବୃହତ୍ତମ ମୂର୍ତ୍ତି : ସ୍ଫିଙ୍କସ୍

ପିରାମିଡ଼ ପାଦଦେଶରେ କିଛି ଦୂରରେ ଦେଖିବାକୁ ମିଳିଲା ପୃଥିବୀର ସେହି ପ୍ରହେଳିକାମୟ ସୁବିଶାଳ ପ୍ରସ୍ତରମୂର୍ତ୍ତି ସ୍ଫିଙ୍କସ୍ । ପର୍ଯ୍ୟଟକମାନେ ଘେରି ରହିଥାନ୍ତି । ମୂର୍ତ୍ତିଟିର ଉଚ୍ଚତା ହେଉଛି ୭୫ ଫୁଟ ବା ୨୩ ମିଟାର ଓ ଦୈର୍ଘ୍ୟ ହେଉଛି ୧୫୦ ଫୁଟ ବା ୪୬ ମିଟାର । ମୂର୍ତ୍ତିର ମୁଖଟି ଦେଖାଯାଏ ନାରୀର ମୁଖ ପରି, ଯଦିଚ କେହି କେହି କହନ୍ତି ତାହା ଥିଲା ଜଣେ ଫ୍ୟାରୋଙ୍କର ମୁଖାକୃତି । ଦେହଟି ଗୋଟିଏ ସିଂହର, ପାଦଗୁଡ଼ିକ କୁକୁରର ଥାବା ପରି ଓ ଲାଞ୍ଜ ଦେଖାଯାଉଥାଏ ସାପ ପରି । ଗୋଟିଏ ବିଚିତ୍ର ଜୀବପରି ଚାହିଁ ରହି ସେହି ଯୁଗଯୁଗବ୍ୟାପୀ ମୂର୍ତ୍ତିଟିର ମୁଖମଣ୍ଡଳ କେଉଁପ୍ରକାର ଭାବଭଙ୍ଗୀ ପ୍ରକାଶ କରିଆସିଛି, ତାହା ବରାବର ମନୁଷ୍ୟ ମନରେ କୌତୂହଳ ସୃଷ୍ଟି କରିଥାଏ । ସ୍ଫିଙ୍କସ୍ କାନ୍ଦୁଛି କି ହସୁଛି,

ତାହାହିଁ ହେଉଛି ରହସ୍ୟ ! ସେଥିଉପରେ ଅନେକ ଆଲୋଚନା ବିଭିନ୍ନ ସାହିତ୍ୟରେ ସ୍ଥାନ ପାଇଛି ।

ସ୍ଫିଙ୍କ୍ସ୍ ସମ୍ବନ୍ଧରେ ଚିରନ୍ତନ ଗଳ୍ପଟିଏ ରହିଛି । ଏକଦା ତାହା ଥିଲା ଏକ ଭୟଙ୍କର ଜୀବନ୍ତ ଜନ୍ତୁ । ପାହାଡ଼ ଉପରେ ବସିରହି ସ୍ଫିଙ୍କ୍ସ୍ ପଥିକମାନଙ୍କୁ ପ୍ରଶ୍ନ ପଚାରୁଥାଏ, "କିଏ ସେହି ଜୀବ ଯିଏ ପ୍ରାତଃକାଳରେ ଚାଲେ ଚାରିପାଦରେ, ଦିବସର ଅଗ୍ରଗତି ସଙ୍ଗେ ଚାଲିପାରେ ଦୁଇପାଦରେ ଏବଂ ସନ୍ଧ୍ୟାବେଳେ ଚାଲେ ତିନି ପାଦରେ ?" ସେହି ଜଟିଳ ପ୍ରଶ୍ନର ଉତ୍ତର ବାଟୋଇମାନେ ଦେଇପାରୁ ନଥାନ୍ତି । ତେଣୁ ଜଣକ ପରେ ଜଣେ ଜନ୍ତୁଟିର ଆକ୍ରମଣରେ ପ୍ରାଣ ହରାଉଥିଲେ । ଶେଷରେ ଦିନେ ଓଡ଼ିପାସ୍ ନାମକ ଜଣେ ଯାତ୍ରୀ ପ୍ରଶ୍ନଟିର ଉତ୍ତର ଦେଇଥିଲେ, "ମୁଁ, ଅର୍ଥାତ୍ ମନୁଷ୍ୟ ହେଉଛି ସେହି ଜୀବ । ଶୈଶବରେ ଦୁଇଗୋଡ଼ ଓ ଦୁଇ ହାତରେ ଆଗେଇବାକୁ ହୁଏ, ବୟସକ୍ରମେ ଦୁଇପାଦରେ ଚାଲିପାରେ ଓ ବୃଦ୍ଧାବସ୍ଥାରେ ତୃତୀୟ ପାଦ ରୂପେ ଯଷ୍ଟି ବ୍ୟବହାର କରେ ।" ଉତ୍ତରରେ ସନ୍ତୁଷ୍ଟ ହୋଇ ସ୍ଫିଙ୍କସ୍ ନିଜର ପ୍ରାଣ ବିସର୍ଜନ କରିଥିଲା । ପ୍ରସ୍ତରର ନିର୍ବାକ୍ ମୂର୍ତ୍ତି ରୂପେ ଆଜି ସେହି ଜୀବ ମନୁଷ୍ୟଜାତିକୁ କେଉଁ ପ୍ରଶ୍ନ ପଚାରି ଚାଲିଛି, ତାହା ବା କହିବ କିଏ ?

ସେଠାରୁ ଗାଇଡ୍ ଆମମାନଙ୍କୁ ନିକଟବର୍ତ୍ତୀ ଗୋଟିଏ ମନ୍ଦିରର ଧ୍ୱଂସାବଶେଷ ପାଖକୁ ନେଇଗଲେ । କେବଳ ସୁଉଚ୍ଚ ସ୍ତମ୍ଭଗୁଡ଼ିକ ଛିଡ଼ା ରହିଥାଏ । ମୂର୍ତ୍ତିଗୁଡ଼ିକ ଚାଲିଯାଇଥାଏ ଯାଦୁଘରକୁ ।

## କାଇରୋ ସହରର ଅନ୍ୟାନ୍ୟ ଦ୍ରଷ୍ଟବ୍ୟ ସ୍ଥାନ

**କାଇରୋ ଯାଦୁଘର –** ମଧ୍ୟାହ୍ନ ଆସିଯାଉଥାଏ । ମରୁଭୂମିର ଉତ୍ତପ୍ତ ପରିବେଶରୁ ଆମେ ବିଦାୟ ନେଲୁଁ । ଗାଡ଼ି ଚାଲିଲା ସହର ପଥରେ । ପଛରେ ରହିଗଲା ସାହାରା, ପିରାମିଡ୍ ଓ ନୀଳନଦୀ ।

ସହରର କେନ୍ଦ୍ରସ୍ଥଳରେ ରହିଛି କାଇରୋ ମିଉଜିୟମ । ନୀଳସଭ୍ୟତା ଯୁଗର ଅସଂଖ୍ୟ ସନ୍ତକ ଧାରଣ କରି ଏହି ମିଉଜିୟମ୍ ବିଶ୍ୱର ଅନ୍ୟତମ ପ୍ରସିଦ୍ଧ ଯାଦୁଘର ରୂପେ ଖ୍ୟାତି ଲଭିଛି । ପ୍ରବେଶଦ୍ୱାରରେ ଦେଖିବାକୁ ମିଳିଲା ଫାରୋମାନଙ୍କର ପ୍ରକାଣ୍ଡ ପ୍ରକାଣ୍ଡ ମୂର୍ତ୍ତି । ପାଖରେ ରଖାଯାଇଥାଏ ସେମାନଙ୍କର କଫିନ୍ । ଗୋଟିକ ପରେ ଗୋଟିଏ ହଲ ମଧ୍ୟରେ ରହିଛି ପିରାମିଡ୍‌ଗୁଡ଼ିକର ଗର୍ଭ ଓ ପାର୍ଶ୍ୱଦେଶରୁ ଉଦ୍ଧାର କରାଯାଇଥିବା ଅଗଣିତ ସାମଗ୍ରୀ । ଚାରିଗୋଟି ହଲ୍ ଭିତରେ ସ୍ଥାନ ପାଇଛି ରାଜାମାନଙ୍କର ସିଂହାସନ, ରାଜମୁକୁଟ, ଅସ୍ତ୍ରଶସ୍ତ୍ର, ପୋଷାକପରିଚ୍ଛଦ,

ଆସବାବପତ୍ର, ଅଳଙ୍କାର, ବାସନକୁସନ ଓ ଶଯ୍ୟା ପଲଙ୍କ ଇତ୍ୟାଦି । 'ସ୍ୱର୍ଣ୍ଣକକ୍ଷ' ମଧ୍ୟରେ ରଖାଯାଇଛି ଫ୍ୟାରୋମାନଙ୍କର ସ୍ୱର୍ଣ୍ଣନିର୍ମିତ ପଦାର୍ଥମାନ ।

ଗାଇଡ୍ ନେଇଗଲେ ଫ୍ୟାରୋ ତୁତ୍ ଆଙ୍କ୍ ଆମେନ୍‌ଙ୍କ ସ୍ୱତନ୍ତ୍ର ହଲ ମଧ୍ୟକୁ । ସେ ଥିଲେ ଅତୀତର ସବୁ ମିଶରୀୟ ରାଜାମାନଙ୍କ ମଧ୍ୟରେ ସର୍ବାଧିକ ଐଶ୍ୱର୍ଯ୍ୟଶାଳୀ । ତାଙ୍କର ଶବକୁ ପ୍ରଥମ ବାକ୍ସ ବା କଫିନ ଭିତରେ ରଖାଯାଇ ତାହାକୁ ପୁଣି କ୍ରମାନ୍ୱୟଭାବରେ ବଡ଼ ବଡ଼ ଆକାରର କେତେଗୁଡ଼ିଏ ବାକ୍ସ ଭିତରେ ରଖାଯାଇଥିଲା । ସେହି ସବୁ ବାକ୍ସମାନ ସୁସଜ୍ଜିତ ଭାବେ ଗୋଟିକ ପରେ ଗୋଟିଏ ରଖାଯାଇଛି । ପ୍ରତ୍ୟେକ କାଠବାକ୍ସ ଉପରେ ଥାଏ ସୁନାର ଆବରଣ । ତା ଉପରେ ପୁଣି ଖଚିତ ରହିଛି ମହାର୍ଘ ରତ୍ନ । ବାକ୍ସର ଉର୍ଦ୍ଧ୍ୱଭାଗରେ ରହିଛି ରାଜାଙ୍କ ମସ୍ତକର ସ୍ୱର୍ଣ୍ଣନିର୍ମିତ ପ୍ରତିକୃତି । ହଲ ଭିତରେ ଭର୍ତ୍ତି ରହିଛି ତାଙ୍କର ହୀରାନୀଳା ଖଚିତ ନାନାବିଧ ଅଳଙ୍କାର । କୁହାଯାଏ, ତୁତ୍ ଆଙ୍କ୍ ଆମେନଙ୍କ ଐଶ୍ୱର୍ଯ୍ୟ ରାଜି ହେଉଛି ପ୍ରାଚୀନ ରାଜତନ୍ତ୍ରର ଏକ ଚମକପ୍ରଦ ନିଦର୍ଶନ । ଫ୍ୟାରୋଙ୍କର ସମସ୍ତ ପଦାର୍ଥ କାଇରୋ ମିଉଜିୟମରେ ରଖାଯାଇଥିଲା ବେଳେ ତାଙ୍କର ଶବଟିକୁ ରଖାଯାଇଛି ଦୂରବର୍ତ୍ତୀ ଲକ୍‌ଜର ନାମକ ସ୍ଥାନରେ ଥିବା ତାଙ୍କ ସମାଧିମନ୍ଦିର ମଧ୍ୟରେ । ସେହି ଶବ ଦେଖିବାକୁ ଅସଂଖ୍ୟ ପର୍ଯ୍ୟଟକ ଲକ୍‌ଜର ଯାଆନ୍ତି ।

ଫ୍ୟାରୋମାନଙ୍କର ଐଶ୍ୱର୍ଯ୍ୟ ଦେଖିସାରିଲା ପରେ ପ୍ରବଳ ଆଗ୍ରହ ହେଲା, ନୀଳସଭ୍ୟତା ଯୁଗର 'ପବିତ୍ର ଲେଖା', ଯେଉଁଥିରେ ରହିଛି ଛବିରୂପକ ଲିପି, ମନୁଷ୍ୟଜାତିର ପ୍ରଥମ ଉଦ୍ଭାବିତ କାଗଜ ରୂପେ ବ୍ୟବହୃତ ହୋଇଥିବା 'ପାପିରାସ୍' ତୃଣ ଓ ସେଯୁଗର କଲମ, କାଳି ଇତ୍ୟାଦି ଦେଖିବାଲାଗି । କିନ୍ତୁ ମୋଷା ସବୁବେଳେ ନିଜର ଘଡ଼ିକଣ୍ଟାକୁ ଚାହିଁ ଦେଖୁଥାନ୍ତି । କହିଲେ, "ମାସେ ସମୟ ଦେଖିଲେ ମଧ୍ୟ ସବୁ ଜିନିଷ ଦେଖିପାରିବେ ନାହିଁ । ଅନ୍ୟତ୍ର ଯିବାପାଇଁ ସମୟ ହେଲାଣି ।" ଏତିକି କହି ସେ ବାହାରି ଚାଲିଲେ । ବାଧ୍ୟ ହୋଇ ତାଙ୍କ ପଛେ ପଛେ ଚାଲିଲୁଁ ।

**ପ୍ରାଚୀନତମ ଗିର୍ଜା**—ସମୟ ଅପରାହ୍ନ । ଗାଇଡ୍ ନେଇଗଲେ ନଗରର ଉପକଣ୍ଠରେ ଥିବା ମିଶରର ସର୍ବପ୍ରାଚୀନ ଖ୍ରୀଷ୍ଟିଆନ ଗିର୍ଜା ଦେଖାଇବାକୁ । ଦଳରେ ସମସ୍ତେ ଥିଲେ ଖ୍ରୀଷ୍ଟିଆନ, ମୁଁ ଏକମାତ୍ର ହିନ୍ଦୁ । ଜରାଜୀର୍ଣ୍ଣ ଗିର୍ଜାର ଦ୍ୱାରଦେଶରେ ସେଠାକାର ଧର୍ମଯାଜକ ଆମମାନଙ୍କୁ ସାଦରେ ସ୍ୱାଗତ କଲେ ଏବଂ ଭୂଗର୍ଭରେ ଥିବା ଗୋଟିଏ କ୍ଷୁଦ୍ର କୋଠରି ଭିତରକୁ ସଂକୀର୍ଣ୍ଣ ଶିଡ଼ି ପଥରେ ନେଇଗଲେ । ଘରଟିର ମହତ୍ତ୍ୱ ସେ ପର୍ଯ୍ୟନ୍ତ ମୁଁ ଜାଣି ନଥାଏ । କିନ୍ତୁ କେତେଜଣ ଇଟାଲୀୟଙ୍କୁ ନତଜାନୁ ଅବସ୍ଥାରେ ମେଜିଆ ଉପରେ ବସିପଡ଼ି ଆଖି ବନ୍ଦ କରିବା ଦେଖି

ଆଶ୍ଚର୍ଯ୍ୟାନ୍ୱିତ ହେଲି । ଅନ୍ୟ କେତେଜଣଙ୍କ ଆଖିରେ ଦେଖିଲି ଲୋତକ ଧାର । ବୃଦ୍ଧ ଧର୍ମଯାଜକ ଭାବବିହ୍ୱଳ ସ୍ୱରରେ କହିବାକୁ ଲାଗିଲେ –

ଯିଶୁ ଜନ୍ମିଥିଲେ ଜେରୁଜେଲମ ନିକଟବର୍ତ୍ତୀ ବେଥେଲହେମ ନାମକ ଗ୍ରାମର ଗୋଟିଏ ପାନ୍ଥନିବାସର ପଶୁଶାଳା ମଧ୍ୟରେ । ସେହି ପବିତ୍ର ମୁହୂର୍ତ୍ତରେ କେତେଗୁଡ଼ିଏ ଅପ୍ରାକୃତିକ ଘଟଣା ଘଟିଯାଇଥିଲା । କେତେକ ବିଜ୍ଞବ୍ୟକ୍ତି ଜାଣିପାରିଲେ, ମନୁଷ୍ୟଜାତିର ତ୍ରାଣକର୍ତ୍ତାଙ୍କ ଆବିର୍ଭାବ ଘଟିଛି । ଦିନେ ସେ ସମସ୍ତଙ୍କୁ ମୁକ୍ତିପଥ ଦେଖାଇବେ ବୋଲି ସେମାନେ ପ୍ରକାଶ କଲେ । ଜନରବ ତତ୍‌କ୍ଷଣାତ୍ ପ୍ରଚାରିତ ହୋଇଗଲା । ସେତେବେଳେ ସେହି ଅଞ୍ଚଳ ଥାଏ ରୋମାନ୍ ସାମ୍ରାଜ୍ୟର ଅଂଶବିଶେଷ । ଶାସନକର୍ତ୍ତା ଥାନ୍ତି ହେରୋଡ୍ । ସେ ଅନୁମାନ କରିନେଲେ ଯେ ନବଜାତ ଶିଶୁ ଦିନେ ରାଜା ହେବାପାଇଁ ଚେଷ୍ଟା କରିପାରେ । ତେଣୁ, ଶିଶୁଟିକୁ ହତ୍ୟା କରିବା ଲାଗି ସେ ସୈନ୍ୟ ପଠାଇଲେ । ମାତା ମେରୀ ଓ ତାଙ୍କ ସ୍ୱାମୀ ଯୋଶେଫ୍ ସେ କଥା ଜାଣିପାରି ଶିଶୁକୁ ନେଇ ସେଠାରୁ ପଳାଇଗଲେ । ହେରୋଡ଼ଙ୍କ ସୈନ୍ୟମାନେ ବେଥେଲହେମ ଠାରେ ଜନ୍ମିଥିବା ଅନ୍ୟ ଶିଶୁପୁତ୍ରମାନଙ୍କୁ ହତ୍ୟାକରି ଫେରିଗଲେ ।

ଶିଶୁ ଯିଶୁଙ୍କୁ କୋଳରେ ଧରି ସୁଦୂର ଜେରୁଜେଲମ ଠାରୁ ଶେଷରେ ମେରୀ ଓ ଯୋଶେଫ ମିଶରଦେଶକୁ ପଳାଇ ଆସିଥିଲେ । "ସେତେବେଳେ ସେମାନେ ଏହି କୋଠରି ମଧ୍ୟରେ ଆଶ୍ରୟ ନେଇଥିଲେ ।" ସ୍ଥାନଟିର ମହତ୍ତ୍ୱ ଅନୁଭବ କରି ମୁଁ ନତଜାନୁ ହେଲି । ଅନ୍ୟମାନେ ମାଟି ଉପରେ ଚୁମ୍ବନ ଦେବା ଦେଖିଲି । ଧର୍ମଯାଜକ ଓ ଯାତ୍ରୀମାନେ ସମବେତ କଣ୍ଠରେ କିଛି ସମୟ ଲାଗି ପ୍ରାର୍ଥନା ଗାନ କଲେ । ଖ୍ରୀଷ୍ଟଙ୍କ ଜନ୍ମକାଳର ସେହି ପ୍ରାଚୀନ କକ୍ଷଟିର ପବିତ୍ରତା ଅନୁଭବ କରି ଅପାର ତୃପ୍ତି ପାଇଲି । ଯେଉଁ କକ୍ଷରେ ସ୍ୱୟଂ ଯିଶୁଖ୍ରୀଷ୍ଟ ଅବସ୍ଥାନ କରିଥିଲେ, ସେଠାରେ କିଛିସମୟ ବସିରହିବା ଥିଲା ପରମ ସୌଭାଗ୍ୟର ବିଷୟ ।

ଭୂଗର୍ଭ ସ୍ଥାନର ଉପରିଭାଗରେ ଖ୍ରୀଷ୍ଟ ଅବ୍ଦ ୫୦୦ ରେ ନିର୍ମିତ ହୋଇଥିବା ଗିର୍ଜାଟି ଜରାଜୀର୍ଣ୍ଣ ଦେଖାଯାଉଥାଏ । ଗିର୍ଜାର ଅଳ୍ପଦୂରରେ ଦେଖିବାକୁ ମିଳିଲା ଗୋଟିଏ ଅସ୍ୱାଭାବିକ ଜନବସତି । ମରୁପ୍ରାନ୍ତର ବିସ୍ତୀର୍ଣ୍ଣ ପଡ଼ିଆ ଉପରେ ଦିଶୁଥାଏ ଧାଡ଼ି ପରେ ଧାଡ଼ି ତମ୍ବୁ । ତମ୍ବୁ ପରେ ଖଜୁରୀବରଡ଼ାରେ ଅନେକ ଗୁଡ଼ିଏ କୁଡ଼ିଆ । ବସ୍ତି ମଧ୍ୟରେ ହଜାର ହଜାର ଲୋକ ଦୁସ୍ଥ ଅବସ୍ଥାରେ ରହିଥିବା ଜଣାଗଲା । କାଇରୋ ପରି ଧନଶାଳୀ ସହରର ବାହାର ଅଞ୍ଚଳରେ ଏପରି ଦରିଦ୍ରମାନଙ୍କର ସ୍ଲାମ୍ ରହିଛି ଦେଖି ଜଣେ ଟୁରିଷ୍ଟ ମୋଷାଙ୍କୁ ପଚାରିଲେ, "ବସ୍ତିର ବାସିନ୍ଦାମାନେ କ'ଣ ଶ୍ରମିକ ?" ମୋଷା ଉତ୍ତର ଦେଲେ, "ନା, ଏମାନେ

ମିଶରବାସୀ ନୁହଁନ୍ତି । ଇହୁଦୀରାଷ୍ଟ୍ର ଇସରାଏଲ ଅଧିକୃତ ପାଲେଷ୍ଟାଇନ ଅଞ୍ଚଳରୁ ପଳାଇ ଆସିଥିବା ଆରବ ଶରଣାର୍ଥୀ । ଏମାନଙ୍କୁ ଏଠାରେ ଥଇଥାନ କରାଯାଇଛି ।''

ଏତିକିବେଳେ ଜଣେ ଆରବ ବାଳକ ଟୁରିଷ୍ଟମାନଙ୍କ ପାଖକୁ ଆସି ହାତ ପତାଇ ଛିଡ଼ା ହେଲା । ସାତ ଆଠ ବର୍ଷର ପିଲାଟିଏ । ତାକୁ ଦେଖିପାରି ଜଣେ ମିଶରୀୟ ପୋଲିସ୍ କନଷ୍ଟ୍‌ବଲ ତଡ଼ିତ୍‌ଗତିରେ ଦୌଡ଼ିଆସି ଏପରିଭାବରେ କିକ୍‌ଟିଏ ମାରିଲା ଯେ ପିଲାଟି ଦୂରରେ କଚାଡ଼ି ପଡ଼ି କାନ୍ଦି କାନ୍ଦି ପଳାଇଗଲା । ମୋଷା କହିଲେ, ''ରିଫ୍ୟୁଜିମାନେ ଟୁରିଷ୍ଟମାନଙ୍କ ପାଖକୁ ଆସିପାରିବେ ନାହିଁ ବୋଲି ଆଇନ ଅଛି ।'' ରାଷ୍ଟ୍ରପତି ନାସେରଙ୍କ କଠୋର ଶାସନର ଏହା ଏକ ନମୁନା ବୋଲି ବୁଝିପାରିଲି ।

**ମେହମେଦ୍‌ଆଲି ମସ୍‌ଜିଦ** – ଗାଡ଼ି ଚାଲିଲା ସହର ବାହାରେ ଅନ୍ୟ ଏକ ସ୍ଥାନକୁ । ଅନେକ ଦୂରରେ ଦେଖାଯାଉଥାଏ ହ୍ରଦ ପରି ଗୋଟିଏ ପ୍ରକାଣ୍ଡ ଖାତ । ମୋଷା କହିଲେ, ''ଦିନେ ସେହିସବୁ ଜାଗାରୁ ପଥର ନେଇ ପିରାମିଡ଼ ନିର୍ମାଣ କରାଯାଇଥିଲା । ଏବେ ମଧ୍ୟ ଖଣିଗୁଡ଼ିକରେ ପଥରର ଅଭାବ ନାହିଁ । ଯେତେ ନେଲେ ସୁଦ୍ଧା ଶେଷ ନାହିଁ । ଖାତ ପରେ ଖାତ ଖୋଳାଯାଇ ପାରିବ ।''

ଗାଡ଼ି ରହିଲା ମିଶର ଦେଶର ସର୍ବବୃହତ୍ ମସଜିଦ୍ ସମ୍ମୁଖରେ । ନାମ, ମେହମେତ୍ ଆଲି ମସଜିଦ୍ ବା ଆଲାବାଷ୍ଟାର ମସଜିଦ୍ ବା ସବୁଜ ମସଜିଦ୍ । ଆଲାବାଷ୍ଟାର ନାମକ ସ୍ଫଟିକଜାତୀୟ ମୂଲ୍ୟବାନ ପଥରରେ ଏହା ନିର୍ମିତ ହୋଇଛି । ନିର୍ମାତା ଥିଲେ ମିଶରର ଶେଷରାଜା ଫାରୁକଙ୍କ ପ୍ରପିତାମହ ମେହମେତ୍ ଆଲି ପାଶା । ଯୁବକ ଅବସ୍ଥାରେ ସେ କାଇରୋର ରାଜପଥରେ ତମାଖୁ ବିକ୍ରିକରି ଜୀବିକା ଅର୍ଜନ କରୁଥିଲେ । ସେହିପରି ସମୟରେ ଫରାସୀ ବୀର ନେପୋଲିୟନଙ୍କ ମିଶର ଅଭିଯାନ ଘଟିଥିଲା । ତାଙ୍କ ଫରାସୀ ସୈନ୍ୟମାନଙ୍କ ବିଦାୟ ପରେ ମେହମେତ୍ ଆଲି ମିଶରୀୟମାନଙ୍କୁ ସଂଗଠିତ କରି ନିଜର ସୈନ୍ୟବାହିନୀ ଗଠନ କଲେ । ସେତେବେଳେ ମିଶର ଥାଏ ତୁରସ୍କ ସାମ୍ରାଜ୍ୟର ଗୋଟିଏ ଅଂଶ । କିନ୍ତୁ, ମେହମେତ ଆଲି ତୁରସ୍କ ସୁଲତାନଙ୍କ ଶାସନରୁ ନିଜ ରାଜ୍ୟକୁ ବସ୍ତୁତଃ ମୁକ୍ତ କରି ନିଜକୁ ସ୍ୱାଧୀନ ଶାସକ ଭାବେ ପ୍ରତିଷ୍ଠିତ କଲେ । ତାଙ୍କର ଶାସକୀୟ ଉପାଧି ଥିଲା ପାଶା । ସେ ଥିଲେ ଜଣେ ନିରକ୍ଷର ବ୍ୟକ୍ତି । ପାଶା ପଦରେ ଅଧିଷ୍ଠିତ ହେଲାପରେ ତାଙ୍କୁ ଥରେ ପ୍ରଶ୍ନ କରାଗଲା, ''ଆପଣ ନିରକ୍ଷର ଥିବା ସତ୍ତ୍ୱେ ଏପରି ବିଚକ୍ଷଣ ହେଲେ କିପରି ?'' ମେହମେତ୍ ଆଲି ଉତ୍ତର ଦେଇଥିଲେ, ''Who says I am illiterate? I have studied a great book in

a great university. The book is the book of human face; the university is the university of mankind.'' ଆଧୁନିକ ମିଶରର ନିର୍ମାତା ଭାବେ ଏହି ଅସାଧାରଣ ବ୍ୟକ୍ତିଙ୍କର ମର୍ଯ୍ୟାଦା ରହିଛି ।

ତାଙ୍କ ନିର୍ମିତ ମସଜିଦ୍ ଆକାର ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଅତୁଳନୀୟ । ମର୍ମର ପ୍ରସ୍ତର ଠାରୁ ଅଧିକ ସ୍ୱଚ୍ଛ ଆଲାବାଷ୍ଟାର ପ୍ରସ୍ତରରେ ଏହା ଗଠନ କରାଯାଇଛି । ଦୁଇଟି ସୁଉଚ୍ଚ ମିନାରର ଗଠନଶୈଳୀ ଦେଖି ଆଶ୍ଚର୍ଯ୍ୟ ହେବାକୁ ହୁଏ । ସୁପ୍ରଶସ୍ତ ପ୍ରାର୍ଥନାକକ୍ଷର ଛାତରୁ ୩୬୫ ଗୋଟି ଆଲୋକ ଝାଡ଼ ତଳକୁ ଝୁଲିରହିଛି । କାଛର ସ୍ଫଟିକ ପାଖରେ ଆମର ଗାଇଡ୍ ଦିଆସିଲିକାଠିଟି ଜଳାଇଲାବେଳକୁ କାଚର ଦର୍ପଣରେ ଦେଖାଯିବା ପ୍ରତିବିମ୍ବ ପରି ଜଣାଗଲା । ମସ୍‌ଜିଦ୍‌ଟି ଏପରି ଏକ ସୁଉଚ୍ଚ ସ୍ଥାନରେ ନିର୍ମାଣ କରାଯାଇଛି ଯେ ତାହାର ଉପର ଛାତରୁ ସମଗ୍ର କାଇରୋ ସହର ଦେଖିବାକୁ ମିଳେ । ଦେଖାଯାଏ ନୀଳନଦୀ ଓ ଦିଗ୍‌ବଳୟଠାରେ ସାହାରା ମରୁଭୂମି ।

ମସଜିଦ୍ ବାହାରେ, ଦୁର୍ଗର ପ୍ରାଚୀର ସ୍ୱରୂପ ଘେର ଭିତରେ ରହିଛି ମେହମେଟ୍ ଆଲିଙ୍କ ପ୍ରାସାଦ । ସାମାନ୍ୟ ଜଣେ ସୈନିକ ଥିଲାବେଳେ ମିଶର ଜୟ କରିବାକୁ ଆସି ଫରାସୀ ବୀର ଦୁଃସାହସୀ ନେପୋଲିୟନ ଏକଦା ଯେଉଁ ସ୍ଥାନରେ ନିଜ ଲାଗି ସୁଦୃଢ଼ ଗୃହ ନିର୍ମାଣ କରିଥିଲେ, ଠିକ୍ ସେହି ସ୍ଥାନରେ ଆଲି ତାଙ୍କର ପ୍ରାସାଦ ତୋଳିଥିଲେ । ସେହିଠାରେ ରହି ସେ ମସଜିଦ ନିର୍ମାଣ ତଦାରଖ କରୁଥିଲେ । ଅଧୁନା ତାଙ୍କ ପ୍ରାସାଦ ହେଉଛି ଗୋଟିଏ ଯାଦୁଘର । ସେଥିରେ ରଖାଯାଇଛି ପାଶାଙ୍କର ସମସ୍ତ ଆସବାବପତ୍ର ଓ ଜିନିଷ । ସେଥିସଙ୍ଗେ, ଇଉରୋପୀୟ ରାଜାମାନଙ୍କ ନିକଟରୁ ପାଇଥିବା ଉପହାରମାନ । ତାଙ୍କ ଶୟନକକ୍ଷରେ ଦେଖିବାକୁ ମିଳିଲା ତାଙ୍କର ଅବିକଳ ପ୍ରତିମୂର୍ତ୍ତି, ପଲଙ୍କ ଉପରେ ବସି ନଳୀଦ୍ୱାରା ତମାଖୁ ଧୂଆଁ ସେବନ କରୁଥିବା ଅବସ୍ଥାରେ ।

ସୂର୍ଯ୍ୟାସ୍ତବେଳେ ସେଠାରୁ ସହରକୁ ଫେରିଲୁଁ । ବାଟରେ ପଡୁଥାଏ ଶୁଷ୍କ ନୀରସ ପାହାଡ଼ । ପାହାଡ଼ ପରେ ମାଡ଼ି ଯାଇଥାଏ ମରୁଭୂମିର ବାଲୁକାରାଶି । ସହର ଭିତରେ ଗାଡ଼ି ପଶିଲା । ଗୋଟିଏ କେନ୍ଦ୍ରସ୍ଥାନରେ ଗାଇଡ୍ ଦେଖାଇଦେଲେ ୨୪ ଏକର ପରିମିତ ପ୍ରାଙ୍ଗଣ ମଧ୍ୟରେ ଛିଡ଼ା ରହିଛି ବିତାଡ଼ିତ ରାଜା ଫାରୁକ୍‌ଙ୍କର ସୁରମ୍ୟ ପ୍ରାସାଦ । ସେନାପତି ନେଗିବ୍ ଓ ନାସେରଙ୍କ ଆଦେଶରେ ସୈନ୍ୟମାନେ ରାଜପ୍ରାସାଦ ଘେରିଯାଇ ରାଜାଙ୍କୁ ତତ୍‌କ୍ଷଣାତ୍ କେବଳ ବିଛଣାପତ୍ର ଧରି ଦେଶ ତ୍ୟାଗ କରିବାକୁ ଧମକ ଦେଇଥିଲେ । ଆକ୍ରମଣ ଓ ମୃତ୍ୟୁ ଭୟରେ ରାଜା ଫାରୁକ୍ ସପରିବାର ନିଃସ୍ୱ ଭାବରେ ଭୂମଧ୍ୟସାଗରକୁ ପଳାଇଗଲେ । ତାଙ୍କ ରାଜପ୍ରାସାଦ

ଏବେ ଗୋଟିଏ ଯାଦୁଘର ଓ ସେ ବିଦେଶରେ ଶରଣାର୍ଥୀ । ମନେପଡ଼ିଲା, ‘‘ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।’’

## କାଇରୋରୁ ବିଦାୟ

ରାତି ୮ଟା ବେଳେ କାଇରୋ ଛାଡ଼ିବା କଥା କହି ଗାଇଡ ବିଦାୟ ନେଲେ । ମୁଁ ଏକାକୀ ହୋଟେଲ ବାହାରେ ବୁଲିବାକୁ ଲାଗିଲି । ମିଶରୀୟ ପୁରୁଷମାନେ ପାଶ୍ଚାତ୍ୟ ଢଙ୍ଗର ପୋଷାକ ବ୍ୟବହାର କରୁଥିଲାବେଳେ ନାରୀମାନଙ୍କୁ ବୁରଖା ପିନ୍ଧିଥିବା ଦେଖିଲି । ସହରର କେତେକ ଅଞ୍ଚଳ ପରିଷ୍କାର ପରିଚ୍ଛନ୍ନ ଓ ସୁଦୃଶ୍ୟ ଥିଲାବେଳେ ବଜାର ଓ ବସ୍ତି ଅଞ୍ଚଳଗୁଡ଼ିକ ଆବର୍ଜନାମୟ ଦିଶୁଥାଏ । ସାଧାରଣ ନାଗରିକମାନଙ୍କ ବ୍ୟବହାର ଅତ୍ୟନ୍ତ ରୁଚିପୂର୍ଣ୍ଣ ଓ ଭଦ୍ରୋଚିତ । କିନ୍ତୁ ଦୋକାନର ଦଲାଲମାନଙ୍କ ଉପଦ୍ରବ ଦେଖି ବିରକ୍ତ ଲାଗୁଥାଏ । ଗୋଟିଏ ଅତର ଦୋକାନ ଭିତରକୁ ମୋତେ ପ୍ରାୟ ବାଧ କରି ଧରିନିଆଗଲା । ଦୋକାନୀ ମହୋଦୟ ଭାରତୀୟ ବୋଲି ଜାଣିପାରି ସମ୍ମାନ ଦେଲେ ଓ ଖଣ୍ଡିଏ ଆଲବମ୍ କାଢ଼ି ଦେଖାଇଲେ । ରାଜକୁମାରୀ ଅମୃତ କାଉର ସେହି ଦୋକାନରୁ ଅତର କିଣିଥିଲେ ବୋଲି ପ୍ରମାଣ ଦେଖାଇ ମୋତେ ମଧ୍ୟ କିଣିବାକୁ ପ୍ରଲୋଭନ ଦେଖାଇଲେ । କିନ୍ତୁ ଛୋଟ ଅତର ଶିଶିର ଦାମ୍ ଥାଏ ପାଞ୍ଚ ପାଉଣ୍ଡ । ଟଙ୍କା ନାହିଁ ବୋଲି ଚାଲିଆସିବା ବେଳେ ଗୋଟିଏ ପାଉଣ୍ଡରେ ଦେବେ ବୋଲି କହିଲେ । ବାଧ ହୋଇ କିଣିଲି । ଅଥଚ ଯେଉଁ ବାସନା ଆଘ୍ରାଣ କରିଥିଲି, ପରେ ଜାଣିଲି ଏ ଶିଶି ତା ନୁହେଁ । ସହରର ଅଧିକାଂଶ ଛକ ଓ ଦୋକାନ ଆଗରେ ଟଙ୍ଗା ରହିଥାଏ ରାଷ୍ଟ୍ରପତି ନାସେରଙ୍କର ଛବି ।

ରାତି ୮ଟା ବେଳେ କାଇରୋ ସହରରୁ ବିଦାୟ ନେଲୁଁ । ଇସମାଇଲିଆ ଅଭିମୁଖେ ଗାଡ଼ି ଚାଲିଲା । ଚାହୁଁ ଚାହୁଁ ସହରର ଆଲୋକ ଅଦୃଶ୍ୟ ହେଲା । ନୀଳ ଉପତ୍ୟକାର ଗୋଟିଏ ସୁଦୀର୍ଘ କେନାଲ କୂଳେ କୂଳେ ଗାଡ଼ି ଚାଲି ଦୁଇ ଘଣ୍ଟା ପରେ ନୀଳନଦୀ କୂଳ ପାଖ ରାସ୍ତାରେ ଚାଲିଲା । ନଦୀର ଦୃଶ୍ୟରେ ତନ୍ମୟ ହେଲି । ଶୁକ୍ଳପକ୍ଷର ଚନ୍ଦ୍ରମା ଜଳରାଶି ତଳକୁ ଧୀରେ ଧୀରେ ଖସିଯାଉଥିଲେ ।

ଇସମାଇଲିଆ ଠାରେ ଯାତ୍ରୀମାନେ ରାତ୍ରିଭୋଜନ କଲେ । ସେଠାରୁ ଗାଡ଼ି ଚାଲିଲା ପୋର୍ଟ ସୈୟଦ୍ ଅଭିମୁଖେ । କିଛି ସମୟ ପରେ ସୁଏଜ କେନାଲ ପାଖର ସମାନ୍ତରାଳ ପଥରେ ଗାଡ଼ି ଚାଲିବା ଦେଖାଗଲା । କେନାଲ ଜଳରେ ପଡ଼ିଥାଏ ବତିଖୁଣ୍ଟଗୁଡ଼ିକର ଆଲୋକ ।

ଆମର କାଇରୋ ଯାଇଥିବା ସମୟ ମଧ୍ୟରେ ନେପ୍‌ଚୁନିଆ ଜାହାଜ ସୁଏଜ ବନ୍ଦର ନିକଟରୁ ପୋର୍ଟ ସୈୟଦ ପର୍ଯ୍ୟନ୍ତ ଜଳପଥ ଅତିକ୍ରମ କରି ସେଠାରେ ଅଟକି ରହିଥାଏ । ରାତ୍ରିର ବିଳମ୍ବିତ ଘଣ୍ଟାରେ କେବିନ ଭିତରେ ପଶିଲି ।

ପିଲାମାନେ ଅପେକ୍ଷା କରିଥାନ୍ତି । ତରତରରେ ପୁଅ କହିପକାଇଲା, "ଆମେ ସୁଏଜ କେନାଲ ଦେଖିଛୁଁ, ତୁମେ ଦେଖିପାରିଲ ନାହିଁ ।" ଘଣ୍ଟାଏ ସମୟ ପରେ ଜାହାଜ ପୋର୍ଟ ସୈୟଦ ଛାଡ଼ିଲା ।

## ମେସିନା ବନ୍ଦର

ଭୂମଧ୍ୟସାଗରରେ ଦୁଇଦିନ ଚାଲିଲାପରେ ଜାନୁଆରୀ ୬ ତାରିଖ ପ୍ରଭାତକାଳରେ ଜାହାଜ ଲାଗିଲା ସିସିଲି ଦ୍ୱୀପର ମେସିନା ବନ୍ଦରରେ । ସନ୍ଧ୍ୟା ପର୍ଯ୍ୟନ୍ତ ସେଠାରେ ଜାହାଜ ଅଟକିବ ଜାଣି ମୁଁ ସ୍ତ୍ରୀ ଓ ପିଲାମାନଙ୍କୁ ନେଇ ଇଟାଲୀର ସେହି ସୁନ୍ଦର ସହରଟି ଦେଖିବାପାଇଁ ବାହାରିଗଲି । କ୍ଷୁଦ୍ର ସ୍ଥାନ, ପାଖରେ ପାହାଡ଼ । ରାସ୍ତାଘାଟ ପରିଷ୍କାର । ଜଣେ ଭାରତୀୟ ମହିଳା ଓ ଛୋଟ ଛୋଟ ବାଳକ ବାଳିକାଙ୍କୁ ଦେଖି ଇଟାଲୀୟମାନଙ୍କ କୌତୂହଳ ଉଦ୍ରେକ ହେବା ଅନୁଭବ କଲି । କେହି କେହି ପାଖକୁ ଆସି ମୋ ସ୍ତ୍ରୀଙ୍କ ପିନ୍ଧିଥିବା ବନାରସୀ ଶାଢ଼ି ପ୍ରତି ଚାହିଁରହିଲେ, ଅନ୍ୟ କେହି କେହି କପାଳରେ ସିନ୍ଦୂରଟୋପା ଓ ଦେହର ଅଳଙ୍କାର ଦେଖିବାକୁ ଲାଗିଲେ । ବୁଢ଼ାବୁଢ଼ୀମାନେ ପିଲା ଦୁଇଜଣଙ୍କୁ ଦେଖି ବେଶ୍ ଖୁସି ହେଉଥିଲେ ଓ ଇଟାଲୀୟ ବାଳକବାଳିକାମାନେ ସେମାନଙ୍କୁ ଘେରିଯାଉଥିଲେ ।

ଅପରାହ୍ନ ୪ଟା ସମୟରେ ବନ୍ଦର ନିକଟରେ ଥିବା ଗୋଟିଏ ପାର୍କରେ ବେଞ୍ଚଗୁଡ଼ିକରେ ବସିଲୁଁ । ସିଦ୍ଧାର୍ଥର ଆଖି ପଡ଼ିଲା, ପାର୍କକୋଣରେ ଠୁଙ୍ଗାରେ ବାଦାମ ବିକ୍ରି ହେଉଛି ଓ ପିଲାମାନେ କିଣି ଖାଉଛନ୍ତି । ତାକୁ ନେଇ କିଣିବାକୁ ଗଲି । ପାଖରୁ ଦେଖିଲି, ପ୍ରତ୍ୟେକ ଠୁଙ୍ଗାର ଦାମ ୫୦ ଲିରା ବା ପଇସା । ଚାରିଟି ଠୁଙ୍ଗା ହାତକୁ ନେଇ ୨୦୦ ଲିରା ବଢ଼ାଇ ଦେଲାବେଳକୁ ବିକାଳି କହିଲେ, "ଦୁଇଶହ ନୁହେଁ, ପାଞ୍ଚଶହ ଲିରା ।" ବିନା ବାକ୍ୟବ୍ୟୟରେ ମୁଁ ତାଙ୍କ କଥା ମାନିଲି ।

ଏହା ଗୋଟିଏ ସାମାନ୍ୟ ଘଟଣା । କିନ୍ତୁ ଏହିପରି ଛୋଟ ଘଟଣାରୁ ଦେଶ ବା ଜାତିର ବୃହତ୍ତର ପରିଚୟ ମିଳିଥାଏ । ଇଂରେଜ, ଫରାସୀ ବା ଜାର୍ମାନ ବିକାଳିମାନେ ଏପରି ଅସାଧୁତା ଦେଖାଇପାରିବେ ନାହିଁ । ପରବର୍ତ୍ତୀ ସମୟରେ ମୁଁ ଇଟାଲୀର ରାଜଧାନୀ ରୋମନଗରୀକୁ ତିନିଥର ଆସିଥିଲି । ପ୍ରତ୍ୟେକ ଥର ଟ୍ୟାକ୍ସି ଡ୍ରାଇଭର, ଫୁଟ୍‌ପାଥ୍ ଦୋକାନୀ ଓ ହୋଟେଲ କିରାଣୀ ସ୍ତରର ଲୋକଙ୍କୁ ପର୍ଯ୍ୟଟକମାନଙ୍କୁ ହଇରାଣ ହରକତ୍ କରିବା ଦେଖିଛି । ମୁଁ ନିଜେ ମଧ୍ୟ ଠକିଛି । କହିବାର ଉଦ୍ଦେଶ୍ୟ, ପର୍ଯ୍ୟଟକମାନେ କେତେକ ଦେଶର ଲୋକଙ୍କ ପ୍ରତି ଖରାପ ଧାରଣା ନେଇ ଫେରିଲାବେଳେ, ଅନ୍ୟ କେତେକ ଦେଶର ଲୋକଙ୍କ ଭୂୟସୀ ପ୍ରଶଂସା କରିଥାନ୍ତି ।

ସନ୍ଧ୍ୟାବେଳେ ଜାହାଜକୁ ଫେରିଲୁଁ । ଉପର ଡେକ୍ ଉପରୁ ଦେଖାଯାଉଥାଏ ମେସିନାର ପାହାଡ଼ଗୁଡ଼ିକରେ ଜଳିଉଠିଥିବା ବହୁରଙ୍ଗୀୟ ଆଲୋକମାଳା ।

## ନେପଲସ୍, ପମ୍ପେ ଓ ଭିସୁଭିୟାସ ଆଗ୍ନେୟଗିରି

ଜାନୁଆରୀ ୭ ତାରିଖ ସକାଳେ ନିଦରୁ ଉଠିଲାବେଳକୁ ଜାହାଜ ଛିଡ଼ା ହୋଇଥାଏ ଇଟାଲୀର ନେପଲ୍ସ୍ ବନ୍ଦରରେ । ସାଙ୍ଗରେ ଆସୁଥିବା ଜଣେ ଇଟାଲୀୟ ଯାତ୍ରୀ ମୋତେ ଜାହାଜରେ କହିଥିଲେ, ''ମିଶରର ପିରାମିଡ୍ ଦେଖି ଆସିଲାପରେ ଇଟାଲୀର ଗୋଟିଏ ପ୍ରାଚୀନ ସ୍ଥାନ ଦେଖିଯିବା ଉଚିତ । ଭିସୁଭିୟାସ୍ ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତରେ ଦୁଇହଜାର ବର୍ଷ ପୂର୍ବେ ଧ୍ୱଂସ ପାଇଥିବା ପମ୍ପେ ନଗରଟି ନିଶ୍ଚୟ ଦେଖିବେ ।'' ତାଙ୍କ ପରାମର୍ଶକ୍ରମେ ଜାହାଜରେ ଥିବା ଟୁରିଷ୍ଟ କୋମ୍ପାନୀ ପାଖରୁ ଆମ ଚାରିଜଣଙ୍କ ପାଇଁ ପମ୍ପେ ଯାତ୍ରା ଲାଗି ଟିକଟ କିଣିଲି ।

ବନ୍ଦର ବାହାରେ ବିଳାସମୟ ଟୁରିଷ୍ଟ ବସ୍ ଅପେକ୍ଷା କରିଥାଏ । ନେପଲସ୍ ପାଖରୁ ୧୪ ମାଇଲ ଦୂରରେ ପମ୍ପେ । ତେଣେ, ପୁଅ ଝିଅ ଆଗ୍ନେୟଗିରି ଦେଖିବାଲାଗି ଅଧୀର ହୋଇପଡ଼ିଲେ । ସକାଳ ୮ଟା ବେଳେ ବସ୍ ଛାଡ଼ିଲା । ଗାଇଡ୍‌ଙ୍କ ପାଖରେ ବସିଲି । ସେ ତାଙ୍କ ବକ୍ତବ୍ୟ ଆରମ୍ଭ କଲେ । ବାସ୍ ମଧ୍ୟରେ ପ୍ରାୟ ୨୦ ଜଣ ଟୁରିଷ୍ଟ ବସିଥାନ୍ତି ।

ଖ୍ରୀଷ୍ଟଜନ୍ମର ଛଅଶହ ବର୍ଷ ପୂର୍ବେ ପ୍ରାଚୀନ ଗ୍ରୀକ୍‌ମାନେ ନେପଲସ୍ ସହରର ମୂଳଦୂଆ ଦେଇଥିଲେ । ନାମ ଦେଇଥିଲେ, 'ନିଓ ପୋଲିସ୍' ବା ନୂତନ ନଗର । ସେଠାରୁ ସେମାନେ ବାଣିଜ୍ୟବ୍ୟବସାୟ ଚଳାଉଥିଲେ । ଯଥାସମୟରେ ରୋମାନ୍‌ମାନେ ସେହି ସ୍ଥାନ ଅଧିକାର କରିନେଲେ ଓ ନାମ ରଖିଲେ ନେପୋଲି । ନେପଲସ୍ ହେଉଛି ଇଟାଲୀର ସର୍ବପ୍ରାଚୀନ ସହର ।

ବାଟରେ ଦେଖିବାକୁ ମିଳିଲା ଗୋଟିଏ ପୁରାତନ ଫରାସୀ ଦୁର୍ଗ । ତା ପରେ ବାସ୍ ରହିଲା ଗ୍ୟାରିବାଲ୍ଡି ଛକ ନାମକ ସ୍ଥାନରେ । ସେଠାରେ ଇଟାଲୀୟ ସ୍ୱାଧୀନତାସଂଗ୍ରାମର ମହାବୀର ରୂପେ ଖ୍ୟାତ ଗ୍ୟାରିବାଲ୍ଡିଙ୍କର ପ୍ରସ୍ତର ପ୍ରତିମୂର୍ତ୍ତି ଦଣ୍ଡାୟମାନ ରହିଛି । ନିଜର ଅସାଧାରଣ ବୀରତ୍ୱ ବଳରେ ସେ ବିଦେଶୀ ବୁରବୋଁ ରାଜାଙ୍କ ଶାସନରୁ ନେପଲସ୍ ଓ ସିସିଲି ମୁକ୍ତ କରିଥିଲେ । ଝିଅ ଝାନ୍ସୀକୁ କହିଲି, ''ଭାରତର ସରୋଜିନୀ ନାଇଡୁ ତାଙ୍କ ପିଲାବେଳେ ଏହି ମୂର୍ତ୍ତି ଦର୍ଶନ କରିଥିବା ଯୋଗୁଁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବାକୁ ପ୍ରେରଣା ପାଇଥିଲେ ।'' ପୁରାତନ ଅଞ୍ଚଳ ପରେ ସହରର ନୂତନ ଅଞ୍ଚଳ ପଡ଼ିଲା । ଚାରିଦିଗକୁ ବ୍ୟାପିରହିଥାଏ ଆଧୁନିକ ସୌଧରାଜି । ସୌନ୍ଦର୍ଯ୍ୟ ଦୃଷ୍ଟିରୁ ନେପଲସ୍ ଇଉରୋପର ଅନ୍ୟତମ ଶୋଭାମୟ ସହର ।

ବାସ୍ ଚାଲିଲା ପମ୍ପେ ପଥରେ । କିଛି ସମୟ ପରେ ଦୂରରେ ଦେଖାଗଲା ବିସୁଭିୟାସ ଆଗ୍ନେୟଗିରି । ଆକାରରେ ସୁବିଶାଳ ନହେଲେ ସୁଦ୍ଧା ତାହାର ନାମଟି ଭୟପ୍ରଦ । ଭୂମଧ୍ୟସାଗର ଦିଗକୁ ଚାହିଁଲାବେଳକୁ ଅନେକ ଦୂରରେ ଦିଶୁଥାଏ କ୍ୟାପ୍ରିରି ନାମକ ଦ୍ୱୀପ । ଇଉରୋପର କୋଟିପତିମାନଙ୍କ ଆମୋଦ ପ୍ରମୋଦ ନିମନ୍ତେ ସେଠାରେ ଅନେକଗୁଡ଼ିଏ ପଞ୍ଚତାରକା ହୋଟେଲ ରହିଛି । ପ୍ରାକୃତିକ ଶୋଭା ଦୃଷ୍ଟିରୁ ସେହି ଦ୍ୱୀପକୁ ଭୂସ୍ୱର୍ଗ ରୂପେ ବିବେଚନା କରି ସେମାନେ ସେଠାରେ ବିଳାସ ବ୍ୟସନରେ ସମୟ କଟାଇବାକୁ ଆସିଥାନ୍ତି । ଆମ ରାସ୍ତାର ଦୁଇପାଖରେ ଧାଡ଼ି ଧାଡ଼ି ଲଗାଯାଇଥିବା ହଜାର ହଜାର କମଳାଗଛ ଦେଖିବାକୁ ମିଳିଲା । ଶୀତଦିନରେ ଗଛରେ ପତ୍ର ନଥାଏ, ପାଚି ରହିଥାଏ କମଳାଲେମ୍ବୁ । କୃଷକମାନେ ଫଳ ସଂଗ୍ରହ କରିବାରେ ବ୍ୟସ୍ତ ଥାନ୍ତି । ରାସ୍ତାକଡ଼ରେ ବିକ୍ରି ହେଉଥାଏ ଟୋକେଇଭର୍ତ୍ତି କମଳା । ବାସ୍ ବନ୍ଦ ହେଲାକ୍ଷଣି ତଳୁ କମଳା ଆଣି ପୁଅଝିଅଙ୍କ ହାତରେ ଧରାଇଦେଉଥାଏଁ । ଶେଷରେ ବାସ୍ ରହିଲା ଧ୍ୱଂସପ୍ରାପ୍ତ ପମ୍ପେ ନଗରୀର ଅଦୂରବର୍ତ୍ତୀ ସ୍ଥାନରେ ।

ପମ୍ପେର ଧ୍ୱଂସାବଶେଷ ଦେଖିବା ଲାଗି ପର୍ଯ୍ୟଟକମାନଙ୍କ ସଂଖ୍ୟା କିଛି କମ୍ ନଥାଏ । ଦଳ ଦଳ ଯାତ୍ରୀଙ୍କ ପାଖକୁ ଗାଇଡ଼୍‌ମାନେ ଆସିଗଲେ, । ଆମ ଦଳର ଗାଇଡ଼୍ ପ୍ରଥମେ ଉପକ୍ରମଣିକା ଦେଲେ ପମ୍ପେର ଇତିବୃତ୍ତ ବର୍ଣ୍ଣନା ଦ୍ୱାରା ।

ଅତି ପ୍ରାଚୀନ କାଳରୁ ବିସୁଭିୟାସ ପର୍ବତର ପାଦଦେଶରେ ଜନବସତି ଗଢ଼ିଉଠିଥିଲା । ଖ୍ରୀଷ୍ଟଜନ୍ମର ଚାରିଶହ ବର୍ଷ ପୂର୍ବେ ପମ୍ପେ ଥିଲା ଏକ ସମୃଦ୍ଧ ନଗର । ରୋମୀୟ ସମ୍ଭ୍ରାନ୍ତମାନେ ସେହି ରମଣୀୟ ସ୍ଥାନରେ ସୁରମ୍ୟ ଅଟ୍ଟାଳିକାମାନ ନିର୍ମାଣ କରିଥିଲେ । ନିକଟରେ ପର୍ବତ, ସମ୍ମୁଖରେ ସାଗର । ମଧ୍ୟେ ମଧ୍ୟେ ଆଗ୍ନେୟଗିରିରୁ ସାମାନ୍ୟ ଧରଣର ଅଗ୍ନ୍ୟୁତ୍ପାତ ଘଟୁଥିଲେ ସୁଦ୍ଧା ସେଠାକାର ଅଧିବାସୀମାନେ ନିର୍ବିଘ୍ନରେ ବସବାସ କରୁଥାନ୍ତି । କୁହାଯାଏ, ଧନଶାଳୀ ରୋମାନ୍‌ମାନଙ୍କର ସେହି ସ୍ଥାନ ଥିଲା ଏକ ପ୍ରମୋଦକେନ୍ଦ୍ର । ରୋମାନ୍ ସିନେଟର୍‌ମାନେ ସେଠାକୁ ବିଶ୍ରାମ ଲାଗି ଆସୁଥିଲେ । ସମ୍ରାଟମାନେ ମଧ୍ୟ । ଦେବଦେବୀଙ୍କ ନିମନ୍ତେ ଅନେକ ପ୍ରକାର ମନ୍ଦିର ସମେତ ବୃହଦାକାର ରଙ୍ଗମଞ୍ଚ, ସର୍ବସାଧାରଣ ଅନୁଷ୍ଠାନ, ନାଗରିକମାନଙ୍କ ସୌଧ ଓ ଦୋକାନ ଇତ୍ୟାଦି ଦ୍ୱାରା ସହର ପରିପୂର୍ଣ୍ଣ ଥାଏ । ଶହ ଶହ ବର୍ଷର ସ୍ଥିତି ମଧ୍ୟରେ କେହି କେବେ ସ୍ୱପ୍ନ ଦେଖି ନଥିବେ ଯେ ଦିନେ ଅଦୂରରେ ଦଣ୍ଡାୟମାନ ଥିବା ନିଶ୍ଚଳ ବିସୁଭିୟାସ୍ ଶୃଙ୍ଗରୁ ପ୍ରବଳ ଅଗ୍ନିବର୍ଷଣ ଆରମ୍ଭ ହେବ ଏବଂ ଜ୍ୱାଳାମୁଖୀ ତରଳ ଲାଭା, ସ୍ରୋତ ଆକାରରେ ମାଡ଼ିଆସି ସମଗ୍ର ନଗରଟିକୁ ପାଉଁଶଗଦା ତଳେ ପୋତିଦେବ ।

ସେହି ପ୍ରଳୟଙ୍କରୀ ଘଟଣା ଘଟିଥିଲା ଖ୍ରୀଷ୍ଟ ଅବ୍ଦ ୭୯ ଅଗଷ୍ଟ ମାସ ୨୪ ତାରିଖ ଦିନ । ହଠାତ୍ ପର୍ବତଶୀର୍ଷରେ ଦେଖାଦେଲା ଆକାଶଚୁମ୍ବୀ ଅଗ୍ନିଶିଖା । ଆରମ୍ଭ ହେଲା ଅଗ୍ନିବର୍ଷଣ । ପଳାୟନ ଲାଗି ସମୟ ମିଳିଲା ନାହିଁ । ପଚିଶ ସହସ୍ର ଆବାଳବୃଦ୍ଧବନିତାଙ୍କ ଭାଗ୍ୟ ମୀମାଂସା ହୋଇଗଲା କେତୋଟି ମୁହୂର୍ତ୍ତରେ । ବିସୁଭିୟାସ ଜଳୁଥିଲାବେଳେ ସମୁଦ୍ରର ଲହରୀ ପରି କ୍ଷିପ୍ରଗତିରେ ମାଡ଼ିଆସିଥିଲା ଆଗ୍ନେୟଗିରିର ପ୍ରଜ୍ୱଳିତ ଲାଭା । ୨୩ ଫୁଟ ବା ଚାରିପୁରୁଷ ଉଚ୍ଚତାର ସେହି ଅଗ୍ନିସ୍ରୋତ ତଳେ ବୁଡ଼ିଗଲେ ଅସଂଖ୍ୟ ମନୁଷ୍ୟ । ପୋତିହୋଇଗଲା ନଗରର ସୌଧରାଜି । ଦ୍ୱିତୀୟ ଦିବସରେ ଅଗ୍ନ୍ୟୁପାତ ବନ୍ଦ ହେଲାବେଳକୁ ଧରାପୃଷ୍ଠରୁ ଲୋପ ପାଇଯାଇଥାଏ ପମ୍ପେ ନଗରୀ । ଅଗ୍ନି ଉଦ୍‌ଗାର ପରେ ବିସୁଭିୟାସ ପୁନର୍ବାର ପୂର୍ବପରି ନିଶ୍ଚଳ ନୀରବ ଭାବରେ ଛିଡ଼ା ରହିଲା । ଶାନ୍ତ ପର୍ବତର ପାଦଦେଶରେ ପଡ଼ିରହିଲା ସମୁଦ୍ରବ୍ୟାପୀ ପାଉଁଶଗଦା । ପ୍ରବଳପ୍ରତାପୀ ସମ୍ରାଟ୍‌ମାନେ ସୁବିଶାଳ ସାମ୍ରାଜ୍ୟ ଶାସନ କରୁଥିବା ସତ୍ତ୍ୱେ ଏଠାକୁ ଆସିବାକୁ ସାହସ କଲେ ନାହିଁ ।

ଏହି ଘଟଣାର ସୁଦୀର୍ଘ ଷୋହଳଶହ ବର୍ଷ ପରେ ଆବିଷ୍କାର କରାଗଲା ସେହି ବିସ୍ମୃତ ନଗରର ଧ୍ୱଂସାବଶେଷ । ଦୀର୍ଘ ସମୟ ଖନନକାର୍ଯ୍ୟ ପରେ ପାଉଁଶ ଓ ମାଟିଗଦା ତଳୁ ନଗରଟିକୁ ବାହାର କରାଗଲା । ଅଧୁନା ସେହି ସ୍ଥାନ ହେଉଛି ପୃଥିବୀର ଅନ୍ୟତମ ପ୍ରସିଦ୍ଧ ପର୍ଯ୍ୟଟନକେନ୍ଦ୍ର । ତଥାପି, ଖନନ କାର୍ଯ୍ୟ ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ । ଆମେ ଦେଖିଲାବେଳେ କାମ ଚାଲିଥାଏ ।

ବର୍ଣ୍ଣନା ପରେ ଗାଇଡ଼ ନେଇଗଲେ ପ୍ରେତନଗରୀ ସଦୃଶ ପମ୍ପେର ବିଭିନ୍ନ ସ୍ଥାନକୁ । ପ୍ରଥମେ ସେ ଦେଖାଇଲେ ନଗରର କେନ୍ଦ୍ର ଛକଗୁଡ଼ିକରେ ଛିଡ଼ା ରହିଥିବା ବେଦୀ ବା ପୂଜାମଣ୍ଡପଗୁଡ଼ିକ । ସେଠାରେ ପଶୁବଳି ପାଇଁ ନିର୍ଦ୍ଦିଷ୍ଟ ଥିବା ମଣ୍ଡପମାନ ରହିଛି । ବେଦୀର ଚାରିପାଖରେ ରହିଛି ମର୍ମର ପ୍ରସ୍ତର ନିର୍ମିତ ଉଚ୍ଚ ସ୍ତମ୍ଭ । ତାପରେ ଦେଖିବାକୁ ମିଳିଲା ପ୍ରଶସ୍ତ ରଙ୍ଗମଞ୍ଚ । ନଗରବାସୀ ଆମୋଦପ୍ରମୋଦ ଲାଗି ସେଠାରେ ଏକତ୍ରିତ ହେଉଥିଲେ । ଧ୍ୱଂସପ୍ରାପ୍ତ ସେହି ମଞ୍ଚ ସେ ଯୁଗର ସ୍ଥାପତ୍ୟ ଶୈଳୀର ପରିଚୟ ଦିଏ । ସ୍ଥାନେ ସ୍ଥାନେ ରହିଛି ସର୍ବସାଧାରଣ ସ୍ନାନଘର । ଏଣେ ତେଣେ ଛିଡ଼ା ରହିଛି ତୋରଣଗୁଡ଼ିକର ଧ୍ୱଂସାବଶେଷ । ଦୁର୍ଗସ୍ୱରୂପ କେତୋଟି ଅଟ୍ଟାଳିକାର ପ୍ରବେଶଦ୍ୱାରଗୁଡ଼ିକ ସୁରକ୍ଷିତ ରଖାଯାଇଛି । ବିଚାରାଳୟ, ଶାସନକର୍ତ୍ତାମାନଙ୍କ କକ୍ଷ, ସଭାଗୃହ ଓ ନାଗରିକମାନଙ୍କ ସମବେତ ହେଉଥିବା ହଲ୍‌ମାନ ଦେଖିସାରିଲା ପରେ ଆମକୁ ଗୋଟିଏ ଦୋକାନଘର ଭିତରକୁ ନିଆଗଲା । ସେଠାରେ ପୋଡ଼ିଯାଇଥିବା ଶସ୍ୟ, ପାଉଁରୋଟି ଓ ଆସବାବପତ୍ରଗୁଡ଼ିକ କାଚ ବାକ୍ସ ଭିତରେ ରଖାଯାଇଛି ।

ଦେଖିବାକୁ ମିଳିଲା ସେଯୁଗର ଦେବାଳୟମାନ । ଆପୋଲୋ, ଜୁପିଟାର, ଇସିସ୍ ଓ ଭେନାସ୍ ପ୍ରଭୃତି ଦେବଦେବୀଙ୍କର ଧ୍ୱଂସପ୍ରାପ୍ତ ମନ୍ଦିରଗୁଡ଼ିକର ଅବଶେଷମାନ ଛିଡ଼ା ରହିଛି । ସେ କାଳରେ ଖ୍ରୀଷ୍ଟଧର୍ମ ପ୍ରତି ଯେଉଁମାନେ ଆକୃଷ୍ଟ ହୋଇଥିଲେ ସେମାନଙ୍କର ଗୋପନ ପ୍ରାର୍ଥନାସ୍ଥାନର ଅଂଶଟି ମଧ୍ୟ ସଂରକ୍ଷିତ ଅଛି । ସମ୍ଭ୍ରାନ୍ତମାନଙ୍କର କୋଠା ଓ ଦରିଦ୍ରମାନଙ୍କର ଗୃହଗୁଡ଼ିକ ପାଉଁଶଗଦା ତଳୁ ବାହାର କରାଯାଇଛି । ଗୋଟିଏ କକ୍ଷ ମଧ୍ୟରେ କାଚବାକ୍ସ ଭିତରେ ରଖା ହୋଇଛି ଦୁଇ ହଜାର ବର୍ଷ ତଳର ପୋଡ଼ା ମନୁଷ୍ୟ ଦେହଟିଏ । ଦିଶୁଥାଏ ଠିକ୍ ପାଉଁଶ ନିର୍ମିତ ମଣିଷ ପରି ।

ପ୍ରାୟ ଶହେ ପର୍ଯ୍ୟନ୍ତ ଧ୍ୱଂସସ୍ଥାନ ଦେଖିଲାପରେ ଗାଇଡ଼ ନେଇଗଲେ ଭୂଗର୍ଭରେ ଥିବା ଗୋଟିଏ ଗୁପ୍ତ କୋଠରି ପାଖକୁ । ସାଙ୍ଗରେ ମୋ ସ୍ତ୍ରୀଙ୍କ ସମେତ କେତେଜଣ ମହିଳା ପର୍ଯ୍ୟଟକ ଥିଲେ । ଗାଇଡ୍ କହିଲେ "ମହିଳା ଓ ପିଲାମାନେ ଗୁପ୍ତକକ୍ଷ ମଧ୍ୟକୁ ଯାଇପାରିବେ ନାହିଁ ।" କେବଳ ପୁରୁଷମାନଙ୍କୁ ତଳକୁ ନିଆଗଲା । ରୋମାନ୍ ସମ୍ଭ୍ରାନ୍ତମାନେ କ୍ରୀତଦାସମାନଙ୍କୁ ରାତ୍ରିକାଳରେ ମାଟିତଳେ ଥିବା ଘରଭିତରେ ଆବଦ୍ଧ ରଖୁଥିଲେ । ଆମେ ପ୍ରବେଶ କରିଥିବା କକ୍ଷଟି ଥାଏ ସେହିପରି ଗୋଟିଏ କ୍ରୀତଦାସ କକ୍ଷ । କାନ୍ଥର ଆମୂଳଚୂଳ ଯୌନ ସମ୍ବନ୍ଧୀୟ ବୀଭତ୍ସ ଚିତ୍ରମାନ ଅଙ୍କିତ ହୋଇଥାଏ । ଗାଇଡ୍ କହିଲେ, "ସମ୍ଭ୍ରାନ୍ତମାନଙ୍କ ପରି କ୍ରୀତଦାସମାନେ ମଧ୍ୟ ମନୁଷ୍ୟ । ମୁନିବମାନଙ୍କ ନଗ୍ନ ଅସଭ୍ୟତା ଦେଖି ଦେଖି ସେହି ଅଶ୍ଳୀଳ ଦୃଶ୍ୟ ନିଜ ହାତରେ ଚିତ୍ର ଆକାରରେ ଅଙ୍କନ କରି ସେମାନେ ତାହା ଉପଭୋଗ କରୁଥିଲେ ।" ପ୍ରାଚୀନ ରୋମୀୟ ସଭ୍ୟତାରେ କ୍ରୀତଦାସ ପ୍ରଥା ଥିଲା ଏକ ଜଘନ୍ୟ କଳଙ୍କ । କଥିତ ଅଛି, କ୍ରୀତଦାସମାନେ ବୃଦ୍ଧ ଓ ଅକର୍ମଣ୍ୟ ହେଲାପରେ ସମ୍ଭ୍ରାନ୍ତ ମହିଳାମାନେ ସେମାନଙ୍କ ହାତଗୋଡ଼ ବାନ୍ଧି ନଦୀଗର୍ଭରେ ନିକ୍ଷେପ କରୁଥିଲେ । ପଚା ଦେହକୁ ମାଛମାନେ ଖାଇବେ ଜାଣି ସେମାନେ ଆନନ୍ଦିତ ହେଉଥିଲେ ।

ଚାରିଘଣ୍ଟା ସମୟ ଧ୍ୱଂସାବଶେଷ ମଧ୍ୟରେ ବୁଲିଲାପରେ ଝାନ୍ସୀ ଓ ସିଦ୍ଧାର୍ଥ ବିସୁଭିୟାସ ପାଖକୁ ଯିବାଲାଗି ଜିଦ୍ ଧରିଲେ । ପାଖରେ ଦେଖାଯାଉଥିଲେ ସୁଦ୍ଧା ରାସ୍ତା ଅନେକ ଥାଏ । ତେଣୁ, କିଛିବାଟ ନେଇ ଦୂରରୁ ସେମାନଙ୍କୁ ସେହି ଜୀବନ୍ତ ଆଗ୍ନେୟଗିରିର ରୂପ ଦେଖିବାକୁ କହିଲି । ଚାରିହଜାର ଫୁଟ ଉଚ୍ଚ ଶଙ୍କୁରୂପକ ସେହି ପର୍ବତଟିକୁ ଚାହିଁ ପୁଅ କହିଲା, "ପାଖକୁ ଯିବା ନାହିଁ, ନିଆଁ ଥିବ ।" ଗାଇଡ୍ ଜଣାଇଲେ, "ପମ୍ପେର ଧ୍ୱଂସସାଧନ ପରେ ବିସୁଭିୟାସ ବାରମ୍ବାର ଛୋଟ ଧରଣର ଅଗ୍ନ୍ୟୁତ୍ପାତ କରିଥିଲା । ତିନିଶହ ବର୍ଷ ପୂର୍ବେ ଗୋଟିଏ ଭୟଙ୍କର ଅଗ୍ନ୍ୟୁତ୍ପାତରେ ସହସ୍ର ସହସ୍ର ଲୋକ ମରିଥିଲେ ଓ ଆଗ୍ନେୟ ଲାଭା ସମୁଦ୍ର ପର୍ଯ୍ୟନ୍ତ ମାଡ଼ିଯାଇଥିଲା ।"

ତଥାପି ସେହି ପର୍ବତର ଚାରିପାଖରେ କାଳକ୍ରମେ ଲକ୍ଷ ଲକ୍ଷ ଲୋକଙ୍କର ଜନବସତି ଗଢ଼ିଉଠିଥିଲା । ସେମାନେ ଭାବିଥିଲେ, ବିସୁଭିୟାସର ଜୀବନୀଶକ୍ତି ଶେଷ ହୋଇଯାଇଛି । କିନ୍ତୁ ୧୯୪୪ ମସିହାରେ ଯେଉଁ ଅଗ୍ନ୍ୟୁତ୍ପାତ ଘଟିଲା, ସେଥିରୁ ଜଣାଗଲା ବିସୁଭିୟାସ ଏବେ ମଧ୍ୟ ଏକ ଜୀବନ୍ତ ଆଗ୍ନେୟଗିରି । ତଥାପି, ଭୂମଧ୍ୟସାଗର କୂଳର ସେହି ରମଣୀୟ ପରିବେଶରେ ଅଧୁନା ୨ ନିୟୁତ ଇଟାଲୀୟ ବସବାସ କରୁଛନ୍ତି । "ସେମାନଙ୍କର ବିଶ୍ୱାସ, ବୈଜ୍ଞାନିକ ଯୁଗର ବିଶେଷଜ୍ଞମାନେ ଲାଭା ନିର୍ଗତ ହେବାର ସୂଚନା ଆଗରୁ ଦେଇପାରିବେ ଏବଂ ଲୋକମାନେ ଅନ୍ୟତ୍ର ଚାଲିଯିବେ । ଆଗ୍ନେୟଗିରି ନିର୍ବାପିତ ହେଲାପରେ ପୁଣି ଫେରିବେ ।"

ପମ୍ପେ ଦର୍ଶନ ପରେ ଆମମାନଙ୍କୁ ନିଆଗଲା ସମୁଦ୍ରକୂଳସ୍ଥ ଗୋଟିଏ ଛୋଟ ବଜାରକୁ । ସେଠାରୁ ଭୂମଧ୍ୟସାଗରର ଦୃଶ୍ୟ ଅତୀବ ଆକର୍ଷଣୀୟ ଥାଏ । ସାଗରଗର୍ଭରେ ଥିବା ଛୋଟ ଛୋଟ ଦ୍ୱୀପର ସବୁଜ ଅରଣ୍ୟାନୀ ମଧ୍ୟରେ ଅଟ୍ଟାଳିକାମାନ ଶୋଭା ପାଉଥାଏ । ବିଭିନ୍ନ ଦେଶର କୋଟିପତିଙ୍କ ପାଇଁ ପଞ୍ଚତାରକା ହୋଟେଲ ଓ ପାନ୍ଥନିବାସ । ସ୍ଥାନଟି ହସ୍ତଶିଳ୍ପ ଲାଗି ପ୍ରସିଦ୍ଧ । ସମୁଦ୍ରରୁ ଧରାଯାଉଥିବା କଚ୍ଛପଗୁଡ଼ିକର ସୁଦୃଢ଼ ଖୋଳପାରୁ ସ୍ଥାନୀୟ କାରିଗରମାନେ ଚଶମା ଫ୍ରେମ୍ ତିଆରି କରନ୍ତି, ଯାହାର ମୂଲ୍ୟ ଅନେକ ବେଶି । ଖୋଳପାଗୁଡ଼ିକୁ ମସୃଣ କରିବାପାଇଁ ବସିଥିବା କାରିଗରମାନଙ୍କ ହାତର ପାପୁଲି ଫଳିଯାଇଥାଏ, ଏତେ ଶକ୍ତ ସେହି କଇଁଛଖୋଳ ।

ନେପଲସ୍ ସହରକୁ ଫେରିଆସିଲୁଁ । ବାଟରେ ଦେଖାଇଦିଆଗଲା ଚାରିଶହ ବର୍ଷ ଆଗର ଗୋଟିଏ ରାଜପ୍ରାସାଦ ଓ ଅତିପ୍ରାଚୀନ ଏକ ନରମାନ୍ ଦୁର୍ଗ । ସମୁଦ୍ରକୂଳର ସହରଟି ସୌଧରାଜି ଓ ଉଦ୍ୟାନରେ ପରିପୂର୍ଣ୍ଣ ଥାଏ । ସୌନ୍ଦର୍ଯ୍ୟମୟ ପରିବେଶ ଦେଖି ମୁଗ୍ଧ ହେବାକୁ ହେଲା । ସନ୍ଧ୍ୟାପୂର୍ବରୁ ଜାହାଜରେ ପ୍ରବେଶ କଲୁଁ । ନେପଲସ୍ ଠାରୁ ଜାହାଜ ଯିବ ଜେନୋଆ । ସମୁଦ୍ରଯାତ୍ରାର ଅନ୍ତିମ ପର୍ବ ।

## ଜେନୋଆରୁ ଡାନ୍‌କାର୍କ୍

ଜାନୁଆରୀ ୮ ତାରିଖ ପୂର୍ବାହ୍ନରେ ନେପ୍‌ଚୁନିଆ ପହଞ୍ଚିଲା ଜେନୋଆ ବନ୍ଦରରେ । ଦିନ ୧୧ଟା ବେଳେ ଜାହାଜରେ ମଧ୍ୟାହ୍ନଭୋଜନ ଶେଷକରି ବାହାରି ଆସିଲୁ । କଲମ୍ବାସ୍ ଓ ମ୍ୟାଜିନୀ ଏହି ସହରରେ ଜନ୍ମିଥିଲେ । ସ୍ଥାନଟି ଦେଖିବାକୁ ଆଗ୍ରହ ଥିବା ସତ୍ତ୍ୱେ ସମୟ ନଥାଏ ।, ଟୁରିଷ୍ଟ କୋମ୍ପାନୀ ଲଣ୍ଡନଯାତ୍ରୀମାନଙ୍କୁ ବନ୍ଦର ଠାରୁ ଜେନୋଆ ରେଳଷ୍ଟେସନ୍‌କୁ ନେଇଗଲେ । ସେଠାରୁ ଟ୍ରେନ୍‌ଯୋଗେ ଇଟାଲୀ, ସୁଇଜାରଲ୍ୟାଣ୍ଡ ଓ ଫ୍ରାନ୍ସ ମଧ୍ୟଦେଇ ଡାନକାର୍କ ନାମକ ସ୍ଥାନକୁ ଯିବାପାଇଁ ଟିକଟ

ହୋଇଥାଏ । ସେଥି ପାଇଁ ସ୍ୱତନ୍ତ୍ର କୋଚ୍‌ଟିଏ ପ୍ଲାଟଫର୍ମରେ ରହିଥାଏ । କେତେଜଣ ଇଂରେଜ ପାସେଞ୍ଜରଙ୍କ ସହିତ ଆମ ପରିବାର ପାଇଁ ସ୍ଥାନ ରିଜାର୍ଭ ଥାଏ ।

ଅପରାହ୍ନ ୨ଟା ସମୟରେ ଟ୍ରେନ୍ ଛାଡ଼ିଲା । ଦୁଇପାଖରେ ଦିଶୁଥାଏ ଉପତ୍ୟକାର ସମତଳ ଭୂମି, ଦୂରବର୍ତ୍ତୀ ପାହାଡ଼ ପର୍ବତ ଓ ବରଫାବୃତ ପ୍ରାଙ୍ଗଣ । ଶୀତରତୁରେ ଗଛଗୁଡ଼ିକରେ ପତ୍ର ନଥାଏ । ମାର୍ବଲ ପଥରର ବେଦୀ ପରି ଦେଖାଯାଉଥିବା ବରଫ ଉପରେ ଗଛଗୁଡ଼ିକର ମୂଳ ଓ ଡାଳ ଛିଡ଼ା ରହିଥାଏ । ଆକାଶରେ ସୂର୍ଯ୍ୟ ଦିଶୁଥାନ୍ତି ଚନ୍ଦ୍ରପରି କୋମଳ । ତେଜଶକ୍ତି ନଥାଏ । ସାଢ଼େ ୪ଟା ବେଳେ ଟ୍ରେନ୍ ରହିଲା ମିଲାନ୍ ଷ୍ଟେସନରେ । ବାହାରେ ଦିଶୁଥାଏ ସୁବିସ୍ତୀର୍ଣ୍ଣ ସହର । ଦିନେ ଏହି ସହରରୁ ଫ୍ୟାସିଷ୍ଟ ନେତା ମୁସୋଲିନୀ କ୍ଷମତା ଅଧିକାର ନିମନ୍ତେ ଜୟଯାତ୍ରା ଆରମ୍ଭ କରିଥିଲେ ଏବଂ ଶେଷରେ ଦିନେ ଏହି ସହରର କେନ୍ଦ୍ରଛକରେ ତାଙ୍କର ଗୁଳିବିଦ୍ଧ ଶବକୁ ଝୁଲାଇ ରଖି ଲୋକେ ସେଥିରେ ପଦାଘାତ କରିଥିଲେ । ପିଲାମାନଙ୍କୁ ମୁସୋଲିନୀଙ୍କ ଗପ କହୁଥିଲାବେଳେ ଗାଡ଼ି ଛାଡ଼ିଲା । ଅଳ୍ପ ସମୟ ପରେ ଆସିଗଲା ରାତି ।

ଅନ୍ଧକାର ମଧ୍ୟରେ କେତେବେଳେ ଇଟାଲୀର ସୀମା ଅତିକ୍ରମ କରି ଟ୍ରେନ୍ ସୁଇଜାରଲ୍ୟାଣ୍ଡ୍ ଦେଶରେ ପଶିଲା, ତାହା ଜାଣିହେଲା ନାହିଁ । ଇଂରେଜ ଯାତ୍ରୀମାନଙ୍କ ମଧ୍ୟରୁ ଦୁଇଜଣ ଯୁବକ ବେହେଲା ବଜାଇ ଗୀତ ଗାଇବାକୁ ଆରମ୍ଭ କଲେ । ଝରକା ପାଖରେ ବସି ଆମେ ଦେଖୁଥାଉଁ ବାହାରର ଦୃଶ୍ୟ । ଆକାଶ ଥାଏ ମୁକ୍ତ ଓ ଜ୍ୟୋତ୍ସ୍ନାପ୍ଲାବିତ । ଗାଡ଼ି ଚାଲିଲା ଆଲପସ୍ ପର୍ବତମାଳାର ତଳେ ତଳେ । ଜାନୁଆରୀ ମାସ । ଆଲପସ୍‌ର ଆମୂଳଚୂଳ ବରଫରେ ଛାଇଯାଇଥାଏ । ଚାରିଦିଗରେ ଦିଶୁଥାଏ କେବଳ ବରଫ । ଆକାଶକୁ ଭେଦି ରହିଥାଏ ଅସଂଖ୍ୟ ଶ୍ୱେତ ଶୃଙ୍ଗ । ନୀଳ ଆକାଶର ପ୍ରଚ୍ଛଦ ଉପରେ ଧଳା ଶୃଙ୍ଗଗୁଡ଼ିକର ଅପରୂପ ଦୃଶ୍ୟ ଏତେଦୂର ମନୋମୁଗ୍ଧକର ଥାଏ ଯେ, ମୁଁ ସାରାରାତି ଆଖି ନବୁଜି ତାହା ଦେଖିବି ବୋଲି ଠିକ୍ କଲି । ପ୍ରଚଣ୍ଡ ଶୀତ ଯୋଗୁଁ କମ୍ବଳ ଘୋଡ଼ି ଝିଅ ପୁଅ ଶୋଇପଡ଼ିଥାନ୍ତି । ଅନ୍ୟ ଯାତ୍ରୀମାନେ ମଧ୍ୟ ନିଦ୍ରାଗଲେ । ସ୍ତ୍ରୀଙ୍କୁ ନିଦ ଆସିଯାଉଥିବା ଦେଖି କହିଲି, ‘‘ଜନ୍ମରୁ ମଲାଯାଏ ଗାଢ଼ ନିଦରେ ଶୋଇବାଲାଗି ଭଗବାନ ମଣିଷକୁ ଅନେକ ରାତି ଦେଇଛନ୍ତି । କିନ୍ତୁ, ଏପରି ଗୋଟିଏ ରାତିରେ ନିମିଷ ପାଇଁ ମଧ୍ୟ ଆଖି ବୁଜିବା ଉଚିତ ନୁହେଁ ।’’

ମଧ୍ୟରାତ୍ରି ପରେ ଟ୍ରେନ୍ ରହିଲା ବାସେଲ ବାଁ ବାଲେ ନାମକ ଷ୍ଟେସନ୍‌ରେ । ଷ୍ଟେସନ୍‌ଟି ଥାଏ ସୁଇଜାରଲ୍ୟାଣ୍ଡ ଓ ଫ୍ରାନ୍ସଦେଶର ସୀମା ସ୍ଥଳରେ । ଏହିଠାରେ ଘଟିଲା ଗୋଟିଏ ଅପ୍ରତ୍ୟାଶିତ ଓ ଦୁଃଖଦାୟକ ଘଟଣା । ଇଟାଲୀରେ ଟ୍ରେନ

ଧରିଲାବେଳେ ସେଠାକାର ପୋଲିସମାନେ ଆମର ପାସ୍‌ପୋର୍ଟ ଦେଖିଥିଲେ ଓ ତାଙ୍କ ଦେଶ ମଧ୍ୟରେ ଯିବା ପାଇଁ ଆପତ୍ତି କରି ନଥିଲେ । ସୁଇଜାରଲ୍ୟାଣ୍ଡରେ ଗାଡ଼ି ଚାଲିଲାବେଳେ କେହି ପାଶ୍‌ପୋର୍ଟ ମାଗି ନଥିଲେ । କିନ୍ତୁ ବାସେଲଠାରେ କୋଚ୍ ଭିତରକୁ କେତେଜଣ ଫରାସୀ ପୋଲିସ ପଶିଆସି ପାଶ୍‌ପୋର୍ଟ୍ ଦେଖିଲାପରେ କହିଲେ, ‘‘ଫ୍ରାନ୍ସ ଭିତର ଦେଇ ଯିବାଲାଗି ଅନୁମତିପତ୍ର ନାହିଁ । ତେଣୁ ଯିବାକୁ ଦିଆଯିବ ନାହିଁ ।’’ ସ୍ୱତନ୍ତ୍ର କୋଚ୍‌ଟି ଟ୍ରେନ୍‌ରୁ ବିଚ୍ଛିନ୍ନ କରିଦିଆଯିବ ବୋଲି କହିବାରୁ ଅନ୍ୟ ପାସେଞ୍ଜାରମାନେ ଅନ୍ୟ ଗୋଟିଏ ବଗିକୁ ଚାଲିଗଲେ । ମୁଁ ହତଭମ୍ବ ଅବସ୍ଥାରେ ବସିରହି କ'ଣ କରିବି ଠିକ୍ କରିପାରିଲି ନାହିଁ । ପୋଲିସମାନେ ଆମର ପାଶ୍‌ପୋର୍ଟ ନେଇ ତଳକୁ ଚାଲିଗଲେ । ସେମାନଙ୍କ ପିଛା ଧରିବା ଛଡ଼ା ଅନ୍ୟ ଉପାୟ ନଥାଏ ।

ସେମାନେ ମୋତେ ନେଇଗଲେ ଉପରିସ୍ଥ କର୍ମଚାରୀଙ୍କ ଅଫିସ୍‌କୁ । କର୍ମଚାରୀ ଇଂରାଜୀରେ ବ୍ୟାଖ୍ୟା କରି କହିଲେ ଯେ, କିଛିଦିନ ପୂର୍ବେ କେତେଜଣ ଭାରତୀୟ ଜାଲ୍ ପାଶପୋର୍ଟ ସହ ଫ୍ରାନ୍ସଦେଶକୁ ଆସି ଧରାପଡ଼ିଛନ୍ତି । ସେଥିପାଇଁ ଆମ ପାଶ୍‌ପୋର୍ଟ ପ୍ରତି ତାଙ୍କର ସନ୍ଦେହ । ‘‘ଲଣ୍ଡନ ଯିବାର ଅନ୍ୟ ପ୍ରମାଣପତ୍ର ଦେଖାଇଲେ ଆପଣଙ୍କ କଥା ବିଚାର କରାଯିବ’’ ବୋଲି ସେ ମୋତେ ତାଗିଦ୍ ଦେଲେ । କୋଚ୍ ଭିତରକୁ ଫେରିଆସି ସବୁପ୍ରକାର ପ୍ରମାଣ ବାହାର କରି ପୁଣି ତାଙ୍କୁ ଭେଟିଲି । ଟ୍ରେନ୍ ଛାଡ଼ିଦେବ ବୋଲି ଭୟ ହେଉଥାଏ । ସ୍ତ୍ରୀ ଓ ପିଲାମାନେ ତ୍ରସ୍ତବ୍ୟସ୍ତ ଥାଆନ୍ତି । ଅଫିସରଙ୍କୁ ସବୁକଥା ବୁଝାଇଲି । ଶେଷରେ ସେ ଯିବାପାଇଁ ଅନୁମତି ଦେଲେ । ଦୁର୍ଭାଗ୍ୟକୁ ସେତେବେଳକୁ ପଛରେ ଥିବା ଆମ କୋଚ୍‌ଟିକୁ ବାଦ୍ ଦେଇ ଟ୍ରେନ୍ ଛାଡ଼ିଦେଲା । ପୁଣି ଦୌଡ଼ିଲି ଫରାସୀ ପୋଲିସକର୍ମଚାରୀଙ୍କ ପାଖକୁ । ସେ ଆଶ୍ୱାସନା ଦେଲେ, ‘‘ପରବର୍ତ୍ତୀ ଟ୍ରେନ୍‌ରେ ଆପଣଙ୍କ କୋଚ୍ ଯୋଗ କରାଯିବ ଓ ଡାନକାର୍କ ଯିବେ, ଅବଶ୍ୟ କେତେକ ଘଣ୍ଟା ପରେ ।’’

ନିରୁପାୟ ଅବସ୍ଥାରେ କୋଚ୍ ଭିତରେ ବସିରହିବାକୁ ହେଲା । ରାଗ ଆସୁଥାଏ ଫରାସୀ ପୋଲିସ ପ୍ରତି । ସେତେବେଳେ ଫ୍ରାନ୍ସଦେଶ ସହିତ ଭାରତର କୂଟନୈତିକ ସମ୍ପର୍କ ନାନା କାରଣରୁ ତିକ୍ତ ଥାଏ । ସେଥିପାଇଁ ମୋତେ ହଇରାଣ କରାଯାଉଛି ବୋଲି ଧାରଣା ହେଲା । ସେଥିସଙ୍ଗେ ଏକଥା ମଧ୍ୟ ଭାବିବାକୁ ହେଲା ଯେ, ଯଦି ଆମ ଦେଶର କେହି ଲୋକ ଜାଲ୍ ପାଶ୍‌ପୋର୍ଟ୍ ବଳରେ ଫ୍ରାନ୍ସଦେଶକୁ ଆସିଥାନ୍ତି, ତେବେ ଅନ୍ୟ ଭାରତୀୟଙ୍କୁ ସନ୍ଦେହ କରିବାର ଅବକାଶ ମଧ୍ୟ ବିଦେଶୀ ସରକାରଙ୍କ ପକ୍ଷରେ ଅସ୍ୱାଭାବିକ ନୁହେଁ ।

ରାତିଟି କଟିଲା ବାସେଲ ଷ୍ଟେସନ୍‌ରେ ପଡ଼ିରହିଥିବା କୋଚ୍‌ଟି ଭିତରେ । ଦିନ ହେଲାବେଳକୁ ପ୍ଲାଟ୍‌ଫର୍ମ ଉପରେ ଗଦା ଗଦା ବରଫ । ନିଦରୁ ଉଠି ସିଦ୍ଧାର୍ଥ ବରଫ ଉପରେ ଖେଳିବ ବୋଲି ଦେହରେ ଓଭର୍‌କୋଟ୍ ଓ ମୁଣ୍ଡରେ ଟୋପି ପିନ୍ଧି ତଳକୁ ଡେଇଁଲା । ତୁଳାପରି ନରମ ବରଫ ଉପରେ ସେ ଖେଳିବା ଦେଖି ଦୂରରେ ଥିବା ଦୁଇଜଣ ସୁଇସ୍ ସୈନ୍ୟ ତା ପାଖକୁ ଆସି ସାମରିକ ରୀତିରେ ସାଲ୍ୟୁଟ୍ ଦେଇ ଛିଡ଼ାହୋଇ ରହିଲେ । ଜଣେ ଭାରତୀୟ ବାଳକ ପ୍ରତି ବିଦେଶୀ ସୈନ୍ୟଙ୍କ ସ୍ନେହ ଦେଖି ସ୍ତ୍ରୀ ରାଜଶ୍ରୀ ଖୁସି ହେଲେ । ସୈନ୍ୟମାନେ ବରଫ ବଲ୍ ତିଆରି କରି ପୁଅ ହାତରେ ଧରାଇଦେଇ ସେମାନଙ୍କୁ ଲକ୍ଷ୍ୟକରି ଗୋଳାନିକ୍ଷେପ କରିବାକୁ ଶିଖାଇଲେ । ମୁଁ ପାଖରେ ଥିବା ଦୋକାନରୁ ଗରମ ଦୁଇକପ୍ ଚା ଆଣି ପିଇବାକୁ ଦେଲି । ସେମାନେ ଧନ୍ୟବାଦ ଦେଲେ । ଶୁଖିଲା ବାଲିପରି ବରଫ ବଲ୍‌ଗୁଡ଼ିକ ପୋଷାକରୁ ଝଡ଼ିପଡୁଥାଏ । ଚାରିଦିଗରେ ବରଫ ବୃଷ୍ଟି ହେଉଥାଏ । ପ୍ଲାଟ୍‌ଫର୍ମର ଯେଉଁ ଅଂଶରେ କୋଚ୍ ପଡ଼ିଥିଲା, ସେଠାରେ କେହି ନଥାନ୍ତି ।

ଦିନ ୧୧ଟା ବେଳେ ଆଉ ଗୋଟିଏ ଟ୍ରେନ୍ ସହିତ କୋଚ୍‌ଟି ଲଗାଗଲା । ମୋର ଧୈର୍ଯ୍ୟଚ୍ୟୁତି ଘଟିଥାଏ । ବିଦେଶ ଯାତ୍ରାରେ ଏପରି ଅସୁବିଧା ଭୋଗିବାକୁ ହୁଏ ବୋଲି ମନକୁ ସାନ୍ତ୍ୱନା ଦେଲି । ସୀମାନ୍ତ ଷ୍ଟେସନ୍ ବାସଲେ ଠାରୁ ଟ୍ରେନ୍ ଛାଡ଼ିଲା ଡାନକାର୍କ ଅଭିମୁଖେ । ଫ୍ରାନ୍ସଦେଶ ଭିତରଦେଇ ଗାଡ଼ି ଗତିକଲା । ମଧ୍ୟରାତ୍ରି ବେଳକୁ ଗନ୍ତବ୍ୟ ସ୍ଥାନରେ ପହଞ୍ଚିବ ବୋଲି ଶୁଣିଲି । ଚାରିଦିଗରେ ଘନ କୁହୁଡ଼ି ଘୋଟିରହିଥାଏ । ରେଳଲାଇନ ଉପରେ ବରଫ ଭର୍ତ୍ତିଥାଏ । ସେଥିଯୋଗୁଁ ଗାଡ଼ିର ଗତି ଅତିଶୟ ଶିଥିଳ ଜଣାଗଲା । ଫ୍ରାନ୍ସଦେଶର ଗ୍ରାମାଞ୍ଚଳ ଓ ଷ୍ଟେସନ୍ ଦେଖିବା ସମ୍ଭବ ହେଲାନାହିଁ ।

## ଡାନକାର୍କ

ବାଟରେ ଜାନୁଆରୀ ୯ ତାରିଖ ଦିନଟି ଶେଷ ହେଲା । ଧୀରେ ଧୀରେ ଗତିକରି ରାତି ୧୧ଟା ବେଳେ ଫ୍ରାନ୍ସଦେଶର ସମୁଦ୍ରକୂଳରେ ଅବସ୍ଥିତ ଡାନ୍‌କାର୍କ ଷ୍ଟେସନ୍‌ରେ ଟ୍ରେନ୍ ବନ୍ଦ ହେଲା । ପଶ୍ଚିମରେ ଇଂଲିଶ୍ ପ୍ରଣାଳୀ । କ୍ଷୁଦ୍ରାକୃତି ଷ୍ଟିମାରଟିଏ ଯାତ୍ରୀମାନଙ୍କୁ ନେବାପାଇଁ ପ୍ରସ୍ତୁତ ରହିଥାଏ ।

ଷ୍ଟେସନ୍‌ରୁ ପିଲାମାନଙ୍କୁ ଓ ଜିନିଷପତ୍ର ସାଙ୍ଗରେ ନେଇ ଫରାସୀ କାଷ୍ଟମସ୍ କକ୍ଷକୁ ଯିବାକୁ ହେଲା । ଟ୍ରେନ୍‌ରେ ଆସିଥିବା ଇଂଲଣ୍ଡଗାମୀ ପାସେଞ୍ଜରମାନେ ସେଠାରେ ରୁଣ୍ଡ ହେଲେ । ବାହାରେ ପ୍ରଚଣ୍ଡ ଶୀତ । କିନ୍ତୁ ଭିତରେ ଶୀତତାପନିୟନ୍ତ୍ରିତ ଘରେ ବସିବାକୁ ଭଲ ଲାଗିଲା । ସେଠାରେ ଇଂରେଜ ଅଫିସରମାନେ ପାଶ୍‌ପୋର୍ଟ

ଓ ଜିନିଷଗୁଡ଼ିକ ଦେଖିଲେ । ରାତି ୨ଟା ବେଳେ ଷ୍ଟିମାର ଛାଡ଼ିବ ବୋଲି କୁହାଗଲା ।

ଡାନକାର୍କ ନାମଟି ଦ୍ୱିତୀୟ ମହାଯୁଦ୍ଧର ଇତିହାସରେ ପ୍ରସିଦ୍ଧ ରହିଛି । ବେଳାଭୂମିରେ ବୁଲି ସ୍ଥାନଟିକୁ ଦେଖିବାକୁ ପ୍ରବଳ ଇଚ୍ଛା ହେଲା । କିନ୍ତୁ ଶୀତର ପ୍ରକୋପ ଯୋଗୁଁ ବାହାରିବାକୁ ସାହସ ହେଲା ନାହିଁ । ସେତିକିବେଳେ ପାଖରେ ବସିଥିବା ଜଣେ ଇଂରେଜ ଭଦ୍ରବ୍ୟକ୍ତିଙ୍କ ସହିତ ପରିଚୟ ହେଲା । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଚାକିରି ପାଇଛି ଶୁଣି ସେ ଖୁସି ହେଲେ ଓ ନିଜେ ଜଣେ ସାମ୍ବାଦିକ ବୋଲି ଜଣାଇଲେ । ମୁଁ ଡାନକାର୍କ ଦେଖିପାରିଲି ନାହିଁ ବୋଲି ଦୁଃଖ କରିବା ଦେଖି ସେ ହସି ହସି କହିଲେ, "ବହିରେ ଯାହା ପଢ଼ିଛନ୍ତି, ଆଖି ବନ୍ଦ କରି ସେହି ସବୁ ବିଷୟ ଏହି ସୁଦୂରପ୍ରସାରୀ ସାଗରତଟ ସହିତ ସଂଯୋଗ କରିଦିଅନ୍ତୁ । ତଦ୍ୱାରା ଏହିଠାରେ ବସି ସୁଦ୍ଧା ଯୁଦ୍ଧର ଦୃଶ୍ୟମାନ ଅନୁମାନ କରିପାରିବେ ।" ପୂରା ଏକଘଣ୍ଟା ସମୟ ଦୁହେଁ ମିଶି ଡାନକାର୍କ ଯୁଦ୍ଧ ସମ୍ପର୍କରେ ଆଲୋଚନା କଲୁଁ ।

ଦ୍ୱିତୀୟ ମହାଯୁଦ୍ଧ କାଳରେ ସେହି ରଣାଙ୍ଗନରେ ସଂଘଟିତ ହୋଇଥିଲା ଲୋମହର୍ଷଣକାରୀ ନରସଂହାର ଓ ବ୍ରିଟିଶ ଜାତିର ଶୋଚନୀୟ ପରାଜୟ । ୧୯୪୦ ମସିହାର ଗ୍ରୀଷ୍ମଋତୁର ଘଟଣା । ହିଟଲାରଙ୍କ ନାଜିବାହିନୀ ବେଲଜିୟମ ଅଧିକାର ପୂର୍ବକ ଫ୍ରାନ୍ସଦେଶକୁ ମାଡ଼ିଆସୁଥାଏ । ଫରାସୀ ଜାତିକୁ ଆସନ୍ନ ବିପଦରୁ ରକ୍ଷାକରିବା ନିମନ୍ତେ ବ୍ରିଟିଶ୍ ସରକାର ଡାନକାର୍କ ସମୁଦ୍ରକୂଳକୁ ବିପୁଳସଂଖ୍ୟକ ସୈନ୍ୟ ପ୍ରେରଣ କରିଥିଲେ । ବହୁସଂଖ୍ୟକ ଫରାସୀ ସୈନ୍ୟ ମଧ୍ୟ ସେଠାରେ ମହଜୁଦ୍ ଥାନ୍ତି । କିନ୍ତୁ ଜାର୍ମାନମାନେ ତଡ଼ିତ୍‌ଗତିରେ ଚାରିଦିଗରୁ ଘେରିଆସିବା ଦେଖି ଚର୍ଚ୍ଚିଲ ଅବରୁଦ୍ଧ ସୈନ୍ୟବଳକୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଶତ ଶତ ଡ଼େଙ୍ଗା ପଠାଇଲେ । ତାହା ସତ୍ତ୍ୱେ ଜାର୍ମାନମାନଙ୍କ ବୋମା ଓ ଗୋଳାମାଡ଼ରେ ଅସଂଖ୍ୟ ସୈନ୍ୟଙ୍କ ଜୀବନ ଗଲା । ତଥାପି, ୨ ଲକ୍ଷ ୨୫ ସହସ୍ର ବ୍ରିଟିଶ୍ ସୈନ୍ୟ ଓ ୧ ଲକ୍ଷ ୧୦ ହଜାର ଫରାସୀ ସୈନ୍ୟଙ୍କୁ ସେଠାରୁ ଉଦ୍ଧାର କରାଯାଇଥିଲା । ତାହା ଦେଖି ଜାର୍ମାନମାନେ ଆକାଶରୁ ବୋମା ନିକ୍ଷେପ କରି ଡାନକାର୍କ ସହର ଓ ବନ୍ଦରଟିକୁ ଧୂଳିଧାତ୍ କରିଦେଇଥିଲେ ।

ଷ୍ଟିମାରକୁ ଉଠିବାପୂର୍ବରୁ ଗଭୀର ଅନ୍ଧକାର ମଧ୍ୟରେ ବେଳାଭୂମିରେ କିଛିସମୟ ଛିଡ଼ା ରହି ଯୁଦ୍ଧକାଳୀନ ବୀଭତ୍ସ ଦୃଶ୍ୟମାନ କଳ୍ପନା କରିବାକୁ ଚେଷ୍ଟା କରିଥିଲି । ରାତି ୨ଟାରେ ଷ୍ଟିମାର ଛାଡ଼ିଲା ।

## ଡାନକାର୍କଠାରୁ ଡୋଭାର

ଇଂଲିଶ୍ ପ୍ରଣାଳୀରେ ପାଣିପାଗ ଅତ୍ୟନ୍ତ କଦର୍ଯ୍ୟ ଥାଏ । ଝଡ଼ ପବନ ଯୋଗୁଁ ପ୍ରକାଣ୍ଡ ପ୍ରକାଣ୍ଡ ଢେଉ ଭେଦକରି ଷ୍ଟିମାର ଚାଲିଲା । ପିଲାମାନେ ଆତଙ୍କିତ ଅବସ୍ଥାରେ ବସିରହିଥିବା ଦେଖି ଦୟା ଆସିଲା । ଷ୍ଟିମାର ବୁଡ଼ିବ ନାହିଁ ବୋଲି ସେମାନଙ୍କୁ ବାରମ୍ବାର ଆଶ୍ୱାସନା ଦେଲି । ସଂକୀର୍ଣ୍ଣ ପ୍ରଣାଳୀ ଅତିକ୍ରମ କରିବାଲାଗି ସେଦିନ ଦୀର୍ଘ ପାଞ୍ଚଘଣ୍ଟା ସମୟ ଲାଗିଥିଲା । ଝାନ୍ସୀ ଓ ସିଦ୍ଧାର୍ଥ ପାଇଁ ସେହି ରାତିଟି ଥିଲା ସମଗ୍ର ଯାତ୍ରାକାଳର ସର୍ବାଧିକ ଭୟଙ୍କର ରଜନୀ ।

ଉଷାକାଳର ଅସ୍ପଷ୍ଟ ଆଲୋକ ମଧ୍ୟରେ ଦେଖିବାକୁ ମିଳିଲା ଇଂଲଣ୍ଡ ଉପକୂଳର ଡୋଭାର କ୍ଲିଫସ୍ ଓ ବନ୍ଦରର ବତିଘର । ଦିନଟି ଥାଏ ୧୯୬୦ ମସିହା ଜାନୁଆରୀ ୧୦ ତାରିଖ । ସକାଳ ୭ଟା ବେଳେ ଷ୍ଟିମାର ଘାଟରେ ଲାଗିଲା । ଅଳ୍ପ ଦୂରରେ ରେଳଷ୍ଟେସନ୍ । ଟ୍ରେନ୍ ଚାଲିଲା ଲଣ୍ଡନ ସହର । ଗାଡ଼ି ଚାଲିଲାବେଳେ ବାହାରେ ଚାରିଆଡ଼େ ଦିଶୁଥାଏ ବରଫରାଶି । ରାସ୍ତାଘାଟ, ଘରଦ୍ୱାର, ଗଛପତ୍ର ସବୁ ଧଳା ଦେଖାଯାଉଥାଏ । ଜଣେ ଇଂରେଜ ପାସେଞ୍ଜାର ସମ୍ବାଦପତ୍ର ପଢୁଥାନ୍ତି । ତାଙ୍କ ପାଖରୁ ଶୁଣିଲି, ସମଗ୍ର ଇଉରୋପ ମହାଦେଶରେ ବ୍ୟାପିଯାଇଥିବା ଶୀତଲହରୀ ଯୋଗୁଁ କିଛିଦିନ ଯାବତ୍ କ୍ରମାଗତ ବରଫପାତ ଲାଗିରହିଛି । ପୂର୍ବାହ୍ଣ ସାଢ଼େ ୧୦ଟା ବେଳେ ଟ୍ରେନ୍ ପହଞ୍ଚିଲା ଲଣ୍ଡନର ଭିକ୍ଟୋରିଆ ଷ୍ଟେସନ୍‌ରେ ।

ଦୀର୍ଘ ଯାତ୍ରା ସେହିଠାରେ ଶେଷ ହେଲା । ଡିସେମ୍ବର ୧୯ ତାରିଖ ରାତିରେ କଟକ ଛାଡ଼ିଥିଲୁଁ । ଜାନୁଆରୀ ୧୦ ତାରିଖ ଦିନ ପହଞ୍ଚିଲୁଁ ଲଣ୍ଡନ ସହରରେ । ଝିଅ ଝାନ୍ସୀ ଗଣୁଥାଏ ଯାତ୍ରାପଥରେ ଦେଖିଥିବା ସମୁଦ୍ର ଓ ଦେଶର ସଂଖ୍ୟା ।



ଓଟ ପିଠିରେ ପିରାମିଡ଼ ଯାତ୍ରା



ବୃହତ୍ତମ ପିରାମିଡ଼ ଓ ସ୍ଫିଙ୍କସ୍



ପ୍ୟାରୋ ତୁତାନ ଖେମନଙ୍କ ଶବାଧାର.



ମହମ୍ମଦ ଆଲି ମସଜିଦ



ପମ୍ପେର ଧ୍ୱଂସାବଶେଷରେ ସ୍ତ୍ରୀ, ପୁତ୍ର, କନ୍ୟା ପଶ୍ଚାତରେ ବିସୁଭିୟାସ ଆଗ୍ନେୟଗିରି



ନେପଲସ ସହରର ଦୃଶ୍ୟ

# ଲଣ୍ଡନରେ ସପରିବାର ଏକ ବର୍ଷ ୧୯୬୦



## ସେ ବେଳର କେତେକ ସ୍ମୃତି

### ଲଣ୍ଡନରେ ଅବସ୍ଥାନ

ଲଣ୍ଡନ ସହରର ସୁଇସ୍ କଟେଜ୍ ନାମକ ଅଞ୍ଚଳରେ ଆମକୁ ଭଲ ଘରଟିଏ ମିଳିଲା । ବିଶ୍ୱବିଦ୍ୟାଳୟରେ ପୂର୍ବାହ୍ନ ୧୦ଟାରୁ ଅପରାହ୍ନ ୪ଟା ପର୍ଯ୍ୟନ୍ତ କାମ କଲାପରେ ଅବଶିଷ୍ଟ ସମୟ ଓ ଛୁଟିଦିନଗୁଡ଼ିକରେ ସ୍ତ୍ରୀ ଓ ପିଲାମାନଙ୍କୁ ବିଭିନ୍ନ ଦର୍ଶନୀୟ ସ୍ଥାନକୁ ନେଇଯିବାଲାଗି ସୁଯୋଗ ମିଳୁଥାଏ । ଆଇନ ଅନୁସାରେ ପିଲା ଦୁଇଜଣଙ୍କୁ ନିକଟବର୍ତ୍ତୀ ସ୍କୁଲରେ ଭର୍ତ୍ତି କରାଇବାକୁ ପଡ଼ିଲା । ସକାଳ ୮ଟାରେ ସେମାନଙ୍କୁ ନେଇ ସ୍କୁଲରେ ଛାଡ଼ିବା ଓ ୪ଟାରେ ଆଣିବା ଦାୟିତ୍ୱ ସ୍ତ୍ରୀଙ୍କ ହାତରେ ନ୍ୟସ୍ତ ରହିଲା । ପୁଅ ଝିଅ ସାହେବ ଛାତ୍ରଛାତ୍ରୀଙ୍କ ସାଙ୍ଗରେ ସହଜରେ ମିଶିଗଲେ ଓ ଶିକ୍ଷକମାନଙ୍କ ପାଖରୁ ସ୍ନେହ ପାଇଲେ । ସହରର ମାଟିତଳେ ଅହରହ ଚାଲୁଥିବା ସୁଡ଼ଙ୍ଗ ରେଳରେ ଯିବା ଆସିବା ସହଜ ଓ ଆନନ୍ଦଦାୟକ ଥିବାରୁ ସ୍ତ୍ରୀ ରାଜଶ୍ରୀ ଅନେକ ସମୟ ନାନା ସ୍ଥାନକୁ ଯାଇ ଏକାକୀ ନିର୍ବିଘ୍ନରେ ବୁଲିପାରିଲେ । ରାଜପ୍ରାସାଦ, ମିଉଜିୟମ, ଚିତ୍ରଶାଳା, ପାର୍ଲିଆମେଣ୍ଟ ଓ ଗିର୍ଜା ପ୍ରଭୃତି ଦେଖିବା ସାଙ୍ଗକୁ ଥିଏଟାର, ସର୍କସ, ସିନେମା ଓ ପ୍ଲାନେଟୋରିୟମ ଇତ୍ୟାଦି ଦେଖି ସେମାନେ ସଦାବେଳେ ଖୁସି ମନରେ ରହିଲେ ।

ଝିଅ ଝାନ୍ସୀ ଦେଖୁଥିବା ଜାଗା ଓ ତା'ର ବିଲାତ ଅଭିଜ୍ଞତା ସମ୍ବନ୍ଧରେ ଛୋଟ ଛୋଟ ପ୍ରବନ୍ଧ ଲେଖି ଓଡ଼ିଶାର ଦୈନିକ ସମ୍ବାଦପତ୍ର 'ସମାଜ'ରେ ପ୍ରକାଶ ପାଇଁ ନିୟମିତ ପଠାଉଥାଏ । ରବିବାର ସଂଖ୍ୟାରେ ସେଗୁଡ଼ିକ ବାହାରୁଥାଏ । ବୟସ ଦୃଷ୍ଟିରୁ ଅନେକ ସ୍ଥାନର ଗୁରୁତ୍ୱ ଉପଲବ୍ଧି କରିବା ଛୋଟପିଲାଙ୍କ ପକ୍ଷରେ ସମ୍ଭବ ନଥିଲା । ତଥାପି, ଚିଡ଼ିଆଖାନା କିମ୍ବା ସର୍କସ ଦେଖିଲାବେଳେ ସେମାନଙ୍କ କୌତୂହଳର ସୀମା ନ ଥାଏ ।

## ମାଦାମ୍ ତୁସାଦ ଯାଦୁଘର

ଲଣ୍ଡନ ସହରରେ ମାଦାମ୍ ତୁସାଦ ନାମକ ଗୋଟିଏ ଯାଦୁଘର ରହିଛି ଯେଉଁଠାକୁ ଅସଂଖ୍ୟ ଲୋକ ଆସନ୍ତି । ପୃଥିବୀର ପ୍ରସିଦ୍ଧ ଐତିହାସିକ ବ୍ୟକ୍ତିମାନଙ୍କର ଜୀବନ୍ତ ଦେଖାଯାଉଥିବା ମହମ ମୂର୍ତ୍ତିଗୁଡ଼ିକ ସେଠାରେ ରଖାଯାଇଛି । ଶିଶୁ ବା ବୃଦ୍ଧ, ସମସ୍ତଙ୍କ ଲାଗି ଯାଦୁଘରଟିର ସ୍ୱତନ୍ତ୍ର ଆକର୍ଷଣ ଦେଖାଯାଇଥାଏ । ଯେତେଥର ଦେଖିଲେ ମଧ୍ୟ ପୁଣିଥରେ ଦେଖିବାକୁ ଇଚ୍ଛା ହୁଏ ।

ସେହି ମହମ-ମୂର୍ତ୍ତିଗୁଡ଼ିକର ଘର ସହିତ ମିଶିରହିଛି ଜଣେ ଫରାସୀ ମହିଳାଙ୍କର କରୁଣ କାହାଣୀ । ତାଙ୍କ ନାମ ଥିଲା ମେରୀ ତୁସାଦ୍ । ଦୁଇଶହ ବର୍ଷ ଆଗେ ସେ ଜନ୍ମିଥିଲେ (ଖ୍ରୀ.ଅ. ୧୭୬୧) । ଅଳ୍ପ ବୟସରୁ ସେ ମୂର୍ତ୍ତିଗଠନ କାମ ଶିଖିଥିଲେ । ଫ୍ରାନ୍ସଦେଶର ଭାର୍ସାଇ ରାଜପ୍ରାସାଦରେ ମଧ୍ୟ କୌଣସି କୌଣସି ବ୍ୟକ୍ତିଙ୍କୁ ସେ ତାଙ୍କ ହସ୍ତଶିଳ୍ପ ଶିକ୍ଷା ଦେଉଥିଲେ । ସେହିପରି ସମୟରେ ୧୭୮୯ ମସିହାରେ ଆରମ୍ଭ ହେଲା ଫରାସୀ ରାଜତନ୍ତ୍ର ବିରୋଧରେ ରାଷ୍ଟ୍ର ବିପ୍ଳବ । ବିପ୍ଳବବେଳେ ଅସଂଖ୍ୟ ଲୋକଙ୍କ ମୁଣ୍ଡ ଗଡ଼ିଲା । ମୁଣ୍ଡକୁ ଦେହରୁ ସହଜରେ ଅଲଗା କରିବା ନିମନ୍ତେ ଗିଲୋଟିନ୍ ବୋଲି ଯନ୍ତ୍ରଟିଏ ପ୍ରଚଳନ କରାଗଲା । ରାଜା, ମନ୍ତ୍ରୀ, ସଭାସଦ, ସମ୍ଭ୍ରାନ୍ତ, ଯାଜକ ଓ ରାଜବଂଶୀୟ ଲୋକଙ୍କୁ ବିପ୍ଳବୀମାନେ ଗିଲୋଟିନ ତଳେ ହତ୍ୟା କଲେ । ଶେଷରେ ଦିନେ ଫରାସୀ ରାଣୀ ମେରୀ ଏଣ୍ଟୋଇନେଟଙ୍କୁ ଗିଲୋଟିନ ତଳେ ରଖି ତାଙ୍କର ମୁଣ୍ଡଚ୍ଛେଦ କରାଗଲା । ଗୋଟିଏ ଥାଳି ଉପରେ ସେହି କଟାମୁଣ୍ଡଟିକୁ ରଖି ବିପ୍ଳବୀମାନେ ପହଞ୍ଚିଲେ ମେରୀ ତୁସାଦଙ୍କ ଆଗରେ । ରାଣୀଙ୍କ ମୁଣ୍ଡକୁ ଦେଖି ତାହାର ଗୋଟିଏ ଅବିକଳ ମହମମୂର୍ତ୍ତି ତିଆରି କରିବାକୁ ତାଙ୍କୁ ଆଦେଶ ଦିଆଗଲା ।

କଟାମୁଣ୍ଡରୁ ଟୋପା ଟୋପା ରକ୍ତ ଝରିପଡୁଥାଏ । ଭୟରେ ମୁଣ୍ଡଟିକୁ ହାତରେ ଧରି ମେରୀ ତୁସାଦ ପ୍ରଥମେ ତାହାର ଗୋଟିଏ ମୁଖା ତିଆରି କଲେ । ମୁଖା ଭିତରେ ମହମ ପୂରାଇ ତିଆରି କଲେ ମୁଣ୍ଡର ଅବିକଳ ନକଲ । ସେହି ଲୋମହର୍ଷଣକର ଆତଙ୍କରାଜ ଯୁଗରେ ଭୟତ୍ରସ୍ତ ଅବସ୍ଥାରେ ସେ ଯେଉଁ ମୂର୍ତ୍ତିଟି ଗଠନ କରିଥିଲେ, ସେହିଥିରୁ ଆରମ୍ଭ ହେଲା ତାଙ୍କ ଭବିଷ୍ୟତ ଜୀବନର କୀର୍ତ୍ତିରାଜି । ଘାତକମାନେ ଦିନ ପରେ ଦିନ କଟାମୁଣ୍ଡଗୁଡ଼ିକ ତାଙ୍କ ଆଗରେ ରଖିଲେ ଓ ସେମାନଙ୍କ ମହମ ମୂର୍ତ୍ତି ତିଆରି କରିବାକୁ ବାଧ୍ୟ କଲେ । ସେହି ମୁଣ୍ଡଗୁଡ଼ିକ ମଧ୍ୟରେ କେବଳ ରାଜବଂଶୀୟମାନଙ୍କ ମୁଣ୍ଡ ନ ଥାଏ, ସେଥି ସହ ଥାଏ କେତେକ ବିପ୍ଳବୀ ନେତାଙ୍କର ମୁଣ୍ଡ । କାରଣ, ବିପ୍ଳବର ଲେଲିହାନ ଶିଖା ତଳେ ନେତାମାନେ ପରସ୍ପରର ଶତ୍ରୁତା ସାଧନ ନିମନ୍ତେ ଯାହାକୁ ଇଚ୍ଛା ତାକୁ ଗିଲୋଟିନରେ ନିପାତ

କରୁଥିଲେ । ମେରୀଙ୍କ ଦୁର୍ଭାଗ୍ୟକୁ ତାଙ୍କ ନିଜର କେତେଜଣ ଆତ୍ମୀୟଙ୍କର କଟାମୁଣ୍ଡକୁ ହାତରେ ରଖି ମହମମୂର୍ତ୍ତି ତିଆରି କରିବାକୁ ବାଧ୍ୟ ହେଲେ । ମୂର୍ତ୍ତିଗୁଡ଼ିକ ବିପ୍ଲବୀମାନେ ନେଇଯାଉଥିଲେ । କେତୋଟି ମୁଣ୍ଡକୁ ମେରୀ ଗୋପନରେ ଲୁଚାଇ ରଖିପାରିଥିଲେ ।

ଫରାସୀ ରାଷ୍ଟ୍ରବିପ୍ଳବ ସମାପ୍ତ ହେଲାପରେ ନିଜର ଦୁଇପୁଅଙ୍କୁ ସାଙ୍ଗରେ ଧରି ମେରୀ ତୁସାଦ ଲଣ୍ଡନ ପଳାଇଗଲେ । ସାଙ୍ଗରେ ନେଇଗଲେ କେତୋଟି ମହମ ମୁଣ୍ଡ । ସେଠାରେ ବର୍ଷ ପରେ ବର୍ଷ ସେ ମୃତ ଓ ଜୀବନ୍ତ ବ୍ୟକ୍ତିଙ୍କର ମହମ ମୂର୍ତ୍ତି ତିଆରି କରି ବ୍ରିଟିଶ୍ ଦର୍ଶକମାନଙ୍କୁ ମୁଗ୍ଧ କଲେ । ସମସ୍ତଙ୍କର ପ୍ରେରଣା ବଳରେ ସେ ଯେଉଁ ଅନୁଷ୍ଠାନଟି ସ୍ଥାପନ କରିଥିଲେ, ତାହା ଅଧୁନା ଲଣ୍ଡନ ସହରର ଏକ ଆକର୍ଷଣୀୟ ଯାଦୁଘରରେ ପରିଣତ ହୋଇଛି ଓ 'ମାଦାମ ତୁସାଦ' ନାମରେ ଖ୍ୟାତି ଲଭିଛି । ସୁଦକ୍ଷ ଶିଳ୍ପୀମାନଙ୍କ ନିର୍ମିତ ଅତୀତ ଓ ବର୍ତ୍ତମାନର ଅନେକାନେକ ରାଷ୍ଟ୍ରନାୟକଙ୍କ ମହମମୂର୍ତ୍ତି ସେଠାରେ ଜୀବନ୍ତ ଆକାରରେ ବସିଥିବା ବା ଛିଡ଼ାଥିବା ରୂପରେ ଦେଖିବାକୁ ମିଳୁଛି ।

ମେରୀ ନିଜ ହାତରେ ଗଠନ କରିଥିବା କେତେକ ମୂର୍ତ୍ତି ଆଜିପର୍ଯ୍ୟନ୍ତ ସଂରକ୍ଷିତ ରହିଛି । ସେଗୁଡ଼ିକ ମଧ୍ୟରେ ରାଣୀ ମେରୀ ଏଣ୍ଟୋଇନେଟେଙ୍କ କଟାମୁଣ୍ଡ ଓ ଭଲଟେୟାର୍, ନେଲସନ୍ ଏବଂ ବେଞ୍ଜାମିନ ଫ୍ରାଙ୍କଲିନ ପ୍ରଭୃତିଙ୍କ ପୂର୍ଣ୍ଣାକୃତି ମୂର୍ତ୍ତି ଦେଖିବାକୁ ମିଳେ । ତାଙ୍କ ପରେ, ତାଲିମପ୍ରାପ୍ତ ଶିଳ୍ପୀମାନେ ଅନେକଗୁଡ଼ିଏ ମୂର୍ତ୍ତି ଦ୍ୱାରା ଯାଦୁଘରଟିକୁ ପରିପୂର୍ଣ୍ଣ କରିପାରିଛନ୍ତି । କେତେଗୁଡ଼ିଏ ରୋମାଞ୍ଚକର ଘଟଣାର ଦୃଶ୍ୟ ମଧ୍ୟ ସେଠାରେ ସ୍ଥାନ ପାଇଛି ।

ରାଜଶ୍ରୀ, ସଂଘମିତ୍ରା ଓ ସିଦ୍ଧାର୍ଥକୁ ନେଇ ଦିନେ ସେଠାରେ ପହଞ୍ଚିଲି । ଯାଦୁଘର ଭିତରକୁ ଯିବା ପୂର୍ବରୁ ସୁଦ୍ଧା ଅନେକଙ୍କର ଭ୍ରମ ହୁଏ । ପ୍ରବେଶ ପଥର ବାହାରେ ଜଣେ ଲଣ୍ଡନ ପୋଲିସଙ୍କୁ ଛିଡ଼ା ଥିବା ଦେଖି କେହି କେହି କିଛି ପଚାରିବାକୁ ପାଖକୁ ଗଲାପରେ ଜାଣିପାରନ୍ତି ସେ ମନୁଷ୍ୟ ନୁହେଁ, ମହମ । ରାଜଶ୍ରୀ ମଧ୍ୟ ସେହିପରି ଗୋଟିଏ ଭୁଲ୍ କରିବସିଲେ । ଖଣ୍ଡିଏ ବେଞ୍ଚରେ ଜଣେ ବୃଦ୍ଧା ଇଂରେଜମହିଳାଙ୍କୁ ବସିଥିବା ଦେଖି ସେ ସେଠାରେ ଟିକିଏ ବିଶ୍ରାମ ନେବାଲାଗି ବସିପଡ଼ିଲେ । କିନ୍ତୁ କିଛି ସମୟ ପରେ ଜାଣିପାରିଲେ, ବୃଦ୍ଧା ମଣିଷ ନୁହେଁ, ମୂର୍ତ୍ତି ।

କୋଠରି ପରେ କୋଠରି । ଗୋଟିଏ ସ୍ଥାନରେ ଛିଡ଼ା ରହିଛନ୍ତି ରାଣୀ ଏଲିଜାବେଥ, ତାଙ୍କ ସ୍ୱାମୀ ଓ ଭଉଣୀ ମାର୍ଗାରେଟ୍ । ରାଜକୀୟ ପରିଚ୍ଛଦ ଓ ରାଣୀଙ୍କ ମସ୍ତକରେ ମୁକୁଟ । ସତେଯେପରି ସମସ୍ତେ ଜୀବନ୍ତ ଓ ଦର୍ଶକମାନଙ୍କ ସାଙ୍ଗରେ ସହାସ୍ୟ ବଦନରେ କଥା କହିବାକୁ ଉଦ୍ୟତ । ଅଳ୍ପ ଦୂରରେ ଛିଡ଼ା ରହିଛନ୍ତି ଚାର୍ଚ୍ଚିଲ୍,

ଆଟଲୀ ଓ ଅନ୍ୟ କେତେଜଣ ମନ୍ତ୍ରୀ । ଚାର୍ଚ୍ଚିଲଙ୍କ ଆଖିରୁ କୂଟନୈତିକ କୁଟିଳତା ଜଣାଯାଉଥାଏ ।

ଅନ୍ୟ ଏକ ପ୍ରଶସ୍ତ ସ୍ଥାନରେ ଦଣ୍ଡାୟମାନ ଥାନ୍ତି ଷ୍ଟାଲିନ, ରୁଜଭେଲ୍ଟ ଓ ନେହରୁଙ୍କ ପରି ପ୍ରଖ୍ୟାତ ରାଷ୍ଟ୍ରନୀତିଜ୍ଞମାନେ । ସମସ୍ତେ ନିଜର ଜଣାଶୁଣା ପୋଷାକ ପିନ୍ଧିଥାନ୍ତି । ନେହରୁଙ୍କ ଗୋଡ଼ର ଜୋତା ମଧ୍ୟ ଥାଏ ତାଙ୍କର ବ୍ୟବହୃତ କାବୁଲି ସାଣ୍ଡାଲ୍ । ସମସ୍ତଙ୍କ ଆଖି ପଡ଼ିଥାଏ ଦର୍ଶକମାନଙ୍କ ଦିଗକୁ ।

ଗୋଟିଏ କକ୍ଷରେ ସ୍କଟଲ୍ୟାଣ୍ଡ ରାଣୀ ମେରୀଙ୍କ ମୁଣ୍ଡଚ୍ଛେଦର ଅବିକଳ ଦୃଶ୍ୟ ଦେଖି ଝାନ୍ସୀ ଓ ସିଦ୍ଧାର୍ଥ ଆଖି ବୁଜାଇଲେ । ସେହିପରି ଆତଙ୍କପ୍ରଦ ଦୃଶ୍ୟଟିଏ ଥାଏ ଇଂଲଣ୍ଡର ଦୁଇଜଣ କୋମଳବୟସ୍କ ରାଜପୁତ୍ରଙ୍କୁ ଘାତକମାନଙ୍କ ହାତରେ ଜୀବନ ଦେବାର ଘଟଣା ।

ଯାଦୁଘରର ତଳ ହଲ୍‌ର ପ୍ରବେଶପଥରେ ଲେଖାରହିଥାଏ, ଶିଶୁମାନଙ୍କର ପ୍ରବେଶ ନିଷେଧ । କକ୍ଷଟିର ନାମ ଥାଏ 'ଆତଙ୍କ କକ୍ଷ' ବା Chamber of Horrors । ଭିତରକୁ ଯିବାଲାଗି ସେହିଠାରେ ହିଁ ବାଳକ ବାଳିକାଙ୍କର ଭିଡ଼ ଲାଗିଥାଏ । ବାପା ମା'ମାନେ ଆଗ୍ରହରେ ସେମାନଙ୍କୁ ନେଇଯାଉଥାନ୍ତି । ଆମେ ମଧ୍ୟ ଚାଲିଲୁଁ । ମିଞ୍ଜି ମିଞ୍ଜି ଜଳୁଥିବା ବଲ୍‌ବ ଦ୍ୱାରା ହଲ୍‌ଟିକୁ ଅନ୍ଧାରୁଆ ରଖାଯାଇଥାଏ । ବିଭିନ୍ନ ଦେଶରେ ଓ ବିଭିନ୍ନ ସମୟରେ ମନୁଷ୍ୟଙ୍କୁ କିପରି ଭାବରେ ମୃତ୍ୟୁଦଣ୍ଡ ଦିଆଯାଉଥିଲା, ସେହି ବୀଭତ୍ସ ଦୃଶ୍ୟଗୁଡ଼ିକ ମହମମୂର୍ତ୍ତି ଦ୍ୱାରା ଦେଖାଇ ଦିଆଯାଇଛି । ଅନ୍ୟ ଗୋଟିଏ ସ୍ଥାନରେ ରହିଛି କେତେକ ପ୍ରକାର ବିଭୀଷିକାମୟ ଅପରାଧର ଦୃଶ୍ୟ । ଏଡ଼ୋଲଫ୍ ହିଟଲାର ଯେଉଁପ୍ରକାର ନିର୍ଯ୍ୟାତନା ଦ୍ୱାରା ଇହୁଦୀମାନଙ୍କୁ ନିପାତ କରୁଥିଲେ, ସେଗୁଡ଼ିକ ଚିତ୍ରଣ କରାଯାଇଛି ଏବଂ ସେହିଠାରେ ରଖାଯାଇଛି ହିଟଲାରଙ୍କର ଅବିକଳ ମୂର୍ତ୍ତି । ଝାନ୍ସୀ ଓ ସିଦ୍ଧାର୍ଥ ଭୟରେ ପଳାଇଗଲେ ।

ମାଦାମ୍ ତୁସାଦ ଦେଖିଲାପରେ ଝିଅ ଗୋଟିଏ ପ୍ରବନ୍ଧ ଲେଖି 'ସମାଜ'କୁ ପଠାଇଥିଲା । ତା' ଲେଖାଗୁଡ଼ିକ ପଢ଼ି ପାଠକମାନେ ଖୁସି ହେଉଥିଲେ ।

## ରାଜକୁମାରୀ ମାର୍ଗାରେଟ୍‌ଙ୍କ ବିବାହ

ଲଣ୍ଡନରେ ଥିଲାବେଳେ ରାଣୀଙ୍କ ସାନଭଉଣୀ ରାଜକୁମାରୀ ମାର୍ଗାରେଟ୍‌ଙ୍କ ବିବାହ ଉତ୍ସବ ଦେଖିବାପାଇଁ ସୁଯୋଗ ମିଳିଲା । ବରଙ୍କ ନାମ ଥାଏ ଏଣ୍ଟୋନୀ ଆର୍ମଷ୍ଟ୍ରଙ୍ଗ ଜୋନ୍‌ସ୍ । ସେ ଥିଲେ ଜଣେ ମାମୁଲି ଫଟୋଗ୍ରାଫାର୍ । ଇଂରେଜମାନଙ୍କ ଆର୍ଥିକ ଅବସ୍ଥା ଜଣାଯାଉଥାଏ ସେମାନଙ୍କ ଘରଦ୍ୱାରରୁ । ଯେଉଁମାନେ ଗୋଟିଏମାତ୍ର ବଖରାରେ ରହୁଥିଲେ, ସେମାନଙ୍କୁ ଏକ-କୋଠରିବାଲା ବୋଲି କୁହାଯାଉଥାଏ ।

ଅର୍ଥାତ୍ ସବୁଠାରୁ ଦରିଦ୍ରମାନେ ଗୋଟିଏ ବଖରା ଘର ଭିତରେ ରହିବା, ରାନ୍ଧିବା ଓ ଶୋଇବା ଇତ୍ୟାଦି ଚଳାଇ ନେଉଥିଲେ । ଏଣ୍ଟୋନୀ ଥିଲେ ସେହି ପ୍ରକାର ଜଣେ ଯୁବକ ।

ମଝେ ମଝେ ସେ ବକିଂହାମ୍ ରାଜପ୍ରାସାଦକୁ ଫଟୋ ଉଠାଇବାକୁ ଯାଉଥିଲେ ଓ ମାର୍ଗାରେଟ୍‌ଙ୍କ ସହିତ ଆଳାପ ମେଳାପ କରୁଥିଲେ । ଶେଷରେ ଉଭୟେ ପରସ୍ପରକୁ ବିବାହ କରିବେ ବୋଲି ଠିକ୍ କଲେ । ରାଣୀ ସେଥିରେ ସମ୍ମତି ଦେଲେ ।

ରାଜକୁମାରୀ ଓ ଫଟୋଗ୍ରାଫାର୍‌ଙ୍କ ବିବାହ ବିଷୟରେ ସମ୍ବାଦପତ୍ରଗୁଡ଼ିକରେ ନାନାପ୍ରକାର ଆଲୋଚନା ସମାଲୋଚନା ବାହାରିଲା । କେହି କେହି କହିଲେ, ବ୍ରିଟିଶ ରାଜତନ୍ତ୍ରକୁ ସାଧାରଣ ଦେଶବାସୀଙ୍କ ସହ ସାମାଜିକ ସ୍ତରରେ ସାମିଲ ହେବାକୁ ହେବ । ଅନ୍ୟଥା, ଗଣତାନ୍ତ୍ରିକ ଦେଶରେ ରାଜପରିବାରର ଅସ୍ତିତ୍ୱ ଦିନେ ନା ଦିନେ ଲୋକଙ୍କର ଚକ୍ଷୁଃଶୂଳ ହୋଇପାରେ । ସୁତରାଂ, ରାଜକୀୟ ଆଭିଜାତ୍ୟ ଓ ପରମ୍ପରା ଭୁଲି ଦରିଦ୍ର ପରିବାର ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିବା ଉଚିତ ।ଅନ୍ୟ କେହି କେହି ସନ୍ଦେହ ପ୍ରକାଶ କଲେ ଯେ, ଜଣେ ଅଜ୍ଞାତକୁଳଶୀଳ ନଗଣ୍ୟ ଫଟୋଗ୍ରାଫାରଙ୍କ ପକ୍ଷରେ ରାଜବଂଶର ଆଦବକାୟଦା ଶିକ୍ଷା କରିବା ସମ୍ଭବ ହେବ ନାହିଁ ଓ ସେପରି ଜାମାତାଙ୍କ ପାଇଁ ପରିବାରର ମର୍ଯ୍ୟାଦାହାନି ଘଟିବ । ମୋତେ ସେହି ସବୁ ତର୍କ ବିତର୍କ ଓ ବାଦାନୁବାଦ ପଢ଼ିବାକୁ ଭଲ ଲାଗୁଥାଏ । ଜଣାପଡୁଥାଏ, ଗଣତାନ୍ତ୍ରିକ ଯୁଗରେ ସେହି ବିବାହ ପ୍ରତି ସର୍ବସାଧାରଣଙ୍କ ସମର୍ଥନ ରହିଛି । ଗୋଟିଏ ସମ୍ବାଦପତ୍ରରେ ଥରେ ଶିରୋନାମ ବାହାରିଲା ''ରାଜବଂଶ ସିନା ଜଣେ ରାଜକନ୍ୟାଙ୍କୁ ହରାଇବ, କିନ୍ତୁ ରାଜପ୍ରାସାଦ ଜଣେ ଫଟୋଗ୍ରାଫାରଙ୍କୁ ପାଇପାରିବ ।'' ୧୯୬୦ ମେ ମାସ ୬ ତାରିଖ ଦିନ ବିବାହ ତାରିଖ ନିର୍ଦ୍ଧାରିତ ଥାଏ ।

ବରକନ୍ୟାଙ୍କୁ ଦେଖିବାଲାଗି ସ୍ତ୍ରୀ ଓ ଝିଅ ଅଧୀର ହୋଇଉଠିଲେ । ସେମାନଙ୍କୁ ବୁଝାଇଲି, ଘରେ ବସି ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସବୁ ଦୃଶ୍ୟ ଟେଲିଭିଜନରେ ଦେଖିହେବ, ଅଥଚ, ବିବାହକାର୍ଯ୍ୟ ଦେଖିବାଲାଗି ଗିର୍ଜା ଭିତରକୁ ଆମକୁ କେହି ଛାଡ଼ିବେ ନାହିଁ ଏବଂ ଗିର୍ଜା ବାହାରେ ଅସଂଖ୍ୟ ଲୋକଙ୍କ ଦଳାଚକଟାରେ ଅବସ୍ଥା ସାଂଘାତିକ ହେବ । ଯେତେ କହିଲେ ସୁଦ୍ଧା ସେମାନଙ୍କ ମନ ମାନିଲା ନାହିଁ । ଶେଷରେ ଠିକ୍ ହେଲା, ସକାଳ ଓଳି ବିବାହ ଦୃଶ୍ୟ ଦେଖିବା ଟେଲିଭିଜନ୍‌ରେ ଓ ବେଳ ଓଳି ଜୀବନ୍ତ ବରକନ୍ୟାଙ୍କୁ ଦେଖିବା ବକିଂହାମ୍ ପ୍ରାସାଦର ବାଲକୋନିରେ ।

ବଡ଼ ଆକାରର ଟେଲିଭିଜନରେ ଗିର୍ଜାଗୃହରେ ଅନୁଷ୍ଠିତ ହେଉଥିବା ଘଟଣାଗୁଡ଼ିକ ପରିଷ୍କାର ଦେଖିବାକୁ ମିଳିଲା । ବିଭିନ୍ନ ଦେଶର ରାଷ୍ଟ୍ରନାୟକମାନେ ନିଜ ନିଜ

ଆସନରେ ବସିଲେ । ମାନ୍ୟଗଣ୍ୟ ବ୍ରିଟିଶ୍ ନାଗରିକମାନେ ଭର୍ତ୍ତି ହୋଇଗଲେ । ରାଣୀ ଓ ଆର୍କବିଶପ ଯଥାସ୍ଥାନରେ ଛିଡ଼ାହେଲେ । ଯଥାରୀତିରେ ମହା ଆଡ଼ମ୍ବର ସହ ବରକନ୍ୟାଙ୍କୁ ଅଣାଗଲା । ମାର୍ଗାରେଟ୍ ବହୁମୂଲ୍ୟ ପରିଚ୍ଛଦ ପିନ୍ଧିଥାନ୍ତି । ଝୁଲି ରହିଥିବା ଆବରଣ ବସ୍ତ୍ରକୁ ଛୋଟ ଛୋଟ ବାଳିକାମାନେ ପଛରେ ଧରି ରହିଥାନ୍ତି । ବର ଏଣ୍ଟୋନୀଙ୍କ ପୋଷାକ ଥାଏ ସାଧାରଣ ନାଗରିକର ପୋଷାକ । ଯଥାସ୍ଥାନରେ ବରକନ୍ୟା ଶପଥ ପାଠ କଲେ ।

ଅପରାହ୍ନରେ ସ୍ତ୍ରୀ ଓ ପିଲାଙ୍କୁ ଧରି ବାକିଂହାମ୍ ପ୍ରାସାଦ ଦିଗକୁ ଚାଲିଲି । ରାଜପ୍ରାସାଦର କିଛି ଦୂରରେ ନିର୍ମିତ ହୋଇଥାଏ ଗୋଟିଏ ସୁଦୀର୍ଘ ଓ ସୁଉଚ୍ଚ ତୋରଣ । ଇଉରୋପର ବିଭିନ୍ନ ଦେଶରୁ ଉପହାର ସ୍ୱରୂପ ଆସିଥିବା ହଜାର ହଜାର ଗୋଲାପ ଫୁଲରେ ତୋରଣଟି ତିଆରି କରାହୋଇଥାଏ । ଚାରି ଦିଗରୁ ଜନସ୍ରୋତ ମାଡ଼ିଆସୁଥିବା ଦେଖି ଦଳାଚକଟାର ଆଶଙ୍କା ହେଲା । ଠେଲି ପେଲି କୌଣସି ପ୍ରକାରେ ପ୍ରାସାଦ ପର୍ଯ୍ୟନ୍ତ ଯାଇହେଲା । କିନ୍ତୁ ପ୍ରାସାଦ ପାଖରୁ ଅଳ୍ପ ଦୂରରେ ଧାଡ଼ି ପରେ ଧାଡ଼ି ପୋଲିସ୍‌ଦଳ ଜନତାର ପଥରୋଧ କରିବାକୁ ଛିଡ଼ା ଥା'ନ୍ତି । ଜନସମାଗମ ବଢ଼ିଚାଲିଲା । କିନ୍ତୁ ପୋଲିସ୍ ଘେର ଭାଙ୍ଗିବାକୁ ଲୋକମାନେ ଚେଷ୍ଟା କଲେ ନାହିଁ ।

ଠିକ୍ ୪ଟା ବେଳେ ବାଲକୋନିର ଦ୍ୱାରଗୁଡ଼ିକ ଖୋଲାଯିବା ଦେଖାଗଲା । ସୂଚନା ମିଳିଲା, ରାଣୀଙ୍କ ଗହଣରେ ବରକନ୍ୟା ସେଠାରେ ଛିଡ଼ା ହେବେ । ଚାହୁଁ ଚାହୁଁ ଜନତା ଧୀରେ ଧୀରେ ପୋଲିସବାହିନୀ ଉପରେ ଚାପ ପ୍ରୟୋଗ କରି ଆଗେଇବାକୁ ଆରମ୍ଭ କଲେ । ପୋଲିସ ମଧ୍ୟ ପ୍ରାସାଦର ଗେଟ୍ ପର୍ଯ୍ୟନ୍ତ ଧୀରେ ଧୀରେ ପଛଘୁଞ୍ଚା ଦେଲେ । ସେମାନଙ୍କ ହାତରେ ବନ୍ଧୁକ ବା ଲାଠି ନ ଥାଏ । ଲୋକଙ୍କୁ ବାଧା ଦେବାପାଇଁ ମଧ୍ୟ ସେମାନଙ୍କର ଉଦ୍ଦେଶ୍ୟ ନ ଥାଏ । ସୁସଂଯତ ଭାବରେ ଓ ବିନା କୋଳାହଳରେ ସମସ୍ତେ ପ୍ରାସାଦ ସମ୍ମୁଖରେ ଛିଡ଼ା ରହିଲେ । ଅଳ୍ପସମୟ ମଧ୍ୟରେ ରାଜପରିବାରର ଲୋକମାନେ ବାଲକୋନି ଉପରେ ଛିଡ଼ା ହୋଇଗଲେ । ପରେ ପରେ ବାହାରିଲେ ବର ଓ କନ୍ୟା । ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ସେମାନେ ହାତ ହଲାଇଲେ । ପଛରେ ଛିଡ଼ା ରହିଥାନ୍ତି ରାଣୀ ଏଲିଜାବେଥ୍ । ଜନତାର ବିପୁଳ ହର୍ଷଧ୍ୱନି ମଧ୍ୟରେ ପ୍ରାସାଦ ସମ୍ମୁଖସ୍ଥ ସ୍ଥାନ ପ୍ରକମ୍ପିତ ହେଲା ।

ତହିଁପରଦିନ ଟେମସ୍‌ନଦୀ କୂଳରେ ବରକନ୍ୟାଙ୍କ ନୌଯାତ୍ରାର ଦୃଶ୍ୟ ଦେଖିବାକୁ ସେଠାରେ ପହଞ୍ଚିଲୁଁ । ପତାକା ଓ ପୁଷ୍ପଶୋଭିତ ଷ୍ଟିମାରଟିଏ ଘାଟ ପାଖରେ ରହିଥାଏ । ମାର୍ଗାରେଟ ଓ ଏଣ୍ଟୋନୀ ସେଥିରେ ପ୍ରବେଶ କଲେ । ସମବେତ

ଲୋକଙ୍କ ଆନନ୍ଦଧ୍ୱନି ମଧ୍ୟରେ ଷ୍ଟିମାର୍ ନଦୀଗର୍ଭରେ ଆଗେଇ ଚାଲିଲା । ଡେକ୍ ଉପରେ ଛିଡ଼ାରହି ବରକନ୍ୟା ହାତ ଉଠାଇ ସମସ୍ତଙ୍କୁ ଶୁଭେଚ୍ଛା ଦେଲେ । ନଦୀ କୂଳେ କୂଳେ ଅନେକ ଦୂର ପର୍ଯ୍ୟନ୍ତ ଅସଂଖ୍ୟ ଲୋକ ଛିଡ଼ା ରହି ନବଦମ୍ପତିଙ୍କୁ ଦେଖିଲେ । ସେତେବେଳେ କିଏ ବା ଭାବିଥିବ ଯେ କିଛି ବର୍ଷ ପରେ ଫଟୋଗ୍ରାଫାର ସ୍ୱାମୀ ଏବଂ ରାଜକୁମାରୀ ପତ୍ନୀଙ୍କ ମଧ୍ୟରେ ଗଭୀର ମନୋମାଳିନ୍ୟ ଘଟିବ ଏବଂ ଉଭୟେ ପରସ୍ପର ପାଖରୁ ପୃଥକ୍ ହେବେ !

## ନେହରୁଙ୍କ ଆଗରେ ବାଳକ ସିଦ୍ଧାର୍ଥ

ମେ ମାସ ୧୨ ତାରିଖ ଦିନର କଥା । ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ ଲଣ୍ଡନରେ ଥିଲେ । ଭାରତୀୟ ଦୂତାବାସରେ ତାଙ୍କର ସମ୍ବର୍ଦ୍ଧନା ସଭା ଆୟୋଜନ କରାଗଲା । ମୁଁ ଭାବିଲି, ଆଠବର୍ଷ ବୟସ୍କ ପୁଅ ସିଦ୍ଧାର୍ଥ ପ୍ରଧାନମନ୍ତ୍ରୀଙ୍କୁ ଗୋଲାପ ଫୁଲଟିଏ ଉପହାର ଦେଲେ ଭଲ ହେବ, କାରଣ ସେ ପିଲାମାନଙ୍କୁ ଶ୍ରଦ୍ଧା କରନ୍ତି ଓ ଗୋଲାପ ଫୁଲ ଭଲପାଆନ୍ତି । ଏକପାଉଣ୍ଡ ମୂଲ୍ୟ ଦେଇ ବଡ଼ ଆକାରର ଗୋଲାପଟିଏ କିଣିଲି ଓ ସମସ୍ତଙ୍କୁ ନେଇ ଦୂତାବାସ ଆଗରେ ପହଞ୍ଚିଲି ।

ସେତେବେଳକୁ ଅନେକ ଭାରତୀୟ ଓ ଇଂରେଜ ସେଠାରେ ରୁଣ୍ଡ ହୋଇସାରିଥିଲେ । ଲଣ୍ଡନ ପୋଲିସ୍ ପ୍ରବେଶ ପଥଟି ଘେରି ରଖିଥାନ୍ତି । ଜଣେ ପଦସ୍ଥ ପୋଲିସ୍ ଅଫିସରଙ୍କୁ ଅନୁରୋଧ ଜଣାଇଲି, ''ନେହରୁ ଗାଡ଼ିରୁ ବାହାରିଲାବେଳେ ପିଲାଟି ଗୋଲାପଫୁଲ ଉପହାର ଦେବ । ଦୟାକରି ଅନୁମତି ଦିଅନ୍ତୁ ।'' ଗମ୍ଭୀର ସ୍ୱରରେ ସେ ଉତ୍ତର ଦେଲେ, ''ଗାଡ଼ିପାଖରୁ ୩୦ଫୁଟ ଦୂରରେ ସମସ୍ତେ ରହିବେ । ପାଖକୁ କେହି ଯାଇପାରିବେ ନାହିଁ ।'' ପୁଅକୁ ଧରି ମୁଁ ଭିଡ଼ ପାଖରୁ ଦୂରକୁ ଚାଲିଗଲି । ସାଢ଼େ ୧୦ଟା ସମୟରେ ଗାଡ଼ି ଆସିଗଲା । ଗାଡ଼ି ବନ୍ଦ ହେଲାକ୍ଷଣି ସେହି ଇଂରେଜ ଅଫିସାର ଦୌଡ଼ିଆସି ସିଦ୍ଧାର୍ଥକୁ ଦୁଇହାତରେ ଟେକିନେଇ ଗାଡ଼ିପାଖରେ ପହଞ୍ଚିଗଲେ । ନେହରୁ ବାହାରିବାମାତ୍ରେ ପିଲାଟିକୁ ସେ ତାଙ୍କ ସମ୍ମୁଖରେ ଛିଡ଼ା କରାଇଦେଲେ । ସିଦ୍ଧାର୍ଥ ଫୁଲଟିକୁ ପ୍ରଧାନମନ୍ତ୍ରୀଙ୍କ ହାତରେ ଧରାଇ ଦେଇ ନମସ୍କାର ଜଣାଇଲା । ତା' ମୁଣ୍ଡଟିକୁ ଆଉଁସିଦେଇ ନେହରୁ ଗୋଲାପଟିକୁ ଛାତିପକେଟରେ ଲଗାଇଲାବେଳେ ଲୋକେ କରତାଳି ଦେଲେ । ପର ମୁହୂର୍ତ୍ତରେ ପୋଲିସ୍ କର୍ମଚାରୀ ପିଲାଟିକୁ ଶୂନ୍ୟେ ଶୂନ୍ୟେ ଟେକିଆଣି ତା' ମା ଆଗରେ ଥୋଇଦେଲେ । ଲଣ୍ଡନ ପୋଲିସ୍‌ର ଏହିପ୍ରକାର ବ୍ୟବହାର ଯୋଗୁଁ ସେମାନେ ଦେଶବିଦେଶର ଲୋକଙ୍କ ନିକଟରୁ ସମ୍ମାନ ପାଇଥାନ୍ତି । କର୍ତ୍ତବ୍ୟ ପାଳନ ସହ ଅନ୍ୟମାନଙ୍କ ନିର୍ଦ୍ଦୋଷ ଇଚ୍ଛା ପୂରଣ ନିମନ୍ତେ ସେମାନେ କାତରତା ଦେଖାନ୍ତି ନାହିଁ ।

## ନେହରୁଙ୍କ ବିଷୟରେ ପୁସ୍ତକ ରଚନା

ଲଣ୍ଡନ ରହଣି ସମୟରେ ବିଶ୍ୱବିଦ୍ୟାଳୟରେ ନିୟମିତ କାର୍ଯ୍ୟ କରିବାପରେ ଯେଉଁ ସମୟ ମିଳୁଥାଏ, ସେଥିମଧ୍ୟରେ ଇଂରାଜୀରେ ଖଣ୍ଡିଏ ବହି ରଚନା କରିପାରିଲି । ନାମ ଦେଲି "ଜବାହାରଲାଲ୍ ନେହରୁଙ୍କ ରାଜନୈତିକ ଦର୍ଶନ" । ପାଣ୍ଡୁଲିପି ପ୍ରସ୍ତୁତ ହେଲାପରେ ଦିନେ 'ଆଲେନ୍ ଆଣ୍ଡ୍ ଆନ୍‌ଉଇନ୍' ନାମକ ପ୍ରସିଦ୍ଧ ପ୍ରକାଶନ ସଂସ୍ଥାର ଅଫିସରେ ପହଞ୍ଚିଲି । ସେଠାକାର ନିୟମ ଥାଏ, ପାଣ୍ଡୁଲିପିଟିକୁ ଲେଖକ ନିର୍ଦ୍ଦିଷ୍ଟ ଏକ ଥାକ ଉପରେ ରଖିଦେଇ ଯିବେ, ପ୍ରକାଶକଙ୍କ ସହିତ ସାକ୍ଷାତ୍ କରିପାରିବେ ନାହିଁ । ବିଶେଷଜ୍ଞମାନଙ୍କ ଦ୍ୱାରା ଲେଖାଟି ମନୋନୀତ ହେଲାପରେ ଠିକ୍ ମାସକ ପରେ ଲେଖକଙ୍କୁ ଚୁକ୍ତି ସ୍ୱାକ୍ଷର ଲାଗି ଚିଠିଦ୍ୱାରା ଡକାଯିବ । ଅନିଚ୍ଛା ସତ୍ତ୍ୱେ, ମୋ ପାଣ୍ଡୁଲିପି ଯଥାସ୍ଥାନରେ ରଖିଦେଲି ।

କୋଠରି ମଧ୍ୟରେ ଜଣେ ବୟସ୍କ ସାହେବ ବସିଥାନ୍ତି । ସେ କୌତୂହଳ ପ୍ରକାଶ କରି ପ୍ରଶ୍ନ କଲେ, "କେଉଁ ବିଷୟରେ ଆପଣ ଲେଖିଛନ୍ତି ?" ଉତ୍ତର ଦେଲି, "Political Philosophy of Jawaharlal Nehru." ଈଷତ୍ ହସିଦେଇ ସେ କହିଲେ, "ଆପଣଙ୍କ ଆଗରୁ ଯେଉଁ ପାଣ୍ଡୁଲିପି ଥାକରେ ରଖାଗଲା, ତା'ର ଟାଇଟଲ୍ ହେଉଛି 'ମେରିଲିନ୍ ମନରୋ ଏବଂ ମୋ ସ୍ୱାମୀ" । ଲେଖିଛନ୍ତି ବିଶ୍ୱବିଖ୍ୟାତ ଚଳଚ୍ଚିତ୍ରତାରକା ଭିଭିଆନ୍ ଲେ । ବିଷୟବସ୍ତୁ ହେଲା, ତାଙ୍କ ସ୍ୱାମୀ ସାର୍ ଅଲିଭାର ଲରେନ୍ସ ଓ ଆମେରିକାର ପରମା ସୁନ୍ଦରୀ ତାରକା ମେରିଲିନ ମନରୋଙ୍କ ଅବୈଧ ପ୍ରେମସମ୍ପର୍କ । ଏହିପ୍ରକାର ଚାଞ୍ଚଲ୍ୟକର, ବେଦନାଦାୟକ ଓ ମନୋମୁଗ୍ଧକର ବହି ସିନା ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରି ହେବ । ଆପଣଙ୍କ ବହି ଛାପିଲେ ପ୍ରକାଶକଙ୍କ ଲାଭ କ'ଣ ?"

ତାଙ୍କୁ ଧନ୍ୟବାଦ ଦେଇ ଚାଲିଆସିଲି । ମୋ ବହି ମନୋନୀତ ହେବ ନାହିଁ ବୋଲି ସନ୍ଦେହ ଆସିଲା । କିନ୍ତୁ, ଠିକ୍ ଏକମାସ ପରେ ଚିଠି ପାଇଲି, ପାଣ୍ଡୁଲିପି ବିଶେଷଜ୍ଞମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଛି । ସେମାନଙ୍କ ମଧ୍ୟରେ ଥିଲେ ଗାୟ୍ ଉଇଣ୍ଟ୍ । ନିର୍ଦ୍ଦିଷ୍ଟ ତାରିଖ ୯ଟା ବେଳେ ଅଫିସ୍‌ରେ ପହଞ୍ଚି ଡ୍ରଇଂରୁମ୍ ଭିତରେ ବସିରହିଲି । ସାକ୍ଷାତ ପାଇଁ ଦିଆଯାଇଥିବା ସମୟ ଗଡ଼ିଗଲା । ଜଣେ ବ୍ୟକ୍ତି ଦରଜା ପାଖରେ ବେଳେବେଳେ ମୋତେ ଚାହିଁଦେଇ ମୁଣ୍ଡ ଫେରାଇ ନେଉଥାନ୍ତି । ପ୍ରାୟ ଘଣ୍ଟାକ ପରେ ସେହି ବ୍ୟକ୍ତି ପୁଣି ଥରେ ବାହାରି ଆସି ପଚାରିଲେ, "ଜଣେ ଭାରତୀୟ ଲେଖକଙ୍କୁ ଆସିବାପାଇଁ ସମୟ ଦିଆଯାଇଥିଲା । ଏପର୍ଯ୍ୟନ୍ତ ଆସିନାହାନ୍ତି । ଆପଣ ସେହି ଏମ୍.ଏନ୍.ଦାସଙ୍କ ନିକଟରୁ କିଛି ସମ୍ବାଦ ଆଣିଛନ୍ତି କି ?" ଉଠିପଡ଼ି ମୁଁ କହିଲି, "ମୋର ନାମ ଏମ୍.ଏନ୍. ଦାସ ।" ଦୁଃଖ

ପ୍ରକାଶ କରି ସେ କହିଲେ, "ମୁଁ ଭାବିଥିଲି ସେ ଜଣେ ବୃଦ୍ଧ ଅଧ୍ୟାପକ । କ୍ଷମା କରିବେ ।"

ଭିତରକୁ ନେଇଗଲେ । ସେ ଥିଲେ ସାର୍ ଷ୍ଟାନଲି ଆନଉଇନ, ପ୍ରକାଶନ ସଂସ୍ଥାର ମାଲିକ । ଭାବ ଆଦାନପ୍ରଦାନ ପରେ ସେ ଚୁକ୍ତିପତ୍ରରେ ସ୍ୱାକ୍ଷର କରିବାକୁ କହିଲେ । ସ୍ପଷ୍ଟଭାବରେ ମୋତେ ଜଣାଇଦେଲେ, ବହିର ଦାମ ରଖାଯିବ ୨୦ ସିଲିଂ, କିନ୍ତୁ ବହିପିଛା ରୟାଲଟି ଦିଆଯିବ ୧ ସିଲିଂ । ଅର୍ଥ ଲାଗି ବହି ଲେଖିନାହିଁ ବୋଲି ମୁଁ କହିବାରୁ ସେ ବୁଝାଇଦେଲେ, "ଆପଣଙ୍କ ଦେଶର ପ୍ରକାଶକମାନେ ଦଶ କିମ୍ବା ପନ୍ଦର ପ୍ରତିଶତ ରୟାଲଟି ଦିଅନ୍ତି, କିନ୍ତୁ ଛପାନ୍ତି ଏକ ହଜାର କପି । ଆମର ପ୍ରଥମ ସଂସ୍କରଣର ସଂଖ୍ୟା ହେବ କୋଡ଼ିଏ ବା ପଚିଶ ହଜାର ।"

କଥାବାର୍ତ୍ତାବେଳେ ଆନ୍‌ଉଇନ୍ ୧୯୩୬ ମସିହାର ସ୍ମୃତିଚାରଣ କରି ଗୋଟିଏ କଥା କହିଲେ ଯାହାକି ମୁଁ ଖୁସି ମନରେ ଶୁଣିଲି । କଥାଟି ଥାଏ ନେହରୁଙ୍କ ସମ୍ପର୍କରେ । ଜବାହାରଲାଲ ନିଜର ଆତ୍ମଚରିତ ଲେଖିସାରି ପାଣ୍ଡୁଲିପି ପଠାଇଲେ ଆଲେନ-ଆନ୍‌ଉଇନ ପ୍ରକାଶନ ପାଖକୁ । ଜଣେ ଭାରତୀୟ ବାର୍ତ୍ତାବହ ତାହା ଦେଲାବେଳେ ଆନଉଇନ୍ କହିଲେ, "ପାଣ୍ଡୁଲିପି ରଖିଯାଆନ୍ତୁ । ଆମ ବିଶେଷଜ୍ଞମାନେ ଦେଖିଲାପରେ ନିଷ୍ପତ୍ତି ନିଆଯିବ ।" ବାକ୍ୟ ଶେଷହେବା ପୂର୍ବରୁ ବାର୍ତ୍ତାବହ କୋପାନ୍ୱିତ ହୋଇ ପାଟି କଲେ, "ନେହରୁଙ୍କ ପରି ପୃଥିବୀପ୍ରସିଦ୍ଧ ମହାନ୍ ବ୍ୟକ୍ତିଙ୍କ ଲେଖା ପରୀକ୍ଷା କରିବା ପାଇଁ କେହି ଜନ୍ମିଛନ୍ତି ? କେଉଁ ଇଂରାଜ ତାଙ୍କପରି ଲେଖକଙ୍କ ଲେଖାର ମୂଲ୍ୟ ନିରୂପଣ କରିବ ? କାହାର ସେପରି ଶକ୍ତି ଅଛି ?" ତାଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରି ଆନ୍‌ଉଇନ ବିନମ୍ରଭାବରେ କହିଲେ, "ମୁଁ ପାଣ୍ଡୁଲିପି ପରୀକ୍ଷା କରିବା କଥା କହିନାହିଁ । ନେହରୁଙ୍କୁ ପୃଥିବୀରେ ନ ଜାଣିଛି କିଏ ? ତାଙ୍କ Glimpses of World History କିଏ ବା ନ ପଢ଼ିଛି ? ଆମେ ସ୍ୱୀକାର କରୁଁ, ନେହରୁଙ୍କ ଭାଷା ଓ ଲେଖିବା ଶୈଳୀ ଇଂଲଣ୍ଡର ଏଇଚ୍.ଜି. ଉଏଲସ୍‌ଙ୍କ ଲେଖାଠାରୁ ଅଧିକ ଆକର୍ଷଣୀୟ । ମୁଁ ଦେଖିବା କଥା କହିବାର ଅର୍ଥ ହେଲା, ଆମ ସଂସ୍ଥାର ନିୟମ ଅନୁଯାୟୀ ମୁଦ୍ରଣସଂଖ୍ୟା ଓ ବହିର ଆକାର ପ୍ରକାର ଇତ୍ୟାଦି ସମ୍ପର୍କରେ ନିଷ୍ପତ୍ତି ନେବା ବିଷୟ ।"

ହସି ହସି ଆନ୍‌ଉଇନ କହିଯାଉଥାନ୍ତି, "ମୋ କଥା ଶୁଣିବାକୁ ସେହି ଭଦ୍ରବ୍ୟକ୍ତିଙ୍କ ଧୈର୍ଯ୍ୟ ନ ଥାଏ । କ୍ରୋଧରେ କମ୍ପମାନ ହୋଇ ସେ ମୋ ହାତରୁ ପାଣ୍ଡୁଲିପି ଛଡ଼ାଇନେଇ ଗର୍ଜନ କରୁଥିବା ଅବସ୍ଥାରେ ବାହାରି ଚାଲିଗଲେ । ଏଠାରୁ ଯାଇ ସେ ପାଣ୍ଡୁଲିପି ଦେଲେ 'ବଡ଼୍‌ଲି ହେଡ଼୍' ନାମକ ସଂସ୍ଥାକୁ । ସେହି କୋମ୍ପାନୀ

କିଛିବର୍ଷ ପରେ ଲୋପ ପାଇଗଲା । କିନ୍ତୁ ପ୍ରକାଶିତ ବହିଖଣ୍ଡିକ ଆମେରିକାର 'ଜନ୍ ଡେ କୋମ୍ପାନୀ' ବହୁସଂଖ୍ୟାରେ ମୁଦ୍ରିତ କରି ଅନେକ ଅର୍ଥ ଆୟ କଲେ । ଆମେ ଜବାହାରଲାଲଙ୍କ ଆତ୍ମଚରିତ ପ୍ରକାଶ କରିବା ସୁଯୋଗରୁ ବଞ୍ଚିତ ହେଲୁଁ ।''

ଆଗ୍ରହ ସମ୍ଭାଳି ନ ପାରି ମୁଁ ପଚାରିଲି, ''କିଏ ଥିଲେ ସେହି ଅସାଧାରଣ ବାର୍ତ୍ତାବହ ?''

''ଅସାଧାରଣ ନୁହେଁ, ଅଦ୍ଭୁତ'', ବଡ଼ ପାଟିରେ ହସି ହସି ଆନ୍‌ଉଇନ୍ ଜଣାଇଲେ । ''ସେ ହେଉଛନ୍ତି,ନେହରୁଙ୍କ ପରମବନ୍ଧୁ ସ୍ୱୟଂ କୃଷ୍ଣ ମେନନ୍, ଯାହାଙ୍କ ରୁକ୍ଷ ବ୍ୟବହାର ଯୋଗୁଁ ଇଂଲଣ୍ଡରେ କେହି ତାଙ୍କୁ ଭଲ ପାଆନ୍ତି ନାହିଁ ।''

ବସାକୁ ଫେରିଆସି ଆନ୍‌ଉଇନ୍‌ଙ୍କ କଥାଗୁଡ଼ିକ ଡାଏରୀରେ ଟିପିରଖିଲି । ପରବର୍ତ୍ତୀ ସମୟରେ ଭାରତରେ କୃଷ୍ଣ ମେନନଙ୍କୁ ଦୁଇଥର ଦେଖିଲାବେଳେ ଉପର୍ଯ୍ୟୁକ୍ତ କଥାଟି ମନେପଡୁଥାଏ । ଦେଶର ପ୍ରତିରକ୍ଷାମନ୍ତ୍ରୀ ଥିଲା ସମୟରେ ସେ ସର୍ବୋଚ୍ଚ ସେନାଧ୍ୟକ୍ଷମାନଙ୍କ ସହିତ ସୁଦ୍ଧା କଦର୍ଯ୍ୟ ବ୍ୟବହାର କରିବାକୁ ସଙ୍କୋଚ କରି ନ ଥିଲେ ।

ଚୁକ୍ତି ସ୍ୱାକ୍ଷର ହେବାର ଏକମାସ ମଧ୍ୟରେ ପ୍ରକାଶକ ମହାଶୟ ଛପାକାମ ଶେଷକରି ପ୍ରୁଫ୍‌କପି ଦୁଇଖଣ୍ଡ ମୋ ପାଖକୁ ପଠାଇଦେଲେ । ନିର୍ଭୁଲ ମୁଦ୍ରଣ ଦେଖି ଆଚମ୍ବିତ ହେଲି । ଖଣ୍ଡିଏ ବହି ଧରି ଆନନ୍ଦରେ ଚାଲିଲି ଭାରତୀୟ ଦୂତାବାସକୁ । ହାଇକମିଶନର ଥା'ନ୍ତି ନେହରୁଙ୍କ ଭଉଣୀ ବିଜୟଲକ୍ଷ୍ମୀ ପଣ୍ଡିତ । ଡିସେମ୍ବର ମାସ । ବହି ଉପହାର ଦେବି ଶୁଣି ରୁଦ୍ଧ କକ୍ଷମଧ୍ୟରୁ ବାହାରି ଆସି ମୋତେ ଭିତରକୁ ଡାକିନେଇ ଆଦର ସହକାରେ ବସ୍ତୁତଃ କୁଣ୍ଢାଇ ପକାଇ କହିଲେ, ''ଭାଇସାହେବ, ଜବାହାରଲାଲ କା ଏକ ଦର୍ଶନ ହେ, ଓ ମୁଝେ ବି ମାଲୁମ ନେହି ଥା । ଲେକିନ୍, ଆପ୍ ନେହରୁକା ଏକ ଦର୍ଶନ ବନାଦିୟା ।'' ଶ୍ରୀମତୀ ପଣ୍ଡିତ ମୋର ଭଲମନ୍ଦ କଥା ପଚାରିଲାପରେ ଜଣାଇଲେ ଯେ ରାଣୀ ଏଲିଜାବେଥ୍‌ଙ୍କ ଭାରତ ଗସ୍ତର ବନ୍ଦୋବସ୍ତ ନିମନ୍ତେ ସେ ଦିନକ ପରେ ଦିଲ୍ଲୀ ଚାଲିଯିବେ । ମାସକ ପରେ ମୁଁ ଭାରତ ଫେରିବି ଶୁଣି ମୋତେ ପରାମର୍ଶ ଦେଲେ, ''ଆପଣ ନିଜେ ନେହରୁଙ୍କ ସହିତ ସାକ୍ଷାତ କରି ବହି ଉପହାର ଦେଲେ ସେ ଖୁବ୍ ଖୁସି ହେବେ । ମୁଁ ଅବଶ୍ୟ ଏହି ବହିଖଣ୍ଡିକ ତାଙ୍କୁ ଦେଖାଇବି ।''

## ଦୂତାବାସରେ ଏକ ତିକ୍ତ ଅନୁଭୂତି

ଏହିଠାରେ ଗୋଟିଏ ବିଷୟ ଉଲ୍ଲେଖ କରିବି । ୧୯୬୦ ଡିସେମ୍ବର ବେଳକୁ ଲଣ୍ଡନ ବିଶ୍ୱବିଦ୍ୟାଳୟ ପକ୍ଷରୁ ଦିଆଯାଇଥିବା ଦାୟିତ୍ୱ ପ୍ରାୟ ଶେଷ ହୋଇଆସିଲା ।

ତଥାପି ୧୯୬୧ ଜାନୁଆରୀ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ସେଠାରେ ରହିବା କଥା । ସେହି ଶେଷ କେତେଦିନ ମଧ୍ୟରେ ବ୍ରିଟିଶ୍ ଅଭିଲେଖାଗାରରେ ଥିବା ଗୁପ୍ତ ଦଲିଲ୍‌ଗୁଡ଼ିକରୁ କେତୋଟି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସଂଗ୍ରହ କରିବା ନିମନ୍ତେ ପ୍ରାଚ୍ୟ ବିଭାଗର ନିର୍ଦ୍ଦେଶକ ସାର୍ ସିରିଲ୍ ହେନରୀ ଫିଲିପ୍ସ ମୋତେ ସ୍ୱତନ୍ତ୍ରଭାବେ ପଠାଇଲେ । ତାଙ୍କ ବ୍ୟକ୍ତିଗତ ସୁପାରିଶ୍‌କ୍ରମେ ସେଠାକାର କର୍ମକର୍ତ୍ତାମାନେ ମୋତେ ଗୁପ୍ତ ରେକର୍ଡ଼୍‌ରୁମ୍‌ରେ ପ୍ରବେଶ କରିବାକୁ ଅନୁମତି ଦେଲେ ।

ପ୍ରଫେସର ଫିଲିପ୍ସଙ୍କ କହିଥିବା ଫାଇଲ୍‌ଗୁଡ଼ିକ ଦେଖିଲାବେଳେ ଅନ୍ୟ କେତେଗୋଟି ଫାଇଲ୍ ଉପରେ ଆଖି ପଡ଼ିଲା । ଶିରୋନାମରୁ ଜାଣିଲି, ସେଗୁଡ଼ିକ ବ୍ରିଟିଶ୍-ଭାରତୀୟ ସାମ୍ରାଜ୍ୟ ଓ ଚୀନ ଦେଶ ମଧ୍ୟରେ ତିକ୍ତ ସମ୍ପର୍କ ବିଷୟକ ଗୋପନ ଫାଇଲ୍ । କୌତୂହଳ ବଶତଃ ସେଗୁଡ଼ିକ ଫିଟାଇଲି । ଭିତରେ ଥାଏ ଭାରତର ସୀମାନ୍ତ ଅଞ୍ଚଳ ଉପରେ ଚୀନାମାନଙ୍କର ରହିଥିବା ଦାବି ସମ୍ବନ୍ଧୀୟ ବ୍ରିଟିଶ ଗୁପ୍ତଚର ବିଭାଗର ରିପୋର୍ଟମାନ । ଚୀନାମାନେ ଲଦାଖ, ନେଫା, ଭୂଟାନ ଓ ସିକିମ୍‌ରେ ସେମାନଙ୍କର ଅଞ୍ଚଳମାନ ରହିଛି ବୋଲି କହି ସେହି ସ୍ଥାନଗୁଡ଼ିକ ଉପରେ ଦାବି ଜାହିର କରୁଥିଲେ । ସେଥିପାଇଁ ସେମାନେ ଅତୀତ କାଳର ମାନଚିତ୍ରଗୁଡ଼ିକ ଦେଖାଉଥିଲେ ଓ ଇଂରେଜମାନେ ସେସବୁକୁ ମିଥ୍ୟା ଓ ଜାଲିୟାତି ବୋଲି ଜାଣିପାରି ତୀବ୍ର ପ୍ରତିବାଦ କରୁଥିଲେ । ସେଥିସହ ବ୍ରିଟିଶସରକାର ଚୀନସରକାରଙ୍କୁ କଠୋର ଧମକ ମଧ୍ୟ ଦେଉଥିଲେ । ସେହି ଧମକ ଯୋଗୁଁ ଚୀନାମାନେ ତିବ୍ବତ ଅଧିକାରଲାଗି ସାହସ କରି ନ ଥିଲେ ।

ଅନେକଗୁଡ଼ିଏ ଗୁପ୍ତ ଫାଇଲ୍ । ସେଥିରେ ଥାଏ ଚୀନାମାନଙ୍କର ଜାଲ୍ ମାନଚିତ୍ର ଓ ଇଂରେଜମାନଙ୍କର କଡ଼ା ଜବାବ୍ । ପ୍ରେରଣା ଆସିଲା, ଗୋପନୀୟ ତଥ୍ୟମାନ ଟିପିନେଇ ଭାରତସରକାରଙ୍କୁ ଦେବି । କାରଣ, ସେତେବେଳକୁ ଚୀନାମାନେ ତିବ୍ବତ ଅଧିକାର କରିସାରିଥିଲେ ଏବଂ ୧୯୫୯ରେ ତିବ୍ବତୀୟ ଧର୍ମଗୁରୁ ଦଲାଇ ଲାମା ପଳାଇ ଆସି ଆମ ଦେଶରେ ଆଶ୍ରୟ ନେଇଥିଲେ । ବ୍ରିଟିଶ ଗୁପ୍ତଚରମାନଙ୍କର ଅନୁଧ୍ୟାନମୂଳକ ତଥ୍ୟମାନ ଭାରତ ସରକାରଙ୍କ ଦରକାର ହୋଇପାରେ ବୋଲି ଧାରଣା ହେଲା । ମୋର କାହିଁକି କେଜାଣି ହୃଦ୍‌ବୋଧ ହେଲା ଯେ ଭବିଷ୍ୟତରେ ଚୀନାମାନେ ଲଦାଖ ଓ ନେଫା ଅଞ୍ଚଳ ଉପରେ ଦାବି ଉଠାଇପାରନ୍ତି ।

ଅଧ୍ୟାପକ ଫିଲିପ୍ସଙ୍କୁ ସବୁକଥା କହି ସେହି ଗୋପନୀୟ ତଥ୍ୟ ସଂଗ୍ରହ ନିମନ୍ତେ ଅନୁମତି ମାଗିଲି । ସେ କହିଲେ, "ଉତ୍ତମ କଥା, ମୋର ଆପତ୍ତି ନାହିଁ । କିନ୍ତୁ ତମ ଦୂତାବାସରୁ ମୋତେ ଦୁଇଧାଡ଼ି ଅନୁରୋଧପତ୍ର ଲେଖାଇ ଆଣିଲେ ମୁଁ ତୁମକୁ ସେହିସବୁ ଫାଇଲ୍ ଦେଖିବାଲାଗି ସ୍ୱତନ୍ତ୍ର ଅନୁମତି ଆଣି ଦେଇପାରିବି । ଆମ ବିଶ୍ୱବିଦ୍ୟାଳୟରେ

ଶେଷ ତାରିଖ ପର୍ଯ୍ୟନ୍ତ କାମ କଲାପରେ ତୁମେ ତୁମ କାମ ଆରମ୍ଭ କରିବ ।'' ଅଧିକା ଗୋଟିଏ ମାସ ରହିଯିବା ଲାଗି ସେ ଉପଦେଶ ଦେଲେ ଏବଂ ସେଥିପାଇଁ ମଧ୍ୟ ଦୂତାବାସର ସୁପାରିଶ ଦରକାର ବୋଲି ନିର୍ଦ୍ଦେଶ ଦେଲେ ।

ଦୂତାବାସକୁ ଦୌଡ଼ିଲି । ଦୁର୍ଭାଗ୍ୟକୁ ବିଜୟଲକ୍ଷ୍ମୀ ପଣ୍ଡିତ ଭାରତ ଚାଲିଯାଇଥାନ୍ତି । ତେଣୁ ମୁଖ୍ୟ ସଚିବଙ୍କୁ ଭେଟି ବିଶଦଭାବରେ ସବୁକଥା ବର୍ଣ୍ଣନା କଲି । ଗମ୍ଭୀର ବଦନରେ ସେ ପଚାରିଲେ, ''ଗୋଟିଏ ମାସ ରହିବା ଖର୍ଚ୍ଚ ବହନ କରିବ କିଏ ?'' ଉତ୍ତର ଦେଲି, ''ସେଥିଲାଗି ମୋ ପାଖରେ ଟଙ୍କା ଅଛି ।'' କିଛି ସମୟ ନୀରବ ରହି ଭାବିଚିନ୍ତି କହିଲେ, ''ଭାରତ ସରକାରଙ୍କ ଅନୁମତି ବିନା ମୁଁ ପ୍ରଫେସର ଫିଲିପ୍ସଙ୍କ ପାଖକୁ ଗୋଟିଏ ଧାଡ଼ି ସୁଦ୍ଧା ଲେଖିପାରିବି ନାହିଁ । ସେଥିପାଇଁ ଆପଣଙ୍କୁ ଅପେକ୍ଷା କରିବାକୁ ହେବ ।'' ମୁଁ ପଚାରିଲି, ''କେତେ ଦିନ ଅପେକ୍ଷା କରିବି ?'' ଉତ୍ତର ମିଳିଲା, ''ସେ କଥା କିଏ କହିପାରିବ ?''

ନମ୍ରତାର ଶେଷ ସୀମାକୁ ଯାଇ ଅନୁରୋଧ କଲି, ''ମାତ୍ର ଗୋଟିଏ ଧାଡ଼ି ଲେଖିଦେବେ ଯେ ଏହି ବ୍ୟକ୍ତି ବ୍ରିଟିଶ୍ ଅଭିଲେଖାଗାରରେ ତଥ୍ୟ ସଂଗ୍ରହ କଲେ ଏବଂ ସେପାଇଁ କିଛି ସପ୍ତାହ ଲଣ୍ଡନରେ ନିଜ ବ୍ୟୟରେ ରହିଗଲେ କୌଣସି ଆପତ୍ତି ନାହିଁ ।'' ପଥରମୂର୍ତ୍ତି ପରି ସେ ବସିରହିବା ଦେଖି ଶେଷରେ ମୁଁ ଚାଲିଆସିଲି । ଚିନ୍ତା କରିପାରିଲି ନାହିଁ, ସେତିକି ଲେଖା ପାଇଁ ଭାରତ-ବ୍ରିଟେନ୍ କୂଟନୈତିକ ସମ୍ପର୍କରେ କ'ଣ ବା ବାଧା ସୃଷ୍ଟି ହୋଇଥାନ୍ତା ! ସାମାନ୍ୟ ବିଷୟ ଲାଗି ଭାରତ ସରକାରଙ୍କ ଅନୁମତି କିମ୍ବା ଆଦେଶ ବା କାହିଁକି ଆବଶ୍ୟକ ଥିଲା !

ଏହି ଘଟଣା ଘଟିଥିଲା ୧୯୬୦ ମସିହା ଡିସେମ୍ବର ଶେଷବେଳକୁ । ୧୯୬୨ ମସିହା ସେପ୍ଟେମ୍ବର-ଅକ୍ଟୋବର ମାସରେ ଚୀନାମାନେ ଭାରତର ପୂର୍ବ ପ୍ରାନ୍ତରେ ମ୍ୟାକ୍‌ମୋହନ ସୀମାରେଖା ଅତିକ୍ରମ ଓ ପଶ୍ଚିମରେ ଲଦାଖ ଆକ୍ରମଣ କଲାବେଳେ ମନରେ ଦୁଃଖ ଆସିଥିଲା, ବ୍ରିଟିଶ୍ ଯୁଗର ଗୋପନ ତଥ୍ୟମାନ ସଂଗ୍ରହ କରିପାରିଥିଲେ ହୁଏତ ନେହରୁ ସରକାରଙ୍କ କାମରେ ଲାଗିପାରିଥାନ୍ତା । କାରଣ ଚୀନ୍‌ସରକାରଙ୍କ ଦାବି ଆନ୍ତର୍ଜାତିକ ସ୍ତରରେ ଖଣ୍ଡନ କରିବା ନିମନ୍ତେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟ ସେଥିରେ ଥାଏ ।

## ଗୋଟିଏ ବିଶେଷ ସମାରୋହରେ ଯୋଗଦାନ

ଲଣ୍ଡନରେ ଏକବର୍ଷ ରହିଥିଲାବେଳେ ଗୋଟିଏ ଅପୂର୍ବ ସୁଯୋଗ ଉପଭୋଗ କରିପାରିଥିଲି । ଦଶଦିନବ୍ୟାପୀ ଏକ ବିଶେଷ ସମାରୋହରେ ଯୋଗଦାନ କରିବା ନିମନ୍ତେ ଅପ୍ରତ୍ୟାଶିତ ଭାବେ ସୁବିଧା ମିଳିଯାଇଥିଲା ।

ଇଂଲଣ୍ଡର ସର୍ବପୁରାତନ ଜ୍ଞାନବିଜ୍ଞାନ ସମିତିର ନାମ ହେଉଛି ରୟାଲ୍ ସୋସାଇଟି ଅଫ୍ ଲଣ୍ଡନ (Royal Society of London) । ତିନିଶହ ବର୍ଷ ପୂର୍ବେ, ୧୬୬୦ ଖ୍ରୀଷ୍ଟାବ୍ଦରେ ଏହି ସମିତି ପ୍ରତିଷ୍ଠିତ ହୋଇଥାଏ । ଏହାର ଜନ୍ମଲାଭ ପୂର୍ବରୁ ଯେଉଁ ବୈଜ୍ଞାନିକମାନେ ଏଣେ ତେଣେ ମିଳିତ ହୋଇ ବିଜ୍ଞାନ ସମ୍ବନ୍ଧରେ ଆଲୋଚନା କରୁଥିଲେ, ସେମାନଙ୍କୁ 'ଅଦୃଶ୍ୟ ମହାବିଦ୍ୟାଳୟ'ର ବିଦ୍ୱାନ ବୋଲି କୁହାଯାଉଥାଏ । ଶେଷରେ ଆନୁଷ୍ଠାନିକ ଭାବେ ସେହି ସ୍ମରଣୀୟ ବର୍ଷରେ ରୟାଲ୍ ସୋସାଇଟି ବିଜ୍ଞାନ ପ୍ରସାର ନିମନ୍ତେ କାର୍ଯ୍ୟ ଆରମ୍ଭ କଲା ଏବଂ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସଙ୍କ ନିକଟରୁ ସ୍ୱୀକୃତ ଲାଭ କଲା । ଯଥାସମୟରେ ସାର୍ ଆଇଜାକ୍ ନିଉଟନ ଓ ଏଡ୍‌ମଣ୍ଡ ହ୍ୟାଲି ପ୍ରଭୃତି ମନୀଷୀମାନେ ସମିତିରେ ଯୋଗଦେଲେ ଓ କାଳକ୍ରମେ ରୟାଲ୍ ସୋସାଇଟି ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଅର୍ଜନ କଲା । ୧୯୬୦ ମସିହାରେ ଏହି ସମିତିର ତିନିଶତ ବର୍ଷ ପୂରଣ ହେବା ଦୃଷ୍ଟିରୁ ବ୍ରିଟିଶ୍ ସରକାର ମହା ସମାରୋହରେ ଏକ ଉତ୍ସବ ପାଳନ ଲାଗି ଯୋଜନା କଲେ ଓ ପୃଥିବୀର ସବୁଦେଶର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟଗୁଡ଼ିକୁ ପ୍ରତିନିଧି ପଠାଇବାଲାଗି ଅନୁରୋଧ ଜଣାଇଲେ ।

୧୯୬୦ ମସିହା ଜୁଲାଇ ପ୍ରଥମ ସପ୍ତାହରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନିକଟରୁ ଖଣ୍ଡିଏ ଚିଠି ପାଇଲି । ସେ ଲେଖିଥିଲେ, ''ରୟାଲ ସୋସାଇଟିର ତିନିଶତବାର୍ଷିକ ସମାରୋହରେ ଯୋଗ ଦେବା ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରଣ ମିଳିଛି । ଯେହେତୁ ତୁମେ ବର୍ତ୍ତମାନ ଲଣ୍ଡନରେ ରହିଛ, ତୁମେ ଆମ ବିଶ୍ୱବିଦ୍ୟାଳୟର ପ୍ରତିନିଧିତ୍ୱ କରିବ ବୋଲି ମୁଁ କର୍ମକର୍ତ୍ତାମାନଙ୍କୁ ଜଣାଇଦେଇଛି ।'' ମୋ ପ୍ରତି ଏହା ଥିଲା ଏକ ସୁସମ୍ବାଦ ଓ ସୁବର୍ଣ୍ଣ ସୁଯୋଗ । ଜୁଲାଇ ୧୯ ତାରିଖ ପାଖରୁ ଆରମ୍ଭ ହୋଇ ଦଶଦିନ ବ୍ୟାପୀ ସମ୍ମିଳନୀ ଚାଲିବ ବୋଲି ଜଣାଗଲା । ଅନ୍ୟ ଦେଶର ପ୍ରତିନିଧିମାନେ ସସ୍ତ୍ରୀକ ଆସୁଛନ୍ତି ଜାଣି ମୁଁ ମଧ୍ୟ ସସ୍ତ୍ରୀକ ଯିବାଲାଗି ଠିକ୍ କଲି । ଇଉରୋପ, ଆମେରିକା, ଏସିଆ ଓ ଆଫ୍ରିକାର ଅନେକଗୁଡ଼ିଏ ବିଶ୍ୱବିଦ୍ୟାଳୟରୁ ପ୍ରତିଧିମାନେ ଆସିବେ ବୋଲି ସମ୍ବାଦପତ୍ରରୁ ପଢ଼ିଲି । ନୋବେଲ୍ ପୁରସ୍କାର ବିଜେତାମାନଙ୍କର ଉଦ୍‌ବୋଧନ, ରାଜକୀୟ ଅଭ୍ୟର୍ଥନା ଏବଂ ଦର୍ଶନୀୟ ସ୍ଥାନ ଭ୍ରମଣ ଇତ୍ୟାଦି ପ୍ରୋଗ୍ରାମ୍‌ମାନ ସମ୍ବାଦପତ୍ରଗୁଡ଼ିକରେ ପ୍ରକାଶିତ ହେଉଥାଏ । ପ୍ରତିନିଧିମାନଙ୍କୁ ନିଜ ନିଜ ବିଶ୍ୱବିଦ୍ୟାଳୟ ପକ୍ଷରୁ ଶୁଭେଚ୍ଛା ବାର୍ତ୍ତା ପାଠ କରିବାକୁ ହେବ ଜାଣି ବାର୍ତ୍ତାଟିଏ ରଚନା କଲି । ଉଚ୍ଚତର ଡିଗ୍ରୀର ଗାଉନ୍ ପିନ୍ଧି ଯିବାକୁ ହେବ ଶୁଣି ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀର ଲାଲରଙ୍ଗର ଗୋଟିଏ ଗାଉନ୍ ଦଶଦିନ ପାଇଁ ଦଶ ପାଉଣ୍ଡ ଦେଇ ଭଡ଼ା ଆଣିଲି ।

ଜୁଲାଇ ୧୮ ତାରିଖ ଦିନ ସନ୍ଧ୍ୟାବେଳେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ପରିଚୟପତ୍ର ଦାଖଲ କରିବା ନିମନ୍ତେ ସସ୍ତ୍ରୀକ ପହଞ୍ଚିଲି । ଅଧିକାଂଶ ପ୍ରତିନିଧି ଆସିଥାନ୍ତି ଇଉରୋପ, ଅଷ୍ଟ୍ରେଲିୟା ଓ ଆମେରିକାରୁ । ସୋଭିଏତ ରୁଷ୍ ଓ ଜାପାନର ଅଧ୍ୟାପକମାନେ ମଧ୍ୟ ଉପସ୍ଥିତ ଥିଲେ । ଭାରତୀୟ ପ୍ରତିନିଧିମାନଙ୍କ ସଂଖ୍ୟା ଥିଲା ମାତ୍ର ସାତ । ଅଧିକାଂଶ ପାଶ୍ଚାତ୍ୟ ପ୍ରତିନିଧି ସସ୍ତ୍ରୀକ ଆସିଥିଲାବେଳେ, ମୋ ସ୍ତ୍ରୀ ଥିଲେ ଏକମାତ୍ର ଭାରତୀୟ ବା ଏସୀୟ ମହିଳା । ପ୍ରତିନିଧିମାନେ ପ୍ରାୟତଃ ଥିଲେ ଅତିବୃଦ୍ଧ, ବୃଦ୍ଧ ଏବଂ ପ୍ରୌଢ଼ ।

୧୯ ତାରିଖ ପୂର୍ବାହ୍ନ ୧୦ଟାରେ ରୟାଲ୍ ଆଲବାର୍ଟ୍ ହଲ୍ ମଧ୍ୟରେ ରାଣୀ ଏଲିଜାବେଥଙ୍କ ଦ୍ୱାରା ଉତ୍ସବ ଉଦ୍‌ଘାଟିତ ହେବା ପୂର୍ବରୁ ସେଠାରେ ପହଞ୍ଚିବାକୁ ହେଲା । ଗାଉନ୍ ଲାଗି ଛୋଟ ଛୋଟ କୋଠରିମାନ ରହିଥାଏ । ସ୍ତ୍ରୀ ରାଜଶ୍ରୀ ସେଫ୍ଟିପିନ୍ ଦ୍ୱାରା ସ୍କାର୍ଫ ଇତ୍ୟାଦି ଫିଟ୍ କରି ମୋତେ ସଜାଇଦେଲେ । ହଠାତ୍ ଦେଖିଲାବେଳକୁ ମୋ ପଛରେ ଛିଡ଼ା ଥା'ନ୍ତି ଭାରତର ସ୍ୱନାମଧନ୍ୟ ଆଣବିକ ବୈଜ୍ଞାନିକ ଡକ୍ଟର ହୋମି ଜାହାଙ୍ଗୀର ଭାବା । କହିଲେ, "ଦୟାପୂର୍ବକ ମୋତେ ଟିକିଏ ସାହାଯ୍ୟ କରିବେ ?" ମୁଁ କହିଲି, "ସାହାଯ୍ୟ ନୁହେଁ, ଆମେ ଦୁହେଁ କିଞ୍ଚିତ୍ ସେବା କରିବାଲାଗି ସୁଯୋଗ ପାଇବୁଁ ।" ଭାବା ଥିଲେ ଜଣେ ମଧ୍ୟମ ଆକାରର ମନୁଷ୍ୟ, କିନ୍ତୁ ଗାଉନ୍‌ଟି ଥାଏ ଆକାରରେ ବଡ଼ । ଲାଗିପଡ଼ି ତାଙ୍କୁ ଗାଉନ୍ ପିନ୍ଧାଇଲୁଁ ଓ ରାଜଶ୍ରୀର ବୁଦ୍ଧିବଳରେ ସ୍କାର୍ଫ ଇତ୍ୟାଦି ଫିଟ୍ ହେବା ଦେଖି ସେ ଧନ୍ୟବାଦ ଦେଲେ । ଭାବା ସ୍ୱତନ୍ତ୍ରଭାବେ ସମ୍ମାନିତ ହେବା ପାଇଁ ନିମନ୍ତ୍ରଣ ପାଇଥିଲେ ।

ଶୋଭାଯାତ୍ରା ଆରମ୍ଭ ହେଲା । ସୁପ୍ରଶସ୍ତ ଆଲବାର୍ଟ ହଲ୍ ଅତିଥି ଓ ଦର୍ଶକମାନଙ୍କ ଦ୍ୱାରା ଭରପୂର ଥାଏ । ଡେଲିଗେଟ୍‌ମାନେ ତଳ ହଲ୍‌ର ଆଗସିଟ୍‌ଗୁଡ଼ିକରେ ବସିଲେ ଓ ଅନ୍ୟମାନେ ପଛରେ ଏବଂ ଉପର ତାଲାରେ ବସିଲେ । ମୋ ସ୍ତ୍ରୀଙ୍କ ସମେତ ଅନ୍ୟ ମହିଳାମାନେ ବାଲକୋନିରେ ସ୍ଥାନ ପାଇଲେ । ଠିକ୍ ୧୦ଟା ସମୟରେ ରାଣୀ ଓ ତାଙ୍କ ସ୍ୱାମୀ ମଞ୍ଚ ଉପରକୁ ଆସିଲେ । ରାଣୀ ରୟାଲ୍ ସୋସାଇଟିର ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ବନ୍ଧରେ ସୂଚନା ଦେବା ସହ ଦେଶ ବିଦେଶର ପ୍ରତିନିଧିମାନଙ୍କ ଉଦ୍ଦେଶ୍ୟରେ ସ୍ୱାଗତ ଅଭିଭାଷଣ ପାଠ କଲେ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ଉଦ୍‌ଘାଟନ ଉତ୍ସବ ଶେଷ ହେଲା । ତିନିଶହ ବର୍ଷ ପୂର୍ବେ ସୋସାଇଟିର ଜନ୍ମମୁହୂର୍ତ୍ତର ମୂଳମନ୍ତ୍ର ସୂଚାଇଦିଆଗଲା— "ଏ କଥା ମୋତେ ଜିଜ୍ଞାସା କର ନାହିଁ କେଉଁ ମହାନ୍ ବ୍ୟକ୍ତିଙ୍କୁ ମୁଁ ଅନୁସରଣ କରେ କିମ୍ବା କେଉଁ ଦେବତା ମୋତେ ରକ୍ଷା କରନ୍ତି । ମୁଁ କୌଣସି ବିଶେଷ ପ୍ରଭୁବାକ୍ୟ ମାନି ଚଳିବାପାଇଁ ପ୍ରସ୍ତୁତ ନୁହେଁ ।"

ଏହି ଆହ୍ୱାନି ଯେଉଁ ମୁକ୍ତ ଚେତନାର ସୂଚନା ଦେଲା, ସେଥିମଧ୍ୟରୁ ଉତ୍ପତ୍ତି ଲାଭକଲା ଆଧୁନିକ ପ୍ରକୃତି-ବିଜ୍ଞାନର ବିବିଧ ଅଙ୍ଗ । ପ୍ରାଚୀନ ଯୁଗର ମନୀଷୀମାନଙ୍କ ଜ୍ଞାନପରିସର ଓ ବନ୍ଧନୀ ମଧ୍ୟରୁ ସ୍ୱାତନ୍ତ୍ର୍ୟ ଲାଭପୂର୍ବକ ଆଧୁନିକ ଯୁଗର ମନୀଷୀମାନେ ନୂତନତ୍ୱ ଦିଗରେ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ, ତାହା ହିଁ ହୋଇଥିଲା ନବ ବିଜ୍ଞାନର ମୂଳଭିତ୍ତି । ଜ୍ଞାନରାଶିର ଅବାଧ ଓ ମୁକ୍ତ ବିଶ୍ଳେଷଣ ମଧ୍ୟରୁ ବିକଶିତ ହେଲା ବିଜ୍ଞାନ ।

**ଉତ୍ସବ କାଳର କେତୋଟି ଘଟଣା**

ଉଦ୍‌ଘାଟନ ପର୍ବ ଶେଷହେଲା ପରେ ଲାଗି ରହିଲା ଦିନ ପରେ ଦିନ ତ୍ରିଶତବାର୍ଷିକୀ ଉତ୍ସବର ବିଭିନ୍ନ କାର୍ଯ୍ୟକ୍ରମ, ଯଥା– ନୂତନ ଉଦ୍ଭାବନ ବିଷୟକ ବକ୍ତୃତାମାଳା, ଅଭ୍ୟର୍ଥନା ଭୋଜି ଓ ଆମୋଦ ଭ୍ରମଣ । ପ୍ରଥମଦିନ ରାତିରେ ଗ୍ରୋସ୍‌ଭେନର ନାମକ ପଞ୍ଚତାରକା ହୋଟେଲର ଭୋଜନାଳୟରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ହ୍ୟାରୋଲଡ୍ ମ୍ୟାକମିଲାନ ସମସ୍ତଙ୍କୁ ନୈଶଭୋଜିରେ ଆପ୍ୟାୟିତ କଲେ । ସୁପ୍ରଶସ୍ତ ହଲ୍ ମଧ୍ୟରେ ସହସ୍ରାଧିକ ବ୍ୟକ୍ତିଙ୍କ ଭୋଜନ ବ୍ୟବସ୍ଥା କରାଯାଇଥାଏ । କେନ୍ଦ୍ର ସ୍ଥଳରେ ପ୍ରଧାନମନ୍ତ୍ରୀଙ୍କ ନିକଟବର୍ତ୍ତୀ ସ୍ଥାନରେ ଆମ ଦୁଇଙ୍କୁ ଆସନ ମିଳିଥାଏ । ଖାଇବା ସମୟରେ ପ୍ରଧାନମନ୍ତ୍ରୀ ନିଜ ଚେୟାର ପାଖରେ ଛିଡ଼ା ରହି ସଂକ୍ଷିପ୍ତ ଭାଷଣଟିଏ ଦେଲେ ।

ତହିଁ ପରଦିନ ପ୍ରତିନିଧିମାନଙ୍କ ପତ୍ନୀମାନଙ୍କୁ ସନ୍ଧ୍ୟାକାଳୀନ ଜଳଯୋଗରେ ଆପ୍ୟାୟିତ କଲେ ମହାରାଣୀ ଭିକ୍ଟୋରିଆଙ୍କ ଜଣେ ନାତୁଣୀ । ସ୍ତ୍ରୀମାନଙ୍କ ସହିତ ସେମାନଙ୍କ ସ୍ୱାମୀମାନେ ମଧ୍ୟ ନିମନ୍ତ୍ରିତ ହେଲେ । ସେଠାରେ ଏକମାତ୍ର ଭାରତୀୟ ମହିଳା ଭାବରେ ଉପସ୍ଥିତ ଥିବା ମୋ ସ୍ତ୍ରୀଙ୍କ ବନାରସୀ ଶାଢ଼ୀ ଉପରେ ଅନେକଙ୍କ ଦୃଷ୍ଟି ପଡୁଥାଏ । ଭିକ୍ଟୋରିଆଙ୍କ ବୃଦ୍ଧା ନାତୁଣୀ ଗୋଟିଏ କୋଣରେ ଛିଡ଼ା ଥା'ନ୍ତି । ତାଙ୍କ ପାଖରେ ଥା'ନ୍ତି ରାଣୀ ଏଲିଜାବେଥଙ୍କ ସ୍ୱାମୀ ପ୍ରିନ୍ସ ଫିଲିପ୍ ବା ଡିଉକ୍ ଅଫ୍ ଏଡ଼ିନବରା । ଜଣକ ପରେ ଜଣେ ପାଶ୍ଚାତ୍ୟ ମହିଳା ବୃଦ୍ଧାଙ୍କ ନିକଟକୁ ଯାଇ ଜାନୁପାତି ତାଙ୍କୁ ସମ୍ମାନ ଦେବା ଦେଖି ରାଜଶ୍ରୀ ମୋତେ ପଚାରିଲେ, "ମୁଁ କ'ଣ କରିବି ?" "ତୁମେ ଭାରତୀୟ ଢଙ୍ଗରେ ନମସ୍କାର ଜଣାଇବ, ଆଣ୍ଠୁ ଭାଙ୍ଗିବ ନାହିଁ" ବୋଲି କହିଲି । ସେ ତାହାହିଁ କଲେ । ପାଖରେ ଛିଡ଼ା ହୋଇଥିବା ପ୍ରିନ୍ସ ଫିଲିପ୍ ମୋ ସ୍ତ୍ରୀଙ୍କ ସହିତ କରମର୍ଦ୍ଦନ କରି କଥାବାର୍ତ୍ତା କରିବା ଦେଖିଲି । ଫେରିଆସି ରାଜଶ୍ରୀ କହିଲେ, "ପ୍ରିନ୍ସ ଫିଲିପ୍‌ଙ୍କ ହାତ କେଡ଼େ କୋମଳ !" କୌତୁକ କରି ମୁଁ କହିଲି, "ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯେତେହେଲେ ସେ ହେଉଛନ୍ତି ଜଣେ ରାଜପୁତ୍ର ଏବଂ ଖୋଦ୍ ରାଣୀଙ୍କର ସ୍ୱାମୀ । ତୁମର

ସ୍ୱାମୀ ହେଉଛନ୍ତି ଜଣେ କୃଷକର ପୁଅ ଓ ତୁମ ପରି ଜଣେ ବାରିପଦା ଝିଅର ସ୍ୱାମୀ । ସୁତରାଂ, ତାଙ୍କ ହାତ କୋମଳ ଥିଲାବେଳେ ମୋ ହାତ କଠିନ ଥିବା ସ୍ୱାଭାବିକ ।''

ପ୍ରିନ୍ସ ଫିଲିପ୍ ପ୍ରତିନିଧିମାନଙ୍କ ନିକଟକୁ ଆସି କଥାବାର୍ତ୍ତା କରିବାକୁ ଲାଗିଲେ । ''ଆପଣ କେଉଁ କିସମର ବୈଜ୍ଞାନିକ ?'' ମୋତେ ପଚାରିଲେ । ମୁଁ କହିଲି, ''ନା, ମୁଁ ବୈଜ୍ଞାନିକ ନୁହେଁ, ଐତିହାସିକ ।'' ରହସ୍ୟ କରି କହିଲେ, ''ତା'ହେଲେ, ବଡ଼ ବଡ଼ ବୈଜ୍ଞାନିକମାନଙ୍କର ଇତିହାସ ଲେଖନ୍ତୁ ।'' ମୁଁ ମଧ୍ୟ ରହସ୍ୟ କଲି, ''ରାଜନୀତିଜ୍ଞମାନଙ୍କ ଇତିହାସ ଲେଖିଲେ ଲୋକେ ପଢ଼ନ୍ତି । ବୈଜ୍ଞାନିକମାନଙ୍କ ଜୀବନୀ କେହି ପଢ଼ନ୍ତି ନାହିଁ ।'' ମୋ କଥା ଶୁଣି ସେ ଖୁବ୍ ହସିଲେ ଓ କହିଲେ, ''ଯାହା କହିଲେ, ତାହା ଠିକ୍ ଏବଂ ମୁଁ ଆପଣଙ୍କ ସହିତ ଏକମତ ।''

ଜଳଖିଆ ପରେ ମହିଳାମାନେ କେନ୍‌ସିଂଟନ ରାଜପ୍ରାସାଦର ଭିନ୍ନ ଭିନ୍ନ କୋଠରି ଦେଖିବାକୁ ଗଲେ । ସେହି ପ୍ରାସାଦଟି ବକିଂହାମ୍ ପ୍ୟାଲେସ୍‌ଠାରୁ କିଛି ଦୂରରେ । ରାଣୀ ବକିଂହାମ୍‌ରେ ରହନ୍ତି, ତାଙ୍କ ରାଜପରିବାରର ଅନ୍ୟମାନେ ରହନ୍ତି କେନସିଂଟନ ପ୍ରାସାଦରେ ।

ତିନିଦିନ ଯାବତ୍ ବିଜ୍ଞାନ ସମ୍ବନ୍ଧୀୟ ଉଚ୍ଚାଙ୍ଗ ଭାଷଣମାନ ଶୁଣିବାଲାଗି ସୁଯୋଗ ମିଳିଲା । ଦିନେ ପାଞ୍ଚଜଣ ପ୍ରଖ୍ୟାତ ବୈଜ୍ଞାନିକଙ୍କୁ ରାଣୀଙ୍କ ମାତା ଏକ ସ୍ୱତନ୍ତ୍ର ଉତ୍ସବରେ ସମ୍ମାନିତ କଲେ । ସେମାନଙ୍କ ମଧ୍ୟରେ ଥିଲେ ଭାରତର ହୋମି ଭାବା । ମନୁଷ୍ୟ ଜାତିର ମଙ୍ଗଳ ନିମନ୍ତେ ଆଣବିକ ଶକ୍ତିର ବିନିଯୋଗ ଉଦ୍ଦେଶ୍ୟରେ ତାଙ୍କର ଗବେଷଣା ଲାଗି ରୟାଲ ସୋସାଇଟି ପକ୍ଷରୁ ତାଙ୍କୁ ସେହି ସମ୍ମାନ ମିଳିଥିଲା । ଘନଘନ କରତାଳି ମଧ୍ୟରେ ରାଣୀଙ୍କ ମାତା ତାଙ୍କୁ ସମ୍ମାନିତ କଲାବେଳେ ଆମେ ଗର୍ବ ଅନୁଭବ କଲୁଁ ।

ସେଦିନ ରାତିରେ ଲଣ୍ଡନର ସିଟି ହଲ୍‌ରେ ଲର୍ଡ଼ ମେୟର ଡେଲିଗେଟ୍‌ମାନଙ୍କ ସମେତ ବିଶିଷ୍ଟ ନାଗରିକମାନଙ୍କୁ ନୈଶ ଭୋଜି ଦେଲେ । ଭୋଜନ ପରେ ବଲ୍‌ଡ୍ୟାନ୍ସ ଓ ମଦ୍ୟପାନ ଚାଲିବ ଜାଣି ରାଜଶ୍ରୀ ସେଠାକୁ ଯିବାକୁ ରାଜି ହେଲେ ନାହିଁ । ମୁଁ ଏକାକୀ ଆସିବା ଦେଖି ଜଣେ ସାହେବ ପଚାରିଲେ, ''ମିସେସ୍‌ଙ୍କୁ ସାଙ୍ଗରେ ଆଣିଲେ ନାହିଁ ?'' ଉତ୍ତର ଦେଲି, ''ଅନ୍ୟ ପୁରୁଷମାନଙ୍କ ସାଙ୍ଗରେ ବଲ୍‌ଡ୍ୟାନ୍ସ କରିବେ ନାହିଁ ଜାଣି ଆଣିଲି ନାହିଁ ।'' ''କିନ୍ତୁ ଆପଣ ତ ଇଂରେଜ ମହିଳାଙ୍କ ସାଙ୍ଗରେ ଡ୍ୟାନ୍ସ କରିବେ,'' ସେ ବ୍ୟଙ୍ଗ କଲେ । ମୁଁ କହିଲି, ''କଦାପି ନୁହେଁ । ଖାଇସାରିଲା ପରେ ଚମ୍ପଟ୍ ଦେବି ।'' ହସି ହସି ସେ କମେଣ୍ଟ

ଦେଲେ, "So, Kipling is correct that 'the East is East and the West is West and the two shall never meet'."

ତହିଁ ପରଦିନ କ୍ଲାରେନ୍ସ ରାଜପ୍ରାସାଦରେ ରାଣୀଙ୍କ ମାତା, ତାଙ୍କ ନାମ ମଧ୍ୟ ଏଲିଜାବେଥ୍, ମହିଳାମାନଙ୍କୁ ଚା ପାନ ଲାଗି ନିମନ୍ତ୍ରଣ କଲେ । ପ୍ରାସାଦର ଭିନ୍ନ ଭିନ୍ନ ସ୍ଥାନ ଓ ସେଠାକାର ବିଭବ ଦେଖି ରାଜଶ୍ରୀ ମୋହିତ ହେଲେ । ତାଙ୍କ ବର୍ଣ୍ଣନା ଶୁଣି ମୁଁ ଥଟ୍ଟା କଲି, "ଏ ଜନ୍ମରେ ତପସ୍ୟା କଲେ ଆଗାମୀ ଜନ୍ମରେ ରାଣୀଙ୍କ ମାତା ରୂପେ ଜନ୍ମଲାଭ କରି କ୍ଲାରେନ୍ସ ପ୍ରାସାଦ ଭୋଗ କରିବ ।"

ସମାରୋହର ଷଷ୍ଠ ଦିନଠାରୁ ଆରମ୍ଭ ହେଲା ଭ୍ରମଣ କାର୍ଯ୍ୟକ୍ରମ ।

**ଅକ୍ସଫୋର୍ଡ଼ ଯାତ୍ରା** – ବିଳାସମୟ ବାସ୍‌ଗୁଡ଼ିକରେ ସମସ୍ତଙ୍କୁ ନିଆଗଲା ଅକ୍ସଫୋର୍ଡ଼ ସହରକୁ । ସହରଟି 'ବିଶ୍ୱବିଦ୍ୟାଳୟ ନଗର' ନାମରେ କଥିତ ହୁଏ । ଇଂଲଣ୍ଡର ସେହି ସର୍ବପ୍ରାଚୀନ ବିଶ୍ୱବିଦ୍ୟାଳୟ ମଧ୍ୟଯୁଗୀୟ ସ୍ଥାପତ୍ୟଶୈଳୀରେ ନିର୍ମିତ । ଗୋଥିକ୍ ଢଙ୍ଗର ଗୁମ୍ବଜଗୁଡ଼ିକ ହେଉଛି ପଞ୍ଚଦଶ, ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ସ୍ଥାପତ୍ୟକୀର୍ତ୍ତି । ଆଧୁନିକ ସମୟ ପର୍ଯ୍ୟନ୍ତ ଅକ୍ସଫୋର୍ଡ଼ ଥିଲା ମୁଖ୍ୟତଃ ବିଦ୍ୟାର୍ଥୀ ଓ ଅଧ୍ୟାପକମାନଙ୍କ ବାସସ୍ଥାନ । ସହରର ଲୋକସଂଖ୍ୟା ନଗଣ୍ୟ ଥାଏ । ନିର୍ଜନ ଓ ଶାନ୍ତ ପରିବେଶ ମଧ୍ୟରେ ଶିକ୍ଷାର୍ଥୀମାନେ ଉଚ୍ଚତର ଜ୍ଞାନ ଆହରଣ କରୁଥିଲେ । କୁହାଯାଏ, ଅକ୍ସଫୋର୍ଡ଼ ସହରର ଇତିହାସ ହେଉଛି ବିଶ୍ୱବିଦ୍ୟାଳୟର ଇତିହାସ । ବର୍ତ୍ତମାନ ଅବଶ୍ୟ ସହରର ଜନସଂଖ୍ୟା ବଢ଼ିଯାଇଛି ଓ ସହରର ଉପକଣ୍ଠରେ ଶିଳ୍ପାନୁଷ୍ଠାନମାନ ଗଢ଼ିଉଠିଛି ।

ବିଭିନ୍ନ ବିଭାଗ, ପାଠାଗାର ଓ ଛାତ୍ରାବାସ ଦେଖିଲାପରେ ସେଠାକାର ପରିବେଶ ସମ୍ପର୍କରେ ଉତ୍ତମ ଧାରଣା ସୃଷ୍ଟି ହେଲା । ଅଧ୍ୟୟନ ଓ ଗବେଷଣା ଲାଗି ଉପଯୁକ୍ତ ସୁବିଧା ସୁଯୋଗ ରହିଛି । ଅଧ୍ୟାପକମାନେ ଡେଲିଗେଟମାନଙ୍କୁ ମଧ୍ୟାହ୍ନ ଭୋଜନରେ ତୃପ୍ତ କଲେ । ଅପରାହ୍ନରେ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବରେ ପୃଥିବୀର ସାତଜଣ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକଙ୍କୁ ସମ୍ମାନସୂଚକ ଡିଗ୍ରୀ ଦିଆଗଲା ।

**କ୍ୟାମ୍ବ୍ରିଜ୍** – ତହିଁପରଦିନ ସମସ୍ତଙ୍କୁ ବାସ୍‌ଯୋଗେ ନିଆଗଲା ଲଣ୍ଡନଠାରୁ ୫୦ ମାଇଲ୍ ଦୂରବର୍ତ୍ତୀ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ । ସ୍ଥାନଟି ଖୁବ୍ ପ୍ରାଚୀନ । ଅତୀତରେ ଦିନେ ରୋମାନ୍‌ମାନେ ସେଠାରେ ଅଧିକାର ସ୍ଥାପନ କରିଥିଲେ । ଅନେକ ପରେ, ଦ୍ୱାଦଶ ଶତାବ୍ଦୀର ଆରମ୍ଭକାଳରେ ଅକ୍ସଫୋର୍ଡ଼ଠାରୁ କେତେଜଣ ଅଧ୍ୟାପକ ଓ ଛାତ୍ର ପଳାଇ ଆସି ଏଠାରେ ଗୋଟିଏ ନୂତନ ଶିକ୍ଷାନୁଷ୍ଠାନ ଖୋଲିଥିଲେ । କାଳକ୍ରମେ ଗିର୍ଜାର ଅର୍ଥବଳରେ ବିଶ୍ୱବିଦ୍ୟାଳୟର ଉତ୍ଥାନ ଘଟିଲା । ଇଉରୋପୀୟ

ନବଜାଗରଣ କାଳରେ କେତେକ ଜ୍ଞାନୀ ବ୍ୟକ୍ତି ସେଠାରୁ ନୂତନ ଜ୍ଞାନାଲୋକର ସୂତ୍ରପାତ କରିଥିଲେ । ୧୫୪୬ରେ ରାଜା ଅଷ୍ଟମ ହେନରୀ ସେଠାରେ ଯେଉଁ ଟ୍ରିନିଟି କଲେଜ ନିର୍ମାଣ କରିଥିଲେ, ତାହା ହେଉଛି କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟର ସର୍ବବୃହତ୍ କଲେଜ ।

ସପ୍ତଦଶ ଶତାବ୍ଦୀର ଶେଷ ୩୦ ବର୍ଷ ଏଠାରେ ଗଣିତବିଜ୍ଞାନ ଶିକ୍ଷା ଦେଇଥିଲେ ସାର୍ ଆଇଜାକ୍ ନିଉଟନ୍ ଏବଂ ସେହି ସମୟରୁ ଗଣିତବିଦ୍ୟା ଲାଗି କ୍ୟାମ୍ବ୍ରିଜ୍ ପ୍ରସିଦ୍ଧ ରହିଛି । ବିଂଶ ଶତାବ୍ଦୀର ବିଭିନ୍ନ ସମୟରେ ପଦାର୍ଥବିଦ୍ୟାରେ ଲର୍ଡ଼ ରୁଥାରଫୋର୍ଡ଼, ଇତିହାସରେ ଜି.ଏମ୍.ଟ୍ରେଭେଲିୟାନ ଓ ଅର୍ଥନୀତିରେ ଜେ.ଏମ୍.କେୟନେଶ ପ୍ରଭୃତି ଅଧ୍ୟାପକମାନେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ତେଣେ ପୁରାତନ ଛାତ୍ରମାନଙ୍କ ମଧ୍ୟରେ ଜନ୍ ମିଲଟନ୍, ଉଇଲିୟମ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଓ ଚାର୍ଲସ୍ ଡାରଉଇନ୍ ପ୍ରଭୃତି ମନୀଷୀମାନଙ୍କର ସ୍ମୃତି ବହନ କରି ବିଶ୍ୱବିଦ୍ୟାଳୟ ଗୌରବାନ୍ୱିତ ରହିଛି । ଲାଇବ୍ରେରୀ ଦେଖିଲାବେଳେ କୁହାଗଲା, ୩ ନିୟୁତ ବହି ରହିଛି ।

ଅପରାହ୍ନରେ ବିଶ୍ୱବିଦ୍ୟାଳୟର ମୁକ୍ତ ପ୍ରାଙ୍ଗଣରେ ସମସ୍ତଙ୍କୁ ଉଦ୍ୟାନଭୋଜିରେ ଚର୍ଚ୍ଚା କଲାବେଳେ ଦେଖିଲି, ନିମନ୍ତ୍ରିତ ଅତିଥିମାନଙ୍କ ମଧ୍ୟରେ ଅଛନ୍ତି 'ବିବର୍ତ୍ତନବାଦ' ତତ୍ତ୍ୱ ପ୍ରଦାନ କରିଥିବା ବିଖ୍ୟାତ ମନୀଷୀ ଚାର୍ଲସ୍ ଡାରଉଇନ୍‌ଙ୍କ ନାତି । ତାଙ୍କ ନାମ ମଧ୍ୟ ଚାର୍ଲସ ଡାର୍‌ଉଇନ୍ । ସେ ମୋ ସ୍ତ୍ରୀଙ୍କ ସହିତ କଥାବାର୍ତ୍ତା କଲାବେଳେ ଭାରତ ବିଷୟରେ କେତେକ କଥା ପଚାରିଲେ । ତାହା ପରେ, ସାର୍ ଆଇଭର୍ ଜେନିଂସ୍ ଓ ଶ୍ରୀମତୀ ଜେନିଂସ୍‌ଙ୍କ ପାଖରେ ବସି ରାଜଶ୍ରୀ ଜଳଖିଆ ଖାଇଲେ ଓ ସେମାନଙ୍କ ସହିତ ଆଳାପ ମେଳାପ କଲେ । ଜେନିଂସ୍ ଥିଲେ ସମ୍ବିଧାନ ଓ ରାଜନୀତିବିଜ୍ଞାନରେ ବିଶ୍ୱବିଖ୍ୟାତ ଗ୍ରନ୍ଥକାର ।

ଅଳ୍ପ ଦୂରରେ ଛିଡ଼ା ରହିଥାନ୍ତି ଇଂଲଣ୍ଡର ଉପ-ପ୍ରଧାନମନ୍ତ୍ରୀ ରବ୍ ବାଟଲାର୍ । ସ୍ତ୍ରୀଙ୍କୁ ତାଙ୍କ ସହିତ କଥା କହିବାକୁ ପରାମର୍ଶ ଦେଲି । ଆମେ ଜାଣି ନ ଥିଲୁଁ ବାଟ୍‌ଲାରଙ୍କ ଡାହାଣ ହାତର ପାପୁଲିଟି ଅଚଳ । ରାଜଶ୍ରୀ କରମର୍ଦ୍ଦନ ପାଇଁ ହାତ ବଢ଼ାଇଲାବେଳେ ସେ ଅପ୍ରସ୍ତୁତ ଭାବରେ ହାତଟି ପକେଟରୁ ବାହାର କଲେ, କିନ୍ତୁ କରମର୍ଦନ କରିପାରିଲେ ନାହିଁ । ଆମର ଭୁଲ ଯୋଗୁଁ ଲଜ୍ଜିତ ହେଲୁଁ ।

**ଆଣବିକ ପରୀକ୍ଷାକେନ୍ଦ୍ର** – ସମାବେଶର ଶେଷଦିନ ଅଳ୍ପସଂଖ୍ୟକ ପ୍ରତିନିଧିଙ୍କୁ ନିଆଗଲା ଏକ ନିଭୃତ ଅଞ୍ଚଳରେ ଥିବା ଆଣବିକ ଶକ୍ତିପରୀକ୍ଷା କେନ୍ଦ୍ରକୁ । ସ୍ଥାନର ନାମ ହାରଓ୍ୱେଲ । ସେପରି ଅତି ଗୋପନୀୟ କେନ୍ଦ୍ରକୁ ବିଦେଶୀ

ବୈଜ୍ଞାନିକମାନଙ୍କୁ କିପରି ନିଆଯାଉଛି ବୋଲି ବାସ୍ ଭିତରେ ଥିବା ଆମେରିକୀୟ ଡେଲିଗେଟ୍‌ମାନେ ମୃଦୁ ସ୍ୱରରେ ଆଲୋଚନା କରୁଥିବା ଶୁଣିଲି । ଆଶ୍ଚର୍ଯ୍ୟ ବୋଧ କଲି ଯେ ରୁଷ୍ ବୈଜ୍ଞାନିକମାନେ ମଧ୍ୟ ଆମ ଦଳରେ ଅଛନ୍ତି ।

କେନ୍ଦ୍ରସ୍ଥାନର ବେଶ୍ କିଛି ଦୂରରେ ବାସ୍‌ଗୁଡ଼ିକ ରହିଲା । ସେଠାରୁ ଆମକୁ ଗୋଟିଏ ହଲ୍ ଭିତରକୁ ନିଆଯାଇ ମୁହଁରେ ମୁଖା ପିନ୍ଧିବାପାଇଁ ଓ ପାଦରେ ଉଲ୍ ତିଆରି ଜୋତା ପିନ୍ଧିବାକୁ ଦିଆଗଲା । କିମ୍ଭୂତ କିମାକାର ବେଶ ଧରି ସମସ୍ତେ ଆଗେଇଚାଲିଲେ । ଭୂଗର୍ଭରେ ରହିଥାଏ ଆଣବିକ ଶକ୍ତିପରୀକ୍ଷା କେନ୍ଦ୍ର । ସୁଡ଼ଙ୍ଗପଥରେ ଲିଫ୍ଟଯୋଗେ ଅନେକ ତଳକୁ ଅବତରଣ କରି ସେଠାରେ ଯେଉଁ ଦୃଶ୍ୟ ଦେଖିଲୁଁ, ତାହା ଭୌତିକ କାଣ୍ଡ ପରି ଜଣାଗଲା । ଗୋଟିଏ ବିଶାଳ ଗୋଲାକାର ଛତାସ୍ୱରୂପ ଛାତ ତଳେ କକ୍ଷଟିର କାନ୍ଥ ଥାଏ ମୋଟା କାଚରେ ତିଆରି । ତା' ଭିତରେ ମନୁଷ୍ୟହାତ ପରି ଦେଖାଯାଉଥିବା ଅନେକଗୁଡ଼ିଏ ଉଜ୍ଜ୍ୱଳ ଇସ୍ପାତ ହାତ ଆପେ ଆପେ କାମ କରୁଥାଏ । 'ଅଜ୍ଞାତ ସ୍ଥାନରେ ରହିଥିବା ବୈଜ୍ଞାନିକମାନଙ୍କର ପରିଚାଳନା ଅନୁଯାୟୀ ଇସ୍ପାତ ହାତଗୁଡ଼ିକ ଭିନ୍ନ ଭିନ୍ନ ପଦାର୍ଥକୁ ଏ ସ୍ଥାନରୁ ସେ ସ୍ଥାନ ନେବା ଆଣିବା କରୁଥିବା ଦେଖିବାକୁ ମିଳିଲା । ଯତେଯେପରି ମନ୍ତ୍ରଶକ୍ତି କାମ କରୁଛି । ଇସ୍ପାତମଣିଷ ବା ରବଟଗୁଡ଼ିକର ରୂପ ଦେଖିବାକୁ ପାଇଲୁଁ । ଜଣେ ବିଶେଷଜ୍ଞ କହିଲେ, କେବଳ ସ୍ୱୟଂକ୍ରିୟାଶୀଳ ଯନ୍ତ୍ରପାତି ସାହାଯ୍ୟରେ ତେଜସ୍କ୍ରିୟ ଶକ୍ତିର ପରୀକ୍ଷା ନିରୀକ୍ଷା କରାଯିବା ସମ୍ଭବ ।

ସେହି କକ୍ଷଟି ଦେଖିସାରିଲା ପରେ ଅନ୍ୟ ଏକ ବିଜ୍ଞାନାଗାର ମଧ୍ୟକୁ ନିଆଗଲା । ତାହା ମଧ୍ୟ ଥିଲା ଗୋଲାକାର । କାନ୍ଥର ପ୍ରତ୍ୟେକ ଇଞ୍ଚ ଜାଗାରେ ଖଞ୍ଜା ରହିଥାଏ ଯନ୍ତ୍ରପାତି । ପ୍ରତ୍ୟେକ ଯନ୍ତ୍ର ପାଖରେ ଏକାଗ୍ର ଚିତ୍ତରେ ବସିଥାନ୍ତି ବୈଜ୍ଞାନିକମାନେ । ନିଃଶବ୍ଦରେ ଦୂରରେ ଛିଡ଼ାରହି ଆମେ ସେହି ସାଧନାରତ ତପସ୍ୱୀମାନଙ୍କର କାର୍ଯ୍ୟକଳାପ ଅବଲୋକନ କଲୁଁ । ମନେ ହେଉଥାଏ, ସେହି ଭୟାବହ ସ୍ଥାନର ଅସ୍ୱାଭାବିକ ପରିବେଶ ମଧ୍ୟରେ ସେମାନେ ଯେଉଁପ୍ରକାର ପରୀକ୍ଷା କରୁଛନ୍ତି, ତାହା ମାନବଜାତିର ମଙ୍ଗଳ ନିମନ୍ତେ ଅଥବା ପ୍ରଳୟଙ୍କରୀ ଧ୍ୱଂସଲୀଳା ମଧ୍ୟରେ ବିଶ୍ୱର ବିଲୟ ସାଧନ ଉଦ୍ଦେଶ୍ୟରେ ।

ରୟାଲ ସୋସାଇଟିର ଉତ୍ସବ ସମାପ୍ତ ହେଲା । ସେହି କେତୋଟି ଦିନର ଘଟଣାମାନ ମନମଧ୍ୟରେ ଅଭୁଲା ସ୍ମୃତି ରୂପେ ରହିଗଲା ।

## ସ୍ୱଦେଶ ପ୍ରତ୍ୟାବର୍ତ୍ତନ

୧୯୬୧ ଜାନୁଆରୀ ପ୍ରଥମ ସପ୍ତାହରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ମୋର କାର୍ଯ୍ୟକାଳ ଶେଷ ହେଲା । ଝିଅ ଝାହ୍ନବୀ ଓ ପୁଅ ସିଦ୍ଧାର୍ଥ ନିଜ ନିଜ ସ୍କୁଲରୁ

ବିଦାୟ ନେଲାବେଳେ ଶିକ୍ଷକ ଶିକ୍ଷୟିତ୍ରୀ ଓ ସାଙ୍ଗସାଥୀମାନେ ଦୁଃଖିତ ହେବା ଅନୁଭବ କଲି । ଛଳ ଛଳ ଆଖିରେ ପିଲାଦୁଇଟି ସେମାନଙ୍କ ପାଖରୁ ଚାଲିଆସିଲେ ।

୬ ତାରିଖ ସକାଳେ ଲଣ୍ଡନରୁ ସାଉଦାମ୍ପଟନ୍ ବନ୍ଦର ପର୍ଯ୍ୟନ୍ତ ଟ୍ରେନ୍‌ରେ ଆସି ଦିନ ୧୦ଟା ସମୟରେ 'କ୍ୟାଣ୍ଟନ' ନାମକ ଯାତ୍ରୀବାହୀ ଜଳଜାହାଜରେ ବସିଲୁଁ । ଜାହାଜ ଯିବ ସୁଦୂର ପ୍ରାଚ୍ୟର ହଂକଂ ବନ୍ଦରକୁ । ମିଶର, ଆରବ, ଭାରତ, ସିଂହଳ, ମାଳୟ ଓ ଚୀନ ଯିବାଲାଗି ପ୍ରାୟ ୬୦୦ ପାସେଞ୍ଜାର ସେଥିରେ ଉଠିଲେ । ଅଧିକାଂଶ ଯାତ୍ରୀ ଥିଲେ ଇଉରୋପୀୟ । ଅପରାହ୍ନ ୨ଟା ବେଳେ ଜାହାଜ ଛାଡ଼ିଲା । ଇଂଲଣ୍ଡର ଉପକୂଳ ପରିଷ୍କାର ଦିଶୁଥାଏ । ପୁଅ ଝିଅ ବିମର୍ଷ ମନରେ ବସି ରହିଥାନ୍ତି ।

ତହିଁ ପରଦିନ ଆଟଲାଣ୍ଟିକ୍ ମହାସାଗରରେ ଫ୍ରାନ୍ସଦେଶର କୂଳବର୍ତ୍ତୀ ବିସ୍କେ ଉପସାଗରରେ ଜାହାଜ ଚାଲିଲାବେଳେ ଝଡ଼ତୋଫାନ ଦେଖାଦେଲା । ଅହରହ ଟଳମଳ ହେଉଥିବା ଜାହାଜର ଅନେକ ଯାତ୍ରୀ ସେତେବେଳେ ସମୁଦ୍ରଜ୍ୱରରେ ଆକ୍ରାନ୍ତ ହେଲେ । ଝାନ୍ସୀର ମୁଣ୍ଡ ଓ ଛାତିରେ ଅସହ୍ୟ ଯନ୍ତ୍ରଣା ହେଲା । ଉପର ତାଲାରେ ଥିବା ଡିସ୍‌ପେନ୍‌ସାରୀକୁ ନେଲାସମୟରେ ସେ ମୂର୍ଚ୍ଛାପ୍ରାୟ ଅବସ୍ଥାରେ କଚାଡ଼ି ପଡ଼ିଲା । ଦିନସାରା ପାଣି ଟୋପାଏ ସୁଦ୍ଧା ସ୍ପର୍ଶ କଲା ନାହିଁ । କିନ୍ତୁ ପରଦିନ ସମ୍ପୂର୍ଣ୍ଣ ସୁସ୍ଥ ଦେହରେ ଅନ୍ୟ ପିଲାଙ୍କ ସାଙ୍ଗରେ ଖେଳିବାକୁ ଲାଗିଲା । ବିଚିତ୍ର ଥାଏ ସେହି ସମୁଦ୍ର ବିକାର ।

ଜାହାଜ ଚାଲିଲା ସ୍ପେନ ଓ ପର୍ତ୍ତୁଗାଲ କୂଳେ କୂଳେ । ରାତ୍ରିକାଳରେ ଅନେକ ଦୂରରୁ ଦେଖାଯାଉଥାଏ ପର୍ତ୍ତୁଗୀଜ ରାଜଧାନୀ ଲିସ୍‌ବନ ସହରର କ୍ଷୀଣ ଆଲୋକ । ଦିନବେଳେ ସ୍ପେନ ଉପକୂଳରେ ଦୂରରୁ ଦେଖାଗଲା କାଡ଼ିଜ୍ ନାମକ ନଗର । ଝାନ୍ସୀକୁ ବୁଝାଇଦେଲି, ଦିନେ ସେହି ନଗରର ଅଦୂରବର୍ତ୍ତୀ ପଲୋସ୍ ନାମକ କ୍ଷୁଦ୍ର ବନ୍ଦରରୁ କଲମ୍ବସ ଭାରତକୁ ଜଳପଥ ଆବିଷ୍କାର ଉଦ୍ଦେଶ୍ୟରେ ବାହାରି ଯାଇଥିଲେ ଏବଂ ସିଧା ପଶ୍ଚିମ ଦିଗକୁ ଯାତ୍ରା କରି ଆମେରିକା ମହାଦେଶର କୂଳବର୍ତ୍ତୀ ଦ୍ୱୀପପୁଞ୍ଜରେ ପହଞ୍ଚି ସେହି ସ୍ଥାନକୁ ଭାରତର ଅଂଶ ବୋଲି ଭାବିଥିଲେ (ଖ୍ରୀ.ଅ. ୧୪୯୨) ।

ଜାହାଜ ପହଞ୍ଚିଲା ସ୍ପେନଦେଶର ଦକ୍ଷିଣ ସୀମାର ଶେଷବିନ୍ଦୁ ଜିବ୍ରାଲଟରଠାରେ । ସେହିସ୍ଥାନରେ ଆଟଲାଣ୍ଟିକ୍ ଶେଷ ହେଲା ଓ ଭୂମଧ୍ୟସାଗରରେ ଜାହାଜ ପଶିଲା । ବ୍ରିଟିଶ୍ ଅଧିକୃତ ଜିବ୍ରାଲଟର ହେଉଛି ଗୋଟିଏ ପାହାଡ଼ । ସମୁଦ୍ରର ଜଳପତ୍ତନରୁ ଚଉଦଶହ ଫୁଟ ଉଚ୍ଚ ପାହାଡ଼ଟି ତିନି ମାଇଲ୍ ଲମ୍ବ ଓ ପ୍ରାୟ ଏକ ମାଇଲ୍

ଓସାରର ଭୂମି ଉପରେ ଛିଡ଼ା ରହିଛି । ତଳେ ରହିଛି ଛୋଟ ସହର ଓ ବନ୍ଦର, ପାଣିରେ କେତେଗୁଡ଼ିଏ ଯୁଦ୍ଧଜାହାଜ ।

ଜାହାଜ ଚାଲିଲା ଉତ୍ତର ଆଫ୍ରିକାର ଆଲଜେରିଆ କୂଳବର୍ତ୍ତୀ ସମୁଦ୍ରରେ । ଦୂରରୁ ଦେଖାଯାଉଥାଏ ସେଠାକାର ପର୍ବତ । ସେତେବେଳେ ସେହି ଦେଶ ଥାଏ ଫରାସୀମାନଙ୍କ ଅଧୀନରେ ଏବଂ ଚାଲିଥାଏ ସ୍ଥାନୀୟ ଅଧିବାସୀଙ୍କ ରକ୍ତାକ୍ତ ସ୍ୱାଧୀନତା ସଂଗ୍ରାମ । ଆଲଜେରିଆ ପରେ ଜାହାଜ ଚାଲିଲା ଟିଉନିସିଆ ଦେଶର କୂଳବର୍ତ୍ତୀ ଭୂମଧ୍ୟସାଗରରେ । ତାହାପରେ ଦିଶିଲା ମାଲଟା ଦ୍ୱୀପ । ମାଲଟା ଅତିକ୍ରମ କଲାପରେ ଦୁଇ ଦିନ ପର୍ଯ୍ୟନ୍ତ ସ୍ଥଳଭାଗ ଦିଶିଲା ନାହିଁ ।

କ୍ୟାଣ୍ଟନ ଜାହାଜରେ ଯାତ୍ରୀମାନଙ୍କର ଆମୋଦ ପ୍ରମୋଦ ଲାଗି ନାନାପ୍ରକାର ବ୍ୟବସ୍ଥା ଥାଏ । ସ୍ତ୍ରୀ ପୁରୁଷ ଓ ବାଳକବାଳିକାମାନଙ୍କର ଥରେ ଗୋଟିଏ ଫ୍ୟାନ୍ସି ଡ୍ରେସ୍ ପ୍ରତିଯୋଗିତା ହେଲା । ଝାନ୍ସୀକୁ ତା' ମା ଏପରିଭାବରେ ସଜାଇଦେଲେ ଯେ, ଦେହର ଅଧେ ଅଂଶରେ ରହିଲା ପାଶ୍ଚାତ୍ୟ ପୋଷାକ ଓ ଅନ୍ୟ ଅଧେ ଅଂଶରେ ଭାରତୀୟ ପୋଷାକ । ସେହି ବିଚିତ୍ର ବେଶଭୂଷା ଧାରଣ କରି ଦର୍ଶକ ଓ ବିଚାରକମଣ୍ଡଳୀ ଆଗରେ ନିଜର ପରିଚୟ ଦେଲା— 'ପ୍ରାଚ୍ୟ ଓ ପାଶ୍ଚାତ୍ୟର ଦୁହିତା' । ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ସେ ପ୍ରାଇଜ୍ ପାଇଲା ।

ଜଣେ ସାହେବ ବ୍ୟଙ୍ଗ କରି ତାକୁ ପଚାରିଦେଲେ, "ତୁମର ପିତା କେଉଁ ଦେଶର ଓ ମାତା କେଉଁ ଦେଶର ?" ସେ ତତ୍କ୍ଷଣାତ୍ ଉତ୍ତର ଦେଲା, "ମୋ ପିତା ଇଣ୍ଡିଆନ୍ ଓ ମାତା ଇଉରୋପୀୟାନ୍ ।" କରତାଳି ପଡ଼ିଲା ।

ଜାହାଜ ମିଶରଦେଶର କୂଳେ କୂଳେ ଚାଲିଲା । ରାତିରେ ଦିଗ୍‌ବଳୟ ଉପରେ ଦେଖିବାକୁ ମିଳିଲା ପୋର୍ଟ ସୈୟଦ ବନ୍ଦରର ଡାମିଏଟା ନାମକ ବତିଘର । ଜାନୁଆରୀ ୧୪ ତାରିଖ ଦିନ ପୋର୍ଟ ସୈୟଦଠାରେ କିଛି ସମୟ ପାଇଁ ସ୍ଥଳଭାଗରେ ବୁଲି ଆସିବାଲାଗି ସୁଯୋଗ ମିଳିଲା । ସନ୍ଧ୍ୟାବେଳେ ଜାହାଜ ପ୍ରବେଶ କଲା ସୁଏଜ କେନାଲରେ ।

ତା' ବୟସ ଦୃଷ୍ଟିରୁ ଝିଅ ପ୍ରତ୍ୟେକ ସ୍ଥାନ ବିଷୟରେ କିଛି କିଛି ଶୁଣିବା ଲାଗି ଜିଦ୍ ଧରୁଥାଏ । ତାକୁ ସୁଏଜ୍ କେନାଲ ସମ୍ବନ୍ଧରେ ସୂଚନା ଦେଲି । ଅତୀତରେ ସେହି ସ୍ଥାନରେ ଏସିଆ ଓ ଆଫ୍ରିକା ମହାଦେଶ ଲାଗିରହିଥାଏ । କିନ୍ତୁ ପାଞ୍ଚହଜାର ବର୍ଷ ପୂର୍ବେ ମିଶରଦେଶର ଫାରୋମାନେ ସେଠାରେ କେନାଲ୍ ଖୋଳାଇଥିଲେ । କାଳକ୍ରମେ ତାହା ମରୁ ବାଲିରେ ପୋତିପଡ଼ିଲା । ଅନେକ କାଳ ପରେ ପାରସ୍ୟର ସମ୍ରାଟମାନେ ସେଠାରେ ପୁଣି ଥରେ ନାଳ ଖୋଳିଥିଲେ ।

ତାହା ମଧ୍ୟ ବାଲିରେ ପୋତିଗଲା । ଶେଷରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଫରାସୀ ଇଞ୍ଜିନିୟାର ଫାର୍ଡ଼ିନ୍ୟାଣ୍ଡ ଡି ଲେସେପ୍ ସେଠାରେ କେନାଲ ଖୋଲିବା ସମ୍ଭବ ବୋଲି ଫ୍ରାନ୍ସ ଓ ମିଶର ସରକାରଙ୍କୁ ବୁଝାଇଥିଲେ । ତାଙ୍କ ଯୋଜନା ସଫଳ ହେଲା । କେନାଲ ଖୋଲିବାକୁ ଦଶବର୍ଷ ଲାଗିଗଲା ଏବଂ ୧୮୬୯ ମସିହାରେ ଫରାସୀ ସାମ୍ରାଜ୍ଞୀ ଇଉଜେନିଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା । ପରେ ପରେ, ବ୍ରିଟିଶ ସରକାର ମିଶରର ଅଂଶ କିଣିନେଲେ ଏବଂ ଭାରତ ସାମ୍ରାଜ୍ୟକୁ ଜାହାଜ ଚଳାଇବା ଲାଗି ସିଧା ଜଳପଥ ପାଇଗଲେ । ସୁଏଜ କେନାଲ ଏକଶହ ମାଇଲ ଲମ୍ବ । ଓସାରରେ ମାତ୍ର ଦୁଇଶହ ଫୁଟ । ଗଭୀରତା ୪୨ ଫୁଟ୍ ମାତ୍ର । ଝାନ୍ସୀକୁ କହିଲି, "ଚାରିବର୍ଷ ପୂର୍ବେ ଏହି କେନାଲକୂଳରେ ପ୍ରବଳ ଯୁଦ୍ଧ ଲାଗିଥିବା ଯୋଗୁଁ ମୁଁ ମଧ୍ୟ ପ୍ରାଚ୍ୟର ମୁସଲମାନ ଦେଶ ବାଟେ ପାରସ୍ୟ ସାଗରରେ ଦେଶକୁ ଫେରିଥିଲି ।"

ତହିଁ ପରଦିନ ଜାହାଜ ଚାଲିଲା ଲୋହିତ ସାଗରରେ । ପଶ୍ଚିମରେ ଥାଏ ମିଶର ଓ ସୁଦାନ ଭୂଖଣ୍ଡ । ପୂର୍ବରେ ସାଉଦି ଆରବ । ଜାନୁଆରୀ ୧୮ ତାରିଖ ଦିନ ଲୋହିତ ସାଗରର ଶେଷଭାଗରେ ଥିବା 'ବାବେଲ ମାଣ୍ଡେବ' ପ୍ରଣାଳୀରେ ଜାହାଜ ଚାଲିଲାବେଳେ ତାହାର କୂଳବର୍ତ୍ତୀ ସ୍ଥାନ ସମ୍ବନ୍ଧରେ ପ୍ରଚଳିତ ଗପଟି ଝାନ୍ସୀକୁ ଶୁଣାଇଲି । ବାଇବେଲ୍‌ର ବର୍ଣ୍ଣନା ଅନୁସାରେ ସେଠାରେ ଏକଦା ଅତୀତ ଯୁଗର ଜଣେ ବାବିଲୋନୀୟ ରାଜା ଗୋଟିଏ ସୁଉଚ୍ଚ ଗୁମ୍ବଜ ନିର୍ମାଣ କରିବାକୁ ଚେଷ୍ଟା ଚଳାଇଲେ । ବାବେଲ୍ ନାମକ ସେହି ବିଶାଳ ଗୁମ୍ବଜ ସ୍ୱର୍ଗକୁ ଛୁଇଁବ ବୋଲି ରାଜାଙ୍କର ଆଶା ହେଲା । ତାଙ୍କର ସେପରି କାର୍ଯ୍ୟରେ ବାଧା ଦେବାଲାଗି ସ୍ୱୟଂ ଈଶ୍ୱର ଗୋଟିଏ କୌଶଳ ପ୍ରୟୋଗ କଲେ । ଯେଉଁ ଅସଂଖ୍ୟ ଶ୍ରମିକ ବାବେଲ ନିର୍ମାଣ କାମରେ ଲାଗିଥିଲେ, ସେମାନେ କିଛିସମୟ ପରେ କେହି କାହାରି ଭାଷା ବୁଝିପାରିଲେ ନାହିଁ । ଫଳରେ, ଗୁମ୍ବଜ ତିଆରି ଅନେକ ଦୂର ଆଗେଇଥିଲେ ମଧ୍ୟ, ଶେଷ ହୋଇପାରିଲା ନାହିଁ । କାମ ବନ୍ଦ କରି ଶ୍ରମିକମାନେ ପୃଥିବୀର ଚାରିଆଡ଼କୁ ଚାଲିଗଲେ । ସେଥିଯୋଗୁଁ ମାନବଜାତି ମଧ୍ୟରେ ନାନା ପ୍ରକାର ଭାଷାର ସୃଷ୍ଟି ହେଲା ।

ଲୋହିତ ସାଗର ପରେ ଆରବ ସାଗରରେ ଜାହାଜ ଚାଲିଲା । ଶେଷରେ ସମୁଦ୍ରଯାତ୍ରା ଶେଷ ହେଲା । ବୋମ୍ବେଠାରୁ ଟ୍ରେନ୍‌ରେ ଆସି ଜାନୁଆରୀ ୨୬ ତାରିଖ ଦିନ ସପରିବାର କଟକରେ ପହଞ୍ଚିଲି । ସାନଭାଇ ମନୋଜ, କେତେଜଣ ଆତ୍ମୀୟ ସ୍ୱଜନ ଓ ରେଭେନ୍ସା କଲେଜର ଅନେକ ଛାତ୍ର ଆମମାନଙ୍କୁ ନେବାପାଇଁ ଷ୍ଟେସନରେ ଉପସ୍ଥିତ ଥିଲେ ।



ଟେମସ୍ ନଦୀ କୂଳରେ ରାଜଶ୍ରୀ, ସିଦ୍ଧାର୍ଥ ଓ ସଂଘମିତ୍ରା



ଜଳ ଜାହାଜରେ ଝିଅର ଫ୍ୟାନ୍ସି ଡ୍ରେସ୍



୧୯୬୦ରେ ଲେଖକଙ୍କ ଫଟୋ
(ନେହରୁ ପୁସ୍ତକରେ ମୁଦ୍ରିତ)



ଚାର୍ଲସ ଡାରଉଇନ୍‌ଙ୍କ ନାତିଙ୍କ ସହିତ ରାଜଶ୍ରୀ



ଆଇଭର ଜେନିଂସ୍ ଦମ୍ପତିଙ୍କ ସହିତ ରାଜଶ୍ରୀ

# ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ଆରମ୍ଭ



## କାଶ୍ମୀର ଭ୍ରମଣ [୧୯୬୧]

### ରେଭେନ୍ସା କଲେଜରେ ଯୋଗଦାନ

୧୯୫୯ ଡିସେମ୍ବର ମାସରେ ରେଭେନ୍ସା କଲେଜର ଇତିହାସ ସ୍ନାତକୋତ୍ତର ବିଭାଗକୁ ସରକାର ଉତ୍କଳ ବିଶ୍ୱବିଦ୍ୟାଳୟକୁ ହସ୍ତାନ୍ତର କରିଥିଲେ । ଯେଉଁଦିନ ସେହି ବିଭାଗର ରିଡର ଓ ମୁଖ୍ୟ ଅଧ୍ୟାପକ ରୂପେ କାମରେ ଯୋଗ ଦେଲି, ସେହିଦିନ ରାତିରେ ସପରିବାର ବିଦେଶ ଯାତ୍ରା କରିଥିଲି । ମୋ ଅନୁପସ୍ଥିତି ସମୟରେ ଅଧ୍ୟାପକ ପ୍ରଭାତ ମୁଖାର୍ଜି ବିଭାଗୀୟ ମୁଖ୍ୟ ରୂପେ କାର୍ଯ୍ୟ କଲେ । ୧୯୬୧ ଜାନୁଆରୀ ଶେଷରେ ମୁଁ ଫେରିଆସି ତାଙ୍କ ନିକଟରୁ କାର୍ଯ୍ୟଭାର ଗ୍ରହଣ କଲି ।

ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିବାରୁ କଲେଜର ସରକାରୀ କ୍ୱାର୍ଟାର ମିଳିଲା ନାହିଁ । କଟକ ସହରର ମଙ୍ଗଳାବାଗଠାରେ ଭଡ଼ାଘରଟିଏ ଠିକ୍ କରାଗଲା । ଘରର ଦୁଇପାଖରେ ଦୋକାନ ଓ ଆଗରେ ମୁଖ୍ୟ ରାସ୍ତା । କେଉଁକାଳର ପୁରୁଣା ଘର, ତାହା ଅନୁମାନ କରିହେଲା ନାହିଁ । ଅନ୍ତତଃ ପଚାଶବର୍ଷ ମଧ୍ୟରେ ବାହାରେ ବା ଭିତରେ ଚୂନ ଲାଗି ନ ଥାଏ । ତଳ ତାଲାରେ ଥାଏ ଡ୍ରଇଂରୁମ୍ ଓ ରନ୍ଧାଘର । ଉପର ତାଲାରେ ଦୁଇଟି ଛୋଟ ଛୋଟ କୋଠରି । ବୃଦ୍ଧ ବଙ୍ଗାଳୀ ଘରମାଲିକଙ୍କୁ ଚୂନପାନ କରିବାଲାଗି ଅନୁରୋଧ କଲାବେଳେ ସେ ତଟସ୍ଥ ହୋଇ ଉତ୍ତର ଦେଲେ, "କେତେ ଭଡ଼ାଟିଆ ରହି ଗଲେଣି । ଚୂନରଙ୍ଗ କଥା କେହି କେବେ କହିନାହାନ୍ତି । ଦରକାର ବା କ'ଣ ?" ଦିନେ ରାତିରେ ଅସ୍ରାଏ ଜୋର୍ ବର୍ଷା ହେଲା । ସକାଳେ ଉଠିଲାବେଳକୁ ରନ୍ଧାଘର ଭିତରେ ବାସନକୁସନ ଓ ଭାତହାଣ୍ଡି ସୁଦ୍ଧା ଆଣ୍ଠୁଏ ନର୍ଦ୍ଦମା ପାଣି ଓ ଆବର୍ଜନାରେ ବୁଡ଼ିରହିଛି ।

ଦୈବାତ୍ ସେ ଦିନ ପୁଅକୁ ଦେଖିବାପାଇଁ ପୂଜ୍ୟ ଡାକ୍ତର ଭଗବତୀ ଆଚାର୍ଯ୍ୟଙ୍କୁ ଅନୁରୋଧ କରିଥିଲି । ତାଙ୍କ ପରି ମହାମନା ବ୍ୟକ୍ତି କ୍ୱଚିତ୍ ଦେଖିଛି । ଦୟାଳୁ ଚିକିତ୍ସକ ଭାବରେ ତାଙ୍କର ଯେତିକି ସୁଖ୍ୟାତି ଥାଏ, ଜଣେ ପରୋପକାରୀ ମନୁଷ୍ୟ

ରୂପେ ତାଙ୍କର ସେହିପରି ସୁନାମ ଥାଏ । ଅପରିଷ୍କାର ଓ ଅପରିଚ୍ଛନ୍ନ ପରିବେଶ ମଧ୍ୟରେ ମୋର ଦୁର୍ଦ୍ଦଶା ଦେଖି ସେ ବର୍ଦ୍ଧମାନ କୋଠି ନିକଟରେ ସୁନ୍ଦର ଘରଟିଏ ଠିକ୍ କରିଦେଲେ ।

ଲଣ୍ଡନରେ ବିଜୟଲକ୍ଷ୍ମୀ ପଣ୍ଡିତଙ୍କୁ ମୋ ବହିର ପ୍ରୁଫ୍ କପି ଦେଲାବେଳେ ସେ କହିଥିଲେ ଯେ ଭାରତ ଫେରିଲା ପରେ ନିଜେ ନେହରୁଙ୍କୁ ବହିଖଣ୍ଡିଏ ଉପହାର ଦେଲେ ସେ ଖୁସି ହେବେ । ଲଣ୍ଡନରୁ ମୁଦ୍ରିତ ବହିଗୁଡ଼ିକ ଆସିଗଲା ପରେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀଙ୍କୁ ଚିଠି ଲେଖି ସାକ୍ଷାତ୍‌କାର ଲାଗି ସମୟ ମାଗିଲି । ସେ ନିର୍ଦ୍ଦିଷ୍ଟ ତାରିଖ ଓ ସମୟ ଜଣାଇ ଚିଠି ଦେଲେ । ଟ୍ରେନ୍‌ଯୋଗେ ଦିଲ୍ଲୀ ଯାଇ ପ୍ରଧାନମନ୍ତ୍ରୀଙ୍କ ତିନିମୂର୍ତ୍ତି ବାସଭବନରେ ଯଥାସମୟରେ ପହଞ୍ଚିଲି । ଏପ୍ରିଲ୍ ମାସ । ସେକ୍ରେଟାରୀ ମହାଶୟ ମୋତେ ଦେଖି ଅପ୍ରସ୍ତୁତ ଅବସ୍ଥାରେ ଦୁଃଖ କରି କହିଲେ, ''ପ୍ରଧାନମନ୍ତ୍ରୀ କିଛିଦିନ ବିଶ୍ରାମ ଲାଗି କୁଲୁ ଉପତ୍ୟକା ଚାଲିଯାଇଛନ୍ତି । ସାତଦିନ ପରେ ଫେରିବେ । ଆପଣ ଦୟାକରି କିଛିଦିନ ରହିଯାଆନ୍ତୁ ।''

କ୍ଷୋଭ ପ୍ରକାଶ ପୂର୍ବକ କହିଲି, ''ପ୍ରଧାନମନ୍ତ୍ରୀଙ୍କ କୁଲୁଯାତ୍ରା ପ୍ରୋଗ୍ରାମ୍ ନିଶ୍ଚୟ କିଛିଦିନ ଆଗରୁ ଠିକ୍ ହୋଇଥିବ ଓ ଆପଣ ତାହା ଜାଣିଥିବେ । ମୋତେ ଟେଲିଗ୍ରାମ୍‌ଟିଏ କରିଦେଇଥିଲେ ମୁଁ ଆସି ନ ଥାନ୍ତି । ହାତରୁ ଅର୍ଥବ୍ୟୟ କରି ଆସିଲାପରେ ପୁଣି ସପ୍ତାହ କାଳ ଦିଲ୍ଲୀରେ ଅପେକ୍ଷା କରିବାଲାଗି ମୋ ପାଖରେ ସମ୍ବଳ ନାହିଁ କି ସମୟ ନାହିଁ ।'' ସେ ଅଧିକ କିଛି କହିବା ପୂର୍ବରୁ ମୁଁ 'ଧନ୍ୟବାଦ' ଜଣାଇ ଚାଲିଆସିଲି । ନେହରୁଙ୍କୁ ସ୍ୱହସ୍ତରେ ବହି ଉପହାର ଦେବା ସୁଯୋଗ ମିଳିଲା ନାହିଁ । ୧୯୬୩ ମସିହାରେ ସେ ଯେତେବେଳେ ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ଆସିଥିଲେ, ସେତେବେଳେ ତାଙ୍କ ସହିତ ସାକ୍ଷାତଲାଗି କଂଗ୍ରେସ କର୍ମକର୍ତ୍ତାମାନଙ୍କୁ ସମୟ ମାଗିଥିଲି । କିନ୍ତୁ ଦୁର୍ଭାଗ୍ୟକୁ ଅକସ୍ମାତ ସେ ପୀଡ଼ିତ ହେବା ଫଳରେ ତାଙ୍କର ସମସ୍ତ କାର୍ଯ୍ୟକ୍ରମ ବାତିଲ ହେଲା ।

## କାଶ୍ମୀର ଯାତ୍ରା, ମେ ୧୯୬୧

ରେଭେନ୍ସାରେ ଥିଲାବେଳେ ଆମେରିକା ଦୂତାବାସ ପକ୍ଷରୁ କାଶ୍ମୀର ରାଜଧାନୀ ଶ୍ରୀନଗର ଠାରେ ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକର ମୁଖ୍ୟ ଇତିହାସ ଅଧ୍ୟାପକମାନଙ୍କର ଏକ ତିନିସପ୍ତାହବ୍ୟାପୀ ସମ୍ମିଳନୀ ଆୟୋଜନ କରାଯାଇଥିଲା । କୁଳପତି ପରିଜା ସେଥିରେ ଯୋଗଦେବା ଲାଗି ମୋତେ ପଠାଇଲେ । ସେହି ଅବକାଶରେ କାଶ୍ମୀର ଉପତ୍ୟକାର ସୌନ୍ଦର୍ଯ୍ୟ ଉପଭୋଗ କରିବାଲାଗି ସୁଯୋଗ ମିଳିଲା । ସମୟ ଥାଏ ମେ ମାସ ।

ଦିଲ୍ଲୀଠାରୁ ବିମାନଯୋଗେ ଶ୍ରୀନଗରଠାରେ ପହଞ୍ଚିଲି । ଝେଲମ୍ ନଦୀ କୂଳରେ ଅବସ୍ଥିତ ଶ୍ରୀନଗର ସହରର ମନୋମୁଗ୍ଧକର ପରିବେଶ ଦେଖି ମନେହେଲା, କାଶ୍ମୀର ଉପତ୍ୟକାକୁ 'ଭୂସ୍ୱର୍ଗ' ନାମରେ କଥିତ କରିବା ଯଥାର୍ଥ । ସମୁଦ୍ରପତ୍ତନଠାରୁ ୫ ହଜାର ଫୁଟ ଉଚ୍ଚରେ ଅବସ୍ଥିତ ସହରର ଉତ୍ତର ଦିଗରେ ଦେଖାଯାଉଥାଏ ଶ୍ୱେତଶୁଭ୍ର ହିମାଳୟ ପର୍ବତମାଳା । ନଦୀକୂଳବର୍ତ୍ତୀ ସ୍ଥାନ ସମେତ ସହରର ସବୁସ୍ଥାନରେ ନାନା ରଙ୍ଗର ଫୁଲ ଦେଖି ଜଣାଯାଉଥାଏ, ଶ୍ରୀନଗର ହେଉଛି ଏକ ପୁଷ୍ପଶୋଭିତ ରାଜଧାନୀ । ଝେଲମନଦୀରେ ଭାସମାନ ଥିବା ବୋଇତ ବା 'ଗଣ୍ଡୋଲା'ଗୁଡ଼ିକରେ ପର୍ଯ୍ୟଟକମାନଙ୍କ ରହିବାଲାଗି 'ବୋଟ ହାଉସ୍'ମାନ ରହିଥାଏ । ତିନିଜଣ ଅଧ୍ୟାପକଙ୍କ ସହିତ ମୁଁ ଗୋଟିଏ ବୋଟ୍‌ହାଉସ୍‌ରେ ରହିଲି । ଖାଇବାଲାଗି ବନ୍ଦୋବସ୍ତ ଥାଏ । କାଶ୍ମୀରୀ ପୂଝାରୀମାନେ ଖାଦ୍ୟ ପ୍ରସ୍ତୁତ କରୁଥିଲେ ଓ ମୁସଲମାନୀ ଆଦବକାୟଦାରେ ଅତିଥିଚର୍ଚ୍ଚାରେ ବ୍ୟସ୍ତ ରହୁଥିଲେ । ନୌକାଗୁଡ଼ିକ ନଦୀକୂଳ ପାଖରୁ କିଛିଦୂରରେ ପାଣିରେ ଭାସୁଥାଏ ଏବଂ ଯିବା ଆସିବା ଲାଗି କାଠପଟା ପଡ଼ିଥାଏ । କୂଳରେ ଫୁଟିଥାଏ ନାନା କିସମର ଫୁଲ ।

ସେତେବେଳେ ଶ୍ରୀନଗର ଥିଲା ଶାନ୍ତ ସୁନ୍ଦର ସହର । ବିଦେଶୀ ପର୍ଯ୍ୟଟକମାନଙ୍କୁ ସବୁଆଡ଼େ ବୁଲାବୁଲି କରିବା ଦେଖାଯାଉଥାଏ । ବାଟେଘାଟେ, ଦୋକାନ ବଜାରରେ କାଶ୍ମୀରୀମାନଙ୍କର ବ୍ୟବହାର ଦେଖି ମନକୁ ଆନନ୍ଦ ଆସୁଥାଏ । ମୁସଲମାନ ଭଦ୍ରଲୋକମାନେ ସଲାମ୍ କରିବା ସହ ଆମମାନଙ୍କର ସୁବିଧା ଅସୁବିଧା ବିଷୟ ପଚାରୁଥାନ୍ତି । ଇତିହାସ ସମ୍ମିଳନୀ ଉଦ୍‌ଘାଟନ କରିଥିଲେ ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଗୋଲାମ ମହମ୍ମଦ ସାଦିକ । ଆନୁଷ୍ଠାନିକ ଉତ୍ସବ ପରେ ସେ ସମସ୍ତଙ୍କ ସହିତ ବ୍ୟକ୍ତିଗତ ଭାବେ କଥାବାର୍ତ୍ତା କରିବାକୁ ଆଗ୍ରହ ଦେଖାଇଥିଲେ । ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଯୋଗୁଁ ବିଦେଶୀ ତଥା ଭାରତୀୟ ପର୍ଯ୍ୟଟକମାନେ କାଶ୍ମୀର ପ୍ରତି ଆକର୍ଷିତ ହେଉଥିଲେ ।

ଆମ ସମ୍ମେଳନ ବସୁଥାଏ ଗୋଟିଏ ବଡ଼ ହୋଟେଲର ହଲ୍ ଭିତରେ । ଦିନ ୧୦ଟାରୁ ୧ଟା ମଧ୍ୟରେ ଆଲୋଚନା ଶେଷ କରି ମଧ୍ୟାହ୍ନଭୋଜନ ପରେ ବାହାରି ଯାଉଥାଉଁ ସହରର ଭିନ୍ନ ଭିନ୍ନ ସ୍ଥାନରେ ବୁଲିବା ଲାଗି । ଦର୍ଶନୀୟ ସ୍ଥାନର ଅଭାବ ନ ଥାଏ । ପଞ୍ଚଦଶ ଶତାବ୍ଦୀରେ ନିର୍ମିତ ହୋଇଥିବା ସେଠାକାର ଜମ୍ମା ମସଜିଦ୍ ମଧ୍ୟଯୁଗୀୟ ସ୍ଥାପତ୍ୟର ଗୋଟିଏ ଚିତ୍ତାକର୍ଷକ ନିଦର୍ଶନ ରୂପେ ବିବେଚିତ ହୁଏ । ପ୍ରସିଦ୍ଧ ଦାଲ୍ ହ୍ରଦ, ସାଲିମାର ବାଗ୍ ଓ ନିଶାଦ୍ ବାଗ୍ ଉଦ୍ୟାନ ଦେଖିବାକୁ ଅନେକ ଦର୍ଶକ ଆସୁଥିଲେ ।

ଦିନେ ଆମେରିକୀୟ ଅଧ୍ୟାପକମାନଙ୍କ ସହିତ ଆମେ ଦୂରବର୍ତ୍ତୀ ଗୁଲ୍‌ମାର୍ଗ ଓ ବାରାମୂଲା ନାମକ ସ୍ଥାନରେ ଭ୍ରମଣ କରିବାକୁ ଗଲୁଁ । ଗୁଲ୍‌ମାର୍ଗର ସୀମାହୀନ ସବୁଜ ତୃଣଭୂମିର ଚାରିଦିଗରେ ଫୁଟିଥିବା ଅସରନ୍ତି ଫୁଲର ଶୋଭା ଦେଖି

ମନେ ହେଉଥାଏ ସତେଯେପରି ପ୍ରକୃତିରାଣୀ ସେହି ସ୍ଥାନକୁ ଆପଣା ହସ୍ତରେ ସୁଶୋଭିତ କରି ରଖିଛନ୍ତି । କ୍ଷୁଦ୍ର ସହରର ଏଣେତେଣେ ସ୍ଥାନୀୟ ବାସିନ୍ଦାମାନଙ୍କର ବାସଗୃହ ରହିଥାଏ । ସୀମାବର୍ତ୍ତୀ ଅଞ୍ଚଳରେ ଭରି ରହିଥାଏ ପାଇନ୍ ଓ ଦେବଦାରୁ ବୃକ୍ଷର ଘନ ଅରଣ୍ୟ । ଅନେକ ଦୂରରେ ଦେଖାଯାଉଥାଏ ତୁଷାରମଣ୍ଡିତ ପର୍ବତମାଳା ।

ତିନି ସପ୍ତାହ ଶ୍ରୀନଗର ରହଣି ସମୟରେ କେତୋଟି ଦର୍ଶନୀୟ ମନ୍ଦିର ଓ ମସ୍‌ଜିଦ୍ ଦେଖିବାକୁ ମିଳିଥିଲା । ହ୍ରଦ, ନଦୀ ଓ ହିମାଳୟର ଦୃଶ୍ୟ ଦେଖି ଦେଖି ସେତକ ସମୟ ଆନନ୍ଦରେ ବିତିଲା । ଫେରିଲାବେଳେ ବିମାନଯୋଗେ ନଆସି ବାସ୍ ଓ ଟ୍ରେନ୍ ଯୋଗେ ଆସିବାପାଇଁ ଠିକ୍ କଲି । କାରଣ, ଦେଶର ଦୀର୍ଘତମ ସୁଡ଼ଙ୍ଗପଥ 'ବନିହାଲ ପାଶ୍' ଦେଖିବାକୁ ଇଚ୍ଛା ହେଲା । ଶ୍ରୀନଗର ଠାରୁ ଅନନ୍ତନାଗ ଓ ସେଠାରୁ ଜମ୍ମୁ ସହର ପର୍ଯ୍ୟନ୍ତ ଥିବା ସୁଦୀର୍ଘ ଗିରିପଥରେ ବାସ୍‌ରେ ଆସିଲାବେଳେ ବାଟରେ ପଡ଼େ ବନିହାଲ୍ ପାଶ୍ । ପର୍ବତ ପରେ ପର୍ବତ ପେଟ ଭିତର ଦେଇ ଖୋଳାଯାଇଥିବା ସେହି ସୁଡ଼ଙ୍ଗପଥ ଆଧୁନିକ ଇଞ୍ଜିନିୟାର୍‌ମାନଙ୍କର ଏକ ଦୁଃସାଧ୍ୟ କୀର୍ତ୍ତି ବୋଲି ବିବେଚନା କରାଯାଇପାରିବ । ଜମ୍ମୁ ସହରରେ ଗୋଟିଏ ଦିନ ରହି ସେଠାକାର ଦୃଶ୍ୟ ଉପଭୋଗ କଲି । ସେଠାରୁ ପଠାନକୋଟ୍ ଓ ଆମ୍ବାଲା ଆସି ଟ୍ରେନ୍‌ଯୋଗେ ଦିଲ୍ଲୀ ଫେରିଲି ।

## ବାଣୀବିହାର ଠାରେ ଅବସ୍ଥାନ

୧୯୬୧ ସେପ୍ଟେମ୍ବର ମାସରେ ବିଶ୍ୱବିଦ୍ୟାଳୟ ପ୍ରଫେସର ପଦ ପୂରଣ ନିମନ୍ତେ ମନୋନୟନ କମିଟି ବସିଲା । ସେ ପର୍ଯ୍ୟନ୍ତ ଇତିହାସ ବିଭାଗରେ ପ୍ରଫେସର ପଦ ସୃଷ୍ଟି ହୋଇ ନଥାଏ । ମନୋନୟନ କମିଟିର ସୁପାରିଶ ଅନୁଯାୟୀ ମୁଁ ସେହି ପଦବୀକୁ ଉନ୍ନୀତ ହେଲି । କୁଳପତି ପରିଜା ଉପଦେଶ ଦେଲେ, "ଅଧ୍ୟାପକମାନଙ୍କର ଦକ୍ଷତା ଓ କୃତିତ୍ୱ ବଳରେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ବଢ଼େ । ମୁଖ୍ୟ ଅଧ୍ୟାପକ ପଦ ପାଇଲାପରେ ଏହି କଥାଟି ମନେରଖିବ ।" ମୋର ବୟସ ହୋଇଥାଏ ୩୫ ବର୍ଷ । ଅନୁମାନ କରି ନଥିଲି, ଦୀର୍ଘ ୨୨ ବର୍ଷ ମୋତେ ସେହି ପଦବୀରେ କାର୍ଯ୍ୟ କରିବାକୁ ହେବ । ଏକଥା ମଧ୍ୟ ଚିନ୍ତାଶକ୍ତିର ବାହାରେ ଥିଲା ଯେ ଦିନେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ ନିମନ୍ତେ ମୋତେ ଆହ୍ୱାନ କରାଯିବ ।

ପ୍ରଫେସର ହେଲାବେଳେ ରେଭେନ୍ସା କଲେଜରେ ଏମ୍.ଏ. କ୍ଲାସ୍ ହେଉଥାଏ । ତେଣେ, ବାଣୀବିହାର ଠାରେ ବିଶ୍ୱବିଦ୍ୟାଳୟ ଘରଦ୍ୱାର ନିର୍ମାଣ ଚାଲିଥାଏ । ଶେଷରେ ୧୯୬୨ ଜୁଲାଇ ମାସରେ କଟକଠାରୁ ବାଣୀବିହାରଠାକୁ ବିଶ୍ୱବିଦ୍ୟାଳୟର ଅଫିସ ଓ ଡିପାର୍ଟମେଣ୍ଟଗୁଡ଼ିକ ସ୍ଥାନାନ୍ତରିତ ହେଲା । ସେହି ସମୟରୁ ଆରମ୍ଭ ହେଲା ବାଣୀପୀଠ ବାଣୀବିହାର ଠାରେ ଅବସ୍ଥାନ ।

# ସୋଭିଏତ୍ ରୁଷ୍ ଯାତ୍ରା [୧୯୬୨]



## ଭ୍ରମଣ କାଳର ଅନୁଭୂତି

### ରୁଷ୍ ଯାତ୍ରା ଲାଗି ଭାରତ ସରକାରଙ୍କ ଆଦେଶ

୧୯୬୨ ମସିହା ସେପ୍ଟେମ୍ବର ୪ ତାରିଖ । ଭାରତ ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗରୁ ଚିଠି ପାଇଲି ଯେ ସୋଭିଏତ ସଂଘର ତିନିଗୋଟି ବିଶ୍ୱବିଦ୍ୟାଳୟରେ ଭାଷଣ ଦେବା ଲାଗି ମୋତେ ମନୋନୀତ କରାଯାଇଛି । କୁଳପତି ପରିଜା କହିଲେ, "ସୋଭିଏତ ଦେଶ ଦେଖିବାକୁ ସମସ୍ତେ ଅନୁମତି ପାଆନ୍ତି ନାହିଁ । ସରକାର ତୁମକୁ ପଠାଉଥିବାରୁ ଅପୂର୍ବ ସୁଯୋଗ ପାଇଗଲ ।"

ସୋଭିଏତ ରୁଷିଆ 'ଲୌହ ପରଦା ଅନ୍ତରାଳର ଦେଶ' ବୋଲି ପୃଥିବୀବାସୀ ଜାଣିଥାନ୍ତି । ଲେନିନ ଓ ଷ୍ଟାଲିନଙ୍କ ସମୟରୁ କମ୍ୟୁନିଷ୍ଟ ଶାସିତ ସେହି ସୁବିଶାଳ ଦେଶ ସତେ ଯେପରି ଥାଏ ଏକ ନିଷିଦ୍ଧ ଭୂଖଣ୍ଡ । ଅପରପକ୍ଷରେ, ସେଠାକାର ନୂତନ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ସମ୍ବନ୍ଧରେ ଅନେକ କଥା ପଢ଼ିବାକୁ ମିଳୁଥାଏ । ମହାନ୍ ରୁଷ ବିପ୍ଲବର କାହାଣୀ, ଲେନିନଙ୍କ କୃତିତ୍ୱ ଗାଥା, ଷ୍ଟାଲିନ ଯୁଗର ଶାସନ କଥା, ସାମ୍ୟବାଦର ଜୟଯାତ୍ରା, ମହାଶକ୍ତି ଭାବେ ରୁଷିଆର ଅଭ୍ୟୁତ୍ଥାନ ଇତ୍ୟାଦି ଅନେକ ବିଷୟ ଶୁଣି ଶୁଣି ବୋଧ ହେଉଥାଏ, ରୁଷିଆ ହେଉଛି ଏକ ଆଶ୍ଚର୍ଯ୍ୟଜନକ ଦେଶ । ଧାରଣା ଆସିଯାଇଥାଏ, ସୋଭିଏତ ଦେଶରେ ଧନୀ ନାହିଁ କି ଗରିବ ନାହିଁ, ସମାଜରେ ଶୋଷକ କିମ୍ବା ଶୋଷିତ ନାହାନ୍ତି, ସମସ୍ତେ କର୍ମଠ, ସମସ୍ତେ ସୁଖୀ, ପ୍ରତ୍ୟେକେ ନିଜ ନିଜର ସାମର୍ଥ୍ୟ ଅନୁଯାୟୀ କାର୍ଯ୍ୟ କରିବାକୁ ବାଧ୍ୟ ଏବଂ ଆବଶ୍ୟକତା ଅନୁସାରେ ନିଜ ନିଜର ଜୀବନ ଧାରଣ ପାଇଁ ସକ୍ଷମ । ସେତେବେଳେ ସୋଭିଏତ ରୁଷିଆ ଥାଏ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଧାନ ପ୍ରବକ୍ତା । ସେହି ଦେଶ ଥାଏ ସର୍ବହରା ଜଗତର ଆଶା ଓ ଭରସା । ପୁଞ୍ଜିବାଦୀ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକର ଭୟ ଥାଏ ରୁଷିଆ ପ୍ରତି ଏବଂ ସୋଭିଏତ ସରକାରଙ୍କ ସାମରିକ ଶକ୍ତି ପାଶ୍ଚାତ୍ୟ ଶକ୍ତିମାନଙ୍କ ମନରେ ଆତଙ୍କ ସୃଷ୍ଟି କରୁଥାଏ ।

ସେପରି ଦେଶକୁ ଯାଇପାରିବି ବୋଲି ଆନନ୍ଦର ସୀମା ରହିଲା ନାହିଁ । ଟେଲିଗ୍ରାମ୍ ଦ୍ୱାରା ଯିବାଲାଗି ସମ୍ମତି ଜଣାଇଲି । ନିର୍ଦ୍ଦେଶ ଆସିଲା, ତାସକେନ୍ଦ, ଲେନିନଗ୍ରାଡ଼ ଓ ମସ୍କୋ ବିଶ୍ୱବିଦ୍ୟାଳୟରେ ଏବଂ ଅନ୍ୟ କେତେଗୋଟି ଅନୁଷ୍ଠାନରେ ଭାରତୀୟ ଜାତୀୟ ସଂଗ୍ରାମ, ବ୍ରିଟିଶ ଯୁଗର ଶାସନ ଓ ଶୋଷଣ ନୀତି, ଦେଶୀୟ ରାଜ୍ୟରେ ପ୍ରଜା ବିଦ୍ରୋହ ଓ ରାଜାମାନଙ୍କର ସ୍ୱେଚ୍ଛାଚାରୀ ଶାସନ ଇତ୍ୟାଦି ବିଷୟରେ ବକ୍ତୃତା ଦୋବାକୁ ପଡ଼ିବ । ବିଷୟବସ୍ତୁଗୁଡ଼ିକ ଚିନ୍ତା କରିନେଲି । ତେଣେ, ସୋଭିଏତ ଭ୍ରମଣର କଳ୍ପନାରେ ମନ ଚଞ୍ଚଳ ହୋଇଉଠିଲା । ଦୁଇଥର ବିଦେଶ ଭ୍ରମଣର ଅଭିଜ୍ଞତା ଥାଏ । ସୁବିଧା ଅସୁବିଧା ଓ କଷ୍ଟ ପରିଶ୍ରମ ସତ୍ତ୍ୱେ ନୂତନ ନୂତନ ସ୍ଥାନ ଦେଖିବା ସମୟରେ ଯଥେଷ୍ଟ ଆତ୍ମସନ୍ତୋଷ ମିଳିଥାଏ । ସୋଭିଏତ ଦେଶର ସମାଜ, ଧର୍ମ, ରୀତିନୀତି, ଶାସନ ବ୍ୟବସ୍ଥା ଓ ମାର୍କସବାଦୀ ଅର୍ଥନୀତି ସମ୍ପର୍କରେ ଅଳ୍ପ ବହୁତ ଜାଣିହେବ ବୋଲି ବିଶ୍ୱାସ ଆସିଲା । ଅବଶ୍ୟ, କେବଳ ୩୦ ଦିନ ଲାଗି ସରକାର ସେଠାକୁ ପଠାଉଥିଲେ । ତଥାପି, ସେହି ସମୟର ପ୍ରତ୍ୟେକ ଘଣ୍ଟା ସଦୁପଯୋଗ କରିବି ବୋଲି ସଂକଳ୍ପ ନେଲି । ମୋ ପାଶ୍‌ପୋର୍ଟ ଇତ୍ୟାଦି ପ୍ରସ୍ତୁତ କରିବା ଥିଲା ସରକାରଙ୍କ ଦାୟିତ୍ୱ । ଅକ୍ଟୋବର ୮ ତାରିଖ ଦିନ ଦିଲ୍ଲୀରେ ପହଞ୍ଚିବା ପାଇଁ ଟେଲିଗ୍ରାମ ପାଇ ୫ ତାରିଖ ସନ୍ଧ୍ୟାରେ ପୁରୀ ଏକ୍ସପ୍ରେସ ଯୋଗେ କଲିକତା ଗଲି ।

ରୁଷ ଦେଶର ଶୀତ ସମ୍ବନ୍ଧରେ ଧାରଣା ଥିଲା । ସେଥିପାଇଁ କଲିକତାରେ ଗୋଟିଏ ଦିନ ରହି ଗରମ ପୋଷାକ କିଣିଲି । ୭ ତାରିଖ ଦିନ ବିମାନ ଯୋଗେ ଦିଲ୍ଲୀରେ ପହଞ୍ଚିଲି । ୮ ତାରିଖ ଦିନ ସାଂସ୍କୃତିକ ବ୍ୟାପାର ବିଭାଗର କର୍ମକର୍ତ୍ତାମାନଙ୍କ ସହିତ ସାକ୍ଷାତ କରିବା କଥା । କିନ୍ତୁ ସେ ଦିନ ଥାଏ ଦୁର୍ଗାପୂଜା । ଅଫିସଗୁଡ଼ିକ ବନ୍ଦ ଥିଲା । ମିସ୍ କିଚଲୁ ନାମକ ସଚିବଙ୍କ ସହିତ ଫୋନରେ କଥାବାର୍ତ୍ତା କଲି । ସେ ଜଣାଇଲେ, ୯ ତାରିଖ ପ୍ରଭାତ ୫ଟା ବେଳେ ପାଲାମ ବିମାନ ଘାଟିରେ ପହଞ୍ଚିଲେ ସେଠାରେ ସେ ଥିବେ ଓ ଦରକାରୀ କଥାଗୁଡ଼ିକ ମୋତେ ଜଣାଇଦେବେ । ସକାଳ ୭ଟାରେ ରୁଷ ଅଭିମୁଖେ ବିମାନ ଛାଡ଼ିବ ।

ଅପରାହ୍ଣ ୪ଟା ବେଳକୁ ଦିଲ୍ଲୀର ରେଡ଼ ଫୋର୍ଟ ଦେଖିବାକୁ ଗଲି । ଦଶମ ଶ୍ରେଣୀରେ ପଢୁଥିବା ମୋ ଝିଅ ଝାନ୍‌ସୀ ନିଜକୁ କମ୍ୟୁନିଷ୍ଟ କହି ଗର୍ବ କରୁଥାଏ । ଜିଦ୍ କରି କହିଥିଲା, ସୋଭିଏତ ନେତା କ୍ରୁଶ୍ଚେଭଙ୍କ ପାଇଁ ତା ତରଫରୁ ଗୋଟିଏ ଛୋଟ ଖେଳନା ନେଇ ଉପହାର ଦେବାକୁ । କାମଟି ଅସମ୍ଭବ ଜାଣି ସୁଦ୍ଧା ଚେଷ୍ଟା କରିବି ବୋଲି ତାକୁ ଜବାବ୍ ଦେଇଥିଲି । ରେଡ଼ ଫୋର୍ଟ ଭିତରେ ଥିବା ଗୋଟିଏ ଦୋକାନରୁ ଦୁଇଟି ଛୋଟ ହାତୀ କିଣିଲି, ଗୋଟିଏ ଚନ୍ଦନ

କାଠରେ ଓ ଅନ୍ୟଟି ମାର୍ବଲରେ ତିଆରି । ଭାବିଲି, ମସ୍କୋରେ ରହିବା ସମୟରେ କ୍ରୁଶ୍ଚେଭଙ୍କ ନିକଟକୁ ତାହା ପଠାଇଦେବି ।

ସନ୍ଧ୍ୟାବେଳେ ଦିଲ୍ଲୀର ରାମଲୀଳା ପଡ଼ିଆରେ ବିଶାଳ ଜନ ସମାଗମ ଦେଖିଲି । ନବମୀ ତିଥି । ଦୁର୍ଗାପୂଜା ଉତ୍ସବର ସେହି ରାତିରେ ରାବଣ, କୁମ୍ଭକର୍ଣ୍ଣ ଓ ମେଘନାଦଙ୍କର ଅତିକାୟ ପ୍ରତିମୂର୍ତ୍ତିରେ ଅଗ୍ନି ସଂଯୋଗ କରାଗଲା । ବିପୁଳ ହର୍ଷଧ୍ୱନି ମଧ୍ୟରେ ଅନେକ ସମୟ ଧରି ବହୁ ରଙ୍ଗର ଆଲୋକ ପ୍ରକଟନ କରି ସେହି ଭୟଙ୍କର ରାକ୍ଷସ ମୂର୍ତ୍ତିଗୁଡ଼ିକ ଜଳିବାକୁ ଲାଗିଲା । ରାବଣ ପୋଡ଼ି ଉତ୍ସବ ଦେଖୁଥିଲେ ସ୍ୱୟଂ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ । ପ୍ରଚଣ୍ଡ ଶବ୍ଦ ମଧ୍ୟରେ କାଗଜ ଓ ବାରୁଦ ନିର୍ମିତ ମୂର୍ତ୍ତିଗୁଡ଼ିକ ଚାହୁଁ ଚାହୁଁ ଭସ୍ମ ହେଲା ।

ସେ ରାତିର ଆନନ୍ଦ ଉତ୍ସବ ମଧ୍ୟରେ ବୁଡ଼ି ରହିଥିବା ରାଜଧାନୀର କୌଣସି ବ୍ୟକ୍ତି ହୁଏତ ଜାଣି ନ ଥିଲେ ଯେ, ଭାରତବାସୀ କଳ୍ପିତ ପୌରାଣିକ ଦାନବ ସହିତ ଯୁଦ୍ଧ କରୁଥିଲା ବେଳେ, ତେଣେ ଦେଶର ପ୍ରକୃତ ଶତ୍ରୁ ହିମାଳୟର ଉତ୍ତୁଙ୍ଗ ପ୍ରାଚୀର ଭେଦକରି ଆକ୍ରମଣ ଲାଗି ପ୍ରସ୍ତୁତ ହେଲାଣି । ଅଳ୍ପ କେତୋଟି ଦିନ ମଧ୍ୟରେ ଆରମ୍ଭ ହୋଇଗଲା ଚୀନାମାନଙ୍କ ଭାରତ ଆକ୍ରମଣ । ମାସକ ପରେ ମୁଁ ଯେତେବେଳେ ରୁଷ ଭ୍ରମଣ ଶେଷ କରି ଦିଲ୍ଲୀକୁ ଫେରିଆସିଲି, ସେତେବେଳକୁ ଦାରୁଣ ବିଷାଦର ଛାୟା ତଳେ ରାଜଧାନୀ ବୁଡ଼ି ରହିଥାଏ ।

ରାତି ୩ଟା ବେଳେ ହୋଟେଲ ଛାଡ଼ିଲି । ପକେଟରେ ରଖିଲି ଖଣ୍ଡିଏ ଛୋଟ ନୋଟ୍ ଖାତା । ପ୍ରତ୍ୟେକ ଦିନ ଯାହା ସବୁ ଦେଖିବି, ସେଗୁଡ଼ିକ ଖାତାରେ ଟିପି ରଖିବି ବୋଲି ଠିକ୍ କଲି । ସେହି ନୋଟ୍ ଖାତାରେ ଥିବା ବିବରଣୀ କ୍ରମାନ୍ୱୟ ଭାବରେ ଏଠାରେ ଲେଖି ଯାଉଛି ।

## ୯ ଅକ୍ଟୋବର ୧୯୬୨: ହିମାଳୟ ଅତିକ୍ରମର ଦୃଶ୍ୟ

ସୂର୍ଯ୍ୟୋଦୟର ଅନେକ ଆଗରୁ ପାଲାମ ବିମାନ ଘାଟି ଦିଗରେ ଟ୍ୟାକ୍ସି ଚାଲିଲା ବେଳେ ଦିଲ୍ଲୀ ଥାଏ ଅନ୍ଧକାରାଛନ୍ନ ଓ ନିଦ୍ରିତ । ପ୍ରତ୍ୟୁଷ ୫ଟା ପୂର୍ବରୁ ସେଠାରେ ପହଞ୍ଚିଲା ବେଳକୁ ଦୁଇଜଣ ପଦସ୍ଥ ଅଫିସାର ମୋତେ ଅପେକ୍ଷା କରିଥିଲେ । ସେମାନେ ପାଶପୋର୍ଟ ଓ ଅନ୍ୟ କାଗଜପତ୍ର ଧରାଇଦେଲେ । ସେତିକିବେଳେ ସୋଭିଏତ ଦୂତାବାସର ଜଣେ କର୍ମଚାରୀ ଆସି ପହଞ୍ଚିଗଲେ । ସୋଭିଏତ ଦେଶରେ ନିର୍ଦ୍ଧାରିତ ହୋଇଥିବା କାର୍ଯ୍ୟସୂଚୀଟି ତାଙ୍କ ପାଖରୁ ପାଇଲି । ଅଳ୍ପ ସମୟ ପରେ ଦୁଇଟି ବଡ଼ ବଡ଼ କାଗଜ ବାକ୍ସ ଧରିଥିବା ଲୋକଙ୍କ ସାଙ୍ଗରେ ମିସ୍ ଭି.କିଚଲୁ ମୋ ପାଖରେ ପହଞ୍ଚିଲେ । ବାକ୍ସ ଦୁଇଟି ବିମାନରେ

ଯିବ । ରୁଷିଆରେ ବିଭିନ୍ନ ପର୍ଯ୍ୟାୟର ଲୋକଙ୍କୁ ସେଥିରେ ଥିବା ଉପହାରଗୁଡ଼ିକ ବାଣ୍ଟିଦେବା ଲାଗି ମୋତେ ପରାମର୍ଶ ଦେଲେ । ଜିନିଷଗୁଡ଼ିକର ତାଲିକା ଦେଖି ଜାଣିଲି, କାଶ୍ମୀର ଠାରୁ ଆସାମ ଓ ଓଡ଼ିଶା ପର୍ଯ୍ୟନ୍ତ ସ୍ଥାନୀୟ ହସ୍ତଶିଳ୍ପର ସୁନ୍ଦର ସୁନ୍ଦର ନମୁନାମାନ ଦିଆ ଯାଇଛି । କିଚଲୁ ମୋତେ କହିଲେ, "ଆପଣ ନିଜକୁ ଭାରତୀୟ ଜନସାଧାରଣଙ୍କ ଆମ୍ବାସାଡ଼ର ବୋଲି ଭାବିବେ, ସରକାରଙ୍କ ରାଷ୍ଟ୍ରଦୂତ ନୁହେଁ । ଆମ ଦେଶର ଲୋକଙ୍କ ତରଫରୁ ସୋଭିଏତ ଲୋକଙ୍କୁ ଗୋଟିଏ ଗୋଟିଏ ସଦିଚ୍ଛାମୂଳକ ଉପହାର ଦେବା ନିମନ୍ତେ ଏଗୁଡ଼ିକ ଦଆଗଲା ।"

ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଭାବେ କିଚଲୁ ପରାମର୍ଶ ଦେଲେ, "ରୁଷିଆ ହେଉଛି କଠୋର ଶୃଙ୍ଖଳାବୋଧର ଦେଶ । ସବୁ ସ୍ଥାନରେ ପ୍ରୋଗ୍ରାମ୍ ଅନୁସାରେ କାର୍ଯ୍ୟ କରିବେ । ପଙ୍କ୍‌ଚୁଆଲିଟି ରକ୍ଷା କରିବେ । କୌଣସି ପ୍ରକାର ବ୍ୟତିକ୍ରମ କରିବେ ନାହିଁ ।"

ନିୟମ ଅନୁଯାୟୀ ସାଙ୍ଗରେ ମାତ୍ର ୭୫ ଟଙ୍କା ଭାରତୀୟ ମୁଦ୍ରା ନେଇପାରିଲି । ପାଖରେ ଥିବା ବଳକା ଦୁଇଶହ ଟଙ୍କା ଜଣେ ଭାରତୀୟ କର୍ମଚାରୀଙ୍କ ପାଖରେ ରଖିଗଲି । ତରତରରେ ତାଙ୍କ ନାମ ଓ ଠିକଣା ନେବାକୁ ଭୁଲିଗଲି । ସୋଭିଏତ ରୁଷରେ ରହିବା, ଖାଇବା ଓ ବୁଲିବା ପାଇଁ ଯାବତୀୟ ଖର୍ଚ୍ଚ ସେଠାକାର ସରକାର ବହନ କରିବେ । ସାଙ୍ଗରେ ନେଇଥିବା ବ୍ୟକ୍ତିଗତ କଲମ, ଘଡ଼ି ଓ କ୍ୟାମେରା ଇତ୍ୟାଦିର ତାଲିକା କାଷ୍ଟମସ୍ ଅଫିସରେ ଦାଖଲ କଲି । ଅର୍ଥାତ୍, ଫେରିଲା ବେଳେ କେବଳ ସେତିକି ଜିନିଷ ଧରି ଫେରିବି । ରୁଷିଆରୁ କୌଣସି ଜିନିଷ ଆଣିଲେ ଟ୍ୟାକ୍ସ ଦେବାକୁ ହେବ । ମିସ୍ କିଚଲୁ ଏବଂ ଅନ୍ୟମାନଙ୍କ ନିକଟରୁ ବିଦାୟ ନେଇ ବିମାନରେ ପ୍ରବେଶ କଲି ।

ସକାଳ ୭ଟା ବେଳେ ଗୋଟିଏ ପ୍ରକାଣ୍ଡ ରୁଷ୍ ଜେଟ୍ ବିମାନ ପାଲାମ ଘାଟି ଛାଡ଼ିଲା । ଭିତରେ ଥିଲେ କେତେଜଣ ରୁଷ୍‌ବାସୀ ଓ ଦୁଇଜଣ ମସ୍କୋସ୍ଥିତ ଭାରତୀୟ ଦୂତାବାସର କର୍ମଚାରୀ । ଅତି ଶୀଘ୍ର ଅନେକ ଉର୍ଦ୍ଧ୍ୱକୁ ଉଠିଯାଇ ବିମାନଟି ଘଣ୍ଟାରେ ୬୦୦ ମାଇଲ ବେଗରେ ଉଡ଼ିବାକୁ ଲାଗିଲା । କିଛି ସମୟ ପରେ ଝରକା ବାଟେ ଚାହିଁଲା ବେଳକୁ ବିମାନଟି ଦିଗନ୍ତବିସ୍ତାରୀ ହିମାଳୟ ପର୍ବତମାଳା ଉପର ଦେଇ ଉଡ଼ିବାକୁ ଆରମ୍ଭ କରିଦେଇଥାଏ । ଉର୍ଦ୍ଧ୍ୱରେ ନିର୍ମଳ ନୀଳ ଆକାଶ ଓ ପୂର୍ବରେ କୋମଳ ନିସ୍ତେଜ ସୂର୍ଯ୍ୟ ।

ଭାରତ ଓ ରୁଷିଆ ମଧ୍ୟରେ ସୁଦୀର୍ଘ ସ୍ଥଳଭାଗ ଅଧିକାର କରି ହିମାଳୟ ତାହାର ସୁବିଶାଳ ବପୁ ବିସ୍ତାର କରି ରହିଛି । ତଳକୁ ଯେତେ ଦୂରକୁ ଚାହିଁଲେ କେବଳ ହିମାଳୟର ଅସରନ୍ତି ଶୃଙ୍ଗ ଛଡ଼ା ଅନ୍ୟ କିଛି ଦେଖାଗଲା ନାହିଁ ।

ଯେତେ ଦୂରକୁ ଦୃଷ୍ଟିଶକ୍ତି ବିସ୍ତାର କଲେ ସୁଦ୍ଧା କେବଳ ସେହି ହିମାଳୟ । 'ଶୃଙ୍ଗ ପରେ ଶୃଙ୍ଗ, ଶୃଙ୍ଗ ତଦୁପରି'– ସେହି ଉତ୍ତୁଙ୍ଗ ଶୃଙ୍ଗରାଜି ଆବହମାନ କାଳରୁ ନିଶ୍ଚଳ ଭାବରେ ଛିଡ଼ା ରହି ପ୍ରକୃତିର ମହତ୍ତ୍ୱ ପ୍ରତିପାଦନ କରିଆସିଛି । ଆକାଶଚୁମ୍ବୀ ପର୍ବତଗୁଡ଼ିକର ମୂଳଦେଶରୁ ବକ୍ଷ ପର୍ଯ୍ୟନ୍ତ ଦିଶୁଥାଏ ନୀଳ କିମ୍ବା ବାଇଗଣି ରଙ୍ଗର ଶୋଭା ଓ ତା'ପରେ ତୁଷାରମଣ୍ଡିତ ଶୁଭ୍ର ମସ୍ତକରାଜି । ଦ୍ରୁତଗାମୀ ବିମାନ ଯେତେ ବେଗରେ ଉଡ଼ି ଚାଲିଲେ ମଧ୍ୟ ହିମାଳୟ ଅତିକ୍ରମ କରିବା ତା ପକ୍ଷରେ କଷ୍ଟକର ହୋଇ ଉଠୁଥାଏ । ପ୍ରତ୍ୟେକ ମୁହୂର୍ତ୍ତରେ ପଶ୍ଚାତର ଚକ୍ରବାଳ ଉପରେ ଅଗଣିତ ଶୃଙ୍ଗ ଅଦୃଶ୍ୟ ହେଲା ବେଳକୁ ସମ୍ମୁଖରେ ଅନନ୍ତ ଆକାଶ ଭେଦ କରି ଅସଂଖ୍ୟ ନୂତନ ଶୃଙ୍ଗ ମସ୍ତକ ଉତ୍ତୋଳନ କରିବା ଦେଖା ଯାଉଥାଏ ।

ସୀମାହୀନ ହିମାଦ୍ରିର ମସ୍ତକଦେଶରୁ ପାଦଦେଶର ସ୍ଥଳଭାଗ ପ୍ରତି ଦୃଷ୍ଟି ପଡ଼ିଲେ ମନେ ହେଉଥାଏ ସେହି ଜନହୀନ ଓ ଜୀବହୀନ ସ୍ଥଳମାନ ହେଉଛି ନୈସର୍ଗିକ ସୌନ୍ଦର୍ଯ୍ୟର ଆଧାର । ହିନ୍ଦୁ ବିଶ୍ୱାସରେ ହିମାଳୟ ହେଉଛି ମର୍ତ୍ତ୍ୟଭୂମିରେ ଦେବତାମାନଙ୍କ ଆସ୍ଥାନ । ସେଥିଯୋଗୁଁ ବୋଧହୁଏ ପ୍ରକୃତି ସେଠାରେ ମନୁଷ୍ୟର ପ୍ରବେଶ ନିଷେଧ କରିଛି । ଭୂମିଦେଶରେ ଥିବା ସ୍ୱଚ୍ଛ ନିର୍ମଳ ନୀଳ କିମ୍ବା ସବୁଜ ରଙ୍ଗର ହ୍ରଦଗୁଡ଼ିକ ଦୃଷ୍ଟିଗୋଚର ହେଉଥାଏ । ଅନେକ ମାନସ ସରୋବର ଯେ ହିମାଳୟର ପାଦତଳେ ଆତ୍ମଗୋପନ କରି ରହିଛି ଏଥିରେ ସନ୍ଦେହ ନାହିଁ । ହିମାଦ୍ରିର ତୁଷାର ସ୍ରୋତରେ ପରିପୁଷ୍ଟ ସେହି ହ୍ରଦମାନ କେଉଁ କାରଣ ଯୋଗୁଁ ସେପରି ସୁନ୍ଦର ରୂପ ଧାରଣ କରିଥାଏ, ତାହା ଚିନ୍ତାଶକ୍ତିର ବାହାରେ । ପାଖକୁ ପାଖ ଲାଗିଥିବା ହ୍ରଦର ଗୋଟିଏ ଦେଖାଯାଉଥିବ ଗାଢ଼ ନୀଳ, ଅଥଚ ଅନ୍ୟଟି ଥିବ ଗାଢ଼ ସବୁଜ । ଆକାଶ ଓ ତୁଷାରର ରଙ୍ଗ ପ୍ରତିଫଳିତ ହେଉଥିବା ଯୋଗୁଁ ଗୋଟିଏ ଗୋଟିଏ ହ୍ରଦ ଚିତ୍ର ବିଚିତ୍ର ଦେଖାଯାଉଥାଏ । ସେହି ପ୍ରହେଳିକାମୟ ସରୋବରଗୁଡ଼ିକ ହିମାଳୟର ମାନସକନ୍ୟା । ସେହି ଅପୂର୍ବ ଶୋଭାମୟ ସ୍ୱର୍ଗତୁଲ୍ୟ ସ୍ଥାନ କେବଳ ହିମାଳୟର ଗର୍ଭସ୍ଥଳରେ ହିଁ ସମ୍ଭବପର ।

କେତେବେଳେ ଓ କେଉଁ ସ୍ଥାନରେ ଭାରତର ସୀମା ଅତିକ୍ରମ କରି ବିମାନ ଉଡ଼ି ଚାଲିଗଲା ତାହା ଜାଣି ହେଲା ନାହିଁ । କୌଣସି ଏକ ସ୍ଥାନରେ ପଶ୍ଚାତରେ ରହିଯାଇଥିବ ହିନ୍ଦୁକୁଶ ପର୍ବତମାଳା । ଅନ୍ୟ କୌଣସି ଏକ ସ୍ଥାନରେ ଲୁଚି ଯାଇଥିବ ତିବ୍ବତର ସୀମାନ୍ତ । ଆଫଗାନିସ୍ଥାନର ସୀମା ମଧ୍ୟ କୌଣସିଠାରେ ଅଦୃଶ୍ୟ ହୋଇଯାଇଥିବ । ଠିକ୍ ସେହିପରି କେଉଁଠାରେ ରୁଷିଆର ସୀମା ଭିତରକୁ ବିମାନଟି ଉଡ଼ିଗଲା, ତାହା ମଧ୍ୟ ଜାଣିହେଲା ନାହିଁ । ଯେତେବେଳେ ବୋଖାରା

ଓ ସମରକନ୍ଦ ଉପର ଦେଇ ବିମାନ ଉଡ଼ିଗଲା, ସେତେବେଳେ ଜାଣିହେଲା ଯେ ଆମେ ସୋଭିଏତ ରୁଷ ମଧ୍ୟକୁ ଆସିଯାଇଛୁଁ ଏବଂ ତାସକେନ୍ଦ ଉପକଣ୍ଠରେ ଉଡ଼ି ଚାଲିଛୁଁ । ଅନେକ ତଳେ ଦିଶୁଥାଏ ପାହାଡ଼ିଆ ସ୍ଥଳଭାଗ । ସମତଳ ପ୍ରଦେଶ ଉପରେ ଦିଶୁଥାଏ ଅସ୍ପଷ୍ଟ ଜନବସତି । ହିମାଳୟ ବହୁ ପଛରେ ରହିଯାଇଥାଏ । ନୂତନ ରୂପର ପ୍ରାକୃତିକ ଅଞ୍ଚଳ ଉପରେ ଆଖି ପଡୁଥାଏ ।

## ୧୦ ଅକ୍ଟୋବର: ତାସକେନ୍ଦ ସହର

ଦିନ ୧୧ଟା ୨୦ ମିନିଟ ସମୟରେ ତାସକେନ୍ଦ ଘାଟିରେ ବିମାନ ଅବତରଣ କଲା । ପ୍ରକାଣ୍ଡ ବିମାନ ବନ୍ଦର । ଅନେକ ଉଡ଼ାଜାହାଜ ଛିଡ଼ା ରହିଥାଏ । ଦରଜା ଖୋଲିଲା ବେଳେ ଦୃଷ୍ଟି ପଡ଼ିଲା ଘାଟିର ମୁଖ୍ୟ ଅଟ୍ଟାଳିକା ଊର୍ଦ୍ଧ୍ୱରେ ଲେନିନ ଓ କ୍ରୁଶ୍ଚେଭଙ୍କର ପ୍ରକାଣ୍ଡ ପ୍ରକାଣ୍ଡ ଦୁଇଟି ଚିତ୍ର । ସୋଭିଏତ୍ ଦେଶକୁ ଆସୁଥିବା ବ୍ୟକ୍ତିମାନଙ୍କୁ ସେହି ଦୁଇ ମହାନ ବ୍ୟକ୍ତିଙ୍କ ଚିତ୍ର ସ୍ୱାଗତ କରୁଥାଏ । ଜଣେ ଥିଲେ, ସୋଭିଏତ ରାଷ୍ଟ୍ରର ନିର୍ମାତା, ଅନ୍ୟ ଜଣେ, ତଦାନୀନ୍ତନ ସର୍ବୋଚ୍ଚ ନେତା ।

ତଳକୁ ଆସିଲି । ତାସକେନ୍ଦ ବିଶ୍ୱବିଦ୍ୟାଳୟ ତରଫରୁ ମୋତେ ନେବା ଲାଗି ଆସିଥିବା ଅଧ୍ୟାପକ ମହମ୍ମଦ ଜାନ ପାଖକୁ ଆସି ସମ୍ବର୍ଦ୍ଧନା ଜଣାଇଲେ । ମୁଁ ଇଂରାଜୀରେ କଥା କହିବା ଦେଖି ସେ ହିନ୍ଦୀରେ କଥା କହିଲେ । ସେ ଥିଲେ ହିନ୍ଦୀ ଓ ଉର୍ଦ୍ଦୁଭାଷା ବିଭାଗର ମୁଖ୍ୟ ଅଧ୍ୟାପକ । ତାସକେନ୍ଦ ବିଶ୍ୱବିଦ୍ୟାଳୟରେ ସେପରି ବିଭାଗ କାହିଁକି ଅଛି ବୋଲି ପଚାରିଲି । ଉତ୍ତର ଦେଲେ, ‘‘ହିନ୍ଦୁସ୍ଥାନର ପ୍ରଧାନ ଭାଷା ହିନ୍ଦୀ ଜାଣିବା ପାଇଁ ରୁଷବାସୀଙ୍କର ଆବଶ୍ୟକତା ଥିବା ଦୃଷ୍ଟିରୁ ଏହି ବିଭାଗ ଖୋଲା ଯାଇଛି ଏବଂ ଆଗ୍ରହୀ ଛାତ୍ରମାନଙ୍କୁ ହିନ୍ଦୀ ଓ ଉର୍ଦ୍ଦୁ ଶିକ୍ଷା ଦିଆ ଯାଉଛି ।’’ ଅଧ୍ୟାପକ ଜାନ୍ ଥିଲେ ମୁସଲମାନ । ତାଙ୍କ କଥାବାର୍ତ୍ତାରୁ ଜାଣିଲି, ସୋଭିଏତ ସଂଘରେ ଧର୍ମ ପ୍ରତି ଗୁରୁତ୍ୱ ଦିଆଯାଏ ନାହିଁ, କାରଣ ମାର୍କ୍ସଙ୍କ ଦର୍ଶନରେ ଗତାନୁଗତିକ ଧର୍ମଗୁଡ଼ିକୁ ମନୁଷ୍ୟର ଭ୍ରାନ୍ତ ଧାରଣା ବୋଲି ଦର୍ଶାଯାଇଛି ।

ସେ ମୋତେ କାରରେ ନେଇଗଲେ ସହରର କେନ୍ଦ୍ରସ୍ଥଳରେ ଥିବା ‘ହୋଟେଲ ତାସକେନ୍ଦ’, ସେଠାକାର ସବୁଠାରୁ ବଡ଼ ହୋଟେଲ । ମଧ୍ୟାହ୍ନ ଭୋଜନ ଓ ବିଶ୍ରାମ ପରେ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ସହିତ ସାକ୍ଷାତ ଲାଗି ମୋତେ ନିଆଗଲା । ଭିନ୍ନ ଭିନ୍ନ ବିଭାଗ ଓ ଛାତ୍ରାବାସଗୁଡ଼ିକ ଦେଇ ଗଲାବେଳେ କ୍ୟାମ୍ପସ୍ ନିର୍ଜନ ଦେଖାଗଲା । କୁଳପତିଙ୍କ କକ୍ଷରେ ଅପେକ୍ଷା କରିଥିଲେ ଦୁଇଜଣ ଅଧ୍ୟାପକ । ଚା’ ପାନର ବ୍ୟବସ୍ଥା କରିବା ବେଳେ ମୋତେ ଜଣାଇଲେ, ‘‘ଏଠାରେ ଆପଣଙ୍କ

ଭାଷଣ କାର୍ଯ୍ୟକ୍ରମ ବାତିଲ ହୋଇ ଯାଇଛି ।'' ମୁଁ ସଙ୍ଗେ ସଙ୍ଗେ କହି ପକାଇଲି, ''ଆପଣଙ୍କ ଦେଶରୁ ଯାଇଥିବା ପ୍ରୋଗ୍ରାମ ଅନୁସାରେ ମୋର ଏଠାରେ ଏକ ସପ୍ତାହ ରହିବା କଥା ଓ ଚାରି ଗୋଟି ବକ୍ତୃତା ଦେବା କଥା ।'' ସେମାନେ ବିନମ୍ର ଭାବରେ ପ୍ରୋଗ୍ରାମ ବାତିଲ ହେବାର କାରଣ ବୁଝାଇବାକୁ ଲାଗିଲେ । ଚା' ପିଉଥିଲା ବେଳେ ମନ ଦେଇ ଶୁଣିଲି । ସାରାଂଶ ଥିଲା ଏହି ପ୍ରକାର –

ପ୍ରୋଗ୍ରାମ ପ୍ରସ୍ତୁତ କଲାବେଳେ କର୍ତ୍ତୃପକ୍ଷ ଜାଣି ନଥିଲେ ଯେ, ଠିକ୍ ଏହି ସମୟରେ ବିଶ୍ୱବିଦ୍ୟାଳୟ ବନ୍ଦ ରହିବ । କିନ୍ତୁ ଦୁଇଦିନ ତଳେ କୁଳପତିଙ୍କୁ ହଠାତ୍ ତିନି ସପ୍ତାହ ଲାଗି ଛୁଟି ଘୋଷଣା କରିବାକୁ ପଡ଼ିଲା । ସୋଭିଏତ ଦେଶର ନିୟମ ଅନୁଯାୟୀ, ଅନ୍ୟ ଦେଶ ପରି ଏଠାକାର ବିଶ୍ୱବିଦ୍ୟାଳୟ ଓ ସ୍କୁଲ କଲେଜର ଛୁଟି ତାଲିକା ବର୍ଷର ଆରମ୍ଭରେ ଘୋଷଣା କରାଯାଏ ନାହିଁ । ଛୁଟି ଦିଆଯାଏ, ଦେଶର ଆବଶ୍ୟକତା ଅନୁସାରେ । ଉଦାହାଣ ସ୍ୱରୂପ, ତାସକେନ୍ଦ ଅଞ୍ଚଳରେ କୃଷକମାନଙ୍କର ଶସ୍ୟ ଅମଳର ସମୟ ହେଉଛି ଅକ୍ଟୋବର ଶେଷ ଓ ନଭେମ୍ବର ଆରମ୍ଭରେ । କିନ୍ତୁ ବେଳେ ବେଳେ ଅମଳ ସମୟ ନିର୍ଭର କରେ ଜଳବାୟୁ ଉପରେ । ଏ ବର୍ଷ ଶସ୍ୟ ଆଗରୁ ପାଚିଯିବାରୁ କୃଷି ଫାର୍ମଗୁଡ଼ିକରୁ କୁଳପତିଙ୍କୁ ଅମଳ ତାରିଖ ଜଣାଇ ଦିଆଗଲା । ଆଇନ୍ ଅନୁଯାୟୀ, କୁଳପତି ଛାତ୍ରମାନଙ୍କୁ ଛୁଟି ଦେଲେ । ହଜାର ହଜାର ଛାତ୍ର ଦଳ ଦଳ ହୋଇ ପାର୍ଶ୍ୱବର୍ତ୍ତୀ ଗାଁ ଗଣ୍ଡା ଏବଂ କୃଷି ଫାର୍ମରେ କୃଷକମାନଙ୍କୁ ଅମଳ କାମରେ ସାହାଯ୍ୟ କରିବାକୁ ଚାଲି ଯାଇଛନ୍ତି । ଅମଳ ଶେଷ ହେଲେ, ଛୁଟି ମଧ୍ୟ ଶେଷ ହେବ । ଶସ୍ୟ ରୋପଣ ସମୟରେ ମଧ୍ୟ ଏହିପରି ଛୁଟି ଦିଆଯାଏ । ଅର୍ଥାତ୍, ପ୍ରତ୍ୟେକ ବର୍ଷ ଦୁଇଟି ଦୀର୍ଘକାଳୀନ ଛୁଟିରେ ଛାତ୍ରମାନେ ବାହାରି ଯାଆନ୍ତି କୃଷି ଉତ୍ପାଦନ କାର୍ଯ୍ୟରେ ଦେଶବାସୀଙ୍କୁ ସାହାଯ୍ୟ କରିବା ନିମନ୍ତେ ।

ଏହି ନିୟମ ସୋଭିଏତ ରୁଷିଆର ସବୁ ବିଶ୍ୱବିଦ୍ୟାଳୟ ପ୍ରତି ପ୍ରଯୁଜ୍ୟ ବୋଲି ସେମାନେ କହିଲେ । ପରିବର୍ତ୍ତିତ ପ୍ରୋଗ୍ରାମ ଅନୁସାରେ ମୋତେ ପ୍ରଥମେ ଲେନିନଗ୍ରାଡ୍ ବିଶ୍ୱବିଦ୍ୟାଳୟକୁ ଯିବାକୁ ହେବ ବୋଲି କୁହାଗଲା । ସେଠାରେ ଏକ ସପ୍ତାହ ଓ ତାପରେ ମସ୍କୋରେ ଦୁଇ ସପ୍ତାହ ରହିଲା ପରେ ଫେରିବା ପଥରେ ତାସକେନ୍ଦରେ ଗୋଟିଏ ସପ୍ତାହ ରହିବାକୁ ହେବ ବୋଲି ଜଣାଇଲେ ।

ହୋଟେଲକୁ ଫେରିବା ରାସ୍ତାରେ ଭାବିଲି, ସାମ୍ୟବାଦର ତତ୍ତ୍ୱମାନ ବହିରେ ପଢ଼ିବା ଅପେକ୍ଷା, ସାମ୍ୟବାଦର ପ୍ରକୃତ ପରିଚୟ ମିଳିଗଲା ଏହିପରି ଗୋଟିଏ ଦୃଷ୍ଟାନ୍ତରୁ । ଆର୍ଥିକ ବିକାଶ ନିମନ୍ତେ ଉତ୍ପାଦନ କାର୍ଯ୍ୟରେ ଛାତ୍ର ସମାଜକୁ ବିନିଯୋଗ କରିବା ଥିଲା ସେତେବେଳର ସୋଭିଏତ ରାଷ୍ଟ୍ରର ଅନ୍ୟତମ ବାଧ୍ୟତାମୂଳକ ଆଇନ୍ ।

ଆମ ଦେଶର ଛୁଟି ତାଲିକା କଥା ସ୍ମରଣ କଲି । ବର୍ଷର ପ୍ରଥମ ଦିନ ବାହାରି ଯାଏ ବିଭିନ୍ନ ପର୍ବପର୍ବାଣି, ପୂଜା, ଗ୍ରୀଷ୍ମଛୁଟି, ଦୁର୍ଗାପୂଜା ଛୁଟି ଓ ଶୀତଛୁଟିର ତାଲିକା । ସେହି ସମୟ ମଧ୍ୟରେ ଲକ୍ଷ ଲକ୍ଷ ଛାତ୍ର ଯଦି ନିଜ ନିଜ ପରିବାରକୁ ଚାଷ କିମ୍ବା ଅନ୍ୟ କାମରେ ସାହାଯ୍ୟ କରି ପାରନ୍ତେ, ତେବେ ଦେଶର କେତେ ମଙ୍ଗଳ ହୁଅନ୍ତା ! କର୍ମ ହିଁ ଧର୍ମ, ଏହା ଥିଲା ମାର୍କସ୍‌ବାଦର ମୂଳତତ୍ତ୍ୱ । ତେବେ, ବାଧ୍ୟତାମୂଳକ କାମ ଓ ସ୍ୱେଚ୍ଛାକୃତ କାମ ମଧ୍ୟରେ ଥିବା ପାର୍ଥକ୍ୟ ବିଷୟ ସେତେବେଳେ ମୋ ମନରେ ସ୍ଥାନ ପାଇ ନଥିଲା ।

ସନ୍ଧ୍ୟାବେଳେ ମହମ୍ମଦ ଜାନ୍‌ଙ୍କ ସାଙ୍ଗରେ ତାସକେନ୍ଦ ସହରର କେତେକ ସ୍ଥାନ ଦେଖିଲି । ସେ ବୁଝାଇଦେଲେ, ମାତ୍ର ତିରିଶ ଚାଳିଶ ବର୍ଷ ପୂର୍ବେ ତାସକେନ୍ଦ, ସମରକନ୍ଦ ଓ ବୋଖାରା ଅଞ୍ଚଳର ଅଧିବାସୀମାନେ ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଥିଲେ । ସମସ୍ତେ ଥିଲେ ଜାତି ଓ ଧର୍ମରେ ମୁସଲମାନ । ହିନ୍ଦୁକୁଶ ଅଞ୍ଚଳର ଆଫଗାନ ପାହାଡ଼ିଆ ଜାତିଗୁଡ଼ିକ ପରି ଏମାନଙ୍କର ଜୀବନଧାରା ମଧ୍ୟଯୁଗୀୟ ଥାଏ । ମଧ୍ୟପ୍ରାଚ୍ୟର ଇରାନ, ଇରାକ୍ ଓ ଆରବ ପ୍ରଭୃତି ଦେଶର ଲୋକମାନେ ଏବେ ଯେପରି ଅବସ୍ଥାରେ ଅଛନ୍ତି, ତାସକେନ୍ଦବାସୀଙ୍କର ଅବସ୍ଥା ସେହିପରି ଥିଲା । କିନ୍ତୁ କମ୍ୟୁନିଷ୍ଟ ରୁଷିଆର ଶାସନକାଳରେ ଏସବୁ ଅଞ୍ଚଳର ରୂପ ସମ୍ପୂର୍ଣ୍ଣଭାବରେ ବଦଳିଯାଇଛି । ଇଉରୋପୀୟ ବିଶ୍ୱାସ ଓ ରୀତିନୀତି ଏମାନଙ୍କ ଉପରେ ଲଦି ଦିଆଯାଇଛି । ଫଳରେ, ମହିଳାମାନେ ବୁରଖା ପିନ୍ଧନ୍ତି ନାହିଁ, ପୁରୁଷମାନେ ଦାଢ଼ି ରଖନ୍ତି ନାହିଁ । ଅଧ୍ୟାପକ ଜାନଙ୍କ କଥା ଶୁଣିଲାବେଳେ ମୋର ସ୍ମରଣ ହେଉଥାଏ ପାଞ୍ଚ ବର୍ଷ ଆଗେ ପାରସ୍ୟ ଓ ଆରବରେ ଦେଖିଥିବା ବୁରଖା, ଦାଢ଼ି ଓ ମୁସଲମାନୀ ଟୋପିର ଦୃଶ୍ୟ । ତାସକେନ୍ଦର ମୁସଲମାନମାନେ ଆଧୁନିକ ଦେଖାଯାଉଥାନ୍ତି ।

ମହମ୍ମଦ ଜାନ ବର୍ଣ୍ଣନା କଲେ, ରୁଷ୍‌ବିପ୍ଳବ ପରେ ନୂତନ ସାମାଜିକ ବ୍ୟବସ୍ଥା ପ୍ରଚଳନ କଲାବେଳେ ଧର୍ମାନ୍ଧ ବ୍ୟକ୍ତିମାନେ ତୀବ୍ର ବିରୋଧ କରିଥିଲେ । ଶହ ଶହ ବର୍ଷର ସାମାଜିକ ଓ ଧର୍ମୀୟ ରୀତିନୀତି ରାତାରାତି ପରିତ୍ୟାଗ କରିବା ସେମାନଙ୍କ ପକ୍ଷରେ ଅସହ୍ୟ ହୋଇଉଠିଥିଲା । ତଥାପି ସୋଭିଏତ ସରକାର ବଳପୂର୍ବକ ପରିବର୍ତ୍ତନ ଆଣିଲେ ଓ ଯେଉଁ ଧର୍ମାନ୍ଧମାନେ ବାଧା ସୃଷ୍ଟିକଲେ, ସେମାନଙ୍କୁ କଠୋର ଦଣ୍ଡ ଦେଲେ । ସମୟକ୍ରମେ ନୂତନ ଶିକ୍ଷାବ୍ୟବସ୍ଥା ଓ ପ୍ରଚାର ମାଧ୍ୟମରେ ଲୋକଙ୍କ ମନରୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ଲୋପ କରାଗଲା । ସେଥିସଙ୍ଗେ, ସରକାର ସେହି ଦରିଦ୍ର ଅଞ୍ଚଳର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିଲେ । ସମବାୟ କୃଷିକ୍ଷେତ୍ର ଓ କଳକାରଖାନା ପ୍ରତିଷ୍ଠା କରି ଲୋକଙ୍କୁ କାମ କରିବାକୁ

ବାଧ୍ୟ କରାଗଲା । ସୁଖ ସ୍ୱାଚ୍ଛନ୍ଦ୍ୟ ବଢ଼ିଚାଲିଲା ବେଳେ ସେମାନେ ମାର୍କସବାଦୀ ଚିନ୍ତାଧାରା ସହିତ ନିଜକୁ ସାମିଲ କଲେ ।

ସହରର ଉପକଣ୍ଠରେ ଥିବା ଗ୍ରାମାଞ୍ଚଳ ଦେଖିଲାପରେ ଅଧ୍ୟାପକ ଜାନ୍ ମୋତେ ଗୋଟିଏ ପୁରାତନ ମସଜିଦ୍ ପାଖକୁ ନେଇଗଲେ । ରାତି ଆସିଯାଇଥାଏ । ଅନ୍ଧକାର ଭିତରେ ଛିଡ଼ା ରହିଥାଏ ପ୍ରକାଣ୍ଡ ମସଜିଦ । ପ୍ରବେଶ ଦ୍ୱାରରେ ତାଲା ପଡ଼ିଥାଏ । ଜାନ୍ କହିଲେ, ''ଏକଦା ଏହା ଥିଲା ଧର୍ମପ୍ରାଣ ମୁସଲିମମାନଙ୍କର ନମାଜ ପଢ଼ିବା ସ୍ଥାନ, ଏବେ ଗୋଟିଏ ମିଉଜିୟମ୍ ।'' ମୁଁ ପଚାରିଲି, ''ଏପରି ବ୍ୟାପକ ପରିବର୍ତ୍ତନ ସମ୍ବନ୍ଧରେ ଆପଣଙ୍କ ବ୍ୟକ୍ତିଗତ ମତାମତ କ'ଣ ?'' ସେ ଈଷତ୍ ହସିଦେଲେ, କିନ୍ତୁ ଉତ୍ତର ନଦେଇ ପାଖରେ ଥିବା ଗୋଟିଏ ଗାଉଁଲି ଛାଉଣୀ ପାଖକୁ ନେଇଗଲେ । ସେଠାରେ କେତେଜଣ ମୁସଲମାନ ବୁଢ଼ା କାଠିଗୁଡ଼ିକ ମୁଣ୍ଡରେ ମସଲାବୋଳା ଖଣ୍ଡ ଖଣ୍ଡ ମାଂସ ରଖି ନିଆଁରେ ସେକିବା ଦେଖିଲି । ଜାନ୍ କହିଲେ, ''ଏ ଗୁଡ଼ିକର ସ୍ୱାଦ ଖୁବ ଚମତ୍କାର । ଦୁଇ ଚାରିଟା ଖାଇ ଦେଖନ୍ତୁ ।'' ଭୋକ ନାହିଁ ବୋଲି କୈଫିୟତ ଦେଲି । ସେ କିନ୍ତୁ ଦୁଇଗଣ୍ଡା ପେଣ୍ଡୁ ଗିଳି ପକାଇଲେ । ଦୋକାନୀକୁ ପଇସା ଦେଲାବେଳେ ବ୍ୟାଖ୍ୟା କଲେ, ''ଏମାନେ ଦିନବେଳେ ସରକାରୀ ଫାର୍ମରେ ଖଟିଲା ପରେ, ସନ୍ଧ୍ୟାବେଳେ ନିଜର ଦୁଇପଇସା ଆୟ ପାଇଁ ଏହି ଖାଦ୍ୟ ବିକନ୍ତି ।''

ମୁଁ ପଚାରିଲି, ''ଏହି ଗାଉଁଲି ମୁସଲମାନ ବୁଢ଼ାମାନେ କ'ଣ ମାର୍କସ୍‌ବାଦ ବୁଝନ୍ତି ? ଈଷତ୍ ଚିନ୍ତାକରି ମହମ୍ମଦ ଜାନ ଇଂରାଜୀରେ ସଂକ୍ଷିପ୍ତ ବାକ୍ୟଟିଏ କହିଥିଲେ, ''We have to sink or swim with the flow of time'' ।

(ଏହି ଘଟଣାର ପ୍ରାୟ ତିରିଶ ବର୍ଷ ପରେ ଯେତେବେଳେ ସୋଭିଏତ ସଂଘର ଆକସ୍ମିକ ବିଲୟ ଘଟିଲା, ମାର୍କସବାଦୀ ଅର୍ଥନୈତିକ ବ୍ୟବସ୍ଥା ଭାଙ୍ଗିପଡ଼ିଲା, ମୁସଲମାନ ଅଞ୍ଚଳଗୁଡ଼ିକ ସ୍ୱାଧୀନ ହେଲା ଓ ଇସଲାମୀୟ ଧର୍ମସ୍ରୋତରେ ପୁଣିଥରେ ସେଠାକାର ଲୋକମାନେ ଭାସିଗଲେ, ସେତେବେଳେ ମୋର ମନେ ପଡ଼ିଥିଲା ତାସକେନ୍ଦ ଉପକଣ୍ଠରେ ସେହି ମୁସଲମାନ ଅଧ୍ୟାପକ ମହମ୍ମଦ ଜାନଙ୍କର ସଂକ୍ଷିପ୍ତ ଉକ୍ତିଟି—''ଆମକୁ ସମୟ ସ୍ରୋତରେ ବୁଡ଼ିବାକୁ ବା ଭାସିବାକୁ ପଡ଼ିବ'') ।

**୧୧ ଅକ୍ଟୋବର: ଲେନିନଗ୍ରାଡ଼ ଯାତ୍ରା**

ମଧ୍ୟାହ୍ନ ୧୨ଟା ବେଳେ ତାସକେନ୍ଦରୁ ଲେନିନଗ୍ରାଡ଼ ଉଡ଼ିବା କଥା । ସକାଳଓଳି ଏକାକୀ ହୋଟେଲ ପାଖ ଆଖ ଅଞ୍ଚଳରେ ବୁଲିଲି । ଆଗରେ ଥାଏ ସୁଦୃଶ୍ୟ

ଉସ । ତା ପରେ ପାର୍କ୍ । ପାର୍କ୍ ନିକଟରେ ଥିଏଟାର ହଲ ଓ ଅନେକ ଗୁଡ଼ିଏ ଦୋକାନ । ସ୍ଥାନେ ସ୍ଥାନେ ଥାଏ ଫଳଦୋକାନ । ସମରକନ୍ଦ ଓ ତାସକେନ୍ଦ ଅଞ୍ଚଳର ଅଙ୍ଗୁର ଆକାରରେ ଖୁବ୍ ବଡ଼ । ଦାମ ମଧ ଅତି କମ । ଅଳ୍ପ କେତୋଟି ରୁବଲ ଦେଇ ଠୁଙ୍ଗା ଭର୍ତ୍ତିକରି ଅଙ୍ଗୁର ଆଣିଲି ।

ଦିନ ୧୨ଟା ୩୦ ମିନିଟରେ ତାସକେନ୍ଦ ଛାଡ଼ିଲି । ବିମାନ ଅନେକ ଊର୍ଦ୍ଧ୍ୱରେ ଉଡ଼ିବା ଯୋଗୁଁ ସ୍ଥଳଭାଗର ଦୃଶ୍ୟ ଦେଖାଗଲା ନାହିଁ । ତଳେ ଦିଶୁଥାଏ କେବଳ ରାଶିହୀନ ଧଳା ମେଘ । ତୂଳାଶେଯ ଉପରେ ଉଡ଼ାଜାହାଜ ଗଡ଼ିଗଡ଼ି ଚାଲିଲା ପରି ଜଣାଯାଉଥାଏ । ମେଘ ଉପରେ ପଡ଼ିଥାଏ ଉଜ୍ଜ୍ୱଳ ସୂର୍ଯ୍ୟକିରଣ । ବେଳେ ବେଳେ ମେଘରାଶିର ଗଭୀର ଗର୍ଭ ମଧ୍ୟ ଦେଇ ଦିଶୁଥାଏ ସ୍ଥଳଭାଗର ଅରଣ୍ୟାନୀ, ହ୍ରଦ ଓ ପାହାଡ଼ ପର୍ବତ ।

ସନ୍ଧ୍ୟା ୯ଟା ୩୦ ମିନିଟରେ ବିମାନ ପହଞ୍ଚିଲା ଲେନିନଗ୍ରାଡ୍ ବିମାନ ବନ୍ଦରରେ । ଅନ୍ଧକାର ମାଡ଼ି ଆସିଥାଏ । ବାହାରେ ପ୍ରଚଣ୍ଡ ଶୀତ । ଭାଷା ଅନୁବାଦକାରୀ ରୁଷ୍ ଯୁବକ ମୋତେ ସ୍ୱାଗତ ପୂର୍ବକ ଅପେକ୍ଷା-କକ୍ଷକୁ ନେଇଗଲେ ଓ ବିଶ୍ୱବିଦ୍ୟାଳୟ ଅଫିସକୁ ଫୋନ କଲେ । ଅଳ୍ପସମୟ ମଧ୍ୟରେ ଆସିଗଲେ ପ୍ରାଚ୍ୟବିଦ୍ୟା ବିଭାଗର ସହକାରୀ ମୁଖ୍ୟ ଅଧ୍ୟାପକ ୟୁରୀ ପେଟେଙ୍କୋ । ତାଙ୍କର ପରିଚୟ ପାଇ ଆଶ୍ଚର୍ଯ୍ୟ ହେଲି । ସେ ଇଂରାଜୀ, ହିନ୍ଦୀ ଓ ମାରାଠୀ ଭାଷାରେ ପାରଙ୍ଗମ ଓ ଏକବର୍ଷ ଭାରତର ପୁନା ଠାରେ ଗବେଷଣା କରିଥିଲେ । ତାଙ୍କ ଅମାୟିକ ବ୍ୟବହାରରେ ମୁଗ୍ଧ ହେଲି । ନିଜର ଭାଇ ବୋଲି ତାଙ୍କୁ ଭାବିବାକୁ ମୋତେ ଅନୁରୋଧ ଜଣାଇ ପ୍ରଥମ ସାକ୍ଷାତ ସମୟରୁ ସେ ମୋତେ 'ବ୍ରାଦାର ଦାସ' ବୋଲି ସମ୍ବୋଧନ କରିବାକୁ ଲାଗିଲେ ।

ତାଙ୍କ ସାଙ୍ଗରେ ବିମାନଘାଟିରୁ ସହର ଭିତରକୁ ଚାଲିଲି । ସହରର କେନ୍ଦ୍ରସ୍ଥାନରେ ଥିବା 'ହୋଟେଲ ଇଉରୋପା'ରେ ମୋତେ ରଖାଗଲା । ରାତ୍ରିଭୋଜନ ବେଳେ ଡ଼ାଇନିଂ ହଲରେ ଖାଉଥିବା କେତେଜଣ ବିଦେଶୀ କୂଟନୀତିଜ୍ଞ ଓ ପର୍ଯ୍ୟଟକଙ୍କୁ ଦେଖାଇଦେଇ ପେଟେଙ୍କୋ ପଚାରିଲେ, ''ଏମାନଙ୍କୁ ଦେଖି ଆପଣ ବିଶ୍ୱାସ କରିବେ କି ଯେ ରୁଷିଆ ହେଉଛି ଲୌହ ପରଦାର ଦେଶ ?'' ମୁଁ ଉତ୍ତର ଦେଲି, ''ସୋଭିଏତ ରୁଷକୁ ସେପରି ଆଖ୍ୟା ଦେଇଥିଲେ ସାମ୍ରାଜ୍ୟବାଦୀ ଉଇନ୍‌ଷ୍ଟନ ଚାର୍ଚ୍ଚିଲ । ସେ ଅନେକ କଥା କହୁଥିଲେ, ଯଥା ଗାନ୍ଧି ହେଉଛନ୍ତି 'ରାଜଦ୍ରୋହୀ, ଅର୍ଦ୍ଧନଗ୍ନ ଫକୀର' ଇତ୍ୟାଦି, ଇତ୍ୟାଦି । ଭାରତବାସୀଙ୍କ ଆଗରେ ଚାର୍ଚ୍ଚିଲଙ୍କ କଥାର କିଛି ମୂଲ୍ୟ ନାହିଁ ।''

ଜାଣିଥିଲି, ଷ୍ଟାଲିନଙ୍କ ସମୟ ଓ କ୍ରୁଶ୍ଚେଭଙ୍କ ଶାସନକାଳ ମଧ୍ୟରେ ଅନେକ ପାର୍ଥକ୍ୟ ଅଛି । ସୋଭିଏତ ସଂଘ ସହିତ ଅନ୍ୟ ଦେଶଗୁଡ଼ିକର ସୁସମ୍ପର୍କ ସ୍ଥାପନ ଲାଗି କ୍ରୁଶ୍ଚେଭ ସେତେବେଳେ ଉଦାରୀକରଣ ନୀତି ଅବଲମ୍ବନ କରିଥିଲେ ଓ ବିଦେଶୀମାନଙ୍କୁ ଆସିବାକୁ ଦେଉଥିଲେ । ଷ୍ଟାଲିନଙ୍କ ସମୟର କଟକଣାଗୁଡ଼ିକ ସେ ଉଠାଇଦେଇଥିଲେ । ସେଥିଯୋଗୁଁ ଲୌହପରଦା ଅନେକାଂଶରେ ଭାଙ୍ଗିପଡ଼ିଥିଲା । ନେହରୁଙ୍କ 'ଶାନ୍ତିପୂର୍ଣ୍ଣ ସହାବସ୍ଥାନ' ନୀତି ପ୍ରତି କ୍ରୁଶ୍ଚେଭ ସମର୍ଥନ ଜଣାଇଥିଲେ ।

## ୧୨ ଅକ୍ଟୋବର : ଲେନିନଗ୍ରାଡ଼

ହୋଟେଲ ଇଉରୋପାରେ ପ୍ରାତଃଭୋଜନ ହେଲାବେଳକୁ ଭାଷାଅନୁବାଦକ ଯୁବକ ଆସିଗଲେ । ତାଙ୍କ ନାମ ସିରମନୋଭ । ବିଶ୍ୱବିଦ୍ୟାଳୟର ଇଂଲିଶ୍ ବିଭାଗର ଛାତ୍ର । ମୋତେ ନେଇଗଲେ କ୍ୟାମ୍ପାସକୁ । କୁଳପତିଙ୍କ ପ୍ରକୋଷ୍ଠରେ ପ୍ରବେଶ କଲି । ଯଥେଷ୍ଟ ଶ୍ରଦ୍ଧା ସହ ସେ ମୋତେ କୋଇଲା ଜଳୁଥିବା ନିଆଁକୁଣ୍ଡ ପାଖରେ ବସାଇଲେ । ସାମ୍ୟବାଦୀ ରାଷ୍ଟ୍ରର କୁଳପତି । ତେଣୁ ଇଲେକ୍ଟ୍ରିକ୍ ହିଟାର ପରିବର୍ତ୍ତେ କୋଇଲା ଜାଳି ନିଜ କକ୍ଷକୁ ଉଷ୍ମ ରଖିଥାନ୍ତି । ମୋର ବକ୍ତୃତାମାଳା ବିଷୟରେ ଆଲୋଚନା ହେଲା । କହିଲେ, "ଆପଣ ଇଂରାଜୀରେ ଭାଷଣ ଦେବେ । ପ୍ରତ୍ୟେକ ବାକ୍ୟ ପରେ ଅଳ୍ପ ସମୟ ନୀରବ ରହିବା ବେଳେ ଅନୁବାଦକାରୀ ରୁଷ ଭାଷାରେ ତାହା ତୁରନ୍ତ କହିଦେବେ ।"

ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ସେଦିନଟି କେବଳ ନଗର ଦର୍ଶନରେ ବିତିଲା । ସିରମନୋଭ ଗାଡ଼ି ଭିତରୁ ଗୋଟିକ ପରେ ଗୋଟିଏ ସ୍ଥାନ ଦେଖାଇଦେଲେ । ସେଗୁଡ଼ିକ ମଧ୍ୟରେ ଥାଏ ଜାର ଶାସନ କାଳର ଦୁଇଟି ଦୁର୍ଗ ଯାହା ମଧ୍ୟରେ ବନ୍ଦୀମାନଙ୍କୁ ନିର୍ଯ୍ୟାତନା ଦିଆଯାଉଥାଏ, ହାରମିଟେଜ ମିଉଜିୟମ, ଆଇଜାକ୍ ଗିର୍ଜା, ବଲସେଭିକ ବିପ୍ଳବର ମିଉଜିୟମ, ଲେନିନ ସ୍ମୃତି ମିଉଜିୟମ ଇତ୍ୟାଦି । ସିରମନୋଭ କହିଲେ, "ପ୍ରତ୍ୟେକ ସ୍ଥାନ ଆପଣ ଉତ୍ତମଭାବେ ଦେଖିବେ । ସେଥିପାଇଁ ସ୍ୱତନ୍ତ୍ର ସମୟ ଠିକ୍ କରାଯିବ ।" ରାଜପଥ ପାର୍ଶ୍ୱରେ ଦଣ୍ଡାୟମାନ ଥିବା ଜାର ପିଟାର ଦି ଗ୍ରେଟ ଓ ପ୍ରଥମ ନିକୋଲାସଙ୍କ ବିଶାଳକାୟ ପଥରମୂର୍ତ୍ତି ଦେଖିଲି । ତାହାପରେ ପଡ଼ିଲା ରୁଷ ସମ୍ରାଟମାନଙ୍କର 'ଶୀତ ପ୍ରାସାଦ' ବା Winter Palace ।

ଅପରାହ୍ଣରେ ମୋତେ ନିଆଗଲା ସହର ବାହାରେ ଥିବା ଗୋଟିଏ ସ୍ଥାନକୁ । ଇଟାଘର ଭିତରେ ଗୋଟିଏ କୁଡ଼ିଆକୁ ସଂରକ୍ଷିତ ଆକାରରେ ଦେଖିବାକୁ ପାଇଲି । ୧୭୦୩ ମସିହାରେ ଜାର ପିଟାର ସେହି ମାଟିକୁଡ଼ିଆରେ ରହି ନେଭା ନଦୀ

ମୁହାଣର ଜନହୀନ ସ୍ଥାନରେ ଏହି ନଗରର ମୂଳଭିତ୍ତି ସ୍ଥାପନ କରିଥିଲେ । ସହର ନିର୍ମିତ ହେଲାପରେ ତାହାର ନାମ ରଖାଗଲା ପିଟାରସ୍‌ବାର୍ଗ ବା ପିଟାରଙ୍କ ନଗର । ରୁଷିଆର ଉତ୍ତର-ପଶ୍ଚିମ ସୀମାନ୍ତରେ ଗଢ଼ିଉଠିଥିବା ସେହି ସହରଟି ଇଉରୋପର ସର୍ବାଧିକ ସୌନ୍ଦର୍ଯ୍ୟମୟ ନଗରମାନଙ୍କ ମଧ୍ୟରେ ଅନ୍ୟତମ । ରୁଷ୍ ଇତିହାସରେ ଏହି ସହରର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଦୁଇଶହ ବର୍ଷ ପର୍ଯ୍ୟନ୍ତ ଏହା ଥିଲା ରୁଷ୍ ସାମ୍ରାଜ୍ୟର ରାଜଧାନୀ ।

୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧବେଳେ ପିଟାରସ୍‌ବାର୍ଗର ନାମ ରଖାଗଲା ପେଟ୍ରୋଗ୍ରାଡ଼ । କାରଣ, 'ବାର୍ଗ' ଶବ୍ଦଟି ଥିଲା ଜାର୍ମାନ ଭାଷାର ଶବ୍ଦ ଓ 'ଗ୍ରାଡ଼' ହେଉଛି ରୁଷ୍ ଶବ୍ଦ । ଉଭୟ ଶବ୍ଦର ଅର୍ଥ ହେଲା ସହର । ଏହି ସହର ହେଲା ମହାନ ରୁଷ ବିପ୍ଳବର କେନ୍ଦ୍ରପୀଠ ଓ କ୍ଷମତାକୁ ଲେନିନଙ୍କ ଉତ୍ଥାନ ସ୍ଥାନ । ୧୯୨୪ ମସିହାରେ ଲେନିନଙ୍କ ମୃତ୍ୟୁପରେ ପେଟ୍ରୋଗ୍ରାଡ ସହରର ନାମ ରଖାଗଲା ଲେନିନଗ୍ରାଡ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ହିଟଲାରଙ୍କ ନାଜି ସୈନ୍ୟମାନେ ସହରଟିକୁ ଦଖଲ କରିବା ନିମନ୍ତେ ଆପ୍ରାଣ ଉଦ୍ୟମ କରିଥିଲେ । ବୋମାମାଡ଼ ଓ କମାଣ ଗୋଳାରେ ସହରର ପ୍ରତ୍ୟେକ ଘର କ୍ଷତିଗ୍ରସ୍ତ ହେବା ସଙ୍ଗେ ଏକତୃତୀୟାଂଶ ଗୃହ ସମ୍ପୂର୍ଣ୍ଣଭାବେ ଧୂଳିସାତ୍ ହୋଇଥିଲା । ଜାର୍ମାନମାନେ ଦୀର୍ଘ ୯୦୦ ଦିନ ସହରଟିକୁ ଅବରୋଧ କରି ରଖିଥିଲେ । ସେହି ସମୟ ମଧ୍ୟରେ ଲେନିନଗ୍ରାଡ ସହରର ୬ ଲକ୍ଷ ନରନାରୀ ଶତ୍ରୁ ଆକ୍ରମଣ, ଅନାହାର ଓ ପ୍ରଚଣ୍ଡ ଶୀତରେ ପ୍ରାଣ ହରାଇଥିଲେ । କେବଳ ବୋମାମାଡ଼ରେ ମରିଥିଲେ ୩୦ ସହସ୍ର ବ୍ୟକ୍ତି । କୁହାଯାଏ, ସମଗ୍ର ଦ୍ୱିତୀୟ ବିଶ୍ୱଯୁଦ୍ଧକାଳରେ ଯେତେସଂଖ୍ୟକ ଆମେରିକୀୟ ସୈନ୍ୟ ଜୀବନ ହରାଇଥିଲେ, ତାହାଠାରୁ ଅଧିକ ସଂଖ୍ୟକ ମନୁଷ୍ୟ ମରିଥିଲେ କେବଳ ଲେନିନଗ୍ରାଡ ଯୁଦ୍ଧରେ ।

ଅଧୁନା ଲେନିନଗ୍ରାଡ ହେଉଛି ରୁଷିଆର ଦ୍ୱିତୀୟ ବୃହତ୍ତମ ନଗରୀ । ମୁଁ ଯାଇଥିଲାବେଳେ ଲୋକସଂଖ୍ୟା ଥିଲା ପ୍ରାୟ ୩ ନିୟୁତ । ରାଜା ପିଟାରଙ୍କ କୁଟୀରପାଖରୁ ଫେରିଲାବେଳେ ସିରମ୍‌ନୋଭ ତାଙ୍କ ବିଶ୍ୱବିଦ୍ୟାଳୟ କଥା କହିଲେ । ଛାତ୍ର ସଂଖ୍ୟା ୧୫ ସହସ୍ର, ୧୪ ଗୋଟି ଶିକ୍ଷା ବିଭାଗ, ଏବଂ ଅଧ୍ୟାପକମାନଙ୍କ ସଂଖ୍ୟା ପ୍ରାୟ ୨ ହଜାର ।

ହୋଟେଲରେ ମୋ ସହିତ ରାତ୍ରିଭୋଜନ ପାଇଁ ଆସିଲେ ନିଜେ କୁଳପତି ଓ ଅଧ୍ୟାପକ ପେଚେଙ୍କୋ । ସହର ସମ୍ପର୍କରେ ମୋର ସମ୍ୟକ ଧାରଣା ହୋଇଛି ବୋଲି ଜଣାଇଲି । କୁଳପତି କହିଲେ, "ସହରର ସ୍ଥାପତ୍ୟକୀର୍ତ୍ତି, ମିଉଜିୟମ ଓ ଐତିହାସିକ ସ୍ଥାନମାନ ଦେଖିଲାପରେ ଆପଣ ବୁଝିପାରିବେ ଲେନିନଗ୍ରାଡର

ମର୍ଯ୍ୟାଦା ।'' ଭୋଜନବେଳେ ସେ ବାରମ୍ବାର 'ଭଡ୍‌କା' ପିଇବା ଦେଖିଲି । ପେଟେଙ୍କୋ କିନ୍ତୁ ପିଇଲେ ନାହିଁ । ମୋତେ ପିଇବାକୁ କହିବାରୁ କୌତୁକ କଲି ''ପିଇବାକୁ ଆପତ୍ତି ନାହିଁ, କିନ୍ତୁ ଅଚେତ ହେବାର ଭୟ ଅଛି ।''ଖାଇସାରିଲା ପରେ କୁଳପତି ମୋ ରୁମ୍ ଦେଖିବାକୁ ଆସିଲାବେଳକୁ ତାଙ୍କୁ ନିଶା ଲାଗିଯାଇଥାଏ । ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଇ କିଛି ସମୟ ତାଳ ପକାଇ ନାଚିଲା ପରେ ସେ ଧୀରେ ଧୀରେ ବାହାରକୁ ଚାଲିଗଲେ । ପ୍ରବଳ ଶୀତ ଯୋଗୁଁ ଭଡ୍‌କା ହେଉଛି ରୁଷବାସୀଙ୍କର ଜାତୀୟ ପାନୀୟ । କ୍ରୁଶ୍ଚେଭ ବା କୁଳପତି, ଶ୍ରମିକ ବା କୃଷକ, କେହି ସେଥିରୁ ନିଷ୍କୃତି ପାଉ ନଥିଲେ ।

## ୧୩ ଅକ୍ଟୋବର: ପିଟାର-ପଲ ଦୁର୍ଗ ଓ ଆଇଜାକ୍ ଗିର୍ଜା

ଲେନିନଗ୍ରାଡର ଦର୍ଶନୀୟ ସ୍ଥାନମାନ ଦେଖିବାଲାଗି ଆଗ୍ରହ ବଢ଼ିଯାଇଥାଏ । ସକାଳ ୯ଟା ବେଳକୁ ସିରମନୋଭ ପ୍ରଥମେ ନେଇଗଲେ ପିଟାର-ପଲ୍ ନାମକ ଦୁର୍ଗକୁ । ଦୁର୍ଗଟି ଛିଡ଼ା ରହିଥାଏ ଗୋଟିଏ କ୍ଷୁଦ୍ର ଦ୍ୱୀପରେ । ଜାର ପିଟାର ଏହି ଦୁର୍ଗ ନିର୍ମାଣ କଲାବେଳେ ଶତ୍ରୁ ଆକ୍ରମଣରୁ ସହର ରକ୍ଷାକରିବା ଥିଲା ତାଙ୍କର ଉଦ୍ଦେଶ୍ୟ । କିନ୍ତୁ ଦିନେ ତାହା ହେଲା ଏକ ଭୟଙ୍କର ବନ୍ଦୀଶାଳା । ଦୁର୍ଗର ଅନ୍ୟ ଗୋଟିଏ ଅଂଶ ହେଲା ରୁଷସମ୍ରାଟ ଓ ସାମ୍ରାଜ୍ଞୀମାନଙ୍କର ସମାଧି ସ୍ଥାନ ଓ ପ୍ରାର୍ଥନା ନିମନ୍ତେ ଗିର୍ଜାଗୃହ ।

ପ୍ରଥମେ ଦେଖିବାକୁ ଗଲୁଁ ରାଜବଂଶର କବର । ପ୍ରଥମ କବରଟି ଥାଏ ଜାର ପିଟାରଙ୍କର । ତା ପାଖକୁ ଲାଗିଛି ଧଳା ମାର୍ବଲପଥରର ଗୋଟିକ ପରେ ଗୋଟିଏ ଅନ୍ୟ ସମ୍ରାଟ ଓ ସାମ୍ରାଜ୍ଞୀମାନଙ୍କର କବର । ଶେଷଭାଗରେ ରହିଛି ଜାର ପ୍ରଥମ ଆଲେକଜାଣ୍ଡାର ଓ ପ୍ରଥମ ନିକୋଲାସଙ୍କ ମର୍ମର ନିର୍ମିତ ଆଧାର । ଉଭୟେ ଥିଲେ ଅତ୍ୟନ୍ତ ପ୍ରଭାବଶାଳୀ ସମ୍ରାଟ । ତା ପରେ ଦେଖିବାକୁ ମିଳିଲା ସର୍ବାଧିକ ସୁନ୍ଦର ଦୁଇଟି ସମାଧି, ଜାର ଦ୍ୱିତୀୟ ଆଲେକଜାଣ୍ଡାର ଓ ତାଙ୍କ ସାମ୍ରାଜ୍ଞୀଙ୍କର । ଏହି ଦୁଇଟିର ନିର୍ମାଣ ଲାଗି ଜାର ଇଉରାଲ୍ ପ୍ରସ୍ତରଖଣିରୁ ଦୁର୍ମୂଲ୍ୟ ସ୍ୱଚ୍ଛ ରଙ୍ଗିନ ସ୍ଫଟିକ ସଂଗ୍ରହ କରିଥିଲେ । ଜାରଙ୍କ କବରଟି ସବୁଜ ରଙ୍ଗର ଉଜ୍ଜ୍ୱଳ ଜେସ୍‌ପେରାସ୍ ପଥରରେ ତିଆରି ଥିଲାବେଳେ ରାଣୀଙ୍କର ଥିଲା ଲାଲରଙ୍ଗର ସ୍ଫଟିକରେ । ଦୁଇଟିଯାକ ଆଲୋକବତି ପରି ଚକମକ କରୁଥାଏ । ସର୍ବଶେଷ ସମାଧିଟି ଥିଲା ଜାର ତୃତୀୟ ଆଲେକଜାଣ୍ଡାରଙ୍କର । ସେହିଠାରେ ଶେଷ ହେଲା ରୋମାନଭ ସମ୍ରାଟମାନଙ୍କର ସମାଧି । ସର୍ବଶେଷ ଜାର ଦ୍ୱିତୀୟ ନିକୋଲାସ ରୁଷ୍‌ବିପ୍ଳବ କାଳରେ ସପରିବାର ବନ୍ଦୀ ଅବସ୍ଥାରେ ଏକ ଦୂରବର୍ତ୍ତୀ ସ୍ଥାନରେ ଗୁଳିବିଦ୍ଧ ହୋଇ ପ୍ରାଣ ହରାଇଥିଲେ । ରାଜବଂଶର ଶବଗୁଡ଼ିକ ବିପ୍ଳବୀମାନେ ମାଟିତଳେ ପୋତିଦେଇଥିଲେ ।

(ବହୁ ବର୍ଷ ପରେ, ୧୯୯୫ ମସିହାରେ, ସେହି ସ୍ଥାନରେ ମାଟି ଖୋଳି ଜାରବଂଶର ଖପୁରିଗୁଡ଼ିକ ବାହାର କରାଗଲା । ସେଥିମଧ୍ୟରୁ ଗୋଟିଏ ଖପୁରିର ଦାନ୍ତଗୁଡ଼ିକ ଦେଖି ତାହା ଜାର ନିକୋଲାସଙ୍କ ମୁଣ୍ଡ ବୋଲି ଚିହ୍ନଟ କରାଯାଇଥିଲା ।)

ସମାଧିକକ୍ଷ ଦେଖିସାରିଲା ପରେ ବନ୍ଦିଶାଳା ଦେଖିବାକୁ ଚାଲିଲୁଁ । ସୁଡ଼ଙ୍ଗପଥରେ ମହମବତି ଜାଳି ଅନେକ ତଳକୁ ଗଲାପରେ ସେଠାରେ ଭୂଗର୍ଭସ୍ଥିତ ବନ୍ଦିଶାଳାର ଆତଙ୍କପ୍ରଦ କ୍ଷୁଦ୍ର କ୍ଷୁଦ୍ର କକ୍ଷ ଦେଖିବାକୁ ମିଳିଲା । ସେହି ଅନ୍ଧକୂପ ଗୁଡ଼ିକରେ ରଖାଯାଉଥାଏ ରାଜଦ୍ରୋହୀ, ସନ୍ତ୍ରାସବାଦୀ, ବିପ୍ଳବୀ, ନିନ୍ଦୁକ, ପ୍ରଗତିଶୀଳ ବୁଦ୍ଧିଜୀବୀ, ଚିନ୍ତାଶୀଳ କବି ଓ ଲେଖକମାନଙ୍କୁ । ପ୍ରତ୍ୟେକ କକ୍ଷର ଛାତ ପାଖରେ ଇଞ୍ଚିକିଆ ଗାତ ଥାଏ । ତା ଭିତର ଦେଇ ଈଷତ୍ ଅଲୋକ ଆସୁଥିବା ଦେଖାଗଲା । ପ୍ରତ୍ୟେକ କୋଠରିର ଦୁଆର ପାଖରେ ବିଖ୍ୟାତ ବନ୍ଦୀମାନଙ୍କର ଫଟୋ ଓ ସଂକ୍ଷିପ୍ତ ଜୀବନୀ ଏବେ ଲେଖାଯାଇଛି । ପରିଚୟ ପଢ଼ିପଢ଼ି ଦୁଇଟି କୋଠରି ଦେଖିବି ବୋଲି କହିଲି । ଗୋଟିକରେ ଥିଲେ ଲେନିନଙ୍କ ବଡ଼ଭାଇ ୨୧ ବର୍ଷ ବୟସ୍କ ଆଲେକ୍‌ଜାଣ୍ଡାର । ଜାରଙ୍କ ବିରୋଧରେ ଷଡ଼ଯନ୍ତ୍ର କରୁଥିଲାବେଳେ ଧରାପଡ଼ି ସେ ଏହି କାରାଗାରରେ ଫାଶି ପାଇଥିଲେ । ତାଙ୍କ ଛବିରୁ ବାଲ୍ୟସୁଲଭ ସରଳତାର ଆଭାସ ମିଳୁଥାଏ । ଅନ୍ୟ କୋଠରିଟିରେ ଥିଲେ ସୁପ୍ରସିଦ୍ଧ ରୁଷ ସାହିତ୍ୟିକ ମ୍ୟାକ୍‌ସିମ୍ ଗୋର୍କୀ । ତାଙ୍କର ଅପରାଧ ଥାଏ, ୧୯୦୫ ମସିହାରେ ଜାରଙ୍କ ଶୀତପ୍ରାସାଦ ଆଗରେ ଘଟିଥିବା ନୃଶଂସ ହତ୍ୟାକାଣ୍ଡ ସମ୍ବନ୍ଧରେ ଲିଖିତ ଏକ କ୍ଷୁଦ୍ର ପୁସ୍ତିକା । ସେହି ହତ୍ୟାକାଣ୍ଡରେ ଜାରଙ୍କ ଆଦେଶରେ ଏକ ସହସ୍ର ନରନାରୀ ଗୁଳିମାଡ଼ରେ ନିହତ ହୋଇଥିଲେ । ଗୋର୍କୀ ମୃତ୍ୟୁଦଣ୍ଡରୁ ବର୍ତ୍ତିଯାଇଥିଲେ, କିନ୍ତୁ ସେହି କାରାଗହ୍ୱର ଗର୍ଭରେ ଅଶେଷ ନିର୍ଯ୍ୟାତନା ଭୋଗିଥିଲେ । ତାଙ୍କୁ ଶୋଇବା ପାଇଁ ଦିଆଯାଇଥିବା ଲୁହାପାତିଆରେ ତିଆରି ଛୋଟିଆ ଖଟିଆଟି ପଡ଼ିଛି । ସେଥିରେ ଲାଗିଛି ହାତ ଓ ଗୋଡ଼ ବନ୍ଧାଯାଉଥିବା ଶିକୁଳି । ଖାଇବା ପିଇବା ଓ ଅନ୍ୟ କାମପାଇଁ ରହିଛି ଦୁଇଟି ଲୁହାର ପାତ୍ର ।

ଅନ୍ଧକାରାଚ୍ଛନ୍ନ ଜେଲ କକ୍ଷରୁ ସୁଡ଼ଙ୍ଗ ପଥରେ ବାହାରି ଆସି ଆଗରେ ଦେଖିଲି ମେଘନାଦ ପ୍ରାଚୀର । ସିରମନୋଭଙ୍କୁ କହିଲି, ''ବନ୍ଦିଶାଳା ଦେଖି ଜାରତନ୍ତ୍ରର ପରିଚୟ ପାଇଲି ।'' ସେ କହିଲେ, ''ଫାଶିମଞ୍ଚ ପାଖକୁ ଗଲେ ଅଧିକ କିଛି ଜାଣିପାରିବେ ।'' ସେଠାକୁ ଯିବି ନାହିଁ ବୋଲି ଅନୁରୋଧ ଜଣାଇଲି ।

ଅପରାହ୍ନରେ ଦେଖିଲି ସୁବିଶାଳ ସେଣ୍ଟ ଆଇଜାକ୍ ଗିର୍ଜା । ଏହି କାଥେଡ୍ରାଲ ହେଉଛି ପୃଥିବୀର ତୃତୀୟ ବୃହତ୍ତମ ଗିର୍ଜାଗୃହ । ଶୁଣିଲାବେଳେ ବିଶ୍ୱାସ କରିହେଲା ନାହିଁ ଯେ, ଏହାର ନିର୍ମାଣ ନିମନ୍ତେ ୪୦ ବର୍ଷ ସମୟ ଲାଗିଥିଲା ଏବଂ

ସେଥିରେ ୪ ଲକ୍ଷ ୬୦ ସହସ୍ର ମନୁଷ୍ୟ କାର୍ଯ୍ୟ କରିଥିଲେ । ରୁଷ ସାମ୍ରାଜ୍ୟର ୩ ଜଣ ସମ୍ରାଟ, ପ୍ରଥମ ଆଲେକଜାଣ୍ଡାର, ପ୍ରଥମ ନିକୋଲାସ ଓ ଦ୍ୱିତୀୟ ଆଲେକଜାଣ୍ଡାରଙ୍କ ଶାସନକାଳରେ ନିର୍ମାଣକାର୍ଯ୍ୟ ଶେଷ ହୋଇଥିଲା ।

ରୁଷ୍ ଭାସ୍କର୍ଯ୍ୟ ଓ ଚିତ୍ରକଳାର ଅପୂର୍ବ ନିଦର୍ଶନମାନ ଧାରଣ କରିଛି ଏହି ଗିର୍ଜା । ଉଜ୍ଜ୍ୱଳ ମାର୍ବଲ, ପିତ୍ତଳ ଓ ବ୍ରୋଞ୍ଜ ଦ୍ୱାରା ଗର୍ଭଗୃହଗୁଡ଼ିକ ସୁଶୋଭିତ ରହିଛି । ସେଥି ଉପରେ ରହିଛି ସ୍ୱଚ୍ଛ କାଚ ଗାତ୍ରରେ ଚିତ୍ରିତ ବାଇବଲ-ବର୍ଣ୍ଣିତ ବିଷୟବସ୍ତୁ । ପ୍ରକାଣ୍ଡ ପ୍ରକାଣ୍ଡ ଛବିଗୁଡ଼ିକରେ ଯିଶୁ ଏବଂ ବହୁ ସଂଖ୍ୟକ ଖ୍ରୀଷ୍ଟିଆନ ଧର୍ମଗୁରୁମାନଙ୍କର ମୂର୍ତ୍ତି ଜୀବନ୍ତ ଦେଖାଯାଉଥାଏ । ସୁପ୍ରଶସ୍ତ ଛାତର ଭିତର ପଟରେ ଅଙ୍କିତ ବହୁରଙ୍ଗର ଚିତ୍ରରାଜି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥାଏ । ଜଣା ପଡ଼େ, ରୁଷ ଚିତ୍ରକର ଓ ଶିଳ୍ପୀମାନଙ୍କର ଆସାଧାରଣ କଳାକୌଶଳ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାର୍ମାନମାନେ ବୋମାବର୍ଷଣ ଦ୍ୱାରା ଏହି ପ୍ରକାଣ୍ଡକାୟ ଗିର୍ଜାର ଅଶେଷ କ୍ଷତି ଘଟାଇଥିଲେ । କିନ୍ତୁ ଷ୍ଟାଲିନ ସରକାର ପ୍ରଚୁର ଅର୍ଥ ବ୍ୟୟ କରି ଗିର୍ଜାର ମରାମତି କରାଇଥିଲେ ଏବଂ ପୂର୍ବକାଳର ମୂର୍ତ୍ତି ଓ ଚିତ୍ରମାନ ଯଥାସ୍ଥାନରେ ରଖିଥିଲେ । ଧର୍ମବିଶ୍ୱାସୀ ନ ହେଲେ ସୁଦ୍ଧା ରୁଷିଆର କମ୍ୟୁନିଷ୍ଟ ସରକାର ପ୍ରାଚୀନ କୀର୍ତ୍ତିଗୁଡ଼ିକର ରକ୍ଷଣାବେକ୍ଷଣ ନିମନ୍ତେ କେବେହେଲେ ଅବହେଳା ଦେଖାଇ ନାହାନ୍ତି । ସୌଧର ଶିଖରକୁ ଉଠି ସେଠାରୁ ଲେନିନ୍‌ଗ୍ରାଡ ସହରର ଶୋଭା ଦେଖିଲି । ଦିଗ୍‌ବଳୟ ଉପରେ ଦେଖାଯାଉଥାଏ ବଲଟିକ ସାଗର ଓ ସେଠାକାର ଜାହାଜ ନିର୍ମାଣ କେନ୍ଦ୍ର ।

ସନ୍ଧ୍ୟା ୭ଟାରେ ବିଶ୍ୱବିଦ୍ୟାଳୟ ହଲରେ 'ଭାରତୀୟ ସ୍ୱାଧୀନତା ସଂଗ୍ରାମ' ବିଷୟରେ ଭାଷଣ ଦେଲି । ଅଧ୍ୟାପକ ଓ ଛାତ୍ରମାନେ ଧୀର ସ୍ଥିର ଭାବେ ଶୁଣିବା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି, କାରଣ ସେମାନେ ଇଂରାଜୀ ବୁଝନ୍ତି ନାହିଁ । ଅବଶ୍ୟ, ମୁଁ ଗୋଟିଏ ବାକ୍ୟ ଶେଷ କଲାକ୍ଷଣି ଅନୁବାଦକ ତତ୍‌କ୍ଷଣାତ୍ ରୁଷ୍ ଭାଷାରେ ସେହି ବାକ୍ୟଟି କହି ଯାଉଥାନ୍ତି ।

### ୧୪ ଅକ୍ଟୋବର : 'ଶୀତ ପ୍ରାସାଦ'

ପୂର୍ବାହ୍ନ ୧୦ଟା ସମୟରେ ପହଞ୍ଚିଲି ରୁଷ ସମ୍ରାଟମାନଙ୍କର ପ୍ରସିଦ୍ଧ 'ଶୀତ ପ୍ରାସାଦ' ଦେଖିବା ଲାଗି । ଅଧୁନା ସେହି ସୁବିଶାଳ ରାଜପ୍ରାସାଦର ନାମ ହେଉଛି 'ହାରମିଟେଜ', ରୁଷିଆର ସର୍ବବୃହତ ମିଉଜିୟମ୍ । ସେହି ସୌଧର ୩୦୦ ଗୋଟି କୋଠରି ଏବେ ସର୍ବସାଧାରଣଙ୍କ ପାଇଁ ଖୋଲା ରହିଛି । କକ୍ଷଗୁଡ଼ିକ ମଧ୍ୟରେ ରହିଛି କ୍ଷୁଦ୍ରବୃହତ୍ ୨୩ ଲକ୍ଷ ସାମଗ୍ରୀ, ପ୍ରାଗ୍‌ଐତିହାସିକ ଯୁଗରୁ ଆଧୁନିକ ଯୁଗପର୍ଯ୍ୟନ୍ତ ସଂଗୃହୀତ ଦ୍ରଷ୍ଟବ୍ୟ ନିଦର୍ଶନମାନ । ପୃଥିବୀର ପ୍ରାୟ ସବୁ ଅଞ୍ଚଳ

ଓ ଦେଶରୁ ସଂଗ୍ରହ କରାଯାଇଥିବା ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ଯୁଗର ବିବିଧ ପଦାର୍ଥ ଗର୍ଭରେ ଧାରଣ କରି ହାରମିଟେଜ ହେଉଛି ବିଶ୍ୱର ଅନ୍ୟତମ ବିଖ୍ୟାତ ମିଉଜିୟମ ।

ଭିତରକୁ ପ୍ରବେଶ କଲାପରେ ଜାଣିପାରିଲି ଦର୍ଶକମାନଙ୍କ ସଂଖ୍ୟା ଦୃଷ୍ଟିରୁ କ୍ଷିପ୍ର ପଦକ୍ଷେପରେ ଆଗେଇବାକୁ ହେବ । ପ୍ରଶସ୍ତ ହଲଗୁଡ଼ିକ ମଧ୍ୟରେ ଥିବା ଲିଓନାର୍ଡ଼ୋ ଡା ଭିନ୍ସି, ରାଫାଏଲ, ଟିଟିଆନ୍, ରୁବେନ ଓ ଭାନ୍ ଡାଇକ୍ ପ୍ରଭୃତି ମହାନ ଚିତ୍ରକରମାନଙ୍କର ଚିତ୍ରପଟ କିମ୍ବା ମାଇକେଲ୍ ଏଞ୍ଜେଲୋ ପ୍ରଭୃତିଙ୍କ ଭାସ୍କର୍ଯ୍ୟ ଆଗରେ ଏକ ମିନିଟ ଛିଡ଼ା ହେବା ପାଇଁ ମଧ୍ୟ ସମୟ ମିଳୁନଥାଏ । ସେହିପରି, ପୃଥିବୀର ବିଭିନ୍ନ ଦେଶ ଓ ବିଭିନ୍ନ ସମୟର ଅସ୍ତ୍ରଶସ୍ତ୍ର, ଅଳଙ୍କାର, ପୋଷାକ ପରିଛଦ, ଆସବାବପତ୍ର ଓ ଏପରିକି ହୀରା ନୀଳା, ମୋତି ମାଣିକ୍ୟ ଦେଖିବା ଲାଗି ସୁଦ୍ଧା ବେଳ ନଥାଏ । ଗୋଟିଏ ହଲ ଭିତରେ କାଚବାକ୍ସଗୁଡ଼ିକରେ ରହିଛି ସବୁ ଦେଶର ପ୍ରାଚୀନ, ମଧ୍ୟଯୁଗୀୟ ଓ ଏ ଯୁଗର ମୁଦ୍ରା । ସେଗୁଡ଼ିକର ସଂଖ୍ୟା ପ୍ରାୟ ଏକ ନିୟୁତ ବୋଲି କୁହାଗଲା । ପୃଥିବୀର ଅନ୍ୟ କୌଣସିଠାରେ ସେପରି ମୁଦ୍ରା ସଂଗ୍ରହାଳୟ ନାହିଁ । ଦୁଃଖର ବିଷୟ, ଦୃଷ୍ଟିପାତ ପାଇଁ ସମୟ ମିଳିଲା ନାହିଁ ।

ଯାଦୁଘରର ନାମ 'ହାରମିଟେଜ' ବା 'ସନ୍ନ୍ୟାସୀର ଆଶ୍ରମ' ଦିଆଯାଇଛି କାହିଁକି ବୋଲି ପଚାରିଲି । ଗାଇଡ୍ କହିଲେ, ରୁଷ ସମ୍ରାଟମାନେ ପୁରୁଷାନୁକ୍ରମେ ସଂଗ୍ରହ କରି ଆଣୁଥିବା ପଦାର୍ଥମାନ ରାଜପ୍ରାସାଦର ନିଭୃତ ଗୁପ୍ତକକ୍ଷ ଗୁଡ଼ିକରେ ରଖାଯାଉଥାଏ । କେବଳ ରାଜପରିବାର ଓ ଦରବାରର ସମ୍ଭ୍ରାନ୍ତମାନେ ଦେଖିପାରୁଥାନ୍ତି, ଅନ୍ୟ କେହି ନୁହେଁ । ସମଗ୍ର ସ୍ଥାନଟିର ନିର୍ଜନତା ଦୃଷ୍ଟିରୁ, ଦୁଇଶହ ବର୍ଷ ପୂର୍ବେ ସ୍ଥାନଟିର ନାମକରଣ କରାଯାଇଥିଲା 'ସନ୍ନ୍ୟାସୀର ଆଶ୍ରମ' । ସେହି ନାମ ରହିଗଲା, ଯଦିଚ ଏବେ ପ୍ରତିଦିନ ସହସ୍ର ସହସ୍ର ମନୁଷ୍ୟ ଦେଖିବାକୁ ଆସୁଛନ୍ତି ।

ଅଦ୍ଭୁତ ଥାଏ ଜାରମାନଙ୍କର ସଂଗ୍ରହଲିପ୍ସା । ପିଟାର ଦି ଗ୍ରେଟ ଅନେକ ଦେଶକୁ ସ୍ୱତନ୍ତ୍ର ଦୂତ ପଠାଇ ପ୍ରାଚୀନ ପଦାର୍ଥମାନ ବହୁ ମୂଲ୍ୟରେ କିଣି ଆଣୁଥିଲେ । ସାମ୍ରାଜ୍ଞୀ କାଥେରିନ୍ ଦି ଗ୍ରେଟ ଜଣେ ପ୍ରୁସୀୟ ବଣିକଙ୍କ ନିକଟରୁ ୨୨୫ ଗୋଟି ଦୁର୍ମୂଲ୍ୟ ଚିତ୍ରପଟ କ୍ରୟ କରି ହାରମିଟେଜରେ ରଖିଥିଲେ । କୁହାଯାଏ, ଜଣେ ଜଣେ ଜାର ଇଉରୋପୀୟ ରାଜବଂଶ ଓ ସମ୍ଭ୍ରାନ୍ତ ପରିବାର ନିକଟରୁ ସେମାନଙ୍କର ସମଗ୍ର ସଂଗ୍ରହାଳୟମାନ କିଣିନେଉଥିଲେ । ରୁଷବିପ୍ଳବ ପରେ ସୋଭିଏତ ସରକାର ଅସଂଖ୍ୟ ସ୍ଥାନରୁ ଦ୍ରଷ୍ଟବ୍ୟ ନିଦର୍ଶନମାନ ସଂଗ୍ରହ କରି ହାରମିଟେଜର ବପୁଦ୍ଧି କରିବା ସଙ୍ଗେ ଦେଶବାସୀଙ୍କ ଦେଖିବା ଲାଗି ଶୀତ ପ୍ରାସାଦ ମୁକ୍ତ ରଖିଛନ୍ତି ।

୬ ଘଣ୍ଟା ସମୟ କକ୍ଷ ପରେ କକ୍ଷ ଦେଖିଲାପରେ ଚକ୍ଷୁଦୁଇଟିର ଆଶା ସାର୍ଥକ ହେଲାବେଳକୁ ଦେହଟି ସମ୍ପୂର୍ଣ୍ଣ ଅବଶ ହୋଇଯାଇଥାଏ । ହୋଟେଲକୁ ଫେରିଆସି ବିଛଣାରେ ପଡ଼ିରହିଲି । ପରବର୍ତ୍ତୀ ପାଞ୍ଚଦିନ ଲେକଚାର ଦେବାରେ ବ୍ୟସ୍ତ ରହିବାକୁ ହେଲା । ସେହି କେତୋଟି ଦିନ ଲେନିନଗ୍ରାଡରେ ପ୍ରବଳ ତୁଷାରପାତ ଲାଗିରହିଥାଏ । ଭାଷଣ ଦେବାଲାଗି ଯିବାଆସିବା ବେଳେ ଦେଖୁଥାଏ ବରଫଆଚ୍ଛାଦିତ ଶୀତପ୍ରାସାଦ, ରାଜପଥ, ପାର୍କ ଓ ସୌଧରାଜି । ନେଭା ନଦୀ କୂଳରେ ଗାଡ଼ି ଚାଲିଲାବେଳେ ଦିଶୁଥାଏ ଅପୂର୍ବ ଦୃଶ୍ୟ, ନଦୀଜଳ ନୁହେଁ, ଶ୍ୱେତମର୍ମର ପ୍ରସ୍ତରର ସୁଦୀର୍ଘ ପ୍ରାଙ୍ଗଣ ।

## ୨୦ ଅକ୍ଟୋବରଃ କେତୋଟି ଦର୍ଶନୀୟ ସ୍ଥାନ

ସକାଳ ୯ଟା ବେଳେ ସିରମନୋଭ ମୋତେ ନେଇଗଲେ ରୁଷ୍ ଯାଦୁଘର ବା ସଂଗ୍ରହାଳୟ ଦେଖିବା ନିମନ୍ତେ । ଏଠାରେ ରଖାଯାଇଛି ରୁଷିଆର ପ୍ରଖ୍ୟାତ ଚିତ୍ରକର ଓ ଭାସ୍କର ଶିଳ୍ପୀମାନଙ୍କର ଆକର୍ଷଣୀୟ କୀର୍ତ୍ତିମାନ । ଶିଳ୍ପୀମାନଙ୍କର ପ୍ରସ୍ତରମୂର୍ତ୍ତିଗୁଡ଼ିକ ମଧ୍ୟ ଯଥାସ୍ଥାନରେ ରଖାଯାଇଥାଏ । କେତେଗୁଡ଼ିଏ ଚିତ୍ରପଟ ଆକାରରେ ଖୁବ୍ ବଡ଼ ଥାଏ । 'ପମ୍ପେର ଶେଷ ଦିବସ' ନାମକ ବିରାଟ ଚିତ୍ରପଟଟିରେ ଏପରି ଦୃଶ୍ୟମାନ ଅଙ୍କିତ ରହିଛି ଯେ, ମନେହେବ ଧ୍ୱଂସକାଳର ଘଟଣାମାନ ଆଖି ଆଗରେ ଘଟିଯାଉଛି ।

ଗୋଟିଏ ଭାସ୍କର୍ଯ୍ୟ ଆଗରେ କିଛି ସମୟ ଛିଡ଼ା ରହିଲି । ଖୋଦିତ ପ୍ରସ୍ତରମୂର୍ତ୍ତିଟିର ନାମ ଥାଏ 'ପିତା ପୁତ୍ର' । ଜଣେ ଦରିଦ୍ର ପିତା ଅନାହାରକ୍ଲିଷ୍ଟ ଅଳ୍ପବୟସ୍କ ପୁତ୍ରଟିକୁ କୋଳରେ ରଖି ଚିନ୍ତାମଗ୍ନ ଅବସ୍ଥାରେ ଉଦାସ ଆଖିରେ ଶୂନ୍ୟକୁ ଚାହିଁ ରହିଛି । ତା ମୁଖମଣ୍ଡଳରୁ ନିର୍ଗତ ହେଉଛି ଦାରୁଣ ଦୁଃଖଦୈନ୍ୟର କରୁଣ ମନୋଭାବ । ଧନ୍ୟ ସେହି ଶିଳ୍ପୀ, ଯାହାଙ୍କ ଗଠିତ ମୂର୍ତ୍ତି ଦେଖି ଆଖିରେ ଲୁହ ଆସିଥିଲା । ସମ୍ରାଟ ଓ ସାମ୍ରାଜ୍ଞୀମାନଙ୍କର ଅବିକଳ ଚିତ୍ରଗୁଡ଼ିକ ଦେଖି ସେମାନଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳୁଥାଏ । ଯାଦୁଘର ଆଗରେ ପାର୍କ ମଧ୍ୟରେ ରହିଛି କବି ପୁଷ୍କିନଙ୍କର ପ୍ରସ୍ତରମୂର୍ତ୍ତି ।

ସେଠାରୁ ଚାଲିଲୁଁ 'ଲେନିନ ସ୍ମୃତି ସଂଗ୍ରହାଳୟ' ଦେଖିବା ପାଇଁ । ସୌଧଟି ଏକଦା ଥାଏ ଜଣେ ଧନଶାଳୀ ସମ୍ଭ୍ରାନ୍ତଙ୍କର ବିଳାସ ଭବନ । ନେଭାନଦୀ କୂଳରେ ଥିବା ଏହି ଗୃହ ମଧ୍ୟରେ ରଖାଯାଇଛି ଲେନିନଙ୍କ ବାଲ୍ୟାବସ୍ଥାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଜୀବନର ବହୁବିଧ କାର୍ଯ୍ୟକଳାପର ଚିତ୍ର ଓ ଫଟୋଗ୍ରାଫ୍ । ରୁଷବିପ୍ଳବର ପ୍ରସିଦ୍ଧ ଘଟଣାମାନ ଏଠାରେ ଚିତ୍ର ଆକାରରେ ସ୍ଥାନ ପାଇଛି । ସ୍ଥାନେ ସ୍ଥାନେ ରହିଛି ଲେନିନ ଓ ତାଙ୍କ ସହକର୍ମୀମାନଙ୍କର ପ୍ରସ୍ତରମୂର୍ତ୍ତି । ଲେନିନଙ୍କ ବ୍ୟବହୃତ

ଆସବାବପତ୍ର, ବହି ଓ ଖାତା, ତାଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ ଏବଂ ପୁସ୍ତିକାଗୁଡ଼ିକର ପାଣ୍ଡୁଲିପିମାନ ସୁରକ୍ଷିତ ରହିଛି ।

ସନ୍ଧ୍ୟାବେଳେ ଅଧ୍ୟାପକ ପେଚେଙ୍କୋ ଲେନିନଗ୍ରାଡ ସହରର ଭୂତଳ ରେଳପଥରେ କେତେକ ସ୍ଥାନ ଦେଖାଇବାକୁ ନେଇଗଲେ । ମାଟିତଳର ଷ୍ଟେସନଗୁଡ଼ିକ ସ୍ଫଟିକ ଓ କାଚ ଦ୍ୱାରା ଅଳଙ୍କୃତ କରାଯାଇଛି । ଲଣ୍ଡନର ଭୂତଳ ଷ୍ଟେସନ ଅପେକ୍ଷା ଏଠାକାର ଷ୍ଟେସନଗୁଡ଼ିକ ଅଧିକ ଆକର୍ଷଣୀୟ । ଦେଶର ପ୍ରସିଦ୍ଧ କବିମାନଙ୍କ ନାମାନୁଯାୟୀ ଷ୍ଟେସନଗୁଡ଼ିକ ନାମିତ ।

## ୨୧ ଅକ୍ଟୋବର: 'ଲେନିନଙ୍କ କୁଟୀର'

ସେ ଦିନ ଗୋଟିଏ ଦୂରବର୍ତ୍ତୀ ସ୍ଥାନକୁ ଯିବାଲାଗି ପ୍ରୋଗ୍ରାମ ଥାଏ । ବରଫବୃଷ୍ଟି ବନ୍ଦ ହୋଇଥିଲେ ସୁଦ୍ଧା ରାସ୍ତାଘାଟରେ ବରଫ ଜମିରହିଥାଏ । ପ୍ରଚଣ୍ଡ ଶୀତ ଥିଲେ ମଧ୍ୟ ସୂର୍ଯ୍ୟାଲୋକରେ ଆକାଶ ଥାଏ ଉଜ୍ଜ୍ୱଳ । ସକାଳ ୧୦ଟା ସମୟରେ ବାସ୍‌ରେ ବସିଲି । ଗନ୍ତବ୍ୟ ସ୍ଥାନ ଥିଲା ବଲଟିକ ସାଗରର ଫିନ୍‌ଲାଣ୍ଡ ଉପସାଗର କୂଳସ୍ଥ ଗହନ ପାଇନ ଅରଣ୍ୟରେ ଥିବା ରୁଷବିପ୍ଳବର ମହାନ ସାରଥି ଲେନିନଙ୍କ ଲୁଚିରହିଥିବା ସ୍ଥାନ । ସେଠାକୁ ଆସନ୍ତି ସବୁଦେଶର ଅସଂଖ୍ୟ କମ୍ୟୁନିଷ୍ଟ ।

୧୯୧୭ ମସିହାର କଥା । ଜାରଙ୍କର ପତନ ପରେ ଏକ ଅସ୍ଥାୟୀ ସରକାର ଶାସନ କରୁଥାଏ । କିନ୍ତୁ ତାହା ସାମ୍ୟବାଦୀମାନଙ୍କ ସରକାର ନଥିଲା । ତେଣୁ ତାହାକୁ ଧ୍ୱଂସକରି କମ୍ୟୁନିଷ୍ଟ ସରକାର ସ୍ଥାପନ ନିମନ୍ତେ ଲେନିନ ଦେଶର ଶ୍ରମିକ ଓ କୃଷକମାନଙ୍କୁ ଆହ୍ୱାନ ଦେଲେ । ତେଣେ, ତାଙ୍କୁ ଧରିବା ଲାଗି ସରକାର ପୋଲିସ ଓ ସୈନ୍ୟବାହିନୀକୁ ଆଦେଶ ଦେଲେ । ଫଳରେ, ଅଜ୍ଞାତ ସ୍ଥାନରେ ଆତ୍ମଗୋପନ କରି ଲେନିନ ଚରମ ବିପ୍ଳବ ଲାଗି ଯୋଜନା ଚଳାଇଲେ । ୧୯୧୭ ମସିହାର ଗ୍ରୀଷ୍ମକାଳରେ ସେ ଯେଉଁ ଅଗମ୍ୟ ଅରଣ୍ୟ ମଧ୍ୟରେ କ୍ଷୁଦ୍ର କୁଡ଼ିଆଘରେ ଲୁଚିରହି ବିପ୍ଳବ ପରିଚାଳନା କରିଥିଲେ, ସେହି କୁଡ଼ିଆଟି ଆଜି ପର୍ଯ୍ୟନ୍ତ ଏକ ଦର୍ଶନୀୟ ସ୍ଥାନ ରୂପେ ରକ୍ଷଣ କରାଯାଇଛି । କୁଡ଼ିଆର ଅବିକଳ ପଥର ନକଲ ମଧ୍ୟ ତିଆରି ହୋଇଛି । ସ୍ଥାନର ନାମ ରଖାଯାଇଛି 'ଲେନିନଙ୍କ କୁଟୀର' (Lenin's Hut) ।

ବାସ୍‌ରେ ଗଲାବେଳେ ଗ୍ରାମାଞ୍ଚଳର ଦୃଶ୍ୟମାନ ଦେଖିବାକୁ ମିଳିଲା । ସ୍କୁଲ୍, ଡାକ୍ତରଖାନା ଓ ବଗିଚାଗୁଡ଼ିକ ରାସ୍ତା ପାଖରେ ଦିଶୁଥାଏ । ସେଥିସହ, ଶିକ୍ଷାନୁଷ୍ଠାନ ଓ କୃଷିଫାର୍ମ । ଅନେକ ଜାଗାରେ ବରଫ ଢାଙ୍କିରହିଥାଏ । ତଥାପି ଲୋକେ କାର୍ଯ୍ୟରତ ଥାନ୍ତି । ଚାହୁଁ ଚାହୁଁ, ଫିନଲାଣ୍ଡ ଉପସାଗରର ଜଳରାଶି ଦୃଷ୍ଟିଗୋଚର

ହେଲା । କୂଳବର୍ତ୍ତୀ ପାଇନ ଜଙ୍ଗଲର ଶୋଭା ଆକର୍ଷଣୀୟ ଥାଏ । ଗୋଟିଏ ସ୍ଥାନରେ ବାସ ରହିଲାପରେ, ଆରମ୍ଭ ହେଲା ପଦଯାତ୍ରା । ସମୁଦ୍ର କୂଳେ କୂଳେ ପ୍ରାୟ ୩ ମାଇଲ ବାଟ ଦୁର୍ଗମ ଅରଣ୍ୟପଥରେ ଚାଲିବାକୁ ହେଲା । ଚାରିଦିଗରେ ନାନାପ୍ରକାର ଶୀତ ଦେଶୀୟ ବୃକ୍ଷ ଦେଖି ଦେଖି ଚାଲିଥିଲାବେଳେ ଆମ ପଛରେ ଚାଲିଥାନ୍ତି ଦଳେ ରୁଷ୍ ଲାଲବାହିନୀର ସୈନ୍ୟ ଓ ସେମାନଙ୍କ ପଛରେ କେତେଜଣ ସ୍କୁଲ ବାଳକ ବାଳିକା ଓ ଶିକ୍ଷକମାନେ । ଅନ୍ୟ ବାସ୍‌ରେ ଆସି ସେମାନେ ମଧ୍ୟ 'ଲେନିନ କୁଟୀର' ଦେଖିବାକୁ ଚାଲିଥିଲେ । ବଣର ପକ୍ଷୀ ଓ ଗୁଣ୍ଡୁଚିମୂଷା ଧରିବାଲାଗି ପିଲାମାନେ ଏଣେ ତେଣେ ଦୌଡ଼ିଯାଉଥାନ୍ତି । ବେଳାଭୂମିରେ ଦରିଆ ଢେଉ ଦେଖି ସେମାନଙ୍କ କୌତୂହଳର ସୀମା ନଥାଏ । ସ୍ଥାନଟିର ପ୍ରାକୃତିକ ଶୋଭା ଥାଏ ଅତୀବ ମନୋମୁଗ୍ଧକର ।

'ଲେନିନ କୁଟୀର' ପାଖରେ ପହଞ୍ଚିଲୁଁ । ଅନ୍ୟ ସ୍ଥାନରୁ ଆସିଥିବା ଦଳ ଦଳ ଲୋକଙ୍କୁ ଦେଖି ସ୍ଥାନର ଗୁରୁତ୍ୱ ଉପଲବ୍ଧି କଲି । କୁଟୀର ନିକଟରେ ରହିଛି ଗୋଟିଏ ଛୋଟ ମିଉଜିୟମ । ଯେଉଁ କପଟମୁଖା ପିନ୍ଧି ଲେନିନ ସେଠାରେ ଆତ୍ମଗୋପନ କରିଥିଲେ ଓ ଯେଉଁ ଜିନିଷମାନ ବ୍ୟବହାର କରୁଥିଲେ, ସେଗୁଡ଼ିକ ସେଠାରେ ରଖାଯାଇଛି । ଗାଇଡ୍ କହିଲେ, "ଜଙ୍ଗଲର ଜଣେମାତ୍ର କାଠ କଟାଳି ଓ ସହରରୁ ଆସୁଥିବା ଜଣେମାତ୍ର ବିପ୍ଳବୀଙ୍କ ବ୍ୟତୀତ ଆଉ କେହି ଲେନିନ୍‌ଙ୍କ ଲୁଚିବା ସ୍ଥାନ ଜାଣିପାରି ନଥିଲେ । ସେହି ବିପ୍ଳବୀଙ୍କ ହାତରେ ସେ ତାଙ୍କ ଅନୁଚରମାନଙ୍କ ପାଖକୁ ବାର୍ତ୍ତା ପଠାଉଥାନ୍ତି । ଚୂଡ଼ାନ୍ତ ବିପ୍ଳବର ଯୋଜନା ସେହି କୁଟୀର ଭିତରେ ପ୍ରସ୍ତୁତ କରାଯାଇଥିଲା "

କୁଟୀର ପାଖରୁ ବାସ୍ ପର୍ଯ୍ୟନ୍ତ ଆସି ସେଠାରୁ ରେଳଷ୍ଟେସନକୁ ଆସିଲୁଁ ଓ ଟ୍ରେନ୍‌ଯୋଗେ ଲେନିନଗ୍ରାଡ୍ ଫେରିଲୁଁ । ରେଳଡବା ଭିତରେ ରୁଷ୍ ଯାତ୍ରୀମାନେ ମୋତେ ଫଳ ଓ ଚକୋଲେଟ ଖାଇବାକୁ ଦେଉଥାନ୍ତି । ରୁଷ ଭାରତ ମୈତ୍ରୀ ବିଷୟ ସାଧାରଣ ଲୋକଙ୍କୁ ଉତ୍ତମଭାବେ ଜଣାଥାଏ ।

## ୨୨ ଅକ୍ଟୋବର : ବିଶ୍ୱବିଦ୍ୟାଳୟ

ସେ ଦିନ ମୋତେ ଲେନିନଗ୍ରାଡ ବିଶ୍ୱବିଦ୍ୟାଳୟ ଦେଖିବାକୁ ନିଆଗଲା । ଏକଦା ସମ୍ରାଟ ପିଟାର ଦି ଗ୍ରେଟ୍ ବିଭିନ୍ନ ଶାସନ ବିଭାଗ ଲାଗି ଯେଉଁ ପ୍ରକାଣ୍ଡ ଅଟ୍ଟାଳିକା ନିର୍ମାଣ କରିଥିଲେ ଓ ଯେଉଁ ସଚିବାଳୟରୁ ବହୁ ବର୍ଷ ଯାବତ୍ ଶାସନକର୍ତ୍ତାମାନେ ସାମ୍ରାଜ୍ୟ ଶାସନ କରିଥିଲେ, ସେହି ଗୃହ ଅଧୁନା ହୋଇଛି ବିଶ୍ୱବିଦ୍ୟାଳୟ । ବିଭିନ୍ନ ବିଭାଗକୁ ଯିବା ପଥରେ ରୁଷିଆର ବରିଷ୍ଠ ବୈଜ୍ଞାନିକ, ସାହିତ୍ୟକ ଓ ଶିକ୍ଷାବିତ୍‌ମାନଙ୍କର ପଥର ପ୍ରତିମୂର୍ତ୍ତି କିମ୍ବା ତୈଳଚିତ୍ର ରଖାଯାଇଛି । ପ୍ରାଚ୍ୟବିଦ୍ୟା

ବିଭାଗକୁ ଯାଇ ଦେଖିଲି ସେଠାରେ ସହସ୍ର ସହସ୍ର ମୂଲ୍ୟବାନ ପାଣ୍ଡୁଲିପି ଓ ପ୍ରାଚୀନ ଗ୍ରନ୍ଥମାନ ସଂଗୃହୀତ ହୋଇ ରହିଛି ।

ଅପରାହ୍ଣରେ ଛାତ୍ରମାନଙ୍କୁ 'ବ୍ରିଟିଶ ଯୁଗର ଶାସନପଦ୍ଧତି ଓ ଶୋଷଣ ନୀତି' ବିଷୟରେ ବକ୍ତୃତା ଦେଲି । ଅଧ୍ୟାପକମାନେ କେତେକ ପ୍ରଶ୍ନ କଲେ ଓ ମୁଁ ଉତ୍ତର ଦେଲି । କ୍ଷିପ୍ର ଅନୁବାଦ ଯୋଗୁଁ କୌଣସି ଅସୁବିଧା ନଥାଏ । ଅଧ୍ୟାପକମାନେ ଛାତ୍ରାବାସଗୁଡ଼ିକ ଦେଖାଇଲେ । ବ୍ୟାୟାମ କକ୍ଷ ଓ କ୍ରୀଡ଼ା ପ୍ରତିଯୋଗିତା ଦେଖି ସନ୍ଧ୍ୟା ବିତାଇଲି ।

**୨୩ ଅକ୍ଟୋବର :ସ୍ମୋଲନେ**

ପୂର୍ବାହ୍ଣ ୧୦ଟାରେ ଅଧ୍ୟାପକ ପେଚେଙ୍କୋ ସ୍ମୋଲନେ (Smolney) ନାମକ ସ୍ଥାନରେ ଥିବା ଲେନିନ୍‌ଙ୍କ ପ୍ରକୋଷ୍ଠ ଦେଖାଇବା ଲାଗି ନେଇଗଲେ । ଏହି ଗୃହଟି ସର୍ବସାଧାରଣଙ୍କ ପାଇଁ ନିଷିଦ୍ଧ ଥିଲେ ମଧ୍ୟ ମୋତେ ସେଠାକୁ ଯିବାଲାଗି ସ୍ୱତନ୍ତ୍ର ଅନୁମତି ମିଳିଥିଲା । ବର୍ତ୍ତମାନ ସେଠାରେ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ କାର୍ଯ୍ୟାଳୟ ରହିଛି । ବାହାରେ ଲେଖା ରହିଥାଏ, "ସ୍ମୋଲନେ ହେଉଛି ଲେନିନଗ୍ରାଡର ପ୍ରତୀକ, ଅକ୍ଟୋବର ବିପ୍ଳବର ଦୋଳିକା । ଏହି ସ୍ଥାନରେ ଅକ୍ଟୋବର ବିଦ୍ରୋହର ବିଜୟ ପ୍ରସ୍ତୁତି ଘଟିଥିଲା, ଏହି ସ୍ଥାନରୁ ଲେନିନଙ୍କ ଆଦେଶନାମା ଓ ସୋଭିଏତ ଶକ୍ତିର ନିର୍ଦ୍ଦେଶମାନ ଘୋଷଣା କରାଯାଇଥିଲା ଯାହା ଫଳରେ ରୁଷିଆର ନିୟୁତ ନିୟୁତ ଶ୍ରମିକ ଓ କୃଷକ ନୂତନ ଜୀବନପଥରେ ଆଗେଇଥିଲେ ।"

ସାମ୍ରାଜ୍ଞୀ କାଥେରିନ ଦି ଗ୍ରେଟଙ୍କ ସମୟରୁ ଏହି ଅଟ୍ଟାଳିକାଟି ସମ୍ଭ୍ରାନ୍ତବଂଶୀୟ ମହିଳାମାନଙ୍କ ଶିକ୍ଷାକେନ୍ଦ୍ର ରୂପେ ବ୍ୟବହୃତ ହେଉଥାଏ । ରୁଷବିପ୍ଳବ ବେଳେ ଶ୍ରମିକମାନେ ଏହାକୁ ଦଖଲ କରି ଏହିସ୍ଥାନରୁ ସରକାରଙ୍କ ପତନ ଲାଗି କାର୍ଯ୍ୟ କରିଥିଲେ । ଶେଷରେ, ଏହି ଅଟ୍ଟାଳିକାର ଏକ ହଲରେ ଲେନିନ ସୋଭିଏତ ଶକ୍ତିର ବିଜୟ ଘୋଷଣା କରିଥିଲେ । ୧୯୧୭ ମସିହା ଅକ୍ଟୋବର ମାସରେ ସେଠାରେ ରହିଥିବା ଲେନିନଙ୍କ ଚେୟାର, ଟେବୁଲ ଓ ଅନ୍ୟ ନେତାମାନଙ୍କର ଛୋଟ ଛୋଟ କାଠ ଚେୟାରଗୁଡ଼ିକ ଆଜି ପର୍ଯ୍ୟନ୍ତ ଠିକ୍ ସେହିପରି ଭାବରେ ରଖାଯାଇଛି ।

ଲେନିନ ଯେଉଁ କୋଠରିଗୁଡ଼ିକ ନିଜେ ବ୍ୟବହାର କରୁଥିଲେ, ମୋତେ ସେଠାକୁ ନିଆଗଲା । ପ୍ରଥମ ରୁମ୍ ଭିତରେ ଅଛି ତାଙ୍କ ସ୍ୱହସ୍ତଲିଖିତ କାଗଜପତ୍ର । ଦ୍ୱିତୀୟ କୋଠରୀରେ ରହିଛି ତାଙ୍କର ଛୋଟ ଚେୟାର ଓ ଟେବୁଲ । ଟେବୁଲ ଉପରେ ଅଛି ତାଙ୍କର କଲମ, କାଳିଦୁଆତ ଓ କେତେଖଣ୍ଡି ସେହିସମୟର ଖବରକାଗଜ । ଏହି କୋଠରିକୁ ଲାଗି ରହିଛି ଆଉ ଏକ ଅତି କ୍ଷୁଦ୍ର ଓ

ଅନ୍ଧାରୁଆ ରୁମ୍ । ତାହା ଥିଲା ଲେନିନ ଓ ତାଙ୍କ ବିପ୍ଳବିନୀ ପତ୍ନୀ କୃପ୍‌ଶ୍‌କାୟାଙ୍କ ଶୟନକକ୍ଷ । ତାଙ୍କର ଅଣଓସାରିଆ ଛୋଟ ଶୋଇବା ଖଟ ଓ ପତଳା ବିଛଣା ଦେଖି ମୁଁ ପେଚେଙ୍କୋଙ୍କୁ କହିଲି, "ଏପରି ଖଟ ଓ ବିଛଣାରେ ମୁଁ ଗୋଟିଏ ରାତି ମଧ୍ୟ ଶୋଇପାରିବି ନାହିଁ ।"

ସେ ଉତ୍ତର ଦେଲେ, "ଲେନିନ ଥିଲେ ରୁଷ ସାମ୍ୟବାଦର ଜନକ । ସର୍ବହରା ଶ୍ରମିକମାନେ ଯେଉଁ ପ୍ରକାର ଶେଯରେ ଶୋଉଥିଲେ, ସେ ମଧ୍ୟ ସେହିପରି ବିଛଣା ବ୍ୟବହାର କରୁଥିଲେ ।"

ପ୍ରତ୍ୟୁତ୍ତରରେ ମୁଁ କହିଲି, "ମହାତ୍ମା ଗାନ୍ଧି କୁଡ଼ିଆରେ ରହୁଥିଲେ, ମାଟି ଉପରେ ସପମଶିଣା କିମ୍ବା ଦଉଡ଼ି ଖଟିଆରେ ଚଦର ପକାଇ ଶୋଉଥିଲେ । ନିଜକୁ ସାମ୍ୟବାଦୀ ବୋଲି ନ କହି ମଧ୍ୟ ଗାନ୍ଧି ଥିଲେ ଭାରତର ଦରିଦ୍ର ଜନସାଧାରଣଙ୍କ ପ୍ରକୃତ ପ୍ରତିନିଧି ଓ ସରଳ ଜୀବନ ଯାପନର ଜ୍ୱଳନ୍ତ ନିଦର୍ଶନ ।"

ଆଲୋଚନା ଚାଲିଲା । ଦୁହେଁ ଏକମତ ହେଲୁଁ ଯେ, ଉଭୟ ଲେନିନ ଓ ଗାନ୍ଧି ସେମାନଙ୍କ ବ୍ୟକ୍ତିଗତ ଜୀବନରେ ନିଜ ନିଜ ନୀତି ଓ କାର୍ଯ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନରଖି ମହାନ ଭୂମିକାରେ ଅବତୀର୍ଣ୍ଣ ଥିଲେ । ଲେନିନ ଥିଲେ ରୁଷ ବିପ୍ଳବର କର୍ଣ୍ଣଧାର ଓ ସର୍ବହରା ସମାଜର ସର୍ବୋଚ୍ଚ ହର୍ତ୍ତାକର୍ତ୍ତା । ଗାନ୍ଧି ଥିଲେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଗ୍ରସାରଥି ଓ ଜନମାନସରେ ଦେଶର ମୁକୁଟବିହୀନ ସମ୍ରାଟ । କିନ୍ତୁ ଉଭୟଙ୍କର ଜୀବନଧାରା ଥିଲା ନିଃସ୍ୱ ଦରିଦ୍ରର ଜୀବନ ପରି ସରଳ ।

ସେଦିନ ଅପରାହ୍ନ ଓ ସନ୍ଧ୍ୟାଟି ଛାତ୍ରମାନଙ୍କ ଗହଣରେ କଟିଲା । ଦିନ ୪ଟା ବେଳେ ଦଶଜଣ ଇଂରାଜୀ ଜାଣିଥିବା ଛାତ୍ର ମୋତେ ନେଇଗଲେ ସହର ବାହାରକୁ । ସେହିଠାରେ ଘଟିଥିଲା ଦ୍ୱିତୀୟ ବିଶ୍ୱମହାଯୁଦ୍ଧର ସର୍ବାଧିକ ହିଂସାତ୍ମକ ସଂଘର୍ଷ, ଲେନିନଗ୍ରାଡ ଯୁଦ୍ଧ । ସୋଭିଏତ ସୈନ୍ୟମାନେ ଜୀବନମୂର୍ଚ୍ଛା ଯୁଦ୍ଧ କରି ସେହିଠାରେ ଜାର୍ମାନ ସୈନ୍ୟବାହିନୀର ଗତିରୋଧ କରିଥିବା ଯୋଗୁଁ ସହର ଶତ୍ରୁକବଳରୁ ରକ୍ଷା ପାଇଯାଇଥିଲା । ପ୍ରତିରୋଧ ଶକ୍ତିର ସନ୍ତକ ରୂପେ ଗୋଟିଏ ମାତ୍ର ଟ୍ୟାଙ୍କ ସେଠାରେ ଛିଡ଼ା ରହିଛି । ସେହିଠାରୁ ପଶ୍ଚିମଦିଗକୁ ବ୍ୟାପିରହିଥାଏ ପ୍ରଶସ୍ତ ରଣପ୍ରାଙ୍ଗଣ, ଯେଉଁ ସ୍ଥାନରୁ ଜାର୍ମାନମାନେ ଅସଂଖ୍ୟ କମାଣରୁ ଗୋଳା ବର୍ଷଣ କରିଥିଲେ ଓ ଯେଉଁଠାରେ ରୁଷ ସୈନ୍ୟମାନେ ଟ୍ରେଞ୍ଚ୍ ବା ଖାତ ଖୋଳି ଶତ୍ରୁପକ୍ଷର ମୁକାବିଲା କରିଥିଲେ, ସେହି ଜାଗାଗୁଡ଼ିକ ଚିହ୍ନିତ ରଖାଯାଇଛି । ଯୁଦ୍ଧଭୂମିରେ ବୁଲିଲାବେଳେ ଜଣେ ଯୁବକ କହିଲେ, "ଆପଣ ଯେଉଁ ମାଟିରେ ଚାଲିଛନ୍ତି, ତାହାର ପ୍ରତ୍ୟେକ ବାଲିକଣା ଦିନେ ନରରକ୍ତରେ ରଞ୍ଜିତ ଥିଲା ।"

ସନ୍ଧ୍ୟାବେଳେ ଯୁବକମାନେ ରୁଷ୍ ଅପେରା ଦେଖାଇବାକୁ ସାଙ୍ଗରେ ନେଇଗଲେ । ଅପେରା କକ୍ଷର ସାଜସଜ୍ଜା ଓ ଆଲୋକ ବ୍ୟବସ୍ଥାରୁ ଉନ୍ନତ ରଙ୍ଗମଞ୍ଚର ପରିଚୟ ମିଳୁଥାଏ ।

## ୨୪ ଅକ୍ଟୋବର : ଭାରତୀୟ ପରିବାରରେ ଆତିଥ୍ୟ

ଏହି ଦିନଟି କେବଳ ଅଧ୍ୟାପକମାନଙ୍କ ସହିତ ଆଲୋଚନା ଲାଗି ନିର୍ଦ୍ଦିଷ୍ଟ ଥାଏ । କୁଳପତିଙ୍କ ଉପସ୍ଥିତିରେ ରୁଷିଆ ଓ ଭାରତ ମଧ୍ୟରେ ଥିବା ଐତିହାସିକ ସମ୍ପର୍କ ବିଷୟରେ କେତେକ ତଥ୍ୟ ଆଲୋଚିତ ହେଲା । ସେଥିସଙ୍ଗେ, ମାର୍କସବାଦୀ ଦୃଷ୍ଟିଭଙ୍ଗୀରୁ ଇତିହାସ ରଚନାର ଶୈଳୀ ବିଷୟରେ ନୂଆ କଥାମାନ ଶୁଣିଲି ।

ଆଲୋଚନା ଶେଷରେ ଜଣେ ଭାରତୀୟ ମହିଳା ସାକ୍ଷାତ କଲେ । ତାଙ୍କ ନାମ ଶିଲା ହାଲଦାର ଓ ସେ ଥିଲେ ବଙ୍ଗଳା ବିଭାଗର ମୁଖ୍ୟ ଅଧ୍ୟାପିକା । ତାଙ୍କ ଘରେ ରାତ୍ରିଭୋଜନ ପାଇଁ ଅନୁରୋଧ ଜଣାଇ ସେ ବିଦାୟ ନେଲେ ଓ ଜଣେ ଛାତ୍ର ମୋତେ ହୋଟେଲରୁ ନେଇଯିବେ ବୋଲି କହିଲେ ।

ସନ୍ଧ୍ୟା ବେଳେ ବଙ୍ଗଳା ଭାଷା କହୁଥିବା ଜଣେ ରୁଷ ଛାତ୍ରଙ୍କ ସହିତ ତାଙ୍କ ଘରକୁ ବାହାରିଲି । ହୋଟେଲ ଅପେକ୍ଷା-କକ୍ଷରେ ଦୁଇଜଣ ଆର୍ମେନୀୟ ଭଦ୍ରବ୍ୟକ୍ତି ଭଙ୍ଗା ଭଙ୍ଗା ଇଂରାଜୀରେ ଉଚ୍ଚ ସ୍ୱରରେ କଥାବାର୍ତ୍ତା କରୁଥାନ୍ତି । ମୋତେ ଦେଖି ସେମାନେ ହଠାତ୍ ତୁନି ପଡ଼ିଲେ । କିନ୍ତୁ କେତୋଟି ଶବ୍ଦ ଶୁଣିପାରିଥିଲି, ଯଥା ଇଣ୍ଡିଆ, ଚାଇନା, ଫ୍ରଣ୍ଟିଆର ବେଟଲ୍, ଇତ୍ୟାଦି । କିଛି ଅନୁମାନ କରିପାରିଲି ନାହିଁ ।

ଶିଲା ହାଲଦାରଙ୍କ ଘରେ ପହଞ୍ଚିଲି । ତାଙ୍କ ସ୍ୱାମୀ ଗୋପାଲ୍ ହାଲଦାର ମୋତେ ଗେଟ୍ ପାଖରେ ନମସ୍କାର ଜଣାଇ ଉପର ମହଲାର ଫ୍ଲ୍ୟାଟ୍‌କୁ ନେଇଗଲେ । ସେ ଥାନ୍ତି ପଶ୍ଚିମବଙ୍ଗର ଜଣେ ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା । ତାଙ୍କ ଜ୍ଞାନ ଓ ବିଚକ୍ଷଣ ଚିନ୍ତାଶକ୍ତିର ପରିଚୟ ପାଇ ତାଙ୍କ ପ୍ରତି ମୋର ଗଭୀର ସମ୍ମାନ ଆସିଲା । ଦୁଃଖ ହେଲା ତାଙ୍କର ଶ୍ୱାସ ପୀଡ଼ା ଦେଖି । ଶିଲା ହାଲଦାର ନିଜ ହାତରେ ଭାରତୀୟ ଖାଦ୍ୟ ରାନ୍ଧିଥିଲେ । ସେଥିରୁ ଯଥେଷ୍ଟ ତୃପ୍ତି ପାଇଲି ।

ରାତି ପ୍ରାୟ ୧୦ଟା ବେଳେ ହୋଟେଲକୁ ଫେରିଲି । ରୁଷ୍ ଯୁବକ କାନ ପାଖରେ ବଙ୍ଗଳାରେ ଜଣାଇଲେ, "ରେଡିଓରୁ ସଂବାଦ ଶୁଣିଲି, ଭାରତ ଓ ଚୀନ ମଧ୍ୟରେ ସୀମା ବିବାଦକୁ କେନ୍ଦ୍ର କରି ଯୁଦ୍ଧ ଲାଗିଯାଇଛି ।" କଥା ଶୁଣି ମୁଁ ଚମକିଉଠିଲି । ଅଧିକ କିଛି ପଚାରିବା ପୂର୍ବରୁ ସେ ନମସ୍କାର ଜଣାଇ ତରତରରେ ଚାଲିଗଲେ । ବୋଧହୁଏ, ବେଶି କହିବାକୁ ତାଙ୍କର ଇଚ୍ଛା ବା

ସାହସ ନଥାଏ । ପ୍ରଚଣ୍ଡ ଶୀତରାତିରେ ଶୋଇରହି ଭାବିଲି— 'ହିନ୍ଦୀ—ଚୀନୀ ଭାଇ ଭାଇ' ଧ୍ୱନିର ଏହା ହିଁ ହେଲା ପରିଣାମ ।

## ୨୫ ଅକ୍ଟୋବର : ଲେନିନଗ୍ରାଡରେ ଶେଷଦିନ

ରାତି ପାହିଲାକ୍ଷଣି ତଳକୁ ଆସି ଇଂରାଜୀ ସଂବାଦପତ୍ର ଖୋଜିଲି, କିନ୍ତୁ ପାଇଲି ନାହିଁ । ସବୁ ଥାଏ ରୁଷ ଭାଷାର ଖବରକାଗଜ । ଯୁଦ୍ଧ ସମ୍ପର୍କରେ ଜାଣିବା ପାଇଁ ଇଂରାଜୀ ଜାଣିଥବା ଲୋକଙ୍କୁ ଚିହ୍ନଟ କରିବାକୁ ଚେଷ୍ଟାକରି ବିଫଳ ହେଲି । ରିସେପ୍‌ସନିଷ୍ଟ ଇଂରାଜୀ ଜାଣନ୍ତି । ତାଙ୍କୁ ପଚାରିବାରୁ ସେ ନୀରବ ରହିଲେ । ରୁଷ ନାଗରିକମାନେ ରାଜନୀତି ଆଲୋଚନା କରନ୍ତି ନାହିଁ ବୋଲି ସେତେବେଳକୁ ମୋର ଧାରଣା ଆସିଯାଇଥାଏ ।

୯ଟା ବେଳେ ଅଧ୍ୟାପକ ପେଚେଙ୍କୋ ମୋତେ ନେବା ଲାଗି ରୁମ୍‌କୁ ଆସିଲେ । ଉତ୍କଣ୍ଠା ସହ ତାଙ୍କୁ ଯୁଦ୍ଧ ବିଷୟ ପଚାରିଲି । ଈଷତ୍ ବିମର୍ଷ ମନରେ ସେ କହିଲେ, ''ହଁ, ଦୁଇଦେଶର ସୀମାନ୍ତରେ ଗୋଳା ବିନିମୟ ଆରମ୍ଭ ହୋଇ ଯାଇଛି । ଆକ୍ରମଣକାରୀମାନଙ୍କୁ ନିକାଲି ଦେବାପାଇଁ ନେହରୁ ସୈନ୍ୟବାହିନୀକୁ ଆଦେଶ ଦେଇଛନ୍ତି ।'' କଥାବାର୍ତ୍ତା ମଧ୍ୟରେ ସେ ରୁଷ ସରକାରଙ୍କ ସମସ୍ୟା ବିଷୟ ଉଲ୍ଲେଖ କଲେ । ସଂବାଦ ପତ୍ରରେ ବାହାରିଥିବା ଗୋଟିଏ ଶିରୋନାମା ଉଦ୍ଧାର କରି ସେ କହିଲେ, ''ସୋଭିଏତ୍ ଜନସାଧାରଣ ଦୁଃଖିତ ଯେ, ସେମାନଙ୍କର ଭ୍ରାତୃରାଷ୍ଟ୍ର ଚୀନ ଓ ବନ୍ଧୁରାଷ୍ଟ୍ର ଭାରତ ମଧ୍ୟରେ ଯୁଦ୍ଧ ଲାଗିଛି ।''

ମୋର ଅନୁମାନ ହେଲା, ଉଭୟ ରୁଷିଆ ଓ ଚୀନ ହେଉଛି କମ୍ୟୁନିଷ୍ଟ ଦେଶ ଓ ଭାରତ ହେଉଛି ଗଣତାନ୍ତ୍ରିକ ରାଷ୍ଟ୍ର, ଏବଂ ତେଣୁ ରୁଷ ସରକାରଙ୍କ ସମର୍ଥନ ରହିବ ଚୀନ ପ୍ରତି । (ସେତେବେଳେ ସୋଭିଏତ ଶାସକମାନେ ଜାଣି ପାରି ନଥିଲେ ଯେ, ଅତି ଅଳ୍ପ ସମୟ ପରେ ଚୀନାମାନେ ରୁଷିଆ ସହିତ ସୀମା ବିବାଦ ଆରମ୍ଭ କରିଦେବେ ଓ ୧୯୬୩ ମସିହାରୁ ସୋଭିଏତ ଦେଶର ଅନ୍ତର୍ଗତ ଦୂରପ୍ରାଚ୍ୟ, କେନ୍ଦ୍ର ଏସିଆ ଏବଂ ପୂର୍ବ ସାଇବେରିଆର ବିସ୍ତୃତ ଅଞ୍ଚଳମାନ ଦାବି କରିବସିବେ । ୧୯୬୫ ମସିହା ବେଳକୁ ରୁଷ୍ ଓ ଚୀନ ସୈନ୍ୟମାନଙ୍କ ମଧ୍ୟରେ ଉଭୟ ଦେଶର ସୁଦୀର୍ଘ ସୀମାରେଖାରେ ପ୍ରବଳ ରକ୍ତପାତ ଓ ସଂଘର୍ଷ ଦେଖାଦେଲା ।)

ଅଧ୍ୟାପକ ପେଚେଙ୍କୋ ସହରର ସର୍ବସାଧାରଣ ଲାଇବ୍ରେରୀ ଦେଖାଇବାକୁ ମୋତେ ନେଇଗଲେ । ପୃଥିବୀର ତୃତୀୟ ବୃହତ୍ତମ ଲାଇବ୍ରେରୀ ବୋଲି ବର୍ଣ୍ଣନା କରି ସେ ସେହି ବିଶାଳ ଅଟ୍ଟାଳିକାର ଭିନ୍ନ ଭିନ୍ନ ପ୍ରକୋଷ୍ଠ ଦେଖାଇଲେ ।

ପ୍ରାଚୀନତମ ମୁଦ୍ରିତ ବହିରୁ ଆରମ୍ଭ କରି ଆଧୁନିକ ସମୟରେ ପ୍ରକାଶିତ ଅସଂଖ୍ୟ ପୁସ୍ତକ ଏଠାରେ ରହିଛି । ପାଣ୍ଡୁଲିପି ବିଭାଗରେ ଅଛି ଭଲ୍‌ଟେୟାର, ଦିଦେରୋ, ନେପୋଲିୟନ ଓ ଗ୍ୟାରିବାଲ୍ଡି ପ୍ରମୁଖ ମହାନ ବ୍ୟକ୍ତିଙ୍କର ସ୍ୱହସ୍ତଲିଖିତ ପତ୍ରାବଳି । ପୃଥିବୀର ବିଭିନ୍ନ ଭାଷାର ପାଣ୍ଡୁଲିପିଗୁଡ଼ିକ ମଧ୍ୟ ରହିଛି । ଲାଇବ୍ରେରୀର ପୁସ୍ତକ ସଂଖ୍ୟା ୧୪ ନିୟୁତ ଶୁଣି ଆଚମ୍ବିତ ହେଲି ।

ଅପରାହ୍ନ ୩ଟାରେ କୁଳପତି ଓ ଅଧ୍ୟାପକମାନେ ବିଦାୟ ଭୋଜିରେ ମୋତେ ଆପ୍ୟାୟିତ କଲେ । ମୋ ପରି ସାମାନ୍ୟ ବ୍ୟକ୍ତି ପ୍ରତି ସେମାନଙ୍କ ଶ୍ରଦ୍ଧାରୁ ଜାଣି ହେଉଥାଏ ମୋ ଦେଶ ପ୍ରତି ସେମାନଙ୍କର ସମ୍ମାନ । ଖାଇଲା ବେଳେ ଚୀନ–ଭାରତ ବିବାଦ ସମ୍ପର୍କରେ ସେମାନଙ୍କ ମତାମତ ଜାଣିବା ଲାଗି ପ୍ରକାରାନ୍ତରେ ଚେଷ୍ଟା କରି ସୁଦ୍ଧା ବିଫଳ ହେଲି ।

## ଲେନିନଗ୍ରାଡରୁ ମସ୍କୋ

ଅକ୍ଟୋବର ୨୫ ତାରିଖ ମଧ୍ୟରାତ୍ରରେ ଅଧ୍ୟାପକ ପେଚେଙ୍କୋ, ସିରମନୋଭ ଓ ସୋଭିଏତ ବୈଦେଶିକ ବିଭାଗର ଜଣେ କର୍ମଚାରୀ ମୋତେ ଲେନିନଗ୍ରାଡ ରେଳ ଷ୍ଟେସନରେ 'ଲୋହିତ ତୀର' ବା Red Arrow ନାମକ ଟ୍ରେନରେ ବସାଇଦେଲେ । ସେହି ଗାଡ଼ିଟି ସୋଭିଏତ୍ ଦେଶର ସବୁଠାରୁ ଆରାମଦାୟକ ଟ୍ରେନ ବୋଲି ଶୁଣିଲି । ଅନ୍ୟ କୌଣସି ଷ୍ଟେସନରେ ନରହି ସିଧା ମସ୍କୋ ଯାଏ । ତବା ମଧ୍ୟରେ ଥାଏ ମୂଲ୍ୟବାନ ଶଯ୍ୟା ଓ କମ୍ବଳ । ବାହାରେ ବରଫ ରାଶି ଦିଶୁଥିଲା ବେଳେ ଭିତରେ ଶୀତ ନଥାଏ । ଟ୍ରେନ ଛାଡ଼ିଲା ସମୟରେ ତୁଷାରପାତ ସତ୍ତ୍ୱେ ଦେଖାଯାଉଥାଏ ଲେନିନଗ୍ରାଡ ସହରର ଆଲୋକମାଳା ।

ପ୍ରଭାତ ପୂର୍ବରୁ ନିଦରୁ ଉଠି ଉଭୟ ପାର୍ଶ୍ୱର ଦୃଶ୍ୟମାନ ଦେଖିବାକୁ ଲାଗିଲି । ପ୍ରବଳ ବେଗରେ ଗାଡ଼ି ଚାଲିଥାଏ । ବରଫାବୃତ ଭୂଭାଗରେ ଦିଶୁଥାଏ ରାଶିହୀନ ପାଇନବୃକ୍ଷ, ସୁବିସ୍ତୃତ କୃଷିକ୍ଷେତ୍ର ଓ ଗ୍ରାମାଞ୍ଚଳର ଘରଦ୍ୱାର । ୨୬ ତାରିଖ ସକାଳ ୯ଟାରେ 'ଲୋହିତ ତୀର' ମସ୍କୋ ଷ୍ଟେସନରେ ପହଞ୍ଚିଲା । ସେହି ସୁଖପ୍ରଦ ରେଳଯାତ୍ରା ଜୀବନରେ ଅନ୍ୟତ୍ର ଆଉ କେବେ ଭୋଗ କରି ନାହିଁ ।

ଷ୍ଟେସନରେ ମସ୍କୋ ବିଶ୍ୱବିଦ୍ୟାଳୟର ଦୁଇଜଣ କର୍ମଚାରୀ ଉପସ୍ଥିତ ଥିଲେ । ମୋତେ ସେମାନେ ନେଇଗଲେ ସହରର ବୃହତ୍ତମ ହୋଟେଲକୁ । ନାମ, 'ହୋଟେଲ ଉକ୍ରାଇନା' । ୩୦ ତାଲା ଉପରେ ଥିବା ଗୋଟିଏ କୋଠରି ହେଲା ମୋର ରହିବା ସ୍ଥାନ ।

## ୨୬ ଅକ୍ଟୋବର : ମସ୍କୋ ବିଶ୍ୱବିଦ୍ୟାଳୟ

ପୂର୍ବାହ୍ନ ୧୧ଟା ବେଳେ ମସ୍କୋ ବିଶ୍ୱବିଦ୍ୟାଳୟରେ ପହଞ୍ଚିଲି । 'ଲେନିନ ପାହାଡ଼' ଉପରେ ନିର୍ମିତ ୩୩ ମହଲା ବିଶିଷ୍ଟ ସେହି ବିଶ୍ୱବିଦ୍ୟାଳୟ ଥାଏ ମସ୍କୋ ନଗରୀର ସର୍ବୋଚ୍ଚ ଅଟ୍ଟାଳିକା । କୁଳପତି ସ୍ୱାଗତ ଜଣାଇ ବିଶ୍ୱବିଦ୍ୟାଳୟର ସଂକ୍ଷିପ୍ତ ବିବରଣୀ ଜଣାଇଲେ । ଛାତ୍ରସଂଖ୍ୟା ୨୮ ହଜାର । ଚା ପାନ ପରେ, ଦୁଇଜଣ ଇଂରାଜୀ ଜାଣିଥିବା ଅଧ୍ୟାପକଙ୍କ ସାଙ୍ଗରେ ମୋତେ ଭିନ୍ନ ଭିନ୍ନ ବିଭାଗ ଦେଖିବାକୁ ଅନୁରୋଧ କଲେ ।

ପ୍ରଥମେ ଲିଫ୍ଟ ଯୋଗେ ମୋତେ ନିଆଗଲା ଅଟ୍ଟାଳିକାର ଶିଖର ସ୍ଥାନକୁ । ସେଠାରୁ ଦେଖାଗଲା ମନୋରମ ମସ୍କୋ ନଗରୀ । ଚାରି ଦିଗକୁ ମାଡ଼ି ରହିଥାଏ ସଂଖ୍ୟାହୀନ ସୌଧ । ଅତ୍ୟାଧୁନିକ କୋଠାବାଡ଼ି ଭିତରେ ସ୍ଥାନେ ସ୍ଥାନେ ବାରି ହେଉଥାଏ ପୂର୍ବକାଳର ସ୍ଥାପତ୍ୟ କୀର୍ତ୍ତି ।

କେତେ ଗୁଡ଼ିଏ ବିଭାଗ, ଛାତ୍ରବାସ, ଖେଳ ଘର ଓ ଲାଇବ୍ରେରୀ ଦେଖିଲା ପରେ ମଧ୍ୟାହ୍ନ ଭୋଜନ ପାଇଁ ଗଲି । ପ୍ରଶସ୍ତ ଭୋଜନାଳୟରେ ଶହ ଶହ ଛାତ୍ର ଛାତ୍ରୀ ଓ କେତେକ ଅଧ୍ୟାପକଙ୍କୁ ଖାଉଥିବା ଦେଖିଲି, କିନ୍ତୁ କଥାବାର୍ତ୍ତା ବା କୋଳାହଳ ଶୁଣିଲି ନାହିଁ । ଅପରାହ୍ନରେ ଗୋଟିଏ ପ୍ରଦର୍ଶନୀ ଦେଖିଲି । ସୋଭିଏତ ସଂଘର ବିଭିନ୍ନ ସାଧାରଣତନ୍ତ୍ରର ଅର୍ଥନୈତିକ ବିକାଶ ସୂଚାଇବା ନିମନ୍ତେ ତାହାର ଆୟୋଜନ କରାଯାଇଥିଲା ।

## ୨୭ ଅକ୍ଟୋବର : ଲେନିନ ସମାଧି

୨୭ ତାରିଖ ପୂର୍ବାହ୍ନରୁ ଆରମ୍ଭ ହେଲା ମୋର ମସ୍କୋ ପରିଦର୍ଶନ । ସକାଳ ୯ଟା ବେଳେ ପହଞ୍ଚିଲେ ପିଟାର ନାମକ ଛାତ୍ର ଓ ଲେନା ନାମ୍ନୀ ଛାତ୍ରୀ । ସେମାନେ ଅନୁବାଦକାରୀ ଓ ଗାଇଡ ଭାବେ ଆସିଛନ୍ତି ବୋଲି ପରିଚୟ ଦେଲେ । ପିଟାର ଇଂରାଜୀରେ ଧୁରନ୍ଧର ଥିଲାବେଳେ ଲେନା ହିନ୍ଦୀ ଭାଷା ଜାଣିଥିଲେ । ପ୍ରୋଗ୍ରାମ୍ ଅନୁସାରେ ପ୍ରଥମେ କ୍ରେମଲିନ୍ ପ୍ରାସାଦ ନିକଟରେ ଥିବା ଲେନିନ୍‌ଙ୍କ ସମାଧି ମନ୍ଦିରକୁ ନେଇଯିବେ ବୋଲି କହିଲେ । ତା ଭିତରେ ରହିଛି ଜୀବିତ ଦେଖାଯାଉଥିବା ଲେନିନ୍‌ଙ୍କ ଶବ ।

ମନକୁ ପ୍ରଶ୍ନ ଆସିଲା, ରୁଷବାସୀଙ୍କ ମନପ୍ରାଣରେ ଲେନିନ୍‌ଙ୍କ ପ୍ରଭାବ କେତେ ଦୂର ପ୍ରଗାଢ଼ ! ଯେଉଁ ଆଡ଼କୁ ଗଲେ, ତାଙ୍କରି ମୂର୍ତ୍ତି ଓ ଚିତ୍ର । ବୋଧହୁଏ, ଅନ୍ୟ କୌଣସି ଦେଶରେ ଏପରି ବୀରପୂଜା ଦେଖାଯାଉ ନଥିବ । ଅଥଚ,

ଯେଉଁ ଷ୍ଟାଲିନ ରୁଷିଆକୁ କ୍ଷମତା ଓ ବିକାଶ ପଥରେ ଅନେକ ଦୂର ଆଗେଇ ନେଇଥିଲେ, ତାଙ୍କ ନାମ ବା ପ୍ରଶଂସା ଶୁଣିବାକୁ ମିଳୁନଥାଏ ।

ଚାଲିଲୁଁ ଗନ୍ତବ୍ୟ ମାର୍ଗରେ । ଦୂରରୁ ଦିଶିଲା ଲାଲ ମର୍ମର ପଥରରେ ନିର୍ମିତ ସାମଧି ଭବନ । ଭିତରକୁ ଯିବା ଲାଗି ଅନେକ ଦୂରରୁ ଧାଡ଼ି ଧାଡ଼ି ନରନାରୀ ଓ ଶିଶୁ ବୃଦ୍ଧ ନୀରବରେ ଛଡ଼ା ରହିଥାନ୍ତି । ୧୧ଟା ବେଳେ ପଶ୍ଚିମ ପଟେ ପ୍ରବେଶ ପଥ ଖୋଲିଲା । ଜଣକ ପରେ ଜଣେ ପଶିବାକୁ ଆରମ୍ଭ କଲେ । ଅଳ୍ପ ସମୟ ପରେ ପୂର୍ବ ପାଖ ଦ୍ୱାର ଦେଇ ସେମାନେ ବାହାରି ଆସିବା ଦେଖିଲି ।

ଲାଇନ୍‌ରେ ଛିଡ଼ା ହୋଇ ବେଶି ସମୟ ଅପେକ୍ଷା କରିବାକୁ ହେଲା ନାହିଁ । ମାଟି ତଳେ ସୁଶୋଭିତ ଓ ଆଲୋକିତ କକ୍ଷ ମଧରେ ରଖା ଯାଇଥାଏ ଲେନିନଙ୍କ ଶବ । ପାହାଚ ପରେ ପାହାଚରେ ଯାଇ କକ୍ଷ ମଧ୍ୟରେ ପ୍ରବେଶ କଲି । କେନ୍ଦ୍ର ସ୍ଥାନରେ ରହିଥାଏ ଦୀର୍ଘାକାର କାଚବାକ୍ସ । ଭିତରେ ଶୋଇରହିଛନ୍ତି ଲେନିନ୍ । ଆଖି ଦୁଇଟି ବନ୍ଦ ରହିଛି । ଦେହରେ ରହିଛି ତାଙ୍କର ପରିଧେୟ ପେଣ୍ଟ୍ ଓ କୋଟ୍ । ଗୋଟିଏ ହାତର ପାପୁଲି ଖୋଲା ରହିଥିଲା ବେଳେ ଅନ୍ୟ ପାପୁଲିଟି ଅଧାଅଧି ବନ୍ଦ ଅଛି । ଚିର ନିଦ୍ରାରେ ଶାୟିତ ସେହି ମହାନ ପୁରୁଷଙ୍କ ରୂପ ଦେଖିଲାବେଳେ ଜଣା ଯାଉଥାଏ ସତେ ଯେପରି ସେ ଜୀବନ୍ତ ଏବଂ ଯେ କୌଣସି ମୁହୂର୍ତ୍ତରେ ସେ ନିଦରୁ ଉଠିପାରନ୍ତି । କିଛି ସମୟ ତାଙ୍କ ମୁଖ ମଣ୍ଡଳକୁ ଚାହିଁ ରହିଲା ପରେ ସେଠାରୁ ବାହାରି ଆସିଲି ।

ଲେନିନ ସମାଧିର ପଶ୍ଚାତରେ ଛିଡ଼ା ରହିଛି କ୍ରେମଲିନର ତୁଙ୍ଗ ପ୍ରାଚୀର । ପ୍ରାଚୀରର ପାଖେ ପାଖେ ଅନ୍ୟ ବରିଷ୍ଠ ସୋଭିଏତ ନେତାମାନଙ୍କ ଶବାଧାର ପୋତା ରହିଛି । ପ୍ରତ୍ୟେକ ସାମଧି ସ୍ଥାନରେ ସ୍ୱଚ୍ଛ ପଥରରେ ନେତାଙ୍କ ନାମ ଲେଖାଅଛି । ଶେଷ ସମାଧି ପଥର ଉପରେ ଲେଖା ରହିଛି– ଯୋଶେଫ ଷ୍ଟାଲିନ୍ । ଯେଉଁ ବ୍ୟକ୍ତି ଦୀର୍ଘ ୩୦ ବର୍ଷ ସୋଭିଏତ ରୁଷିଆକୁ କଠୋର ହସ୍ତରେ ଶାସନ କରି ଦେଶର ରୂପ ପରିବର୍ତ୍ତନ କରିଦେଇଥିଲେ ଓ ଦ୍ୱିତୀୟ ମହାଯୁଦ୍ଧ ଜୟ ପୂର୍ବକ ରୁଷିଆକୁ ଏକ ମହାଶକ୍ତିରେ ପରିଣତ କରିଥିଲେ, ସେହି ଷ୍ଟାଲିନ ମଧ୍ୟ ଲେନିନଙ୍କ ପରି ସମାଧି ଗୃହରେ ନିଜର ପାର୍ଥିବ ଶରୀରକୁ ଦର୍ଶନୀୟ ରଖିବା ନିମନ୍ତେ ଇଚ୍ଛା କରିଥିଲେ । କିନ୍ତୁ ତାଙ୍କ ଉତ୍ତରାଧିକାରୀ ଶାସକମାନେ ବିଗତ ନେତାଙ୍କର ଆଶା ପୂରଣ ପରିବର୍ତ୍ତେ ତାଙ୍କ ଚରିତ୍ର ସଂହାର କରିବାକୁ ଉଚିତ ମଣିଥିଲେ, କାରଣ ଷ୍ଟାଲିନ୍ ଥିଲେ ଜଣେ ନିଷ୍ଠୁର ଓ ସ୍ୱେଚ୍ଛାଚାରୀ ଶାସକ ।

ଅପରାହ୍ନରେ ଅନ୍ୟ କେତୋଗୋଟି ସ୍ଥାନ ଦେଖାଇଲା ପରେ ପିଟାର ଓ ଲେନା ସନ୍ଧ୍ୟାବେଳେ ମୋତେ ରଙ୍ଗମଞ୍ଚ ଉପରେ ପିତୁଳି ନାଚ ବା Puppet show ଦେଖାଇବାକୁ ନେଇଗଲେ । ହଲ୍‌ଟି ଦର୍ଶକମାନଙ୍କ ଦ୍ୱାରା ଭର୍ତ୍ତି ରହିଥାଏ । ରୁଷବାସୀ ଦେଶର ଚାରିଆଡ଼େ ପିତୁଳି ନାଚ ଦେଖନ୍ତି ବୋଲି ଲେନା ଜଣାଇଲେ, କାରଣ ତାହା ସେମାନଙ୍କର ଏକ ପରମ୍ପରାଗତ ଆମୋଦ ।

ତହିଁ ପରଦିନ ପୂର୍ବାହ୍ନ ଓ ଅପରାହ୍ନରେ ବିଶ୍ୱବିଦ୍ୟାଳୟରେ ଦୁଇଟି ଭାଷଣ ଦେଲି । ସନ୍ଧ୍ୟାବେଳେ ଦେଖିଲି ଗୀତିନାଟିକା । ଭାଷା ନ ବୁଝିଲେ ମଧ୍ୟ, ଦୃଶ୍ୟ ଗୁଡ଼ିକ ଉପଭୋଗ କଲି ।

## ୨୯ ଅକ୍ଟୋବର : କ୍ରେମଲିନ

ପ୍ରହେଳିକାମୟ ତଥା ଭୟପ୍ରଦ ଶକ୍ତିସ୍ଥଳ ରୂପେ କ୍ରେମଲିନ ନାମ ସମସ୍ତଙ୍କୁ ଜଣା । ଦେଖିବା ଲାଗି ଅଶେଷ ଆଗ୍ରହ ଥାଏ । ଲେନା ଓ ପିଟାରଙ୍କ ସହିତ ଦିନ ୧୧ଟା ସମୟରେ ସେଠାରେ ପହଞ୍ଚିଲି । ଷ୍ଟାଲିନଙ୍କ ଶାସନ କାଳରେ ସେହି ସ୍ଥାନ ସର୍ବସାଧାରଣଙ୍କ ଲାଗି ନିଷିଦ୍ଧ ଥାଏ । କାରଣ, ସେ ନିଜେ ସେଠାରେ ରହୁଥିଲେ । ତାଙ୍କ ପରେ, ପ୍ରାସାଦର ଅନେକ ଗୁଡ଼ିଏ କକ୍ଷ ଦର୍ଶକମାନଙ୍କ ନିମନ୍ତେ ମୁକ୍ତ ରହିଲା ।

ପ୍ରଥମେ ଯେଉଁ ହଲରେ ପ୍ରବେଶ କଲୁଁ, ତାହାର ନାମ 'ଅସ୍ତ୍ରଶସ୍ତ୍ର ପ୍ରାସାଦ' ବା Armoury Palace । କିନ୍ତୁ ନାମ ସହିତ ପଦାର୍ଥଗୁଡ଼ିକର ସାମଞ୍ଜସ୍ୟ ନାହିଁ । ଏଠାରେ ରହିଛି ସମ୍ରାଟମାନଙ୍କର ସିଂହାସନ, ରାଜମୁକୁଟ, ରାଜଦଣ୍ଡ, ପୋଷାକ ପରିଚ୍ଛଦ, ବ୍ୟବହାର୍ଯ୍ୟ ପଦାର୍ଥ ଓ ରଥ ଇତ୍ୟାଦି । ସେଥିସହ ରହିଛି ସାମ୍ରାଜ୍ଞୀ, ରାଜପୁତ୍ର ଓ ରାଜକନ୍ୟାମାନଙ୍କର ପୋଷାକ ଏବଂ ମହାର୍ଘ ଅଳଙ୍କାର । ରୋମାନଭ ରାଜବଂଶର ବିଭବ ଓ ବିଳାସିତା ବିଷୟ ଏହି ସାମଗ୍ରୀ ଗୁଡ଼ିକରୁ ଜଣା ପଡ଼େ । ଜଣେ ସାମ୍ରାଜ୍ଞୀଙ୍କ ପୋଷାକରେ ବଡ଼ ବଡ଼ ଆକାରର ଅନେକ ଗୁଡ଼ିଏ ହୀରା ଓ ରତ୍ନ ଖଚିତ ଥିବା ଦେଖି ମୁଁ ଲେନାଙ୍କୁ ପଚାରିଲି, "ଏପରି ଓଜନଦାର ପୋଷାକ ଆପଣ ପିନ୍ଧିପାରିବେ ?" ସେ ଉତ୍ତର ଦେଲେ, "ମୁଁ ହେଉଛି ଦରିଦ୍ର ପରିବାରର ବାଳିକା । ସେ ଥିଲେ ଇଉରୋପର ସର୍ବ ବୃହତ ସାମ୍ରାଜ୍ୟର ରାଣୀ । ତେଣୁ ତାଙ୍କୁ ଏ ଓଜନ ଆନନ୍ଦ ଦେଉଥାଏ, ମୋତେ କଷ୍ଟ ଦେବ ।" ଜାରିନା କାଥେରିନଙ୍କ ଜୋତାଗୁଡ଼ିକରେ କ୍ଷୁଦ୍ର କ୍ଷୁଦ୍ର ହୀରା, ନୀଳା, ମୋତି, ମାଣିକ୍ୟ ଖଚିତ ରହିଛି । ସେଗୁଡ଼ିକ ସେ କିପରି ପିନ୍ଧୁଥିଲେ, ଭାବି ପାରିଲି ନାହିଁ । ରାଜସିଂହାସନ ଗୁଡ଼ିକ କଥା କହିଲେ ନସରେ । ସୁନା ଉପରେ ଅସଂଖ୍ୟ ରତ୍ନ ଝକମକ କରୁଛି ।

'ଅସ୍ତ୍ର ପ୍ରାସାଦ' ପାଖରେ ରହିଛି ଗୋଟିଏ ଗିର୍ଜାଗୃହ ଓ ତା ପାଖକୁ ଲାଗିଛି ରାଜପରିବାରର କେତେକଙ୍କ ସମାଧି । ଅଳ୍ପ ଦୂରରେ ରହିଛି 'ଘଣ୍ଟା ଗୁମ୍ବଜ' ବା Bell Tower । ତା ଭିତରେ ରହିଛି ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ଆଶ୍ଚର୍ଯ୍ୟ– ମସ୍କୋର ଘଣ୍ଟା । ଏହି ବୃହଦାକାର ଘଣ୍ଟାର ଓଜନ ହେଉଛି ୨୦୦ ଟନ୍ । ଉପରକୁ ଉଠାଇଲା ବେଳେ ତଳକୁ ଖସିପଡ଼ିଥିବା ଯୋଗୁଁ ଘଣ୍ଟାର ଗୋଟିଏ ଅଂଶ ଭାଙ୍ଗିଯାଇଛି । ତଥାପି, ତାହାର ଆକାର ଦେଖି ବିସ୍ମିତ ହେଲି ।

ସେଠାରୁ ଆସି କ୍ରେମଲିନ ପରିସର ମଧ୍ୟରେ ଥିବା ସୋଭିଏତ ପାର୍ଲିଆମେଣ୍ଟ ଭବନ ସମ୍ମୁଖରେ ପହଞ୍ଚିଲି । ପିଟାର କହିଲେ, ସେହି ଭବନର ଭିତର କକ୍ଷ ଗୁଡ଼ିକ ଦେଖିବା ଲାଗି ଆଉ ଦିନେ କାର୍ଯ୍ୟକ୍ରମ ରହିଛି ।

ଅପରାହ୍ନରେ ଆଫ୍ରୋ-ଏସୀୟ ପ୍ରତିଷ୍ଠାନରେ 'ଭାରତ ଓ ଆଫ୍ରୋ-ଏସୀୟ ମୁକ୍ତି ସଂଗ୍ରାମ' ବିଷୟରେ ଭାଷଣ ଦେଲି । ମସ୍କୋ ସହରରେ ଥିବା ଏସିଆ ଓ ଆଫ୍ରିକାର କେତେକ ବ୍ୟକ୍ତି ସଭାରେ ଉପସ୍ଥିତ ଥିଲେ ।

### ୩୦ ଅକ୍ଟୋବର : ଏକ ବିଚିତ୍ର କଥା

ଅକ୍ଟୋବର ୩୦ ତାରିଖ ଦିନଟି ମୁଖ୍ୟତଃ ଭାଷଣ ଦେବାରେ କଟିଲା । ସେହି ଦିନର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି । ହୋଟେଲ ଉକ୍ରାଇନାର ଉପର ମହଲାରେ ମୋ ରହିଥିବା ରୁମ ପାଖକୁ ଲାଗିଥିବା ଅନ୍ୟ ରୁମ୍ ଗୁଡ଼ିକରେ ପ୍ରଥମରୁ ତାଲା ପଡ଼ିଥିବା ଦେଖୁଥାଏଁ । ଏତେ ବଡ଼ ତାଲାରେ ଅନ୍ୟ କେହି ନାହାନ୍ତି ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ । ମୋ ରୁମ୍ ଥାଏ ପୂର୍ବ କୋଣରେ । ପଶ୍ଚିମ କୋଣ ପର୍ଯ୍ୟନ୍ତ ସ୍ଥାନଟି ଶୂନ୍ୟ ଥିଲା । କିନ୍ତୁ ମଧ୍ୟେ ମଧ୍ୟେ ୩୦ ତାଲା ଉପରୁ ଲିଫ୍ଟ୍ ଯୋଗେ ତଳକୁ ଆସିଲା ବେଳେ, ତା ଭିତରେ ଜଣେ ଅନିନ୍ଦ୍ୟା ସୁନ୍ଦରୀ ଯୁବତୀଙ୍କୁ ଦେଖିବାକୁ ପାଉଥିଲି । ଉଠିଲାବେଳେ ମଧ୍ୟ ଥରେ ଥରେ ତାଙ୍କୁ ଦେଖିଲି । ପ୍ରଭାତ ପୂର୍ବରୁ କିମ୍ବା ରାତ୍ରିର ବିଳମ୍ବିତ ପ୍ରହରରେ ସେହି ତାଲାର ସୁଳମ୍ବିତ 'କରିଡର' ବା ଗଳିପଥରେ ତାଙ୍କୁ ଏକାକୀ ପଦଚାରଣ କରିବା ଦେଖି ଆଶ୍ଚର୍ଯ୍ୟ ହେଉଥାଏଁ । ସେତେବେଳେ ତାଙ୍କ ଗତିବିଧି ଓ ଚାଲିଚରଣ ମଧ୍ୟ ଅସ୍ୱାଭାବିକ ଜଣା ଯାଉଥାଏ । ତାଙ୍କ ବେଶଭୂଷା ଓ ସାଜସଜ୍ଜା ଦେଖି ଥରେ ମନକୁ ଆସିଲା, ସେ ବୋଧହୁଏ ଅନ୍ୟ କୌଣସି ଇଉରୋପୀୟ ଦେଶର ଜଣେ ରାଜକୁମାରୀ ଓ ସମ୍ଭବତଃ ବିକୃତମସ୍ତିଷ୍କା, ଏବଂ ବୋଧ ହୁଏ ପର୍ଯ୍ୟଟକ ଭାବେ ଆସି ଏଠାରେ ଅଛନ୍ତି । ଲିଫ୍ଟରେ ଗଲା ଆସିଲା ବେଳେ ମୋ ମୁହଁକୁ ସେ କେବେ ହେଲେ ଚାହୁଁ ନଥାନ୍ତି । ଦିନେ ରାତ୍ରିଭୋଜନ ପରେ ଉପରକୁ ଆସି ମୋ ରୁମ୍‌ରେ ପଶିଲା ସମୟରେ ଦେଖିଲି, ସେ ବେଶ୍ କିଛି

ଦୂରରେ ଥିବା ବାଲକୋନୀରେ ପଥର ମୂର୍ତ୍ତି ପରି ଛିଡ଼ା ରହି ମୁକ୍ତ ଆକାଶ ଦିଗକୁ ଚାହିଁ ରହିଛନ୍ତି ।

୩୦ ତାରିଖ ରାତ୍ରିଭୋଜନ ପରେ ଆଗାମୀ ଦିନର ପ୍ରୋଗ୍ରାମ ଠିକ୍ କରିବାକୁ ଲେନା ଏବଂ ଅନ୍ୟ ଜଣେ ଯୁବ ଅନୁବାଦକ ସେରେୟୋଭ୍‌ଙ୍କ ସାଙ୍ଗରେ ଲିଫଟ୍‌ରେ ଆସି କୋଠରିରେ ପଶିଲାବେଳେ ମୋର ଦୃଷ୍ଟି ପଡ଼ିଗଲା ସେହି ପ୍ରହେଳିକାମୟୀ ସୁନ୍ଦରୀଙ୍କ ଉପରେ । ସେ ଅସ୍ପଷ୍ଟ ସ୍ୱରରେ କଥା କହି କହି କରିଡରରେ ପଦଚାରଣ କରୁଥାନ୍ତି, କିନ୍ତୁ ଆମକୁ ଦେଖି ନିମିଷ ମଧ୍ୟରେ ଅନ୍ତର୍ଦ୍ଧାନ ହେଲେ । ସେରେୟୋଭଙ୍କୁ ପଚାରିଲି, ''ଏଡ଼େ ବଡ଼ ହୋଟେଲରେ ଅନେକ ଲୋକ ରହିଥିଲାବେଳେ, ଏହି ତାଲାର ସବୁ ରୁମ ଖାଲି ଅଛି, ଏବଂ ମୋ ଛଡ଼ା ଅନ୍ୟ ଜଣେ ମାତ୍ର ମହିଳା ଅଛନ୍ତି । ସେ କିଏ ଏବଂ ଏକାକୀ ଅଛନ୍ତି କାହିଁକି ?''

ମୋ ପ୍ରଶ୍ନ ଶୁଣି ଲେନା ସନ୍ଧାନ ନେବାକୁ ବାହାରିଗଲେ ଓ ଅଧଘଣ୍ଟାଏ ପରେ ଫେରିଆସିଲେ । ହୋଟେଲ ମେନେଜାରଙ୍କ ପାଖରୁ ବୁଝି ଆସି ଜଣାଇଲେ, ସେହି ମହିଳା ହେଉଛନ୍ତି ରୁଷିଆର ଜଣେ ସ୍ୱନାମଧନ୍ୟା ଅଭିନେତ୍ରୀ ଓ ଚଳଚ୍ଚିତ୍ର ତାରକା । ରୁଷ ସରକାର 'ରାସ୍‌ପୁଟିନ' ନାମକ ଯେଉଁ ଚଳଚ୍ଚିତ୍ର ପ୍ରସ୍ତୁତ କରୁଛନ୍ତି, ସେଥିରେ ସେ ରୁଷ ସାମ୍ରାଜ୍ଞୀ ଆଲେକ୍‌ଜାଣ୍ଡ୍ରାଙ୍କ ଭୂମିକାରେ ଅଭିନୟ କରିବେ । ବିପ୍ଳବ ପୂର୍ବରୁ ରୁଷିଆର ଜାର ଥିଲେ ଦ୍ୱିତୀୟ ନିକୋଲାସ । ତାଙ୍କ ଧର୍ମପତ୍ନୀ ଜାରିନା ଆଲେକ୍‌ଜାଣ୍ଡ୍ରା ଥିଲେ ଅତ୍ୟନ୍ତ ବୁଦ୍ଧିହୀନା ଓ ସଂକୀର୍ଣ୍ଣମନା ନାରୀ, ଅଥଚ ସମ୍ରାଟଙ୍କ ଉପରେ ଥାଏ ତାଙ୍କର ପ୍ରଗାଢ଼ ପ୍ରଭାବ । ସେହି ସାମ୍ରାଜ୍ଞୀ ପୁଣି ରାସପୁଟିନ୍ ନାମକ ଠକ ଯୋଗୀଙ୍କୁ ଐଶୀ ପୁରୁଷ ବୋଲି ବିଶ୍ୱାସ କରି ତାଙ୍କର କ୍ରୀଡ଼ନକ ଭାବରେ କାର୍ଯ୍ୟ କରୁଥିଲେ । ଜାରିନାଙ୍କୁ ଆୟତ୍ତ କରି ଭଣ୍ଡଯୋଗୀ ଶାସନ କାର୍ଯ୍ୟରେ ନିଜର ଶିଷ୍ୟମାନଙ୍କୁ ଭର୍ତ୍ତି କଲେ ଓ ସାମ୍ରାଜ୍ୟର ସର୍ବନାଶ ଘଟାଇଲେ । ଶେଷରେ କେତେକ ବ୍ୟକ୍ତି ଷଡ଼ଯନ୍ତ୍ର କରି ରାସପୁଟିନଙ୍କୁ ହତ୍ୟା କଲେ । କିନ୍ତୁ ସେତେବେଳକୁ ଜାର ଓ ଜାରିନାଙ୍କ ବିନାଶକାଳ ଆସିଯାଇଥାଏ । ମହାନ୍ ରୁଷ ବିପ୍ଳବର ଅନ୍ୟତମ କାରଣ ଥାଏ ଜାରିନା ଓ ଭଣ୍ଡଯୋଗୀର ରହସ୍ୟମୟ ଭୂମିକା ।

ଲେନା କହିଲେ, ''ସାମ୍ରାଜ୍ଞୀ ଆଲେକ୍‌ଜାଣ୍ଡ୍ରାଙ୍କ ଭୂମିକାରେ ଅଭିନୟ କରିବା ପାଇଁ ସରକାର ଏହି ଅଭିନେତ୍ରୀଙ୍କୁ ବାଛିଛନ୍ତି । ରୁଷିଆର ଅଭିନେତା ଅଭିନେତ୍ରୀମାନେ ଅନ୍ୟ ଦେଶର ଚଳଚ୍ଚିତ୍ର ତାରକାମାନଙ୍କ ପରି ପ୍ରଚୁର ଅର୍ଥ ନିଅନ୍ତି ନାହିଁ । କିନ୍ତୁ ସେମାନଙ୍କ କଳା କୌଶଳ ବିକାଶ ଲାଗି ସବୁ ପ୍ରକାର ସୁବିଧା ସୁଯୋଗ

ଯୋଗାଇ ଦିଆଯାଏ । ଏହି ଅଭିନେତ୍ରୀ ଦାବି କଲେ ଯେ, ସାମ୍ରାଜ୍ଞୀଙ୍କ ଭୂମିକାରେ ଅବତୀର୍ଣ୍ଣ ହେବା ପୂର୍ବରୁ ସେ ଏକାକୀ ଜାରିନାଙ୍କ ଢଙ୍ଗରେ ଚାଲିବା, ବୁଲିବା, ବସିବା, କଥା କହିବା ଓ ଚିନ୍ତା କରିବା ଇତ୍ୟାଦି ଅଭ୍ୟାସ କରିବେ । ଅର୍ଥାତ୍, ନିଜ ମନରେ ଅବିକଳ ଜାରିନାଙ୍କ ପରି ଦାମ୍ଭିକ ଓ ଅସ୍ୱାଭାବିକ ମନୋଭାବ ସୃଜନ କରିବା ନିମନ୍ତେ ତାଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ସେଥିପାଇଁ ସରକାର ତାଙ୍କୁ ଏହି ବିଳାସପୂର୍ଣ୍ଣ ହୋଟେଲର ଗୋଟିଏ ନିଭୃତ ତାଲାରେ ସାତଦିନ ଏକାକୀ ରହିବାକୁ ସୁଯୋଗ ଦେଇଛନ୍ତି । ଏହି ସମୟ ମଧ୍ୟରେ ସେ ନିଜର 'ମୁଡ୍' ପ୍ରସ୍ତୁତ କରିବେ । ସୁତରାଂ, ଯେଉଁ ମହିଳାଙ୍କୁ ଆପଣ ଏବେ ଦେଖୁଛନ୍ତି, ଅଳ୍ପ ଦିନ ପରେ ତାଙ୍କୁ ଦେଖିବାକୁ ମିଳିବ ରୂପେଲି ପରଦାରେ, ଜାରିନା ଆଲେକ୍‌ଜାଣ୍ଡ୍ରାଙ୍କ ରୂପରେ ।''

ଲେନାଙ୍କ ବର୍ଣ୍ଣନାରେ ମୁଗ୍ଧ ହେଲି । ଆମ ଦେଶର ତାରକାମାନେ ଅର୍ଥ ଲାଗି ପାଗଳ ରହି କଳା ପ୍ରତି ସଚେତନ ରହନ୍ତି କି ନାହିଁ, ସେକଥା ମୋତେ ଜଣା ନାହିଁ । କିନ୍ତୁ, ସାମ୍ୟବାଦୀ ରୁଷିଆରେ କଳାକାରମାନଙ୍କୁ ଯେଉଁ ପ୍ରକାର ପ୍ରୋତ୍ସାହନ ଦିଆଯାଉଛି, ତଦ୍ୱାରା କଳାର ଗୁଣାତ୍ମକ ମୂଲ୍ୟ ଯେ ବୃଦ୍ଧି ପାଉଛି, ଏହା ଅନୁମାନ କରିପାରିଲି ।

## ୩୧ ଅକ୍ଟୋବର : 'ମିତ୍ରତା ସମିତି'

ପୂର୍ବାହ୍ନରେ ଟଲଷ୍ଟୟ ମିଉଜିୟମ ଓ ରୁଷ-ବିପ୍ଳବ ମିଉଜିୟମ ଦେଖିଲି । ଅପରାହ୍ନ ୩ଟାରେ ବିଶ୍ୱବିଦ୍ୟାଳୟ ପ୍ରାଚ୍ୟବିଭାଗରେ, ଏବଂ ସନ୍ଧ୍ୟା ୬ଟାରେ 'ମିତ୍ରତା ସମିତି' ବା Friendship Society ନାମକ ଅନୁଷ୍ଠାନରେ ଭାଷଣ ଦେଲି । ସମିତିର ସଦସ୍ୟମାନେ ଆଦର ସହକାରେ ମୋତେ ଅଭ୍ୟର୍ଥନା ଜଣାଇଲେ । କର୍ମକର୍ତ୍ତାମାନଙ୍କ ପାଖରୁ ଜାଣିଲି, ୧୧୮ଟି ଦେଶର ପ୍ରତିନିଧିମାନେ ସେହି ସମିତିର ସଭ୍ୟ । 'ସ୍ୱାଧୀନ ଭାରତର ବିଦେଶ ନୀତି' ସମ୍ପର୍କରେ କହିବା ଲାଗି ମୋତେ ଡକା ଯାଇଥିଲା । ଭାଷଣ ଶେଷରେ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ହେଲା । କାଶ୍ମୀର ସମସ୍ୟା ଉପରେ ଶୁଣିବା ଲାଗି ଶ୍ରୋତାମାନଙ୍କର ଆଗ୍ରହ ଥିବା ଦେଖିଲି । ଧର୍ମ ନାମରେ ଭାରତ ବିଭାଜନ ଓ ପାକିସ୍ତାନ ଗଠନ ସତ୍ତ୍ୱେ ଭାରତରେ ଯେ କୋଟି କୋଟି ମୁସଲମାନ ବସବାସ କରୁଛନ୍ତି, ସେ ବିଷୟ ଅନେକଙ୍କୁ ଜଣା ନଥାଏ । ମନେ ହେଲା, ଭାରତୀୟ ଦୂତାବାସ ପକ୍ଷରୁ ଅନ୍ୟ ଦେଶର ଲୋକଙ୍କୁ କାଶ୍ମୀର ବିଷୟରେ ଯଥାର୍ଥ ଧାରଣା ଦେବା ଲାଗି ଯଥେଷ୍ଟ ପ୍ରଚାର ନାହିଁ ।

ସଭାରୁ ଫେରିଲାବେଳେ ଗାଡ଼ିର ଡ୍ରାଇଭାର ପ୍ରଶ୍ନ କଲେ, "ଆପଣମାନେ ଚୀନାମାନଙ୍କ ସାଙ୍ଗରେ କାହିଁକି କଳହ କରୁଛନ୍ତି ?" ଉତ୍ତରରେ ମୁଁ ପ୍ରଶ୍ନ କଲି, "ଚୀନାମାନେ କାହିଁକି ଆମ ସହିତ କଳହ କରୁଛନ୍ତି ?" ରୁଷ ଭ୍ରମଣରୁ ଫେରିଆସି ମୁଁ ଇଂରାଜୀ ସଂବାଦପତ୍ରଗୁଡ଼ିକରେ ଲେଖିଥିଲି ଯେ, ଭାରତ ଚୀନ ସୀମାବିବାଦ ସମ୍ପର୍କରେ ରୁଷବାସୀଙ୍କୁ ପ୍ରକୃତ ତଥ୍ୟମାନ ଆମ ଦୂତାବାସ ପକ୍ଷରୁ ଜଣାଇଦେବା ଉଚିତ, କାରଣ ସେମାନେ ବୋଧହୁଏ ଭାବୁଛନ୍ତି, ଯୁଦ୍ଧ ଲାଗି ଭାରତ ଦାୟୀ ଓ ଚୀନ ନିର୍ଦ୍ଦୋଷ !

## ୧ ନଭେମ୍ବର : ପୁନଶ୍ଚ କ୍ରେମଲିନ

କ୍ରେମଲିନ ହତାରେ ଥିବା କେତେକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଦେଖିବା ନିମନ୍ତେ ଏହି ଦିନଟି ନିର୍ଦ୍ଦିଷ୍ଟ ଥାଏ । ପିଟାର ଓ ଲେନାଙ୍କ ସାଙ୍ଗରେ ପ୍ରଥମେ ପହଞ୍ଚିଲି ସେଠାରେ ଥିବା ଜାରମାନଙ୍କର ବିରାଟ ପ୍ରାସାଦ ବା Grand Palace ଦେଖିବା ପାଇଁ । ପଞ୍ଚଦଶ ଶତାବ୍ଦୀରୁ ଉନବିଂଶ ଶତାବ୍ଦୀ ମଧ୍ୟରେ ଜାରମାନେ ଭିନ୍ନ ଭିନ୍ନ ସମୟରେ ନିଜ ନିଜ ଲାଗି ରାଜପ୍ରାସାଦମାନ ନିର୍ମାଣ କରିଥିଲେ । ମସ୍କୋ ଅବସ୍ଥାନ ସମୟରେ ସେମାନେ ସେହି ସବୁ ମନୋରମ ସୌଧରେ ରହୁଥିଲେ । ପ୍ରଖ୍ୟାତ ରୁଷ୍ ସମ୍ରାଟ ପିଟାର ଦି ଗ୍ରେଟ (ଜନ୍ମ ୧୬୭୨, ମୃତ୍ୟୁ ୧୭୨୫) ଯେଉଁ କକ୍ଷରେ ଶୟନ କରୁଥିଲେ, ସେଥି ମଧ୍ୟରେ ତାଙ୍କର ଶୋଇବା ଖଟ ପ୍ରଭୃତି ଆଜି ପର୍ଯ୍ୟନ୍ତ ସେହିପରି ରହିଆସିଛି । ପଥର କାନ୍ଥର ସୁଦୃଢ଼ ଘର । ଛୋଟ ଛୋଟ ଝରକା । ଆତତାୟୀମାନଙ୍କ ଭୟରେ ରାତିରେ ସେଗୁଡ଼ିକ ବନ୍ଦ ରହୁଥାଏ । ସେ ଯୁଗରେ ବିଜୁଳି ଆଲୁଅ ନଥିଲା । ରାତିରେ ନିଦ ଭାଙ୍ଗିଲେ, ସମ୍ରାଟ ନିଜେ ଅନ୍ଧକାର ଭିତରେ ଦୁଇଖଣ୍ଡି ଝକମକି ପଥରକୁ ଶକ୍ତ ଭାବରେ ବାଡ଼େଇ ସେଥିରୁ ନିଆଁ ବାହାର କରି ବତି ଜଳାଉଥିଲେ । ସେହି ପଥର ଓ ବଳିତାଗୁଡ଼ିକ ଗୋଟିଏ ଛୋଟ ଥାକରେ ରହିଛି । ତାହା ଥିଲା ତିନିଶହ ବର୍ଷ ଆଗର ଜଣେ ଜାରଙ୍କର ଅବସ୍ଥା । ଅନୁବାଦକ ପିଟାରଙ୍କ ସହିତ କୌତୁକ କଲି, "ଜାରଙ୍କ ନାମ ଥିଲା ପିଟାର, ତୁମ ନାମ ମଧ୍ୟ ପିଟାର । ତୁମେ ଏ ଘରେ ରହିବାକୁ ଚାହିଁବ ?" ସେ ହସିଦେଇ କହିଲେ, "ମୋ ଘରର କାନ୍ଥଗୁଡ଼ିକ ଖୁବ୍ ପତଳା, କିନ୍ତୁ ସେଥିରେ ଇଲେକ୍‌ଟ୍ରିକ ବଲ୍‌ବ ଲାଗିଛି । ଏ ଘରର ମୋଟା କାନ୍ଥର ଘେର ଭିତରେ ଅନ୍ଧାରରେ ଝକମକି ପଥର ବାଡେଇବାକୁ ମୁଁ କେବେ ହେଲେ ପସନ୍ଦ କରିବି ନାହିଁ ।"

ସେଠାରୁ ଯାଇ ପରବର୍ତ୍ତୀ ସମୟର ଜାରମାନଙ୍କ ବାସଭବନ, ବିଶ୍ରାମ ଘର, ଦରବାର କକ୍ଷ ଓ ଶୋଇବା ଗୃହର ସୌନ୍ଦର୍ଯ୍ୟ ଦେଖି ବିସ୍ମିତ ହେଲି । ସେମାନଙ୍କ

ବ୍ୟବହାର୍ଯ୍ୟ ସାମଗ୍ରୀଗୁଡ଼ିକ ଦେଖି ଆଖି ଝଲସି ଯାଉଥାଏ । ପିଟାରଙ୍କୁ କହିଲି, "ସମ୍ରାଟ ସାମ୍ରାଜ୍ଞୀମାନଙ୍କର ବିଳାସ-ଭବନ ଦେଖି ସମୟ ନଷ୍ଟ କରିବି ନାହିଁ, କାରଣ ସେମାନେ ଅତୀତ ଗର୍ଭରେ ହଜିଗଲେଣି । ବର୍ତ୍ତମାନ ସମୟର ସୋଭିଏତ ପାର୍ଲିଆମେଣ୍ଟ ଓ କ୍ରୁଶ୍ଚେଭଙ୍କ ଅଫିସ୍‌କକ୍ଷ ଇତ୍ୟାଦି ଦେଖିଲେ କ୍ରେମଲିନ ଭ୍ରମଣ ସାର୍ଥକ ହେବ ।"

ଏଥିପାଇଁ ସ୍ୱତନ୍ତ୍ର ଅନୁମତି ମିଳିଥାଏ । ଗ୍ରାଣ୍ଡ୍ ପାଲେସ୍ ନିକଟରେ ବିପ୍ଳବ ପରେ ନିର୍ମିତ ହୋଇଥିବା ସୁବିଶାଳ ସୌଧ ଦିଗକୁ ମୋତେ ନିଆଗଲା । ସେଠାରେ ଗୋଟିଏ ବୃହଦାକାର ହଲରେ ସର୍ବୋଚ୍ଚ ସୋଭିଏତ୍‌ର ଅଧିବେଶନ ବସେ । ହଲ ଭିତରେ ବୁଲି ଦେଖିଲି । ୩ ହଜାର ବ୍ୟକ୍ତିଙ୍କ ଲାଗି ବସିବା ସ୍ଥାନ ରହିଛି, ଯଦିଚ ପାର୍ଲିଆମେଣ୍ଟର ସଭ୍ୟସଂଖ୍ୟା ତାହାର ଅଧେ । ସଭାକକ୍ଷର ଅଗ୍ରଭାଗରେ ରହିଛି ଶାସକମଣ୍ଡଳୀ ବା ପ୍ରେସିଡିୟମ୍ ଏବଂ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ବସିବା ଲାଗି ଉଚ୍ଚ ମଣ୍ଡପ । ପୃଷ୍ଠଭୂମିରେ ରହିଛି ଲେନିନଙ୍କ ପ୍ରତିମୂର୍ତ୍ତି । ହଲଟିର ପାର୍ଶ୍ୱବର୍ତ୍ତୀ କକ୍ଷଗୁଡ଼ିକରେ ମନ୍ତ୍ରୀମାନେ ବିଚାର ବିମର୍ଶ କରନ୍ତି । ସେଥି ମଧ୍ୟରୁ ଗୋଟିଏ ଥିଲା ସ୍ୱୟଂ କ୍ରୁଶ୍ଚେଭଙ୍କର ।

ମନେ କରି ପକେଟରେ ଆଣିଥିଲି ଦିଲ୍ଲୀ ଲାଲକିଲ୍ଲା ଦୋକାନରୁ କିଣିଥିବା କ୍ଷୁଦ୍ର ଦୁଇଟି ହାତୀମୂର୍ତ୍ତି । କକ୍ଷ ସଚିବ ମହୋଦୟ ତାଙ୍କ ସ୍ଥାନରେ ବସିଥାନ୍ତି । ପାଖକୁ ଯାଇ ଭାରତୀୟ ରୀତିରେ ନମସ୍କାର ଜଣାଇ କହିଲି, "ମୋ ଟିକି ଝିଅ ଝାନ୍‌ସୀ କମ୍ୟୁନିଷ୍ଟ୍ ମତବାଦରେ ବିଶ୍ୱାସ କରେ ଓ ସୋଭିଏତ ନେତାଙ୍କୁ ଭଲ ପାଏ । ସେ ଶ୍ରୀ କୃଶ୍ଚେଭ ଓ ଶ୍ରୀମତୀ କୃଶ୍ଚେଭଙ୍କ ଲାଗି ଦୁଇଟି କ୍ଷୁଦ୍ର ଉପହାର ଦେଇଛି ।" ପିଟାର ମୋ ବାକ୍ୟ ଅନୁବାଦ କଲେ । ମାର୍ବଲ ଓ ଚନ୍ଦନକାଠର ହାତୀ ତାଙ୍କ ହାତରେ ଧରାଇଦେଲି । ଖୁସି ମନରେ କହିଲେ, "Good wishes to your little child."

କ୍ରେମଲିନ ହତାରୁ ବାହାରିଲା ବେଳେ ପିଟାର ମୋତେ ସୁଉଚ୍ଚ ପ୍ରାଚୀର ଶୀର୍ଷରେ ଥିବା ଗୁମ୍ବଜ ଭିତରକୁ ସିଡ଼ି ପଥରେ ନେଇଗଲେ । ସାଙ୍ଗରେ ଥିଲେ ଲେନା । କ୍ଷୁଦ୍ର କୋଠରିଟିର ମଝିରେ ଥିବା ମଞ୍ଚ ଉପରେ ଛିଡ଼ା ହେବାପାଇଁ ପିଟାର ମୋତେ ଅନୁରୋଧ କଲେ । କଥା ମାନିଲି । ଲେନା ସମ୍ମୁଖ ଦିଗକୁ ଆଙ୍ଗୁଳି ଦେଖାଇ କହିଲେ, "ରାଜପଥର ଅନ୍ୟ ପାଖରେ ଏହି ଗୁମ୍ବଜର ଠିକ ବିପରୀତ ଦିଗରେ ଥିବା ଗୁମ୍ବଜଟିକୁ ଚାହିଁ ଦେଖନ୍ତୁ ।" କିଛି ସମୟ ଚାହିଁରହି ମୁଁ କହିଲି, "ହଁ, ଲମ୍ବ ଲମ୍ବ କାଠର ଖମ୍ବଗୁଡ଼ିକ ଦିଶୁଛି ଓ ଉପର କାଠରୁ ଦଉଡ଼ିର ଫାଶ ଦେଖାଯାଉଛି ।"

ଦୁଇ ହାତରେ ତାଳି ମାରି ଲେନା ପାଟି କରି ଉଠିଲେ, ''ଆପଣ ଯେଉଁଠାରେ ଛିଡ଼ା ଅଛନ୍ତି, ସେହି ସ୍ଥାନରେ ଜାରମାନେ ଛିଡ଼ା ରହି ଦୂରବର୍ତ୍ତୀ ସେହି ଗୁମ୍ବଜ ଭିତରେ ରାଜଦ୍ରୋହୀ, ବିପ୍ଳବୀ, ଖୁନୀ ଓ ତସ୍କରମାନଙ୍କୁ ଜଣକ ପରେ ଜଣେ ଫାଶୀ କାଠରେ ଝୁଲିବା ଦୃଶ୍ୟ ଉପଭୋଗ କରୁଥାନ୍ତି । ସେତେବେଳେ ସେମାନେ ଯେଉଁ ଆନନ୍ଦ ପାଉଥିଲେ, ଆପଣ ବର୍ତ୍ତମାନ ସେହି ଆନନ୍ଦ ଲାଭ କରୁଥିବେ ବୋଲି ମୋର ଆଶା ।''

ମଞ୍ଚ ଉପରୁ ଡେଇଁପଡ଼ି କହିପକାଇଲି, ''ଜାରମାନଙ୍କ ଆନନ୍ଦ କଥା ଭାବିବା ପୂର୍ବରୁ ଫାଶୀ ଗୁମ୍ବଜ ଦେଖି ରୋମ ଟାଙ୍କୁରି ଉଠୁଛି । ତେଣୁ ବର୍ତ୍ତମାନ ପ୍ରାୟଶ୍ଚିତ୍ତ ଲାଗି ମୁଁ ଭାବିବି, ଶେଷ ସମ୍ରାଟ ଦ୍ୱିତୀୟ ନିକୋଲାସଙ୍କୁ ଯେତେବେଳେ ସପରିବାର ହତ୍ୟା କରାଗଲା, ସେତେବେଳେ ବନ୍ଧୁକ ଆଗରେ ଛିଡ଼ା ରହି ଓ ନିଜ କୋମଳମତି ପୁଅଝିଅମାନଙ୍କ ଆଡ଼କୁ ଚାହିଁ ସେ କ'ଣ ଭାବିଥିବେ ।'' ବୁଦ୍ଧିମତୀ ଲେନା ରହସ୍ୟ କଲେ, ''ମୁଁ ମଧ୍ୟ ସେତେବେଳେ ଜାରିନା କ'ଣ ଭାବିଥିବେ, ସେହିକଥା ଭାବୁଛି ।''

ଅପରାହ୍ନରେ ଗୋଟିଏ ଭାଷଣ ଦେଲା ପରେ ସନ୍ଧ୍ୟାବେଳେ ରୁଷିଆର ପ୍ରସିଦ୍ଧ ବଲସୋଇ ବ୍ୟାଲେ ଉପଭୋଗ କଲି । ମସ୍କୋ ବ୍ୟାଲେ ହଲ୍‌ର ଚାକଚକ୍ୟ, ରଙ୍ଗମଞ୍ଚର ଦୃଶ୍ୟ ଓ ନର୍ତ୍ତକ ନର୍ତ୍ତକୀ ମାନଙ୍କର ନୃତ୍ୟ ବାସ୍ତବିକ ଚମକପ୍ରଦ ଥାଏ ।

### ୨ ନଭେମ୍ବର : ଲେନିନ ଲାଇବ୍ରେରୀ

୨ ତାରିଖ ଦିନ ମସ୍କୋର ଲେନିନ ଲାଇବ୍ରେରୀରେ 'ବିରଳ ପୁସ୍ତକାଗାର' ଦେଖିଲି । ପ୍ରାଚୀନତମ ମୁଦ୍ରିତ ପୁସ୍ତକଗୁଡ଼ିକ ଏଠାରେ ରଖାଯାଇଛି । ୧୪୯୩ ମସିହାରେ ମୁଦ୍ରିତ ଇଉରୋପୀୟ ସହର ଓ ଲୋକଙ୍କ ବିଷୟର ଗେଜେଟ୍, ୧୫୪୩ରେ କୁପାରନିକାସଙ୍କ ଲିଖିତ ଗ୍ରହରାଜି ବିଷୟକ ପୁସ୍ତକ, ୧୮୬୭ ରେ ମୁଦ୍ରିତ କାର୍ଲ ମାର୍କସଙ୍କର 'କ୍ୟାପିଟାଲ' ପ୍ରଭୃତି ବହିଗୁଡ଼ିକ ଦେଖିଲି । ଶେଷରେ, ଲାଇବ୍ରେରୀଆନ ମହୋଦୟ ଦେଖାଇଦେଲେ, ରୁଷ ଭାଷାରେ ଅନୂବାଦିତ 'ଭଗବଦ୍ ଗୀତା' । ଏହି ଗ୍ରନ୍ଥ ୧୭୮୮ ଖ୍ରୀଷ୍ଟାବ୍ଦରେ ମସ୍କୋ ସହରରେ ପ୍ରକାଶ ଲାଭ କରିଥିଲା ।

ଲେନିନ ଲାଇବ୍ରେରୀର ପୁସ୍ତକସଂଖ୍ୟା ୨୨ ନିୟୁତ । ଏହା ହେଉଛି ପୃଥିବୀର ବୃହତ୍ତମ ଲାଇବ୍ରେରୀ । ୨ ହଜାର କର୍ମଚାରୀ ଏଠାରେ କାମ କରନ୍ତି । ମାତ୍ର

ଶହେ ବର୍ଷ ପୂର୍ବେ ଏହା ସ୍ଥାପିତ ହୋଇଥିଲା ଏବଂ ୧୯୫୭ ମସିହାରେ ପାଠାଗାର ନିମନ୍ତେ ସୁବିଶାଳ ସୌଧ ନିର୍ମାଣ କରାଗଲା ।

## ୩ ନଭେମ୍ବର : ନୈଶ ଭୋଜି ଓ ଭଡ଼କାପାନ

ନଭେମ୍ବର ୩ ତାରିଖ ଦିନ ଅନ୍ୟ କେତେକ ଦର୍ଶନୀୟ ସ୍ଥାନ ଦେଖିଲି ଓ ଅପରାହ୍ନରେ ଭାଷଣ ଦେଲି । ସେହି ଦିନ ରାତି ୮ଟାରେ ସୋଭିଏତ ସାଂସ୍କୃତିକ ବିଭାଗ ପକ୍ଷରୁ ଆନୁଷ୍ଠାନିକ ନୈଶ ଭୋଜିର ପ୍ରୋଗ୍ରାମ ଥାଏ । ପିଟାର ଜଣାଇଲେ, ସଂସ୍କୃତି ମନ୍ତ୍ରୀ ବା ଉପମନ୍ତ୍ରୀ ସରକାରୀ ଭାବେ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଶୁଭେଚ୍ଛା ଜ୍ଞାପନ ଲାଗି ମୁଖ୍ୟ ଅତିଥି ହେବେ । କୁଳପତି ଓ କେତେଜଣ ଅଧ୍ୟାପକ ଭୋଜିରେ ମିଳିତ ହେବେ ।

ସନ୍ଧ୍ୟାପରେ ହୋଟେଲରେ ପହଞ୍ଚିଲେ ଜଣେ ସରକାରୀ କର୍ମଚାରୀ । ସେ ଇଂରାଜୀରେ କଥାବାର୍ତ୍ତା କଲେ । ସୂଚନା ଦେଲେ ଯେ, ରୁଷିଆର ସାମାଜିକ ରୀତି ଅନୁଯାୟୀ ମନ୍ତ୍ରୀଙ୍କ ଭଡକା ମଦ୍ୟ ଗ୍ଲାସ ସହିତ ମୋର ଭଡକା ଗ୍ଲାସ ଲଗାଇ ଦେଇ ମୁଁ ସୋଭିଏତଦେଶର ମଙ୍ଗଳ କାମନା କରିବି ଓ ସେ ଭାରତର ଶୁଭ କାମନା କରିବେ । ତା ପରେ, ''ଉଭୟଙ୍କୁ ନିଜ ନିଜ ଗ୍ଲାସରେ ଥିବା ସବୁ ମଦ ଏକାଥରକେ ପିଇଦେବାକୁ ହେବ ।'' ଦୁଃଖ ଜଣାଇ ଆପତ୍ତି ଦେଲି, ''ଭଡକା ଗିଲାସେ ପିଇଦେଲେ ମୁଁ ବେହୋସ ହେବି । ଭୋଜି କକ୍ଷରୁ ମୋତେ ହସପିଟାଲ ନେବାକୁ ହେବ ।'' ତାଙ୍କ ମନରେ ସହାନୁଭୂତି ଦେଖିଲି ନାହିଁ । ରୋକ୍ ଠୋକ୍ କହିଦେଲେ, ''ସୌଜନ୍ୟ ଦୃଷ୍ଟିରୁ ଆପଣଙ୍କୁ ପିଇବାକୁ ପଡ଼ିବ ।'' ପଚାରିଲି, ''ସବୁ ଭାରତୀୟ ଅତିଥିଙ୍କୁ କ'ଣ ଭଡକା ପିଇବାକୁ ହୁଏ ?'' ସେ ଉତ୍ତର ଦେଲେ, ''ସାର୍ ସର୍ବପଲ୍ଲି ରାଧାକୃଷ୍ଣନ ରାଷ୍ଟ୍ରଦୂତ ଭାବେ ଯୋଗ ଦେଲା ବେଳେ ସେ ମଧ୍ୟ ଭଡକା ପିଇଥିଲେ । ମୁଁ ନିଜ ଆଖିରେ ଦେଖିଛି । ଦେଶର ସାମାଜିକ ରୀତିରେ ବ୍ୟତିକ୍ରମ ଘଟାଇବା ଉଚିତ ନୁହେଁ ।''

ସୌଭାଗ୍ୟକୁ ଠିକ୍ ସେତିକି ବେଳେ ମୋ ରୁମକୁ ଜଣେ ତରୁଣ ଅଧ୍ୟାପକ ପଶିଆସିଲେ । ସମସ୍ୟା ବୁଝିପାରି ସେ ସମାଧାନ ସୂତ୍ର ବାହାର କଲେ । ଆଶ୍ୱାସନା ଦେଇ ସେ କହିଲେ, ''ଭଡ଼କା ଓ ସ୍ୱଚ୍ଛ ପାଣିର ରଙ୍ଗ ଏକା ପ୍ରକାର । ପ୍ରଭେଦ ବୁଝିବା ସମ୍ଭବ ନୁହେଁ । ତେଣୁ, ଆପଣଙ୍କ ବୋତଲରେ ପାଣି ରଖାଯାଇପାରିବ । ସେଥିରୁ ଆପଣ ନିଜ ଗ୍ଲାସରେ ଭଡକା ପୂରଣ କରିବାର ବାହାନା କରି, ମନ୍ତ୍ରୀଙ୍କ ଗ୍ଲାସରେ ତାହା ବଜାଇ ଦେଇ ସଙ୍ଗେ ସଙ୍ଗେ ପିଇପକାଇବେ ।'' କିଛି ସମୟ ଅଧ୍ୟାପକ ଓ କର୍ମଚାରୀ ରୁଷ ଭାଷାରେ କଥା ହେଲେ । ପ୍ରୌଢ଼ ସରକାରୀ ବ୍ୟକ୍ତି ଶେଷରେ ସାନ୍ତ୍ୱନା

ବାଣୀ ଶୁଣାଇଲେ ଯେ, ସେ ଠିକ୍ ସେହିପରି ବ୍ୟବସ୍ଥା ହିଁ କରିବେ । ତାଙ୍କ ବିଦାୟ ପରେ ଯୁବ ଅଧ୍ୟାପକଙ୍କୁ କୃତଜ୍ଞତା ଜଣାଇଲି । ସେ ଭାରତ ଇତିହାସର ଗୁପ୍ତଯୁଗ ଉପରେ ଗବେଷଣା କରନ୍ତି ବୋଲି କହିଲେ ।

ଯଥାସମୟରେ ନୈଶ ଭୋଜି କକ୍ଷକୁ ମୋତେ ନିଆଗଲା । ମନ୍ତ୍ରୀ ମହୋଦୟ ଓ କୁଳପତି ଆସିଗଲେ । ନିର୍ଦ୍ଦିଷ୍ଟ ଚେୟାରଗୁଡ଼ିକରେ ପ୍ରାୟ ୩୦ ଜଣ ଅତିଥି ଟେବୁଲ ଦୁଇ ପାଖରେ ବସିଲେ । ମୋ ସମ୍ମୁଖସ୍ଥ ଆସନରେ ବସିଲେ ମନ୍ତ୍ରୀ । କିଛି ଦୂରରେ ବସିଥିବା ଷଡ଼ଯନ୍ତ୍ରକାରୀ ତରୁଣ ଅଧ୍ୟାପକ ଆଖି ଠାରି ମୋତେ ସଙ୍କେତ ଦେଲେ ଯେ ମୋ ବୋତଲରେ ପାଣି ଭର୍ତ୍ତି ଅଛି । ଛିଡା ରହି ମନ୍ତ୍ରୀଙ୍କ ସହିତ କରମର୍ଦ୍ଦନ କରିବା ପରେ ସଙ୍ଗେ ସଙ୍ଗେ ବୋତଲରୁ ପାଣି ଢାଳି ଗ୍ଲାସ ଭର୍ତ୍ତି କଲି । ସେ ମଧ୍ୟ ତାଙ୍କ ବୋତଲରୁ ଭଡକା ଢାଳିଲେ । ପରସ୍ପରର ଗ୍ଲାସ ଦୁଇଟି ଲଗାଲଗି ହେଲା କ୍ଷଣି ମୁଁ ପାଣିତକ ପିଇ ଦେଇ ସୋଭିଏତ ଦେଶ ଓ ଜନସାଧାରଣଙ୍କ ମଙ୍ଗଳ କାମନା କଲି । ସେ ଭାରତର ମଙ୍ଗଳ କାମନା ସହ ଆସନରେ ବସିଲେ ।

ମନ୍ତ୍ରୀଙ୍କ ପାଖ ଚେୟାରରେ ବସିଥାନ୍ତି ଜଣେ ଶୀର୍ଣ୍ଣକାୟ ବୃଦ୍ଧ । ପରିପକ୍ୱ ଧଳା ଦାଢ଼ି ଓ ମାମୁଲି ପୋଷାକ । ଆଲୋଚନା ଆରମ୍ଭ କରି ମନ୍ତ୍ରୀ କହିଲେ, "୧୯୧୯ ମସିହାରେ ଯେତେବେଳେ ଇଂରେଜମାନେ ଜାଲିଆନୱାଲାବାଗ୍ ହତ୍ୟାକାଣ୍ଡ ଘଟାଇଲେ ଓ ଭାରତରେ ବିଦ୍ରୋହର ସୂଚନା ମିଳିଲା, ସେତେବେଳେ ନିଜେ ଲେନିନ ଭାରତୀୟ ବିପ୍ଳବୀମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ରୁଷିଆରୁ ଦଳେ ଯୁବ ସ୍ୱେଚ୍ଛାସେବୀ ପଠାଇବାକୁ ନିଷ୍ପତ୍ତି ନେଇଥିଲେ । ସେ ବେଳର ସେହି ଯୁବ ବାହିନୀର ନେତା ଥିଲେ ଏବେକାର ଏହି ବୃଦ୍ଧ ବ୍ୟକ୍ତି ।" ଅନ୍ୟମାନେ କରତାଳି ଦେଲେ । ମୁଁ ଛିଡ଼ା ହୋଇ ତାଙ୍କୁ ନମସ୍କାର କଲି । ବୃଦ୍ଧବ୍ୟକ୍ତି କହିଲେ, "ଆମେ ସୀମାନ୍ତ ଅତିକ୍ରମ କରି ଗୋପନରେ ଭାରତ ଯିବା ପାଇଁ ଅସ୍ତ୍ରଶସ୍ତ୍ର ସହ ପ୍ରସ୍ତୁତ ହେଲାବେଳକୁ ସଂବାଦ ମିଳିଲା, ମହାତ୍ମା ଗାନ୍ଧି ଅହିଂସ ଆନ୍ଦୋଳନ ଆରମ୍ଭ କରିବେ । ତେଣୁ, ବ୍ରିଟିଶ ବିରୋଧରେ ଅସ୍ତ୍ର ଧରିବାକୁ ଆମକୁ ସୁଯୋଗ ମିଳିଲା ନାହିଁ ।"

ଭାରତୀୟ ସଂଗ୍ରାମ ଯୁଗରେ ପୃଥିବୀର ଅନ୍ୟ ଦେଶମାନେ ନୀରବ ଥିଲାବେଳେ, ଲେନିନ୍ ଯେ ପ୍ରତ୍ୟକ୍ଷ ଭାବେ ସାହାଯ୍ୟ ଦେବା ଲାଗି ଉଦ୍ୟମ କରିଥିଲେ, ତାହା ଶୁଣି ମୁଁ ଗଭୀର ଆନନ୍ଦ ପ୍ରକାଶ କଲି । ରୁଷ-ଭାରତ ମୈତ୍ରୀ ସମ୍ପର୍କରେ ଆଲୋଚନା ଚାଲିଲା । ସେଥି ସଙ୍ଗେ ନୈଶ ଭୋଜନ ଓ ଭଡକା ପାନ । ରାତି ୧୧ଟାରେ ମୋ ରୁମ୍ କୁ ଫେରିଲି ।

## ୪ ନଭେମ୍ବର : 'ବିପ୍ଳବ ଦିବସ' ବାର୍ତ୍ତା, ଧର୍ମପୀଠ ଦର୍ଶନ

ସେ ଦିନ ସକାଳ ୧୦ଟା ବେଳେ ମସ୍କୋ ବେତାର କେନ୍ଦ୍ରରୁ ଆସିଗଲେ କେତେଜଣ କର୍ମଚାରୀ, ମୋର ବାର୍ତ୍ତାଟିଏ ରେକର୍ଡ଼ିଂ କରିବାକୁ, ପ୍ରଚାରିତ ହେବ ଆଗାମୀ ୭ ନଭେମ୍ବର 'ମହାନ ବିପ୍ଳବ ଦିବସ' ଉପଲକ୍ଷେ । ୫ ମିନିଟ ପଢ଼ିବା ଲାଗି ତରତରରେ ବାର୍ତ୍ତାଟିଏ ଲେଖିପକାଇଲି । ସୋଭିଏତ ବ୍ୟବସ୍ଥାର ଭୂୟସୀ ପ୍ରଶଂସା ପରେ ଶେଷ ବାକ୍ୟଟି ଥିଲା, ''ମହାତ୍ମା ଗାନ୍ଧି ଅହିଂସ ବିପ୍ଳବ ବଳରେ ବ୍ରିଟିଶ ସାମ୍ରାଜ୍ୟ ଧ୍ୱଂସକରି ଭାରତବର୍ଷକୁ ରାଜନୈତିକ ସ୍ୱାଧୀନତା ଆଣିଦେଲେ । କିନ୍ତୁ, ସର୍ବହରା ଶ୍ରମିକ ଓ ଦରିଦ୍ର କୃଷକମାନଙ୍କର ସାମାଜିକ ଓ ଅର୍ଥନୈତିକ ମୁକ୍ତି ନିମନ୍ତେ ଭାରତବାସୀ ଏବେ ଆବଶ୍ୟକ କରୁଛନ୍ତି ଲେନିନଙ୍କ ପରି ଜଣେ ମହାନ ବିପ୍ଳବୀଙ୍କୁ ଯିଏକି ଆମ ଦେଶରେ ପୁଞ୍ଜିବାଦ ଧ୍ୱଂସ କରି ସାମ୍ୟବାଦ ପ୍ରତିଷ୍ଠା କରିପାରିବେ ।''

ମୋ ଲେଖାଟି ପଢ଼ି ବେତାର କର୍ମକର୍ତ୍ତାମାନେ ପରସ୍ପର ମଧ୍ୟରେ କିଛି ସମୟ ଆଲୋଚନା କରୁଥିବା ଦେଖିଲି । ଚିନ୍ତିତ ମନରେ ଜଣେ କହିଲେ, ''ଆପଣଙ୍କ ବାର୍ତ୍ତାଟି ରୁଷ ଭାଷାରେ ଅନୁବାଦ କରାଯାଇ ରେଡିଓରେ ପ୍ରସାରଣ କରାଯିବ । ଭାରତୀୟ ଦୂତାବାସର ଲୋକେ ତାହା ଶୁଣିପାରିବେ । ଆପଣଙ୍କ ବାର୍ତ୍ତା ସେମାନଙ୍କୁ ଖରାପ ଲାଗିବ । ଭାରତ ସରକାର ମଧ୍ୟ ପସନ୍ଦ କରିବେ ନାହିଁ । ଶେଷ ବାକ୍ୟଟି ବାର୍ତ୍ତାରୁ ବାଦ୍ ଦେଲେ ଭଲ ହେବ ।''

ତାଙ୍କ କଥାର ଅର୍ଥ ବୁଝିପାରିଲି । ପ୍ରକାରାନ୍ତରେ ମୁଁ ଯେ ଆମ ଦେଶରେ ସାମ୍ୟବାଦୀ ବିପ୍ଳବର ସମର୍ଥନ କରୁଛି, ସେଥିପାଇଁ ମୋତେ ହୁଏତ ଭାରତରେ ଦଣ୍ଡ ମିଳିପାରେ ବୋଲି ତାଙ୍କର ଆଶଙ୍କା ହେବା ସ୍ୱାଭାବିକ ଥାଏ । ତେଣୁ ମୁଁ ସଦର୍ପରେ ଉତ୍ତର ଦେଲି, ''ଇଂରାଜୀରେ ରେକର୍ଡ଼ିଂ କରି ମୋର ଏହି ବାର୍ତ୍ତା ମୁଁ ନିଜେ ନେଇ ଇଣ୍ଡିଆନ ପାର୍ଲିଆମେଣ୍ଟ ସମ୍ମୁଖରେ ମାଇକ୍ ଯୋଗେ ପ୍ରସାରଣ କଲେ ସୁଦ୍ଧା ମୋର କୌଣସି କ୍ଷତି ହେବ ନାହିଁ । ଦେଶର ସରକାର କିମ୍ବା ଅର୍ଥନୈତିକ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବା ଅଧିକାର ମୋର ଅଛି । ଆପଣମାନେ ନିଃସଙ୍କୋଚରେ ମୋର ବାର୍ତ୍ତା ରେକର୍ଡ଼ିଂ କଲେ ଖୁସି ହେବି ।

ବାର୍ତ୍ତା ରେକର୍ଡ଼ିଂ କରାଗଲା । କର୍ମଚାରୀମାନେ ଆଶ୍ଚର୍ଯ୍ୟ ହୋଇଥିବେ ଯେ ମୁଁ ନିର୍ଭୀକ ଭାବରେ ଭାରତରେ କମ୍ୟୁନିଷ୍ଟ ବିପ୍ଳବର ଆବଶ୍ୟକତା ବିଷୟ କହିପାରୁଛି । ମୋ ମନରେ ଆନନ୍ଦ ଆସୁଥାଏ ଯେ ସେମାନେ ଆମ ଦେଶର ଗଣତନ୍ତ୍ରର ପରିଚୟ ପାଇପାରିବେ । ସେତେବେଳେ ତାଙ୍କ ଦେଶରେ କମ୍ୟୁନିଷ୍ଟ ଶାସନ

ବିପକ୍ଷରେ ପଦେ କହିବା ପାଇଁ କାହାରି ସାହସ ନଥିଲା ବେଳେ, ମୁଁ ଭାରତୀୟ ଗଣତନ୍ତ୍ରର ସମାଲୋଚନା ଦ୍ୱାରା ଗଣତାନ୍ତ୍ରିକ ମୁକ୍ତିର ପରିଚୟ ଦେଇପାରିଲି ।

ଦିନ ୧୧ଟାରେ ମସ୍କୋ ସହର ଠାରୁ ୭୦ କିଲୋମିଟାର ଦୂରରେ ଥିବା ପଞ୍ଚଦଶ ଶତାବ୍ଦୀର ଗୋଟିଏ ପ୍ରାଚୀନ ଖ୍ରୀଷ୍ଟିଆନ ଉପାସନା ପୀଠ ଦେଖାଇବାକୁ ନିଆଗଲା । ନାସ୍ତିବାଦୀ ସୋଭିଏତ ଦେଶରେ ତାହା ଥିଲା ଏକମାତ୍ର ମଠ ଯେଉଁ ଠାରେ ଧର୍ମଶିକ୍ଷା ଓ ଯାଜକମାନଙ୍କୁ ତାଲିମ ଦିଆ ଯାଉଥାଏ । ମସ୍କୋ ବାହାରେ ଗାଡ଼ି ଚାଲିଲା । ଗ୍ରାମାଞ୍ଚଳର ରାସ୍ତା, କିନ୍ତୁ ପ୍ରଶସ୍ତ । ଗାଡ଼ିର ଗତି ଅତିଶୟ ଧୀର ଦେଖି ଡ୍ରାଇଭାରଙ୍କୁ ସ୍ପିଡ୍ ବଢ଼ାଇବାକୁ ବାରମ୍ବାର ତାଗିଦ୍ ଦେଲି । କିନ୍ତୁ ସେ ମୋ କଥା ଶୁଣିଲେ ନାହିଁ । ରାସ୍ତା ପ୍ରାୟ ଜନଶୂନ୍ୟ । ତଥାପି ଗାଡ଼ିର ଗତି ଅତି ଶିଥିଳ । ମୁଁ ବିରକ୍ତ ହେବା ଦେଖି ଗାଇଡ୍ ବୁଝାଇ ଦେଲେ, ‘‘ଡ୍ରାଇଭାରମାନେ ବେଗରେ ଗାଡ଼ି ଚଳାଇଲେ ଦଣ୍ଡ ପାଇବେ । ସେମାନଙ୍କ ଉପରେ କଡ଼ା ଆଇନ ଲାଗୁ ରହିଛି । ଘଣ୍ଟାରେ ୩୦ କିଲୋମିଟାରରୁ ଊର୍ଦ୍ଧ୍ୱ ସ୍ପିଡରେ କେହି ଗାଡ଼ି ଚଳାଇ ପାରିବେ ନାହିଁ । ସେଥି ଯୋଗୁଁ, କାର ଏକ୍ସିଡେଣ୍ଟ ପ୍ରାୟ ଦେଖିବାକୁ ମିଳେ ନା ।’’ କମ୍ୟୁନିଷ୍ଟ ଶାସନର କଠୋର ଆଇନକାନୁନର ଏହା ଏକ ନମୁନା ବୋଲି ଜାଣିପାରିଲି ।

ମଠ ପାଖରେ ଗାଡ଼ି ରହିଲା । ଆଶ୍ଚର୍ଯ୍ୟ ହୋଇ ଦେଖିଲି, କେତେଜଣ ରୁଷ ଯୁବକ ଧର୍ମଯାଜକର ପୋଷାକ ପିନ୍ଧି ଓ ଦାଢ଼ି ରଖି ଗିର୍ଜା ଭିତରେ ଯିଶୁଙ୍କ ମୂର୍ତ୍ତି ଆଗରେ ପ୍ରାର୍ଥନା କରୁଛନ୍ତି । ବାହାରେ ଥାଏ ଗୋଟିଏ ଉତ୍ସ । ସେଠାକାର ‘ପବିତ୍ର ପାଣି’ ପିଇବା ଲାଗି ଶହ ଶହ ବୁଢ଼ାବୁଢ଼ୀ ଧାଡ଼ି ବାନ୍ଧିଥାନ୍ତି । ପାଣି ପିଇଲା ପରେ ସେମାନେ ଭକ୍ତିବିହ୍ୱଳ ଚିତ୍ତରେ ପ୍ରାର୍ଥନା କରିବାକୁ ବସୁଥିଲେ । ଜଣେ ଜଣେ ଅଥର୍ବ ବୁଢ଼ା ବା ବୁଢ଼ୀ ଦୁଗ୍ଧପୋଷ୍ୟ ଶିଶୁମାନଙ୍କୁ ସାଙ୍ଗରେ ଆଣିଥିବା ଦେଖାଗଲା । ମଠଟିର ନାମ ହେଉଛି ଟ୍ରାଇଟସେ-ସାରଗିଏଭସ୍କାଇ ଓ ସ୍ଥାନର ନାମ ଜାଗୋଭୋକ୍ । ସେଠାକାର ଦୃଶ୍ୟ ଦେଖି ମନେ ହେଲା, ମାର୍କ୍ସବାଦ ଓ ନାସ୍ତିବାଦ ସତ୍ତ୍ୱେ ମନୁଷ୍ୟ ପ୍ରାଣରୁ ଧର୍ମବିଶ୍ୱାସ ଲୋପ କରିବା ସମ୍ଭବ ନୁହେଁ ।

ଅପରାହ୍ଣ ୫ଟାରେ ପ୍ରସିଦ୍ଧ ଏକାଡେମୀ ଅଫ୍ ସାଇନ୍ସ (Academy of Science) ଭବନରେ କେତେଜଣ ସୋଭିଏତ ଐତିହାସିକଙ୍କ ସହ ଆଲୋଚନା ନିମନ୍ତେ ମିଳିତ ହେଲି । ସେମାନଙ୍କ ନିକଟରୁ ଇତିହାସର ‘‘ବସ୍ତୁବାଦୀ ବ୍ୟାଖ୍ୟାନ’ ସମ୍ପର୍କରେ କେତେକ କଥା ଶୁଣିଲି ।

**୫ ନଭେମ୍ବର : ଜାରତନ୍ତ୍ର ଯୁଗର ସମ୍ଭ୍ରାନ୍ତଙ୍କ ପ୍ରାସାଦ**

ସେ ଦିନ ରୁଷ୍ ରାଜତନ୍ତ୍ର କାଳର ଜଣେକ ବରିଷ୍ଠ ସମ୍ଭ୍ରାନ୍ତଙ୍କ ପ୍ରାସାଦ ଦେଖିବା ଲାଗି ପ୍ରୋଗ୍ରାମ ଥାଏ । ସେହି ପ୍ରାସାଦ ଏବେ ଏକ ମିଉଜିୟମ । ସମ୍ଭ୍ରାନ୍ତଙ୍କ ନାମ ଥିଲା କାଉଣ୍ଟ ସେଭମେଟିଏ ରଭ, ଜାର ପଲାଙ୍କର ଘନିଷ୍ଠ ବନ୍ଧୁ । ସେ ଯୁଗର ସମ୍ଭ୍ରାନ୍ତମାନେ କେତେଦୂର ଶକ୍ତିଶାଳୀ ଓ ବିତ୍ତଶାଳୀ ଥିଲେ, ତାହାର ନିଦର୍ଶନ ସ୍ୱରୂପ ଏହି କାଉଣ୍ଟଙ୍କ ପ୍ରାସାଦକୁ ମିଉଜିୟମ ଆକାରରେ ରଖାଯାଇଛି । ତାଙ୍କର ଶତ ସହସ୍ର ଏକର ପରିମିତ ଭୂସମ୍ପତ୍ତିରେ ଚାଷ କରିବା ଲାଗି ୯୭ ହଜାର କୃଷିଭୃତ୍ୟ ବା ସାର୍ଫ ରହିଥାନ୍ତି । ସେହି ଭୃତ୍ୟମାନେ କ୍ରୀତଦାସ ପରି କାର୍ଯ୍ୟ କରିବାକୁ ବାଧ୍ୟ ଥିଲେ । ଅବାଧ୍ୟ ବା ଦୁଷ୍ଟ ଭୃତ୍ୟମାନଙ୍କୁ ରାତିରେ ଲୁହା ଶିକୁଳିରେ ବାନ୍ଧି ରଖାଯାଉଥାଏ । ଯେଉଁସବୁ ଚାବୁକ ଓ ଯନ୍ତ୍ର ଦ୍ୱାରା ସେମାନଙ୍କୁ ଯନ୍ତ୍ରଣା ଦିଆଯାଉଥାଏ, ସେଗୁଡ଼ିକ ଦେଖିଲେ ଦର୍ଶକମାନଙ୍କ ମନରେ ଦୁଃଖ ହୁଏ ।

ସମ୍ଭ୍ରାନ୍ତ ପରିବାରର ସେବା ଲାଗି ହଜାର ହଜାର ଦାସ ଦାସୀ ଥିଲେ । ତାଙ୍କ ବଂଶର ରହିବା ଘର ଓ ଆସବାବପତ୍ର ଦେଖିଲେ ସମ୍ଭ୍ରାନ୍ତଯୁଗୀୟ ବିଳାସ ବ୍ୟସନର ପରିଚୟ ମିଳେ । ସବୁ ଜିନିଷ ଦେଖାଇସାରି କୌତୂହଳରେ ଗାଇଡ୍ ମୋତେ ପଚାରିଲେ, "ଆପଣଙ୍କ ଦେଶରେ ଏପରି ସମ୍ଭ୍ରାନ୍ତ ଥିଲେ ?" ମୁଁ ଉତ୍ତର ଦେଲି, "ରାଜା, ମହାରାଜା, ଜମିଦାର ଓ ନବାବ ପ୍ରଭୃତି ଥିଲେ । କିନ୍ତୁ ସେମାନେ ଏପରି ନିଷ୍ଠୁର ମନୁଷ୍ୟ ନଥିଲେ । ସମ୍ଭ୍ରାନ୍ତମାନଙ୍କର ଅଗାଧ ଅର୍ଥ ନିଶ୍ଚୟ ଥିଲା । ଏକଦା ହାଇଦ୍ରାବାଦର ନିଜାମ ଥିଲେ ପୃଥିବୀର ସବୁଠାରୁ ଧନଶାଳୀ ବ୍ୟକ୍ତି । କିନ୍ତୁ ଭୃତ୍ୟମାନଙ୍କୁ ଲୁହା ଶିକୁଳିରେ ବାନ୍ଧି ରଖିବା ପ୍ରଥା ଆମ ସଂସ୍କୃତିରେ ନଥାଏ ।"

ସେଠାରୁ ଅନ୍ୟ ଗୋଟିଏ ମିଉଜିୟମକୁ ନିଆଗଲା । ତାହା ଥିଲା ଜଣେ ପ୍ରଗତିବାଦୀ ଲେଖକଙ୍କ କ୍ଷୁଦ୍ର ବାସଗୃହ । ତାଙ୍କ ଲେଖାପାଇଁ ସେ ମୃତ୍ୟୁଦଣ୍ଡ ପାଇଥିଲେ, କିନ୍ତୁ ସେଥିରୁ ତ୍ରାହି ପାଇ ବରଫାବୃତ ଦୁର୍ଗମ ସାଇବେରିଆକୁ ନିର୍ବାସିତ ହୋଇଥିଲେ । ସେହି ସ୍ଥାନରେ ରହି ଅଶେଷ କ୍ଲେଶ ମଧ୍ୟରେ ସେ ଯେଉଁ କେତୋଟି ଉପନ୍ୟାସ ଲେଖିଥିଲେ, ସେ ଗୁଡ଼ିକ ତାଙ୍କ ଗୃହ ମଧ୍ୟରେ ରଖାଯାଇଛି ।

**୬ ନଭେମ୍ବର : 'ଲୋହିତ ଛକ'**

ସେଦିନ ଦେଖିବାକୁ ଗଲି ଆଗାମୀ ଦିବସରେ ଅନୁଷ୍ଠିତ ହେବାକୁ ଥିବା 'ବିପ୍ଳବ ଦିବସ'-ର ପ୍ରସ୍ତୁତି ପର୍ବ । ମସ୍କୋର ଲୋହିତ ଛକ ବା Red Squareର

ଚାରିଆଡ଼େ ଖଞ୍ଜା ଯାଉଥାଏ ପତାକା, ଆଲୋକମାଳା ଓ ସୋଭିଏତ ନେତାମାନଙ୍କର ବିଶାଳାକୃତି ଛବି । କ୍ରେମଲିନ ପ୍ରାଚୀର ଓ ଲେନିନ ସମାଧି ମନ୍ଦିର ସମ୍ମୁଖରେ ଥିବା ପ୍ରସିଦ୍ଧ ଲାଲଛକ ଅପୂର୍ବ ଶୋଭା ଧାରଣ କରିଥାଏ ।

ଆଗାମୀ ଦିନର ଉତ୍ସବ ଦେଖିବା ପାଇଁ ସ୍ୱତନ୍ତ୍ର ପ୍ରବେଶ ପତ୍ର ଆଣିବା ଲାଗି ସୋଭିଏତ ବୈଦେଶିକ ବିଭାଗକୁ ଯିବାକୁ ହେଲା । କୁଳପତିଙ୍କ ସୁପାରିଶ ଦେଖି ଓ ଭାରତୀୟ ଅଧ୍ୟାପକ ବୋଲି ପରିଚୟ ପାଇ କର୍ମକର୍ତ୍ତାମାନେ ସଙ୍ଗେ ସଙ୍ଗେ ପାଶ୍ ଦେଇଦେଲେ । ବସିବା ସ୍ଥାନର ନମ୍ବର ଦେଖି ଗାଇଡ଼୍ ଖୁସି ମନରେ ଜଣାଇଲେ, ‘‘ଆପଣଙ୍କୁ ଲେନିନ ସମାଧି ମନ୍ଦିରର ତଳ ସ୍ଥାନରେ ବସିବାକୁ ସିଟ୍ ମିଳିଛି । ଉପରିଭାଗରେ ଆମ ନେତାମାନଙ୍କୁ ଛିଡ଼ା ହେବା ଅବସ୍ଥାରେ ଦେଖିପାରିବେ । ଯଥାସ୍ଥାନରେ ଆପଣଙ୍କୁ ବସାଇଦେଇ ଆସିବି । ସେଠାରେ ରହିବାକୁ ଆମକୁ ଅନୁମତି ମିଳିବ ନାହିଁ, କାରଣ ସେହି ସ୍ଥାନଟି କେବଳ ବିଦେଶାଗତ ଅତିଥିମାନଙ୍କ ପାଇଁ ରିଜାର୍ଭ ଅଛି ।’’

### ୭ ନଭେମ୍ବର : ‘ବିପ୍ଳବ ଦିବସ’ର ଉତ୍ସବ

ସକାଳ ୮ଟା ବେଳକୁ ମୋତେ ଯଥାସ୍ଥାନକୁ ନେବା ଲାଗି ଦୁଇଜଣ ଯୁବକ ପହଞ୍ଚିଗଲେ । ପ୍ରାୟ ୬ ଘଣ୍ଟା ଶୀତ ଭୋଗିବାକୁ ହେବ ବୋଲି ଜଣାଇ ଯଥେଷ୍ଟ ଗରମ ପୋଷାକ ପିନ୍ଧିବାକୁ ପରାମର୍ଶ ଦେଲେ । ସୁଏଟାର ଉପରେ ସୁଏଟାର୍, ତା ଉପରେ କୋଟ, ଓ ତା ଉପରେ ଓଭାରକୋଟ ପିନ୍ଧିଲି । ହାତରେ ଗ୍ଲୋଭ୍ ଓ ମୁଣ୍ଡରେ ଟୋପି ଲଗାଇଲି । ଗୋଡ଼ରେ ମୋଟା ମୋଟା ଦୁଇଟା ମୋଜା ପିନ୍ଧିବା ଦରକାର ବୋଲି ଭାବିପାରିଲି ନାହିଁ । ଯେଉଁ ପତଳା ମୋଜାଟି ପିନ୍ଧିଥିଲି, କେବଳ ସେତକ ରହିଲା ।

ଲାଲ ଛକକୁ ଲାଗିଥିବା ସବୁ ରାସ୍ତାଗୁଡ଼ିକ ପୋଲିସ ବାହିନୀ ଘେରି ରହିଥାନ୍ତି । ପାର୍ଶ୍ୱବର୍ତ୍ତୀ ପ୍ରାଙ୍ଗଣରେ ଅସଂଖ୍ୟ ବାଳକ ବାଳିକା ନୀଳ, ନାଲି, ଧଳା ଓ ହଳଦିଆ ରଙ୍ଗର ପୋଷାକ ପିନ୍ଧି ପେରେଡ ପାଇଁ ପ୍ରସ୍ତୁତ ହେଉଥାନ୍ତି । ସ୍ୱତନ୍ତ୍ର ପ୍ରବେଶ ପଥରେ ନେଇଯାଇ ଲେନିନ ସମାଧିର ଠିକ୍ ତଳ ସ୍ଥାନରେ ଥିବା ଚେୟାରରେ ମୋତେ ବସାଇଦେଇ ଦୁଇ ଯୁବକ ଅନ୍ତର୍ଦ୍ଧାନ ହେଲେ । ଦେଖିଲି, ଛକର ଚାରି ପାଖରେ ଅସଂଖ୍ୟ ନରନାରୀ ବସିଗଲେଣି । ସମାଧି ତଳ ଭାଗରେ ଥିବା ଚେୟାରଗୁଡ଼ିକ ବିଦେଶୀ ରାଷ୍ଟ୍ରଦୂତ ଓ ନିମନ୍ତ୍ରିତ ଅତିଥିମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥାଏ ।

୧୦ଟା ବାଜିବାକୁ ୫ ମିନିଟ ବାକି ଥାଏ । ସମାଧିର ବାଲକୋନି ଉପରକୁ ଉଠିଲେ ନିକିତା କ୍ରୁଶ୍ଚେଭ ଓ କମ୍ୟୁନିଷ୍ଟ ଦଳର ସର୍ବୋଚ୍ଚ ନେତୃବୃନ୍ଦ । ତଳେ

ବସି ରହି ନେତାମାନଙ୍କୁ ଭଲ ଭାବରେ ଦେଖିପାରିଲି । ମଝିରେ ଥାନ୍ତି କ୍ରୁଶ୍ଚେଭ । ତାଙ୍କ ଗୋଟିଏ ପାଖରେ ପ୍ରଧାନମନ୍ତ୍ରୀ କୋସିଜିନ ଓ ଅନ୍ୟ ପାଖରେ ବ୍ରେଜନେଭ । ସେମାନଙ୍କ ଉଭୟ ପାର୍ଶ୍ୱରେ ଅନ୍ୟ ନେତାମାନେ । ନେତାମାନେ ନିଜ ନିଜ ସ୍ଥାନରେ ଛିଡ଼ା ହେଲାକ୍ଷଣି, ଦର୍ଶକମାନେ ମଧ୍ୟ ଛିଡ଼ା ହେଲେ ।

୧୦ଟା ସମୟରେ ଆରମ୍ଭ ହେଲା ବିପ୍ଳବ-ଉତ୍ସବ । ଲାଲ ଛକର ପୂର୍ବ ସୀମାରୁ ପ୍ରଥମେ ଗୋଟିଏ ସାମରିକ ଖୋଲା ଗାଡ଼ିରେ ପ୍ରବେଶ କଲେ ସୋଭିଏତ ପ୍ରତିରକ୍ଷା ମନ୍ତ୍ରୀ ତଥା ପ୍ରଧାନ ସେନାପତି । ପ୍ରଶସ୍ତ ପଥର ଉଭୟ ପାର୍ଶ୍ୱରେ ଛିଡ଼ା ରହିଥିବା ଲୋହିତ ବାହିନୀର ସୈନ୍ୟମାନେ ସେନାପତିଙ୍କୁ ସେଲ୍ୟୁଟ ଦେଲେ । ତତ୍‌କ୍ଷଣାତ୍ ଆରମ୍ଭ ହେଲା ତୋପଧ୍ୱନି, ସାମରିକ ବାଦ୍ୟ ଓ ପେରେଡ଼ । ପ୍ରଧାନ ସେନାପତି ସଂକ୍ଷିପ୍ତ ଭାଷଣରେ କ'ଣ କହିଲେ ମୁଁ ବୁଝିପାରିଲି ନାହିଁ । ଭାଷଣ ଶେଷ ହେବା ସଙ୍ଗେ ତାଙ୍କ ଗାଡ଼ି ପଛେ ପଛେ ମାର୍ଚ୍ଚ କରିଚାଲିଲେ ସ୍ଥଳ ବାହିନୀ, ନୌବାହିନୀ ଓ ଆକାଶ ବାହିନୀର ସୈନିକମାନେ । ପଶ୍ଚିମ ସୀମା ଦିଗକୁ ସେମାନେ ଆଗେଇ ଚାଲିଥିଲା ବେଳେ ପୂର୍ବରୁ ମାଡ଼ିଆସିଲା କେତେଗୁଡ଼ିଏ ବିଶାଳକାୟ ଟ୍ୟାଙ୍କ୍, ସାମରିକ ଗାଡ଼ି ଉପରେ ରଖାଯାଇଥିବା ବିଭିନ୍ନ ଆକାରର କ୍ଷେପଣାସ୍ତ୍ର, ରକେଟ, ନୂତନ ନୂତନ ଯୁଦ୍ଧାସ୍ତ୍ର ଓ କମାଣ ।

ସାମରିକ ପେରେଡ ଶେଷ ହେବା କ୍ଷଣି ଆରମ୍ଭ ହେଲା ନାନା ପ୍ରକାର ବେଶଭୂଷାରେ ସଜ୍ଜିତ ଯୁବକ ଯୁବତୀ, ଛାତ୍ରଛାତ୍ରୀ, ବାଳକ ବାଳିକା ଓ ରୁଷିଆର ବିଭିନ୍ନ ପ୍ରାନ୍ତରୁ ଆସିଥିବା ନରନାରୀଙ୍କ ଶୋଭାଯାତ୍ରା । ବାଲକୋନି ଉପରେ ନୀରବ ନିଶ୍ଚଳ ଭାବେ ନେତାମାନେ ଦଣ୍ଡାୟମାନ ଥାନ୍ତି । କେହି ବସିବା ବା ଚାଲିଯିବା ଦେଖିଲି ନାହିଁ । ହଜାର ହଜାର ଦର୍ଶକ ମଧ୍ୟ ଛିଡ଼ା ଥାନ୍ତି । ପ୍ରବଳ ଶୀତରେ ଦେହ ଥରୁଥାଏ । ଗୋଡ଼ ଦୁଇଟି ବରଫ ପାଲଟିବା ଭଳି ଅନୁଭବ କଲି । ଅଙ୍ଗୁଳିଗୁଡ଼ିକରୁ ଜ୍ଞା ଛାଡ଼ିଯାଇଥାଏ । ପାଖରେ ଥିବା ଦର୍ଶକମାନେ ଦୁଇ ଗୋଡ଼କୁ ତଳ ଉପର କରୁଥିବା ଦେଖି ମୁଁ ମଧ୍ୟ ସେହିପରି କସରତ କଲି । କିନ୍ତୁ ପାଦ ଦୁଇଟି ଅଚଳ ଜଣାଗଲା । ଉପାୟ ନଥାଏ । ବସିବା କିମ୍ବା ଚାଲିଯିବାର ପ୍ରଶ୍ନ ନଥାଏ । କେତେବେଳେ ପେରେଡ ଶେଷ ହେବ ସେହି ଚିନ୍ତାରେ ଆଗରେ ଚାଲିଥିବା ଦୃଶ୍ୟଗୁଡ଼ିକ ଉପଭୋଗ କରିବା କଷ୍ଟକର ହେଲା ।

ଶେଷରେ, ଅପରାହ୍ନ ୧ଟା ୩୦ ମିନିଟରେ ପେରେଡ ଶେଷ ହେଲା । ବାଲକୋନି ଉପରୁ କ୍ରୁଶ୍ଚେଭ ଓ. ଅନ୍ୟମାନେ ତଳକୁ ଯାଇ ଅଦୃଶ୍ୟ ହେଲା ପରେ ଚେୟାର ଉପରେ ବସିପଡ଼ିଲି । ଗୋଡ଼ ଦୁଇଟି Frost-bitten ହୋଇ ଯାଇଥିବ ଭାବି ଶଙ୍କିତ ହେଲି । ଭାଗ୍ୟକୁ ଯୁବକମାନେ ଆସି ମୋତେ ହାତ

ଧରି ଆସନରୁ ଉଠାଇଲେ । କିଛି ସମୟ ଚାଲିଲା ପରେ ସେମାନଙ୍କୁ କହିଲି, "ମସ୍କୋର ଶୀତରେ ନେପୋଲିୟନଙ୍କ ସୈନ୍ୟମାନେ ମରିଥିଲା ପରି ମୁଁ ମରି ଯାଇନାହିଁ ।"

ହୋଟେଲକୁ ଫେରିଆସି ପ୍ରଥମେ ବିଦ୍ୟୁତ ଚୁଲା ପାଖରେ ଗୋଡ଼ଗୁଡ଼ିକୁ କିଛି ସମୟ ରଖିଲି । ସ୍ୱାଭାବିକ ଅନୁଭବ କଲାପରେ ଖାଇବାକୁ ଗଲି । ଡାଇନିଂ ହଲରେ ଅନେକ ଲୋକ ଭର୍ତ୍ତି ଥିଲେ । ଉତ୍ସବ ଉପଲକ୍ଷେ ପ୍ରଚୁର ମଦ୍ୟପାନ ଚାଲିଥାଏ । ସନ୍ଧ୍ୟାବେଳେ ମୋତେ ବାଧ୍ୟକରି ପିଟାର ଓ ଲେନା ଲାଲଛକ ଠାରେ ଆତସବାଜି ଦେଖାଇବାକୁ ନେଇଗଲେ । ଅସଂଖ୍ୟ ଲୋକ । କିନ୍ତୁ ମଦ୍ୟପ ଯୁବକମାନଙ୍କର ଉଚ୍ଛୃଙ୍ଖଳ ଅବସ୍ଥା ଓ ଲୋକଙ୍କ ଠେଲା ପେଲା ଦେଖି ଉତ୍ସବରେ ଅଂଶୀଦାର ହେବାକୁ ଇଚ୍ଛା ହେଲା ନାହିଁ । ରାତିବେଳକୁ ଜାଣିଲି, ଦେହରେ ଉତ୍ତାପ । ପରବର୍ତ୍ତୀ ଦିନଗୁଡ଼ିକରେ ଗ୍ରାମାଞ୍ଚଳ ଭ୍ରମଣ ଓ ଦୋକାନ ବଜାର ଦେଖିବା କାର୍ଯ୍ୟ ବାତିଲ କଲି ।

### ୧୦ ନଭେମ୍ବର : ମସ୍କୋରୁ ବିଦାୟ

ରାତି ପାହିବା ପୂର୍ବରୁ ହୋଟେଲ ଉକ୍ରାଇନାରୁ ବିଦାୟ ନେଲି । ସମଗ୍ର ସହର ବରଫରେ ବୁଡ଼ି ରହିଥାଏ । ବିମାନ ବନ୍ଦରରେ ଛାଡ଼ିବା ନିମନ୍ତେ ଦୁଇଜଣ ଯୁବ ଅଧ୍ୟାପକ କାରରେ ବସିଲେ । ଗାଡ଼ି ଚାଲିଲାବେଳେ ଦେଖିଲି, ଦୀର୍ଘ ରାଜପଥରୁ ବରଫ ସଫା କରିବା ଲାଗି କେତେଜଣ ବୃଦ୍ଧା କାମରେ ଲାଗିଛନ୍ତି । ନଚେତ୍, ବିମାନ ଘାଟି ପର୍ଯ୍ୟନ୍ତ ଗାଡ଼ି ଚାଲିପାରିବ ନାହିଁ । ବୁଢ଼ୀମାନେ ଆଣ୍ଠୁ ପର୍ଯନ୍ତ ମୋଟା ଚମଡ଼ା ଜୋତା ପିନ୍ଧିଥାନ୍ତି । ଦେହରେ ଥାଏ ଗରମ ଓଭାରକୋଟ ଓ ମୁଣ୍ଡରେ ଟୋପି । ହାତରେ ଲମ୍ବ ଲମ୍ବ କାଠ ଫାଳିଆ ଧରି ସେମାନେ ରାସ୍ତା ମଝିରୁ ବରଫ ଗଦା ଗୁଡ଼ିକ ଦୁଇ ପାଖକୁ ଠେଲି ଠେଲି ବାହାର କରୁଥାନ୍ତି । ପ୍ରଚଣ୍ଡ ଶୀତରେ ଓ ରାତ୍ରିର ଅନ୍ଧକାର ମଧ୍ୟରେ ସେମାନଙ୍କର କଷ୍ଟ ଦେଖି ମନରେ ଦୟା ହେଲା ।

କୌଣସି ପ୍ରକାର ସଂକୋଚ ନରଖି ଅଧ୍ୟାପକମାନଙ୍କୁ ପ୍ରଶ୍ନ କଲି, "ଏହା କ'ଣ ସାମ୍ୟବାଦ ? ଆପଣଙ୍କ କୁଳପତି ବର୍ତ୍ତମାନ କମ୍ବଳ ତଳେ ଗରମ ପ୍ରକୋଷ୍ଠରେ ଆରାମରେ ଶୋଇଥିବେ । ଅଥଚ, ଏହି ମହିଳାମାନେ ଶୀତରେ ଥରି ଥରି ରାସ୍ତାରୁ ବରଫ ସଫା କରୁଥିବେ ପୁଞ୍ଜିବାଦୀମାନଙ୍କର କାର ଚାଲିବା ଲାଗି ?"

"ହଁ, ଏହାହିଁ ଆମର ସାମ୍ୟବାଦ," ଉତ୍ତର ଦେଲେ ଜଣେ ଅଧ୍ୟାପକ । "ସୋଭିଏତ ଦେଶର ନିୟମ ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜର ଶକ୍ତି ଅନୁସାରେ

କାର୍ଯ୍ୟ କରିବେ ଓ ଆବଶ୍ୟକତା ଅନୁଯାୟୀ ପ୍ରାପ୍ୟ ନେବେ (From each according to ability to each according to need) । କୁଳପତିଙ୍କ ଦକ୍ଷତା ବଳରେ ବିଶ୍ୱବିଦ୍ୟାଳୟର ପରିଚାଳନା ଚାଲିଛି ଓ ରାଷ୍ଟ୍ର ତାଙ୍କ ଜ୍ଞାନ ଓ ବୁଦ୍ଧି ବିନିଯୋଗ କରୁଛି । ଅଥଚ, ଏହି ବୃଦ୍ଧାମାନଙ୍କର ନା ଅଛି ବୁଦ୍ଧି, ନା ଅଛି ବିଦ୍ୟା । ତେଣୁ ସେମାନଙ୍କୁ ଏହିପ୍ରକାର କାର୍ଯ୍ୟରେ ନିଯୁକ୍ତ କରାଯାଇଛି, ଏବଂ ସୁଖରେ ବଞ୍ଚିବା ପାଇଁ ସେମାନେ ରାଷ୍ଟ୍ର ପାଖରୁ ଘର, ଖାଦ୍ୟପେୟ ଓ ପୋଷାକ ପରିଚ୍ଛଦ ପାଉଛନ୍ତି ।''

ଦ୍ୱିତୀୟ ଅଧ୍ୟାପକ କହିଲେ, ''ଏମାନଙ୍କ ପୁଅଝିଅ ଯଦି ବିଦ୍ୟାବୁଦ୍ଧିରେ ଦକ୍ଷତା ଦେଖାଇବେ, ଉଚ୍ଚ ପଦପଦବୀ ପାଇବେ । କୁଳପତିଙ୍କ ପୁଅ ଝିଅ ଯଦି ଅଯୋଗ୍ୟ ହେବେ; ସେମାନଙ୍କୁ ମଧ୍ୟ ଏହି ପ୍ରକାର କାମ କରିବାକୁ ହେବ ।''

ପୁନର୍ବାର ଜଣେ କହିଲେ, ''ପୁଞ୍ଜିବାଦୀ ଦେଶରେ ଧନୀର ପୁଅ ଧନୀ, ଗୁଣ ନଥିଲେ ମଧ୍ୟ ଭୋଗୀ । ଦରିଦ୍ରର ପୁଅ ଦରିଦ୍ର, ପ୍ରତିଭା ଥିଲେ ସୁଦ୍ଧା ପ୍ରତିଷ୍ଠା ପାଏ ନାହିଁ । ଆମ ସୋଭିଏତ ସାମ୍ୟବାଦରେ ନିଜ ଯୋଗ୍ୟତା ବଳରେ ଜଣେ ବଡ଼ ହୋଇପାରେ, ଅଯୋଗ୍ୟ ହେଲେ ମଧ୍ୟ ଜୀବିକାରୁ ବଞ୍ଚିତ ହୁଏ ନା । ଏ ଦେଶରେ କାମ ହିଁ କର୍ତ୍ତବ୍ୟ । ଭୋଗ ଅପେକ୍ଷା କର୍ମନିଷ୍ଠା ହେଉଛି ସାମ୍ୟବାଦର ଦର୍ଶନ ।''

ମୁଁ ପ୍ରଶ୍ନ କଲି, ''କୁଳପତିଙ୍କ ସଞ୍ଚିତ ଧନ ତାଙ୍କ ଅପଦାର୍ଥ ପୁଅ ଭୋଗ କରି ପାରିବେ କି ନାହିଁ ?'' ଉତ୍ତର ମିଳିଲା, ''କଦାପି ନୁହେଁ । ସୋଭିଏତ ଦେଶରେ ବ୍ୟକ୍ତିଗତ ଭୋଗ ଲାଗି, କାର୍ଯ୍ୟ ମୁତାବକ ବିତ୍ତ ଥାଇପାରେ, କିନ୍ତୁ ବଂଶାନୁକ୍ରମିକ ସମ୍ପତ୍ତି ବୋଲି କିଛି ନାହିଁ । ଯେ କୌଣସି ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପୁଅ ପିତାଙ୍କ ସମ୍ପତ୍ତି ପାଇପାରିବେ ନାହିଁ, ନିଜ କାମ ବଳରେ ଜୀବନ ଧାରଣ କରିବେ । ଆମ ଦେଶର ଆଇନ ହେଲା, ଯିଏ କାମ କରିବେ, ସେ ଖାଇବାକୁ ପାଇବେ, ଯିଏ କାମ ନ କରିବେ, ସେ ଖାଇବେ ନାହିଁ (He who works shall eat, he who does not work, shall not eat) ।

ସାମ୍ୟବାଦ ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା ଚାଲିଥିଲା ବେଳେ ଗାଡ଼ି ବିମାନ ଘାଟିରେ ପହଞ୍ଚିଲା । ସୂର୍ଯ୍ୟୋଦୟ ପୂର୍ବରୁ ବିରାଟ ଏରୋଫ୍ଲୋଟ ଜେଟ୍ ମଧ୍ୟରେ ପ୍ରବେଶ କଲି । ତାସକେନ୍ଦ ରହଣି ବାତିଲ ହୋଇ ଯାଇଥାଏ । ପ୍ରଭାତ କାଳରେ ଜେଟ୍ ଉଡ଼ିଗଲା ଅନେକ ଊର୍ଦ୍ଧ୍ୱକୁ । ସୂର୍ଯ୍ୟାସ୍ତ ସମୟରେ ଉଡୁଥାଏ ପଞ୍ଜାବର ନଦ ନଦୀ ଊର୍ଦ୍ଧ୍ୱରେ । ଅନେକ ତଳେ ଦିଶୁଥାଏ ରକ୍ତାଭ ଜଳ ପ୍ରବାହର ଅଭୂତପୂର୍ବ ଦୃଶ୍ୟ ।

ସନ୍ଧ୍ୟା ପରେ ପରେ ଦିଲ୍ଲୀର ପାଲାମ ଘାଟିରେ ବିମାନ ଅବତରଣ କଲା ।

## ଦିଲ୍ଲୀ ଠାରୁ ଭୁବନେଶ୍ୱର

ବିମାନରୁ ବାହାରି ଆସିଲା ବେଳକୁ ସମୟ ରାତି ୮ଟା । ପକେଟରେ ଗୋଟିଏ ବି ଭାରତୀୟ ଟଙ୍କା ନଥାଏ । ମୋତେ ନେବା ପାଇଁ ମଧ୍ୟ କେହି ଆସି ନଥାନ୍ତି । ଚୀନ-ଭାରତ ଯୁଦ୍ଧ ଚାଲିଥାଏ । ବିମାନଘାଟିର କର୍ମଚାରୀମାନଙ୍କ ବିମର୍ଷ ମନୋଭାବରୁ ଯୁଦ୍ଧର ପ୍ରଭାବ ଅନୁଭବ କଲି ।

ଟ୍ୟାକ୍ସି କରି କନଟ୍ ସାର୍କାସକୁ ଚାଲିଲି । ଦିଲ୍ଲୀ ଛାଡ଼ିବା ରାତିରେ ଦେଖି ଯାଇଥିଲି ଦଶହରା ଉତ୍ସବର ବିପୁଳ ଜନ ସମାଗମ । ଫେରିଲା ବେଳେ ରାଜଧାନୀ ନିସ୍ତେଜ ଓ ନୀରବ ଥିବା ଦେଖିଲି । ମେଟ୍ରୋ ନାମକ ହୋଟେଲରେ ପହଞ୍ଚି ମ୍ୟାନେଜରଙ୍କ ପାଖରୁ ଟଙ୍କା ଆଣି ଟ୍ୟାକ୍ସି ଭଡ଼ା ଦେଲି । ରୁମ ଭିତରେ ସୁଟକେଶ ରଖି ଆସି ତାଙ୍କ ଟେବୁଲ ଉପରେ ଥିବା ଟେଲିଫୋନ ଗାଇଡ଼ରେ ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ସେଥିରୁ ଓଡ଼ିଶାର ୩ ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଫୋନ ନମ୍ବର ବାହାର କଲି । ସମସ୍ତେ ପରିଚିତ ଓ ଉଚ୍ଚ ପଦବୀରେ ପ୍ରତିଷ୍ଠିତ ଥାନ୍ତି ।

ଜଣକ ପରେ ଜଣଙ୍କୁ ଅଳ୍ପ କିଛି ଟଙ୍କା ଧାର ମାଗିଲି । ରୁଷିଆରୁ ଫେରିଛି ଓ ଭୁବନେଶ୍ୱର ଯିବା ପାଇଁ କିମ୍ବା ହୋଟେଲ ଭଡ଼ା ଦେବା ଲାଗି ପାଖରେ ଟଙ୍କା ନାହିଁ ବୋଲି ଜଣାଇଲି । ପ୍ରଥମ ବ୍ୟକ୍ତି ଥିଲେ ରାଜନୀତିଜ୍ଞ, ରୁଷ ଭ୍ରମଣ ଯୋଗୁଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ଦୁଃଖ ପ୍ରକାଶ କଲେ, "ମୁଁ ଅର୍ଜେଣ୍ଟ କାମରେ ବର୍ତ୍ତମାନ ବାହାରି ଯାଉଛି, କ'ଣ କରିବି କହିଲେ ?" ଦ୍ୱିତୀୟ ବ୍ୟକ୍ତି ଥିଲେ ଏ.ଜି. ଅଫିସରେ ପଦସ୍ଥ ଅଫିସାର । ଗଭୀର ଦୁଃଖ ପ୍ରକାଶ କଲେ ଯେ ପାଖରେ ସେ ଟଙ୍କା ରଖନ୍ତି ନାହିଁ, ବ୍ୟାଙ୍କରୁ ଉଠାଇବାକୁ ଦୁଇଦିନ ଲାଗିଯିବ । ତୃତୀୟ ବନ୍ଧୁ ତାଙ୍କ ପତ୍ନୀ ଶଯ୍ୟାଶାୟୀ ବୋଲି ବର୍ଣ୍ଣନା କରି ନିଜର ଦୁଶ୍ଚିନ୍ତା ବଖାଣି ଗଲେ ।

ହୋଟେଲ ମ୍ୟାନେଜାର ପାଖରେ ବସି ଶୁଣୁଥାନ୍ତି । ହଠାତ୍ କହିଲେ, "ଯାହା ଟଙ୍କା ଦରକାର ମୁଁ ଦେଉଛି । ଘରେ ପହଞ୍ଚି ମନି ଅର୍ଡ଼ର ଯୋଗେ ପଠାଇ ଦେବେ ।"

ରାତିରେ ଡାଇନିଂ ହଲ୍‌ରେ ଖାଇବା ବେଳେ ଜଣେ ବୃଦ୍ଧ ମୁସଲମାନ ଭଦ୍ରବ୍ୟକ୍ତି ପାଖରେ ବସିଥିଲେ । ଆଗରୁ ଦେଖିଥିବା ପରି ଜଣାଯିବାରୁ ତାଙ୍କର ପରିଚୟ ପଚାରିଲି । ସେ କହିଲେ, "ମୋ ନାମ ମମତାଜ ଆଲି । ସିନେମା ପର୍ଦ୍ଦାରେ ମୋତେ ନାଚିବା ଓ ଅଭିନୟ କରିବା ଦେଖିଥିବେ । ପୁଅ ମେହବୁବ୍ ଫିଲ୍ମ

ସୁଟିଂପାଇଁ ଦଳବଳ ନେଇ ହିମାଳୟ ଅଞ୍ଚଳକୁ ଯାଇଥିଲା । ଯୁଦ୍ଧ ପରିସ୍ଥିତି ଯୋଗୁଁ ଆଜି ଫେରିଆସିବ । ତାକୁ ନେବାକୁ ଆସିଛି ।''

ଶୋଇବା ପୂର୍ବରୁ ମ୍ୟାନେଜାରଙ୍କ ପାଖରୁ ବିଗତ କିଛିଦିନର ସଂବାଦପତ୍ର ସଂଗ୍ରହ କରି ପଢ଼ିଗଲି । ସବୁଥିରେ ଯୁଦ୍ଧର ଖବର । ଆମ ସୈନ୍ୟବାହିନୀର ବିପର୍ଯ୍ୟୟର କାହାଣୀ । ଚୀନାମାନଙ୍କ ମାଡ଼ି ଆସିବା କଥା । ଭାରତବାସୀଙ୍କ ଶତ୍ରୁ ବିପକ୍ଷରେ ସଂକଳ୍ପର ବିବରଣୀ । ମନରେ ଅସ୍ୱାଭାବିକ ପ୍ରତିକ୍ରିୟା ସୃଷ୍ଟି ହେଉଥାଏ । ବିବେକର ଘାତ ପ୍ରତିଘାତ ମଧ୍ୟରେ ଚିନ୍ତା କଲି, ଯୁଦ୍ଧକୁ ଗଲେ ଜୀବନ ସାର୍ଥକ ହୁଅନ୍ତା ।

ତହିଁ ପରଦିନ ୧୦ଟା ବେଳେ ସାଂସ୍କୃତିକ ବିଭାଗର ମିସ୍ ଭି. କିଚଲୁଙ୍କୁ ଫୋନ ଯୋଗେ ମୋ ଫେରିବା କଥା ଜଣାଇଲି । ସାକ୍ଷାତ କରିବା ଦରକାର ନାହିଁ ବୋଲି ସେ ଉତ୍ତର ଦେଲେ । ଜଣାଗଲା, ସମସ୍ତେ ବିବ୍ରତ ।

ସନ୍ଧ୍ୟାପରେ ଷ୍ଟେସନରେ ପହଞ୍ଚିଲି । ପ୍ଲାଟଫର୍ମରେ ଥାନ୍ତି ଦଳ ଦଳ ସୈନ୍ୟ । ଅଳ୍ପସଂଖ୍ୟକ ଯାତ୍ରୀ ନୀରବରେ ଛିଡ଼ା ରହିଥାନ୍ତି । ଏକ ପ୍ରକାର ଆତଙ୍କପ୍ରଦ ଅନ୍ଧକାର ମଧ୍ୟରେ ଟ୍ରେନ ଛାଡ଼ିଲା ।

ସୋଭିଏତ ରୁଷ କଥା ମନେ ପଡୁଥାଏ । ସେତେବେଳେ ସେଠାକାର ଜନ ସାଧାରଣଙ୍କ ମନରେ ଯେଉଁ ପ୍ରକାର ଜାତୀୟ ଉନ୍ମାଦନା ଦେଖିଥିଲି, ତାହାର ପ୍ରଭାବ ମନ ମଧ୍ୟରେ ରହିଥାଏ । (ତାହାର ୩୦ ବର୍ଷ ପରେ ଯେ ମହାଶକ୍ତି ସୋଭିଏତ ସଂଘ ଖଣ୍ଡଛିନ୍ନ ହେବ ଓ ସୁଦୃଢ଼ ସାମ୍ୟବାଦୀ ବ୍ୟବସ୍ଥା ଭୁଶୁଡ଼ି ପଡ଼ିବ, ସେତେବେଳେ ସେ କଥା କଳ୍ପନା ଶକ୍ତିର ବାହାରେ ଥାଏ ।)



ଲେନିନ୍ କୁଟୀର



ମସ୍କୋ ଲୋହିତ ଛକ



ଲେନିନ୍ ସ୍ମୃତି ସୌଧ (Ency Bri - Vol 24, p. 362)



କ୍ରେମଲିନ୍ (Ency Bri - Vol 24, p. 360)

# ବାଣୀ ବିହାର : ୧୯୬୨-୭୦



## କେତେକ ଘଟଣା

### ଯୁଦ୍ଧଭୂମିକୁ ଯିବା ନିମନ୍ତେ ଆଗ୍ରହ

୧୯୬୨ ନଭେମ୍ବର ୧୪ ତାରିଖ ଦିନ ବାଣୀବିହାର ପରିସରରେ ପହଞ୍ଚି କୁଳପତି ପରିଜାଙ୍କୁ ରୁଷ ଭ୍ରମଣର ଅଭିଜ୍ଞତା ବର୍ଣ୍ଣନା କଲା ପରେ ତାଙ୍କ ହାତକୁ ଖଣ୍ଡିଏ ଦାରଖାସ୍ତ ବଢ଼ାଇଦେଲି । ଲେଖିଥିଲି "ଭାରତ ସୀମାନ୍ତର ଯୁଦ୍ଧଭୂମିରେ ଯେ କୌଣସି କାର୍ଯ୍ୟରେ ଯୋଗ ଦେବା ଲାଗି ମୁଁ ପ୍ରସ୍ତୁତ ଅଛି ।" ପରିଜା ସାହେବ ବିନା ବାକ୍ୟବ୍ୟୟରେ ଦରଖାସ୍ତରେ ଦସ୍ତଖତ୍ କରି ସ୍ୱତନ୍ତ୍ର ବାର୍ତ୍ତାବହ ହାତରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିକଟକୁ ତତ୍କ୍ଷଣାତ୍ ପଠାଇଦେଲେ । ଅପରାହ୍ନ ୪ଟା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ନିର୍ଦ୍ଦେଶ ଆସିଲା—୧୫ ତାରିଖ ୧୦ଟା ସମୟରେ କଟକ କ୍ୟାଣ୍ଟନମେଣ୍ଟ ସ୍ଥିତ ସୈନ୍ୟ ବିଭାଗର ପଦସ୍ଥ ଅଧିକାରୀଙ୍କ ପ୍ରକୋଷ୍ଠରେ ଉପସ୍ଥିତ ହେବାକୁ ।

ସକାଳ ୮ଟାରେ ନିଜ ଗାଡ଼ି ନିଜେ ଚଳାଇ କଟକ ଚାଲିଲି । ପଛ ସିଟ୍‌ରେ ସ୍ତ୍ରୀ ରାଜଶ୍ରୀ ବସିଗଲେ । କଟକର କେଉଁଠାକୁ, କାହା ପାଖକୁ ଓ କାହିଁକି ଯାଉଛି, ସେ କଥା କହିଲି ନାହିଁ । ଛାତି ଥରୁଥାଏ, ହାତ ମଧ୍ୟ ଥରୁଥାଏ, କିନ୍ତୁ ମନ ଦୃଢ଼ ଥାଏ । ଅଜଣା ବିପଦର ଆଶଙ୍କା ଓ ମାନସିକ ଦମ୍ଭ, ଏହି ଦୁଇଟିର ମିଶ୍ରିତ ପ୍ରତିକ୍ରିୟାରେ ମନୁଷ୍ୟର ମନ କିପରି ହୁଏ, ତାହା ଉପଲବ୍ଧି କରି ପାରୁଥାଏଁ । ସ୍ତ୍ରୀ ପଚାରିଲେ, "ଗମ୍ଭୀର ଭାବରେ କ'ଣ ଚିନ୍ତା କରୁଛ ? ମୋତେ କାହିଁକି କିଛି କହୁନାହଁ ?" କହିଲି, "ସବୁ କଥା ନିଜ ସ୍ତ୍ରୀଙ୍କୁ ଜଣାଇବା ଉଚିତ ନୁହେଁ ।" "ମୁଁ ତ କିଛି ବୁଦ୍ଧି ଦେଇ ପାରିବି," ସେ ମତ ଦେଲେ । ଉତ୍ତର ଦେଲି, "ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ ।" ମୋର କଟୂକ୍ତି ଶୁଣି ସେ ଗମ୍ଭୀର ରହିଲେ ।

ନିର୍ଦ୍ଦିଷ୍ଟ ସ୍ଥାନର ଗେଟ୍ ପାଖରେ ଗାଡ଼ି ରଖି, ଏକାକୀ ସେନାନାୟକଙ୍କ ପ୍ରକୋଷ୍ଠରେ ପଶିଲି । ସେ ମୋତେ ଆପାଦମସ୍ତକ ଚାହିଁ ଦେଖିଲା ପରେ ବସିବାକୁ କହିଲେ । ମୋ bio-data ତାଙ୍କ ଆଗରେ ଥାଏ ।

"୩୬ ବର୍ଷ ବୟସରେ ଯୁଦ୍ଧ ଫ୍ରଣ୍ଟକୁ ଯାଇ ଆପଣ କ'ଣ କରି ପାରିବେ ?"

"ଶତ୍ରୁ ବିରୋଧରେ କିଛି ନା କିଛି କାର୍ଯ୍ୟ କରିବା ଲାଗି ଇଚ୍ଛା ହେଉଛି ।"

"ବନ୍ଧୁକ ଚାଳନା ଜଣା ଅଛି ? ଜୀବ ଜନ୍ତୁ ଶିକାର କରିଛନ୍ତି ?"

"ନା" ।

କିଛି ସମୟ ଚିନ୍ତା କଲା ପରେ ସେ କହିଲେ, "ମୁଁ ଭାବୁଛି, କେବଳ ଗୋଟିଏ କାମରେ ଆପଣଙ୍କୁ ବ୍ୟବହାର କରିହେବ । ନେଫା ଯୁଦ୍ଧାଞ୍ଚଳର ମୁଖ୍ୟ ସାମରିକ ଦପ୍ତରରେ ଆପଣ ରହିବେ । ଘଣ୍ଟା ପରେ ଘଣ୍ଟା ଫ୍ରଣ୍ଟ ଲାଇନରୁ ଆସୁଥିବା ସଂବାଦଗୁଡ଼ିକ ଆପଣଙ୍କୁ ଜଣାଇଦିଆଯିବ । ଆପଣ ସେଗୁଡ଼ିକର ସଂକ୍ଷିପ୍ତ ଟିପ୍ପଣୀ ପ୍ରସ୍ତୁତ କରି ସେନାଧ୍ୟକ୍ଷଙ୍କ ଛାଉଣୀକୁ ପ୍ରତ୍ୟେକ ଦିନ ପଠାଇବେ । ପାରିବେ କି ନାହିଁ ଉତ୍ତର ଦିଅନ୍ତୁ ।"

"ଏପରି କାମ ମୁଁ ଉତ୍ତମ ରୂପେ କରିପାରିବି," ଉତ୍ତର ଦେଲି । "ତା ହେଲେ, ପ୍ରସ୍ତୁତ ହୋଇ ରହିଥାନ୍ତୁ । ହେଡ୍‌କ୍ୱାର୍ଟାରକୁ ଖବର ଦେଉଛି । ଉତ୍ତର ଆସିଲାକ୍ଷଣି ଆପଣ ମୋ ପାଖରୁ ଡାକ ପାଇବେ," ଏତକ କହି ସେ କରମର୍ଦ୍ଦନ କରି ବିଦାୟ ଦେଲେ ।

ଫେରିଲା ବେଳେ ସ୍ତ୍ରୀଙ୍କୁ ସବୁ କଥା କହିଲି । ସେ ନୀରବରେ ଶୁଣିଗଲେ । କୁଳପତିଙ୍କୁ ଜଣାଇଲି । ସେ ଫୋନ୍ ଯୋଗେ ମୁଖ୍ୟମନ୍ତ୍ରୀଙ୍କୁ ଜଣାଇଦେଲେ । ଉପର ସ୍ତରରୁ ଡାକ ଆସିବାକୁ ଅପେକ୍ଷା କଲି । କିନ୍ତୁ କୌଣସି ସଂବାଦ ଆସିଲା ନାହିଁ । ମୋ ସାକ୍ଷାତ୍‌କାରର ମାତ୍ର ଏକ ସପ୍ତାହ ପରେ, ନଭେମ୍ବର ୨୧ ତାରିଖ ଦିନ, ଚୀନାମାନେ ଅକସ୍ମାତ ଏକତରଫା ଯୁଦ୍ଧବିରତି ଘୋଷଣା କଲେ । ଯୁଦ୍ଧ ଫ୍ରଣ୍ଟକୁ ନ ଯାଇ ପାରିଲେ ମଧ୍ୟ, ଯିବା ଲାଗି ଆଗ୍ରହ ପ୍ରକାଶ କରିଥିବାରୁ ଆତ୍ମସନ୍ତୋଷ ଲାଭ କଲି ।

## ସାନଭାଇ ମନୋଜର ପଣ୍ଡିଚେରୀ ଯାତ୍ରା

୧୯୬୩ ମସିହା ଫେବ୍ରୁଆରୀ ମାସ । ସଂବାଦପତ୍ରରୁ ଜାଣିଲି, ସାନଭାଇ ମନୋଜ ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମରେ ରହିବା ନିମନ୍ତେ ଓଡ଼ିଶାରୁ ବିଦାୟ ନେବ ।

ବୟସରେ ମନୋଜ ମୋ ଠାରୁ ୧୦ ବର୍ଷ ସାନ । ହାଇସ୍କୁଲ ଜୀବନରୁ ଲେଖନୀ ଚାଳନା କରୁଥାଏ । ବାଲେଶ୍ୱର ଜିଲ୍ଲାସ୍କୁଲରେ ନବମ ଶ୍ରେଣୀରେ ପଢ଼ିଲାବେଳେ "ଶତାବ୍ଦୀର ଆର୍ତ୍ତନାଦ"(୧୯୪୯) ନାମକ ପୁସ୍ତକ ଲେଖି ଭବିଷ୍ୟତ ସାରସ୍ୱତ ସାଧନାର ସଂକେତ ଦେଇ ପାରିଥାଏ । ମୁଁ ଲଣ୍ଡନରେ ପିଏଚ.ଡି. କରୁଥିଲା ବେଳେ, ୧୯୫୬ରେ ସେ ଇଣ୍ଡୋନେସିଆରେ ଅନୁଷ୍ଠିତ ହୋଇଥିବା ଆଫ୍ରୋଏସୀୟ ଛାତ୍ର ସମ୍ମେଳନରେ ଯୋଗ ଦେଇଥିଲା । ୧୯୬୩ ବେଳକୁ ସେ ଥାଏ ଓଡ଼ିଶାର ଜଣେ ଉଦୀୟମାନ ବାମପନ୍ଥୀ ଯୁବନେତା । ଆଇନ ବିଦ୍ୟା ପଢ଼ିଲା ପରେ ଏମ୍.ଏ.ପାଶ କରି ସେ ଖ୍ରୀଷ୍ଟକଲେଜରେ ଇଂରାଜୀ ଅଧ୍ୟାପକ ଥାଏ । ସେଥି ସଙ୍ଗେ, କଟକରେ 'ଦିଗନ୍ତ' ପ୍ରେସ ସ୍ଥାପନ କରି ସେଠାରୁ 'ଦିଗନ୍ତ' ନାମକ ମାସିକ ପତ୍ରିକା ବାହାର କରୁଥାଏ । ଜଣେ କବି ଓ ସୁବକ୍ତା ଅଧ୍ୟାପକ ତଥା ରାଜନୈତିକ ବ୍ୟକ୍ତି ଭାବରେ ଯଥେଷ୍ଟ ସୁନାମ ଆସିଯାଇଥିଲା । ଏପରିକି, ଛାତ୍ର ରାଜନୀତିରେ ଅଂଶ ଗ୍ରହଣ କରି କମ୍ୟୁନିଷ୍ଟ କର୍ମୀ ଭାବରେ ଥରେ କାରାଦଣ୍ଡ ମଧ୍ୟ ପାଇଥିଲା । ନନ୍ଦିନୀ ପାଣିଗ୍ରାହୀ (ଶତପଥୀ), ଦେବେନ୍ଦ୍ର ଶତପଥୀ, ପ୍ରବୀର ପାଳିତ ଓ ଲୋକନାଥ ଚୌଧୁରୀ ପ୍ରମୁଖ ବାମପନ୍ଥୀମାନଙ୍କ ସହିତ ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କରିବା ମୁଁ ଦେଖୁଥାଏଁ ।

୧୯୫୯ରେ ମନୋଜ ବିବାହ କଲା ନାରାୟଣ ବୀରବର ସାମନ୍ତ ଓ କୁଜଙ୍ଗ ରାଜକନ୍ୟା ରତ୍ନମାଳୀ ଜେମାଙ୍କ ଜ୍ୟେଷ୍ଠା କନ୍ୟା ପ୍ରତିଜ୍ଞାକୁ । ସାମନ୍ତ ଥିଲେ ଆଠଗଡ଼ ରାଜବଂଶର ପୁତ୍ର ଓ କୁଜଙ୍ଗ ରାଜବଂଶର ଜାମାତା । ସେମାନଙ୍କ ଏକମାତ୍ର ପୁତ୍ର ବିଶ୍ୱମ୍ଭର ସାମନ୍ତ ଜଣେ ଯୁବ କମ୍ୟୁନିଷ୍ଟ ଭାବେ ପରିଚିତ ଥାନ୍ତି । ପ୍ରତିଜ୍ଞା ମନସ୍ତତ୍ତ୍ୱରେ ଏମ୍.ଏ. ପାଶ୍ କରିଥିଲେ । କୁଜଙ୍ଗ ଗଡ଼ରେ ମନୋଜ ଓ ପ୍ରତିଜ୍ଞାର ବିବାହ ଉତ୍ସବ ଭୁଲି ହୁଏ ନାହିଁ । ଅନନ୍ତପୁର ନାମକ ସ୍ଥାନରୁ ନୌକାରେ ବରଯାତ୍ରୀମାନଙ୍କର ଶୋଭାଯାତ୍ରା ବେଳେ ନଦୀର ଦୁଇ ପାଖରେ ଅସଂଖ୍ୟ ନରନାରୀ ହୁଳହୁଳି ଧ୍ୱନି ସହ ବରକୁ ସ୍ୱାଗତ କରୁଥିବା ଦେଖିଥିଲି । କୁଜଙ୍ଗ ଗଡ଼ ଜନାକୀର୍ଣ୍ଣ ଦେଖାଯାଉଥାଏ । ସାମନ୍ତ ଓ ଜେମା ୧୦ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ଲୋକଙ୍କୁ ବିବାହ ଭୋଜିରେ ଆପ୍ୟାୟିତ କରିଥିଲେ ।

ମନୋଜ ଯେ ଓଡ଼ିଶାର ଜଣେ ପ୍ରସିଦ୍ଧ ରାଜନୀତିଜ୍ଞ ରୂପେ ପରିଚିତ ହେବ, ଏ ବିଷୟରେ ମୋର ସନ୍ଦେହ ନଥାଏ । କିନ୍ତୁ, ଅପ୍ରତ୍ୟାଶିତ ଭାବେ ତାର ସସ୍ତ୍ରୀକ ପଣ୍ଡିଚେରୀ ଚାଲିଯିବା ସଂବାଦ ପଢ଼ି ସ୍ତମ୍ଭିତ ହେଲି । ନାସ୍ତିବାଦୀ କମ୍ୟୁନିଷ୍ଟ ଜଗତରୁ ଅଧ୍ୟାତ୍ମିକ ଜଗତ୍ ! ସହସା ପରିବର୍ତ୍ତନର କାରଣ ପଚାରି ଉତ୍ତର ପାଇଲି ନାହିଁ । ମା ଦୁଃଖରେ ବିଚଳିତ ହେଲେ ଓ ମୋ ପ୍ରତି ଆକ୍ଷେପ

କଲେ, "ତୁ କାହିଁକି ମନା କଲୁ ନାହିଁ ?" ମନୋଜ ଚାଲିଗଲା ପରେ ବାପା ବାଣୀବିହାର ଆସିଲାରୁ ମୁଁ ଅଭିଯୋଗ ଆଣିଲି, "ଆପଣ କାହିଁକି ବାଧା ଦେଲେ ନାହିଁ ?" ଖୁସି ମନରେ ସେ ଉତ୍ତର ଦେଲେ, "ତା ଇଚ୍ଛାରେ ମୁଁ କିମିତି ବାଧା ଦେଇଥାନ୍ତି ! ସେ ଯାହା ଭଲ ଭାବିଛି, ତାହା କରିଛି । ସେଥିରେ ଆମର ଦୁଃଖ କରିବା ଠିକ୍ ନୁହେଁ ।"

ବାପାଙ୍କର ସେହି ଆନନ୍ଦ ଥିଲା ସାନପୁଅ ପ୍ରତି ତାଙ୍କର ଆଶୀର୍ବାଦ । ମନୋଜ ଓଡ଼ିଶାରେ ରହିଥିଲେ ସାଂସାରିକ ଜଞ୍ଜାଳ ଓ ରାଜନୈତିକ ପଙ୍କିଳତା ମଧ୍ୟରେ ନିଜର ପ୍ରକୃତିପ୍ରଦତ୍ତ ପ୍ରତିଭା ବିକାଶ କରି ପାରି ନଥାନ୍ତା । କିନ୍ତୁ ଶ୍ରୀଅରବିନ୍ଦ ଆଶ୍ରମର ପବିତ୍ର ପରିବେଶରେ ଉଚ୍ଚତର ଜ୍ଞାନ ଲାଭ ଓ ଲେଖନୀ ଚାଳନା ପାଇଁ ଯେଉଁ ଅପୂର୍ବ ସୁଯୋଗ ସେ ପାଇପାରିଲା, ସେଥିଯୋଗୁଁ କେତୋଟି ବର୍ଷ ଭିତରେ ଜଣେ ସାହିତ୍ୟିକ ଭାବରେ ସାରା ଭାରତରେ ଓ ଭାରତ ବାହାରେ ସୁଖ୍ୟାତି ଅର୍ଜନ କଲା । କ୍ରମେ କ୍ରମେ ଜଣେ ମନସ୍ୱୀ ଓ ସୃଜନାତ୍ମକ ଲେଖକ ଭାବରେ ଦେଶ ବିଦେଶରେ ସ୍ୱୀକୃତି ପାଇବା ସଙ୍ଗେ, ଓଡ଼ିଶାର ଅସଂଖ୍ୟ ପାଠକ ପାଠିକାଙ୍କ ଶ୍ରଦ୍ଧାଭାଜନ ହେଲା । ସେ ପଣ୍ଡିଚେରୀ ଚାଲିଯିବା ଦ୍ୱାରା ମୋତେ ସେତେବେଳେ ହତାଶ ଲାଗିଥିଲା ସତ, କିନ୍ତୁ ପରେ ପରେ ନିଜର ଭାଇକୁ ଯଶସ୍ୱୀ ହେବା ଦେଖି ଅପାର ଗର୍ବ ଅନୁଭବ କଲି ।

## ବିଜୁବାବୁଙ୍କ ଶାସନର ଏକ ନମୁନା

୧୯୬୩ ମାର୍ଚ୍ଚ ମାସର ଘଟଣା । ଆମ ଅଞ୍ଚଳର ବିଶିଷ୍ଟ ଲୋକଙ୍କୁ ନେଇ ବାପା 'ଜନ କଲ୍ୟାଣ ସମିତି' ନାମକ ଗୋଟିଏ ସଂଗଠନ ଗଢ଼ିଥିଲେ । ସମାଜ ସେବା ଥିଲା ସମିତିର ଉଦ୍ଦେଶ୍ୟ । ଭୋଗରାଇ ଥାନାର କେତେଜଣ ସାମ୍ୟବାଦୀ ସେଥିରେ ଯୋଗ ଦେଲେ । ସେମାନଙ୍କ ମଧ୍ୟରେ ଥିଲେ ସୋସିଆଲିଷ୍ଟ ନେତା ପ୍ୟାରୀମୋହନ ଦାସ । ସ୍ଥାନୀୟ କଂଗ୍ରେସ ନେତାମାନେ ଥିଲେ ତାଙ୍କର ପରମ ଶତ୍ରୁ ।

ଦିନେ ବର୍ଷାମୁଖର ରାତିରେ ଖବର ମିଳିଲା, ପାର୍ଶ୍ୱବର୍ତ୍ତୀ ଗ୍ରାମର ଜଣେ ଧନଶାଳୀ ଦୁର୍ଦ୍ଧାନ୍ତ ବ୍ୟକ୍ତି ଜଣେ ମହିଳାଙ୍କୁ ହତ୍ୟା କରି ଗୋରୁ ଗୁହାଳ ଭିତରେ ଶବଦାହ କରୁଛନ୍ତି । ତା ଆଗରୁ ସେ ଆଉ ଦୁଇଜଣଙ୍କୁ ମଧ୍ୟ ହତ୍ୟା କରିଥିଲେ । ବାପାଙ୍କ ନିର୍ଦ୍ଦେଶରେ ସମିତିର କେତେକ ସଭ୍ୟ ସେଠାରେ ପହଞ୍ଚି ଅର୍ଦ୍ଧଦଗ୍ଧ ଶବ ଉଦ୍ଧାର କଲେ ଓ ପୋଲିସଙ୍କୁ ଡାକି ଆଣିଲେ । କିନ୍ତୁ ହତ୍ୟାକାରୀ ବାଲେଶ୍ୱରର କୌଣସି ପ୍ରଭାବଶାଳୀ କଂଗ୍ରେସ ନେତାଙ୍କ ଶରଣାପନ୍ନ ହେଲେ ଓ ପ୍ରଚୁର ଟଙ୍କା ଢାଳିଦେଲେ । ତାଙ୍କ ପ୍ରରୋଚନାରେ ପୋଲିସ ସାମ୍ୟବାଦୀମାନେ ହତ୍ୟାକାଣ୍ଡ

ଘଟାଇଛନ୍ତି ବୋଲି ଅଭିଯୋଗ ଆଣି ଜନ କଲ୍ୟାଣ ସମିତିର ସଭାପତି ଓ ସମ୍ପାଦକ ପ୍ରଭୃତିଙ୍କ ବିପକ୍ଷରେ କେସ୍ ଦାଏର କଲେ । ମୋକଦ୍ଦମା ଚାଲିଲା ।

ଦିନେ କ୍ଲାସରୁ ବାହାରି ଆସିଲା ବେଳେ ଚିଠିଖଣ୍ଡିଏ ପୋଷ୍ଟମ୍ୟାନ୍ ଧରାଇଦେଲେ । ମର୍ମସ୍ପର୍ଶୀ ଭାଷାରେ ସବୁ କଥା ବର୍ଣ୍ଣନା କରି ବାପା ଲେଖିଥିଲେ, ''ଭଲ କାମ କରିବାକୁ ଯାଇ ଶେଷରେ ବୁଢ଼ାକାଳେ ମୋତେ ଦଣ୍ଡ ଭୋଗିବାକୁ ପଡ଼ିବ । ଅମୁକ ନେତାଙ୍କୁ ଟଙ୍କା ଦେଇ ଦୋଷୀ ହେଲା ନିର୍ଦ୍ଦୋଷ, ଅଥଚ ଦୋଷୀକୁ ଧରାଇ ଦେବାରୁ ଆମେ ଜେଲ୍ ଭୋଗିବୁଁ । ଏହା ହେଉଛି କଂଗ୍ରେସୀ ଶାସନ । ମୁଁ ଜେଲ୍ ଗଲେ, ଭାବିବୁ ନାହିଁ ଯେ ତୋ ବାପା ଜଣେ ଅପରାଧୀ ।''

କେସ୍ ବିଷୟ ଆଗରୁ ଶୁଣିଥିଲି । କିନ୍ତୁ ଘଟଣାଟି ଏତେ ଦୂର ଆଗେଇ ଗଲାଣି ବୋଲି ଜାଣି ନଥିଲି । ବାଲେଶ୍ୱରର କେଉଁ କଂଗ୍ରେସ ନେତା ଲାଞ୍ଚ ନେଇ ଗୃହମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ ମିଥ୍ୟା ଖବର ଦେଇ ସୋସିଆଲିଷ୍ଟ ଦମନ ଚଳାଇଥିଲେ, ସେ ବିଷୟ ପ୍ୟାରୀମୋହନ ଦାସ ମୋତେ ବିଶଦ ଭାବେ କହିଥିଲେ ।

ବାପାଙ୍କ ଚିଠି ପାଇ ମୁଣ୍ଡ ଗରମ ହେଲା । ତତ୍‌କ୍ଷଣାତ୍ ମୁଖ୍ୟମନ୍ତ୍ରୀଙ୍କ ସଚିବଙ୍କୁ ଫୋନରେ କହିଲି, ''ମୁଁ ଦଶ ମିନିଟ ମଧ୍ୟରେ ବିଜୁବାବୁଙ୍କ ସହିତ ସାକ୍ଷାତ କରିବି । ଦୟାକରି ତାଙ୍କୁ କହିଦିଅନ୍ତୁ ।'' ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠରେ ପଶିଯାଇ ତାଙ୍କୁ ପ୍ରଶ୍ନ କଲି, ''ପ୍ରଥମେ କହନ୍ତୁ, ଆପଣ ମୋତେ ବିଶ୍ୱାସ କରିବେ କି ନାହିଁ ।'' ଗମ୍ଭୀର ସ୍ୱରରେ ସେ ଉତ୍ତର ଦେଲେ, ''ଯିଏ ଯୁଦ୍ଧକୁ ଯିବା ପାଇଁ ବାହାରିଥିଲା, ତାଙ୍କୁ ନିଶ୍ଚୟ ବିଶ୍ୱାସ କରିବି ।''ମୁଁ ଅନୁରୋଧ କଲି, ''ନୀଳମଣି ବାବୁଙ୍କୁ ଏଠାକୁ ଡାକନ୍ତୁ, ମୁଁ ଯାହା କହିବି, ତାଙ୍କ ଆଗରେ ।'' ବିଜୁବାବୁ ଫୋନ୍ ଉଠାଇଲେ, ନୀଳମଣିବାବୁ ଆସିଗଲେ । ତାଙ୍କୁ ଦୃଢ଼ ସ୍ୱରରେ ପଚାରିଲି, ''ଅମୁକ ନେତା ଆପଣଙ୍କୁ ଜନକଲ୍ୟାଣ ସମିତି ବିରୋଧରେ ପୋଲିସ କେସ୍ କରିବାକୁ କହିଲାବେଳେ, ସେ ସେପରି ପରାମର୍ଶ କାହିଁକି ଦେଲେ, ସେ କଥା ଆପଣ ଅନୁମାନ କରିପାରିଥିବେ ନିଶ୍ଚୟ ।'' ନୀଳମଣିବାବୁ ଇତସ୍ତତଃ ହୋଇପଡ଼ିଲେ । ଭାବପ୍ରବଣ ଅବସ୍ଥାରେ ମୁଁ ସମସ୍ତ ବିଷୟ ବିଜୁବାବୁଙ୍କ ଆଗରେ ବର୍ଣ୍ଣନା କରିଗଲି । କଥା ଶେଷ ହେବା ପୂର୍ବରୁ ଜଣେ ସ୍ୱୈର ଶାସକଙ୍କ ଢଙ୍ଗରେ ଛିଡ଼ା ହୋଇ ସେ ଗୃହମନ୍ତ୍ରୀଙ୍କୁ ଆଦେଶ ଦେଲେ, ''ଆଇ.ଜି.ଙ୍କୁ କୁହ, ମୁଖ୍ୟ ମନ୍ତ୍ରୀଙ୍କ ଇଚ୍ଛା, ପୋଲିସ କେସ୍ ସଙ୍ଗେ ସଙ୍ଗେ ଉଠାଇ ନିଆଯିବ । ମନ୍ମଥବାବୁଙ୍କୁ ସାଙ୍ଗରେ ନେଇଯାଅ ଓ ତାଙ୍କ ଆଗରେ ଆଇ.ଜି.ଙ୍କ ସହିତ କଥାବାର୍ତ୍ତା କର । ଏ ସବୁ

କଅଣ ଚାଲିଛି ? ଗୋଟାଏ ଲୋକ ତିନିଟା ମାର୍ଡ଼ାର କରିବ, ଗୋଟାଏ ନେତା ଟଙ୍କା ଖାଇବ, ଗୁଡ଼ାଏ ଭଦ୍ରଲୋକ ଆସାମୀ ହେବେ ?'' ବିଜୁବାବୁ ରାଗରେ ଗରଗର ହେବା ଦେଖିଲି ।

ନୀଳମଣିବାବୁ ତାଙ୍କ ପ୍ରକୋଷ୍ଠକୁ ମୋତେ ନେଇଯାଇ ଆଇ.ଜି.ଙ୍କୁ ଫୋନ କରି ମୁଖ୍ୟମନ୍ତ୍ରୀଙ୍କ ଆଦେଶ କଥା ଜଣାଇଲେ । ଆଇନ କାନୁନ୍ ଦୃଷ୍ଟିରୁ ତାହା ଅସମ୍ଭବ ବୋଲି ଆଇ.ଜି.କହୁଥିବା ଶୁଣିଲି । ସେ ଏକଥା ମଧ୍ୟ କହୁଥିଲେ ଯେ ସେସନ୍ସ୍ ଜଜ୍ ପୋଲିସ ବିଭାଗକୁ କଟୁ ଭର୍ତ୍ସନା କରିବେ, ଯେଉଁ ପାଇଁ କେସ୍ ଉଠାଇବା ଉଚିତ ନୁହେଁ । କିନ୍ତୁ ଗୃହମନ୍ତ୍ରୀ ମଧ୍ୟ ନଛୋଡ଼ବନ୍ଧା । ବେଶ୍ କିଛି ସମୟ ତର୍କବିତର୍କ ଫଳରେ ଦୁହେଁ ସମାଧାନ ସୂତ୍ର ବାହାର କଲେ । ଯଥାସମୟରେ ଜନ କଲ୍ୟାଣ ସମିତି ଉପରୁ କେସ୍ ଉଠାଇ ନିଆଗଲା । (ପରବର୍ତ୍ତୀ ସମୟରେ ନୀଳମଣିବାବୁଙ୍କ ସହିତ ଏହି ବିଷୟରେ ମୁଁ କେତେଥର କୌତୁକ କରିଛି । ଦିନେ ମୋ ଗାଁ ଘରେ ମଧ୍ୟାହ୍ନ ଭୋଜନ କରୁଥିଲା ବେଳେ ସେହି ରହସ୍ୟ ଉତ୍‌ଥାପନ କଲି । ସେ କହିଲେ, ''ତୁମେ ମୋତେ କହିଥିଲେ ତ ମୁଁ ଯାହା କରିବା କଥା କରିଥାନ୍ତି । ସିଧାସଳଖ ବିଜୁ ପାଖକୁ ଚାଲିଗଲ କାହିଁକି କୁହନି ?'' ମୁଁ ଉତ୍ତର ଦେଲି, ''ସେତେବେଳେ ଓଡ଼ିଶା ରାଜନୀତିରେ ବିଜୁବାବୁ ଥିଲେ ହିଟଲାର କିମ୍ବା ଷ୍ଟାଲିନ୍ । ଅର୍ଥାତ୍ ଆଇନର ଊର୍ଦ୍ଧ୍ୱରେ । ହୋମ୍ ମିନିଷ୍ଟର ବା ପୋଲିସ ଆଇ.ଜି.ତାଙ୍କ ହୁକୁମ ମାନିବାକୁ ବାଧ୍ୟ ଥିଲେ ବୋଲି ତାଙ୍କ ପାଖକୁ ଯାଇଥିଲି ।'')

## ଭୁବନେଶ୍ୱର କଂଗ୍ରେସ ଅଧିବେଶନ

୧୯୬୪ ଜାନୁଆରୀ ଆରମ୍ଭରୁ ଭୁବନେଶ୍ୱରରେ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ନିମନ୍ତେ ବିପୁଳ ଆୟୋଜନ ଚାଲିଥାଏ । ବୀରେନ୍ ମିତ୍ର ଥାନ୍ତି ମୁଖ୍ୟମନ୍ତ୍ରୀ । ନେହରୁଙ୍କ ସମ୍ବନ୍ଧରେ ମୁଁ ଲେଖିଥିବା ପୁସ୍ତକର ପରିବର୍ଦ୍ଧିତ ସଂସ୍କରଣ ବାହାର କରାଯିବ ବୋଲି ଲଣ୍ଡନରୁ ଚିଠି ଆସିଥାଏ । ସେହି ସମ୍ପର୍କରେ ତାଙ୍କ ସହିତ ସାକ୍ଷାତ୍ କରିବି ବୋଲି ବୀରେନ୍‌ବାବୁଙ୍କୁ କହିଲି । ସେ ସାହାଯ୍ୟ କରିପାରିବେ ନାହିଁ ବୋଲି କହିବାରୁ ବିଜୁବାବୁଙ୍କ ସହିତ ଯୋଗାଯୋଗ ସ୍ଥାପନ କଲି । କାରଣ, ସେ ଥିଲେ ଅଧିବେଶନ ଆୟୋଜନର ସର୍ବୋଚ୍ଚ କର୍ତ୍ତା । ସମୟ ଦିଆଯିବ ବୋଲି ତାଙ୍କ ଲୋକମାନେ ଆଶ୍ୱାସନା ଦେଲେ । ନେହରୁଙ୍କ ପାଖରେ ରହି ଫଟୋ ଉଠାଇବା ଲାଗି ବନ୍ଦୋବସ୍ତ କଲି । କିନ୍ତୁ, ନେହରୁ ଅକସ୍ମାତ ଅସୁସ୍ଥ ହେବା ଯୋଗୁଁ ତାଙ୍କର ସବୁ କାର୍ଯ୍ୟକ୍ରମ ବାତିଲ ହେଲା ।

## ବୀରେନବାବୁଙ୍କ ବିପକ୍ଷରେ ଛାତ୍ର ଆନ୍ଦୋଳନ

୧୯୬୪ ମସିହା ଓଡ଼ିଶାବ୍ୟାପୀ ଛାତ୍ର ଆନ୍ଦୋଳନ ସମୟର ଗୋଟିଏ ଘଟଣା । ବୀରେନ ମିତ୍ରଙ୍କ ମନୋମୁଖୀ ଶାସନ ବିରୋଧରେ ପ୍ରବଳ ଜନମତ ପ୍ରକାଶ ପାଇଥାଏ । ତାଙ୍କ ସରକାରର ପତନ ଲାଗି ଛାତ୍ର ସମାଜ ନେତୃତ୍ୱ ନେବା ଥିଲା ଭାରତୀୟ ଗଣତନ୍ତ୍ରରେ ଏକ ଅଭୂତପୂର୍ବ ଘଟଣା । ପ୍ରାଥମିକ ସ୍କୁଲରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁ ସ୍ତରର ଛାତ୍ର ଛାତ୍ରୀମାନେ ସରକାର ବିରୋଧୀ ଆନ୍ଦୋଳନରେ ଝାସ ଦେଇ ଓଡ଼ିଶାକୁ ଥରହର କରିଦେଲେ । ବାଣୀବିହାର ସରଗରମ ହେଲା । ଦିନେ ବିଶ୍ୱବିଦ୍ୟାଳୟର ଛାତ୍ର ଛାତ୍ରୀ ସଚିବାଳୟ ଅବରୋଧ କରିବା ଲାଗି ସଂଘବଦ୍ଧ ଯୋଜନା କଲେ । ସରକାର ୧୪୪ ଧାରା ଜାରୀ କରିବା ଦ୍ୱାରା ବିକ୍ଷୋଭ ଯାତ୍ରା ବିଫଳ ହେବ ଜାଣି ଛାତ୍ରମାନେ ଉତ୍ତ୍ୟକ୍ତ ହୋଇଉଠିଲେ । ଆଇନ୍ ଭଙ୍ଗ କରି ସଚିବାଳୟ ଦିଗକୁ ଯିବା ପାଇଁ ସେମାନେ ବହୁ ସଂଖ୍ୟାରେ ବାଣୀବିହାର ମୁଖ୍ୟ ଫାଟକ ନିକଟରେ ସମବେତ ହେଲେ ।

ମୁଁ ଥିଲି ଛାତ୍ର ସଂସଦର ଉପଦେଷ୍ଟା । ସେମାନଙ୍କୁ ନିବୃତ୍ତ କରିବାକୁ ଯଥାସାଧ୍ୟ ଚେଷ୍ଟା କରି ବିଫଳ ହେଲି । କେମ୍ପାସ୍ ଭିତରୁ ଛାତ୍ରମାନେ ଅଗ୍ରସର ହେବା ନିମନ୍ତେ ପ୍ରସ୍ତୁତ ହେଲା ବେଳକୁ, ଗେଟ୍ ବାହାରେ ମାଜିଷ୍ଟ୍ରେଟ୍ ଓ ପୋଲିସ ସାହେବ ବନ୍ଧୁକ ଓ ଲାଠିଧାରୀ ଫୋର୍ସ ସହିତ ମହଜୁଦ୍ ଥାନ୍ତି । ଦେଖିଲି, ପୋଲିସ ସାହେବ ଗୋବିନ୍ଦ ଚନ୍ଦ୍ର ସେନାପତି ମୋର ପ୍ରାକ୍ତନ ଛାତ୍ର ଓ ମାଜିଷ୍ଟ୍ରେଟ ମୋର ଅତି ପରିଚିତ ବ୍ୟକ୍ତି । ଦୁହିଁଙ୍କ ପାଖରେ ପହଞ୍ଚିଲି । ଗୋପନ ଷଡ଼ଯନ୍ତ୍ର ଦ୍ୱାରା ମସୁଧା କଲି ଯେ, ଦଳ ଦଳ ଛାତ୍ରଙ୍କୁ ମୁଁ ଗେଟ୍ ବାହାରକୁ ଛାଡ଼ିବି, ପୋଲିସ୍ ଲାଠି ଉଠାଇ ସେମାନଙ୍କ ମୁଣ୍ଡରେ ପ୍ରହାର କରିବାର ଅଭିନୟ କରିବେ, କିନ୍ତୁ ଆଘାତ ଦେବେ ନାହିଁ, ଏବଂ ତା ପରେ ସେମାନଙ୍କୁ ପୋଲିସ ଭ୍ୟାନ୍ ଭିତରକୁ ଧରିନେବେ । ଉଭୟେ ରାଜି ହେଲେ । କିନ୍ତୁ ଉତ୍ତ୍ୟକ୍ତ ଛାତ୍ରମାନଙ୍କୁ ଏକଥା ଜଣାଇବା ସମ୍ଭବ ନଥିଲା, କାରଣ ସେମାନଙ୍କ ସଂଖ୍ୟା ଥାଏ ହଜାର ହଜାର ଓ ପ୍ରଚଣ୍ଡ ସ୍ଲୋଗାନ ମଧ୍ୟରେ କେହି କାହାରିର କଥା ଶୁଣିବା ପ୍ରଶ୍ନ ନଥାଏ ।

ମସୁଧା ମୁତାବକ, ଚାରିଚାରି ଜଣ ଛାତ୍ରଙ୍କୁ ଧାଡ଼ି କରି ଗେଟ୍ ବାହାରକୁ ଛାଡ଼ିଲି । ଲକ୍ଷ୍ମଣରେଖା ଅତିକ୍ରମ କଲା କ୍ଷଣି ପୋଲିସ୍ ଲାଠି ଉତ୍ତୋଳନ କଲେ ଓ ସେମାନଙ୍କ ମୁଣ୍ଡରେ ଲଗାଇଲେ । କିନ୍ତୁ, ଅନ୍ୟ ଅସଂଖ୍ୟ ଛାତ୍ର ଭାବିନେଲେ, ଲାଠି ପ୍ରହାର ଚାଲିଛି । ମୁହୂର୍ତ୍ତ ମଧ୍ୟରେ ସେମାନେ ଉଚ୍ଛୃଙ୍ଖଳ ଅବସ୍ଥାରେ ହତା ବାହାରକୁ ମାଡ଼ି ଚାଲିଗଲେ ଓ ପୋଲିସ ଉପରେ ଆକ୍ରମଣ କରିବାକୁ ଉଦ୍ୟତ ହେଲେ । ଟେକା ବର୍ଷଣ ଆରମ୍ଭ ହେଲା କ୍ଷଣି ଅବସ୍ଥା ଅସମ୍ଭାଳ ହେଲା ।

ମାଜିଷ୍ଟ୍ରେଟ୍ ଓ ପୋଲିସ ସାହେବ ଲୁହବୁହା ଗ୍ୟାସ୍ ଛାଡ଼ିବାକୁ ଆଦେଶ ଦେଲେ । ପ୍ରଥମ ବୋମାଟି ଫାଟିଲା ମୋ ଗୋଡ଼ ପାଖରେ । ଆଖିରୁ ଲୁହ ଝରିବା ବେଳକୁ ଆଗ ପଛ କିଛି ଦିଶିଲା ନାହିଁ । ସେତେବେଳକୁ ଛାତ୍ରମାନଙ୍କ ଉପରେ ବାରମ୍ବାର ଗ୍ୟାସ୍ ବୋମା ପଡୁଥାଏ । ଆଖି ଯନ୍ତ୍ରଣାରେ ମୁଁ ବସିପଡ଼ିଲି । ଛାତ୍ରମାନେ ଏଣେ ତେଣେ ଦୌଡ଼ିବାକୁ ଲାଗିଲେ । ପୋଲିସ ସାହେବ ମୋ ପାଖକୁ ଖବର ପଠାଇଲେ, ଲାଠିମାଡ଼ ହୋଇ ନାହିଁ, କେହି ଆହତ ହୋଇ ନାହାନ୍ତି । ଜଣେ ପୂର୍ବତନ ଛାତ୍ର ମୋ କଥା ଅନୁସାରେ ଉନ୍ମତ୍ତ ପୋଲିସ ଫୋର୍ସକୁ ସଂଯତ ରଖି ପାରିଥିବାରୁ ଗର୍ବ ଅନୁଭବ କଲି ।

ଛାତ୍ର ଆନ୍ଦୋଳନ ବନ୍ଦ ହେଲା ନାହିଁ । ଶେଷରେ ବୀରେନ ମିତ୍ରଙ୍କୁ ଇସ୍ତଫା ଦେବାକୁ ପଡ଼ିଲା (ଫେବ୍ରୁଆରୀ ୧୯୬୫) । ଏହିଠାରେ ତାଙ୍କ ସମ୍ବନ୍ଧରେ ଦୁଇ ଧାଡ଼ି ଲେଖୁଛି । ରେଭେନ୍ସାରେ ପଢ଼ିବା ଦିନରୁ ତାଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥାଏ । କେତେଥର କଲେଜ ସାମନା ସାଉଥ ଇଣ୍ଡିଆନ ହୋଟେଲରେ ତାଙ୍କୁ ଜଳଖିଆ ମଧ୍ୟ ଖୁଆଇଛି । ହରେକୃଷ୍ଣ ମହତାବଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ଓ ତା ପରେ ବିହାରୀବାଗରେ ରହି ବୀରେନବାବୁ ଅଖଣ୍ଡ କ୍ଷମତା ଭୋଗ କରୁଥିବା ଦେଖିଛି । ମନ୍ତ୍ରୀ ନ ହୋଇ ସୁଦ୍ଧା ସେ ଫୋନରେ କଲେକ୍ଟର କିମ୍ବା ପୋଲିସ କର୍ମକର୍ତ୍ତାମାନଙ୍କୁ ଆଦେଶ ଦେଉଥାନ୍ତି । ଅବଶ୍ୟ, ମେଧାବୀ ଛାତ୍ର ଓ ଅଭାବୀ ଲୋକଙ୍କୁ ଅକାତର ଭାବେ ସାହାଯ୍ୟ ଦେବା ଥାଏ ତାଙ୍କ ଚରିତ୍ରର ବିଶେଷତ୍ୱ । ଫୋନ୍ ଯୋଗେ କଟକର ବ୍ୟବସାୟୀ ବା ଦୋକାନୀମାନଙ୍କୁ ସେ ଅନ୍ୟମାନଙ୍କୁ ଅର୍ଥ ଦେବାକୁ ହୁକୁମ ଦେଉଥିଲେ । 'ତୁ' ବୋଲି ସମ୍ବୋଧନ କରିବା ଥାଏ ତାଙ୍କର ବ୍ୟକ୍ତିଗତ ଅଭ୍ୟାସ । ସେ ଥିଲେ ବାସ୍ତବିକ ଜଣେ ସରଳମନା ଓ ଉଦାରଚେତା ମନୁଷ୍ୟ ।

୧୯୫୭ ରେ ଲଣ୍ଡନରୁ ଫେରିଲା ପରେ ଦିନେ ସକାଳେ ତାଙ୍କ ବିହାରୀବାଗ ବାସଭବନକୁ ଯାଇଥାଏଁ । ସେ ବସିଥିବା କୋଠରିକୁ ଲାଗି ଆଉ ଗୋଟିଏ କୋଠରିରେ ଅନେକ ଲୋକ ବସିଥାନ୍ତି । ମୁଁ ପହଞ୍ଚିଲାବେଳେ ଦେଖିଲି, ଅଣଓଡ଼ିଆ ଦୁଇଜଣ ବୟସ୍କା ଭଦ୍ରମହିଳା ଗୋଟିଏ ବେଞ୍ଚରେ ବସିଛନ୍ତି । ସେମାନଙ୍କ ପରେ ଆସୁଥିବା ଲୋକେ ନିଜ ଇଚ୍ଛାରେ ବୀରେନ ବାବୁଙ୍କ ପାଖକୁ ଅବାଧରେ ଚାଲିଯାଇ କଥାବାର୍ତ୍ତା କରି ବାହାରି ଆସୁଥାନ୍ତି । ମହିଳାମାନଙ୍କ ଉପରେ ବୀରେନ ବାବୁଙ୍କ ଆଖି ବାରମ୍ବାର ପଡ଼ିଲେ ସୁଦ୍ଧା ସେମାନଙ୍କୁ ସେ ଡାକୁ ନଥାନ୍ତି ।

ପ୍ରାୟ ଘଣ୍ଟାଏ ସମୟ ବସିରହି ମୁଁ ଲୋକମାନଙ୍କ ଯିବା ଆସିବା ଦୃଶ୍ୟ ଦେଖିଲି । ବିଶୃଙ୍ଖଳାମୟ ପରିବେଶ ସହ୍ୟ କରି ନପାରି ଶେଷରେ ମୋ ବେଞ୍ଚରେ

ବସି ଉଚ୍ଚ ସ୍ୱରରେ କହିଲି, "ବୀରେନ୍‌ବାବୁ, ଅନେକ ସମୟ ବସିରହି ଏଠାକାର ଶୃଙ୍ଖଳାବୋଧ ଲକ୍ଷ୍ୟ କରୁଛି । ଦୟାକରି ପ୍ରଥମେ ଅପେକ୍ଷା କରିଥିବା ଭଦ୍ର ମହିଳା ଦୁଇଜଣଙ୍କୁ ଡାକିବା ଲାଗି ଅନୁରୋଧ ।" ତାଙ୍କ ଗର୍ଜନ ଶୁଭିଲା, "କାଲି ବିଲାତରୁ ଫେରି ଆଜି ତୁ ବୀରେନ ମିତ୍ରକୁ ଶୃଙ୍ଖଳା ଶିଖାଇବାକୁ ଚାଲିଆସିଲୁ ? ହେଉ, ସେମାନେ ଆସନ୍ତୁ ।" ଦୁଇ ମହିଳା ସଂକୋଚ ସହକାରେ ପାଖକୁ ଯାଇ ଖଣ୍ଡିଏ ଆବେଦନପତ୍ର ରଖିଦେଇ ଚାଲିଆସିଲେ । ତା ପରେ ମୋର ପାଳି । କିଛି ସମୟ ସୌଜନ୍ୟ, ଶାଳୀନତା ବିଷୟ ଉଲ୍ଲେଖ କଲି ଓ ସେ ସହାସ୍ୟ ବଦନରେ ସବୁ କଥା ହଜମ କଲେ । ତା ପରେ ଧୀର ଶାନ୍ତ ଭାବରେ କହିଲେ, "ବୁଝିଲୁ, ମୋ ଚାଲି ଚଳନରେ ମୁଁ ଚଳିବି । ଯାହାର ଦରକାର ସେ ଆଗେ ଆସିବ । ମୁଁ କାହିଁକି ଡାକିବି ? କାହିଁକି ପାତର ଅନ୍ତର କରିବି ?" ବୀରେନ ମିତ୍ରଙ୍କୁ ଉପଦେଶ ଦେବା ଓ ପାଣିରେ ରେଖା ଟାଣିବା ଏକା କଥା ବୋଲି ହୃଦ୍‌ବୋଧ ହେଲା ।

ମୁଖ୍ୟମନ୍ତ୍ରୀ ଥିଲା ସମୟରେ ଦିନେ ଡାକ ପାଇ ତାଙ୍କ ଭୁବନେଶ୍ୱର ବାସଭବନରେ ହାଜର ହେଲି । ବେଳ୍ ୩ଟା । ହତା ଭିତରେ ଓ ବାରଣ୍ଡା ଉପରେ ଭିଡ଼ ଜମିଥାଏ । ଗୋଲେଇ ଛକ ଫୁଟପାଥ୍ ଉପରେ ବି ଲୋକ । ଆଇ.ଏ.ଏସ୍ ଅଫିସାର ଓ ଫାଇଲଧାରୀ କିରାଣୀ ଦଳ ପାଖରୁ ଆରମ୍ଭ କରି କଂଗ୍ରେସ କର୍ମୀ ଓ ଛୋଟ ବଡ଼ ନେତାଙ୍କର ଅପୂର୍ବ ମିଶ୍ରଣସ୍ଥଳୀ ପରି ଜଣାଯାଉଥାଏ । ଜଣେ ସଚିବଙ୍କୁ ରହସ୍ୟ କରି ପଚାରିଲି, "ଯେଉଁଠି ବୀରେନ୍ ମିତ୍ର, ସେଇଟି ସଚିବାଳୟ ! ତାଙ୍କ ବାସଭବନ କ'ଣ ଓଡ଼ିଶାର ରାଜଧାନୀ ?"

ବାରଣ୍ଡାରେ ପୁରୁଣାକାଳିଆ କାଠ ଓ ବେତ ତିଆରି ମସ୍ତବଡ଼ ଆରାମ ଚେୟାରରେ ସେ ଲୁଙ୍ଗି ପିନ୍ଧି ଖାଲି ଦେହରେ ବସିଥାନ୍ତି । ଜଣେ ଲୋକ ହାତଦୁଇଟି ତାଙ୍କ ଗୋଡ଼ ପର୍ଯ୍ୟନ୍ତ ମେଲାଇ ରଖି ମୁହଁ ମାଡ଼ି ସୁଲମ୍ବିତ ଆକାରରେ ନିଶ୍ଚଳଭାବେ ଶୋଇ ରହିଥାଏ । ବାରଣ୍ଡାକୁ ଉଠିପଡ଼ି ମୁଁ କହିଲି, "ଦୟାପୂର୍ବକ ସେ ଲୋକଟିକୁ ଉଠିବାକୁ କହନ୍ତୁ !" "ଆରେ ମୁଁ କ'ଣ ତାକୁ ଶୋଇବାକୁ କହିଥିଲି ଯେ ଉଠିବାକୁ କହିବି," ଏତକ କହି ବୀରେନ୍‌ବାବୁ ମୋତେ ଭିତର ପ୍ରକୋଷ୍ଠକୁ ନେଇଗଲେ । ସେତେବେଳକୁ ପଛ ବାରଣ୍ଡାରୁ ଶ୍ରୀମତୀ ମିତ୍ରଙ୍କ ବିରକ୍ତିସୂଚକ ଭାଷା ଶୁଭୁଥାଏ । କେତେଜଣ ମହିଳା ଭିତରେ ପଶି ସେମାନଙ୍କ ଆପତ୍ତି ଅଭିଯୋଗ ଜଣାଉଥିବାରୁ ସେ ବିରକ୍ତ ହେଉଥିଲେ । ବୀରେନ୍‌ବାବୁ ସହସା ପଛକୁ ଚାଲିଯାଇ ସ୍ତ୍ରୀଙ୍କ ପ୍ରତି ଗାଳି ବର୍ଷଣ କରି ରାଗରେ କମ୍ପମାନ ଅବସ୍ଥାରେ ଫେରିଆସି ବିଛଣା ଉପରେ ବସିପଡ଼ି ନିଜ ନିଜକୁ କହିଗଲେ, "ଯାଙ୍କ ପାଇଁ ମୁଁ ଅନେକ

କିଛି କରିଛି, ଅନେକ, ଅନେକ, ଅନେକ । ଆରେ, ଲୋକ ଆସିବେ ବୋଲି ଏତେ ରାଗ, ଏତେ ଦୁଃଖ ! ମୋ ପକ୍ଷେ ସହ୍ୟ କରିବା କଷ୍ଟ !''

ସେ ତୁନି ପଡ଼ିଲା ପରେ ମୁଁ କହିଲି, ''ଏପରି ଉତ୍ତ୍ୟକ୍ତ ହେଲେ, ଆପଣ ହାର୍ଟ ଫେଲ୍ କରିବେ ।''

''ଠିକ୍ କହିଛୁ । ମୁଁ ହାର୍ଟଫେଲ୍‌ରେ ମରିବି । ମୁଁ ମରିଗଲେ ଓଡ଼ିଶା ଭାସିଯିବ, ଓଡ଼ିଶା ଭାସିଯିବ ରେ,'' ଏକା ଦମ୍‌ରେ କହିପକାଇଲେ ।

''ଆପଣ ନିଜ ବାସଘରକୁ ଯେପରି ଜନଗହଳି କରିଛନ୍ତି, ସେଥିରେ ଯେକୌଣସି ଗୃହିଣୀଙ୍କ ମୁଣ୍ଡ ଖରାପ ହେବ । ତେଣୁ, ଶ୍ରୀମତୀ ମିତ୍ରଙ୍କର ଦୋଷ ନାହିଁ, ଦୋଷ ଆପଣଙ୍କର । ଆପଣଙ୍କ ବାରଣ୍ଡା ହେଉଛି ରାଜ ଦରବାର । ମୋଗଲ ବାଦଶାହମାନଙ୍କ ଆଗରେ ଆପତ୍ତି ଦେବାକୁ ଆସି କେହି ପ୍ରଜା ପାଦତଳେ ଶୋଇବା ଦୃଶ୍ୟ କେହି ଦେଖି ନଥିବେ,'' ମୁଁ କହିଗଲି ।

''ଲେକ୍‌ଚାର ବନ୍ଦ କର । ମୁଁ ଡାକିଛି ଲାଇବ୍ରେରୀରୁ ତିନିଟା ଦରକାରୀ ବିଷୟରେ ଖବର ସଂଗ୍ରହ କରି ମୋତେ ୩ ଦିନ ଭିତରେ ଆଣି ଦେବୁ ।'' ଟେବୁଲରେ ଥିବା ଖଣ୍ଡିଏ କାଗଜ ଆଣି ମୋ ହାତରେ ଧରାଇ ଦେଇ ପୁଣି ଥରେ ସେ ବାରଣ୍ଡାରେ ବସିଗଲେ । ଲୋକଟି ସେତେ ପର୍ଯ୍ୟନ୍ତ ପୂର୍ବପରି ଶୋଇ ରହିଥାଏ ।

ମନୁଷ୍ୟର ଅହଂ ବୁଦ୍‌ବୁଦ ପରି ଫାଟିଯାଏ । ବୀରେନ ମିତ୍ର କାହିଁକି ଭାବୁଥିଲେ ଯେ ସେ ମରିଗଲେ 'ଓଡ଼ିଶା ଭାସିଯିବ', ସେ କଥାର ଅର୍ଥ ମୁଁ ଚିନ୍ତା କରି ପାରିଲି ନାହିଁ । ଅଳ୍ପ ଦିନ ପରେ ସେ କ୍ଷମତାରୁ ଖସିଲେ, ଅଥଚ ଓଡ଼ିଶା ରହିଲା । ଅପର ପକ୍ଷରେ ଆରମ୍ଭ ହେଲା ବୀରେନ ମିତ୍ରଙ୍କ ଦୁର୍ଦ୍ଦଶା । ଧନ ସମ୍ପତ୍ତି କୁଆଡ଼େ ଉଭେଇଗଲା । ଗୋଟିଏ ଦୁଇଟି କୋଠାଘର ମଧ୍ୟ ଅନ୍ୟମାନେ ଦଖଲ କଲେ । ତଥାପି ସେ ରାଜନୀତି ଛାଡ଼ିଲେ ନାହିଁ । କିନ୍ତୁ ଦୁରାରୋଗ୍ୟ ବ୍ୟାଧି ତାଙ୍କୁ ଗ୍ରାସ କଲା । ହସ୍‌ପିଟାଲରେ ପଡ଼ିଥିଲାବେଳେ ଅସହ୍ୟ ଶାରୀରିକ ଯନ୍ତ୍ରଣା ସାଙ୍ଗକୁ ମାନସିକ ଦୁଶ୍ଚିନ୍ତାରେ ସେ ମ୍ରିୟମାଣ ହୋଇ ପଡ଼ିଥିଲେ । ବନ୍ଧୁମାନେ ତାଙ୍କୁ ତ୍ୟାଗ କଲେ । ଯେଉଁମାନେ ତାଙ୍କ ଦୟାରେ ଲକ୍ଷପତି ହୋଇଥିଲେ, ସେମାନେ ମଧ୍ୟ ପାଖକୁ ଆସିଲେ ନାହିଁ । ଶଯ୍ୟାଶାୟୀ ରହି ନିଃସ୍ୱ ଅବସ୍ଥାରେ ଅନ୍ୟମାନଙ୍କୁ ସାହାଯ୍ୟ ମାଗୁଥିଲେ । ସେହିପରି ସମୟରେ ଦିନେ ମୋ ଫୋନ ବାଜିବାରୁ ବ୍ୟସ୍ତତା ମଧ୍ୟରେ ଉଠାଇଲି । ଅସ୍ପଷ୍ଟ ସ୍ୱରରେ ଶୁଭିଲା, ''ମନ୍ମଥ, ମୋତେ ଭୁଲିଗଲୁ ? ମୁଁ ଦାଦା କହୁଛିରେ, ଦାଦା ।'' କଣ୍ଠସ୍ୱର ଜାଣି ନପାରି ମୁଁ ବିରକ୍ତ ହୋଇ ପଚାରିଲି, ''ଆପଣ କିଏ ? କାହିଁକି ଏପରି କଥା କହୁଛନ୍ତି ?''

"ରାଗିଗଲୁ ? ମୁଁ ବୀରେନ୍ ମିତ୍ର କହୁଛିରେ, ତୋ ବୀରେନ ଦା । ମରିବାକୁ ବସିଛି । ମୋ ପୁଅ ତୋ ପାଖରେ ପଢୁଛି । ନଜର ରଖିବୁ । ଏମ୍.ଏ.ପାଶ କଲେ, ଗୋଟେ କଲେଜରେ ତାକୁ ରଖିଦେବୁ । ଏତିକି ମୋର ତୋତେ ଅନୁରୋଧ ।"

ଦେଖିବାକୁ ଯିବି ବୋଲି କେତେଥର ବାହାରିଥିଲି, କିନ୍ତୁ ଯାଇପାରିଲି ନାହିଁ । ଅକାଳରେ ସେ ଚାଲିଗଲେ । ତାଙ୍କ ପୁଅ ଏମ୍.ଏ.ପାଶ କଲା ପରେ ଗୋଟିଏ ପ୍ରାଇଭେଟ୍ କଲେଜରେ ଅଧ୍ୟାପକ ଚାକିରି ଯୋଗାଡ଼୍ କଲି । କିନ୍ତୁ ନୀଳମଣି ରାଉତରାୟ ପିଲାଟିକୁ ଅନ୍ୟ କୌଣସି କାମରେ ଲଗାଇଦେଲେ ।

## ପିତୃ ବିୟୋଗ

୧୯୬୪ ମସିହା ସମାବର୍ତ୍ତନ ଉତ୍ସବରେ ମୁଁ ଡ଼ି.ଲିଟ୍. ଡିଗ୍ରୀ ପାଇଲି । ଖବର ପାଇ ବାପା ଆନନ୍ଦରେ ବାଣୀବିହାର ଆସିଲେ । ତାହାର କେତେକ ମାସ ପରେ, ୧୯୬୫ ଅଗଷ୍ଟ ମାସରେ ଅକସ୍ମାତ ତାଙ୍କର ଦେହାବସାନ ଘଟିଲା । ଟେଲିଗ୍ରାମ ପାଇ ଘରେ ପହଞ୍ଚିଲି । ମନୋଜ ମଧ୍ୟ ପଣ୍ଡିଚେରୀରୁ ଆସିଲା । ମୋତେ ସମ୍ପୂର୍ଣ୍ଣ ଅସହାୟ ବୋଧ ହେଉଥାଏ । ଶ୍ରାଦ୍ଧ ସମୟରେ ଜଣେ ଜ୍ୟୋତିଷ ମୋତେ ସତର୍କ କରାଇଦେଲେ, "ପିତା ଥିଲେ ପୁତ୍ରର ରକ୍ଷାକବଚ । ତାଙ୍କ ବିୟୋଗ ପରେ ଏକ ବର୍ଷ ପାଇଁ ସାବଧାନ ରହିବେ । ଅନେକ ପ୍ରକାର ବିପଦ ଆସିବାର ସମ୍ଭାବନା ଅଛି ।"

ସତକୁ ସତ ଗୋଟିଏ ବର୍ଷ ମଧ୍ୟରେ ନାନା ପ୍ରକାର ବିପଦ ଓ ଦୁର୍ଘଟଣାର ସମ୍ମୁଖୀନ ହେଲି । ଗୋଟିଏ ଦୃଷ୍ଟାନ୍ତ ହେଉଛି । ବାପା ଘର ପାଖରେ ଥିବା ୧ ଏକର ଜମିରେ ତାଙ୍କ ନାମରେ ମାଇନର ସ୍କୁଲ ସ୍ଥାପନ କରିଥିଲେ । ମୃତ୍ୟୁ ପୂର୍ବରୁ ତାହାକୁ ହାଇସ୍କୁଲରେ ପରିଣତ କରିବେ ବୋଲି ଇଚ୍ଛା କରିଥିଲେ ଜାଣି, ଅବିଳମ୍ବେ ସେହି ଇଚ୍ଛା ପୂରଣ କଲି । ସ୍କୁଲ ଲାଗି ଦାନ କରିଥିବା ଜମି ଭିତରେ ଅନ୍ୟ ଜଣେ ଲୋକର ୪ ଡିସ୍‌ମିଲ ଭୂମି ଥାଏ । ସେଥିପାଇଁ ବାପାଙ୍କ ପାଖରୁ ପ୍ରାପ୍ୟ ଟଙ୍କା ନେଇଥିଲେ ସୁଦ୍ଧା ରେଜେଷ୍ଟ୍ରି ହୋଇ ନଥିଲା । ତେଣୁ, ଆଇନତଃ ସେ ଜମି ତାଙ୍କର ବୋଲି କହି ଦିନେ ଠିକ୍ ଦୁଇ ପ୍ରହର ବେଳେ ଚାରିଭାଇ ଜମି ଦଖଲ କରିବାକୁ ଆସିଗଲେ । ଘରର ମେନେଜାର ମାନଗୋବିନ୍ଦ ଦାସ ଅଧିକାରୀ ଦୌଡ଼ିଆସି ମୋତେ ଜମି ପାଖକୁ ଯିବାକୁ କହିଲେ । କିଛି ନ ଜାଣି ଓ କୌଣସି ସନ୍ଦେହ ନକରି ମୁଁ ତରତରରେ ସେଠାକୁ ଚାଲିଗଲି ।

ହାତରେ କୁରାଢ଼ି ଓ ଦାଉଲି ଧରି ଚାରିଭାଇ ମୋତେ ଆକ୍ରମଣ କରିବାକୁ ଘେରିଗଲେ । ମୁଁ ଏକାକୀ । ମୁଣ୍ଡ ଉପରେ କୁରାଢ଼ି ଆଘାତ ବସିବା ଆଶଙ୍କାରେ ମୁଁ ହଠାତ୍ ଜଣେ ଭାଇର ଗାଲରେ ଏପରି ଏକ ଶକ୍ତ ଚାପୁଡ଼ା ବସାଇ ଦେଲି

ଯେ ତାଙ୍କ ଦାନ୍ତ ପାଟିରୁ ରକ୍ତ ଝରିଲା । ଚିତ୍କାର କରି ସେ ପଛକୁ ହଟିଯିବା ଦେଖି ଅନ୍ୟ ଭାଇମାନେ ପଛଘୁଞ୍ଚା ଦେଲେ । ପାଟିକରି ପଚାରିଲି, "ଘଟଣା କିସ ନକହି ମୋତେ ମାରିଦେବାକୁ ଆସିଛ ? ଜାଣିଛ, କ'ଣ କରିବି ?"

ମୋ ନାମରେ ସେମାନେ ଫୌଜଦାରୀ ମୋକଦ୍ଦମା ଦାଏର କଲେ । ଶଶିକାନ୍ତ ଭଞ୍ଜ ଓ ପ୍ରଶାନ୍ତ କୁମାର ଚାନ୍ଦଙ୍କୁ ଓକିଲ ନିଯୁକ୍ତ କରି ସେମାନଙ୍କ ସାଙ୍ଗରେ ବାଲେଶ୍ୱର କୋର୍ଟରେ ହାଜର ହେବାକୁ ଗଲି । ଜଗଦୀଶ ତ୍ରିପାଠୀ ନାମକ ମାନ୍ୟବର ଜଜ୍‌ଙ୍କ ପ୍ରକୋଷ୍ଠରେ ବିଚାର ଥାଏ । ଆସାମୀକୁ ଦେଖିବା ଲାଗି କୌତୂହଳୀ ଲୋକଙ୍କ ଭିଡ଼ ଲାଗିଥାଏ । ଭିତରକୁ ପଶିଲା ବେଳେ ଦୁଇ ଓକିଲଙ୍କୁ ସ୍ପଷ୍ଟ ଭାବରେ ଶୁଣାଇଲି, "ଆତ୍ମରକ୍ଷା ଲାଗି ଅଗତ୍ୟା ଲୋକଟିକୁ ମାରିଛି ବୋଲି ମୁଁ ସ୍ୱୀକାର କରିବି । ଜେଲ ହେଲେ, ଦୁଃଖ ନାହିଁ ।" ସଙ୍ଗେ ସଙ୍ଗେ ପ୍ରଶାନ୍ତବାବୁ ମାନ୍ୟବର ଜଜ୍‌ଙ୍କ ଆଗରେ ଆବେଦନ ପେଶ୍ କଲେ, "ଆସାମୀ ହାଜର ହେବା ଆପଣ ଦେଖିଲେ । ଏଣିକି ଆମେ ତାଙ୍କର କେସ୍ ଲଢ଼ିବୁଁ । ତାଙ୍କୁ ଅବ୍ୟାହତି ମିଳୁ ।" ଜଜ୍ ମହୋଦୟ ସମ୍ମତି ଦେଲେ ।

କିଛି ଦିନ ପରେ ପ୍ରଶାନ୍ତବାବୁଙ୍କ ବିଚକ୍ଷଣ ବୁଦ୍ଧିର ପ୍ରମାଣ ପାଇଲି । ସ୍ଥାନୀୟ କେତେଜଣ ଭଦ୍ରବ୍ୟକ୍ତିଙ୍କ ସାହାଯ୍ୟରେ ଓ ମୋ ଅଜଣାରେ, ସେ ଚାରିଭାଇଙ୍କ ଉପରେ ଏପରି ଗୁଡ଼ାଏ ଓଲଟା କେସ୍ ଆରମ୍ଭ କରିଦେଲେ ଯେ ଦିନେ ରାତି ପାହିଲା ବେଳକୁ ବାଣୀବିହାର ବସାରେ ବଡ଼ ଭାଇ ପହଞ୍ଚିଯାଇ ଦୁଃଖରେ ଭାଙ୍ଗିପଡ଼ିଲେ । ଜମି ଚାରି ଡେସିମିଲ୍ ସ୍କୁଲ ନାମରେ ରେଜେଷ୍ଟ୍ରି କରିବା ସହ କେସ୍ ଉଠାଇ ନେଇ ସେମାନେ ବିପଦରୁ ମୁକ୍ତି ପାଇଛନ୍ତି ବୋଲି ଶୁଣିଲି ।

ଜଣା ଯାଉଥାଏ, ପିତାଙ୍କ ମୃତ୍ୟୁପରେ ଏପରି ଦୁର୍ଯୋଗ ବୋଧହୁଏ ସ୍ୱାଭାବିକ । ଦୁଇଥର କାର ଦୁର୍ଘଟଣାରୁ ଅଳ୍ପକେ ବର୍ତ୍ତିଯିବା, ଜମିବାଡ଼ି ପ୍ରତି ଆଶଙ୍କା ଦେଖାଦେବା ଓ ସାଗର ଦ୍ୱୀପରେ ଭୂସମ୍ପତ୍ତି ବିଲୀନ ହେବା ପ୍ରଭୃତି ଘଟଣାମାନ ମୋତେ ବିବ୍ରତ କରି ରଖିଲା ।

## ଓଡ଼ିଶା ଇତିହାସ କଂଗ୍ରେସ ଗଠନ (୧୯୬୯)

ବ୍ରିଟିଶ୍ ଯୁଗରେ ପାଶ୍ଚାତ୍ୟ ଐତିହାସିକ ଓ ପ୍ରାଚ୍ୟବିଦ୍ୟାବିଦ୍‌ମାନେ ଭାରତର କେତେଗୋଟି ନିର୍ଦ୍ଦିଷ୍ଟ ଅଞ୍ଚଳ ପ୍ରତି ଯଥାଯୋଗ୍ୟ ଧ୍ୟାନ ଦେଇଥିଲାବେଳେ, ଓଡ଼ିଶା ପ୍ରତି ଯଥେଷ୍ଟ ଅବହେଳା ଦେଖାଇଥିଲେ । ଏପରିକି, ଓଡ଼ିଶା ଅଧିକାରର ଶହେ ବର୍ଷ ପରେ ବ୍ରିଟିଶ ସରକାର କୋଣାର୍କ ମନ୍ଦିର ପ୍ରତି ଦୃଷ୍ଟି ପକାଇଲେ । ସେତେବେଳେ ଓଡ଼ିଶା ଥାଏ କେବଳ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା । ଗଡ଼ଜାତ ଅଞ୍ଚଳ

ପୃଥକ ଥାଏ । ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର ଅଞ୍ଚଳ ଥାଏ ଅନ୍ୟ ପ୍ରଦେଶରେ । ସାହିତ୍ୟ, ସ୍ଥାପତ୍ୟ, କଳା, ଭାସ୍କର୍ଯ୍ୟ, ରାଜନୈତିକ ସାମ୍ରାଜ୍ୟ, ପ୍ରାଚୀନ ଓ ମଧ୍ୟଯୁଗୀୟ ରାଜବଂଶଗୁଡ଼ିକର କୀର୍ତ୍ତି ଓ କୃତିତ୍ୱ, ଉତ୍କଳବାସୀଙ୍କ ଅପୂର୍ବ କଳାକୌଶଳ ଇତ୍ୟାଦିରେ ପରିପୂର୍ଣ୍ଣ ଥିବା ସୁମହାନ ଅତୀତ ଓ ଐତିହ୍ୟ ଅନ୍ଧକାର ଗର୍ଭରେ ଲୁଚି ରହିଥାଏ । ସଂକ୍ଷେପରେ, ଐତିହାସିକ ଉପାଦାନର ପ୍ରାଚୁର୍ଯ୍ୟ ସତ୍ତ୍ୱେ, ଐତିହାସିକ ଗବେଷଣାର ଗତି ଶିଥିଳ ଥାଏ । ଅପର ପକ୍ଷରେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଗଡ଼ଜାତ ମିଶ୍ରଣ ଓ ସ୍ୱାଧୀନତା ପ୍ରାପ୍ତି ପ୍ରଭୃତି ଘଟଣାବଳୀର ପରିପ୍ରେକ୍ଷୀରେ ସାମୂହିକ ଓ ଆଞ୍ଚଳିକ ଇତିହାସ ପ୍ରତି କ୍ରମାନ୍ୱୟ ଭାବେ ଆଗ୍ରହ ବଢ଼ି ଚାଲିଥାଏ ।

ଉତ୍କଳ ବିଶ୍ୱବିଦ୍ୟାଳୟର ମୁଖ୍ୟ ଇତିହାସ ଅଧ୍ୟାପକ ଭାବେ ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ରହିବା ଉଚିତ ମନେ କଲି । ପ୍ରଥମରୁ ନିଜ ତତ୍ତ୍ୱାବଧାନରେ କେତେକ ଅଧ୍ୟାପକଙ୍କୁ ଗବେଷଣାରେ ନିଯୁକ୍ତ କରି ସେମାନଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହେଲି । କ୍ରମେ କ୍ରମେ ତରୁଣ ଅଧ୍ୟାପକମାନଙ୍କ ମନରେ ଗବେଷଣା ଲାଗି ଆଗ୍ରହ ବଢ଼ିଚାଲିଲା । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ଐତିହ୍ୟ ଉପରେ ଆଲୋକପାତ କରିବା ନିମନ୍ତେ ସଂଘବଦ୍ଧ ଉଦ୍ୟମ ଆବଶ୍ୟକ ହେଲା । କଲେଜ ସଂଖ୍ୟା ବଢ଼ି ଚାଲିଥାଏ, ସେଥି ସଙ୍ଗେ ଇତିହାସ ଅଧ୍ୟାପକମାନଙ୍କ ସଂଖ୍ୟା । ୧୯୬୭ ମସିହା ବେଳକୁ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ବିଶ୍ୱବିଦ୍ୟାଳୟ ଓ କଲେଜଗୁଡ଼ିକର ଇତିହାସ ଅଧ୍ୟାପକଙ୍କ ସମେତ ମିଉଜିୟମ ଓ ଅଭିଲେଖାଗାରର କର୍ମକର୍ତ୍ତାମାନଙ୍କୁ ଏକତ୍ରିତ କରି ଏବଂ ପ୍ରତ୍ନତତ୍ତ୍ୱବିଦ୍ ଓ ଶିଳାଲେଖବିଦ୍‌ମାନଙ୍କୁ ନେଇ ଓଡ଼ିଶା ଇତିହାସ କଂଗ୍ରେସ ଗଠନ ନିମନ୍ତେ ପ୍ରେରଣା ଆସିଗଲା । ସେଥିପାଇଁ ଉଦ୍ୟମ ଚଳାଇ ଅନ୍ୟମାନଙ୍କୁ ଆକର୍ଷିତ କରିପାରିଲି । ଡକ୍ଟର କିଶୋରୀ ମୋହନ ପାତ୍ର ଓ ଅନ୍ୟ ସହକର୍ମୀମାନେ ମୋତେ ଅଶେଷ ସାହାଯ୍ୟ କଲେ ।

୧୯୬୯ ଏପ୍ରିଲ ମାସରେ ବାଣୀବିହାର ଠାରେ ଆନୁଷ୍ଠାନିକ ଭାବେ ଓଡ଼ିଶା ଇତିହାସ କଂଗ୍ରେସ ଉଦ୍‌ଘାଟିତ ହେଲା । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ପୂର୍ବତନ ବଲାଙ୍ଗୀର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ସଂଗଠନ ଉଦ୍‌ଘାଟନ କରିବାକୁ ଆସିଲେ । ହରେକୃଷ୍ଣ ମହତାବ, ରାଧାନାଥ ରଥ, ଅନେକ ମାନ୍ୟଗଣ୍ୟ ବ୍ୟକ୍ତି, ବାହାରୁ ଆସିଥିବା ବିଶିଷ୍ଟ ଐତିହାସିକ ଓ ଓଡ଼ିଶାର ଇତିହାସ ଅଧ୍ୟାପକମାନଙ୍କ ଉପସ୍ଥିତିରେ ପ୍ରାରମ୍ଭିକ ସୂଚନା ଦେଲାବେଳେ ଅନେକ ବିଷୟର ପୃଷ୍ଠଭୂମି ବର୍ଣ୍ଣନା କରିବାକୁ ହେଲା । ସେଥିମଧ୍ୟରେ ଏପରି କଥାଟିଏ ଉଲ୍ଲେଖ କଲି, ଯାହା ଯୋଗୁଁ ମହାରାଜା ବିଶେଷ କ୍ଷୁବ୍ଧ ହେଲେ ।

କଥାଟି ଥିଲା ଏହି ପ୍ରକାର । ଥରେ ଇଂଲଣ୍ଡର ଏକ ଆର୍କାଇଭସ୍‌ରେ ଗଚ୍ଛିତ ଥିବା ଓଡ଼ିଶାର କେତୋଟି ରାଜବଂଶ ସହିତ ବ୍ରିଟିଶ ସରକାରଙ୍କ ପତ୍ରବିନିମୟ

ଭଲ୍ୟୁମ୍‌ଗୁଡ଼ିକ ଦେଖିଥିଲି । ଅଧିକ ସଂଖ୍ୟକ ଚିଠିପତ୍ର ଥିଲା ବଲାଙ୍ଗୀର ରାଜବଂଶ ସହିତ । ଗତ ଶତାବ୍ଦୀର କାଗଜପତ୍ର । ବ୍ରିଟିଶ ସରକାର ସେ ସମୟର ମହାରାଜାମାନଙ୍କ ନିକଟରୁ ଆଦିବାସୀ ସମ୍ପ୍ରଦାୟଗୁଡ଼ିକର ସାମାଜିକ ରୀତିନୀତି, ଧର୍ମବିଶ୍ୱାସ, ଆଚାର ବ୍ୟବହାର, କୁସଂସ୍କାର, ପ୍ରଚଳିତ ବିବିଧ ପ୍ରଥା ଇତ୍ୟାଦି ବିଷୟରେ ଜାଣିବା ପାଇଁ ପତ୍ର ଲେଖୁଥିଲେ ଓ ମହାରାଜାଙ୍କ କର୍ମଚାରୀମାନେ ତଥ୍ୟ ସଂଗ୍ରହ ପୂର୍ବକ ସମସ୍ତ ପ୍ରକାର ବିବରଣୀ ଦାଖଲ କରୁଥିଲେ । ତଥ୍ୟଗୁଡ଼ିକ ଦେଖି ଜାଣିଲି, ସେଥିରେ ଓଡ଼ିଶାର ଆଦିବାସୀ ସମାଜର ଚରିତ୍ର ପାଞ୍ଜଳ ଭାବରେ ବର୍ଣ୍ଣିତ ଅଛି । ଭାବିଲି, ମହାରାଜାଙ୍କ ରାଜପ୍ରାସାଦରେ ପ୍ରାଚୀନ ପତ୍ରବିନିମୟ ଫାଇଲଗୁଡ଼ିକ ସୁରକ୍ଷିତ ଥିବ । ଲଣ୍ଡନରୁ ଫେରିଲା ପରେ ଥରେ ମହାରାଜାଙ୍କ ସହିତ ଗୋଟିଏ ମିଟିଂରେ ଦେଖା ହେଲାବେଳେ ସେ କଥା କହିଲି । ନିଃସଙ୍କୋଚ ଚିତ୍ତରେ ସେ ସେତେବେଳେ ମୋତେ ଜଣାଇଥିଲେ, ''ରାଜ୍ୟ ଚାଲିଗଲା ପରେ ପୂର୍ବକାଳର ସବୁ କାଗଜପତ୍ର ପୋଡ଼ି ଦିଆଯାଇଛି ।'' ତାଙ୍କ ଉକ୍ତି ଶୁଣି ସ୍ତମ୍ଭିତ ହୋଇଥିଲି, କିନ୍ତୁ କିଛି କହିପାରି ନ ଥିଲି ।

ଇତିହାସ କଂଗ୍ରେସର ଉଦଘାଟନ ଉତ୍ସବରେ ସେହି ବିଷୟ ଉଲ୍ଲେଖ କରି କହିଲି, ''ଓଡ଼ିଶାର ଅକଳନ୍ତି ଐତିହାସିକ ଦଲିଲ ଦସ୍ତାବିଜ ଧ୍ୱଂସ ପାଇଯାଉଛି । ପୁରାତନ ରାଜବଂଶ, ଜମିଦାର ବଂଶ, ମଠ, ମନ୍ଦିର ଓ ଅନୁଷ୍ଠାନଗୁଡ଼ିକର କାଗଜପତ୍ରର ରକ୍ଷଣାବେକ୍ଷଣ ପରିବର୍ତ୍ତେ, ସେ ସବୁ ଜାଣିଶୁଣି ନଷ୍ଟ କରି ଦିଆଯାଉଛି । ବଲାଙ୍ଗୀର ମହାରାଜା ନିଜେ ମୋତେ କହିଛନ୍ତି ଯେ, କ୍ଷମତା ହସ୍ତାନ୍ତର ସମୟରେ ତାଙ୍କ ରାଜ୍ୟର ଶାସନ ସମ୍ପର୍କୀୟ ପର୍ଯ୍ୟାପ୍ତ ପୁରାତନ କାଗଜ ଗଦାରେ ସେ ନିଆଁ ଲଗାଇଦେଇଥିଲେ । ମୋ ମତରେ, ସେପରି କାର୍ଯ୍ୟଦ୍ୱାରା ସେ ନିଜ ପୂର୍ବପୁରୁଷମାନଙ୍କର ଅବମାନନା ସହ ଉତ୍ତରପୁରୁଷ ପ୍ରତି ଅବିଚାର କରିଛନ୍ତି । ବ୍ରିଟିଶ ଯୁଗର ଅପରିମିତ ତଥ୍ୟ ପାଉଁଶଗଦାରେ ପରିଣତ କରି ସେ କ'ଣ ଆଶା କରିପାରିବେ ଯେ, ଭବିଷ୍ୟତରେ ବଲାଙ୍ଗୀର ରାଜ୍ୟର ଇତିହାସ ରଚନା ସମ୍ଭବ ହେବ ? ଏହିପରି କେତେ ଧ୍ୱଂସଲୀଳା ଯେ ଚାଲିଛି ଓ ଐତିହାସିକ ଉପାଦାନମାନ ନଷ୍ଟ ହୋଇଯାଉଛି, ତା'ର କଳନା ନାହିଁ । ମୋର ଅନୁମାନ, ସବୁ ରାଜାମାନେ ଏହାହିଁ କରିଥିବେ ।''

ପରେ ଶୁଣିବାକୁ ପାଇଲି, ରାଜେନ୍ଦ୍ର ନାରାୟଣ ସିଂହଦେଓ ମୋ ଉପରେ ଭୀଷଣ ବିରକ୍ତ ହୋଇ କହିଥିଲେ, ''ଉଦ୍‌ଘାଟନ କରିବା ପାଇଁ ଡାକିନେଇ ମୋତେ ଭର୍ତ୍ସନା କରାଗଲା ।'' ସେ ଯାହାହେଉ, ମହତ୍ ଉଦ୍ଦେଶ୍ୟ ସହ ଯେଉଁ ଇତିହାସ କଂଗ୍ରେସ ଗଠିତ ହୋଇଥିଲା, ତାହାର କ୍ରମାନ୍ୱୟ ଅଭିବୃଦ୍ଧି ଦେଖି

ଗର୍ବ ଅନୁଭବ କରିଛି । ଇତିହାସ ଅଧ୍ୟାପକ ଓ ଛାତ୍ରମାନେ ଏହି ସଂଗଠନ ଠାରୁ ଗବେଷଣା ନିମନ୍ତେ ଯଥେଷ୍ଟ ପ୍ରେରଣା ପାଇ ପାରିଛନ୍ତି ।

## ସିଂହଦେଓଙ୍କ ସମ୍ପର୍କରେ ଭିନ୍ନ ଏକ କଥା

ସେ ଦିନ ଥାଏ ୧୯୬୯ ମସିହା ଅକ୍ଟୋବର ୧ ତାରିଖ । ଭାରତର ଆପାଦମସ୍ତକରେ ମହାତ୍ମା ଗାନ୍ଧିଙ୍କ ଜନ୍ମ ଶତବାର୍ଷିକୀ ଜୟନ୍ତୀ ତହିଁ ପରଦିନ ଅକ୍ଟୋବର ୨ ତାରିଖରେ ମହା ସମାରୋହରେ ପାଳନ କରାଯିବା ଲାଗି ଆୟୋଜନ ଚାଲିଥାଏ । ସେତେବେଳେ ଓଡ଼ିଶାରେ ଚାଲିଥାଏ ଛାତ୍ର ଧର୍ମଘଟ । କୋଡ଼ିଏରୁ ଅଧିକସଂଖ୍ୟକ ଛାତ୍ରନେତାଙ୍କୁ ଗିରଫ କରି ସରକାର ଜେଲରେ ରଖିଥାନ୍ତି । ଧର୍ମଘଟ ବଢ଼ି ଚାଲିଥାଏ । ଛାତ୍ରମାନଙ୍କର ଦାବି, ପ୍ରଥମେ ନେତାମାନଙ୍କୁ ମୁକ୍ତି ଦିଆଯାଉ, ତା ପରେ ସମାଧାନ । ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଜିଦ୍ ଥାଏ, ଆଇନ ଅନୁସାରେ ବିଚାର ହେବ, ଜେଲରୁ ଛଡ଼ାଯିବ ନାହିଁ । କଲେଜ ଅଧ୍ୟକ୍ଷମାନଙ୍କର ବାରମ୍ବାର ମିଟିଂ ବସୁଥାଏ । ଛାତ୍ରମାନଙ୍କୁ ବୁଝାଇବାକୁ ସବୁ ଚେଷ୍ଟା ବିଫଳ ହେଉଥାଏ । ମୁଖ୍ୟମନ୍ତ୍ରୀ ଅଟଳ ରହିଲାବେଳକୁ ଛାତ୍ରମାନେ ମଧ୍ୟ ଅଟଳ । ସିଂହଦେଓ ଦେଖାଇବାକୁ ଚାହୁଁଥାନ୍ତି ଯେ, ସେ ଜଣେ ବଳିଷ୍ଠ ବ୍ୟକ୍ତି, ଧର୍ମଘଟକୁ ଡରିବା ଲୋକ ନୁହନ୍ତି ।

ମୋ ମନକୁ ଅକସ୍ମାତ ଗୋଟିଏ ଚିନ୍ତା ଆସିଲା । ମହାରାଜାଙ୍କ ପାଖକୁ କେତୋଟି ଧାଡ଼ି ଟାଇପ୍ କଲି–"ମୁଖ୍ୟମନ୍ତ୍ରୀ ମହୋଦୟ, ଆଗାମୀ କାଲି ଅକ୍ଟୋବର ୨ ତାରିଖ । ପବିତ୍ର ଗାନ୍ଧି ଜୟନ୍ତୀ ଉପଲକ୍ଷେ ଆପଣ ଯଦି ଛାତ୍ରନେତାମାନଙ୍କୁ ଜେଲରୁ ମୁକ୍ତି ଦିଅନ୍ତି, ତେବେ ଆପଣଙ୍କ ଶାସନଦକ୍ଷତା ପ୍ରତି ଆଞ୍ଚ ଆସିବା ପରିବର୍ତ୍ତେ ଉଦାରତାର ପରିଚୟ ମିଳିବ । ଆଶାକରେ, ଆଗାମୀ ଦିବସର ମହତ୍ତ୍ୱ ଉପଲବ୍ଧି ପୂର୍ବକ ଆପଣ ଏପରି ପଦକ୍ଷେପ ବିଷୟ ଚିନ୍ତା କରିବେ ।"

ଚିଠିଟି ନେଇ ତାଙ୍କ ବାସଭବନରେ ଅପରାହ୍ନ ୫ଟା ବେଳେ ପହଞ୍ଚିଲି । ଗେଟ୍ ପାଖରେ କେତେଜଣ ବରିଷ୍ଠ କଲେଜ ଅଧ୍ୟକ୍ଷଙ୍କୁ ବାହାରି ଆସିବା ଦେଖିଲି । ସମାଧାନ ସୂତ୍ର ବାହାର କରିବା ଲାଗି ଆହୂତ ମିଟିଂରୁ ବିଫଳ ହୋଇ ଫେରୁଥିଲେ । ଜଣେ ଅଧ୍ୟକ୍ଷ ଦୁଃଖ କରି କହିଲେ, "ଜିଦ୍‌ଖୋର ମୁଖ୍ୟମନ୍ତ୍ରୀ ପିଲାମାନଙ୍କୁ ଜେଲରୁ ମୁକ୍ତି ଦେବାକୁ ରାଜି ହେଲେ ନାହିଁ । ତାଙ୍କ କଥାରେ, ଶାସନ ହେଉଛି ଶାସନ । ଭାବିଛନ୍ତି, ଆଗକାଳର ଗଡ଼ଜାତୀ ଶାସନ ଚଳାଇବେ ।"

ମୁଁ ଭିତରକୁ ପଶିଲି । ମୁଖ୍ୟମନ୍ତ୍ରୀ ଉପର ତାଲାକୁ ଚାଲିଯାଇଥାନ୍ତି । ସିଡ଼ିରେ ଉଠିଲି । ତାଙ୍କର ବ୍ୟକ୍ତିଗତ ସଚିବ ଯୁଗଳକିଶୋର ଥିଲେ ମୋର ଛାତ୍ର ।

ତାଙ୍କୁ ଦୁଆର ପାଖରେ ଦେଖି କହିଲି, ‘‘ଯୁଗଳ, ମୋ ଚିଠିଖଣ୍ଡିକ ମୁଖ୍ୟମନ୍ତ୍ରୀଙ୍କୁ ଦିଅ । ମୁଁ ଦେଖା କରିବି ନାହିଁ । ଫେରି ଯାଉଛି ।’’

ସନ୍ଧ୍ୟା ୬ଟାରେ ବାଣୀବିହାରରେ ପହଞ୍ଚିଲି । ୬ଟା ୨୦ ମିନିଟରେ ଆଞ୍ଚଳିକ ସଂବାଦରେ ଘୋଷଣା କରାଗଲା, ‘‘ପବିତ୍ର ଗାନ୍ଧି ଜୟନ୍ତୀ ଉପଲକ୍ଷେ ଅକ୍ଟୋବର ୨ ତାରିଖ ପ୍ରତ୍ୟୁଷରେ ବିନା ସର୍ତ୍ତରେ ଛାତ୍ରନେତାମାନଙ୍କୁ ଜେଲରୁ ମୁକ୍ତିଦେବା ଲାଗି ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।’’

## ସୀମାନ୍ତ ଗାନ୍ଧିଙ୍କ ଦର୍ଶନ ଲାଭ

୧୯୬୯ରେ ଗାନ୍ଧି ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଭାରତ ସରକାର ସୀମାନ୍ତ ଗାନ୍ଧି ଖାଁ ଅବଦୁଲ୍ ଗଫାର ଖାଁଙ୍କୁ ଏ ଦେଶର ନାନା ସ୍ଥାନରେ ଜନସାଧାରଣଙ୍କୁ ଦେଖା ଦେବା ଲାଗି ଓ ଭାରତବାସୀଙ୍କ ନିକଟରୁ ସମ୍ବର୍ଦ୍ଧନା ପାଇବା ନିମନ୍ତେ ଆମନ୍ତ୍ରଣ କରି ଆଣିଥିଲେ । ସୀମାନ୍ତ ଗାନ୍ଧିଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ଉଚ୍ଛ୍ୱସିତ ଅଭ୍ୟର୍ଥନା ଦେବାର ଦାୟିତ୍ୱ କୁଳପତି ସଦାଶିବ ମିଶ୍ର ମୋ ହାତରେ ନ୍ୟସ୍ତ କଲେ । ସେହି ଅବକାଶରେ ସେହି ମହାନ ସଂଗ୍ରାମୀଙ୍କ ଗହଣରେ କେତେ ଘଣ୍ଟା କଟାଇବାର ସୌଭାଗ୍ୟ ପାଇଲି । ରାଜଭବନରୁ ନିଜ ଗାଡ଼ିରେ ତାଙ୍କୁ ବାଣୀବିହାର ଆଣିଲି । ପ୍ରେକ୍ଷାଗୃହ ଭର୍ତ୍ତି ଥାଏ । ଛାତ୍ରଛାତ୍ରୀଙ୍କ ଆଗରେ ତାଙ୍କର ଐତିହାସିକ ଭୂମିକା ବର୍ଣ୍ଣନା କଲି । ତାଙ୍କ ସଂକ୍ଷିପ୍ତ ଭାଷଣରେ ସେ କହିଥିଲେ, ‘‘ମହାତ୍ମା ଗାନ୍ଧିଙ୍କର ମୁଁ ଥିଲି ଜଣେ ସିପାହୀ । ସୀମାନ୍ତ ପ୍ରଦେଶର ପଠାଣ ଜାତି ତାଙ୍କ ଅହିଂସା ନୀତିରେ ବିଶ୍ୱାସ ରଖି ସ୍ୱାଧୀନତା ଲଢ଼ାଇରେ ଝାସ ଦେଇଥିଲେ । ଭାରତର ମୁକ୍ତି ଲାଗି ଆମେ ଲଢ଼ିଥିଲୁଁ । ଏ ଦେଶର ସମସ୍ତେ ମୋର ପ୍ରିୟ ।’’

ସ୍ଥବିରତା ଆସିଯାଇଥିଲେ ସୁଦ୍ଧା, ତାଙ୍କର ବିଶାଳ ବପୁ, ପ୍ରଶାନ୍ତ ମୁଖମଣ୍ଡଳ, ସୁଦୀର୍ଘ ନାସିକା ଓ ଦେହର ତେଜ ଦେଖି ଆଚମ୍ୱିତ ହେଲି । ଦେଶ ବିଭାଜନ ପରେ, ଏହି ମହାନ୍ ଭାରତୀୟଙ୍କ ପ୍ରତି ପାକିସ୍ତାନୀ ସରକାର ଯେଉଁ ପ୍ରକାର ଦୁର୍ବ୍ୟବହାର କରିଥିଲେ, ତାହା ଅବର୍ଣ୍ଣନୀୟ । ତଥାପି ତାଙ୍କର ମନୋବଳ ସୁଦୃଢ଼ ଥିଲା । ସାରାଜୀବନ ସେ ଭାରତ ପ୍ରତି ମମତାବଦ୍ଧ ଥିଲେ ।

ଛାତ୍ରସଂସଦର ଉପଦେଷ୍ଟା ଭାବେ ଅନେକ ବଡ଼ ବଡ଼ ବ୍ୟକ୍ତିଙ୍କ ସହିତ ସାକ୍ଷାତ୍ ସୁଯୋଗ ମିଳୁଥାଏ । ସେମାନଙ୍କ ମଧ୍ୟରେ ଥା’ନ୍ତି ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ଆଚାର୍ଯ୍ୟ ଜେ.ବି.କୃପାଳନି, ଜେନେରାଲ କେ.ଏମ୍.କାରିଆପ୍ପା, ଡକ୍ଟର ଜାକିର ହୁସେନ୍, ଭି.ଭି.ଗିରି ଓ କୃଷ୍ଣ ମେନନ ପ୍ରଭୃତି । ପ୍ରତ୍ୟେକଙ୍କର ଚାଲିଚଳଣ ତୀକ୍ଷ୍ଣ ଦୃଷ୍ଟିରେ ଅନୁଧ୍ୟାନ କରୁଥାଏଁ ଓ ସେମାନଙ୍କ କଥାବାର୍ତ୍ତା ମନେ ରଖୁଥାଏଁ ।



ମଦାର ଟେରେସାଙ୍କ ସହିତ ଲେଖକ

# ଅଷ୍ଟ୍ରେଲିଆ ଯାତ୍ରା (୧୯୭୧)



## ଭ୍ରମଣ ବେଳର ଅନୁଭୂତି

### ଅଷ୍ଟ୍ରେଲିଆ ଯାତ୍ରା ଲାଗି ପ୍ରସ୍ତୁତି

ବିବିଧ ପ୍ରକାର ଆନ୍ତର୍ଜାତିକ ସମ୍ମେଳନ ମଧ୍ୟରେ ବିଶ୍ୱ-ପ୍ରାଚ୍ୟବିଦ୍ୟାବିଦ୍ କଂଗ୍ରେସ ବା International Congress of World Orientalists ର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ଏଥିରେ ପୃଥିବୀର ଅଧିକାଂଶ ଦେଶର ବିଦ୍ୱାନ ଓ ବିଶେଷଜ୍ଞମାନେ ପ୍ରାଚ୍ୟବିଦ୍ୟାର ବିଭିନ୍ନ ଦିଗ, ଯଥା– ପ୍ରାଚୀନ ଧର୍ମ, ଦର୍ଶନ, ସାହିତ୍ୟ, ସମାଜ, ସଂସ୍କୃତି, କଳା, ସ୍ଥାପତ୍ୟ, ପାରସ୍ପରିକ ସମ୍ପର୍କ ଓ ବାଣିଜ୍ୟ ବ୍ୟବସାୟ ଇତ୍ୟାଦି ବିଷୟରେ ଆଲୋଚନା କରନ୍ତି । ପ୍ରତ୍ୟେକ ଚାରିବର୍ଷ ଅନ୍ତରରେ କଂଗ୍ରେସର ଅଧିବେଶନ ବସେ । ପ୍ରାୟ ଦୁଇସହସ୍ର ପ୍ରତିନିଧି ସମବେତ ହୁଅନ୍ତି ଓ ଏକତ୍ର ଅବସ୍ଥାନ ସୁଯୋଗରେ ପରସ୍ପର ଭାବ ଆଦାନ ପ୍ରଦାନ କରନ୍ତି ।

୧୯୭୦ ମସିହା ଜୁଲାଇ ମାସରେ ସଂବାଦ ମିଳିଲା, କଂଗ୍ରେସର ପରବର୍ତ୍ତୀ ଅଧିବେଶନ ବସିବ ଅଷ୍ଟ୍ରେଲିଆର ରାଜଧାନୀ କ୍ୟାନବେରା ସହରରେ, ୧୯୭୧ ଜାନୁଆରୀ ମାସରେ । ସେଥିରେ ଯୋଗ ଦେବା ଲାଗି ପ୍ରବଳ ଆଗ୍ରହ ହେଲା । କିନ୍ତୁ ଇଚ୍ଛା ପୂରଣ ସହଜସାଧ୍ୟ ନଥାଏ । ପ୍ରଥମେ, କୌଣସି ଏକ ମୌଳିକ ବିଷୟରେ ତଥ୍ୟମୂଳକ ପ୍ରବନ୍ଧ ଲେଖି ତାହାର ସାରାଂଶ କଂଗ୍ରେସର କର୍ମକର୍ତ୍ତାମାନଙ୍କ ନିକଟକୁ ପଠାଇବା ଦରକାର । ବିଶେଷଜ୍ଞ ମଣ୍ଡଳୀ ଦ୍ୱାରା ତାହା ବିବେଚିତ ହେଲା ପରେ ନିମନ୍ତ୍ରଣପତ୍ର ମିଳେ । ତା ପରେ, ନିଜ ଦେଶର ପ୍ରତିନିଧି ଦଳରେ ସାମିଲ ହେବାକୁ ହେବ । ଶେଷରେ, ଦଳବଦ୍ଧ ଭାବରେ ବିମାନଯାତ୍ରାର ବନ୍ଦୋବସ୍ତ କରିବାକୁ ପଡ଼ିବ । ଭାରତରୁ ଅଷ୍ଟ୍ରେଲିଆ, ସିଧା ସଳଖ ବିମାନ ଚଳାଚଳର ବ୍ୟବସ୍ଥା ନାହିଁ । ତେଣୁ, ଯାତ୍ରାବେଳେ କେତେ ଥର ବିମାନ ବଦଳ କରିବା ଆବଶ୍ୟକ । ସୁଦୀର୍ଘ ଦୂରତ୍ୱ, ଦୀର୍ଘ ସମୟ ଆକାଶ ଯାତ୍ରା ।

ଅଗଷ୍ଟ ମାସରୁ ପ୍ରସ୍ତୁତିପର୍ବ ଆରମ୍ଭ କଲି । 'ପ୍ରାଚୀନ କଳିଙ୍ଗ ସିଂହଳ ସମ୍ପର୍କ' ବିଷୟରେ ତଥ୍ୟଭିତ୍ତିକ ପ୍ରବନ୍ଧ ଲେଖିବାକୁ ୧ ମାସ ପରିଶ୍ରମ କଲି । ତାହାର

ସାରାଂଶ ପଠାଇଲି ପ୍ୟାରିସ୍ ଅଫିସକୁ । ଗୃହୀତ ହୋଇଛି ବୋଲି ସଂବାଦ ପାଇଲା ପରେ, କୁଳପତିଙ୍କ ଅନୁମତି ସହ, ଅଷ୍ଟ୍ରେଲିଆ ଯାତ୍ରା ଲାଗି ବିଭିନ୍ନ ଗୋଷ୍ଠୀ ସହ ଯୋଗାଯୋଗ ସ୍ଥାପନ କଲି । ଏଥିରେ ଅନେକ ସମୟ ଲାଗିଲା । ନଭେମ୍ବର ବେଳକୁ ସବୁ କାମ ଶେଷ ହେଲା । ଭାରତରୁ ଦୁଇଟି ପ୍ରତିନିଧି ଦଳ ଯାଉଥାନ୍ତି, ୫ ଜଣିଆ ସରକାରୀ ଦଳ ଓ ୧୫ ଜଣିଆ ବେସରକାରୀ ଦଳ । ବେସରକାରୀ ଦଳରେ ସାମିଲ ହେଲା ପରେ, କଲିକତାସ୍ଥିତ ଏସିଆଟିକ୍ ସୋସାଇଟି ତରଫରୁ ଅର୍କିଡ୍ କୋମ୍ପାନୀ ଆମମାନଙ୍କ ବିମାନଯାତ୍ରା ଆୟୋଜନ କଲେ ।

## କଲିକତାରୁ କ୍ୟାନବେରା

କଂଗ୍ରେସ ଅଧିବେଶନ ୧୯୭୧ ଜାନୁଆରୀ ୬ ତାରିଖରୁ ୧୨ ତାରିଖ ପର୍ଯ୍ୟନ୍ତ ବସିବ ବୋଲି ପ୍ରୋଗ୍ରାମ ଆସିଥାଏ । ନିର୍ଦ୍ଦେଶ ମୁତାବକ ଜାନୁଆରୀ ୧ ତାରିଖ ଦିନ କଲିକତାରେ ପହଞ୍ଚିଲି । ୨ ତାରିଖ ପୂର୍ବାହ୍ନରେ ଆମ ଦଳର ଅନ୍ୟ ୧୪ ଜଣ ଯଥାସ୍ଥାନରେ ଓ ଯଥାସମୟରେ ପହଞ୍ଚିଲେ । ଅନେକେ ଊଣାଅଧିକ ପରସ୍ପରକୁ ଜାଣିଥିଲେ, କିମ୍ବା ନାମ ଜାଣିଥିଲେ । ଦଳବଦ୍ଧ ଭାବରେ କିଛିଦିନ ସମସ୍ତଙ୍କୁ ଏକତ୍ର ରହିବାକୁ ହେବ ଜାଣି ଆତ୍ମୀୟତା ବଢ଼ିଗଲା । ଏକାକୀ ବିଦେଶ ଯିବା ଅପେକ୍ଷା ବନ୍ଧୁମାନଙ୍କ ସାଙ୍ଗରେ ହସ କୌତୁକ ପୂର୍ବକ ଯାତ୍ରା ଉପଭୋଗ କରିବା ସୁଯୋଗ କ୍ୱଚିତ୍ ମିଳିଥାଏ । ତେଣୁ, ସମସ୍ତେ ଖୁସି ଥିଲୁଁ । କଲିକତାରେ ଥିବା ସିଙ୍ଗାପୁର, ଥାଇଲ୍ୟାଣ୍ଡ, ଫିଲିପିନ୍ସ୍ ଓ ଅଷ୍ଟ୍ରେଲିଆ ଦୂତାବାସରୁ ଭିସା ବା ପ୍ରବେଶପତ୍ର ଆଣିବାକୁ ଯିବାପାଇଁ ଅପେକ୍ଷା କଲୁଁ ।

ଆମ ଦଳରେ ଥାନ୍ତି ଜଗଦୀଶ ନାରାୟଣ ସରକାର ନାମକ ଜଣେ ବୃଦ୍ଧ ବଙ୍ଗୀୟ ଅଧ୍ୟାପକ । ତାଙ୍କ ଗଳା ପଛରେ ଥାଏ ମସ୍ତବଡ଼ ଆବୁ । ଧୋତି ପଞ୍ଜାବି ପିନ୍ଧି, କାଶ୍ମୀରୀ ଶାଲ୍ ଘୋଡ଼ିହୋଇ ସେ ଗମ୍ଭୀର ଭାବରେ ବିମାନ କୋମ୍ପାନୀର ଅଫିସ ଭିତରେ ଏକ ଅନ୍ଧାରୁଆ କୋଣରେ ବସିଥାନ୍ତି । ଗୋଡ଼ରେ ଥାଏ ଚପଲ । ପଶି ଆସିଲେ ପାଟଣା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ବିନ୍ଧ୍ୟେଶ୍ୱରୀ ପ୍ରସାଦ ସିହ୍ନା । ବେଶ ବୟସ୍କ ବ୍ୟକ୍ତି । ସିହ୍ନା ମହୋଦୟ ସରକାରଙ୍କ ପାଖକୁ ଯାଇ ଆଣ୍ଠୁମାଡ଼ି ସଭକ୍ତି ପ୍ରଣାମ ସହ ଗୋଡ଼ର ବୁଢ଼ାଅଙ୍ଗୁଳି ଦୁଇଟିରୁ ପଦଧୂଳି ନେଇ ଓଠରେ ଓ ମୁଣ୍ଡରେ ଲଗାଇଲେ । ତାଙ୍କ ସାଙ୍ଗରେ ଆଗରୁ ମୋର ପରିଚୟ ଥାଏ । ପାଖକୁ ଆସିଲା ପରେ ଲଘୁ ସ୍ୱରରେ କହିଲି, ''ବିନ୍ଧ୍ୟେଶ୍ୱରୀ ବାବୁ, ମୁହଁରେ ଓ ମୁଣ୍ଡରେ ପାଦଧୂଳି ଲଗାଇବା ଏ ଯୁଗରେ ଖୁବ୍ ବିରଳ ।'' ହିନ୍ଦୀରେ ସେ ଉତ୍ତର ଦେଲେ, ''ସେ ମୋର ଗୁରୁ ଥିଲେ, କଲେଜରେ ପାଠ

ପଢ଼ାଇଥିଲେ । ଅନେକ ବର୍ଷ ପରେ ଦେଖିବାକୁ ପାଇଲି । ପାଦଧୂଳି ନେବା ଖୁବ୍ ଜରୁରୀ ।'' ପଚାରିଲି, ''ତାଙ୍କୁ ଦୁଆର ପାଖରୁ ଚିହ୍ନି ପାରିଲେ କିପରି ଯେ ଚୁମ୍ବକ ପାଖକୁ ଲୁହାପରି ଦୌଡ଼ି ଚାଲିଗଲେ ?'' ''ମିଷ୍ଟାର ଆବୁ ସରକାରକୁ ଚିହ୍ନିନେବା ଖୁବ ସହଜ,'' ହସି ହସି କାନ ପାଖରେ ରହସ୍ୟ କଲେ ।

ବିମାନ କୋମ୍ପାନୀର କର୍ମଚାରୀମାନେ ଆମକୁ ବାସ୍‌ରେ ଭର୍ତ୍ତିକରି ବିଭିନ୍ନ ଦୂତାବାସକୁ ନେଇଗଲେ । ଦଳରେ ଥିଲେ ପାଟ୍‌ନାର ରାମଶରଣ ଶର୍ମା, ଖଡ଼୍‌ଗ୍‌ପୁରର ହିମାଂଶୁଭୂଷଣ ସରକାର, ଦିଲ୍ଲୀର ତପନ ରାୟ ଚୌଧୁରୀ, ଇତ୍ୟାଦି । ବେନାରାସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ସସ୍ତ୍ରୀକ ଆସିଥିଲେ । ଶ୍ରୀନଗର, ପୁନା ଓ ଗୁଜରାଟର ଅଧ୍ୟାପକମାନେ ମଧ୍ୟ ଦଳରେ ଥିଲେ । ଗୋଟିକ ପରେ ଗୋଟିଏ ଦୂତାବାସରୁ ଭିସା ପାଇବାକୁ ଅନେକ ସମୟ ଲାଗିଲା । ୪ଟା ବେଳକୁ କେତେଜଣ ବନ୍ଧୁ ନିଜ ନିଜ ସ୍ଥାନକୁ ବିଦାୟ ନେଲେ ଓ ଅନ୍ୟ କେତେକଙ୍କୁ ହୋଟେଲରେ ରଖାଗଲା ।

ସେ ଦିନର ସନ୍ଧ୍ୟାଟି ମନେ ଅଛି । ଆମେ ଆଉଁ ଗ୍ରାଣ୍ଡ୍ ହୋଟେଲରେ । ସୁନ୍ଦର ଆରାମଦାୟକ ରୁମ୍ । ବାହାରେ ଫୁଟପାଥିରେ ଯେଉଁପ୍ରକାର ଜନଗହଳି ଓ ଦାରିଦ୍ର୍ୟର ଚିତ୍ର ଦେଖିବାକୁ ମିଳୁଥାଏ, ସେତେବେଳେ ସେ କଥା ଚିନ୍ତାରାଜ୍ୟରେ ପ୍ରବେଶ କରୁ ନଥାଏ । କାରଣ, ସେହି ଚିରାଚରିତ ଦୃଶ୍ୟ ସହିତ ସମସ୍ତେ ଅଭ୍ୟସ୍ତ । ହୋଟେଲ ସାମନାରେ ଥିବା ଡଷ୍ଟ୍‌ବିନ ଭିତରୁ ପାଉଁରୁଟି ଟୁକୁରା ବା ଉଚ୍ଛିଷ୍ଟ ଖୋଜିବା ପାଇଁ ସୁଦ୍ଧା ଭିଖାରି ପିଲାଙ୍କର ଠେଲାପେଲା ଲାଗିଥାଏ । ଅଷ୍ଟ୍ରେଲିଆରେ ପହଞ୍ଚିବା ପରେ କଲିକତା ଓ କ୍ୟାନ୍‌ବେରା ମଧ୍ୟରେ ଥିବା ଆକାଶ ପାତାଳ ପାର୍ଥକ୍ୟ ଅନୁଭବ କରିପାରିଲି । ସେଥି ସହ, କାରଣ ! କଲିକତା ମହାନଗରୀର ଲୋକସଂଖ୍ୟା ଯାହା, ସମଗ୍ର ଅଷ୍ଟ୍ରେଲିଆ ମହାଦେଶର ଲୋକସଂଖ୍ୟା ତାହା । ସୁତରାଂ, ଗୋଟିଏ ସହରରେ ଅକଳନୀୟ ଦାରିଦ୍ର୍ୟ, ଅନ୍ୟ ସହରରେ ଅସୀମ ପ୍ରାଚୁର୍ଯ୍ୟ ! ଏକା ପୃଥିବୀରେ ପୃଥକ ସ୍ଥାନ, ବିପରୀତ ଦୃଶ୍ୟ !

**ହଂକଂ**

ଜାନୁଆରୀ ୩ ତାରିଖ ୯ଟା ବେଳେ କଲିକତା ବିମାନଘାଟିରୁ ଏୟାର ଇଣ୍ଡିଆ ବିମାନ ଛାଡ଼ିଲା ହଂକଂ ଅଭିମୁଖେ । ଅପରାହ୍ନ ୫ଟାରେ ସେଠାରେ ଅବତରଣ କଲୁଁ । ବିମାନ ବଦଳ ଲାଗି ଗୋଟିଏ ରାତି ହଂକଂରେ ରହିବାକୁ ହେଲା । ସନ୍ଧ୍ୟାବେଳେ ହୋଟେଲରେ ଜିନିଷପତ୍ର ରଖିଦେଇ ଆମେ କେତେଜଣ ସହରରେ

ବୁଲିବାକୁ ଗଲୁଁ । ଚୀନଦେଶର ଦକ୍ଷିଣ ସମୁଦ୍ର କୂଳରେ ଥିବା ଏହି ସହରଟି ଥାଏ ବ୍ରିଟିଶ-ଶାସିତ କଲୋନୀ । କେତେଗୁଡ଼ିଏ ଦ୍ୱୀପକୁ କେନ୍ଦ୍ର କରି ଅଞ୍ଚଳଟି ଗଢ଼ିଉଠିଛି । ମୁଖ୍ୟ ହଂକଂ ମାତ୍ର ୩୫ ବର୍ଗମାଇଲ ପରିମିତ ଦ୍ୱୀପରେ ଅବସ୍ଥିତ । ପାଖକୁ ପାଖ ଲାଗିଛି କେତେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ଓ ଚୀନ ଭୂଭାଗର କେତେକ ଅଞ୍ଚଳ ।

ପ୍ରାଚ୍ୟର ଏକ ପ୍ରସିଦ୍ଧ ଆନ୍ତର୍ଜାତିକ ବାଣିଜ୍ୟକେନ୍ଦ୍ର ଭାବେ ଏହି ସ୍ଥାନର ଖ୍ୟାତି ରହିଛି । ଚାରିଆଡ଼େ ଦୋକାନ ବଜାର । ସୁଉଚ୍ଚ ଅଟ୍ଟାଳିକା ଦ୍ୱାରା ସହର ଭର୍ତ୍ତି । କିନ୍ତୁ ଜନଗହଳି ରାସ୍ତାଗୁଡ଼ିକରେ ଚାଲିବା କଷ୍ଟକର । ଲୋକମାନେ ସମସ୍ତେ ପ୍ରାୟ ଚୀନା । ଅଳ୍ପସଂଖ୍ୟକ ଆମେରିକାନ ଓ ଇଂରେଜଙ୍କୁ ଦେଖିବାକୁ ମିଳୁଥାଏ । କେତେକ ଭାରତୀୟଙ୍କୁ ମଧ୍ୟ ଦେଖିଲି । ରାସ୍ତାରେ ଦରିଦ୍ର ଲୋକଙ୍କ ସଂଖ୍ୟା ଅନେକ । ଚୀନା ଭିଖାରି, ବୁଢ଼ାବୁଢ଼ୀ ଓ ବିକଳାଙ୍ଗମାନେ ପଇସା ମାଗିବା ଲାଗି ଦୌଡ଼ି ଆସୁଥାନ୍ତି । ଗୋଟିଏ ଦିଗରେ ଧନସମ୍ପତ୍ତି ଓ ବିଳାସବ୍ୟସନର ପରିଚୟ ମିଳୁଥିଲା ବେଳେ, ଅନ୍ୟ ଦିଗରେ ଦାରିଦ୍ର୍ୟର ଚିତ୍ର । ଗୋଟିଏ ଦୁଇଟି ବୌଦ୍ଧ ମନ୍ଦିର ଦେଖିବାକୁ ମିଳିଲା । ମନ୍ଦିର ମଧ୍ୟରେ ଅନେକ ପ୍ରକାର ବୌଦ୍ଧ ମୂର୍ତ୍ତି । ଅଧିକାଂଶ ହଂକଂ ବାସୀ ହେଉଛନ୍ତି ବୌଦ୍ଧ ।

ଗୋଟିଏ ଦ୍ୱୀପରୁ ଅନ୍ୟ ଦ୍ୱୀପକୁ ଯିବା ଲାଗି ଦରିଆ କୂଳେ କୂଳେ ଛୋଟ ଛୋଟ ଡଙ୍ଗା ଭାସୁଥାଏ । ଡଙ୍ଗା ଭର୍ତ୍ତିହୋଇ ଚୀନାମାନେ ପାଖାପାଖି ଦ୍ୱୀପକୁ ଯିବାଆସିବା କରୁଥାନ୍ତି । ଯେଉଁ ଆଡ଼କୁ ଗଲେ, ଲୋକଙ୍କ ଭିଡ଼ । ହଂକଂ ପୃଥିବୀର ସର୍ବାଧିକ ଜନବହୁଳ ସ୍ଥାନ ମଧ୍ୟରେ ଅନ୍ୟତମ ବୋଲି ଶୁଣିବାକୁ ପାଇଲୁଁ । ଇଉରୋପୀୟମାନଙ୍କ ଲାଗି ବଡ଼ ବଡ଼ ହୋଟେଲ ଓ ବିଳାସକେନ୍ଦ୍ର ରହିଛି । ସେମାନଙ୍କ ଜଳବିହାର ଲାଗି ଆଲୋକସଜ୍ଜିତ ନୌକା ଭାସୁଥାଏ ।

ଅନେକ ରାତିଯାଏ ବୁଲିବୁଲି ହୋଟେଲକୁ ଫେରିଲୁଁ । ଡାଇନିଂ ହଲକୁ ପଶିଲା ସମୟରେ ନିରାମିଷାଶୀ ବାରାଣସୀ ପଣ୍ଡିତ ମହୋଦୟ ବିକୃତ ମୁହଁରେ ଦୁଃସଂବାଦ ଦେଲେ, "ଉପବାସ ରହିବା ଉତ୍ତମ । ଏଠାରେ ସାପ, ବେଙ୍ଗ, ଗେଣ୍ଡା, ଝିଟିପିଟି ଓ ଅସରପା ତରକାରି ମିଳୁଛି ।" ମନରେ ବିକାର ଆସିଲା । ବାହାରୁ ବିସ୍କିଟ କିଣି ରାତିରେ ଖାଇଲି ।

## ମାନିଲାରୁ ଅଷ୍ଟ୍ରେଲିଆ

୪ ତାରିଖ ପୂର୍ବାହ୍ନରେ କ୍ୱାଣ୍ଟାସ୍ ନାମକ ବିମାନରେ ଫିଲିପିନ୍ସ୍ ରାଜଧାନୀ ମାନିଲାରେ ପହଞ୍ଚିଲୁଁ । ବିମାନ ବନ୍ଦରରୁ ବାହାରକୁ ଯାଇ ଟ୍ୟାକ୍ସିରେ କିଛି ବାଟ

ପରିକ୍ରମା କରି ବିମାନକୁ ଫେରିବାକୁ ହେଲା । ଭାଷା ବୁଝି ହେଉ ନଥାଏ । ସ୍ଥାନଟି ଦେଖିବା ଲାଗି ସମୟ ନଥାଏ ।

ଅପରାହ୍ନରେ ଆରମ୍ଭ ହେଲା ମାନିଲା ଠାରୁ ଅଷ୍ଟ୍ରେଲିଆ ଯାତ୍ରା । ଦୂରତ୍ୱ ଅନେକ । ୫ ତାରିଖ ସୂର୍ଯ୍ୟୋଦୟ ପୂର୍ବରୁ ବିମାନ ଅବତରଣ କଲା ଅଷ୍ଟ୍ରେଲିଆ ମହାଦେଶର ଉତ୍ତର ମରୁଭୂମିରେ ଥିବା ଏକ ଅଜ୍ଞାତ ଘାଟିରେ । ତେଲ ଭର୍ତ୍ତି କରିବା ଜାଗା, ବିମାନ ବନ୍ଦର ନୁହେଁ । ମାଇକ୍ ଯୋଗେ ପାଇଲଟ ଜଣାଇଦେଲେ, ଅଳ୍ପ ସମୟ ପାଇଁ ବିମାନ ରହିବ, ଯାତ୍ରୀମାନେ ତଳକୁ ଯାଇ ପାରିବେ ।

ବାହାରି ଆସି ଦେଖିଲୁଁ, ଚାରି ଦିଗରେ ମରୁଭୂମି । ଘାଟିର ଶେଷ ସୀମାରେ ଥିବା ବିଶ୍ରାମ ଘର ଦିଗକୁ କେତେଜଣ ସାହେବଙ୍କୁ ଯାଉଥିବା ଦେଖି ରାମଶରଣ ଶର୍ମା ଓ ତପନ ରାୟ ଚୌଧୁରୀ ମୋତେ କହିଲେ, ''ସେଠାରେ ବାଥରୁମ୍ ଥିବ, ଗାଧୋଇ ପାରିବା ।'' ତିନିଜଣ ଚାଲିଲୁଁ । ଅନ୍ୟମାନଙ୍କ ନିଦ ଭାଙ୍ଗି ନଥାଏ । ତରତରରେ ଚାଲିଲେ ସୁଦ୍ଧା ବାଟ ଅନେକ । ଶର୍ମାଙ୍କ ମସ୍ତବଡ଼ ଦେହଟି ବେଶ୍ ମୋଟା । ତା ସାଙ୍ଗକୁ ଥାଏ ହୃଦ୍‌ରୋଗ ଓ ଉଚ୍ଚ ରକ୍ତଚାପ । ବିଶ୍ରାମ କକ୍ଷରେ ପହଞ୍ଚିଲାବେଳକୁ ଅବସ୍ଥା ଗୁରୁତର । ତାଙ୍କୁ ବାଥରୁମରୁ ଶୀଘ୍ର ବାହାରିବାକୁ କହି, ମୁଁ ପାଞ୍ଚ ମିନିଟରେ ଗାଧୋଇପଡ଼ିଲି । ସେମାନେ ମଧ୍ୟ ବାହାରିଲେ, କିନ୍ତୁ ଚେୟାରରେ ବସି କଥାବାର୍ତ୍ତା ଆରମ୍ଭ କଲେ । ମୁଁ କହିଲି, ''ଶୀଘ୍ର ଫେରିବା, ବିମାନ ବେଶି ସମୟ ରହିବ ନାହିଁ ।'' ଶର୍ମା ରାଗିଉଠି କହିଲେ, ''ତୋମାରା ଅକ୍କଲ ଥୋଡ଼ା କମ୍ ହ୍ୟାୟ, ମାଇକ୍ ମେ ଏନାଉନ୍‌ସ ନେହିଁ କର୍‌କେ କେଇସେ ଛୋଡ଼େଗା ।''

ସେମାନେ ବସି ରହିଲେ, ମୁଁ ଚାଲି ଆସିଲି । ବିମାନ ପାଖରେ ପହଞ୍ଚିଲାବେଳକୁ, ଉପରକୁ ଉଠିବା ସିଡ଼ି କାଢ଼ି ନିଆଯାଉଛି । 'ଶର୍ମା' 'ଶର୍ମା' ବୋଲି ଉଚ୍ଚ ସ୍ୱରରେ ପାଟି କରି ଡାକିଲି । ସେମାନେ ବାହାରକୁ ଆସି ଯଥାଶକ୍ତି ଦୌଡ଼ିବାକୁ ଲାଗିଲେ । ମଝି ବାଟରେ ଶର୍ମା ମହୋଦୟ ଧପ୍ କରି କାତାଡ଼ି ପଡ଼ିଲା ବେଳେ ତାଙ୍କ ଗୋଡ଼ ସହିତ ଛନ୍ଦି ହୋଇ ତପନ ମଧ୍ୟ ଚିତ୍‌ପଟାଙ୍ଗ୍ ହେଲେ । ସିଡ଼ି ବାହାର କରିବାକୁ ଆସିଥିବା ଦୁଇଜଣ ସାହେବ ଦୌଡ଼ି ଯାଇ ଶର୍ମାଙ୍କୁ ଉଠାଇଲେ ଓ ଟେକା ଟେକି କରି ବିମାନ ଭିତରକୁ ନେଇଗଲେ । ତାଙ୍କ ଅବସ୍ଥାର ଗୁରୁତ୍ୱ ଅନୁମାନ ନକରି ମୁଁ କମେଣ୍ଟ ଦେଲି, ''ଶର୍ମାଜୀ, ଆପକା ଅକ୍କଲ ଅଭି ସବ୍‌କୋ ମାଲୁମ୍ ହୋ ଗୟା ।'' ହୃଦ୍‌ରୋଗରେ ଆକ୍ରାନ୍ତ ହେବା ଆଶଙ୍କାରେ ସେ ବିବ୍ରତ ଥାନ୍ତି । କରୁଣ ଦୃଷ୍ଟିରେ ମୋ ଆଡ଼କୁ ଚାହିଁରହିବା ଦେଖି ମୁଁ ଲଜ୍ଜିତ ହେଲି । ଜଣେ ବିମାନ ପରିଚାରିକା ତାଙ୍କୁ ଫଳରସ ପିଆଇ ପକାଇଲେ ।

ଅପରାହ୍ନ ୪ଟା ବେଳକୁ ବିମାନ ପହଞ୍ଚିଲା ମହାଦେଶର ଦକ୍ଷିଣ-ପୂର୍ବ ସୀମାରେ ସିଡନୀ ଘାଟିରେ । ଉର୍ଦ୍ଧ୍ୱରୁ ଦିଶୁଥାଏ ପ୍ରକାଣ୍ଡ ସହର । ସେତେବେଳକୁ ଅନେକ ସମୟ ଆକାଶମାର୍ଗରୁ ତଳକୁ ଚାହିଁ ଚାହିଁ ଧାରଣା ଆସିଯାଇଥାଏ ଯେ ଅଷ୍ଟ୍ରେଲିଆ ହେଉଛି ଏକ ଜନଶୂନ୍ୟ ଭୂମଣ୍ଡଳ । ସିଡନୀ ବିମାନଘାଟିର ବିଶ୍ରାମ ହଲରେ କିଛି ସମୟ ରହିବାକୁ ହେଲା । ସେଠାରୁ ଅନ୍ୟ ଗୋଟିଏ ଉଡ଼ାଜାହାଜରେ କ୍ୟାନ୍‌ବେରା ଯିବାକୁ ହେବ । ବିଶ୍ରାମକକ୍ଷରେ କାନାଡା, ଯୁକ୍ତରାଷ୍ଟ୍ର ଓ ଜାପାନରୁ ଆସିଥିବା ତିନିଟି ପ୍ରତିନିଧି ଦଳ ସହିତ ଆଳାପ ମେଳାପ ହେଲା । ସେମାନେ ସମସ୍ତେ ଗୋଟିଏ ପ୍ରକାର ପାଶ୍ଚାତ୍ୟ ପୋଷାକ ପିନ୍ଧିଥିଲାବେଳେ, ଭାରତୀୟ ଦଳର ପୋଷାକ ପରିଚ୍ଛଦ ବିଭିନ୍ନ ଓ ବିଚିତ୍ର ଥାଏ । ପଶ୍ଚିମବଙ୍ଗର ଦୁଇ ସରକାର ଧୋତି ପିନ୍ଧି ଶାଲ ଘୋଡ଼ିହୋଇଥିଲା ବେଳେ, ଗୁଜରାଟୀଙ୍କ ପଗଡ଼ି, କାଶ୍ମୀରୀଙ୍କ ଟୋପି, ରାଜସ୍ଥାନୀ ଅଧ୍ୟାପକଙ୍କ ଲମ୍ବା କୋଟ ଓ ବାରାଣସୀ ପଣ୍ଡିତଙ୍କ ସୁଲମିତ ଓଟା ଇତ୍ୟାଦି ପ୍ରମାଣ ଦେଉଥାଏ ଭାରତୀୟ ସଂସ୍କୃତିର ବିଶେଷତ୍ୱ—''ପାର୍ଥକ୍ୟ ମଧ୍ୟରେ ଐକ୍ୟ'' ।

**କ୍ୟାନବେରା**

ସିଡନୀ ଠାରୁ ଅଳ୍ପ ସମୟ ମଧ୍ୟରେ କ୍ୟାନବେରା ବିମାନଘାଟିରେ ପହଞ୍ଚିଲୁଁ । ଆମକୁ ନେବା ପାଇଁ ଗୁଡ଼ାଏ କାର୍ ଆସିଯାଇଥାଏ । ରାଜଧାନୀର ରାଜପଥରେ ଗାଡ଼ି ଚାଲିଲାବେଳେ ଉଭୟ ପାଖ ଦିଶୁଥାଏ ନିର୍ଜନ । ଫୁଟ୍‌ପାଥ୍ ଉପରେ କ୍ୱଚିତ୍ ଜଣେ ଜଣେ ଚାଲିଥିଲାବେଳେ ଅନ୍ୟମାନେ ଯାଉଥାନ୍ତି କାର୍ ଯୋଗେ । ରାସ୍ତାର ଦୁଇ ପାର୍ଶ୍ୱରେ ସୁନ୍ଦର ସୁନ୍ଦର ଏକତାଲା ବା ଦୁଇତାଲା ବିଶିଷ୍ଟ ଘର । ପ୍ରତ୍ୟେକ ଘରର ଆଗରେ, ପଛରେ ଓ ଦୁଇପାଖରେ ଅଛି ଫଳ ଫୁଲର ବଗିଚା । ରାଜଧାନୀ ହେଲେ ମଧ୍ୟ କୌଣସିଠାରେ ଜନ ସମାଗମ ଦିଶିଲା ନାହିଁ ।

କଂଗ୍ରେସ ଅଧିବେଶନର ମୁଖ୍ୟ ଅଫିସରେ ପହଞ୍ଚିଲାକ୍ଷଣି ପ୍ରତ୍ୟେକ ସଦସ୍ୟଙ୍କ ହାତରେ ରହିବା ସ୍ଥାନର ଚିଠା ଧରାଇ ଦିଆଗଲା । ରୁମ୍ ନମ୍ବର ଦେଖି ମୁଣ୍ଡ ଗରମ ହୋଇଉଠିଲା । ମୁଁ ଜଣେ ବିଶିଷ୍ଟ ଅଧ୍ୟାପକ, ଅଥଚ ମୋତେ ମିଳିଛି ଆଣ୍ଡାରଗ୍ରାଜୁଏଟ୍ ହଷ୍ଟେଲରେ ଘର ! ଚାବି ଓ ସୁଟକେଶ୍ ଧରି କ୍ଷୁବ୍ଧ ମନରେ ଚାଲିଲି । ଛାତ୍ରାବାସର ଦ୍ୱିତୀୟ ତାଲାରେ ଥିବା କୋଠରିଟି ଫିଟାଇଲି । ଆଚମ୍ବିତ ହୋଇ ଦେଖିଲି, ମେଜିଆ ଉପରେ ମୋଟା ମୂଲ୍ୟବାନ କାର୍ପେଟ୍, ଖଟ ଉପରେ ମୂଲ୍ୟବାନ ମୋଟା ଗଦି, ବସିବା ପାଇଁ ଆରାମଦାୟକ ସୋଫା, ପଢ଼ିବା ଲାଗି ଚେୟାର, ଟେବୁଲ, ଟେବୁଲଲ୍ୟାମ୍ପ୍ ଏବଂ କାନ୍ଥରେ ଗରମ ଓ ଥଣ୍ଡା ପାଣିର ବେସିନ୍ । ସାଙ୍ଗରେ ଆସିଥିବା ଅଷ୍ଟ୍ରେଲୀୟ ଛାତ୍ରଙ୍କ ପାଖରୁ ବୁଝିଲି, ପ୍ରତ୍ୟେକ

ଛାତ୍ରଙ୍କୁ ଏହିପରି ଗୋଟିଏ ଗୋଟିଏ ସିଙ୍ଗଲ୍ ରୁମ୍ ମିଳେ । ଖାଇବା ଲାଗି ତଳେ କ୍ୟାଣ୍ଟିନ୍ ମଧ୍ୟ ରହିଛି । ଧନୀ ଅଷ୍ଟ୍ରେଲିଆର ବି.ଏ. ଛାତ୍ରଙ୍କ ପାଇଁ ଏପରି ସୁବିଧା ଦେଖି ଆମ ଦେଶର କଲେଜ ଛାତ୍ରାବାସଗୁଡ଼ିକୁ ସ୍ମରଣ କଲି । ରେଭେନ୍‌ସାରେ ବି.ଏ. ପଢ଼ିଲାବେଳେ ଗୋଟିଏ ରୁମ୍‌ରେ ୫ ଜଣଙ୍କୁ ଖୁନ୍ଦାଖୁନ୍ଦି ରହିଥିବା ଦୃଶ୍ୟ ମନେ ପଡ଼ିଲା ।

ସନ୍ଧ୍ୟା ଆସିଯାଉଥାଏ । ତଳ କ୍ୟାଣ୍ଟିନକୁ ଚା ପିଇବାକୁ ଗଲି । ଡାଇନିଂ ହଲରେ ପ୍ରାୟ ୫୦ ପର୍ଯ୍ୟନ୍ତ ଡେଲିଗେଟ୍ ଜଳଖିଆ ଲାଗି ବସିଯାଇଥିଲେ । କେକ୍ ଓ ଅଣ୍ଡାଭଜା ଆସିଗଲା । ପ୍ରତ୍ୟେକ ଟେବୁଲ ଉପରେ ଚା କେଟଲି ରହିଥାଏ । କପ୍‌ରେ ଚା ଢାଳିଲି । ବୋତଲରୁ ଦୁଧ ମିଶାଇଲି । କିନ୍ତୁ ଚିନି ପାଇଲି ନାହିଁ । ଜଣେ ପରିଚାରିକାଙ୍କୁ କହିଲି, ‘‘ଏ ଟେବୁଲରେ ଚିନି ନାହିଁ ।’’ ସେ କେଟଲି ପାଖରେ ଥିବା ବୋତଲଟିକୁ ଦେଖାଇଦେଇ କହିଲେ, ‘‘ଏଥିରେ ମହୁ ଅଛି । ଚିନି ବଦଳରେ ଲୋକେ ଚା ରେ ମହୁ ମିଶାଇ ପିଅନ୍ତି ।’’ ପାଖରେ ବସିଥିବା ଜଣେ ଯୁବ ପ୍ରତିନିଧି କହିଲେ, ‘‘Australia is a land of honey.’’ ତାଙ୍କ ସହିତ ଆଳାପ ହେଲା । ନିଜକୁ ଥାଇଲ୍ୟାଣ୍ଡର ଐତିହାସିକ ବୋଲି ପରିଚୟ ଦେଲେ । ମୋ ପାଖ ରୁମ୍‌କୁ ଲାଗି ତାଙ୍କ ରୁମ୍ । ପ୍ରଥମ ସାକ୍ଷାତରୁ ବନ୍ଧୁତା ଜମିଗଲା । ରାତ୍ରି ଭୋଜନ ପାଇଁ ସାଙ୍ଗରେ ଗଲୁଁ ଓ ଫେରିଲୁଁ । ସେତେବେଳେ କିମ୍ବା ୭ ଦିନ ରହଣି ମଧ୍ୟରେ ଜାଣିପାରିଲି ନାହିଁ ଯେ ସେ ହେଉଛନ୍ତି ଥାଇ ରାଜବଂଶର ରାଜପୁତ୍ର । ରୂପବାନ ଓ ସ୍ୱାସ୍ଥ୍ୟବାନ୍ ଯୁବକ, ଅଥଚ ଅତ୍ୟନ୍ତ ଶାନ୍ତ ଶିଷ୍ଟ ମନୁଷ୍ୟ ।

### ୬ ଜାନୁଆରୀ : ସମ୍ମେଳନ ଉଦ୍‌ଘାଟନ ଉତ୍ସବ

ଜାନୁଆରୀ ୬ ତାରିଖ ପୂର୍ବାହ୍ଣ ୧୧ଟା ସମୟରେ କ୍ୟାନ୍‌ବେରାର ସବୁଠାରୁ ବୃହଦାକାର ସଭାକକ୍ଷ ସମ୍ମୁଖରେ ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ୧୩୨୦ ଜଣ ପ୍ରତିନିଧି ସମବେତ ହେଲେ । ଗେଟ୍ ଆଗରେ କେତେଜଣ ଅଷ୍ଟ୍ରେଲୀୟ ଯୁବକ ପ୍ରଚାରପତ୍ର ବାଣ୍ଟୁଥିଲେ । ଶିରୋନାମ ଥିଲା ‘‘ବିପୁଳ ଅର୍ଥବ୍ୟୟରେ ଏପରି ସମ୍ମେଳନ ଆୟୋଜନ କରାଗଲା କାହିଁକି ?’’ ଡେଲିଗେଟମାନଙ୍କ ମଧ୍ୟରେ ଗୁଞ୍ଜରଣ ଦେଖାଦେଲା । ଜଣେ ଜାର୍ମାନ ପ୍ରାଚ୍ୟବିଦ୍ୟାବିଦ୍ କହୁଥିଲେ, ଏମାନେ ଅଷ୍ଟ୍ରେଲିଆ ମହାଦେଶକୁ ପ୍ରାଚ୍ୟର ଅଂଶ ବୋଲି ମାନିନେବାକୁ ପ୍ରସ୍ତୁତ ନୁହନ୍ତି । ଜଣେ ଯୁବକଙ୍କୁ ଆମେ ପଚାରିଲୁଁ, ‘‘ପ୍ରାଚ୍ୟବଦ୍ୟା ସମ୍ମିଳନୀ ବିରୋଧରେ ପ୍ରତିବାଦ କରିବା କାରଣ କ’ଣ ?’’ ସେ ଦୃଢ଼ ସ୍ୱରରେ ଉତ୍ତର ଦେଲେ, ‘‘ଏସିଆ ମହାଦେଶର ସଭ୍ୟତା, ଇତିହାସ, ସଂସ୍କୃତି, ଧର୍ମ, ସାହିତ୍ୟ ଓ କଳା ସହିତ

ଆମ ନୂତନ ମହାଦେଶର କୌଣସି ସମ୍ବନ୍ଧ ନାହିଁ । ଆମ ସମାଜର ପ୍ରାଚୀନତ୍ୱ ମଧ୍ୟ ନାହିଁ । ସେଥିପାଇଁ ଆମେ ଗର୍ବିତ । ତେଣୁ ଆମେ ଏହାର ବିରୋଧ କରୁଛୁଁ ଏବଂ ଅଯଥା ଅର୍ଥବ୍ୟୟକୁ ଘୃଣା କରୁଛୁଁ ।''

ବାସ୍ତବିକ, ମାତ୍ର ୩ ·ଶହ ବର୍ଷ ପୂର୍ବେ ଅଷ୍ଟ୍ରେଲିଆ ଥିଲା ଆଦିମମାନଙ୍କ ଦେଶ । ଇଉରୋପୀୟମାନେ ମହାଦେଶର ଅବସ୍ଥିତି ଜାଣିଲା ପରେ, ପ୍ରଥମେ ଇଂରେଜମାନେ ନିଜ ଦେଶର ଜଘନ୍ୟ ଅପରାଧୀମାନଙ୍କୁ ସେଠାରେ ଛାଡ଼ିଦେଉଥିଲେ । ଊନବିଂଶ ଶତାବ୍ଦୀରେ ଅପରାଧୀମାନଙ୍କ ସେହି ଦେଶକୁ ଚାଲିଲେ ସହସ୍ର ସହସ୍ର ଇଂରେଜ ନରନାରୀ । କ୍ରମେ କ୍ରମେ ମହାଦେଶର ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳର ଶସ୍ୟଶ୍ୟାମଳା ଭୂମିରେ ଶ୍ୱେତାଙ୍ଗ ବସତି ଓ ସହରମାନ ଗଢ଼ିଉଠିଲା । କୃଷି, ଶିଳ୍ପ ଓ ବାଣିଜ୍ୟ ବ୍ୟବସାୟର ଦ୍ରୁତ ବିକାଶ ଫଳରେ ବିଂଶ ଶତାବ୍ଦୀ ବେଳକୁ ଅଷ୍ଟ୍ରେଲିଆ ହେଲା ପୃଥିବୀର ଅନ୍ୟତମ ଧନଶାଳୀ ରାଷ୍ଟ୍ର । କେବଳ ଇଂରେଜ ଜାତିର ମହାଦେଶ ଭାବରେ ଏବଂ ଗୋଟିଏ ଭାଷା ଓ ଗୋଟିଏ ସଂସ୍କୃତିର ମନୁଷ୍ୟ ରୂପେ ଅଷ୍ଟ୍ରେଲୀୟମାନେ ପୃଥିବୀର ଅନ୍ୟ ଜାତି ପାଖରୁ ପୃଥକ ରହିବା ନିମନ୍ତେ ସଂକଳ୍ପବଦ୍ଧ ହେଲେ । ଜାପାନୀ ବା ଚୀନା ବା ଏସିଆର ଅନ୍ୟ ଜାତିର ଲୋକଙ୍କ ସହିତ ସମ୍ପର୍କ ରଖିବାକୁ ସେମାନେ ସର୍ବଦା ନାରାଜ ରହିଲେ ।

ସଭାକାର୍ଯ୍ୟ ଆରମ୍ଭ ହେଲା । ସୁସଜ୍ଜିତ ମଞ୍ଚ ଉପରକୁ ଶୋଭାଯାତ୍ରାରେ ଉଦ୍‌ଘାଟକ ମହୋଦୟଙ୍କୁ ନିଆଗଲା । ସେ ଥିଲେ ଜାପାନ ସମ୍ରାଟ ମିକାଡୋ ହିରୋହିଟୋଙ୍କ ସାନଭାଇ ଓ ସେ ଦେଶର ଜଣେ ପ୍ରଖ୍ୟାତ ଐତିହାସିକ । ପ୍ରତିନିଧିମାନଙ୍କୁ ସ୍ୱାଗତ କଲାବେଳେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଘୋଷଣା କଲେ, ''ଅଷ୍ଟ୍ରେଲିଆର ରାଜଧାନୀରେ ପ୍ରାଚ୍ୟବିଦ୍ୟାବିଦ୍ ସମ୍ମେଳନ ଆହୂତ ହେବା ଫଳରେ ଆଜି ପ୍ରମାଣିତ ହେଲା ଯେ, ଅଷ୍ଟ୍ରେଲିଆ ଏବେ ପ୍ରାପ୍ତବୟସ୍କ ହୋଇଛି (Australia has come of age) ।''ଉତ୍ସବ ଶେଷ ହେଲା ପରେ, ପ୍ରତିନିଧିମାନଙ୍କୁ ସମ୍ମିଳିତ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରାଗଲା । ପରେ ପରେ, ସମସ୍ତଙ୍କୁ ପ୍ରୋଗ୍ରାମ ପତ୍ର ବାଣ୍ଟିଦିଆଗଲା । କେଉଁ ଦିନ କେତେବେଳେ କେଉଁ କେଉଁ କକ୍ଷରେ କେଉଁମାନଙ୍କ ପ୍ରବନ୍ଧ ଆଲୋଚିତ ହେବ, ତାହା ବିଶଦ ଭାବରେ ଲେଖାଥାଏ । ଯେ କୌଣସି ସଭ୍ୟ ଯେ କୌଣସି ଆଲୋଚନାରେ ଅଂଶଗ୍ରହଣ କରିପାରିବେ ବୋଲି ସୂଚିତ ଥାଏ । ପ୍ରତିଦିନ ପୂର୍ବାହ୍ନ ୯ଟାରୁ ଅପରାହ୍ନ ୧ଟା ପର୍ଯ୍ୟନ୍ତ ପ୍ରବନ୍ଧପାଠ ଚାଲିବ । ଅପରାହ୍ନରେ ସ୍ଥାନ ଭ୍ରମଣ ।

ସେ ଦିନ ୪ଟା ବେଳେ ବିନ୍ଧ୍ୟେଶ୍ୱରୀ ପ୍ରସାଦଙ୍କ ସାଙ୍ଗରେ ସହର ବୁଲିବା ପାଇଁ ବାହାରିଲି । ୨ ମାଇଲ ଦୂରରେ ଦୋକାନ ବଜାର । ହଷ୍ଟେଲ ଗେଟ୍

ପାଖରେ ପହଞ୍ଚାଇଦେଲେ, ଜଗଦୀଶ ସରକାର ପଛରୁ ପାଟି କଲେ, "ଟିକିଏ ଅପେକ୍ଷା କରନ୍ତୁ, ସାଙ୍ଗରେ ଯିବି । ରୁମ୍‌ରୁ ମାଫଲାର ନେଇ ଆସେ ।" ଆମେ ଅପେକ୍ଷା କଲୁଁ । କିଛି ସମୟ ପରେ ବିନ୍ଧ୍ୟେଶ୍ୱରୀ କହିଲେ, "ଚଲିୟେ, ଓ ବୁଢ୍‌ଢା ନେହିଁ ଆୟେଗା । ଏତନା ଠଣ୍ଡୀମେଁ ବୁଢ୍‌ଢା ମର୍ ଜାଏଗା ।" ତାଙ୍କ କଥାରେ ପଡ଼ି ମୁଁ ଚାଲିଲି । କିଛିଦୂର ଆଗେଇଛୁଁ, ଜଗଦୀଶବାବୁ ପଛରୁ ଡାକ ଦେଲେ, "ବିନ୍ଧ୍ୟେଶ୍ୱରୀ, ତୁମେ ଚାଲିଯାଉଛ । ମୁଁ ପରା ସାଙ୍ଗରେ ଯିବି ବୋଲି କହିଥିଲି !" ଆମେ ଛିଡ଼ା ରହିଲୁଁ । ସେ ପାଖକୁ ଆସିଲାକ୍ଷଣି, ତାଙ୍କ ଶିଷ୍ୟ ବିନ୍ଧ୍ୟେଶ୍ୱରୀ ଯେଉଁ ବାକ୍ୟଟି କହିଥିଲେ, ଅବିକଳ ସେହି କଥା ଆବୃତ୍ତି କରିଦେଲି । ବିନ୍ଧ୍ୟେଶ୍ୱରୀବାବୁ ଅପ୍ରସ୍ତୁତ ହୋଇପଡ଼ିଲେ । ସରକାର ମହୋଦୟ ପୂର୍ବତନ ଛାତ୍ରର 'ବୁଢ୍‌ଢା' ବିଶେଷଣ ଶୁଣି ରାଗରେ କିଛି କହିପାରିଲେ ନାହିଁ । ଉଭୟଙ୍କ ମନୋଭାବ ବୁଝି ମୁଁ ଖୁସି ହେଲି । ଅବଶ୍ୟ, ନିର୍ଦ୍ଦୋଷ ରହସ୍ୟ !

ସହରର କେନ୍ଦ୍ରାଞ୍ଚଳରେ ପହଞ୍ଚିଲୁଁ । ଛକ ଉପରେ ବଡ଼ ବଡ଼ ଦୋକାନ ଘର । ସେତେବେଳକୁ ଦୋକାନଗୁଡ଼ିକ ବନ୍ଦ ହୋଇଗଲାଣି । କିନ୍ତୁ ଦୀର୍ଘାକାର କାଚର ଆବରଣ ପଛରେ ଦିଶୁଥାଏ ଶୋ ରୁମ୍ । ବାହାରେ ଛିଡ଼ା ରହି ପ୍ରତ୍ୟେକ ଶୋ ରୁମ୍‌ରେ ଥିବା ବିବିଧ ସାମଗ୍ରୀ ଦେଖିଲୁଁ । ରାସ୍ତା ପ୍ରାୟ ଜନଶୂନ୍ୟ ଥାଏ । ଗୋଟିଏ ଶୋ ରୁମ୍ ଭିତରେ ଦିଶୁଥାଏ ସୁନାର ଅଳଙ୍କାର, ନାନା କିସମର ହାର ଓ ମୁଦି । ସରକାର ମହାଶୟ ବିସ୍ମୟ ପ୍ରକାଶ କଲେ, କାଚ ଭାଙ୍ଗି ଚୋର ଅକ୍ଳେଶରେ ଗହଣା ନେଇଯାଇ ପାରିବ, ତଥାପି ବିନା ଲୁହାଜାଲିରେ ଏତେ ପ୍ରକାର ଅଳଙ୍କାର ରଖାଯାଇଛି କିପରି ?

ରାସ୍ତା ଉପରେ ବିପରୀତ ଦିଗରୁ ଜଣେ ଭାରତୀୟ ଭଦ୍ରଲୋକ ତାଙ୍କ ସାହେବପତ୍ନୀଙ୍କ ହାତ ଧରି ଆସୁଥିଲେ । ନମସ୍କାର ଜଣାଇ ପରିଚୟ ଦେଲେ, ସେ କ୍ୟାନବେରାର ଗୋଟିଏ ଲାଇବ୍ରେରୀରେ ଚାକିରି କରନ୍ତି ଓ ବିବାହ ପୂର୍ବକ ସ୍ଥାୟୀ ଭାବେ ରହିଯାଇଛନ୍ତି । ଅଳଙ୍କାର ଚୋରି ବିଷୟରେ ଆମର କୌତୂହଳ ଦେଖି ସେ ବୁଝାଇଦେଲେ, "ଅଷ୍ଟ୍ରେଲିଆରେ ସୁନା ଭରି ଭାରତୀୟ ମୂଲ୍ୟରେ ମାତ୍ର ୪୦ ଟଙ୍କା । ସାଧାରଣ ଲୋକଙ୍କ ସର୍ବନିମ୍ନ ମାସିକ ଆୟ ୨ ହଜାର ଟଙ୍କା । ସୁତରାଂ, ଦୋକାନ ଭାଙ୍ଗି ସୁନା ଚୋରି କରିବ କିଏ ? ସପ୍ତାହକର ଆୟ ବା ଦରମା ଖର୍ଚ୍ଚ କଲେ ଜଣେ ୧୦ ଭରି ସୁନାର ହାର କିଣିପାରିବ ।" ବୁଝିବା କଷ୍ଟକର ହେଲା ନାହିଁ, ପ୍ରତ୍ୟେକ ଶୋ ରୁମ୍‌ରେ ଘଡ଼ି, ଟ୍ରାଞ୍ଜିଷ୍ଟାର, ରେଡ଼ିଓ ଓ ଟେଲିଭିଜନ ଇତ୍ୟାଦି ସାମଗ୍ରୀ ଦୋକାନୀମାନେ ବିନା ଭୟରେ ରଖିଛନ୍ତି କିପରି !

ରାତ୍ରିଭୋଜନ ବେଳେ ବିନ୍ଧ୍ୟେଶ୍ୱରୀବାବୁ ମୋତେ ଗାଳିଗୁଲଜ କଲେ । ''ତୁମେ କାହିଁକି ମୋ ଗୁରୁଙ୍କ ଆଗରେ 'ବୁଦ୍ଧୁଡା' କହିଥିବା କଥା କହିଦେଲ ?'' ପରିହାସ ଛଳରେ ମୁଁ କହିଲି, ''ସତ୍ୟର ପୂଜାରୀ ଭାବେ, ଯାହା ଶୁଣିଥିଲି କହିଦେଲି । କଲିକତାରେ ଆପଣ ଗୁରୁଦେବଙ୍କ ଚରଣଧୂଳି ନେବା ଦେଖିଥିଲି । ସେପରି ଭକ୍ତି ଯେ ଚରମ ଭଣ୍ଡାମି, ସେହିକଥା ସରକାର ମହୋଦୟଙ୍କୁ ସୂଚାଇଦେବାକୁ ଇଚ୍ଛା ହେଲା ।'' ରାଗ ସମ୍ଭାଳି ନପାରି ସେ କହିଲେ, ''ଦାସ୍, ତୁମ୍ ବଡ଼ା ବଦମାସ୍ ହୋ'' ।

ଆମର ବାକ୍ୟ ବିନିମୟ ଶୁଣୁଥିଲେ ପାଖ ଟେବୁଲରେ ଖାଉଥିବା ରାମଶରଣ ଶର୍ମା । ବିନ୍ଧ୍ୟେଶ୍ୱରୀ ବାହାରିଗଲା ପରେ 'କଥା କ'ଣ' ବୋଲି ଶର୍ମା ପଚାରିଲେ । ତାଙ୍କୁ ସବୁକଥା କହିଲି । ମୋତେ ସାବାସ୍ ଦେଇ ସେ କହିଲେ, ''ଗୁରୁଶିଷ୍ୟ ମଧ୍ୟରେ ଯେତେ ପାର ଝଗଡ଼ା ଲଗାଇଦିଅ ।'' ଆଗରୁ ଜାଣିଥିଲି, ସେହି ଦୁଇ ବିହାରୀ ପ୍ରଫେସାର ପରସ୍ପରର ଶତ୍ରୁ । ପଦୋନ୍ନତି ଲାଗି ଉଭୟଙ୍କ ମଧ୍ୟରେ ଏକଦା ବାଦ ବିସମ୍ବାଦ ଲାଗିଥାଏ । ଜଗଦୀଶ ସରକାର ବିହାର ଶିକ୍ଷା ବିଭାଗର ଡି.ପି.ଆଇ. ଥିଲା ସମୟରେ ଶର୍ମାଙ୍କ ପଦୋନ୍ନତିରେ ବାଧା ଦେଇ ସିହ୍ନାଙ୍କୁ ସାହାଯ୍ୟ କରିଥିଲେ ।

(ଏଠାରେ ଉଲ୍ଲେଖ ଯୋଗ୍ୟ, ପରବର୍ତ୍ତୀ ସମୟରେ ଅଯୋଧ୍ୟାର ରାମମନ୍ଦିର–ବାବରୀ ମସ୍‌ଜିଦ ବିବାଦ ବେଳେ, ଏହି ଦୁଇ ବରିଷ୍ଠ ଐତିହାସିକ ଭିନ୍ନ ଭିନ୍ନ ମତ ପୋଷଣ ପୂର୍ବକ ଜାତୀୟ ସଂବାଦପତ୍ରରେ ପ୍ରବନ୍ଧ ଲେଖିଥିଲେ । ବିନ୍ଧ୍ୟେଶ୍ୱରୀ ପ୍ରସାଦ ତଥ୍ୟଭିତ୍ତିକ ମତ ଦେଲେ ଯେ, ବାବରୀ ମସଜିଦ ନିର୍ମାଣ ପୂର୍ବରୁ ସେଠାରେ ହିନ୍ଦୁ ମନ୍ଦିର ଥିଲା । ରାମ ଶରଣ କହିଲେ, ନା, ସେଠାରେ ମନ୍ଦିରର ଚିହ୍ନବର୍ଣ୍ଣ ନ ଥିଲା । ଫଳରେ, ଜଣକୁ କୁହାଗଲା କଠୋରପନ୍ଥୀ ହିନ୍ଦୁ ଓ ଅନ୍ୟ ଜଣଙ୍କୁ ସରକାରୀ ଚାମଚା । ୧୯୯୪ ମସିହାରେ ମୁଁ ପାଟନା ଯାଇଥିଲାବେଳେ, ଅନ୍ୟ ଅଧ୍ୟାପକମାନଙ୍କ ସମ୍ମୁଖରେ ବିନ୍ଧ୍ୟେଶ୍ୱରୀ ମୋତେ ରହସ୍ୟ ଛଳରେ କହିଲେ, ''ରାମଶରଣ ଶର୍ମା ଏ ଯୁଗର ବାବର । ଦେଖିବାକୁ ବାଦଶାହ ବାବର ପରି । ତାଙ୍କ ଆତ୍ମା ସହିତ ବାବରଙ୍କ ଆତ୍ମା ମଧ୍ୟ ମିଶିଯାଇଛି ।'' କିଛି ଦିନ ପରେ ଶର୍ମାଙ୍କ ସହିତ ସାକ୍ଷାତ ହେଲା । ମୁଁ ତାଙ୍କୁ ଏହି କଥା କହିଲାବେଳେ, ସେ ଉତ୍ତର ଦେଲେ, ''ମୁଁ ଯଦି ଏ ଯୁଗର ବାବର, ବିନ୍ଧ୍ୟେଶ୍ୱରୀ ପ୍ରସାଦ ନିଶ୍ଚୟ ଏ ଯୁଗର ଶ୍ରୀରାମଭକ୍ତ 'ହନୁମାନ' ।'' ଉଭୟ ବିଦ୍ୱାନ ବ୍ୟକ୍ତିଙ୍କର ପରସ୍ପର ପ୍ରତି ଏହି ପ୍ରକାର ମନୋଭାବ ରହିଆସିଛି ।)

## ୭ ତାରିଖ : ବଡ଼ଲାଟଙ୍କ ଉଦ୍ୟାନ ଭୋଜି

ସେ ଦିନ ୪ଟାରେ ଅଷ୍ଟ୍ରେଲିଆର ଗଭର୍ଣ୍ଣର ଜେନେରାଲଙ୍କ ବାସଭବନରେ ଉଦ୍ୟାନ ଭୋଜିର କାର୍ଯ୍ୟକ୍ରମ ଥାଏ । ହଷ୍ଟେଲରୁ ବାହାରିଲା ପୂର୍ବରୁ ମୁଁ ପ୍ରତ୍ୟେକ ଭାରତୀୟ ପ୍ରତିନିଧିଙ୍କୁ ଆମ ଦେଶର ଜାତୀୟ ପୋଷକ ପିନ୍ଧିବା ଲାଗି ଅନୁରୋଧ ଜଣାଇଲି । ଅନେକେ ମୋ କଥାର ଅର୍ଥ ବୁଝିଲେ, କାରଣ ରାଷ୍ଟ୍ରମୁଖ୍ୟଙ୍କ ଉଦ୍ୟାନ ମିଳନ ଥାଏ ସରକାରୀ ଆନୁଷ୍ଠାନିକ ଉତ୍ସବ । କେତେଜଣ ଜାତୀୟ ପୋଷାକ ପିନ୍ଧିଲାବେଳେ, ଅନ୍ୟମାନେ ପାଶ୍ଚାତ୍ୟ ପୋଷାକ ପିନ୍ଧି ବାହାରିଲେ । କିନ୍ତୁ, ହିମାଂଶୁ ଭୂଷଣ ସରକାର ରୋକ୍ ଠୋକ ଜଣାଇଦେଲେ, ''ନା, ତା ହବେନା । ଆମି ଆମାର ଏଇ ବାଙ୍ଗାଲୀ ପୋଷାକ ପରେ ଇ ଯାବ ।'' ଧୋତି, ପଞ୍ଜାବୀ ଉପରେ ଚାଦର, ଗୋଡ଼ରେ ମୋଜା ତଳେ ବିଚିତ୍ର ଢଙ୍ଗର ଚପଲ ପିନ୍ଧି ସେ ନିଜର ଆଞ୍ଚଳିକ ସ୍ୱାଭିମାନ ରକ୍ଷା କଲେ ।

ଗଭର୍ଣ୍ଣର ଜେନେରାଲଙ୍କ ଉଦ୍ୟାନ ଥାଏ ଗୋଟିଏ ପ୍ରଶସ୍ତ ପ୍ରାଙ୍ଗଣ । ପ୍ରାଚ୍ୟ କଂଗ୍ରେସର ସଭ୍ୟମାନଙ୍କ ବ୍ୟତୀତ ବିଦେଶୀ ରାଷ୍ଟ୍ରଦୂତମାନେ ଆସିଥାନ୍ତି । ପ୍ରବେଶ ପଥରେ ବଡ଼ଲାଟ ଓ ତାଙ୍କ ପତ୍ନୀ ପ୍ରତ୍ୟେକ ସଭ୍ୟଙ୍କ ସହ କରମର୍ଦ୍ଦନ ପୂର୍ବକ ଭିତରକୁ ଯିବାକୁ ଅନୁରୋଧ କରୁଥିଲେ । ସେଥିରେ ଅନେକ ସମୟ ବିତିଲା । ତା ପରେ, ବାଦ୍ୟ ବାଜଣା ମଧ୍ୟରେ ସମସ୍ତେ ହାତରେ ପ୍ଲେଟ୍ ଧରି ଖାଇବାକୁ ଲାଗିଲେ । ଭାରତୀୟ ସରକାରୀ ଦଳର ୫ ଜଣଙ୍କୁ ସେହିଠାରେ ଭେଟିଲି । ସେମାନଙ୍କ ଦଳପତି ଥିଲେ ଆଲିଗଡ଼ ମୁସଲିମ୍ ବିଶ୍ୱବିଦ୍ୟାଳୟର ମୁଖ୍ୟ ଇତିହାସ ଅଧ୍ୟାପକ ତଥା ରାଜ୍ୟସଭା ସଦସ୍ୟ ଡକ୍ଟର ନୁରୁଲ୍ ହାସାନ୍ । ମୋତେ ପାଖକୁ ଡାକି କହିଲେ, ''ଦାସ୍, ତୁମକୁ ଭଲ ଖବରଟିଏ ଦେବି । ବର୍ଷକ ପାଇଁ ସିମଲା ରାଷ୍ଟ୍ରପତି ନିବାସରେ ଉଚ୍ଚତର ଗବେଷଣା ନିମନ୍ତେ ତୁମକୁ ମନୋନୀତ କରାଯାଇଛି । ମନା କରିବ ନାହିଁ, ନିଶ୍ଚୟ ଯିବ ।'' (ପରେ ନୁରୁଲ ହାସାନ କେନ୍ଦ୍ର ଶିକ୍ଷା ରାଷ୍ଟ୍ରମନ୍ତ୍ରୀ, ମସ୍କୋ ଠାରେ ଭାରତୀୟ ରାଷ୍ଟ୍ରଦୂତ ଓ ପଶ୍ଚିମବଙ୍ଗର ରାଜ୍ୟପାଳ ପଦ ମଣ୍ଡନ କରିଥିଲେ ।)

ତହିଁ ପରଦିନ ଠାରୁ ପ୍ରତ୍ୟେକ ପୂର୍ବାହ୍ନରେ ପ୍ରବନ୍ଧ ପାଠ ଓ ଆଲୋଚନା ଲାଗିରହିଲା । ଅପରାହ୍ନରେ କ୍ୟାନବେରାର ଦର୍ଶନୀୟ ସ୍ଥାନମାନ ଦେଖିବାକୁ ନିଆଗଲା ।

## ୮–୧୨ ତାରିଖ: କେତୋଟି ସ୍ମୃତି

ଯେଉଁ ଦେଶର ଐତିହ୍ୟ ନାହିଁ, ସେ ଦେଶରେ ଐତିହାସିକ କୀର୍ତ୍ତିରାଜିର ପ୍ରଶ୍ନ ନାହିଁ । ତେଣୁ ଯେଉଁ ସ୍ଥାନଗୁଡ଼ିକୁ ନିଆଗଲା, ସେ ସବୁ ଦେଖିବା ଲାଗି

କାହାର ଆଗ୍ରହ ନଥାଏ । ପାର୍ଲିଆମେଣ୍ଟ ଭବନ, ସରକାରୀ ଦପ୍ତର, ପ୍ରଧାନମନ୍ତ୍ରୀଙ୍କ ବାସସ୍ଥାନ, ବଡ଼ଲାଟ ଭବନ, ବିଭିନ୍ନ ଦେଶର ଦୂତାବାସ ଓ ସେଣ୍ଟଜନ୍ ଗିର୍ଜାଗୃହ ଇତ୍ୟାଦି ଦେଖିଲା ବେଳେ ମନେ ହେଉଥାଏ, ସେଗୁଡ଼ିକ ନ ଦେଖିଲେ ଚଳିବ । କିନ୍ତୁ, ପ୍ରତ୍ୟେକ ସ୍ଥାନର ବିଶେଷତ୍ୱ ଥାଏ 'ପ୍ରାକୃତିକ ଶୋଭା' । ନଗର ନିର୍ମାତାମାନେ ପ୍ରତ୍ୟେକ ବଡ଼ ବଡ଼ ସୌଧକୁ ପ୍ରଶସ୍ତ ପଡ଼ିଆ ମଧ୍ୟରେ ଗଠନ କରିଥିଲେ ଏବଂ ବିବିଧ ପ୍ରକାର ବୃକ୍ଷ ଲତା ଦ୍ୱାରା ଶୋଭାମୟ ରଖିଥିଲେ । ଘାସମଣ୍ଡିତ ପଡ଼ିଆ ସବୁଜ ଗାଲିଚା ପରି ଦେଖା ଯାଉଥାଏ ।

ଯେଉଁଠାକୁ ଗଲେ ଗୋଟିଏ ଜଞ୍ଜାଳ, ଛୋଟ ଛୋଟ ମାଛି । ନିଘଞ୍ଚ ଘାସ ଭିତରୁ ଉଡ଼ି ଆସି ମୁହଁରେ ବସି ପଡ଼ିବେ ଓ ଯେତେ ବିଞ୍ଚିଲେ ମଧ୍ୟ ନିମିଷ ମଧ୍ୟରେ ପୁଣି ଆସିଯିବେ । ମାଛି ଆକ୍ରମଣରୁ ଆଖି, କାନ, ନାକ ଓ ଓଠ ରକ୍ଷା କରିବାକୁ ସଦାବେଳେ ମୁହଁ ପାଖରେ ରୁମାଲ ବିଞ୍ଚିବାକୁ ହେଉଥାଏ । ମାଟିତଳୁ ଘାସପଡ଼ିଆରେ ଦିନ ରାତି ପାଣି ଯୋଗାଣ ବ୍ୟବସ୍ଥା ଥିବା ଯୋଗୁଁ ଓଦା ପଡ଼ିଆରେ ମାଛିର ସଂଖ୍ୟା ସେପରି ବେଶି । ଅଥଚ, ମଶା ନାହିଁ ।

ଦିନେ ଉପରଓଳି ଆମକୁ କଙ୍ଗାରୁ ଦେଖାଇବା ପାଇଁ ସହର ବାହାରକୁ ନିଆଗଲା । ଅଷ୍ଟ୍ରେଲିଆ ହେଉଛି କଙ୍ଗାରୁର ଦେଶ । ଅନିର୍ଦ୍ଦିଷ୍ଟ ଜଙ୍ଗଲ ଚାରି ପଟେ ଲୁହା ତାର ଦିଆଯାଇଥାଏ । ତା ଭିତରେ ବିଦେଶୀମାନଙ୍କ ଦେଖିବା ଲାଗି କେତେଗୁଡ଼ିଏ କଙ୍ଗାରୁ ରଖାଯାଇଛି । ସେହି ଅଦ୍ଭୁତ ଜନ୍ତୁଟିର ତଳି ପେଟରେ ଥଳି ଥାଏ । ତା ଭିତରୁ ଛୁଆ କଙ୍ଗାରୁ ମୁହଁ ବାହାର କରି ବସିରହେ । କଙ୍ଗାରୁଗୁଡ଼ିକ ଦଳ ଦଳ ହୋଇ ବୁଲନ୍ତି । ଦୌଡ଼ିଲାବେଳେ ଘଣ୍ଟାକୁ ପ୍ରାୟ ୫୦ କିଲୋମିଟାର ବେଗରେ ଲମ୍ଫ ଦେଇ ଦେଇ ଚାଲନ୍ତି । ମଣିଷ ଦେଖିଲେ ପାଖକୁ ଆସନ୍ତି । ସେତିକିବେଳେ ଦର୍ଶକମାନେ ଜନ୍ତୁଗୁଡ଼ିକର ଫଟୋ ଉଠାନ୍ତି । କଙ୍ଗାରୁ ଦେଖିବା ପାଇଁ ସମସ୍ତଙ୍କର ଆଗ୍ରହ ରହିଛି । ଆମେରିକା ଓ ଇଉରୋପରୁ ଆସିଥିବା ଡେଲିଗେଟମାନେ ଘନ ଘନ ଫଟୋ ନେବା ଦେଖିଲି ।

ଆମେ ଚାରି ପାଞ୍ଚଜଣ ଭାରତୀୟ କଙ୍ଗାରୁ ଦେଖିସାରି ବାସ୍ ପାଖକୁ ଫେରିଲୁଁ । କିଛି ସମୟ ପରେ ବୃଦ୍ଧ ହିମାଂଶୁ ସରକାର କ୍ଷୋଭରେ ଭାଙ୍ଗିପଡ଼ିବା ଅବସ୍ଥାରେ ପହଞ୍ଚି ଜଗଦୀଶ ସରକାରଙ୍କ ଆଗରେ ଅଭିଯୋଗ କଲେ, ''ଦେଖନ୍ତୁ, ଓଇ ଦୁଇ କାନାଡ଼ାର ବୁଢ଼ୀ ଆମାକେ କଙ୍ଗାରୁର କାଛେ ରେଖେ ଫଟୋ ନିଏ ନିଲ । ଆମି କି କଙ୍ଗାରୁର ମତନ ଜନ୍ତୁ! ଯଖନ୍ ଡେକେ ନିଏ ଗେଲ, ଓଦେର ମତ୍‌ଲବ ବୁଝତେ ପାରଲାମ୍ ନା । କି ଦୁଃଖେର ବିଷୟ ବଲୁନ୍ ତ ?''

ତାଙ୍କ କଟା ଘା'ରେ ଲୁଣ ପକାଇବା ଭଳି ବନ୍ଧୁ ଜଗଦୀଶ ସରକାର ଥଟ୍ଟାରେ କହିପକାଇଲେ, ''ବୁଢ଼ୀ ବୁଝି ଭାବିଲୋ, ଅଷ୍ଟ୍ରେଲିଆର କଙ୍ଗାରୁର କାଛେ ଆପନି ହବେନ୍ ଆଫ୍ରିକାର ଓଟପକ୍ଷୀ ।'' ତତ୍‌କ୍ଷଣାତ୍ ମୋ ପାଟିରୁ ବାହାରିଗଲା, ''ହିମାଂଶୁ ବାବୁ, କିଛୁ ମନେ କରବେନ୍ ନା । କାନାଡାର ଦୁଇ ବୁଢ଼ୀ ଆପନାର ଧୋତି, ପାଞ୍ଜାବି, ଶାଲ, ଚଟି ଦେଖେ ଆପନାର ପୋଷାକେର ଫଟୋ ନିତେ ଚେୟେଛିଲ, ଆପନାର ନୟ ।'' ଗମ୍ଭୀର ସ୍ୱରରେ ସେ କହିଲେ, ''ଆପନି କି ବଲ୍‌ତେ ଚାନ୍, ତା ବୁଝେଛି ।'' ତହିଁ ପରଦିନ ପାଖରୁ ସରକାର ମହାଶୟଙ୍କୁ ପାଶ୍ଚାତ୍ୟ ପୋଷାକ ପିନ୍ଧିବା ଦେଖିଲି । ବାସ୍ତବିକ, ନିଜ ଦେଶରେ ଆଞ୍ଚଳିକ ପୋଷାକ ପିନ୍ଧିବା ଯେପରି ସ୍ୱାଭାବିକ, ବିଦେଶରେ ଯେକୌଣସି ବ୍ୟକ୍ତିର ବିଚିତ୍ର ପୋଷାକ ପ୍ରତି ଅନ୍ୟମାନଙ୍କର ଦୃଷ୍ଟି ପଡ଼ିବା ମଧ୍ୟ ସେହିପରି ସ୍ୱାଭାବିକ ।

ଆଉ ଗୋଟିଏ ଦିନର ଘଟଣା । ଅପରାହ୍ନରେ ଭ୍ରମଣ ପ୍ରୋଗ୍ରାମ୍ ନଥାଏ । ମୋ ପାଖ ରୁମ୍‌ରେ ଥିବା ଆଇଲ୍ୟାଣ୍ଡର ଐତିହାସିକ କହିଲେ, ''ଟ୍ୟାକ୍ସିରେ ସହର ବାହାରର ପ୍ରାକୃତିକ ଦୃଶ୍ୟ ଦେଖିବା ଚାଲନ୍ତୁ ।'' ମୁଁ ବାହାରିପଡ଼ିଲି । ଅନେକ ଦୂରରୁ 'ଲୋହିତ ପାହାଡ଼'ର ଦୃଶ୍ୟ ଉପଭୋଗ କରି ଫେରିଲୁଁ । ଯିବା ଆସିବା ସମୟରେ ସେ ତାଙ୍କ କଥା କହୁଥାନ୍ତି । ବୌଦ୍ଧ ହେଲେ ମଧ୍ୟ, ହିନ୍ଦୁ ଦେବତା ଗଣେଶଙ୍କ ମୂର୍ତ୍ତି ତାଙ୍କ ଘରେ ପୂଜାପାଏ ବୋଲି କହିଲେ । ବର୍ଣ୍ଣନା କଲେ, ''ଭାରତକୁ ତିନିଥର ଯାଇଛି ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ଗଣେଶମୂର୍ତ୍ତି ଦେଖି ବିମୁଗ୍ଧ ହୋଇଛି । ସେପରି ସୁନ୍ଦର ଗଣେଶ ମୂର୍ତ୍ତି ମୁଁ ଅନ୍ୟ କୌଣସିଠାରେ ଦେଖି ନାହିଁ ।''

ପଚାରିଲି, ''ଆପଣ ଭାରତ ସରକାରଙ୍କ ନିମନ୍ତ୍ରଣରେ ଯାଇଥିଲେ ନା ଥାଇ ସରକାର ପଠାଇଥିଲେ ?'' ଉତ୍ତର ଦେଲେ, ''ନିଜ ଖର୍ଚ୍ଚରେ ବୌଦ୍ଧ ପୀଠମାନ ଦେଖିବାକୁ ଯାଇଥିଲି । ତୀର୍ଥଯାତ୍ରା କହିଲେ ଠିକ୍ ହେବ ।''

ହଷ୍ଟେଲକୁ ଫେରିଲା ପରେ ସେ ଟ୍ୟାକ୍ସିଭଡ଼ା ଦେବାଲାଗି ମନିବ୍ୟାଗ୍ ବାହାର କଲା କ୍ଷଣି, ମୁଁ ତାଙ୍କ ହାତଟିକୁ ବଳପୂର୍ବକ ଠେଲିଦେଇ ନିଜେ ଭଡ଼ା ଟଙ୍କା ଦେଇଦେଲି । ସେପରି ବ୍ୟବହାର ମୂଳରେ ମନୋଭାବ ଥିଲା, ଯେତେହେଲେ ମୁଁ ଭାରତୀୟ ଏବଂ ଦକ୍ଷିଣପୂର୍ବ ଏସିଆର ଲୋକଙ୍କ ଆଗରେ ମୁଁ ହେଉଛି 'ବଡ଼ ଭାଇ' ତୁଲ୍ୟ ମନୁଷ୍ୟ (Big Brother) । ଜାଣି ନଥିଲି, ସେହି ସରଳ ଶାନ୍ତ ଯୁବକଟି କିଏ !

ରାତିରେ କ୍ୟାଣ୍ଟିନରେ ଖାଇଲାବେଳେ ଦେଖିଲି, ପାଖ ଟେବୁଲରେ ବସି ବାରାଣସୀ ପଣ୍ଡିତଙ୍କୁ ତାଙ୍କ ସ୍ତ୍ରୀ ଅନେକ ସମୟ ଭର୍ତ୍ସନା କରୁଛନ୍ତି, ଅଥଚ ସ୍ୱାମୀ ଉତ୍ତର

ନଦେଇ ନିର୍ବିକାର ଚିତ୍ତରେ ଉଦରସେବାରେ ଲାଗିଛନ୍ତି । ସ୍ତ୍ରୀଙ୍କ କଟୂକ୍ତି ବନ୍ଦ ହେଉ ନଥାଏ କିମ୍ବା ସ୍ୱାମୀଙ୍କ ନୀରବତା ଭାଙ୍ଗୁ ନଥାଏ । ରହସ୍ୟ ବୁଝିବା ଉଦ୍ଦେଶ୍ୟରେ ପାଖକୁ ଯାଇ ଭଦ୍ର ମହିଳାଙ୍କୁ ହିନ୍ଦୀରେ ପଚାରିଲି, ''ପଣ୍ଡିତ ମହୋଦୟଙ୍କ ପ୍ରତି ବିରକ୍ତ ହେଉଛନ୍ତି କାହିଁକି ?'' ଅଭିଯୋଗଗୁଡ଼ିକ ଉଦ୍‌ଗାର କରି ପଣ୍ଡିତପତ୍ନୀ ଏକା ନିଶ୍ୱାସରେ କହିଗଲେ, ''ଦାସ୍ ଜୀ, ଆପଣ ବିଚାର କରନ୍ତୁ । ମୋର ଚାରି ଝିଅ ଅବିବାହିତ । ସେମାନଙ୍କ ସୁନା ଗହଣା ଲାଗି ଟଙ୍କା ନାହିଁ । ଏଠାରେ ସୁନା ଭରି ୪୦ ଟଙ୍କା । ଯାଙ୍କୁ ମୁଁ କହୁଛି, କାହାରି ପାଖରୁ ଟଙ୍କା ଧାରକରି ଦୁଇଟା ଓଜନଦାର ହାର, ହାତର ୮ ପଟ ଚୁଡ଼ି, ଓ ଆଉ କେତୋଟି ଅଳଙ୍କାର ନେଇଗଲେ କନ୍ୟାଦାୟରୁ ମୁକ୍ତି ପାଇବା । ଗହଣାତକ ମୁଁ ପିନ୍ଧିବି । ଖାଲିଦେହରେ ଆସିଛି । ଯେତେ ପିନ୍ଧିଲେ ଚଳିବ । ଶହେଥର ଏକଥା ଯାଙ୍କୁ କହିଲିଣି । ପାଟି ଫିଟାଉ ନାହାନ୍ତି ।''

ତାଙ୍କୁ ବୁଝାଇ କହିଲି, ''ଆପଣଙ୍କ ସ୍ୱାମୀଙ୍କୁ ଜେଲକୁ ଯିବାକୁ ହେବ । ଏ ଦେଶରୁ କେହି ସୁନା ନେଇ ଯାଇ ପାରିବେ ନାହିଁ । ଆସିଲାବେଳେ କଲିକତା ବିମାନ ଘାଟିରେ ଶୁଳ୍କ ବିଭାଗ ଫର୍ମରେ ପାଖରେ ଥିବା ଘଡ଼ି କଲମର ତାଲିକା ବି ଲେଖିଦିଆଯାଇଛି । ଆପଣଙ୍କ ଅଙ୍ଗୁଠିଟି ମଧ୍ୟ ଘୋଷଣା କରାଯାଇଛି । ତେଣୁ, ଦେହସାରା ଗହଣା ପିନ୍ଧି ଫେରିବେ କିପରି ? ପୁଣି, ଅଷ୍ଟ୍ରେଲିଆରେ ତିଆରି ଗହଣା ! ବିମାନରୁ ବାହାରିବାକ୍ଷଣି ପଣ୍ଡିତ ମହାଶୟ ହାଜତ୍‌କୁ ଯିବେ । ତା ଛଡ଼ା, ପ୍ରତ୍ୟେକଙ୍କୁ ମାତ୍ର ୭୫ ଟଙ୍କା ଆଣିବାକୁ ଅନୁମତି ମିଳିଥିଲାବେଳେ, ଆପଣ ଏତେ ସୁନା କିଣିବାକୁ ଟଙ୍କା ପାଇଲେ କେଉଁଠୁ ବୋଲି ପଚାରିଲେ ପଣ୍ଡିତଜୀ କ'ଣ ଉତ୍ତର ଦେବେ ?''

ଭଦ୍ରମହିଳା କିଛି ନ କହି ଚାଲିଗଲେ । ପଣ୍ଡିତ ମହୋଦୟଙ୍କୁ ପଚାରିଲି, ''ତାଙ୍କୁ ବୁଝାଇବାକୁ ଚେଷ୍ଟା ନ କରି, ମୌନୀ ସାଧୁ ପରି ବସିରହି ଗାଳି ଶୁଣୁଛନ୍ତି କାହିଁକି ?'' ନିରୀହ ଭଦ୍ରବ୍ୟକ୍ତି ଉତ୍ତର ଦେଲେ, ''ଅଉରତ୍ ତୋ ଔରତ୍ ନା । ସବ୍ ମାଲୁମ୍, ଲେକିନ୍ କୁଛ୍ ବି ମାଲୁମ ନେହିଁ । ଇସ୍‌ଲିୟେ ମେ ମୌନୀ ବନ୍‌ଗେୟା ।''

ସୁନା ଆଣିବା ପାଇଁ ଅନୁମତି ନଥିଲେ ମଧ୍ୟ, ଅଷ୍ଟ୍ରେଲିଆରୁ ମୁକ୍ତା କିଣିବା ଲାଗି ସ୍ୱତନ୍ତ୍ର ବ୍ୟବସ୍ଥା ଥାଏ । ସେଠାରେ ଯେଉଁ ଦାମ୍, ବାହାରେ ତାହାର ଦାମ ଦଶ ଗୁଣ ବେଶି । ବିଦେଶୀ ସଦସ୍ୟମାନେ ମୁକ୍ତାହାର କିଣିବା ନିମନ୍ତେ ଫର୍ମପୂରଣ କରୁଥିବା ଦେଖିଲି । କେତେଜଣ ଭାରତୀୟ ମଧ୍ୟ ସେଥିପାଇଁ ତତ୍ପର ଥିବା ଜଣାଗଲା । ଗୁଜରାଟୀ ଅଧ୍ୟାପକ ଜଣାଇ ଦେଲେ ଯେ ତାଙ୍କର ଜଣେ

ସମ୍ପର୍କୀୟ କ୍ୟାନବେରାରେ ବ୍ୟବସାୟ କରନ୍ତି ଓ ଟଙ୍କା ଧାର ଦେବାକୁ ପ୍ରସ୍ତୁତ । ୩ ହଜାର ଟଙ୍କା କରଜ ନେଲି । ଝିଅ ପାଇଁ ହାରଟିଏ କିଣିଲି । ସାଙ୍ଗରେ ଆଣିବା ନିଷେଧ ଥାଏ । ସେଠାକାର କାଷ୍ଟମସ୍ ଅଫିସରୁ ସିଧା କଲିକତା କାଷ୍ଟମସ୍ ଅଫିସରେ ପହଞ୍ଚିବ ବୋଲି କୁହାଗଲା । (ଝିଅ ଲାଗି ମୁକ୍ତାହାର ଆଣିଥିଲି ସତ୍ୟ, କିନ୍ତୁ ତାକୁ ଦେବା ଲାଗି ଇଚ୍ଛା ହେଲା ନାହିଁ । ଗଳାରେ ପିନ୍ଧିଲେ ଜୀବନ ପ୍ରତି ବିପଦ ଆସିବ ଜାଣି, ବରାବର ପାଇଁ ବ୍ୟାଙ୍କ ଲକାରରେ ରଖିଦେବାକୁ ବାଧ୍ୟ ହେଲି ।)

ଦିନେ ସନ୍ଧ୍ୟାରେ କଂଗ୍ରେସ ପ୍ରତିନିଧିମାନଙ୍କୁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରାଯାଇଥିବା ଅଷ୍ଟ୍ରେଲିଆର ଆଦିମମାନଙ୍କ ସମ୍ବନ୍ଧରେ ଚଳଚ୍ଚିତ୍ର ଦେଖିବାକୁ ନିଆଗଲା । ସୁଦୂର ଅତୀତରେ ସେମାନେ ଯେଉଁ ଅବସ୍ଥାରେ ଥିଲେ, ଏବେ ମଧ୍ୟ ସେହିପରି ଅବସ୍ଥାରେ ଅଛନ୍ତି । ମରୁଭୂମିର ବୁଦାଗୁଡ଼ିକ ପାଖରେ ସେମାନେ ରହନ୍ତି । କୁଡ଼ିଆ ତିଆରି ଜାଣି ନାହାନ୍ତି । ସମ୍ପୂର୍ଣ୍ଣ ଉଲଗ୍ନ ଦେହ । ପୁରୁଷମାନଙ୍କର ଦାଢ଼ି ତଳିପେଟ ପର୍ଯ୍ୟନ୍ତ ଲମ୍ୱି ରହିଥାଏ । ସେମାନେ କାମ କରନ୍ତି ନାହିଁ, ବସି ବସି ଖାଆନ୍ତି । ସ୍ତ୍ରୀମାନେ ଖାଦ୍ୟ ସଂଗ୍ରହ କରନ୍ତି । ଜଣେ ସ୍ତ୍ରୀଲୋକ ବୁଦା ମଳି ମଳି ଧୂଳିକଣା ପରି ମେଞ୍ଚାଏ ମଞ୍ଜି ବାହାର କରି ଖଣ୍ଡିଏ ପଥର ଉପରେ ରଖିଲା । ତା ପରେ, ଦୁଇ ଖଣ୍ଡି ପଥର ବାଡ଼େଇ ନିଆଁ ବାହାର କରି ଶୁଖିଲା ପତ୍ର ଜାଳିଲା । ଜଳନ୍ତା ପତ୍ରଗୁଡ଼ିକୁ ନେଇ ପଥର ଉପରେ ଥିବା ବୁଦା ମଞ୍ଜିଗୁଡ଼ିକ ଚାରି ପାଖରେ ରଖିଲା । ମଞ୍ଜିମେଞ୍ଚା ତାତିଲା ପରେ, ତାକୁ ଉଠାଇ ସ୍ୱାମୀ ଓ ଦୁଇ ପିଲାଙ୍କ ହାତରେ ଧରାଇଦେଲା । ସେମାନେ ତାହା ଖାଇଲେ । ସେତେବେଳକୁ ସ୍ତ୍ରୀଲୋକଟି ଆଉ ଗୋଟିଏ ବୁଦାରୁ କେତୋଟି ଝିଟିପିଟି ଧରିଆଣି ନିଆଁ ପାଖରେ ସେକିଲା । ସେହି ଅଧାପୋଡ଼ା ଝିଟିପିଟିଗୁଡ଼ିକ ବୁଢ଼ା ଓ ପିଲାମାନେ ଚୋବାଇ ଚୋବାଇ ଖାଇଗଲେ । ସମସ୍ତଙ୍କର ପାଟି ଚାରି ପାଖରେ ମାଛି ଭଣ ଭଣ କରୁଥାଏ, ଆଖି ପାଖରେ ମଧ୍ୟ । କିନ୍ତୁ ମାଛି ବସୁଥିବା କଥା ସେମାନେ ବୁଝିପାରୁ ନଥିଲେ । ମୁହଁ ଧୋଇବା ସେମାନେ ଶିଖି ନାହାନ୍ତି । ଏବେକାର ସଂସାରରେ ଏପରି ମଣିଷ ଅଛନ୍ତି ବୋଲି ବିଶ୍ୱାସ କରିବା କଷ୍ଟକର । ଏହି ସର୍ବପ୍ରାଚୀନ ଜାତୀୟ ଆଦିମମାନେ ଅଳ୍ପକାଳ ମଧ୍ୟରେ ଧରାପୃଷ୍ଠରୁ ଲୋପ ପାଇଯିବେ ବୋଲି କୁହାଗଲା ।

ଅଷ୍ଟ୍ରେଲିଆ ମହାଦେଶରେ ଲକ୍ଷ ଲକ୍ଷ ଏକର ବ୍ୟାପୀ ତୃଣଭୂମି ପଡ଼ିରହିଛି । ସେଥିରେ ଚାଷ କରାଯାଏ ନାହିଁ । ଲକ୍ଷ ସଂଖ୍ୟାରେ, ମେଣ୍ଢା ଚରିବା ଲାଗି ସ୍ଥାନଗୁଡ଼ିକ ପତିତ ରଖାଯାଇଛି । ଧନିକ ଗୋଷ୍ଠୀର ଲୋକେ ମେଣ୍ଢା ପାଳନ

ପୂର୍ବକ ଅଜସ୍ର ଅର୍ଥ ଉପାର୍ଜ୍ଜନ କରନ୍ତି । ମେଷଲୋମରୁ ପର୍ଯ୍ୟାପ୍ତ ଉଲ୍ ସଂଗ୍ରହ କରିବା ସହ ବିଦେଶକୁ ମେଣ୍ଢାମାଂସ ରପ୍ତାନି କରି ସେମାନେ ନିଜର ଓ ସରକାରଙ୍କ ଆୟ ବୃଦ୍ଧି କରନ୍ତି । ଜଣେ ଜଣେ ବ୍ୟକ୍ତିର ସହସ୍ର ସହସ୍ର ଏକର ଜମି ରହିଛି । ସହର ବାହାରେ ରହି ସେମାନେ ସହରବାସୀଙ୍କ ଅପେକ୍ଷା ଅଧିକ ସୁଖରେ ରହନ୍ତି । ଭୂସମ୍ପତ୍ତିର ସୀମା ବା ଆକାର ଉପରେ କିଛି କଟକଣା ନାହିଁ । କାରଣ, ଲୋକସଂଖ୍ୟା ଦୃଷ୍ଟିରୁ ମହାଦେଶରେ ଭୂମିର ଅଭାବ ନାହିଁ ।

ଆଶ୍ଚର୍ଯ୍ୟର ବିଷୟ, ପୃଥିବୀର ସର୍ବତ୍ର ଥିବା ଗାଁ ଗଣ୍ଡା ପରି ଅଷ୍ଟ୍ରେଲିଆ ମହାଦେଶରେ ଗ୍ରାମାଞ୍ଚଳ ଓ ଗ୍ରାମ୍ୟଜୀବନ ବୋଲି କିଛି ନାହିଁ । ସହର ଠାରୁ ଦୂରରେ ସୀମାହୀନ ଅଞ୍ଚଳର ପଶୁପାଳନ କେନ୍ଦ୍ରଗୁଡ଼ିକ ନିକଟରେ କେତେଗୁଡ଼ିଏ ଘରଦ୍ୱାର ଓ ଛୋଟ ଛୋଟ ବଜାର ଗଢ଼ିଉଠିଛି । ସେ ଗୁଡ଼ିକ ଗାଁ ନୁହେଁ, କି ସହର ନୁହେଁ । ଅଳ୍ପସଂଖ୍ୟକ ଲୋକଙ୍କ ବସତି ମାତ୍ର । ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳରେ ଯେଉଁ ସହରମାନ ଗଢ଼ି ଉଠିଛି, ସେଠାକାର ଲୋକସଂଖ୍ୟା ମଧ୍ୟ ଅତ୍ୟନ୍ତ ଅଳ୍ପ । ଅନେକ ଗୁଡ଼ିଏ ସହରର ଜନସଂଖ୍ୟା ୨୫ ହଜାରରୁ ବେଶି ନୁହେଁ । ଅପର ପକ୍ଷରେ, ସ୍ଥାନର ଅଭାବ ନଥିବା ଯୋଗୁଁ ସହରଗୁଡ଼ିକର ପରିସର ଅନେକ ବଡ଼ । ପ୍ରତ୍ୟେକ ଘର ଚାରି ପାଖରେ ଏକର ଏକର ବ୍ୟାପୀ ବଗିଚା । ସେଥିପାଇଁ, ଲୋକସଂଖ୍ୟା ଅନୁପାତରେ ସହରର ଆୟତନ ଅନେକ ବେଶି । ଭାରତର ସହର ଗୁଡ଼ିକରେ ଘରଗୁଡ଼ିକ ଯେପରି ପାଖକୁ ପାଖ ଖୁନ୍ଦି ରହିଛି ଓ ଗଳିପ୍ରଗଳିରେ ଜନଗହଳି ଲାଗି ରହିଛି, ସେପରି ଦୃଶ୍ୟ ଅଷ୍ଟ୍ରେଲିଆରେ ଦେଖିବା ଅସମ୍ଭବ । ଯେଉଁ ରାଜଧାନୀ କ୍ୟାନ୍‌ବେରା ସହରରେ ଆମେ ଆଠ ଦିନ ବିତାଇଲୁଁ, ତାହାର ଲୋକସଂଖ୍ୟା ସେତେବେଳେ ଥାଏ ୧ ଲକ୍ଷରୁ ଊଣା । କିନ୍ତୁ ରାଜଧାନୀର ଆକାର ଦିଶୁଥାଏ ଅନିର୍ଦ୍ଦିଷ୍ଟ ।

## ଅଷ୍ଟ୍ରେଲିଆରୁ ବିଦାୟ

ଜାନୁଆରୀ ୧୩ ତାରିଖ ସକାଳ ୯ଟା ବେଳେ ଆମ ଦଳକୁ ନେଇ ତିନି ଖଣ୍ଡି ଗାଡ଼ି ବିମାନଘାଟି ଠାରେ ପହଞ୍ଚିଲା । ଅଳ୍ପ ଦୂରରେ ଖଣ୍ଡିଏ ଲିମୋସିନ୍ ଗାଡ଼ିରୁ ବାହାରି ଆସୁଥାନ୍ତି ଦୁଇଜଣ ଶରୀରରକ୍ଷୀଙ୍କ ଗହଣରେ ଜଣେ ଯୁବକ । ଚିହ୍ନିନେଲି, ମୋ ପାଖ ରୁମରେ ରହିଥିବା ଥାଇ ଐତିହାସିକ । ବିଦାୟ ସାକ୍ଷାତ ଲାଗି ଆଗେଇବାବେଳକୁ ସେ ଚାଲିଗଲେ ଅଷ୍ଟ୍ରେଲୀୟ ସୈନ୍ୟଦଳ ପାଖରୁ ଗାର୍ଡ଼ ଅଫ ଅନାର ସେଲ୍ୟୁଟ୍ ଗ୍ରହଣ କରିବା ଲାଗି । ସେଠାରେ ଥିବା କେତେଜଣ ଥାଇ କର୍ମଚାରୀ ତାଙ୍କ ସମ୍ମୁଖରେ ନତମସ୍ତକ ହେବା ଦେଖିଲି । ଜଣେ ଅଷ୍ଟ୍ରେଲୀୟ ଅଧ୍ୟାପକ ତାଙ୍କୁ ‘Your Royal Highness’ ବୋଲି ସମ୍ବୋଧନ ସହ ବିଦାୟ

ନେଇ ଫେରିଲା ବେଳେ ମୁଁ ପଚାରିଲି, "ସେ କିଏ ?" ଉତ୍ତର ମିଳିଲା, "ସେ ଥାଇଲ୍ୟାଣ୍ଡ ରାଜାଙ୍କର ଜଣେ ପୁତ୍ର ।"

ସେତେବେଳକୁ ସେ ସ୍ୱତନ୍ତ୍ର ଥାଇ ବିମାନ ଦିଗକୁ ଚାଲିଥିଲେ । ତରତରରେ ତାଙ୍କ ପାଖରେ ପହଞ୍ଚି ବିଦାୟ ନମସ୍କାର ସହ କହିଲି, "ପ୍ରଥମରୁ ଆପଣ ଯଦି ପରିଚୟ ଦେଇଥାନ୍ତେ, ତେବେ ଅନ୍ତତଃପକ୍ଷେ ଟ୍ୟାକ୍ସି ଭଡ଼ା ଦେଲାବେଳେ ମୁଁ ସଂଯମ ରକ୍ଷା କରିଥାନ୍ତି ।" କରମର୍ଦ୍ଦନ କରୁଥିବା ଅବସ୍ଥାରେ ସେ ହସି ହସି କହିଲେ, "ଇତିହାସ ଛାତ୍ର ରୂପେ ଆମେ ଦୁହେଁ ଭାଇ ଭାବରେ ହଷ୍ଟେଲରେ ଥିଲୁଁ । ରାଜପୁତ୍ରର ପରିଚୟ ନେଇ କଂଗ୍ରେସରେ ଯୋଗ ଦେବାକୁ ଆସି ନଥିଲି । ସର୍ତ୍ତ ରଖିଥିଲି ଯେ, ଜଣେ ଐତିହାସିକ ବ୍ୟତୀତ ଅନ୍ୟ କୌଣସି କଥା ମୋ ସମ୍ବନ୍ଧରେ ଆଉ କେହି ଜାଣିବେ ନାହିଁ ।"

(ତାଙ୍କ ନାମ ଓ ଠିକଣା ଲେଖା ଥିବା କାର୍ଡ଼ଟି ସେ ମୋତେ ଦେଇଥିଲେ ଓ ବ୍ୟାଙ୍ଗକକ୍ ଆସିଲେ ଦେଖା କରିବାକୁ ଅନୁରୋଧ ଜଣାଇଥିଲେ । ସେହି କାର୍ଡ଼ଟି ଅନେକ ଦିନ ମୋ ବ୍ୟାଗ୍‌ରେ ଥାଏ । କିନ୍ତୁ ୧୯୯୧ରେ ମୋ ଝିଅ ସଂଘମିତ୍ରା ବ୍ୟାଙ୍ଗକକ୍ ଗଲାବେଳେ କାର୍ଡ଼ଖଣ୍ଡିକ ଖୋଜି ଖୋଜି ପାଇଲି ନାହିଁ ।)

କ୍ୟାନବେରା ବିମାନ ବନ୍ଦରରୁ ସିଡନୀ ବିମାନଘାଟିରେ ପହଞ୍ଚିବାକୁ ୪୫ ମିନିଟ ଲାଗିଲା । ଦୂରତ୍ୱ ୨୦୦ ମାଇଲ । ସେଠାରୁ କ୍ୱାଣ୍ଟାସ ଉଡ଼ାଜାହାଜ ଛାଡ଼ିଲା ସୁଦୂର ସିଙ୍ଗାପୁର ଅଭିମୁଖେ ।

## ସିଙ୍ଗାପୁର

ଆକାଶରୁ ଅବତରଣ କଲା ସମୟରେ ଦ୍ୱୀପନଗର ସିଙ୍ଗାପୁର ରାଜ୍ୟର ଅପରୂପ ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେବାକୁ ହେଲା । ଦ୍ୱୀପର ପୂର୍ବ ଭାଗରେ ଭାରତ ମହାସାଗର ଓ ପଶ୍ଚିମ ଭାଗରେ ଦକ୍ଷିଣ ଚୀନ ସାଗର । ଜାନୁଆରୀ ୧୪ ତାରିଖ ଦିନଟି ସିଂଙ୍ଗାପୁରରେ ରହିବା ବ୍ୟବସ୍ଥା କରାଯାଇଥାଏ ।

ସହରରେ ପ୍ରବେଶ କଲାବେଳେ ଜଣା ପଡ଼ିଗଲା ଯେ ସ୍ଥାନଟି ହେଉଛି କ୍ୟାନବେରାର ସମ୍ପୂର୍ଣ୍ଣ ବିପରୀତ । ପ୍ରାକୃତିକ ପରିବେଶ ମନୋମୁଗ୍ଧକର ଥିଲାବେଳେ, ସହରଟି ଥାଏ ଅତ୍ୟନ୍ତ ଜନାକୀର୍ଣ୍ଣ । ବନ୍ଦର ନଗର ଭାବରେ ସିଙ୍ଗାପୁର ହେଉଛି ପୃଥିବୀର ଅନ୍ୟତମ ବୃହତ୍ ଆନ୍ତର୍ଜାତିକ ବାଣିଜ୍ୟ କେନ୍ଦ୍ର । ତେଣେ, ଦକ୍ଷିଣ–ପୂର୍ବ ଏସିଆର ସର୍ବବୃହତ୍ ବନ୍ଦର ଭାବରେ ଏହି ସ୍ଥାନର ଖ୍ୟାତି ରହିଛି । ପୃଥିବୀର ସବୁ ଦେଶର ନାନାବିଧ ସାମଗ୍ରୀ ଏଠାରେ ଶସ୍ତା ଦରରେ ମିଳିଥାଏ, କାରଣ ଏଠାରେ ବାଣିଜ୍ୟ ଶୁଳ୍କ ଦେବାକୁ ପଡ଼େ ନାହିଁ ।

ହୋଟେଲରେ ଜିନିଷପତ୍ର ରଖିସାରିଲା ପରେ ସହର ବୁଲି ଯିବାକୁ ପ୍ରସ୍ତୁତ ହେଲୁଁ । ପାଖରେ ଟଙ୍କା ନାହିଁ, ଅଥଚ କଲମ, ଘଡ଼ି, ଟ୍ରାଞ୍ଜିଷ୍ଟର ଓ ସାର୍ଟକପଡ଼ା ପ୍ରଭୃତି ଅତି ଶସ୍ତାରେ ମିଳେ । ବିଜ୍ଞ ରାମ ଶରଣ ଶର୍ମା ପରାମର୍ଶ ଦେଲେ, "ଶୂନ୍ୟ ପକେଟରେ ସିଙ୍ଗାପୁର ଦୋକାନ ବଜାରରେ ବୁଲି ବୁଲି ମନସ୍ତାପ କରିବା ଅପେକ୍ଷା ହୋଟେଲରେ ଶୋଇ ରହିବା ଶ୍ରେୟସ୍କର ।" ମୁଁ କମେଣ୍ଟ କଲି, "ଅନେକ ସମୟ ଜେଟ୍ ବିମାନରେ ବସି ଆପଣଙ୍କ ଛାତିରେ ଦରଜ ଆରମ୍ଭ ହେଲାଣି, ସେଇଥି ପାଇଁ ଏପରି ପ୍ରାଜ୍ଞ ପ୍ରବଚନ ।" ଜଗଦୀଶ ସରକାର ଟଙ୍କା ଲାଗି ବିକଳ ହେଉଥିବା ଦେଖି ତାଙ୍କୁ କହିଲି, "ଆପଣଙ୍କ ଶିଷ୍ୟ ବିନ୍ଧ୍ୟେଶ୍ୱରୀ ବାବୁଙ୍କ ପାଖରେ ମୋଟା ଅଙ୍କର ଟଙ୍କା ଅଛି । ମୁକ୍ତା କିଣିବେ ବୋଲି ଗୁଜରାଟୀ ଅଧ୍ୟାପକଙ୍କ ନିକଟରୁ ଧାର ଆଣିଥିଲେ । ତାଙ୍କୁ ମାଗନ୍ତୁ ।" ସେ ଚାଲିଲେ ଶିଷ୍ୟଙ୍କ ପାଖକୁ । ଗୁରୁଦେବଙ୍କ ଆଗରେ ଶିଷ୍ୟ ଈଶ୍ୱରଙ୍କ ଦୁହାଇ ଦେଇ ନିଜକୁ କପର୍ଦ୍ଦକଶୂନ୍ୟ ବ୍ୟକ୍ତି ବୋଲି କହୁଥିବା ଦେଖି ମୁଁ ହସିପକାଇଲି । ଉଭୟେ ବୁଝିନେଲେ, ମୁଁ ରହସ୍ୟ କରୁଛି । ଶେଷରେ ଠିକ୍ ହେଲା, ଦଳବଦ୍ଧ ଭାବରେ ନ ବୁଲି, ଯେ ଯାହାର ବାଟରେ ଚାଲିବେ । ମୋର ଇଚ୍ଛା ଥାଏ, ସହରଟି ଦେଖିବି ।

ସିଙ୍ଗାପୁରର ଅନ୍ୟ ନାମ 'ଉଦ୍ୟାନ ନଗରୀ' । ପ୍ରକୃତ ପକ୍ଷେ, ଅନେକ ସ୍ଥାନରେ ରହିଛି ଶୋଭନୀୟ ପାର୍କ୍ । ବିଦେଶୀ ପର୍ଯ୍ୟଟକମାନେ ସେଥିରେ ସମୟ କଟାନ୍ତି । ରାସ୍ତାଘାଟରେ ବିଭିନ୍ନ ଦେଶର ଲୋକଙ୍କୁ ଦେଖିଲି । ସେମାନଙ୍କ ମଧ୍ୟରେ ଚୀନା ଓ ଭାରତୀୟଙ୍କ ସଂଖ୍ୟା ବେଶି । ସହରର ଗୋଟିଏ ଅଂଶରେ ରହିଛି ଭାରତୀୟମାନଙ୍କର ବଡ଼ ବଡ଼ ଦୋକାନ । ଶସ୍ତା ମୂଲ୍ୟ ଦେଖି ସିଙ୍ଗାପୁରର ବିଶେଷତ୍ୱ ବୁଝିଲି ।

ଆକାଶଚୁମ୍ବୀ ବହୁତଳବିଶିଷ୍ଟ ଅଟ୍ଟାଳିକାଗୁଡ଼ିକରୁ ସହରର ସମୃଦ୍ଧି ଜଣାପଡୁଥାଏ । ନଗରର ଉପକଣ୍ଠରେ ଥିବା ନାନିୟାଂ ବିଶ୍ୱବିଦ୍ୟାଳୟ ଦେଖିବାକୁ ଗଲି । ସ୍ଥାନଟି ଜଙ୍ଗଲାବୃତ । ପରିବେଶରୁ ଜଣାଗଲା, ଉଚ୍ଚତର ଅଧ୍ୟୟନ ନିମନ୍ତେ ଉପଯୁକ୍ତ ସ୍ଥାନ ।

ସନ୍ଧ୍ୟାବେଳେ ହୋଟେଲକୁ ଫେରି ପରବର୍ତ୍ତୀ ଯାତ୍ରା ଲାଗି ପ୍ରସ୍ତୁତ ହେଲୁଁ ।

**ବ୍ୟାଙ୍ଗକକ୍**

ମାଲୟ ଦେଶର ବିମାନରେ ସିଙ୍ଗାପୁର ଠାରୁ ଆସି ଜାନୁଆରୀ ୧୫ ତାରିଖ ମଧ୍ୟାହ୍ନ ସମୟରେ ବ୍ୟାଙ୍ଗକକ୍ ବିମାନ ଘାଟିରେ ପହଞ୍ଚିଲୁଁ । ସେହି ଦିନ ସନ୍ଧ୍ୟା ୭ ଟାରେ ସେଠାରୁ ଏୟାର ଇଣ୍ଡିଆ ବିମାନରେ କଲିକତା ଯିବାକୁ ହେବ ।

ସମସ୍ତେ ପ୍ରାୟ ନିସ୍ତେଜ ହୋଇପଡ଼ିଥାନ୍ତି । ତଥାପି, ସନ୍ଧ୍ୟା ପର୍ଯ୍ୟନ୍ତ ବ୍ୟାଙ୍ଗକକ୍ ସହର ବୁଲିବା ଲାଗି ଆମେ କେତେଜଣ ଟ୍ୟାକ୍ସି ଧରିଲୁଁ ।

ଥାଇଲ୍ୟାଣ୍ଡର ରାଜଧାନୀ ବ୍ୟାଙ୍ଗକକ୍ । ସ୍ଥାନୀୟ ଅଧିବାସୀମାନେ ତାହାକୁ କୃଙ୍ଗ୍ ଥେପ୍ ବୋଲି କହନ୍ତି । ଶବ୍ଦର ଅର୍ଥ ହେଲା 'ଦେବତାମାନଙ୍କ ନଗର' । ପ୍ରାଚୀନ କାଳରେ ଥାଇ ବା ଶ୍ୟାମ ଥିଲା ହିନ୍ଦୁଦେଶ । ଇନ୍ଦ୍ରଙ୍କ ଦ୍ୱାରା ସେହି ଦୁର୍ଭେଦ୍ୟ ନଗର ଗଠିତ ହୋଇଥିଲା ବୋଲି ଲୋକଙ୍କର ବିଶ୍ୱାସ । ପରବର୍ତ୍ତୀ ସମୟରେ ବୌଦ୍ଧଧର୍ମ ପ୍ରସାରିତ ହେବା ସତ୍ତ୍ୱେ, ହିନ୍ଦୁ ଦେବଦେବୀଙ୍କ ପ୍ରତି ଥାଇବାସୀଙ୍କର ଅଗାଧ ବିଶ୍ୱାସ ରହିଛି । ସହରର ବହୁସ୍ଥାନରେ ବୌଦ୍ଧ ମନ୍ଦିର ଦେଖିବାକୁ ମିଳିଲା । ଶ୍ୟାମଦେଶର ନିଜସ୍ୱ ସ୍ଥାପତ୍ୟ ଶୈଳୀରେ କାରୁକାର୍ଯ୍ୟମଣ୍ଡିତ ମନ୍ଦିରମାନ ନିର୍ମିତ । ସମୟ ଅଭାବରୁ ସେଠାକାର ଜାତୀୟ ମିଉଜିୟମ ଦେଖିହେଲା ନାହିଁ ।

ଆଧୁନିକ ବ୍ୟାଙ୍ଗକକ୍ ନଗରର ମୂଳଭିତ୍ତି ଦେଇଥିଲେ ଚକ୍ରୀ ରାଜବଂଶର ରାଜା ପ୍ରଥମ ରାମ (୧୭୮୨ ମସିହା) ଏବଂ ସ୍ଥାନଟିକୁ ସେ ନିଜ ରାଜଧାନୀରେ ପରିଣତ କରିଥିଲେ । ଶ୍ୟାମଦେଶର ପ୍ରାଚୀନ ରାଜଧାନୀ ଥାଏ ଉତ୍ତର ଦିଗରେ ୪୦ ମାଇଲ ଦୂରବର୍ତ୍ତୀ ଅୟୁଥିୟ ନାମକ ସ୍ଥାନରେ, ଯେଉଁ ସ୍ଥାନ ଦେବରାଜ ଇନ୍ଦ୍ରଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ବୋଲି ବିଶ୍ୱାସ । ରାଜା ଦ୍ୱିତୀୟ ରାମ ଓ ତୃତୀୟ ରାମଙ୍କ ରାଜତ୍ୱ କାଳରେ ନୂତନ ଓ ପୁରାତନ ରାଜଧାନୀର ବହୁ ସ୍ଥାନରେ ବୌଦ୍ଧ ମନ୍ଦିର ନିର୍ମାଣ କରାଯାଇଥିଲା । ଊନବିଂଶ ଶତାବ୍ଦୀର ମଧ୍ୟ କାଳରେ ରାଜା ଚତୁର୍ଥ ରାମ ନୂତନ ରାଜଧାନୀର ଶୋଭା ବର୍ଦ୍ଧନ କରିଥିଲେ । ବିଂଶ ଶତାବ୍ଦୀରେ ବ୍ୟାଙ୍ଗକକ୍ ସହରର ପରିସର କ୍ରମେ କ୍ରମେ ବୃଦ୍ଧି ପାଇ ପୁରାତନ ଓ ନୂତନ ରାଜଧାନୀ ଏକାକାର ହେଲା ।

ଶ୍ୟାମ ବା ଥାଇ ଦେଶର ରାଷ୍ଟ୍ରୀୟ ଚିହ୍ନ ଦେଖି ଜଣେ ଭାରତୀୟ ଭାବେ ଗର୍ବ ଅନୁଭବ କଲି । ତାହା ହେଉଛି—'ଶ୍ୱେତ ହସ୍ତୀ ଉପରେ ଆସୀନ ଦେବରାଜ ଇନ୍ଦ୍ର' ।

ସନ୍ଧ୍ୟା ପରେ ବିମାନ ଛାଡ଼ିଲା କଲିକତା ଅଭିମୁଖେ । ରାତ୍ରି ମଧ୍ୟରେ ନିଜ ଦେଶରେ ଫେରି ପହଞ୍ଚିଲି । ଅଳ୍ପ କେତୋଟି ଦିନ ମଧ୍ୟରେ ଏକ ସୁଦୀର୍ଘ ଯାତ୍ରା ଶେଷ ହେଲା ।

# ସିମଳା ଶୈଳନିବାସରେ ଏକ ବର୍ଷ
## (୧୯୭୧–୭୨)



### ରାଷ୍ଟ୍ରପତି ନିବାସରେ ରହଣି ସମୟର ଅନୁଭୂତି

### ସିମଳାସ୍ଥିତ ରାଷ୍ଟ୍ରପତି ନିବାସ

ବ୍ରିଟିଶ ରାଜତ୍ୱ କାଳରେ ଭାରତର ବଡ଼ଲାଟ ଓ ଇଂରେଜ ଶାସନକର୍ତ୍ତାମାନେ ସାମ୍ରାଜ୍ୟର ପ୍ରଥମ ରାଜଧାନୀ କଲିକତା ଓ ପରବର୍ତ୍ତୀ ରାଜଧାନୀ ଦିଲ୍ଲୀ ଠାରେ ଗ୍ରୀଷ୍ମଋତୁରେ ରହିପାରୁ ନଥିଲେ । ସେ କାଳରେ ଶାସକମାନଙ୍କ ପାଇଁ ଶୀତତାପ ନିୟନ୍ତ୍ରିତ ବାସଭବନ ନଥାଏ । ପ୍ରଚଣ୍ଡ ଗରମରୁ ରକ୍ଷା ପାଇବା ଲାଗି ସେମାନେ ହିମାଳୟ ନିକଟବର୍ତ୍ତୀ ସିମଳା ସହରକୁ ତିନିମାସ ପାଇଁ ଚାଲିଯାଉଥିଲେ । ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ବଡ଼ଲାଟଙ୍କ ରହିବା ନିମନ୍ତେ ସେଠାରେ ନିର୍ମିତ ହେଲା ସ୍ୱତନ୍ତ୍ର ନିବାସସୌଧ । ନାମ ରହିଲା 'ଭାଇସରୟଙ୍କ ବାସସ୍ଥାନ' ।

ସମୟ ବଦଳିଗଲା । ସ୍ୱାଧୀନତା ପରେ ଗଣତାନ୍ତ୍ରିକ ରାଷ୍ଟ୍ରର ଶାସନବ୍ୟବସ୍ଥା ବ୍ୟାପକ ଆକାର ଧାରଣ କଲା । ଅନେକ ବିଭାଗ, ଅନେକ ମନ୍ତ୍ରୀ, ଅନେକ ଦପ୍ତର ଓ ଅନେକାନେକ ସଚିବଙ୍କ ଆବିର୍ଭାବ ଫଳରେ ରାଜଧାନୀ ଦିଲ୍ଲୀ ଛାଡ଼ି ଅନ୍ୟତ୍ର ଯିବାର ପ୍ରଶ୍ନ ରହିଲା ନାହିଁ । ତେଣେ, ଦିଲ୍ଲୀର ଗ୍ରୀଷ୍ମକାଳୀନ ଅସହ୍ୟ ଉତ୍ତାପରୁ ତ୍ରାହି ଲାଭ ନିମନ୍ତେ ତାପନିୟନ୍ତ୍ରଣ ବ୍ୟବସ୍ଥା ଚାଲୁହେଲା । ଫଳ ସ୍ୱରୂପ ସିମଳା ଆଉ ଭାରତର ଗ୍ରୀଷ୍ମକାଳୀନ ରାଜଧାନୀ ରୂପେ ରହିଲା ନାହିଁ । ଅଥଚ, ବଡ଼ଲାଟଭବନ ସୁରକ୍ଷିତ ରହିଲା ଓ ତାହାର ତତ୍ତ୍ୱାବଧାନ ଲାଗି ଅନେକ କର୍ମଚାରୀ ରହିଲେ । ଘରର ନୂତନ ନାମ ଦିଆଗଲା 'ରାଷ୍ଟ୍ରପତି ନିବାସ' । ଗ୍ରୀଷ୍ମଋତୁରେ ନେତା ଓ ମନ୍ତ୍ରୀମାନେ ସପରିବାର କିମ୍ବା ଏକାକୀ ବିଶ୍ରାମ ବା ଆରାମ ପାଇଁ ଆସିଲେ ।

ବିଶିଷ୍ଟ ଶିକ୍ଷାବିତ୍ ତଥା ଦାର୍ଶନିକ ସାର୍ ସର୍ବପଲ୍ଲି ରାଧାକୃଷ୍ଣନ ରାଷ୍ଟ୍ରପତି ଥିଲାବେଳେ ଥରେ ସିମଳା ଆସି ସେଠାରେ କିଛିଦିନ ରହିଲେ । ବିନା ବିନିଯୋଗରେ

ସେପରି ଗୋଟିଏ ବୃହଦାକାର ଭବନର ସାଜସଜ୍ଜା ଓ ପରିପାଟି ରକ୍ଷା ଉଦ୍ଦେଶ୍ୟରେ ବିପୁଳ ଅର୍ଥ ବ୍ୟୟ ହେଉଛି ଜାଣି ତାଙ୍କ ମନରେ କ୍ଷୋଭ ଆସିଲା । ସେ ଠିକ୍ କଲେ, ସିମଳା ରାଷ୍ଟ୍ରପତି ନିବାସର ନାମ ଦିଆଯିବ Indian Institute of Advanced Studies । ଦେଶ ବିଦେଶର କେତେଜଣ ଅଧ୍ୟାପକଙ୍କୁ ସେଠାରେ ସ୍ୱଳ୍ପମିଆଦୀ ବା ଦୀର୍ଘମିଆଦୀ ସୂତ୍ରରେ ରଖାଯାଇ ସେମାନଙ୍କୁ ଉଚ୍ଚତର ଗବେଷଣାରେ ନିଯୁକ୍ତ କରାଯିବ । ଅନୁଷ୍ଠାନର ପରିଚାଳନା ଲାଗି ଡାଇରେକ୍ଟର ଓ ରେଜିଷ୍ଟ୍ରାର ଇତ୍ୟାଦି କର୍ମଚାରୀମାନେ ନିଯୁକ୍ତି ପାଇବେ । ଏକାକୀ ଆସିଥିବା ବ୍ୟକ୍ତିମାନେ ରାଷ୍ଟ୍ରପତି ନିବାସର ଯେକୌଣସି କକ୍ଷରେ ରହିପାରିବେ ଓ ପରିବାର ସହ ଆସିଥିବା ବ୍ୟକ୍ତିମାନଙ୍କୁ ସ୍ୱତନ୍ତ୍ର କ୍ୱାର୍ଟାରମାନ ମିଳିବ । ପ୍ରତ୍ୟେକେ ନିଜର ପଦବୀ ଅନୁଯାୟୀ ମାସିକ ବୃତ୍ତି ପାଇବେ ।

୧୯୭୧ ମସିହା ମାର୍ଚ୍ଚମାସରେ ସେଠାରୁ ନିମନ୍ତ୍ରଣ ଆସିଲା । ଅଷ୍ଟ୍ରେଲିଆରେ ଥିଲାବେଳେ ଅଧ୍ୟାପକ ନୁରୁଲ୍ ହାସାନ ସେହି ସୂଚନା ଦେଇଥିଲେ । ଏପ୍ରିଲ ୧୫ ତାରିଖ ଦିନ କାର୍ଯ୍ୟରେ ଯୋଗଦେବା ଲାଗି ନିର୍ଦ୍ଦେଶ ଥାଏ । କୁଳପତି ସଦାଶିବ ମିଶ୍ର ଛୁଟି ମଞ୍ଜୁର କଲାବେଳେ ତାଙ୍କ ମନରେ ଦୁଃଖ ଦେଖିଲି । ଅନେକ ବିଷୟରେ ତାଙ୍କୁ ମୁଁ ଯଥାଶକ୍ତି ସାହାଯ୍ୟ କରୁଥିଲି । ପରିତାପର ବିଷୟ, ମୁଁ ଏକବର୍ଷ ପରେ ସିମଳାରୁ ଫେରିଲାପୂର୍ବରୁ ସାମାନ୍ୟ ଘଟଣା ଯୋଗୁଁ ସେ ପଦତ୍ୟାଗ କରି ଚାଲିଯାଇଥିଲେ । ସିମଳାରେ ଥିଲା ସମୟରେ ତାଙ୍କ ଇସ୍ତଫା ସଂବାଦ ପଢ଼ି ମର୍ମାହତ ହେଲି ।

(ଏହି ଘଟଣାର ୧୨ ବର୍ଷ ପରେ, ମୁଁ କୁଳପତି ଥିଲାବେଳେ ସଦାଶିବବାବୁ ଥରେ ବାଣୀବିହାର ଆସିଥିବା ଦେଖି ଅନୁନୟ ବିନୟ ସହ ମୋ ପ୍ରକୋଷ୍ଠ ପର୍ଯ୍ୟନ୍ତ ନେଇ ଆସିଲି । ଅନୁରୋଧ କଲି, ‘‘ଆପଣଙ୍କ ପରିତ୍ୟକ୍ତ ଚେୟାରରେ ମାତ୍ର ଏକ ମିନିଟ ପାଇଁ ଆପଣ ବସିଲେ ମୁଁ ଅଶେଷ ଆନନ୍ଦ ପାଇବି ।’’ ଦ୍ୱାର ପାଖରେ ଛିଡ଼ା ରହି ସେ ତୀକ୍ଷ୍ଣ କଣ୍ଠସ୍ୱରରେ ରୋକ୍ ଠୋକ୍ କହିଦେଲେ, ‘‘କୁଳପତି ପ୍ରକୋଷ୍ଠରେ ମୁଁ ପଶିବି ନାହିଁ କିମ୍ବା ସେହି ଚେୟାରରେ କ୍ଷଣକ ପାଇଁ ବି ବସିବି ନାହିଁ ।’’)

## ସିମଳା ପ୍ରତିଷ୍ଠାନରେ ଯୋଗଦାନ

ଚଣ୍ଡୀଗଡ଼ ଠାରୁ ବାସ୍ ଯୋଗେ ଉତ୍ତର ଦିଗକୁ ସିମଳା ଯିବାବେଳେ ଆସିଗଲା ସଂକୀର୍ଣ୍ଣ ପାର୍ବତ୍ୟ ରାସ୍ତା । ହିମାଳୟ ପାଦଦେଶର ଦୁର୍ଗମ ପାହାଡ଼ରାଜି ପାଖେ ପାଖେ ବାସ୍ ଉଠୁଥାଏ ସମୁଦ୍ର ପତ୍ତନର ସାତହଜାର ଫୁଟ୍ ଉର୍ଦ୍ଧ୍ୱରେ ଥିବା ସିମଳା ସହରକୁ । ଗୋଟିଏ ପାଖରେ ଉତ୍ତୁଙ୍ଗ ପାହାଡ଼, ଅନ୍ୟ ପାଖରେ ଅତଳ

ଗର୍ଭ ତଳେ ଦିଶୁଥିବା ଅରଣ୍ୟ । ଗାଡ଼ିଚାଳକ ଈଷତ୍ ଅନ୍ୟମନସ୍କ ହେବାର ଅର୍ଥ, ହଜାର ହଜାର ଫୁଟ ତଳକୁ ଖସିପଡ଼ିବା ନିଶ୍ଚିତ । ଆଶଙ୍କାପୂର୍ଣ୍ଣ ଯାତ୍ରା ସତ୍ତ୍ୱେ, ଉପଭୋଗ କରିହେଉଥାଏ ପାର୍ବତ୍ୟ ପଥର ପ୍ରାକୃତିକ ଶୋଭା । ନୀଳ ଆକାଶ ତଳେ ଦିଗ୍‌ବଳୟ ପର୍ଯ୍ୟନ୍ତ ଦିଶୁଥାଏ ଗହନ ଅରଣ୍ୟାନୀ, ସ୍ଥାନେ ସ୍ଥାନେ ସଂକୀର୍ଣ୍ଣ ସ୍ରୋତସ୍ୱିନୀ ।

ସନ୍ଧ୍ୟାବେଳେ ବାସ୍ ରହିଲା ସହର ବାହାରେ ଥିବା ଷ୍ଟାଣ୍ଡରେ । ସହର ଭିତରକୁ ଗାଡ଼ି ଉଠିପାରେ ନାହିଁ । କୁଲି ହାତରେ ଜିନିଷପତ୍ର ଦେଇ ଆଗେଇଲି । କ୍ରମାଗତ ଉଚ୍ଚା ରାସ୍ତାରେ ଉଠିଲାବେଳେ ନିଶ୍ୱାସ ପ୍ରଶ୍ୱାସରେ କଷ୍ଟ ହେଉଥାଏ । ଅଭ୍ୟସ୍ତ କୁଲିମାନେ ପିଠି ପଛରେ ସୁଟକେଶ୍ ଓ ବିଛଣା ମୋଟା ଦଉଡ଼ିରେ ବାନ୍ଧି ଧୀର ପଦକ୍ଷେପରେ ଉଠନ୍ତି । ସହରର କେନ୍ଦ୍ରସ୍ଥଳରେ ପହଞ୍ଚି ରାଷ୍ଟ୍ରପତି ନିବାସର ସନ୍ଧାନ ନେଲି । ଅନୁଚ୍ଚ ପାହାଡ଼ ଉପରେ ଥିବା ସେହି ସ୍ଥାନକୁ ଉଠିବା କଷ୍ଟକର ହେଲା । ରାତି ପ୍ରାୟ ୯ଟା ବେଳେ ସେଠାରେ ପହଞ୍ଚିଲି । ଦୁଇଜଣ ଦରଓ୍ୱାନ୍ ପାହାଡ଼ ତଳେ ମୋ ଲାଗି ନିର୍ଦ୍ଦିଷ୍ଟ ଥିବା ବଙ୍ଗଳାରେ ଛାଡ଼ିଦେଇ ଆସିଲେ । କିଛି ଖାଇ ନଥାଏଁ । ଭୋକ ଶୋଷ ଭୁଲି, ଖଟ ଉପରେ ବିଛଣା ମେଲାଇ ଶୋଇପଡ଼ିଲି । ଏପ୍ରିଲ ମାସ ହେଲେ ସୁଦ୍ଧା ପ୍ରଚଣ୍ଡ ଶୀତ । ପ୍ରକାଣ୍ଡ ଘର । ତିନି ପାଖରେ ଜଙ୍ଗଲ, ଗୋଟିଏ ପାଖରେ ପାହାଡ଼ । ଏକାକୀ ରହିବା ଲାଗି ଭୟ ଲାଗିଲା । ଆଖି ବୁଜିଲାବେଳକୁ ଛାତ ଉପରେ କିଏ ଡେଉଁଥିବା ଶବ୍ଦ ଶୁଣିଲି । ଭୟରେ ଉଠିପଡ଼ି, କବାଟ ଫିଟାଇ ଓ ଅନେକ ତଳେ ଗୋଟିଏ ଘରେ ଆଲୁଅ ଜଳୁଥିବା ଦେଖି, ସୁଟକେଶ ଓ ବିଛଣା ସହ ଅନ୍ଧାର ପଥରେ ପଥର ଡେଇଁ ଡେଇଁ ସେଠାରେ ପହଞ୍ଚିଲି । କବାଟ ବନ୍ଦ ଥାଏ । ମୋ ଡାକ ଶୁଣି ଜଣେ ସାହେବ ମହିଳା ବାହାରିଲେ । ଆଶ୍ରୟ ନେବାକୁ ଆସିଛି ବୋଲି ଜଣାଇଲି । ସେ ଭିତରକୁ ଡାକିନେଲେ । ତାଙ୍କ ସ୍ୱାମୀ ନିଜର ପରିଚୟ ଦେଇ କହିଲେ, "ମୋର ନାମ ସତୀଶ୍ ସବରଓ୍ୱାଲ । ଏଠାରେ ସମାଜତତ୍ତ୍ୱ ବିଷୟରେ ଗବେଷଣା କରୁଛି ।" ମୋର ପରିଚୟ ପାଇ ଖୁସି ହେଲେ । ତାଙ୍କ ଇଂରେଜ ପତ୍ନୀ ଅଣ୍ଡା ପାଉଁରୁଟି ଖାଇବାକୁ ଦେଲେ । ସବରଓ୍ୱାଲ ବୁଝାଇଲେ, ସିମଳା ସହରରେ ସମତଳ ଭୂମିର ପ୍ରଶ୍ନ ନାହିଁ । ପ୍ରତ୍ୟେକ ପାହାଡ଼ର ତଳୁ ଉପରଯାଏ, ଭିନ୍ନ ଭିନ୍ନ ସ୍ତରରେ ପଡ଼ିଆ ତିଆରି କରି ଘର ନିର୍ମାଣ କରାଯାଇଛି । ଛାତ ଉପରେ ଡେଇଁଲାଶବ୍ଦ କଥା ମୁଁ କହିଲାରୁ ସେ ହସିଉଠି କହିଲେ, "ସେଗୁଡ଼ାକ ପାତିମାଙ୍କଡ଼ । ସିମଳା ଜଙ୍ଗଲରେ ଭର୍ତ୍ତି । ରାତିରେ ଗଛରୁ ଛାତକୁ ଡିଆଁ ମାରନ୍ତି ।" ରାତିଟି ତାଙ୍କ ଘରେ ଶୋଇଲି ।

ସକାଳେ ରେଜିଷ୍ଟ୍ରାରଙ୍କ ବଙ୍ଗଳାରେ ପହଞ୍ଚି ଅନୁରୋଧ କଲି, ମୁଁ ପରିବାର ଆଣିନାହିଁ, ତେଣୁ ସ୍ୱତନ୍ତ୍ର ବଙ୍ଗଳା ଦରକାର ନାହିଁ, ରାଷ୍ଟ୍ରପତି ନିବାସରେ ରୁମ୍ ପାଇଲେ ଚଳିବ । ଦ୍ୱିତୀୟ ତାଲାରେ ଯେକୌଣସି ରୁମ୍ ବାଛିନେବାକୁ ସେ ଅନୁମତି ଦେଲେ । ତିନିତାଲା ବିଶିଷ୍ଟ ବିଶାଳ ଭବନର ପାଖକୁ ଲାଗିଥିବା ଘରେ ସସ୍ତ୍ରୀକ ରହିଥିବା ଜଣେ ଆମେରିକାନ୍ ଅଧ୍ୟାପକଙ୍କୁ ଦେଖିଲି । ତାଙ୍କ ନାମ ଉଇଲିୟମ ଜେ । ତାଙ୍କ ଘର ପାଖରେ ଥିବା ସେହିପରି ଗୋଟିଏ ବଙ୍ଗଳାରେ ମୋତେ ରହିବା ଲାଗି ସେ ଅନୁରୋଧ କଲେ । ମୁଁ କହିଲି, ''ଏହି ସବୁ ଘରେ ବଡ଼ଲାଟଙ୍କ ସଚିବମାନେ ରହୁଥିଲେ । ମୁଁ ଖୋଦ୍ ବଡ଼ଲାଟ ରହୁଥିବା କୋଠରିରେ ରହିବି ।''

ରାଷ୍ଟ୍ରପତି ନିବାସର ଦ୍ୱିତୀୟ ତାଲାରେ ସୁନ୍ଦର ରୁମ୍‌ଟିଏ ବାଛିନେଲି । ପ୍ରତ୍ୟେକ କୋଠରି ଥାଏ ପଞ୍ଚତାରକା ହୋଟେଲର କୋଠରି ଠାରୁ ଅଧିକ ସୁସଜ୍ଜିତ ଓ ଆରାମପ୍ରଦ । କୋଠରିକୁ ଲାଗିଥାଏ ବାଥ୍‌ରୁମ୍ ଓ ଡ୍ରଇଂରୁମ୍ । ମୋଟା କାର୍ପେଟ ଉପରେ ବଡ଼ ବଡ଼ ସୋଫା । ପଲଙ୍କ ଉପରେ ସୁକୋମଳ ଶଯ୍ୟା । କାଚ ଝରକାବାଟେ ବରଫାବୃତ ହିମାଳୟ ପର୍ବତମାଳାର ଶୋଭା ଦେଖି ମନ ତୃପ୍ତ ହୋଇ ଉଠୁଥାଏ ।

ତଳ ତାଲାରେ ଥାଏ ଲାଇବ୍ରେରୀ, ଆଗକାଳର ଦରବାର କକ୍ଷ, ଡାଇରେକ୍ଟରଙ୍କ ଅଫିସ ଇତ୍ୟାଦି । ଖାଇବା ପାଇଁ କ୍ୟାଣ୍ଟିନ ଥାଏ । ଶାନ୍ତ ପରିବେଶ ଦୃଷ୍ଟିରୁ ଲେଖାପଢ଼ାରେ ଏକାଗ୍ରତା ଆସିଗଲା । ସହରର କେନ୍ଦ୍ରସ୍ଥଳ 'ମଲ' ପର୍ଯ୍ୟନ୍ତ ଦୂରତ୍ୱ ୩ କିଲୋମିଟର । ଦିନେ ଦିନେ ଅପରାହ୍ନରେ ସେଠାରେ ବୁଲିବାକୁ ଭଲ ଲାଗୁଥାଏ । ଗ୍ରୀଷ୍ମଋତୁ ଆସିଯାଉଥାଏ । ହୋଟେଲଗୁଡ଼ିକରେ ପର୍ଯ୍ୟଟକମାନଙ୍କୁ ବହୁସଂଖ୍ୟାରେ ଦେଖିବାକୁ ମିଳୁଥାଏ । ଯେତେହେଲେ, ସିମଳାର ନାମ ହେଉଛି Queen of Hill Stations । ଦୂରରୁ ହିମାଳୟର ଶୃଙ୍ଗରାଜି, ଚାରିଆଡ଼େ ଦିଗନ୍ତବିସ୍ତାରୀ ଅରଣ୍ୟାନୀ, ପାହାଡ଼ମାଳାର ପାଦଦେଶରେ ସବୁଜ ଉପତ୍ୟକା ଏବଂ ଆକାଶରୁ ତଳକୁ ଖସିଆସୁଥିବା ଶୀତଳ ମେଘମାଳା ଇତ୍ୟାଦିର ଦୃଶ୍ୟ ହେଉଛି ସିମଳା ଶୈଳନିବାସର ବିଶେଷତ୍ୱ । ଚାରିମାସ ଗ୍ରୀଷ୍ମଋତୁ ପରେ ମାଡ଼ିଆସେ ଶୀତ । ସେତେବେଳେ ହୁଏ ବରଫପାତ । ପ୍ରଚଣ୍ଡ ଶୀତରୁ ରକ୍ଷା ପାଇବା ନିମନ୍ତେ ଘରଭିତରେ ନିଆଁ ଜାଳିବାକୁ ହୁଏ ଓ ବାହାରକୁ ଯିବା କଷ୍ଟକର ହୋଇଥାଏ । ଗବେଷଣାରତ ଅଧ୍ୟାପକମାନେ ସେତେବେଳେ ଦିଲ୍ଲୀରେ କିମ୍ୱା ଅନ୍ୟ ସ୍ଥାନରେ ରହି ନିଜ ନିଜ କାମ କରନ୍ତି ।

ପ୍ରତି ସପ୍ତାହରେ ସେଠାରେ ଥିବା ପ୍ରାୟ ୨୦ ଜଣ ବ୍ୟକ୍ତି ଏକତ୍ରିତ ହୋଇ ନିଜ ନିଜ ବିଷୟ ସମ୍ବନ୍ଧରେ ଆଲୋଚନା କରନ୍ତି । ଡାଇରେକ୍ଟର ଥାନ୍ତି ଭି.କେ. ଗୋକକ । ପାଠଚକ୍ର ତାଙ୍କ ଦ୍ୱାରା ପରିଚାଳିତ ହୁଏ । ବିଭିନ୍ନ ବିଷୟରେ ନୂତନ ନୂତନ ତଥ୍ୟ ଜାଣିବା ଲାଗି ଅବକାଶ ମିଳେ । ସଂକ୍ଷେପରେ, ସିମଳା ରହଣି ମଧ୍ୟରେ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରିବା ବ୍ୟତୀତ, ମାନସିକ ବିକାଶ ଦିଗରେ ଯଥେଷ୍ଟ ସୁଯୋଗ ମିଳିଥିଲା । ସେସବୁ ବିଷୟରେ ଏଠାରେ କିଛି ଲେଖୁନାହିଁ ।

## କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରସଙ୍ଗ

ରାଷ୍ଟ୍ରପତି ନିବାସରେ ଥିବା ସମୟରେ ସେଠାକୁ ଆସୁଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ସାମୟିକ ସମ୍ପର୍କ ସ୍ଥାପନ ଲାଗି ସୁଯୋଗ ମିଳୁଥାଏ । କାହାରି କାହାରି ସାଙ୍ଗରେ ରହସ୍ୟ କଲାବେଳେ, ଅନ୍ୟ କାହାରି କାହାରି ନିକଟରୁ ମୂଲ୍ୟବାନ ଉପଦେଶ ଗ୍ରହଣ କରୁଥିଲି । ଅଳ୍ପ କେତୋଟି ଦୃଷ୍ଟାନ୍ତ ଉଲ୍ଲେଖ କରୁଛି ।

ଦିନେ ସକାଳେ ଡାଇନିଂ ଘରେ ଏକାକୀ ଜଳଖିଆ ଖାଉଥିଲାବେଳେ ଏକା ଟେବୁଲରେ ଜଣେ ଭଦ୍ରମହିଳା ଖାଇବା ପାଇଁ ବସିଲେ । ହଠାତ୍ ଆଦେଶ ଦେବା ଢଙ୍ଗରେ କହିଲେ, ‘‘ଆପଣ ମୋତେ ରାଷ୍ଟ୍ରପତି ନିବାସ ଦେଖାଇଦେବେ ଚାଲନ୍ତୁ, କେଉଁ କୋଠରିଗୁଡ଼ିକରେ ବଡ଼ଲାଟମାନେ ରହୁଥିଲେ, ଲର୍ଡ଼ କାର୍ଜନ କେଉଁ ଘରେ ରହୁଥିଲେ, ଅସ୍ତ୍ରାଗାର କେଉଁଠି ଥାଏ, ଭାଇସରୟଙ୍କ ଦରବାର କକ୍ଷ, ଇତ୍ୟାଦି ।’’ ବିରକ୍ତି ପ୍ରକାଶ କରି ମୁଁ କହିଲି, ‘‘ଦରୱାନମାନେ ଦେଖାଇଦେବେ, ମୋର ସମୟ ନାହିଁ ।’’ ସେ ତୁନି ରହିଲେ ।

ବାହାରି ଆସିଲାବେଳେ ଜଣେ କର୍ମଚାରୀଙ୍କୁ ପଚାରି ବୁଝିଲି, ସେହି ମହିଳା ହେଉଛନ୍ତି କେନ୍ଦ୍ର ଶିକ୍ଷାମନ୍ତ୍ରୀ ସିଦ୍ଧାର୍ଥ ଶଙ୍କର ରାୟଙ୍କ ପତ୍ନୀ, ବାରିଷ୍ଟର ମାୟା ରାୟ । ଟେବୁଲ ପାଖକୁ ଫେରିଯାଇ କହିଲି, ‘‘ନିଜର ପରିଚୟ ଦେଲାପରେ ଇଚ୍ଛା ପ୍ରକାଶ କରିଥିଲେ ଭଲ ହୋଇଥାନ୍ତା । ଏବେ ଆସନ୍ତୁ, ଜଣେ ମହିଳାଙ୍କ ପ୍ରତି ସୌଜନ୍ୟ ପ୍ରକାଶ କରିବା ମୋର ଉଚିତ ।’’

ରାଷ୍ଟ୍ରପତି ନିବାସର କେତେକ ସ୍ଥାନ ଦେଖାଇଲା ପରେ ବଗିଚା ଦେଖାଇବାକୁ ନେଇଗଲି । ବେଶ୍ କିଛି ସମୟ ଆଳାପ ମଧ୍ୟରେ ଘନିଷ୍ଠତାର ସୂତ୍ରପାତ ହେଲା । ସ୍ୱାମୀ ସ୍ତ୍ରୀ ସେଠାରେ ଦୁଇ ସପ୍ତାହ ବିଶ୍ରାମ ଲାଗି ଆସିଥିଲେ । ଅଧିକାଂଶ ସନ୍ଧ୍ୟାରେ ମାୟା ରାୟ ସାଙ୍ଗରେ ବୁଲିବାକୁ ଡାକିଲେ । ଥରେ ଦୁଃଖ ପ୍ରକାଶ କଲେ, ‘‘ସିଦ୍ଧାର୍ଥବାବୁଙ୍କ ପାଇଁ ଡାକ୍ତରୀ ନ ପଢ଼ି ବାଧ୍ୟ ହୋଇ ବାରିଷ୍ଟରୀ ପଢ଼ିଲି । ସେ ଦୁଃଖ ଭୁଲିପାରିବି ନାହିଁ । ଉଭୟେ ବାରିଷ୍ଟର ହେଲୁଁ । କିନ୍ତୁ

ସେ ରାଜନୀତିରେ ପଶିଲେ ଓ ମୋ ଆୟତକ ଭୋଗ କଲେ । କ୍ଷମତାରେ ରହି ନକ୍ସାଲପନ୍ଥୀମାନଙ୍କୁ ଦମନ କରିବା ନିମନ୍ତେ ସେ ଯାହା କଲେ ଓ କରୁଛନ୍ତି, ସେପାଇଁ ମୋର ଦୁଶ୍ଚିନ୍ତା ବୁଝିବାକୁ ତାଙ୍କର ବୁଦ୍ଧି ନାହିଁ ।'' ଖୋଲା ମନରେ ନକ୍ସାଲ ଦମନରେ ସିଦ୍ଧାର୍ଥ ରାୟଙ୍କ ଭୂମିକା ମୋ ଆଗରେ ବର୍ଣ୍ଣନା କରି, ବୋଧହୁଏ ସେ ତାଙ୍କ ମନସ୍ତାପ ଲାଘବ କରୁଥିଲେ ।

ଉପହାସ ଛଳରେ ମୁଁ ଦିନେ କହିଲି, ''ଜଣେ ସ୍ତ୍ରୀ ହେବା ପାଇଁ ଆପଣ ଅଯୋଗ୍ୟା । ଆପଣଙ୍କ ସ୍ୱାମୀ ମୁଣ୍ଡରେ ହିପିମାନଙ୍କ ପରି କେଶ ରଖିଛନ୍ତି, ଅଥଚ ଦେଶର ଶିକ୍ଷାମନ୍ତ୍ରୀ ! ଆପଣ ତାଙ୍କୁ କାହିଁକି କହୁନାହାନ୍ତି, ଛାତ୍ରମାନେ ଶିକ୍ଷାମନ୍ତ୍ରୀଙ୍କୁ ଅନୁକରଣ କରିବେ ? ମୋ ସ୍ତ୍ରୀ କେବେହେଲେ ମୋତେ ସେପରି କେଶ ରଖିବାକୁ ଦିଅନ୍ତେ ନାହିଁ ।'' ବୁଦ୍ଧିମତୀ ମାୟା ରାୟ ଉତ୍ତର ଦେଲେ, ''ପୁରୁଷର ବ୍ୟକ୍ତିଗତ ସ୍ୱାଧୀନତାରେ ବାଧା ଦେବା କୌଣସି ସ୍ତ୍ରୀଙ୍କ ପକ୍ଷେ ଉଚିତ ନୁହେଁ ।''

ଆଉ ଥରେ, ସିଦ୍ଧାର୍ଥବାବୁ କଂଗ୍ରେସ ମିଟିଂରେ ଯୋଗ ଦେବାକୁ ଯାଉଥିଲାବେଳେ, ମାୟା ରାୟଙ୍କୁ କହିଲି, ''ବାହାରକୁ ଗଲାବେଳେ ଖଦଡ଼ ପିନ୍ଧି ବାହାରୁଛନ୍ତି, ଭିତରେ ପିନ୍ଧୁଛନ୍ତି ବିଲାତି କପଡ଼ାର ପ୍ୟାଣ୍ଟ ସାର୍ଟ । ତାଙ୍କର ଏପରି ହିପୋକ୍ରିସି ଆପଣଙ୍କୁ ଭଲ ଲାଗେ ?'' ''ଏହା ମଧ୍ୟ ତାଙ୍କର ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର,'' ସେ ହସି ହସି ଉତ୍ତର ଦେଲେ । ''ବ୍ୟକ୍ତିଗତ ବ୍ୟାପାରରେ ହସ୍ତକ୍ଷେପ ନ କଲେ ନାହିଁ । ଅନ୍ତତଃ ପକ୍ଷେ, ନକ୍ସାଲ ଦମନ ପରି ନିର୍ମମ କାର୍ଯ୍ୟରୁ ତାଙ୍କୁ ନିବୃତ୍ତ ରଖିବା ଅଧିକାର ଆପଣଙ୍କ ପରି ଜଣେ ନାରୀଙ୍କର ରହିବା ଉଚିତ ବୋଲି ମୋର ବିଶ୍ୱାସ ।'' ମୋ ବକ୍ତବ୍ୟ ଶୁଣି ସେ ଗମ୍ଭୀର ରହିଲେ ।

ସିଦ୍ଧାର୍ଥବାବୁଙ୍କ ସମ୍ବନ୍ଧରେ ଗୋଟିଏ କଥା କହିବାକୁ ଉଚିତ ମନେକରୁଛି । ସିମଳାରେ ଦୁଇଟି ସପ୍ତାହ ବିଶ୍ରାମ ପାଇଁ ଯାଇଥିଲେ । ସେତିକି ସମୟ ଭିତରେ ଦେଖିଲି, ଦୁଇଜଣ ବଙ୍ଗାଳୀ ଅଧ୍ୟାପକଙ୍କୁ ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟରେ ନିଯୁକ୍ତି ଦେବାଲାଗି ସୁପାରିଶ୍ କରିଦେଲେ । ଜଣେ ପୁଣି ଥିଲେ ବର୍ଦ୍ଧମାନ ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ ବ୍ୟକ୍ତି । କେନ୍ଦ୍ର ଶିକ୍ଷାମନ୍ତ୍ରୀ ଯେ ନିଜର ପ୍ରଭାବ ବଳରେ ନେହରୁ ବିଶ୍ୱବିଦ୍ୟାଳୟରେ ନିଜ ଲୋକଙ୍କୁ ରଖିଦେଇ ପାରିବେ, ତାହା ଜାଣି ଅନ୍ୟମାନଙ୍କ ମଧ୍ୟରେ ମୃଦୁ ଗୁଞ୍ଜରଣ ସୃଷ୍ଟି ହେବା ଦେଖିଥିଲି । ଦକ୍ଷିଣ ଭାରତୀୟ ଜଣେ ଗଣିତବିଶାରଦଙ୍କ ମତଟି ଥିଲା, ''ଦିଲ୍ଲୀ ସିଂହାସନର ପ୍ରକୃତ ଉପଯୋଗ କରନ୍ତି ଯେକୌଣସି ବଙ୍ଗାଳୀ ନେତା । ଜଣେ 'ବଡ଼ ଦାଦା', ଦଶ ଜଣ 'ଛୋଟ ଦାଦା'ଙ୍କୁ ଉଚ୍ଚ ପଦ ପଦବୀରେ ବସାଇ ନିଜର ଜାତିପ୍ରୀତି ସାର୍ଥକ କରନ୍ତି ।''

(ଦିନେ ମହତାବବାବୁଙ୍କ ଏକାମ୍ର ନିବାସରେ ମୁଁ ହରେକୃଷ୍ଣ ମହତାବ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଆକ୍ଷେପ କରି ପଚାରିଥିଲି, ''ଦିଲ୍ଲୀ ସିଂହାସନରେ ଥାଇ ଆପଣମାନେ ଜଣେ ହେଲେ ଓଡ଼ିଆଙ୍କୁ ଉପରକୁ ଉଠାଇବାକୁ ଇଚ୍ଛା କରିଛନ୍ତି କି ?'' ଉଭୟ ନେତା ଭୀଷଣ କ୍ଷୁବ୍ଧ ହେବା ଜାଣିପାରିଥିଲି ।)

୧୯୭୧ ଜୁନ୍ ମାସରେ ଭି.କେ.ଗୋକକ ଗୋଟିଏ ସେମିନାର ଆୟୋଜନ କଲେ । ସେଥିରେ ଅଂଶଗ୍ରହଣ ନିମନ୍ତେ କେତେଜଣ ଅବସରପ୍ରାପ୍ତ ଗଭର୍ଣ୍ଣର ଓ ରାଷ୍ଟ୍ରଦୂତ ସେଠାରେ ଆସି ରହିଲେ । ସେତେବେଳେ ମାସକ ପାଇଁ ମୋ ସ୍ତ୍ରୀ ଓ ପୁଅ ସିଦ୍ଧାର୍ଥ ମୋ ପାଖରେ ଥିଲେ । ଦିନେ ରାତ୍ରିଭୋଜନ ବେଳେ ବୃଦ୍ଧ ଆବିଦ୍ ଆଲି ଦନ୍ତବିହୀନ ପାଟିରେ ମାଂସ ଖାଇପାରୁ ନାହାନ୍ତି ଦେଖି ପୁଅକୁ କହିଲି, ''ଦେଖୁଛୁ, ବୁଢ଼ାବେଳର ଦୁର୍ଦ୍ଦଶା !'' ସିଦ୍ଧାର୍ଥ କାନପାଖରେ କହିଲା, ''ତିନି ପ୍ଲେଟ୍ ମାଂସ ଖାଇସାରି ସେ ଟେବୁଲ ତଳେ ପ୍ଲେଟଗୁଡ଼ିକ ରଖିସାରିଲେଣି । ଏଇଟା ଚତୁର୍ଥ ପ୍ଲେଟ୍ ।'' ସତକୁ ସତ, ଟେବୁଲ ତଳେ ଜମା ଥାଏ କୁକୁଡ଼ା ହାଡ଼ ଭର୍ତ୍ତିଥିବା ୩ଟା ପ୍ଲେଟ୍ ।

ଜାତୀୟ କଂଗ୍ରେସର ଆଦିକାଳରେ ବଦ୍‌ରୁଦ୍ଦୀନ ତୟାବଜୀ ନାମକ ଯେଉଁ ବରିଷ୍ଠ ମୁସଲମାନ ନେତା କଂଗ୍ରେସ ସଂଗଠନକୁ ନେତୃତ୍ୱ ଦେଇଥିଲେ, ତାଙ୍କ ନାତିଙ୍କ ନାମ ମଧ୍ୟ ଥାଏ ବଦ୍‌ରୁଦ୍ଦୀନ ତୟାବଜୀ । ତାଙ୍କ ନିକଟରୁ ବ୍ୟକ୍ତିଗତ ଭାବରେ ଅନେକ କଥା ଶୁଣିବାକୁ ପାଇଲି । ରାଷ୍ଟ୍ରଦୂତ ଥିବାବେଳର କେତେକ କଥା ମଧ୍ୟ ସେ ଜଣାଇଥିଲେ । ଅନ୍ୟ ଜଣେ ବିଦ୍ୱାନ ବ୍ୟକ୍ତି ଥିଲେ କୃଷ୍ଣ କୃପାଳନୀ । ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଭାବରେ ତାଙ୍କର ସୁଖ୍ୟାତି ଥାଏ । ତାଙ୍କୁ ମୋ ଲିଖିତ ଇଂରାଜୀ ଉପନ୍ୟାସ 'Keep the Story Secret' ବହିଟି ପଢ଼ିବାକୁ ଦେଲି । ପଢ଼ିସାରି ସେ ମତ ଦେଲେ, "A good plot does not make a good novel." ସେତିକି କଥାରୁ ହୃଦ୍‌ବୋଧ ହେଲା, ଉପନ୍ୟାସ ଲେଖିବା ଲାଗି ମୋର ସାମର୍ଥ୍ୟ ନାହିଁ ଏବଂ ତେଣୁ ସେଥିରୁ ବିରତ ରହିବା ଉଚିତ ।

ଯେଉଁ ସେମିନାର କଥା କହୁଛି, ତାହାକୁ ଉଦ୍‌ଘାଟନ କରିବା ପାଇଁ ଆସିଥିଲେ ହିମାଚଳ ପ୍ରଦେଶ ଓ ପଞ୍ଜାବର ରାଜ୍ୟପାଳଦ୍ୱୟ । ଜଣକ ପରେ ଜଣେ ସେମାନେ ଉଦ୍‌ଘାଟନୀ ଉଦ୍‌ବୋଧନ ପାଠ କଲେ । ପାଖିରେ ବସିଥିବା ବନ୍ଧୁଙ୍କୁ କହିଲି, ''ଏହିପରି ଜ୍ଞାନୀ ବ୍ୟକ୍ତିମାନେହିଁ ରାଜ୍ୟପାଳ ହେବା ଯଥାର୍ଥ । ଏପରି ଜ୍ଞାନଗର୍ଭକ ଭାଷଣ ମୁଁ କଦାଚିତ୍ ଶୁଣିଛି ।'' ବନ୍ଧୁ ହସିଦେଲେ । ''ହସିଲେ କାହିଁକି'' ବୋଲି

ପଚାରିଲି । ତାଙ୍କ ପାଖରେ ବସିଥିବା ଦୁଇଜଣ ବ୍ୟକ୍ତିଙ୍କ ଆଡ଼କୁ ଅଙ୍ଗୁଳି ଦେଖାଇ କହିଲେ, ''ହିମାଚଳ ରାଜ୍ୟପାଳଙ୍କ ଭାଷଣଟି ଲେଖିଛନ୍ତି ଏହି ଅଧ୍ୟାପକ ଓ ପଞ୍ଜାବ ରାଜ୍ୟପାଳଙ୍କ ଭାଷଣ ଲେଖିଛନ୍ତି ସିଏ ।'' ଉଭୟ ବ୍ୟକ୍ତି ସ୍ମିତହାସ୍ୟ ସହ 'ହଁ' ଭରିଲେ ।

ଖାଇବାବେଳେ ଏ ସମ୍ପର୍କରେ ମୋର ଅନୁଭୂତିଟିଏ ତିନିବନ୍ଧୁଙ୍କୁ ଶୁଣାଇଲି । ବାଣୀବିହାରରେ ଏକ ଜାତୀୟ ସେମିନାର ଉଦ୍‌ଘାଟନ ନିମନ୍ତେ ଜଣେ ବରିଷ୍ଠ ମନ୍ତ୍ରୀ ମହୋଦୟଙ୍କ ପାଖକୁ ଅନୁରୋଧପତ୍ର ଲେଖି ତାଙ୍କର କୌଣସି ଆତ୍ମୀୟ ଅଧ୍ୟାପକଙ୍କ ହାତରେ ପଠାଇଲି । ଫେରିଆସି ସେ ଜଣାଇଲେ, ''ମନ୍ତ୍ରୀ ରାଜି ହୋଇଛନ୍ତି, ଗୋଟିଏ ସର୍ତ୍ତରେ । ତାଙ୍କ ପାଇଁ ଅତ୍ୟନ୍ତ ସାରଗର୍ଭକ ଭାଷଣ ମୋତେ ଲେଖିଦେବାକୁ ହେବ ଏବଂ ଏହି ଗୋପନ ସର୍ତ୍ତ କଥା କୌଣସି ତୃତୀୟ ବ୍ୟକ୍ତି ଜାଣିବେ ନାହିଁ ।'' ସୁସଂବାଦ ସହ ଅଧ୍ୟାପକ ଅନୁନୟ କଲେ, ''ସାର୍‌, ଆପଣ ଲେଖିଦିଅନ୍ତୁ, ମୁଁ ପାରିବି ନାହିଁ ।'' ଅଗତ୍ୟା ତାହାହିଁ କରିବାକୁ ହେଲା । ସଭାକକ୍ଷରେ ମନ୍ତ୍ରୀ ମହୋଦୟ ଭାଷଣଟି ପାଠ କଲା ପରେ ମୋତେ ପଚାରିଲେ, ''ମୋ ଲେଖା ପସନ୍ଦ ହେଲା ତ ?'' ସଭାପତି ଭାବେ ମୁଁ ଉତ୍ତର ଦେଲି, ''ଆଜ୍ଞା, ଅତି ଚମତ୍କାର, ବାସ୍ତବିକ ଜ୍ଞାନଗର୍ଭକ ।'' ଗର୍ବରେ ଉତ୍‌ଫୁଲ୍ଲିତ ହୋଇ ସେ କହିଲେ, ''ଓଡ଼ିଶା ବାହାରୁ ଆସିଥିବା ବିଦ୍ୱାନମାନଙ୍କ ଆଗରେ ଉଦ୍‌ବୋଧନ ଦେବା ନିମନ୍ତେ କେତେଗୁଡ଼ିଏ ଗ୍ରନ୍ଥ ପଢ଼ିବାକୁ ହେଲା । ଦେଖୁ ନାହାନ୍ତି, ଟୟନବିଙ୍କ କୋଟେସନ, ଉଇଲ୍ ଡ୍ୟୁରାଣ୍ଟଙ୍କ ବାକ୍ୟ ଉଦ୍ଧାର କରିଛି ।''

ଆଉ ଗୋଟିଏ ବାଜେ କଥା ଏଠାରେ ଲେଖୁଛି । କୁହାଯାଉ, ନିଶ ପ୍ରସଙ୍ଗ । ଉପକ୍ରମଣିକାଟିଏ ମଧ୍ୟ ଦେଉଛି । ଦିନେ କେତେଜଣ ଛାତ୍ରଙ୍କୁ ନେଇ ବାଣୀବିହାରରୁ ଲଳିତଗିରି ଯାଇଥିଲି । ସାଙ୍ଗରେ ଥାନ୍ତି ଅଧ୍ୟାପକ ପ୍ରଭାତ ମୁଖାର୍ଜି । ଚାରିଟାବେଳେ ଜଳଖିଆ ଖାଇବାକୁ ବସି ପିଲାମାନେ ତାଙ୍କ ସେକ୍ରେଟାରୀଙ୍କୁ ବକାବକି ଆରମ୍ଭ କରିଦେଲେ– ରସଗୋଲ୍ଲା ଆଣିବାକୁ କୁହାଯାଇଥିଲା, ଅଣାଗଲା ନାହିଁ କାହିଁକି ? ସେକ୍ରେଟାରୀ ଉତ୍ତର ନଦେଇ ତୁନି ରହିଲେ । ଅନ୍ୟମାନେ ଶୁଖିଲା ମିଠା ମହିସୁରପା ଖାଇବେ ନାହିଁ କହି ଫୋପାଡ଼ିଦେବେ କହିଲେ । ସେକ୍ରେଟାରୀଙ୍କୁ ପଚାରିଲି, ''ରସଗୋଲ୍ଲା କାହିଁକି ଆଣିଲ ନାହିଁ ?'' ଇତସ୍ତତଃ ଅବସ୍ଥାରେ ଯଥେଷ୍ଟ ସଙ୍କୋଚ ପ୍ରକାଶ କରି ଶେଷରେ ସେ ଉତ୍ତର ଦେଲେ, ''ପ୍ରଭାତ ବାବୁ ରସଗୋଲ୍ଲା ବା ପାନ୍ତୁଆ ଆଣିବାକୁ ମନା କରିଥିଲେ ।'' କଥାଟି ଅସ୍ୱାଭାବିକ ବୋଧ ହେଲା । ଅଧ୍ୟାପକ ମୁଖାର୍ଜିଙ୍କୁ କାରଣ ପଚାରିଲି । ସଲଜ୍ଜ ବଦନରେ କୁଣ୍ଠାବୋଧ ସହ ସ୍ୱୀକାର କଲେ, ''ନିଶରେ ରସ ଲାଗିଗଲେ ଅଠା ପରି ଶୁଖିଯାଏ, ରୁମାଲ୍‌ରେ

ପୋଛିଲେ ବି ଛାଡ଼େ ନାହିଁ ।'' ପରାମର୍ଶ ଦେଲି, ''ନିଶ ନରଖି ରସଗୋଲ୍ଲା ଖାଇଲେ ଭଲ ହେବ ।''

ରାଷ୍ଟ୍ରପତି ନିବାସର ଡାଇନିଂହଲରେ ଦିନେ ନିଶର ଅନ୍ୟ ଏକ ପରିଚୟ ପାଇଲି । ପ୍ରଖ୍ୟାତନାମା ସୁଲେଖକ ଖୁସ୍‌ବନ୍ତ ସିଂହ ମହୋଦୟଙ୍କ ଆଗରେ ଖାଇବାକୁ ବସିଲି । ଟେବୁଲ ଉପରେ ସୁପ୍ ପ୍ଲେଟ ଲାଗିଗଲା । ହଠାତ୍ ସେ ନାକରୁ ଶିଙ୍ଗାଣି ବାହାର କରିବା ଲାଗି ଡାହାଣ ପାପୁଲିରେ ରୁମାଲ ରଖି ବାଁ ପାପୁଲିଦ୍ୱାରା ନିଷ୍କାସନ ପ୍ରକ୍ରିୟା ଆରମ୍ଭ କରିଦେଲେ । ବେସିନ ପାଖକୁ ଉଠିଯାଇ ସେ କାମ କରିଥିଲେ ଚଳିଥାନ୍ତା । କିନ୍ତୁ ତା କଲେ ନାହିଁ । ମେଞ୍ଚାଏ ବହଳିଆ ଶିଙ୍ଗାଣି ରୁମାଲରେ ନପଡ଼ି ତାଙ୍କର ଘନଘଞ୍ଚ ନିଶ ଉପରେ ଜମାଟ ବାନ୍ଧିଲା । ଦୁଇ ଆଙ୍ଗୁଳିରେ ସୂତାଖିଅ ପରି ଟାଣି ଟାଣି ବାହାର କରିବା ସହଜସାଧ୍ୟ ନଥାଏ । ମନକୁ ବିକାର ଆସୁଥାଏ । ତଥାପି ସୌଜନ୍ୟ ଦୃଷ୍ଟିରୁ ବସିରହିବାକୁ ବାଧ୍ୟ ଥିଲି । ଖାଇଲା ସମୟରେ କଥାବାର୍ତ୍ତା କଲାବେଳେ ନିଶକୁ ଚାହିଁବାକୁ ସାହସ ହେଲା ନାହିଁ । ମନୋଜକୁ ଉତ୍ତମ ଭାବେ ଜାଣନ୍ତି ବୋଲି ଖୁସବନ୍ତ ସିଂହ ଜଣାଇଥିଲେ । ଖାଇସାରି ବେସିନରେ ମୁହଁ ଧୋଇଲାବେଳେ ଲକ୍ଷ୍ୟ କଲି, ପାଟି ପରିଷ୍କାର ଅପେକ୍ଷା ନିଶ ଧୋଇବା ପ୍ରତି ବେଶି ଗୁରୁତ୍ୱ ଦିଆଯାଉଛି ।

ସେମିନାର ପରେ ଅଷ୍ଟ୍ରେଲିଆର ସିଡନୀ ବିଶ୍ୱବିଦ୍ୟାଳୟରେ ବହୁ ବର୍ଷ ଅଧ୍ୟାପକ ଥିବା ଶିବନାରାୟଣ ରାୟ ରାଷ୍ଟ୍ରପତି ନିବାସରେ ଆସି ରହିଲେ । ଯୁବାବସ୍ଥାରେ ସେ ମାନବେନ୍ଦ୍ର ନାଥ ରାୟଙ୍କର ସହକାରୀ ଭାବେ କାର୍ଯ୍ୟ କରିଥାନ୍ତି । ପଶ୍ଚିମ ବଙ୍ଗରେ ଦେଖା ଦେଇଥିବା ନକ୍‌ସାଲପନ୍ଥୀ ଆନ୍ଦୋଳନ ସମ୍ପର୍କରେ ତଥ୍ୟ ସଂଗ୍ରହ ନିମନ୍ତେ ସେ ଆସିଥାନ୍ତି । ତାଙ୍କ ବେଶଭୂଷା ଓ ଚାଲିଚଳଣ କିଞ୍ଚିତ ଅସ୍ୱାଭାବିକ ଥାଏ । କିନ୍ତୁ ତାଙ୍କ ଜ୍ଞାନଗରିମାରେ ମୁଗ୍ଧ ହେଲି । ମୋ ରୁମ୍ ପାଖରେ ଥାଏ ତାଙ୍କର ରୁମ୍ । ଅନେକ ରାତି ପର୍ଯ୍ୟନ୍ତ ପାଖରେ ବସି ତାଙ୍କ କଥା ଶୁଣୁଥାଏଁ ।

ଭାରତରେ ବ୍ୟାପି ଚାଲିଥିବା ଦୁର୍ନୀତି ସମ୍ବନ୍ଧରେ ସେ ବହୁ ତଥ୍ୟ ସଂଗ୍ରହ କରିଥାନ୍ତି । ବଙ୍ଗର ଯୁବକମାନେ ଉଗ୍ରପନ୍ଥୀ ହେବାର କାରଣ ଅନୁସନ୍ଧାନ ଲାଗି ଜେଲ୍‌ରେ ଥିବା ନକ୍‌ସାଲମାନଙ୍କ ସହ ସାକ୍ଷାତ ପୂର୍ବକ ସେମାନଙ୍କ ବୟାନ ସଂଗ୍ରହ କରିଥିଲେ । ଥରେ ଗୋଟିଏ ଦୃଷ୍ଟାନ୍ତ ଦେଲେ–

ଜଣେ ଦରିଦ୍ର ପ୍ରାଥମିକ ଶିକ୍ଷକଙ୍କର ଏକମାତ୍ର ପୁତ୍ର ଆଇ.ଏସ୍‌ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ମେଡିକାଲ୍‌ରେ ଭର୍ତ୍ତିହେବା ପାଇଁ ଜଣକ ପରେ ଜଣେ ପାଞ୍ଚଜଣଙ୍କୁ ଲାଞ୍ଚ ଦେଇସାରିଲା ପରେ, ଷଷ୍ଠ ଓ ଶ୍ରେଷ୍ଠ ବ୍ୟକ୍ତି ମାଗିବସିଲେ ନଗଦ ତିନି ହଜାର ଟଙ୍କା । କୋମଳମତି ପୁଅ ତା ବାପାଙ୍କୁ

ସେତକ ଟଙ୍କା ଯୋଗାଡ଼ କରିବାପାଇଁ ଜିଦ୍ ଧରି ବସିଲା । ପିଲାଟିର ଇଚ୍ଛା ଥାଏ, ଡାକ୍ତର ହେବ ଓ ଦରିଦ୍ରମାନଙ୍କ ରୋଗ ଚିକିତ୍ସା କରିବ । ବୃଦ୍ଧ ହୃଦ୍‌ରୋଗୀ ଶିକ୍ଷକ ପୁଅକୁ ପଢ଼ାଇବା ଲାଗି ସର୍ବସ୍ୱାନ୍ତ ହୋଇସାରିଥିଲେ । ପୁଅକୁ ନେଇ କଲିକତାରେ ଟଙ୍କା ମାଗିଥିବା କର୍ମକର୍ତ୍ତାଙ୍କ ଗୋଡ଼ତଳେ ଦିନେ ରାତିରେ ମୁଣ୍ଡ ବାଡ଼େଇ କାନ୍ଦିଲେ । କିନ୍ତୁ ତାଙ୍କର କର୍କଶ ନାସ୍ତିବାଣୀ ଶୁଣି ସେହିଠାରେ ସହସା ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇଲେ । ମର୍ମାନ୍ତିକ ଦୁଃଖରେ ମାନସିକ ଭାରସାମ୍ୟ ହରାଇ ପୁଅ ସେହି ମୁହୂର୍ତ୍ତରେ ପିତାଙ୍କ ଶବ ଉପରେ ଶପଥ ନେଲା, ସେ ହେବ ନକ୍‌ସାଲପନ୍ଥୀ । ତହିଁ ପରଦିନ, ଲାଞ୍ଚ ନେଇଥିବା ଜଣେ ପଦସ୍ଥ ବ୍ୟକ୍ତିଙ୍କୁ ଛୁରୀ ମାରି ସେ ଆହତ କଲା । ବିଚାର ଚାଲିଥିବା ଅବସ୍ଥାରେ ଶିବନାରାୟଣ ବାବୁ ଜେଲ୍ ଭିତରେ ଭେଟି ସବୁ କଥା ଶୁଣିଲା ପରେ ତା ମନରେ ପରିବର୍ତ୍ତନ ଆଣିବା ନିମନ୍ତେ ଅନେକ ପ୍ରକାର ଉପଦେଶ ଦେଲେ । କିନ୍ତୁ, ଶେଷରେ ଉତ୍ତର ପାଇଥିଲେ, ''ମାରିବା ପାଇଁ ଓ ମରିବା ପାଇଁ ମୁଁ ଶପଥ ନେଇଛି । ତାତ୍ତ୍ୱିକ ଉପଦେଶ ବନ୍ଦ କରି ତୁରନ୍ତ ଏଠାରୁ ବାହାରି ଯାଆନ୍ତୁ ।''

ଏହି ଘଟଣା ବର୍ଣ୍ଣନା କଲାପରେ ଶିବନାରାୟଣ ବାବୁ ଭାବବିହ୍ୱଳ କଣ୍ଠରେ କହିଲେ, ''ବିଦେଶରେ ରହି ମୁଁ ପରମ ଶାନ୍ତିରେ ବଞ୍ଚିଛି ।'' ସିମଳାରେ ଏକ ମାସ ରହିଲା ପରେ ପୁଣି ସେ ଅଷ୍ଟ୍ରେଲିଆ ଚାଲିଗଲେ । ପରବର୍ତ୍ତୀ ସମୟରେ ସେ ଶାନ୍ତି ନିକେତନ ଆସିଛନ୍ତି ଶୁଣି ତାଙ୍କୁ କିଛିଦିନ ପାଇଁ ଓଡ଼ିଶା ଆଣିଥିଲି ।

### ବଲରାଜ ସାହଣୀଙ୍କ ସହିତ ଅଲୋଚନା

ଦିନେ ରାଷ୍ଟ୍ରପତି ନିବାସରୁ ବାହାରକୁ ଯାଉଥିବା ସମୟରେ ଗେଟ୍ ପାଖରେ ଜଣେ ଦୀର୍ଘକାୟ ଭଦ୍ରଲୋକ ନମସ୍କାର କଲେ । ମୁହଁକୁ ଚାହିଁଦେଇ ଚିହ୍ନିପାରିଲି, ପ୍ରସିଦ୍ଧ ଚଳଚ୍ଚିତ୍ର ଅଭିନେତା ବଲରାଜ ସାହଣୀ । ରାଷ୍ଟ୍ରପତି ନିବାସ ଦେଖିବାକୁ ତାଙ୍କର ଆଗ୍ରହ ଦେଖି, ସାଙ୍ଗରେ ନେଇ ବୁଲାଇଲି । ବଡ଼ଲାଟମାନଙ୍କ ରାଜକୀୟ ଦରବାର କକ୍ଷ ଦେଖିଲାବେଳେ ମୋତେ କେତେକ କଥା ପଚାରିଲେ । ଭାଇସରୟମାନଙ୍କ ବିଷୟ ଶୁଣିବା ପାଇଁ ତାଙ୍କର ଯଥେଷ୍ଟ ଆଗ୍ରହ ଥିବା ଅନୁଭବ କଲି ।

ମୋ କକ୍ଷକୁ ଡାକିନେଇ ଚା ପାନରେ ଆପ୍ୟାୟିତ କରିବା ଅବକାଶରେ କଥା ଉତ୍ଥାପନ କଲି, ଚଳଚ୍ଚିତ୍ର ନିର୍ମାତାମାନେ ଐତିହାସିକ ଛବି କରୁ ନାହାନ୍ତି, କେବଳ କାଳ୍ପନିକ କାହାଣୀରେ ବିପୁଳ ଅର୍ଥ ବ୍ୟୟ କରୁଛନ୍ତି । ଇଂରେଜ ଅଧ୍ୟାପକ ମାନେ 'ଝାନସିରାଣୀ' ଚଳଚିତ୍ର ଦେଖି ମୋତେ ଯାହା କହିଥିଲେ, ସେ କଥା ତାଙ୍କୁ ଶୁଣାଇଲି, ଯଥା ''ଐତିହାସିକ ସତ୍ୟତା ଦୃଷ୍ଟିରୁ ଚିତ୍ରଟି ପ୍ରସ୍ତୁତ କରାଯାଇଥିଲେ,

ତାହାର ମର୍ଯ୍ୟାଦା ବହୁ ଗୁଣରେ ବୃଦ୍ଧି ପାଇଥାନ୍ତା, କିନ୍ତୁ କଳ୍ପନା ବିଳାସ ମଧ୍ୟରେ ସେହି ବୀରା ରାଣୀଙ୍କର ମହାନ ଭୂମିକାକୁ ବିକୃତ କରିଦିଆଗଲା ।'' ଅନେକ ପୂର୍ବେ ସେହି ଚଳଚ୍ଚିତ୍ର ସୋରାବ ମୋଦୀ ପ୍ରସ୍ତୁତ କରିଥିଲେ ।

ବଳରାଜ ସାହଣୀ କହିଲେ, ''ମୁଁ ଜାଣେ, ଝାନସିରାଣୀ କାହାଣୀ ଲେଖିଥିଲେ ଜଣେ ଐତିହାସିକ, କିନ୍ତୁ ପ୍ରଯୋଜକ ଓ ନିର୍ଦ୍ଦେଶକ ନିଜ ଇଚ୍ଛାରେ ମୂଳ କଥା ବଦଳ କରି ରୋମାନ୍ସ ପୂରାଇଦେଲେ ।'' କଥା ପ୍ରସଙ୍ଗରେ ମୁଁ ତାଙ୍କୁ ଜଣାଇଲି, ସମ୍ରାଟ ଅଶୋକ ଓ କଳିଙ୍ଗ ଯୁଦ୍ଧ ବିଷୟରେ ମୁଁ କାହାଣୀ ରଚନା କରିବି ବୋଲି ଚିନ୍ତା କରିଛି, ଐତିହାସିକ ତଥ୍ୟଗୁଡ଼ିକୁ ମୂଳଭିତ୍ତି କରି ।

''ଲେଖା ଶେଷ ହେଲେ, ମୋତେ ଦେବେ । ପ୍ରୋଡାକ୍‌ସନ ଲାଗି ମୁଁ ସାହାଯ୍ୟ କରିବି,'' ସେ ଆଶ୍ୱାସନା ଶୁଣାଇଥିଲେ । ଦୁର୍ଭାଗ୍ୟକୁ ମୋ ଲେଖା ଶେଷ ହେଲାବେଳକୁ ବଳରାଜ ସାହଣୀ ଇହଧାମରେ ନଥାନ୍ତି । ଘଟଣାକ୍ରମେ, ଲେଖାଟି ପଡ଼ିଲା ଓ.ପି. ରାଲହାନ ନାମକ ପ୍ରଯୋଜକଙ୍କ ହାତରେ ଓ ଆରମ୍ଭ ହେଲା ମୋର ଦୁର୍ଯୋଗ । ଏକ ସ୍ୱତନ୍ତ୍ର ଅଧ୍ୟାୟରେ ସେହି ଦୁଃଖଦାୟକ ଅନୁଭୂତି ବିଷୟ ଲେଖିବି ।

## ସିମଳାରେ ସାନଭାଇ ମନୋଜ

ଆଗରୁ ଖବର ନଦେଇ ଅକସ୍ମାତ ଦିନେ ପଣ୍ଡିଚେରୀରୁ ଯାଇ ମନୋଜ ରାଷ୍ଟ୍ରପତି ନିବାସରେ ମୋ ପାଖରେ ପହଞ୍ଚିଲେ । ସେତେବେଳେ ସେ ଶ୍ରୀଅରବିନ୍ଦଙ୍କ ଜୀବନୀ ରଚନା କରୁଥାନ୍ତି । ପ୍ରାୟ ସାତବର୍ଷ ପୂର୍ବେ ତାଙ୍କୁ ଥରେ ମୁଁ କହିଥିଲି ଯେ, ସ୍ୱଦେଶୀ ଆନ୍ଦୋଳନ କାଳରେ ଅରବିନ୍ଦ ବିପ୍ଳବୀ ଭୂମିକାରେ ଅବତୀର୍ଣ୍ଣ ଥିବାବେଳେ ବ୍ରିଟିଶ ଗୁପ୍ତଚରମାନେ ଯେଉଁ ସବୁ ଗୋପନୀୟ ସଂବାଦ ସଂଗ୍ରହ କରିଥିଲେ, ସେହି ରିପୋର୍ଟଗୁଡ଼ିକ ସ୍କଟଲ୍ୟାଣ୍ଡର ରାଜଧାନୀ ଏଡିନବରା ସହରର ରେକର୍ଡ଼ ଅଫିସରେ ଥିବା ମୁଁ ଦେଖିଛି ।

ମନୋଜ ଶୁଣିଥିବା ଏହି କଥା କୌଣସିକ୍ରମେ ଖୋଦ୍ ଘନଶ୍ୟାମ ଦାସ ବିରଳାଙ୍କ କାନରେ ପଡ଼ିଲା । ସେ ସ୍କଟଲ୍ୟାଣ୍ଡ ଯିବା ନିମନ୍ତେ ମନୋଜକୁ ଅନୁରୋଧ କରିବା ସହ, ଏୟାର ଇଣ୍ଡିଆ ବିମାନ ଯୋଗେ ଯିବା ଆସିବା ଲାଗି ଟିକଟ ପଠାଇଦେଲେ । ଏଡିନବରାର କେଉଁ ସ୍ଥାନରେ ଅରବିନ୍ଦଙ୍କ ବିପ୍ଳବୀ ଜୀବନର ବିବରଣୀ ରହିଛି, ତାହା ବିଶଦ ଭାବେ ଜାଣିବା ଲାଗି ମନୋଜକୁ ସିମଳା ଆସିବାକୁ ହେଲା । ଭି.କେ.ଗୋକକ ମନୋଜଙ୍କୁ ଆଗରୁ ଜାଣିଥିଲେ ଓ ସାଦରେ ରାଷ୍ଟ୍ରପତି ନିବାସରେ ରଖିଲେ । ମୁଁ ସମସ୍ତ ବିଷୟ ବୁଝାଇଦେଲି ।

ଏହାର ଅଳ୍ପଦିନ ପରେ ମନୋଜ ଇଂଲଣ୍ଡ ଯାତ୍ରା କଲେ ଓ ସ୍କଟିସ୍ ଆର୍କାଇଭସ୍‌ରୁ ତଥ୍ୟ ସଂଗ୍ରହ ଦ୍ୱାରା ଶ୍ରୀଅରବିନ୍ଦଙ୍କ ସମ୍ବନ୍ଧରେ ନୂତନ ବିଷୟମାନ ଜାଣିଲେ । ସେତେବେଳେ ତାଙ୍କର ଅନୁମାନ ହେଲା ଯେ ଲଣ୍ଡନ ଆର୍କାଇଭସ୍ ଓ ପାର୍ଲିଆମେଣ୍ଟାରୀ ପେପରରେ ମଧ୍ୟ ଅନେକ ତଥ୍ୟ ମିଳିବ । ତେଣୁ ଏଡିନବରାରେ କାମ ଶେଷ କରି ଲଣ୍ଡନରେ କିଛି ସପ୍ତାହ ରହିବାକୁ ହେଲା ।

ଶ୍ରୀଅରବିନ୍ଦଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ରଚନା ପାଇଁ ମନୋଜକୁ ମର୍ଯ୍ୟାଦାପୂର୍ଣ୍ଣ 'ରାଷ୍ଟ୍ରପତି ପୁରସ୍କାର' ଦ୍ୱାରା ସମ୍ମାନିତ କରାଯାଇଥିଲା ।

## ଭାରତ ପାକ୍ ଯୁଦ୍ଧ

ମୋର ସିମଳା ରହଣି ସମୟରେ ପୂର୍ବପାକିସ୍ତାନରେ ଚାଲିଥାଏ ପାକିସ୍ତାନୀ ସ୍ୱୈରଶାସକ ଜେନେରାଲ୍ ୟାହିୟା ଖାଁ ଙ୍କ ଅମାନୁଷିକ ଦମନଲୀଳା । ପ୍ରତିଦିନ ସନ୍ଧ୍ୟାବେଳେ ରେଡିଓରୁ ଆମେ ସଂବାଦ ଶୁଣୁଥାଉଁ । ଦେଖୁଁ ଦେଖୁଁ ପୂର୍ବବଙ୍ଗରୁ ନିୟୁତ ନିୟୁତ ପଳାତକ ଭାରତକୁ ପଳାଇ ଆସିଲେ । ଶରଣାର୍ଥୀଙ୍କ ସଂଖ୍ୟା ଏକ କୋଟିରେ ପହଞ୍ଚିଲା ।

ଶୀତଋତୁ ଆରମ୍ଭରେ ମୁଁ ଭୁବନେଶ୍ୱର ଚାଲିଆସିଲି, ଯଦିଚ ସିମଳାରେ ଚାକିରି ଶେଷ ହୋଇ ନଥାଏ । ଡିସେମ୍ବର ମାସ ୩ ତାରିଖ ଦିନ ଭାରତ ପାକିସ୍ତାନ ଯୁଦ୍ଧ ଆରମ୍ଭ ହୋଇଗଲା । ୧୬ ତାରିଖ ଦିନ ପୂର୍ବପାକିସ୍ତାନର ସର୍ବୋଚ୍ଚ ସେନାପତି ଅମୀର ଆବଦୁଲ୍ଲା ଖାଁ ନିଆଜି ଭାରତୀୟ ସେନାପତି ଜଗଜିତ ସିଂହ ଅରୋରାଙ୍କ ସମ୍ମୁଖରେ ଆତ୍ମସମର୍ପଣ କଲେ । ସେହି ଦିନ ମଧ୍ୟରାତ୍ରରେ ଭାରତ ପାର୍ଲିଆମେଣ୍ଟରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ସ୍ୱାଧୀନ ବାଂଲା ଦେଶର ଜନ୍ମ ଘୋଷଣା ପୂର୍ବକ ବିଶ୍ୱବାସୀଙ୍କୁ ଚମକିତ କଲେ ।

ବିଜୟମୁହୂର୍ତ୍ତର ଭାବପ୍ରବଣତା ମଧ୍ୟରେ ମୁଁ ତାଙ୍କୁ ପତ୍ରଦ୍ୱାରା ଯୁଦ୍ଧର ଇତିହାସ ଲେଖିବା ନିମନ୍ତେ ଅନୁମତି ପ୍ରାର୍ଥନା କଲି । ସେଥିସହ ସେନାପତି ଅରୋରା ପ୍ରଭୃତିଙ୍କ ନିକଟକୁ ତଥ୍ୟ ଯୋଗାଇବାକୁ ଅନୁରୋଧ ଜଣାଇଲି । ତତ୍‌କାଳୀନ ନୌ-ସେନାପତି ଯୁଦ୍ଧର ଅନେକଗୁଡ଼ିଏ ଫଟୋ ପଠାଇଦେଲେ । କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରୁ ଚିଠି ଆସିଲା, "Prime Minister desires that history should not be written in haste. Please wait till the heat subsides." ।

ଭାରତ-ପାକିସ୍ତାନ ଯୁଦ୍ଧ ସମ୍ପର୍କରେ ତଥ୍ୟ ସଂଗ୍ରହ କରିଥିଲି । କିନ୍ତୁ ସିମଳାରେ ଲେଖୁଥିବା "Indian National Congress Versus the British" ପୁସ୍ତକ ଶେଷ କରିବାକୁ ଅନେକ ସମୟ ଲାଗିଲା । ଯୁଦ୍ଧର ଇତିହାସ ଆଉ ଲେଖିପାରିଲି ନାହିଁ ।



ସିମଳା ରାଷ୍ଟ୍ରପତି ନିବାସ



ନିର୍ଦ୍ଦେଶକ ଭି.କେ. ଗୋକକଙ୍କ ସହିତ ଲେଖକ (୧୯୭୦)

## ଓଡ଼ିଶା ଇତିହାସ
## କଂଗ୍ରେସର ପୁରୀ ଅଧିବେଶନ (୧୯୭୨)




### ସ୍ୱାଧୀନତା ସଂଗ୍ରାମୀ ସମାବେଶ

### ଆଧୁନିକ ଇତିହାସ ରଚନାର ସମସ୍ୟା

ଅତୀତ ଓ ମଧ୍ୟଯୁଗୀୟ ଓଡ଼ିଶାର ଇତିହାସ ଉପରେ ଆଲୋକପାତ ନିମନ୍ତେ ଉଦ୍ୟମ କଲାବେଳେ, ପ୍ରଧାନ ସମସ୍ୟା ହୁଏ ସୀମିତ ଐତିହାସିକ ଉପାଦାନ । ଅପର ପକ୍ଷରେ, ଆଧୁନିକ ଯୁଗର ଇତିହାସ ରଚନା ଲାଗି ତଥ୍ୟର ଅଭାବ ନଥିଲା ବେଳେ, ପ୍ରକୃତ ସତ୍ୟ ଆବିଷ୍କାର କରିବା କଷ୍ଟସାଧ୍ୟ ହୁଏ । ଏ ବିଷୟରେ ଏଠାରେ କିଛି ଲେଖିବା ଅନାବଶ୍ୟକ ।

ସ୍ୱାଧୀନତା ସଂଗ୍ରାମ ଯୁଗର ଓ ସ୍ୱାଧୀନତା ପରବର୍ତ୍ତୀ ସମୟର ଇତିହାସ ଲେଖିବା ପାଇଁ ଚେଷ୍ଟା କଲାବେଳେ, ଜୀବିତ ସଂଗ୍ରାମୀ ଓ ନେତାମାନଙ୍କ ନିକଟରୁ ସାକ୍ଷ୍ୟ ନେବାର ଆବଶ୍ୟକତା ଦେଖାଦେଲା । ଥରେ ସୁଚିନ୍ତିତ ପ୍ରଶ୍ନପତ୍ର ପ୍ରସ୍ତୁତ କରି କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟରୁ ଉତ୍ତର ଆଣିବା ଲାଗି ଯୁବ ଅଧ୍ୟାପକ ଓ ଗବେଷକମାନଙ୍କୁ ପଠାଇଲି । ପ୍ରତ୍ୟେକଙ୍କୁ ସତ୍ୟପାଠ ଶପଥ ନେବାକୁ ଅନୁରୋଧ ଥାଏ । ପତ୍ରବାହକମାନଙ୍କୁ ନିର୍ଦ୍ଦେଶ ଦେଇଥିଲି, ସଂଗ୍ରାମୀମାନେ ଯାହା ଲେଖିଦେବେ, ତାହାକୁ ସେମାନଙ୍କ ନିକଟତମ ସମ୍ପର୍କୀୟମାନଙ୍କୁ ଦେଖାଇ ସତ୍ୟାସତ୍ୟ ସମ୍ପର୍କରେ ଗୋପନ ମତାମତ ଆଣିବା ଦରକାର । ସେହି ଆତ୍ମୀୟମାନେ ପ୍ରଥମେ ଈଶ୍ୱରଙ୍କ ନାମରେ ଶପଥ ନେଇ ନିଜର ମତାମତ ପ୍ରକାଶ କରିବେ । ଭାବିଥିଲି, ଅନେକ ସତ୍ୟଘଟଣା ଜାଣିହେବ । କିନ୍ତୁ, ତଥ୍ୟମାନ ହସ୍ତଗତ ହେଲା ପରେ, ସତ୍ୟତା ପ୍ରତି ସନ୍ଦେହ ଆସିଗଲା । ଗୋଟିଏ ଉଦାହରଣ ଯଥେଷ୍ଟ ।

ଇତିହାସ ବିଭାଗର ଜଣେ ତରୁଣ ଅଧ୍ୟାପକ ହିମାଂଶୁ ଶେଖର ପଟ୍ଟନାୟକ କୌଣସି ଏକ ନିର୍ଦ୍ଦିଷ୍ଟ ନେତାଙ୍କ ସହ ସାକ୍ଷାତ୍‌କାର ପରେ ଫେରିଆସିଲେ ।

ତାଙ୍କ ପାଖରୁ ଯାହା ଶୁଣିଲି, ସେଥିରେ ହସି ହସି ବେଦମ ହେଲି । ନେତାଙ୍କ ସ୍ୱହସ୍ତଲିଖିତ ଉତ୍ତରପତ୍ର ମୋ ହାତରେ ଧରାଇଦେଇ ହିମାଂଶୁ ବର୍ଣ୍ଣନା କଲେ, ‘‘ନେତାଙ୍କ ଧର୍ମପ୍ରାଣା ସରଳମନା ପତ୍ନୀ ଜଗନ୍ନାଥଙ୍କ ନାମରେ ଶପଥ ନେଇ କହିଲେ, ସ୍ୱାମୀ ଯାହାସବୁ ଲେଖିଛନ୍ତି, ସେ ସବୁ କଞ୍ଚା ମିଛ, କିଛି ସତ ନୁହେଁ । ସେ କିଛି କଷ୍ଟ ଭୋଗ କରି ନାହାନ୍ତି, ବରଂ ଭାରତ ଛାଡ଼ ବିପ୍ଳବ ବେଳେ ପୋଲିସ ସାଙ୍ଗରେ ସମ୍ପର୍କ ରଖିଥିଲେ ।’’ ସମସ୍ୟା ହେଲା, କେଉଁଟା ସତ୍ୟ, ନେତାଙ୍କ ଲେଖା ନା ତାଙ୍କ ପତ୍ନୀଙ୍କ ଉକ୍ତି !

ଆଉ ଗୋଟିଏ ଘଟଣା । ‘ଉତ୍କଳ ଦିବସ’ ଉପଲକ୍ଷେ, ରାଜଧାନୀ ମାର୍କେଟ ସାମନା ମଇଦାନରେ ଆୟୋଜିତ ଜନ ସଭାରେ ମୋତେ ସୁଦୀର୍ଘ ଭାଷଣ ଦେବାକୁ ପଡ଼ିଲା । ଓଡ଼ିଶାର ଅତୀତ ଗୌରବ ବର୍ଣ୍ଣନା କଲାପରେ ଆଧୁନିକ ସଂଗ୍ରାମ ଯୁଗର ସାରଥିମାନଙ୍କ ଦୁଃସାହସିକ କାର୍ଯ୍ୟକଳାପମାନ ଉଲ୍ଲେଖ କଲି । ଦୂରରେ ରାସ୍ତାରେ ଗାଡ଼ି ରଖି କେହି କେହି ଭାଷଣ ଶୁଣୁଥିବା ଲକ୍ଷ୍ୟ କଲି । ଘରେ ପହଞ୍ଚିଲାବେଳକୁ ଜଣେ ବିଶିଷ୍ଟ ବ୍ୟକ୍ତି ଫାଟକ ପାଖରେ ଅପେକ୍ଷା କରିଥାନ୍ତି । ମୋତେ ଦେଖିଲାକ୍ଷଣି ଗାଡ଼ିରୁ ବାହାରି ଆସି ଗାଳି ବର୍ଷଣ ଆରମ୍ଭ କରିଦେଲେ– କାହିଁକି ଅମୁକ୍ ଅମୁକ୍ ଲୋକଙ୍କ ପ୍ରଶଂସାଗାନ କଲି ! ‘‘ଆପଣ କ’ଣ ବିଶ୍ୱାସ କରୁଛନ୍ତି ସେହି ବ୍ୟକ୍ତି ଅମୁକ ନଦୀ ସନ୍ତରଣ କରି ସେହି ପ୍ରକାର ଦୁଃସାହସିକ କାର୍ଯ୍ୟ କରିପାରିଥିବ ? ଲୋକର ଚରିତ୍ର ନ ଜାଣି, ପ୍ରଶଂସା କରିବେ ନାହିଁ, ଯଦି କଥାରେ କହିଲେ, ବହିରେ ଲେଖିବେ ନାହିଁ ।’’ ମୁଁ ନିରୁତ୍ତର ରହିଲି । ସେହି ସମସ୍ୟା, ସତ୍ୟ କିମ୍ବା ମିଥ୍ୟା ଜାଣିବି କିପରି ?

ଅପ୍ରାସଙ୍ଗିକ ହେଲେ ସୁଦ୍ଧା, ଗୋଟିଏ କଥା ଲେଖୁଛି, ମୃତ ମହାନ ବ୍ୟକ୍ତିଙ୍କ ସମ୍ପର୍କରେ ଜୀବିତମାନଙ୍କ ଧାରଣା । ଦିନେ କୌଣସି ଏକ ଦୂରବର୍ତ୍ତୀ ସ୍ଥାନରେ ‘ମଧୁଜୟନ୍ତୀ’ ଉପଲକ୍ଷେ ମଧୁସୂଦନ ଦାସଙ୍କ ବିଷୟରେ କହିବାକୁ ଯାଇଥିଲି । ଫେରିଲାବେଳେ ଦୈବାତ୍‌କ୍ରମେ ମୋ ପାଖରେ ବସି ଆସିଲେ ବାବୁ ପବିତ୍ର ମୋହନ ପ୍ରଧାନ । ସେ ଜଣେ ସରଳ ପ୍ରକୃତିର ମନୁଷ୍ୟ, ନିଜର ମନୋଭାବ ପ୍ରକାଶ କରିବାକୁ ସଂକୋଚ କରନ୍ତି ନାହିଁ । ମୋତେ କହିଲେ, ‘‘ଆପଣ ମଧୁବାବୁଙ୍କ ସ୍ତାବକ, ମୁଁ କିନ୍ତୁ ତାଙ୍କୁ ଆଦୌ ଭଲ ପାଏ ନାହିଁ ।’’ ବିସ୍ମୟ ପ୍ରକାଶ କରି ମୁଁ ପ୍ରତିବାଦ କଲି, ‘‘ଯେଉଁ ମହାନ୍ ବ୍ୟକ୍ତି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଲାଗି ଦୁରନ୍ତ ସାହସ ଓ କର୍ମଶକ୍ତିର ପରିଚୟ ଦେଲେ, ପିତାମହ ଭୀଷ୍ମଙ୍କ ପରି ସେପରି ବ୍ୟକ୍ତିଙ୍କୁ ଆପଣ ଭଲ ନ ପାଇବାକୁ କିଏ ?’’ ବିନା ଦ୍ୱିଧାରେ ସେ ଉତ୍ତର ଦେଲେ, ‘‘ପବିତ୍ର ପ୍ରଧାନ ଯାହାକୁ ଭଲ ପାଏ, ପାଏ । ଯାହାକୁ

ଭଲ ନପାଏ, ନପାଏ ।'' ମଧୁବାବୁଙ୍କ ଉପରେ ରାଗିବା କାରଣ ଜାଣିବା ଲାଗି ମୁଁ ଅଡ଼ି ଧରି ବସିଲି । ସେ ବର୍ଣ୍ଣନା କଲେ—

ତାଳଚେର ରାଜାଙ୍କ ବୃତ୍ତି ପାଇ ମୁଁ ରେଭେନ୍‌ସା କଲେଜରେ ପ୍ରଥମବାର୍ଷିକ ଛାତ୍ର ଥିଲାବେଳେ, ଦିନେ ରାଜାସାହେବଙ୍କ ଚିଠି ପାଇଲି ଯେ ମଧୁବାବୁ ତାଳଚେର ଆସିବେ ଓ କଟକ ଷ୍ଟେସନରୁ ତାଳଚେର ପର୍ଯ୍ୟନ୍ତ ରେଳଗାଡ଼ିରେ ତାଙ୍କ ସହିତ ମୋତେ ଯିବାକୁ ହେବ । ସାଙ୍ଗରେ ଗଲି । ଫାର୍ଷ୍ଟକ୍ଲାସ ଡବାରେ ସେ ଓ ମୁଁ ଏକାକୀ । ମଧୁବାବୁ ପଚାରିଲେ, ''ତାଳଚେର ଷ୍ଟେସନରୁ ରାଜାଙ୍କ ଉଆସ ପର୍ଯ୍ୟନ୍ତ କେତେ ମାଇଲ ବାଟ ?'' ମୁଁ ଉତ୍ତର ଦେଲି, ''ମାଇଲ୍‌ଖୁଣ୍ଟ ନାହିଁ, କେତେ ମାଇଲ କେହି କହିପାରିବେ ନାହିଁ ।'' ସେ ରାଗିଉଠି ପଚାରିଲେ, ''ଅନୁମାନ କରି ତ କହିପାରିବ ?'' ମୁଁ ଜବାବ୍ ଦେଲି, ''ଅନୁମାନ କରି ମିଛ କହିପାରିବି ନାହିଁ ।'' ସେତିକିରେ ସେ ଗମ୍ଭୀର ଭାବରେ ବସିରହିଲେ ଓ ମୋ ମୁହଁକୁ ଚାହିଁଲେ ନାହିଁ । ମୁଁ ମଧ୍ୟ ତାଙ୍କ ମୁହଁକୁ ଚାହିଁଲି ନାହିଁ । ଷ୍ଟେସନରେ ଗାଡ଼ି ପହଞ୍ଚିଲା । ରାଜାସାହେବ ନେବାକୁ ଆସିଥିଲେ । ମଧୁବାବୁ ରାଜାଙ୍କୁ ପଚାରିଦେଲେ, ''ଉଆସକୁ ଏଠାରୁ କେତେ ମାଇଲ ?'' ରାଜା କହିଲେ, ''ଆଜ୍ଞା, ଠିକ୍ କହିପାରିବି ନାହିଁ, ତେବେ ବେଶି ବାଟ ନୁହେଁ ।'' ରାଜାଙ୍କ ବାକ୍ୟ ଶେଷ ହେବାକ୍ଷଣି ମୁଁ ମଧୁବାବୁଙ୍କୁ ମୁହେଁ ମୁହେଁ କହିଦେଲି, ''ଆଜ୍ଞା ଶୁଣିଲେ ! ଖୋଦ୍ ରାଜାସାହେବ ତ କହିପାରିଲେ ନାହିଁ, ମୁଁ କେମିତି କହିଥାନ୍ତି !'' ମଧୁବାବୁ ରାଗରେ ଲାଲ ପଡ଼ିଗଲେ । ଦିନକ ପରେ ଫେରିଲାବେଳେ ପୁଣି ତାଙ୍କ ସାଙ୍ଗରେ ଟ୍ରେନ୍‌ରେ ଆସିବାକୁ ହେଲା । ବାଟ ସାରା ମଧୁବାବୁ ମୋତେ ଚାହିଁଲେ ନାହିଁ କି ମୁଁ ମଧ୍ୟ ତାଙ୍କୁ ଚାହିଁଲି ନାହିଁ । ''ତାଙ୍କ ପରି ରାଗୀ ଲୋକଙ୍କୁ କ'ଣ ଭଲ ପାଇବା ସମ୍ଭବ ?''

ପବିତ୍ରବାବୁଙ୍କ କଥା ଶୁଣି ମୁଁ ହସ ସମ୍ଭାଳିପାରିଲି ନାହିଁ । କହିଲି, ''ଜଣେ ସାମାନ୍ୟ କଲେଜପିଲା ଭାବେ ଓଡ଼ିଶାର ବୟୋବୃଦ୍ଧ ବରେଣ୍ୟ ମଧୁସୂଦନ ଦାସଙ୍କ ପ୍ରତି ଯେପରି ବ୍ୟବହାର କଲେ, ସେଥିରୁ ମୋର ଅନୁମାନ ଆପଣ ନିଜେ ଜଣେ ଅଦ୍ଭୁତ ବ୍ୟକ୍ତି । ମଧୁବାବୁ ତ ଦୂରର କଥା, ଯେ କୌଣସି ଲୋକ ଆପଣଙ୍କ କଥା ଶୁଣି ରାଗିଥାନ୍ତେ ।'' ଅବିଚଳିତ ଭାବେ ସେ କହିଲେ, ''ମୋର ନାମ ପବିତ୍ର, ମନ ବି ପବିତ୍ର । ଆପଣ ମୋତେ ଅଦ୍ଭୁତ ବୋଲି କହିଲେ, ମୋର କିଛି ଯାଏ ଆସେ ନା ।''

ପୁନଶ୍ଚ ରହସ୍ୟ କରି ମୁଁ କହିଲି, ''ଆପଣଙ୍କ ପବିତ୍ରତା ପ୍ରତି ମୋର ତିଳେମାତ୍ର ସନ୍ଦେହ ନାହିଁ । ତେବେ, ବେଳେ ବେଳେ ପବିତ୍ର ଶିଶୁଟିଏ ପରି ଯେପରି

ପିଲାଳିଆ କାମ କରିବସନ୍ତି, ସେଥିପାଇଁ ହସ ଲାଗେ । ଯଥା, ବିଜୁ ପଟ୍ଟନାୟକ ବିଧାନସଭା କକ୍ଷରେ ଆପଣଙ୍କ ହାତଦୁଇଟା ଟାଣିଦେଲାରୁ ଆପଣଙ୍କ ମଠା ପଞ୍ଜାବି କହୁଣି ପାଖରୁ ଛିଣ୍ଡିପଡ଼ିଲା, ଏବଂ ଆପଣ ତାକୁ ଖବରକାଗଜରେ ଗୁଡ଼ାଇ ଖୋଦ୍ ପ୍ରଧାନମନ୍ତ୍ରୀ ଜବାହାରଲାଲ୍ ନେହରୁଙ୍କ ଆଗରେ ଆପତ୍ତି ଦେବାପାଇଁ ଦିଲ୍ଲୀ ଚାଲିଗଲେ । ମୁଁ ଶୁଣିଛି, ବିଜୁବାବୁ କୁଆଡ଼େ ଆପଣଙ୍କ ଆଗରେ ନେହରୁଙ୍କୁ କହିଲେ ଯେ, ମଠା ପଞ୍ଜାବିଟି ବିପ୍ଳବୀ ପବିତ୍ରବାବୁ ସଂଗ୍ରାମ ଯୁଗରୁ ଆଜିପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ ଯାବତ୍ ସବୁବେଳେ ପିନ୍ଧୁଛନ୍ତି ଏବଂ ସେପରି ପୁରାତନ ଓ ଜୀର୍ଣ୍ଣ ପରିଚ୍ଛଦରେ ହାତ ଲାଗିଲାମାତ୍ରେ ଛିଣ୍ଡିପଡ଼ିଲା । ଏକଥା ଶୁଣି ପ୍ରଧାନମନ୍ତ୍ରୀ ଓ ଅନ୍ୟ ସମସ୍ତେ ହସିଲେ । ନେହରୁ ଆପଣଙ୍କୁ ଓ ଆପଣଙ୍କ ପୁରୁଣା ଜାମା ଦେଖି କ'ଣ ଭାବିଥିବେ କହିଲେ ?''

ନିର୍ବିକାର ଚିତ୍ତରେ ପବିତ୍ରବାବୁ ଉତ୍ତର ଦେଲେ, ''ମୋ କାମ ମୁଁ କରିଦେଲି । ବୁଦ୍ଧିଆ ବିଜୁ କ'ଣ କହିଲା ବା ନେହରୁ କ'ଣ ଭାବିଲେ, ସେଥିରେ ମୋର କିଛି ଯାଏ ଆସେ ନାହିଁ ।'' ଯେତେ ପଚାରିଲି, କଥାଟା ସତ୍ୟ ନା କେବଳ ଗୋଟିଏ ପ୍ରବାଦ, ତାହାର ଉତ୍ତର ସେ ଦେଲେ ନାହିଁ ।

ପଞ୍ଜାବି ଉପାଖ୍ୟାନ ଯାହା ହେଉ ନା କାହିଁକି, ମଧୁବାବୁଙ୍କ ପ୍ରତି ତାଙ୍କର ଧାରଣା ଜାଣି ଭାବିବାକୁ ହେଲା, ସାମାନ୍ୟ କାରଣ ଲାଗି କିମ୍ବା ନିଜର ଜନ୍ମଗତ ପ୍ରକୃତି ଯୋଗୁଁ, ଆମେ ଯଦି ଦେଶର ପ୍ରସିଦ୍ଧ ପୁରୁଷମାନଙ୍କୁ ନିଜ ନିଜ ବ୍ୟକ୍ତିଗତ ଦୃଷ୍ଟିଭଙ୍ଗିରେ ବିଚାର କରିବା, ତେବେ ବ୍ୟକ୍ତିତ୍ୱର ବାସ୍ତବ ମୂଲ୍ୟାଙ୍କନ ସମ୍ଭବ ହେବ କିପରି !

ବିଗତ ପୁରୁଷର ମହାନ୍ ବ୍ୟକ୍ତିମାନଙ୍କ ସମ୍ପର୍କରେ ବର୍ତ୍ତମାନ ସମୟର ରାଜନୀତିଜ୍ଞମାନଙ୍କର ଯାହା କିଛି ଧାରଣା ଥାଉ ନା କାହିଁକି, ତଥ୍ୟ ଅନୁପାତରେ ସେମାନଙ୍କ କୃତିତ୍ୱମାନ ଇତିହାସରେ ସ୍ଥାନ ପାଇଥାଏ । ସମସ୍ୟା ଜଣାପଡ଼ିଲା ଯେତେବେଳେ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ପରବର୍ତ୍ତୀ ସମୟ ଉପରେ ଗବେଷଣା ଲାଗି ଉଦ୍ୟମ ଚାଲିଲା । ସ୍ୱାଧୀନତା ନିମନ୍ତେ ଯେଉଁମାନେ ସଂଗ୍ରାମ କରିଥିଲେ ଓ ସ୍ୱାଧୀନତା ପରେ ଯେଉଁମାନେ କ୍ଷମତାକୁ ଆସିଲେ, ସେମାନଙ୍କ ମଧ୍ୟରୁ ଅନେକେ ଥିଲେ ଜୀବିତ । ସେମାନଙ୍କ ନିକଟରୁ ସାକ୍ଷ୍ୟ ନେଲାବେଳେ ପରସ୍ପର-ବିରୋଧୀ ମତାମତ ହସ୍ତଗତ ହେଲା । ସେମାନଙ୍କ ଭଲ କାମ ସାଙ୍ଗକୁ ଦୋଷ ଦୁର୍ବଳତା ମଧ୍ୟ ଜଣାପଡ଼ିଲା । ସତ କଥା ଲେଖିଲେ କିଏ ଶତ୍ରୁ ହେବେ ବା କିଏ ପ୍ରଶଂସା କରିବେ, ସେ ବିଷୟ ଚିନ୍ତା କରିବାକୁ ହେଲା ।

ଥରେ ଉଦ୍ରଖ ଠାରେ ଅନୁଷ୍ଠିତ ଗୋଟିଏ ବିଶାଳ ଜନସଭାରେ ବିଜୁ ପଟ୍ଟନାୟକ ସଭାପତିତ୍ୱ କଲେ । ପାଖରେ ଥିଲେ ନୀଳମଣି ରାଉତରାୟ ଓ ଅନ୍ୟ କେତେକ ନେତା । ମୁଖ୍ୟ ବକ୍ତା ଭାବରେ ମୁଁ ମାଇକ୍ ପାଖକୁ ଉଠିଲାମାତ୍ରେ, ବିଜୁବାବୁ ଆଦେଶ ଦେଲେ, "ସ୍ୱାଧୀନତା ପରେ ଓଡ଼ିଶା ଧାଗେଇ ପାରୁନାହିଁ କାହିଁକି ଓ ସେ ପାଇଁ ଦାୟୀ କିଏ, ସେହି ବିଷୟରେ ମୁଁ ଶୁଣିବାକୁ ଚାହେଁ ।" ଉଦ୍ୟୋକ୍ତାମାନେ ମୋତେ 'ଓଡ଼ିଶାର ସଂସ୍କୃତି' ବିଷୟରେ ଭାଷଣ ଦେବା ପାଇଁ ପୂର୍ବରୁ ଅନୁରୋଧ କରିଥିଲେ, କାରଣ ସେହି ଉତ୍ସବକୁ ଭାରତର ତତ୍‌କାଳୀନ ଉପରାଷ୍ଟ୍ରପତି ଉଦ୍‌ଘାଟନ କରିବେ ବୋଲି ଠିକ୍ ହୋଇଥିଲା । କିନ୍ତୁ ସେ ଆସିଲେ ନାହିଁ । ବିଜୁବାବୁଙ୍କ ଆଦେଶ ମାନିବାକୁ ମୁଁ ବାଧ୍ୟ ହେଲି, କାରଣ ସେ ଥିଲେ ସଭାପତି ।

କଥାପ୍ରସଙ୍ଗରେ ମୁଁ କହିଗଲି, "ଉନ୍ନତି ପଥରେ ଓଡ଼ିଶା ଯଦି ଅଗ୍ରସର ହୋଇ ପାରୁନାହିଁ, ସେଥିପାଇଁ ଓଡ଼ିଶାର ନେତୃତ୍ୱ ହିଁ ମୁଖ୍ୟତଃ ଦାୟୀ, ବିଶେଷ ଭାବେ ଆପଣ ବିଜୁବାବୁ ନିଜେ ଦାୟୀ । ଯେଉଁ ହରେକୃଷ୍ଣ ମହତାବ ଆପଣଙ୍କ ରାଜନୈତିକ ଗୁରୁ ଥିଲେ, ସେହି ମହତାବଙ୍କ ବିରୋଧରେ ଷଡ଼ଯନ୍ତ୍ର କରି ଆପଣ ଓଡ଼ିଶା ରାଜନୀତିରେ 'ଗୁରୁଦ୍ରୋହ'ର ଅୟମାରମ୍ଭ କଲେ, ନିଜ ଦଳ ମଧ୍ୟରେ 'ଅନ୍ତର୍ଯୁଦ୍ଧ'ର ସୂତ୍ରପାତ କରି ଦଳୀୟ ସଂହତି ଭାଙ୍ଗିଦେଲେ, ଏବଂ ପରସ୍ପର ମଧ୍ୟରେ 'ଭ୍ରାତୃଯୁଦ୍ଧ' ଆରମ୍ଭ କରି ଦଳକୁ ଦୁର୍ବଳ କଲେ । ସୁତରାଂ, ସ୍ୱାଧୀନତାର ପରବର୍ତ୍ତୀ ସମୟର ଓଡ଼ିଶା ଇତିହାସ ହେବ ରାଜନୈତିକ ଗୃହଯୁଦ୍ଧର ଇତିହାସ । କଳହରତ ଓ ବିଶୃଙ୍ଖଳ ନେତୃତ୍ୱ ଲାଗି ଓଡ଼ିଶାର ସାମୂହିକ ଅଗ୍ରଗତିରେ ବାଧା ପଡ଼ିଲା ।" ଜନତା ଘନ ଘନ କରତାଳି ଦେଲେ । ବିଜୁବାବୁ ଯେ ବିରକ୍ତ ହେଲେ, ଏଥିରେ ସନ୍ଦେହ ନଥାଏ । ଅବଶ୍ୟ, ତାଙ୍କ ଭାଷଣରେ ବୁଦ୍ଧିର ଖେଳ ଖେଳି ସେ କହିଲେ, "ମନ୍ମଥବାବୁ ଯେଉଁ ସମସ୍ତ ଆକ୍ଷେପ କଲେ, ତାହା ମୁଁ ସ୍ୱୀକାର କରୁଛି । ଏଣିକି ଓଡ଼ିଶାର ପ୍ରଗତି ପାଇଁ ଆମକୁ ଐକ୍ୟବଦ୍ଧ ଭାବେ କାମ କରିବାକୁ ହେବ ।"

କିଛିଦିନ ପରେ ବାଲେଶ୍ୱର ସର୍କିଟ ହାଉସ୍‌ରେ ବିଜୁବାବୁଙ୍କ ସହିତ ଦୈବାତ୍ ଦେଖା ହେବାରୁ ସେ ହସି ହସି କହିଲେ, "ଭଦ୍ରଖ ସଭାରେ ଯାହା କହିଥିଲ, ସେ କଥା ମୁଁ ଅନ୍ୟ ସଭାରେ ନିଜେ ବର୍ଣ୍ଣନା କରୁଛି ।" ତାଙ୍କର ଗୋଟିଏ ସୁଗୁଣ ଦେଖିଲି, ସେ କଥା ମନେ ରଖନ୍ତି, କିନ୍ତୁ ମନରେ ରାଗ ରଖନ୍ତି ନାହିଁ ।

ଥରେ ମହତାବବାବୁଙ୍କୁ କହିଲି, "ପରିଣତ ବୟସରେ ଆପଣ ରାଜନୀତିରୁ ସମ୍ପୂର୍ଣ୍ଣ ଭାବେ ଅବସର ନେଇ ଇତିହାସ ଓ ସାହିତ୍ୟ ରଚନାରେ ସମୟ ବିନିଯୋଗ କରିବା ଉଚିତ ।" "ତୁମେ ଯାହା କହୁଛ, ସେ କଥା ମୁଁ କେତେଥର ଭାବିଛି ।

ହେଲେ, ଯେଉଁମାନେ ଜୀବନର ପ୍ରଥମାବସ୍ଥାରୁ ରାଜନୀତି କରିଆସିଲେ, ସେମାନେ ମରିବା ପର୍ଯ୍ୟନ୍ତ ତାହା ଛାଡ଼ିପାରିବେ ନାହିଁ । ରାଜନୀତି ହେଉଛି ଗୋଟିଏ ଅଭ୍ୟାସ, ଅଭ୍ୟାସ ଛାଡ଼ିବା ସମ୍ଭବ ନୁହେଁ,'' ସେ ଉତ୍ତର ଦେଇଥିଲେ । ''ନିନ୍ଦୁକମାନେ କହନ୍ତି, ଆପଣ ମନ୍ତ୍ରିମଣ୍ଡଳ ଭାଙ୍ଗିବା ଓ ଗଢ଼ିବା ଖେଳରେ ଧୁରନ୍ଧର ନେତା । ଏପରି ସମାଲୋଚନା ଶୁଣିବାକୁ ଭଲ ଲାଗେ କିପରି ?'' ''କାହିଁକି ଭାଙ୍ଗିଛି ଓ କାହିଁକି ଗଢ଼ିଛି, ସେ କଥା ତୁମେମାନେ ଦିନେ ଆବିଷ୍କାର କରି ମହତାବ ଭଲ କି ଖରାପ ତାହା ଲେଖିବ ।'' ଏହାପରେ ସେ ବିଶ୍ୱନାଥ ଦାସ ଓ ନବକୃଷ୍ଣ ଚୌଧୁରୀଙ୍କ ଠାରୁ ଆରମ୍ଭ କରି 'ବିଜୁ, ବୀରେନ୍, ନୀଳମଣି' ପର୍ଯ୍ୟନ୍ତ ସମସ୍ତଙ୍କ କଥା ଶୁଣାଇଲେ ।

ଆଗରୁ କହିଥିବା ସମସ୍ୟାକୁ ଫେରିଆସୁଛି । ଜୀବିତ ବ୍ୟକ୍ତିମାନଙ୍କର ପରସ୍ପରବିରୋଧୀ ମନ୍ତବ୍ୟ ଫଳରେ ଯେଉଁ ପ୍ରହେଳିକା ସୃଷ୍ଟି ହୁଏ, ସେଥିରୁ ସତ୍ୟାସତ୍ୟ ଜାଣିବା କିପରି ? ଗାନ୍ଧିଯୁଗର ସଂଗ୍ରାମ, ଗଡ଼ଜାତ ପ୍ରଜା ଆନ୍ଦୋଳନ, ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ, ଭାରତଛାଡ଼ ବିପ୍ଳବ, ସ୍ୱାଧୀନତା ଲାଭ, ଗଡ଼ଜାତ ମିଶ୍ରଣ ଓ ପରବର୍ତ୍ତୀ ସମୟର ରାଜନୈତିକ ଘଟଣାରାଜି ସମ୍ପର୍କରେ ବିବଦମାନ ତଥ୍ୟ ମିଳୁଥାଏ । ଏପରିକି, ୧୯୪୨ ବିପ୍ଳବ ବେଳେ ଘଟିଥିବା ଏକ ଗୁଳିକାଣ୍ଡ ଘଟଣାର ଅନୁସନ୍ଧାନ ନିମନ୍ତେ ଯଥାସ୍ଥାନକୁ ଯାଇଥିଲା ସମୟରେ, ଜଣେ ସଂଗ୍ରାମୀ ନିଜର ବୀରତ୍ୱ ବର୍ଣ୍ଣନା କଲାପରେ, ଅନ୍ୟ ଜଣେ ସଂଗ୍ରାମୀ ସ୍ୱର ଉତ୍ତୋଳନ କଲେ, ''ସେହି ପରା ମୋତେ ପୋଲିସ ହାତରେ ଧରାଇଦେଇ ନିଜେ ଖସିଗଲେ ।'' ତାଙ୍କର ସମାଲୋଚନା କରି ପ୍ରଥମ ବ୍ୟକ୍ତି ମୋ ଆଗରେ କାନ୍ଦିପକାଇଲେ, ଅବଶ୍ୟ ଏକାକୀ ଓ ରାତିରେ ।

ଏହିପ୍ରକାର ସମସ୍ୟା ଦୃଷ୍ଟିରୁ ମୋ ମନକୁ ଗୋଟିଏ ବୁଦ୍ଧି ଆସିଲା । ଓଡ଼ିଶାର ବୟୋବୃଦ୍ଧ ସ୍ୱାଧୀନତା-ସଂଗ୍ରାମୀମାନଙ୍କୁ ଗୋଟିଏ ସ୍ଥାନରେ ଏକତ୍ରିତ କରି ପ୍ରତ୍ୟେକଙ୍କୁ ଅନ୍ୟମାନଙ୍କ ସମ୍ମୁଖରେ ନିଜ ଜୀବନୀ ଓ କାର୍ଯ୍ୟକଳାପ ବିଷୟ ବ୍ୟାଖ୍ୟା କରିବା ନିମନ୍ତେ ସୁଯୋଗ ଦିଆଯିବ ବୋଲି ଠିକ୍ କଲି । ପ୍ରତ୍ୟେକେ ସଂଗ୍ରାମ ଯୁଗରେ ନିଜର ଭୂମିକା ବର୍ଣ୍ଣନା କରି ପ୍ରବନ୍ଧ ପାଠ କରିବେ ଓ ଅନ୍ୟମାନେ ସେଥିଉପରେ ମତାମତ ଦେବେ । ସମସ୍ତଙ୍କ ବକ୍ତବ୍ୟ ରେକର୍ଡ଼ିଂ କରାଯିବ । ୧୯୭୨ ମସିହାରେ ସାରା ଭାରତରେ ସ୍ୱାଧୀନତା ପ୍ରାପ୍ତିର ରୌପ୍ୟ ଜୟନ୍ତୀ ପାଳିତ ହେଉଥାଏ । ସେହି ଉପଲକ୍ଷେ, ପୁରୀ ସହରରେ ଓଡ଼ିଶା ଇତିହାସ କଂଗ୍ରେସର ଅଧିବେଶନ ଆହ୍ୱାନ କରିବା ସହ ସ୍ୱାଧୀନତା-ସଂଗ୍ରାମୀମାନଙ୍କୁ ସମବେତ କରିବା ନିମନ୍ତେ ଯୋଜନା କଲି ।

## ଇତିହାସ କଂଗ୍ରେସ ଓ ସଂଗ୍ରାମୀ ସମ୍ମେଳନ

ଓଡ଼ିଶାର ୨୦ ଜଣ ବୟୋଜ୍ୟେଷ୍ଠ ନେତା ଓ ନେତ୍ରୀଙ୍କ ସମେତ ଶତାଧିକ ସଂଗ୍ରାମୀଙ୍କୁ ଆମ ଅଧିବେଶନରେ ଯୋଗ ଦେବାକୁ ଓ ପ୍ରବନ୍ଧ ପାଠ କରିବାକୁ ଆମନ୍ତ୍ରଣ କଲି । ଅଧିକାଂଶ ବ୍ୟକ୍ତି ସମ୍ମତି ଜଣାଇଲେ । ଏକମାତ୍ର ମାଳତୀ ଚୌଧୁରୀ ଖଣ୍ଡିଏ କଡ଼ା ଚିଠିରେ ତାଙ୍କ ଅନିଚ୍ଛା ପ୍ରକାଶ କଲେ । ଚିଠିର ମର୍ମାର୍ଥ ଥିଲା, ନୀତିହୀନ ରାଜନୀତି ଯୁଗରେ ନେତା ସମ୍ମେଳନ ଏକ ପ୍ରହସନ ବ୍ୟତୀତ ଆଉ କିଛି ନୁହେଁ ।

ତିନିଦିନ ପାଇଁ ସମସ୍ତଙ୍କ ରହିବା ଲାଗି ପାନ୍ଥନିବାସ ରିଜାର୍ଭ କଲି । ପାଥରପୁରୀ ହଷ୍ଟେଲରେ ଇତିହାସ କଂଗ୍ରେସର ସଦସ୍ୟମାନେ ରହିଲେ । ବୟୋଜ୍ୟେଷ୍ଠ ଅତିଥିମାନଙ୍କ ମଧ୍ୟରେ ଥିଲେ ବିଶ୍ୱନାଥ ଦାଶ, ହରେକୃଷ୍ଣ ମହତାବ, ରାଧାନାଥ ରଥ, ରମା ଦେବୀ, ସରଳା ଦେବୀ, ନିତ୍ୟାନନ୍ଦ କାନୁନଗୋ, ଗଦାଧର ଦତ୍ତ, ନାରାୟଣ ବୀରବର ସାମନ୍ତ, ରତ୍ନମାଳୀ ଜେମା, ରମ୍ଭା ଦେବୀ, ଶ୍ୟାମସୁନ୍ଦର ମିଶ୍ର, ନନ୍ଦକିଶୋର ଦାସ, ନୀଳାମ୍ବର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରଦ୍ଧାକର ସୂପକାର, ପବିତ୍ରମୋହନ ପ୍ରଧାନ ଓ ଅନ୍ୟ କେତେକ ବ୍ୟକ୍ତି ଯେଉଁମାନଙ୍କ ରାଜନୈତିକ ଭୂମିକା ଉଲ୍ଲେଖନୀୟ ଥାଏ । ସର୍ବୋଦୟ କର୍ମୀମାନଙ୍କ ମଧ୍ୟରେ ଥାନ୍ତି ଶରତ ଚନ୍ଦ୍ର ମହାରଣା ଓ ଅନ୍ନପୂର୍ଣ୍ଣା ମହାରଣା ।

ସମସ୍ତେ ସମବେତ ହେଲାପରେ ଜାଣିପାରିଲି, କେତେକ ତୁଙ୍ଗ ନେତା ପରସ୍ପରର ମୁହଁକୁ ଚାହାନ୍ତି ନାହିଁ । କେଉଁମାନେ କେଉଁମାନଙ୍କ ଚକ୍ଷୁଃଶୂଳ, ତାହା ଜାଣିବାକୁ ବିଳମ୍ବ ହେଲା ନାହିଁ । ବିସ୍ମିତ ହେବାକୁ ହେଲା ଯେ, ଏକଦା ଯେଉଁମାନେ ସହକର୍ମୀ ଥିଲେ, ସ୍ୱାଧୀନତା ପରେ କ୍ଷମତାଦ୍ୱନ୍ଦ୍ୱରେ ପରସ୍ପରର ଶତ୍ରୁଭାବାପନ୍ନ ହେଲେ । ବ୍ୟକ୍ତିଗତ ସ୍ତରରେ ମଧ୍ୟ ସୌଜନ୍ୟମୂଳକ ସମ୍ପର୍କ ଛିନ୍ନ କରିବାକୁ ସେମାନଙ୍କ କାତରତା ନଥାଏ । ଜଣେ ସରଳମନା ନେତା ମୋତେ ନିଭୃତ ସ୍ଥାନକୁ ଡାକିନେଇ ଜଣାଇଦେଲେ, ''ସମସ୍ତଙ୍କୁ ଏକତ୍ରିତ କରିଥିବାରୁ ଆପଣଙ୍କୁ ଧନ୍ୟବାଦ । କିନ୍ତୁ ପ୍ରତ୍ୟେକଙ୍କର ମନୋଭାବ ପ୍ରତି ସଜାଗ ରହିବେ ।''

ପାନ୍ଥ ନିବାସର ଭୋଜନ କକ୍ଷରେ ଜଳଖିଆ ଲାଗି ସମସ୍ତେ ବସିଲାପରେ, ବିନମ୍ର ଭାବରେ ମୁଁ ସ୍ୱାଗତ ସମ୍ଭାଷଣ ଜଣାଇ କହିଲି—

''କେବଳ ମାତ୍ର ଦୁଇଟି ସ୍ଥାନ ରହିଛି, ଯେଉଁଠାରେ ଶତ୍ରୁ ଏବଂ ମିତ୍ର ଏକତ୍ର ଅବସ୍ଥାନ ନିମନ୍ତେ ବାଧ୍ୟ । ଗୋଟିଏ ହେଉଛି ଶ୍ମଶାନ ଓ ଅନ୍ୟଟି ଇତିହାସ ପୃଷ୍ଠା । ଶ୍ମଶାନର ପାଉଁଶରେ କିଏ କ'ଣ ଥିଲେ ଜାଣିହୁଏ ନା । ଇତିହାସର ଏକା ପୃଷ୍ଠାରେ ଦେଖିବାକୁ ମିଳେ, ଆକବର ଓ ରାଣା ପ୍ରତାପ କିମ୍ବା ଆଉରଙ୍ଗଜେବ

ଓ ଶିବାଜୀଙ୍କ ଛବି; ହିଟଲାର ଓ ଷ୍ଟାଲିନ କିମ୍ବା ଗାନ୍ଧି ଓ ଚାର୍ଚ୍ଚିଲଙ୍କ ଚିତ୍ର । ଆପଣମାନେ ସମସ୍ତେ ଥିଲେ ସଂଗ୍ରାମଯୁଗର ସୈନିକ, ପରସ୍ପରର ମିତ୍ର । ଯଦି ପରବର୍ତ୍ତୀ ସମୟର ରାଜନୈତିକ ମତପାର୍ଥକ୍ୟ ଯୋଗୁଁ ସେହି ମିତ୍ରତା ଶିଥିଳ ହୋଇଯାଇଥାଏ, ତଥାପି ଆମ ଗହଣରେ ତିନିଦିନ ଲାଗି ପୂର୍ବତନ ସାଥୀ ସଦୃଶ ରହିବାକୁ ହେବ, ଏହାହିଁ ମୋର ଏକାନ୍ତ ଅନୁରୋଧ ।'' କଥାର ତାତ୍ପର୍ଯ୍ୟ ସମସ୍ତେ ହୃଦୟଙ୍ଗମ କଲେ ।

ଅଧିବେଶନ ଆରମ୍ଭ ହେଲା । ପ୍ରାରମ୍ଭିକ ଉଦ୍‌ବୋଧନରେ ଜଣାଇଦେଲି, ''ଜୀବିତ ସ୍ୱାଧୀନତା-ସଂଗ୍ରାମୀମାନଙ୍କ ସ୍ୱମୁଖରୁ ସଂଗ୍ରାମଯୁଗରେ ସେମାନଙ୍କ ଭୂମିକା ସମ୍ବନ୍ଧରେ ଅବଗତ ହେବା ଉଦ୍ଦେଶ୍ୟରେ ଏହି ସ୍ୱତନ୍ତ୍ର ଅଧିବେଶନ ଆହ୍ୱାନ କରାଯାଇଛି । ଆପଣମାନେ ଯେଉଁ ସତ୍ୟ ପ୍ରକାଶ କରିବେ, ଆମେ ତାହା ଲିପିବଦ୍ଧ କରିବୁଁ ।''

ପ୍ରବନ୍ଧ ପରେ ପ୍ରବନ୍ଧ ପଠିତ ହେଲା । ସେଥିଉପରେ ବିଶଦ କଥା ଲେଖିବା ଏଠାରେ ପ୍ରାସଙ୍ଗିକ ନୁହେଁ । ତେବେ, ପରସ୍ପରବିରୋଧୀ ମତାମତ ସ୍ପଷ୍ଟ ହୋଇଉଠୁଥାଏ । ସାମାନ୍ୟ କଥାରେ ସୁଦ୍ଧା ବାଦବିସମ୍ବାଦ ଦେଖି ଶ୍ରୋତାମାନେ ଆଚମ୍ବିତ ହେଲେ । ଉଦାହରଣ ସ୍ୱରୂପ, ସରଳା ଦେବୀ ତାଙ୍କ ବକ୍ତବ୍ୟରେ ନିଜର ଭୂମିକା ବର୍ଣ୍ଣନାବେଳେ କହିଲେ, ''ମୁଁ ବିଶ୍ୱନାଥ ଦାଶଙ୍କୁ ରାଜନୀତିକୁ ଆଣିଥିଲି । ହରେକୃଷ୍ଣ ମହତାବଙ୍କ ସ୍ତ୍ରୀ ସୁଭଦ୍ରା ଦେବୀଙ୍କୁ ମୁଁ ଅକ୍ଷର ଶିଖାଇଥିଲି ।'' ହଠାତ୍ ବିଶ୍ୱନାଥ ଦାଶ ଛିଡ଼ା ହୋଇପଡ଼ି ମୋତେ ସମ୍ବୋଧନ ପୂର୍ବକ ଉଚ୍ଚସ୍ୱରରେ କହିଲେ, ''ସଭାପତି ମହୋଦୟ, ଏଠାରେ ସତ୍ୟର ଅପଳାପ ନ ହେଉ । ମୁଁ ସରଳା ଦେବୀଙ୍କ ଠାରୁ ବୟସରେ ବଡ଼ । ସେ କିପରି ମୋତେ ରାଜନୀତିକୁ ଟାଣି ଆଣିଥିଲେ, ସେ କଥା ମୁଁ ବୁଝିପାରୁନାହିଁ । ମୋର ଅନୁରୋଧ, ଇତିହାସ ଲେଖିଲାବେଳେ ଆପଣମାନେ ସମୟର ଧାରାବାହିକତା ବା କ୍ରମିକତା ପ୍ରତି ଦୃଷ୍ଟି ଦେବେ ।'' ସେତେବେଳକୁ ମହତାବବାବୁ ପ୍ରତିବାଦ କରୁଥିଲେ, ''ଆଜି ପ୍ରଥମ ଥର ପାଇଁ ଏଠାରେ ଶୁଣୁଛି, ସରଳା ଦେବୀ କୁଆଡ଼େ ମୋ ସ୍ତ୍ରୀଙ୍କୁ ଅକ୍ଷର ଶିଖାଇଥିଲେ ।'' ସରଳା ଦେବୀ ସହସା ପ୍ରବନ୍ଧ ପାଠ ବନ୍ଦ କରି ରାଗରେ ମଞ୍ଚ ତଳକୁ ଯାଇ ଗରଗର ଭାବରେ ବହୁତ କଛି କହିଗଲେ ।

ରମା ଦେବୀ ପ୍ରଭୃତି କେତେକଙ୍କ ପ୍ରବନ୍ଧରେ ବାଦବିବାଦର ଅବକାଶ ନଥାଏ । ଅନ୍ୟ କେତେଜଣ ସଂଗ୍ରାମୀଙ୍କ ବକ୍ତବ୍ୟବେଳେ ଶ୍ରୋତାମାନଙ୍କ ମଧ୍ୟରେ ମୃଦୁ ଗୁଞ୍ଜରଣ ସୃଷ୍ଟି ହେଉଥାଏ । ଗଦାଧର ଦତ୍ତ, ବନ୍ଦୀ ଜୀବନର କଷ୍ଟ ବର୍ଣ୍ଣନା କଲାବେଳେ ବାଷ୍ପରୁଦ୍ଧ କଣ୍ଠରେ କିଛି କହିପାରିଲେ ନାହିଁ । ରାଧାନାଥ ରଥ, ନନ୍ଦକିଶୋର ଦାସ ଓ ନୀଳାମ୍ବର ଦାସ ବିଶଦ ଭାବରେ କେତେକ ଘଟଣା

ଉପରେ ଆଲୋକପାତ କଲେ । ବିଶ୍ୱନାଥ ଦାଶ, ହରେକୃଷ୍ଣ ମହତାବ, ନାରାୟଣ ବୀରବର ସାମନ୍ତ ଓ ନିତ୍ୟାନନ୍ଦ କାନୁନଗୋ ସେମାନଙ୍କର ଅନୁଭୂତି ବର୍ଣ୍ଣନାବେଳେ କେତେକ ନୂତନ ତଥ୍ୟ ପରିବେଷଣ କଲେ ।

ତିନିଦିନିଆ ସମ୍ମିଳନୀର ଶେଷ ପର୍ଯ୍ୟାୟ ବେଳକୁ କେହି କେହି ଅଭିଯୋଗ କଲେ ଯେ, କେବଳ ବୟୋଜ୍ୟେଷ୍ଠ ନେତାମାନଙ୍କ ପରିବର୍ତ୍ତେ, ସବୁଶ୍ରେଣୀର ସଂଗ୍ରାମୀମାନଙ୍କ ପାଖରୁ ପ୍ରକୃତ ଜନବିପ୍ଳବର ତଥ୍ୟ ସଂଗ୍ରହ କରାଯିବା ଉଚିତ । ସେତେବେଳକୁ ମୋର ହୃଦ୍‌ବୋଧ ହୋଇଥିଲା, ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଆଦିବାସୀ ସମ୍ପ୍ରଦାୟ ସମେତ ସର୍ବସାଧାରଣ ଲୋକଙ୍କର ବାସ୍ତବ ଭୂମିକା ବିଷୟରେ ଯଥେଷ୍ଟ ତଥ୍ୟ ସଂଗ୍ରହ ନ କଲା ପର୍ଯ୍ୟନ୍ତ ବିପ୍ଳବ ଯୁଗର ପୂର୍ଣ୍ଣାଙ୍ଗ ଇତିହାସ ରଚନା ସମ୍ଭବ ନୁହେଁ । ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ବନ୍ଧାଗତ ଜୀବନୀ ତୁଳନାରେ ଲକ୍ଷ୍ମଣ ନାୟକଙ୍କ ପରି ସହିଦ୍ ମାନଙ୍କ ଜୀବନ ବୃତ୍ତାନ୍ତର ମର୍ଯ୍ୟାଦା ସ୍ୱତନ୍ତ୍ର ବୋଲି ପ୍ରତୀୟମାନ ହେଲା ।

ତେଣେ, ଇତିହାସର ଗତି ଓ ଭାବଧାରାରେ କ୍ରମାଗତ ପରିବର୍ତ୍ତନ ଉପଲବ୍ଧି କରିହେଉଥାଏ । ଜନନାୟକମାନଙ୍କ ଇତିହାସ ଅପେକ୍ଷା ସାମୂହିକ ଜନ ଇତିହାସର ଆବଶ୍ୟକତା ଆସିଯାଇଥାଏ । ଅଧିବେଶନ ଶେଷ ହେଲାପରେ, ଇତିହାସ କଂଗ୍ରେସର କର୍ମକର୍ତ୍ତାମାନେ ନିଷ୍ପତ୍ତି ନେଲେ ଯେ, ତରୁଣ ଅଧ୍ୟାପକ ଓ ଗବେଷକମାନେ ନୂତନ ଦୃଷ୍ଟିଭଙ୍ଗୀରେ ଆଧୁନିକ ଓଡ଼ିଶା ଇତିହାସର ବିଭିନ୍ନ ଦିଗ ଅନୁଧ୍ୟାନ କରିବେ ।

# ବାଙ୍ଗଲାଦେଶ ଇତିହାସ ପରିଷଦରେ ଯୋଗଦାନ (୧୯୭୩)




## ଢାକା ରହଣି ଦିନର ଅନୁଭୂତି

### ବାଙ୍ଗଲା ଦେଶରୁ ନିମନ୍ତ୍ରଣ

୧୯୭୨ ମସିହାର ଭାରତ-ପାକ୍ ଯୁଦ୍ଧରେ ପାକିସ୍ତାନର ଶୋଚନୀୟ ପରାଜୟ ଘଟିଥିଲା । ଭାରତୀୟ ସୈନ୍ୟବାହିନୀ କ୍ଷିପ୍ର ଗତିରେ ପୂର୍ବପାକିସ୍ତାନ ଭିତରକୁ ମାଡ଼ିଯାଇଥିଲେ ଓ ଡିସେମ୍ବର ମାସ ମଧ୍ୟଭାଗରେ ପାକିସ୍ତାନୀ ସୈନ୍ୟମାନେ ଆତ୍ମ ସମର୍ପଣ କଲେ । ସେଥିସହ ପୂର୍ବପାକିସ୍ତାନ ହେଲା ସ୍ୱାଧୀନ ବାଙ୍ଗଲାଦେଶ୍ । ସେହି ଯୁଦ୍ଧର ଇତିହାସ ଲେଖିବା ଲାଗି ଆଗ୍ରହ ରହିଥାଏ । ଏପରି ବେଳେ, ୧୯୭୩ ମସିହା ଆରମ୍ଭରେ ବାଙ୍ଗ୍‌ଲାଦେଶ ଇତିହାସ ପରିଷଦ ପକ୍ଷରୁ ସେ ଦେଶକୁ ଯିବାପାଇଁ ନିମନ୍ତ୍ରଣ ପାଇଲି । ପ୍ରବନ୍ଧ ପଠାଇବାକୁ ଅନୁରୋଧ ସହ କଲିକତାରୁ ଢାକା ଯିବା ଆସିବା ଲାଗି ବିମାନ ଟିକଟ ପଠାଇ ଦିଆଯିବ ବୋଲି ଉଲ୍ଲେଖ ଥାଏ ।

ଠିକ୍ କଲି, ଢାକା ଯଦି ଯିବି, ବାଙ୍ଗ୍‌ଲାଦେଶର ବିଭିନ୍ନ ସ୍ଥାନ ଗସ୍ତ କରି ଯୁଦ୍ଧକାଳର ବିବରଣୀ ସଂଗ୍ରହ କରିବି । ସେଥିପାଇଁ, ଅନ୍ତତଃପକ୍ଷେ ଗୋଟିଏ ମାସ ରହିବି ବୋଲି ଭାବିଲି । ତେଣେ, ଝିଅ ବିବାହ ପାଇଁ ପ୍ରସ୍ତୁତି ଚାଲିଥାଏ । ମାର୍ଚ୍ଚମାସ ମଧ୍ୟରେ ସେହି କାର୍ଯ୍ୟ ଶେଷ କରି ମେ ମାସରେ ବାଙ୍ଗ୍‌ଲାଦେଶ ଯିବାକୁ ନିଷ୍ପତ୍ତି ନେଲି ।

### ଝିଅ ବିବାହ

ଏକମାତ୍ର ଝିଅ ସଂଘମିତ୍ରା (ଡାକନାମ ଝାନ୍‌ସୀ) କଟକ ମେଡ଼ିକାଲ କଲେଜରେ ଏମ୍.ବି.ବି.ଏସ୍. ପଢୁଥାଏ । ବର ବିଜୟ କୁମାର ସାମଲ ଏମ୍.ଡି.ପଢୁଥାନ୍ତି ।

ନିମନ୍ତ୍ରଣପତ୍ରରେ ଲେଖିଥିଲି 'ଉପହାର ପ୍ରଦାନ ନିଷିଦ୍ଧ' । ଏହି ସମ୍ପର୍କରେ ପଦେ ଦୁଇପଦ ଲେଖୁଛି । ମହତାବଙ୍କ ଏକାମ୍ରନିବାସରେ ନିମନ୍ତ୍ରଣପତ୍ର ଧରି

ପହଞ୍ଚିଲି । ସେ ତାଙ୍କ ବ୍ୟକ୍ତିଗତ ସହକାରୀଙ୍କୁ ଡାକି ନିର୍ଦ୍ଦେଶ ଦେଲେ, ''ମନ୍ମଥ ଆମର ବନ୍ଧୁ । ତାଙ୍କ ସାନଭାଇଙ୍କ ଶ୍ୱଶୁର ପରିବାରରେ ମୋ ସାନଭାଇ ଝିଅ ଦେଇଛନ୍ତି । ସାତ, ଆଠ ଭରି ସୁନା ହାରଟିଏ ମନ୍ମଥ ଝିଅ ପାଇଁ ତିଆରି କର ।'' ନମ୍ରଭାବରେ ମୁଁ କହିଲି, ''ଯଦି ଉପହାର କଥା ଚିନ୍ତା କରୁଛନ୍ତି, ମୋ ନିମନ୍ତ୍ରଣପତ୍ର ଫେରାଇ ଦିଅନ୍ତୁ ।'' ''ଖାଲି ହାତରେ ବନ୍ଧୁଘର ବିବାହକୁ ଯାଇ ଅପମାନ ପାଇବି ବୋଲି କହୁଛ ?'' ସେ କହିଲେ । ମୁଁ ଉତ୍ତର ଦେଲି, ''କାହାରି ପାଖରୁ କିଛି ନେବି ନାହିଁ । ଆପଣ ଉପହାର ଦେବା ଦେଖିଲେ ଅନ୍ୟ ନିମନ୍ତ୍ରିତ ଅତିଥିମାନେ ଅପମାନିତ ହେବେ । ସେପରି ପରିସ୍ଥିତିରୁ ଦୟାକରି ତ୍ରାହି ଦିଅନ୍ତୁ ।'' ସେ ରାଜି ହେଲେ ।

କଟକରେ ସଦାଶିବ ମିଶ୍ରଙ୍କୁ ନିମନ୍ତ୍ରଣପତ୍ର ଦେଲାବେଳେ, ସେ ମଜା କଥାଟିଏ କହିଲେ । ''ଉପହାର ଦେଇସାରି ଖାଇବାକୁ ବସିଲେ ମୋର ମନେହୁଏ, ଯେଉଁମାନେ ବେଶି ମୂଲ୍ୟର ଉପହାର ଦେଇଥିବେ, ସେମାନଙ୍କ ଅନୁପାତରେ କମ୍ ଉପହାର ଦେଇଥିବା ଲୋକଙ୍କର କମ୍ ଖାଇବା ଉଚିତ ! ଯାହାହେଉ, ତୁମ ଝିଅ ବିବାହରେ ଶାନ୍ତିରେ ଖାଇବି ।'' ରହସ୍ୟପ୍ରିୟ ସଦାଶିବବାବୁଙ୍କ କଥାଟି ମନେ ରହିଲା ।

ମାର୍ଚ୍ଚ ୧୧ ତାରିଖ ଦିନ ବିବାହଉତ୍ସବ ସମ୍ପନ୍ନ ହେଲା । ଦୁଇଦିନ ପରେ ବାବୁ ଭୈରବଚନ୍ଦ୍ର ମହାନ୍ତିଙ୍କ ନିକଟରୁ ଖଣ୍ଡିଏ ଚିଠି ପାଇଲି । ସେ ଲେଖିଥିଲେ, ''ଆପଣଙ୍କ ଝିଅ ବିବାହକୁ ଆସୁଥିବା ଅତିଥିମାନଙ୍କ ହାତ ପ୍ରତି ଦୃଷ୍ଟି ରଖିଥିଲି । ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି, କେହି ଭଦ୍ରବ୍ୟକ୍ତି ବା ଭଦ୍ରମହିଳା ସାଙ୍ଗରେ କିଛି ଆଣି ନାହାନ୍ତି ।'' ଘରେ ସମସ୍ତଙ୍କୁ କହିଲି, ଏହିପରି ଚିଠିଖଣ୍ଡିଏ ହେଉଛି ପ୍ରକୃତ ଉପହାର !

କିଛି ବର୍ଷ ପରେ, ଏକ ମହିଳା ସମ୍ମେଳନରେ ଭାଷଣ ଦେବାକୁ ଯାଇଥାଏଁ । ସଭାପତିତ୍ୱ କରୁଥିବା ସ୍ୱନାମଧନ୍ୟା ନାରୀନେତ୍ରୀ ତଥା ସମାଜସେବିକା ଡକ୍ଟର ନିରୁପମା ରଥ ତାଙ୍କ ଭାଷଣରେ କହିଥିଲେ, ''ମନ୍ମଥବାବୁଙ୍କ ଆଦର୍ଶ ଅନୁକରଣରେ ମୋ ପୁଅ ବିବାହରେ କୌଣସି ଉପହାର ଗ୍ରହଣ କଲି ନାହିଁ ।'' ତାଙ୍କର ଏହି ଉକ୍ତି ମୋ ମନରେ ଯେଉଁ ତୃପ୍ତି ଆଣିଥିଲା, ତା ତୁଳନାରେ ପର୍ଯ୍ୟାପ୍ତ ଉପହାରର ମୂଲ୍ୟ କିଛି ନୁହେଁ ।

ଝିଅ ବିବାହ ବେଳର ଆଉ ଗୋଟିଏ କଥା ଲେଖୁଛି । ସେତେବେଳେ ପ୍ରଖ୍ୟାତ ସଂସ୍କୃତଜ୍ଞ ଓ ପ୍ରାଚ୍ୟବିଦ୍ୟା-ବିଶାରଦ ଇଂରେଜ ଅଧ୍ୟାପକ ଏ.ଏଲ. ବାଶାମ୍ ଆମ ବିଶ୍ୱବିଦ୍ୟାଳୟରେ ଅତିଥି ଅଧ୍ୟାପକ ରୂପେ ଥାଆନ୍ତି । ନିମନ୍ତ୍ରଣପତ୍ର ଦେଲାବେଳେ

ସେ କହିଲେ, "ହିନ୍ଦୁ ବିବାହ ବିଷୟରେ ମୁଁ ଅନଭିଜ୍ଞ । ସାରା ରାତି ବେଦୀ ପାଖରେ ବସି ବିବାହ ଦୃଶ୍ୟ ଦେଖିବି ଏବଂ ବୈଦିକ ରୀତି ଅନୁଯାୟୀ ପୁରୋହିତମାନଙ୍କର ମନ୍ତ୍ରପାଠ ଶୁଣିବି । ମୁଁ ଜାଣିଛି, ପ୍ରତ୍ୟେକ ମନ୍ତ୍ର ବା ଶ୍ଳୋକର ଆଧ୍ୟାତ୍ମିକ ଓ ତାତ୍ତ୍ୱିକ ଅର୍ଥ ଗୁରୁତ୍ୱପୂର୍ଣ୍ଣ ।"

ବାଶାମ ସାହେବ ବେଦୀ ପାଖରେ ରାତି ୧୨ଟା ପାଖରୁ ଉଷାକାଳ ପର୍ଯ୍ୟନ୍ତ ନୀରବ ଭାବରେ ବସିରହି ବିବାହ କାର୍ଯ୍ୟର ସବୁ ପ୍ରକାର ରୀତିନୀତି ଦେଖିଲେ । କିନ୍ତୁ, ସବୁ ଶେଷ ହେଲାପରେ ଦୁଃଖ କରି ମୋତେ କହିଲେ, "All the sacred hymns were drowned in the sound of the drums. The sanctity of marriage was lost in the merry making of numerous family–friends and relatives." ।

## ଢାକା ଅନୁଭୂତି

ମେ ମାସ ୧୨ ତାରିଖରୁ ୧୫ ତାରିଖ ପର୍ଯ୍ୟନ୍ତ ଇତିହାସ ପରିଷଦର କାର୍ଯ୍ୟସୂଚୀ ଥାଏ । ୧୧ ତାରିଖ ସକାଳ ୯ଟା ବେଳେ କଲିକତା ଘାଟିରେ ବାଙ୍ଗଲାଦେଶ ବିମାନରେ ବସିଲି । ପଶ୍ଚିମବଙ୍ଗର ନୀହାର ରଞ୍ଜନ ରାୟ, ଦିନେଶ ଚନ୍ଦ୍ର ସରକାର ଓ ଅନ୍ୟ କେତେଜଣ ଅଧ୍ୟାପକ ସାଙ୍ଗରେ ଉଠିଲେ । କଲିକତାରୁ ଢାକା ଯିବାଲାଗି ବେଶି ସମୟ ଲାଗିଲା ନାହିଁ । ବିମାନ ପଥରୁ ବହୁ ନଦନଦୀର ଶାଖାପ୍ରଶାଖାମଣ୍ଡିତ ବାଙ୍ଗଲାଦେଶର ସ୍ଥଳଭାଗ ଦେଖାଯାଉଥାଏ । ଢାକା ବିମାନଘାଟିରେ ଆମକୁ ସ୍ୱାଗତ ଜଣାଇବାକୁ ଲୋକ ଉପସ୍ଥିତ ଥିଲେ । ଢାକା ବିଶ୍ୱବିଦ୍ୟାଳୟ କେମ୍ପାସ୍‌କୁ ଆମକୁ ନିଆଗଲା । ରହିବା ପାଇଁ ରୁମ୍ ମିଳିଲା ଛାତ୍ରାବାସରେ । ହଷ୍ଟେଲ ପାଖକୁ ଲାଗିଥାଏ ଶ୍ରମିକ ବସ୍ତି । ଆବର୍ଜନାମୟ ପରିବେଶ ସାଙ୍ଗକୁ ଅପରିଷ୍କାର କୋଠରି ।

କିନ୍ତୁ ଅଦୂରରେ ଥିବା ବିଶ୍ୱବିଦ୍ୟାଳୟର ଅଟ୍ଟାଳିକାଗୁଡ଼ିକ ଦେଖି ଭାବିହେଲା ନାହିଁ ଯେ ପୂର୍ବତନ ପାକିସ୍ତାନୀ ସରକାର ସେପରି ସୌଧମାନ ନିର୍ମାଣ କରିଥିବେ । ନୀହାର ରଞ୍ଜନ ବାବୁ କହିଲେ, "ଯୁକ୍ତରାଷ୍ଟ୍ର ଆମେରିକାର ଅର୍ଥରେ ଢାକା ବିଶ୍ୱବିଦ୍ୟାଳୟ ତିଆରି ହୋଇଥିଲା, ପାକିସ୍ତାନୀ ଟଙ୍କାରେ ନୁହେଁ ।"

ମଧ୍ୟାହ୍ନ ଭୋଜନ ପରେ ଆମେ ଢାକା ସହର ଦେଖିବାକୁ ବାହାରି ଗଲୁଁ । ପାକିସ୍ତାନୀ ଅତ୍ୟାଚାର ଓ ଯୁଦ୍ଧଜନିତ ଦୁରବସ୍ଥାରୁ ସହରର ପୁନରୁଦ୍ଧାର କାର୍ଯ୍ୟ ଆରମ୍ଭ ହୋଇଥାଏ, କିନ୍ତୁ ସବୁ ଦିଗରେ ଦୁଃଖ ଦାରିଦ୍ର୍ୟର ପରିଚୟ ମିଳୁଥାଏ । ରାସ୍ତାଘାଟର ଅବସ୍ଥା, ରାଜପଥର ଦୁଇ ପାଖରେ ବଣବୁଦା ଓ ନର୍ଦ୍ଦମା, ଘରଗୁଡ଼ିକର

ଶୋଚନୀୟ ଅବସ୍ଥା ଓ ବାସିନ୍ଦାମାନଙ୍କର କୁଡ଼ିଆଘର ଦେଖି ଜଣାଗଲା, ସହରଟି ହେଉଛି ଗୋଟିଏ ସୌନ୍ଦର୍ଯ୍ୟହୀନ ରାଜଧାନୀ । ବ୍ରହ୍ମପୁତ୍ର, ବଡ଼ଗଙ୍ଗା ଓ ମେଘନା ନଦୀର ତ୍ରିଭୁଜାକାର ଘେର ଭିତରେ ଥିବା ମଧୁପୁର ନାମକ ସନ୍ତସନ୍ତିଆ ଅଞ୍ଚଳର ଶେଷ ସୀମାରେ ଥାଏ ଢାକା ।

ଅତୀତ କାଳରେ ବୌଦ୍ଧ ରାଜ୍ୟ କାମରୂପ ଅନ୍ତର୍ଗତ ଏହି ସ୍ଥାନର ନିକଟରେ ଥାଏ ବୌଦ୍ଧ ସଂସ୍କୃତିର ଏକ ପ୍ରସିଦ୍ଧ ପୀଠ, ବିକ୍ରମପୁର । ମଧ୍ୟଯୁଗରେ, ମୁସଲମାନ ସୁଲତାନମାନଙ୍କ ଶାସନକାଳରେ ଢାକାର ପରିସର ବଢ଼ିଯାଇଥିଲା । ପାର୍ଶ୍ୱବର୍ତ୍ତୀ ସୋନାର ଗାଁ ଥିଲା ସୁଲତାନୀ ଅମଳର ରାଜଧାନୀ । ମୋଗଲ ଯୁଗରେ ଢାକା ହେଲା ରାଜଧାନୀ ଓ ପୂର୍ବାଞ୍ଚଳର ପ୍ରଧାନ ବାଣିଜ୍ୟ କେନ୍ଦ୍ର । ମସ୍‌ଲିନ୍ ବସ୍ତ୍ର ପାଇଁ ସ୍ଥାନଟିର ଖ୍ୟାତି ବଢ଼ିଯାଇଥିଲା । କିନ୍ତୁ ଇଷ୍ଟ ଇଣ୍ଡିଆ କୋମ୍ପାନୀର ଶାସନ କାଳରେ ଇଂରେଜମାନେ ମସ୍‌ଲିନ ତନ୍ତୀମାନଙ୍କର ସର୍ବନାଶ ଘଟାଇଥିଲେ ।

୧୯୦୫ ମସିହାରେ ବଡ଼ଲାଟ ଲର୍ଡ଼ କାର୍ଜନ ବଙ୍ଗ ପ୍ରଦେଶର ବିଭାଜନ ଦ୍ୱାରା ମୁସଲମାନବହୁଳ ପୂର୍ବବଙ୍ଗକୁ ଭାରତୀୟ ଜାତୀୟ ଆନ୍ଦୋଳନର ମୁଖ୍ୟ ସ୍ରୋତରୁ ପୃଥକ କରିଦେବାକୁ ଚାହିଁଥିଲେ । କିନ୍ତୁ ସେଥିରେ ସଫଳ ହେଲେ ନାହିଁ । ବଙ୍ଗ-ବିଭାଜନ ବିରୋଧରେ ସାରା ଭାରତରେ ଯେଉଁ ଆନ୍ଦୋଳନ ଚାଲିଲା, ସେଥି ଆଗରେ ବ୍ରିଟିଶ ସରକାର ମୁଣ୍ଡ ନୁଆଇଁବାକୁ ବାଧ୍ୟ ହୋଇଥିଲେ । କିନ୍ତୁ, କାଳକ୍ରମେ ବ୍ରିଟିଶ ଭେଦନୀତି ବଳରେ ଶେଷରେ ୧୯୪୭ରେ ଭାରତର ବିଭାଜନ ଘଟିଲା ଓ ଢାକା ହେଲା ପୂର୍ବପାକିସ୍ତାନର ରାଜଧାନୀ । ତାହାର ମାତ୍ର ୨୪ ବର୍ଷ ମଧ୍ୟରେ ପାକିସ୍ତାନ ଭାଙ୍ଗିପଡ଼ିଲା ଓ ପୂର୍ବପାକିସ୍ତାନ ସ୍ୱାଧୀନ ରାଷ୍ଟ୍ରରୂପେ ବାଙ୍ଗ୍‌ଲାଦେଶ ନାମରେ ପରିଚିତ ହେଲା । ଭାରତ ସରକାରଙ୍କ ସାମରିକ ଆକ୍ରମଣ ଓ ଅଭିଯାନ ବ୍ୟତୀତ ବାଙ୍ଗ୍‌ଲାଦେଶ କେବେହେଲେ ଜନ୍ମଲାଭ କରି ନଥାନ୍ତା, ଏହା ଏକ ଐତିହାସିକ ସତ୍ୟ । କାରଣ, ମିଳିତ ଜାତିସଂଘର ଶତାଧିକ ରାଷ୍ଟ୍ର ପାକିସ୍ତାନ ସପକ୍ଷରେ ସ୍ୱର ଉତ୍ତୋଳନ କରିଥିଲେ ଏବଂ ଯୁକ୍ତରାଷ୍ଟ୍ର ଆମେରିକା ଓ ଚୀନ ଦେଶ ପାକିସ୍ତାନୀ ସରକାରଙ୍କୁ ଯୁଦ୍ଧରେ ସାମରିକ ସାହାଯ୍ୟ ଦେବାକୁ ଉଦ୍ୟତ ଥିଲେ । ତଥାପି, ଭାରତୀୟ ସୈନ୍ୟମାନେ ମାତ୍ର ୧୨ ଦିନ ଯୁଦ୍ଧ ମଧ୍ୟରେ ପୂର୍ବ ପାକିସ୍ତାନକୁ ମୁକ୍ତ କରି ସ୍ୱାଧୀନତା ଆଣିଦେଲେ ।

୧୯୭୧ରେ ବାଙ୍ଗ୍‌ଲାଦେଶ ଗଠିତ ହେଲା । ତାହାର ମାତ୍ର ଦେଢ଼ବର୍ଷ ପରେ, ୧୯୭୩ ମେ ମାସରେ ରାଜଧାନୀ ଢାକାର ରାଜପଥରେ ବୁଲିଲାବେଳେ ଆଚମ୍ବିତ ହୋଇ ଆମେ ଦେଖିପାରିଲୁଁ, ପ୍ରାଚୀର ଗାତ୍ରରେ ଭାରତ-ବିରୋଧୀ ଲେଖା— 'ଭାରତୀୟ ସାମ୍ରାଜ୍ୟବାଦ ଚଲବେ ନା', 'ଭାରତୀୟ ଶୋଷନ୍ ବନ୍ଧ ହୋକ୍',

ଇତ୍ୟାଦି, ଇତ୍ୟାଦି । ଗୋଟିଏ ସ୍ଥାନରେ ମରାଯାଇଥିବା ପ୍ରଚାରପତ୍ର ପଢ଼ିସାରି ଦିନେଶ ସରକାର କହିଲେ, "ଦେଖ୍‌ଛେନ୍, କୋଲକାତାର ବାଙ୍ଗାଲି ଦିଗକେ ଏରା ଇଷ୍ଟ ଇଣ୍ଡିଆ କୋମ୍ପାନୀର ବନିକ୍‌ଦେର୍ ସାଥେ ତୁଲନା କରେଛେ !" ନୀହାରବାବୁ କ୍ଷୋଭ ପ୍ରକାଶ ପୂର୍ବକ କହିଲେ, "ଏର୍‌ା ହଚ୍ଛେ ବିଶ୍ୱାସଘାତକ ମୀରଜାଫରେର୍ ବଂଶଧର, ବୁଝ୍‌ଲେନ ?" ବାଙ୍ଗ୍‌ଲାଦେଶୀମାନେ ଏତେ ଶୀଘ୍ର ଭାରତ-ବିରୋଧୀ ହେଲେ କାହିଁକି, ତାହା ଜାଣିବାକୁ ଇଚ୍ଛା ହେଲା ।

ସହର ପରିକ୍ରମା ଶେଷ କରି ରାତିରେ ହଷ୍ଟେଲକୁ ଫେରିଲୁଁ । ସାଙ୍ଗରେ ମଶାରି ନେଇ ନଥିଲି । ସାରାରାତି ଖଟ ଉପରେ ବସି ବଡ଼ ବଡ଼ ଓ ବହୁସଂଖ୍ୟକ ମଶା ସହିତ ଲଢ଼ିବାକୁ ହେଲା । ଅନିଦ୍ରାରେ ରାତିଟି କଟିଲା ।

## ଇତିହାସ ପରିଷଦର ଅଧିବେଶନ

ମେ ୧୨ ତାରିଖ ପୂର୍ବାହ୍ନରେ ବାଙ୍ଗ୍‌ଲାଦେଶର ରାଷ୍ଟ୍ରପତି ଆବୁ ସୟଦ୍ ଚୌଧୁରୀ ସମ୍ମେଳନ ଉଦ୍‌ଘାଟନ କଲେ । ନିଜ ଦେଶର ଐତିହାସିକମାନଙ୍କୁ ଉଦ୍‌ବୋଧନ ଦେଇ ସେ ଯେଉଁ ଭାଷଣ ପାଠ କଲେ ସେଥିରୁ ଜଣା ପଡୁଥାଏ, ସ୍ୱତେ ଯେପରି ନିଜ ବୀରତ୍ୱ ଓ ଆତ୍ମଦାନ ବଳରେ ପୂର୍ବବଙ୍ଗର ଅଧିବାସୀମାନେ ପାକିସ୍ତାନୀ କବଳରୁ ସ୍ୱାଧୀନତା ହାସଲ କରିଛନ୍ତି ! ସେହି ସଂଗ୍ରାମ ବିଷୟ ଉଲ୍ଲେଖ କଲାବେଳେ ସେ ଭାରତର ନାମ ସୁଦ୍ଧା ଉଚ୍ଚାରଣ କଲେ ନାହିଁ । ନୂତନ ଦେଶର ଇତିହାସ ରଚନା ନିମନ୍ତେ ପ୍ରେରଣା ଦେବା ଛଳରେ ସେ କହିଲେ ଯେ, ପୂର୍ବରୁ ଯାହା ସବୁ ଲେଖାଯାଇଛି, ତାହା ପ୍ରାୟତଃ ମିଥ୍ୟା ଏବଂ ତେଣୁ 'ସତ୍ୟ ଓ ନ୍ୟାୟ' ପ୍ରତି ଧ୍ୟାନ ରଖି ନୂତନ ଇତିହାସ ରଚନା କରିବା ଆବଶ୍ୟକ । ଯୁଗ ଯୁଗ ଧରି ଯେଉଁମାନେ ବାଙ୍ଗ୍‌ଲାଦେଶକୁ ଶାସନ ଓ ଶୋଷଣ କରିଥିଲେ, ସେମାନଙ୍କର ମୁଖା ଖୋଲିଦେବା ପାଇଁ ସେ ଆହ୍ୱାନ ଦେଲେ । ପ୍ରକାରାନ୍ତରେ, ବୌଦ୍ଧ ଓ ହିନ୍ଦୁଯୁଗର ଅବଦାନ ଓ କୀର୍ତ୍ତିକଳାପ ପ୍ରତି ଉଦାସୀନ ରହି ନିଜ ଅଞ୍ଚଳ ଉପରେ ନୂତନ ଶୈଳୀରେ ଆଲୋକପାତ କରିବା ଲାଗି ସେ ପରାମର୍ଶ ଦେଲେ ।

ଅପରାହ୍ନ ଅଧିବେଶନରେ ଅଧ୍ୟାପକ ସାଲାଉଦ୍ଦୀନ ଆହମ୍ମଦ ନାମକ ଜଣେ ବରିଷ୍ଠ ଐତିହାସିକ ବାଙ୍ଗ୍‌ଲାଦେଶର 'ସାଂସ୍କୃତିକ ବିକାଶ' ଶିରୋନାମାରେ ପ୍ରବନ୍ଧ ପାଠ କଲାବେଳେ ଯେତେବେଳେ ନବଜାଗରଣ ଯୁଗର ବଙ୍ଗଳା ସାହିତ୍ୟର ପ୍ରଭାବ ବିଷୟ ଉଲ୍ଲେଖ କଲେ, ଶ୍ରୋତାମାନେ ନାନାପ୍ରକାର ପ୍ରଶ୍ନବାଣରେ ତାଙ୍କୁ ଜର୍ଜ୍ଜରିତ କଲେ । ଜଣାଗଲା, ଅବିଭକ୍ତ ବଙ୍ଗର କୌଣସି କଥା ଗ୍ରହଣ କରିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି । ସାଲାଉଦ୍ଦୀନ ସାହେବ ଅପମାନିତ ଅବସ୍ଥାରେ ବସିପଡ଼ିଲେ ।

ତାଙ୍କ ପରେ ଥିଲା ମୋର ପ୍ରବନ୍ଧ ପାଠ । ମୁଁ ଅବଶ୍ୟ 'ବଙ୍ଗ-ବିଭାଜନ କାଳରେ ପୂର୍ବବଙ୍ଗର ଆର୍ଥିକ ଦୁର୍ଗତି' ସମ୍ବନ୍ଧରେ ତଥ୍ୟ ବର୍ଣ୍ଣନା କରିଥିବା ହେତୁ ସମାଲୋଚନାର ଶିକାର ହେଲି ନାହିଁ । କିନ୍ତୁ ମୋ ପରେ, ନୀହାର ରଞ୍ଜନ ରାୟ ପ୍ରବନ୍ଧ ପଢ଼ିଲାବେଳେ ଶ୍ରୋତାମାନଙ୍କ ବିରକ୍ତିଭାବ ଜଣାଯାଉଥାଏ । ସେ 'ବଙ୍ଗଳା ସାହିତ୍ୟର ବିଭବ' ସମ୍ପର୍କରେ କହୁଥିଲେ । କିନ୍ତୁ, ପଶ୍ଚିମ ଓ ପୂର୍ବ ବଙ୍ଗର ସମନ୍ୱିତ ସାହିତ୍ୟକୃତି ବିଷୟ ଶୁଣିବା ଲାଗି ବାଙ୍ଗଲାଦେଶୀ ବୁଦ୍ଧିଜୀବୀମାନଙ୍କର ଇଚ୍ଛା ନଥାଏ ।

ଅପରାହ୍ନ ୫ଟାରେ ଢାକା ମିଉଜିୟମ ପରିସରରେ ବାଙ୍ଗଲାଦେଶର ପରରାଷ୍ଟ୍ର ମନ୍ତ୍ରୀ ଡକ୍ଟର କାମାଲ ହୋସେନ ମୁକ୍ତିଯୁଦ୍ଧ କାଳର ନିଦର୍ଶନଗୁଡ଼ିକର ଏକ ବିଶେଷ ପ୍ରଦର୍ଶନୀ ଉନ୍ମୋଚନ କଲେ । ସେଥିରେ ପାକିସ୍ତାନୀ ବର୍ବରତାର ଫଟୋଚିତ୍ରମାନ ଦେଖିବାକୁ ମିଳିଲା । ସେଥିସହ ରହିଥାଏ 'ମୁକ୍ତି ବାହିନୀ'ର ସଂଘର୍ଷ ଚିତ୍ର । ବିଦେଶୀ ସଂବାଦପତ୍ରଗୁଡ଼ିକରେ ବର୍ଣ୍ଣିତ ଥିବା ସେହି ସମୟର କାହାଣୀ ପ୍ରଦର୍ଶନୀରେ ସ୍ଥାନ ପାଇଥାଏ । ଯେଉଁ ଟେବୁଲ ଉପରେ ପାକିସ୍ତାନୀ ସେନାପତି ଆତ୍ମସମର୍ପଣ ପତ୍ର ଦସ୍ତଖତ କରିଥିଲେ, ସେହି ଟେବୁଲ ମଧ୍ୟ ରଖାଯାଇଛି । ଅଥଚ, ଭାରତୀୟ ସୈନ୍ୟବାହିନୀର ବିଜୟ ଯାତ୍ରା ସମ୍ବନ୍ଧୀୟ ଫଟୋଚିତ୍ର ପ୍ରଦର୍ଶନୀ କକ୍ଷରେ ଦେଖାଗଲା ନାହିଁ । ମିଉଜିୟମ ପ୍ରାଙ୍ଗଣରେ ପରରାଷ୍ଟ୍ର ମନ୍ତ୍ରୀ ସଂକ୍ଷିପ୍ତ ଭାଷଣଟିଏ ପଢ଼ିଲେ । ସେତେବେଳକୁ ବାହାରେ ଲୋକେ ଲୋକାରଣ୍ୟ । ପ୍ରାଚୀର ଉପରେ ଉଚ୍ଛୃଙ୍ଖଳ ଭାବରେ ଅନେକ ଲୋକଙ୍କୁ ବସିଥିବା ଦେଖାଗଲା ।

ସନ୍ଧ୍ୟାବେଳେ ସାଲାଉଦ୍ଦୀନ ଆହମ୍ମଦଙ୍କ ସାଙ୍ଗରେ ସହରର କେନ୍ଦ୍ରସ୍ଥଳରେ ଥିବା ଦୋକାନଗୁଡ଼ିକ ବୁଲି ଦେଖିଲାବେଳେ ପଚାରିଲି, "କେତେକ ଦୋକାନ ଆଗରେ ଭାରତ-ବିରୋଧୀ ଶବ୍ଦମାନ ଲେଖାଯାଇଛି କାହିଁକି ?" ସେ ଉତ୍ତର ଦେଲେ, "ସେଥିପାଇଁ ଇଣ୍ଡିଆନ୍ ବ୍ୟବସାୟୀ ଗୋଷ୍ଠୀ ଦାୟୀ ।"

ମୋତେ ଗୋଟିଏ ମନୋହରି ଦୋକାନ ଭିତରକୁ ଡାକିନେଇ ସେ ଟର୍ଚ୍ଚଟିଏ ମାଗିଲେ ଓ ମୋ ହାତରେ ଧରାଇଦେଇ କହିଲେ, "ଆପଣ ନିଜେ ଦେଖନ୍ତୁ, ଆପଣଙ୍କ ଦେଶରୁ କିପରି ଜିନିଷ ଆସୁଛି । ସୁଇଚ୍ କାମ କରୁଛି ? ବଲବ୍ ଠିକ୍ ଅଛି ? ଟର୍ଚ୍ଚଟା କେତେ ଦିନ ଯିବ, ଅଥଚ ଦାମ୍ କେତେ ବେଶି ?" ତା'ପରେ, ଗୋଟିଏ ସ୍ନୋ ଶିଶି ଆଣି ମୋ ହାତରେ ଧରାଇଲେ ଓ ପଚାରିଲେ, "ଏଥିରେ ସୁଗନ୍ଧ ଅଛି ?"

ବାହାରକୁ ଆସି ସାଲାଉଦ୍ଦୀନ ସାହେବ ମୋତେ ଅନେକ କଥା କହିଲେ । ପାକିସ୍ତାନୀ ଶାସନ କାଳରେ ଅଧିକାଂଶ ମନୋହରି ଜିନିଷ ଥାଏ ବିଲାତି ମାଲ୍ ।

ସବୁ କିସମର ଜିନିଷ ଥାଏ ମଜ୍‌ବୁତ୍ ଓ ଶସ୍ତା । କିନ୍ତୁ ବାଙ୍ଗ୍‌ଲାଦେଶ ସ୍ୱାଧୀନ ହେଲାପରେ ଭାରତ ସହିତ ବାଣିଜ୍ୟଚୁକ୍ତି ହେଲା ଓ ଅଧିକାଂଶ ଜିନିଷ ଭାରତରୁ ଆମଦାନି କରାଗଲା । ଚୁକ୍ତି ଅନୁସାରେ ଯେପରି କପଡ଼ା ଆସିବା କଥା, ଭାରତୀୟ ମିଲ୍ ମାଲିକମାନେ ଭଲ ଲୁଗା ଦେଖାଇ ପରମିଟ୍ ପାଇଲେ, କିନ୍ତୁ ପଠାଇଲେ ରଦ୍ଦି କପଡ଼ା । କେବଳ ନିକୃଷ୍ଟ ଧରଣର ସାମଗ୍ରୀ ଚଲାଣ କରି ଆମ ଦେଶକୁ ଶୋଷଣ କରାଗଲା । ଭାରତୀୟ ଅମଲାତନ୍ତ୍ର ବ୍ୟବସାୟୀମାନଙ୍କୁ ପୂରା ସ୍ୱାଧୀନତା ଦେଇଦେଲେ । ସରକାର କିଛି ପ୍ରତିକାର କଲେ ନାହିଁ । ତେଣୁ, ବ୍ୟବସାୟ ବାଣିଜ୍ୟ ନାମରେ ଶୋଷଣ ଚାଲିଲା । ବାଙ୍ଗ୍‌ଲାଦେଶର ମାଛ କଲିକତାରେ ଶସ୍ତାରେ ମିଳିଲାବେଳକୁ ଢାକାରେ ଦର ହେଲା ମହରଗ । ବାଙ୍ଗ୍‌ଲାଦେଶରୁ ଭଲ ଜିନିଷ ରପ୍ତାନୀ ହେଲାବେଳେ, ଭାରତରୁ ଆସିଲା ଖରାପ ଜିନିଷ ।

ସବୁକଥା ବୁଝାଇସାରି ସାଲାଉଦ୍ଦୀନ ସାହେବ ମତ ଦେଲେ, "ମୁନାଫାଖୋର ଭାରତୀୟ ବ୍ୟବସାୟୀମାନଙ୍କ ଅବାଧ କାର୍ଯ୍ୟକଳାପ ଯୋଗୁଁ ଏବେ ବାଙ୍ଗ୍‌ଲାଦେଶୀମାନେ ଭାରତ ଉପରେ ଉତ୍‌କ୍ଷିପ୍ତ । ପାକିସ୍ତାନୀମାନେ ଆମକୁ ଅବହେଳିତ ଓ ଅତ୍ୟାଚାରିତ ଅବସ୍ଥାରେ ରଖିଥିଲେ ସତ୍ୟ । କିନ୍ତୁ, ସ୍ୱାଧୀନତା ଆଣିଦେବା ସତ୍ତ୍ୱେ ଭାରତବାସୀ ଆମର ଆର୍ଥିକ ଦୁର୍ଗତି ଲାଗି ଦାୟୀ ବୋଲି ଲୋକଙ୍କର ବିଶ୍ୱାସ । ଅର୍ଥନୈତିକ ସମ୍ପର୍କ ଉତ୍ତମ ନ ହେଲେ, ରାଜନୈତିକ ସୁସମ୍ପର୍କ ବେଶି ଦିନ ତିଷ୍ଠିବ ନାହିଁ ।"

ବୁଝିବାକୁ ବିଳମ୍ବ ହେଲା ନାହିଁ, କାହିଁକି ଭାରତ-ବିରୋଧୀ ପ୍ରଚାର ପତ୍ର ! କୋଟିପତି ବ୍ୟବସାୟୀମାନଙ୍କୁ ବା କିଏ ସଂଯତ କରିପାରିବ ! ଭାରତ ସରକାର ପାକିସ୍ତାନକୁ ପରାସ୍ତ କରିପାରିଲେ, ଅଥଚ ନିଜ ଦେଶର ପୁଞ୍ଜିପତି ଓ ଶିଳ୍ପପତିଙ୍କ ଆଗରେ ଆତ୍ମସମର୍ପଣ କଲେ !

ବଜାରରୁ ଫେରିଲାବେଳେ ମଶାରି କିଣିବି ବୋଲି କହିବାରୁ ସାଲାଉଦ୍ଦୀନ ତାଙ୍କ ଘରୁ ପଠାଇଦେବେ କହିଲେ । ରାତ୍ରିଭୋଜନ ଆୟୋଜିତ ହୋଇଥାଏ 'ପୂର୍ବାଣୀ ଇଣ୍ଟରନେସନାଲ' ନାମକ ହୋଟେଲରେ । ସୋନାଲୀ ବ୍ୟାଙ୍କ୍ ପକ୍ଷରୁ ତାହାର ବନ୍ଦୋବସ୍ତ ହୋଇଥିଲା । ହୋଟେଲ ତଳ ମହଲାରେ ଥାଏ ସିନେମା ହଲ । ଭିଡ଼ ଠେଲି ଉପରକୁ ଉଠିବାକୁ ହେଲା ।

୧୩ ତାରିଖ କେବଳ ପ୍ରବନ୍ଧ ପାଠ ଓ ଆଲୋଚନାରେ କଟିଲା । ମେ ୧୪ ତାରିଖ ସନ୍ଧ୍ୟା ୫ଟା ବେଳେ ପ୍ରଧାନମନ୍ତ୍ରୀ ବଙ୍ଗବନ୍ଧୁ ଶେଖ୍ ମୁଜିବୁର ରହମାନ ଢାକା ବିଶ୍ୱବିଦ୍ୟାଳୟ ପ୍ରାଙ୍ଗଣରେ ସଦସ୍ୟମାନଙ୍କୁ ଚା ପାନରେ ଆପ୍ୟାୟିତ କଲେ । ତାଙ୍କୁ ଦେଖିବା ଲାଗି କେମ୍ପାସ ବାହାରେ ଅନେକ ଲୋକ ରୁଣ୍ଡ ଥାନ୍ତି । ଯେତେହେଲେ ସେ ଥିଲେ ମୁକ୍ତି ସଂଗ୍ରାମର ଅଗ୍ରଦୂତ । ନୂତନ ଦେଶର

ଗଠନ ଦାୟିତ୍ୱ ଥାଏ ତାଙ୍କ ହାତରେ । ସେତେବେଳେ ତାଙ୍କ ଲୋକପ୍ରିୟତା ଶୀର୍ଷ ସୀମାରେ ପହଞ୍ଚିଥାଏ । କିଏ ବା ଅନୁମାନ କରିଥାନ୍ତା, ସେ ବେଶିକାଳ ତିଷ୍ଠିପାରିବେ ନାହିଁ ! ସାମାନ୍ୟ ଜଣେ କ୍ରୋଧୋନ୍ମତ୍ତ ସେନାନାୟକଙ୍କ ଷଡ଼ଯନ୍ତ୍ର ଓ ପ୍ରରୋଚନାରେ ୧୯୭୫ ଅଗଷ୍ଟ ମାସରେ ଏକ ଦଳ ସୈନ୍ୟ ରାତ୍ରିକାଳରେ ତାଙ୍କ ବାସଭବନ ଘେରିଯାଇ ତାଙ୍କୁ, ତାଙ୍କ ପତ୍ନୀ, ତିନିପୁତ୍ର ଓ ଦୁଇ ବୋହୂଙ୍କ ସମେତ ଦାସଦାସୀମାନଙ୍କୁ ନିର୍ମମ ଭାବେ ହତ୍ୟାକଲେ । କେବଳ କନ୍ୟା ହାସିନା ବାହାରେ ଥିବାଯୋଗୁଁ ବଞ୍ଚିଯାଇଥିଲେ ।

ମେ ୧୫ ତାରିଖ ଦିନ ଢାକାରୁ ବିଦାୟ ନେଲି । ବାଙ୍ଗ୍ଲାଦେଶର ଯେଶୋର ପ୍ରଭୃତି କେତେକ ସ୍ଥାନ ଦେଖିବି ବୋଲି ଆଶା ନେଇ ଯାଇଥିଲି । କିନ୍ତୁ ଲୋକଙ୍କର ଭାରତ-ବିରୋଧୀ ମନୋଭାବ ଜଣାପଡ଼ିଲା ପରେ ଯଥାଶୀଘ୍ର ଫେରି ଆସିଲି ।

# ରୋମ୍ ପଥେ ଇଂଲଣ୍ଡ (୧୯୭୬)



## ଭାରତର ଶେଷ ବ୍ରିଟିଶ ବଡ଼ଲାଟଙ୍କ ସହ ସାକ୍ଷାତକାର

### ଇଂଲଣ୍ଡ ଯାତ୍ରା ଲାଗି ନିମନ୍ତ୍ରଣ

ଭାରତୀୟ ସ୍ୱାଧୀନତା ସଂଗ୍ରାମ ବିଷୟରେ ମୋର ଗବେଷଣା ଦୃଷ୍ଟିରୁ, ୧୯୭୫ ମସିହା ଶେଷ ବେଳକୁ, ଇଂଲଣ୍ଡରୁ ତଥ୍ୟ ସଂଗ୍ରହ କରିବା ଲାଗି ବ୍ରିଟିଶ କାଉନସିଲ୍ ମୋତେ ନିମନ୍ତ୍ରଣ କଲେ । ସେହିବର୍ଷ ଜୁନ ମାସରୁ ଭାରତରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କରାଯାଇଥାଏ । ଇନ୍ଦିରା ଗାନ୍ଧି ଥିଲେ ପ୍ରଧାନମନ୍ତ୍ରୀ । ରାଜନୈତିକ ବାତାବରଣ ସରଗରମ ଥାଏ । ଅନେକ ରାଜନୈତିକ ବ୍ୟକ୍ତି ଜେଲରେ ଥାନ୍ତି । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳନା କରୁଥାନ୍ତି ଜ୍ଞାନଚାନ୍ଦ୍ ନାମକ ପ୍ରଶାସକ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ନିର୍ଦ୍ଦେଶରେ ସେ ପ୍ରତାପ ଶତପଥୀ ଓ ଅମର ଶତପଥୀ ନାମକ ଦୁଇଜଣ ଛାତ୍ରନେତାଙ୍କୁ ପୋଲିସ ହାତରେ ଧରାଇଦେବାକୁ ଉଦ୍ୟମ କରିଥିଲାବେଳେ ମୁଁ ସେଥିରେ ବାଧା ଦେବା ଯୋଗୁଁ ସେ ମୋ ଉପରେ ଭୀଷଣ ଅସନ୍ତୁଷ୍ଟ ଥିଲେ । ଏପରିକି, ଯୁକ୍ତିତର୍କ ମଧ୍ୟରେ ସେ ଯେତେବେଳେ ମୋତେ କହିଥିଲେ, "You have a duty towards your country," ମୁଁ କଡ଼ା ଭାବରେ ଉତ୍ତର ଦେଇଥିଲି, "As a teacher, I am not prepared to learn from a bureaucrat lessons on duty to my motherland." ଆଶଙ୍କା ହେଲା, ଜ୍ଞାନଚାନ୍ଦ ମୋ ବିଦେଶ ଯାତ୍ରାରେ ବାଧା ସୃଷ୍ଟି କରିବେ । ତେଣେ, ଦିଲ୍ଲୀରୁ ଅନୁମତି ମିଳି ନପାରେ ବୋଲି ସନ୍ଦେହ ହେଲା ।

କିନ୍ତୁ ବ୍ରିଟିଶ୍ କାଉନସିଲ ପ୍ରୋଗ୍ରାମ୍‌ରେ ସରକାର ଅନିଚ୍ଛା ଦେଖାଇପାରିଲେ ନାହିଁ । ଜ୍ଞାନଚାନ୍ଦ ମଧ୍ୟ ବିନା ଦ୍ୱିଧାରେ ଯିବା ପାଇଁ ଅନୁମତି ଦେଲେ । (୧୯୮୩ ରେ ମୁଁ କୁଳପତି ହେଲା ପରେ ଜ୍ଞାନଚାନ୍ଦ କହିଥିଲେ, "ଯେଉଁ

ଦିନ ଛାତ୍ରନେତାମାନଙ୍କୁ ଗିରଫ କରିବା କାମରେ ଆପଣ ବାଧା ଦେଲେ ଓ ମୋ ସହିତ ଝଗଡ଼ା କଲେ, ସେହିଦିନ ଆପଣଙ୍କ ପ୍ରତି ମୋର ଆନ୍ତରିକ ସମ୍ମାନ ଆସିଯାଇଥିଲା । ମୁଁ ମଧ୍ୟ ସେତେବେଳେ ଅବାରିତ ଗିରଫ ବିପକ୍ଷରେ ମତ ଦେଇ ସରକାରଙ୍କ ଚକ୍ଷୁଃଶୂଳ ହୋଇଥିଲି । ତେବେ ଆପଣ ଥିଲେ ଅଧ୍ୟାପକ ଓ ମୋ ଆଦେଶର ବିରୁଦ୍ଧାଚରଣ କରିପାରିଲେ; କିନ୍ତୁ ମୁଁ ଥିଲି ଜଣେ ସଚିବ, ତେଣୁ ସରକାରୀ ଆଦେଶ ମାନିବାକୁ ବାଧ୍ୟ ଥିଲି ।'')

ନୂଆ ପାଶପୋର୍ଟ୍ ଯୋଗାଡ଼ କରିବାକୁ କିଛିଦିନ ସମୟ ଲାଗିଲା । ଲଣ୍ଡନ ଯିବା ବାଟରେ ଇଟାଲୀର ରୋମ୍ ନଗରୀରେ ଗୋଟିଏ ଦିନ ରହିବି ବୋଲି ବନ୍ଦୋବସ୍ତ କରି ଟିକଟ କିଣିଲି । ୧୯୭୬ ଜାନୁଆରୀ ୧୩ ତାରିଖରେ ବିମାନ ଯୋଗେ କଲିକତାରୁ ବୋମ୍ବେ ଯାତ୍ରା କରି, ସେଠାରୁ 'ସମ୍ରାଟ ଶାହ ଜାହାନ' ନାମକ ଏୟାର ଇଣ୍ଡିଆ ବିମାନରେ ରୋମ୍ ଚାଲିଲି ।

ସେହି ଯାତ୍ରାର ଗୋଟିଏ ଦୃଶ୍ୟ ଭୁଲି ହୁଏନା । କଲିକତା ବିମାନ ବନ୍ଦରରେ ମାଦାର ଟେରେସାଙ୍କ ଅନୁଷ୍ଠାନ ପକ୍ଷରୁ ୫ ଜଣ ପିତୃମାତୃହୀନ ଶିଶୁଙ୍କୁ ଫ୍ରାନ୍ସ ପଠାଇବା ଲାଗି ବିମାନକୁ ଅଣାଯାଇଥାଏ । ଛାଡ଼ିବା ପାଇଁ କେତେଜଣ ସେବିକା ଆସିଥାନ୍ତି । ପିଲାମାନଙ୍କର ବିଳାପ ଦେଖି ଆଖିକୁ ଲୁହ ଆସିଲା । ଜଣେ ଫରାସୀ ମହିଳା ନିଜ ଦାୟିତ୍ୱରେ ସେମାନଙ୍କୁ ନେଇ ଯାଉଥିଲେ । ବିମାନ ଛାଡ଼ିବା ସମୟରେ ତଳେ ଛିଡ଼ାରହି ସେବିକାମାନେ ମଧ୍ୟ କାନ୍ଦୁଥିବା ଦେଖିଲି । ବୋମ୍ବେ ଠାରେ ଅନ୍ୟ ବିମାନକୁ ଉଠିଲାବେଳେ ପିଲାଗୁଡ଼ିକର ମୁହଁ ଶୁଖିରହିଥାଏ । ଛଳ ଛଳ ଆଖିରେ ସେମାନେ ଚାହିଁ ରହିଥାନ୍ତି । ଚିରଦିନ ଲାଗି ଦେଶ ଛାଡ଼ି ବିଦେଶକୁ ଯିବା ଲାଗି ଅନାଥ ଶିଶୁମାନଙ୍କର ଇଚ୍ଛା ନଥିବା ଜାଣିପାରିଲି ।

## ରୋମ ନଗରୀରେ ଗୋଟିଏ ଦିନ

ଜାନୁଆରୀ ୧୪ ତାରିଖ ଇଟାଲୀୟ ସମୟ ସକାଳ ୭ଟା (ଭାରତୀୟ ସମୟ ପୂର୍ବାହ୍ଣ ୧୧ଟା ୩୦ ମିନିଟ) ବେଳେ ରୋମ୍ ବିମାନଘାଟିରେ ଅବତରଣ କଲି । ଇମ୍ପେରିଆଲ ହୋଟେଲରେ ଜିନିଷପତ୍ର ରଖି ଟୁରିଷ୍ଟ ବାସ୍‌ରେ ରୋମ ସହରର ପ୍ରାଚୀନ କୀର୍ତ୍ତିମାନ ଦେଖିବା ଲାଗି ବାହାରିଗଲି । Eternal City ବା ଶାଶ୍ୱତ ନଗରୀ ନାମରେ ପରିଚିତ ରୋମ୍ ଅସଂଖ୍ୟ ପର୍ଯ୍ୟଟକଙ୍କୁ ଆକର୍ଷିତ କରିଥାଏ । ଇଟାଲୀୟ ଓ ଲାଟିନ ଭାଷାରେ ରୋମ୍‌ନଗରୀକୁ ରୋମା ବୋଲି କୁହାଯାଏ ।

ବାସ୍ ପ୍ରଥମେ ପହଞ୍ଚିଲା ପ୍ରାଚୀନ ରୋମ୍‌ର ମୂଳଭିତ୍ତି ପଡ଼ିଥିବା ସାତଟି ଅନୁଚ୍ଚ ପାହାଡ଼ ନିକଟରେ । ଖ୍ରୀଷ୍ଟ ଜନ୍ମର ୬ ଶହ ବର୍ଷ ପୂର୍ବେ ସେହି ସ୍ଥାନରେ

ରୋମୁଲାସ୍ ଓ ରେମୁସ୍ ନାମକ ଦୁଇ ଯମଜ ଭାଇ ଜନବସତି ସ୍ଥାପନ କରିଥିଲେ ବୋଲି କଥିତ ଅଛି । ଜନ୍ମପରେ ପରିତ୍ୟକ୍ତ ସେହି ଶିଶୁ ଦୁଇଟିଙ୍କୁ ଗୋଟିଏ ହେଟାବାଘ ନିଜର ଦୁଧ ପିଆଇ ବଞ୍ଚାଇ ରଖିଥିଲା ବୋଲି କାହାଣୀ ରହିଛି । ବୟସ ପ୍ରାପ୍ତ ହେଲା ପରେ ରୋମୁଲାସ୍ ସେଠାରେ ରାଜତ୍ୱ କଲେ ଓ ସ୍ଥାନଟିର ନାମ ରହିଲା 'ସପ୍ତ ପାହାଡ଼ର ନଗର' ବା City of the Seven Hills ।

ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ସ୍ଥାନଟି ଆକର୍ଷଣୀୟ । ପାହାଡ଼ ତଳେ ସୁବିସ୍ତୃତ ସବୁଜ ପ୍ରାଙ୍ଗଣରେ ପ୍ରାଚୀନ ରୋମାନ୍‌ମାନଙ୍କର ରଥଦୌଡ଼ ହେଉଥାଏ ବୋଲି ଗାଇଡ୍ ବର୍ଣ୍ଣନା କଲେ । କାଳକ୍ରମେ ପାହାଡ଼ ଚାରିପାଖରେ ସୁରମ୍ୟ ସୌଧମାନ ନିର୍ମିତ ହୋଇଥିଲା । ପାଲାଟାଇନ୍ ନାମକ ପାହାଡ଼ ଉପରେ ରୋମ ସାମ୍ରାଜ୍ୟର ପ୍ରଥମ ସମ୍ରାଟ ଅଗଷ୍ଟାସ୍ ଯେଉଁ ରାଜପ୍ରାସାଦ ନିର୍ମାଣ କରିଥିଲେ (ଖ୍ରୀ.ପୂ.୫୦), ସେହି ପ୍ରାସାଦର ଅନେକ ଅଂଶ ଆଜି ପର୍ଯ୍ୟନ୍ତ ରହିଛି । ଛୋଟ ଛୋଟ କୋଠରିର କାନ୍ଥରେ ନାନା ପ୍ରକାର ଚିତ୍ର ଦେଖିବାକୁ ମିଳିଲା । ଅନ୍ୟ ସମ୍ରାଟମାନେ ନିର୍ମାଣ କରିଥିବା ପ୍ରାସାଦଗୁଡ଼ିକର ଧ୍ୱଂସାବଶେଷ ଦେଖିଲୁଁ । ସେ ଯୁଗର ସିନେଟ କକ୍ଷ, ଯାହା ମଧ୍ୟରେ ଜୁଲିୟାସ ସିଜାରଙ୍କୁ ହତ୍ୟା କରାଯାଇଥିଲା, କାଳକ୍ରମେ ତାହା ଧ୍ୱଂସ ପାଇଗଲା ପରେ, ଅବିକଳ ସେହି ଜାଗାରେ ଅନ୍ୟ ଗୋଟିଏ ସିନେଟ କକ୍ଷ ନିର୍ମାଣ କରାଯାଇ ଦର୍ଶକମାନଙ୍କୁ ଆକର୍ଷିତ କରାଯାଉଛି ।

ପାଲାଟାଇନ ପାହାଡ଼ ପାଖରୁ ବାସ୍ ଆସିଲା କାପିଟାଲାଇନ ନାମକ ସ୍ଥାନକୁ । ସେଠାରେ ପ୍ରାଚୀନ ରୋମର ସରକାରୀ ଭବନଗୁଡ଼ିକ ରହିଥାଏ । ତା ପରେ ବାସ୍ ପହଞ୍ଚିଲା ରୋମ ନଗରୀର କେନ୍ଦ୍ରାଞ୍ଚଳରେ ଥିବା ସୁବିଶାଳ କଲୋସିୟମ ପାଖରେ । ଦୁଇ ହଜାର ବର୍ଷ ପୂର୍ବେ ନିର୍ମିତ ସେହି ପ୍ରାଚୀନ କ୍ରୀଡ଼ାଙ୍ଗନର ଆକାର ଦେଖି ବିସ୍ମିତ ହେବାକୁ ହୁଏ । ଧ୍ୱଂସପ୍ରାପ୍ତ ଅବସ୍ଥାରେ ଛିଡ଼ା ରହି ସେହି ବିଚିତ୍ର ରଙ୍ଗମଞ୍ଚ ସମସ୍ତଙ୍କ ମନରେ ଭୀତି ସଞ୍ଚାର କରିଥାଏ । ୫୦ ହଜାର ଦର୍ଶକ ଗ୍ୟାଲେରୀରେ ବସି ତଳ ଚଟାଣ ଉପରେ ଗ୍ଲାଡିଆଟରମାନଙ୍କର ଜୀବନ ମରଣ ଲଢ଼ାଇ ଓ ହିଂସ୍ରଜନ୍ତୁମାନଙ୍କ ସହିତ ମନୁଷ୍ୟର ସଂଘର୍ଷ ଉପଭୋଗ କରୁଥିଲେ । ପ୍ରବେଶ ଦ୍ୱାର ପାଇଁ ଉପର ଉପରକୁ ୮୦ ଗୋଟି ତୋରଣ ରହିଛି । ସମ୍ରାଟ ଓ ସାମ୍ରାଜ୍ଞୀମାନେ ଉପର ଗ୍ୟାଲାରୀରେ ବସି ରକ୍ତାକ୍ତ ସଂଘର୍ଷ ଦେଖୁଥିଲେ । କଥିତ ଅଛି, ରୋମ୍ ସାମ୍ରାଜ୍ୟରେ ଖ୍ରୀଷ୍ଟଧର୍ମ ପ୍ରବେଶ କଲା ସମୟରେ, ସମ୍ରାଟ ନିରୋ ଖ୍ରୀଷ୍ଟଧର୍ମ ପ୍ରଚାରକମାନଙ୍କୁ ସେଠାକୁ ଧରିଆଣି କ୍ଷୁଧିତ ସିଂହମାନଙ୍କ ଆଗରେ ଛାଡ଼ିଦେଉଥିଲେ । ଅସଂଖ୍ୟ ଦର୍ଶକଙ୍କ ସମ୍ମୁଖରେ ହିଂସ୍ର ସିଂହଗୁଡ଼ିକ ଖ୍ରୀଷ୍ଟିଆନମାନଙ୍କୁ ଜୀବନ୍ତ ଖାଇଯାଉଥିଲେ ଓ ନିରୋ ସେହି ଦୃଶ୍ୟ

ଦେଖି ଅପାର ଆନନ୍ଦ ଉପଭୋଗ କରୁଥିଲେ । ସେହି ବିକୃତମସ୍ତିଷ୍କ ସମ୍ରାଟ ଆଦି ଖ୍ରୀଷ୍ଟିଆନମାନଙ୍କୁ ଦେଶବାସୀଙ୍କ ଶତ୍ରୁ ବୋଲି ପ୍ରମାଣିତ କରିବା ଉଦ୍ଦେଶ୍ୟରେ ଷଡ଼ଯନ୍ତ୍ର ପୂର୍ବକ ନିଜ ଲୋକଙ୍କ ଦ୍ୱାରା ରୋମ ନଗରୀରେ ନିଆଁ ଲଗାଇ ଦେଇଥିଲେ ଓ ରୋମ୍ ଜଳୁଥିଲାବେଳେ ପାହାଡ଼ ଶୀର୍ଷରେ ଛିଡ଼ା ରହି ତନ୍ମୟ ଚିତ୍ତରେ ବୀଣା ବା ବଂଶୀ ବାଦନ ସହ ଭୟାବହ ଅଗ୍ନିକାଣ୍ଡ ଉପଭୋଗ କରିଥିଲେ ।

ସମସ୍ତ ଅତ୍ୟାଚାର ସତ୍ତ୍ୱେ, ଶେଷରେ ଦିନେ ଖ୍ରୀଷ୍ଟଧର୍ମର ଜୟ ହେଲା । ରୋମାନ୍ ସମ୍ରାଟ କନ୍‌ଷ୍ଟାଣ୍ଟାଇନ ନିଜେ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ଓ ତାଙ୍କ ପ୍ରଜାମାନେ ମଧ୍ୟ ନୂତନ ଧର୍ମରେ ଦୀକ୍ଷିତ ହେଲେ । ସେହି ଘଟଣାର ସ୍ମୃତିରକ୍ଷା ନିମନ୍ତେ କଲୋସିୟମ ନିକଟରେ କନଷ୍ଟାଣ୍ଟାଇନ ନିର୍ମାଣ କରିଥିଲେ ଏକ କାରୁକାର୍ଯ୍ୟମଣ୍ଡିତ ସୁଦୃଶ୍ୟ ତୋରଣ (ଖ୍ରୀ.ଅ.୩୧୫) । ଅନେକ ସମୟ ଆମେ ସେହି ତୋରଣର ଭାସ୍କର୍ଯ୍ୟ ଦେଖିଲୁଁ ।

ରୋମ୍ ନଗରୀକୁ ଗିର୍ଜାନଗରୀ ବୋଲି ବର୍ଣ୍ଣନା କଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାଚୀନ ଓ ମଧ୍ୟଯୁଗୀୟ ସ୍ଥାପତ୍ୟ ଶୈଳୀରେ ଗଠିତ ସୁବିଶାଳ ଗିର୍ଜାଗୃହମାନ ସହରର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳିଲା ।

ଅପରାହ୍ନରେ ବାସ୍ ଚାଲିଲା କ୍ୟାଥଲିକ ଜଗତର ଧର୍ମଗୁରୁ ମହାମାନ୍ୟ ପୋପଙ୍କର ବାସସ୍ଥାନ ଭାଟିକାନ୍ ପଥରେ । ଭାଟିକାନ୍ ହେଉଛି ଏକ କ୍ଷୁଦ୍ରାଦପି କ୍ଷୁଦ୍ର ରାଷ୍ଟ୍ର । ପୋପ୍ ହେଉଛନ୍ତି ସେଠାକାର ଶାସକ । ଏକାଧାରରେ ସେ କ୍ୟାଥଲିକ ଖ୍ରୀଷ୍ଟ ଜଗତର ଧର୍ମଗୁରୁ ଓ ଭାଟିକାନର ରାଜା । ଲକ୍ଷ ଲକ୍ଷ ଧର୍ମପ୍ରାଣ ବ୍ୟକ୍ତିଙ୍କ ପାଇଁ ତାଙ୍କ ବାସସ୍ଥାନ ଏକ ତୀର୍ଥସ୍ଥଳ । ସେହି ପବିତ୍ର ସ୍ଥାନ ଦେଖିବା ଲାଗି ପ୍ରବଳ ଆଗ୍ରହ ସହ ପହଞ୍ଚିଲି । କିନ୍ତୁ, ପ୍ରବେଶ ପଥରେ ମନରେ ଯେଉଁ ଅଶାନ୍ତି ସୃଷ୍ଟି ହେଲା, ସେଥିପାଇଁ ସ୍ଥାନ ପ୍ରତି ବିରକ୍ତି ଆସିଗଲା । ଦରଜା ପାଖରେ କେତେଜଣ ପୁରୋହିତ ଥାଳି ଧରି ଅର୍ଥଦାନ କରିବାକୁ କହିଲେ । ମୁଁ ତ ଇଟାଲୀୟ ଭାଷା ଜାଣି ନଥାଏଁ କିମ୍ବା ଇଟାଲୀୟ ମୁଦ୍ରା ସହ ପରିଚିତ ନଥିଲି । ପକେଟରେ ଯେଉଁ ମୁଦ୍ରାଟି ପାଇଲି, ଥାଳିରେ ରଖିଦେଲି । ଜଣେ ପୁରୋହିତ ରାଗରେ ଗୁଡ଼ାଏ କଥା କହିଗଲେ । ପକେଟରୁ ଆଉ କେତୋଟି ମୁଦ୍ରା କାଢ଼ି ଥାଳିରେ ପକାଇଲି । ପୁରୋହିତମାନେ ଆହୁରି ବେଶି ରାଗିଗଲେ । ଅନୁମାନ କଲି, ସେମାନେ ମୋଟା ଧରଣର ଅର୍ଥ ଚାହୁଁଛନ୍ତି ଏବଂ ନ ଦେଇଥିବାରୁ ଅଧର୍ମୀ ବୋଲି ବିଦ୍ରୂପ କରୁଛନ୍ତି । ଭାବିପାରିଲି ନାହିଁ, ପବିତ୍ର ଭାଟିକାନର ମୁଖ୍ୟ ଗିର୍ଜାଗୃହରେ ଅପବିତ୍ର ମନୋଭାବ କାହିଁକି ? ମହାମାନ୍ୟ ପୋପ୍‌ଙ୍କର

ଆୟ ଯେ କୌଣସି ରାଜାଙ୍କ ଆୟଠାରୁ ବେଶି ହେବା ଅସମ୍ଭବ ନୁହେଁ ! ତଥାପି, ଧର୍ମସ୍ଥାନରେ ଅର୍ଥଲୋଭ !

ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ଭାଟିକାନ ଗିର୍ଜାଗୁଡ଼ିକର ମୂଳଭିତ୍ତି ଦେଇଥିଲେ ଖ୍ରୀଷ୍ଟିଆନ ସମ୍ରାଟ କନଷ୍ଟାଣ୍ଟାଇନ । ଯେଉଁ ସ୍ଥାନରେ ଆଦି ପ୍ରଚାରକ ସେଣ୍ଟ ପିଟାର ଓ ତାଙ୍କ ଶିଷ୍ୟମାନଙ୍କୁ ନିର୍ମମ ଭାବେ ହତ୍ୟା କରାଯାଇଥିଲା, ସେହି ସ୍ଥାନରେ ରାଜା କନଷ୍ଟାଣ୍ଟାଇନ ସେଣ୍ଟ ପିଟାର ଗିର୍ଜାଗୃହ ନିର୍ମାଣ କରିଥିଲେ । ରେନେସାଁ ଯୁଗ, ଅର୍ଥାତ୍ ଷୋଡ଼ଶ ଶତାବ୍ଦୀରେ ସେହି ଗିର୍ଜାକୁ ନୂତନ ରୂପ ଦିଆଯାଇଥିଲା । ଆଜି ତାହା ହେଉଛି ବିଶ୍ୱର ବୃହତ୍ତମ ଗିର୍ଜାଗୃହ । ଭିତରକୁ ପ୍ରବେଶ କଲାକ୍ଷଣି, ସ୍ଥାପତ୍ୟକୀର୍ତ୍ତି, ଭାସ୍କର୍ଯ୍ୟ ଓ ଚିତ୍ରକଳାର ଅପୂର୍ବ ନିଦର୍ଶନମାନ ଦେଖିବାକୁ ମିଳିଲା । ପୃଥିବୀର ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ସେଣ୍ଟ ପିଟାର ଗିର୍ଜା ଯେ ଅନ୍ୟତମ ମହାନ ସ୍ଥାନ, ଏଥିରେ ସନ୍ଦେହ ରହିଲା ନାହିଁ ।

ରେନେସାଁ ଯୁଗର ପ୍ରଖ୍ୟାତ ଶିଳ୍ପୀମାନଙ୍କର ଅମର କୀର୍ତ୍ତିମାନ ଏହି ସୁବିଶାଳ ଗିର୍ଜାଗୃହକୁ ଅଳଙ୍କୃତ କରିଛି । ସ୍ତମ୍ଭ, କାନ୍ଥ ଓ ଛାତର ନିମ୍ନଭାଗରେ ଯେଉଁ ପ୍ରକାର ଚିତ୍ରକଳା ଦେଖାଯାଏ, ସେଥିରୁ ସେ ଯୁଗର ଶିଳ୍ପୀମାନଙ୍କର କଳାକୌଶଳର ମହତ୍ତ୍ୱ ଜାଣିହୁଏ । ଧନ୍ୟ ଥିଲେ ମାଇକେଲ୍ ଏଞ୍ଜେଲୋ ଓ ଅନ୍ୟ ଶିଳ୍ପୀ, ଯେଉଁମାନେ ମାନବ ସଭ୍ୟତାକୁ ସମୃଦ୍ଧ କରିଗଲେ । ଯିଶୁଙ୍କ ମର୍ମର ମୂର୍ତ୍ତିମାନ ଜୀବନ୍ତ ଓ ମର୍ମସ୍ପର୍ଶୀ । ଶିଳ୍ପୀର ନିହାଣ ମାଧ୍ୟମରେ ସତେ ଯେପରି ସୃଷ୍ଟ ହୋଇପାରିଛି ଯିଶୁଙ୍କ ପ୍ରତି ଭକ୍ତିଭାବ !

ପିଟାର ଗିର୍ଜା ଦେଖିଲା ପରେ ପୋପ୍‌ଙ୍କ ପ୍ରାସାଦ ଦେଖିବାକୁ ଗଲୁଁ । ସେଠାରେ ଅନେକଗୁଡ଼ିଏ ସୌଧର ସମଷ୍ଟି ଦେଖିପାରିଲି । ପୋପ୍‌ଙ୍କ ବାସଗୃହ ଓ ଦରବାର କକ୍ଷ ଦେଖିବାକୁ ଅନୁମତି ନଥାଏ । କିନ୍ତୁ ମିଉଜିୟମ, ଲାଇବ୍ରେରୀ ଓ ଚିତ୍ରଶାଳାଗୁଡ଼ିକ ଖୋଲା ଥାଏ । ମାଇକେଲ୍ ଏଞ୍ଜେଲୋଙ୍କ ଭିତ୍ତିଚିତ୍ରଣ ଥିବା କକ୍ଷଗୁଡ଼ିକ ଦେଖିବା ପାଇଁ ଅନେକ ଲୋକ ଆସୁଥିବା ଦେଖିଲି । ଭାଟିକାନ ଆର୍ଟ ଗ୍ୟାଲେରୀ ମଧ୍ୟରେ ଥିବା Last Judgment ବା 'ଶେଷ ବିଚାର' ପ୍ରଭୃତି କଳାକୃତି ବାସ୍ତବିକ ଅବିସ୍ମରଣୀୟ ।

ଯେଉଁ ସ୍ଥାନରେ ପୋପ୍ ଅସଂଖ୍ୟ ନରନାରୀଙ୍କୁ ଦର୍ଶନ ଦିଅନ୍ତି, ସେହି ପ୍ରାଙ୍ଗଣ ଦେଖିସାରିଲା ପରେ ଭାଟିକାନର ଉଦ୍ୟାନ ଦେଖିଲୁଁ । ତା ପରେ ଗାଇଡ୍ ନେଇଗଲେ ଧର୍ମଯାଜକମାନଙ୍କ ବାସସ୍ଥାନ ଦିଗକୁ । ଛୋଟ ଛୋଟ କୋଠରିରେ ସେମାନେ ରହନ୍ତି । ଗୋଟିଏ କୋଣରେ ରହିଛି ପୁରୋହିତମାନଙ୍କ ହାତରେ ପ୍ରସ୍ତୁତ ହେଉଥିବା ମଦ୍ୟର ଭଣ୍ଡାର ଘର । ମଧ୍ୟଯୁଗରୁ ପ୍ରଚଳିତ ସେହି ହସ୍ତଶିଳ୍ପ ଆଜି ପର୍ଯ୍ୟନ୍ତ

ପୂର୍ବପରି ରହିଛି । ମଦ ବୋତଲ ବିକିବା ଲାଗି ପୁରୋହିତମାନେ ଆମକୁ ଘେରିଗଲେ । କହିଲେ, ସେପରି ବିଶୁଦ୍ଧ ଓ ସୁମିଷ୍ଟ ମଦ ପୃଥିବୀରେ ଅନ୍ୟତ୍ର ତିଆରି ହୁଏ ନାହିଁ । ବାଧ୍ୟ ହୋଇ ଦୁଇଟି ଛୋଟ ବୋତଲ କିଣିଲି । ନଚେତ୍, ଅଭିସମ୍ପାତ ପାଇଥାନ୍ତି ।

ସନ୍ଧ୍ୟା ପରେ ହୋଟେଲକୁ ଫେରିଲାବେଳକୁ ଦେହରେ ଶକ୍ତି ନଥାଏ । ରାତି ୪ଟାରେ ଟ୍ୟାକ୍ସି ଯୋଗେ ରୋମ୍ ଆନ୍ତର୍ଜାତିକ ବିମାନଘାଟିକୁ ଚାଲିଲି । ଡ୍ରାଇଭର ଯେତିକି 'ଲିରା' ନେବେ କହିଥିଲେ, ପହଞ୍ଚିଲା ପରେ ତାହାର ତିନିଗୁଣ ଭଡ଼ା ମାଗିଲେ । ଭାଷା ଜାଣି ନଥିବାରୁ ଯୁକ୍ତିତର୍କର ଅବକାଶ ନଥିଲା । ଅଙ୍ଗୁଳି ସଂକେତରେ ଯେତିକି ମାଗିଲେ, ସେତକ ଦେଇଦେଲି ।

ବିମାନ ବନ୍ଦରର ନାମ 'ଲିଓନାର୍ଡ୍ରୋ ଡା ଭିନ୍ସି ଏୟାର ପୋର୍ଟ' । ରେନେସାଁ ଯୁଗର ବିଶ୍ୱବିଖ୍ୟାତ ଶିଳ୍ପୀଙ୍କର ନାମ ବହନ କରି ବିମାନ ବନ୍ଦରଟି ସୁବୃହତ ଓ ସୁଶୋଭିତ ଆକାର ଧାରଣ କରିଛି । ୧୫ ତାରିଖ ଭୋର ୬ଟାରେ ଲଣ୍ଡନ ଅଭିମୁଖେ ବିମାନ ଛାଡ଼ିଲା ।

## ଇଂଲଣ୍ଡରେ କାର୍ଯ୍ୟସୂଚୀ

ଲଣ୍ଡନର 'ହିଥ୍ରୋ' ବିମାନଘାଟିରୁ ବ୍ରିଟିଶ କାଉନସିଲର ଜଣେ କର୍ମଚାରୀ ମୋତେ ଟ୍ରାଫାଲଗାର ସ୍କୋୟାର ଠାରେ ଥିବା ତାଙ୍କ ମୁଖ୍ୟ କାର୍ଯ୍ୟାଳୟକୁ ନେଇଗଲେ । ମିସ୍ ବିଏର୍ ନାମକ ଅଫିସାର ସେଠାରେ ମୋ କାର୍ଯ୍ୟକ୍ରମର ସୂଚୀ ଧରାଇଦେଲେ । ଲଣ୍ଡନ, ଅକ୍ସଫୋର୍ଡ଼, କେମ୍ବ୍ରିଜ୍ ଓ ଏଡିନବରାର ଅଭିଲେଖାଗାରରେ ତଥ୍ୟ ସଂଗ୍ରହ ନିମନ୍ତେ ବନ୍ଦୋବସ୍ତ କରାଯାଇଥାଏ । ସେଠାକାର ଅଧ୍ୟାପକମାନଙ୍କ ସହିତ ଆଲୋଚନା ଲାଗି ତାରିଖ ନିର୍ଦ୍ଧାରିତ ଥାଏ । ତିନିମାସିଆ ପ୍ରୋଗ୍ରାମଟି ଆଗରୁ ପ୍ରସ୍ତୁତ କରାଯାଇଛି ବୋଲି ଜାଣିଲି ।

ମୁଁ ଅନୁରୋଧ ଜଣାଇଲି ଯେ, କେତେଜଣ ରାଜନୀତିଜ୍ଞ ଯେଉଁମାନେ ସ୍ୱାଧୀନତା ଲାଭ ସହିତ ଜଡ଼ିତ ଥିଲେ, ସେମାନଙ୍କୁ ସାକ୍ଷାତ କରିବା ଆବଶ୍ୟକ । ମିସ୍ ବିଏର ବିସ୍ମୟ ପ୍ରକାଶ କରି କହିଲେ, "୧୯୪୬–୪୭ ମସିହାର ବ୍ରିଟିଶ ରାଜନୀତିଜ୍ଞମାନଙ୍କୁ ୧୯୭୬ ମସିହାରେ ଖୋଜିଲେ ଆପଣ ପାଇବେ କିପରି ? ସେ କାଳର ଅନେକ ନେତା ମରିଗଲେଣି । ଲର୍ଡ଼ ବାଟଲାର ଓ ଲର୍ଡ଼ ଲିଷ୍ଟୋଏଲଙ୍କ ପରି ଜୀବିତ ବ୍ୟକ୍ତିମାନେ ବୃଦ୍ଧ ଓ ଅସୁସ୍ଥ ।"

ତତ୍‌କ୍ଷଣାତ୍ ମୁଁ ପ୍ରସ୍ତାବ ଦେଲି, "କେବଳ ମାତ୍ର ଜଣେ ଜୀବିତ ବ୍ୟକ୍ତିଙ୍କ ସହିତ ମୋର ସାକ୍ଷାତକାର ବ୍ୟବସ୍ଥା କଲେ ଆପଣଙ୍କ ପ୍ରତି କୃତଜ୍ଞ ରହିବି ।

ସେ ହେଉଛନ୍ତି ଭାରତର ଶେଷ ବ୍ରିଟିଶ ଭାଇସରୟ ଲର୍ଡ଼ ଲୁଇ ମାଉଣ୍ଟବ୍ୟାଟେନ । ସ୍ୱାଧୀନତା ଓ ଦେଶ ବିଭାଜନ କାର୍ଯ୍ୟରେ ସେ ଅତୀବ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ନିକଟରୁ କିଛି କିଛି କଥା ଶୁଣିବା ମୋ ପକ୍ଷେ ଏକାନ୍ତ ଆବଶ୍ୟକ ।''

ବୁଦ୍ଧିମତୀ ବିଏର ଚମକି ଉଠିଲା ପରି ଭାବଭଙ୍ଗୀ ଦେଖାଇଲେ । କିଛି ସମୟ ନୀରବ ରହିଲା ପରେ କହିଲେ, ''ମୁଁ ଶୁଣିଛି, ମାଉଣ୍ଟବ୍ୟାଟେନ ଭାରତରୁ ଆସୁଥିବା ପୂର୍ବତନ ରାଜା ମହାରାଜାଙ୍କୁ ମଧ୍ୟ ସାକ୍ଷାତ ଦିଅନ୍ତି ନାହିଁ । କହନ୍ତି, ଏବେ ତ ସେ ଭାଇସରୟ ନାହାନ୍ତି, ସେମାନଙ୍କ ସହିତ ତାଙ୍କର ସମ୍ପର୍କ ବା କ'ଣ ?''

ଯୁକ୍ତି କଲି, ''ରାଜା ମହାରାଜାଙ୍କ କଥା ଅଲଗା । ମୁଁ ଜଣେ ଅଧ୍ୟାପକ । ଆପଣଙ୍କ ନିମନ୍ତ୍ରଣରେ ତଥ୍ୟ ସଂଗ୍ରହ ପାଇଁ ଆସିଛି । ସରକାରୀ ଭାବେ ବ୍ରିଟିଶ କାଉନସିଲ ପକ୍ଷରୁ ଅନୁରୋଧ ଜଣାଇଲେ ସେ ରାଜି ହେବେ ବୋଲି ମୋର ବିଶ୍ୱାସ ।''

ବିଏର ନିଶ୍ଚଳ ଭାବରେ ବସିରହିଲେ । ଇଂରେଜମାନଙ୍କର ସେପରି ମତିରୁ ନାସ୍ତିସୂଚକ ଇଙ୍ଗିତ ମିଳେ ବୋଲି ମୋତେ ଜଣାଥାଏ । ତେଣୁ ବାଧ୍ୟ ହୋଇ ଗୋଟିଏ କଥା ଶୁଣାଇଲି, ''ଆପଣ ନିଶ୍ଚୟ ଜାଣିଥିବେ, ଲାରୀ କୋଲିନସ୍ ଓ ଡୋମିନିକ୍ ଲାପିଏର ନାମକ ଦୁଇ ଲେଖକ ସଦ୍ୟ ଖଣ୍ଡିଏ ବହି ପ୍ରକାଶ କରିଛନ୍ତି Freedom at Midnight । ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ବନ୍ଧରେ ସେହି ପୁସ୍ତକ ରଚନା କଲାବେଳେ ସେମାନେ ଲର୍ଡ଼ ମାଉଣ୍ଟବ୍ୟାଟେନଙ୍କୁ ବାରମ୍ବାର ସାକ୍ଷାତ କରି ତାଙ୍କ ବକ୍ତବ୍ୟ ବିଷୟ ଟେପ୍‌ରେକର୍ଡ଼ିଂ କରି ନେଇଥିଲେ । ଯଦି ସେମାନଙ୍କୁ ସେ ସାକ୍ଷାତ୍ ଦେଲେ, ମୋତେ କାହିଁକି ସେହି ସୁଯୋଗ ଦେବେ ନାହିଁ ? ଯେତେହେଲେ, ମାଉଣ୍ଟବ୍ୟାଟେନ ଥିଲେ ମୋ ଦେଶର ଭାଇସରୟ, ଲେପିଏର ବା କୋଲିନସ୍‌ଙ୍କ ଦେଶର ଭାଇସରୟ ନୁହେଁ । ସୁତରାଂ ମୋ ସାକ୍ଷାତକାର ଆୟୋଜନ କରିବା ବ୍ରିଟିଶ କାଉନସିଲର ଦାୟିତ୍ୱ ।''

ଧ୍ୟାନମଗ୍ନା ଋଷିକନ୍ୟା ପରି ଆଖିବୁଜି ବସି ରହିଥିବା ମିସ୍ ବିଏର ତତ୍‌କ୍ଷଣାତ୍ ଟେଲିଫୋନ ଗାଇଡ଼ରୁ ନମ୍ବର ବାହାର କରି ଫୋନ ବୁଲାଇଲେ ଏବଂ ମିଷ୍ଟର ଜନ୍ ବ୍ୟାରେଟ ନାମକ ବ୍ୟକ୍ତିଙ୍କ ସହ କଥାବାର୍ତ୍ତା କଲେ । ସେ ଥିଲେ ମାଉଣ୍ଟବ୍ୟାଟେନଙ୍କ ବ୍ୟକ୍ତିଗତ ସେକ୍ରେଟାରୀ । ଫୋନ୍ ରଖିସାରି କହିଲେ, ''ମାଉଣ୍ଟବ୍ୟାଟେନ ବର୍ତ୍ତମାନ ଲଣ୍ଡନରେ ନାହାନ୍ତି । ସେ ଫେରିଲା ପରେ ବ୍ୟାରେଟ୍ ତାଙ୍କ ଅନୁମତି ନେଇ ମୋତେ ଜଣାଇବେ । ଆପଣ ଏବେ ଅନ୍ୟ କାମ କରନ୍ତୁ । ମୋର ଅନୁମାନ, ମାଉଣ୍ଟବ୍ୟାଟେନଙ୍କ ଆତିଥ୍ୟ ପାଇପାରିବେ । ଯଦି ତାଙ୍କ କଥାଗୁଡ଼ିକ ରେକର୍ଡ଼ିଂ

କରିବେ, ଭଲ ଟେପ୍ ରେକର୍ଡ଼ର କିଣିବା ଲାଗି କାଉନସିଲ ଟଙ୍କା ଦେବ । କିନ୍ତୁ ସେ ପାଇଁ ଭାରତୀୟ ଦୂତାବାସରୁ ଅନୁମତି ଆଣିବା ଦରକାର, ନଚେତ୍ ଫେରିଲାବେଳେ କାଷ୍ଟମସ୍ ଚେକ୍ ବେଳେ ଅଯଥା ଶୁଳ୍କ ଦେବାକୁ ବାଧ୍ୟ ହେବେ ।''

ମିସ୍ ବିଏରଙ୍କୁ ଅଶେଷ ଧନ୍ୟବାଦ ଜଣାଇ 'ଲଣ୍ଡନ ହାଉସ'ରେ ରହିବା ପାଇଁ ଆସିଲି । ତହିଁ ପରଦିନ ପାଖରୁ ବିଭିନ୍ନ ସ୍ଥାନକୁ ତଥ୍ୟ ସଂଗ୍ରହ ଲାଗି ଚାଲିଲି । ସେହି ସବୁ ବିଷୟରେ କିମ୍ବା ଅକ୍ସଫୋର୍ଡ଼ ଇତ୍ୟାଦି ବିଶ୍ୱବିଦ୍ୟାଳୟରେ ସାକ୍ଷାତ କରିଥିବା ଅଧ୍ୟାପକମାନଙ୍କ ସମ୍ବନ୍ଧରେ ଏଠାରେ ଲେଖିବା ଅନାବଶ୍ୟକ । କେବଳ ବର୍ଣ୍ଣନା କରିବି, ଶେଷ ଭାଇସରୟଙ୍କ ସହ ସାକ୍ଷାତକାର ପ୍ରସଙ୍ଗ । ସେଥିପାଇଁ ମାର୍ଚ୍ଚ ମାସ ୧୭ ତାରିଖ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା ।

## ଲଣ୍ଡନ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ସହିତ ସାକ୍ଷାତକାର

କୋଡ଼ିଏ ବର୍ଷ ପୂର୍ବେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପିଏଚ.ଡି. କରୁଥିଲାବେଳେ ମୋର ଗାଇଡ଼୍ ଥିଲେ ଅଧ୍ୟାପକ ସିରିଲ ହେନରୀ ଫିଲିପସ୍ । ୧୯୭୬ ରେ ସେ ଥିଲେ କୁଳପତି । ମିସ୍ ବିଏରଙ୍କ କାର୍ଯ୍ୟସୂଚୀ ଅନୁଯାୟୀ ଫେବ୍ରୁଆରୀ ୧୧ ତାରିଖ ୧୨ଟାରେ ତାଙ୍କ ସହିତ ଆଲୋଚନା କରିବାକୁ ଗଲି । ମଧ୍ୟାହ୍ନ ଭୋଜନ ପାଇଁ ସେ ଗୋଟିଏ କ୍ୟାଣ୍ଟିନକୁ ନେଇଗଲେ । ବାଟରେ ମୋ ପରିବାରର କୁଶଳ ସଂବାଦ ପଚାରିଲେ ଓ ତାଙ୍କ ସ୍ତ୍ରୀ କ୍ୟାନ୍‌ସାରରେ ମୃତ୍ୟୁବରଣ କରିଛନ୍ତି ବୋଲି ଜଣାଇଲେ ।

ଖାଇବା ଟେବୁଲ୍ ପାଖରେ ବସିପଡ଼ିବା କ୍ଷଣି ଏକା ନିଶ୍ୱାସରେ ସେ କହିଗଲେ, ''କ'ଣ ହେଲା ଭାରତର ଅବସ୍ଥା ! ଇନ୍ଦିରାଗାନ୍ଧି କ'ଣ ନ କଲେ ? ତୁମ ଦେଶର ଗଣତନ୍ତ୍ର ଲାଗି ଆମେ ଗର୍ବ କରୁଥିଲୁଁ ! ଆଜି ଦୁଃଖରେ ମନ ଭାଙ୍ଗି ପଡୁଛି । ଗାନ୍ଧିଯୁଗର ଅସହଯୋଗ କିମ୍ବା ଆଇନ ଅମାନ୍ୟ ଆନ୍ଦୋଳନ ସମୟରେ ବ୍ରିଟିଶ ସରକାର ଯେତେ ଲୋକଙ୍କୁ କାରାଦଣ୍ଡ ଦେଇଥିଲେ, ତା ଠାରୁ ଅନେକ ବେଶି ସଂଖ୍ୟକ ଲୋକଙ୍କୁ ଇନ୍ଦିରା ସରକାର ଜେଲ୍‌ରେ ଭର୍ତ୍ତି କଲେଣି ! ଭାରତରେ ଏପରି ଘଟଣା ଘଟିବ ବୋଲି ମୁଁ ଅନୁମାନ କରି ନଥିଲି ।''

ସହସା ଉତ୍ତର ଦେଇପାରିଲି ନାହିଁ । ଏକେ ତ ସେ ଥିଲେ ମୋର ଗୁରୁ । ଦ୍ୱିତୀୟରେ, ତାଙ୍କ ଭାଷାରୁ ଆମ ଦେଶ ପ୍ରତି ତାଙ୍କର ସଂବେଦନା ସ୍ପଷ୍ଟ ହୋଇ ଉଠୁଥାଏ । ଅପର ପକ୍ଷରେ, ନିଜ ଦେଶରେ ଯାହା ଘଟିଛି ତା ବିପକ୍ଷରେ ମତ ଦେବା ଉଚିତ ନୁହେଁ ବୋଲି ଭାବିଲି । ଅପରନ୍ତୁ, ସରକାରଙ୍କ ସପକ୍ଷରେ ଯୁକ୍ତି କରିବା କର୍ତ୍ତବ୍ୟ ବୋଲି ଭାବିନେଲି ।

ଖାଦ୍ୟ ଆସିଗଲା । କଥା ପ୍ରସଙ୍ଗରେ ମୁଁ ପଚାରିଲି, "ସାର୍, ଆପଣ ଚାରିବର୍ଷ କୁଳପତି ରହିଲେଣି । ଛାତ୍ରମାନେ ସଦାବେଳେ ବିରକ୍ତ କରୁଥିବେ । ଅଶାନ୍ତି ମଧ୍ୟରେ ଲେଖାଲେଖି କରିପାରୁ ନଥିବେ ।"

"କୁଳପତି ପାଖକୁ ଛାତ୍ରମାନେ କାହିଁକି ଆସିବେ ? ସେମାନେ କାହିଁକି ବିରକ୍ତ କରିବେ ? ଅଶାନ୍ତି ଭୋଗିବି କାହିଁକି ? ମୋ ଲେଖାଲେଖି ପୂର୍ବପରି ଚାଲିଛି ।" ଫିଲିପ୍‌ସ୍ ସାହେବ ଉତ୍ତର ଦେଲେ ।

ମୋତେ ମଉକା ମିଳିଗଲା । ଏକାଥରକେ କହିଗଲି, "ଭାରତର ଯେକୌଣସି କୁଳପତିଙ୍କ ଅବସ୍ଥା ଆପଣ ଅନୁମାନ କରିପାରିବେ ନାହିଁ । ଯେତେ ଇଚ୍ଛା ଛାତ୍ର, ଯେ କୌଣସି ବେଳ ବା ଅବେଳରେ ଯେ କୌଣସି ଅଭିଯୋଗ ନେଇ କୁଳପତିଙ୍କ ପ୍ରକୋଷ୍ଠ ବା ବାସଭବନରେ ପଶିଯାଇ ଯାହା ଇଚ୍ଛା ତାହା କହିପାରିବେ ବା କରିପାରିବେ । ବୋଧହୁଏ ଆମ ଗଣତନ୍ତ୍ର ସମସ୍ତଙ୍କୁ କଥା ଓ କାମ ପାଇଁ ଅବାଧ ଅଧିକାର ଦେଇଛି, ଯେଉଁ ମୁକ୍ତି ଏଠାକାର ଗଣତନ୍ତ୍ରରେ ନାହିଁ । ସେ ଦୃଷ୍ଟିରୁ ମୁଁ କହିବି, ଇନ୍ଦିରା ଗାନ୍ଧିଙ୍କ ଏମାରଜେନ୍ସି ବେଳେ ଗତ କେତେମାସ ଧରି ବିଶ୍ୱବିଦ୍ୟାଳୟ ପରିସରଗୁଡ଼ିକ ଶାନ୍ତ ରହିଛି ।"

"ଏଥିପାଇଁ ଏମାରଜେନ୍ସି ଭଲ ବୋଲି କୁହାଯିବ କି ?" ସେ ପଚାରିଲେ ।

ଉତ୍ତର ଦେଲି, "ଭଲ ବୋଲି ମୁଁ କହୁନାହିଁ, କିମ୍ବା କେହି କହିବେ ନାହିଁ । ତଥାପି, ଗଣତାନ୍ତ୍ରିକ ମୁକ୍ତି ମାତ୍ରା ଅତିକ୍ରମ କଲେ ମଧ୍ୟେ ମଧ୍ୟେ କଠୋର ପଦକ୍ଷେପ ଆବଶ୍ୟକ । ବାସ୍ତବିକ ପକ୍ଷେ, ଏବେ ଶାସନକଳ ଦକ୍ଷତା ସହ କାମ କରୁଛି; ରେଳଗାଡ଼ି ବିଳମ୍ବରେ ଚାଲୁନାହିଁ; ପୋଲିସ ନିରପେକ୍ଷ ଭାବେ ଶାନ୍ତି ଶୃଙ୍ଖଳା ରକ୍ଷା କରୁଛି; ବ୍ୟବସାୟୀମାନେ ଦରଦାମ ବୃଦ୍ଧି କରିପାରୁ ନାହାନ୍ତି; ବାକ୍ ସ୍ୱାଧୀନତାର ଅପବ୍ୟବହାର ହେଉ ନାହିଁ; ଦେଶରେ ବିଶୃଙ୍ଖଳ ବାତାବରଣ ଦେଖାଯାଉ ନାହିଁ । ଅବଶ୍ୟ, ଅନେକ ରାଜନୈତିକ ବ୍ୟକ୍ତି ଜେଲରେ ଅଛନ୍ତି ବୋଲି ଦୁଃଖ ହୁଏ । କିନ୍ତୁ, ସାଧାରଣ ନାଗରିକମାନେ ନିଶ୍ଚିନ୍ତ ଅଛନ୍ତି ।"

ଅଧ୍ୟାପକ ଫିଲିପ୍‌ସ୍ ଚିନ୍ତାମଗ୍ନ ଭାବରେ ମୋ କଥା ଶୁଣିଲେ । କିନ୍ତୁ କୌଣସି ମନ୍ତବ୍ୟ ନ ଦେଇ ଅନ୍ୟ ବିଷୟ ଆଲୋଚନା କଲେ ।

### ଟେପ୍ ରେକର୍ଡ଼ାର ଉପାଖ୍ୟାନ

ଦିନେ ହାଉସ ଅଫ୍ ଲର୍ଡ଼ସ୍ ପାଠାଗାରରେ ଦୁଇଜଣ ବରିଷ୍ଠ ରାଜନୀତିଜ୍ଞଙ୍କ ସହିତ କଥାବାର୍ତ୍ତା କଲାପରେ ଭାବିଲି, ଆଲୋଚନା ପ୍ରସଙ୍ଗଟି ରେକର୍ଡ଼ିଂ କରି

ନେଇଥିଲେ ଭଲ ହୋଇଥାନ୍ତା । ଆଗକୁ ଅନ୍ୟ କେତେଗୁଡ଼ିଏ ଆଲୋଚନା ଥାଏ । ତେଣୁ, ଦିନେ ସାଢ଼େ ୧୦ଟାରେ ଟେପ୍ ରେକର୍ଡ଼ାର କିଣିବା ଲାଗି ଅନୁମତି ନେବାପାଇଁ ଭାରତୀୟ ଦୂତାବାସରେ ହାଜର ହେଲି । ଶିକ୍ଷା ସେକ୍ରେଟାରୀ ମିଷ୍ଟାର ଭେଦଙ୍କନଙ୍କ ପାଖକୁ ଯିବା ଲାଗି ରିସେପ୍‌ସନିଷ୍ଟ ନିର୍ଦ୍ଦେଶ ଦେଲେ । ତାଙ୍କ ବ୍ୟକ୍ତିଗତ ସହକାରୀ କହିଲେ, ‘‘ଆଗରୁ ସମୟ ଠିକ୍ ନ କରି ଆସିଲେ କାହିଁକି ? ଆଗାମୀ କାଲି ୧୧ଟାରେ ଆସନ୍ତୁ ।’’ ଯଥାସମୟରେ ପହଞ୍ଚିଲି । ସେକ୍ରେଟାରୀ ମହୋଦୟ ମତ ଦେଲେ, ‘‘ଏ ବିଷୟରେ ମୁଁ କିଛି କହିପାରିବି ନାହିଁ । ବୈଜ୍ଞାନିକ ଉପଦେଷ୍ଟାଙ୍କ ପାଖକୁ ଯାଆନ୍ତୁ ।’’ ତାଙ୍କ ପ୍ରକୋଷ୍ଠ ଆଗରେ ପହଞ୍ଚିଲି । ଅନେକ ସମୟ ଛିଡ଼ା ହେଲାପରେ ତାଙ୍କ ସହକାରୀ କହିଲେ, ‘‘ମିଷ୍ଟାର ଟଣ୍ଡନ ମିଟିଂରେ ବସିଛନ୍ତି । ସମୟ ଦେଇପାରିବେ ନାହିଁ ।’’ ଝରକା ବାଟେ ଚାହିଁ ଦେଖିଲି, ମିଷ୍ଟାର ଟଣ୍ଡନ ଦୁଇଜଣ ଭାରତୀୟ ମହିଳାଙ୍କ ସଙ୍ଗେ ଚା ପାନରେ ବ୍ୟସ୍ତ ଅଛନ୍ତି । ତିନିଜଣଙ୍କ ହାସ୍ୟରୋଳରେ ଘର କମ୍ପୁଛି । ସହକାରୀଙ୍କୁ ନିବେଦନ ଜଣାଇଲି, ‘‘ମିଟିଂ ଶେଷ ହେଲାଣି ବୋଧହୁଏ । ଏବେ ଯିବାକୁ ଅନୁମତି ମିଳୁ ।’’ ଉତ୍ତର ଦେଲେ, ‘‘ଆଗାମୀ କାଲି ୩ଟା ୩୦ ମିନିଟରେ ଆସନ୍ତୁ ।’’

ଅଯଥା ସମୟ ନଷ୍ଟ ଯୋଗୁଁ ଗାତ୍ରଦାହ ହେଲେ ସୁଦ୍ଧା ଉପାୟ ନଥାଏ । ପରଦିନ ଠିକ୍ ସମୟରେ ପହଞ୍ଚିଲି । ମୋ ଦରଖାସ୍ତ ପଢ଼ି ଅମଲାତାନ୍ତ୍ରିକ ଗାମ୍ଭୀର୍ଯ୍ୟ ପ୍ରଦର୍ଶନ ପୂର୍ବକ ମିଷ୍ଟାର ଟଣ୍ଡନ ପ୍ରଶ୍ନକଲେ, ‘‘ବିଜ୍ଞାନ ସହିତ ଇତିହାସର ସମ୍ପର୍କ କ’ଣ ବୁଝି ପାରୁନାହିଁ ?’’ ଧୈର୍ଯ୍ୟ ହରାଇ ମୁଁ ଉତ୍ତର ଦେଲି, ‘‘ସାମାନ୍ୟ ଗୋଟିଏ ଟେପ୍ ରେକର୍ଡ଼ାର କିଣିବା କଥା କହୁଛି । ଅଥଚ, ଆପଣ ଏଡ଼େ ବଡ଼ ତାତ୍ତ୍ୱିକ ପ୍ରଶ୍ନ ଉତ୍ଥାପନ କଲେ । ବିଶ୍ଳେଷଣ କରିବା ଲାଗି ଦୁଇ ଘଣ୍ଟା ସମୟ ଲାଗିବ । ଧୈର୍ଯ୍ୟ ସହ ଶୁଣିବେ ତ ?’’

ବଡ଼ ବଡ଼ ଆଖିରେ ଚାହିଁ ରହି ମିଷ୍ଟାର ଟଣ୍ଡନ ଗର୍ଜନ କରିଉଠିଲେ, ‘‘ଇଣ୍ଡିଆନ ଫରେନ୍ ସାର୍ଭିସ୍ ଅଫିସାରମାନଙ୍କୁ ଆପଣ କ’ଣ ଭାବିଛନ୍ତି କି, ଦୁଇ ଘଣ୍ଟା ଲେକ୍‌ଚାର ଦେବେ କହୁଛନ୍ତି ? ଆପଣଙ୍କ କଥା ବିଚାର କରାଯିବ ନାହିଁ । ଆପଣ ଯାଇପାରନ୍ତି ।’’

ଚେୟାରରୁ ଉଠିପଡ଼ି ଉଚ୍ଚ ସ୍ୱରରେ ମୁଁ କହିଲି, ‘‘ମୋ ଛାତ୍ରମାନେ ଫରେନ୍ ସାର୍ଭିସ୍‌ରେ ଆପଣଙ୍କ ଆଗରୁ ପ୍ରବେଶ କରିସାରିଥିବେ । ସୁତରାଂ, ସେ ସାର୍ଭିସ ବିଷୟ ମୁଁ ଜାଣିଛି । ବ୍ରିଟିଶ କାଉନସିଲର ନିମନ୍ତ୍ରଣକ୍ରମେ ଆସିଛି । ସ୍ୱାଧୀନତା ପ୍ରାପ୍ତି କାଳର ଇତିହାସ ଲେଖିବି । କେତେଜଣ ବରିଷ୍ଠ ରାଷ୍ଟ୍ରନୀତିଜ୍ଞଙ୍କ ମତାମତ ରେକର୍ଡ଼ିଂ କରିବି । କାଉନସିଲ ଟେପ୍ ରେକାର୍ଡ଼ାର କିଣିଦେବେ । ହାଇ କମିସନ

ନ ଲେଖିଲେ ସେମାନେ ନ ଦେଇ ପାରନ୍ତି । ଫଳରେ, ରେକର୍ଡ଼ିଂ କରି ପାରିବି ନାହିଁ । ଦିଲ୍ଲୀରେ ପହଞ୍ଚି ଏକଥା ଖୋଦ୍ ଇନ୍ଦିରା ଗାନ୍ଧିଙ୍କୁ ଜଣାଇବି ।''

ମୋ ପାଟିରୁ କଥା ଶେଷ ହେଲାମାତ୍ରେ ଯେଉଁ ଦୃଶ୍ୟ ଦେଖିଲି, ତାହା ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ମିଷ୍ଟାର ଟଣ୍ଡନ ଚେୟାରରୁ ଡ଼େଇଁପଡ଼ି ମୋ ପାଖକୁ ଦୌଡ଼ିଆସି ହାତ ଦୁଇଟି ଧରିପକାଇଲେ । ଇଂରାଜୀ ଭାଷା ପରିବର୍ତ୍ତେ, ଗଦ୍‌ଗଦ କଣ୍ଠରେ ହିନ୍ଦୀରେ କହିଗଲେ, ''ଆପ୍ ତୋ ମେରେ ଗୁରୁଜୀ । ମୁଝେ ମାଫ୍ କରିୟେ । ମେ ତୋ ଆପକା ସେବକ ହୁଁ । ଅଭି ଅଭି କାମ୍ ହୋ ଯାୟେଗା । କୃପୟା କରକେ ଏକ କପ୍ ଚା ପିଁଜିୟେ ।''

ଚା ବିସ୍‌କିଟ ଆସିଗଲା । ଅନୁମତିପତ୍ର ମଧ୍ୟ । ତଳେ ସସମ୍ମାନେ ଛାଡ଼ିଦେବା ଲାଗି ମିଷ୍ଟାର ଟଣ୍ଡନ କଷ୍ଟ ସ୍ୱୀକାର କଲେ । ଭାବିଲି, ଧନ୍ୟ ଇନ୍ଦିରା ଗାନ୍ଧି, ଧନ୍ୟ ଇମାର୍‌ଜେନ୍ସି, ଧନ୍ୟ ବୈଦେଶିକ ବିଭାଗର ବିଚକ୍ଷଣ ଅଫିସାରଗଣ !

ମିସ୍ ବିଏର ମୂଲ୍ୟବାନ ଟେପ୍ ରେକର୍ଡ଼ାର କିଣିଦେଲେ । ତାହାର ସଦୁପଯୋଗ କରିବାକୁ ଲାଗିପଡ଼ିଲି । ଉଇନ୍‌ଷ୍ଟନ ଚାର୍ଚ୍ଚିଲଙ୍କ ସମ୍ବନ୍ଧରେ ଗବେଷଣା କରୁଥିବା ଜଣେ ଅଧ୍ୟାପକଙ୍କ ସହିତ ମୋ କଥାବାର୍ତ୍ତା ରେକର୍ଡ଼ିଂ କରିନେଲି । ସେ ଅନେକ ବିଷୟ ଗୋପନ ରଖିଲେ ସୁଦ୍ଧା, କେତେକ କଥା ଜଣାଇବାକୁ କୁଣ୍ଠାବୋଧ କରି ନଥିଲେ ।

### ମାଉଣ୍ଟବ୍ୟାଟେନଙ୍କ ସହିତ ସାକ୍ଷାତକାର

ମାର୍ଚ୍ଚ ୧ ତାରିଖ ଦିନ ମିସ୍ ବିଏର ଫୋନ୍ ଯୋଗେ ଜଣାଇଲେ, ''ଆପଣଙ୍କୁ ସାଦରେ ଗ୍ରହଣ କରିବେ ବୋଲି ଆର୍ଲ ରାଜି ହୋଇଛନ୍ତି । ମାର୍ଚ୍ଚ ୧୫ ବେଳକୁ ସେ ତାଙ୍କ ଲଣ୍ଡନ ବାସଭବନକୁ ଫେରିବେ । ୧୭ ତାରିଖରୁ ସାକ୍ଷାତକାର ଚାଲିବ । ଆପଣ ତାଙ୍କ ଗେଷ୍ଟ୍‌ରୁମ୍‌ରେ ଚାରିଦିନ ରହିବେ ବୋଲି ବ୍ୟାରେଟ୍ ଜଣାଇଛନ୍ତି ।''

ମୁଁ ଧନ୍ୟବାଦ ସହ କହିଲି, ''ଆର୍ଲଙ୍କ ବାସଭବନକୁ ପ୍ରତିଦିନ ଗାଡ଼ିରେ ଯାଇପାରିବି । ସୁତରାଂ, ତାଙ୍କ ଘରେ ରହିବା ଦରକାର ନାହିଁ ।''

ବିଏର୍ ଜଣାଇଲେ, ''ସେକ୍ରେଟାରୀ ବ୍ୟାରେଟଙ୍କ କହିବା ଅନୁସାରେ, ମାଉଣ୍ଟବ୍ୟାଟେନଙ୍କ କାମ ନଥିବା ସମୟରେ ତାଙ୍କ ସୁବିଧା ଅନୁଯାୟୀ ସେ ଆପଣଙ୍କ ସହିତ ଆଲୋଚନା କରିବେ । ପ୍ରତିଦିନ କୌଣସି ନିର୍ଦ୍ଦିଷ୍ଟ ସମୟରେ ଭେଟିବା ଲାଗି ସେ ବୋଧହୁଏ ନିର୍ଭର ପ୍ରତିଶ୍ରୁତି ଦେଇପାରିବେ ନାହିଁ । ତେଣୁ ଆପଣଙ୍କୁ ତାଙ୍କ ଘରେ ରହିବାକୁ ହେବ ।''

ଦୁଇ ଦିନ ପରେ ମିସ୍ ବିଏର ମୋ ସହିତ ଦେଖା କଲେ । ତାଙ୍କ ନିକଟରୁ ମାଉଣ୍ଟବ୍ୟାଟେନଙ୍କ ସମ୍ବନ୍ଧରେ କେତେକ କଥା ଶୁଣିଲି । ଯଥା— ସେ ସେତେବେଳେ ଇଂଲାଣ୍ଡର ବୟୋଜ୍ୟେଷ୍ଠ ରାଷ୍ଟ୍ରନୀତିଜ୍ଞ ରୂପେ ଦଳମତ ନିର୍ବିଶେଷରେ ସମସ୍ତଙ୍କ ନିକଟରୁ ସମ୍ମାନ ପାଉଥିଲେ । ତେଣେ, ରାଜପରିବାରର ସମ୍ପର୍କୀୟ ଭାବରେ ରାଣୀ ଏଲିଜାବେଥ ଓ ପ୍ରିନ୍ସ ଫିଲିପ୍‌ଙ୍କ ଉପଦେଷ୍ଟା ହିସାବରେ ମାନ୍ୟତା ପାଉଥିଲେ । ''ମୁଁ ଯେତିକି ଜାଣିଛି, ସେ ଜଣେ ବିଚକ୍ଷଣ ଓ ଧୂର୍ତ୍ତ ବ୍ୟକ୍ତି । ପ୍ରଶ୍ନ ପଚାରିଲା ସମୟରେ ସତର୍କତା ଅବଲମ୍ବନ କରିବେ,'' ବିଏର୍ ଉପଦେଶ ଦେଲେ ।

ମୁଁ କହିଲି, ''ତାଙ୍କ ବୁଦ୍ଧି ଓ ଚତୁରତା ବିଷୟ ଭାରତବାସୀଙ୍କୁ ଜଣା ଅଛି । ଯେଉଁ ବ୍ୟକ୍ତି ଗାନ୍ଧି, ଜିନ୍ନା, ନେହରୁ ଓ ପଟେଲଙ୍କ ସହିତ ବୁଦ୍ଧିର ଖେଳ ଖେଳି ଦେଶକୁ ଖଣ୍ଡ ଖଣ୍ଡ କରିଦେଇ ପାରିଥିଲେ, ସେ ଯେ କୂଟନୀତିର ଏକ ଖଣି, ଏଥିରେ ସନ୍ଦେହ ନାହିଁ ।''

ମିସ୍ ବିଏର ପଚାରିଲେ, ''ତାଙ୍କର ଅତିଥି ଭାବେ ରହି, ତାଙ୍କୁ ଅପ୍ରୀତିକର ପ୍ରଶ୍ନ ପଚାରିବାକୁ ଆପଣ ସଂକୋଚ ବୋଧ କରିବେ ନାହିଁ ?'' ''କେବଳ ସଂକୋଚ ନୁହେଁ, ଭୟ ମଧ୍ୟ ଲାଗିପାରେ,'' ମୁଁ ଉତ୍ତର ଦେଲି । ହସି ହସି ସେ ସାହସ ଦେଲେ, ''ଆପଣ କାହିଁକି ଡରିବେ ? ବରଂ, ସେ ଆପଣଙ୍କୁ ଡରିବେ ! କାରଣ, ଭରତକୁ ଭାଗ ଭାଗ କରିବା ଲାଗି ସେ ଯାହାସବୁ କରିଥିଲେ, ତା ଉପରେ ଆପଣ ତାଙ୍କୁ ଜେରା କରିବାକୁ ଯାଉଛନ୍ତି ! ପ୍ରଶ୍ନକର୍ତ୍ତାମାନଙ୍କୁ ଉତ୍ତରଦାତାମାନେ ଡରିବା ସ୍ୱାଭାବିକ ।'' ମିସ୍ ବିଏର ବିଦାୟ ନେଲେ । ମୁଁ ମାର୍ଚ୍ଚ ୧୭ ତାରିଖ ଦିନଟିକୁ ଅପେକ୍ଷା କଲି ।

ମାର୍ଚ୍ଚ ୧୬ ତାରିଖ ଦିନ ଇଂଲଣ୍ଡର ରାଜନୈତିକ ବାତାବରଣ ସରଗରମ ହୋଇଉଠିଲା । ପ୍ରଧାନମନ୍ତ୍ରୀ ହ୍ୟାରୋଲ୍ଡ ଉଇଲସନ ଆକସ୍ମିକ ଭାବେ ଇସ୍ତଫା ଦେବା ଯୋଗୁଁ ଅନେକ ସମସ୍ୟା ଦେଖା ଦେଲା । ମିସ୍ ବିଏରଙ୍କୁ ଫୋନ କଲି । ସେ ଖବର ଦେଲେ, ମାଉଣ୍ଟବ୍ୟାଟେନ ଖୁବ୍ ବ୍ୟସ୍ତ ଅଛନ୍ତି, ତଥାପି ୧୭ ତାରିଖ ଅପରାହ୍ନ ୩ଟାରେ ଆପଣଙ୍କୁ ନିଶ୍ଚୟ ଭେଟିବେ ।

ନିର୍ଦ୍ଧାରିତ ଦିନ ୨ଟା ବେଳେ ଗାଡ଼ି ଆସିଗଲା । ମୁଁ ପ୍ରସ୍ତୁତ ରହିଥାଏଁ । କିନାରଟନ ନାମକ ସ୍ଥାନରେ ଥିବା ମାଉଣ୍ଟବ୍ୟାଟେନଙ୍କ ବାସଗୃହ ସାମନାରେ ୩ଟା ବେଳେ ଗାଡ଼ି ପହଞ୍ଚିଲାବେଳକୁ ପ୍ରବେଶ ପଥରେ ମୋତେ ପାଛୋଟି ନେବା ଲାଗି ଛିଡ଼ା ଥାନ୍ତି ନିଜେ ଲର୍ଡ଼ ମାଉଣ୍ଟବ୍ୟାଟେନ । ମୁଁ ଭାରତୀୟ ରୀତିରେ ନମସ୍କାର ଜଣାଇଲି । ସେ କରମର୍ଦ୍ଦନ ପୂର୍ବକ ଘର ଭିତରକୁ ଡାକିନେଲେ ।

ଉପର ତାଲାରେ ଥିବା ତାଙ୍କର ବ୍ୟକ୍ତିଗତ ପଢ଼ିବା କକ୍ଷକୁ ସାଙ୍ଗରେ ନେଇଯାଇ ସୋଫା ଉପରେ ବସିବାକୁ ହାତ ଦେଖାଇଦେଲେ । "ମୁଁ ୧୫ ମିନିଟ ମଧ୍ୟରେ ଆସୁଛି," ବୋଲି କହି ସେ ବାହାରି ଗଲାକ୍ଷଣି ମିଷ୍ଟାର ହୋଲ୍‌ମ୍ୟାନ ନାମକ ତାଙ୍କ ସେକ୍ରେଟାରୀ ପଶିଆସି କହିଲେ, "ଆଜିର ରାଜନୈତିକ ପରିସ୍ଥିତି ବିଷୟ ଜାଣିଥିବେ । ତଳେ ଶ୍ରମିକ ଦଳର ଦୁଇଜଣ ମୁଖ୍ୟଙ୍କ ସହିତ କଥାବାର୍ତ୍ତା କରି ସେ ଅବିଳମ୍ବେ ଫେରିବେ । ଦୟାକରି କିଛି ମନେକରିବେ ନାହିଁ ।" ଏତିକି କହି ସେ ବାହାରିଗଲେ । ରୁମ୍ ଭିତରେ ମାଉଣ୍ଟବ୍ୟାଟେନଙ୍କ ଟେବୁଲ ଉପରେ ଦୃଷ୍ଟି ପଡ଼ିଲା । କାଚ ଫ୍ରେମ୍ ଭିତରେ ଗୋଟିଏମାତ୍ର ଫଟୋ ରହିଥାଏ । ତାହା ଥିଲା ଜବାହାରଲାଲ ନେହରୁଙ୍କର । ମୁଁ ମୋର ଟେପ୍ ରେକର୍ଡ଼ାର ପ୍ରସ୍ତୁତ କରି ରଖିଲି ।

ମାଉଣ୍ଟବ୍ୟାଟେନ ଫେରିଆସିଲେ । ତାଙ୍କର ଦୀର୍ଘକାୟ ବଳିଷ୍ଠ ବପୁ ପୂର୍ବପରି ରହିଥିଲେ ସୁଦ୍ଧା, ମୁଖମଣ୍ଡଳରେ ବାର୍ଦ୍ଧକ୍ୟର ଛାୟା ଦେଖିପାରିଲି । ମୋ ପାଖରେ ସୋଫା ଉପରେ ବସି ପ୍ରଥମେ ସେ ଦୁଇ କାନରେ ପ୍ଲାଗ୍ ଲଗାଇଲେ । ଜାଣିପାରିଲି, ଶ୍ରବଣଶକ୍ତି କମିଯାଇଛି । "ଆପଣଙ୍କ ପାଇଁ ଯଥେଷ୍ଟ ସମୟ ରଖିଛି । ଯାହା ପଚାରିବେ ପଚାରିପାରନ୍ତି । ଯେତିକି ପାରିବି, ସେତିକି କହିବି," ଏତିକି କହି ସେ ମୋ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଲେ ।

"My Respected Earl' ବୋଲି ସମ୍ବୋଧନ କରି ମୁଁ ମୋ ବକ୍ତବ୍ୟ ଆରମ୍ଭ କଲି—

"ଭାରତର ସ୍ୱାଧୀନତା ଓ ଦେଶ ବିଭାଜନ ବିଷୟରେ ଆପଣ ଏ ପର୍ଯ୍ୟନ୍ତ ନିଜ ଲେଖନୀରେ ଗ୍ରନ୍ଥଟିଏ ରଚନା କଲେ ନାହିଁ କାହିଁକି ? ସେହି ଘଟଣାବହୁଳ ଐତିହାସିକ ସନ୍ଧିକ୍ଷଣର ପ୍ରତ୍ୟକ୍ଷ ସାକ୍ଷୀ ହେଉଛନ୍ତି ଆପଣ ନିଜେ । କେବଳ ସେତିକି ନୁହେଁ । ସେ ବେଳର ରାଜନୈତିକ ରଙ୍ଗମଞ୍ଚରେ ଆପଣଙ୍କ ଭୂମିକା ଥିଲା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ସୁତରାଂ, ଆପଣଙ୍କ ସ୍ୱଲିଖିତ ପୁସ୍ତକ ସେହି ସମୟର ଇତିହାସ ଉପରେ ଯେଉଁ ପ୍ରକାର ଆଲୋକପାତ କରିଥାନ୍ତା, ତାହା ହେଲା ନାହିଁ । ଫଳରେ, ସେ କାଳର ଘଟଣାପ୍ରବାହ କୁହେଳିକାମୟ ଅବସ୍ଥାରେ ରହିଗଲା । ଏବେ ମଧ୍ୟ ସମୟ ଅଛି । ଜଣେ ଭରତୀୟ ଭାବରେ ମୁଁ ଅନୁରୋଧ କରିବି, ଦୟାପୂର୍ବକ ଆମ ଦେଶର ସ୍ୱାଧୀନତା ଓ ବିଭାଜନ ସମ୍ବନ୍ଧରେ ଇତିହାସ ଲେଖି ସେଥିରେ ସମସ୍ତ ସତ୍ୟ ଉପସ୍ଥାପନ କରନ୍ତୁ ।"

ମୁଁ କହିଲାବେଳେ ମାଉଣ୍ଟବ୍ୟାଟେନ ଚିନ୍ତାମଗ୍ନ ଥିବା ଲକ୍ଷ୍ୟ କଲି । ମୋ କଥା ଶେଷ ହେଲା ପରେ, ସେ ଆରମ୍ଭ କଲେ—

''ଆପଣ ମୋତେ ସତ୍ୟ ଇତିହାସ ରଚନା କରିବାକୁ କହୁଛନ୍ତି । କିନ୍ତୁ ଯାହା ଲେଖିବି, ତାହା ବିବାଦମାନ ହେବ । ସମସ୍ତ ବିଷୟ ସତ୍ୟ ଲେଖିଲେ ସୁଦ୍ଧା, ଯଦି କୌଣସି କଥା ପାକିସ୍ତାନକୁ ରୁଚିକର ହେବ ନାହିଁ, ପାକିସ୍ତାନୀମାନେ କହିବେ ମାଉଣ୍ଟବ୍ୟାଟେନ ମିଥ୍ୟାବାଦୀ । ସେହିପରି, ଭାରତବାସୀଙ୍କୁ ମୋ କଥା ଭଲ ନ ଲାଗିଲେ ସେମାନେ ମୋତେ ମିଥ୍ୟାବାଦୀ ବୋଲି କହିବେ । ଏହି କାରଣ ଯୋଗୁଁ ମୁଁ ଲେଖିନାହିଁ, କିମ୍ବା ଲେଖିବି ନାହିଁ । ମୃତ୍ୟୁ ପୂର୍ବରୁ ମୁଁ ମିଥ୍ୟାବାଦୀ ରୂପେ ନିନ୍ଦିତ ହେବାକୁ ଚାହେଁ ନାହିଁ । ଭବିଷ୍ୟତର ଐତିହାସିକମାନେ ସତ୍ୟାସତ୍ୟ ନିରୂପଣ କରିବେ । ମୋତେ ଦୋଷାରୋପ କଲେ ମଧ୍ୟ, ଦୁଃଖ କରିବାକୁ ମୁଁ ନ ଥିବି ।''

ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଗଲା ଟେପ୍ ରେକର୍ଡ଼ାର ଉପରେ । ସେତେବେଳ ପର୍ଯ୍ୟନ୍ତ ସେ ଜାଣିପାରି ନଥିଲେ ଯେ କଥାଗୁଡ଼ିକ ରେକର୍ଡ଼ିଂ ହୋଇଯାଉଛି । ଚମକିଉଠି କହିଲେ, ''ପ୍ରଥମେ ମେସିନ୍ ବନ୍ଦ କରନ୍ତୁ, ତା ପରେ ମୁଁ କଥାବାର୍ତ୍ତା କରିବି ।'' ତତ୍କ୍ଷଣାତ୍ ତାଙ୍କ କଥା ମାନିଲି । କିନ୍ତୁ ପ୍ରତିବାଦ ଛଳରେ କହିଲି–

''ଆପଣ ଲେପିଏର ଓ କୋଲିନସ୍‌ଙ୍କୁ ଦୀର୍ଘ ୩୬ ଘଣ୍ଟା ଆପଣଙ୍କ ବକ୍ତବ୍ୟ ରେକର୍ଡ଼ିଂ କରିନେବାକୁ ଅନୁମତି ଦେଇଥିଲେ । ମୁଁ ସେହିପରି ସୁଯୋଗ ପାଇବି ବୋଲି ଆଶା ରଖିଥିଲି । ସେତେ ଦୀର୍ଘ ସମୟ ନ ହେଲେ ମଧ୍ୟ, ଅନ୍ତତଃ ଅଳ୍ପ ସମୟ ପାଇଁ ତ...''

ମୋ ବାକ୍ୟ ଶେଷ ହେବା ପୂର୍ବରୁ ସେ ହସିଉଠିଲେ । ତା'ପରେ ବିରକ୍ତିଭାବ ପ୍ରକାଶ କରି ମାଉଣ୍ଟବ୍ୟାଟେନ କହିଲେ, ''ଲେପିଏର ଓ କୋଲିନସ୍ ମୋ କଥାଗୁଡ଼ିକୁ କଦର୍ଥ କରି ବହି ଲେଖିଲେ ବୋଲି ମୁଁ ସେପରି ସୁଯୋଗ ଅନ୍ୟ କାହାରିକୁ ଦେବି ନାହିଁ । ଥରେ ଭୁଲ୍ କରି ଅନୁତାପ କଲାପରେ ପୁଣିଥରେ ଭୁଲ କରିବି କାହିଁକି ?''

ଏହା ପରେ, ଯେଉଁ ଅନୁରୋଧ ଲାଗି ଯାଇଥିଲି, ସେହି ବିଷୟ ଅବତାରଣା କଲି । ତାଙ୍କ ଶ୍ରବଣଶକ୍ତି ହ୍ରାସ ପାଇଥିବା ଜାଣି ମୋତେ ଉଚ୍ଚ ସ୍ୱରରେ କଥା କହିବାକୁ ହେଲା । ତାଙ୍କୁ ବୁଝାଇବାକୁ ଲାଗିଲି ଯେ, ଭାରତର ସ୍ୱାଧୀନତା ପରେ ଦୀର୍ଘ ୩୦ ବର୍ଷ ବିତିଗଲାଣି । ''ଆପଣଙ୍କ ଶାସନକାଳର ସମସ୍ତ ଗୋପନୀୟ ତଥ୍ୟାବଳି; ଗାନ୍ଧି, ଜିନ୍ନା, ନେହରୁ ପ୍ରଭୃତିଙ୍କର ବ୍ୟକ୍ତିଗତ ଚିଠି, ଏବଂ ଆପଣଙ୍କ ସହିତ ସେମାନଙ୍କ କଥୋପକଥନର ବିଶଦ ବିବରଣୀ ଆପଣଙ୍କ ନିକଟରେ ଗଚ୍ଛିତ ରହିଛି । ଆର୍କାଇଭାଲ୍ ଆଇନ ଅନୁଯାୟୀ, ୩୦ ବର୍ଷ ପରେ ସେହି ସବୁ ଫାଇଲ୍ ଆପଣଙ୍କ ବ୍ୟକ୍ତିଗତ ସମ୍ପତ୍ତି ଆକାରରେ ନରହି ସରକାରୀ ଅଭିଲେଖାଗାର

କିମ୍ବା କୌଣସି ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ସଂରକ୍ଷିତ ରହିବା କଥା । ଗବେଷକମାନେ ତାହା ସେଠାରେ ଦେଖିପାରିବେ ଓ ସେଥିରୁ ତଥ୍ୟ ସଂଗ୍ରହ ପୂର୍ବକ ବହି ଲେଖିପାରିବେ । ଯେ ହେତୁ ଫାଇଲଗୁଡ଼ିକ ଆପଣଙ୍କ ଘରେ ରହିଛି, ମୋତେ ଦେଖିବାକୁ ଅନୁମତି ମିଳିଲେ ବାଧିତ ରହିବି ।''

ସହସା ଉତ୍ତର ଦେଲେ–''ନା, ବର୍ତ୍ତମାନ ଦେଖିପାରିବେ ନାହିଁ । ମୋ ମୃତ୍ୟୁ ପରେ ଦେଖିବେ ।''

ତାଙ୍କ ବାକ୍ୟ ଶେଷହେବା ପୂର୍ବରୁ ମୁଁ କହିପକାଇଲି, ''ଆପଣଙ୍କ ଦୀର୍ଘ ଜୀବନ ନିମନ୍ତେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଜଣାଉଛି । ମୋର ନିବେଦନ, ଅଳ୍ପ କିଛି ଦିନ ପାଇଁ ମୋତେ ସେ ଗୁଡ଼ିକ ଦେଖିବାକୁ ଅନୁମତି ଦିଆଯାଉ ।''

ଅନୁରୋଧଟିକୁ ଏଡ଼ାଇଦେବା ଲାଗି ମାଉଣ୍ଟବ୍ୟାଟେନ ବୁଦ୍ଧି ଖେଳିଲେ । କିଛି ସମୟ ଆଖି ବନ୍ଦ କରି ଚିନ୍ତାମଗ୍ନ ହେବା ଦେଖିଲି । ତା ପରେ, ହସ ହସ ମୁହଁରେ କହିଲେ–

''ଫାଇଲଗୁଡ଼ିକ ଅନେକ, ସଂଖ୍ୟାରେ ପ୍ରାୟ ୨୬୦ । କ୍ରମାନ୍ୱୟ ଭାବରେ କାଗଜପତ୍ର ସଜାଇ ରଖିବାକୁ ସମୟ ଦରକାର । ତା'ପରେ, କେଉଁଠାରେ ରଖାଯିବ, ସେ ବିଷୟ ଚିନ୍ତା କରିବାକୁ ହେବ । ଆର୍କାଇଭସ୍ ସହିତ ଯୋଗାଯୋଗ କଲାପରେ ନିଷ୍ପତ୍ତି ନେବି । ସେତେବେଳ ପର୍ଯ୍ୟନ୍ତ ଐତିହାସିକମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ଏବେ ମୁଁ ନାଚାର । ମୋ ଶାସନକାଳ ସମ୍ପର୍କରେ ଆପଣ ପ୍ରଶ୍ନ ପଚାରିଲେ, ମୁଁ ଉତ୍ତର ଦେବାକୁ ପ୍ରସ୍ତୁତ । ଫାଇଲ କଥା ଭୁଲିଗଲେ ଭଲ ।''

ମୁଁ ଉତ୍ତର ଦେଲି, ''ମୋ ପ୍ରଶ୍ନର ଉତ୍ତରମାନ ରେକର୍ଡ଼ିଂ କରି ନ ପାରିଲେ ସେ ସବୁ ବହିରେ ଉଲ୍ଲେଖ କରିପାରିବି ନାହିଁ । ସତ୍ୟ ଲେଖିବାକୁ ପ୍ରମାଣ ରହିବା ଆବଶ୍ୟକ । ଏକେ ଫାଇଲ୍ ଦେଖିବି, ନଚେତ୍ ଆପଣଙ୍କ ନିଜ ଭାଷାରେ ଶୁଣିଥିବା ବିଷୟ ରେକର୍ଡ଼ିଂ କରିବି । ମୋ ଆଗରେ ତୃତୀୟ ଉପାୟ ନାହିଁ ।''

ମାଉଣ୍ଟବ୍ୟାଟେନ ଗମ୍ଭୀର ରହିଲେ । ତାଙ୍କୁ ନିରୁତ୍ତର ହେବା ଦେଖି ଜାଣିନେଲି, ଦୁଇଟିରୁ କୌଣସିଟିରେ ସେ ରାଜି ହେବେ ନାହିଁ । ତଥାପି, କାଶ୍ମୀର ଓ ହାଇଦ୍ରାବାଦ ରାଜ୍ୟ ଦୁଇଟିକୁ ସ୍ୱାଧୀନ ରଖିବା ଲାଗି ତାଙ୍କର ଉଦ୍ଦେଶ୍ୟ ଥିଲା କି ନାହିଁ, ସେ ସମ୍ପର୍କରେ ପ୍ରଶ୍ନ ଉତ୍ଥାପନ କଲି । ସିଧା ସଳଖ ଉତ୍ତର ନ ଦେଇ ସେ ଏଣୁ ତେଣୁ ଯାହା ସବୁ କହିଗଲେ, ସେଥିରୁ ତାଙ୍କ ନିଜ ଭୂମିକା ବିଷୟ କିଛି ହେଲେ ଜଣାପଡ଼ିଲା ନାହିଁ । ପ୍ରକାରାନ୍ତରେ, ସେ ଭାରତୀୟ ନେତାମାନଙ୍କୁ ଅନେକ ବିଷୟରେ ଦାୟୀ କରିଗଲେ ।

ଘଣ୍ଟା ଦେଖି ଜାଣିଲି ୫ଟା ୩୦ ମିନିଟ । ମାଉଣ୍ଟବ୍ୟାଟେନ ମଧ୍ୟ ତାଙ୍କ ଘଡ଼ିକୁ ଚାହିଁ ଉଠିପଡ଼ିଲେ । "Hope to see you tomorrow," ବୋଲି କହିଦେଇ କରମର୍ଦ୍ଦନ ପୂର୍ବକ ସେ ତରତରରେ ବାହାରିଯିବା ସମୟରେ, ବାହାରେ ଅପେକ୍ଷା କରିଥିବା ମିସ୍ଂ ବିଏର ଭିତରକୁ ପଶିଆସିଲେ । ନିଜର କୌତୂହଳ ପ୍ରକାଶ କରି ସେ କହିଲେ, "ଅଢ଼େଇ ଘଣ୍ଟା ପର୍ଯ୍ୟନ୍ତ ତାଙ୍କ ପରି ବ୍ୟକ୍ତିଙ୍କୁ ଆପଣ ଅଟକ ରଖିପାରିଥିବା ଯୋଗୁଁ ଧନ୍ୟବାଦ !" "କିନ୍ତୁ, ସାକ୍ଷାତକାର ନିରର୍ଥକ ହେଲା, ତାଙ୍କ କଥା ରେକର୍ଡ଼ିଂ କରିବାକୁ ନଦେଇ ସେ ବୁଦ୍ଧିର ଖେଳରେ ଜିଣିଗଲେ," ଦୁଃଖିତ ମନରେ ମୁଁ ଜଣାଇଲି ।

ସେତିକିବେଳେ ମିଷ୍ଟର ବ୍ୟାରେଟ ପଶିଆସି କହିଲେ, "ଆର୍ଲ ଏବେ ବକିଂହାମ୍ ପ୍ୟାଲେସ୍‌କୁ ଯିବେ, ୬ଟା ବେଳେ ରାଣୀଙ୍କୁ ଭେଟିବା ଲାଗି ଡାକ ଆସିଛି । ଆପଣଙ୍କୁ ଅତିଥି କକ୍ଷକୁ ନେଇଯିବା ଲାଗି କହିଛନ୍ତି ।"

ଗେଷ୍ଟ୍‌ରୁମ୍‌ରେ ତିନିଜଣ ବସି ଚା ଜଳଖିଆ ଖାଇଲାବେଳେ ସାମୟିକ ପରିସ୍ଥିତ ସମ୍ପର୍କରେ ବିଏର ଓ ବ୍ୟାରେଟଙ୍କ ମଧ୍ୟରେ ଆଲୋଚନା ଚାଲିଥାଏ । ମୁଁ କହିଲି, "ଏ ପ୍ରକାର ରାଜନୈତିକ ସଂକଟ ବେଳେ ମାଉଣ୍ଟବ୍ୟାଟେନଙ୍କ ମୂଲ୍ୟବାନ ସମୟ ନଷ୍ଟ କରିବା ମୋ ପକ୍ଷେ ଧୃଷ୍ଟତା ହେବ । ପ୍ରକୃତ କଥା ହେଲା, ଯେତେଥର ସାକ୍ଷାତକାର ଘଟିଲେ ସୁଦ୍ଧା ସେ ପ୍ରଶ୍ନୋତ୍ତରଗୁଡ଼ିକ ରେକର୍ଡ଼ିଂ କରିବାକୁ ଦେବେ ନାହିଁ । ଯେହେତୁ ତାଙ୍କ ବକ୍ତବ୍ୟ ତଥ୍ୟ ମୁଁ ବ୍ୟବହାର କରିପାରିବି ନାହିଁ, ତାଙ୍କୁ ପ୍ରଶ୍ନ କରିବା ଦ୍ୱାରା ମୋର କୌଣସି ଲାଭ ହେବ ନାହିଁ । ତେଣୁ, ଆର୍ଲଙ୍କୁ ଧନ୍ୟବାଦ ଜଣାଇ ମୁଁ ବିଦାୟ ନେବି ବୋଲି ଭାବିଛି ।"

ବ୍ୟାରେଟ୍ ଅନୁରୋଧ କଲେ, "ଧନ୍ୟବାଦ ବିଷୟ ଆପଣ ନିଜେ ଦୁଇଧାଡ଼ି ଲେଖି ଦେଇଗଲେ ସେ ଖୁସି ହେବେ ।" ତାହାହିଁ କଲି– କୃତଜ୍ଞତା ଜ୍ଞାପନ ସହ ବିଫଳତାର ସୂଚନା ଦେଇ ତାଙ୍କର ଦୀର୍ଘ ଜୀବନ କାମନା କଲି ।

(ସେତେବେଳେ ଚିନ୍ତାଶକ୍ତିର ଅତୀତ ଥିଲା ଯେ ମାଉଣ୍ଟବ୍ୟାଟେନ ଆତତାୟୀ ବୋମାରେ ନିହତ ହେବେ, ଏବଂ ଯଥାସମୟରେ ତାଙ୍କ କନ୍ୟା ପ୍ୟାଟ୍ରିସିଆ ଓ ଜାମାତା ଲର୍ଡ଼ ବ୍ରାବୋର୍ଣ୍ଣଙ୍କ ସ୍ୱତନ୍ତ୍ର ଅନୁମତିକ୍ରମେ ବଡ଼ଲାଟଙ୍କ ବ୍ୟକ୍ତିଗତ ୨୬୦ ଫାଇଲ୍ ପାଠ କରିବାକୁ ସୁଯୋଗ ପାଇବି !)

**ଲଣ୍ଡନରୁ ବିଦାୟ**

ଅବଶିଷ୍ଟ ୧୦ ଦିନ ମଧ୍ୟରେ ଏଡିନବରା ପ୍ରଭୃତି ସ୍ଥାନକୁ ଯିବା ସହ ବ୍ରିଟିଶ ହାଉସ୍ ଅଫ କମନସ୍‌ର ୩ ଜଣ ସଭ୍ୟଙ୍କ ସହିତ ସାକ୍ଷାତ କରିଥିଲି । ପାର୍ଲିଆମେଣ୍ଟର

ସେହି କକ୍ଷର ପ୍ରକାଣ୍ଡ ଓ ମୂଲ୍ୟବାନ ଦରଜା ଭାରତ ପକ୍ଷରୁ ଉପହାର ଦିଆଯାଇଥିଲା ବୋଲି ଜଣେ ସଭ୍ୟ ଦେଖାଇ ଦେଇଥିଲେ ।

ଲଣ୍ଡନ ରହଣି ବେଳେ ପଶ୍ଚିମ ଜାର୍ମାନୀର ହାଇଡେଲବାର୍ଗ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ପାଇଲି ଯେ ଭାରତ ଫେରିବା ପଥରେ ସେଠାକାର ନବସ୍ଥାପିତ 'ଦକ୍ଷିଣ ଏସିଆ' ବିଭାଗରେ ଗୋଟିଏ ଭାଷଣ ଦେଲେ ଅଧ୍ୟାପକମାନେ ଆନନ୍ଦିତ ହେବେ । ଅନୁଷ୍ଠାନର ମୁଖ୍ୟ ଅଧ୍ୟାପକ ଡକ୍ଟର ରୋଥରମଣ୍ଡ ଓ ଅଧ୍ୟାପକ ହାରମାନ୍ କୁଲକେଙ୍କ ନିକଟରୁ ସେହି ପତ୍ର ଆସିଥାଏ । ଲଣ୍ଡନରୁ ସିଧା ଦିଲ୍ଲୀ ଫେରିବା ଲାଗି ଏୟାର ଇଣ୍ଡିଆ ବିମାନରେ ଆଗରୁ ଟିକଟ କିଣା ସରିଥାଏ । ଜାର୍ମାନୀ ଯିବାକୁ ହେଲେ ଟିକଟ ବଦଳ କରିବାକୁ ହେବ ଓ ଅଧିକା ଟଙ୍କା ଦେବାକୁ ହେବ ବୋଲି ଜାଣିଲି ।

ବିମାନ ଅଫିସକୁ ଯାଇ ହାଇଡେଲବାର୍ଗର ନିମନ୍ତ୍ରଣପତ୍ର ଦେଖାଇଲାରୁ କର୍ମଚାରୀମାନେ ଟିକଟ ବଦଳ କରିଦେଲେ । ଅଧିକା କେତେ ଟଙ୍କା ଦେବି ବୋଲି ପଚାରିଲି । ମୁଖ୍ୟ କର୍ମଚାରୀ କହିଲେ, "ଆପଣ ଭାଷଣ ଦେବା ଲାଗି ଯାଉଛନ୍ତି, ବ୍ୟବସାୟ ପାଇଁ ନୁହେଁ । ତେଣୁ ଭିନ୍ନ ରୁଟ୍‌ରେ ଗଲେ ମଧ୍ୟ ଅଧିକା ମାସୁଲ ପଡ଼ିବ ନାହିଁ । ଯଦି ଚାହିଁବେ, ପ୍ୟାରିସ୍‌ରେ ଗୋଟିଏ ଦିନ ରହିବା ପାଇଁ ସୁଯୋଗ ଦିଆଯିବ ।" ଧନ୍ୟବାଦ ଜଣାଇ ମୁଁ ରାଜି ହେଲି । ସେହି ଅନୁସାରେ ଲଣ୍ଡନରୁ ପ୍ୟାରିସ, ପ୍ୟାରିସରୁ ଫ୍ରାଙ୍କ୍‌ଫୁର୍ଟ ଓ ଫ୍ରାଙ୍କ୍‌ଫୁର୍ଟ ଠାରୁ ବୋମ୍ବେ ପର୍ଯ୍ୟନ୍ତ ଟିକଟ ପ୍ରସ୍ତୁତ କଲେ । ଫ୍ରାଙ୍କ୍‌ଫୁର୍ଟରୁ ହାଇଡେଲବାର୍ଗ ନେବା ପାଇଁ ହାରମାନ୍ କୁଲକେ କାର ଧରି ଆସିବେ ବୋଲି ଚିଠି ଦ୍ୱାରା ଜଣାଇଲେ ।

୧୯୭୬ ମାର୍ଚ୍ଚ ମାସ ୨୯ ତାରିଖ ଦିନ ଲଣ୍ଡନରୁ ବିଦାୟ ନେଲି । ବଡ଼ ସୁଟକେଶ୍‌ଟିରେ ଜିନିଷପତ୍ର ଭର୍ତ୍ତି ହୋଇଯାଇଥାଏ । ପୁଅ ସିଦ୍ଧାର୍ଥ ଚିଠି ଲେଖିଥାଏ, ଦୁଇ କେ.ଜି.ଚକୋଲେଟ୍ ନେବା ପାଇଁ । ସ୍ତ୍ରୀ ଓ ଝିଅ ସୁଏଟାର ନେବା ଲାଗି ଲେଖିଥାନ୍ତି । ମୋ ନିଜ ଇଚ୍ଛାରେ ଗୁଡ଼ାଏ ଜିନିଷ କିଣିଥିଲି । ତା ଭିତରେ ଥାଏ ଦୁଇ ଡଜନ ସୁବାସିତ ସାବୁନ । ହିଥରୋ ବିମାନ ଘାଟିରେ ମୋତେ ଛାଡ଼ିଦେଇ ମିସ୍ ବିଏର ଚାଲିଗଲେ । ଭିତରେ ମାଲ ଓଜନ ହେଲା ଉତ୍ତାରୁ ୨୦ ପାଉଣ୍ଡ ମାସୁଲ ଚାର୍ଜ କରାଗଲା । କାନ ଆଉଁସି ଟଙ୍କାତକ ଦେଲି । ପ୍ୟାରିସରେ ପହଞ୍ଚି ଅଯଥା ଜିନିଷଗୁଡ଼ିକ ଫୋପାଡ଼ିଦେବି ଠିକ୍ କଲି । ନଚେତ୍, ପ୍ରତ୍ୟେକ ସ୍ଥାନରେ ଅଧିକା ମାସୁଲ ଦେବାକୁ ହେବ ବୋଲି ଭୟ ହେଲା ।

ଦିନ ୧୧ଟାରେ ବିମାନ ଲଣ୍ଡନ ଛାଡ଼ିଲା । ପ୍ୟାରିସ ବିମାନ ବନ୍ଦରରେ ପହଞ୍ଚିଲା ୧ଟା ସମୟରେ ।



ରୋମ କଲୋସିୟମ



ସେଣ୍ଟ ପଲ ଗିର୍ଜାର ଅଭ୍ୟନ୍ତର

ପୋପ୍‌ଙ୍କ ଭାଟିକାନ



ଲର୍ଡ ମାଉଣ୍ଟବ୍ୟାଟେନ (Ency. Br. Vol ୫, p.378)

# ପ୍ୟାରିସ୍ ଓ ହାଇଡେଲବାର୍ଗ (୧୯୭୬)



## ଦୁଇ ସହରର ସ୍ମୃତି

### ପ୍ୟାରିସ ନଗରୀରେ ଗୋଟିଏ ଦିନ

ଲଣ୍ଡନରୁ ଆସୁଥିବାବେଳେ ମନରେ ସଂକଳ୍ପ ନେଲି ଯେ, ପ୍ୟାରିସରେ ଯେଉଁ କେତେକ ଘଣ୍ଟା ରହିବି, ସେଥିମଧ୍ୟରେ ଯଥାସମ୍ଭବ କେବଳ ବୁଲି ବୁଲି ସହରର ସ୍ଥାନଗୁଡ଼ିକ ଦେଖିବି । ଗୋଟିଏ ରାତ୍ରି ନିଦ୍ରା ନଗଲେ କିଛି କ୍ଷତି ନାହିଁ । ଭ୍ରମଣର ନିଶା ଆଗରେ କଷ୍ଟ ସ୍ୱୀକାର କିଛି ନୁହେଁ ।

ଇଉରୋପର ନଗର-ରାଣୀ ପ୍ୟାରିସ୍ । ଏକେ ତ ସୌନ୍ଦର୍ଯ୍ୟମୟୀ, ଦ୍ୱିତୀୟରେ, ଐତିହାସିକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ଫରାସୀ ରାଷ୍ଟ୍ରବିପ୍ଳବର ଜନ୍ମସ୍ଥାନ ଓ ମହାବୀର ନେପୋଲିୟନଙ୍କ କୀର୍ତ୍ତିଭୂମି ରୂପେ ପ୍ୟାରିସର ମର୍ଯ୍ୟାଦା ଅଶେଷ । ସହର ଭ୍ରମଣ ଲାଗି ପ୍ରବଳ ଆଗ୍ରହ ଆସିଗଲା ।

ମାର୍ଚ୍ଚ ୨୯ ତାରିଖ ଦିନ ୧ଟା ବେଳେ ପ୍ୟାରିସ ବିମାନଘାଟିରେ ପହଞ୍ଚିଲି । ଆଗରୁ ମୋ ଚିଠି ପାଇ ଦେବଦତ୍ତ ନାମକ ଜଣେ ଯୁବକ ମୋତେ ନେବାଲାଗି ଆସିଥାନ୍ତି । ସେ ପୁରୁଣା ଭୁବନେଶ୍ୱରର ବାସିନ୍ଦା ଓ ମୋ ପୁଅର ସହପାଠୀ । ପ୍ୟାରିସର ଗୋଟିଏ ସେବା ସଂସ୍ଥାରେ ନିଯୁକ୍ତି ପାଇଥାନ୍ତି । ବିମାନଘାଟିରେ ସୁଟକେଶ ରଖିଦେଇ ଓ କେବଳ ହ୍ୟାଣ୍ଡବ୍ୟାଗ୍‌ଟିଏ ଧରି ତାଙ୍କ ସାଙ୍ଗରେ ବାସ୍ ଯୋଗେ ସହର ଭିତରକୁ ଚାଲିଲି । 'ଲାଫାୟେତ' ଛାତ୍ରାବାସରେ ରହିବା ବ୍ୟବସ୍ଥା କରାଯାଇଥାଏ । ଦେବଦତ୍ତଙ୍କୁ କହିଲି, "ଦିନ ଓ ରାତି ଭୁଲିଯାଇ ପ୍ୟାରିସ୍ ଦେଖିବି । ଫରାସୀମାନେ ଇଂରାଜୀ କହିବାକୁ ଇଚ୍ଛା କରନ୍ତି ନାହିଁ । ତୁମେ ପାଖରେ ରହିଲେ ଭାଷା ସମସ୍ୟା ରହିବ ନାହିଁ ।" ପରିଶ୍ରମୀ ଯୁବକ ଖୁସିମନରେ ବାହାରିପଡ଼ିଲେ । କିନ୍ତୁ କହିଲେ, "ପୂରା ମାସଟିଏ ବୁଲିଲେ ସୁଦ୍ଧା ପ୍ୟାରିସ ଦେଖା ଶେଷ ହେବ ନାହିଁ । କେତୋଟି ଘଣ୍ଟା ମଧ୍ୟରେ ଆପଣ କିଛି ଦେଖିପାରିବେ ନାହିଁ ।"

ତାଙ୍କ କଥା ଶୁଣି ମନରେ ଦୁଃଖ ହେଲା । ସେତେବେଳେ ଅନୁମାନ କରି ନଥିଲି ଯେ କିଛି ବର୍ଷ ପରେ ପୁଣି ଥରେ ପ୍ୟାରିସ ଆସି ଦୁଇ ସପ୍ତାହ ରହିବାକୁ ସୁଯୋଗ ପାଇବି । ସେହି ରହଣିକାଳ ମଧ୍ୟରେ ପ୍ୟାରିସର ଯେଉଁ ସମସ୍ତ ସ୍ଥାନ ଦେଖିଥିଲି, ସେ କଥା ଅନ୍ୟ ଏକ ଅଧ୍ୟାୟରେ ଉଲ୍ଲେଖ କରିବି । ଏଠାରେ କେବଳ ପ୍ରଥମ ରହଣିର ରାତିଟି କଥା ଲେଖୁଛି ।

ରାତି ୧୧ଟା ବାଜିଯାଇଥାଏ । ଦେବଦତ୍ତ ଓ ମୁଁ ବାଟ ଚାଲି ଚାଲି ଅବସନ୍ନ ହୋଇ ପଡ଼ିଥାଉଁ । ସେତେବେଳେ ଚାଲିଥାଉଁ ଟୁଇଲେରୀ ବା ଟୁଲ୍‌ରେଁ ଉଦ୍ୟାନ ମଧ୍ୟରେ । ଏକଦା ସେହି ଉଦ୍ୟାନ ନିକଟରେ ରହିଥାଏ ଫରାସୀ ରାଜାମାନଙ୍କର ପ୍ରାସାଦ । ବହିରେ ପଢ଼ିଥିବା ବିଷୟ ମନେ ପଡ଼ିଗଲା– ପ୍ରାସାଦର ଅଦୂରରେ ଥିବା 'ମିଳନ ସ୍ଥାନ' ବା Place de la Concorde ଥିଲା ଫରାସୀ ବିପ୍ଳବ କାଳର ସେହି ଭୟଙ୍କର ସ୍ଥାନ ଯେଉଁଠାରେ ରାଜା ଷୋଡ଼ଶ ଲୁଇ, ରାଣୀ ମେରୀ ଏଣ୍ଟୋଇନେଟେ ଓ ଶତ ଶତ ନରନାରୀଙ୍କୁ ଗିଲୋଟିନ ତଳେ ହତ୍ୟା କରାଯାଇଥିଲା । ଦେବଦତ୍ତ ସ୍ଥାନଟି କଥା କହିପାରିଲେ ନାହିଁ ।

ନିର୍ଜନ ଉଦ୍ୟାନର ବେଞ୍ଚ ଉପରେ ଜଣେ ଫରାସୀ ବୃଦ୍ଧବ୍ୟକ୍ତି ଅର୍ଦ୍ଧନିଦ୍ରିତ ବା ନିଶାଗ୍ରସ୍ତ ଅବସ୍ଥାରେ ବସିଥିବା ଦେଖି ତାଙ୍କୁ ଇଂରାଜୀରେ ପଚାରିଲି, ''କେଉଁଠାରେ ଗିଲୋଟିନ ଦ୍ୱାରା ରାଜା ରାଣୀଙ୍କର ମୁଣ୍ଡ କଟାଯାଇଥିଲା, ଦୟାକରି ମୋତେ କହିପାରିବେ ?'' ସେ ଇଂରାଜୀ ବୁଝନ୍ତି କି ନାହିଁ, ଜାଣିପାରିଲି ନାହିଁ । କିନ୍ତୁ 'ଗିଲୋଟିନ' ଶବ୍ଦ ଓ ରାଜା ରାଣୀଙ୍କ ନାମ ବାରମ୍ବାର ଉଚ୍ଚାରଣ କଲାଉତ୍ତାରୁ ମୋ ପ୍ରଶ୍ନର ଅର୍ଥ ବୁଝିପାରିଲେ । ଟୁଇଲେରୀର ବାହାର ପଥ ଦିଗକୁ ଅଙ୍ଗୁଳି ଦେଖାଇ ସେ ଉଚ୍ଚ ସ୍ୱରରେ କୁହାଟ ଛାଡ଼ିଲେ, 'ଗିଲୋଟିନ, ଗିଲୋଟିନ' !

ପଥଶ୍ରାନ୍ତ ଦେବଦତ୍ତଙ୍କୁ ବେଞ୍ଚରେ ବିଶ୍ରାମ ନେବାକୁ କହି ମୁଁ ଚାଲିଲି 'ମିଳନ ସ୍ଥାନ'ର ପ୍ରଶସ୍ତ ପ୍ରାଙ୍ଗଣ ଦିଗକୁ । ଯେଉଁ ସ୍ଥାନରେ ଏକଦା ଗିଲୋଟିନ ଛିଡ଼ାଥାଏ, ସେଠାରେ ଏବେ ଛିଡ଼ାରହିଛି ପଥର ସ୍ତମ୍ଭ । ଫରାସୀ ବିପ୍ଳବ ସମ୍ବନ୍ଧରେ ପଢ଼ିଥିବା ଲୋମହର୍ଷଣକାରୀ ବର୍ଣ୍ଣନାମାନ ମାନସପଟରେ ଖେଳିଯାଉଥାଏ । ସ୍ତମ୍ଭ ତଳେ ବସିରହିବାକୁ ଇଚ୍ଛା ହେଲା । ପାହାଚ ଉପରେ ପାଦ ମେଲାଇ ବିଶ୍ରାମ ନେଲାବେଳେ ମନେ ପଡୁଥାଏ, ଗିଲୋଟିନ ତଳେ ମୁଣ୍ଡ ରଖିଲା ମୁହୂର୍ତ୍ତରେ ରାଣୀ ମେରୀ ଏଣ୍ଟୋଇନେଟେଙ୍କର କରୁଣ ଚିତ୍କାର କଥା । ଯେଉଁଠାରେ ମୁଁ ବସିଥାଏଁ, ଦିନେ ସେହି ମାଟିରେ ଅସଂଖ୍ୟ ନରନାରୀଙ୍କ ରକ୍ତ ଭାସିଯାଇଥିଲା । ମୁଣ୍ଡଚ୍ଛେଦର ଦୃଶ୍ୟ ଦେଖୁଥିଲେ ରକ୍ତପାଗଳ ବିପ୍ଳବୀ ଜନତା । ରୋମାଞ୍ଚକର ଥାଏ ଫରାସୀ ବିପ୍ଳବର କାହାଣୀ । ମାନବୀୟ ମୁକ୍ତି ଓ ଅଧିକାର ନାମରେ ଯେଉଁ ଆତଙ୍କରାଜ ସୃଷ୍ଟି

ହୋଇଥିଲା, ସେଥିରେ କେବଳ ରାଜା ରାଣୀ ନୁହନ୍ତି, ବିପ୍ଳବୀ ନେତାମାନେ ମଧ୍ୟ ନିଜ ନିଜ ମୁଣ୍ଡ ହରାଇବାକୁ ବାଧ୍ୟ ହୋଇଥିଲେ । ବିପ୍ଳବିନୀ ମ୍ୟାଡାମ ରୋଲାଁଙ୍କୁ ଗିଲୋଟିନ ତଳକୁ ନିଆଗଲାବେଳେ, ସେ 'ମୁକ୍ତିଦେବୀ'ଙ୍କ ପ୍ରତିମୂର୍ତ୍ତି ପ୍ରତି ଲକ୍ଷ୍ୟ କରି କହିଉଠିଥିଲେ, ''ହେ ମୁକ୍ତି, ସେମାନେ ତୁମ ସହିତ କିପରି ଭାବରେ ଖେଳୁଛନ୍ତି !''

ଘଣ୍ଟାଧିକ ସମୟ ବିତିଯାଇଥାଏ । ମୁଁ ନିଦେଇ ପଡ଼ିଛି ଭାବି ଦେବଦତ୍ତ ପାଖକୁ ଆସି କହିଲେ, ''ରାତି ଗୋଟାଏ ବାଜିଲାଣି । ବାଟ ଢେର୍ । ଏବେ ଫେରିଯିବା ।'' ପାହାଚ ଉପରୁ ଉଠିଲାବେଳେ କହିଲି, ''ଅନେକ ରାତି ଆସିବ ଓ ଯିବ । କିନ୍ତୁ ଗିଲୋଟିନ ଥିବା ସ୍ଥାନରେ ବସି ରହିଥିବା ରାତିଟି ସବୁ ଦିନ ମନେ ରହିବ ।''

ପ୍ୟାରିସ ନଗରୀର କିଛି ଦେଖିପାରିଲି ନାହିଁ ଭାବି ଅତୃପ୍ତ ମନରେ ବିଛଣା ଧରିଲି ।

## ହାଇଡେଲବାର୍ଗରେ ଦୁଇ ଦିନ

ମାର୍ଚ୍ଚ ୩୦ ତାରିଖ ପୂର୍ବାହ୍ନରେ ପ୍ୟାରିସ ବିମାନଘାଟିରେ ସୁଟକେଶ୍ ହାଲୁକା କରି ଫ୍ରାଙ୍କଫୁର୍ଟ ଅଭିମୁଖେ ବିମାନ ଧରିଲି । ଜର୍ମାନୀର ସେହି ବିମାନଘାଟିରେ ୧୨ଟା ବେଳେ ପହଞ୍ଚିଲି । ସେଠାରେ ଅଧ୍ୟାପକ ହାରମାନ କୁଲକେ ଅପେକ୍ଷା କରିଥାନ୍ତି । ତାଙ୍କ କାର୍‌ରେ ହାଇଡେଲବାର୍ଗ ଚାଲିଲି । କୁଲକେଙ୍କ ସାଙ୍ଗରେ ଆଗରୁ ସମ୍ପର୍କ ଥାଏ । ଭୁବନେଶ୍ୱରରେ ଏକବର୍ଷ ରହି ସେ ଓଡ଼ିଶା ଇତିହାସ ଉପରେ ଗବେଷଣା କରିଥାନ୍ତି । 'ଓଡ଼ିଶା ବିବ୍‌ଲିଓଗ୍ରାଫି' ନାମକ ଗ୍ରନ୍ଥ ପ୍ରଣୟନ ନିମନ୍ତେ ହାଇଡେଲବାର୍ଗ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ମଧ୍ୟରେ ସହଯୋଗ ସ୍ଥାପନ କରାଯାଇଥିଲା । କଟକର 'ବିଦ୍ୟାପୁରୀ' ପ୍ରକାଶନ ସେହି ବୃହତ ଗ୍ରନ୍ଥଟିର ପ୍ରକାଶ କରିବା ଦାୟିତ୍ୱ ନେଇଥିଲେ । ହାରମାନ୍. କୁଲକେ ଜଣେ ପଣ୍ଡିତ ବ୍ୟକ୍ତି । ସେ ଓ ମିସ୍ ଏଇସ୍‌ମ୍ୟାନ ଓଡ଼ିଶାର ଧର୍ମ ଓ ସଂସ୍କୃତି ପ୍ରତି ଗଭୀରଭାବେ ଆକୃଷ୍ଟ ଥିଲେ । ଉଭୟଙ୍କ ମୂଲ୍ୟବାନ୍ ଅବଦାନ ପାଇଁ ଆମେ କୃତଜ୍ଞ ଥାଉଁ । କୁଲକେ, ରୋଥାରମଣ୍ଡ ଓ ଷ୍ଟେଟିନକୋର୍ଣ୍ଣ ପ୍ରଭୃତି ଅଧ୍ୟାପକମାନଙ୍କ ଉଦ୍ୟମରେ ହାଇଡେଲବାର୍ଗ ବିଶ୍ୱବିଦ୍ୟାଳୟରେ 'ଦକ୍ଷିଣ ଏସିଆ' ବିଭାଗ ସ୍ଥାପିତ ହୋଇଥାଏ । ସେହି ବିଭାଗର ଆନୁକୂଲ୍ୟରେ 'ଓଡ଼ିଶା ଇତିହାସ'ର ବିଭିନ୍ନ ବିଷୟରେ ମୌଳିକ ଗବେଷଣା ନିମନ୍ତେ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରାଯାଇଥାଏ । ଭାରତୀୟ ସଭ୍ୟତା ଓ ସଂସ୍କୃତି ପ୍ରତି ଜର୍ମାନ ପ୍ରାଚ୍ୟବିଦ୍ୟାବିଦ୍‌ମାନଙ୍କର ଯେଉଁ ଆକର୍ଷଣ ରହି ଆସିଛି, ତାହାର ପରମ୍ପରା ବଜାୟ ରଖିଛନ୍ତି ହାଇଡେଲବାର୍ଗ ଅଧ୍ୟାପକମାନେ । ଓଡ଼ିଶାର ଦୁର୍ଗମ

ଅଞ୍ଚଳରେ ବୁଲି ବୁଲି ମହିମାଧର୍ମ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରୁଥିବା ଅବସ୍ଥାରେ ମିସ୍ ଏଇସ୍‌ମ୍ୟାନ ପୀଡ଼ିତ ହୋଇ ଅକାଳରେ ପ୍ରାଣ ହରାଇଥିଲେ । ତାଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏଇସ୍‌ମ୍ୟାନଙ୍କ ପିତାମାତା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଅନୁଦାନ ଦେବା ଫଳରେ ପ୍ରତ୍ୟେକ ବର୍ଷ 'ଏଇସ୍‌ମ୍ୟାନ ବକ୍ତୃତାମାଳା' ଆୟୋଜନ କରାଯାଇଥାଏ ।

ଫ୍ରାଙ୍କଫୁର୍ଟ ଠାରୁ କାରରେ ଗଲାବେଳେ ଜାର୍ମାନୀର ସହର ଓ ଗ୍ରାମାଞ୍ଚଳର ଦୃଶ୍ୟମାନ ଦୃଷ୍ଟିଗୋଚର ହେଲା । ମହାଯୁଦ୍ଧର ୩୦ ବର୍ଷ ମଧ୍ୟରେ ସେ ଦେଶର ଅର୍ଥନୈତିକ ବିକାଶ ଦେଖି ଆଶ୍ଚର୍ଯ୍ୟ ହେଲି । ଯୁଦ୍ଧର ଧ୍ୱଂସସ୍ତୂପ ମଧ୍ୟରୁ ଜାର୍ମାନ ଜାତିର ଉତ୍ଥାନ ସମସ୍ତଙ୍କୁ ବିସ୍ମିତ କରିଛି । ସନ୍ଧ୍ୟା ପୂର୍ବରୁ ହାଇଡ଼େଲବାର୍ଗ ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ପହଞ୍ଚିଲି ।

ନେକାର ନାମକ ନଦୀ କୂଳରେ ସହରଟି ଅବସ୍ଥିତ । ନିକଟରେ ରହିଛି ଘନ ଜଙ୍ଗଲାବୃତ ପାହାଡ଼ । କୁଲକେ ଜଣାଇଲେ, ହାଇଡେଲବାର୍ଗ ବିଶ୍ୱବିଦ୍ୟାଳୟ ହେଉଛି ଜାର୍ମାନୀର ସର୍ବପ୍ରାଚୀନ ବିଶ୍ୱବିଦ୍ୟାଳୟ । ସହର ଗଢ଼ିଉଠିଛି ସେହି ଶିକ୍ଷାନୁଷ୍ଠାନକୁ କେନ୍ଦ୍ର କରି । ୬ ଶହ ବର୍ଷ ପୂର୍ବେ ମହାମାନ୍ୟ ପୋପଙ୍କ ଦ୍ୱାରା ବିଶ୍ୱବିଦ୍ୟାଳୟ ସ୍ୱୀକୃତି ଲାଭ କରିଥିଲା । ସହରର ଲୋକସଂଖ୍ୟା ମାତ୍ର ୧ ଲକ୍ଷ ୨୫ ହଜାର । କିନ୍ତୁ ଲକ୍ଷ ଲକ୍ଷ ପର୍ଯ୍ୟଟକ ସେଠାକୁ ଭ୍ରମଣ ଲାଗି ଆସନ୍ତି । ସେମାନଙ୍କ ପାଇଁ ସର୍ବଶ୍ରେଷ୍ଠ ଦର୍ଶନୀୟ ପଦାର୍ଥ ହେଉଛି ୪ ଲକ୍ଷ ବର୍ଷ ପୂର୍ବେ ପୃଥିବୀରେ ବାସ କରୁଥିବା ମନୁଷ୍ୟର ଗୋଟିଏ 'କଲପାଟି' (Jaw) । ସୁଦୂର ଅତୀତର ସେହି ଅପୂର୍ଣ୍ଣାଙ୍ଗ ମନୁଷ୍ୟମାନଙ୍କୁ 'ହାଇଡେଲବାର୍ଗ ମନୁଷ୍ୟ' ବୋଲି କୁହାଯାଇଛି । ୧୯୦୭ ମସିହାରେ ଏହି ପାଟି ଆବିଷ୍କୃତ ହେଲାପରେ ମନୁଷ୍ୟର ବିବର୍ତ୍ତନ ସମ୍ବନ୍ଧରେ କେତେକ ଆଭାସ ମିଳିଥିଲା ।

ସନ୍ଧ୍ୟାପରେ କୁଲ୍‌କେ ନେଇଗଲେ ଗୋଟିଏ ବିଚିତ୍ର ସ୍ଥାନକୁ । ତିନି ଶହ ବର୍ଷ ପୂର୍ବେ ଫରାସୀମାନେ ବାରମ୍ବାର ହାଇଡେଲବାର୍ଗ ଆକ୍ରମଣ କରି ସହରର ପ୍ରାଚୀନ ସୌଧଗୁଡ଼ିକୁ ମାଟିରେ ମିଶାଇ ଦେଇଥିଲେ । ଯେଉଁ ଅଳ୍ପ କେତୋଟି ଘର ରକ୍ଷା ପାଇଯାଇଥିଲା ତା ମଧ୍ୟରେ ରହିଛି 'ପବିତ୍ର ଆତ୍ମା ଗିର୍ଜା' ବା Holy Ghost Church । ସେହି ପ୍ରାଚୀନ ଗିର୍ଜାଗୃହର ଭୋଜନାଳୟରେ ରାତ୍ରିଭୋଜନ ବ୍ୟବସ୍ଥା କରାଯାଇଥାଏ । ଦକ୍ଷିଣଏସିଆ ବିଭାଗର ଅଧ୍ୟାପକମାନେ ଉପସ୍ଥିତ ଥାନ୍ତି । ଜଳୁଥାଏ ମହମବତି । ପୁରାତନ ସମୟର ପରିବେଶ ସେଠାରେ ବଜାୟ ରଖାଯାଇଛି । ମଧ୍ୟଯୁଗୀୟ ଢାଞ୍ଚାରେ ତିଆରି ହୋଇଥିବା ଚେୟାର ଟେବୁଲ ଦେଖିଲି । ଖାଇବାକୁ ବସିଲାବେଳେ ଜଣେ ଅଧ୍ୟାପକ ଶ୍ରଦ୍ଧା ସହ କହିଲେ,

"ନିଜକୁ ବର୍ତ୍ତମାନ ପଞ୍ଚଦଶ ଶତାବ୍ଦୀର ଖ୍ରୀଷ୍ଟିଆନ୍ ସନ୍ନ୍ୟାସୀ ବୋଲି ଭାବିବାକୁ ହେବ ।" ମୁଁ ଉତ୍ତର ଦେଲି, "ଏପରି ପବିତ୍ର ଗିର୍ଜାରେ ମୁଁ ହିନ୍ଦୁ ସନ୍ନ୍ୟାସୀମାନଙ୍କ ପରି ପବିତ୍ର ଖାଦ୍ୟ ଖାଇବି ।" ମୋ କଥାର ଭାବାର୍ଥ ବୁଝିପାରି ଅଧ୍ୟାପକ ରୋଥାରମଣ୍ଡ ମୋ ପାଇଁ ନିରାମିଷ ଖାଦ୍ୟ ମଗାଇଲେ । ମିଞ୍ଜି ମିଞ୍ଜି ଜଳୁଥିବା ମହମବତିର ଆଲୋକରେ ଖାଇବାକୁ ଭଲ ଲାଗିଲା । ଆଧୁନିକତ୍ୱର ଲେଶ୍ ନଥିବା ଗିର୍ଜାର ପବିତ୍ର ପରିବେଶରେ ଶାନ୍ତି ପାଇଲି ।

ସହର ବାହାରେ ଥିବା ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ମୋତେ ଛାଡ଼ିଦେଇ ଅନ୍ୟମାନେ ବିଦାୟ ନେଲେ । ଜଣେମାତ୍ର ପରିଚାରକ ଛଡ଼ା ଆଉ କେହି ନଥାନ୍ତି । ଶୋଇବାଘରକୁ ପଶିଯାଇ ତଟସ୍ଥ ହୋଇ ଦେଖିଲି, ମୂଲ୍ୟବାନ ସୋଫା ପଡ଼ିଛି, କିନ୍ତୁ ପଲଙ୍କ ନାହିଁ । ରାତି ୧୧ ଟା । ପରିଚାରକଙ୍କୁ ଡାକିବା ଲାଗି ଇଚ୍ଛା ହେଲା ନାହିଁ । ଗତ ରାତିର ଉଜାଗର ଯୋଗୁଁ ଆଖି ବୁଜିଆସୁଥାଏ । ତେଣେ, ଶୀତରେ ଦେହ ଥରୁଥାଏ, ଅଥଚ କମ୍ବଳ ନଥାଏ । ମନେ ମନେ କୁଲକେ ପ୍ରତି ଗାଳି ବର୍ଷଣ କରି ସୋଫାରେ ଶୋଇବି ବୋଲି ବସିପଡ଼ିଲା କ୍ଷଣି, ସୋଫାଟିର ଅର୍ଦ୍ଧାଧିକ ଅଂଶ କାନ୍ଥ ଭିତରୁ ବାହାରି ଆସି ପଲଙ୍କର ଆକାର ନେଲା । ସେଥି ସଙ୍ଗେ, ମୁଣ୍ଡ ପାଖରେ ତକିଆ ଓ ଗୋଡ଼ ପାଖରେ କମ୍ବଳ ।

ପରଦିନ ସକାଳ ୯ଟାରେ ସହର ବାହାରେ ଥିବା ହାଇଡେଲବାର୍ଗ ଦୁର୍ଗ ଦେଖାଇବାକୁ କୁଲ୍‌କେ ନେଇଗଲେ । ନଦୀର ଅପରପାର୍ଶ୍ୱରେ ଦଣ୍ଡାୟମାନ ଥିବା ୩୩୦ ଫୁଟ ଉଚ୍ଚତା ବିଶିଷ୍ଟ ସେହି ପ୍ରାଚୀନ ଦୁର୍ଗ ଦୂରରୁ ଭୟପ୍ରଦ ଦେଖାଯାଉଥାଏ । ଜରାଜୀର୍ଣ୍ଣ ଅବସ୍ଥାରେ ରହିଥିବା ସାତଶହ ବର୍ଷର ପଥରଦୁର୍ଗ ଦେଖିବା ଲାଗି ଅନେକ ପର୍ଯ୍ୟଟକ ଆସନ୍ତି । ଦୁର୍ଗର ଭୂଗର୍ଭରେ ଥାଏ ଭଣ୍ଡାର ଘର । ତା ଭିତରେ ଦେଖିବାକୁ ମିଳିଲା ମଦ୍ୟ ରଖାଯାଉଥିବା ପ୍ରକାଣ୍ଡ ପିଁପା । ସେଥିରେ ପ୍ରାୟ ୨ ଲକ୍ଷ ଲିଟାର ମଦ ସଞ୍ଚିତ ରହୁଥାଏ ।

୧୨ଟା ବେଳେ ସେଠାରୁ ଫେରିଲି । ଅପରାହ୍ଣରେ ବିଶ୍ୱବିଦ୍ୟାଳୟର ଦକ୍ଷିଣଏସିଆ ବିଭାଗ ଦେଖିବାକୁ ଗଲି । ଗୋଟିଏ କକ୍ଷ ମଧ୍ୟରେ ରଖାଯାଇଥାଏ ଓଡ଼ିଆ ଭାଷାର ବହୁସଂଖ୍ୟକ ପୁସ୍ତକ । ପାର୍ଶ୍ୱବର୍ତ୍ତୀ କକ୍ଷରେ ଅଧ୍ୟାପକ ଓ ଛାତ୍ରମାନଙ୍କୁ ଇତିହାସ ଗବେଷଣା ସମ୍ପର୍କରେ ଭାଷଣଟିଏ ଦେଲି ।

ଭାଷଣ ଶେଷରେ ସାମାନ୍ୟ ଘଟଣାଟିଏ ପାଇଁ ମନସ୍ତାପ କରିବାକୁ ହେଲା । ବାହାରି ଆସୁଥିବାବେଳେ ଦରଜା ପାଖରେ ଅପେକ୍ଷା କରିଥିବା ଜଣେ ମହିଳା କର୍ମଚାରୀ ଖଣ୍ଡିଏ ଲଫାଫା ଭିତରେ ଟଙ୍କା ରଖି ମୋ ହାତକୁ ବଢ଼ାଇ ଦେଲା କ୍ଷଣି ପାଟିରୁ ବାହାରିପଡ଼ିଲା, "No. Thanks" । ସେତିକିରେ ନିମିଷ ମଧ୍ୟରେ

ସେ ଫେରିପଡ଼ି ଚାଲିଗଲେ । ଆମ ଓଡ଼ିଶାରେ ଗୋଟିଏ କଥା ଅଛି 'ଉପରୋଧରେ ଲୋକେ ଢିଙ୍କି ଗିଳନ୍ତି' । ଅର୍ଥାତ୍, ବାରମ୍ବାର ଅନୁରୋଧ କଲେ ଭୋକ ଥାଉ ବା ନଥାଉ, ଜଣେ ଖାଇବାକୁ ବାଧ୍ୟ ହୁଏ ଓ ଆକଣ୍ଠ ଭୋଜନ କରିପାରେ । ମୁଁ ଭାବିଥିଲି, ଟଙ୍କା ନେବା ପାଇଁ ଜାର୍ମାନ ମହିଳା ବାରମ୍ବାର ଅନୁରୋଧ କରିବେ ଏବଂ ଶେଷରେ ମୁଁ ଗ୍ରହଣ କରିବି କିମ୍ବା ସେ ମୋ ପକେଟରେ ଗୁଞ୍ଜିଦେବେ । ତଦ୍ଦ୍ୱାରା ଅନ୍ୟମାନେ ଭାବିଥାନ୍ତେ, ନେବା ପାଇଁ ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ନେବାକୁ ହେଲା । କିନ୍ତୁ, 'No. Thanks', ଏହି ଦୁଇଟି ମାତ୍ର ଶବ୍ଦ ଶୁଣି ସେ ଅନ୍ତର୍ଦ୍ଧାନ ହେବେ ବୋଲି ଚିନ୍ତା କରି ନଥିଲି । ନିମନ୍ତ୍ରିତ ଅଧ୍ୟାପକମାନଙ୍କୁ ଅର୍ଥ ଦିଆଯିବା ସବୁ ବିଶ୍ୱବିଦ୍ୟାଳୟର ନିୟମ । ମୋ ପକ୍ଷରେ ପ୍ରାପ୍ୟ ଗହଣ କରିବା ଅସଂଗତ ହୋଇ ନଥାନ୍ତା । ଆସିଲାବେଳେ ଭାବିଲି, ଆମ ସଂସ୍କୃତିର ସୌଜନ୍ୟ ପ୍ରଦର୍ଶନ ଓ ପାଶ୍ଚାତ୍ୟ ସଂସ୍କୃତିର ସିଧା ବ୍ୟବହାର ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି, ଏହି କ୍ଷୁଦ୍ର ଘଟଣା ତା'ର ଗୋଟିଏ ନମୁନା ।

ଏପ୍ରିଲ ୧ ତାରିଖ ଦିନ ହାଇଡେଲବାର୍ଗରୁ ଫ୍ରାଙ୍କଫୁର୍ଟ ଆସି ସେଠାରୁ ବୋମ୍ବେ ଅଭିମୁଖେ ବିମାନ ଧରିଲି ଓ ୩ ତାରିଖ ଦିନ ଭୁବନେଶ୍ୱରରେ ପହଞ୍ଚିଲି ।

# ମିଳିତ ଜାତି ପକ୍ଷରୁ ଆହୂତ ଆନ୍ତର୍ଜାତିକ ସମ୍ମେଳନରେ ଯୋଗଦାନ

୭୭

## ନରଉଇଚ ଯାତ୍ରା (ଜୁଲାଇ ୧୯୭୯)

### 'ଜଳବାୟୁ ଓ ଇତିହାସ ସମ୍ପର୍କରେ ଆନ୍ତର୍ଜାତିକ ସମ୍ମେଳନ

୧୯୭୮ ମସିହା ମାର୍ଚ୍ଚ ମାସରେ ମିଳିତ ଜାତି ସଂଗଠନ ବା United Nations Organisation ପକ୍ଷରୁ ପ୍ରକାଶିତ ବିଜ୍ଞପ୍ତିରୁ ଜାଣିପାରିଲି ଯେ, ଇଂଲଣ୍ଡର ନରଉଇଚ୍ ସହରରେ ୧୯୭୯ ଜୁଲାଇ ମାସରେ ଏକ ଆନ୍ତର୍ଜାତିକ ସମ୍ମେଳନ ଆହୂତ ହେବ । ସେଥିରେ 'ଜଳବାୟୁର ପ୍ରଭାବ ଓ ମନୁଷ୍ୟ ଜାତିର ଇତିହାସ ମଧ୍ୟରେ ଥିବା ସମ୍ପର୍କ' ବିଷୟରେ ସପ୍ତାହବ୍ୟାପୀ ପାଠଚକ୍ରରେ ଅଂଶ ଗ୍ରହଣ ନିମନ୍ତେ ବୈଜ୍ଞାନିକ ଓ ଐତିହାସିକମାନେ ସମବେତ ହେବେ । ମିଳିତ ଜାତିର ଆନୁକୂଲ୍ୟରେ ଆୟୋଜିତ ହେବାକୁ ଥିବା ସେହି ସମାବେଶରେ ଯୋଗଦେବା ଲାଗି ପ୍ରଥମେ ଗୋଟିଏ ମୌଳିକ ପ୍ରବନ୍ଧ ପଠାଇବାକୁ ହେବ । ବିଶେଷଜ୍ଞମାନଙ୍କ ଦ୍ୱାରା ମନୋନୀତ ହେଲାପରେ, ମିଳିତ ଜାତିର ଖର୍ଚ୍ଚରେ ସମ୍ମେଳନରେ ଯୋଗ ଦେବା ପାଇଁ ନିମନ୍ତ୍ରଣ ମିଳିବ । ସ୍ୱତନ୍ତ୍ର ଭାବେ ଆମନ୍ତ୍ରିତ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକମାନେ ଜଳବାୟୁର କ୍ରିୟା ପ୍ରକ୍ରିୟା ବିଷୟରେ ଭାଷଣ ଦେବେ । ମନୁଷ୍ୟଜାତିର ଅତୀତ ଓ ବର୍ତ୍ତମାନ ଜଳବାୟୁ ଦ୍ୱାରା କିପରି ଭାବରେ ପ୍ରଭାବିତ ହୋଇ ଆସିଛି, ସେଥି ଉପରେ ଆଲୋକପାତ କରିବା ହେବ ସମ୍ମେଳନର ଲକ୍ଷ୍ୟ । ସେହି ବିଶ୍ଳେଷଣ ମଧ୍ୟରୁ ମନୁଷ୍ୟ ଜାତିର ଭବିଷ୍ୟତ ପ୍ରତି ପ୍ରାକୃତିକ ପରିବେଶ ଓ ପାରିପାର୍ଶ୍ୱିକ ପରିବେଷ୍ଟନୀ ଦୃଷ୍ଟିରୁ ପ୍ରକାଶ ପାଇଥିବା ଆଶଙ୍କା ସମ୍ବନ୍ଧରେ ସୂଚନା ମିଳିବ ।

ସମ୍ମେଳନର ମହତ୍ତ୍ୱ ଦୃଷ୍ଟିରୁ ସେଥିରେ ଯୋଗ ଦେବା ଲାଗି ମନ ଅଥୟ ହେଲା । କିନ୍ତୁ ଉଚ୍ଚାଙ୍ଗ ପ୍ରବନ୍ଧଟିଏ ଲେଖି ନ ପାରିଲେ ଆଶା ନିରର୍ଥକ ହେବା ନିଶ୍ଚିତ ଥାଏ । ସମଗ୍ର ଦେଶର ଜଳବାୟୁ ବିଷୟ ଚିନ୍ତା କରିବା ଅସମ୍ଭବ ଜାଣି, କେବଳ ଓଡ଼ିଶାର ଜଳବାୟୁ ପ୍ରତି ଧ୍ୟାନ ଦେଲି । ଏକଦା ସୁମହାନ

ଥିବା କଳିଙ୍ଗର ଅଧୋଗତି ନିମନ୍ତେ ଜଳବାୟୁ ଅନେକାଂଶରେ ଦାୟୀ କି ? ଓଡ଼ିଶାର ସମୁଦ୍ରକୂଳ କାହିଁକି ନୌବାଣିଜ୍ୟ ଲାଗି ପୂର୍ବପରି ଉପଯୋଗୀ ରହିଲା ନାହିଁ ? କାହିଁକି ଓଡ଼ିଶାର ପ୍ରାଚୀନ ନଦ ନଦୀ ମଧ୍ୟଯୁଗର ଶେଷ ବେଳକୁ ପୂର୍ବ ପ୍ରଖରତା ହରାଇବସିଲା ? ଏକଦା ଶସ୍ୟଶ୍ୟାମଳା ଥିବା ଉପତ୍ୟକାମାନ କାହିଁକି ନୀରସ ଆକାର ଧାରଣ କଲା ? ପର୍ଯ୍ୟାପ୍ତ ଅରଣ୍ୟାନୀର ଅବକ୍ଷୟ କାହିଁକି ଘଟିଲା ? ବୃଷ୍ଟିପାତ ହ୍ରାସ ପାଇଲା କାହିଁକି ? ଜଳବାୟୁର କେଉଁ ପ୍ରକାର ପରିବର୍ତ୍ତନ ଫଳରେ ବାରମ୍ବାର ମରୁଡ଼ି ଦେଖାଦେଲା ? ବଙ୍ଗୋପସାଗରରେ ଲଘୁଚାପର କାରଣ କ'ଣ ? କେଉଁ କାରଣ ଲାଗି ବାରମ୍ବାର ପ୍ରବଳ ବାତ୍ୟା ଦେଖିବାକୁ ମିଳେ ? ମଧ୍ୟେ ମଧ୍ୟେ ପ୍ରବଳ ବନ୍ୟା ଦେଖା ଦିଏ କାହିଁକି ? ମ୍ୟାଲେରିଆ ଓ ଫାଇଲେରିଆ ପ୍ରଭୃତି ବ୍ୟାଧିର ବ୍ୟାପକତା ଲାଗି ଜଳବାୟୁ ଦାୟୀ କି ? ଓଡ଼ିଶାର ଆର୍ଥିକ ଦୁର୍ଦ୍ଦଶା ନିମନ୍ତେ ଜଳବାୟୁ କେତେଦୂର ଦାୟୀ ହୋଇପାରେ ? ନଦୀ ମୁହାଣଗୁଡ଼ିକ ପୋତିହୋଇ ପଡ଼ିଲା କାହିଁକି ? ଜଳବାୟୁର ପରିବର୍ତ୍ତନ ସହିତ ଖାଦ୍ୟାଭ୍ୟାସର ସମ୍ପର୍କ ଅଛି କି ? ଏହିପ୍ରକାର କେତେକ ବିଷୟ ଅନୁଧ୍ୟାନ କରି ପ୍ରବନ୍ଧଟିଏ ଲେଖିଲି ।

ପ୍ରବନ୍ଧର ପ୍ରଥମ ଭାଗରେ ପ୍ରାଚୀନ କଳିଙ୍ଗର ଗୌରବରାଜି, ସାଗର-ସେପାରି ସାମ୍ରାଜ୍ୟ ବିସ୍ତାର, ଭାରତବିଦିତ ପରାକ୍ରମର ବିବରଣୀ, ସ୍ଥାପତ୍ୟ ଓ କଳା କ୍ଷେତ୍ରରେ ଅପୂର୍ବ କୃତିତ୍ୱ ଇତ୍ୟାଦି ବର୍ଣ୍ଣନା କଲି । ଦ୍ୱିତୀୟ ଭାଗରେ, ପରବର୍ତ୍ତୀ ସମୟର ବିପର୍ଯ୍ୟୟ ଲାଗି ସମ୍ଭବତଃ ଜଳବାୟୁ କେତେଦୂର ଦାୟୀ ହୋଇପାରେ, ସେଥି ଉପରେ ଆଲୋକପାତ କଲି ।

ନରଉଇଚ୍‌ସ୍ଥିତ ଇଷ୍ଟ ଆଂଲିଆ ବିଶ୍ୱବିଦ୍ୟାଳୟର ଜଳବାୟୁ ଗବେଷଣା କେନ୍ଦ୍ରର ଅଧ୍ୟକ୍ଷ ତଥା ପରିବେଶବିଜ୍ଞାନୀ ଡକ୍ଟର ଏଇଚ.ଏଇଚ. ଲ୍ୟାମ୍ବଙ୍କ ନିକଟକୁ ପ୍ରବନ୍ଧ ପଠାଇଲି । ଯଥାସମୟରେ ତାଙ୍କ ନିକଟରୁ ଉତ୍ତର ଆସିଲା, ପ୍ରବନ୍ଧ ମନୋନୀତ ହୋଇଛି ଏବଂ ବିଶେଷଜ୍ଞ କମିଟି ତାହାର ଶିରୋନାମ ରଖିଛନ୍ତି, ''ଜଳବାୟୁ ଏବଂ ଭାରତୀୟ କଳିଙ୍ଗ ଜାତିର ମହତ୍ତ୍ୱ ଓ ଅଧୋଗତି'' ।

ନିମନ୍ତ୍ରଣପତ୍ର ପାଇ ଆନନ୍ଦର ସୀମା ରହିଲା ନାହିଁ । ଭାରତରୁ ଅନ୍ୟ ଜଣେ ମାତ୍ର ପରିବେଶବିଦ୍ ଡାକ ପାଇଛନ୍ତି ବୋଲି ଖବର ପାଇଲି । ୧୯୭୯ ମାର୍ଚ୍ଚ ମାସରେ ନୂତନ ଦିଲ୍ଲୀସ୍ଥିତ UN ଅଫିସରୁ ଅନୁମତିପତ୍ର ଓ ବିମାନ ଟିକଟ ମିଳିଗଲା । ଜୁଲାଇ ୮ ତାରିଖରୁ ୧୪ ତାରିଖ ପର୍ଯ୍ୟନ୍ତ ଥାଏ ସମ୍ମେଳନର କାର୍ଯ୍ୟସୂଚୀ ।

## ନିରଉଇଚ ଯାତ୍ରା

ଜୁଲାଇ ୫ ତାରିଖ ରାତ୍ରିର ଶେଷକାଳରେ ଦିଲ୍ଲୀ ବିମାନଘାଟିରୁ ବ୍ରିଟିଶ ଏୟାର ଉଏଜ୍ ବିମାନରେ ଲଣ୍ଡନ ଯାତ୍ରା ଲାଗି ବ୍ୟବସ୍ଥା ହୋଇଥାଏ । ଟିକଟ ଦେଖାଇ ବୋର୍ଡ଼ିଂ କାର୍ଡ଼ ପାଇ ବିମାନ ଦିଗକୁ ଚାଲିଯାଉଥିବା ସମୟରେ ପଛରୁ ଜଣେ କର୍ମଚାରୀ ଦୌଡ଼ିଆସି କ୍ଷମା ମାଗିଲେ, ''ଆପଣଙ୍କୁ ଭୁଲ୍ ବୋର୍ଡ଼ିଂ କାର୍ଡ଼ ଦେଇଦେଇଛି । ଆପଣ ଫାର୍ଷ୍ଟକ୍ଲାସ ଯାତ୍ରୀ, ଆପଣଙ୍କ କାର୍ଡ଼ ସ୍ୱତନ୍ତ୍ର ।'' ଏତକ କହି ନୂଆ ବୋର୍ଡ଼ିଂ କାର୍ଡ଼ ଧରାଇଦେଲେ ।

ବିମାନର ଆଗ ଭାଗରେ ଥିବା ଫାର୍ଷ୍ଟକ୍ଲାସରେ ପ୍ରବେଶ କଲି । ପ୍ରାୟ ୨୦ଟି ସିଟ୍ ଥାଏ । କିନ୍ତୁ ଏକମାତ୍ର ଯାତ୍ରୀ ମୁଁ । ଜଣେ ଇଂରେଜ ପରିଚାରିକା ଗୋଟିଏ ଧାଡ଼ିର ସିଟ୍‌ଗୁଡ଼ିକୁ ସୋଫା ପରି ପ୍ରଶସ୍ତ କରିଦେଇ କହିଲେ, ''ଇଚ୍ଛା କଲେ ଆପଣ ଆରାମରେ ଶୋଇପାରିବେ ।'' ମୁଁ କହିଲି, ''ଶୋଇବା ଅପେକ୍ଷା ବସିରହି ଝରକା ବାଟେ ସ୍ଥଳଭାଗର ଦୃଶ୍ୟ ଦେଖିବାକୁ ଭଲ ଲାଗିବ ।''

ପ୍ରଭାତ ସମୟରେ ବିମାନ ଛାଡ଼ିଲା । କିଛି ସମୟ ପରେ ଅନ୍ୟ ଜଣେ ପରିଚାରିକା ପାଖକୁ ଆସି ଖଣ୍ଡିଏ ରଙ୍ଗିନ କାର୍ଡ଼ ମୋ ହାତରେ ଦେଇ ଛିଡ଼ା ହୋଇ ରହିଲେ । ସେଥିରେ ନାନା କିସମର ମଦର ନାମ ଲେଖାଥାଏ, କିନ୍ତୁ ମୂଲ୍ୟ ଉଲ୍ଲେଖ ନଥାଏ । କାର୍ଡ଼ଟି ଫେରାଇଦେବାରୁ ସ୍ମିତହାସ୍ୟ ସହ ସେ ଜଣାଇଲେ, ''ପ୍ରଥମ ଶ୍ରେଣୀର ଯାତ୍ରୀମାନେ ଯେଉଁ ପ୍ରକାର ମଦ୍ୟ ମାଗିବେ, ଦିଆଯିବ । ଯେତେ ଇଚ୍ଛା ପିଇପାରିବେ । ଦାମ୍ ଦେବାକୁ ପଡ଼ିବ ନାହିଁ ।'' ଧନ୍ୟବାଦ ସହ ''ମୋର ଅଭ୍ୟାସ ନାହିଁ'' ବୋଲି କହିବାରୁ ସେ ତାଙ୍କ ସଙ୍ଗିନୀ ମୁହଁକୁ ଚାହିଁରହି ହସିପକାଇଲେ ।

କିଛି ସମୟ ପରେ ଆଉ ଖଣ୍ଡିଏ କାର୍ଡ଼ ଆଣି ଧରାଇଦେଲେ । ତାହା ଥାଏ ମେନ୍ୟୁ ବା ଖାଦ୍ୟତାଲିକା । ବିଫ୍ ଓ ବ୍ୟାକନ, ଅର୍ଥାତ୍ ଗୋମାଂସ ଓ ଶୂକରମାଂସ ଠାରୁ କଡ଼୍ ମାଛ ପର୍ଯ୍ୟନ୍ତ ବିଭିନ୍ନ ଖାଦ୍ୟର ନାମ ଥାଏ । ମୁଁ କହିଲି, "I am a Strict Vegetarian." ହସିଦେଇ ସେ ଚାଲିଗଲେ । ଅଳ୍ପ ସମୟ ମଧ୍ୟରେ ନିରାମିଷ ଜଳଖିଆ ଥିବା ପ୍ଲେଟଟି ମୋ ଆଗରେ ରଖିଦେଇ ନମ୍ରତା ମିଶ୍ରିତ ପରିହାସ ଛଳରେ ପଚାରିଲେ, ''ଯଦି ଆରାମରେ ଶୋଇବେ ନାହିଁ, ମଦ୍ୟପାନ କରିବେ ନାହିଁ କିମ୍ବା ମାଂସ ଖାଇବେ ନାହିଁ, ତେବେ ଅଯଥା ଅର୍ଥବ୍ୟୟ କରି ଫାର୍ଷ୍ଟକ୍ଲାସ ଟିକଟ କିଣିଲେ କାହିଁକି ? ଜଣେ ବିତ୍ତଶାଳୀ ଓ ବୁଦ୍ଧିମାନ ବିମାନଯାତ୍ରୀଙ୍କ ନିକଟରୁ ଏପରି ନିଷ୍ଠା ଆଶା କରାଯାଏ ନାହିଁ ।''

ରହସ୍ୟ କରି ଉତ୍ତର ଦେଲି, "ମୁଁ କୋଟିପତି ନୁହେଁ, କିମ୍ବା ଆପଣଙ୍କ ଅନୁମାନ ଅନୁଯାୟୀ ନିର୍ବୋଧ ମଧ୍ୟ ନୁହେଁ । ମୋ ଟଙ୍କାରେ ଟିକଟ କିଣି ନାହିଁ, ଟିକଟ ଦେଇଛନ୍ତି 'ମିଳିତ ଜାତି' । ମଦ୍ୟ, ମାଂସର ସୁବିଧା ମିଳିଗଲେ ବି ମୋ ସ୍ୱଭାବ ବଦଳ କରିବି କାହିଁକି ?" "O, I see ! So you need magazines to read, not wine to drink," ଏତକ କହି ସେ ଗୁଡ଼ାଏ ମେଗାଜିନ ଆଣି ମୋ ପାଖରେ ଥୋଇଦେଲେ । ବିମାନ ଉଡୁଥାଏ ଅନେକ ଉର୍ଦ୍ଧ୍ୱରେ । ମେଘ ଓ କୁହେଳି ମଧ୍ୟରେ ସ୍ଥଳଭାଗର ଦୃଶ୍ୟ ହଜିଯାଇଥାଏ । ତେଣୁ ଅର୍ଦ୍ଧଶୟିତ ଅବସ୍ଥାରେ ମେଗାଜିନଗୁଡ଼ିକ ପଢ଼ିବାକୁ ଲାଗିଲି ।

ଅପରାହ୍ନରେ ଜେନେଭା ଠାରେ କିଛି ସମୟ ରହି ବିମାନ ଚାଲିଲା ଲଣ୍ଡନ । ଲଣ୍ଡନ ହିଥରୋ ଘାଟିରେ 'ବିମାନ ବନ୍ଦର ହୋଟେଲ'ରେ ଗୋଟିଏ ଦିନ ରହିବାକୁ ହେଲା । ୭ ତାରିଖ ଅପରାହ୍ନରେ ଖଣ୍ଡିଏ କ୍ଷୁଦ୍ରାକୃତି ଉଡ଼ାଜାହାଜରେ ନରଉଇଚ୍ ଗଲି । ବିମାନରେ ଅନ୍ୟ ଦେଶର ପ୍ରତିନିଧିମାନେ ଭର୍ତ୍ତି ଥିଲେ । ସନ୍ଧ୍ୟାବେଳେ ଇଷ୍ଟ ଆଙ୍ଗ୍ଲିଆ ବିଶ୍ୱବିଦ୍ୟାଳୟ କେମ୍ପାସ୍‌ରେ ପହଞ୍ଚିଲି ।

**ନରଉଇଚ ସମ୍ମେଳନ**— ମୋ ଜୀବନକାଳରେ ଦେଶ ବିଦେଶରେ ଯେତେ ପ୍ରକାର ପାଠଚକ୍ର, ଆଲୋଚନା ସଭା କିମ୍ବା ସମ୍ମେଳନରେ ଯୋଗ ଦେଇଛି, ସେଥି ମଧ୍ୟରେ ନରଉଇଚ ଆନ୍ତର୍ଜାତିକ ସମ୍ମେଳନର ଅଭିଜ୍ଞତା ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ସ୍ୱୀକାର କରିବି । ମିଳିତ ଜାତି ସେହି ସ୍ଥାନଟି ନିର୍ବାଚନ କରିଥିଲେ ଦୁଇଟି କାରଣ ଲାଗି । ପ୍ରଥମତଃ, ସ୍ଥାନଟିର ସୌନ୍ଦର୍ଯ୍ୟ ଓ ପରିବେଶ ସମସ୍ତଙ୍କ ପ୍ରତି ଚମକପ୍ରଦ ଥିଲା ଓ ଦ୍ୱିତୀୟରେ, ସେଠାକାର 'ଜଳବାୟୁ ଗବେଷଣା କେନ୍ଦ୍ର'ର ଖ୍ୟାତି ବୈଜ୍ଞାନିକମାନେ ଭଲଭାବେ ଜାଣିଥିଲେ । ନରଉଇଚ୍ ସହରକୁ 'ଉତ୍ତମ ସମ୍ମେଳନ ସହର' ବୋଲି କୁହାଯାଇଥାଏ, କାରଣ ଶାନ୍ତ, ନୀରବ ଓ ନିର୍ଜନ ପ୍ରାକୃତିକ ପୃଷ୍ଠଭୂମିରେ ସେହି ମଧ୍ୟଯୁଗୀୟ ସହରଟି ଦେଖିବାକୁ ମିଳେ । ସହରଟି ସମ୍ପର୍କରେ ମତ ଦିଆଯାଇଛି, "A fine old city– view it from whatever side you will." ।

ସହର ଠାରୁ ଦୁଇମାଇଲ ଦୂରରେ ଥିବା ଅରଣ୍ୟ ପରିବେଷ୍ଟିତ ଏକ ସମତଳ ସ୍ଥାନରେ ୧୯୬୧ ମସିହାରେ ଇଷ୍ଟ ଆଙ୍ଗ୍ଲିଆ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଅଧ୍ୟାପକ ଓ ଛାତ୍ରମାନଙ୍କ ପାଇଁ ଏପରି ସୁବିଧାଜନକ ବ୍ୟବସ୍ଥାମାନ କରାଯାଇଛି ଯେ କେମ୍ପାସ୍ ବାହାରକୁ କିମ୍ବା ସହର ଭିତରକୁ ଯିବା ଦରକାର ପଡ଼େନାହିଁ । ପାଠାଗାର ଗୁଡ଼ିକର ପାଖକୁ ପାଖ ଲାଗି ରହିଛି ଦୋକାନ ଘର, ସିନେମା ହଲ ଓ ଖେଳଘର । ଯେଉଁ ଦିଗକୁ ଚାହିଁଲେ ପ୍ରାକୃତିକ ଶୋଭା । ସମ୍ପୂର୍ଣ୍ଣ ନୀରବ ପରିବେଶ ।

**ପ୍ରତିନିଧି ଦଳ**— ଜୁଲାଇ ୮ ତାରିଖ ପୂର୍ବାହ୍ନରେ ପ୍ରତିନିଧିମାନେ ସମବେତ ଅବସ୍ଥାରେ ନିଜ ନିଜ ପରିଚୟ ଦେଲାବେଳେ ଜଣାପଡ଼ିଲା, ପୃଥିବୀର ବିଭିନ୍ନ ଦେଶରୁ ଶତାଧିକ ପ୍ରତିନିଧି ଆଲୋଚନାରେ ଅଂଶଗ୍ରହଣ ଲାଗି ଆସିଛନ୍ତି । ଏମାନେ ପ୍ରତ୍ୟେକେ ନିଜର ପ୍ରବନ୍ଧ ଯୋଗୁଁ ନିମନ୍ତ୍ରଣ ପାଇଥାନ୍ତି । ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇ ଆସିଥାନ୍ତି ୫୦ ଜଣ ବରିଷ୍ଠ ବିଶେଷଜ୍ଞ । ଏତଦ୍ ବ୍ୟତୀତ, ଇଂଲଣ୍ଡର ପ୍ରତିନିଧି ଗୋଷ୍ଠୀରେ ଥିଲେ ୫୦ ଜଣ ପ୍ରତିଷ୍ଠିତ ଲେଖକ ଓ ବୈଜ୍ଞାନିକ । ସର୍ବମୋଟ ସଭ୍ୟସଂଖ୍ୟା ଥିଲା ୨୦୦ । ଅଧିକାଂଶ ବୈଜ୍ଞାନିକ ଥିଲାବେଳେ, କେତେକେ ଥିଲେ ନୋବେଲ ପୁରସ୍କାର ବିଜେତା । ଯଦିଚ, 'ଜଳବାୟୁ ଓ ଇତିହାସ' ଥାଏ ଆଲୋଚ୍ୟ ବିଷୟ, ତଥାପି କେବଳ ଚୀନ, ରୁଷିଆ, ଭାରତ, ଯୁକ୍ତରାଷ୍ଟ୍ର ଓ ଜାପାନ, ଏହି ପାଞ୍ଚଟି ଦେଶରୁ ୧୦ ଜଣ ମାତ୍ର ଐତିହାସିକ ନିଜ ନିଜ ଦେଶ ସମ୍ବନ୍ଧରେ କହିବା ଲାଗି ନିମନ୍ତ୍ରିତ ହୋଇଥିଲେ ।

**ଆଲୋଚ୍ୟ ବିଷୟ**— ବିଷୟ ତାଲିକାରୁ ଜଣା ପଡ଼ିଗଲା ଯେ, ବୃହତ୍ତର ପରିବ୍ୟାପକ ପ୍ରକୃତି, ଜଳବାୟୁ, ପଶୁପକ୍ଷୀ, ବୃକ୍ଷଲତା, ପାହାଡ଼ ପର୍ବତ, ନଦନଦୀ, ସାଗର ମହାସାଗର, କୀଟ ପତଙ୍ଗ ଏବଂ ଏପରିକି କୀଟାଣୁ ବୀଜାଣୁ ପ୍ରଭୃତି ଦ୍ୱାରା ମନୁଷ୍ୟ ଜାତିର ଭାଗ୍ୟ କିପରିଭାବରେ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ସମୟରେ ପ୍ରଭାବିତ ହୋଇଆସିଛି, ସେଥି ଉପରେ ବିବିଧ ଦୃଷ୍ଟିରୁ ଆଲୋକପାତ କରାଯିବ । ବିଶେଷଜ୍ଞମାନେ ସ୍ଲାଇଡ଼ ଓ ଫିଲମ୍ ମାଧ୍ୟମରେ ସେମାନଙ୍କ ତଥ୍ୟମାନ ଉପସ୍ଥାପନ କରିବେ । ପ୍ରତିଦିନ ସକାଳ ୯ ଟାରୁ ୧୨ଟା ୩୦ ଓ ଅପରାହ୍ନ ୨ଟାରୁ ସନ୍ଧ୍ୟା ୭ଟା ୩୦ ମିନିଟ ପର୍ଯ୍ୟନ୍ତ ପ୍ରବନ୍ଧ ପାଠ, ଆଲୋଚନା, ତର୍କ ବିତର୍କ କ୍ରମାଗତ ଭାବେ ୭ ଦିନ ପର୍ଯ୍ୟନ୍ତ ଲାଗିରହିବ ବୋଲି ସୂଚିତ ହୋଇଥାଏ ।

**ଉଦ୍‌ଘାଟନ ଉତ୍ସବ**— ୮ ତାରିଖ ୧୧ଟା ସମୟରେ ଉଦ୍‌ଘାଟନ ଉତ୍ସବ ଦେଖିବାକୁ ପ୍ରାୟ ୩ ହଜାର ଦର୍ଶକ ଏକ ସୁବୃହତ କକ୍ଷ ମଧ୍ୟରେ ଆସନ ନେଇଥିଲେ । ମୋର ଧାରଣା ଥାଏ, ଇଂଲଣ୍ଡର ରାଣୀ କିମ୍ବା ପ୍ରଧାନମନ୍ତ୍ରୀ, ଅଥବା ଜାତି ସଂଗଠନର ସେକ୍ରେଟାରୀ ଜେନେରାଲ ସମ୍ମେଳନ ଉଦ୍‌ଘାଟନ କରିବେ । ଭାବିଥିଲି, ମାଲ୍ୟଦାନ, ସଂଗୀତ ଗାନ, ପ୍ରଦୀପ ପ୍ରଜ୍ୱଳନ ଓ ଅତିଥିମାନଙ୍କ ପରିଚୟ ପ୍ରଦାନ ଇତ୍ୟାଦି ଆନୁଷ୍ଠାନିକ କ୍ରିୟାକାଣ୍ଡ ମଧ୍ୟରେ ଉଦ୍‌ଘାଟନ ଉତ୍ସବ ସମ୍ପାଦିତ ହେବ । କିନ୍ତୁ ଦେଖିଲି, ମଞ୍ଚ ଉପରେ କୌଣସି ପ୍ରକାର ସାଜସଜ୍ଜାର ଆଭାସ ସୁଦ୍ଧା ନଥାଏ । ପଡ଼ିଥାଏ ଖଣ୍ଡିଏ ଛୋଟ କାଠଚେୟାର ଓ ତା ପାଖରେ

ଥାଏ ମାମୁଲି ଲେକ୍‌ଚାର ଡେସ୍କ । ପଛରେ ଥାଏ ଫିଲ୍‌ମ ପ୍ରଦର୍ଶନ ପାଇଁ ଧଳା ପର୍ଦ୍ଦା ଓ ତା ପାଖରେ ବଡ଼ ବ୍ଲ୍ୟାକ୍ ବୋର୍ଡ଼ ।

ଠିକ୍ ୧୧ଟା ସମୟରେ ଡେସ୍କ ପାଖକୁ ଆସିଗଲେ ଜଣେ ନୋବେଲ ପ୍ରାଇଜ୍ ବିଜେତା ବୈଜ୍ଞାନିକ ଏବଂ ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲେ ତାଙ୍କ ଭାଷଣ । ବିଷୟର ଶିରୋନାମ ଘୋଷଣା କଲେ– "ଅନିର୍ଦ୍ଦିଷ୍ଟ ଅତୀତ କାଳର ବିଶ୍ୱ ଜଳବାୟୁ ଜାଣିବା ନିମନ୍ତେ ବୈଜ୍ଞାନିକ ପ୍ରଚେଷ୍ଟା ।" ମୋ ପରି ଅଧିକାଂଶ ଶ୍ରୋତା ସେପରି କଠିନ ବିଷୟ ବୁଝିପାରି ନଥିବେ ବୋଲି ମନେ ହେଉଥାଏ । କିନ୍ତୁ ନୀରବ ନିଷ୍ପନ୍ଦ ଭାବରେ ସମସ୍ତେ ସେହି ମହାର୍ଘ ଭାଷଣ ଏକାଗ୍ର ଚିତ୍ତରେ ଶୁଣୁଥିବା ଲକ୍ଷ୍ୟ କଲି । ତାଙ୍କର ଦୀର୍ଘ ଏକଘଣ୍ଟାବ୍ୟାପୀ ଭାଷଣ ପରେ ଅନ୍ୟ ଜଣେ ନୋବେଲ ବିଜେତା ଡେସ୍କ ପାଖକୁ ଆସି ଶିରୋନାମ ଘୋଷଣା କଲେ–"ସାମୁଦ୍ରିକ ପ୍ରସ୍ତରୀଭୂତ ଦ୍ରବ୍ୟରୂପକ ଜଳବାୟୁ ଅନୁସନ୍ଧାନର ଉପାଦାନ ।" "ସଭାକକ୍ଷର ବିଜୁଳିବତି ତତ୍‌କ୍ଷଣାତ୍ ନିଭିଗଲା ଓ ପର୍ଦ୍ଦା ଉପରେ ଦେଖିବାକୁ ମିଳିଲା ଗୋଟିଏ ପରେ ଗୋଟିଏ ପ୍ରସ୍ତରୀଭୂତ ଦ୍ରବ୍ୟ, ଏବଂ ତତ୍‌ସହିତ ଲାଗିରହିଲା ବକ୍ତାଙ୍କ ସାରଗର୍ଭକ ଭାଷଣ । ମଞ୍ଚ ଉପରେ ସଭାପତି, ସମ୍ପାଦକ ବା ଅନ୍ୟ କୌଣସି ବ୍ୟକ୍ତିଙ୍କ ଅବସ୍ଥିତି ନଥାଏ । ଦିନ ୧ଟା ବେଳେ ଭାଷଣ ଶେଷ ହେବା ସହିତ ଉଦ୍‌ଘାଟନ ଉତ୍ସବ ସମାପ୍ତ ହେଲା ।

**ଆଲୋଚନା ପ୍ରସଙ୍ଗ** – ଯେଉଁ କଠିନ ବିଷୟମାନ ବୁଝିହେଉ ନଥାଏ, ସେଥିରୁ ମଧ୍ୟ ବିଶ୍ୱର ପ୍ରାକୃତିକ ବିବର୍ତ୍ତନ ଓ ପରିବର୍ତ୍ତନ ସମ୍ପର୍କରେ ଅଭିନବ ସୂଚନା ମିଳୁଥାଏ । ସହଜ ବିଷୟଗୁଡ଼ିକରୁ ଚିନ୍ତା ପରିସର ବଢ଼ିଯିବା ସ୍ୱାଭାବିକ ଥାଏ । ଚିତ୍ର ଓ ସ୍ଲାଇଡ୍ ମାଧ୍ୟମରେ ବୈଜ୍ଞାନିକମାନେ ଅନେକାନେକ ବିଷୟ ପ୍ରତି ଧ୍ୟାନ ଆକର୍ଷଣ କଲାବେଳେ ହୃଦ୍‌ବୋଧ ହେଉଥାଏ, ବିଚିତ୍ର ବିଶ୍ୱର ପରିବ୍ୟାପକ ପ୍ରକୃତି ମନୁଷ୍ୟଜାତିର ଜୀବନଧାରାକୁ କେତେଦୂର ପ୍ରଭାବିତ କରିରଖିଛି !

ଖ୍ୟାତନାମା ବିଶେଷଜ୍ଞମାନଙ୍କ ଆଗରେ ଯେକୌଣସି ବକ୍ତାଙ୍କ ପକ୍ଷରେ ନୂତନ କିଛି କହିବା ସହଜ ନଥାଏ । କେତେକ ବକ୍ତା ମଞ୍ଚସ୍ଥଳକୁ ଯାଇ 'ମୋ ସମୟ ଛାଡ଼ି ଦେଉଛି' ବା 'I donate my time' ବୋଲି କହି ତଳକୁ ଚାଲିଆସୁଥିଲେ । ତାହା ଦେଖି ମୋ ମନରେ ଭୟ ବଢ଼ିଯାଉଥାଏ । ଥରେ ଥରେ ଭାବିଲି, ଦୁଶ୍ଚିନ୍ତାରୁ ତ୍ରାହି ପାଇବା ଲାଗି କିଛି କହିବି ନାହିଁ ବୋଲି ସଂକଳ୍ପ ନେବା ଉଚିତ ହେବ । କିନ୍ତୁ ସେପରି କାମ ପାଇଁ ନୈତିକ ସାହସ ଆସୁ ନଥାଏ । କେବଳ ଏତିକି ସାନ୍ତ୍ୱନା ରହିଥାଏ, କେତେକ ଦେଶର ପ୍ରତିନିଧି ମୂଲ୍ୟବାନ କଥା ନ କହିଲେ ସୁଦ୍ଧା ଅନ୍ୟମାନେ ସେମାନଙ୍କୁ ହେୟଜ୍ଞାନ କରୁ ନଥାନ୍ତି ।

ଚତୁର୍ଥ ଦିନ ସନ୍ଧ୍ୟା ୬ଟାରେ ମୋର କହିବା ସମୟ ନିର୍ଦ୍ଦିଷ୍ଟ ଥାଏ । ମନେ ପଡୁଥାଏ ଗୋଟିଏ କଥା– କୌଣସି ସ୍ଥାନରେ ଭାଷଣ ଦେଲାବେଳେ ଆଗରେ ବସିଥିବା ଶ୍ରୋତାମାନଙ୍କର ମୁଣ୍ଡକୁ 'ବନ୍ଧାକୋବି' ବୋଲି ଭାବିନେବା ଉଚିତ । ତଦ୍ଦ୍ୱାରା ଶ୍ରୋତାମାନଙ୍କ ପ୍ରତି ଭୟ ରହିବ ନାହିଁ । କିନ୍ତୁ ଯେଉଁ ଜ୍ଞାନପୂର୍ଣ୍ଣ ମୁଣ୍ଡମାଳା ସମ୍ମୁଖରେ ଦେଖିବାକୁ ମିଳିବ, ସେଗୁଡ଼ିକୁ 'ବନ୍ଧାକୋବି' ବୋଲି ଭାବିନେବା କ'ଣ ସମ୍ଭବ ହେବ ?

ଶଙ୍କିତ ମନରେ ବସିରହିଥିଲା ଅବସ୍ଥାରେ ମୋର ନାମ କୌଣସି ଏକ ଅଦୃଶ୍ୟ ମାଇକ୍‌ରୁ ଘୋଷଣା କରାଗଲା । ମନ୍ତ୍ରଚାଳିତ ଭାବରେ ମଞ୍ଚ ଉପରକୁ ଉଠିଲି । ମାଇକ୍ ଧରି ପ୍ରଥମେ ଜଣାଇଦେଲି, ମୁଁ ବୈଜ୍ଞାନିକ ନୁହେଁ, ଐତିହାସିକ ମଧ୍ୟ ନୁହେଁ, ଭାରତ ଇତିହାସ ପଢ଼ିଥିବା ଜଣେ ମାମୁଲି ଛାତ୍ର । ନିୟମ ଅନୁସାରେ, ଅଧଘଣ୍ଟାଏ ସମୟ ମଧ୍ୟରେ ମୋ ପ୍ରବନ୍ଧର ସାରାଂଶ ମୌଖିକ ଭାବେ କହିଲି । ପ୍ରବନ୍ଧର ପୂରା ନକଲ ଶ୍ରୋତାମାନେ ଆଗରୁ ପାଇଥାନ୍ତି ।

ବକ୍ତବ୍ୟ ପରେ ଆରମ୍ଭ ହେଲା ପ୍ରଶ୍ନୋତ୍ତର ସମୟ । ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ପ୍ରାସଙ୍ଗିକ ଛଳରେ କହିପକାଇଲି, "ବୃହତ୍ତର ପ୍ରକୃତି, ପରିବେଶ ଓ ଜଳବାୟୁର ପ୍ରଭାବ ତ ଦୂରର କଥା, ଭାରତୀୟ ଚିରାଗତ ଋତୁର କ୍ଷଣିକ ପରିହାସ ଫଳରେ ଆଖି ପଲକରେ ସୁଦ୍ଧା ଭାରତ ଇତିହାସର ଗତିଧାରା ପ୍ରଭାବିତ ହୋଇଛି ।"

ଜନୈକ ଶ୍ରୋତା ପ୍ରଶ୍ନ କଲେ, "ଋତୁର ନିମିଷକ ଖେଳରେ ଇତିହାସର ଗତି ଦୋହଲିଯିବା କ'ଣ ସମ୍ଭବପର ? ସେପରି ଘଟଣାର ଦୃଷ୍ଟାନ୍ତ ଦେଇ ପାରିବେ ?"

ପ୍ରଶ୍ନଟି ଖୁବ୍ ସୁବିଧାଜନକ ବୋଧହେଲା । ଇତିହାସ ସମ୍ବନ୍ଧରେ କିଛି କହିବା ଛଳରେ ସମୟ ବିତାଇଦେବା ପାଇଁ ସୁଯୋଗ ମିଳିଗଲା । ଭାରତ ଇତିହାସରୁ ଦୁଇଟି ଦୃଷ୍ଟାନ୍ତ ଉଲ୍ଲେଖ କଲି–

ଦିଗ୍‌ବିଜୟୀ ଗ୍ରୀକ୍‌ବୀର ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ସମୟରେ, ସେ ଯେତେବେଳେ ଏକ ଲକ୍ଷ କୋଡ଼ିଏ ସହସ୍ର ସୈନ୍ୟ ସହ ଝେଲମ ନଦୀ ଅତିକ୍ରମ କରିବାକୁ ପହଞ୍ଚିଲେ, ନଦୀର ଅପର ପାର୍ଶ୍ୱରେ ଦେଖିପାରିଥିଲେ ଭାରତର ଏକ କ୍ଷୁଦ୍ର ଅଞ୍ଚଳର ରାଜା ପୁରୁଙ୍କ ହସ୍ତୀବାହିନୀ । ହସ୍ତୀ ଉପରେ ଥାନ୍ତି ତୀରଧାରୀ ସୈନ୍ୟଦଳ । ଯେଉଁ ମାସିଡୋନୀୟ ଫାଲାଙ୍କସ୍ ବଳରେ ଆଲେକଜାଣ୍ଡାର ଏସିଆ ମାଇନର ଓ ପାରସ୍ୟ ଜୟ କରିପାରିଥିଲେ, ଭାରତୀୟ ହସ୍ତୀ ଫାଲାଙ୍କସ୍ ଦେଖିଲାପରେ ତାଙ୍କ ବିଜୟ ଆଶା ଲୋପ ପାଇଲା । ଦିନ ପରେ ଦିନ ସେ ଅପେକ୍ଷା

କଲେ, କିନ୍ତୁ ଶତ୍ରୁପକ୍ଷକୁ ଆକ୍ରମଣ କରିବା ନିମନ୍ତେ ସାହସ କଲେ ନାହିଁ । ଏହିପରି ସମୟରେ ଦିନେ ରାତିରେ ଅଚାନକ ପ୍ରଚଣ୍ଡ ମେଘ ଗର୍ଜନ ଓ ପ୍ରବଳ ବର୍ଷାର ସୁଯୋଗ ନେଇ ଗଭୀର ଅନ୍ଧକାର ମଧ୍ୟରେ ନଦୀର ଦୂରବର୍ତ୍ତୀ ସ୍ଥାନରେ ଥିବା ବାଲୁକା ଦ୍ୱୀପ ଦେଇ ନଦୀ ଅତିକ୍ରମ ପୂର୍ବକ ପୁରୁଙ୍କ ସୈନ୍ୟଙ୍କୁ ପଶ୍ଚାଦଭାଗରୁ ଆକ୍ରମଣ କଲେ । ରାତ୍ରିର ବର୍ଷା ଯୋଗୁଁ ନଦୀକୂଳ କର୍ଦମାକ୍ତ ହୋଇଯାଇଥାଏ । ହସ୍ତୀବାହିନୀ ଦ୍ରୁତଗତିରେ ଅଗ୍ରସର ହୋଇପାରିଲା ନାହିଁ, ରଥଚକ କାଦୁଅରେ ପୋତି ହୋଇଗଲା, ଏବଂ ଭାରତୀୟ ଧନୁର୍ଦ୍ଧାରୀ ସୈନ୍ୟମାନେ ଭୂମି ଉପରେ ଶକ୍ତ ଭାବରେ ଧନୁ ଚାପିରଖି ତୀରଚାଳନା କରିପାରିଲେ ନାହିଁ । ଗୋଟିଏ ରାତିର ଅଦିନ ବର୍ଷା ଯୋଗୁଁ ଯୁଦ୍ଧର ଫଳାଫଳ ହେଲା ବିପରୀତ । ପୁରୁଙ୍କ ବୀରତ୍ୱ ଅବଶ୍ୟ ଗ୍ରୀକ୍‌ବୀରଙ୍କୁ ଚମକିତ କରିଥିଲା, କିନ୍ତୁ ତଥାପି ପରାଜୟ ବରଣ ଅପମାନରୁ ରକ୍ଷା ପାଇ ସଗର୍ବେ ସ୍ୱଦେଶ ପଥରେ ଫେରିପାରିଥିଲେ । ଏହା ଥିଲା ପ୍ରାଚୀନ କାଳର ଏକ ଘଟଣା । କ୍ଷଣିକର ବର୍ଷାଜଳ ହୋଇଥିଲା ଦେଶ ପାଇଁ କାଳ !

ଠିକ୍ ସେହିପରି, ଆଧୁନିକ ଯୁଗରେ ଇଂରେଜ କିରାଣି ରବାର୍ଟ କ୍ଲାଇବ୍ ଯେତେବେଳେ ମାତ୍ର ୩ ହଜାର ଇଂରେଜ ଓ ଭାରତୀୟ ସୈନ୍ୟଙ୍କୁ ନେଇ ପଲାଶୀ ଯୁଦ୍ଧକ୍ଷେତ୍ରରେ ପହଞ୍ଚିଲେ, ତାଙ୍କ ଶତ୍ରୁ ନବାବଙ୍କ ସୈନ୍ୟସଂଖ୍ୟା ଥାଏ ୫୦ ସହସ୍ର ପଦାତିକ ଓ ୩୦ ସହସ୍ର ଅଶ୍ୱାରୋହୀ । ଯୁଦ୍ଧର ପୂର୍ବରାତ୍ରରେ ଉତ୍ତର ଆକାଶରେ କ୍ଷୁଦ୍ର ଖଣ୍ଡିଏ କଳାମେଘ ଦେଖି କ୍ଲାଇବ ତାଙ୍କ ଗୋଳା ବାରୁଦକୁ କ୍ୟାନଭାସ ତଳେ ଘୋଡ଼ାଇ ରଖିଲେ, ଅଥଚ, ଜୁନ ମାସର ଗ୍ରୀଷ୍ମ କାଳରେ ବର୍ଷାର ସମ୍ଭାବନା ନାହିଁ ଭାବି ନବାବଙ୍କ ସେନାପତିମାନେ ବାରୁଦ ଗଦା ମୁକ୍ତ ଆକାଶ ତଳେ ପକାଇ ରଖିଲେ । କିନ୍ତୁ ରାତି ଭିତରେ ହେଲା ଅସ୍ରାଏ ମାତ୍ର ବର୍ଷା । ସକାଳ ସମୟରେ ଯୁଦ୍ଧ ଆରମ୍ଭ ହେଲାବେଳକୁ କ୍ଲାଇବଙ୍କ କମାଣରୁ ପ୍ରଚଣ୍ଡ ଗୋଳାବର୍ଷଣ ଚାଲିଲା, କିନ୍ତୁ ନବାବଙ୍କ କମାଣରୁ ଗୋଳା ନିର୍ଗତ ହେଲା ନାହିଁ । ଇଂରେଜମାନେ ଯୁଦ୍ଧ ଜୟ କଲେ । ସେହି ପଲାଶୀ ପ୍ରାଙ୍ଗଣରେ ବ୍ରିଟିଶ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପିତ ହେଲା ।

ଏହି ଘଟଣା ଦୁଇଟି ବର୍ଣ୍ଣନା କଲାବେଳେ ଶ୍ରୋତାମାନେ କାହାଣୀ ଶୁଣିବାକୁ ଭଲ ପାଉଛନ୍ତି ବୋଲି ଅନୁଭବ କଲି । ଶେଷରେ କହିଲି, "କେବଳ ଭାରତର ରାଜନୈତିକ ଭାଗ୍ୟାକାଶରେ ନୁହେଁ, ଇଉରୋପର ଭାଗ୍ୟାକାଶରେ ମଧ୍ୟ ଅକାଳ ବର୍ଷାର ପରିଣତି ଦେଖିବାକୁ ମିଳିଛି । ଉଆଟାରଲୁ ଯୁଦ୍ଧର ପୂର୍ବ ରାତିରେ ଯଦି ଅସ୍ରାଏ ବର୍ଷା ଯୋଗୁଁ ରଣଭୂମିର ମାଟି ଓଦା ହୋଇ ନଥାନ୍ତା ଏବଂ ମାଟି

ଶୁଖିଲା ପର୍ଯ୍ୟନ୍ତ ଅପେକ୍ଷା କରି ନେପୋଲିୟନ ବିଳମ୍ବିତ ମଧ୍ୟାହ୍ନ କାଳରେ ଯୁଦ୍ଧ ଆରମ୍ଭ କରି ନଥାନ୍ତେ, ଏବଂ ଶତ୍ରୁପକ୍ଷ ଜାର୍ମାନ ସୈନ୍ୟମାନେ ସନ୍ଧ୍ୟାପୂର୍ବରୁ ପହଞ୍ଚି ଫରାସୀମାନଙ୍କୁ ଆକ୍ରମଣ କରି ନଥାନ୍ତେ, ତେବେ ସେ ହୋଇଥାନ୍ତେ ଉଆଟାରଲୁ ବିଜେତା ନେପୋଲିୟନ, ପଳାତକ ଓ ନିର୍ବାସିତ ସମ୍ରାଟ ନୁହେଁ ! ଇଉରୋପ ଇତିହାସର ଗତି ପରିବର୍ତ୍ତନ ନିମନ୍ତେ ଅପ୍ରତ୍ୟାଶିତ ଆଷାଢ଼ ବର୍ଷା ଦାୟୀ ନୁହେଁ କି ?'' ପରିଶେଷରେ କହିଥିଲି–

''ଭୂଗୋଳ ଓ ଜଳବାୟୁର ପ୍ରଭାବରେ ବିଭିନ୍ନ ଦେଶ ଓ ଜାତିର ସାମୂହିକ ଚରିତ୍ର, ଧର୍ମ, ସାମାଜିକ ରୀତିନୀତି, ଖାଦ୍ୟପେୟ ଓ ସଂସ୍କୃତି ଗଭୀର ଭାବେ ପ୍ରଭାବିତ ହୋଇଥାଏ ବୋଲି ମଣ୍ଟେସ୍କ୍ୟୁ ପ୍ରତିପାଦନ କରିଯାଇଛନ୍ତି । ତାହା ସତ୍ୟ । ସେଥିସଙ୍ଗେ, ଋତୁ ଓ ପାଣିପାଗର ଆକସ୍ମିକ ଖିଆଲ ବା ମରଜି ଯୋଗୁଁ ମଧ୍ୟ ଜାତୀୟ ଇତିହାସ ପ୍ରଭାବିତ ହେବାର ବହୁ ଦୃଷ୍ଟାନ୍ତ ରହିଛି ।''

ସେହି ସନ୍ଧ୍ୟାର ଅଧିବେଶନ ପରେ ଚିନ୍ତାମୁକ୍ତ ହେଲି । ଅବଶିଷ୍ଟ ତିନି ଦିନର ଅଧିବେଶନଗୁଡ଼ିକରେ ଜ୍ଞାନଗର୍ଭକ ଭାଷଣମାନ ମନଦେଇ ଶୁଣିଲି ।

**ବିଚିତ୍ର ସମ୍ବର୍ଦ୍ଧନା ଭୋଜି**– ପଞ୍ଚମ ଦିନ ରାତିରେ ନରଉଇଚ ମ୍ୟୁନିସିପାଲିଟି ପକ୍ଷରୁ ଗୋଟିଏ ଅଦ୍ଭୁତ ନୈଶ ଭୋଜିର ଆୟୋଜନ କରାଯାଇଥିଲା । ମଧ୍ୟଯୁଗର ଦୁର୍ଗଟି ଥିଲା ଖାଇବା ଜାଗା । ସେଠାରେ ପହଞ୍ଚିଲାବେଳକୁ ରାଜା ଅଷ୍ଟମ ହେନରୀଙ୍କ ସମୟରେ ସମ୍ଭ୍ରାନ୍ତମାନେ ଯେଉଁପ୍ରକାର ପୋଷାକ ପରିଚ୍ଛଦ ପିନ୍ଧୁଥିଲେ, ସେହି ଢଙ୍ଗର ପୋଷାକ ପିନ୍ଧି ମ୍ୟୁନିସିପାଲ କର୍ମକର୍ତ୍ତାମାନେ ଆମକୁ ସ୍ୱାଗତ କଲେ । ମାଟିରେ ତିଆରି ହୋଇଥିବା ଗୋଲାକାର ଗହୀରା ପାତ୍ର ଓ କାଠର ଗିନା ଗୁଡ଼ିକ ରଖାଯାଇଥାଏ । କଣ୍ଟା, ଚାମଚ ବଦଳରେ ଦିଆଗଲା ଗୋଟିଏ ଗୋଟିଏ ଛୋରା । ମେୟର ମହୋଦୟ ଅତିଥିମାନଙ୍କୁ ସମ୍ବୋଧନ କରି କହିଲେ, ''ପୁରୁଣା ଅମଳରେ ଏହି ଦୁର୍ଗମଧ୍ୟରେ ସେ କାଳର ସମ୍ଭ୍ରାନ୍ତ ଓ ଯୋଦ୍ଧାମାନେ ଯେଉଁ ଭାବରେ ଖାଇବା ପିଇବା କରୁଥିଲେ ଓ ଯେଉଁ ସମସ୍ତ ଖାଦ୍ୟପେୟ ଭୋଗ କରୁଥିଲେ, ଆପଣମାନଙ୍କୁ ଠିକ୍ ସେହିପରି ଭାବରେ ଚର୍ଚ୍ଚା କରାଯିବ । ଏହି ରାତିଟି ପାଇଁ ଭାବିନିଅନ୍ତୁ ଯେ, ଆପଣମାନେ ସେହି ପୁରୁଣା ଅମଳର ଯୋଦ୍ଧା ଓ ସମ୍ଭ୍ରାନ୍ତ ।'' ସମସ୍ତେ କରତାଳି ଦେଲେ । ଚାହୁଁ ଚାହୁଁ ପୃଥକ ଧରଣର ରୋଟି, ମାଂସ, ମାଛ ଓ ପରିବାସିଦ୍ଧ ଇତ୍ୟାଦି, ଆସିଗଲା । ଛୋରା ଦ୍ୱାରା କିପରି ଖାଇବାକୁ ହେବ, ତାହା ଦେଖାଇ ଦିଆଗଲା । ସମ୍ଭ୍ରାନ୍ତ ଯୁଗୀୟ ବାଦ୍ୟଯନ୍ତ୍ର ବାଜିଲା ।

ଖାଇସାରିଲା ପରେ ଆରମ୍ଭ ହେଲା ମଦ୍ୟପାନ ଉତ୍ସବ । ରଙ୍ଗ ବେରଙ୍ଗ ପୋଷାକ ପିନ୍ଧି ପରିଚାରିକାମାନେ ଏଣୁ ତେଣୁ ବାହାରି ଆସିଲେ । ବଡ଼ ବଡ଼ ମାଟିପାତ୍ରରେ ରହିଥାଏ ପୁରୁଣା କାଳର ଭିନ୍ନ ଭିନ୍ନ କିସମର ମଦ । କାଠର କପ୍ ଧରି ପରିଚାରିକାମାନେ ଚଖାଇବାକୁ ଲାଗିଲେ । ଯିଏ ଯେତେ ପାରିବେ ପିଇବେ ବୋଲି ଘୋଷଣା କରାଗଲା । ଚାଖି ଚାଖି ଅତିଥିମାନେ ଭଲ ମନ୍ଦ ପରୀକ୍ଷା କରିବାକୁ ଲାଗିଲେ । ପିଆପିଇ ଚାଲିଲା ।

ତେଣେ, ଦୁର୍ଗର ଦରବାର କକ୍ଷରେ ଆରମ୍ଭ ହେଲା ମଧ୍ୟଯୁଗୀୟ ମନୋରଞ୍ଜନ କାର୍ଯ୍ୟକ୍ରମ । ଚାରଣମାନେ ଗୀତ ଗାଇଲେ, ବିଦୂଷକମାନେ ହାସ୍ୟରସର ଅଭିନୟ ଦେଖାଇଲେ, ଯୋଦ୍ଧାମାନେ ସାଞ୍ଜୁ ପିନ୍ଧି ଓ ଅସ୍ତ୍ରଶସ୍ତ୍ର ଧରି ଯୁଦ୍ଧ କଲେ ଏବଂ ଶେଷରେ କୁକୁଡ଼ା ଲଢ଼େଇ ଚାଲିଲା । ମଧ୍ୟରାତ୍ର ପର୍ଯ୍ୟନ୍ତ ସେହି ଦୃଶ୍ୟ ଦେଖୁଥିଲାବେଳେ ଅନେକ ଅତିଥି ନିଶାଗ୍ରସ୍ତ ଅବସ୍ଥାରେ ଚେୟାର ଉପରେ ଢଳି ପଡ଼ିଥିବା ଦେଖିଲି । ରାତି ୧ଟା ବେଳେ ମେୟରଙ୍କ ପତ୍ନୀ ଘୋଷଣା କଲେ, "ସମ୍ଭ୍ରାନ୍ତମାନେ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଖେଳ ଦେଖୁଥାନ୍ତି ଓ ମଦ୍ୟପାନ କରୁଥାନ୍ତି । ମୋର ଆଶା, ଆପଣମାନେ ସାମନ୍ତଯୁଗୀୟ ଅଭିଜ୍ଞତା ହାସଲ କରିଥିବେ । ରାତ୍ରିର ଅବଶିଷ୍ଟ ପ୍ରହର ଆଧୁନିକ ପ୍ରହର ହେବ ବୋଲି ମୋର ବିଶ୍ୱାସ ।" ବିଦାୟ ପାଇଁ ସଙ୍କେତ ପାଇ ସମସ୍ତେ ଉଠିଲେ । ଜଣେ ବେଲ୍‌ଜିୟାନ ବୈଜ୍ଞାନିକ ଅର୍ଦ୍ଧ ଅଚେତ ଅବସ୍ଥାରେ ମୋ କାନ୍ଧରେ ମୁଣ୍ଡ ରଖି ଗାଡ଼ି ପର୍ଯ୍ୟନ୍ତ ଆସିଲେ ।

**ନରଉଇଚରୁ ବିଦାୟ**– ଜୁଲାଇ ୧୪ ତାରିଖ ସନ୍ଧ୍ୟା ଅଧିବେଶନ ପରେ ସମ୍ମେଳନ ଶେଷ ହେଲା । ଉଦ୍‌ଯାପନ ଉତ୍ସବ ବୋଲି କିଛି ନଥାଏ । କେବଳ ମିଳିତ ଜାତିର ଜଣେ ପଦସ୍ଥ କର୍ମକର୍ତ୍ତା ପ୍ରତିନିଧିମାନଙ୍କୁ ଗୋଟିଏ ଦୁଇଟି ବାକ୍ୟରେ ଧନ୍ୟବାଦ ଜଣାଇ ବିଦାୟ ନେଲେ ।

କାଉଣ୍ଟର ପାଖରେ ପ୍ରତ୍ୟେକ ପ୍ରତିନିଧିଙ୍କୁ ଫେରନ୍ତା ବିମାନ ଟିକଟ ଧରାଇ ଦିଆଗଲା । ବାହାରେ ଲେଖାଥାଏ, ବଜେଟ କାଟ ହେତୁ ପ୍ରଥମ ଶ୍ରେଣୀ ଟିକଟ ଦିଆଯାଇ ପାରିଲା ନାହିଁ ।

୧୫ ତାରିଖରେ ନରଉଇଚ ଠାରୁ ଲଣ୍ଡନ ଆସିଲି । ୧୬ ତାରିଖରେ ଦିଲ୍ଲୀ ଅଭିମୁଖେ ବିମାନ ଧରିଲି ।

## ବିମାନଯାତ୍ରାର ଏକ ଶୋଚନୀୟ ଅନୁଭୂତି

ରାତ୍ରିର ଶେଷ ପ୍ରହରରେ ବ୍ରିଟିଶ୍ ଯାତ୍ରୀବାହୀ ବିମାନଟି ଆବୁ ଧାବି ବିମାନଘାଟିରେ ଅବତରଣ କରିବା କଥା । ବିମାନରେ ପାସେଞ୍ଜର ଭର୍ତ୍ତି ଥାନ୍ତି । ଅଧିକାଂଶ

ଥିଲେ ସିଂଗାପୁର, ହଂକଂ ଓ ଟୋକିଓ ଯିବାଲାଗି ଇଉରୋପୀୟ ଯାତ୍ରୀ । କେତେଜଣ ମହିଳା ଓ ଶିଶୁ ମଧ୍ୟ ଥାନ୍ତି । ପାସେଞ୍ଜାର ସଂଖ୍ୟା ୨୦୦ ରୁ ଉର୍ଦ୍ଧ୍ୱ ଥାଏ ।

ରାତି ପାହିବାକୁ ବିଳମ୍ବ ଥାଏ । ନିଦ ଭାଙ୍ଗିଯିବାରୁ ଝରକା ବାଟେ ତଳକୁ ଚାହିଁ ଦେଖିଲି, କ୍ଷୀଣ ଚନ୍ଦ୍ରାଲୋକରେ ଦିଶୁଥିବା ଦିଗନ୍ତବିସ୍ତାରୀ ମରୁଭୂମି । ଆବୁ ଧାବି ସ୍ଥାନଟି ଥିଲା ମିଳିତ ଆରବ ଏମିରେଟ୍‌ର କୌଣସି ଏକ ଅଞ୍ଚଳର କ୍ଷୁଦ୍ର ରାଜଧାନୀ । ପୂର୍ବେ ତାହାର ନାମ ମଧ୍ୟ ଜଣା ନଥାଏ । ଅଳ୍ପ କିଛିବର୍ଷ ତଳେ ସେଠାକାର ମରୁଭୂମିରେ ପେଟ୍ରୋଲ ତୈଳସମ୍ପଦ ଆବିଷ୍କୃତ ହେଲାପରେ ସ୍ଥାନଟିର ଗୁରୁତ୍ୱ ଜଣାପଡ଼ିଲା ଓ ଛୋଟିଆ ସହର ଗଢ଼ିଉଠିଲା । ପେଟ୍ରୋଲ ଭର୍ତ୍ତି କରିବା ଲାଗି ସେଠାରେ ଉଡ଼ାଜାହାଜଗୁଡ଼ିକ ଅବତରଣ କରୁଥିଲେ ।

ମୋ ପାଖ ସିଟ୍‌ରେ ବସିଥାନ୍ତି ଦୁଇଜଣ ଜାପାନୀ । ଗାଢ଼ ନିଦରେ ଜଣକର ନାକ ଡାକୁଥାଏ । ଆଗ ସିଟ୍‌ରେ ବସିଥାନ୍ତି ଜଣେ ସିଙ୍ଗାପୁରୀ ଭାରତୀୟ । ପାଖରେ ଥାନ୍ତି ତାଙ୍କର ଦୁଇଜଣ ଅଳ୍ପବୟସ୍କ ପୁଅ । ମାଇକ୍ ଯୋଗେ ପାଇଲଟ୍ କ'ଣ କହୁଥିବାର ଶୁଣାଗଲା । ଅନ୍ୟମନସ୍କ ଥିବା ଯୋଗୁଁ ବୁଝିପାରିଲି ନାହିଁ । କିନ୍ତୁ ମୁହୂର୍ତ୍ତ ମଧ୍ୟରେ ବିମାନ ଭିତରେ କୋଳାହଳ ପଡ଼ିଗଲା । ଆଲୁଅଗୁଡ଼ିକ ଜଳିଉଠିଲା । ସିଙ୍ଗାପୁରୀ ଯାତ୍ରୀଙ୍କୁ ପଚାରିଲି, ''ବ୍ୟାପାର କ'ଣ ?'' ସେ ସେତେବେଳକୁ ସିଟ୍ ଉପରେ ଗୋଡ଼ ଦୁଇଟି ଟେକି ରଖି ଦୁଇ ପିଲାଙ୍କୁ କୋଳରେ ବସାଉଥାନ୍ତି । ମୁହଁ ଫେରାଇ କହିଲେ, ''ବିମାନର ଚକ ତଳକୁ ବାହାରି ପାରୁନାହିଁ । ଅବତରଣ ବେଳେ ଚକରେ ନ ଗଡ଼ି, ପେଟ ରଖି ବସିପଡ଼ିବ । ତା ଆଗରୁ ଟାଙ୍କିରେ ଥିବା ସବୁ ପେଟ୍ରୋଲ ଖଲାସ କରିବାକୁ ହେବ । ଆପଣ ଗୋଡ଼ ଦୁଇଟା ସିଟ୍ ଉପରେ ରଖି କମ୍ବଳ ଘୋଡ଼ାଇ ପକାନ୍ତୁ ।'' ଭଦ୍ରଲୋକ ଥିଲେ ଜଣେ ଇଞ୍ଜିନିୟାର । ପୁନର୍ବାର ପ୍ରଶ୍ନ କରି ବୁଝିଲି, ''ମାଟିରେ ବସିଲାବେଳେ ବିମାନରେ ନିଆଁ ଲାଗିଯିବାର ଭୟ ରହିଛି ।''

ଆଗ ପଛକୁ ଚାହିଁ ଦେଖିଲି, ସମସ୍ତେ ସିଟ୍ ଉପରକୁ ଗୋଡ଼ ଟେକୁଛନ୍ତି । ପାଟିତୁଣ୍ଡ ଆରମ୍ଭ ହୋଇଯାଇଥାଏ । ପାଇଲଟ ବାରମ୍ବାର ଘୋଷଣା କରୁଥାନ୍ତି, ''ନୀରବ ରହନ୍ତୁ । ଭୟର କାରଣ ନାହିଁ । କମରରେ ସେଫ୍‌ଟି ବେଲ୍ଟ୍ ବାନ୍ଧି ବସନ୍ତୁ । ଛିଡ଼ା ହୁଅନ୍ତୁ ନାହିଁ ।''

ଆସନ୍ନ ଦୁର୍ଘଟଣା ଆଶଙ୍କାରେ ନୀରବତାର ପ୍ରଶ୍ନ ନଥାଏ । ଏଣେ ତେଣେ ମହିଳାମାନଙ୍କ ମୃଦୁ ବିଳାପ ଧ୍ୱନି ଶୁଭିଲା । ସେଥିସଙ୍ଗେ, ସ୍ୱାମୀମାନଙ୍କ ସାନ୍ତ୍ୱନା ବାଣୀ । ଦୁଇ ଜାପାନୀ ଆଖିବୁଜି ପ୍ରାର୍ଥନା କରିବା ଦେଖିଲି । ମନ ମଧ୍ୟରେ ଆତଙ୍କ ଖେଳିଗଲା । ମୃତ୍ୟୁଭୟ ଯେ କେତେଦୂର ଭୟଙ୍କର, ତାହା ଅନୁଭବ

କଲି । ସେତେବେଳେକୁ ଝରକା ବାହାରେ ଦିଶୁଥାଏ ଭୟାନକ ଦୃଶ୍ୟ । ଟାଙ୍କିରେ ଥିବା ପେଟ୍ରୋଲ ପୋଡ଼ିବା କାର୍ଯ୍ୟ ଯୋଗୁଁ ବିମାନର ପେଟ ତଳୁ ନିଆଁମିଶା ଧୂଆଁ ବିଜୁଳି ମିଶ୍ରିତ ମେଘ ପରି ଆକାଶରେ ମାଡ଼ି ଯାଉଥାଏ । ମୃତ୍ୟୁ ନିକଟବର୍ତ୍ତୀ ବୋଲି ଯାତ୍ରୀମାନେ ଜାଣି ପାରୁଥାନ୍ତି ।

ପାଇଲଟ ଘୋଷଣା କଲେ, "ବିମାନ ବର୍ତ୍ତମାନ ଆବୁଧାବି ଆକାଶରେ ପରିକ୍ରମା କରୁଛି । ପେଟ୍ରୋଲ ନିଃଶେଷ ନ ହେଲା ପର୍ଯ୍ୟନ୍ତ ତଳକୁ ଯିବ ନାହିଁ । ନୀରବରେ ବସି ରହନ୍ତୁ ।" ଏହି ଘୋଷଣା ପରେ ପରେ କୋଳାହଳ ବଢ଼ିଗଲା । ତେଲ ସରିଗଲେ ବିମାନ ଖସିପଡ଼ିବ ବୋଲି ଜଣେ ଯାତ୍ରୀ ଚିତ୍କାର କଲେ । ଅନ୍ୟ ଜଣେ ପାଟି କରି ଘୋଷଣା କଲେ, "କିଛି ତେଲ ନିଶ୍ଚୟ ରହିବ । ବିମାନର ପେଟ ମାଟିରେ ଘଷିଯିବା କ୍ଷଣି ନିଆଁ ଜଳିଉଠିବ ।" ଖ୍ରୀଷ୍ଟିଆନ ମହିଳାମାନେ ଉଚ୍ଚସ୍ୱରରେ ଯିଶୁଙ୍କୁ ଡାକିବାକୁ ଲାଗିଲେ । ପିଲାମାନଙ୍କୁ ଛାତି ଉପରେ ଚାପିଧରି ମା ମାନେ ଶେଷ ମୁହୂର୍ତ୍ତ ପ୍ରତି ଅପେକ୍ଷା କଲେ ।

ପ୍ରାୟ ଅଧଘଣ୍ଟାଏ ସମୟ ଆବୁଧାବି ଚାରିପଟେ ବିମାନ ଉଡ଼ିବୁଲିଲା । ନିଆଁମିଶା ଧୂଆଁ ପ୍ରବଳ ବେଗରେ ବାହାରି ଯାଉଥାଏ । ସତେ ଯେପରି ସେହି ମିନିଟଗୁଡ଼ିକ ଥାଏ ଅଗ୍ନିକୁଣ୍ଡରେ ଜୀବନ୍ତ ଦଗ୍ଧୀଭୂତ ହେବା ପାଇଁ ପ୍ରସ୍ତୁତି ମୁହୂର୍ତ୍ତ ।

ରାତ୍ରିର ଶେଷ ପ୍ରହର । ସହସା ବିମାନଟି ତଳକୁ ଖସିଲା । ବିକଳ କ୍ରନ୍ଦନରୋଳ ମଧ୍ୟରେ ପ୍ରଚଣ୍ଡ ଶବ୍ଦ ସହ ବିମାନ ଧପ୍ କରି ମାଟି ଉପରେ ବସିପଡ଼ିଲା । ସେହି ମୁହୂର୍ତ୍ତରେ ଭିତରର ବିଜୁଳିବତିଗୁଡ଼ିକ ନିଭିଗଲା । ଇଞ୍ଜିନ ବନ୍ଦ ହୋଇଗଲା । ପାଇଲଟଙ୍କ ମାଇକ୍ ଶବ୍ଦ ଶୁଭିଲା ନାହିଁ । ଭିତରେ ଅନ୍ଧକାର, ବାହାରେ ଅନ୍ଧକାର । ନିଆଁ ଜଳିଉଠିବ ଭାବି କେତେଜଣ ପାସେଞ୍ଜାର ବିମାନର ଆଗ ଓ ପଛରେ ଥିବା ଦରଜା ଆଡ଼କୁ ଠେଲା ପେଲା କରି ଆଗେଇବାକୁ ଲାଗିଲେ । ତାହା ଦେଖି ଅନ୍ୟ ସମସ୍ତେ ତ୍ରସ୍ତବ୍ୟସ୍ତ ଅବସ୍ଥାରେ ଉଠିପଡ଼ିଲେ । ସମସ୍ତେ ବାହାରିବା ପାଇଁ ବ୍ୟାକୁଳ । ପ୍ରାଣରକ୍ଷା ପାଇଁ ପରସ୍ପର ମଧ୍ୟରେ ଖଣ୍ଡଯୁଦ୍ଧ ଚାଲିଲା । ସବଳକାୟମାନେ ମହିଳା ଓ ଶିଶୁମାନଙ୍କୁ ଘାଣ୍ଟି ଚକଟି ଦରଜା ପଥକୁ ଆଗେଇଲେ । ସିଙ୍ଗାପୁରୀ ଇଞ୍ଜିନିୟାର ମୋତେ ଓ ତାଙ୍କ ପିଲାମାନଙ୍କୁ ଆଶା ଦେଲେ, "ନିଆଁ ଲାଗିବ ନାହିଁ । ଲାଗିବାର ଥିଲେ, ଏତେବେଳକୁ ବିମାନ ଜଳୁଥାନ୍ତା ।"

ତେଣେ, ଚିତ୍କାର ଶୁଭୁଥାଏ, 'ଦରଜା ଫିଟାଅ, ଦରଜା ଫିଟାଅ' । ହାତରେ ଟର୍ଚ୍ଚ ଧରି ବିମାନ ପରିଚାରକମାନେ ଆପ୍ରାଣ ଚେଷ୍ଟା କରି କବାଟ ଫିଟାଇ ପାରିଲେ ନାହିଁ । ପାଇଲଟ ଓ ତାଙ୍କ ସହଯୋଗୀମାନେ ବଡ଼ ପାଟିରେ ଘୋଷଣା କରୁଥିଲେ, "ଦୁର୍ଘଟଣାରୁ ରକ୍ଷା ମିଳିଛି । ଶକ୍ତ ଭାବରେ ବସିପଡ଼ି ଥିବାରୁ

ବିମାନର ଦରଜାଗୁଡ଼ିକ ଅଟକିଯାଇଛି । ଦୁବାଇରୁ ଇଞ୍ଜିନିୟାର ଦଳ ଆସିଯିବେ । ଅଳ୍ପ ସମୟ ପରେ ଦରଜା ଫିଟିବ । ଧୈର୍ଯ୍ୟ, ଧୈର୍ଯ୍ୟ ପାଇଁ ନିବେଦନ ।''

ନିରୁପାୟ ଅବସ୍ଥାରେ ସମସ୍ତେ ବସିଗଲେ । ନିଶ୍ଚିତ ମୃତ୍ୟୁରୁ ବର୍ଞ୍ଚ୍ୟାଇଥିବା ଯୋଗୁଁ ଯାତ୍ରୀମାନେ ଆନନ୍ଦରେ ଅଧୀର ହୋଇ ଉଠିଥିଲେ । ମା ମାନେ ଶିଶୁମାନଙ୍କୁ ଚୁମା ବର୍ଷଣରେ ଲାଗିଗଲେ । ଝରକା ବାଟେ ପଶିଆସୁଥାଏ ଉଷାକାଳର କ୍ଷୀଣ ଆଲୋକ । କିନ୍ତୁ ବିମାନ ଭିତରେ ଥିବା ପବନ ସଞ୍ଚାଳନ ବ୍ୟବସ୍ଥା ଅନେକ ଆଗରୁ ବନ୍ଦ ହୋଇଯାଇଥାଏ । ଚାହୁଁ ଚାହୁଁ ପ୍ରଚଣ୍ଡ ଉତ୍ତାପ ଅନୁଭୂତ ହେଲା । ଦେହରୁ ଝାଳ ଝରିଲା । ଦେଖୁଁ ଦେଖୁଁ ନରନାରୀ ନିର୍ବିଶେଷରେ ସମସ୍ତେ ଦେହରୁ ପୋଷାକ କାଢ଼ିପକାଇଲେ । ମହିଳାମାନେ 'ପାଣି' 'ପାଣି' ବୋଲି ପାଟି କଲେ । ପରିଚାରିକାମାନେ ଛୋଟ ଛୋଟ ଗ୍ଲାସରେ ପାଣି ଦେଲାବେଳେ ଅନୁରୋଧ କରୁଥାନ୍ତି, ''ପିଇବା ପାଇଁ ନୁହେଁ, ଗଳା ଓଦା କରିବା ପାଇଁ ।''

କ୍ରମେ କ୍ରମେ ଗରମ ଅସହ୍ୟ ହେଲା । ଅଧିକ ସମୟ ବିଳମ୍ବ ହେଲେ ଦେହ ଶୁଖି ସିଝିଯିବ ବୋଲି କେହି କେହି ରଡ଼ି ଛାଡ଼ିଲେ । ଜଣେ ପାଟି କଲେ, ''Mr. Pilot ! Perhaps you want to offer our boiled bodies to your friends in Abu Dhabi to eat as roast chicken'' ।

ଘଣ୍ଟାଧିକ ସମୟ ଅସହ୍ୟ ଉତ୍ତାପରେ ଛଟପଟ ହେଲାପରେ, ବାହାର ପଟରୁ ଇଞ୍ଜିନିୟାରମାନେ ଦରଜା ଫିଟାଇଲେ । ତଳକୁ ସିଡ଼ି ଲାଗିଲା । ମହିଳା, ଶିଶୁ ଓ ବୁଢ଼ାବୁଢ଼ୀମାନେ ପ୍ରଥମେ ତଳକୁ ଗଲାପରେ ଆମେ ବାହାରିଲୁଁ । ସକାଳ ହୋଇଯାଇଥାଏ । ବାହାରେ ମରୁର ମୁକ୍ତ ପବନ । ଚଟାଣ ଉପରେ ପ୍ରକାଣ୍ଡକାୟ ବିମାନ ପେଟ ଉପରେ ପଡ଼ିଥାଏ । ଅର୍ଦ୍ଧ ଅଚେତ ଓ ଅସୁସ୍ଥ ଯାତ୍ରୀମାନଙ୍କୁ ଦୁଇଖଣ୍ଡି ଆମ୍ବୁଲେନ୍ସରେ ବିଶ୍ରାମ କକ୍ଷକୁ ନିଆଗଲା । ଅନେକ ଯାତ୍ରୀ ନିକଟରେ ଥିବା ମରୁବାଲି ଉପରେ ଶୋଇପଡ଼ିଲେ । ପ୍ରଚୁର ଝାଳ ବାହାରିଯାଇଥିବା ଯୋଗୁଁ ଦୁର୍ବଳ ଅନୁଭବ କରି କିଛି ସମୟ ବସିରହିଲି । ସୁସ୍ଥ ବୋଧ କଲାପରେ ବିଶ୍ରାମ କକ୍ଷରେ ପହଞ୍ଚିଲି । ବିମାନ ଘାଟି ପ୍ରାୟ ଜନଶୂନ୍ୟ ଥାଏ ।

କକ୍ଷର ଗୋଟିଏ କୋଣରେ ଥାଏ ଚା ଷ୍ଟଲ । କପେ ଚା ମାଗିଲି ଓ ପିଇଲି । ମୁସଲମାନ ଦୋକାନୀ ଦୁଇ ଡଲାର ଦାମ୍ ମାଗିବା ଦେଖି ପଚାରିଲି, ''ଆବୁ ଧାବିରେ ଏକ କପ୍ ଚା'ର ମୂଲ୍ୟ ଦୁଇ ଡଲାର ?'' ଭଙ୍ଗା ଭଙ୍ଗା ଇଂରାଜୀରେ ତାଙ୍କର ଉତ୍ତରଟି ଥିଲା, ''Tea from India, Sugar from Indonesia, Milk Powder from Holland, Water from Persian Gulf– Price very cheap, very cheap, No costly.'' ।

ଦୁବାଇରୁ ଆସିଥିବା ଇଞ୍ଜିନିୟାରମାନେ ବିମାନ ମରାମତି କଲେ । ସନ୍ଧ୍ୟା ପର୍ଯ୍ୟନ୍ତ ଆବୁ ଧାବିର ଅପେକ୍ଷା-କକ୍ଷରେ ରହିବାକୁ ହେଲା । ଖାଦ୍ୟ ମିଳିଥିଲା ଦୁଇଖଣ୍ଡି ସ୍ୟାଣ୍ଡଉଇଚ୍ । ବାହାରେ ଦିଶୁଥାଏ ମରୁଭୂମି । ଦୂରରେ ଛୋଟିଆ ସହର । ଗଛ, ଲତା ବା ଘାସର ଚିହ୍ନବର୍ଣ୍ଣ ନଥାଏ । ଦିନ ସାରା ମରୁର ଉତ୍ତାପ ସହ୍ୟ କରିବାକୁ ପଡ଼ିଲା । ସନ୍ଧ୍ୟା ପରେ ବିମାନରେ ପ୍ରବେଶ କଲୁଁ ।

୧୭ ତାରିଖ ମଧ୍ୟରାତ୍ରରେ ଦିଲ୍ଲୀରେ ପହଞ୍ଚିଲି । ୧୮ ତାରିଖରେ ଭୁବନେଶ୍ୱର । ଆବୁ ଧାବି ଠାରେ ପ୍ରତିଜ୍ଞା କରିଥିଲି, ଆଉ କେବେହେଲେ ଉଡ଼ାଜାହାଜରେ ଉଡ଼ିବି ନାହିଁ । କିନ୍ତୁ ୨୦ ତାରିଖ ଦିନ ବାଣୀବିହାରରେ ପହଞ୍ଚି ଶୁଣିଲି, ମୋତେ ଯୁକ୍ତରାଷ୍ଟ୍ର ଆମେରିକା ଯିବାଲାଗି ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ପକ୍ଷରୁ ନିର୍ଦ୍ଦେଶ ଆସିଛି ।

# ଯୁକ୍ତରାଷ୍ଟ୍ର ଆମେରିକାରେ ତିନି ମାସ (୧୯୭୯) ୨୩

## କାନାଡ଼ା ଯାତ୍ରା

### ଅଧ୍ୟାପକ ବିନିମୟ ପ୍ରୋଗ୍ରାମ ଅନୁଯାୟୀ ଯୁକ୍ତରାଷ୍ଟ୍ର ଯାତ୍ରା

ଯୁକ୍ତରାଷ୍ଟ୍ର ଆମେରିକା ଓ ଭାରତ ମଧ୍ୟରେ ଉଭୟ ଦେଶର ଅଧ୍ୟାପକମାନଙ୍କୁ ଉଚ୍ଚତର ଗବେଷଣା ନିମନ୍ତେ ସୁଯୋଗ ଦେବାଲାଗି ଚୁକ୍ତି ହୋଇଥାଏ । ତଦ୍ଦ୍ୱାରା, ଯୁକ୍ତରାଷ୍ଟ୍ରର ଅଧ୍ୟାପକମାନେ ମଧ୍ୟେ ମଧ୍ୟେ ଆମ ଦେଶକୁ ଆସୁଥାନ୍ତି ଓ ଭାରତୀୟ ଅଧ୍ୟାପକମାନେ ସେ ଦେଶକୁ ଯାଉଥାନ୍ତି । ୧୯୭୯ ଅଗଷ୍ଟ ମାସରେ ଇଉନିଭାରସିଟି ଗ୍ରାଣ୍ଟସ୍ କମିଶନରୁ ଚିଠି ପାଇଲି ଯେ ସେହି ମସିହାର ବିନିମୟ କାର୍ଯ୍ୟକ୍ରମ ଅନୁଯାୟୀ ଯୁକ୍ତରାଷ୍ଟ୍ର ଯିବା ଲାଗି ମୋତେ ମନୋନୀତ କରାଯାଇଛି ଏବଂ ସେପ୍ଟେମ୍ବର ୩ ତାରିଖରେ ଆମେରିକାର ଉଆସିଂଟନ ସହରରେ ପହଞ୍ଚିବା ଆବଶ୍ୟକ ।

କୁଳପତି ଡକ୍ଟର ବିଦ୍ୟାଧର ମିଶ୍ର କୌତୁକ ଛଳରେ କହିଲେ, ''ଜୁଲାଇରେ ଇଂଲାଣ୍ଡରୁ ଫେରିଲେ, ଅଗଷ୍ଟରେ ଆମେରିକା ଯିବେ । ଆପଣ ଜଣେ ଚତୁର ବ୍ୟକ୍ତି ।'' ମୁଁ କହିଲି, ''ଆବୁ ଧାବିରେ ମୃତ୍ୟୁକୁ ନିକଟରେ ଦେଖି ଆସିଲାପରେ, ଆଉ ଥରେ ଦୂରକୁ ଉଡ଼ିବା ଲାଗି ଡର ଲାଗୁଛି । କିନ୍ତୁ ମରଣ ଭୟ ଅପେକ୍ଷା ସରକାରଙ୍କ ଆଦେଶ ପ୍ରତି ମୋର ବେଶି ଭୟ ।'' ବିଦ୍ୟାଧରବାବୁ କହିଲେ, ''ଏହିପରି ଉତ୍ତର ହେଉଛି ପ୍ରକୃତ ଚତୁରତା ।''

୧୯୭୯ ଅଗଷ୍ଟ ୩୧ ତାରିଖ ଦିନ ବୋମ୍ବେରେ ପହଞ୍ଚିଲି । ସେଠାରୁ ଏୟାର ଇଣ୍ଡିଆ ବିମାନରେ ଯିବା ଲାଗି ଟିକଟ ହୋଇଥାଏ । କିନ୍ତୁ ବିମାନ କର୍ମଚାରୀଙ୍କ ଧର୍ମଘଟ ଯୋଗୁଁ ବିମାନ ଚଳାଚଳ ବନ୍ଦ ଥିଲା । ଏୟାରଇଣ୍ଡିଆ ଅଫିସରୁ ବ୍ରିଟିଶ ଏୟାର ଉଏଜ ଅଫିସ ମଧ୍ୟରେ ୩ ଦିନରେ ୬ ଥର ଦୌଡ଼ାଦୌଡ଼ି କରିବାକୁ ପଡ଼ିଲା । ଶେଷରେ, ସେପ୍ଟେମ୍ବର ୪ ତାରିଖ ରାତିରେ ନିଉୟର୍କ ଯିବା ଲାଗି

ବ୍ରିଟିଶ୍ ବିମାନରେ ସିଟ୍ ପାଇଲି । ବାଟରେ କାଇରୋ, ଜେନେଭା, ଆମ୍‌ଷ୍ଟାରଡାମ୍ ଓ ଲଣ୍ଡନ ବିମାନଘାଟିରେ ଅଳ୍ପ ସମୟ ଲାଗି ରହିଲା ପରେ ବିମାନ ଉଡ଼ିଲା ଆଟଲାଣ୍ଟିକ ମହାସାଗର ଉପରେ ।

ଯୁକ୍ତରାଷ୍ଟ୍ରରେ ୩ ମାସ ରହିବା ସମୟରେ ପ୍ରତିଦିନର ଅନୁଭୂତି ବିଷୟ ଡାଏରୀରେ ଟିପି ରଖୁଥାଏଁ । ଯେଉଁ ସ୍ଥାନ ଓ ବ୍ୟକ୍ତିମାନଙ୍କୁ ଦେଖିଲି ଏବଂ ଆମେରିକୀୟ ସମାଜର ଯେଉଁ ପ୍ରକାର ପରିଚୟ ପାଇଲି, ତାହା ତାରିଖକ୍ରମେ ସଂକ୍ଷେପରେ ଉଲ୍ଲେଖ କରୁଛି ।

### ୫ ସେପ୍ଟେମ୍ବର, ପହଞ୍ଚିଲାବେଳର ଅନୁଭୂତି

ସନ୍ଧ୍ୟା ପୂର୍ବରୁ ବିମାନମାର୍ଗରୁ ଦିଶିଲା ଆମେରିକା ଉପକୂଳର ଦୃଶ୍ୟ । ଚାହୁଁ ଚାହୁଁ ନିଉୟର୍କ ସହରର ଆକାଶଚୁମ୍ବୀ ସୌଧମାଳାର ଶୀର୍ଷଭାଗ ଦେଖାଗଲା । ସନ୍ଧ୍ୟା ୬ଟାରେ ନିଉୟର୍କ ଆନ୍ତର୍ଜାତିକ ବିମାନବନ୍ଦରରେ ଅବତରଣ କଲି । ସେଠାରୁ ଯଥାଶୀଘ୍ର 'ଲା ଗୁଆରଡିଆ' ନାମକ ଘାଟିକୁ ଯିବାକୁ ହେଲା । ଉଆସିଂଟନ ଠାକୁ ସେହିଠାରୁ ଛୋଟ ଛୋଟ ଉଡ଼ାଜାହାଜ ସବୁବେଳେ ଯାଏ । ମୋର ଗନ୍ତବ୍ୟ ସ୍ଥାନ ଥାଏ ରାଜଧାନୀ ଉଆସିଂଟନ । ଲା ଗୁଆରଡିଆରେ ପହଞ୍ଚିଲା ଉତ୍ତାରୁ ଖବର ମିଳିଲା, ଉଆସିଂଟନ୍ ଆକାଶରେ ଝଡ଼ ତୋଫାନ ହେଉଛି । ଆକାଶ ମୁକ୍ତ ହେଲା ପରେ ବିମାନ ଛାଡ଼ିବ ।

୩ ଘଣ୍ଟା ବିଳମ୍ବରେ ଯାତ୍ରା ଆରମ୍ଭ ହେଲା । ଘଣ୍ଟାଏ ଉଡ଼ିଲା ପରେ ଉଆସିଂଟନ ବିମାନଘାଟିରେ ପହଞ୍ଚିଲାବେଳକୁ ରାତି ୧୧ଟା । ବାହାରେ ବର୍ଷା ହେଉଥାଏ । ଧାଡ଼ି ପରେ ଧାଡ଼ି ଟ୍ୟାକ୍ସି । ମୋତେ ଦେଖି ଦୁଇଜଣ କୃଷ୍ଣାଙ୍ଗ ଯୁବକ ପାଖକୁ ଦୌଡ଼ିଆସି ନିଜକୁ 'ସ୍ୱେଚ୍ଛାସେବୀ' ବୋଲି ପରିଚୟ ଦେଇ ମୋ ସୁଟକେଶ ଦୁଇଟା ଉଠାଇ ଖଣ୍ଡିଏ ଟ୍ୟାକ୍ସି ପାଖକୁ ଚାଲିଲେ । ସେମାନଙ୍କ ପଛେ ପଛେ ଆଗେଇଲାବେଳେ ଜଣେ ବୃଦ୍ଧ ଶ୍ୱେତାଙ୍ଗ ସାହେବ କାନ ପାଖରେ କହିଲେ, ''ଏତେ ରାତିରେ ବ୍ଲାକ୍‌ମାନଙ୍କ ଗାଡ଼ିରେ ଯିବା ନିରାପଦ ନୁହେଁ । ବରଂ ସକାଳେ ଯିବେ ।'' ତାଙ୍କ ସତର୍କବାଣୀ ଶୁଣି ତରତରରେ ଯାଇ ଟ୍ୟାକ୍ସି ପାଖରୁ ସୁଟକେଶ୍ ଦୁଇଟି ଧରି ଫେରି ଆସିଲି । ବୁଝିପାରିଲି, କଳାମାନଙ୍କର ସାଧୁତା ଉପରେ ଧଳାମାନଙ୍କର ବିଶ୍ୱାସ ନାହିଁ । ଚାହିଁ ଦେଖିଲି, ପ୍ରାୟ ସବୁ ଟ୍ୟାକ୍ସିର ଡ୍ରାଇଭର ଥିଲେ ଆମେରିକୀୟ ନିଗ୍ରୋ । ସାହେବମାନେ ନିଜ ନିଜ ଗାଡ଼ିରେ ଆସୁଥିଲେ ଓ ଯାଉଥିଲେ ।

ବିଶ୍ରାମ କକ୍ଷରେ ବସିଲି । ଭୋକ ଅନୁଭବ କରି କ୍ୟାଣ୍ଟିନରେ ଦୁଇଖଣ୍ଡି ଟମାଟୋ ସ୍ୟାଣ୍ଡଉଇଚ ଓ କପେ ଚା ମାଗିଲି । ବିକ୍ରି କରୁଥିବା ଯୁବକକୁ ପଚାରିଲି, ''ଏଠାକାର ବିମାନଘାଟି ଏତେ ଛୋଟ କାହିଁକି ?'' ସେ ଉତ୍ତର ଦେଲେ, ''ଦେଶର ଆଇନ କହୁଛି, ଏ ସହରରେ ଜର୍ଜ ଉଆସିଂଟନଙ୍କ ସ୍ମୃତିସ୍ତମ୍ଭ ଠାରୁ ଅନ୍ୟ କୌଣସି ଘର ଉଚ୍ଚା ହୋଇପାରିବ ନାହିଁ । କିନ୍ତୁ ଆନ୍ତର୍ଜାତିକ ବିମାନଘାଟିର ଟାୱାର ତା ଠାରୁ ଉଞ୍ଚା ନ ହେଲେ ଚଳିବ ନାହିଁ । ସେଥିପାଇଁ ରାଜଧାନୀର ବିମାନ ଘାଟି ଅତିଶୟ ଛୋଟ ।''

ପେଟ ପୂରିଲା ନାହିଁ । ଅଥଚ ଦାମ୍ ଦେଖି କାବା ହେଲି । ଆମ ଦେଶ ତୁଳନାରେ ପ୍ରାୟ ଦଶଗୁଣ ବେଶି । ସେହି ପ୍ରଥମ ଅଭିଜ୍ଞତାରୁ ଜାଣିନେଲି, ଧନୀ ପୁଞ୍ଜିପତିଙ୍କ ଦେଶରେ ଦୋକାନୀମାନେ ମନ ଇଚ୍ଛା ଦରଦାମ୍ ନିଅନ୍ତି । ବିଶେଷତଃ, ଆମେରିକାରେ । ଲୋକଙ୍କ ଆୟ ମଧ୍ୟ ଅନେକ ବେଶି । ଦରଦାମ ସେମାନଙ୍କୁ ବାଧେ ନାହିଁ । ସାରାରାତି ଚେୟାର ଉପରେ ବସିରହିଲି । ରାତି ପାହିଲାକ୍ଷଣି, 'ଡେଭିସ ହାଉସ୍' ନାମକ ପାନ୍ଥ ନିବାସକୁ ଫୋନ କରି ସେଠାରେ ଗୋଟିଏ ଦିନ ବିଶ୍ରାମ ନେବାକୁ ଚାଲିଲି ।

## ୬ ସେପ୍ଟେମ୍ବର

ଟ୍ୟାକ୍ସି ଯୋଗେ ଡେଭିସ୍ ହାଉସ୍‌ରେ ପହଞ୍ଚିଲି । ଡବଲ ରୁମ୍‌ଟିରେ ଖଟଟିଏ ମିଳିଲା । ରାତ୍ରି ଅନିଦ୍ରା ମେଣ୍ଟାଇବା ଲାଗି ଶୋଇପଡ଼ିଲି । କିନ୍ତୁ ଅଳ୍ପସମୟ ମଧ୍ୟରେ ଚେକୋସ୍ଲୋଭାକିଆରୁ ଆସିଥିବା ଜଣେ ବୃଦ୍ଧବ୍ୟକ୍ତି ପାଖ ଖଟଟି ଦଖଲ କଲେ । ଆଖି ବୁଜିଆସୁଥାଏ । କିନ୍ତୁ ବିଦେଶୀ ବନ୍ଧୁ ଇଂରାଜୀରେ ନାନା ପ୍ରକାର ପ୍ରଶ୍ନ ପଚାରିବାକୁ ଲାଗିଲେ । କଥା କହୁଁ କହୁଁ ସମୟ ଗଡ଼ିଲା । ମଧ୍ୟାହ୍ନ ଭୋଜନ ପରେ ତାଙ୍କୁ ଶୋଇବାକୁ କହି କମ୍ବଳ ଘୋଡ଼ିହେଲି ।

ସନ୍ଧ୍ୟାବେଳେ ନିଦ ଭାଙ୍ଗିଲା । ବାହାରେ ଖାଇବାକୁ ଗଲି । ଅସମ୍ଭବ ଦାମ । ଫେରିଆସି ଶୋଇଲାବେଳକୁ ସେହି ଗପୁଡ଼ି ଭଦ୍ରଲୋକ କଥାବାର୍ତ୍ତା ଆରମ୍ଭ କଲେ । ତାଙ୍କ ନିଜ ଦେଶ ଓ ସୋଭିଏତ ରୁଷ୍ ବିଷୟରେ ଅନେକ କଥା ଶୁଣାଇଲେ । ସେ ନିଜ ଦେଶର ଶାସନ ବ୍ୟବସ୍ଥା ପ୍ରତି ଗଭୀର ଅସନ୍ତୋଷ ପ୍ରକାଶ କରିବାକୁ ସଂକୋଚ କଲେ ନାହିଁ ।

## ୭ ସେପ୍ଟେମ୍ବର, ରାଜଧାନୀ ଉଆସିଂଟନ

ସକାଳ ୯ଟାରେ ରାଜଧାନୀର ଡ୍ୟୁପଣ୍ଟ୍ ସାର୍କଲ ନାମକ ସ୍ଥାନରେ ଥିବା ନିର୍ଦ୍ଦିଷ୍ଟ ସରକାରୀ ଦପ୍ତରରେ ପହଞ୍ଚିଲି । ମୋ ପ୍ରୋଗ୍ରାମ ଦାୟିତ୍ୱରେ ଥିବା ମିସେସ୍

ମେରୀ ଆର୍ଣ୍ଣଷ୍ଟ ମୋତେ ଆଦର ସହକାରେ ସ୍ୱାଗତ କଲେ । ସେ ଭାରତକୁ ବାରମ୍ବାର ଆସିଛନ୍ତି ଏବଂ ଉଆସିଂଟନରେ ଓଡ଼ିଶୀ ନୃତ୍ୟ ଶିକ୍ଷା ନିମନ୍ତେ ତତ୍ପର ଅଛନ୍ତି ବୋଲି ଜଣାଇଲେ । ମୋ ପ୍ରୋଗ୍ରାମ ସମ୍ପର୍କରେ ଆଲୋଚନା ହେଲା । ସେଠାକାର କଂଗ୍ରେସ ଲାଇବ୍ରେରୀରେ ଦୁଇମାସ ଗବେଷଣା ସହିତ କେତୋଟି ବକ୍ତୃତା ଦେବା ପରେ, ନିଉୟର୍କରେ ଏକ ମାସ ରହିବା ଏବଂ ଅନ୍ୟ କେତୋଟି ସହର ଭ୍ରମଣର ଦୀର୍ଘ କାର୍ଯ୍ୟସୂଚୀ ଧରାଇଦେଲେ । କଂଗ୍ରେସ ଭବନ ନିକଟରେ 'କାରନଟ୍' ହାଉସ୍ ନାମକ ସରକାରୀ ଅତିଥି ଭବନରେ ମୋ ରହିବା ବ୍ୟବସ୍ଥା ହୋଇଛି ବୋଲି କହି ସେ ଦୁଇମାସର ଖର୍ଚ୍ଚ ଲାଗି ଚେକ୍‌ଟିଏ ଦେଲେ ।

କାରନଟ ହାଉସ୍‌ରେ ପହଞ୍ଚିଲି । ଅଦୂରରେ ଦିଶୁଥାଏ ଅପୂର୍ବ ଶୋଭାମୟ ସୁବିଶାଳ କଂଗ୍ରେସ ଭବନ । ରହିବା ଘରଟି ଦେଖି ଖୁସି ହେଲି । ଭିତରେ ସବୁପ୍ରକାର ସୁବିଧା ଥାଏ । ତଳେ ଡ୍ରଇଂରୁମ୍‌ରେ ଥାଏ ନାନା ପ୍ରକାର ମେଗାଜିନ ଓ ସଂବାଦପତ୍ର । ବିଭିନ୍ନ ଦେଶରୁ ଆସୁଥିବା ସରକାରୀ ଅତିଥିମାନଙ୍କ ଦ୍ୱାରା ସ୍ଥାନଟି ଭର୍ତ୍ତି ଥାଏ । ପ୍ରତ୍ୟେକ କୋଠରିରେ ଥାଏ ଟେଲିଭିଜନ ।

କଂଗ୍ରେସ ଭବନର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ କ୍ୟାପିଟୋଲ ହିଲ ନାମରେ ପ୍ରସିଦ୍ଧ (Capitol Hill) । ରାଜଧାନୀର ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଓ ସୌନ୍ଦର୍ଯ୍ୟମୟ ସ୍ଥାନ । ଆମେରିକୀୟ କଂଗ୍ରେସ ବା ପାର୍ଲିଆମେଣ୍ଟ ସୌଧର ପରିସର ପାଖରୁ ଚାରି ଦିଗକୁ ପ୍ରଶସ୍ତ ରାଜପଥମାନ ବ୍ୟାପିଯାଇଛି । ଗୋଟିଏ ଦିଗକୁ ଗଲେ ରାଷ୍ଟ୍ରପତିଙ୍କ ହ୍ୱାଇଟ୍ ହାଉସ୍, ଅନ୍ୟ ଦିଗରେ ସୁପ୍ରିମ୍ କୋର୍ଟ । ଦୂରରେ ଦିଶେ ସୁଉଚ୍ଚ ଉଆସିଂଟନ ସ୍ମୃତିସ୍ତମ୍ଭ ।

ମାତ୍ର ଦୁଇଶହ ବର୍ଷ ପୂର୍ବେ ଏହି ସହରର ଚିହ୍ନ ବର୍ଣ୍ଣ ନ ଥିଲା । ବ୍ରିଟିଶ ବିରୋଧରେ ଆମେରିକାନମାନଙ୍କର ସ୍ୱାଧୀନତା ସଂଗ୍ରାମ ବେଳେ 'ଯୁକ୍ତରାଷ୍ଟ୍ର ଆମେରିକା' ନାମକ ଦେଶଟିଏ ନଥାଏ । ତେରଗୋଟି ଉପନିବେଶରେ ବିଭକ୍ତ ରହି ସେମାନେ ବସବାସ କରୁଥିଲେ । ୧୭୮୩ ମସିହାରେ ଯୁଦ୍ଧରେ ଜୟଲାଭ କଲାପରେ ଉପନିବେଶଗୁଡ଼ିକର ପ୍ରତିନିଧିମାନେ ଫିଲାଡେଲଫିଆ ସହରରେ ମିଳିତ ହୋଇ 'ଯୁକ୍ତରାଷ୍ଟ୍ର ଆମେରିକା' ନାମକ ସ୍ୱାଧୀନ ସାଧାରଣତନ୍ତ୍ରର ଜନ୍ମ ଘୋଷଣା କରିବା ସମୟରେ ଦେଶ ପାଇଁ ଜାତୀୟ ରାଜଧାନୀ ନ ଥିଲା । ଚାରିବର୍ଷ ପରେ ସଂବିଧାନ ତିଆରି ହେଲା । ତାହାର ଦୁଇବର୍ଷ ପରେ ସଂବିଧାନ କାର୍ଯ୍ୟକାରୀ କରାଗଲା ଓ ଜର୍ଜ ଉଆସିଂଟନ ପ୍ରଥମ ସଭାପତି ବା President ଭାବେ ନିର୍ବାଚିତ ହେଲେ । ନବନିର୍ବାଚିତ ସଭାପତି ପଟୋମାକ ନାମକ ନଦୀ କୂଳରେ ରାଜଧାନୀ ସ୍ଥାପନ ଲାଗି ସ୍ଥାନ ନିରୂପଣ କଲେ । ୧୭୯୩ରେ ତାଙ୍କ ଦ୍ୱାରା

ନୂତନ ରାଜଧାନୀର ମୂଳଭିତ୍ତି ସ୍ଥାପିତ ହେଲା ଏବଂ ତାଙ୍କ ନାମାନୁଯାୟୀ ରାଜଧାନୀର ନାମ ରହିଲା ଉଆସିଂଟନ । ପ୍ରଥମ ଅବସ୍ଥାରେ, ମାମୁଲି ଘରଗୁଡ଼ିକରେ ସଭାପତି ଓ କଂଗ୍ରେସ ସଦସ୍ୟମାନେ ବସବାସ କଲେ । କ୍ରମେ କ୍ରମେ ରାଷ୍ଟ୍ରପତି ଭବନ ବା ହ୍ୱାଇଟ୍ ହାଉସ୍, କଂଗ୍ରେସ ଭବନ, ସୁପ୍ରିମ କୋର୍ଟ, ସଚିବାଳୟ, ରାଜପଥ, ଉଦ୍ୟାନ, ରମଣୀୟ ଉଦ୍ୟାନ, ଚିତ୍ରଶାଳା, ଯାଦୁଘର ଓ ନାଟ୍ୟଶାଳା ଇତ୍ୟାଦି ଧାରଣ କରି ରାଜଧାନୀ ପୂର୍ଣ୍ଣତା ଲାଭ କଲା । କୁହାଯାଏ, କେବଳ ଶାସନକାର୍ଯ୍ୟ ନିର୍ବାହ ନିମନ୍ତେ ନିର୍ମିତ ହୋଇଥିବା ଏପରି ସହରର ନମୁନା ପୃଥିବୀରେ ବିରଳ ।

ଶୂନ୍ୟ ସଂଖ୍ୟାରୁ ଆରମ୍ଭ କରି ଧୀରେ ଧୀରେ ରାଜଧାନୀର ଜନସଂଖ୍ୟା ବଢ଼ି ଚାଲିଥିଲାବେଳେ, ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସଭାପତି ଆବ୍ରାହାମ ଲିଙ୍କନ୍ ଆମେରିକାରେ କ୍ରୀତଦାସ ପ୍ରଥା ଲୋପ କରି କୃଷ୍ଣକାୟ ନିଗ୍ରୋମାନଙ୍କୁ ମୁକ୍ତି ପ୍ରଦାନ କରିଥିଲେ । ସେହି ସମୟରୁ ସହସ୍ର ସହସ୍ର କୃଷ୍ଣାଙ୍ଗ ସ୍ୱାଧୀନ ନାଗରିକ ଭାବରେ ରାଜଧାନୀରେ ବସବାସ କଲେ । ଗୋଟିଏ ଦିଗରେ ସୁଦୃଶ୍ୟ ସୌଧରାଜି ଓ ଅନ୍ୟ ଦିଗରେ ଦରିଦ୍ର ନିଗ୍ରୋମାନଙ୍କର ଅପରିଷ୍କାର ବସ୍ତି, ଉଭୟ ପ୍ରକାର ଦୃଶ୍ୟ ଧରି ଉଆସିଂଟନ ସହର ଛିଡ଼ା ରହିଛି ।

ସେ ଦିନ ସନ୍ଧ୍ୟାବେଳେ ଗୋଟିଏ ପାର୍କ ଭିତରେ ଶତାଧିକ ନିଗ୍ରୋ ବାଳକଙ୍କୁ ବଳିଷ୍ଠ ବପୁଧାରୀ କୃଷ୍ଣାଙ୍ଗମାନେ କାରାଟେ, ଜୁଡୋ ଓ ମଲ୍ଲଯୁଦ୍ଧ ତାଲିମ ଦେଉଥିବା ଦେଖିଲି । ସମସ୍ତଙ୍କ ଗର୍ଜନଧ୍ୱନିରେ ପାର୍କ କମ୍ପିଉଠୁଥାଏ । ପାଖ ରାସ୍ତାରେ ଚାଲି ଯାଉଥିବା ଶ୍ୱେତାଙ୍ଗମାନେ ପାର୍କ ଭିତରକୁ ଚାହୁଁ ନଥାନ୍ତି ।

## ୮ ସେପ୍ଟେମ୍ବର, କଂଗ୍ରେସ ଲାଇବ୍ରେରୀ

କଂଗ୍ରେସ ଲାଇବ୍ରେରୀରେ କାର୍ଯ୍ୟ ଆରମ୍ଭ କଲି । ପୃଥିବୀର ଅନ୍ୟତମ ବୃହତ୍ତମ ଲାଇବ୍ରେରୀ ରୂପେ ପ୍ରସିଦ୍ଧ ଏହି ପାଠାଗାରରେ ନିୟୁତ ନିୟୁତ ବହି ରହିଛି । ଶୁଣି ଅବାକ୍ ହେଲି ଯେ ଜନ୍ କେନେଡ଼ି ରାଷ୍ଟ୍ରପତି ଥିଲା ସମୟରେ, ପୃଥିବୀର ପ୍ରତ୍ୟେକ ଭାଷାରେ ଲିଖିତ ପୁସ୍ତକମାନ ସଂଗ୍ରହ କରିବା ଲାଗି ଅର୍ଥ ବରାଦ କରିଥିଲେ । ସତ୍ୟାସତ୍ୟ ଜାଣିବା ପାଇଁ ଓଡ଼ିଆ କ୍ୟାଟାଲୋଗ୍ ଦେଖିଲି । ମନୋଜ ଦ୍ୱାରା ଲିଖିତ ବହିଗୁଡ଼ିକର ନାମ ସମେତ ଅଧିକାଂଶ ଓଡ଼ିଆ ଲେଖକଙ୍କ ବହି ତାଲିକା ଦେଖି ଆଚମ୍ବିତ ହେଲି । ବିଶ୍ୱାସ କରିପାରିଲି ନାହିଁ ଯେ ୧୯୫୪ରେ ପ୍ରକାଶିତ ମୋ 'ଅସ୍ତରାଗ' ଉପନ୍ୟାସ ମଧ୍ୟ ସେଠାରେ ସ୍ଥାନ ପାଇଛି । ଏ ଦୃଷ୍ଟିରୁ, ସାରା ପୃଥିବୀର ଅସଂଖ୍ୟ ଭାଷାରେ ପ୍ରକାଶିତ କେଉଁ ବହି ବା ଏଠାରେ ନଥିବ !

କଂଗ୍ରେସ ଲାଇବ୍ରେରୀର ଏକ ସ୍ୱତନ୍ତ୍ର ଅଟ୍ଟାଳିକାରେ ଥାଏ ଅସଂଖ୍ୟ ପାଣ୍ଡୁଲିପି ଓ ଅପ୍ରକାଶିତ ଦଲିଲ ଦସ୍ତାବିଜ୍ । ବିଲ୍ଡିଂଟିର ନାମ ଜେଫାରସନ ବିଲ୍ଡିଂ । ସେହିଠାରେ ତଥ୍ୟ ସଂଗ୍ରହ କରିବାକୁ ଉଦ୍ୟମ କଲି । ଆମେରିକା ସଭାପତିମାନଙ୍କର ବ୍ୟକ୍ତିଗତ କାଗଜପତ୍ର, ଅନ୍ୟ ଦେଶର ରାଷ୍ଟ୍ରନାୟକମାନଙ୍କ ସହିତ ଆଦାନ ପ୍ରଦାନ ହୋଇଥିବା ଚିଠିପତ୍ର ଇତ୍ୟାଦି ମହଜୁଦ୍ ଥାଏ । ବ୍ରିଟିଶ ପ୍ରଧାନମନ୍ତ୍ରୀ ଚାର୍ଚ୍ଚିଲ ଓ ଆମେରିକା ରାଷ୍ଟ୍ରପତି ରୁଜ୍‌ଭେଲଟ୍‌ଙ୍କ ଚିଠିପତ୍ରରୁ ' ଭାରତ ଛାଡ଼' ବିପ୍ଳବ କାଳର ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନ ଆବିଷ୍କାର କଲି ।

ଲାଇବ୍ରେରୀ ଅଟ୍ଟାଳିକାର ତଳ ତାଲାରେ ଥାଏ ଭୋଜନାଳୟ । ସେଠାରେ କେବଳ କଂଗ୍ରେସ ସଦସ୍ୟ ଓ ଅଧ୍ୟୟନ ଲାଗି ଆସୁଥିବା ବ୍ୟକ୍ତିମାନଙ୍କ ଖାଇବା ବ୍ୟବସ୍ଥା ଥାଏ । ଖାଇଲାବେଳେ କେତେକ କଂଗ୍ରେସ ସଦସ୍ୟଙ୍କୁ ଦେଖିପାରିଲି ।

## ୯ ସେପ୍ଟେମ୍ବର, କଂଗ୍ରେସ ଭବନ

ସେ ଦିନ ଥିଲା ରବିବାର । କଂଗ୍ରେସ ଭବନ ଦେଖିବାକୁ ଗଲି । ସମଗ୍ର ୱାସିଂଟନ ସହରରେ ସେହି ସୁବୃହତ ସୌଧଟି ହେଉଛି ସର୍ବାଧିକ ମନୋରମ ଓ ମର୍ଯ୍ୟାଦାପୂର୍ଣ୍ଣ । ଜନପ୍ରତିନିଧି ସଭାର ଗୁରୁତ୍ୱ ଦୃଷ୍ଟିରୁ ରାଜଧାନୀ ନିର୍ମାତାମାନେ ସେହି ସୌଧକୁ ଏକ ମହନୀୟ ସ୍ଥାପତ୍ୟ କୀର୍ତ୍ତି ରୂପେ ଗଠନ କରିଥିଲେ । ଧଳା ମାର୍ବଲ ପଥରର ପ୍ରକାଣ୍ଡ ପ୍ରକାଣ୍ଡ କକ୍ଷ ଓ ସୁଉଚ୍ଚ ଗୁମ୍ବଜର ସୌନ୍ଦର୍ଯ୍ୟ ଦର୍ଶକମାନଙ୍କୁ ବିମୋହିତ କରେ ।

କଂଗ୍ରେସ ଭବନର ଚାରିପାଖରେ ଥିବା ପ୍ରଶସ୍ତ ମର୍ମର ବାରଣ୍ଡାରେ ବୁଲିଲାବେଳେ ଦେଖାଯାଏ ଉଦ୍ୟାନ, ଉତ୍ସ, ସବୁଜ ତୃଣଭୂମି ଓ ପ୍ରଶସ୍ତ ପ୍ରାଙ୍ଗଣ । ଦୂରରେ ଦିଶୁଥାଏ ୱାସିଂଟନ ସ୍ମୃତିସ୍ତମ୍ଭ ।

ସନ୍ଧ୍ୟାବେଳେ କ୍ୟାପିଟଲ ହିଲ୍‌ର ଗୋଟିଏ ସିନେମା ହଲ୍‌ରେ ପଶିଲି । ଚଳଚ୍ଚିତ୍ର ଆରମ୍ଭ ହେଲା । କିଛି ସମୟ ଦେଖିଲା ପରେ ଭାବିପାରିଲି ନାହିଁ, ସେପରି ବୀଭତ୍ସ ଛବି ପ୍ରଦର୍ଶନ ପାଇଁ ଆମେରିକାର ସୁସଭ୍ୟ ସରକାର ଅନୁମତି ଦିଅନ୍ତି କିପରି ! ଜଘନ୍ୟ ହିଂସା, ଧର୍ଷଣ, ଅଶ୍ଳୀଳତା ଓ ନଗ୍ନତାର ଦୃଶ୍ୟମାନ ମନରେ ବିକାର ସୃଷ୍ଟି କଲା । ଶ୍ୱେତାଙ୍ଗ ଓ କୃଷ୍ଣାଙ୍ଗ ନରନାରୀ ଓ ବାଳକ ବାଳିକାଙ୍କ ଦ୍ୱାରା ହଲଟି ପରିପୂର୍ଣ୍ଣ ଥାଏ ।

## ୧୧ ସେପ୍ଟେମ୍ବର, ଦଲାଇ ଲାମାଙ୍କ ଦର୍ଶନ ଲାଭ

ଅପରାହ୍ନ ୪ଟା ବେଳେ କଂଗ୍ରେସ ଲାଇବ୍ରେରୀରୁ ବାହାରି ଆସିଲାବେଳେ ମୁଖ୍ୟ ପ୍ରବେଶପଥ ନିକଟରେ ପୋଲିସ୍ ଫୋର୍ସ, ପଦସ୍ଥ କର୍ମଚାରୀଦଳ ଓ ଅନେକ

ଲୋକଙ୍କୁ ରୁଣ୍ଡ ହୋଇଥିବା ଦେଖିଲି । ଟେଲିଭିଜନ ଟିମ୍ ଓ ଫଟୋଗ୍ରାଫାର ଦଳ ମହଜୁଦ୍ ଥାନ୍ତି । ଜଣେ ଭଦ୍ରବ୍ୟକ୍ତିଙ୍କୁ ପଚାରିଲି, "କିଏ ଆସିବେ ?" "ଆସୁଛନ୍ତି ଆପଣଙ୍କ ଦେଶର ଜଣେ ଲୋକ," ସେ ଥଟ୍ଟା କଲେ । ତା'ପରେ ନାମ ଜଣାଇଲେ, ଦଲାଇ ଲାମା ।

ସାଇରେନ ଧ୍ୱନି ସହ ପ୍ରଥମେ ୩ଖଣ୍ଡି ପୋଲିସଗାଡ଼ି ଆସିଗଲା । ତା ପଛେ ପଛେ ଖଣ୍ଡିଏ ବୃହଦାକାର କାର୍ । ନିରାପତ୍ତାରକ୍ଷୀମାନେ ଗାଡ଼ିଟିକୁ ଘେରିଗଲେ । ଦୁଇଜଣ ରକ୍ଷୀ ଗାଡ଼ିର ଦରଜା ଫିଟାଇ ଧରିଲେ । ସେଥିରୁ ପ୍ରଥମେ ବାହାରିଲେ ଲାଲ ରଙ୍ଗର ପରିଚ୍ଛଦ ପିନ୍ଧିଥିବା ତିନିଜଣ ଲାମା । ସେମାନଙ୍କ ପରେ ବାହାରି ଆସିଲେ ଦଲାଇ ଲାମା । ଗାଢ଼ ଲାଲ ରଙ୍ଗର ପରିଧେୟ ସାଙ୍ଗକୁ ପିନ୍ଧିଥିବା ମୋଜା ଓ ଜୋତା ଥାଏ ଅଦ୍ଭୁତ ଢଙ୍ଗର । ମୁଣ୍ଡ ଉପରେ ଅଧ ଇଞ୍ଚ ଲମ୍ବ କେଶ । ସହାସ୍ୟ ବଦନରେ ସମସ୍ତଙ୍କ ଉଦ୍ଦେଶ୍ୟରେ ହାତ ହଲାଇ ସେ କିଛି ସମୟ ଚାହିଁଲେ । ମୋତେ ଭାରତୀୟ ବୋଲି ଜାଣିପାରି ହସିଦେଲା ବେଳକୁ ମୁଁ ଦୁଇ ହାତ ଉଠାଇ ନମସ୍କାର ଜଣାଇଲି । ତତ୍କ୍ଷଣାତ୍ ସେ ମଧ୍ୟ ଦୁଇ ହାତ ଏକତ୍ର କରି ନମସ୍କାର କଲେ । ନିରାପତ୍ତା ବାହିନୀର ପ୍ରାୟ ୫୦ ପର୍ଯ୍ୟନ୍ତ କର୍ମଚାରୀ ତାଙ୍କୁ ସଙ୍ଗେ ସଙ୍ଗେ ଲାଇବ୍ରେରୀ ଭିତରକୁ ନେଇଗଲେ ।

ଦଲାଇ ଲାମାଙ୍କ ସମ୍ପର୍କରେ କିଛି ଶୁଣିବା ଉଦ୍ଦେଶ୍ୟରେ କେତେଜଣ ସାହେବ ମୋତେ ନିକଟବର୍ତ୍ତୀ ଚା ଷ୍ଟଲକୁ ଡାକି ନେଲେ । ଚୀନାମାନଙ୍କ ତିବ୍ବତ ଅଧିକାର, ଲାମାମାନଙ୍କ ଉପରେ ଅତ୍ୟାଚାର, ଦଲାଇ ଲାମାଙ୍କ ପଳାୟନ ଓ ଭାରତରେ ଆଶ୍ରୟ ଗ୍ରହଣ ଇତ୍ୟାଦି ଅନେକ ବିଷୟ କହିଲି । ଅନୁଭବ କରିପାରିଲି, ତିବ୍ବତୀୟମାନଙ୍କ ପ୍ରତି ଆମେରିକାନମାନଙ୍କର ସହାନୁଭୂତି ବା ଦୟା ଦରଦ୍ ନାହିଁ । ସେମାନେ ଚାହୁଁଥିଲେ ଚୀନ ସହିତ ସୁସମ୍ପର୍କ, ବାଣିଜ୍ୟ ବ୍ୟବସାୟ ବଳରେ ନିଜ ଦେଶର ସ୍ୱାର୍ଥସିଦ୍ଧି ।

## ୧୨ ସେପ୍ଟେମ୍ବର, ଅସାଧୁ ବ୍ୟବସାୟୀ

ଅପରାହ୍ନରେ ଭୂତଳ ଟ୍ରେନ ଯୋଗେ ମେଟ୍ରୋ ସେଣ୍ଟାର ନାମକ ସ୍ଥାନକୁ ବୁଲିବାକୁ ଗଲି । ରାଜପଥର ଦୁଇ ପାଖରେ ବଡ଼ ବଡ଼ ଦୋକାନ । ନାନାପ୍ରକାର ବିଳାସସାମଗ୍ରୀରେ ଦୋକାନଗୁଡ଼ିକ ଭର୍ତ୍ତି । ଜଣେ ଭାରତୀୟ ମୋତେ ଦେଖି ପାଖକୁ ଆସିଲେ ଓ ହିନ୍ଦୀରେ ସତର୍କ କରିଦେଲେ, "ଏଠାରେ ଈଷତ୍ ଅନ୍ୟମନସ୍କ ହେଲେ ପକେଟମାର ବା ଚୋରମାନେ ମନିବ୍ୟାଗ୍ ବା ହ୍ୟାଣ୍ଡବ୍ୟାଗ୍ ହରଣଚାଳ କରିନେବେ ।" ପଚାରିଲି, "ଧନୀ ଦେଶରେ ଚୋର କାହିଁକି ?" ଉତ୍ତର ଦେଲେ,

''ଏ ଦେଶରେ ସମସ୍ତେ ଧନୀ ନୁହନ୍ତି କିମ୍ବା ଅଭାବୀଙ୍କ ସଂଖ୍ୟା କମ୍ ନୁହେଁ ! ଧଳାମାନେ କହନ୍ତି, କଳାମାନେ ଚୋର । କଳା କହନ୍ତି ଧଳା ଚୋର । ଠକନ୍ତି ଟୁରିଷ୍ଟମାନେ ।''

ସତର୍କତା ଅବଲମ୍ବନ କଲି । କିନ୍ତୁ ଠକିଲି, ଗୋଟିଏ ଦୋକାନରେ । ରିଷ୍ଟୱାଚ୍ ଦୋକାନର ପ୍ରବେଶ ପଥରେ ବଡ଼ ବଡ଼ ଅକ୍ଷରରେ ଲେଖାଥାଏ, '' ଅଧା ମୂଲ୍ୟରେ ବିକ୍ରୟର ଶେଷ ଦିବସ ।'' ଅପୂର୍ବ ସୁଯୋଗ ଭାବି ଭିତରକୁ ପଶିଲି । ନିଜ ପାଇଁ, ଝିଅ ଓ ବୋହୂପାଇଁ ତିନିଟି ଘଡ଼ି କିଣିପକାଇଲି । କିନ୍ତୁ, ସପ୍ତାହକ ପରେ ପୁଣି ଦିନେ ମେଟ୍ରୋ ସେଣ୍ଟାରରେ ବୁଲିଲାବେଳେ ଠିକ୍ ସେହି ଦୋକାନ ଆଗରେ ସେହି କଥା ଲେଖାଥିବା ଦେଖିଲି । ମାସକ ପରେ ମଧ୍ୟ ସେହି 'ଶେଷ ଦିବସ' ଲେଖାଥାଏ । ପୋଲିସ ଧରନ୍ତି ନାହିଁ, କିମ୍ବା ନାଗରିକମାନେ ପଚାରନ୍ତି ନାହିଁ ବୋଲି ଜାଣିପାରିଲି । ଅଧିକ ଦୁଃଖର ବିଷୟ, ଯେଉଁ ଘଡ଼ିଗୁଡ଼ିକ କିଣିଥିଲି ସେହି ଘଡ଼ି ନିକଟବର୍ତ୍ତୀ ଦୋକାନରେ କମ୍ ଦାମରେ ମିଳୁଥିବା ବେଳେ, ଅନ୍ୟ ଏକ ଦୋକାନରେ ବେଶି ଦାମରେ ବିକ୍ରି ହେଉଥାଏ ।

ଏହି ବିଷୟ ଦିନେ କାରନଟ ହାଉସରେ ଉତ୍ଥାପନ କଲି । ମ୍ୟାନେଜାରଙ୍କୁ ପଚାରିଲି, ''ଇଂଲଣ୍ଡ, ଜାର୍ମାନୀ ଓ ଫ୍ରାନ୍ସ ପ୍ରଭୃତି ଦେଶରେ ପ୍ରତ୍ୟେକ ଜିନିଷର ଦାମ ସବୁ ଦୋକାନରେ ପ୍ରାୟ ସମାନ ଥିଲାବେଳେ, ଆମେରିକାରେ ଏକା ଜିନିଷର ଦାମ୍ ଭିନ୍ନ ଭିନ୍ନ କାହିଁକି ? ଅସାଧୁ ବ୍ୟବସାୟୀମାନେ ସରକାରଙ୍କୁ ଡରନ୍ତି ନାହିଁ କିପରି ?''

ନିଃସଙ୍କୋଚ ମନରେ ସେ ବ୍ୟାଖ୍ୟା କଲେ, '' ଆମ ଦେଶର ଅର୍ଥନୀତିରେ ବ୍ୟବସାୟୀମାନଙ୍କୁ ଅବାଧ ମୁକ୍ତି ଦିଆ ଯାଇଛି । ନିଜ ଇଚ୍ଛା ଓ ବୁଦ୍ଧି ବଳରେ ମୁନାଫା ହାସଲ କରିବା ଅଧିକାର ଦୋକାନୀମାନଙ୍କର ଅଛି । ଜଣେ ଦୋକାନୀ ଯଦି ଜାପାନୀ ଘଡ଼ି ହଜାର ହଜାର ସଂଖ୍ୟାରେ ଆମଦାନୀ କରିଥିବ, ସେ କମ୍ ଲାଭ ରଖି ବିକ୍ରି କରିପାରେ । ଅନ୍ୟ ଜଣେ ଅଳ୍ପ ସଂଖ୍ୟାର ଘଡ଼ି ଆଣିଥିଲେ, ବେଶି ଦରରେ ବିକିବାକୁ ବାଧ୍ୟ । ଏପରି କାମକୁ 'ଅସାଧୁତା' କହିବା ଉଚିତ ନୁହେଁ ।''

ଦୀର୍ଘ ଆଲୋଚନା ଶେଷରେ ମୋ ମନକଥା ପ୍ରକାଶ କଲି, ''ଯୁକ୍ତରାଷ୍ଟ୍ର ସରକାର ପୁଞ୍ଜିବାଦୀ ଓ ବ୍ୟବସାୟୀମାନଙ୍କୁ ଡରନ୍ତି, ଇଂଲଣ୍ଡ ପ୍ରଭୃତି ଦେଶରେ ସେମାନେ ସରକାରଙ୍କୁ ଭୟ କରନ୍ତି ।''

## ୧୩ ସେପ୍ଟେମ୍ବର, ଭାରତ ସମ୍ପର୍କରେ ସଂବାଦ

ଆମେରିକାର ସଂବାଦପତ୍ରଗୁଡ଼ିକରେ ଭାରତ ସମ୍ପର୍କରେ ପ୍ରାୟ କିଛି ବାହାରେ ନାହିଁ, କିମ୍ବା ଯାହା ପ୍ରକାଶ ପାଏ ତାହା ମୁଖ୍ୟତଃ କୁହାରଟନା । ଏହି ସନ୍ଧ୍ୟାରେ ଭୟେସ୍ ଅଫ୍ ଆମେରିକ୍କା ଦ୍ୱାରା ପୃଥିବୀର ବିଶେଷ ସଂବାଦମାନ ପ୍ରସାରିତ ହେବ ଜାଣି, ଶୁଣିବା ଲାଗି ବସିରହିଲି । ସଂବାଦ ପ୍ରସାର ଆରମ୍ଭ ହେଲା । ଭିଏତନାମର ପଳାତକ ସମସ୍ୟା, ପାଲେଷ୍ଟାଇନ-ଲେବାନନ ବିବାଦ, ଇତ୍ୟାଦି ଇତ୍ୟାଦି ପ୍ରସାରିତ ହେଲାପରେ, ଭାରତରେ ଉଚ୍ଚତମ ମହଲରେ ଚାଲିଥିବା ଦୁର୍ନୀତି ସମ୍ବନ୍ଧରେ ତଥ୍ୟ ପରିବେଷଣ କରାଗଲା । ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇଙ୍କ ପୁତ୍ର ଓ ଜଗଜୀବନ ରାମ ଇତ୍ୟାଦି ନେତାମାନେ 'ଜାଗୁଆର' ଖରିଦରେ ଅର୍ଥ ଆତ୍ମସାତ କରିନ୍ତନ୍ତି ବୋଲି ଘୋଷଣା କରାଗଲା । ଅମଲାତନ୍ତ୍ର, ରାଜନୈତିକ ଦଳ ଓ ବ୍ୟବସାୟୀ ଗୋଷ୍ଠୀକୁ ଦୁର୍ନୀତିଗ୍ରସ୍ତ କୁହାଗଲା । "କୌଣସି ଦୁର୍ନୀତି ପ୍ରମାଣିତ ହୁଏନା; କେହି ଦଣ୍ଡିତ ହୁଅନ୍ତି ନାହିଁ; ଅନୁସନ୍ଧାନ କମିଶନ ବସେ; ସରଳବିଶ୍ୱାସୀ ଜନସାଧାରଣ ଆଲୋଚନା କରି ଆନନ୍ଦ ପାଆନ୍ତି; ତା ପରେ ଭୁଲିଯାଆନ୍ତି; ଦୁର୍ନୀତି ଲାଗି ଦଣ୍ଡ ମିଳେ ନାହିଁ ବୋଲି ସେମାନଙ୍କର ଧାରଣା ହୁଏ; ବାଧ୍ୟ ହୋଇ ସମସ୍ତେ ନୀରବ ରହନ୍ତି ।" ଉପସଂହାରରେ ମତ ଦିଆଗଲା, "Indian democracy is a corrupt democracy." ।

## ୧୬ ସେପ୍ଟେମ୍ବର, ଜର୍ଜ ଉଆସିଂଟନ ସ୍ମୃତିସ୍ତମ୍ଭ

ରବିବାର ଲାଇବ୍ରେରୀ ବନ୍ଦ ଥାଏ । କେତେଗୋଟି ଦର୍ଶନୀୟ ସ୍ଥାନ ଦେଖିବାକୁ ବାହାରିଲି । ପ୍ରଥମେ ପହଞ୍ଚିଲି ଜର୍ଜ ଉଆସିଂଟନ ସ୍ମୃତିସ୍ତମ୍ଭ ନିକଟରେ । ସୁବିସ୍ତୃତ ସବୁଜ ପ୍ରାଙ୍ଗଣରେ ଛିଡ଼ା ରହିଛି ୫୫୫ ଫୁଟ ଉଚ୍ଚ ନଭଶ୍ଚୁମ୍ବୀ ସ୍ତମ୍ଭ । ଦର୍ଶକମାନେ ଲାଇନ ଲାଗିଥାନ୍ତି । ରାଜଧାନୀର ସର୍ବୋଚ୍ଚ ସୌଧ । ସ୍ୱାଧୀନତା ସଂଗ୍ରାମର ସେନାପତି ଓ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତିଙ୍କ ସ୍ମୃତିରକ୍ଷା ନିମନ୍ତେ ଏପରି ସ୍ଥାନରେ ଓ ଏପରି ଆକାରରେ ସୌଧଟି ନିର୍ମାଣ କରାଯାଇଛି ଯେ ସାଙ୍କେତିକ ଭାବରେ ସେହି ସ୍ତମ୍ଭ ସମଗ୍ର ରାଜଧାନୀ ଉପରେ ଦୃଷ୍ଟି ରଖିଲା ପରି ଜଣାଯାଏ । ନୀଳ ଆକାଶ ମଧ୍ୟକୁ ଭେଦି ରହିଥିବା ସ୍ତମ୍ଭର ଆମୂଳଚୂଳ କୌଣସି କାରୁକାର୍ଯ୍ୟ ନାହିଁ, ଅଥଚ ମସୃଣ ପଥରଖଣ୍ଡରେ ଗଠିତ ହୋଇ ପ୍ରଶସ୍ତ ଭିତ୍ତିଭୂମି ଉପରୁ କ୍ରମାନ୍ୱୟ ଭାବେ ଗୁମ୍ବଜ ଆକାରରେ ଶୀର୍ଷବିନ୍ଦୁ ପର୍ଯ୍ୟନ୍ତ ଉଠିଯାଇଛି । ମୂଳଦେଶରେ ଛିଡ଼ା ହେଲେ ଗୋଟିଏ ଦିଗରେ ଦିଶେ କ୍ୟାପିଟଲ ବା କଂଗ୍ରେସ ଭବନ, ଅନ୍ୟ ଦିଗରେ ରାଷ୍ଟ୍ରପତି ନିବାସ ବା ହ୍ୱାଇଟ୍ ହାଉସ, ଆଉ ଦୁଇ ଦିଗରେ ଲିଙ୍କନ୍ ସ୍ମୃତିସ୍ତମ୍ଭ ଓ ଜେଫାରସନ ସ୍ମୃତିସ୍ତମ୍ଭ । ଅଦୂରରେ ବହିଯାଉଛି ପଟୋମାକ ନଦୀ ।

ଲିଫ୍ଟ୍ ଯୋଗେ ଦଳ ଦଳ ଦର୍ଶକଙ୍କୁ ଶୀର୍ଷସ୍ଥାନକୁ ନିଆଯାଏ । ସେଠାରେ ଚାରିଦିଗକୁ ଥିବା ଝରକା ବାଟେ ସମଗ୍ର ସହରର ଦୃଶ୍ୟ ଦେଖିବାକୁ ମିଳେ । ମୋ ପାଖରେ ଛିଡ଼ା ରହି ତଳକୁ ଚାହିଁ ରହିଥିବା ଅବସ୍ଥାରେ ଜଣେ ବୃଦ୍ଧାଙ୍କର ମୁଣ୍ଡ ହଠାତ ବୁଲାଇଦେବାରୁ ସେ ତଳେ ବସିପଡ଼ିଲେ । ତାଙ୍କ ସ୍ୱାମୀ ବିରକ୍ତ ହୋଇ କହିଲେ, "ଦିଗ୍‌ବଳୟ ପର୍ଯ୍ୟନ୍ତ ଦୃଶ୍ୟ ଦେଖାଯାଉଥିବା ବେଳେ ତୁମେ ଏତେ ଉର୍ଦ୍ଧ୍ୱରୁ ସିଧା ତଳକୁ ଚାହିଁ ମାଟି ଦେଖୁଥିଲ କାହିଁକି ।"

ଉଆସିଂଟନ ମନ୍ୟୁମେଣ୍ଟ ପାଖରୁ ଚାଲିଲି ଆବ୍ରାହାମ ଲିଙ୍କନ୍ ସ୍ମୃତିସୌଧ ଦିଗକୁ । ମର୍ମର ହଲ୍ ଭିତରେ ତାଙ୍କର ବିଶାଳକାୟ ସ୍ଫଟିକ ପ୍ରତିମୂର୍ତ୍ତି ଦେଖିବାକୁ ମିଳିଲା । ଅପରାହ୍ନରେ ଦେଖିବାକୁ ଗଲି ସ୍ମିଥ୍ ସୋନିଆନ ମିଉଜିୟମ । ପୃଥିବୀର ବିଭିନ୍ନ ଦେଶରୁ ସଂଗୃହୀତ ପ୍ରାଚୀନ ନିଦର୍ଶନମାନ ସେଠାରେ ସଂରକ୍ଷିତ ଅଛି ।

**୧୭ ସେପ୍ଟେମ୍ବର, ରାଜନୈତିକ ଅପରାଧର ଦୃଷ୍ଟାନ୍ତ**

ସେ ଦିନର ଘଟଣା । ଲାଇବ୍ରେରୀ ବଗିଚାରେ କେତେଜଣ ବିଦ୍ୱାନ ବ୍ୟକ୍ତି ଆମେରିକୀୟ ରାଜନୀତିରେ ଅପରାଧୀକରଣ ବ୍ୟାପାର ଆଲୋଚନା କରୁଥିଲେ । ହାତରେ ସଂବାଦପତ୍ର ଧରି ବିରକ୍ତିସୂଚକ ମନ୍ତବ୍ୟ ଦେଉଥିବା ଶୁଣିଲି । ଘଟଣାଟି ଉଲ୍ଲେଖଯୋଗ୍ୟ ।

୧୯୭୦ ମସିହାରେ ଜିଏନ୍ ସେବାର୍ଗ ନାମ୍ନୀ ଆମେରିକାର ଜଣେ ସ୍ୱନାମଧନ୍ୟା ଚଳଚ୍ଚିତ୍ର ଅଭିନେତ୍ରୀ ପ୍ୟାରିସ ସହରରେ ଆତ୍ମହତ୍ୟା କରିଥିଲେ । କାରଣ, ତାଙ୍କ ନାମରେ ଦୁର୍ନାମ ରଟିଥିଲା ଯେ ସେ ଜଣେ କୃଷ୍ଣାଙ୍ଗ ନିଗ୍ରୋ ସହିତ ଅବୈଧ ପ୍ରଣୟରେ ଲିପ୍ତ ରହି ଗର୍ଭବତୀ ହୋଇଛନ୍ତି । ସେହି ସଂବାଦ ପଢ଼ି ମର୍ମାହତା ଅଭିନେତ୍ରୀଙ୍କର ଅକସ୍ମାତ ଗର୍ଭପାତ ହେଲା ଓ ସେ ୭ ମାସର ଭ୍ରୂଣଟିକୁ ନିଜ ଦେଶକୁ ଆଣି ଶ୍ୱେତାଙ୍ଗ ବୋଲି ପ୍ରମାଣ କରାଇଲେ । ନିଜ ସ୍ୱାମୀ ତଥା ଦେଶବାସୀଙ୍କ ଆଗରେ ନିର୍ଦ୍ଦୋଷ ପ୍ରମାଣିତ ହେଲାପରେ ପୁଣି ପ୍ୟାରିସ ଚାଲିଯାଇ ସେଠାରେ ଆତ୍ମହତ୍ୟା କଲେ ।

କିନ୍ତୁ ଦୀର୍ଘ ୯ ବର୍ଷ ପରେ, ୧୯୭୯ ସେପ୍ଟେମ୍ବର ୧୫ ତାରିଖ ଦିନ ଯୁକ୍ତରାଷ୍ଟ୍ରର ସର୍ବବୃହତ୍ ଗୁପ୍ତଚର ସଂସ୍ଥା Federal Bureau of Investigation ବା FBIର ଜଣେ ଅବସରପ୍ରାପ୍ତ କର୍ମକର୍ତ୍ତା ସତ୍ୟ ଘଟଣା ପ୍ରକାଶ କରିଦେଲେ ଯେ, ସେହି ଶ୍ୱେତାଙ୍ଗ ଅଭିନେତ୍ରୀ କୃଷ୍ଣକାୟମାନଙ୍କ ନ୍ୟାଯ୍ୟ ଦାବି ପ୍ରତି ସମର୍ଥନ ଜଣାଉଥିବାରୁ ତାଙ୍କୁ ଦମନ କରିବା ଉଦ୍ଦେଶ୍ୟରେ FBI ଓ CIA ମିଳିତ ଭାବରେ ତାଙ୍କ ନାମରେ ମିଥ୍ୟା କୁତ୍ସା ରଟନା କଲେ, ଯାହା ଫଳରେ ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହେଲେ ।

ଏହି ସ୍ୱୀକାରୋକ୍ତି ପରେ ସେଦିନ ଜନମତ ଉତ୍‌କ୍ଷିପ୍ତ ହୋଇଉଠିଲା । ଗୋଟିଏ ସଭ୍ୟଦେଶର ସରକାର ଯଦି ଜଣେ ସ୍ୱାଧୀନଚେତା ମହିଳାଙ୍କୁ ବଦନାମ କରିବା ଲାଗି ଷଡଯନ୍ତ୍ର କରିପାରନ୍ତି ଓ ତାଙ୍କ ଚରିତ୍ର ସଂହାର ପାଇଁ ଜଘନ୍ୟ ମିଥ୍ୟାର ଆଶ୍ରୟ ନେଇପାରନ୍ତି, ତେବେ ଦେଶର ଗଣତାନ୍ତ୍ରିକ ଶାସନ କେତେଦୂର ଅଧୋଗାମୀ ହୋଇଛି, ତାହା ଥିଲା ସେଦିନର ଆଲୋଚ୍ୟ ବିଷୟ । FBI ଓ CIA ରାଜନୈତିକ ଅପରାଧରେ ଲିପ୍ତ ରହି ପରୋକ୍ଷ ଭାବରେ ଦେଶ ବିଦେଶର ବଡ଼ ବଡ଼ ନେତାଙ୍କ ନିଧନ ପାଇଁ କାର୍ଯ୍ୟ କରନ୍ତି ବୋଲି ମତାମତ ପ୍ରକାଶ ପାଇଥିଲା ।

ଏହି ଦିନ ଆଉ ଗୋଟିଏ ବିଷୟ ପଢ଼ି ବ୍ୟଥିତ ହେଲି । ଆତତାୟୀର ଗୋଳା ମାଡ଼ରେ ଲର୍ଡ଼ ମାଉଣ୍ଟବ୍ୟାଟେନଙ୍କ ନିଧନ ସମ୍ପର୍କରେ ଟିପ୍ପଣୀ ବାହାରିଥାଏ, "ମାଉଣ୍ଟବ୍ୟାଟେନ ଥିଲେ ବ୍ରିଟିଶ ରାଜବଂଶୀୟ ବୟୋଜ୍ୟେଷ୍ଠ ମାନଙ୍କର ମୁଖ୍ୟ ବା ଏକପ୍ରକାର ଉପଜାତୀୟ ଦଳପତି (Tribal Leader) । ସେଥିପାଇଁ ଆଇରିସ୍ ବିପ୍ଳବୀମାନେ ନିଜର ଉପଜାତୀୟ ପ୍ରବୃତ୍ତି (Tribal Instinct) ପାଇଁ ତାଙ୍କୁ ହତ୍ୟା କଲେ ।" ଅଦ୍ଭୁତ ମନ୍ତବ୍ୟ !

## ୧୮ ସେପ୍ଟେମ୍ବର, ସଂବାଦପତ୍ରରେ ଜଣେ ଭାରତୀୟଙ୍କ ଉପାଖ୍ୟାନ

ସନ୍ଧ୍ୟାବେଳେ ସଂବାଦପତ୍ର ପଢ଼ିବାକୁ ବସିଲି । 'ୱାସିଂଟନ ପୋଷ୍ଟ' କାଗଜରେ ବାହାରିଥାଏ, ଆମେରିକାରେ ଭିକ୍ଷା ମାଗି ବୁଲୁଥିବା ଜଣେ ଦରିଦ୍ର ବ୍ରାହ୍ମଣଙ୍କ ସମ୍ବନ୍ଧରେ ଅଧପୃଷ୍ଠାବ୍ୟାପୀ ଦୀର୍ଘ ବୃତ୍ତାନ୍ତ । ଛିଣ୍ଡାଲୁଗା ପିନ୍ଧିଥିବା ଧନଞ୍ଜୟ ପାରଞ୍ଜପେ ନାମକ ସେହି ହିନ୍ଦୁର ଫଟୋଚିତ୍ର ବାହାରିଥାଏ । ଦୁଃଖିତ ମନରେ ତାଙ୍କ କଥା ପଢ଼ିଲି । ଧନଞ୍ଜୟ କହନ୍ତି, "ଭିକ୍ଷା ହେଉଛି ବ୍ରାହ୍ମଣର ଜନ୍ମଗତ ଓ ଜାତିଗତ ଜୀବିକା । ଯେକୌଣସି ଦେଶକୁ ଗଲେ ମଧ୍ୟ ସେ ସେହି ପେସା ଦ୍ୱାରା ଜୀବିକା ଅର୍ଜନ କରିବେ, ନଚେତ୍ ଧର୍ମଚ୍ୟୁତ ହେବେ । ଯେହେତୁ ଆମେରିକାରେ ତାଙ୍କୁ କେହିହେଲେ ଭିକ ଦେଉନାହାନ୍ତି, ସେଥିପାଇଁ ସେ ଧାରଣା ଦେଇ ବସିବେ ।"

ରାଗ ସମ୍ଭାଳିପାରିଲି ନାହିଁ । ଡ୍ରଇଂରୁମ୍‌ରେ ବସିଥିବା ଜଣେ ଆମେରିକାନ ଡାକ୍ତରଙ୍କୁ ଆକ୍ଷେପ କରି କହିଲି, "ଆମେରିକାରେ ଅନେକ ପ୍ରତିଭାଶାଳୀ ଭାରତୀୟ ବୈଜ୍ଞାନିକ, ଚିକିତ୍ସକ ଓ କଳାକାର ଅଛନ୍ତି । ସେମାନଙ୍କ କୃତିତ୍ୱ ବିଷୟରେ ଧାଡ଼ିଏ ସଂବାଦ ବାହାରେ ନାହିଁ । ଅଥଚ, ଜଣେ ପାଗଳ ବା ବାଚାଳ ବ୍ରାହ୍ମଣଙ୍କ ସମ୍ବନ୍ଧରେ ଅଧପୃଷ୍ଠା ବିବରଣୀ ବାହାରି ଗଲା । ଯଦି କୌଣସି ବ୍ରାହ୍ମଣଙ୍କ ବିଷୟରେ ଲେଖିବା ଉଚିତ ବୋଲି ସମ୍ପାଦକ ଚିନ୍ତା କଲେ, ଜଣେ ଜ୍ଞାନୀ ବ୍ରାହ୍ମଣଙ୍କୁ ଖୋଜି ବାହାର କରିଥିଲେ ସେ ତତ୍ତ୍ୱଜ୍ଞାନ ଶୁଣାଇଥାନ୍ତେ ।" ଭଦ୍ରବ୍ୟକ୍ତି ଗମ୍ଭୀର ଭାବରେ ମତ ଦେଲେ, "ଜଣେ ବିଦେଶୀ ବୈଜ୍ଞାନିକର ସାଫଲ୍ୟ ବା ବ୍ରାହ୍ମଣ ପଣ୍ଡିତଙ୍କ

ଶାସ୍ତ୍ରଜ୍ଞାନ ଅପେକ୍ଷା ଜଣେ ହିନ୍ଦୁ ଭିକ୍ଷୁକର ବାସ୍ତବ ଚିତ୍ର ଜାଣିବାକୁ ଆମର ଇଚ୍ଛା ବେଶି ।'' ଅଧିକ ଯୁକ୍ତିତର୍କ କଲିନାହିଁ । ଆମେରିକାର ସଂବାଦପତ୍ରରେ ଆମ ଦେଶକୁ ବଦନାମ କରିବା ଅଭିପ୍ରାୟ ଦେଖି ବ୍ୟଥିତ ହେବା ସାଙ୍ଗକୁ ବୁଦ୍ଧିଜୀବୀମାନଙ୍କ ଭାରତ-ବିଦ୍ୱେଷ ଅସହ୍ୟ ହେଲା ।

## ୧୯ ସେପ୍ଟେମ୍ବର, ସୁପ୍ରିମ୍ କୋର୍ଟ

ଅପରାହ୍ନରେ ଆମେରିକାର ସର୍ବୋଚ୍ଚ ବିଚାରାଳୟ ବା Supreme Court ଦେଖିବାକୁ ଗଲି । ଗ୍ରୀସ୍ ଦେଶର ଏଥେନ୍ସ ନଗରରେ ଥିବା ପାର୍ଥେନନ ସୌଧର ଅନୁକରଣରେ ଏହି ସୁବିଶାଳ ଗୃହ ଧଳା ମାର୍ବଲ ପଥରରେ ନିର୍ମାଣ କରାଯାଇଛି । ଆଠଗୋଟି ସୁଉଚ୍ଚ ସ୍ତମ୍ଭ ଉପରେ ରହିଛି ସୌଧର ଛାତ । ସମ୍ମୁଖ ଦିଗରେ ଦିଶୁଥାଏ କଂଗ୍ରେସ ଭବନ, ପଶ୍ଚାତରେ କଂଗ୍ରେସ ଲାଇବ୍ରେରୀ । ମଝିରେ ପ୍ରଶସ୍ତ ରାଜପଥ ଓ ବିସ୍ତୀର୍ଣ୍ଣ ପାର୍କ । ବିଚାରାଳୟର ଉଭୟ ପାଖ କାନ୍ଥରେ ବଡ଼ ବଡ଼ ଅକ୍ଷରରେ ଲେଖା ରହିଛି—''Equality Before Law'' ଏବଂ ''Justice, the Guardian of Liberty.'' ।

ସନ୍ଧ୍ୟାବେଳେ National Visitor Centre ନାମକ ରେଳ ଷ୍ଟେସନ ଦେଖିଲି । ପୃଥିବୀରେ ସେପରି ଷ୍ଟେସନ ବୋଧହୁଏ ବିରଳ । ବାହାରର ଚାକ୍‌ଚକ୍ୟ, ଭିତରର ଶୋଭା ଓ ପରିଷ୍କାର ପରିଚ୍ଛନ୍ନତା ଦେଖି ବିଶ୍ୱାସ କରିହୁଏ ନାହିଁ ଯେ ସ୍ଥାନଟି ଗୋଟିଏ ରେଳ ପ୍ଲାଟଫର୍ମ ।

## ୨୦ ସେପ୍ଟେମ୍ବର, ସିନେଟ କକ୍ଷର ଅନୁଭୂତି

ସେ ଦିନ ଆମେରିକୀୟ ସିନେଟର ଅଧିବେଶନ ଦେଖିବାକୁ ଗଲି । ଦର୍ଶକ ଗ୍ୟାଲେରୀ ଭର୍ତ୍ତି ଥାଏ । ଯୁକ୍ତରାଷ୍ଟ୍ରର ସିନେଟ ହେଉଛି ସବୁଠାରୁ କ୍ଷମତାଶାଳୀ ଦ୍ୱିତୀୟ କକ୍ଷ ।

ମଧ୍ୟାହ୍ନ ୧୨ଟା ୧୫ ମିନିଟରେ ଅଧିବେଶନ ବସିଲା । ପ୍ରଥମରୁ ଭାବିଲି, ଏହା ଏକ ଆଇନ ପ୍ରଣୟନ କକ୍ଷ ଅଥବା ତାହାର ବ୍ୟଙ୍ଗଚିତ୍ର । ଯୁକ୍ତରାଷ୍ଟ୍ରର ୫୦ଟି ରାଜ୍ୟରୁ ପ୍ରତ୍ୟେକର ୨ ଜଣ ସଭ୍ୟ ଏଠାରେ ମିଳିତ ହୁଅନ୍ତି । ଅର୍ଥାତ୍, ସଭ୍ୟସଂଖ୍ୟା ଏକଶହ । କିନ୍ତୁ ମାତ୍ର ୭ ଜଣ ଉପସ୍ଥିତ ଥିଲେ । କକ୍ଷର କର୍ମଚାରୀମାନେ ବିଶୃଙ୍ଖଳ ଭାବେ ବୁଲୁଥାନ୍ତି । ସେମାନଙ୍କ ପୋଷାକ ପରିଚ୍ଛଦରେ ସାମଞ୍ଜସ୍ୟ ନଥାଏ । ଜଣେ ଦାଢ଼ିବନ୍ତ ସଚିବ ଲୁଙ୍ଗିପରି ଚିତ୍ର ବିଚିତ୍ର ଦିଶୁଥିବା ପେଣ୍ଟ ପିନ୍ଧି ବୁଲୁଥାନ୍ତି । କର୍ମଚାରୀମାନଙ୍କ ଚାଲିଚଳଣରେ ଶାଳୀନତା ନଥାଏ । ପ୍ରେସ୍ ରିପୋର୍ଟରମାନେ ମୁଷ୍ଟିମେୟ ସିନେଟରମାନଙ୍କୁ ଘେରି ରହିଥାନ୍ତି ।

ଅଧିବେଶନ ଆରମ୍ଭ ହେବାର ସଂକେତ ଦେଇ ଜଣେ ବ୍ୟକ୍ତି ମଞ୍ଚ ଉପରକୁ ଉଠିଲେ ଓ ଈଶ୍ୱରଙ୍କୁ ପ୍ରାର୍ଥନା ଜଣାଇ ଲେଖାଥିବା ଗତଟିଏ ପାଠକଲେ । ଯୁକ୍ତରାଷ୍ଟ୍ରର ଉପରାଷ୍ଟ୍ରପତି ସଭାପତିତ୍ୱ କରିବା କଥା । କିନ୍ତୁ ସେ ଅନୁପସ୍ଥିତ ଥିବାରୁ ଅନ୍ୟ ଜଣେ ସଭ୍ୟଙ୍କ ନାମ ପ୍ରସ୍ତାବ କରାଗଲା । ସେ ଆସନ ଗ୍ରହଣ କଲାକ୍ଷଣି, ଜଣେ ସଭ୍ୟ ଅଧଘଣ୍ଟାଏ ମୁଲତବି ପ୍ରସ୍ତାବ ଆଗତ କଲେ । ଚେୟାରମ୍ୟାନ ରାଜି ହେଲେ ଓ ସଭ୍ୟମାନେ ବିଦାୟ ନେଲେ । ସେଥିସହ ଦର୍ଶକ ଗ୍ୟାଲେରୀ ଶୂନ୍ୟ ହେଲା ।

ଅଧଘଣ୍ଟାଏ ପରେ ଫେରିଲାବେଳକୁ ୨୦ ଜଣ ସଭ୍ୟ ଉପସ୍ଥିତ ଥାନ୍ତି । ଅଧିବେଶନ ଆରମ୍ଭ ହେଲା । କିନ୍ତୁ ସଭ୍ୟମାନେ ଏଣେ ତେଣେ ଛିଡ଼ା ରହି କଥାବାର୍ତ୍ତା କରୁଥିଲେ ଓ ଜଣକ ପରେ ଜଣେ ଲିଖିତ ବକ୍ତବ୍ୟ ପଢୁଥିଲେ । ତା ପରେ, ଭୋଟ ପାଇଁ ଜଣ ଜଣଙ୍କର ନାମ ଡକାଗଲା । ପ୍ରତ୍ୟେକ ସଭ୍ୟ ମଞ୍ଚ ଉପରକୁ ଉଠିଯାଇ 'ହଁ' ବା 'ନା' ଉଚ୍ଚାରଣ କରି ଫେରି ଆସୁଥିଲେ । କେହି କେହି ତଳେ ରହି 'ହଁ' ବା 'ନା' ପାଟି କଲେ ।

ଦିନ ୧ଟା ପରେ ଏଡ୍‌ୱାର୍ଡ଼ କେନେଡ଼ି କକ୍ଷ ମଧ୍ୟରେ ପ୍ରବେଶ କଲେ । ତାଙ୍କୁ ଦେଖିବା ଲାଗି ଦର୍ଶକ ଗ୍ୟାଲେରୀରେ ଉତ୍ସାହ ଖେଳିଗଲା । ସେ ଥିଲେ ପରଲୋକଗତ ରାଷ୍ଟ୍ରପତି ଜନ କେନେଡିଙ୍କ ସାନଭାଇ ଓ ଜଣେ ଲୋକପ୍ରିୟ ନେତା । ସେ ମଧ୍ୟ ନିଜ ଆସନରେ ନ ବସି ଏଣେ ତେଣେ ବୁଲି ବୁଲି ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ । ଜଣାଯାଉଥାଏ, ତାଙ୍କ ପ୍ରତି ସମସ୍ତଙ୍କର ସମ୍ମାନ ରହିଛି । ଏଡୱାର୍ଡ଼ କେନେଡ଼ି ଭାରତର ଜଣେ ହିତୈଷୀ ବୋଲି ପୂର୍ବରୁ ଜାଣିଥିଲି । ତେଣୁ, ତାଙ୍କ ଗତିବିଧି ଆଗ୍ରହରେ ଲକ୍ଷ୍ୟ କଲି । ତାଙ୍କ କଳପାଟି ଅପେକ୍ଷାକୃତ ବଡ଼ ଓ ଅସୁନ୍ଦର ଥିବା ସତ୍ତ୍ୱେ ତାଙ୍କ ବ୍ୟକ୍ତିତ୍ୱ ଥାଏ ଆକର୍ଷଣୀୟ ।

ସେତେବେଳେ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ୍ ଥିଲେ ଡେମୋକ୍ରାଟିକ ଦଳର ଜିମି କାର୍ଟାର । ଦୁର୍ବଳ ନେତୃତ୍ୱ ଯୋଗୁଁ ତାଙ୍କ ଲୋକପ୍ରିୟତା ହ୍ରାସ ପାଇଥାଏ । ତେଣେ, ୧୯୮୦ ମସିହାର ରାଷ୍ଟ୍ରପତି ନିର୍ବାଚନ ପାଖେଇ ଆସୁଥାଏ । କାର୍ଟାର ପୁଣି ଥରେ ପ୍ରାର୍ଥୀ ହେଲେ ବିପକ୍ଷ ରିପାବ୍ଲିକାନ ଦଳର ପ୍ରାର୍ଥୀଙ୍କ ହାତରେ ହାରିଯାଇପାରନ୍ତି ବୋଲି ଅନେକେ ଭାବୁଥିଲେ । ସେଥିପାଇଁ ଡେମୋକ୍ରାଟିକ ଦଳର ଆଖି ପଡ଼ିଥାଏ ଏଡଉଆର୍ଡ଼ କେନେଡିଙ୍କ ଉପରେ ।

ଅପରାହ୍ନ ୩ଟା ବେଳେ ସିନେଟ କକ୍ଷରୁ ବାହାରି ଆସିଲି । ଯେଉଁ ଶକ୍ତିଶାଳୀ କକ୍ଷ ସମ୍ବନ୍ଧରେ ଅନେକ କଥା ବହିରୁ ପଢ଼ିଥିଲି, ତାହାର ଅଧିବେଶନ ସ୍ୱଚକ୍ଷୁରେ

ଦେଖିଲାପରେ ଧାରଣା ବଦଳିଗଲା । ସଭ୍ୟମାନଙ୍କର ବିଶୃଙ୍ଖଳ ଆଚରଣ ଓ ମାନ୍ଦା ବକ୍ତବ୍ୟ ଦେଖି ଆମେରିକୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ପ୍ରତି ସମ୍ମାନ କମିଗଲା ।

## ୨୩ ସେପ୍ଟେମ୍ବର, ସହର ଭ୍ରମଣ

ସକାଳ ୧୦ଟାରେ କ୍ୟାପିଟଲ ହିଲ୍ ନିକଟରୁ ଟୁରିଷ୍ଟ୍ ବାସ୍ ଛାଡ଼ିଲା । ସମସ୍ତେ ଥିଲେ ବିଦେଶାଗତ ପର୍ଯ୍ୟଟକ । ଜେଫାରସନ ସ୍ମୃତିସ୍ତମ୍ଭ ଓ ଜର୍ଜ ଉଆସିଂଟନ ବିଶ୍ୱବିଦ୍ୟାଳୟ ଦେଖିଲାପରେ ପହଞ୍ଚିଲୁଁ ଉଆଟାର୍‌ଗେଟ୍ ନାମକ ସ୍ଥାନରେ । ଜଟିଳ ଆକାରର ସେଠାକାର ପ୍ରକାଣ୍ଡ ଅଟ୍ଟାଳିକା ଦେଖିବା ଲାଗି ସମସ୍ତଙ୍କର ଆଗ୍ରହ ଥାଏ ।

ଚାରିତାଲା ବିଶିଷ୍ଟ ଏହି ଚକ୍ରାକାର କୋଠାର ଗୋଟିଏ ଅଂଶରେ ଥାଏ ଡେମୋକ୍ରାଟିକ ଦଳର ମୁଖ୍ୟ କାର୍ଯ୍ୟାଳୟ । ରିପାବ୍ଲିକାନ ଦଳର ନେତା ରିଚାର୍ଡ଼ ନିକ୍‌ସନ ସଭାପତି ଥିବା କାଳରେ ସେହି କାର୍ଯ୍ୟାଳୟ ଭିତର ଘରଗୁଡ଼ିକରେ ବିପକ୍ଷ ନେତାମାନଙ୍କର ଫୋନ ଯୋଗେ ହେଉଥିବା କଥାବାର୍ତ୍ତା ଟେପ୍ ରେକର୍ଡ଼ିଂ କରିବାଲାଗି ସୂକ୍ଷ୍ମ ଯନ୍ତ୍ରପାତି ଖଞ୍ଜିବାକୁ ଅଧସ୍ତନ କର୍ମଚାରୀମାନଙ୍କୁ ଆଦେଶ ଦେଇଥିଲେ । କିନ୍ତୁ ତାଙ୍କର ସେହି ଗର୍ହିତ କାର୍ଯ୍ୟ ଧରାପଡ଼ିଗଲା । ନିକ୍‌ସନ୍ କଥାଟିକୁ ଚପାଇ ଦେବାକୁ ସମସ୍ତ ପ୍ରକାର ଅପଚେଷ୍ଟା କରି ବିଫଳ ହେଲେ । ଏପରିକି, ଟେପ୍ ଭିତରୁ ତାଙ୍କର ଗୋପନ ଆଦେଶ ବାର୍ତ୍ତାଗୁଡ଼ିକ ଉଠାଇଦେବାକୁ ଜଣେ ସାମାନ୍ୟ ମେକାନିକ୍ ମଧ୍ୟ ମନା କରିଦେଇ କହିଥିଲେ, "ମୁଁ ରାଷ୍ଟ୍ରର ଚାକର । ରାଷ୍ଟ୍ରପତିଙ୍କୁ ଦୁର୍ନାମରୁ ରକ୍ଷା କରିବା ଲାଗି ରାଷ୍ଟ୍ରର ସ୍ୱାର୍ଥ ବିରୋଧରେ କାମ କରିବି ନାହିଁ ।"

ଦେଶବାସୀଙ୍କ ପ୍ରବଳ ନିନ୍ଦା ଓ ଘୃଣା ଫଳରେ ନିକ୍‌ସନ ରାଷ୍ଟ୍ରପତି ପଦରୁ ଇସ୍ତଫା ଦେଲେ । ତାଙ୍କ ସମ୍ପର୍କରେ କୁହାଗଲା, "The first President of U.S.A. did not know how to speak a lie, the 37th President of U.S.A. (Nixon) does not know how to speak truth." ।

ଏହି ବାକ୍ୟ କହିଲାବେଳେ ତରୁଣ ଆମେରିକୀୟ ଗାଇଡ଼ ଆମେରିକାର ପ୍ରଥମ ସଭାପତି ଜର୍ଜ ଉଆସିଂଟନଙ୍କ ବିଷୟରେ ସମସ୍ତଙ୍କୁ ଜଣାଥିବା କାହାଣୀଟି ଗଦ୍‌ଗଦ ସ୍ୱରରେ ଶୁଣାଇଲେ– "ତାଙ୍କ ପିତା ମୂଲ୍ୟବାନ ଚାରାଗଛଟିଏ ବଗିଚାରେ ଲଗାଇଥିଲେ । ଦିନେ ଦେଖିଲାବେଳକୁ ଚାରାଟିକୁ କିଏ ଛୁରିରେ କାଟିପକାଇଛି । କ୍ରୋଧରେ କମ୍ପମାନ ହୋଇ ମାଳୀମାନଙ୍କୁ ସନ୍ଦେହ କରି ସେ ବେତ୍ରାଘାତ ଲାଗି ଉଦ୍ୟତ ହେଲାବେଳେ ବାଳକ ଜର୍ଜ ପିତାଙ୍କ ଆଗରେ ଭୟରେ ଥରହର ହୋଇ କହିଲେ, 'ମୁଁ କାଟିଛି' । ତାଙ୍କୁ କୁଣ୍ଢାଇପକାଇ ପିତା ଆନନ୍ଦରେ କହିଉଠିଥିଲେ,

''ବରଂ ଶହେ ତାରାଗଛ ନଷ୍ଟ ହେଉ, ମୋ ପୁଅ ଥରଟିଏ ସୁଦ୍ଧା ମିଛ ନ କହୁ' ।''

ଏହି ଗପ କହିସାରି ଗାଇଡ଼ ମିଥ୍ୟାବାଦୀ ନିକ୍ସନଙ୍କ ସମ୍ପର୍କରେ ଅନ୍ୟ ଏକ ସଂବାଦ ଦେଲେ । ''କ୍ଷମତାରୁ ଗଲାପରେ ରିଚାର୍ଡ଼ ନିକ୍ସନ ନିଜ ଘରେ ଯାଇ ରହିଲେ । କିନ୍ତୁ ପାଖ ପଡ଼ିଶା ଓ ରାସ୍ତାକଡ଼ର ଚଗଲା ପିଲାଙ୍କ ଥଟ୍ଟା ଟାପରାରୁ ତ୍ରାହି ପାଇଲେ ନାହିଁ । ସେଥିଲାଗି, ନିଉୟର୍କ ସହରର ଏକ ସୌଖୀନ ଜାଗାରେ ଭଲ ଘରଟିଏ ବିକ୍ରି ହେଉଛି ଜାଣି, ତାହା କିଣିବେ ବୋଲି ଘର ବିକ୍ରେତାଙ୍କ ସହିତ ଚୁକ୍ତି କଲେ । ଭାବିଥିଲେ, ସେଠାରେ ଆରାମରେ ରହିବେ । କିନ୍ତୁ ସ୍ଥାନୀୟ ବାସିନ୍ଦାମାନେ ସଙ୍ଘବଦ୍ଧ ଭାବରେ ପ୍ରତିବାଦ ଜଣାଇଲେ ଯେ, ନିକ୍ସନଙ୍କ ପରି ଘୃଣ୍ୟ ମିଥ୍ୟାବାଦୀଙ୍କୁ ସେମାନେ ସେଠାରେ କଦାପି ରହିବାକୁ ଦେବେ ନାହିଁ ।'' ବିଦେଶୀ ପର୍ଯ୍ୟଟକମାନେ ଏ କଥା ଶୁଣି ହସିଲେ । ମୁଁ ମଧ୍ୟ ବିଶେଷ ତୃପ୍ତ ହେଲି, କାରଣ ନିକ୍ସନ ଥିଲେ ଭାରତର ଶତ୍ରୁ । ୧୯୭୧ ଭାରତ-ପାକ୍ ଯୁଦ୍ଧବେଳେ ସେ ପାକିସ୍ତାନକୁ ସମର୍ଥନ ଜଣାଇବା ସହ ଭାରତକୁ ଭୟଭୀତ କରିବା ନିମନ୍ତେ କ୍ଷେପଣାସ୍ତ୍ରବାହୀ ରଣତରୀ ବଙ୍ଗୋପସାଗରକୁ ପଠାଇଥିଲେ ।

ଉଆଟାରଗେଟ ଠାରୁ ଆମେ ଚାଲିଲୁଁ ନିକଟବର୍ତ୍ତୀ 'କେନେଡି ସେଣ୍ଟାର' ଦେଖିବାକୁ । ପଟୋମାକ ନଦୀ କୂଳରେ ଥିବା ଏହି ସୁବିଶାଳ ସୌଧ ୧୯୬୩ରେ ନିହତ ହୋଇଥିବା ରାଷ୍ଟ୍ରପତି ଜନ ଫିଟ୍‌ଜେରାଲ୍ଡ କେନେଡିଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ନିର୍ମିତ ହୋଇଛି । ଏଠାରେ ଅପେରା, ଥିଏଟାର, କନସାର୍ଟ ଓ ବ୍ୟାଲେ ନୃତ୍ୟ ପ୍ରଦର୍ଶିତ ହୁଏ । ଆମେ ପହଞ୍ଚିଲାବେଳକୁ ଅନେକ ନରନାରୀ ସନ୍ଧ୍ୟାର ମନୋରଞ୍ଜନ କାର୍ଯ୍ୟ ଦେଖିବା ପାଇଁ ଟିକଟ କିଣୁଥିଲେ ।

ସେଠାରୁ ଯାଇ ବାସ୍ ପହଞ୍ଚିଲା ଆରଲିଂଟନ ସମାଧି କ୍ଷେତ୍ରରେ । ଯେଉଁ ଦିଗକୁ ଚାହିଁଲେ କେବଳ କବର । ଯୋଦ୍ଧା ଓ ପ୍ରଖ୍ୟାତ ବ୍ୟକ୍ତିମାନଙ୍କର କବର ଧାରଣ କରି ସ୍ଥାନଟି ସତେ ଯେପରି ପରଲୋକର ବାର୍ତ୍ତା ବହନ କରୁଥାଏ । ଆମେ ପହଞ୍ଚିଲୁଁ ଜନ୍ କେନେଡ଼ିଙ୍କ ସମାଧି ପାଖରେ । ତାଙ୍କ ସମ୍ମାନରେ ସେଠାରେ 'ଚିରନ୍ତନ ଶିଖା' ଅହରାତ୍ର ଜଳୁଛି । ଦୁଇ ପାଖରେ ରହିଛି ଅକାଳରେ ମରିଥିବା ତାଙ୍କ ଶିଶୁପୁତ୍ର ଓ ଶିଶୁକନ୍ୟାର କବର । ଅଳ୍ପ ଦୂରରେ ସାନଭାଇ ରବାର୍ଟ୍ କେନେଡିଙ୍କ କବର । ଜନ୍ କେନେଡି ରାଷ୍ଟ୍ରପତି ଥିଲାବେଳେ ଆତତାୟୀର ଗୁଳିରେ ନିହତ ହୋଇଥିଲେ । କିଛି ବର୍ଷ ପରେ ତାଙ୍କ ସାନଭାଇ ରବାର୍ଟ ରାଷ୍ଟ୍ରପତି ପଦ ଲାଗି ପ୍ରାର୍ଥୀ ଥିଲାବେଳେ ଆତତାୟୀର ଗୁଳିରେ ପ୍ରାଣ ହରାଇଥିଲେ ।

ଅସଂଖ୍ୟ କ୍ରସ୍, ସ୍ମୃତି ସ୍ତମ୍ଭ, ଓ ଛାୟାପ୍ରଦ ବୃକ୍ଷମାନ ସମାଧି କ୍ଷେତ୍ରରେ ଶୋକାବହ ପରିବେଶ ସୃଷ୍ଟି କରିଥାଏ । ଜଣେ ବୃଦ୍ଧ ପର୍ଯ୍ୟଟକଙ୍କ ଉକ୍ତିଟି ମନେ ରହିଲା– ''ମୃତମାନଙ୍କ ସ୍ଥାନରେ ଦଣ୍ଡାୟମାନ ଥିବା ଜୀବିତମାନେ ଜୀବନ ସମ୍ବନ୍ଧରେ କୌଣସି ଶିକ୍ଷା ପାଇଥାନ୍ତି କି ?''

## ୨୫ ସେପ୍ଟେମ୍ବର, ହ୍ୱାଇଟ୍ ହାଉସ

ଯୁକ୍ତରାଷ୍ଟ୍ରର ସଭାପତିଙ୍କ ସରକାରୀ ବାସଭବନ ବା ହ୍ୱାଇଟ୍ ହାଉସ୍ ପ୍ରତ୍ୟେକ ସପ୍ତାହର ମଙ୍ଗଳବାର ଦିନ ଦର୍ଶକମାନଙ୍କ ନିମନ୍ତେ ଖୋଲା ରଖାଯାଏ । ସକାଳ ୯ଟାରେ ସେଠାରେ ପହଞ୍ଚିଲାବେଳକୁ ଶହ ଶହ ଲୋକ ଲାଇନ୍ ଧରିଥିବା ଦେଖିଲି । ସୁଦୀର୍ଘ ଧାଡ଼ିରେ ଘଣ୍ଟାଏ ପର୍ଯ୍ୟନ୍ତ ଛିଡ଼ା ରହିଲା ପରେ ଗେଟ୍ ଖୋଲିଲା ଓ ଦର୍ଶକମାନେ ଆଗେଇଲେ । ୧୦ଟା ବେଳେ ଲାଇନ ଆଗେଇବା ସତ୍ତ୍ୱେ ଗେଟ୍ ଧରିବାକୁ ଅଧଘଣ୍ଟାଏ ଲାଗିଲା । ପୋର୍ଟିକୋ ଆଗରେ ଛିଡ଼ା ହୋଇ ଦୁଇତାଲା-ବିଶିଷ୍ଟ ଘରଟିର ଆକାର ଦେଖି ଜାଣିଲି, ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ବାସଭବନ ପରି ଆମେରିକା ରାଷ୍ଟ୍ରପତିଙ୍କ ବାସଭବନ ମଧ୍ୟ କ୍ଷୁଦ୍ର ଓ ମାମୁଲି । ଯେତେ ହେଲେ, ଏକ ଗଣତାନ୍ତ୍ରିକ ରାଷ୍ଟ୍ରର ଶାସନମୁଖ୍ୟଙ୍କ ପକ୍ଷରେ ବିଳାସମୟ ରାଜକୀୟ ପ୍ରାସାଦରେ ବସବାସ କରିବା ଶୋଭନୀୟ ନୁହେଁ । ଦେଶବାସୀ ମଧ୍ୟ ତାହା ବରଦାସ୍ତ କରିବେ ନାହିଁ ।

ହ୍ୱାଇଟ ହାଉସର ଯେଉଁ ସବୁ କକ୍ଷକୁ ନିଆଗଲା, ତା ଭିତରେ ଥାଏ ରାଷ୍ଟ୍ରପତିଙ୍କ ପଢ଼ିବା ଘର, ଭୋଜନ କକ୍ଷ, ବିଦେଶାଗତ ରାଷ୍ଟ୍ରମୁଖ୍ୟମାନଙ୍କୁ ସ୍ୱାଗତ କରିବା କକ୍ଷ ଓ ମନ୍ତ୍ରଣା କକ୍ଷ, ଇତ୍ୟାଦି । ପ୍ରବେଶ ପଥର କାନ୍ଥରେ ରହିଛି ଆବ୍ରାହାମ୍ ଲିଙ୍କନ୍, ଉଡ୍ରୋ ଉଇଲସନ ଓ ଜନ କେନେଡି ପ୍ରଭୃତି ଅଳ୍ପ କେତେଜଣ ସଭାପତିଙ୍କ ଚିତ୍ର । ଜଣେ କର୍ମଚାରୀଙ୍କୁ ପଚାରିଲି, ''ଜିମି କାର୍ଟାରଙ୍କ ଚିତ୍ର ନାହିଁ କାହିଁକି ?'' ସେ ଉତ୍ତର ଦେଲେ, ''ହ୍ୱାଇଟ ହାଉସରୁ ବିଦାୟ ନେଲା ପରେ ତାଙ୍କର ଚିତ୍ର ରହିପାରେ, ଏବେ କ୍ଷମତାରେ ଥିଲାବେଳେ ନୁହେଁ ।'' ସରଳତାର ଛଳନା କରି ପୁଣି ପଚାରିଲି, ''ରିଚାର୍ଡ଼ ନିକ୍ସନଙ୍କ ଫଟୋ ସ୍ଥାନ ପାଇ ନାହିଁ କାହିଁକି ଯଦିଚ ସେ କ୍ଷମତାରୁ ଗଲେଣି ?'' ମୁଁ ବ୍ୟଙ୍ଗ କରୁଛି ବୁଝିପାରି ସେ ମଧ୍ୟ କୌତୁକ କଲେ, ''ଏ ପ୍ରଶ୍ନ ମୋତେ ନ ପଚାରି ନିଜକୁ ପଚାରିଲେ ଉତ୍ତର ପାଇପାରିବେ ।''

ହ୍ୱାଇଟ୍ ହାଉସ ଦେଖିବାକୁ ବେଶି ସମୟ ଲାଗିଲା ନାହିଁ । ରାଜଧାନୀର ଛୋଟ ଛୋଟ ମିଉଜିୟମ ମଧ୍ୟ ଏହାଠାରୁ ଅଧିକ ଆକର୍ଷଣୀୟ । ଆଗରେ ଓ ପଛରେ ବଗିଚା ରହିଛି, କିନ୍ତୁ ଯିବା ଲାଗି ଅନୁମତି ନାହିଁ । ବାହାରକୁ ଆସିଲାପରେ ରାସ୍ତାରେ ଦେଖିଲି ଜଣେ ଆମେରିକୀୟ ହିନ୍ଦୁ । ଲଣ୍ଡିତମୁଣ୍ଡ ଶ୍ୱେତାଙ୍ଗ

ସାହେବ ଧୋତି ପିନ୍ଧି, ଗୋଡ଼ରେ କଠଉ ମାଡ଼ି ଓ ହାତରେ ମାଳ ଝୁଲା ଧରି ନିର୍ବିଘ୍ନରେ ରାଜପଥରେ ଚାଲି ଯାଉଥାନ୍ତି ।

## ୪ ଅକ୍ଟୋବର, ଜାତୀୟ ଚିତ୍ରଶାଳା

ଧନଶାଳୀ ଯୁକ୍ତରାଷ୍ଟ୍ରର ଚିତ୍ରଶାଳା ଯେ କେତେଦୂର ଚମକପ୍ରଦ ହୋଇପାରେ, ତାହା National Art Gallery ଦେଖିଲେ ଜାଣିହୁଏ । ପାଞ୍ଚତାଲା ବିଶିଷ୍ଟ ଅଟ୍ଟାଳିକାର ପୂର୍ବଭାଗର ଶୀର୍ଷ ଛାତ କାଚରେ ନିର୍ମିତ । ପୂର୍ବ ଓ ପଶ୍ଚିମ ଭାଗ ମଧ୍ୟରେ ଯିବା ଆସିବା ଲାଗି ମାଟି ତଳେ ରହିଛି ଘୂର୍ଣ୍ଣ୍ୟମାନ ସୁଡ଼ଙ୍ଗ ପଥ । କୁହାଯାଇଛି, ଏହି ସୌଧଟି ହେଉଛି ଆମେରିକାର ବିଭବ, ନିର୍ମାଣ କୌଶଳ ଓ ସ୍ଥାପତ୍ୟ ବିଦ୍ୟାର ଉତ୍କୃଷ୍ଟ ଉଦାହରଣ ।

ଫେରିଲା ସମୟରେ 'ମଲ' ନାମକ ବିସ୍ତୀର୍ଣ୍ଣ ପ୍ରାଙ୍ଗଣରେ ମହାମାନ୍ୟ ପୋପ୍ ଦ୍ୱିତୀୟ ଜନ ପଲଙ୍କ ଆଗମନ ଉପଲକ୍ଷେ ମଞ୍ଚନିର୍ମାଣ ଚାଲିଥିବା ଦେଖିଲି । ଶତ ଶତ ସ୍ୱେଚ୍ଛାସେବୀ କାମରେ ଲାଗିଥାନ୍ତି । ଲକ୍ଷ ଲକ୍ଷ ସଂଖ୍ୟାରେ ଜନ ସମାଗମ ହେବ ବୋଲି ଅନୁମାନ ହେଲା ।

ସନ୍ଧ୍ୟାବେଳେ ସଂବାଦପତ୍ରରେ ପଢ଼ିଲି ଭାରତରେ ଦେଖା ଦେଇଥିବା ମରୁଡ଼ିର ବିଶଦ ବର୍ଣ୍ଣନା । ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଓ ବିହାରରେ ଜଳାଭାବ ଜନିତ ଶୋଚନୀୟ ଅବସ୍ଥା କଥା ଲେଖାଥାଏ । ସେଥିସହ କିମ୍ଭୂତ କିମାକାର ଗଳ୍ପ । ଭାରତବାସୀଙ୍କ ଅନ୍ଧବିଶ୍ୱାସ ଦର୍ଶାଇବାକୁ ଯାଇ 'ଉଆସିଂଟନ ପୋଷ୍ଟ'ର ଦିଲ୍ଲୀ ସଂବାଦଦାତା ଷ୍ଟୁଆର୍ଟ ଅରେବାକ୍ ଦୁଇଟି ଉପାଖ୍ୟାନ ଲେଖିଥାନ୍ତି । ଯଥା, ''ଉତ୍ତର ପ୍ରଦେଶର ମହିଳାମାନେ ନଗ୍ନ ବେଶରେ ରାତ୍ରିକାଳରେ ଚାଷଭୂମିରେ ହଳ ଧରି ଇନ୍ଦ୍ରଦେବତାଙ୍କୁ ବର୍ଷା ଲାଗି କାତର ପ୍ରାର୍ଥନା କରନ୍ତି'', ଏବଂ, ଜଳଦେବତାଙ୍କୁ ତୁଷ୍ଟ କରିବା ନିମନ୍ତେ ''ମଧ୍ୟପ୍ରଦେଶର ଗୋଟିଏ ସ୍ଥାନରେ ପାଞ୍ଚ ଶହ କୁକୁରଙ୍କୁ ସ୍ୱତନ୍ତ୍ର ଭୋଜିରେ ତୃପ୍ତ କରିବା ସହିତ ଶହ ଶହ ଅବିବାହିତା ବାଳିକା ଦିନରେ ତପସ୍ୟାରତ ରହି ରାତିରେ ସରକଢ଼ା ଦୁଧ ପାନ କରିଥିଲେ ।'' ଏପରି ସଂବାଦ ପଢ଼ିବାକୁ ଆମେରିକାବାସୀଙ୍କର ଆଗ୍ରହ ଥାଇପାରେ ସତ୍ୟ, କିନ୍ତୁ ସତ୍ୟାସତ୍ୟ ନିରୂପଣ କରିବ କିଏ ?

## ୭ ଅକ୍ଟୋବର, ପୋପଙ୍କ ଦର୍ଶନଲାଭ

ସେ ଦିନ ଥାଏ ରବିବାର । କ୍ୟାପିଟଲ ହିଲ୍‌ଠାରୁ ଉଆସିଂଟନ ମନ୍ୟୁମେଣ୍ଟ ପର୍ଯ୍ୟନ୍ତ ବିସ୍ତାରିତ ଥିବା ପ୍ରାଙ୍ଗଣରେ ଅପରାହ୍ଣ ୩ଟା ସମୟରେ କ୍ୟାଥଲିକ ଜଗତର ଧର୍ମଗୁରୁ ପୋପ୍ ଦ୍ୱିତୀୟ ଜନ ପଲ ପ୍ରବଚନ ଦେବାର କାର୍ଯ୍ୟକ୍ରମ ଥାଏ ।

ଦଶ ଲକ୍ଷ ଆବାଳବୃଦ୍ଧବନିତା ସମବେତ ହେବେ ବୋଲି ଅଟକଳ କରାଯାଇଥାଏ । ଦିନକ ଆଗରୁ ହଜାର ହଜାର ଲୋକ ବିଛଣା, କମ୍ବଳ ଓ ଚଦର ଇତ୍ୟାଦି ମେଲାଇ ନିଜ ନିଜ ପାଇଁ ସ୍ଥାନ ରଖି ନେଇଥିଲେ ।

ସକାଳ ୧୦ଟାରେ ମଇଦାନ ପାଖରେ ପହଞ୍ଚିଲି । ଚାରି ଦିଗରେ ଜନସମୁଦ୍ର । ପ୍ରତ୍ୟେକ ଦିଗରୁ ମାଡ଼ି ଆସୁଥାନ୍ତି ଅସଂଖ୍ୟ ନରନାରୀ । ଭିଡ଼ ଭିତରେ ଠେଲାପେଲା କରି ମଞ୍ଚ ଆଡ଼କୁ ଆଗେଇଲି । କିନ୍ତୁ, ଶେଷରେ ଏପରି ସ୍ଥାନ ଆସିଗଲା ଯେଉଁଠାରୁ ଗୋଟିଏ ଭଡ଼ା ଆଗକୁ ଯିବା ଅସମ୍ଭବ । ପୋପ୍ ଆସିବେ ୩ଟା ବେଳେ । ବାଜିଥାଏ ୧୧ଟା । ଚାରି ଘଣ୍ଟା ସମୟ ଗୋଟିଏ ଜାଗାରେ ଛିଡ଼ା ରହିବା ସମ୍ଭବ କି ନୁହେଁ, ସେ କଥା ଭାବିଲାବେଳକୁ ବେଳ ଗଡ଼ିଯାଇଥାଏ । ଆଗକୁ ଯିବା ବା ପଛକୁ ଫେରିବା, ବସିପଡ଼ିବା ବା ବାହାରିଯିବା, ଇତ୍ୟାଦି ଚିନ୍ତା ସେତେବେଳକୁ ନିରର୍ଥକ ଥାଏ ।

ଦେହକୁ ଦେହ ଲଗାଇ ପାଖରେ ଥିବା ଜଣେ ଭଦ୍ରଲୋକ ନିଜକୁ ବ୍ରାଜିଲ ଦେଶର କ୍ୟାଥଲିକ ବୋଲି ପରିଚୟ ଦେଇ ପଚାରିଦେଲେ, ''ଆପଣ କ'ଣ ଭାରତୀୟ କ୍ୟାଥଲିକ ?'' ମୁଁ ନିଜକୁ ଭାରତୀୟ ହିନ୍ଦୁ ବୋଲି କହିବାରୁ, ପ୍ରଶ୍ନ କଲେ, ''ତା ହେଲେ, ପୋପ୍‌ଙ୍କୁ ଦେଖିବା ପାଇଁ ଏପରି କ୍ଲେଶ ଭୋଗିବାକୁ ଆସିଲେ କାହିଁକି ?'' ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ କହିଲି, ''ସମସ୍ତଙ୍କର ଭଗବାନ ଏକ । ମହାମାନ୍ୟ ପୋପ୍ ସେହି ପରମେଶ୍ୱରଙ୍କ ପରମ ଉପାସକ । ତେଣୁ, ତାଙ୍କ ପ୍ରବଚନ ଶୁଣିବା କ୍ୟାଥଲିକ ବା ହିନ୍ଦୁ, ସମସ୍ତଙ୍କ ପକ୍ଷେ ଏକ ପୁଣ୍ୟ ।'' ମୋ କଥାରେ ପ୍ରୀତ ହୋଇ ପକେଟରୁ ମେଞ୍ଚାଏ ପିପାରମେଣ୍ଟ କାଢ଼ି ସେ ମୋ ହାତରେ ଧରାଇଲେ ।

ଦିନ ୧ଟା ବେଳକୁ ବିନ୍ଦୁ ବିନ୍ଦୁ ବର୍ଷା ପଡ଼ିଲା । ନିକଟରେ ଥିବା ଜଣେ ବୃଦ୍ଧା ମେଘକୁ ଚାହିଁ ଆଶ୍ୱାସନା ବାଣୀ ଘୋଷଣା କଲେ, ''ଭଗବାନ ନିଶ୍ଚୟ ଦୟା କରିବେ, ବର୍ଷା ଛାଡ଼ିଯିବ ।'' ତାଙ୍କୁ ଥଟ୍ଟାରେ କହିଲି, ''ମ୍ୟାଡାମ୍, ଈଶ୍ୱରଙ୍କ ଦୟା ଶସ୍ତା ନୁହେଁ । ବୋଷ୍ଟନ ଓ ନିଉୟର୍କଠାରେ ଲକ୍ଷ ଲକ୍ଷ ଲୋକଙ୍କୁ ପୋପ୍ ଉଦ୍‌ବୋଧନ ଦେଉଥିଲାବେଳେ ପ୍ରବଳ ବର୍ଷା ହୋଇଥିବା ସଂବାଦ ବାହାରିଛି ।'' ମୁଖମଣ୍ଡଳ ବିକୃତ କରି ବଡ଼ ବଡ଼ ଆଖିରେ ସେ ମୋ ମୁହଁକୁ ଚାହିଁରହିଲେ ।

ଅବିଳମ୍ବେ ବର୍ଷା ଆସିଗଲା । ଛୋଟ ଛୋଟ ପିଲାପିଲିଙ୍କର ଭିଜିବା ଦୃଶ୍ୟ ଦୁଃଖଦାୟକ ହେଲା । ବୃଦ୍ଧା ମହିଳା ନିଜେ ଶୀତରେ ଥରୁଥାନ୍ତି । ତାଙ୍କୁ ପୁଣି ଥରେ ରଗାଇବା ଲାଗି ଧୀର ସ୍ୱରରେ ନିଜକୁ ନିଜେ କହିଲି, ''ଭଗବାନ ବୋଧହୁଏ ସ୍ୱର୍ଗରେ କମ୍ବଳ ଘୋଡ଼ି ଶୋଇଥିବେ ।'' ଧର୍ମପ୍ରାଣା ବୃଦ୍ଧାଙ୍କ ଚାହାଣିରୁ

ଅନୁମାନ ହେଲା, ସେ ମୋ ପ୍ରତି ଅଭିଶାପ ବର୍ଷଣ କରୁଛନ୍ତି । ଦୁଇଟି ପିପାରମେଣ୍ଟ ଦେଇ ଶାନ୍ତ କରାଇଲି ।

କିଛି ସମୟ ପରେ ମେଘ କଟିଗଲା । ଅନେକ ସମୟ ଛିଡ଼ା ଥିବା ଯୋଗୁଁ କଷ୍ଟ ଅନୁଭବ କଲି । ବ୍ରାଜିଲ ବନ୍ଧୁ ପରାମର୍ଶ ଦେଲେ, ''ଚାରିଆଡ଼େ ଘଟୁଥିବା ଛୋଟ ଛୋଟ ଦୃଶ୍ୟ ଦେଖିଲେ ଦେହର ଦୁଃଖ ଭୁଲିହେବ ।'' ଉପଦେଶ ମାନିଲି । ସତକୁ ସତ ଏଣେତେଣେ ଉପଭୋଗ୍ୟ ଘଟଣାମାନ ଘଟିଯାଉଥାଏ । ଅଳ୍ପ ଦୂରରେ ଚାରିଜଣ ଭୋଖିଲା ଯୁବକ ବହୁକଷ୍ଟରେ ମାଟିରେ ବସିପଡ଼ି ଖାଦ୍ୟପୁଡ଼ିଆ ଫିଟାଇଲା ବେଳକୁ, ଜଣେ ବିଶାଳକାୟ ନିଗ୍ରୋ ଜାଗା ଖାଲିଥିବା ଅନୁମାନ କରି ଆଗେଇ ଆସିଲା ବେଳେ ତାଙ୍କ ବୁଟ୍ ପରିହିତ ପ୍ରଥମ ପାଦଟି ଖାଦ୍ୟ ପେକେଟ ଉପରେ ଧପ୍ କରି ପଡ଼ିଗଲା । ଦେହର ଭାରସାମ୍ୟ ହରାଇ ସେ ମଧ୍ୟ ଯୁବକମାନଙ୍କ ଉପରେ କଚାଡ଼ି ପଡ଼ିଲେ । ''ଓଃ, ଦେବଦୂତ, ଆପଣ କେଉଁ ସ୍ୱର୍ଗରୁ ଖସିଲେ,'' ବୋଲି କହି ଜଣେ ଯୁବକ କପାଳରେ ହାତ ପିଟିଲେ । ସେପରି ବେଳେ ଜଣେ ବୃଦ୍ଧଙ୍କ କାନ୍ଧରେ ଶୋଇରହିଥିବା ଶିଶୁଟି ନିର୍ବିକାର ଚିତ୍ତରେ 'ପ୍ରକୃତିର ଆହ୍ୱାନ' କାର୍ଯ୍ୟ ସମ୍ପାଦନ କରିବା ସତ୍ତ୍ୱେ, ସେ ଅସହାୟ ଅବସ୍ଥାରେ ଅଟଳ ରହିବାକୁ ବାଧ୍ୟ ହେଲେ, ଯଦିଚ ଅନ୍ୟମାନେ ନାକରେ ରୁମାଲ ଲଗାଇଲେ ।

ଅନ୍ୟ ଏକ ଜାଗାରେ ଜଣେ ତରୁଣୀ ୬ ଗ୍ଲାସ କୋକୋ ପାନୀୟ ଥିବା ଗୋଟିଏ ବଡ଼ ଟ୍ରେ ଦୁଇ ହାତରେ ରଖି ସର୍କସ ଦଉଡ଼ି ଉପରେ ପାଦ ପରେ ପାଦ ପକାଇବା ଢଙ୍ଗରେ ଭିଡ଼ ଠେଲି ଠେଲି ଚାଲିଥିବା ଦେଖାଗଲା । ଦଳେ ବୟସ୍କା ନାର୍ସଙ୍କ ପାଇଁ ସେ ପାନୀୟ ନେଉଥିଲେ । କିନ୍ତୁ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲା ପୂର୍ବରୁ ଟ୍ରେ'ଟି ଖସାଇ ପକାଇଲେ ତଳେ ବସିଥିବା ଦୁଇଜଣ ଧର୍ମଯାଜକଙ୍କ ମୁଣ୍ଡରେ । ବହଳିଆ କୋକୋ ରଞ୍ଜିତ ସେମାନଙ୍କ ଚନ୍ଦାମୁଣ୍ଡ ଓ ଦାଢ଼ି ଦେଖି ଅନ୍ୟମାନେ ହସି ହସି ବେଦମ ହେଲେ । ଲଜ୍ଜିତା ତରୁଣୀ ପ୍ଲାଷ୍ଟିକ୍ ଗ୍ଲାସ୍‌ଗୁଡ଼ିକ ଖୋଜିଲାବେଳେ ଯାଜକମାନଙ୍କ କଟୁ ବାଣୀରେ ଜର୍ଜରିତ ହେଲେ ।

୨ଟା ବାଜିଯାଇଥାଏ । ଅଧିକା ଗୋଟିଏ ମିନିଟ ଛିଡ଼ା ହେବାକୁ ଶକ୍ତି ବା ଧୈର୍ଯ୍ୟ ନଥାଏ । ତେଣେ, ସବଳକାୟ ବ୍ରାଜିଲ ବନ୍ଧୁ ଅବସନ୍ନ ଅବସ୍ଥାରେ ବାରମ୍ବାର ମୋ କାନ୍ଧରେ ମୁଣ୍ଡ ରଖୁଥିଲେ । କେତେକ ଲୋକ କୌଣସି ପ୍ରକାରେ ଓଦା ମାଟିରେ ବସିପଡୁଥାନ୍ତି ।

୩ଟା ବେଳକୁ ଆକାଶରେ କେତୋଟି ହେଲିକୋପ୍ଟାର ଉଡ଼ିଲା । ତଳେ ସାଇରେନ ବାଜିଲା । ମଞ୍ଚ ନିକଟରୁ ଶୁଭିଲା ବାଦ୍ୟଯନ୍ତ୍ରର ମୂର୍ଚ୍ଛନା । ଆକାଶରେ ଭାସମାନ

କଳା ମେଘ ଭିତରୁ ସୂର୍ଯ୍ୟ ଉଙ୍କିମାରିବା ଦେଖାଗଲା । ୪ଟା ବାଜିବାକୁ ଅଳ୍ପ ସମୟ ବାକି ଥାଏ । ମଞ୍ଚ ଚାରିପାଖରେ ପୋଲିସ ବାହିନୀର ତତ୍ପରତା ଓ ଘନ ଘନ ସାଇରେନ ଧ୍ୱନିରୁ ସୂଚିତ ହେଲା, ପୋପଙ୍କର ଆବିର୍ଭାବ ମୁହୂର୍ତ୍ତ ଆସନ୍ନପ୍ରାୟ ।

ପ୍ରଥମେ ମଞ୍ଚ ଉପରକୁ ଆସିଗଲେ ଧଳା ପରିଚ୍ଛଦ ପିନ୍ଧିଥିବା ଶତାଧିକ ବିଶପ । ସୁଦୀର୍ଘ ପାଣ୍ଡାଲର ଦୁଇ ପାଖରେ ସେମାନେ ଛିଡ଼ା ରହିଲେ । ପରେ ପରେ ପ୍ରବେଶ କଲେ ମହାମାନ୍ୟ ପୋପ । ସବୁଜ ରଙ୍ଗର ପରିଚ୍ଛଦ । ମଞ୍ଚ ଉପରେ ଧୂପବତି ଜଳିଉଠିଲା । ପ୍ରକାଣ୍ଡ ପ୍ରକାଣ୍ଡ ଘଣ୍ଟି ବାଜିଲା । ଲକ୍ଷ ଲକ୍ଷ ଜନତାର ହର୍ଷଧ୍ୱନିରେ ଆକାଶମଣ୍ଡଳ ପ୍ରକମ୍ପିତ ହେଲା । ମଞ୍ଚ ତଳେ ଧାଡ଼ି ବାନ୍ଧି ଛିଡ଼ା ଥିବା ଧର୍ମଯାଜକମାନେ ବାଦ୍ୟଯନ୍ତ୍ରର ମୂର୍ଚ୍ଛନା ସହିତ ପ୍ରାର୍ଥନା ଗାନ କଲେ । ଶେଷରେ ପୋପ ତାଙ୍କର ଦୀର୍ଘ ଧର୍ମପ୍ରବଚନ ପ୍ରଦାନ କଲେ । ବିବାହିତ ଜୀବନର ପବିତ୍ରତା, ପାରିବାରିକ ଜୀବନର ବିଶୁଦ୍ଧତା, ସନ୍ତାନ ସନ୍ତତି ପ୍ରତି ଗଭୀର ଶ୍ରଦ୍ଧା ଓ ସାମାଜିକ ସୁଖ ଶାନ୍ତି ପ୍ରତି ସଚେତନ ରହିବା ଲାଗି ସେ ସମବେତ ମନୁଷ୍ୟ ରାଶିକୁ ଆହ୍ୱାନ ଜଣାଇଲେ ।

ସନ୍ଧ୍ୟା ୬ଟାରେ ଶୋଭାଯାତ୍ରା ମଧ୍ୟରେ ପୋପ୍ ତଳକୁ ଅବତରଣ କଲାବେଳକୁ ଧାବମାନ ସ୍ରୋତ ପରି ଜନରାଶି ସବୁ ଦିଗକୁ ମାଡ଼ି ଚାଲିଗଲେ । କାରନଟ ହାଉସ୍‌ରେ ପହଞ୍ଚି ଦୁଇ ଗ୍ଲାସ ପାଣି ପିଇ ପିଣ୍ଡାରେ ବସିପଡ଼ିଲି । "ଆପଣଙ୍କ ଅବସ୍ଥା କିପରି", ପଚାରିଲେ ଜଣେ ପୃଥୁଳକାୟ ବିଦେଶାଗତ ଅତିଥି । "ଅବସ୍ଥା ଶୋଚନୀୟ, କିନ୍ତୁ ଅବିସ୍ମରଣୀୟ ଦୃଶ୍ୟ ଓ ଅନୁଭୂତି ନିମନ୍ତେ ଆନନ୍ଦିତ ।"

## ୧୧ ଅକ୍ଟୋବର, ଓଡ଼ିଆ ପରିବାରରେ ଆତିଥ୍ୟ

ଭୁବନେଶ୍ୱରରୁ ଆସିବା ଦିନ କୁଳପତି ବିଦ୍ୟାଧର ମିଶ୍ର ତାଙ୍କର ଜଣେ ଛାତ୍ରଙ୍କର ଟେଲିଫୋନ ନମ୍ବର ଦେଇଥିଲେ । ନାମ ବିନୋଦ ନାୟକ ଓ ସେ ବିଶ୍ୱ ବ୍ୟାଙ୍କ୍‌ରେ ଉଚ୍ଚ ପଦବୀ ପାଇଥିଲେ । ଟେଲିଫୋନ ଯୋଗେ ଆଗରୁ କଥାବାର୍ତ୍ତା ହୋଇଥିଲା । ୧୧ ତାରିଖ ସନ୍ଧ୍ୟାବେଳେ ସେ ମୋତେ ତାଙ୍କ ଘରକୁ ନେଇଗଲେ ।

୧୨ ମାଇଲ ଦୂରରେ ମେରୀଲ୍ୟାଣ୍ଡ ନାମକ ସ୍ଥାନରେ ବିନୋଦବାବୁଙ୍କ ବସାଘର । ସେଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେଲି । ମେରୀଲ୍ୟାଣ୍ଡ ବିଶ୍ୱବିଦ୍ୟାଳୟର କ୍ୟାମ୍ପାସ୍ ଭିତର ଦେଇ ଗାଡ଼ି ଚାଲିଲାବେଳେ ଛାତ୍ରାବାସଗୁଡ଼ିକର ଆକାର ପ୍ରକାର ଦେଖି ମନରେ ଈର୍ଷ୍ୟା ହେଉଥାଏ । ତାଙ୍କ ଘରେ ପହଞ୍ଚି ତାଙ୍କ ସ୍ତ୍ରୀଙ୍କୁ ଦେଖି ଆଗରୁ ଦେଖିଛି ବୋଲି ମନେ ହେଲା । ସେ ହସି ହସି କହିଲେ, "୧୯୬୯ରେ

ବାଣୀବିହାରରେ ଅର୍ଥନୀତିରେ ଏମ୍.ଏ.ପଢୁଥିଲି ।'' ତାଙ୍କ ନାମ ବନ୍ଦିତା । ଅଢ଼େଇ ବର୍ଷର ଝିଅ ଓ ପାଞ୍ଚ ମାସର ପୁଅକୁ ଦେଖାଇଲେ । ମୋ ପାଇଁ ମାଛ ଓ ମାଂସ ତରକାରୀ ରାନ୍ଧି ସାରିଥିଲେ । କିନ୍ତୁ ମୁଁ ନିରାମିଷାଶୀ ଶୁଣି ଅନୁରୋଧ କଲେ, ''ସାର୍, ଥରେ ମାତ୍ର ଆଜି ଆମ ଘରେ ମାଛ ମାଂସ ଖାଆନ୍ତୁ ।'' ମୁଁ ହସିଦେବାରୁ ଅଧଘଣ୍ଟାଏ ମଧ୍ୟରେ କେତେ ପ୍ରକାର ଓଡ଼ିଆ ନିରାମିଷ ତରକାରି ରାନ୍ଧିପକାଇଲେ । ବନ୍ଦିତାର ହାତରନ୍ଧା ଖାଦ୍ୟ ଖାଇ ପରିତୃପ୍ତ ହେଲି ।

ରାତି ୧୧ଟାରେ ବିନୋଦ ଓ ବନ୍ଦିତା ମେରୀଲ୍ୟାଣ୍ଡ ଜଙ୍ଗଲ ପଥରେ ଗାଡ଼ି ଚଳାଇ ମୋତେ ଛାଡ଼ିବାକୁ ଆସିଲେ । ବାହାରେ ବର୍ଷା ହେଉଥାଏ ।

## ୧୩ ଅକ୍ଟୋବର, କାର୍ଟାର-କେନେଡ଼ି ପ୍ରତିଦ୍ୱନ୍ଦ୍ୱିତା ପ୍ରସଙ୍ଗ

ରାଷ୍ଟ୍ରପତି ପଦ ଲାଗି ଡେମୋକ୍ରାଟିକ ଦଳର ଦୁଇଜଣ ପ୍ରାର୍ଥୀ, କ୍ଷମତାସୀନ ସଭାପତି ଜିମି କାର୍ଟାର ଓ ସିନେଟ୍ ସଦସ୍ୟ ଏଡୱାର୍ଡ଼ କେନେଡ଼ିଙ୍କ ମଧ୍ୟରେ ସେ ଦିନ ଫ୍ଲୋରିଡ଼ା ନାମକ ସ୍ଥାନରେ ପ୍ରାଥମିକ ସ୍ତରରେ ପ୍ରତିଦ୍ୱନ୍ଦ୍ୱିତା ହେଉଥାଏ । କାର୍ଟାର ଥିଲେ ଦୁର୍ବଳଚେତା । କେନେଡ଼ି ଦୃଢ଼ଚେତା ।

କିନ୍ତୁ, କେନେଡ଼ି ଥିଲେ ଏକ ହତଭାଗ୍ୟ କୋଟିପତି ପରିବାରର ସନ୍ତାନ । ଗୋଟିଏ ବିଖ୍ୟାତ ପରିବାର କିପରି ଭାବରେ ନିୟତିର ପରିହାସ ଭୋଗିପାରେ, ତାହାର ନମୁନା ଭାବରେ ଏକଥା ଲେଖୁଛି । ଚାରି ପୁତ୍ର ଓ ପାଞ୍ଚ କନ୍ୟାର ପିତା ଯୋଶେଫ କେନେଡ଼ି ନିଜ ଦକ୍ଷତା ବଳରେ କୋଟିପତି ହେବା ସଙ୍ଗେ ରାଜନୀତିରେ ମଧ୍ୟ ପ୍ରତିଷ୍ଠା ଲାଭ କଲେ । କିନ୍ତୁ ଖ୍ୟାତି ଓ ସମୃଦ୍ଧି ପଥରେ ଆଗେଇ ଚାଲିଥିଲା ବେଳେ, ତାଙ୍କ ପ୍ରଥମ କନ୍ୟା ପାଗଳ ହେଲେ, ଦ୍ୱିତୀୟ କନ୍ୟା ଦୁର୍ଘଟଣାରେ ମଲେ, ପ୍ରଥମ ପୁତ୍ର ମହାଯୁଦ୍ଧରେ ପ୍ରାଣ ହରାଇଲେ, ଏବଂ ନିଜେ ଯୋଶେଫ କେନେଡ଼ି ପକ୍ଷାଘାତରେ ଆକ୍ରାନ୍ତ ହୋଇ ଶଯ୍ୟାରେ ପଡ଼ିରହିଲେ । ତାଙ୍କ ଦ୍ୱିତୀୟ ପୁତ୍ର ଜନ୍ କେନେଡ଼ି ଯୁକ୍ତରାଷ୍ଟ୍ରର ପ୍ରେସିଡ଼େଣ୍ଟ ଥିଲାବେଳେ ୧୯୬୩ରେ ଆତତାୟୀର ଗୁଳିରେ ନିହତ ହେଲେ । ତାଙ୍କ ତଳ ଭାଇ ରବାର୍ଟ୍ କେନେଡ଼ି ସେହି ପଦ ପାଇଁ ପ୍ରାର୍ଥୀ ହୋଇଥିବା ବେଳେ ୧୯୬୮ରେ ଆତତାୟୀର ଆକ୍ରମଣରେ ପ୍ରାଣ ଦେଲେ । ସେହି ଘଟଣା ପରେ ପରେ ପୂର୍ବତନ ରାଷ୍ଟ୍ରପତି ଜନ କେନେଡ଼ିଙ୍କ ବିଧବା ପତ୍ନୀ ଜ୍ୟାକେଲିନ୍ ନିଜର ଆତ୍ମସମ୍ମାନ ଓ ଦେଶର ମର୍ଯ୍ୟାଦା ବିସର୍ଜନ ଦେଇ ଆରିଷ୍ଟୋଟଲ ଓନାସିସ୍ ନାମକ ଜଣେ ଗ୍ରୀକ୍ କୋଟିପତିଙ୍କୁ ବିବାହ କଲେ ଓ ବିଦେଶରେ ଅଗାଧ ବିଳାସବ୍ୟସନରେ ବୁଡ଼ିରହିଲେ । ତାହା ପରେ ପରେ ପରିବାରର ଶଯ୍ୟାଗତ ବୃଦ୍ଧ ଯୋଶେଫ କେନେଡ଼ି ୮୧ ବର୍ଷ ବୟସରେ ପରଲୋକ ଗମନ କଲେ ।

ବାକି ରହିଗଲେ ତାଙ୍କର ଚତୁର୍ଥ ପୁତ୍ର ଏଡ଼ୱାର୍ଡ଼ କେନେଡ଼ି । ବଡ଼ଭାଇ ଜନ୍ କେନେଡ଼ିଙ୍କ ପରି ସେ ଥିଲେ ଜଣେ ପ୍ରତିଭାଶାଳୀ ଓ ଲୋକପ୍ରିୟ ନେତା । ୧୯୮୦ ନିର୍ବାଚନରେ ସଭାପତି ପଦ ଲାଗି ଡେମୋକ୍ରାଟିକ ଦଳର ପ୍ରାର୍ଥୀ ହେବା ପାଇଁ ଯୋଗ୍ୟତମ ବ୍ୟକ୍ତି । କିନ୍ତୁ, ତାଙ୍କ ନାମ ସହିତ ଚାରିତ୍ରିକ କଳଙ୍କଟିଏ ଲାଗିରହିଥାଏ । ଦଶ ବର୍ଷ ପୂର୍ବେ ଦିନେ ଗଭୀର ରାତ୍ରି କାଳରେ ମେରୀ କୋପେଚନେ ନାମକ ତରୁଣୀଙ୍କୁ ଏକାକୀ ନିଜ ଗାଡ଼ିରେ ଚାପାକିଦିକ୍ ଦ୍ୱୀପକୁ ନେଇ ଯାଉଥିବାବେଳେ ଗାଡ଼ିଟି ଗୋଟିଏ ଭଙ୍ଗା ପୋଲ ଉପରୁ ନଦୀଗର୍ଭକୁ ଖସିପଡ଼ିଲା । କେନେଡ଼ି ଗାଡ଼ି ଫିଟାଇ ସନ୍ତରଣ ଦ୍ୱାରା ନିଜ ଜୀବନ ରକ୍ଷାକଲେ, କିନ୍ତୁ ତାଙ୍କ ସଙ୍ଗିନୀ ପାଣିରେ ଜୀବନ ହରାଇଲେ । ଦେଶ ସାରା ସେତେବେଳେ ଚହଳ ପଡ଼ିଯାଇଥିଲା, ନିଷିଦ୍ଧ ପୋଲ ଉପରେ ଗାଡ଼ି ଚାଳନା ବେଳେ କେନେଡ଼ି ନିଶାସକ୍ତ ଥିଲେ କି ? କାହିଁକି ସେ ଦ୍ୱୀପ ମଧ୍ୟକୁ ରାତ୍ରିଯାପନ ପାଇଁ ଯାଉଥିଲେ ? ସଂକ୍ଷେପରେ, ଏହି ଘଟଣାଟି ଏଡ଼ୱାର୍ଡ଼ କେନେଡ଼ିଙ୍କ ଚରିତ୍ରରେ ଏକ ଅଲିଭା ଦାଗ ରୂପେ ରହିଗଲା ।

କଂଗ୍ରେସ ଲାଇବ୍ରେରୀର ବଗିଚା ଭିତରେ ସେ ଦିନ ସନ୍ଧ୍ୟାବେଳେ କେତେଜଣ ପାଠକ ଏହି ବିଷୟ ଆଲୋଚନା କରୁଥିଲେ । ମୁଁ ପାଖରେ ବସି ଶୁଣୁଥିଲି । କେହି କେହି କହିଲେ, କାର୍ଟାର ଚରିତ୍ରବାନ ବ୍ୟକ୍ତି, କେନେଡ଼ିଙ୍କ ଚରିତ୍ର ଖରାପ । ଆଉ କେହି କେହି କହିଲେ, ରାଷ୍ଟ୍ରପତି ପଦ ପାଇଁ କେନେଡ଼ି ହିଁ ଉପଯୁକ୍ତ ପ୍ରାର୍ଥୀ, କାରଣ ଦେଶ ଚାହେଁ ଜଣେ ବଳିଷ୍ଠ ବ୍ୟକ୍ତି । ମୋତେ ପ୍ରଶ୍ନ କରାଗଲା, "ଜଣେ ଭାରତୀୟ ଭାବରେ ଆପଣ କାହାର ପକ୍ଷ ନେବେ ?" ମୁଁ ଉତ୍ତର ଦେଲି, "ମୁଁ ଭୋଟଦାତା ନୁହେଁ । ତଥାପି ମୋ ଦେଶର ସ୍ୱାର୍ଥ ଦୃଷ୍ଟିରୁ ମୁଁ କହିବି, ଏଡ଼ୱାର୍ଡ଼ କେନେଡ଼ି ରାଷ୍ଟ୍ରପତି ହେବା ଉଚିତ । ଯୁବକ ଅବସ୍ଥାରେ ସେ ଯଦି ସାମାନ୍ୟ ଭୁଲ କରିଥିଲେ, ସେଥିପାଇଁ ରାଜନୈତିକ ଜୀବନରେ ତାଙ୍କ ପ୍ରତିଭା ଅସ୍ୱୀକାର କରିବା ଉଚିତ ନୁହେଁ । ଦୁର୍ଘଟଣାରେ ମେରୀ ମରି ନଥିଲେ କେନେଡ଼ିଙ୍କ ଗୁପ୍ତ ପ୍ରଣୟ ବିଷୟ କେହି ଜାଣିପାରି ନଥାନ୍ତେ । ପାଶ୍ଚାତ୍ୟ ସମାଜରେ ବିବାହ ପୂର୍ବରୁ ଓ ପରେ ସ୍ତ୍ରୀ ପୁରୁଷଙ୍କ ଗୋପନ ସମ୍ପର୍କ ଏକ ସାଧାରଣ ବ୍ୟାପାର ।"

ଅନ୍ୟମାନେ ହସିଲେ । ବୟୋବୃଦ୍ଧ ଜଣେ ପାଠକ ରାୟ ଶୁଣାଇଲେ, "ଆମେ ଜାଣୁ, ସ୍ତ୍ରୀ ବା ପୁରୁଷ, କାହାରିର ଚରିତ୍ର ଜାଣିବା ପ୍ରାୟ ସମ୍ଭବ ନୁହେଁ । କିନ୍ତୁ, ଯେଉଁମାନେ ଦେଶର ସର୍ବୋଚ୍ଚ ପଦକୁ ଯିବାକୁ ଚାହିଁବେ, ସେମାନଙ୍କ ବ୍ୟକ୍ତିଗତ ଚରିତ୍ର ଉନ୍ମୋଚନ କରିବାକୁ ଦେଶବାସୀ ପଶ୍ଚାତ୍‌ପଦ ହେବେ ନାହିଁ । ଲୋକେ ପଚାରିବାକୁ ଆରମ୍ଭ କଲେଣି, ଯେଉଁ ବ୍ୟକ୍ତି ମାତାଲ ଅବସ୍ଥାରେ ବେପରୁଆ

ଗାଡ଼ି ଚଳାଇ ପାରେ, ଜଣେ ବାଳିକାର ମୃତ୍ୟୁ ଲାଗି ଦାୟୀ ହୋଇପାରେ, ଦୁର୍ଘଟଣା କଥା ପୋଲିସ ଆଗରେ ସ୍ୱୀକାର କରିବାକୁ କୁଣ୍ଠାବୋଧ କରିପାରେ, ସେ ପୁଣି ଯୁକ୍ତରାଷ୍ଟ୍ର ଆମେରିକାର ସଭାପତି ହେବ କିପରି ?'' ଆଲୋଚନା ସେହିଠାରେ ଶେଷ ହେଲା ।

(ପରେ ଜାଣିଲି, ତାଙ୍କ ଚରିତ୍ର ପ୍ରତି ଆକ୍ଷେପ ଦେଖି, ଏଡ଼ୱାର୍ଡ଼ କେନେଡି ପ୍ରତିଦ୍ୱନ୍ଦ୍ୱିତାରୁ ଓହରିଗଲେ । ଅପର ପକ୍ଷରେ, ଜିମି କାର୍ଟାର ଡେମୋକ୍ରେଟିକ ଦଳର ପ୍ରାର୍ଥୀ ରୂପେ ନିର୍ବାଚନ ଲଢ଼ି ବିପକ୍ଷ ରିପବ୍ଲିକାନ ଦଳର ପ୍ରାର୍ଥୀ ରୋନାଲ୍ଡ ରେଗାନଙ୍କ ଦ୍ୱାରା ପରାସ୍ତ ହେଲେ ।)

## ୧୪ ଅକ୍ଟୋବର, ଏକ ଅସ୍ୱାଭାବିକ ସମାବେଶ

ରବିବାର ୩ଟା ବେଳେ ବିନୋଦ ଓ ବନ୍ଦିତା ସହିତ କଂଗ୍ରେସ ଭବନ ଓ ହ୍ୱାଇଟ୍ ହାଉସ ସମ୍ମୁଖରେ ଫଟୋ ଉଠାଇବାକୁ ଗଲି । ଅପରାହ୍ନ ୪ଟା ବେଳେ ପହଞ୍ଚିଲୁଁ ଉଆସିଂଟନ ସ୍ମୃତିସ୍ତମ୍ଭ ପାଖରେ ।

ଚାରି ଦିଗରୁ ହଜାର ହଜାର ଯୁବକ ଯୁବତୀଙ୍କ ଶୋଭାଯାତ୍ରା ଆଗେଇ ଆସୁଥାଏ । ଅଳ୍ପ ସମୟ ମଧ୍ୟରେ ବଡ଼ ଧରଣର ଜନ ସମାବେଶ ଦେଖିବାକୁ ମିଳିଲା । ସମସ୍ତେ ଥିଲେ ଯୁବକ ଯୁବତୀ । ନାନା ପ୍ରକାର ପୋଷାକ, ବିଚିତ୍ର ଟୋପି । ଅନେକଙ୍କ ହାତରେ ପ୍ଲାକାର୍ଡ଼ । ପ୍ରବଳ ହର୍ଷଧ୍ୱନି ସହ ସଭାକାର୍ଯ୍ୟ ଆରମ୍ଭ ହେଲା । ଚାଲିଲା, ଭାଷଣ ପରେ ଭାଷଣ ।

ଆମେ ଦୂରରେ ଛିଡ଼ା ରହିଲୁଁ । ବିନୋଦବାବୁ କହିଲେ, ଏହା ହେଉଛି 'ଗେ' ମାନଙ୍କ ସମାବେଶ । ଶବ୍ଦଟିର ଅର୍ଥ ବୁଝିପାରିଲି ନାହିଁ । ସେ ବୁଝାଇଲେ ଯେ ଆମେରିକାର ଯୁବାଯୁବତୀମାନେ Gay Society ନାମକ ସଂଗଠନ ଗଢ଼ିତୋଳିଛନ୍ତି । ସେମାନଙ୍କ ଦର୍ଶନ ହେଲା, ଯୁଗ ଯୁଗ ବ୍ୟାପି ଚାଲି ଆସିଥିବା ପୁରୁଷ ଓ ନାରୀ ମଧ୍ୟରେ ବିବାହ ବଦଳରେ, ପୁରୁଷମାନେ ପୁରୁଷମାନଙ୍କୁ ଓ ନାରୀମାନେ ନାରୀମାନଙ୍କୁ ବିବାହ କରିବେ । ତାଙ୍କ କଥା ଶୁଣି ସ୍ତମ୍ଭୀଭୂତ ହେଲି । ଧନ, ସମ୍ପତ୍ତି, ପ୍ରାଚୁର୍ଯ୍ୟ, ଭୋଗ ବିଳାସ ମଧ୍ୟରେ ଏ ପୁଣି ଗୋଟାଏ ନୂତନ ଦିଗ୍‌ଦର୍ଶନ ! ଅଥବା, ପ୍ରଚଳିତ ସାମାଜିକ ବ୍ୟବସ୍ଥା ବିରୋଧରେ ବିଦ୍ରୋହ ! ଆମ ପାଖରେ କେତେଜଣ ଫଟୋଗ୍ରାଫର ଓ ସାମ୍ବାଦିକ ଛିଡ଼ା ଥାନ୍ତି । ଜଣେ ଅଟକଳ କଲେ ''୨୫ ହଜାର ଗେ'' । ଅନ୍ୟ ଜଣେ କହିଲେ, ''ନା, ୭୫ ହଜାର'' ।

ଦର୍ଶକମାନଙ୍କ ଆଲୋଚନା ଶୁଣିଲି । ''ଆମେରିକାରେ ହାରାହାରି ଯେତିକି ମରୁଛନ୍ତି, ସେତିକି ଜନ୍ମୁଛନ୍ତି । ଜନସଂଖ୍ୟା ବୃଦ୍ଧି ବର୍ତ୍ତମାନ ଶୂନ୍ୟ ସଂଖ୍ୟାରେ

ରହିଛି । ସେ ମାନଙ୍କ ଯୋଗୁଁ ଜନସଂଖ୍ୟା କମି କମି ଚାଲିବ ।'' ''ଦିନ ଆସିବ, ଯେତେବେଳେ ଧଳା ଜାତି ଲୋପ ପାଇବ, ଆମେରିକା ହେବ କଳାମାନଙ୍କ ମହାଦେଶ । ସେ ମାନଙ୍କୁ ମାଡ଼ ଦେବା ଦରକାର ।''

କାଳ ବିଳମ୍ବ ନକରି ଖାଇବା ପାଇଁ 'ସିଦ୍ଧାର୍ଥ' ନାମକ ଭାରତୀୟ ରେଷ୍ଟୁରାଁରେ ପହଞ୍ଚିଲୁଁ । ସେଠାରେ କେବଳ ଦକ୍ଷିଣଭାରତୀୟ ଦୋସା, ଇଡ୍‌ଲି ମିଳେ । ଖାଇବାଲାଗି ସାହେବମାନଙ୍କ ଭିଡ଼ ଲାଗିଥାଏ । ସେତେବେଳେ ଗୋଟିଏ ଆମେରିକୀୟ ଡଲାରର ମୂଲ୍ୟ ଥାଏ ଭାରତୀୟ ମୁଦ୍ରାରେ ୮ ଟଙ୍କା । ଦେଢ଼ ଡଲାର ବା ୧୨ ଟଙ୍କା ଦେଇ ଯେଉଁ 'ମସଲା ଦୋସା' ଖିଆଗଲା, ସେଥିରେ ପେଟ ଭର୍ତ୍ତି ହେଲା ।

ଖାଇଲାବେଳେ ସଂବାଦପତ୍ରରେ ପଢ଼ିଲି– ''ଯୁକ୍ତରାଷ୍ଟ୍ରର ବୟୋଜ୍ୟେଷ୍ଠ ନାଗରିକଙ୍କ ମୃତ୍ୟୁ । ଦିନେ କ୍ରୀତଦାସ ରୂପେ ଆସିଥିବା ଏହି କୃଷ୍ଣାଙ୍ଗ ବ୍ୟକ୍ତି ୧୩୭ ବର୍ଷ ବୟସରେ ପରଲୋକ ଗମନ କରି ଦୀର୍ଘ ପରମାୟୁ ଦୃଷ୍ଟିରୁ ନାମ ରଖିଗଲେ ।''

**୧୫ ଅକ୍ଟୋବର, ମହାକାଶ ମିଉଜିୟମ** (Space Museum)

ଏହି ଅଦ୍ଭୁତ ଯାଦୁଘର ଭିତରେ ସୁଦୂର ଅତୀତରୁ ଆଜି ପର୍ଯ୍ୟନ୍ତ ମନୁଷ୍ୟ ପ୍ରାଣରେ ଦେଖା ଦେଇଥିବା ମହାଶୂନ୍ୟର ଆକର୍ଷଣ ବିଷୟକ ଚିତ୍ରମାନ ସ୍ଥାନ ପାଇଛି । ଗ୍ରୀସ୍ ବା ଭାରତ, ମିଶର ବା ଚୀନ, ବିଭିନ୍ନ ଦେଶର ପ୍ରାଚୀନ ପୁରାଣ ଓ ସାହିତ୍ୟରେ ବର୍ଣ୍ଣିତ ଥିବା ଆକାଶଯାତ୍ରାର କଳ୍ପନା କଥା ଦେଖିଲେ ଜଣାଯାଏ ଯେ ଆଦିମ ଯୁଗରୁ ଶୂନ୍ୟରେ ଉଡ଼ିବା ଲାଗି ମନୁଷ୍ୟର ଆଗ୍ରହ ଥାଏ ।

ସେଥିପାଇଁ ଯେଉଁ ପ୍ରକାର ଚେଷ୍ଟା ଚାଲିଥିଲା, ତାହାର ବର୍ଣ୍ଣନାମାନ ସ୍ଥାନ ପାଇଛି । ଗୁଡ଼ି ଉଡ଼ାଇବା ପାଖରୁ ବେଲୁନ ଛାଡ଼ିବା ପର୍ଯ୍ୟନ୍ତ ଉଦ୍ୟମ ମଧ୍ୟରେ ରହିଥାଏ ମନୁଷ୍ୟର ସ୍ୱପ୍ନ, ପକ୍ଷୀପରି ଆକାଶରେ ଉଡ଼ିବା ଆଶା । ଶେଷରେ, ମନୁଷ୍ୟକୁ ବସାଇ ଉଡ଼ିଥିବା ବେଲୁନ ପାଖରୁ ଆରମ୍ଭ କରି ପ୍ରଥମ ଉଡ଼ାଜାହାଜ ଓ ପରବର୍ତ୍ତୀ ଉନ୍ନତ ବିମାନ ଓ ପରିଶେଷରେ ଚନ୍ଦ୍ର ପୃଷ୍ଠରେ ଅବତରଣ କରିଥିବା ମହାକାଶ ଯାନ ପ୍ରଭୃତି ପଦାର୍ଥ ବିଭିନ୍ନ ପ୍ରକୋଷ୍ଠରେ ଦେଖିବାକୁ ମିଳିଲା । ଆକାଶକୁ ଯାଇଥିବା ଉପଗ୍ରହଗୁଡ଼ିକ ଓ ଯେଉଁ ଯାନରେ ବସି ମନୁଷ୍ୟ ଚନ୍ଦ୍ର ଉପରେ ପହଞ୍ଚିଥିଲା, ସେହି ପ୍ରକୃତ ଯନ୍ତ୍ରଗୁଡ଼ିକ ଦେଖାଇ ଦିଆଗଲା ।

ତା'ପରେ, 'ଆକାଶ ଉଡ୍‌ଡୟନ' ନାମକ ଚଳଚ୍ଚିତ୍ର ଦେଖାଇବାକୁ ନିଆଗଲା । ସେପରି ବୃହଦାକାର ପର୍ଦ୍ଦା ଆଗରୁ ଦେଖି ନଥିଲି । କୌତୂହଳର ବିଷୟ, ପ୍ରେକ୍ଷାଳୟଟିକୁ ଏପରି କୌଶଳରେ ଗଠନ କରାଯାଇଥାଏ, କିମ୍ବା ପର୍ଦ୍ଦାର ପ୍ରଭାବ ଓ ଚଳଚ୍ଚିତ୍ର

ପ୍ରଦର୍ଶନର ଚାତୁରୀ ଏପରି ଥାଏ ଯେ ଦର୍ଶକମାନେ ଦୃଶ୍ୟ ଦେଖିଲାବେଳେ ନିଜେ ବେଲୁନ୍‌ରେ ବା ରକେଟରେ ବା ମହାକାଶ ଯାନରେ ବସିଥିବା ଶିହରଣ ଉପଭୋଗ କରିପାରୁଥିଲେ । ସତେ ଯେପରି ଆମେ ଉଡ଼ି ଯାଉଥାଉଁ ମହାଶୂନ୍ୟ ଭିତରକୁ ଏବଂ ବହୁ ଊର୍ଦ୍ଧ୍ୱରେ ରହି ଦେଖୁଥାଉଁ ପୃଥିବୀ ଓ ପ୍ରକୃତିର ଅପରୂପ ଦୃଶ୍ୟ !

## ୨୦ ଅକ୍ଟୋବର, ଜାତୀୟ ଗିର୍ଜା, ହସପିଟାଲ

ମୋ ଖୁଡୁତାଶୂର କ୍ୟାପ୍‌ଟେନ ଡାକ୍ତର ହରିଶ ଚନ୍ଦ୍ର ପାଲ୍ ଦ୍ୱିତୀୟ ମହାଯୁଦ୍ଧ କାଳରେ ରେଙ୍ଗୁନ ଠାରେ ଜାପାନୀ ବୋମାମାଡ଼ରେ ପ୍ରାଣ ହରାଇଥିଲେ । ତାଙ୍କ ସାନପୁଅ ବିକ୍ରମକେଶରୀ ପାଲ ଆମେରିକାର ଜର୍ଜ ଉଆସିଂଟନ ହସପିଟାଲରେ ଚାକିରି କରୁଥିଲେ । ସେ ଦିନ ଅପରାହ୍ନରେ କେତେଗୁଡ଼ିଏ ନୂଆ ସ୍ଥାନ ଦେଖାଇବାକୁ ନିଜ ଗାଡ଼ିରେ ନେଇଗଲେ ।

ପ୍ରଥମେ ପହଞ୍ଚିଲୁଁ ଆମେରିକୀୟ କ୍ୟାଥଲିକ ସମ୍ପ୍ରଦାୟର ବୃହତ୍ତମ ଗିର୍ଜାଗୃହରେ । ରୋମ ନଗରୀର ଭାଟିକାନ ପ୍ରାସାଦ ଅନୁକରଣରେ ନିର୍ମିତ ଏହି ଗିର୍ଜାଗୃହର ଉଚ୍ଚତା ହେଉଛି ଏହାର ବିଶେଷତ୍ୱ । ଆକାଶକୁ ଭେଦି ରହିଥାଏ ସୁଦୃଶ୍ୟ ଗୁମ୍ବଜ । ଅନେକଗୁଡ଼ିଏ ମାର୍ବଲ ପାହାଚ ଉଠିଲାପରେ ପ୍ରାର୍ଥନା ହଲ । କାନ୍ଥରେ ମେରୀ ଓ ଯିଶୁଙ୍କର ମୂର୍ତ୍ତି । ପରିଷ୍କାର ପରିଚ୍ଛନ୍ନତା ଓ ଧର୍ମୀୟ ପରିବେଶ ଦେଖି ସ୍ଥାନର ପବିତ୍ରତା ଅନୁଭବ କରିହେଲା । ଗିର୍ଜା ବାହାରେ ରହିଛି 'କ୍ୟାଥଲିକ ବିଶ୍ୱବିଦ୍ୟାଳୟ' ।

ସେଠାରୁ ବିକ୍ରମ ନେଇଗଲେ ଉଆସିଂଟନ ହସପିଟାଲ । ରାଜଧାନୀର ସେହି ପ୍ରସିଦ୍ଧ ଚିକିତ୍ସାଳୟର ଅଟ୍ଟାଳିକା, ଅତ୍ୟାଧୁନିକ ଯନ୍ତ୍ରପାତି ଓ ବିଭିନ୍ନ ବିଭାଗର ଆକାର ପ୍ରକାର ଦେଖି ଆଧୁନିକ ଚିକିତ୍ସା ପଦ୍ଧତିର ଉତ୍କର୍ଷ ସମ୍ବନ୍ଧରେ ଧାରଣା ଆସିଗଲା । ସେଥିସଙ୍ଗେ, ମୋର ହୃଦ୍‌ବୋଧ ହେଲା, ସେଠାରେ ସାଧାରଣ ରୋଗୀର ସ୍ଥାନ ନାହିଁ, ବିତ୍ତଶାଳୀ ବ୍ୟକ୍ତିମାନେ ହିଁ ଭର୍ତ୍ତି ହେବାକୁ ସମର୍ଥ । ବିକ୍ରମ ପାଖରୁ ଶୁଣିଲି, ଧନଶାଳୀ ନାଗରିକମାନେ ଚିକିତ୍ସା ନିମନ୍ତେ ମୋଟା ଅଙ୍କର ବୀମା କରିଥାନ୍ତି । ରୋଗ ବା ଅପାରେସନ ଇତ୍ୟାଦି ଲାଗି ବୀମା କୋମ୍ପାନୀ ପ୍ରଚୁର ଅର୍ଥ ଦିଏ । ଅପର ପକ୍ଷରେ, ସାଧାରଣ ଦେଶବାସୀ ଓ ନିଗ୍ରୋମାନେ ଚିକିତ୍ସାବୀମା କରିପାରନ୍ତି ନାହିଁ ଓ ତେଣୁ ଏପରି ହସପିଟାଲର ପାଖ ମାଡ଼ନ୍ତି ନାହିଁ ।

ହସପିଟାଲ କମ୍ପ୍ଲେକ୍ସ ପାଖରୁ ହାୱାର୍ଡ଼ ବିଶ୍ୱବିଦ୍ୟାଳୟ ଦେଖିବାକୁ ଗଲି । ତାହା ଥିଲା ମୁଖ୍ୟତଃ କୃଷ୍ଣାଙ୍ଗମାନଙ୍କ ଅନୁଷ୍ଠାନ ।

## ୨୧ ଅକ୍ଟୋବର, ପେଣ୍ଟାଗନ

ପେଣ୍ଟାଗନ ନାମକ ସ୍ଥାନରେ ରହିଛି ଯୁକ୍ତରାଷ୍ଟ୍ରର ପ୍ରତିରକ୍ଷା ବିଭାଗ । ଯୁଦ୍ଧ ସମ୍ବନ୍ଧୀୟ ସମସ୍ତ ନିଷ୍ପତ୍ତି ସେହିଠାରେ ନିଆଯାଇଥାଏ । ଆମେରିକାର କୋପଦୃଷ୍ଟିରେ ଥିବା ସବୁ ଦେଶ ପ୍ରତି ପେଣ୍ଟାଗନ ନାମଟି ଆଶଙ୍କା ବହନ କରିଆସିଛି ।

ସେଦିନ ଥାଏ ରବିବାର । ଗାଡ଼ି ଚାଲିଲା ପେଣ୍ଟାଗନ ଅଭିମୁଖେ । ସହର ବାହାରେ କେତେଗୁଡ଼ିଏ ସୁଦୃଢ଼ ଓ ସୁବିଶାଳ ଅଟ୍ଟାଳିକା ପାଖ ଦେଇ ଗଲାବେଳେ ବିକ୍ରମ କହିଲେ, "ପ୍ରକୃତ ପେଣ୍ଟାଗନ ରହିଛି ମାଟିତଳେ । ଉପରେ ଦିଶୁଥିବା ସୌଧଗୁଡ଼ିକ କିଛି ନୁହେଁ । ଭୂତଳସ୍ଥ ଦୁର୍ଗ ମଧ୍ୟରେ ସ୍ଥଳବାହିନୀ, ନୌବାହିନୀ ଓ ଆକାଶ ବାହିନୀର ମୁଖ୍ୟ ଅଫିସମାନ ରହିଛି ।"

ଆଗରେ ଦିଶିଲା ପ୍ରଶସ୍ତ ସୁଡ଼ଙ୍ଗ ପଥ । ବିକ୍ରମ ଭିତରକୁ ଗାଡ଼ି ଚଳାଇଲେ । ଅନେକ ତଳେ ପ୍ରକାଣ୍ଡ ପ୍ରକାଣ୍ଡ କଂକ୍ରୀଟ ସ୍ତମ୍ଭ ଉପରେ ସ୍ଥାପିତ ହୋଇଥାଏ ଭୂତଳର ଛାତ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଗାଡ଼ି ରହିଲା । ସେହିଠାରୁ ଆରମ୍ଭ ହୋଇଥାଏ ନିଷିଦ୍ଧ ଅଞ୍ଚଳ । ଦୂରରୁ ଦିଶୁଥାଏ ଅନିର୍ଦ୍ଦିଷ୍ଟ ସୁଡ଼ଙ୍ଗ ପଥ ଗୁଡ଼ିକର ଉଜ୍ଜ୍ୱଳ ଆଲୋକ । ଦୁଇ ପାଖରେ ଥାଏ ଅସଂଖ୍ୟ ଅଫିସ କକ୍ଷ । ରବିବାର ଯୋଗୁଁ ଭୟପ୍ରଦ ଜାଗାଟି ନିର୍ଜନ ଥାଏ । ସ୍ଥାନେ ସ୍ଥାନେ ସଶସ୍ତ୍ର ପ୍ରହରୀମାନେ ଚଲାବୁଲା କରୁଥାନ୍ତି ।

ଯେତକ ଜାଗା ଆଖିରେ ପଡ଼ିଲା, ତାହାର ଗୁରୁତ୍ୱ କିଛି ନୁହେଁ ବୋଲି କହି ବିକ୍ରମ ଜଣାଇଲେ, "ଏତିକିରେ ସନ୍ତୁଷ୍ଟ ହେବା ଉଚିତ । ଅନ୍ତତଃ ପେଣ୍ଟାଗନର ପ୍ରବେଶ ଦ୍ୱାର ତ ଦେଖିବାକୁ ମିଳିଲା ।" ମୁଁ ପରିହାସ କଲି, "ବିକ୍ରମ୍, ତୁମ ମୁଣ୍ଡରେ ବୁଦ୍ଧି କମ୍ । ଯେଉଁ ସ୍ଥାନରୁ ଯୁଦ୍ଧ ଓ ମହାଯୁଦ୍ଧର ଗତି ତଥା ପୃଥିବୀର ସାମରିକ ଭାଗ୍ୟ ମୀମାଂସା କରାଯାଏ, ସେହି ସ୍ଥାନର ଦ୍ୱାର ପାଖକୁ ତୁମ ପରି ଜଣେ ବିଦେଶୀ ପକ୍ଷରେ ଗାଡ଼ି ଆଣିବା ଅସମ୍ଭବ । ମୋର ବିଶ୍ୱାସ, ଏହା ହେଉଛି ଶତ୍ରୁ ଆଖିରେ ଧୂଳି ପକାଇବା ପାଇଁ ଏକ କୌଶଳ । ପେଣ୍ଟାଗନ ଭିତରକୁ ଯିବା ପାଇଁ ଅନ୍ୟ ରାସ୍ତା ରହିଛି । ସେନାପତି ଓ ସମରକର୍ତ୍ତାମାନେ ଏ ବାଟରେ ଯିବାର ପ୍ରଶ୍ନ ନାହିଁ ।"

## ୨୫ ଅକ୍ଟୋବର, ଇରାନ ଶାହଙ୍କ ପ୍ରସଙ୍ଗ

ୱାସିଂଟନରେ ଥିଲା ସମୟରେ ପ୍ରାୟ ପ୍ରତିଦିନ ପତ୍ରପତ୍ରିକାରେ ଆମେରିକା ଇରାନ ବିବାଦ ବିଷୟ ପ୍ରକାଶ ପାଉଥାଏ । ଇରାନରେ ମୌଳବାଦୀ ଧର୍ମବିପ୍ଳବ ଆରମ୍ଭ ହେବା ଦେଖି ରାଜା ମହମ୍ମଦ ରେଜା ଶାହ ନିଜ ଦେଶରୁ ପଳାୟନ

କରିଥିଲେ । ତାଙ୍କ ପତନ ପରେ ଧର୍ମଗୁରୁ ଆୟାତୋଲ୍ଲା ରୁହୋଲ୍ଲା ଖୋମେନିଙ୍କ ନିର୍ଦ୍ଦେଶରେ ଇରାନୀୟମାନେ ପ୍ରବଳ ଆମେରିକାବିରୋଧୀ ଆନ୍ଦୋଳନ ଚଳାଇଥିଲେ ।

ସେହିପରି ଉତ୍ତ୍ୟକ୍ତ ପରିସ୍ଥିତି ବେଳେ କ୍ୟାନସାର ବ୍ୟାଧିରେ ପୀଡ଼ିତ ହୋଇ ପଳାତକ ରାଜା ଆମେରିକାର ନିଉୟର୍କ ସହରର ଏକ ହସପିଟାଲରେ ଭର୍ତ୍ତି ହେଲେ । ସେଦିନ ସନ୍ଧ୍ୟାବେଳେ ଟେଲିଭିଜନରେ ଅପାରେସନ କକ୍ଷର ଦୃଶ୍ୟ ଦେଖିଲି । ଶାହଙ୍କ ବୟସ ୬୦ । ଜରାଜୀର୍ଣ୍ଣ ଦେହ ଓ ବିକୃତ ମୁଖମଣ୍ଡଳ ଦେଖି ଦୟା ହେଲା । ସାର୍ଜନମାନେ ମୁଖା ପିନ୍ଧି ଛୁରୀ ଧରିଲା ବେଳକୁ, ହସପିଟାଲ ଗେଟ୍ ପାଖରେ ପ୍ରାୟ ଦୁଇଶହ ଇରାନୀୟ ଚିତ୍କାର କରୁଥାନ୍ତି, ''ଶାହଙ୍କ ମୃତ୍ୟୁ ହେଉ'' ।

ମନେ ପଡ଼ିଲା ଗୋଟିଏ କଥା । ୧୯୬୦ ମସିହାରେ ଲଣ୍ଡନରେ ଥିଲାବେଳେ ଶାହଙ୍କର ପୁଅଜନ୍ମର ସଂବାଦ ପାଇ ଇରାନୀୟ ଛାତ୍ରମାନେ ଆମକୁ ମିଷ୍ଟାନ୍ନ ଖୁଆଇଥିଲେ । ସେମାନଙ୍କ ଆନନ୍ଦ ଉଲ୍ଲାସର କାରଣ ଥାଏ ଯେ ରାଜ ସିଂହାସନ ଲାଗି ଉତ୍ତରାଧିକାରୀ ମିଳିଯାଇଛି । କିନ୍ତୁ ଆଜି କୁଆଡ଼େ ଗଲା ଶାହଙ୍କର ପାରସ୍ୟ ସାମ୍ରାଜ୍ୟ, ରତ୍ନଖଚିତ ସିଂହାସନ ଓ ରାଜମୁକୁଟ ! ଅସ୍ତ୍ରୋପଚାର ପରେ, ଜଣେ ସାର୍ଜନ ଘୋଷଣା କଲେ, ''ମହମବତିର ଶେଷ ଶିଖା ପରି ଦାଉ ଦାଉ କରୁଛି ଶାହଙ୍କ ଜୀବନ ।''

## ୨୬ ଅକ୍ଟୋବର, ଦୁଇଟି ଭାଷଣ କାର୍ଯ୍ୟକ୍ରମ

ସେଦିନ ଜନ ହପକିନ ବିଶ୍ୱବିଦ୍ୟାଳୟର 'ଆନ୍ତରାଷ୍ଟ୍ରୀୟ ସମ୍ପର୍କ ବିଭାଗ'ରେ ଭାରତ ଯୁକ୍ତରାଷ୍ଟ୍ର ସମ୍ପର୍କ ବିଷୟ କହିଲାବେଳେ ଉଲ୍ଲେଖ କରିବାକୁ ବାଧ୍ୟ ହେଲି ଯେ, ଭାରତର ସ୍ୱାଧୀନତାସଂଗ୍ରାମ କାଳରେ ଯୁକ୍ତରାଷ୍ଟ୍ରର କୌଣସି ସରକାର ମହାତ୍ମା ଗାନ୍ଧିଙ୍କ ଆନ୍ଦୋଳନ ପ୍ରତି ସହାନୁଭୂତି ବା ସମର୍ଥନ ଜଣାଇ ନଥିଲେ । ସ୍ୱାଧୀନତା ପରେ ପାକିସ୍ତାନକୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବା ସାଙ୍ଗକୁ କାଶ୍ମୀର ସମସ୍ୟାକୁ ଜଟିଳ କରିବା ଦ୍ୱାରା ଭାରତବାସୀ ଆମେରିକା ପ୍ରତି ବିଶ୍ୱାସ ହରାଇଛନ୍ତି । ''ରିଚାର୍ଡ଼ ନିକ୍ସନଙ୍କୁ ପଚାରନ୍ତୁ, ଭାରତ ପ୍ରତି ତାଙ୍କର ବିଦ୍ୱେଷ କେତେଦୂର ଗଭୀର ଥିଲା ! ପାକ୍ ଭାରତ ଯୁଦ୍ଧବେଳେ ସେ କେଉଁପ୍ରକାର ଭୂମିକା ଅବଲମ୍ବନ କରିଥିଲେ ! ଏବେ ମଧ୍ୟ ଭାରତପ୍ରତି ଆମେରିକାର ସଦିଚ୍ଛା ନାହିଁ । ସଦିଚ୍ଛା ରହିଛି ପାକିସ୍ତାନ ଓ ଚୀନ ଦେଶ ପ୍ରତି, ଯେଉଁ ଦୁଇ ଦେଶ ସହିତ ଆମର ସମ୍ପର୍କ ତିକ୍ତ ।'' ଆଶ୍ଚର୍ଯ୍ୟର ବିଷୟ, ଶ୍ରୋତାମାନଙ୍କ ମଧ୍ୟରୁ କେହି କେହି ନିଜ ସରକାରଙ୍କ ଉଦ୍ଦେଶ୍ୟରେ କଟୂକ୍ତି ପ୍ରୟୋଗ କଲେ ।

ମାସାଚୁସେଟ ଆଭେନିଉରେ ଅନ୍ୟ ଗୋଟିଏ ମିଟିଂରେ ମୋର ନିର୍ଦ୍ଧାରିତ ବକ୍ତବ୍ୟ ବିଷୟ ପରିବର୍ତ୍ତେ ଯୁବକମାନେ ମହାତ୍ମା ଗାନ୍ଧିଙ୍କ ଜୀବନୀରୁ କାହାଣୀ ଶୁଣିବେ ବୋଲି ଜିଦ୍ ଧରିଲେ । ପିଲାବେଳେ ଛେଳିମାଂସ ଖାଇବା କଥାରୁ ଆରମ୍ଭ କରି ଦକ୍ଷିଣ ଆଫ୍ରିକାରେ ରେଳଡବାରୁ ତଡ଼ାଖାଇବା କଥା, ବ୍ରିଟିଶ ସମ୍ରାଟ ବା ବେନିଟୋ ମୁସୋଲିନୀଙ୍କୁ ମୁହେଁ ମୁହେଁ ଅପମାନ ଦେବା ଘଟଣା ସମେତ ନୋଆଖାଲିର ରକ୍ତରଞ୍ଜିତ ପଥରେ ନିଃସଙ୍ଗ ଫକୀର ଭାବରେ ବିଚରଣ କରିବା ବିଷୟ କହିଲାବେଳେ ଯୁବକମାନେ ଏକାଗ୍ର ଚିତ୍ତରେ ଶୁଣୁଥିଲେ ।

ସେହି ମିଟିଂରେ ସଭାପତିତ୍ୱ କରିଥିବା ଯୁବକ ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ, "Two million Americans every year are hospitalised for mental and emotional break down. One million crimes are committed annually." ।

## ୨୭ ଅକ୍ଟୋବର, ପ୍ରବାସୀ ଓଡ଼ିଆମାନଙ୍କ ସହ ସାକ୍ଷାତ

ଦିନ ଥିଲା ଶନିବାର । ସକାଳେ ବିନୋଦବାବୁ ଫୋନରେ ଅନୁରୋଧ କଲେ ଯେ ସନ୍ଧ୍ୟାବେଳେ ଉଆସିଂଟନ ସହରର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଥିବା କେତୋଟି ଓଡ଼ିଆ ପରିବାର ମୋତେ ଭେଟିବା ଲାଗି ତାଙ୍କ ଘରେ ପହଞ୍ଚିବେ ଏବଂ ମୋତେ ନିଶ୍ଚୟ ଯିବାକୁ ହେବ । ମୁଁ ରାଜି ହେଲି ।

ଅପରାହ୍ନ ୨ଟାରେ ତାଙ୍କ ଗାଡ଼ିରେ ବାହାରିଗଲି । ଅରଣ୍ୟମୟ ନୂଆ ରାସ୍ତାରେ ଗଲାବେଳେ ପାଖରେ ପଡ଼ିଲା NASA ନାମକ ପ୍ରସିଦ୍ଧ ସ୍ଥାନ । ସେହି ସୁରକ୍ଷିତ ଅଞ୍ଚଳରୁ ମହାକାଶ ଅଭିମୁଖେ ଉପଗ୍ରହ ଉତ୍କ୍ଷେପଣ କରାଯାଏ ।

ସନ୍ଧ୍ୟାରେ ବିନୋଦ ଓ ବନ୍ଦିତାଙ୍କ ଘରେ ୨୫ ଜଣ ପର୍ଯ୍ୟନ୍ତ ପ୍ରବାସୀ ଓଡ଼ିଆଙ୍କ ସହିତ ଦେଖା ହେଲା । ବିଦେଶରେ ଦୀର୍ଘକାଳ ରହିଥିବା ଭାଇଭଉଣୀଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲି । ସେମାନଙ୍କ ମଧ୍ୟରେ ଥିଲେ ରବି ପଟ୍ଟନାୟକ ନାମକ ରସାୟନବିତ୍, ଦିଲୀପ ଶତପଥୀ ପାରମାଣବିକ ବୈଜ୍ଞାନିକ, ଭାରତୀୟ ଦୂତାବାସରେ କାର୍ଯ୍ୟ କରୁଥିବା ମନୀନ୍ଦ୍ର ପଣ୍ଡା ଓ ଅନ୍ୟମାନେ । ନିଜ ନିଜ କ୍ଷେତ୍ରରେ ଦକ୍ଷତା ଦେଖାଇ ସେମାନେ ଉଚ୍ଚ ପଦବୀ ପାଇପାରିଥିଲେ, ଯେଉଁ ପ୍ରକାର ସ୍ଥାନ ନିଜ ଦେଶରେ ମିଳି ନଥାନ୍ତା । ସମସ୍ତଙ୍କ ମନରେ ଗୋଟିଏ ଚିନ୍ତା ଥିବା ଅନୁଭବ କଲି, ଚାକିରି କାଳ ଶେଷରେ ନିଜ ଦେଶକୁ ଫେରି କ'ଣ କରିବେ ! ଅବଶ୍ୟ ପ୍ରଚୁର ଅର୍ଥ ଧରି ଘରକୁ ଯିବେ, କିନ୍ତୁ ତା ପରେ !

ମହିଳାମାନଙ୍କ ଚିନ୍ତା, ପୁଅ ଝିଅ ଆମେରିକାରେ ଜନ୍ମିଛନ୍ତି, ସେଠାକାର ସ୍କୁଲ କଲେଜରେ ପଢୁଛନ୍ତି, ବୟସ ବଢ଼ି ଚାଲିଛି, କିନ୍ତୁ ବିବାହ କରିବେ କେଉଁଠି ଓ କାହାକୁ ! ଆମେରିକାରେ ଚାକିରି ମିଳିବ, ତଥାପି ସବୁଦିନ ପାଇଁ ବିଦେଶରେ ରହିଯିବା ସମ୍ଭବ ନୁହେଁ । ଭାରତକୁ ଫେରି ସେମାନେ ଆୟକ୍ଷମ ହେବା କାଠିକର ପାଠ । ଜଣେ ମହିଳାଙ୍କୁ କହିଲି, "ପୁଅଝିଅମାନେ ନିଜ ନିଜ ଭବିଷ୍ୟତ ଠିକ୍ କରିନେବେ । ସ୍ୱାମୀଙ୍କ ସାଙ୍ଗରେ ଆପଣ ଏ ଦେଶରେ ଆନନ୍ଦରେ ବୁଢ଼ାକାଳ କଟାଇଦେଲେ ଭଲ ହେବ ।"

ସଙ୍ଗେ ସଙ୍ଗେ ପୁରୁଷ ଓ ମହିଳା ମିଶି ଆମେରିକା ସମାଜରେ ବୁଢ଼ାବୁଢ଼ୀମାନଙ୍କ ଶୋଚନୀୟ ଅବସ୍ଥା ବିଷୟ କହିଗଲେ । କୋଟିପତି ବା ଦରିଦ୍ର, ବୁଢ଼ାବୁଢ଼ୀଙ୍କୁ କେହି ଚାହାନ୍ତି ନାହିଁ, ସନ୍ତାନ ସନ୍ତତି ମଧ୍ୟ ପିତାମାତାଙ୍କୁ ଭୁଲିଯାନ୍ତି, ଧନୀମାନେ ଶେଷ ଜୀବନ ନାର୍ସିଂହୋମରେ କଟାନ୍ତି, ଶେଷ ଅବସ୍ଥାବେଳେ ଆତ୍ମୀୟ ସ୍ୱଜନ ଦେଖିବାକୁ ଆସନ୍ତି ନାହିଁ । ସଂକ୍ଷେପରେ, ବ୍ୟକ୍ତିକେନ୍ଦ୍ରିକ ସମାଜରେ କେହି କାହାରି ନୁହେଁ । ଅଥଚ, ଆମ ଦେଶରେ ଏହାର ବିପରୀତ ସଂସ୍କୃତି । ବୁଢ଼ାବୁଢ଼ୀଙ୍କୁ ବଞ୍ଚାଇ ରଖି ସେବା କରିବା ଲାଗି ପୁଅ, ବୋହୂ, ନାତି, ନାତୁଣୀ ଓ ଆତ୍ମୀୟମାନଙ୍କର ଆଗ୍ରହ ବଢ଼ିଥାଏ । ଜାଣିପାରିଲି, ପ୍ରବାସୀ ଓଡ଼ିଆ ବନ୍ଧୁମାନେ ଆମେରିକାରେ ଶେଷ ଜୀବନ ଯାପନ କରିବାକୁ ଚାହାନ୍ତି ନାହିଁ ।

ରୋଗବ୍ୟାଧିର ଚିକିତ୍ସା ଲାଗି ବ୍ୟୟବହୁଳ ବ୍ୟବସ୍ଥା ସମ୍ବନ୍ଧରେ ଅନେକ କଥା ଶୁଣିଲି । କେବଳ ପଥପ୍ରାନ୍ତର ନିଃସ୍ୱ, ଅସହାୟ, ନିରାଶ୍ରୟ ଓ ପରିତ୍ୟକ୍ତ ମଣିଷକୁ ସରକାରୀ ହସପିଟାଲରେ ବିନା ଖର୍ଚ୍ଚରେ ଚିକିତ୍ସା ମିଳିଥାଏ । କିନ୍ତୁ ଅନ୍ୟମାନଙ୍କୁ ସେପରି ସୁବିଧା ମିଳେ ନାହିଁ । ବୀମାର ଅଙ୍କ ଅନୁଯାୟୀ ଡାକ୍ତରମାନେ ଅର୍ଥ ଦାବି କରନ୍ତି; ବୀମା ନଥିଲେ, ଚିକିତ୍ସା ବ୍ୟୟ ତୁଲାଇବା ଅତିଶୟ କଷ୍ଟକର ହୁଏ । ପୁଞ୍ଜିବାଦୀ ଦେଶରେ ସବୁ ବ୍ୟବସାୟ ପରି ଚିକିତ୍ସା ମଧ୍ୟ ଏକ ବ୍ୟବସାୟ । ଅର୍ଥଲାଳସା ଆମେରିକୀୟମାନଙ୍କୁ ସବୁ ସ୍ତରରେ ଗ୍ରାସ କରି ରଖିଛି ।

ଆମର ଆଲୋଚନା ଚାଲିଥିଲା ବେଳେ ବନ୍ଦିତା ବିଚାରୀ ଏକାକୀ ରନ୍ଧାବଢ଼ାରେ ଲାଗିଥାନ୍ତି । ଅନେକ ପ୍ରକାର ଖାଦ୍ୟ ତିଆରି କରି ସମସ୍ତଙ୍କୁ ପରଷିଦେଲେ । ସମସ୍ତଙ୍କୁ ଧନ୍ୟବାଦ ଜଣାଇ ମଧ୍ୟରାତ୍ରିରେ ସେଠାରୁ ବିଦାୟ ନେଲି । ବିଦେଶରେ ରହିଥିବା ଓଡ଼ିଆ ବନ୍ଧୁମାନଙ୍କର ଓଡ଼ିଶା ପ୍ରତି ଗଭୀର ମମତା ଥିବା ଦେଖି ଆନନ୍ଦ ଲାଭ କଲି ।

## ୨୯ ଅକ୍ଟୋବର, ପରମାଣୁ ବୋମା ବିରୋଧୀ ଶୋଭାଯାତ୍ରା

କଂଗ୍ରେସ ଲାଇବ୍ରେରୀରେ ପଢୁଥିଲାବେଳେ ବାହାରେ ବିକ୍ଷୋଭଧ୍ୱନି ଶୁଭିଲା । ବାହାରି ଆସି ଦେଖିଲି, କଂଗ୍ରେସ ଭବନ ଦିଗକୁ ପଟୁଆର ଚାଲିଛି । ସ୍ଲୋଗାନଗୁଡ଼ିକରୁ ଜାଣିପାରିଲି, ଆଣବିକ ନୀତି ବିରୋଧରେ ଜନବିକ୍ଷୋଭ । କୌତୂହଳ ବଶତଃ, ପଛେ ପଛେ ଚାଲିଲି ।

କଂଗ୍ରେସ ଭବନ ସମ୍ମୁଖରେ ପୋଲିସ ଫୋର୍ସ ପ୍ରସ୍ତୁତ ଥାନ୍ତି । ବିକ୍ଷୋଭ ଯାତ୍ରା ପହଞ୍ଚିଲାକ୍ଷଣି ,ଆରମ୍ଭ ହେଲା ଆକ୍ରମଣ । ବିକ୍ଷୋଭକାରୀମାନଙ୍କୁ ଘୋଷାରି ନେଇ ପୋଲିସ ଭ୍ୟାନରେ ଭର୍ତ୍ତି କରାଗଲା । ମୋ ପାଖରେ ଛିଡ଼ା ହୋଇ ଜଣେ ବୃଦ୍ଧ ଆମେରିକାନ୍ ପରମାଣୁ ବୋମା ସପକ୍ଷରେ ପାଟି କରୁଥିବା ଶୁଣିଲି । ତାଙ୍କ ମତରେ ବିକ୍ଷୋଭକାରୀମାନେ ଥିଲେ ଆନ୍ତର୍ଜାତିକ କମ୍ୟୁନିଷ୍ଟ ସଂସ୍ଥାର ଦଲାଲ୍ । ତାଙ୍କର ଶେଷ ବାକ୍ୟଟି ଥିଲା, "A Super-power means superior arms. Without arms our country will neither be respected nor feared." ।

## ୩୦ ଅକ୍ଟୋବର, ପ୍ରତିନିଧି ସଭା (House of Representatives)

କଂଗ୍ରେସ ଅଧିବେଶନ ବସିଥାଏ । ଆଗରୁ ସିନେଟ ଅଧିବେଶନ ଦେଖିଥିଲି । ଆଜି ଜନପ୍ରତିନିଧି ସଭାର ଅଧିବେଶନ ଦେଖିବାକୁ ଗଲି । ମଧ୍ୟାହ୍ନ ୧୨ଟାରେ କାର୍ଯ୍ୟସୂଚୀ ଆରମ୍ଭ ହେବା ପୂର୍ବରୁ ଦର୍ଶକ ଗ୍ୟାଲେରୀରେ ବସିଗଲି । ସିନେଟ କକ୍ଷ ଅପେକ୍ଷା ଏହି କକ୍ଷର ଆକାର ବଡ଼ ଥାଏ, କାରଣ ସଭ୍ୟସଂଖ୍ୟା ୪୩୫ ।

ସଭ୍ୟମାନେ ଧୀରେ ଧୀରେ ଆସୁଥାନ୍ତି । ଆସିଲା ପରେ ଏଣେ ତେଣେ ଦଳ ଦଳ ଛିଡ଼ା ରହି କଥାବାର୍ତ୍ତା ଓ ହସକୌତୁକ କରୁଥାନ୍ତି । ଅଧ୍ୟାପକ ଆସିବା ପୂର୍ବରୁ କଲେଜ କ୍ଲାସରୁମ୍‌ର ଅବସ୍ଥା ପରି ଜଣାଯାଉଥାଏ । ବାଚସ୍ପତି ମଞ୍ଚ ଉପରକୁ ଯାଇ ଟେବୁଲ ଉପରେ କାଠ ହାତୁଡ଼ି ବାଡ଼େଇବା ସତ୍ତ୍ୱେ ସଭ୍ୟମାନେ ଶୃଙ୍ଖଳିତ ଭାବରେ ବସିରହିବା ଦେଖାଗଲା ନାହିଁ । ଅଧିକାଂଶ ସଭ୍ୟଙ୍କର ଚାଲିଚଳଣରେ ସଂଯମ ବା ଶାଳୀନତା ନଥାଏ ।

ବାଚସ୍ପତି ନାମ ଡାକିବାକୁ ଆରମ୍ଭ କଲେ । ଜଣକ ପରେ ଜଣେ ସଭ୍ୟ ମାଇକ୍ ପାଖକୁ ଯାଇ ଲିଖିତ ବକ୍ତବ୍ୟ ଅଳ୍ପ ସମୟ ପାଇଁ ପଢ଼ିଲେ । ୧୨ ଜଣ ସଭ୍ୟଙ୍କ ମଧ୍ୟରୁ କେବଳ ୨ ଜଣ ବ୍ୟକ୍ତି କାଗଜ ନ ପଢ଼ି ଭାଷଣ ଦେଲେ । ସେମାନଙ୍କ ବକ୍ତୃତାରେ ମାଧୁର୍ଯ୍ୟ ନଥାଏ । ଜଣେ କହୁଥିଲାବେଳେ

ଅନ୍ୟମାନେ ପରସ୍ପର ମଧ୍ୟରେ କଥା କହୁଥାନ୍ତି । ଗୃହ ମଧ୍ୟରେ ପାଟିତୁଣ୍ଡ ଚାଲିଥିଲାବେଳେ ଭରପୂର ଦର୍ଶକ ଗ୍ୟାଲେରୀରେ ଥାଏ ସମ୍ପୂର୍ଣ୍ଣ ନୀରବତା । ତଥାକଥିତ 'ମାଛ ବଜାର' ପରି ଜଣାଯାଉଥିବା ପ୍ରତିନିଧି ସଭା ଅଳ୍ପସମୟ ମଧ୍ୟରେ ଭାଙ୍ଗିଯିବା ଅବସ୍ଥାକୁ ଆସିଗଲା । ୧୨ଟା ୩୦ ମିନିଟ ବେଳେ ମୁଁ ଗଣିଥିଲି, ୩୦୦ରୁ ଊର୍ଦ୍ଧ୍ୱସଂଖ୍ୟକ ସଭ୍ୟ ଉପସ୍ଥିତ ଥିଲେ । ୧ଟା ୧୫ ମିନିଟରେ ଗଣିଲାବେଳକୁ ମାତ୍ର ୫୦ଜଣ ବସିଥିଲେ । ସବୁଠାରୁ ଦୁଃଖଦାୟକ ବୋଧ ହେଉଥାଏ ବାଚସ୍ପତିଙ୍କ ଆଚରଣ । ସେ କେତେବେଳେ ଛିଡ଼ା ରହୁଥିଲେ ତ କେତେବେଳେ ବସୁଥିଲେ, କଥା କହୁଥିଲେ ତ ଟେବୁଲ ଉପରେ ନଇଁପଡୁଥିଲେ । ସଂକ୍ଷେପରେ, ବ୍ରିଟିଶ ହାଉସ ଅଫ୍ କମନ୍ସ୍‌ର ବାଚସ୍ପତିଙ୍କ ଶୃଙ୍ଖଳାବୋଧର ଲେଶ୍ ମଧ୍ୟ ଏହାଙ୍କ ପାଖରେ ନଥାଏ ।

ବାହାରି ଆସିଲା ବେଳେ ଜଣେ ଆମେରିକାନ ଭଦ୍ରବ୍ୟକ୍ତିଙ୍କୁ କହିଲି, "ଆଧୁନିକ ପାର୍ଲିଆମେଣ୍ଟ ସମୂହର ଜନନୀ ରୂପେ ଖ୍ୟାତି ଲଭିଥିବା ବ୍ରିଟିଶ ପାର୍ଲିଆମେଣ୍ଟକୁ ଦେଖିଥିଲି, ଏଠାରେ ଦେଖିଲି ଆମେରିକାର ପାର୍ଲିଆମେଣ୍ଟ । ମୋ ମତରେ, ମାତା କନ୍ୟା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଛି ।"

କଥାଟିର ଅର୍ଥ ବୁଝିନେଇ ସେ ବୁଝାଇଲେ, "ଆପଣଙ୍କ ଧାରଣା ଠିକ୍ ନୁହେଁ । ଦୁଇ ଦେଶର ପାର୍ଲିଆମେଣ୍ଟ ମଧ୍ୟରେ ତୁଳନା କଲାବେଳେ, ଦୁଇ ଦେଶର ଗଣତନ୍ତ୍ର ମଧ୍ୟରେ ଥିବା ପାର୍ଥକ୍ୟ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଇଂଲଣ୍ଡର ପାର୍ଲିଆମେଣ୍ଟାରୀ ଗଣତନ୍ତ୍ରରେ ପ୍ରଧାନମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ପାର୍ଲିଆମେଣ୍ଟ ନିକଟରେ ଦାୟୀ ଓ ସେଠାରେ ଉପସ୍ଥିତ ରହିବାକୁ ବାଧ୍ୟ । ଆମେରିକାର ଗଣତନ୍ତ୍ରରେ ପ୍ରେସିଡେଣ୍ଟ ଓ ତାଙ୍କ କେବିନେଟ ପ୍ରତିନିଧି ସଭା ନିକଟରେ ଦାୟୀ ନୁହନ୍ତି ଏବଂ ତେଣୁ ଆସନ୍ତି ନାହିଁ । ଏ ଦେଶର ସରକାରଙ୍କୁ ପାର୍ଲିଆମେଣ୍ଟ କ୍ଷମତାରୁ ବାହାର କରିପାରିବ ନାହିଁ, କିନ୍ତୁ ବ୍ରିଟିଶ ସରକାରର ଭାଗ୍ୟଡୋରି ଧରିଛି ପାର୍ଲିଆମେଣ୍ଟ ।" ତାଙ୍କ କଥାରୁ ଉଭୟ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ବିଷୟ ବୁଝିନେଲି ।

ଅପରାହ୍ନରେ 'ହୁଭାର ବିଲ୍ଡିଂ' ବା FBI ଗୋଏନ୍ଦା ସଂସ୍ଥାର ମୁଖ୍ୟ କାର୍ଯ୍ୟାଳୟ ଦେଖିବାକୁ ଗଲି । ଭୟଙ୍କର ଦିଶୁଥିବା ସେହି ଅଟ୍ଟାଳିକାକୁ ଆମେରିକାର ସମସ୍ତେ ଭୟ କରନ୍ତି । ସବୁ ପ୍ରକାର ଅପରାଧ ଓ ଅବୈଧ କାର୍ଯ୍ୟର ଗୋପନ ଅନୁସନ୍ଧାନ କରୁଥିବା FBI କୁ ନେତା ଓ କୋଟିପତିମାନଙ୍କର ପ୍ରାଣମୂର୍ଚ୍ଛା ଭୟ । ନିର୍ଦ୍ଦୋଷମାନେ ମଧ୍ୟ ଗୋଏନ୍ଦା ବିଭାଗକୁ ଗଭୀର ଭାବେ ସନ୍ଦେହ କରନ୍ତି । କାରଣ, ସବୁ ପ୍ରକାର ନ୍ୟାୟ ଅନ୍ୟାୟ ପାଇଁ ଗୋଏନ୍ଦାମାନେ ସମର୍ଥ ବୋଲି ସେମାନଙ୍କ କୁଖ୍ୟାତି ରହିଛି ।

ହୁଭାର ସୌଧର ଚାରିପଟେ ବୁଲି ବୁଲି ଦେଖୁଲାବେଳେ ଜଣେ ଭଦ୍ରଲୋକ ଆତ୍ମୀୟତା ଭାବ ଦେଖାଇ ସିଗାରେଟଟିଏ ମୋ ହାତକୁ ଦେଲେ ଓ ନିଜେ ଦିଆସିଲି କାଠି ଲଗାଇଲେ । ମୁଁ କିଏ ଓ କାହିଁକି ଆସିଛି ଇତ୍ୟାଦି ପଚାରିଗଲେ । "ବହିଖଣ୍ଡିକ ଦେଖିପାରେ କି ?" କହି ମୋ ହାତରେ ଥିବା ପୁସ୍ତକଟି ଧରିନେଲେ । ପଛପଟରେ ଲେଖାଥାଏ ଲେଖକ ରୂପେ ମୋ ସମ୍ବନ୍ଧରେ ସଂକ୍ଷିପ୍ତ ଟିପ୍ପଣୀ । ଆଖି ପଡ଼ିଲାକ୍ଷଣି ଚମକିଉଠି ପଚାରିଦେଲେ, "ତା ହେଲେ ଆପଣ ସୋଭିଏତ ରୁଷିଆ ଯାଇଥିଲେ ?" ମୁହଁର ଭାବଭଙ୍ଗିରୁ ଜଣାଗଲା, ମୁଁ ଯେପରି ମହା ଅପରାଧ କରିଛି । ତତ୍‌କ୍ଷଣାତ୍ ଉତ୍ତର ଦେଲି, "ହଁ, ଅଧ୍ୟାପକ ରୂପେ ନିମନ୍ତ୍ରଣ ପାଇ ଆମେରିକା ଭ୍ରମଣରେ ଯେପରି ଆସିଛି, ଠିକ୍ ସେହିପରି ସୋଭିଏତ ଦେଶକୁ ମଧ୍ୟ ଯାଇଥିଲି ।" ଭଦ୍ରଲୋକ ଚାଲିଗଲେ । ମନେ ହେଲା, ସେ ଜଣେ ଗୋଏନ୍ଦା ଓ ମୋତେ ବୋଧହୁଏ ସୋଭିଏତ ଗୁପ୍ତଚର ବୋଲି ସନ୍ଦେହ କରିଥିବେ !

### ୨ ନଭେମ୍ବର, କଂଗ୍ରେସ ଲାଇବ୍ରେରୀରେ ଶେଷ ଦିନ

କଂଗ୍ରେସ ଲାଇବ୍ରେରୀରେ ସେଦିନ ଶେଷ ଥର ପାଇଁ ବସିଲାବେଳେ ଦୁଃଖ ହେଲା ଯେ ଆଉ କେବେ ଏହି ୭ ନମ୍ବର ଚେୟାର ଡେସ୍କ ଦେଖିପାରିବି ନାହିଁ । ଆଲୋକିତ ସେହି ସୁବିଶାଳ ପାଠାଗାରର ଛାତ, କାନ୍ଥ, ବାଲକୋନି ଓ ବହିଥାକ ପ୍ରତି ବାରମ୍ବାର ଚାହିଁ ନୈରାଶ୍ୟ ଭାବ ବୋଧ କଲି । କ୍ଷଣିକ ପାଇଁ ଆସିଥିବା ପଥିକ ପକ୍ଷରେ କୌଣସି ସ୍ଥାନ ସ୍ଥାୟୀ ନୁହେଁ । ସଂସାର ମଧ୍ୟ ଏକ ପାନ୍ଥଶାଳା । ବହିଗୁଡ଼ାକ ଫେରାଇଲାବେଳେ ବିଦାୟ ମୁହୂର୍ତ୍ତର ମନସ୍ତାପ ଅନୁଭବ କରିପାରିଲି ।

### ୪ ନଭେମ୍ବର, ଜର୍ଜ ଉଆସିଂଟନଙ୍କ ଜନ୍ମସ୍ଥାନକୁ ଯାତ୍ରା

ସେଦିନ ୧ଟା ବେଳେ ବିକ୍ରମ ତାଙ୍କ ଗାଡ଼ିରେ ନେଇଗଲେ ସହର ଠାରୁ ୧୬ ମାଇଲ ଦୂରରେ ଥିବା ମାଉଣ୍ଟ ଭାରନନ୍ ନାମକ ସ୍ଥାନକୁ । ପଟୋମାକ ନଦୀ କୂଳେ କୂଳେ ଗାଡ଼ି ଚାଲିଲା । ନଦୀର ଓସାର ବଢ଼ିଚାଲିଥାଏ । କୂଳବର୍ତ୍ତୀ ସମାନ୍ତରାଳ ରାସ୍ତା ଉପରେ ଅନେକ ଲୋକ ଦୌଡ଼ିବାରେ ଲାଗିଥାନ୍ତି । ବ୍ୟାୟାମ ହେଉଛି ସେମାନଙ୍କ ଜାତୀୟ ଅଭ୍ୟାସ ।

ମାଉଣ୍ଟ ଭାରନନ୍ ଠାରେ ଗାଡ଼ି ପହଞ୍ଚିଲା । ସ୍ଥାନଟି ପଟୋମାକ୍ ନଦୀ କୂଳରେ । ସବୁ ଦିଗରେ ସବୁଜ ଶ୍ୟାମଳ ପ୍ରାନ୍ତର । ଜର୍ଜ ଉଆସିଂଟନଙ୍କ ସେହି ପୈତୃକ ବାସଗୃହ, ଜନ୍ମସ୍ଥାନ ଓ ଅନ୍ତିମ ସମୟର ରହିବା ଘର ଦେଖିବା ଲାଗି ଦର୍ଶକମାନଙ୍କ ଲାଇନ ଲାଗିଥାଏ । ପ୍ରଥମ ସଭାପତିଙ୍କ ମୃତ୍ୟୁପରେ ସେହି ଗୃହକୁ

ତାଙ୍କର ସ୍ମୃତିଭବନ ଭାବେ ରଖା ଯାଇଛି । ଘରର ପ୍ରଥମ ତାଲା ନିର୍ମାଣ କରିଥିଲେ ଉଆସିଂଟନଙ୍କ ପିତା, ୧୭୩୦ ମସିହାରେ । ଉପର ଦୁଇ ତାଲା ନିର୍ମାଣ କରିଥିଲେ ସେ ନିଜେ । ତାଙ୍କ ସମୟର ଆସବାବପତ୍ର, ଖଟ ପଲଙ୍କ, ବାକ୍ସ ଓ ଆଲମାରୀ, ବାସନ କୁସନ ଓ ବ୍ୟବହୃତ ବିଛଣାପତ୍ର ପୂର୍ବପରି ଯଥାସ୍ଥାନରେ ରହିଛି ।

ପ୍ରକୋଷ୍ଠ ପରେ ପ୍ରକୋଷ୍ଠ ବୁଲି ଦେଖିଲି । ଯେଉଁ କୋଠରିରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ, ସେଠାକୁ ଗଲି । ବାସଗୃହର ପାଖକୁ ଲାଗିଛି 'ଉଆସିଂଟନ ମିଉଜିୟମ' । ସେଠାରେ ତାଙ୍କର ବ୍ୟବହୃତ ଅସ୍ତ୍ରଶସ୍ତ୍ର, ବନ୍ଧୁକ ଓ ସାମରିକ ପୋଷାକ ପରିଚ୍ଛଦ ରଖାଯାଇଛି ।

ଉଆସିଂଟନ ବାସଗୃହର ଦକ୍ଷିଣ ପାଖ ଦେଇ ବହିଯାଉଛି ନଦୀ । ଅପର ପାଖରେ ଦେଖାଯାଉଥାଏ ଘନ ବନାନୀ । ଯେଉଁ ସ୍ଥାନରେ ବସି ଉଆସିଂଟନ ତାଙ୍କ ଜୀବନ ସାୟାହ୍ନରେ ପ୍ରାକୃତିକ ଶୋଭା ଉପଭୋଗ କରୁଥିଲେ, ସେହି ଜାଗାରେ କିଛି ସମୟ ବସିରହିଲି । ଭାବିଲି, ଅନ୍ତିମ ସମୟରେ ଆକାଶ, ନଦୀ ଓ ଅରଣ୍ୟର ଦୃଶ୍ୟ ଦେଖି ବୃଦ୍ଧ ସେନାପତି ଜଣେ କବି ବା ଦାର୍ଶନିକର ମନୋଭାବ ଭୋଗ କରି ପାରିଥିବେ । ବୃଦ୍ଧାବସ୍ଥାରେ ସେପରି ସ୍ଥାନରେ ବାସ କରିବାକୁ କେତେ ଜଣଙ୍କୁ ବା ସୌଭାଗ୍ୟ ମିଳେ !

### ୭ ନଭେମ୍ବର, ଉଆସିଂଟନରୁ ନିଉୟର୍କ

ଦିନ ୧୦ଟା ବେଳେ କାରନଟ ହାଉସ ଛାଡ଼ିଲାବେଳେ ମନରେ କଷ୍ଟ ଅନୁଭବ କଲି । ତତ୍ତ୍ୱାବଧାରକ ଓ ପରିଚାରକମାନେ ବିଦାୟ ଦେଲାବେଳେ 'ପୁନର୍ବାର ଦେଖା ହେବ' ବୋଲି କହିଲେ, କିନ୍ତୁ ମୁଁ ଜାଣିଥିଲି, ଏପରି ସୁଯୋଗ ଆଉ ଥରେ ମିଳିବା ସମ୍ଭବ ନୁହେଁ ।

ଉଆସିଂଟନ ବିମାନ ବନ୍ଦରରୁ ୧୧ଟା ବେଳେ ବିମାନ ଛାଡ଼ିଲା । ଆକାଶକୁ ଉଠିଲାବେଳେ ଉପରୁ ଦେଖିପାରୁଥିଲି ଉଆସିଂଟନ ମନ୍ୟୁମେଣ୍ଟ, କ୍ୟାପିଟଲ, କେନେଡି ସେଣ୍ଟାର ଓ ପଟୋମାକ ନଦୀ । ଘଣ୍ଟାଏ ପରେ ନିଉୟର୍କ ସହରର ଉତ୍ତୁଙ୍ଗ ସ୍କାୟ ସ୍କ୍ରାପାରମାନ ଦୃଷ୍ଟିଗୋଚର ହେଲା । ଅବତରଣ ବେଳେ ଜଣାଯାଉଥାଏ, ଆଟଲାଣ୍ଟିକ ମହାସାଗରର ନୀଳ ଜଳରାଶିକୁ ଲାଗି ରହିଛି ଅନିର୍ଦ୍ଦିଷ୍ଟ ସୌଧରାଜିର ଧଳା କଂକ୍ରିଟ ଅରଣ୍ୟ । ମହାନଗରୀର ବହୁ ସ୍ଥାନର ଚାରିପଟେ ଘେରି ରହିଥାଏ ସମୁଦ୍ର ଜଳ । ଜଳ ଓ ସ୍ଥଳ ମଧ୍ୟରେ ଝୁଲି ରହିଥାଏ ସୁଦୀର୍ଘ ସେତୁ ।

ବିମାନଘାଟିରୁ ବାସ୍ ଯୋଗେ ସହରର କେନ୍ଦ୍ରାଞ୍ଚଳକୁ ଚାଲିଲି । ସଂକୀର୍ଣ୍ଣ ରାସ୍ତାର ଦୁଇ ପାଖରେ ଛିଡ଼ା ରହିଛି ଆକାଶଚୁମ୍ବୀ ଅଟ୍ଟାଳିକା । ଫୁଟ୍‌ପାଥଗୁଡ଼ିକ ଜନାକୀର୍ଣ୍ଣ । ଯୁକ୍ତରାଷ୍ଟ୍ରର ସର୍ବବୃହତ ଓ ସର୍ବାଧିକ ଜନବହୁଳ ନଗର ଭାବରେ ନିଉୟର୍କର ଖ୍ୟାତି ଜଣାଥାଏ । ମନକୁ ଦୁଃଖ ଆସିଲା, ଗୋଟିଏ ସୁନ୍ଦର ସ୍ଥାନରୁ ଏପରି କଦର୍ଯ୍ୟ ସହରକୁ କାହିଁକି ଆସିଲି !

ଜନଗହଳି ବାସ୍ ଷ୍ଟାଣ୍ଡରେ ପହଞ୍ଚିଲାକ୍ଷଣି, କୃଷ୍ଣକାୟ ଟ୍ୟାକ୍ସିବାଲାମାନେ ଘେରିଗଲେ । ଜଣେ ମୋ ସୁଟକେଶ୍‌ଟି ଗୋଟିଏ ଟ୍ୟାକ୍ସିରେ ଭର୍ତ୍ତି କରିବା ଦେଖି, ଅନ୍ୟ ସୁଟ୍‌କେଶଟି ହାତରେ ଧରି ସେଠାକୁ ଦୌଡ଼ିଲି । ୪୭ ନମ୍ବର ଷ୍ଟ୍ରିଟ୍‌ରେ Y.M.C.A. ଠାକୁ ଯିବି ବୋଲି ଜଣାଇଲି । ଗନ୍ତବ୍ୟ ଦିଗରେ ଗାଡ଼ି ଚାଲିଥିବା ବେଳେ ଗୋଟିଏ ସ୍ଥାନରେ ବହୁତ ଗୁଡ଼ିଏ ପତାକା ଉଡୁଥିବା ଦେଖିଲି । ଡ୍ରାଇଭରକୁ ପଚାରି ବୁଝିଲି, ମିଳିତ ଜାତି ସଂଗଠନର କାର୍ଯ୍ୟାଳୟ (United Nations) । ସେଠାକାର ଲାଇବ୍ରେରୀରେ ପଢ଼ାପଢ଼ି କରିବା ଦୃଷ୍ଟିରୁ ମୋ ରହିବା ସ୍ଥାନ ପାଖାପାଖି ଅଞ୍ଚଳରେ ବ୍ୟବସ୍ଥା କରାଯାଇଛି ବୋଲି ଜାଣିପାରିଲି ।

## ୭ ନଭେମ୍ବର : ଅପରାହ୍ନର ଅନୁଭୂତି, 'ହରେକୃଷ୍ଣ କେନ୍ଦ୍ର'

Y.M.C.A. ଭବନରେ ଷଷ୍ଠ ତାଲାରେ ମୋତେ ମିଳିଥିବା କୋଠରିରେ ପଶିଯାଇ ଚମକିଉଠିଲି । ୬୨୯ ନମ୍ବର କୋଠରି, ଶୋଇବା ଖଟଠାରୁ ଆକାରରେ ଅଳ୍ପ ଟିକିଏ ବଡ଼ । ଅନ୍ଧାରିଆ କରିଡରର ଦୁଇ ପାଖରେ ଛୋଟ ଛୋଟ ଅନେକ ଗୁଡ଼ିଏ ରୁମ୍ । ଦୂରରେ କମନ୍ ବାଥରୁମ୍ । ୧୨ତାଲା ବିଶିଷ୍ଟ କୋଠାରେ ଥିବା ସବୁ ରୁମ୍‌ରେ ଲୋକ ଥାନ୍ତି । କୃଷ୍ଣାଙ୍ଗ, ପୀତାଙ୍ଗ ଓ ଶ୍ୱେତାଙ୍ଗ, ସବୁ ଜାତୀୟ ମନୁଷ୍ୟର ମିଳନ ସ୍ଥଳ । ଇଉରୋପ, ଏସିଆ, ଆମେରିକା ଓ ଆଫ୍ରିକାର ବିଭିନ୍ନ ଦେଶର ବୃଦ୍ଧ, ପ୍ରୌଢ଼ ଓ ଯୁବକମାନଙ୍କର ସାମୟିକ ରହିବା ସ୍ଥାନ ହେଉଛି Y.M.C.A. । ସହସ୍ରାଧିକ ଅତିଥିଙ୍କୁ ନେଇ କୋଠାଟି ଥାଏ ଆନ୍ତର୍ଜାତିକ ବଜାର ସଦୃଶ ଏକ ବିଚିତ୍ର ସ୍ଥାନ । ସେଠାରେ ମାସେ ସମୟ ରହିବା ଅସମ୍ଭବ ବୋଧ ହେଲା ।

ଆଗରୁ ଜାଣିଥିଲି, ନିଉୟର୍କ ସହରର ୫୫ ନମ୍ବର ପଶ୍ଚିମ ରାସ୍ତାରେ ଆନ୍ତର୍ଜାତିକ କୃଷ୍ଣ ଚେତନା ସମିତିର ମୁଖ୍ୟ କାର୍ଯ୍ୟାଳୟ ରହିଛି ଓ ସେଠାରେ ଅତିଥିମାନଙ୍କ ରହିବା ସୁବିଧା ଥାଏ । ଜିନିଷପତ୍ର ରୁମ୍‌ରେ ରଖିଦେଇ 'ହରେକୃଷ୍ଣ କେନ୍ଦ୍ର'କୁ ଚାଲିଲି । ନିଉୟର୍କ ସହରର ରାସ୍ତାମାନ ପୂର୍ବ ପଶ୍ଚିମ ଓ ଉତ୍ତର ଦକ୍ଷିଣ ଦିଗକୁ ନମ୍ବର ଅନୁସାରେ ସିଧାସଳଖ ରହିଥିବା ଯୋଗୁଁ କୌଣସି ଘର ଖୋଜିବା କଷ୍ଟକର ନୁହେଁ ।

୪୭ ନମ୍ବର ରାସ୍ତାରୁ ଅଙ୍କ ଅନୁସାରେ ରାସ୍ତା ପରେ ରାସ୍ତା ଅତିକ୍ରମ କରି ୫୫ ନମ୍ବର ରାସ୍ତାରେ ପହଞ୍ଚିଲି । ଚାରି ମାଇଲ ବାଟ ଚାଲି ଚାଲି ଯିବାକୁ ଦୁଇ ଘଣ୍ଟା ଲାଗିଲା । ସଂକୀର୍ଣ୍ଣ ରାସ୍ତାର ଉଭୟ ପାଖରେ ନାଇଟ୍ କ୍ଲବ ଓ ମଦ ଦୋକାନ ଦେଖି ଭାବିପାରିଲି ନାହିଁ, ଏପରି ଅପବିତ୍ର ଇଲାକାରେ ପବିତ୍ର କୃଷ୍ଣ ଚେତନା କେନ୍ଦ୍ର ସ୍ଥାପିତ ହେଲା କିପରି ! କେତେକ କ୍ଲବ ଭିତରେ ପୁଣି ନଗ୍ନ ନୃତ୍ୟ ଚାଲିଥାଏ । ସେ ଯାହା ହେଉ, ନିର୍ଦ୍ଦିଷ୍ଟ ଅଟ୍ଟାଳିକା ଆଗରେ ବଡ଼ ବଡ଼ ଅକ୍ଷରରେ କେନ୍ଦ୍ରର ନାମ ଲେଖାଥାଏ ଓ ତଳେ ଲେଖାଥାଏ ନିର୍ଦ୍ଦେଶନାମା, ଯଥା– ଚମଡ଼ା ଜୋତା ନିଷେଧ, ଧୂମପାନ ନିଷିଦ୍ଧ, ଇତ୍ୟାଦି । ସମୟ ୫ଟା । ବାହାରେ ଜୋତା କାଢ଼ି ଭିତରକୁ ପଶିଲି । ଶ୍ୱେତାଙ୍ଗ କୃଷ୍ଣଭକ୍ତ ନରନାରୀ ଓ ବାଳକବାଳିକାମାନଙ୍କୁ ଭାରତୀୟ ବୈଷ୍ଣବ ବେଶରେ ବୁଲୁଥିବା ଦେଖିଲି । ମହିଳାମାନେ ପିନ୍ଧିଥାନ୍ତି ଧଳା କିମ୍ବା ହଳଦିଆ ରଙ୍ଗର ଶାଢ଼ି । ସମସ୍ତଙ୍କ ଗଳାରେ ତୁଳସୀମାଳ ଓ ହାତରେ ମାଳ ଝୁଲା ।

ଜଣେ ବୟସ୍କ ବୈଷ୍ଣବ 'ହରେକୃଷ୍ଣ' ଶବ୍ଦ ସହ ନମସ୍କାର ଜଣାଇ ମୋତେ ଭିତରକୁ ନେଇଗଲେ । ଗୋଟିଏ କକ୍ଷରେ ବୈଷ୍ଣବୀମାନେ କୃଷ୍ଣଚେତନା ସମ୍ବନ୍ଧୀୟ ପୁସ୍ତକ ପୁସ୍ତିକା, ତୁଳସୀ ମାଳ, ତିଳକ ଓ ରାଧାକୃଷ୍ଣ ଛବି ବିକ୍ରି କରୁଥାନ୍ତି । କାନ୍ଥରେ ଝୁଲୁଥାଏ ଜଗନ୍ନାଥ ଓ ଶ୍ରୀଚୈତନ୍ୟଙ୍କ ପ୍ରକାଣ୍ଡ ପ୍ରକାଣ୍ଡ ଚିତ୍ର ।

ଅଳ୍ପ ସମୟ ମଧ୍ୟରେ ପାର୍ଶ୍ୱବର୍ତ୍ତୀ ହଲ ଭିତରେ ଭକ୍ତିସଂଗୀତର ମୂର୍ଚ୍ଛନା ଶୁଭିଲା । ସେଠାରେ ଯାଇ ବସିଲି । କେତେଗୁଡ଼ିଏ କୀର୍ତ୍ତନ ରେକର୍ଡ଼ ବାଜିଲା । ଭକ୍ତମାନେ ମେଜିଆ ଉପରେ ବସି ରାଧାକୃଷ୍ଣଙ୍କ ମର୍ମର ମୂର୍ତ୍ତି ଦିଗକୁ ଚାହିଁ ରହିଥାନ୍ତି । ସେପରି ରମଣୀୟ ମୂର୍ତ୍ତି ଏଥିପୂର୍ବେ ଦେଖି ନଥିଲି । ସନ୍ଧ୍ୟାଳତି ଓ ପ୍ରାର୍ଥନା ପରେ, ଠିକ୍ ଭାରତୀୟ ପ୍ରସାଦ, ଯଥା ଚୁଡ଼ା, ସୁଜି ଓ ମିଷ୍ଟାନ୍ନ ବଣ୍ଟନ କରାଗଲା । ପୁରୀଦାସ ଅଧିକାରୀ ନାମଧାରଣ କରିଥିବା ଜଣେ ଆମେରିକୀୟ ବୈଷ୍ଣବ ଦଶମ ତାଲାରେ ଥିବା କୋଠରିଗୁଡ଼ିକ ଦେଖାଇବା ପାଇଁ ମୋତେ ନେଇଗଲେ । ଛୋଟ ହେଲେ ସୁଦ୍ଧା Y.M.C.A. ରୁମ୍‌ଠାରୁ ବଡ଼ । ସେଠାରେ ରହିବା ଇଚ୍ଛା ଜଣାଇଲା କ୍ଷଣି ସେ କହିଦେଲେ ଯେ, ଆଶ୍ରମର ସମୟ ଶୃଙ୍ଖଳା ରକ୍ଷା କରିବା ସାଙ୍ଗକୁ ପ୍ରାର୍ଥନା ଓ ପୂଜା ବେଳେ ଉପସ୍ଥିତ ରହିବାକୁ ହେବ । ଏ ସବୁ ପ୍ରତି ଆଗ୍ରହ ଥିବା ସତ୍ତ୍ୱେ ସେତେ ଦୂରରେ ରହି ଜାତିସଂଘ ଲାଇବ୍ରେରୀକୁ ଯିବା ଆସିବା କଷ୍ଟକର ହେବ ଜାଣି, ରହିବି ନାହିଁ କହି ବିଦାୟ ନେଲି ।

ରାତି ୯ଟାରେ Y.M.C.A. ହଷ୍ଟେଲରେ ପହଞ୍ଚିଲି । ଡାଇନିଂ ହଲରେ ନିଜ ନିଜ ଇଚ୍ଛାରେ ଖାଦ୍ୟ ବାଛି ନେବାର ସୁବିଧା ଥାଏ । କେବଳ କ୍ଷୁଦ୍ର କୋଠରିରେ

ମାସଟିଏ କିପରି କଟିବ ତାହାହିଁ ଥାଏ ଚିନ୍ତା । ରାତିରେ ନିଦ ହେଲା ନାହିଁ । ମନେ ପଡୁଥାଏ କାରନଟ ହାଉସର ଶୟନ କକ୍ଷ ଓ କୋମଳ ଶଯ୍ୟା । ସବୁ ଦିନ ବା ସବୁ ରାତି ସମାନ ଯାଏ ନା, ଏହା ହିଁ ଥାଏ ସାନ୍ତ୍ୱନା ।

## ୮ ନଭେମ୍ବର :'ମିଳିତ ଜାତି'ର କାର୍ଯ୍ୟାଳୟ

ରହିବା ସ୍ଥାନର ଅଳ୍ପ ଦୂରରେ ଥାଏ ମିଳିତ ଜାତିର କାର୍ଯ୍ୟାଳୟ । ଦକ୍ଷିଣ ଦିଗରେ ଥିବା ଜଳରାଶି ନିକଟରେ ଦଣ୍ଡାୟମାନ ରହିଛି ନଭଶ୍ଚୁମ୍ବୀ ଅଟ୍ଟାଳିକା । ସୌଧର ସୌନ୍ଦର୍ଯ୍ୟ ମନୋମୁଗ୍ଧକର ଥିଲେ ମଧ୍ୟ ସ୍ଥାନଟି ବିଶେଷ ଆକର୍ଷଣୀୟ ନଥାଏ । କାରଣ, ପ୍ରାଚୀର ବାହାରେ ଥାଏ ବଡ଼ ବଡ଼ ପଞ୍ଚତାରକା ହୋଟେଲ, ଦୋକାନ ଘର ଓ ଜନାକୀର୍ଣ୍ଣ ବ୍ୟବସାୟ କେନ୍ଦ୍ର । ବିଶ୍ୱ-ରାଜଧାନୀ ରୂପେ ପରିଚିତ ଭୂମିଖଣ୍ଡିକ ଯଦି ଶାନ୍ତ ପ୍ରାକୃତିକ ପରିବେଶ ମଧ୍ୟରେ ରହିଥାନ୍ତା, ତେବେ ତାହାର ମର୍ଯ୍ୟାଦା ବଢ଼ିଥାନ୍ତା ବୋଲି ଧାରଣା ହେଲା ।

ମୁଖ୍ୟ ସୌଧର ପ୍ରବେଶ ଦ୍ୱାରରେ ପହଞ୍ଚିଲି । ତଳକୁ ଯାଇଥିବା ପାହାଚ ପଥରେ ଅନେକ ଲୋକ ଯାଉଥିବା ଦେଖି ମୁଁ ମଧ୍ୟ ଚାଲିଲି । ମସ୍ତ ବଡ଼ ହଲ ଭିତରେ ବିଭିନ୍ନ ଦେଶର ହସ୍ତଶିଳ୍ପ ସ୍ମାରକ ଚିହ୍ନ ରୂପେ ବିକ୍ରି ହେଉଥାଏ । ଭାରତୀୟ ସାମଗ୍ରୀ ଭିତରେ ହାତୀଦାନ୍ତ ଓ ବିବିଧ ଧାତୁର କାରୁକାର୍ଯ୍ୟମଣ୍ଡିତ ଜିନିଷ ଦେଖିଲି । ଉପରକୁ ଆସିଲାବେଳକୁ ୧୦ଟା ବାଜିଥାଏ । ହଠାତ୍ ପଛରୁ ପ୍ରଶ୍ନ ଶୁଣିଲି "ଆପଣ ଭାରତରୁ ଆସିଛନ୍ତି ?" "ହଁ" କହି ତାଙ୍କୁ ଚାହିଁଲି । UN ପୋଷାକ ପିନ୍ଧିଥିବା ଯୁବକ ନିଜର ପରିଚୟ ଦେଲେ, "ମୋର ନାମ ଟମାସ୍ । କେରଳର ଲୋକ । ଏଠାରେ ନିରାପତ୍ତା କର୍ମଚାରୀ ଭାବେ କାମ କରୁଛି । ଏଥିପୂର୍ବେ, ଭାରତୀୟ ବିମାନ ବାହିନୀରେ ନିଯୁକ୍ତ ଥିଲି ।" ତାଙ୍କ ପାଖରୁ ଅନେକ କଥା ଶୁଣିଲି । ପ୍ରତିଦିନ ସେଠାକୁ ହାରାହାରି ୭ ହଜାର ଦର୍ଶକ ଆସିଥାନ୍ତି ଓ ଗ୍ରୀଷ୍ମ ଋତୁରେ ସଂଖ୍ୟା ହୁଏ ହାରାହାରି ୨୫ ହଜାର ।

ଜେନେରାଲ ଏସେମ୍ବ୍ଲିର ଅଧିବେଶନ ଦେଖିବା ଲାଗି ଟମାସ ଅନୁମତିପତ୍ର ଆଣିଦେଲେ । ଦର୍ଶକ ଗ୍ୟାଲେରୀରେ ଯାଇ ବସିଲି । ବିଭିନ୍ନ ଦେଶର ପ୍ରତିନିଧି ଦଳ ଆସିଗଲେ । ସାଢ଼େ ୧୦ଟାରେ ଅଧିବେଶନ ଆରମ୍ଭ ହେଲା । ଆଲୋଚ୍ୟ ବିଷୟ ଥାଏ 'ଦକ୍ଷିଣ ଆଫ୍ରିକା ଓ ଆପାରଥେଡ୍ (ବର୍ଣ୍ଣ ବିଭେଦ)' । ଦେଶ ପରେ ଦେଶର ନାମ ଡକାଗଲା । ନାଇଜେରିଆ, ରୋମାନିଆ, ନେପାଳ, ଚେକୋସ୍ଲୋଭାକିଆ ଓ ଅନ୍ୟ କେତେକ ରାଷ୍ଟ୍ରର ପ୍ରତିନିଧିମାନେ ଜଣକ ପରେ ଜଣେ ଲିଖିତ ଭାଷଣ ପାଠ କଲେ । ସନ୍ଦେହ ନଥାଏ ଯେ, ବର୍ଷ ପରେ ବର୍ଷ ସେହି ଏକା କଥା, ଏକା ବାକ୍ୟ ଓ ଏକା ଶବ୍ଦ ପଢ଼ା ଯାଉଥିବା

ସତ୍ତ୍ୱେ ଦକ୍ଷିଣ ଆଫ୍ରିକାର ଶ୍ୱେତାଙ୍ଗ ସରକାର କୃଷ୍ଣାଙ୍ଗ ଅଧିବାସୀମାନଙ୍କୁ କୌଣସି ଅଧିକାର ନ ଦେଇ ବର୍ଣ୍ଣବୈଷମ୍ୟ ନୀତି ବଜାୟ ରଖିଥାନ୍ତି । ବକ୍ତାମାନଙ୍କ ଭାଷଣରେ କିଛି ନୂଆ ବା ଆକର୍ଷଣୀୟ ବିଷୟ ନ ଥିଲା । ଦେଖି ଆଶ୍ଚର୍ଯ୍ୟ ହେଲି, ଭାଷଣ ଚାଲିଥିଲା ସମୟରେ ପ୍ରତିନିଧିମାନେ ବାହାରକୁ ଚାଲି ଯାଉଥାନ୍ତି, ଫେରି ଆସୁଥାନ୍ତି, କଥାବାର୍ତ୍ତା କରୁଥାନ୍ତି କିମ୍ବା ଖବର କାଗଜ ପଢୁଥାନ୍ତି । ଦର୍ଶକ ଗ୍ୟାଲେରୀରେ ଶ୍ରୋତାମାନଙ୍କ ଚେୟାରରେ ଇୟାର-ଫୋନ ଲାଗିଥାଏ । ରୋମାନିଆ ପ୍ରତିନିଧିଙ୍କ ଭାଷଣ ବେଳେ ଇଂରାଜୀ ଅନୁବାଦ ଶୁଣିବା ଲାଗି ମୁଁ କାନରେ ଇୟାର-ଫୋନ ଲଗାଇଲି । ବକ୍ତବ୍ୟ ଶୁଣି ଶୁଣି ଧୈର୍ଯ୍ୟଚ୍ୟୁତି ଘଟିଲା । ଦିନ ୧ ଟା ବେଳେ ବାହାରି ଆସିଲି ।

## ୯ ନେଭେମ୍ବର : ଏକ ରହସ୍ୟମୟ ଅନୁଭୂତି

ସନ୍ଧ୍ୟାବେଳେ କମନ ରୁମରେ ଜଣେ ଭାରତୀୟଙ୍କୁ ଭେଟିଲି । ନାମ ଡାକ୍ତର ପ୍ରମୋଦ କୁମାର । ଦିଲ୍ଲୀର ବାସିନ୍ଦା, କିନ୍ତୁ ଦନ୍ତ ଚିକିତ୍ସକ ଭାବେ ୧୩ ବର୍ଷ ନାଇଜେରିଆରେ ଚାକିରି କଲେଣି । ଦୁଃଖ ପ୍ରକାଶ କରି କହିଲେ, ‘‘ବୁଢ଼ା ବାପା ମା ଓ ସ୍ତ୍ରୀ ପିଲା ଦିଲ୍ଲୀରେ ଅଛନ୍ତି । ନିଜ ଦେଶରେ ଚାକିରି ନ ପାଇ ନାଇଜେରିଆରେ ଚାକିରି କରୁଛି । ବର୍ଷକୁ ଥରେ ମାତ୍ର ସେମାନଙ୍କୁ ଦେଖିବାକୁ ଯାଏଁ । ଆଉ ଦୁଇଟି ବର୍ଷ ପରେ ଚାକିରିରୁ ଅବ୍ୟାହତି ମିଳିବ । ତା ପରେ ଦେଶକୁ ଫେରିବି । ଘରଦ୍ୱାର ଛାଡ଼ି ବିଦେଶରେ କଷ୍ଟ ପାଇଲେ ସୁଦ୍ଧା, ଯେତିକି ଟଙ୍କା ଆୟ କରିଥିବି, ସେଥିରେ ପରିବାର ସାଙ୍ଗରେ ସାରା ଜୀବନ ଆରାମରେ ରହିବି ।’’ ନିଉୟର୍କରେ ହେଉଥିବା ଦନ୍ତରୋଗ ବିଶେଷଜ୍ଞ ସମ୍ମେଳନରେ ଯୋଗ ଦେବାକୁ ଆସିଥାନ୍ତି ।

ସାଙ୍ଗରେ ବୁଲିବା ପାଇଁ ବାହାରି ଗଲୁଁ । ସହର ସମ୍ବନ୍ଧରେ ତାଙ୍କର ଅଭିଜ୍ଞତା ଥାଏ । ଗ୍ର୍ୟାଣ୍ଡ ଷ୍ଟେସନ କେନ୍ଦ୍ର ଓ ଟାଇମସ୍ ଛକ ଦେଖିବାକୁ ଅନେକ ସମୟ ଲାଗିଲା । ସେହି ଅଞ୍ଚଳରେ ଥାଏ ଅପେରା, ଥିଏଟାର ଓ ସିନେମା ହଲ । ଗୋଟିଏ ଇଟାଲୀୟ ରେଷ୍ଟୁରାଁରେ ଖାଇବାକୁ ବସିଲୁଁ । ପ୍ରମୋଦବାବୁ ‘ପିଜା’ ନାମକ ଖାଦ୍ୟ ମଗାଇଲେ । ଆଗରୁ କେବେ ଖାଇ ନଥିଲି, କିନ୍ତୁ ସ୍ୱାଦ ଉପଭୋଗ କଲାପରେ ପ୍ରତିଦିନ ଖାଇବି ବୋଲି ଠିକ୍ କଲି । ଇଟାଲୀୟ ପିଜା ପୃଥିବୀର ଖାଦ୍ୟ ବଜାର ଦଖଲ କଲାଣି ବୋଲି ଶୁଣିଲି । ମଇଦା, ମାଖନ, ଟମାଟୋ ଓ ଛତୁରେ ତିଆରି ଭଜା ପରଟା ପରି ଦିଶୁଥିବା ଖାଦ୍ୟ ଯେପରି ଶସ୍ତା, ସେହିପରି ରୁଚିକର ।

ରାତି ୯ଟା ବାଜିଯାଇଥାଏ । ଶୀତର ପ୍ରକୋପ ବଢ଼ିଉଠୁଥାଏ । କଥାବାର୍ତ୍ତା କରି ଦୁହେଁ ଚାଲିଥାଉଁ । ଗୋଟିଏ ଅନ୍ଧାରିଆ କୋଣରୁ ଦୁଇଜଣ କୃଷ୍ଣକାୟ ତରୁଣୀ ହଠାତ୍ ବାହାରିପଡ଼ି ଆମ ଆଗରେ ଛିଡ଼ା ହୋଇପଡ଼ିଲେ । ସ୍ମିତହାସ୍ୟ ସହ 'ହ୍ୟାଲୋ' ଶବ୍ଦଟି ଉଚ୍ଚାରଣ କରି ଜଣେ କହିଲେ, "You are two, we are two. You should offer drinks to us." ପ୍ରମୋଦକୁମାର ସହାସ୍ୟ ବଦନରେ ଉତ୍ତର ଦେଲେ, "Of course, of course. Night is cold. We must enjoy drinks together. Let my friend run and bring his purse from that hotel." ସେଥି ସଙ୍ଗେ ହିନ୍ଦୀରେ ମୋତେ ନିର୍ଦ୍ଦେଶ ଦେଲେ, "ଆପ୍ ଆଗେ ଯାଇୟେ ।"

ମୁଁ ଚଞ୍ଚଳ ଗତିରେ ଆଗେଇଗଲି । ଦୂରରୁ ଚାହିଁ ଦେଖିଲି, ପ୍ରାମୋଦବାବୁ ରାସ୍ତାର ଅପର ପାଖରେ ଥିବା ମଦ ପିଇବା ଘରକୁ ସେମାନଙ୍କୁ ହାତ ଧରି ନେଇ ଯାଉଛନ୍ତି । ସୌଜନ୍ୟମୂଳକ ଅଭିନୟ ସହ ପଶିବା ବାଟର ପଟେ କବାଟ ବାହାରକୁ ଟାଣି ରଖି ଦୁଇ ଯୁବତୀଙ୍କୁ ପ୍ରଥମେ ପ୍ରବେଶ କରିବାକୁ କହି ନିଜେ ପଶିବା ପାଇଁ ଗୋଟାଏ ଗୋଡ଼ ପୂରଣ କରୁଥିବା ଦେଖିଲି । ପରମୂହୂର୍ତ୍ତରେ କବାଟଟି ଛାଡ଼ିଦେଇ ଏକା ନିଶ୍ୱାସକେ ଦୌଡ଼ି ଦୌଡ଼ି ମୋ ଆଗରେ ହାଜର ହୋଇ କହିଲେ, "ସୁନ୍ଦରୀମାନେ ଏବେ ବି ଭାବୁଥିବେ, ଆମେ ସେମାନଙ୍କ ଫାଶରେ ପଡ଼ିଯାଇଛୁଁ । ବୋତଲ ମଗାଇ ଅପେକ୍ଷା କରିଥିବେ ।"

ନିଉୟର୍କ ପରି ସହରରେ ସାମାଜିକ ବ୍ୟଭିଚାର ବିଷୟ ଉତ୍ଥାପନ କରି ପ୍ରମୋଦବାବୁ କହିଲେ, "କୃଷ୍ଣାଙ୍ଗୀମାନଙ୍କ ଫାଶ ଅପେକ୍ଷା ଶ୍ୱେତାଙ୍ଗୀମାନଙ୍କ ଜାଲ ବେଶି ସାଂଘାତିକ । ସେମାନେ କ୍ଲବ ଭିତରକୁ ଡାକିନେଇ ସର୍ବସ୍ୱାନ୍ତ କରିବା କୌଶଳ ପ୍ରୟୋଗ କରନ୍ତି ।"

### ୧୦ ନଭେମ୍ବର: ଉତ୍ତେଜନାମୂଳକ ପରିସ୍ଥିତି

ସେ ଦିନ ଶନିବାର । ୧୦ଟା ବାଜିଥାଏ । ମିଳିତ ଜାତି ଲାଇବ୍ରେରୀ ଦିଗକୁ ଗଲାବେଳେ ଦଳ ଦଳ ଉତ୍ତ୍ୟକ୍ତ ଆମେରିକାନ ଏଣେତେଣେ କଥାବାର୍ତ୍ତା କରୁଥିବା ଦେଖାଗଲା । କାରଣ ଜଣାପଡ଼ିଲା, ଇରାନ ଦେଶର ବିତାଡ଼ିତ ରାଜା ନିଉୟର୍କ ହସପିଟାଲରେ ଭର୍ତ୍ତି ହୋଇଥିବା ଘଟଣାର ପ୍ରତିବାଦରେ ଇରାନ ରାଜଧାନୀ ତେହେରାନ ଠାରେ ଥିବା ଆମେରିକୀୟ ଦୂତାବାସ ଉପରେ ଆକ୍ରମଣପୂର୍ବକ ସେଠାକାର ମୌଳବାଦୀ ମୁସଲମାନମାନେ ଦୂତାବାସର ୬୬ ଜଣ କର୍ମଚାରୀଙ୍କୁ ବନ୍ଦୀ କରି ରଖିଛନ୍ତି । ପଥପ୍ରାନ୍ତର ଏକ ମିଟିଂରେ ଜଣେ ବକ୍ତା ପାଟିକଲେ, "ପରମାଣୁ ବୋମାର ଧମକ ଦେଲେ, ଆୟାତୋଲ୍ଲା ଖୋମେନିର ଚେତା ପଶିବ ।" ଆଉ ଜଣେ କହିଲେ, "ତଦ୍ୱାରା ଧର୍ମାନ୍ଧ ମୂର୍ଖମାନେ ବନ୍ଦୀମାନଙ୍କୁ ହତ୍ୟା କରିବେ ।" ତର୍କ

ବିତର୍କର ଶେଷ ନଥାଏ । ଉତ୍ତ୍ୟକ୍ତ ଯୁବକମାନେ ଧମକ ଦେଲେ, "ଆମେରିକାରେ ପଢୁଥିବା ଇରାନୀୟ ଛାତ୍ରମାନଙ୍କୁ ବନ୍ଦୀ କରି ରଖିଲେ, ପଣବନ୍ଦୀମାନଙ୍କୁ ମୁକ୍ତି ମିଳିବ ।"

ସେଦିନର ସଂବାଦପତ୍ରଗୁଡ଼ିକରେ ସେହି ଗୋଟିଏ ସଂବାଦ । ମିଶର ରାଷ୍ଟ୍ରପତି ଆନଓଆର ସାଦତଙ୍କ ଉକ୍ତି ବାହାରିଥାଏ, "ଆୟାତୋଲ୍ଲା ଖୋମେନି ଜଣେ ଉନ୍ମାଦଗ୍ରସ୍ତ ବ୍ୟକ୍ତି (lunatic) ।"

## ୧୧ ନଭେମ୍ବର : ଆମେରିକାର ସର୍ବୋଚ୍ଚ ସୌଧ ଆରୋହଣ

ରବିବାର ଥିବା ଯୋଗୁଁ ଚାଲିଲି ଯୁକ୍ତରାଷ୍ଟ୍ରର ସର୍ବାଧିକ ଉଚ୍ଚ ସୌଧ Empire State Building ଦେଖିବାକୁ । ପୃଥିବୀର ସେହି ଉଚ୍ଚତମ ମାନମନ୍ଦିରର ୧୦୨ ତାଲା ଉପରକୁ ଲିଫ୍ଟ୍ ଯୋଗେ ଉଠିଲି । ଉଚ୍ଚତା ୧,୪୭୨ ଫୁଟ୍ ବା ୪୪୮ ମିଟାର । ନିଉୟର୍କ ସହରର ସବୁ ଦିଗ ପର୍ଯ୍ୟନ୍ତ ଆଖି ପଡୁଥାଏ । ରାସ୍ତାରେ ଚାଲିଥିବା ଗାଡ଼ିଗୁଡ଼ିକ ଛୋଟ ଛୋଟ ଖେଳନା ଗାଡ଼ି ପରି ଦିଶୁଥାଏ ।

## ୧୩ ନଭେମ୍ବର : UN ବିଲ୍ଡିଂ

ଦଳେ ପର୍ଯ୍ୟଟକଙ୍କ ସାଙ୍ଗରେ ମିଳିତ ଜାତିର ବିଭିନ୍ନ ବିଭାଗ ଦେଖିବାକୁ ୨ ଡଲାର ମୂଲ୍ୟର ଟିକଟ କିଣି ଭିତରକୁ ପଶିଲି । ଗାଇଡ୍ ପ୍ରଥମେ ଦେଖାଇଲେ ପ୍ରଶସ୍ତ କାନ୍ଥ ଗାତ୍ରରେ ଶୋଭାପାଉଥିବା ବିଶ୍ୱବିଖ୍ୟାତ ଚିତ୍ରଶିଳ୍ପୀମାନଙ୍କ ଅଙ୍କିତ ଚିତ୍ରପଟମାନ । ତା ପରେ ପଡ଼ିଲା, ପୂର୍ବତନ ସେକ୍ରେଟାରୀ-ଜେନେରାଲ, ଯଥା— ଟ୍ରିଗ୍‌ଭେ ଲି, ଡ୍ୟାଗ୍ ହାମାରସୋଲଡ୍, ଇଉ ଥାଣ୍ଟ ଓ କାର୍ଟ ଉଇଲଡ୍‌ହାମଙ୍କ ତୈଳଚିତ୍ର ।

ଗାଇଡ୍ ନେଇଗଲେ ଜେନେରାଲ ଏସେମ୍ବ୍ଲି ଓ ନିରାପତ୍ତା ପରିଷଦର କକ୍ଷକୁ । ସେଠାରୁ ନେଇଗଲେ ମୁଖ୍ୟ ଅଟ୍ଟାଳିକାକୁ ଲାଗିଥିବା ୩୯ ତାଲା ବିଶିଷ୍ଟ ସଚିବାଳୟ ଭିତରକୁ । ୩୮ ତାଲାରେ ରହିଛି ସେକ୍ରେଟାରୀ-ଜେନେରାଲଙ୍କ ଅଫିସ କକ୍ଷ । ଗୋଟିଏ ହଲ ମଧ୍ୟରେ ରହିଛି ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ମୂଲ୍ୟବାନ ଉପହାରମାନ । ସେଥିମଧ୍ୟରେ ସର୍ବାଧିକ ଆକର୍ଷଣୀୟ ଥାଏ ଚୀନ୍‌ଦେଶର ଉପହାର । ଆଠଟି ହାତୀଦାନ୍ତକୁ ବ୍ୟବହାର କରି ଏକଶହ ଶିଳ୍ପୀ ଦୀର୍ଘ ସମୟ ମଧ୍ୟରେ ସେପରି ଏକ ସୁଦୃଶ୍ୟ କାରୁକାର୍ଯ୍ୟ ଗଠନ କରିଛନ୍ତି ବୋଲି ଗାଇଡ୍ କହିଲେ । ପର୍ବତମାଳା, ବୃକ୍ଷ ଲତା, ନଦୀ, ଉପତ୍ୟକା ଓ ମନୁଷ୍ୟର ଚିତ୍ରଗୁଡ଼ିକ ହାତୀଦାନ୍ତ ଉପରେ ଅତ୍ୟନ୍ତ ସୂକ୍ଷ୍ମ କାରୁକାର୍ଯ୍ୟ ଦ୍ୱାରା ଖୋଦନ କରାଯାଇଛି । ତିନି ଘଣ୍ଟା ପରେ ଭ୍ରମଣ ଶେଷ ହେଲା ।

## ୧୬ ନଭେମ୍ବର : ନିଉୟର୍କ ଭ୍ରମଣ ଓ 'ମୁକ୍ତି ପ୍ରତିମୂର୍ତ୍ତି' ଦର୍ଶନ

'ମୁକ୍ତି ମୂର୍ତ୍ତି' ବା Statue of Liberty ଦେଖିବା ଉଦ୍ଦେଶ୍ୟରେ ପର୍ଯ୍ୟଟକ ବାସ୍‌ରେ ବସିଲି । ପ୍ରଥମେ ସହରର ଉପକଣ୍ଠରେ ଥିବା ଚାଇନା ସହର ନାମକ ସ୍ଥାନରେ ବାସ୍ ରହିଲା । ଗତ ଶତାବ୍ଦୀରେ ଆମେରିକା ଆସିଥିବା ଚୀନଦେଶର ଲୋକମାନେ ସେଠାରେ ରହନ୍ତି । ଅପରିଷ୍କାର ସଂକୀର୍ଣ୍ଣ ଗଳି, ଆବର୍ଜନା ଓ ଅଳିଆଗଦା, ଅସୁନ୍ଦର ଘରଦ୍ୱାର ଓ ଜନଗହଳି ବଜାର ଦେଖି ବିରକ୍ତି ଆସିଲା । କିନ୍ତୁ ଗାଇଡ୍ ସିଧା ଚାଲିଥିଲେ ଗୋଟିଏ ବୌଦ୍ଧ ମନ୍ଦିର ଆଡ଼କୁ । କ୍ଷୁଦ୍ର ହେଲେ ମଧ୍ୟ ସୁନ୍ଦର । ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର ଧାତୁନିର୍ମିତ ମୂର୍ତ୍ତିମାନ ପୂଜାପୀଠରେ ରହିଥାଏ । କେନ୍ଦ୍ର ସ୍ଥଳରେ ମାର୍ବଲ ନିର୍ମିତ ବୁଦ୍ଧ ମୂର୍ତ୍ତି ।

ଗାଇଡ ସୁଇଚ୍ ଟିପିଲେ । ଇଂରାଜୀରେ ରେକର୍ଡ୍ ବାଜିଉଠିଲା– ''ବୌଦ୍ଧଧର୍ମ ହେଉଛି ବିଶ୍ୱର ସର୍ବବୃହତ୍ ଧର୍ମ । ମାନବଜାତିର ଏକତୃତୀୟାଂଶ ମନୁଷ୍ୟ ବୌଦ୍ଧଧର୍ମାବଲମ୍ବୀ । ଜାପାନ, ଥାଇଲ୍ୟାଣ୍ଡ, ବ୍ରହ୍ମ ଓ ଚୀନ ଅଧିବାସୀମାନେ ବୌଦ୍ଧ,'' ଇତ୍ୟାଦି, ଇତ୍ୟାଦି । ମନ୍ଦିର ମଧ୍ୟରେ ଚୀନା ମହିଳାମାନେ ମୂର୍ତ୍ତି ସମ୍ମୁଖରେ ବସି ରହିଥାନ୍ତି ।

ସେଠାରୁ ୱାଲ୍ ଷ୍ଟ୍ରିଟ୍ ଓ ନିଉୟର୍କ ବିଶ୍ୱବିଦ୍ୟାଳୟ ଦେଖିଲାପରେ ଦିନ ୧୧ଟାରେ ବାସ୍ ପହଞ୍ଚିଲା ସହରର ପୂର୍ବ ସୀମାସ୍ଥିତ ନଦୀକୂଳରେ । ଆକାଶ ନିର୍ମଳ ଥାଏ । ଚାରିଦିଗରେ କୋମଳ ସୂର୍ଯ୍ୟକିରଣ । କିନ୍ତୁ ତାପମାତ୍ରା ଅନେକ ତଳକୁ ଖସିଯାଇଥାଏ । ପ୍ରଚଣ୍ଡ ଶୀତରେ ଦେହ ଥରୁଥାଏ । ନଦୀକୂଳରେ ଅପେକ୍ଷା କରିଥିବା ଷ୍ଟିମାରରେ ବସିଲୁଁ । ଷ୍ଟିମାର ଚାଲିଲା 'ସ୍ୱାଧୀନତାର ଦ୍ୱୀପ' ବା Island of Liberty ଦିଗକୁ । ଦୂରରେ ଦିଶୁଥାଏ ନୀଳ ଆକାଶକୁ ଭେଦି ରହିଥିବା ମୁକ୍ତିଦେବୀଙ୍କ ସୁଉଚ୍ଚ ପ୍ରତିମୂର୍ତ୍ତି । ଆଟଲାଣ୍ଟିକ ମହାସାଗରର ଜଳରାଶି ଆଡ଼କୁ ପୂର୍ବାଭିମୁଖେ ଚାହିଁ ରହି ମୂର୍ତ୍ତିଟି ସତେ ଯେପରି ଇଉରୋପ ମହାଦେଶ ପ୍ରତି କୌଣସି ଏକ ଗହନ ସଂକେତ ବହନ କରୁଥାଏ ।

ଷ୍ଟିମାର ପହଞ୍ଚିଲା ଦ୍ୱୀପ ପାଖରେ । ସମସ୍ତେ ଚାଲିଲୁଁ ମୂର୍ତ୍ତିର ପାଦଦେଶକୁ । ସୁବିଶାଳ ମୂର୍ତ୍ତିର ଭିତ୍ତିସୌଧ ଭିତରେ ପ୍ରବେଶ କରି ଲିଫ୍‌ଟ୍ ଯୋଗେ ୧୨ ତାଲା ଉପରେ ଛାତଦେଶରେ ପହଞ୍ଚିଲୁଁ । ସେଠାରୁ ମୂର୍ତ୍ତିର ମୁକୁଟ ପର୍ଯ୍ୟନ୍ତ ଉଠିବା ନିମନ୍ତେ ଲିଫଟ୍ ନଥାଏ । ପାଦ ପକାଇ ଆଉ ୧୨ ମହଲା ଉପରକୁ ଉଠିବା ଲାଗି ସଂକୀର୍ଣ୍ଣ ଓ ପିଚ୍ଛିଳ ପାହାଚମାଳା ରହିଥାଏ । ପ୍ରତ୍ୟେକ ପାହାଚରେ ଥାଏ ମାତ୍ର ଜଣେ ଲୋକର ସ୍ଥାନ । ପାହାଚଗୁଡ଼ିକ ପୁଣି କ୍ରମେ କ୍ରମେ ଅଧିକରୁ ଅଧିକ ସଂକୀର୍ଣ୍ଣ ଆକାର ଧାରଣ କରୁଥାଏ । ମୋ ଆଗରେ ଉଠୁଥାନ୍ତି ଜଣେ

ସ୍ଥୂଳକାୟ ଭଦ୍ରବ୍ୟକ୍ତି । ପଛରେ ଥାନ୍ତି ଜଣକ ପରେ ଜଣେ ଏକଦଳ ବାଳକ ବାଳିକା । ଆମେ ଉଠି ଚାଲିଥାଉଁ ପ୍ରକାଣ୍ଡ ମୂର୍ତ୍ତିର ଗର୍ଭଦେଶ ଭିତର ଦେଇ ମସ୍ତକର ମୁକୁଟ ପର୍ଯ୍ୟନ୍ତ । ଯଥେଷ୍ଟ ସତର୍କତା ସହ ପାଦ ନ ପକାଇଲେ ଜଚାଡ଼ି ପଡ଼ିବାର ଆଶଙ୍କା ଥାଏ । ଆମ ଟୁରିଷ୍ଟ ଦଳର ଅଧିକାଂଶ ଲୋକ ସାଙ୍ଗରେ ନ ଆସିଥିବାର କାରଣ ଅନୁମାନ କରିନେଲି ।

ଘନ ଘନ ନିଶ୍ୱାସ ପ୍ରଶ୍ୱାସ ସହ ଅନେକ କଷ୍ଟରେ ଆକାଶଚୁମ୍ବୀ ମୂର୍ତ୍ତିର ମୁକୁଟ ମଧ୍ୟରେ ପ୍ରବେଶ କଲୁଁ । ମୁକୁଟର ଶୀର୍ଷବିନ୍ଦୁରେ ଥିବା ଛାତ ତଳେ ପ୍ରାୟ ୩୦ ଜଣ ଛିଡ଼ା ହେବା ପାଇଁ ସ୍ଥାନ ଥାଏ । ମୁକୁଟ ଦେଶରେ ଥାଏ କେତେଗୁଡ଼ିଏ ଝରକା । ସେହି ଗର୍ତ୍ତ ପଥରୁ ଦେଖାଯାଏ ସମୁଦ୍ର, ନଦୀ, ସୌଧମୟୀ ସହର ଓ ଦୂରବର୍ତ୍ତୀ ମାନହାଟନ ଅଞ୍ଚଳ ।

ତଳକୁ ଆସିଲାବେଳେ ନିଶ୍ୱାସ କଷ୍ଟ ନଥାଏ । କିନ୍ତୁ ଗୋଡ଼ ଖସିଯିବାର ଯଥେଷ୍ଟ ଭୟ ଥାଏ । ଅବତରଣ କାଳରେ ମୋଟା ବ୍ୟକ୍ତିଙ୍କ ପଛରେ ଚାଲିଥିବା ସ୍କୁଲପିଲାଙ୍କ କମେଣ୍ଟ୍ ଶୁଣିଲି, ''ଯଦି ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଏହାଙ୍କୁ ତଳକୁ ଟାଣିନେବ, ତାଙ୍କ ଆଗରେ ଥିବା ଲୋକମାନେ ମୁକ୍ତିଦେବୀଙ୍କ ମୂର୍ତ୍ତି ମଧ୍ୟରୁ ସିଧା ଯିବେ ହସପିଟାଲ, ଜୀବନରୁ ମୁକ୍ତି ପାଇବା ପାଇଁ ।'' ତଳେ ପହଞ୍ଚିଲା ପରେ ଭଦ୍ରବ୍ୟକ୍ତି ବସିପଡ଼ି କରୁଣ ସ୍ୱରରେ କହିଲେ, ''ମୋଟା ଦେହ ନେଇ ଏତେ ଉପରକୁ ଉଠିବା ଉଚିତ ହେଲା ନାହିଁ ।''

ସ୍ୱାଧୀନତା ଦ୍ୱୀପ କୂଳରୁ ଷ୍ଟିମାର ଚାଲିଲା ମାନହାଟନ ଦ୍ୱୀପ ଦିଗକୁ । ଦୂରରୁ ମୁକ୍ତି ମୂର୍ତ୍ତିର ରୂପ ଚମତ୍କାର ଦିଶୁଥାଏ । ଆକାର ମଧ୍ୟ କ୍ରମେ କ୍ରମେ କ୍ଷୁଦ୍ର ହୋଇ ଆସୁଥାଏ । ମୁକ୍ତ ଆକାଶରୁ ସମୁଦ୍ରଗର୍ଭକୁ ଖସିଆସିଥିବା ଅବସ୍ଥାରେ ମୂର୍ତ୍ତିଟି ଦୃଶ୍ୟମାନ ହେଉଥାଏ ।

ମାନହାଟନ ଦ୍ୱୀପ ପାଖେଇ ଆସିଲା । ସ୍ଥାନଟି ଥାଏ ବୃହତ୍ତର ନିଉୟର୍କ ଅଞ୍ଚଳର ଅଂଶବିଶେଷ । ଏକଦା ସମଗ୍ର ନିଉୟର୍କର ନାମ ଥିଲା ମାନହାଟନ । ଗାଇଡ଼ କହିଲେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ଆଲବାର୍ଟ୍ ଆଇନଷ୍ଟାଇନ ତଦାନୀନ୍ତନ ରାଷ୍ଟ୍ରପତି ଫ୍ରାଙ୍କ୍ଲିନ ରୁଜ୍‌ଭେଲ୍‌ଟ୍‌ଙ୍କୁ ଆଣବିକ ଶକ୍ତି ପରୀକ୍ଷା ନିମନ୍ତେ ଯେଉଁ ପ୍ରସ୍ତାବ ଦେଇଥିଲେ, ତାହା ମାନହାଟନ ଯୋଜନା ନାମରେ ପ୍ରସିଦ୍ଧ ଥିଲା । ମହାଯୁଦ୍ଧର ଶେଷ ବର୍ଷ, ଅର୍ଥାତ୍ ୧୯୪୫ ମସିହାର ଗ୍ରୀଷ୍ମଋତୁରେ, ବୈଜ୍ଞାନିକ ରବାର୍ଟ୍ ଓପେନ୍‌ହେମେର ପରମାଣୁ ବୋମାର ସଫଳ ବିସ୍ଫୋରଣ କଲାବେଳକୁ ମାନହାଟନ ଯୋଜନାରେ ୨ଶହ କୋଟି ଡଲାର ଖର୍ଚ୍ଚ ହୋଇ ସାରିଥାଏ ।

ଯଥାସମୟରେ, ସେହି ପରମାଣୁ ବୋମା ଜାପାନର ହିରୋସିମା ଓ ନାଗାସାକି ସହରଦ୍ୱୟକୁ ଭୂପୃଷ୍ଠରୁ ଲୋପ କରିପାରିଥିଲା ।

ଦ୍ୱୀପ ନିକଟରୁ ଷ୍ଟିମାର କୂଳକୁ ଫେରିଲା । ଆମେ ବାସ୍‌ରେ ବସିଲୁଁ । ସହରର କେନ୍ଦ୍ରାଞ୍ଚଳରେ ବାସ୍ ରହିଲା । ଗାଇଡ୍ ଜଣାଇଲେ, "ଏଠାରୁ ୧୫ ମିନିଟ ଚାଲିଲେ ଆଗରେ ପଡ଼ିବ ରକ୍‌ଫେଲାର ସେଣ୍ଟାର, ସହରର ସବୁଠାରୁ ବିଳାସପୂର୍ଣ୍ଣ ଛକ ।" ଘଡ଼ି ଦେଖିଲି, ୪ଟା ବାଜିଛି । ମେକ୍‌ସିକୋର ଦୁଇଜଣ ପର୍ଯ୍ୟଟକଙ୍କ ସହିତ ସେହି ଦିଗକୁ ଆଗେଇଲି । କିଛି ଦୂରରୁ ଖୋଳ କରତାଳର ବାଦ୍ୟଧ୍ୱନି ଓ ସଂକୀର୍ତ୍ତନର ମୂର୍ଚ୍ଛନା ଶୁଣି ବିଶ୍ୱାସ କରିପାରିଲି ନାହିଁ, ମୁଁ କେଉଁଠାକୁ ଯାଉଛି ।

ରକ୍‌ଫେଲାର ଛକର ଚାରିପାଖ ରାସ୍ତାରେ ଅନେକ ନରନାରୀ ଛିଡ଼ା ଥାନ୍ତି । ଅନେକେ ବେଞ୍ଚଗୁଡ଼ିକରେ ବସିଥାନ୍ତି । ମଝି ପଡ଼ିଆର ବିଭିନ୍ନ ସ୍ଥାନରେ ଯୁବକ ଯୁବତୀ ଓ ବାଳକ ବାଳିକାମାନେ ନାନାପ୍ରକାର ଖେଳରେ ମାତିଥାନ୍ତି । ବରଫ ମଣ୍ଡିତ ଏକ ସ୍ୱତନ୍ତ୍ର ମେଜିଆ ଉପରେ ସ୍କେଟ୍ ବା ତୁଷାର-ପାଦୁକା ପିନ୍ଧି ବାଳକ ବାଳିକାମାନେ ଦ୍ରୁତ ଗତିରେ ଘୂରି ବୁଲୁଥାନ୍ତି ।

ମୋର ଆଖି ପଡ଼ିଲା କୀର୍ତ୍ତନ ଦଳ ଉପରେ । ଛକର ଗୋଟିଏ କୋଣରେ ୧୦ ଜଣ ଆମେରିକାନ ୨ଜଣ ଭାରତୀୟ ବୈଷ୍ଣବ ନାଚି ନାଚି କୀର୍ତ୍ତନ ଗାଉଥାନ୍ତି "ହରେ କୃଷ୍ଣ ହରେରାମ" । ହାତରେ ଥାଏ ମାଇକ୍ । ଶାଢ଼ି ପିନ୍ଧିଥିବା ଜଣେ ସାହେବ ମହିଳା ଲୋକମାନଙ୍କୁ ମିଷ୍ଟାନ୍ନ ଦେଉଥାନ୍ତି । କିଛି ସମୟ ନାଚିଲା ପରେ ଜଣେ ଶ୍ୱେତାଙ୍ଗ ବୈଷ୍ଣବ ମୁହଁ ପାଖରେ ମାଇକ୍ ଧରି ପ୍ରବଚନ ଦେଲେ, "Brothers and Sisters, Abandon your material quests. More you run after earthly pleasures, more you invite inner unhappiness. Save yourself by total surrender to Krishna. This is the message we carry. There is no peace of mind without Krishna Consciousness." ।

ପୁଣିଥରେ କିଛି ସମୟ କୀର୍ତ୍ତନ କଲାପରେ ସେମାନେ ରାସ୍ତାରେ ନାଚି ନାଚି ଚାଲିଗଲେ । ସନ୍ଧ୍ୟା ମାଡ଼ି ଆସୁଥାଏ ।

**୧୮ ନଭେମ୍ବର : ଫିଲାଡେଲ୍‌ଫିଆ ଯାତ୍ରା**

ପେନ୍‌ସିଲଭାନିଆ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ସେଥିପାଇଁ ନିଉୟର୍କ ସହର ଠାରୁ ଶହେ ମାଇଲ ଦୂରବର୍ତ୍ତୀ

ଫିଲାଡେଲଫିଆ ସହରକୁ ଯିବାକୁ ହେଲା । ସେହି ପ୍ରସିଦ୍ଧ ସହର ଥିଲା ଆମେରିକା ସ୍ୱାଧୀନତା ସଂଗ୍ରାମର ପୀଠସ୍ଥଳୀ ।

ସକାଳ ୮ଟା ବେଳେ ବାସ୍ ଧରିଲି । ମାଟି ତଳେ ଥିବା ସୁବିସ୍ତୃତ ହଲ ଭିତରେ ଶହ ଶହ ବାସ୍ ବିଭିନ୍ନ ସହରକୁ ଯିବା ଲାଗି ଅପେକ୍ଷା କରିଥାଏ । ସୁଦୀର୍ଘ ସୁଡ଼ଙ୍ଗ ପଥ ଅତିକ୍ରମ କରି ବାସ୍ ପହଞ୍ଚିଲା ସହରର ଉପକଣ୍ଠରେ । ସେଠାରୁ ଆରମ୍ଭ ହେଲା ଗ୍ରାମାଞ୍ଚଳ, ଶିଳ୍ପାଞ୍ଚଳ, ଛୋଟ ଛୋଟ ସହର ଓ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ରର ଦୃଶ୍ୟ । ଆମେରିକାର ରାଜମାର୍ଗଗୁଡ଼ିକରୁ ପରିବହନ ବ୍ୟବସ୍ଥାର ପରିଚୟ ମିଳେ । ସମାନ୍ତରାଳ ଭାବରେ ଗୋଟିଏ ପାଖରେ ପ୍ରାୟ ୮ଟି ରାସ୍ତା ଯିବାପାଇଁ ଓ ଅନ୍ୟ ପାଖରେ ସେହିପରି ୮ଟି ରାସ୍ତା ଥାଏ ଆସିବା ପାଇଁ । ଅବିରତ ଗତି କରୁଥାଏ ସଂଖ୍ୟାହୀନ ଗାଡ଼ି ।

ଦିନ ୧୦ଟା ବେଳେ ଫିଲାଡେଲଫିଆ ସହରରେ ପହଞ୍ଚିଲି । ବାସ୍ ଷ୍ଟାଣ୍ଡରେ ଥିବା ସହରର ମାନଚିତ୍ର ଦେଖି ପେନ୍‌ସିଲଭାନିଆ ବିଶ୍ୱବିଦ୍ୟାଳୟ ଦିଗକୁ ଚାଲିଲି । କ୍ୟାମ୍ପାସ୍ ବାହାରେ ଲେଖା ରହିଥାଏ: "Welcome to the University of Pensilvania Founded by Benjamin Franklin." ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ନୀରବତାମୟ ପରିବେଶରେ ଭିନ୍ନ ଭିନ୍ନ ଡିପାର୍ଟମେଣ୍ଟ କୋଠା ଛିଡ଼ା ରହିଛି । ଇଂରାଜୀ ସାହିତ୍ୟ, ବିଦେଶୀ ଭାଷା, ଗଣିତ, ସମାଜତତ୍ତ୍ୱ ଓ ବିଜ୍ଞାନ ବିଭାଗ ଗୁଡ଼ିକ ଦେଖି ସାରିଲା ପରେ ଇତିହାସ ବିଭାଗର ନିର୍ଦ୍ଦିଷ୍ଟ ପ୍ରକୋଷ୍ଠରେ ପହଞ୍ଚିଲି । ସମୟ ହୋଇଥାଏ ସାଢ଼େ ୧୨ଟା । ରବିବାର ଥିବାରୁ ବିଶ୍ୱବିଦ୍ୟାଳୟ ବନ୍ଦ ଥାଏ ।

ଦିନ ୧ଟା ବେଳେ ଦୁଇଜଣ ଅପେକ୍ଷାରତ ଅଧ୍ୟାପକ ମୋତେ ଗୋଟାଏ ଡାଇନିଂ ପ୍ରକୋଷ୍ଠକୁ ନେଇଗଲେ । ସେଠାରେ ଅଧ୍ୟାପକ ଓ ଛାତ୍ର ମିଶି ୩୦ ଜଣଙ୍କର ଖାଇବା ବନ୍ଦୋବସ୍ତ ହୋଇଥାଏ । ଟେବୁଲ ଚାରିପାଖରେ ସମସ୍ତେ ଖାଇବା ପାଇଁ ବସିଲା ପରେ ମୋତେ ମାତ୍ର ୧୫ ମିନିଟ ସମୟ କହିବାକୁ ହେଲା । ତାପରେ, ଖାଉଥିବା ଅବସ୍ଥାରେ ପ୍ରଶ୍ନୋତ୍ତର ଓ ଆଲୋଚନା ଚାଲିଲା ।

୨ଟା ୩୦ମିନିଟରେ ଜଣେ ଅଧ୍ୟାପକ ମୋତେ ଗାଡ଼ିରେ ନେଇଗଲେ ସହରର କେତୋଟି ଇତିହାସପ୍ରସିଦ୍ଧ ସ୍ଥାନକୁ । ପ୍ରଥମେ ସିଟି ହଲ ଦେଖିସାରି ପହଞ୍ଚିଲୁଁ 'ସ୍ୱାଧୀନତା ସଭାକକ୍ଷ' ବା Independence Hall ମଧ୍ୟରେ । ସେହିଠାରେ ଟମାସ୍ ଜେଫାରସନ୍ 'ସ୍ୱାଧୀନତା ଘୋଷଣାପତ୍ର' ଲେଖିଥିଲେ ଓ ୧୭୭୬ ମସିହାରେ ବିପ୍ଳବୀ ନେତାମାନଙ୍କ ସମ୍ମୁଖରେ ତାହା ପାଠ କରିବା ସହ ଇଂଲଣ୍ଡ ବିପକ୍ଷରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା । ଯେଉଁ ଚେୟାରଗୁଡ଼ିକରେ ଜର୍ଜ ଉଆସିଂଟନ,

ବେଞ୍ଜାମିନ୍ ଫ୍ର୍ୟାଙ୍କଲିନ ଓ ଟମାସ୍ ଜେଫାରସନ ପ୍ରମୁଖ ୧୩ ଜଣ ତୁଙ୍ଗ ନେତା ସେତେବେଳେ ବସିଥିଲେ, ସେଗୁଡ଼ିକ ଯଥାସ୍ଥାନରେ ଓ ସେହିପରି ଭାବରେ ସଂରକ୍ଷିତ ରହିଛି । ସ୍ୱାଧୀନତା ସଂଗ୍ରାମରେ ବିଜୟ ଲାଭ ପରେ, ସେହି ହଲ ଭିତରେ ଯୁକ୍ତରାଷ୍ଟ୍ର ଆମେରିକାର ସଂବିଧାନ ପ୍ରଣୟନ କରାଯାଇଥିଲା ଓ ୧୭୮୭ ଖ୍ରୀଷ୍ଟାବ୍ଦରେ ସେହିଠାରେ ଗୃହୀତ ହୋଇଥିଲା ।

ସେଠାରୁ ଚାଲିଲି ସ୍ୱାଧୀନତା ଘଣ୍ଟା ବା Liberty Bell ରଖାଯାଇଥିବା ସ୍ଥାନକୁ । ଘଣ୍ଟା ରଖାଯାଇଛି ବୃକ୍ଷ ଲତା ଓ ଉତ୍ସ ଶୋଭିତ ଉଦ୍ୟାନରେ । ସ୍ୱାଧୀନତା ସଂଗ୍ରାମ କାଳରେ ସେହି ଘଣ୍ଟା ପ୍ରତ୍ୟେକ ଉପନିବେଶରେ ବଜା ଯାଇଥିଲା । ସେହିପରି, କ୍ରୀତଦାସମାନଙ୍କୁ ମୁକ୍ତି ଦେଲାବେଳେ ସେହି ଘଣ୍ଟା ବାଦନ କରାଯାଇଥିଲା । ପ୍ରତି ବର୍ଷ ଲକ୍ଷ ଲକ୍ଷ ଲୋକ ଦେଖିବାକୁ ଆସନ୍ତି । ଯୁକ୍ତରାଷ୍ଟ୍ରର ପ୍ରତ୍ୟେକ ସଭାପତି ଘଣ୍ଟା ବଜାଇବାକୁ ଆସନ୍ତି ।

ଅନ୍ୟ ସ୍ଥାନମାନ ଦେଖିବାକୁ ସମୟ ନଥାଏ । ସନ୍ଧ୍ୟାପୂର୍ବରୁ ବାସ୍ ଧରିଲି ନିଉୟର୍କ ଅଭିମୁଖେ । ଶହେ ମାଇଲ ବ୍ୟାପୀ ରାଜମାର୍ଗରେ ଏପଟରୁ ସେ ପଟ ଓ ସେ ପଟରୁ ଏପଟ ଗତି କରୁଥାଏ ପାଣିସୁଅ ପରି ଅସଂଖ୍ୟ ଗାଡ଼ି । ପାଖରେ ବସିଥିବା ସାହେବଙ୍କ ସହିତ ଆଳାପ କଲି । ପଚାରିଲି, ''ଆପଣଙ୍କ ଦେଶରେ ପ୍ରତିଦିନ ଯେଉଁ ଅପରିସୀମ ପେଟ୍ରୋଲ ଖର୍ଚ୍ଚ ହେଉଛି, ତାହା କ'ଣ ଆମେରିକାର ମାଟିତଳୁ ବାହାରିଥାଏ ?'' ଉତ୍ତର ଦେଲେ, ''ନା, ବେଶି ମାତ୍ରାର ତେଲ ସାଉଦୀ ଆରବ ଓ ଇରାନ ପ୍ରଭୃତି ମରୁଦେଶରୁ ଆସେ ।'' କହିଲି, ''ଇରାନ ଦେଶ ତ ଏବେ ଶତ୍ରୁ ରାଜ୍ୟ । ସେଠାରୁ ଏଣିକି ତେଲ ପାଇବେ ନାହିଁ । ସେହିପରି ଅନ୍ୟ ଦେଶରୁ ଯଦି ଆମଦାନୀ ବନ୍ଦ ହୁଏ, ତେବେ ଆମେରିକାର ଅବସ୍ଥା କ'ଣ ହେବ ?'' ହସିଦେଇ ସେ ଉତ୍ତର ଦେଲେ, ''ଏ ଦେଶର ଭୂଗର୍ଭରେ ହ୍ରଦ ସଦୃଶ ତେଲ ଭଣ୍ଡାର ଗୁଡ଼ିକରେ ଯେତିକି ପେଟ୍ରୋଲ ସଞ୍ଚିତ ଅଛି, ସେଥିରେ ଅନେକ ବର୍ଷ ଚାଲିଯିବ ।'' ପଚାରିଲି, ''ଧରାଯାଉ, ଆଗାମୀ ୫୦ ବର୍ଷ ମଧ୍ୟରେ ସବୁ ତେଲ ସରିଯିବ । ତା ପରେ କ'ଣ କରିବେ ?'' ଅଟ୍ଟହାସ୍ୟ ସହ ସେ ଉତ୍ତର ଦେଲେ, ''ଆପଣ କ'ଣ ଭାବିଛନ୍ତି, ବିଜ୍ଞାନର ରଥଚକ ଏହିଠାରେ ବନ୍ଦ ହୋଇଯିବ ? ଆଗାମୀ ୫୦ବର୍ଷ ଭିତରେ ଏ ଦେଶର ବୈଜ୍ଞାନିକମାନେ ସୌର ଶକ୍ତି ବା ଆଣବିକ ଶକ୍ତି ବା ଅନ୍ୟ ଶକ୍ତି ବଳରେ ଯାନବାହନ ଚଳାଇବାକୁ ସମର୍ଥ ହେବେ ବୋଲି ଆମର ପୂରା ବିଶ୍ୱାସ । ସେତେବେଳେ ଆୟାତୋଲ୍ଲା ଖୋମେନୀଙ୍କ ନାତିମାନେ ଇରାନ ତେଲ ଭଣ୍ଡାର ଭିତରେ ପେଟ୍ରୋଲ ପିଇ ପିଇ ମରୁଥିବେ ।''

ରାତି ୧୧ଟାରେ ବିଛଣା ଧରିଲି । ଭାବିଲି, ଯାତ୍ରା ଏବେ ବି ବାକି ଅଛି । ଶାରୀରିକ ପରିଶ୍ରମ ବା ମାନସିକ ଅବସାଦ ଭୁଲିବାକୁ ହେବ ।

**୨୦ ନଭେମ୍ବର : ବୋଷ୍ଟନ ଯାତ୍ରା**

ଭୋର ୫ଟାରେ ଚାଲିଲି ଦୂରବର୍ତ୍ତୀ ବାସ୍‌ଷ୍ଟ୍ୟାଣ୍ଡ ଆଡ଼କୁ । ଷ୍ଟ୍ରିଟ୍ ଲାଇଟ୍ ନିଭିଯାଇଥାଏ । ହାତରେ ସୁଟକେଶ୍ ଧରି ତରତରରେ ଚାଲିଥିଲା ବେଳେ, ଗୋଟିଏ ଗଳି ରାସ୍ତାରୁ ଦୁଇଜଣ ନିଗ୍ରୋ ଯୁବକ ଏପରି କୌଶଳରେ ଦୌଡ଼ିଆସିଲେ ଯେ ସେମାନଙ୍କ ଗୋଡ଼ ଛନ୍ଦି ମୁଁ କଚାଡ଼ି ପଡ଼ିଥାନ୍ତି ଓ ମୋ ସୁଟକେଶ୍ ନେଇ ସେମାନେ ପଳାଇଥାନ୍ତେ । କିନ୍ତୁ ସେମାନଙ୍କ ଗୋଡ଼ ଏଡ଼ାଇ ମୁଁ ଡେଇଁ ଚାଲିଗଲି । ଜଣେ ଯୁବକ ପଛରୁ ପାଟି କଲେ, "Lucky, you young fellow !" ମୁଁ ଜବାବ ଦେଲି, "Not as young as you are, my friend, but more intelligent !" ।

ସକାଳ ୭ଟାରେ ବାସ୍ ଛାଡ଼ିଲା । ନିଉୟର୍କରୁ ବୋଷ୍ଟନର ଦୂରତ୍ୱ ୨୩୦ ମାଇଲ । ଚାରି ଘଣ୍ଟାର ରାସ୍ତା । ପାହାଡ଼ ଓ ଜଙ୍ଗଲର ଦୃଶ୍ୟ ଦେଖି ଓଡ଼ିଶାର କେତେକ ଅଞ୍ଚଳ କଥା ମନେ ପଡ଼ିଲା । ମଧ୍ୟାହ୍ନ ୧୨ଟା ପୂର୍ବରୁ ବୋଷ୍ଟନ ସହରରେ ପହଞ୍ଚିଲି । ଗନ୍ତବ୍ୟ ସ୍ଥାନ ଥାଏ ହାର୍‌ଭାର୍ଡ଼ ବିଶ୍ୱବିଦ୍ୟାଳୟ ।

ବାସ୍‌ଷ୍ଟାଣ୍ଡ ପାଖରୁ ଭୂତଳ ଟ୍ରେନରେ ଯାଇ ହାରଭାର୍ଡ଼ ଷ୍ଟେସନରେ ପହଞ୍ଚିଲି । ବାହାରକୁ ଆସି ଜଣେ ପୋଲିସ କର୍ମଚାରୀଙ୍କୁ କ୍ୟାମ୍ପାସ୍ କେଉଁଠାରେ ବୋଲି ପଚାରିବାରୁ ସେ କହିଲେ, "ଏହିଠାରୁ ଆରମ୍ଭ ।" ଆଗରେ ଦେଖିବାକୁ ମିଳିଲା ପ୍ରବେଶ ପଥ ଓ ସେଠାରେ ଥିବା ପୋଲିସ୍ ଥାନା । ଛିଡ଼ା ଥାଏ ଖଣ୍ଡିଏ ପୋଲିସ୍ ଭ୍ୟାନ୍ । ଆମେରିକାର ସର୍ବପ୍ରସିଦ୍ଧ ବିଶ୍ୱବିଦ୍ୟାଳୟର କ୍ୟାମ୍ପାସ୍ ମଧ୍ୟରେ ଥାନା ଓ ପୋଲିସ ଗାଡ଼ି ଦେଖି ଆଚମ୍ବିତ ହେଲି । କାରଣ, ସେତେବେଳେ ଭାରତୀୟ କ୍ୟାମ୍ପାସଗୁଡ଼ିକରେ ପୋଲିସ ପଶିପାରୁ ନଥାଏ ।

ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଜନ୍ ହାରଭାର୍ଡ଼ଙ୍କ ପ୍ରତିମୂର୍ତ୍ତି ନିକଟରେ ପହଞ୍ଚିଲା ବେଳକୁ ସେଠାରେ ଜଣେ ଅଧ୍ୟାପକ ଅପେକ୍ଷା କରିଥାନ୍ତି । ପାବ୍ଲିକ ଏଡ୍‌ମିନିଷ୍ଟ୍ରେସନ ବିଭାଗରେ କେତେଜଣ ଅଧ୍ୟାପକଙ୍କ ସହିତ ଅଳ୍ପ ସମୟ ପାଇଁ ଆଲୋଚନା ହେଲା । ମଧ୍ୟାହ୍ନ ଭୋଜନ ପରେ ବିଭିନ୍ନ ବିଭାଗ, ପାଠାଗାର ଓ ବିଜ୍ଞାନାଗାର ଦେଖିଲି । ଚାରି ଦିଗରେ ମୁକ୍ତ ପ୍ରାଙ୍ଗଣ । ଗଛ ତଳେ ବେଞ୍ଚ ଉପରେ ବସି ଛାତ୍ରଛାତ୍ରୀମାନେ ପଢୁଥିବା ଦେଖିଲି । ସବୁଜ ପଡ଼ିଆର ପଥର ବେଞ୍ଚରେ ଧ୍ୟାନରତ ଯୋଗୀ ପରି ବୃଦ୍ଧ ଅଧ୍ୟାପକମାନେ ବହି ଧରି ବସିଥାନ୍ତି । ଶାନ୍ତ ବାତାବରଣ ପାଇଁ କ୍ୟାମ୍ପାସ୍‌ର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି ବୋଲି ଜାଣିପାରିଲି ।

## ୨୨ ନଭେମ୍ବର : ଏକ ଜାତୀୟ ଉତ୍ସବର ଦୃଶ୍ୟ

ନିଉୟର୍କରେ ଥିଲାବେଳେ ଓଡ଼ିଶାର ଜଣେ ଯୁବଡାକ୍ତର ସେଠାକାର ହସପିଟାଲରେ ଚାକିରି କରୁଥିବା ଜାଣି ତାଙ୍କ ସହିତ ଯୋଗାଯୋଗ ରଖିଥିଲି । ତାଙ୍କ ନାମ ଡକ୍ଟର ଉମା ମିଶ୍ର ଓ କଟକ ମେଡିକାଲ କଲେଜରେ ମୋ ଝିଅ ସଂଘମିତ୍ରା ସାଙ୍ଗରେ ପଢୁଥିଲେ । ଆଗରୁ ଥରେ ଦୁଇଥର ସାକ୍ଷାତ କରିବା ସହ ମିଳିତ ଜାତି ଅଟ୍ଟାଳିକାରେ ମୋର କେତେଗୁଡ଼ିଏ ଫଟୋ ଉଠାଇଥିଲେ ।

ନଭେମ୍ବର ୨୨ତାରିଖ ଦିନ ଉମାବାବୁ ଆମେରିକାର ଏକ ଜାତୀୟ ଉତ୍ସବ ଦେଖାଇବାକୁ ମୋତେ ନେଇଗଲେ । ପ୍ରତିବର୍ଷ ସେହି ଉତ୍ସବ ନିଉୟର୍କ ସହରରେ ମହାସମାରୋହରେ ପାଳନ କରାଯାଏ । କଥିତ ଅଛି, ପୂର୍ବକାଳରେ ଯେଉଁ ଦିନ ଇଉରୋପୀୟମାନେ ଆମେରିକାର ପ୍ଲି ମାଉଥ୍ ଠାରେ ପ୍ରଥମେ ପଦାର୍ପଣ କଲେ, ସେମାନଙ୍କୁ ଅନାହାରରେ ମୃତପ୍ରାୟ ଅବସ୍ଥାରେ ଦେଖି ଆଦିମ ଲୋହିତ ଭାରତୀୟମାନେ ଖାଦ୍ୟପେୟ ଦ୍ୱାରା ସେମାନଙ୍କ ଜୀବନ ରକ୍ଷା କରିଥିଲେ । ସେହି ଘଟଣାର ସ୍ମରଣାର୍ଥେ ପ୍ରତ୍ୟେକ ବର୍ଷ ଆମେରିକାବାସୀ ନଭେମ୍ବର ୨୨ ତାରିଖକୁ 'ଧନ୍ୟବାଦ ଅର୍ପଣ ଦିବସ' ନାମରେ ପାଳନ କରନ୍ତି ।

ଉମାବାବୁ ଓ ତାଙ୍କ ସ୍ତ୍ରୀ ଶାନ୍ତିଙ୍କ ସାଙ୍ଗରେ କେନ୍ଦ୍ରୀୟ ପାର୍କ ନିକଟରେ ପହଞ୍ଚିଲା ବେଳକୁ ଚାରିଆଡ଼େ ଲୋକାରଣ୍ୟ । କୌଣସି ପ୍ରକାରେ ସ୍ଥାନଟିଏ ଯୋଗାଡ଼ କରି ଛିଡ଼ା ହେଲୁଁ । ପାର୍କ ପାଖ ଦେଇ ଲମ୍ବିଥିବା ପ୍ରଶସ୍ତ ରାଜପଥରେ ପ୍ୟାରେଡ଼ ଆରମ୍ଭ ହେଲା । ଆମେରିକାର ଶିକ୍ଷାନୁଷ୍ଠାନଗୁଡ଼ିକ ବିଭିନ୍ନ କିସମର ପ୍ରଦର୍ଶନୀ ଦୃଶ୍ୟ ଆୟୋଜନ କରିଥାନ୍ତି । ପ୍ରତ୍ୟେକ କୋମ୍ପାନୀ ତରଫରୁ ବ୍ୟାଣ୍ଡବାଜା ସହିତ ବାଦ୍ୟକାରୀ ଦଳ ବାହାରିବାକୁ ଲାଗିଲେ । ପଛରେ ଥାଏ ପ୍ରକାଣ୍ଡ ଗାଡ଼ି ଉପରେ ନାନାପ୍ରକାର ଦୃଶ୍ୟ, ଯଥା– ପରିରାଇଜ, ଜୀବଜନ୍ତୁ, ଘର ଦ୍ୱାର ଓ ନୌକା ଇତ୍ୟାଦି । ତା ପଛକୁ ଚିତ୍ର ବଚିତ୍ର ପୋଷାକ ପିନ୍ଧି ନାଚି ନାଚି ଚାଲୁଥାନ୍ତି ଦଳ ଦଳ ନର୍ତ୍ତକ ନର୍ତ୍ତକୀ । ମିକିମାଉସ୍, ଜୀବଜନ୍ତୁ ଓ ରାକ୍ଷସର ଆକାର ଧରିଥିବା ପ୍ରକାଣ୍ଡ ପ୍ରକାଣ୍ଡ ବେଲୁନ ଉଡ଼ାଇ ଦଳ ଦଳ ଲୋକ ଚାଲିଥାନ୍ତି । ଅନେକ ଉର୍ଦ୍ଧ୍ୱରେ ଉଡୁଥିବା ଗୋଟିଏ ଗୋଟିଏ ବେଲୁନର ଦଉଡ଼ିକୁ ୩୦, ୪୦ ଜଣ ଲେଖାଏଁ ଲୋକ ତଳେ ଧରି ରଖି ତା'ର ଗତି ନିୟନ୍ତ୍ରଣ କରୁଥିଲେ । ରାସ୍ତାର ଦୁଇ ପାଖରେ ହଜାର ହଜାର ବାଳକ ବାଳିକା ବେଲୁନ୍ ଦୃଶ୍ୟ ଦେଖି ହର୍ଷ ଉଲ୍ଲାସରେ ମାତିଥାନ୍ତି । ଦୁଇ ଘଣ୍ଟା ଶୋଭାଯାତ୍ରା ଚାଲିଲା । ଶେଷରେ ବାହାରିଲା ତିନିତାଲା କୋଠା ଉଚ୍ଚତାରେ ରଖାଯାଇଥିବା ଜର୍ଜ ଉଆସିଂଟନ ଓ ବେଞ୍ଜାମିନ ଫ୍ର୍ୟାଙ୍କ୍‌ଲିନଙ୍କ ମୁଣ୍ଡର ସୁବିଶାଳ ପ୍ରତିକୃତି ।

ଶିଳ୍ପପତିମାନଙ୍କ ଦ୍ୱାରା ଆୟୋଜିତ ଉତ୍ସବର ଆଡ଼ମ୍ବରରୁ ଜଣାଯାଉଥାଏ ବିପୁଳ ଅର୍ଥବ୍ୟୟର ସୂଚନା । ସେଠାରୁ ଆସି ଉମାବାବୁଙ୍କ ଘରେ ମଧ୍ୟାହ୍ନ ଭୋଜନ କଲି । ଶାନ୍ତି ଖାଣ୍ଟି ଓଡ଼ିଆ ଢଙ୍ଗରେ ମୋ ପାଇଁ ଖାଦ୍ୟ ପ୍ରସ୍ତୁତ କରିଥିଲେ ।

ଅପରାହ୍ନ ୪ଟା ବେଳେ ନିଉୟର୍କ କର୍ଣ୍ଣେଲ ହସପିଟାଲ ଦେଖିବାକୁ ଗଲି । ସେଠାରେ, କ୍ୟାନସାର ଅପାରେସନ ପରେ ଇରାନ ରାଜା ଚିକିତ୍ସିତ ହେଉଥିଲେ । ଦୂରରୁ ତାହାର ଆକାର ପ୍ରକାର ଦେଖି ଚକିତ ହେଲି । କିନ୍ତୁ, ଗେଟ୍ ପାଖରେ ପହଞ୍ଚିଲାକ୍ଷଣି, ପ୍ରଶ୍ନବାଣରେ ଜର୍ଜରିତ ହେଲି– କେଉଁ ଦେଶର ଲୋକ, କାହିଁକି ସେ ରାସ୍ତାରେ ଚାଲିଛି, ହସପିଟାଲ ଦେଖିବାକୁ ଇଚ୍ଛା କାହିଁକି, ଇତ୍ୟାଦି, ଇତ୍ୟାଦି । ସେମାନେ ଗୋଏନ୍ଦା ବୋଲି ଅନୁମାନ କରି ଫେରି ଆସିଲି । ରାଜାଙ୍କ ନିରାପତ୍ତା ନିମନ୍ତେ କଠୋର ବ୍ୟବସ୍ଥା !

ବାଟରେ ଦେଖିଲି ଗୋଟିଏ ଦୁର୍ଘଟଣାର ଦୃଶ୍ୟ । ପ୍ରଚଣ୍ଡ ସାଇରେନ ଧ୍ୱନି ସହ ପୋଲିସ ଗାଡ଼ି ଆଉ ଗୋଟିଏ ଗାଡ଼ି ପଛରେ ଦ୍ରୁତ ଗତିରେ ଧାଉଁଥିଲା ବେଳେ, ରାସ୍ତା ଅତିକ୍ରମ ଲାଗି ଉଦ୍ୟତ ହେଉଥିବା ଜଣେ ଯୁବକଙ୍କ ଗୋଡ଼ ଦୁଇଟି ଉପରେ ମାଡ଼ିଗଲା । ତଥାପି ଗାଡ଼ିଟି ରହିଲା ନାହିଁ । ପଛରେ ଆସୁଥିବା ଆଉ ଖଣ୍ଡିଏ ପୋଲିସ ଗାଡ଼ିରୁ କେତେଜଣ ଅଫିସର ଡେଇଁପଡ଼ି ରକ୍ତାକ୍ତ ଅବସ୍ଥାରେ ପଡ଼ିଥିବା ଯୁବକଙ୍କୁ ଚାହିଁରହିଲେ । ହାତରେ ଥିବା ଫୋନ ଦ୍ୱାରା ସେମାନେ ବାର୍ତ୍ତା ପଠାଇବାକ୍ଷଣି, ଅଳ୍ପ ସମୟ ମଧ୍ୟରେ ଖଣ୍ଡିଏ ହେଲିକୋପ୍ଟର ପାଖ ରାସ୍ତାରେ ଓହ୍ଲାଇପଡ଼ିଲା । ତତ୍‌କ୍ଷଣାତ୍ ଚେତାହୀନ ଯୁବକଙ୍କୁ ନେଇ ଉଡ଼ିଯିବା ଦେଖିଲି । ଅନେକ ଲୋକ ଛିଡ଼ା ହୋଇ ଦେଖୁଥିଲେ, କିନ୍ତୁ ପାଟିତୁଣ୍ଡ ନଥାଏ । ଜଣେ ଲୋକଙ୍କ କଥାରୁ ଜାଣିଲି, ପୋଲିସ ଗାଡ଼ି ଗୋଟିଏ ଅପରାଧୀ ଦଳର ଗାଡ଼ି ପଛରେ ଗୋଡ଼ାଇଲା ବେଳେ ସେପରି ଦୁର୍ଘଟଣା ଘଟିଯାଇଛି ।

ତହିଁ ପରଦିନ ସଂବାଦପତ୍ରରେ ପଢ଼ିଲି, ଯୁବକଟିର ବୟସ ୨୬ । ପ୍ରତିଭାଶାଳୀ ଓ ଉଚ୍ଚଶିକ୍ଷିତ । ସନ୍ଧ୍ୟା ୫ ଟାରେ ଉଚ୍ଚ ପଦକୁ ପ୍ରମୋଶନ ମିଳିଛି ଶୁଣି ଅପାର ଆନନ୍ଦରେ ସଦ୍ୟ ବିବାହିତା ସ୍ତ୍ରୀଙ୍କୁ ସୁସଂବାଦ ଦେବାକୁ ଦୌଡ଼ିଲା ବେଳେ ପୋଲିସ ସାଇରେନ ନଶୁଣି ଅନ୍ୟମନସ୍କ ଭାବରେ ରାସ୍ତାରେ ପାଦ ରଖିଲାମାତ୍ରେ ଗାଡ଼ିତଳେ ପଡ଼ିଗଲେ । ସାର୍ଜନମାନେ ଦୁଇଟିଯାକ ଗୋଡ଼ କାଟିପକାଇବାକୁ ବାଧ୍ୟ ହେଲେ । ରାତିର ଶେଷ ପ୍ରହରରେ ଚେତା ଫେରିଲାବେଳକୁ ସାମ୍ବାଦିକମାନେ ଘେରି ରହିଥାନ୍ତି । "କ'ଣ ଭାବୁଛନ୍ତି" ବୋଲି ପ୍ରଶ୍ନ କରିବାରୁ, ନିଜ ସ୍ତ୍ରୀଙ୍କ ଦିଗକୁ ଚାହିଁ ରହି ସଂକ୍ଷିପ୍ତ ଉତ୍ତରଟିଏ ଦେଲେ, "Why should I waste time thinking, Why to me !"

ଏହି କେତୋଟି ଶବ୍ଦରେ ଗଭୀର ଦର୍ଶନ ନିହିତ ରହିଛି ବୋଲି ଚିନ୍ତା କଲି । ଭାରତୀୟ ଶାଶ୍ୱତ ବିଶ୍ୱାସଧାରାରେ ଭାଗ୍ୟ ବା ଅଦୃଷ୍ଟ, କିମ୍ବା ପାଶ୍ଚାତ୍ୟ ଚିନ୍ତାରେ ଚାନ୍ସ ବା ଆକ୍ସିଡେଣ୍ଟ, ଯାହା ହେଉନା କାହିଁକି, ଦୁର୍ଘଟଣା ଘଟିଗଲା ପରେ ଅନୁତାପ ବା ଅନୁଶୋଚନା ହେଉଛି ସମ୍ପୂର୍ଣ୍ଣ ନିରର୍ଥକ । ଯାହା ହେବାର ଥିବ, ତାହା ଘଟିବ ! ଦାର୍ଶନିକର ମନୋଭାବ ନେଇ ଯୁବକ ଯେଉଁ କଥା କହିଥିଲେ, ତାହାର ତାତ୍ପର୍ଯ୍ୟ କିଛି କମ୍ ନୁହେଁ ।

## ୨୭ ନଭେମ୍ବର : ନାଏଗ୍ରା ଜଳପ୍ରପାତ ପଥେ

ଆମେରିକାରେ ରହଣି କାଳ ଶେଷ ହୋଇ ଆସୁଥାଏ । ତେଣେ, କାନାଡ଼ା ଯିବା ପାଇଁ ଆଗ୍ରହ ବଢ଼ିଲା, ନାଏଗ୍ରା ଜଳପ୍ରପାତ ଦେଖିବା ଲାଗି । ପୁଣି ସିକାଗୋ (ଚିକାଗୋ) ଯିବା ପାଇଁ ପ୍ରୋଗ୍ରାମ ଥାଏ । ଟ୍ରାଭଲ ଏଜେନ୍ସି ପାଖକୁ ଚାଲିଲି । ସେମାନେ ବୁଝାଇଦେଲେ, ଯୁକ୍ତରାଷ୍ଟ୍ର ସୀମାରେ ଥିବା ବଫ୍ଫାଲୋ ସହରରେ ପହଞ୍ଚି ସେଠାରୁ ନାଏଗ୍ରା ନାମକ ବାସ୍ ଷ୍ଟେସନକୁ ଗଲେ ସେଠାରୁ ଜଳପ୍ରପାତର ଗୋଟିଏ ଅଂଶ ଦେଖିହେବ । ସେହି ରାତିରେ ବଫ୍ଫାଲୋ ଯିବା ଲାଗି ଟିକଟ କିଣିଲି ।

ବାସ୍ ଛାଡ଼ିଲା ରାତି ୧୧ଟାରେ । ସହରର ଦୃଶ୍ୟ ଅନ୍ଧକାରରେ ହଜିଗଲା । ଆକାଶରେ ଅର୍ଦ୍ଧଚନ୍ଦ୍ରର ଶୋଭା ଦେଖୁଁ ଦେଖୁଁ ଗାଢ଼ ନିଦରେ ଶୋଇପଡ଼ିଲି । ରାତି ପ୍ରାୟ ୩ଟା ବେଳେ ମେଘର ଗର୍ଜନ ଶୁଣି ଆଖି ଖୋଲିଲାବେଳକୁ ବାହାରେ ହେଉଥାଏ ପ୍ରବଳ ବର୍ଷା ।

## ୨୮—୨୯ ନଭେମ୍ବର : କାନାଡ଼ାରେ ଦୁଇଦିନ, ନାଏଗ୍ରା ଜଳପ୍ରପାତ

୨୮ ତାରିଖ ସକାଳ ୭ଟାରେ ବାସ୍ ପହଞ୍ଚିଲା ବଫ୍ଫାଲୋ ସହରରେ । ଟାରମିନାଲ କ୍ୟାଣ୍ଟିନରେ ପର୍ଯ୍ୟଟକମାନଙ୍କ ଗହଣରେ ଜଳଖିଆ ଖାଇଲି । ଯୁକ୍ତରାଷ୍ଟ୍ରର ସୀମା ଭିତରେ ଥିବା ନାଏଗ୍ରା ଜଳପ୍ରପାତ ନିକଟକୁ ନେଇଯିବା ଲାଗି ଅନ୍ୟ ଖଣ୍ଡିଏ ବାସ୍ ଛାଡ଼ିଲା । ୮ଟା ସମୟରେ ବାସ୍ ପହଞ୍ଚିଲା ଯୁକ୍ତରାଷ୍ଟ୍ର ଓ କାନାଡା ମଧ୍ୟରେ ଥିବା ସୀମାରେଖା ପାଖରେ । ଯାତ୍ରୀମାନେ ଜିନିଷପତ୍ର ଧରି ବାହାରିଗଲେ । ଅନ୍ୟ ଖଣ୍ଡିଏ ବାସ୍ ଯୋଗେ ସମସ୍ତେ ଯିବେ କାନାଡ଼ା । ସେହି ଦେଶରୁ ସେମାନେ ଦେଖିବେ ନାଏଗ୍ରା । କାନାଡା ଯିବା ଲାଗି ମୋର ଅନୁମତିପତ୍ର ବା ଭିସା ନଥିବା ଯୋଗୁଁ ମୋତେ ବାସ୍‌ରେ ରହିବା ପାଇଁ କୁହାଗଲା ।

କାନାଡା ଓ ନାଏଗ୍ରା ଦେଖିବା ଆଶା ପୂରଣ ହେବ ନାହିଁ ଜାଣି ଦୁଃଖିତ ହେଲି । କିନ୍ତୁ, ଯାତ୍ରାକାଳରେ ନିଜର ବାକ୍‌ଶକ୍ତି ପ୍ରୟୋଗ କରିବା ଉଚିତ

ମଣି ଅଳ୍ପ ଦୂରରେ ଥିବା କାନାଡାର ସୀମାରକ୍ଷୀ କର୍ମଚାରୀମାନଙ୍କ ଅଫିସକୁ ଗଲି । କର୍ମକର୍ତ୍ତାଙ୍କୁ କହିଲି, "କାନାଡା ଭୂମିରୁ ନାଏଗ୍ରାର ଶୋଭା ଦେଖିବା ପାଇଁ ଅନେକ ଆଶା ନେଇ ଭାରତରୁ ଆସିଥିଲି । ଭିସା ନଥିବାରୁ ନିରାଶ ହୋଇ ଫେରିବି ।" ଏତେକ କଥାରେ କାନାଡ଼ାର ଟରଣ୍ଟୋ ସହରକୁ ଯିବା ପାଇଁ ଅନୁମତି ମିଳିଗଲା ।

ଟରଣ୍ଟୋ ସହର ଅଭିମୁଖେ ବାସ୍ ଚାଲିଲା । ଆମେରିକା ସୀମାରୁ ୩ ଘଣ୍ଟାର ଯାତ୍ରା । ଗ୍ରାମାଞ୍ଚଳ, ଶସ୍ୟକ୍ଷେତ୍ର ଓ ଫଳ ବଗିଚାର ଦୃଶ୍ୟ ସାଙ୍ଗକୁ ଦେଖାଯାଉଥାଏ ହ୍ରଦକୂଳର ସୁବିସ୍ତୀର୍ଣ୍ଣ ଜଙ୍ଗଲ ଓ ଦୂରବର୍ତ୍ତୀ ପାହାଡ଼ । ତନ୍ମୟ ଚିତ୍ତରେ ପ୍ରାକୃତିକ ଶୋଭା ଦେଖି ଦେଖି ଦିନ ୧୧ ଟାରେ ପହଞ୍ଚିଲି ଟରଣ୍ଟୋ ବାସ୍ ଟାରମିନାଲରେ । ବାସ୍‌ରୁ ବାହାରିବା କ୍ଷଣି ଉତ୍ତମ ପୋଷାକ ପିନ୍ଧିଥିବା ଜଣେ ବୟସ୍କ ବ୍ୟକ୍ତି ମୋ ପାଖକୁ ଆସିଯାଇ 'May I help you' କହି କିଛି ଦୂରକୁ ଡାକିନେଲେ । ସଙ୍ଗେ ସଙ୍ଗେ ନିଜ ହାତରୁ ସୁନା ଘଡ଼ି ଓ ସୁନା ମୁଦି ଦୁଇଟି କାଢ଼ି ମୋ ହାତରେ ଧରାଇ ଦେଇ ବିକଳ ଭାବରେ କହିଗଲେ, "ମୋର ସବୁ ଜିନିଷ ଚୋରି ହୋଇଯାଇଛି । ଏଠାରୁ କୁଇବେକ୍ ଯିବି । ଚାରିଶହ ଡଲାର ମୂଲ୍ୟର ଏତକ ସୁନା ଜିନିଷ ନେଇ ମୋତେ ମାତ୍ର ଚାଳିଶ ଡଲାର ଦେଲେ ମୁଁ ବାସ୍‌ଭଡ଼ା ପାଇଯିବି । ସମୟ ନାହିଁ । ବାସ୍ ଛାଡ଼ିଦେବ, ଶୀଘ୍ର ଦିଅନ୍ତୁ ।" ତାଙ୍କ ରୂପ ଓ ଭଦ୍ର ବେଶଭୂଷା ସତ୍ତ୍ୱେ ସେ ଜଣେ ଠକ ବୋଲି ଅନୁମାନ କରି ତୁରନ୍ତ ଚାଲି ଆସିଲି ।

ଟରଣ୍ଟୋ ସହରର Y.M.C.A. ଭବନରେ ପହଞ୍ଚି ରୁମ୍‌ଟିଏ ପାଇଲି । ସେ ଦିନ ଅପରାହ୍ଣ ଓ ଅନେକ ରାତି ପର୍ଯ୍ୟନ୍ତ ସହରର ଏଣେ ତେଣେ ବୁଲିଲି । ପ୍ରଚଣ୍ଡ ଶୀତ ଯୋଗୁଁ କଷ୍ଟ ହେଉଥାଏ । ତଥାପି ସନ୍ଧ୍ୟାବେଳେ ବିଶ୍ୱବିଦ୍ୟାଳୟ କ୍ୟାମ୍ପାସ୍ ଦେଖିବାକୁ ଗଲି । ସେଠାରେ କେତେଜଣ ଭାରତୀୟ ଅଧ୍ୟାପକ ଥିବା କଥା ଶୁଣି ମଧ୍ୟ ସାକ୍ଷାତ କରିବାକୁ ସମୟ ପାଇଲି ନାହିଁ ।

ତହିଁ ପରଦିନ, ୨୯ ନଭେମ୍ବର, ସକାଳ ୮ଟାରେ ନାଏଗ୍ରା ଜଳପ୍ରପାତ ଯିବା ଲାଗି ବାସ୍ ଧରିଲି । ମାତ୍ରାଧିକ ଶୀତ । ଗୋଟିଏ ଦିଗରେ ସନ୍ନିପାତର ଭୟ, ଅନ୍ୟ ପକ୍ଷରେ ନାଏଗ୍ରାର ଆହ୍ୱାନ । ଭାଗ୍ୟକୁ, ଶୀତତାପ-ନିୟନ୍ତ୍ରିତ ବାସ ଚାଲିଲା ପରେ ଆରାମ ଲାଗିଲା । ସହର ବାହାରେ ପଡ଼ିଲା ଫୋର୍ଡ଼ କୋମ୍ପାନୀର ଶିଳ୍ପାନୁଷ୍ଠାନ । ହତା ଭିତରେ ରହିଥାଏ ହଜାର ହଜାର ସଂଖ୍ୟାର ନୂଆ କାର୍, ବିଦେଶକୁ ରପ୍ତାନୀ ଲାଗି । ଦିନ ୧୧ଟା ବେଳେ ବାସ୍ ପହଞ୍ଚିଲା ନାଏଗ୍ରା ନିକଟସ୍ଥ ଛୋଟ ସହରରେ । ସେଠାକାର ଟାରମିନାଲ କ୍ୟାଣ୍ଟିନ୍‌ରେ ଖାଇସାରିଲା ପରେ, ୭ ଡଲାର ମୂଲ୍ୟର ଟିକଟ କିଣି ଟୁରିଷ୍ଟ ବାସ୍‌ରେ ବସିଲୁଁ । ଗାଇଡ୍

ଘୋଷଣା କଲେ, ସହର ଓ ଜଳପ୍ରପାତ ଦେଖିବା ନିମନ୍ତେ ୩ ଘଣ୍ଟା ସମୟ ଲାଗିବ ।

ସହରଟି କ୍ଷୁଦ୍ର କିନ୍ତୁ ଶୋଭାମୟ । ସହସ୍ର ସହସ୍ର ପର୍ଯ୍ୟଟକମାନଙ୍କ ସୁବିଧା ଲାଗି ସହରଟି ଗଢ଼ିଉଠିଛି । ଦିଶୁଥାଏ ସୁନ୍ଦର ସୁନ୍ଦର ହୋଟେଲ, ପାନ୍ଥ ନିବାସ, ରେସ୍ତୁରାଁ ଓ ବିଶ୍ରାମଗୃହ । ଅନେକେ ଆସନ୍ତି ସେଠାକାର ଅପରୂପ ପରିବେଶରେ ଛୁଟି ବିତାଇବା ପାଇଁ । ସହର ପରିକ୍ରମା ପରେ ବାସ୍ ପହଞ୍ଚିଲା ନାଏଗ୍ରା ନଦୀ କୂଳରେ । ଗୋଟିଏ କୂଳରେ ଥାଏ ମାଇଲ ମାଇଲ ବ୍ୟାପୀ କାନାଡାର ସୀମା । ବିପରୀତ କୂଳରେ ଯୁକ୍ତରାଷ୍ଟ୍ରର ସୀମା । ନଦୀ କୂଳେ କୂଳେ ରହିଛି ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କେନ୍ଦ୍ର । ଗୋଟିଏ ନିଭୃତ ସ୍ଥାନରେ ରହିଛି ନାଏଗ୍ରା ବିଶ୍ୱବିଦ୍ୟାଳୟ । ଉଦ୍ୟାନମୟ କ୍ୟାମ୍ପାସ୍ । ସେଠାରେ ଥିବା 'ଉଦ୍ୟାନ ଘଣ୍ଟା' ବା Garden Clock ଦେଖିଲୁଁ । ସବୁଜ ଘାସ ଓ ପୁଷ୍ପମଣ୍ଡିତ ବୃହଦାକାର ପଡ଼ିଆର ମାଟି ଉପରେ ଘୂରି ବୁଲୁଥାଏ ବଡ଼ ବଡ଼ ଘଡ଼ି କଣ୍ଟା ।

ସେଠାରୁ ଯାଇ ବାସ୍ ପହଞ୍ଚିଲା ଆମେରିକା ସୀମାର ନାଏଗ୍ରା ପ୍ରପାତ ପାଖରେ । ପ୍ରକୃତିର ଅନ୍ୟତମ ବିସ୍ମୟକର ରୂପ ଧାରଣ କରି ନାଏଗ୍ରା ମନରେ ଭୀତି ସଞ୍ଚାର କଲା । ଏକ ସହସ୍ର ଫୁଟ ଦୀର୍ଘ ପ୍ରସ୍ତର ଭୂମିର ୧୬୭ ଫୁଟ ଉଚ୍ଚରୁ ଅବିରତ ଭାବେ ମୁଷଳ ଧାରାରେ ଓ ନିର୍ଘାତ ଗର୍ଜନ ସହ ଝରିପଡୁଥାଏ ନାଏଗ୍ରା ପ୍ରପାତ । ସେଠାରୁ ବାସ୍ ପହଞ୍ଚିଲା କାନାଡା ସୀମାସ୍ଥିତ ଜଳପ୍ରପାତ ପାଖରେ । ଗାଇଡ୍ ଉଚ୍ଚସ୍ୱରରେ ଘୋଷଣା କଲେ, "ଏହାହିଁ ହେଉଛି ପ୍ରକୃତ ନାଏଗ୍ରା ଜଳପ୍ରପାତ ।"

ବାସ୍‌ରୁ ବାହାରି ଆସି ଯଥାସ୍ଥାନରେ ଛିଡ଼ା ହେଲୁଁ । ସମ୍ମୁଖରେ ଦିଶୁଥାଏ ଧରିତ୍ରୀ ବକ୍ଷର ବୈଚିତ୍ର୍ୟ, ନାଏଗ୍ରା । ଅଢ଼େଇ ହଜାର ଫୁଟ ବ୍ୟାପୀ ସୁଦୀର୍ଘ ପ୍ରସ୍ତରଶଯ୍ୟା ଉର୍ଦ୍ଧ୍ୱରୁ ୧୬୨ ଫୁଟ୍ ଗଭୀର ଗର୍ଭଦେଶକୁ ଗମ୍ଭୀର ଗର୍ଜନ ଧ୍ୱନିରେ ଖସି ଆସୁଥାଏ ରାଶିହୀନ ଜଳପ୍ରବାହ । ଗାଇଡ୍ କହିଲେ, ଯେଉଁ ପଥର ଶଯ୍ୟାରୁ ଯୁଗ ଯୁଗ ଧରି ଜଳପ୍ରପାତ ଖସି ଆସୁଛି, ସେହି ପଥରର ଆୟୁଃକାଳ ହେଉଛି ୪୦ କୋଟି ବର୍ଷ । "ସେହି ପ୍ରାଣହୀନ ପଦାର୍ଥ ତୁଳନାରେ ପ୍ରାଣଧାରୀ ମଣିଷର ଆୟୁଃକାଳ କେତେ ?"

ଜଳ ପ୍ରପାତର ପାଣି ସ୍ୱଚ୍ଛ ଓ ନିର୍ମଳ, ସେଥିରେ ବାଲି ବା ମାଟି ନଥାଏ, କାରଣ ପ୍ରସ୍ତର ଶଯ୍ୟା ଚିରଦିନ ପରିଷ୍କାର । ଅସରନ୍ତି ସମୟରାଶି ମଧ୍ୟରେ ଅହରହ ଝରିପଡୁଥିବା ରାଶିହୀନ ଜଳ ଆସୁଛି କେଉଁଠାରୁ ? ଏ ପ୍ରଶ୍ନର ଉତ୍ତର ପ୍ରକୃତି ହିଁ ଦେଇପାରିବ, କିମ୍ବା ହୁଏତ ବିଶେଷଜ୍ଞମାନେ ।

ନାଏଗ୍ରାର ଜଳକଣା ମୁଖମଣ୍ଡଳ ଓ ପୋଷାକ ପରିଚ୍ଛଦ ଓଦା କରିଦେଉଥାଏ । ତାହାର ଭୟଙ୍କର ଗର୍ଜନରେ କାନ କମ୍ପିଉଠୁଥାଏ । ତଥାପି ସୁଡ଼ଙ୍ଗ ପଥରେ ମାଟି ତଳକୁ ଯାଇ ଜଳପ୍ରପାତର ପତନ ସ୍ଥାନ ଦେଖିଲି । ସେଠାରେ ନାଏଗ୍ରାର ରୂପ ଆତଙ୍କପ୍ରଦ ଦିଶିଲା । ମନେ ହେଲା, ମୁହୂର୍ତ୍ତ ମଧ୍ୟରେ ତା ଅଗାଧ ଗର୍ଭକୁ ଟାଣିନେବ । ଜଳକଣାଗୁଡ଼ିକ ବର୍ଷାବିନ୍ଦୁ ପରି ବଡ଼ ଥାଏ । ଅଧିକ ସମୟ ସେଠାରେ ରହିବା ସମ୍ଭବ ହେଲା ନାହିଁ । ନାଏଗ୍ରାର ଯେତିକି ରୂପ ଦେଖିଲି, ସେତିକିରେ ସନ୍ତୁଷ୍ଟ ହେଲି ।

ବାସ୍ ପାଖରେ ପହଞ୍ଚିଲାବେଳକୁ ଅନ୍ୟମାନେ ବସିଯାଇଥିଲେ । କିନ୍ତୁ ଗାଇଡ଼ ସଂଖ୍ୟା ଗଣିଲାବେଳକୁ ଜଣେ ଯାତ୍ରୀଙ୍କର ଅଭାବ ଥାଏ । ଅଧ ଘଣ୍ଟାଏ ବିତିଗଲା । ହଜିଯାଇଥିବା ଯାତ୍ରୀ ଥିଲେ ଜଣେ ଚୀନା ପର୍ଯ୍ୟଟକ । ବିଳମ୍ବ ଯୋଗୁଁ ଧୈର୍ଯ୍ୟ ହରାଇ ଡ୍ରାଇଭାର କମେଣ୍ଟ ଦେଲେ, "ନିଶ୍ଚୟ ସେ ଭାସିଯାଇଥିବେ, କିମ୍ବା ଆତ୍ମହତ୍ୟା ପାଇଁ ପାଣିକୁ ଡେଇଁଥିବେ ।" ଅନ୍ୟମାନେ କୌତୁକଟି ଉପଭୋଗ କଲାବେଳକୁ ଆର୍ଦ୍ରବସ୍ତ୍ର ପରିହିତ ଚୀନା ଯାତ୍ରୀ ଶୀତରେ ଥରି ଥରି ପଶି ଆସି ବିକୃତ ଇଂରାଜୀରେ ଜଣାଇଲେ, "ଦୁଇ ହାତରେ ପ୍ରପାତର ପାଣି ଧରିଲା ବେଳେ ଗିବାଉଣ୍ଡ କରି ମୁଣ୍ଡ ଉପରକୁ ଉଠିଗଲା ଓ ମୁଁ ଭିଜିଗଲି । ଓଃ, ଟିକିଏ ପାଣିର ଏତେ ଫୋର୍ସ୍ !" "ସେହି ଟିକିଏ ପାଣି କେତେ ଉପରୁ ପଡୁଛି, ସେ କଥା କାହିଁକି ଭାବିଲ ନାହିଁ ?" ପ୍ରଶ୍ନ କଲେ ଜଣେ ଯାତ୍ରୀ ।

ଟାରମିନାଲଠାକୁ ବାସ୍ ଫେରିଲା । ସନ୍ଧ୍ୟା ୭ଟା । କ୍ୟାଣ୍ଟିନରେ ଖାଇବାକୁ ବସିଲି । କାଗଜ ପ୍ଲେଟ ଓ କାଗଜ ଗ୍ଲାସରେ ଜଳଖିଆ ଓ ଚା ଆସିଲା । ଖାଇସାରି, ଧୂମପାନ ପାଇଁ ପାଇପ୍‌ରେ ଦିଆସିଲି ଲଗାଇଲି । ଜଳୁଥିବା କାଠିଟି ଅଇଁଠା ପ୍ଲେଟରେ ପକାଇଦେବା କ୍ଷଣି ଦପ୍ କରି ପ୍ଲେଟଟି ଜଳିଉଠିଲା ଓ ଗ୍ଲାସରେ ନିଆଁ ଲାଗିଲା । ଦେହରେ ଥାଏ ମୋଟା ସୁଏଟାର । ପାଖରେ ଝୁଲୁଥାଏ ଝରକାର ମୋଟା ଭେଲଭେଟ୍ ପର୍ଦ୍ଦା । ନିଆଁ ମାଡ଼ିବା ପୂର୍ବରୁ ପାଖରେ ଥିବା ଲୋକେ ମୋତେ ଟାଣିନେଲେ । ସୁଏଟାରରେ ନିଆଁ ଲାଗିଯାଇଥାଏ । ପାଣି ଢାଳି ନିଭାଇଲେ । ପ୍ଲେଟ ଓ ଗ୍ଲାସ୍‌ଗୁଡ଼ିକ କାଗଜ ପରିବର୍ତ୍ତେ ଅନ୍ୟ ପ୍ରକାର ଦାହ୍ୟ ବସ୍ତୁରେ ତିଆରି ବୋଲି ଜଣାଇ, ଜଣେ ଭଦ୍ରଲୋକ ଦୁଃଖ କଲେ, "ନିଶ୍ଚିତ ବିପଦରୁ ବର୍ତ୍ତିଗଲେ । ଆପଣଙ୍କ ସିନ୍‌ଥେଟିକ୍ ସୁଏଟାରରେ ନିଆଁ ଲାଗିଥିଲେ କାଚ ପରି ତରଳି ଯାଇ ଦେହରେ ଲାଖି ଯାଇଥାନ୍ତା ଓ ତାକୁ କାଢ଼ିଲାବେଳେ ଦେହରୁ ଚମଡ଼ା ଖୋଳପା ବାହାରି ଆସିଥାନ୍ତା" । ତଟସ୍ଥ ହୋଇ ତାଙ୍କ କଥା ଶୁଣିଲି ।

ରାତି ୮ଟା ବେଳେ ବଫ୍ଫାଲୋ ସହରରୁ କ୍ଲିଭ୍‌ଲ୍ୟାଣ୍ଡ ନାମକ ସହର ଅଭିମୁଖେ ବାସ୍ ଧରିଲି । ଗତ ରାତିର ଅନିଦ୍ରା ଓ ସାରାଦିନର ପରିଶ୍ରମ ଯୋଗୁଁ ଗଭୀର ନିଦରେ ଶୋଇଗଲି । କିନ୍ତୁ, କିଛି ସମୟ ପରେ ଖୁବ୍ ଗରମ ବୋଧ ହେବାରୁ ନିଦ ଭାଙ୍ଗିଗଲା । ଇଲେକ୍‌ଟ୍ରିକ୍ ହିଟାର ଦ୍ୱାରା ବାସ୍ ଭିତରଟା ଗରମ କରାଯାଇଛି ବୋଲି ଜାଣିଲି । ବାହାରକୁ ଚାହିଁଲାବେଳକୁ ଅଦ୍ଭୁତ ଦୃଶ୍ୟ । ଯେତେଦୂର ଆଖି ପଡ଼ିଲା, ସବୁ ଆଡ଼େ ଧଳା । ରାସ୍ତାଘାଟ, ଘରଦ୍ୱାର ଓ ଗଛପତ୍ର ବରଫରେ ଢାଙ୍କି ରହିଥାଏ । ଆକାଶରୁ ଝରି ଆସୁଥାଏ ତୂଳା ପରି ତୁଷାର । ଦୂରବର୍ତ୍ତୀ ଶସ୍ୟକ୍ଷେତ୍ରଗୁଡ଼ିକ ଧଳା ମାର୍ବଲ ରଙ୍ଗର ପଡ଼ିଆ ପରି ମସୃଣ ଦିଶୁଥାଏ ।

ରାଜମାର୍ଗର ଉଭୟ ପାଖରେ ଜମିଥାଏ ରାଶୀକୃତ ବରଫ । ବାସ ଧୀର ଗତିରେ ଚାଲିଥାଏ । ଆଗରେ ରାସ୍ତା ପରିଷ୍କାର ଲାଗି ଚାଲିଥାଏ ମସ୍ତବଡ଼ ଟ୍ର୍ୟାକ୍ଟର । ତା ଆଗରେ ଓ ପଛରେ ଲାଗିଥାଏ ବଡ଼ ବଡ଼ ଡେଣା । ଏପାଖରୁ ସେ ପାଖ ପଙ୍ଖା ବିଞ୍ଚିଲା ପରି ରାସ୍ତା ଉପରୁ ବରଫଗଦାକୁ ଦୁଇ ପାଖକୁ ଠେଲି ନେଉଥାଏ । ରାସ୍ତା କଡ଼ରେ ଅଟକିଥିବା ଶହ ଶହ କାର ବରଫ ଭିତରେ ବୁଡ଼ି ରହିଥାଏ ।

ଅନେକ ବିଳମ୍ବରେ, ରାତି ସାଢ଼େ ୨ଟା ବେଳେ କ୍ଲିଭଲ୍ୟାଣ୍ଡ ସହରରେ ବାସ୍ ପହଞ୍ଚିଲା । ଟାରମିନାଲ ଠାରେ ସିକାଗୋ ଯିବା ପାଇଁ ବାସ୍ ଛିଡ଼ା ଥାଏ । ତଳକୁ ଆସିଲା କ୍ଷଣି ହାତେ ମାପର ବରଫ ମଧ୍ୟରେ ଗୋଡ଼ ଦୁଇଟି ପୋତିଗଲା । ସିକାଗୋ ବାସ୍‌ରେ ବସିଲି । ସାରାରାତି ବାହାରେ ବରଫ ଝଡ଼ ଲାଗିଥାଏ । ସକାଳବେଳକୁ ତୁଷାରପାତ ବନ୍ଦ ହୋଇ ଆସିଲା । ବାସ୍ ଚାଲିଥାଏ ।

**୩୦ ନଭେମ୍ବର : ସିକାଗୋ**

ସକାଳ ସାଢ଼େ ୮ଟାରେ ସିକାଗୋ ସହରରେ ବାସ୍ ପଶିଲାବେଳକୁ ସମଗ୍ର ଅଞ୍ଚଳ ବରଫରେ ବୁଡ଼ିରହିଲା ପରି ଦିଶୁଥାଏ । ଆକାଶକୁ ଭେଦି ରହିଥିବା ସ୍କାୟ ସ୍କ୍ରାପାର ଗୁଡ଼ିକ ଧଳା ଦିଶିଲା । ଅନୁମାନ କଲି, ସିକାଗୋ ମହାନଗରୀରେ ଭ୍ରମଣ କରିବା ସମ୍ଭବ ହେବ ନାହିଁ । ବିଶ୍ୱବିଦ୍ୟାଳୟରେ ଥିବା କାର୍ଯ୍ୟକ୍ରମରେ ମଧ୍ୟ ଯୋଗ ଦେଇ ପାରିବି ନାହିଁ ବୋଲି ଜାଣିପାରିଲି ।

ଟାରମିନାଲରୁ ବାହାରି ଆସି ରାଜପଥରେ ପହଞ୍ଚିଲାବେଳକୁ ଆଣ୍ଠୁଏ ଉଚ୍ଚତାର ବରଫ । ରାସ୍ତା ଥାଏ ନିର୍ଜନ । ଦୈବାତ୍ ଜଣେ କୃଷ୍ଣକାୟ ଯୁବକଙ୍କୁ ଭେଟିଲି । ସେ Y.M.C.A. ହଷ୍ଟେଲକୁ ବାଟ ଦେଖାଇଦେଲେ । ମାଇଲେ ରାସ୍ତା ବରଫରେ

ଚାଲି ଚାଲି ସେଠାରେ ପହଞ୍ଚିଲି । କୋଠାର ୧୭ ତାଲାରେ ରୁମ୍ ମିଳିଲା । ସ୍ଥାନଟି ବେଶ୍ ଭଲ ଲାଗିଲା ।

ତଳେ କ୍ୟାଣ୍ଟିନରେ ଜଳଖିଆ ପାଇଁ ବସିଲି । ପରିଚାରକମାନେ ପ୍ରାୟ ସମସ୍ତେ ଥିଲେ କୃଷ୍ଣାଙ୍ଗ । ଅକସ୍ମାତ ଦୁଇଜଣ ଯୁବକ ପାଖକୁ ଆସି ସେମାନେ କେରଳର ଲୋକ ବୋଲି ପରିଚୟ ଦେଲେ । ନିଜ ଦେଶର ଲୋକଙ୍କୁ ଦେଖି ଖୁସି ହେଲି । ଉଭୟେ ଶିକ୍ଷିତ ଓ ସେଠାରେ ଚାରିବର୍ଷ କାମ କଲେଣି । ପରିଚାରକ ହେଲେ ମଧ୍ୟ ମୋଟା ବେତନ । ବିଶ୍ୱବିଦ୍ୟାଳୟରେ କାର୍ଯ୍ୟକ୍ରମ ଥିବା କଥା କହିବାରୁ ସେମାନେ ଜଣାଇଲେ, ବରଫ ରାସ୍ତାରେ ସେତେ ଦୂରକୁ ଯିବା ଲାଗି ଟ୍ୟାକ୍ସି ରାଜି ହେବ ନାହିଁ । ''ବରଫପାତ ଯୋଗୁଁ ସହରର ସ୍ୱାଭାବିକ ଜୀବନଯାତ୍ରା ଅଚଳ ହୋଇପଡ଼ିଛି । ଆପଣ ଖରାପ ସମୟରେ ପହଞ୍ଚିଛନ୍ତି ।''

ମଧ୍ୟାହ୍ନ ଭୋଜନ ପରେ ଆକାଶ ମୁକ୍ତ ଥିବା ଦେଖାଗଲା । କିନ୍ତୁ ରାସ୍ତାରେ ବରଫ ଭର୍ତ୍ତି ଥାଏ । ସତର ତାଲାରୁ ଝରକା ବାଟେ ଚାହିଁଲାବେଳେ ଜଣାଗଲା, ଯୁକ୍ତରାଷ୍ଟ୍ରର ଦ୍ୱିତୀୟ ଜନବହୁଳ ମହାନଗରୀ ସିକାଗୋ ସତେଯେପରି ନିଦ୍ରିତ । ରାଜପଥ ଜନଶୂନ୍ୟ ଥାଏ । କ୍ୱଚିତ ଖଣ୍ଡେ ଦୁଇଖଣ୍ଡି ଗାଡ଼ି ଧୀରେ ଧୀରେ ଚାଲିଥାଏ । ଦିନ ୩ଟା ବେଳେ କେରଳୀ ଯୁବକ ଦୁଇଜଣ ରୁମ୍‌କୁ ଆସି କହିଲେ, ''ଆମର ଜଣେ ବନ୍ଧୁ ଗାଡ଼ି ଦେଇଛନ୍ତି । ଆପଣଙ୍କୁ ବୁଲାଇବାକୁ ନେଇଯିବୁଁ ।'' ଜଣେ ଭାରତୀୟ ଆଗନ୍ତୁକଙ୍କ ପ୍ରତି ସେମାନଙ୍କ ଅଯାଚିତ ଶ୍ରଦ୍ଧା ପାଇଁ ଧନ୍ୟବାଦ ଜଣାଇଲି ।

ବାହାରେ ପ୍ରଚଣ୍ଡ ଶୀତ । ଦେହ ଥରୁଥାଏ । ଗାଡ଼ି ଭିତରେ ବି ଅସହ୍ୟ ଥଣ୍ଡା । ଦୁଇ ବନ୍ଧୁ ଦୁଇ ପାଖରେ ବସିଲେ । ମିଚିଗାନ୍ ଆଭେନିଉର ପ୍ରଶସ୍ତ ରାଜପଥରେ କାର ଚାଲିଲା । ପୃଥିବୀର ସବୁଠାରୁ ଉଚ୍ଚ ଅଟ୍ଟାଳିକାଗୁଡ଼ିକ ସେହିଠାରେ ରହିଛି ବୋଲି ସେମାନେ କହିଲେ । ଗୋଟିଏ ସୌଧ ଦିଗକୁ ଅଙ୍ଗୁଳି ଦେଖାଇ ନାୟାର ନାମକ ଯୁବକ କହିଲେ, ''୧୧୦ ତାଲା ବିଶିଷ୍ଟ ସେହି କୋଠା ପୃଥିବୀର ସର୍ବୋଚ୍ଚ ଘର ବୋଲି ଏମାନେ କହନ୍ତି ।'' ଆଉ ଗୋଟିଏ ଜାଗାରେ ୧୦୦ ତାଲା ବିଶିଷ୍ଟ କୋଠାଟିଏ ସେ ଦେଖାଇଦେଲେ । ସେହି ଅଞ୍ଚଳରେ ସହରର ମୁଖ୍ୟ ବାଣିଜ୍ୟ ପ୍ରତିଷ୍ଠାନଗୁଡ଼ିକ ରହିଛି, ଏବଂ ଗ୍ରୀଷ୍ମ ଋତୁରେ ସେଠାରେ ନାନା ପ୍ରକାର ବାଣିଜ୍ୟ ମେଳା ଓ ପ୍ରଦର୍ଶନୀ ଆୟୋଜନ କରାଯାଏ ବୋଲି ନାୟାର ବର୍ଣ୍ଣନା କଲେ । ପ୍ରବଳ ଥଣ୍ଡା ଯୋଗୁଁ ଗାଡ଼ି ଫେରାଇବାକୁ ଅନୁରୋଧ କଲି । ଅଳ୍ପ ସମୟ ପରେ ପୁଣି ବରଫ ବୃଷ୍ଟି ଆରମ୍ଭ ହେଲା ।

## ୧–୨ ଡିସେମ୍ବର : ସିକାଗୋରୁ ନିଉୟର୍କ

ବିଛଣାରୁ ଉଠି ଝରକା ବାଟେ ଚାହିଁ ଦେଖିଲି, ସିକାଗୋ ଥାଏ ବରଫମୟ । ଦିନ ୧୦ଟାରେ ନାୟାରଙ୍କ ସାଙ୍ଗରେ ବରଫଗଦା ଉପରେ ଚାଲି ଚାଲି ବାସ୍ ଟାରମିନାଲରେ ପହଞ୍ଚିଲି । ବିଦାୟବେଳେ ତାଙ୍କ ଆଖିରେ ଲୁହ ଦେଖି ଦୁଃଖିତ ହେଲି । ଅର୍ଥ ଉପାର୍ଜ୍ଜନ ଲାଗି ସୁଦୂର ସିକାଗୋରେ ରହିଲେ ସୁଦ୍ଧା ଜନ୍ମସ୍ଥାନ ପ୍ରତି ଗଭୀର ମମତା ଥିବା ଅନୁଭବ କରିପାରିଲି । "ଘରକୁ କେବେ ଫେରିବି, ଜାଣେ ନାହିଁ" ବୋଲି କହି ସେ ବିମର୍ଷ ମନରେ ଚାଲିଯିବାବେଳେ ମୁଁ ପଛରୁ ଅନେକ ସମୟ ଚାହିଁ ରହିଲି ।

ଦିନ ୧୨ଟାରେ ନିଉୟର୍କ ପଥରେ ବାସ୍ ଛାଡ଼ିଲା । ଦୀର୍ଘ ୨୦ ଘଣ୍ଟାର ବାସ୍‌ଯାତ୍ରା । ବିସ୍ତୀର୍ଣ୍ଣ ଅଞ୍ଚଳମାନ ବରଫରେ ବୁଡ଼ି ରହିଥାଏ । ବରଫାବୃତ ହ୍ରଦଗୁଡ଼ିକ ଦେଖି ପୃଥିବୀ ପୃଷ୍ଠର ମେରୁ ପ୍ରଦେଶର ରୂପ କଳ୍ପନା କରିହେଲା । ରାଜମାର୍ଗର କେତେକ ସ୍ଥାନରେ ଦୁର୍ଘଟଣାଗ୍ରସ୍ତ ଗାଡ଼ିଗୁଡ଼ିକ ବରଫ ତଳେ ପୋତି ପଡ଼ିଥାଏ । ମଧ୍ୟରାତ୍ରରେ ରାତ୍ରି ଭୋଜନ ପାଇଁ ଗୋଟିଏ ସହରରେ ଗାଡ଼ି ରହିଲାବେଳେ ଦେଖିଲି, ସେ ଅଞ୍ଚଳରେ ବରଫ ନାହିଁ ।

୨ ତାରିଖ ଡିସେମ୍ବର । ଦିନ ୧୦ ଟାରେ ନିଉୟର୍କରେ ପହଞ୍ଚିଲି ।

## ୪ ଡିସେମ୍ବର : ନିରାପତ୍ତା ପରିଷଦ

ଆମେରିକା ରହଣି ଶେଷ ହେବାକୁ ବସିଥାଏ । ଅଥଚ, ମିଳିତ ଜାତିର ନିରାପତ୍ତା ପରିଷଦର ବୈଠକ ସେତେପର୍ଯ୍ୟନ୍ତ ଦେଖିପାରି ନଥିଲି । ଅପରାହ୍ନ ୪ଟାରେ ଅଧିବେଶନ ବସିବ ଜାଣି ଅନୁମତିପତ୍ର ସଂଗ୍ରହ କଲି । ଶୁଣିଲି, ଇରାନ ସମସ୍ୟା ଓ ପଣବନ୍ଦୀ ବିଷୟରେ ପ୍ରସ୍ତାବ ନିଆଯିବ ।

୩ଟା ବେଳେ Y.M.C.A. ଭବନରୁ ବାହାରିଲାବେଳକୁ ଡାକ୍ତର ପ୍ରମୋଦ କୁମାର ଚାରିଟି ବଡ଼ ବଡ଼ ସୁଟକେଶ୍ ସହ ନାଇଜେରିଆ ଫେରିବା ଲାଗି ପ୍ରସ୍ତୁତ । ବିଦାୟକାଳୀନ ସଂବେଦନା ଆଦାନ ପ୍ରଦାନ ପରେ ହଠାତ୍ ସେ ସାହାଯ୍ୟ ପାଇଁ ଅନୁରୋଧ କଲେ । ଅର୍ଥାତ୍, ବାସ୍‌ଷ୍ଟ୍ୟାଣ୍ଡ ପର୍ଯ୍ୟନ୍ତ ତାଙ୍କର ଦୁଇଟି ସୁଟକେଶ ଧରି ଯିବାକୁ ହେବ । ସହରରେ କୁଲି ନାହାନ୍ତି, ଡାକ୍ତରବାବୁ ମଧ୍ୟ ଟ୍ୟାକ୍ସିରେ ପଇସା ଖର୍ଚ୍ଚ କରିବାକୁ ଚାହାନ୍ତି ନାହିଁ । ଅଗତ୍ୟା ତାଙ୍କର ମାଲ ଧରି ଚାଲିଲି । ମନେ ମନେ କୃପଣ ଡାକ୍ତରଙ୍କୁ ଗାଳି ଦେଇ ବାସ୍ ଷ୍ଟ୍ୟାଣ୍ଡରେ ଛାଡ଼ିଲି । ସେଠାରୁ ଦୌଡ଼ି ଦୌଡ଼ି ଫେରିଲି ମିଳିତ ଜାତିର ଦ୍ୱାର ଦେଶକୁ ।

ସମୟ ହୋଇଥାଏ ୪ ଟା ୪୫ ମିନିଟ । ପ୍ରବେଶ ପଥରେ ପହଞ୍ଚି ଶୁଣିଲି, ମାତ୍ର ୧୫ ମିନିଟ ପାଇଁ ନିରାପତ୍ତା ପରିଷଦ ବସିଥିଲା । ଜଟିଳ ସମସ୍ୟା ସମ୍ପର୍କରେ ଅଧିକ ଚିନ୍ତା ଆବଶ୍ୟକ ବୋଲି ମତ ଦେଇ ମାନ୍ୟବର ସଦସ୍ୟମାନେ ଅନ୍ୟ ଏକ ଦିନକୁ ବୈଠକ ମୁଲତବି ରଖି ଚାଲିଗଲେଣି । ଏକଥା ଅଛପା ନଥାଏ ଯେ କୋର୍ଟ କଚେରୀରେ ମାଲି ମୋକଦ୍ଦମା ଗଡ଼ି ଚାଲିଲା ପରି ନିରାପତ୍ତା ପରିଷଦରେ ମଧ୍ୟ ଆନ୍ତର୍ଜାତିକ ବିବାଦଗୁଡ଼ିକ ଗଡ଼ି ଗଡ଼ି ଚାଲେ । ଗୋଟିଏ ଗୋଟିଏ ବିବାଦ ୩୦ ବର୍ଷ ଲାଗିଥିବାର ଦୃଷ୍ଟାନ୍ତ ମଧ୍ୟ ରହିଛି ।

ରାତିରେ ଶାନ୍ତି ଓ ଉମାବାବୁଙ୍କ ଘରେ ବିଦାୟ ଭୋଜନରେ ତୃପ୍ତ ହେଲି । ଯୁକ୍ତରାଷ୍ଟ୍ରରେ ସେହି ରାତି ଥିଲା ମୋର ଶେଷ ରାତି ।

## ୫ ଡିସେମ୍ବର : ଆମେରିକାରୁ ବିଦାୟ

ଦିନ ୨ ଟାରେ ନିଉୟର୍କ ଆନ୍ତର୍ଜାତିକ ବିମାନ ବନ୍ଦରରେ ପହଞ୍ଚିଲି । କଷ୍ଟମସ୍ ଗେଟ୍ ଅତିକ୍ରମ କରି ଭିତରେ ପଶିଲାବେଳେ ଘୋଷଣା ଶୁଭିଲା–'ନୂତନ ଦିଲ୍ଲୀ ଯିବାକୁ ଥିବା ଏୟାର ଇଣ୍ଡିଆ ବିମାନ ଦିନ ୩ଟା ପରିବର୍ତ୍ତେ ରାତି ୧ଟାରେ ନିଉୟର୍କ ଛାଡ଼ିବ ।' ଚରମ ବିରକ୍ତି ସତ୍ତ୍ୱେ, ଅସୀମ ଧୈର୍ଯ୍ୟ ସହ ଦଶଘଣ୍ଟା ସମୟ ବସିରହିବା ବ୍ୟତୀତ ଅନ୍ୟ ଉପାୟ ନଥାଏ ।

ଜନ୍ କେନେଡି ଏୟାର ପୋର୍ଟର ଅପେକ୍ଷା କକ୍ଷଗୁଡ଼ିକ ଅତ୍ୟନ୍ତ ସୁନ୍ଦର ଓ ସୁସଜ୍ଜିତ । ପାଖରେ ଥାଏ ନାନା ଜିନିଷର ମନୋହରୀ ଦୋକାନ । ସ୍ମୃତି ନିଦର୍ଶନ ଭାବେ ଛୋଟ ବଡ଼ ଅନେକ କିସମର ସାମଗ୍ରୀ କିଣିବାକୁ ମିଳେ । କିନ୍ତୁ, ଦାମ୍ ଅସମ୍ଭବ ।

ସନ୍ଧ୍ୟା ଆସିଯାଇଥାଏ । ସୁବିସ୍ତୀର୍ଣ୍ଣ ଅପେକ୍ଷାଗୃହର ଗୋଟିଏ ଦୂରବର୍ତ୍ତୀ ନିଭୃତ କୋଣରେ ଏକାକୀ ବସିଥିବା ଜଣେ ଆମେରିକାନ୍ ବୈଷ୍ଣବଙ୍କୁ ଦେଖିପାରିଲି । ଅନୁମତି ନେଇ ତାଙ୍କ ପାଖରେ ବସିଲି । 'ହରେକୃଷ୍ଣ' ଶବ୍ଦ ଉଚ୍ଚାରଣ କରି ସେ ନମସ୍କାର ଜଣାଇଲେ । ଗୌରବର୍ଣ୍ଣ ରୂପ, ମୁଣ୍ଡିତ ମସ୍ତକ, ତିଳକ ରଞ୍ଜିତ କପାଳ ଓ ହାତରେ ମାଳଝୁଲା ଦେଖି ଧାରଣା ହେଲା, ସେ ଜଣେ ପରମ ଭକ୍ତ । ତାଙ୍କ ସହିତ ହୋଇଥିବା କଥାବାର୍ତ୍ତା ଏଠାରେ ଉଲ୍ଲେଖ କରୁଛି, କାରଣ ସେଥିରୁ କିଛି ଶିକ୍ଷା ପାଇଥିଲି ।

ପ୍ରଶ୍ନ ଉଥାପନ କଲି, "କୃଷ୍ଣ ଚେତନା କେନ୍ଦ୍ରରେ କୃଷ୍ଣଲୀଳାର ଚିତ୍ରପଟମାନ ଦେଖି ଦ୍ୱିଧା ବୋଧ କଲି ଯେ, ଯେଉଁ ପୌରାଣିକ ବର୍ଣ୍ଣନାମାନ ଭାରତରେ ଆମେ ଅନ୍ଧବିଶ୍ୱାସ ବୋଲି ପ୍ରତ୍ୟାଖ୍ୟାନ କରିଛୁଁ, ଆମେରିକାରେ ଆପଣଙ୍କ ପରି ଜ୍ଞାନୀ ଓ ବିଚକ୍ଷଣ ବ୍ୟକ୍ତିମାନେ ସେଥିରେ ବିଶ୍ୱାସ ରଖିଛନ୍ତି କିପରି ! କାଳିୟ

ଦମନ କିମ୍ବା ବସ୍ତ୍ରହରଣ ପ୍ରଭୃତି ଅବାନ୍ତର ଓ ହାସ୍ୟାସ୍ପଦ ଦୃଶ୍ୟରୁ ଆପଣମାନେ କାହିଁକି ଓ କେଉଁ ପ୍ରକାର ତୃପ୍ତି ପାଇଥାନ୍ତି, ତାହା କଳନା କରି ପାରୁନାହିଁ ।''

ତାଙ୍କ ମୁଖମଣ୍ଡଳ ହଠାତ୍ ଗମ୍ଭୀର ହେବା ଦେଖି ଅନୁମାନ ହେଲା, ସେ ମୋ ପ୍ରଶ୍ନ ଶୁଣି ଅସନ୍ତୁଷ୍ଟ । କିଛି ସମୟ ନୀରବ ରହିଲା ପରେ ସେ କହିଲେ–

''ଏପରି ପ୍ରଶ୍ନର ଉତ୍ତର ଦେବାକୁ ମୋର ଇଚ୍ଛା ନାହିଁ । ତଥାପି, ଅତି ମାମୁଲି କଥାଟିଏ କହିବି । ଧରାଯାଉ, ମୋ ଘରେ ଖାଇବା ପାଇଁ ଆପଣଙ୍କୁ ନିମନ୍ତ୍ରଣ କରି ନେଇଯିବି । ଟେବୁଲ ଉପରେ ୧୧ ପ୍ରକାର ଖାଦ୍ୟପେୟ ରଖା ଯାଇଥିବ, ଯଥା– ମାଂସଚପ୍, ଅଣ୍ଡାଭଜା, କେକ୍, ମିଷ୍ଟାନ୍ନ, ମଦ, ଦୁଧ, ଚା, କଫି, ଲେମ୍ବୁ ଆଚାର ଓ ଆଇସ୍‌କ୍ରୀମ୍, ଏବଂ ଅନ୍ୟ ଏକ ଖାଦ୍ୟ । ମୋଟ ୧୧ ଟି ଖାଦ୍ୟରୁ ୧୦ ଟି ଖାଦ୍ୟ ଆପଣ ଆଗରୁ ଦେଖିଥିବେ, ଖାଇଥିବେ ଓ ସେଗୁଡ଼ିକର ସ୍ୱାଦ ଜାଣିଥିବେ । କିନ୍ତୁ ଏକାଦଶ ଖାଦ୍ୟଟି ଜୀବନରେ କେବେହେଲେ ଦେଖି ନଥିବେ କିମ୍ବା ଖାଇ ନଥିବେ । ମୁଁ ଯଦି ସେହି ଅଜ୍ଞାତ ଖାଦ୍ୟର ସ୍ୱାଦ ବିଷୟରେ ପ୍ରଶ୍ନ କରିବି, ଆପଣ ସଠିକ୍ ଉତ୍ତର ଦେଇ ପାରିବେ କି ? କହି ପାରିବେ କି ତାହା ମିଠା ବା ଖଟା, ଗରମ ବା ଥଣ୍ଡା, ରୁଚିକର ବା ଅରୁଚିକର ?''

ଉତ୍ତର ଦେଲି, ''ନା, ପାରିବି ନାହିଁ । ଯାହା ଆଗରୁ କେବେ ଚାଖି ନାହିଁ, ତାହାର ସ୍ୱାଦ ଅନୁମାନ କରିବି କିପରି ?''

ହସିଦେଇ ସେ ବ୍ୟାଖ୍ୟା କଲେ, ''ଠିକ୍ ସେହିପରି, କୃଷ୍ଣଭକ୍ତିର ସ୍ୱାଦ ଯିଏ ଜାଣି ନଥିବ ବା ପାଇ ନଥିବ, ସେ କଦାପି ଅନୁମାନ କରିପାରିବ ନାହିଁ ଭକ୍ତିର ମାଧୁର୍ଯ୍ୟ କେତେଦୂର ଆନନ୍ଦଦାୟକ ଓ ତୃପ୍ତିକର । କୃଷ୍ଣଭକ୍ତମାନେ ଭକ୍ତିମାର୍ଗର ସ୍ୱାଦ ଅନୁଭବ କଲାପରେ, ସେମାନଙ୍କ ପ୍ରତି କୃଷ୍ଣଙ୍କ ବାଲ୍ୟଲୀଳା ବା ଗୋପୀଲୀଳା, କାଳିୟଦମନ ଅଥବା ବସ୍ତ୍ରହରଣ, ଏହା ସବୁ ସୁମଧୁର ଓ ମହତ୍ତ୍ୱମୟ ।''

ମୁଁ ଅନ୍ୟ କୌଣସି ପ୍ରଶ୍ନ ପଚାରିବାକୁ ସାହସ କଲି ନାହିଁ । ସେ ମଧ୍ୟ କାଳକ୍ଷେପ ନକରି ଆଖିବୁଜି ମାଳ ନାମ ନେବାକୁ ଆରମ୍ଭ କଲେ । ତାଙ୍କ ମହାର୍ଘ କଥାଟି ଡାଏରୀରେ ଲେଖି ରଖିଲି ।

ରାତି ୧ ଟାରେ ବିମାନ ଛାଡ଼ିଲା । ସେତେବେଳକୁ ଡିସେମ୍ବର ୬ ତାରିଖ । ଆମେରିକା ଭ୍ରମଣ ଶେଷ ହେଲା । ରାତି ମଧ୍ୟରେ ଆଟଲାଣ୍ଟିକ ଅତିକ୍ରମ କରି ସକାଳ ୮ ଟାରେ ଲଣ୍ଡନ ଓ ସେଠାରେ ଦୁଇଘଣ୍ଟା ରହିଲାପରେ, ବିମାନ ସିଧା ଚାଲିଲା ନୂତନ ଦିଲ୍ଲୀ । ଡିସେମ୍ବର ୭ତାରିଖ ପ୍ରଭାତ ସମୟରେ ଦିଲ୍ଲୀ ବିମାନ ବନ୍ଦରରେ ଅବତରଣ କଲି ।



ଯୁକ୍ତରାଷ୍ଟ୍ର କଂଗ୍ରେସ ଭବନ ସମ୍ମୁଖରେ ଲେଖକ



ଯୁକ୍ତରାଷ୍ଟ୍ର ସଭାପତିଙ୍କ "ହ୍ୱାଇଟ ହାଉସ" ସମ୍ମୁଖରେ



ଆମେରିକା ନିବାସୀ ଓଡ଼ିଆ ବିନୋଦ ଓ ବନ୍ଦିତା ନାୟକଙ୍କ ସହିତ ଲେଖକ



ଆବ୍ରାହାମ ଲିଙ୍କନ୍ ସ୍ମୃତି ମନ୍ଦିର



କଂଗ୍ରେସ ଲାଇବ୍ରେରୀର ପ୍ରବେଶ ପଥ



ଉଆସିଂଟନ ସ୍ମୃତିସ୍ତମ୍ଭ



କେନେଡି ସେଣ୍ଟାର



ମୁକ୍ତି ମୂର୍ତ୍ତି



ନିଉୟର୍କସ୍ଥିତ ଓଡ଼ିଆ ଡାକ୍ତର ଉମାମିଶ୍ର ଓ ଶାନ୍ତି ମିଶ୍ରଙ୍କ ଘରେ ଲେଖକ



ମିଳିତ ଜାତିର କାର୍ଯ୍ୟାଳୟ



ଜର୍ଜ ଉଆସିଂଟନଙ୍କ ଗୃହ ସମ୍ମୁଖରେ



କାନାଡ଼ା, ନାଏଗ୍ରା ଜଳପ୍ରପାତର ଦୃଶ୍ୟ

# ପୁନଶ୍ଚ ଇଂଲଣ୍ଡ ଯାତ୍ରା, (୧୯୮୧)

## ୨୪

## 'ଭାରତ ବିଭାଜନ ଓ ସ୍ୱାଧୀନତା' ପୁସ୍ତକ ରଚନା

### ପୁନର୍ବାର ଲଣ୍ଡନ ଯିବା ଆବଶ୍ୟକତା

୧୯୭୬ ମସିହାରେ ଭାରତର ଶେଷ ବ୍ରିଟିଶ ବଡ଼ଲାଟ ଲର୍ଡ଼ ମାଉଣ୍ଟବ୍ୟାଟେନଙ୍କ ସହିତ ସାକ୍ଷାତ ସମ୍ପର୍କରେ ଆଗରୁ ଲେଖିଛି । ମୁଁ ଯେତେବେଳେ ତାଙ୍କ ବ୍ୟକ୍ତିଗତ ଫାଇଲ ଦେଖିବାକୁ ଆଗ୍ରହ ପ୍ରକାଶ କରିଥିଲି, ଚତୁରତା ସହ ସେ ମୋ ଅନୁରୋଧଟିକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ସେତେବେଳେ ହଠାତ୍ ତାଙ୍କ ମୁହଁରୁ ବାହାରି ପଡ଼ିଥିଲା, ''ମୋ ମୃତ୍ୟୁ ପରେ ଐତିହାସିକମାନେ ମୋର ସମସ୍ତ କାଗଜପତ୍ର ଦେଖିବେ, ଏବେ ନୁହେଁ ।'' ମୁଁ ନିରାଶ ହୋଇ ଫେରିଥିଲି । ତିନିବର୍ଷ ପରେ, ୧୯୭୯ ଅଗଷ୍ଟ ୨୭ ତାରିଖ ଦିନ, ଆଇରିସ୍ ଆତତାୟୀଙ୍କ ବୋମା ମାଡ଼ରେ ସେ ନିହତ ହେଲେ ।

ସେହିବର୍ଷ ଶେଷବେଳକୁ ଆମେରିକାରୁ ଫେରିବା ପରେ ମାଉଣ୍ଟବ୍ୟାଟେନଙ୍କ ଫାଇଲ୍‌ଗୁଡ଼ିକ ଅନୁଧ୍ୟାନ କରି ସ୍ୱାଧୀନତା ପ୍ରାପ୍ତି ସମୟର ଇତିହାସ ଲେଖିବା ପାଇଁ ମନ ଅସ୍ଥିର ହେଲା । ବିଳମ୍ବରେ କଲେ, ଇଂରେଜ ଐତିହାସିକମାନେ ଭାରତ ବିଭାଜନର ଇତିହାସ ଲେଖି ପ୍ରକୃତ ଘଟଣା ବିକୃତ କରିଦେବେ ବୋଲି ଅନୁମାନ କଲି । ଏହି ଦୃଷ୍ଟିରୁ, ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଓ ବ୍ରିଟିଶ କାଉନସିଲ ଆନୁକୂଲ୍ୟରେ ପୁଣିଥରେ ଲଣ୍ଡନ ଯିବା ନିମନ୍ତେ ଉଦ୍ୟମ ଚଳାଇଲି । ୧ ବର୍ଷ ୬ ମାସ ପରେ ଉଦ୍ୟମ ସଫଳ ହେଲା ।

### ସସ୍ତ୍ରୀକ ଯିବା ସମସ୍ୟା

ଲଣ୍ଡନ ଯିବା ଲାଗି ବ୍ୟବସ୍ଥା କରୁଥିଲାବେଳେ ସ୍ତ୍ରୀ ରାଜଶ୍ରୀ ସାଙ୍ଗରେ ଯିବା ପାଇଁ ଆଗ୍ରହ ଦେଖାଇଲେ । ସେତେବେଳକୁ ଅନ୍ୟ ଏକ ବିଦେଶ ଯାତ୍ରା ବିଫଳ ହୋଇସାରିଥାଏ । ବିଷୟଟି ଉଲ୍ଲେଖ କରୁଛି । ୧୯୮୧ ମସିହା ଆରମ୍ଭରେ Indian Council for Cultural Relation ମୋତେ ଉତ୍ତର ଆମେରିକାର ମେକ୍ସିକୋ ଦେଶକୁ ଦୁଇ ବର୍ଷ ପାଇଁ ପଠାଇବା ଲାଗି ମନୋନୀତ କରିଥିଲେ । ମେକ୍ସିକୋ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ରୂପେ ଦୁଇବର୍ଷ ଚାକିରି କଲେ ପ୍ରଚୁର

ଅର୍ଥ ମିଳିବ ଜାଣି ମୁଁ ସମ୍ମତି ଦେଇଥିଲି । ସ୍ତ୍ରୀଙ୍କୁ ସାଙ୍ଗରେ ନେବାଲାଗି ବ୍ୟବସ୍ଥା ଥାଏ । ସେପରି ସୁଯୋଗର ସଂବାଦରେ ସେ ଅତ୍ୟନ୍ତ ଆନନ୍ଦିତ ଥିଲେ ।

ଯେଉଁଦିନ ଦିଲ୍ଲୀକୁ ସମ୍ମତି ପଠାଇବା କଥା, ସେହିଦିନ ଦୈବାତ୍ ସାନଭାଇ ମନୋଜ ପଣ୍ଡିଚେରୀରୁ ଆସି ପହଞ୍ଚିଲେ । ତାଙ୍କୁ ଖୁସିମନରେ ଶୁଭ ସଂବାଦ ଜଣାଇ କହିଲି, ‘‘ସାଗର ଦ୍ୱୀପର ପୈତୃକ ସମ୍ପତ୍ତି ଗଙ୍ଗାରେ ଗଲା । ଘରର ଆର୍ଥିକ ଅବସ୍ଥା ଭଲ ନୁହେଁ । ମୋ ଚାକିରି ଶେଷ ହେବା ଉପରେ । ଅବସର ପରେ ପେନ୍‌ସନ୍ ନାହିଁ । ତେଣୁ, ମେକ୍‌ସିକୋ ସୁଯୋଗ ଛାଡ଼ିବି ନାହିଁ । ଦୁଇ ବର୍ଷରେ ସବୁ ଖର୍ଚ୍ଚ ବାଦ୍, ଦୁଇଲକ୍ଷ ବଳକା ହେବ । ଇଚ୍ଛା କଲେ, ଆଉ ଦୁଇବର୍ଷ ରହିପାରିବି । ଯେତିକି ଟଙ୍କା ଆଣିବି, ତା ସୁଧରେ ବୁଢ଼ାକାଳେ ସୁଖରେ ରହିବି । ମୂଳଧନ ପୁଅ ନାତି ପାଇଁ ରହିବ ।’’

ଆନନ୍ଦରେ ଗଦ୍‌ଗଦ ହୋଇ ମୁଁ ଏକଥା କହିଲାବେଳେ ମନୋଜ ମୁହଁରେ କୌଣସି ପ୍ରତିକ୍ରିୟା ଦେଖିଲି ନାହିଁ । କେବଳ ଏତିକି ଶୁଣିଲି, ‘‘ସନ୍ଧ୍ୟାବେଳେ ଆଲୋଚନା କରିବା । ଦିଲ୍ଲୀକୁ ଆଗାମୀ କାଲି ଉତ୍ତର ପଠାଇବେ ।’’ ସନ୍ଦେହ ନ କରି ମୁଁ କ୍ଲାସ ନେବାକୁ ଚାଲିଗଲି । ।

ସନ୍ଧ୍ୟାବେଳେ ମା, ସ୍ତ୍ରୀ, ପୁଅ, ଝିଅ ଓ ବୋହୂଙ୍କ ଆଗରେ ମନୋଜ ତାଙ୍କ ମତାମତ ପ୍ରକାଶ କଲେ । ‘‘ଯେଉଁମାନେ ଅର୍ଥଲୋଭରେ ବିଦେଶରେ ଚାକିରି କରନ୍ତି, ଆଧ୍ୟାତ୍ମିକ ଦୃଷ୍ଟିରୁ ସେମାନେ ଉଚ୍ଚସ୍ତରର ମନୁଷ୍ୟ ନୁହନ୍ତି । ଯେଉଁମାନେ ସୁଧ କଥା ଭାବନ୍ତି, ସେମାନେ ଆହୁରି ନିକୃଷ୍ଟ । ମା’ ଙ୍କ ବୟସ ୮୫ । ତିନିଟା ନାତି ଦୁଗ୍ଧପୋଷ୍ୟ । ସେମାନଙ୍କୁ ଛାଡ଼ି ବିଦେଶରେ ରହିବା କଥା ଚିନ୍ତାକରିବା ଅନ୍ୟାୟ । କାହାର କିଛି ଘଟିଲାବେଳେ ମନେ ମନେ ଖୋଜିବେ, କିନ୍ତୁ ପାଇବେ ନାହିଁ । ମେକ୍‌ସିକୋରୁ ଟଙ୍କା ପାଇବା ଆଶାରେ ଅନ୍ୟମାନଙ୍କ ପ୍ରତି ଅବହେଳା କରିବା ଉଚିତ ନୁହେଁ ।’’ ହତଭମ୍ବ ଅବସ୍ଥାରେ ଚାହିଁଲାବେଳକୁ ପରିବାରର ସମସ୍ତେ ମନୋଜ ପକ୍ଷରେ । ମୁଁ ଏକାକୀ ମୋ ସପକ୍ଷରେ ।

ମେକ୍‌ସିକୋ ଯିବା ହେଲା ନାହିଁ । ଅଧ୍ୟାପକ ବନ୍ଧୁମାନେ ଏକଥା ଶୁଣି ମୋତେ ଧିକ୍କାର ଦେଲେ । ଜଣେ କହିଥିଲେ, ‘‘ସଂସାରତ୍ୟାଗୀ ଆଶ୍ରମବାସୀ ସାନଭାଇର ତାତ୍ତ୍ୱିକ ବାଣୀ ଆପଣ ଶୁଣୁଥିଲେ କାହିଁକି ? ଯଦି ଶୁଣିଲେ, ମାନିଲେ କାହିଁକି ? ମନୋଜବାବୁଙ୍କ କଥାରେ ପଡ଼ି ମସ୍ତବଡ଼ ଭୁଲ କଲେ ।’’ ବାସ୍ତବିକ, ସାନଭାଇ ପାଇଁ ଚାରି ପାଞ୍ଚ ଲକ୍ଷ ଟଙ୍କା ଉପାର୍ଜନ କରିପାରିଲି ନାହିଁ । ତଥାପି, ସେଥିପାଇଁ ମନସ୍ତାପ କରିନାହିଁ, କାରଣ ସଦାବେଳେ ମୋର ବିଶ୍ୱାସ ଯେ ମନୋଜ କଥାରେ ମୂଲ୍ୟ ଅଛି ।

ଏ ଘଟଣା ଘଟିଥିଲା ଫେବ୍ରୁଆରୀ ମାସରେ । ମେକ୍ସିକୋ ଯାତ୍ରା ବନ୍ଦ ହେବା ଯୋଗୁଁ ସ୍ତ୍ରୀଙ୍କ ମନୋଭାବ ଜାଣିପାରି ନଥିଲେ ମଧ୍ୟ, ଅଳ୍ପ ସମୟ ପରେ ବିଲାତ ଯିବା ସୁଯୋଗ ପାଇ ତାଙ୍କୁ ସାଙ୍ଗରେ ନେଇ ଯିବା ଲାଗି ଇଚ୍ଛା କଲି । କିନ୍ତୁ, ତାଙ୍କ ପାଇଁ ଭିସା ପାଇବା କଷ୍ଟକର ହେଲା । ବ୍ରିଟିଶ୍ ଦୂତାବାସ ମାଗିବସିଲେ ଦୁଇଟି ଦଲିଲ, ବିବାହ ସାର୍ଟିଫିକେଟ୍ ଓ ଇଂଲାଣ୍ଡରେ ସ୍ତ୍ରୀଙ୍କ ଖର୍ଚ୍ଚ ବହନ ପାଇଁ ପ୍ରସ୍ତୁତ ଥିବା ସେଠାକାର ଦୁଇଜଣ ବ୍ୟକ୍ତିଙ୍କ ଗ୍ୟାରେଣ୍ଟି ପତ୍ର । ଗ୍ୟାରେଣ୍ଟି ପତ୍ର ପାଇଗଲି, କିନ୍ତୁ ବିବାହ ସାର୍ଟିଫିକେଟ୍ ! ଦୂତାବାସକୁ ଲେଖିଲି, ‘‘ହିନ୍ଦୁ ସମାଜରେ ବିବାହ ସାର୍ଟିଫିକେଟ ନାମକ ପ୍ରମାଣପତ୍ର ନଥାଏ, ଏବଂ ମୋର ମଧ୍ୟ ନାହିଁ ।’’ ଉତ୍ତର ଆସିଲା, ‘‘କୋର୍ଟରେ ମାଜିଷ୍ଟ୍ରେଟଙ୍କ ସମ୍ମୁଖରେ ଶପଥପାଠ ପୂର୍ବକ ବିବାହ ବିଷୟ ସ୍ୱୀକାର କରିଥିବା ପ୍ରମାଣପତ୍ର ଦାଖଲ କରିବା ଆବଶ୍ୟକ ।’’ ବାଧ୍ୟ ହୋଇ ତାହାହିଁ କଲି ।

### ଲଣ୍ଡନ ଅନୁଭୂତି : ଯୁବରାଜ ଚାର୍ଲସ୍‌ଙ୍କ ବିବାହ ଉତ୍ସବ

୧୯୮୧ ଜୁଲାଇ ୨୪ ତାରିଖ ଅପରାହ୍ନରେ ଲଣ୍ଡନରେ ସସ୍ତ୍ରୀକ ପହଞ୍ଚିଲି । ଗାର୍ଡ଼ନ ହାଉସ ନାମକ ହୋଟେଲରେ ସ୍ଥାନ ପାଇଲା ପରେ ତୁରନ୍ତ ମୋ କାମ ଆରମ୍ଭ କରିବି ବୋଲି ତତ୍ପର ହେଲି । ସେତେବେଳକୁ ଲଣ୍ଡନ ସହର ଯୁବରାଜ ଚାର୍ଲସଙ୍କ ବିବାହ ଉତ୍ସବ ଲାଗି ପ୍ରସ୍ତୁତ ହେଉଥାଏ । ରାଣୀ ଏଲିଜାବେଥଙ୍କ ଜ୍ୟେଷ୍ଠପୁତ୍ର ଭାବରେ ସେ ଥିଲେ ଇଂଲଣ୍ଡର ଭବିଷ୍ୟତ ରାଜା । ତାଙ୍କ ବିବାହ ଉତ୍ସବ ଏକ ଜାତୀୟ ଉତ୍ସବ ରୂପେ ପାଳନ କରାଯାଉଥିବା ଲକ୍ଷ୍ୟ କଲି ।

ବିବାହ ତାରିଖ ଥାଏ ଜୁଲାଇ ୨୯ । ୨୫ ତାରିଖ ପାଖରୁ ଆରମ୍ଭ ହେଲା ଆମୋଦ ପ୍ରମୋଦ । ପ୍ରଥମରୁ ଶେଷ ପର୍ଯ୍ୟନ୍ତ ବିବାହ ଉତ୍ସବ ଦେଖିଲାପରେ ରାଜଶ୍ରୀ ଏକ ପ୍ରବନ୍ଧ ‘ସମାଜ’ ସଂବାଦପତ୍ରରେ ପ୍ରକାଶ କରିଥିଲେ । ବିବାହ ପରେ ବରକନ୍ୟାଙ୍କୁ ବକିଂହାମ୍ ରାଜପ୍ରାସାଦର ବାଲକୋନିରେ ଦେଖିବା ଲାଗି ମୁଁ ଓ ସ୍ତ୍ରୀ ଯେଉଁ ଦୁର୍ଦ୍ଦଶା ଭୋଗିଥିଲୁଁ, ତାହା ମନେ ରହିଲା । ଅସଂଖ୍ୟ ଲୋକଙ୍କ ଠେଲାପେଲା ଭିତରେ ମୁଁ ପୁରୁଷମାନଙ୍କ ଘଣ୍ଟାଚକଟା ମଧ୍ୟରେ ଅଣନିଶ୍ୱାସୀ ହୋଇପଡ଼ିଲା ବେଳେ, ସେ ମହିଳା ସ୍ରୋତରେ ହଜିଯାଇଥାନ୍ତି । ଦୂରରୁ ଥରେ ମାତ୍ର ତାଙ୍କର କରୁଣ ସ୍ୱର କାନରେ ପଡ଼ିଥିଲା, ‘‘ନିଶ୍ୱାସ ନେଇ ପାରୁନାହିଁ, ବାହାରିବି କିପରି !’’

କୌଣସି ପ୍ରକାରେ ରକ୍ଷାପାଇଁ ଭିଡ଼ ଭିତରୁ ବାହାରି ଆସି ନିକଟବର୍ତ୍ତୀ ପାର୍କରେ ପଶିଲାବେଳେ ସେ ତାଙ୍କର ଦୁର୍ଦ୍ଦଶା ବର୍ଣ୍ଣନା କରି ଦୁଃଖ କଲେ, ‘‘ବଞ୍ଚିଯାଇଛି, ଭିଡ଼ ଭିତରେ ମରିଯାଇଥାନ୍ତି ।’’ ମୁଁ ରହସ୍ୟ କଲି, ‘‘ବରକନ୍ୟା ଦେଖିବା

ପାଇଁ ବ୍ୟାକୁଳତା ହେଉଛି ସ୍ତ୍ରୀଜାତିର ଗୋଟିଏ ମାନସିକ ରୋଗ । ସେଣ୍ଟ ପଲ୍ ଗିର୍ଜା ଆଗରେ ସକାଳ ପାଖରୁ ବସି ରହି ବରଯାତ୍ରୀ ଓ କନ୍ୟାଯାତ୍ରୀମାନଙ୍କୁ ଦେଖିଲାପରେ ବି ମନ ତୃପ୍ତ ହେଲା ନାହିଁ । ଜିଦ୍ ଧରି ବସିଲ, ରାଜପ୍ରାସାଦରେ ବରକନ୍ୟାଙ୍କୁ ଦେଖିବ । ତୁମ କଥାରେ ବାଧ୍ୟ ହୋଇ ନେଇଗଲି । ତୁମେ ଯେପରି ମରିଥାନ୍ତ, ମୁଁ ବି ସେହିପରି ମରିଥାନ୍ତି ।'' ପ୍ରକୃତ ପକ୍ଷେ, ସେ ଦିନର ଅନୁଭୂତି ଭୁଲି ହୁଏନା । ଜାତୀୟ ଉନ୍ମାଦନା ସହ ଆନନ୍ଦ ଉତ୍ସବ ! ମହା ସମାରୋହରେ ପାଳିତ ହୋଇଥିବା ସେହି ବିବାହ କଥା ମନେପଡ଼ିଲେ ତାହାର ୧୪ ବର୍ଷ ପରେ ଆଜି ଆଶ୍ଚର୍ଯ୍ୟବୋଧ ହୁଏ ଯେ, ଯୁବରାଜ ଚାର୍ଲସ ଓ ଡାଇନାଙ୍କ ବିବାହ ପରେ ସ୍ୱାମୀ ସ୍ତ୍ରୀଙ୍କ ପରସ୍ପର ପ୍ରତି ସନ୍ଦେହ ଏବଂ ଉଭୟଙ୍କର ଚାରିତ୍ରିକ ସ୍ଖଳନ ଯୋଗୁଁ ବ୍ରିଟିଶ ରାଜବଂଶର ସମ୍ମାନ ଏବେ ଧୂଳିସାତ୍ ହୋଇଛି ।

## 'ମାଉଣ୍ଟବ୍ୟାଟେନ ପେପାର' ରୁ ତଥ୍ୟ ସଂଗ୍ରହ ପ୍ରସଙ୍ଗ

ଲଣ୍ଡନରେ ପହଞ୍ଚି ରାଜଶ୍ରୀଙ୍କୁ କହିଥିଲି, ''୨୦ ବର୍ଷ ଆଗେ ଏହି ସହରରେ ତୁମେ ଏକ ବର୍ଷ ଥିଲ । ସବୁ ଜାଗା ଦେଖିଛ ଓ ଜାଣିଛ । ଏଥର ଏକାକୀ ଯେତେ ଇଚ୍ଛା ବୁଲାବୁଲି କର । ମୁଁ ସାଙ୍ଗରେ ଆସିନାହିଁ ବୋଲି ଭାବି ନିଅ । କାରଣ, ଯେଉଁ କାମ ଲାଗି ଆସିଛି, ସେଥିରେ ବିଫଳ ହେଲେ ସରକାର କ୍ଷମା ଦେବେ ନାହିଁ ।''

ଦୁଇଟି ମାସ ସମୟ । ଗୋଟିଏ ଦିନ ବି ନଷ୍ଟ କରିହେବ ନାହିଁ । ୨୪ ତାରିଖରେ ପହଞ୍ଚି, ତହିଁ ପରଦିନ ବ୍ରିଟିଶ୍ କାଉନସିଲ କର୍ମକର୍ତ୍ତାମାନଙ୍କୁ ଭେଟିଲି । ସେମାନଙ୍କ ନିକଟରୁ ଶୁଣିଲି, ମାଉଣ୍ଟବ୍ୟାଟେନଙ୍କ କାଗଜପତ୍ର ବର୍ତ୍ତମାନ ତାଙ୍କ ବଡ଼ଝିଅ ପ୍ୟାଟ୍ରିସିଆ ମାଉଣ୍ଟବ୍ୟାଟେନ ଓ ଜାମାତା ଲର୍ଡ୍ ବ୍ରାବୋର୍ଣ୍ଣଙ୍କ ଅଧିକାରରେ ରହିଛି । ତେଣେ, ବ୍ରିଟିଶ୍ ସରକାର ମୃତ ନେତାଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବା ଲାଗି ଐତିହାସିକମାନଙ୍କୁ ନିଯୁକ୍ତ କଲେଣି । ''ମାଉଣ୍ଟବ୍ୟାଟେନ ଫାଇଲଗଦା ଦେଖିବାକୁ ଆପଣଙ୍କୁ ଅନୁମତି ମିଳି ନ ପାରେ । ଏ ବିଷୟରେ ବ୍ରିଟିଶ କାଉନସିଲ କୌଣସି ସାହାଯ୍ୟ କରିପାରିବ ନାହିଁ ।'' ସେମାନଙ୍କ ରୋକ୍ ଠୋକ୍ ନାସ୍ତିବାଣୀ ଶୁଣି ନିଜକୁ ଅସହାୟ ବୋଧ କଲି । ଦେଶକୁ ଫେରି କ'ଣ କୈଫିୟତ ଦେବି ! ସରକାର ଯଦି ପଚାରିବେ, ସସ୍ତ୍ରୀକ ବୁଲିବାକୁ ଯାଇଥିଲ ନା ଦେଶ-ବିଭାଜନ ସମ୍ପର୍କୀୟ ତଥ୍ୟ ସଂଗ୍ରହ ଲାଗି, ତେବେ ଉତ୍ତର କ'ଣ ଦେବି !

ଦୁଶ୍ଚିନ୍ତା ମଧ୍ୟରେ ଜଣେ ବ୍ୟକ୍ତିଙ୍କୁ ସ୍ମରଣ କଲି, ସାର୍ ସିରିଲ ହେନରୀ ଫିଲିପସ୍ । ପିଏଚ.ଡି. କଲାବେଳେ ସେ ଥିଲେ ମୋର ଗାଇଡ୍ । ପରବର୍ତ୍ତୀ ସମୟରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ ତାଙ୍କୁ ଭେଟି

ଥିଲି । ଏବେ ସେ 'ରୟାଲ୍ କମିସନ୍'ର ଚେୟାରମ୍ୟାନ ଥିବା କଥା ଶୁଣିଲି । ତାଙ୍କ ସହିତ ସାକ୍ଷାତକାର ଆୟୋଜନ କରିବା ନିମନ୍ତେ କାଉନସିଲ୍ ମୁଖ୍ୟଙ୍କୁ ଅନୁରୋଧ କଲି ।

ଜୁଲାଇ ୨୮ ତାରିଖ ଦିନ ସାର ସିରିଲ୍ ହେନରୀଙ୍କୁ ଭେଟିଲି । ମୋ ମାନସିକ ଅବସ୍ଥା ସେ ଉପଲବ୍ଧି କଲେ ଓ ତତ୍‌କ୍ଷଣାତ୍ ବି.ସି.ବ୍ଲୁମ୍‌ଫିଲ୍ଡ୍ ନାମକ ରାଜ୍ୟଗୋଷ୍ଠୀ କାର୍ଯ୍ୟାଳୟର ଜଣେ ବରିଷ୍ଠ କର୍ମଚାରୀଙ୍କୁ ଦେଖା କରିବା ପାଇଁ କହିଲେ । ତାଙ୍କ ନିକଟରେ ପହଞ୍ଚିଲି । ଫିଲିପ୍‌ସ୍ ସାହେବଙ୍କ ଚିଠି ପଢ଼ି ସେ ପରାମର୍ଶ ଦେଲେ, ''ଆପଣ ଲର୍ଡ଼ ବ୍ରାବୋର୍ଣ୍ଣ ଓ ପ୍ୟାଟ୍ରିସିଆ ମାଉଣ୍ଟବ୍ୟାଟେନଙ୍କ ନିକଟକୁ ନିଜେ ଚିଠି ଲେଖି ସେଥିରେ ୧୯୭୬ ମସିହାରେ ଲର୍ଡ଼ ମାଉଣ୍ଟବ୍ୟାଟେନ ଯାହା କହିଥିଲେ ସେ କଥା ଉଲ୍ଲେଖ କରନ୍ତୁ । ସେଥିସହ କେବଳ ଭାରତ ସ୍ୱାଧୀନତା ଓ ବିଭାଜନ ସମ୍ବନ୍ଧୀୟ ଫାଇଲଗୁଡ଼ିକ ଦେଖିବା ଲାଗି ଅନୁମତି ମାଗନ୍ତୁ । ଏକଥା ମଧ୍ୟ ଲେଖନ୍ତୁ ଯେ, ଶେଷ ବ୍ରିଟିଶ ଭାଇସରୟଙ୍କ ଭାରତ ଶାସନ କାଳର କାଗଜପତ୍ର ଦେଖିବା ଲାଗି ଆପଣ ହେବେ ପ୍ରଥମ ଭାରତୀୟ ।''

ତାଙ୍କ କହିବା ଅନୁଯାୟୀ ଚିଠିଟିଏ ତାଙ୍କରି ଆଗରେ ବସି ଲେଖିଲି । ବ୍ଲୁମ୍‌ଫିଲ୍ଡ ସଙ୍ଗେ ସଙ୍ଗେ ଜଣେ କର୍ମଚାରୀଙ୍କ ହାତରେ ମୋ ଚିଠିଖଣ୍ଡିକ ବ୍ରଡ଼ଲ୍ୟାଣ୍ଡ ନାମକ ସ୍ଥାନରେ ନିଜ ବାସଗୃହରେ ରହୁଥିବା ଲର୍ଡ଼ ବ୍ରାବୋର୍ଣ୍ଣଙ୍କ ଠାକୁ ପଠାଇଲେ । ସେଥିସହ ପ୍ରଫେସର ଫିଲିପସ୍‌ଙ୍କ ସୁପାରିଶ ପତ୍ର । ମୋ ଲଣ୍ଡନ ଠିକଣା ଲେଖି ଦିଆଗଲା ।

୨୯ ତାରିଖ ଥାଏ ଯୁବରାଜଙ୍କ ବିବାହ । ୩୦ ତାରିଖ ଦିନ ଡାକଯୋଗେ ଲର୍ଡ଼ ବ୍ରାବୋର୍ଣ୍ଣଙ୍କ ଉତ୍ତର ଆସିଗଲା । 'ଅତି ସ୍ୱତନ୍ତ୍ର ଅନୁମତି' ଦିଆଗଲା ବୋଲି ଜଣାଇ ସେ କେଉଁ ସ୍ଥାନରେ ଓ କେଉଁ ବ୍ୟକ୍ତିଙ୍କୁ ସାକ୍ଷାତ କରିବା କଥା ତାହା ନିଜ ହାତରେ ଲେଖିଥିଲେ । ଚିନ୍ତାମୁକ୍ତ ମନରେ ଯଥାସ୍ଥାନରେ ପହଞ୍ଚିଲି । ଡି.ଏମ୍. ବ୍ଲ୍ୟାକ୍ ନାମକ ବ୍ୟକ୍ତି ଜଣାଇଲେ, ''ଲର୍ଡ଼ଙ୍କ ଅନୁରୋଧ, ଆପଣ 'ମାଉଣ୍ଟବ୍ୟାଟେନ ପେପାର' ଦେଖୁଛନ୍ତି ବୋଲି କେହି ଜାଣିବେ ନାହିଁ । ଦ୍ୱିତୀୟ ସର୍ତ୍ତ ହେଲା, ମାତ୍ର ୩୦ ଦିନ ମଧ୍ୟରେ ବଡ଼ଲାଟଙ୍କ ସଂକ୍ଷିପ୍ତ ଭାରତ ଶାସନ ବେଳର ୨୪୭ ଟି ଗୋପନୀୟ ଫାଇଲ ବ୍ୟତୀତ ଆଉ କୌଣସି ଫାଇଲ୍ ଦେଖିପାରିବେ ନାହିଁ । କାରଣ, ବ୍ରିଟିଶ ଐତିହାସିକମାନେ ଭାଇସରୟଙ୍କ ଆଦି ଜୀବନ ଲେଖିବାକୁ ଆରମ୍ଭ କଲେଣି ।''

ବ୍ରାବୋର୍ଣ୍ଣଙ୍କ ପ୍ରତି କୃତଜ୍ଞତା ଜ୍ଞାପନ ସହ କହିଲି, ''୩୦ ଦିନକୁ ମୁଁ ୬୦ ଦିନରେ ପରିଣତ କରିବି ଆଶା ନେଇ କାମ ଆରମ୍ଭ କରିବି ।'' ''ତାହା କିପରି ସମ୍ଭବ'' ବୋଲି ସେ ପଚାରିଲେ । ଉତ୍ତର ଦେଲି, ''ଦିନ ୧୦ ଟାରୁ

୪ ଟା ପରିବର୍ତ୍ତେ ସକାଳ ୮ ଟାରୁ ରାତି ୮ ଟା ପର୍ଯ୍ୟନ୍ତ ପ୍ରତିଦିନ ୧୨ ଘଣ୍ଟା କାମ କରିବି ।"

ମିଷ୍ଟାର ବ୍ଲ୍ୟାକ୍ ଗୋଟିଏ ନିଭୃତ କକ୍ଷକୁ ନେଇଗଲେ । ସେଠାରେ ପ୍ରତ୍ୟେକ ଦିନ ୧୦ କିମ୍ବା ୧୫ ଟି ଫାଇଲ ରଖାଯିବ ବୋଲି କହିଲେ । ଅଶେଷ ଧନ୍ୟବାଦ ସହ ଫେରି ଆସିଲି । ତହିଁ ପରଦିନ ପାଖରୁ ତଥ୍ୟ ସଂଗ୍ରହ ଆରମ୍ଭ କଲି ।

'ମାଉଣ୍ଟବ୍ୟାଟେନ ପେପାର' ସମ୍ବନ୍ଧରେ ଏଠାରେ କିଛି ଲେଖୁ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ, ୧୯୪୭ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ଭାରତରେ ପଦାର୍ପଣ କରିବା ମୁହୂର୍ତ୍ତରୁ ୧୯୪୭ ଅଗଷ୍ଟ ୧୫ ତାରିଖ ଭାରତର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ସମୟ ମଧ୍ୟରେ ଦେଶର ସ୍ୱାଧୀନତା ତଥା ବିଭାଜନ ସମ୍ବନ୍ଧୀୟ ସବୁ ପ୍ରକାର ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଭାଇସରୟଙ୍କ ଗୋପନ ଫାଇଲଗୁଡ଼ିକରେ ଗଚ୍ଛିତ ରହିଥାଏ । ଆଶ୍ଚର୍ଯ୍ୟର ବିଷୟ, ଯେଉଁ ପ୍ରକାର କୂଟନୀତି ପ୍ରୟୋଗ କରି ବଡ଼ଲାଟ ଭାରତକୁ ଖଣ୍ଡବିଖଣ୍ଡିତ କରିଥିଲେ, ସେଥିସମ୍ବନ୍ଧୀୟ ବିଶଦ ବିବରଣୀ ମଧ୍ୟ ନିଜ ଫାଇଲରେ ରଖି ଯାଇଥିଲେ । ମହାତ୍ମା ଗାନ୍ଧି, ପଣ୍ଡିତ ନେହରୁ, ସର୍ଦ୍ଦାର ପଟେଲ, ମହମ୍ମଦ ଆଲି ଜିନ୍ନା, ସୀମାନ୍ତ ଗାନ୍ଧି ଓ ଅନ୍ୟାନ୍ୟ ନେତା, ଏବଂ ଭାରତର ଅନେକାନେକ ରାଜା, ମହାରାଜା ଓ ନବାବମାନଙ୍କ ସହିତ ହୋଇଥିବା ବାକ୍ୟାଳାପ ଓ ଆଦାନପ୍ରଦାନ ହୋଇଥିବା ଚିଠିପତ୍ର ଫାଇଲଗୁଡ଼ିକରେ ଭର୍ତ୍ତି ଥାଏ । ଇଂଲାଣ୍ଡରେ ଚାର୍ଚ୍ଚିଲ ଓ ଆଟଲୀ ପ୍ରଭୃତି ନେତାଙ୍କ ସହିତ ହୋଇଥିବା ଷଡ଼ଯନ୍ତ୍ରମୂଳକ ପରାମର୍ଶର ବିବରଣୀ, ଗୁପ୍ତଚର ସଂସ୍ଥାଗୁଡ଼ିକର ରିପୋର୍ଟ ଓ ଗଭର୍ଣ୍ଣରମାନଙ୍କର ମତାମତ ଇତ୍ୟାଦି ରହିଥାଏ । ଯେଉଁପ୍ରକାର ଭୟଙ୍କର ପରିସ୍ଥିତି, ଲୋମହର୍ଷଣକାରୀ ସାମ୍ପ୍ରଦାୟିକ ଦଙ୍ଗାହାଙ୍ଗାମା ଓ କୂଟନୈତିକ କ୍ରିୟାପ୍ରକ୍ରିୟା ମଧ୍ୟରେ ଦେଶର ସ୍ୱାଧୀନତା ଆସିଥିଲା ଏବଂ ପାକିସ୍ତାନ ଗଠନ କରାଗଲା, ସେ ସମସ୍ତ ବିଷୟର ବିସ୍ମୟଜନକ ବର୍ଣ୍ଣନା ବହନ କରି ମାଉଣ୍ଟବ୍ୟାଟେନ ଦଲିଲମାନ ବାସ୍ତବିକ ଥାଏ ଐତିହାସିକ ତଥ୍ୟର ଖଣି ।

ନିଶାଗ୍ରସ୍ତ ହେଲାପରି ଫାଇଲଗୁଡ଼ିକରେ ବୁଡ଼ିରହିଲି । ପ୍ରତ୍ୟେକ ଦିନ ମିଷ୍ଟାର ବ୍ଲ୍ୟାକ୍ ମୋ ପାଖକୁ ଆସୁଥାନ୍ତି । ଦୁଇ ସପ୍ତାହ ପରେ ଦିନେ କହିଲେ, "ବ୍ରାବୋର୍ଣ୍ଣ ବିପଦରେ ପଡ଼ିଗଲେଣି । ଆପଣଙ୍କ ଫାଇଲ ଦେଖିବା କଥା ଜଣା ପଡ଼ିଯାଇଛି । ଅଭିଯୋଗ ହେଲାଣି, ଇଂଲଣ୍ଡରେ ମାଉଣ୍ଟବ୍ୟାଟେନଙ୍କ ଜୀବନୀ ଲେଖାହେବା ପୂର୍ବରୁ ଜଣେ ଭାରତୀୟ ତାଙ୍କ କାଗଜପତ୍ର ଦେଖିବାକୁ ଅନୁମତି ପାଇଲେ କିପରି ଓ କାହିଁକି ?" ପ୍ରକାରାନ୍ତରେ ସେ ସଂକେତ ଦେଲେ ଯେ ମୁଁ ଯଥାଶୀଘ୍ର ବିଦାୟ

ନେଲେ ମଙ୍ଗଳ ହେବ । ବ୍ଲ୍ୟାକ୍ ସାହେବଙ୍କୁ ନିବେଦନ କଲି, "ଶ୍ରୀମତୀ ପ୍ୟାଟ୍ରିସିଆଙ୍କୁ ମୋ ବିଷୟ ଟିକିଏ କହନ୍ତୁ । ଯେତେହେଲେ, ମୁଁ ତାଙ୍କ ପରଲୋକଗତ ପିତାଙ୍କ ସମ୍ବନ୍ଧରେ ଲେଖିବାକୁ ଯାଉଛି ।" ଦୁଇଦିନ ପରେ ସେ ସଂବାଦ ଦେଲେ, ପ୍ୟାଟ୍ରିସିଆ ମାଉଣ୍ଟବ୍ୟାଟେନ ୩୦ ଦିନ ପରେ ଅଧିକା ଦୁଇ ସପ୍ତାହ ତଥ୍ୟ ସଂଗ୍ରହ ଲାଗି ଅନୁମତି ଦେଇଛନ୍ତି ।

କାମ ଆଗେଇ ଚାଲିଥାଏ । ସେଥିସଙ୍ଗେ ଶେଷ ବଡ଼ଲାଟଙ୍କ ଚରିତ୍ର ପରିଷ୍କାର ହୋଇଉଠୁଥାଏ । ଭାରତର ପରମ ହିତୈଷୀ ବୋଲି ଛଳନା କରି, ଭିତରେ ଭିତରେ ସେ ଦେଶର ସର୍ବନାଶ କରିବା ନିମନ୍ତେ ପ୍ରୟାସ କରୁଥିଲେ ବୋଲି ମୋର ଧାରଣା ଦୃଢ଼ୀଭୂତ ହେଲା । ୬ ସପ୍ତାହ ମଧ୍ୟରେ ଯେତିକି ତଥ୍ୟ ସଂଗ୍ରହ କଲି, ତାହା ସ୍ୱଳ୍ପ ହେଲେ ସୁଦ୍ଧା 'ସ୍ୱାଧୀନତା ଓ ଦେଶ ବିଭାଜନ' ବିଷୟରେ ବହି ଲେଖିପାରିବି ବୋଲି ଆତ୍ମପ୍ରତ୍ୟୟ ଆସିଲା । ଶେଷବେଳକୁ ଅଧିକା ଦୁଇ ସପ୍ତାହ ସମୟ ମାଗିବି ବୋଲି ଚିନ୍ତା କଲାବେଳକୁ ଦିନେ ମିଷ୍ଟର ବ୍ଲ୍ୟାକ୍ ଜଣାଇଲେ, "Freedom at Midnight ପୁସ୍ତକ ଲେଖିଥିବା ଲାପିଏର ଓ କୋଲିନ ଅତିଶୀଘ୍ର ମାଉଣ୍ଟବ୍ୟାଟେନ ପେପାର ଦେଖିବା ପାଇଁ ବ୍ୟସ୍ତ ହେଲେଣି । ସେମାନଙ୍କର ଯୁକ୍ତି, ବଡ଼ଲାଟଙ୍କ ମୌଖିକ କଥା ଉପରେ ସେମାନେ ବହି ଲେଖିଥିବାବେଳେ ବର୍ତ୍ତମାନ ତାଙ୍କ କାଗଜପତ୍ର ଦେଖି ନୂଆ ବହି ଲେଖିବେ ।" ଏକଥା ଶୁଣି ଚିନ୍ତିତ ହେଲି । ଦୁଇ ବିଶ୍ୱବିଖ୍ୟାତ ଲେଖକ ପ୍ରତିଦ୍ୱନ୍ଦ୍ୱୀ ହେବେ ଜାଣି ମନରେ ନୈରାଶ୍ୟ ଖେଳିଗଲା ।

୪୫ ଦିନ ବିତିଗଲା । ବ୍ରାବୋର୍ଣ୍ଣ ପରିବାର ନିକଟରେ ଅଧିକ କୃପାପ୍ରାର୍ଥୀ ହେବାଲାଗି ଇଚ୍ଛା ହେଲା ନାହିଁ । ଦେଶକୁ ଫେରିବା ପାଇଁ କିଛି ଦିନ ବାକି ଥାଏ । ସେଥିମଧ୍ୟରେ ବ୍ରିଟିଶ ଲାଇବ୍ରେରୀରେ କେତେକ ତଥ୍ୟ ସଂଗ୍ରହ କଲି । ସେତେବେଳକୁ ରାଜଶ୍ରୀ ଦର୍ଶନୀୟ ସ୍ଥାନମାନ ଦେଖି ଦେଖି ଶ୍ରାନ୍ତ ହୋଇ ସାରିଥିଲେ । ସେପ୍ଟେମ୍ବର ୧୪ ତାରିଖ ଦିନ ଲଣ୍ଡନରୁ ବିଦାୟ ନେଲୁଁ ।

## ଭାରତ ପ୍ରତ୍ୟାବର୍ତ୍ତନ ଓ ପୁସ୍ତକ ରଚନା

ସେପ୍ଟେମ୍ବର ୧୫ ତାରିଖ ଦିଲ୍ଲୀ ବିମାନଘାଟିରେ ଭୁବନେଶ୍ୱର ଯିବା ଲାଗି ଅପେକ୍ଷା କରିଥିଲାବେଳେ ଓଡ଼ିଶାର ଜଣେ ଶାସନସଚିବଙ୍କ ନିକଟରୁ ଶୁଣିଲି, ବାଣୀବିହାରରେ ଛାତ୍ରଅଶାନ୍ତି ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଅନିର୍ଦ୍ଦିଷ୍ଟ ସମୟ ପାଇଁ ବନ୍ଦ ରହିଛି । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି କ୍ୟାମ୍ପାସ୍ ବାହାରେ ଥିବା ଆଞ୍ଚଳିକ ଗବେଷଣାଗାରର ଉତ୍ସବରେ ଯୋଗ ଦେବାକୁ ଯାଇଥିଲାବେଳେ ଛାତ୍ରନେତାମାନେ ତାଙ୍କୁ ଖଣ୍ଡିଏ ଆବେଦନପତ୍ର ଦେବାକୁ ଇଚ୍ଛା କରିଥିଲେ । କିନ୍ତୁ କର୍ତ୍ତୃପକ୍ଷ ଅନୁମତି

ନ ଦେବାରୁ ସେମାନେ ଉତ୍‌କ୍ଷିପ୍ତ ଅବସ୍ଥାରେ କ୍ୟାମ୍ପାସ୍ ଭିତରକୁ କେତେଖଣ୍ଡି ସରକାରୀ ବାସ୍ ହରଣଚାଳ କରିନେଇ ସେଥିରେ ଅଗ୍ନିସଂଯୋଗ କରିଥିଲେ । ପ୍ରଧାନମନ୍ତ୍ରୀ ଅଦୂରରେ ଭାଷଣ ଦେଉଥିବାବେଳେ ବିଶ୍ୱବିଦ୍ୟାଳୟ ପରିସରରେ ନିଆଁ ଜଳୁଥାଏ ।

ଭୁବନେଶ୍ୱରରେ ପହଞ୍ଚି କୁଳପତି ଡକ୍ଟର ମହେନ୍ଦ୍ର କୁମାର ରାଉତଙ୍କୁ ଭେଟିଲି । ବିମର୍ଷ ମନରେ ସେ କହିଲେ, ''ମୋର ଭୁଲ୍ ନୁହେଁ, ଅନ୍ୟମାନଙ୍କ ସାମାନ୍ୟ ଭୁଲ୍ ଯୋଗୁଁ ଏଡ଼େ ବଡ଼ ଘଟଣା ଘଟିଗଲା । ବାସ୍ ପୋଡ଼ି ଲାଗି ରାଜନୈତିକ ବ୍ୟକ୍ତିମାନେ ଦାୟୀ, ଅଥଚ ମୁଁ ହେଲି ଦୋଷୀ । ପ୍ରକୃତରେ ଏହି ଆସନଟା ବିପଜ୍ଜନକ ।'' ଧୈର୍ଯ୍ୟ ଧରିବାକୁ ତାଙ୍କୁ ପରାମର୍ଶ ଦେଲି । କୁଳପତିଙ୍କ କଥାବାର୍ତ୍ତାରୁ ସୂଚନା ପାଇଲି, 'ଅନିର୍ଦ୍ଦିଷ୍ଟ' ଶବ୍ଦର ଅର୍ଥ 'ଅନିର୍ଦ୍ଦିଷ୍ଟ' ।

ଘରେ କବାଟ ବନ୍ଦ କରି ଏକାଗ୍ର ଚିତ୍ତରେ ବହି ଲେଖିବା ପାଇଁ ଅପ୍ରତ୍ୟାଶିତ ସୁଯୋଗ ମିଳିଗଲା । ୨ ମାସ ଅକ୍ଳାନ୍ତ ପରିଶ୍ରମ କରି ''ଭାରତ-ବିଭାଜନ ଓ ସ୍ୱାଧୀନତା: ମାଉଣ୍ଟବ୍ୟାଟେନ ସମୟର ଗୁପ୍ତ କାହାଣୀ'' ଶୀର୍ଷକ ପୁସ୍ତକ ରଚନା କଲି । ପ୍ରକାଶକ ଆବିଷ୍କାର କରିବା ହେଲା ସମସ୍ୟା ।

## ପୁସ୍ତକ ପ୍ରକାଶନର ତିକ୍ତ ଅନୁଭୂତି

ଭାରତୀୟ ପ୍ରକାଶକମାନେ ଲେଖକମାନଙ୍କୁ କିପରି ଶୋଷଣ କରନ୍ତି, ତାହାର ଏକ ଦୃଷ୍ଟାନ୍ତ ଦେବା ନିମନ୍ତେ ଏହା ଲେଖୁଛି । ଯେଉଁମାନଙ୍କ ବହିରୁ ସେମାନେ ଲକ୍ଷ ଲକ୍ଷ ଟଙ୍କା ଆୟ କରିଥାନ୍ତି, ସେମାନଙ୍କୁ ପ୍ରତାରିତ କରିବା ହେଉଛି କେତେକ ପ୍ରତିଷ୍ଠିତ ପ୍ରକାଶକଙ୍କ ସ୍ୱଭାବଗତ ଧର୍ମ ।

ବହି ଲେଖା ଶେଷ ହେଲାମାତ୍ରେ, ଦିଲ୍ଲୀର କେତେଜଣ ପ୍ରସିଦ୍ଧ ପ୍ରକାଶକଙ୍କୁ ଚିଠି ଲେଖିଲି । ବିଷୟବସ୍ତୁର ଗୁରୁତ୍ୱ ଓ ନୂତନତ୍ୱ ଦୃଷ୍ଟିରୁ ଏବଂ ପ୍ରତିଦ୍ୱନ୍ଦ୍ୱୀ ଲେଖକମାନଙ୍କ ପୁସ୍ତକ ରଚନା ଯୋଗୁଁ, ମାତ୍ର ଏକ ମାସ ମଧ୍ୟରେ ତିନି ଶହ ପୃଷ୍ଠା ସମ୍ବଳିତ ବହି ଛପାଯିବା ଆବଶ୍ୟକ ବୋଲି ସର୍ତ୍ତ ରଖିଲି । ଉତ୍ତର ଆସିଲା । ସମସ୍ତେ ପ୍ରକାଶ କରିବାକୁ ରାଜି ହେଲେ, କିନ୍ତୁ ସମୟସୀମା ମାନିବାକୁ ଅନିଚ୍ଛା ଜଣାଇଲେ । ଏପରି ବେଳେ, ସାନଭାଇ ମନୋଜ ଦିଲ୍ଲୀରୁ ଫୋନ୍ କଲେ ଯେ, 'ଭିଜନ୍ ବୁକ୍‌ସ୍' ବହି ଛାପିବାକୁ ରାଜି ।

ସେତେବେଳକୁ ଏସ୍.ଚାନ୍ଦ ନାମକ ଦିଲ୍ଲୀ ପ୍ରକାଶନୀ ସଂସ୍ଥାର ମାଲିକ ଓ ପାର୍ଲିଆମେଣ୍ଟ ସଦସ୍ୟ ଶ୍ୟାମଲାଲ ଗୁପ୍ତା ପାଣ୍ଡୁଲିପି ନେବାପାଇଁ ଖୋଦ୍ ତାଙ୍କ ସହକାରୀଙ୍କୁ ଭୁବନେଶ୍ୱର ପଠାଇଲେ । ବର୍ଷକୁ ସେ ଶତାଧିକ ପୁସ୍ତକ ପ୍ରକାଶ

କରନ୍ତି । କୋଟି କୋଟି ଟଙ୍କାର ମାଲିକ । ତାଙ୍କ ଲୋକଙ୍କ ସାଙ୍ଗରେ ପାଣ୍ଡୁଲିପି ଧରି ଦିଲ୍ଲୀରେ ପହଞ୍ଚିଲି । କନଟ୍‌ସାର୍କାସସ୍ଥିତ ତାଙ୍କ ବାସଭବନରେ ସେ ମୋତେ ମଧ୍ୟାହ୍ନ ଭୋଜିରେ ଆପ୍ୟାୟିତ କରୁଥିଲାବେଳେ ମୁଁ କହିଲି, ''ଏକ ମାସ ମଧ୍ୟରେ ଯଦି ପ୍ରକାଶ କରିବେ, ତେବେ ପାଣ୍ଡୁଲିପି ଦେବି ।'' ଡାହାଣ ହାତରେ ଖାଉଥିବାବେଳେ ସେ ବାଁ ହାତରେ ଟେବୁଲ୍ ଉପରୁ ପାଣ୍ଡୁଲିପିଟି ଉଠାଇ ନେଇ ନିଜ କହୁଣିତଳେ ଚାପିରଖି କହିଲେ, ''ପାଣ୍ଡୁଲିପି ନେଲି । ୬ ମାସ ପରେ ପ୍ରେସ୍‌କୁ ଯିବ । ଛାପିବା ପାଇଁ ଆଉ ୬ ମାସ ।'' ସୌଜନ୍ୟ ଓ ଆତିଥ୍ୟ ଭୁଲି ମୁଁ ବାଁ ହାତରେ ପାଣ୍ଡୁଲିପିଟି ଟାଣି ଆଣି ଅଧାଖିଆ ଅବସ୍ଥାରେ ଚାଲିଆସିଲି । ତଟସ୍ଥ ହୋଇ ଗୁପ୍ତା ମହାଶୟ ଚାହିଁରହିଥାନ୍ତି । ବୋଧହୁଏ ଭବିଥିବେ, ଜଣେ କୋଟିପତି ତଥା ସାଂସଦଙ୍କ ପ୍ରତି ଜଣେ ଅନାମଧେୟ ଲେଖକର ଏପରି ବ୍ୟବହାର !

ସନ୍ଧ୍ୟାବେଳେ 'ଭିଜନ ବୁକସ୍' ସଂସ୍ଥାର ମାଲିକ କପିଲ୍ ମାଲହୋତ୍ରାଙ୍କ ବାସଭବନରେ ପହଞ୍ଚିଲି । ଯୁବ ନିଯୁତପତି ହାଫ୍‌ପ୍ୟାଣ୍ଟ ପିନ୍ଧିଥିବା ଅବସ୍ଥାରେ ବାହାରି ଆସି ସାଦର ସମ୍ଭାଷଣ ସହ ଭିତରକୁ ପାଛୋଟି ନେଲେ । ମନୋଜ ପାଖରୁ କିଛି ଲେଖାପାଇବା ଆଶାରେ ବୋଧହୁଏ ମୋ ପ୍ରତି ଆନ୍ତରିକତାର ମାତ୍ରା ଖୁବ୍ ବେଶି ଥିଲା । କହିଲେ, ''ରାତି ଭିତରେ ପାଣ୍ଡୁଲିପିଟି ଆମୂଳଚୂଳ ପଢ଼ିଦେବି । ଆଗାମୀ କାଲି ୧୦ଟା ବେଳେ କନଟ୍ ପ୍ଲେସ୍‌ରେ ଆମ ଅଫିସକୁ ଆସିଲେ ଏଗ୍ରିମେଣ୍ଟ୍ ହେବ ।'' ପାଣ୍ଡୁଲିପି ରଖିଦେଲି । ସେହି ହାଫ୍‌ପ୍ୟାଣ୍ଟ୍ ପିନ୍ଧି ସେ ଟ୍ୟାକ୍ସି ଷ୍ଟ୍ୟାଣ୍ଡ୍ ପର୍ଯ୍ୟନ୍ତ ଛାଡ଼ିବାକୁ ଆସିଲେ ।

ତହିଁପରଦିନ ଯଥାସ୍ଥାନରେ ଦେଖା ହେବାକ୍ଷଣି ସେ ଉଚ୍ଛ୍ୱସିତ ପ୍ରଶଂସା ସହ କହିଗଲେ, ''ମନ୍ତ୍ରମୁଗ୍ଧ ଭାବରେ ସାରାରାତି ପଢ଼ିଲି । ମାସକ ମଧ୍ୟରେ ବହି ପ୍ରକାଶ କରିବି । ପ୍ରିଣ୍ଟିଂ ଭୁଲ କିଛି କିଛି ରହିପାରେ । ତେବେ, ସାହେବମାନଙ୍କ ବହି ବାହାରିଲା ପୂର୍ବରୁ ୱାର୍ଲଡ୍ ମାର୍କେଟରେ ଆପଣଙ୍କ ବହି ଥୋଇଦେବି ।'' ପଞ୍ଚତାରକା ହୋଟେଲକୁ ନେଇ ମଧ୍ୟାହ୍ନ ଭୋଜନ ଅର୍ଡ଼ର ଦେଲେ । ନମ୍ରତା ଓ ଭଦ୍ରତାର ଅବତାର ରୂପେ ବ୍ୟବହାର ଦେଖାଇ ମୋତେ ବଶୀଭୂତ କରିନେଲେ । ଏଗ୍ରିମେଣ୍ଟରେ ଦସ୍ତଖତ କଲାବେଳେ ଜଣାଇଦେଲେ ଯେ ପ୍ରଥମ ମୁଦ୍ରଣର ସଂଖ୍ୟା ହେବ ୭ ହଜାର ।

ଛପା ଆରମ୍ଭ ହେଲା । ତିରିଶ ଦିନ ଭିତରେ ତିନି ଥର ଦିଲ୍ଲୀ ଡାକିପଠାଇଲେ, ଫଟୋଚିତ୍ର ସଂଗ୍ରହ ପାଇଁ, ଫାଇନାଲ୍ ପ୍ରୁଫ୍ ଦେଖିବା ଲାଗି, ଓ ଶେଷରେ ପୁସ୍ତକ ଉନ୍ମୋଚନ ନିମନ୍ତେ । ପ୍ରତ୍ୟେକ ଥର ବିମାନ ଯୋଗେ ଯିବା ଆସିବା

ଯୋଗୁଁ ଅନେକ ଅର୍ଥ ବ୍ୟୟ ହେଲା ।

ବହି ଉନ୍ମୋଚନ କରିବାକୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ସମ୍ମତି ଦେଲେ । ଦିଲ୍ଲୀ ଇଣ୍ଟାରନେସନାଲ ସେଣ୍ଟାରରେ ମିଟିଂ ଆୟୋଜନ କରିବା ଠିକ୍ ହେଲା । କିନ୍ତୁ ଶେଷମୁହୂର୍ତ୍ତରେ ପ୍ରଧାନମନ୍ତ୍ରୀ ନିଜ ବାସଭବନରେ ପୁସ୍ତକ ଉନ୍ମୋଚନ କରିବେ ବୋଲି ଜଣାଇ ତାରିଖ ଓ ସମୟ ଦେଲେ । କପିଲ୍ ମାଲହୋତ୍ରା ମୋତେ କହିଲେ, "ତାଙ୍କ ବାସଭବନରେ ଦର୍ଶନ ପାଇଁ ଆସିଥିବା ଶହ ଶହ ଲୋକଙ୍କ ଗହଣରେ ଆମକୁ ବହି ଧରି ଛିଡ଼ା ହେବାକୁ ପଡ଼ିବ । ମିସେସ୍ ଗାନ୍ଧି ସାକ୍ଷାତ ଦେବା ଲାଗି ବାହାରିବେ ଓ ମୁହୂର୍ତ୍ତ ମଧ୍ୟରେ ବହିଟି ଧରି କହିଦେବେ 'ପୁସ୍ତକ ଉନ୍ମୋଚିତ ହେଲା' । ତଦ୍ଵାରା ଲେଖକ ଓ ପ୍ରକାଶକର ମର୍ଯ୍ୟାଦା ରହିବ ନାହିଁ । ଜଣେ ପ୍ରସିଦ୍ଧ ଲେଖକଙ୍କ ବହି ସେହିପରି ଭାବରେ ଉନ୍ମୋଚନ ବେଳେ ସେ ଦୁଃଖରେ ଭାଙ୍ଗିପଡ଼ିଥିଲେ ।" ତାଙ୍କ କଥା ମାନିଲି । ଅବଶ୍ୟ, ଇନ୍ଦିରା ଗାନ୍ଧିଙ୍କ ପାଖକୁ ଖଣ୍ଡିଏ ବହି ପଠାଇ ଦିଆଗଲା ।

୧୯୮୨ ମାର୍ଚ୍ଚ ମାସରେ 'Partition and Independence of India: Inside Story of the Mountbatten Days' ପୁସ୍ତକ ପ୍ରକାଶ ପାଇଲା । 'ଭିଜନ୍ ବୁକ୍ସ୍' ବହିର ବହୁଳ ପ୍ରଚାର କଲେ । 'ଇଲାଷ୍ଟ୍ରେଟେଡ ଉଇକ୍ଲି'ରେ ଏମ୍.ଭି.କାମାଥ ବହିର ଭୂୟସୀ ପ୍ରଶଂସା ପୂର୍ବକ ଦୁଇଟି ଦୀର୍ଘ ପ୍ରବନ୍ଧ ପ୍ରକାଶ କଲେ । 'ସାନ୍ ଡେ' ପ୍ରଭୃତି ମେଗାଜିନରେ 'ଉଦ୍ଧୃତାଂଶ'ମାନ ପ୍ରକାଶ ପାଇଲା । ବହିର ଦାମ ଥାଏ ଶହେ ଟଙ୍କା । ଦିଲ୍ଲୀରୁ ଖବର ଆସୁଥାଏ, ଆଶାତୀତ ଭାବେ ବହି ବିକ୍ରି ହେଉଛି । ବନ୍ଧୁ ଡକ୍ଟର ପି.ଏନ୍.ଚୋପ୍ରା ଜଣାଇଲେ, ପ୍ରଥମ ଏଡିସନ ସାତ ହଜାର ଶେଷ ହେବା ଉପରେ, ଅବିକଳ ଦ୍ଵିତୀୟ ସଂସ୍କରଣ ଅବିଳମ୍ବେ ବାହାରିପଡ଼ିବ ।

ତେଣେ, ଲେପିଏର ଓ କୋଲିନଙ୍କ ବହିଟି ପ୍ରକାଶ ପାଇଲା । ସେଥିରେ କେବଳ 'ମାଉଣ୍ଟବ୍ୟାଟେନ ଫାଇଲ'ରୁ ନକଲ କରାଯାଇଥିବା ଚିଠିପତ୍ରଗୁଡ଼ିକର ସାରାଂଶ ଥାଏ । ଅର୍ଥାତ୍, ବହିଟି ଇତିହାସ ନୁହେଁ, ଦଲିଲ ସଂକଳନ । ମୋ ବହି ପଢ଼ି ଅନେକେ ପ୍ରଶଂସାସୂଚକ ପତ୍ର ପଠାଇଲେ । ଭାରତ ବାହାରୁ ମଧ୍ୟ ଚିଠି ଆସିଲା । ଏପରିକି, ପାକିସ୍ତାନର ଜଣେ ଅବସରପ୍ରାପ୍ତ ସେନାଧ୍ୟକ୍ଷଙ୍କ ପତ୍ନୀ କୃତଜ୍ଞତା ଜ୍ଞାପନ ସହ ଜଣାଇଲେ, "ଆମ ଦେଶର ଜନ୍ମବୃତ୍ତାନ୍ତ ସମ୍ପର୍କରେ ଥିବା କେତେକ ସନ୍ଦେହର ଅବସାନ ଘଟିଲା ।" ଓଡ଼ିଶାର ତଦାନୀନ୍ତନ ରାଜ୍ୟପାଳ ସି.ଏମ୍.ପୁନାଚା ଓ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ବହି ପଢ଼ି ବ୍ୟକ୍ତିଗତ ଭାବେ ଧନ୍ୟବାଦ ଜଣାଇଲେ । ବିଶ୍ଵସ୍ତ ସୂତ୍ରରୁ ଶୁଣିଲି, ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ପୁସ୍ତକଟି ଆମୂଳଚୂଳ ପଢ଼ି ଅତ୍ୟନ୍ତ ପ୍ରୀତ ହୋଇଛନ୍ତି । ଉଲ୍ଲେଖଯୋଗ୍ୟ,

କେତେକ ସ୍ଥାନରେ ତାଙ୍କ ପିତା ଜବାହାରଲାଲ ନେହରୁଙ୍କ ଗୁରୁତ୍ୱପୂର୍ଣ୍ଣ ତ୍ରୁଟି ଧରାଇ ଦେଇଥିଲି । ମାଉଣ୍ଟବ୍ୟାଟେନଙ୍କ କୂଟନୀତି ବୁଝି ନପାରି ସେ କିପରି ସରଳ ଭାବରେ ତାଙ୍କୁ ବିଶ୍ୱାସ କରିବା ଦ୍ୱାରା କାଶ୍ମୀର ସମସ୍ୟାର ସୂତ୍ରପାତ ହେଲା ବୋଲି ଦର୍ଶାଇଥିଲି ।

୧୯୮୨ ଅକ୍ଟୋବର ମାସରେ ପୁଣିଥରେ ମୋତେ ଲଣ୍ଡନ ଯିବାକୁ ହେଲା । ସେଠାରେ କେତେକ ବଡ଼ ବଡ଼ ବହି ଦୋକାନରେ ମୋ ବହି ବିକ୍ରି ହେଉଥିବା ଦେଖି ଜାଣିପାରିଲି ଯେ ବିଲାତରେ ସେ ବହିର ଚାହିଦା ରହିଛି । ଜଣେ ପୁସ୍ତକବିକ୍ରେତାଙ୍କୁ ବହି କିଣିବି କହିବାରୁ ସେ କହିଲେ, ‘‘ପ୍ରଥମେ ଦୁଇଶହ କପି ଆଣିଥିଲୁଁ । ଦ୍ୱିତୀୟ ଦଫାରେ ଆଉ ଦୁଇ ଶହ ମଗାଇବା ବେଳକୁ ପ୍ରଥମ ସଂସ୍କରଣ ଶେଷ ହୋଇଯାଇଛି ବୋଲି ଉତ୍ତର ମିଳିଲା ।’’

ମନେ ମନେ ‘ଦିଲ୍ଲୀ କା ଲଡ୍ଡୁ’ ଖାଇବି ବୋଲି ଆଶା ବାନ୍ଧିଥାଏଁ । ଯଦି ପ୍ରଥମ ସଂସ୍କରଣ ୭ ହଜାର, ପ୍ରତ୍ୟେକ କପି ପାଇଁ ୧୫ ଟଙ୍କା ରୟାଲଟି ହିସାବରେ, ଲକ୍ଷାଧିକ ପାଇବି ନିଶ୍ଚୟ ! ତା ପରେ ଦ୍ୱିତୀୟ ସଂସ୍କରଣ, ଓ ଆଉ ଏକ ଲକ୍ଷ ! ମନୁଷ୍ୟର ଲୋଭ ଯେପରି ଅଗାଧ, ଆଶା ମଧ୍ୟ ସେହିପରି ଅସରନ୍ତି । ପୁସ୍ତକ ପ୍ରକାଶର ବର୍ଷକ ପରେ କପିଲ ମାଲହୋତ୍ରାଙ୍କ ବ୍ୟବହାର ଦେଖି ବିସ୍ମିତ ହେଲି । ଥରେ ଦିଲ୍ଲୀ ଯାଇଥିବାବେଳେ ସାକ୍ଷାତ ପାଇଁ ସମୟ ମାଗିବା ଲାଗି ଫୋନ୍ କଲି । ମୋ ନାମ କହିଲାକ୍ଷଣି, ତାଙ୍କ ନିଜ କଣ୍ଠସ୍ୱରରେ ‘ମାଲହୋତ୍ରା ନାହାନ୍ତି’ ବୋଲି ସେ କହିଲେ । ଆଉଥରେ ଫୋନ ଉଠାଇବା ସଙ୍ଗେ ମୋ କଣ୍ଠସ୍ୱର ଶୁଣି ଏପରି ଆବାଜ ଶୁଣାଇଲେ ଯେ ଫୋନ ଖରାପ ଅଛି ବୋଲି ଧାରଣା ହେଲା । ପୁଣି ଗୋଟିଏ ବର୍ଷ ବିତିଲା । କିନ୍ତୁ ରୟାଲଟି ଟଙ୍କା ଆସିଲା ନାହିଁ । ବାଧ୍ୟ ହୋଇ ଦିଲ୍ଲୀ ଗଲି । ଅକସ୍ମାତ ମୋତେ ପହଞ୍ଚିଯିବା ଦେଖି ହଠାତ୍ ଚେୟାରରୁ ଉଠିପଡ଼ି ‘‘ଜରୁରୀ କାମରେ ଚଣ୍ଡୀଗଡ଼ ବାହାରିଯାଉଛି’’ କହି ନିମିଷ ମଧ୍ୟରେ ଅନ୍ତର୍ଦ୍ଧାନ ହେଲେ । ଡକ୍ଟର ଚୋପ୍ରାଙ୍କ ପାଖରେ ଆପତ୍ତି ଦେଲି । ସେ କହିଲେ, ‘‘ଏଥିରେ ଆଚମ୍ବିତ ହେବାର କିଛି ନାହିଁ । ରୟାଲଟି ନ ଦେବା ଲାଗି ପ୍ରକାଶକମାନେ ରୁକ୍ଷ ବ୍ୟବହାର କରିବାକୁ ଶିଖିଛନ୍ତି । କପିଲ ମାଲହୋତ୍ରା ମୋତେ ଆଗରୁ ଠକିଛି । ବର୍ତ୍ତମାନ ଆପଣ ଠକିଲେ । ଏ ଯୁଗରେ, ସଂସ୍କରଣ ପରେ ସଂସ୍କରଣ ବାହାରିଲେ ମଧ୍ୟ ଜାଣିବାର ଉପାୟ ନାହିଁ । ଫଟୋ କପିର ଯୁଗ । ଆପଣ ରୟାଲଟି ପାଇଁ ଚିଠି ଲେଖନ୍ତୁ ।’’

ରେଜେଷ୍ଟ୍ରି ଚିଠି ପଠାଇଲି । ଉତ୍ତର ନାହିଁ । ଶେଷରେ ମନୋଜକୁ କହିଲି, ‘‘ଭିଜନ୍ ବୁକ୍‌ସ୍ ରୟାଲଟି ବିଷୟରେ ନୀରବ ରହିଛି । ଏଣିକି ଆଉ ଚିଠି

ଦେବି ନାହିଁ, କିମ୍ବା ଦିଲ୍ଲୀ ଗଲେ ମାଲହୋତ୍ରା ସାଙ୍ଗରେ ଦେଖା କରିବି ନାହିଁ । ଦେଖା କଲେ ଆତ୍ମସମ୍ମାନ ରହିବ ନାହିଁ ।'' ଶେଷରେ ମନୋଜ ଦିଲ୍ଲୀ ଯାଇ ତାଙ୍କୁ ଭେଟିଲା ପରେ ଦଶ ହଜାର ଟଙ୍କାର ଚେକ୍ ଖଣ୍ଡିଏ ପଠାଇଲେ । ମନୋଜଙ୍କୁ କହିଲି, ବହିଛପା ବେଳେ ତିନିଥର ଉଡ଼ାଜାହାଜରେ ଦିଲ୍ଲୀ ଯିବା ଆସିବା ଲାଗି ବାର ହଜାର ଖର୍ଚ୍ଚ ହୋଇଥିଲା । ଅନ୍ତତଃ, ସେହି ଖର୍ଚ୍ଚର ବଡ଼ ଅଂଶଟିଏ ମିଳିଗଲା । କପିଲ୍ ମାଲହୋତ୍ରା ମୋ ବହିରୁ ଲକ୍ଷ ଲକ୍ଷ ଟଙ୍କା ଆୟ କଲେ, କିନ୍ତୁ ଲେଖକ ଭାବରେ ମୁଁ ପାଇଲି ଶୂନ୍ୟ !

ଅନେକ ଲେଖକଙ୍କର ଏହି ଅବସ୍ଥା । ଅବଶ୍ୟ, ସବୁ ପ୍ରକାଶକ ପ୍ରତାରକ ନୁହନ୍ତି । ୧୯୭୧ ମସିହାରେ ଦିଲ୍ଲୀସ୍ଥିତ ମ୍ୟାକ୍‌ମିଲାନ କୋମ୍ପାନୀ ପି.ଏନ୍. ଚୋପ୍ରା, ବି.ଏନ୍.ପୁରୀ ଓ ମୋ ଦ୍ୱାରା ଲିଖିତ 'ଭାରତର ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଇତିହାସ' ଶୀର୍ଷକ ଯେଉଁ ପୁସ୍ତକ ପ୍ରକାଶ କରିଥିଲେ, ତାହାର ରୟାଲଟି ପ୍ରତ୍ୟେକ ବର୍ଷ ନିୟମିତ ଭାବରେ ପଠାଇଥାନ୍ତି । ଆଜି ୧୯୯୬ ମସିହାରେ ଏ ବହି ଲେଖିଲାବେଳକୁ ୨୫ ବର୍ଷ ଧରି ରୟାଲଟି ପାଇ ଆସୁଛି । ହୋଇପାରେ, ଏହି କୋମ୍ପାନୀର ମୁଖ୍ୟ କାର୍ଯ୍ୟାଳୟ ରହିଛି ଲଣ୍ଡନରେ ଏବଂ ମ୍ୟାକ୍‌ମିଲାନ ହେଉଛି ଆନ୍ତର୍ଜାତିକ ସ୍ତରରେ ଅନ୍ୟତମ ପ୍ରସିଦ୍ଧ ପ୍ରକାଶନୀ ସଂସ୍ଥା । ଅପର ପକ୍ଷରେ, ଦିଲ୍ଲୀର ଅନ୍ୟ ତିନି ଜଣ ପ୍ରକାଶକଙ୍କୁ ବହି ଦେଇ ଗୋଟିଏ ଟଙ୍କା ସୁଦ୍ଧା ପାଇନାହିଁ ।

ଆମେରିକା ଓ ଇଂଲଣ୍ଡ ପ୍ରଭୃତି ଦେଶର ଲେଖକମାନେ ଭାଗ୍ୟବାନ, କାରଣ ପ୍ରକାଶକମାନେ ପ୍ରବଞ୍ଚନା ପାଖରୁ ଅନେକ ଦୂରରେ । ସେଥିପାଇଁ ଅନେକ ଲେଖକ ପୁସ୍ତକ ରଚନାକୁ ଜୀବିକା ଉପାର୍ଜନର ମାର୍ଗ ରୂପେ ବରଣ କରି ଧନଶାଳୀ ହୋଇଥାନ୍ତି । ମୋର ଅନୁତାପ, କାହିଁକି ମୋ 'ଭାରତ ବିଭାଜନ ଓ ସ୍ୱାଧୀନତା' ପୁସ୍ତକ ମୋର ପୂର୍ବତନ ପ୍ରକାଶକ 'ଆଲେନ୍ ଆଣ୍ଡ୍ ଆନଉଇନ'ଙ୍କୁ ନ ଦେଲି !

# ପ୍ୟାରିସ୍ ନଗରୀରେ ଦୁଇ ସପ୍ତାହ

୭୫

## ଇଂଲଣ୍ଡରେ ଏକ ମାସ, ୧୯୮୨

### ଏକ ଅପ୍ରତ୍ୟାଶିତ ସୁଯୋଗ

୧୯୮୨ ସେପ୍ଟେମ୍ବର ୩ ତାରିଖ ଦିନ ଦିଲ୍ଲୀସ୍ଥିତ ଇତିହାସ ଗବେଷଣା ପରିଷଦର ନିର୍ଦ୍ଦେଶକ ବି.ଆର.ଗ୍ରୋଭାରଙ୍କ ନିକଟରୁ ଟେଲିଗ୍ରାମଟିଏ ପାଇଲି । ବାକ୍ୟଟି ଥିଲା, ''ସେପ୍ଟେମ୍ବର ୧୭ ରୁ ୨୦ ପର୍ଯ୍ୟନ୍ତ ପ୍ୟାରିସ ଠାରେ ଅନୁଷ୍ଠିତ ହେବାକୁ ଥିବା 'ଆନ୍ତର୍ଜାତିକ ଐତିହାସିକ ବିଜ୍ଞାନ' (Historical Sciences) ସମ୍ମେଳନରେ ଭାରତୀୟ ପ୍ରତିନିଧି ଭାବେ ଯୋଗଦେବା ଲାଗି ଆପଣ ନିର୍ବାଚିତ ହୋଇଛନ୍ତି । ସମ୍ମତି ଅପେକ୍ଷାରେ ।''

ସେପ୍ଟେମ୍ବର ୧୩ ତାରିଖ ଦିଲ୍ଲୀରେ ପହଞ୍ଚି ପରିଷଦର ଚେୟାରମ୍ୟାନ ଡକ୍ଟର ଲୋକେଶ୍ ଚନ୍ଦ୍ରଙ୍କୁ ଭେଟିଲି । ସେ ତାଙ୍କ ଉଦ୍ଦେଶ୍ୟ ପ୍ରକାଶ କଲେ, ''କେତେକ ପ୍ରଭାବଶାଳୀ ବ୍ୟକ୍ତିଙ୍କ ବାଧା ସତ୍ତ୍ୱେ, ଆମେ ଆପଣଙ୍କୁ ମନୋନୀତ କରିଛୁଁ ଗୋଟିଏ ସ୍ୱାର୍ଥ ହାସଲ ପାଇଁ । ସ୍ୱାର୍ଥଟି ହେଲା, ପ୍ୟାରିସ୍‌ରେ ତିନି ଦିନ ରହିଲା ପରେ, ଏକ ମାସ ଲାଗି ଲଣ୍ଡନ ଯିବାକୁ ହେବ । ପରିଷଦ ପକ୍ଷରୁ ଯେଉଁ 'ସ୍ୱାଧୀନତା ପଥେ' (Towards Freedom) ଗ୍ରନ୍ଥଗୁଡ଼ିକ ସଂକଳନ କରାଯିବ, ତାହାର ପ୍ରଥମ ଗ୍ରନ୍ଥର ପ୍ରସ୍ତୁତି ଶେଷ ହେବା ଉପରେ । ଇଂଲଣ୍ଡର ଆର୍କାଇଭସ୍ ଗୁଡ଼ିକରୁ କେତେକ ବିଶେଷ ତଥ୍ୟ ଆପଣ ସଂଗ୍ରହ କରି ଆଣିବେ । ମୁଖ୍ୟ ସମ୍ପାଦକ ପି.ଏନ.ଚୋପ୍ରା ତାଲିକା ପ୍ରସ୍ତୁତ କରିଛନ୍ତି ।''

ତାଙ୍କ କଥା ଶୁଣି ମୁଁ ସର୍ତ୍ତଟିଏ ରଖିଲି । ''ପ୍ୟାରିସ୍‌ରେ ଦୁଇ ସପ୍ତାହ ରହିବା ପାଇଁ ଅନୁମତି ମିଳିଲେ, ଇଂଲଣ୍ଡରେ ଏକ ମାସ ପରିଶ୍ରମ କରିବାକୁ ମୁଁ ରାଜି ଅଛି ।'' ସେ ବିନା ଦ୍ୱିଧାରେ ରାଜି ହେଲେ । ଫରାସୀ ଓ ବ୍ରିଟିଶ ଦୂତାବାସରୁ ଭିସା ଏବଂ ରିଜର୍ଭବ୍ୟାଙ୍କରୁ ବିଦେଶୀ ମୁଦ୍ରା ସଂଗ୍ରହ କରିବାକୁ ୩ ଦିନ ଲାଗିଗଲା । ୧୭ ତାରିଖ ରାତିରେ ଚୋପ୍ରାଙ୍କ ଘରେ ରାତ୍ରିଭୋଜନ ବେଳେ ସେ ଅନୁରୋଧ କଲେ, ''ଲଣ୍ଡନରେ ମହମ୍ମଦ ଇକ୍ରାମ ବାଟ୍ ନାମରେ ମୋର ଜଣେ ବାଲ୍ୟବନ୍ଧୁ

ଅଛନ୍ତି । ଆମେ ଦୁହେଁ ଲାହୋର ସହରରେ ଜନ୍ମିଥିଲୁଁ ଓ ବଢ଼ିଥିଲୁଁ । ପାକିସ୍ତାନ ଗଠନ ପରେ ମୁଁ ଭାରତକୁ ପଳାଇ ଆସିଲି । କିନ୍ତୁ ଆମ ଦୁହିଙ୍କ ବନ୍ଧୁତା ପୂର୍ବପରି ରହିଛି । ତାଙ୍କ ସ୍ତ୍ରୀଙ୍କ ପାଇଁ ଖଣ୍ଡିଏ ଶାଢ଼ି ଆପଣଙ୍କ ହାତରେ ପଠାଇବି । ଫୋନ କରିଦେଲେ ସେ ଆସି ନେଇଯିବେ ।'' ଶାଢ଼ିଖଣ୍ଡିକ ସୁଟ୍‌କେଶ୍‌ରେ ରଖିଲି ଓ ଇକ୍ରାମ୍ ସାହେବଙ୍କ ଠିକଣା କାର୍ଡ଼ଟି ପିନ୍ଧିଥିବା କୋଟଟିର ଛାତିପକେଟରେ ଗୁଞ୍ଜିଦେଲି ।

ରାତି ୩ଟା ବେଳେ ଦିଲ୍ଲୀ ବିମାନଘାଟିରୁ ପ୍ୟାରିସ୍ ଅଭିମୁଖେ ଯାତ୍ରା କଲି । ତହିଁ ପରଦିନ ଭାରତୀୟ ସମୟ ସନ୍ଧ୍ୟା ସାଢ଼େ ୮ଟାରେ ପ୍ୟାରିସରେ ପହଞ୍ଚିଲି । ସେତେବେଳେ ସେଠାକାର ସ୍ଥାନୀୟ ସମୟ ଥାଏ ଅପରାହ୍ନ ୪ଟା ୩୦ ।

## ପ୍ୟାରିସ୍‌ରେ ପ୍ରଥମ ଅନୁଭୂତି : ସ୍ଥାନ ଆବିଷ୍କାର ସମସ୍ୟା

ବିମାନ ବନ୍ଦରରୁ ସହରର କେନ୍ଦ୍ରାଞ୍ଚଳରେ ଥିବା ପ୍ୟାରିସ ବିଶ୍ୱବିଦ୍ୟାଳୟରେ ସନ୍ଧ୍ୟା ୬ ଟା ବେଳେ ପହଞ୍ଚିଲି । ସେଠାରେ କେହିହେଲେ ସମ୍ମେଳନ ସମ୍ପର୍କରେ କୌଣସି ସଂବାଦ ଦେଇପାରିଲେ ନାହିଁ । କେମ୍ପାସ୍ ଭିତରେ ବୁଲି ବୁଲି ହଇରାଣ ହେଲି । ସମସ୍ୟା ଥାଏ, ଭାଷା । ମୁଁ ଇଂରାଜୀରେ ପ୍ରଶ୍ନ କଲାବେଳକୁ ଛାତ୍ର ବା କର୍ମଚାରୀମାନେ ମୋତେ ଫରାସୀ ଭାଷାରେ ପ୍ରଶ୍ନ କରୁଥାନ୍ତି । ବାଧ୍ୟ ହୋଇ ସେଠାରୁ ଚାଲିଆସିଲି । ବାହାରେ ହୋଟେଲ ଖୋଜି ଖୋଜି ଶେଷରେ 'ସୁଏଜ୍ ଗ୍ର୍ୟାଣ୍ଡ ହୋଟେଲ'ରେ ରୁମ୍‌ଟିଏ ପାଇଲି । ରାତିକ ପାଇଁ ଦୁଇ ଶହ ଫ୍ର୍ୟାଙ୍କ୍ ।

' ୧୮ ତାରିଖ ପ୍ରଭାତରେ ସେଠାରୁ ଚାଲିଆସି ଶସ୍ତା ମୂଲ୍ୟର ହୋଟେଲ ଖୋଜି 'ଡାସିଆ' ନାମକ ହୋଟେଲରେ ସ୍ଥାନ ପାଇଲି । ସମ୍ମେଳନ ସ୍ଥାନର ଠିକଣା ଥାଏ, ୧୭ ନମ୍ବର ସୋର୍‌ବନ । ସେ ସ୍ଥାନ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ନୁହେଁ ବୋଲି ଜଣେ କହିଲେ, ଅଥଚ ସେହି ଅଖ୍ୟାତ ରାସ୍ତାର ଅବସ୍ଥିତି ବିଷୟ କେହି କହିପାରିଲେ ନାହିଁ । ୯ଟା ବାଜିଯାଇଥାଏ । ଦୈବାତ୍ ଇଂରାଜୀ ବୁଝୁଥିବା ଜଣେ ଫରାସୀ ମହିଳା ମୋତେ ସାହାଯ୍ୟ କଲେ । ଠିକଣା ଦେଖି ଗଳିପ୍ରଗଳି ଭିତର ଦେଇ ସାଙ୍ଗରେ ଚାଲିଲାବେଳେ ସେ କହିଲେ, ''୧୭ ନମ୍ବର ସୋରବନ ହେଉଛି ସମ୍ପାଦକଙ୍କ ଘର ଠିକଣା, ସମ୍ମେଳନ ସ୍ଥାନର ଠିକଣା ନୁହେଁ ।'' ତାଙ୍କ ଘରେ ପହଞ୍ଚି ଶୁଣିଲି, ସମ୍ପାଦକ ମାଦାମ୍ ହେଲେନ୍ ଆରଉଏଲାର ସମ୍ମେଳନ ସ୍ଥାନକୁ ଚାଲି ଗଲେଣି । ସେ ସ୍ଥାନର ଠିକଣା ହେଉଛି, ୨୩ ନମ୍ବର ଆକ୍ୱା କୋଣ୍ଟି ।

ସ୍ଥାନଟି ଅନେକ ଦୂରରେ । ଫରାସୀ ମହିଳାଙ୍କ ନିର୍ଦ୍ଦେଶ ଅନୁଯାୟୀ ରାଜପଥରେ ସିଧା ସଳଖ ଗଲାପରେ ନଦୀକୂଳରେ ଥିବା ନିର୍ଦ୍ଦିଷ୍ଟ ଅଟ୍ଟାଳିକା ପାଖରେ ପହଞ୍ଚି ପାରିଲି । ସଭା ଆରମ୍ଭ ହୋଇଯାଇଥାଏ । ଫରାସୀ ଭାଷାରେ ଓଜସ୍ୱିନୀ ବକ୍ତୃତା ଚାଲିଥାଏ । ବିଦେଶୀ ପ୍ରତିନିଧିମାନଙ୍କ ମଧ୍ୟରେ ଆସନ ଗ୍ରହଣ କଲି । ସଭାପତିଙ୍କ ନିକଟରୁ ଚିଠା ଆସିଲା, ''୧ଟା ସମୟରେ ଆପଣ ଇଂରାଜୀରେ ୨୫ ମିନିଟ କହିବେ ।'' ସେଥିପାଇଁ ଆଗରୁ ପ୍ରସ୍ତୁତ ଥିବା ଯୋଗୁଁ, ଅସୁବିଧା ହେଲା ନାହିଁ ।

## ଫରାସୀମାନଙ୍କ ଚାଲିଚଳଣ

୧ ଟା ୩୦ ମିନିଟରେ ସେ ଦିନର ଅଧିବେଶନ ଶେଷ ହେଲା । ରାଜପଥର ଅନ୍ୟ ପାର୍ଶ୍ୱରେ ଗୋଟିଏ ସୁଶୋଭିତ ହଲରେ ମଧ୍ୟାହ୍ନ ଭୋଜନ ଲାଗି ସମସ୍ତେ ସମବେତ ହେଲେ । ଫରାସୀ ଜାତିର ସୌଖୀନ ଓ ବିଳାସିତାମୟ ଚାଲିଚରଣର ଯଥେଷ୍ଟ ସୂଚନା ମିଳୁଥାଏ । ଧନବାନ କିନ୍ତୁ ଆଳସ୍ୟପରାୟଣ ଜାତି ବୋଲି ସେମାନଙ୍କର ଯେଉଁ ଅପଖ୍ୟାତି ରହିଛି ତାହା ଜାଣିବାକୁ ବିଳମ୍ବ ହେଲା ନାହିଁ । ନିମନ୍ତ୍ରିତ ଫରାସୀ ବିଦ୍ୱାନମାନେ ଧୀର ମନ୍ଥର ଗତିରେ ଆସୁଥାନ୍ତି । ଖାଇଲାବେଳେ ଆଳାପ ମେଳାପ ଓ ହସଖୁସିରେ ସମୟ ବିତିଯାଉଥାଏ । ପ୍ରାୟ ୫୦ ପର୍ଯ୍ୟନ୍ତ ବିଦେଶୀ ପ୍ରତିନିଧି ଯଥାଶୀଘ୍ର ଭୋଜନ ଶେଷ କରୁଥିବାବେଳେ ଫରାସୀମାନେ ନିଶ୍ଚିନ୍ତ ମନରେ ବସି ରହିବା ଦେଖି ଆଶ୍ଚର୍ଯ୍ୟ ହେଲି । ଜଣେ ଇଂରେଜ ପ୍ରତିନିଧି କାନ ପାଖରେ କହିଲେ, ''ଫରାସୀ ପଣ୍ଡିତମାନେ ସବୁଠାରୁ ବେଶି ଅଳସୁଆ । ସେମାନେ ଭାବନ୍ତି, ଚିନ୍ତାଶକ୍ତି ପ୍ରଖର କରିବା ପାଇଁ ଆଳସ୍ୟ ଆବଶ୍ୟକ ।''

ସେ ଦିନ ଅପରାହ୍ନ ୫ଟାରେ ଫରାସୀ ବିଜ୍ଞାନ ଏକାଡ଼େମିର ସଭାପତି ସେଭିନ୍ ନାମକ ସ୍ଥାନରେ ସମସ୍ତଙ୍କୁ ଚା ପାନରେ ଆପ୍ୟାୟିତ କଲେ । ସେଠାରେ ମଧ୍ୟ ସେହି ସୌଖୀନ ଚାଲିଚରଣର ଦୃଶ୍ୟ ! ସନ୍ଧ୍ୟାବେଳେ ରାଜପଥରେ ବୁଲିଲା ବେଳେ ଲୋକମାନଙ୍କ ଗତିବିଧିରୁ ସେମାନଙ୍କ ଆଭିଜାତ୍ୟ ଓ ବିଳାସିତାର ପରିଚୟ ମିଳୁଥାଏ ।

## ଇନ୍‌ଷ୍ଟିଚିଉଟ ଡି ଫ୍ରାନ୍ସ

୧୯ସେପ୍ଟେମ୍ବର ୧୦ଟା ବେଳେ ପ୍ରତିନିଧିମାନେ ଉନ୍‌ଷ୍ଟିଚିଉଟ୍ ଡି ଫ୍ରାନ୍ସ ନାମକ ଭବନରେ ଏକତ୍ରିତ ହେଲେ । ଫରାସୀ ଓ ବିଦେଶୀ ମିଶି ସଭ୍ୟସଂଖ୍ୟା ଥାଏ ପ୍ରାୟ ୩୦୦ । ସେଇନ୍ ନଦୀ କୂଳରେ ଅବସ୍ଥିତ ସେହି ଭବନ ହେଉଛି ଫରାସୀ ଜାତିର ଜ୍ଞାନବିଜ୍ଞାନ ବିକାଶ ଦୃଷ୍ଟିରୁ ଏକ ପ୍ରଧାନ କେନ୍ଦ୍ର । ରାଜା ଚତୁର୍ଦ୍ଦଶ ଲୁଇଙ୍କ ମନ୍ତ୍ରୀ କାର୍ଡ଼ିନାଲ୍ ମାଜାରିନ୍ ଏହି ଅନୁଷ୍ଠାନର ପୃଷ୍ଠପୋଷକ

ଥିଲେ । ଯେଉଁ ବିଦ୍ୱାନମାନେ ସାହିତ୍ୟ, ଦର୍ଶନ, ଇତିହାସ, ଅର୍ଥନୀତି ଓ ବିଜ୍ଞାନ ପ୍ରଭୃତି ବିଷୟରେ କୃତିତ୍ୱ ପ୍ରଦର୍ଶନ କରୁଥିଲେ, ସେମାନଙ୍କୁ ଏହି ଅନୁଷ୍ଠାନ ସମ୍ମାନିତ କରୁଥିଲା । ସେମାନଙ୍କୁ 'ଅମର' ବା Immortal ଆଖ୍ୟା ଦିଆଯାଉଥିଲା ।

## ଗୋଟିଏ ଅଦ୍ଭୁତ ଭୋଜିର ଦୃଶ୍ୟ

ଇନ୍‌ଷ୍ଟିଚିଉଟ୍ ଡି ଫ୍ରାନ୍ସ ଦେଖିସାରିଲା ପରେ ସମସ୍ତଙ୍କୁ ବାସ୍ ଯୋଗେ ନିଆଗଲା ଦୂରବର୍ତ୍ତୀ ସାଣ୍ଟି ନାମକ ସ୍ଥାନରେ ଥିବା ଦୁର୍ଗ ନିକଟକୁ । ଦୁର୍ଗର ବିଶେଷତ୍ୱ ହେଉଛି ତାହାର ପ୍ରାକୃତିକ ପରିବେଶ ଓ ସେଠାରେ ରଖାଯାଇଥିବା ଦୁର୍ଲଭ ଚିତ୍ରକଳା । ତନ୍ମୟ ଚିତ୍ତରେ ଦୁର୍ଗଟି ଦେଖିଲାପରେ, ସମସ୍ତଙ୍କୁ ମଧ୍ୟାହ୍ନ ଭୋଜନ ନିମନ୍ତେ ପାର୍ଶ୍ୱବର୍ତ୍ତୀ ହୋଟେଲକୁ ନିଆଗଲା । ସେଠାକାର ଭୋଜନ ଦୃଶ୍ୟ ମନେ ରହିଲା ।

ତିନିଶହ ବ୍ୟକ୍ତିଙ୍କ ଖାଇବା ପାଇଁ ପ୍ରକାଣ୍ଡ ଭୋଜନାଳୟ । ପ୍ରତ୍ୟେକ ଟେବୁଲରେ ଚାରିଜଣଙ୍କ ବ୍ୟବସ୍ଥା । ମୋ ସାଙ୍ଗରେ ବସିଲେ ଜଣେ ମଙ୍ଗୋଲୀୟ ବୌଦ୍ଧ, ଜଣେ ଜାପାନୀ ଓ ଜଣେ ଇଂରାଜୀ ଜାଣିଥିବା ଫରାସୀ । ସମୟ ଦିନ ୧ଟା । ପ୍ରଥମେ, ପ୍ରତ୍ୟେକଙ୍କ ପ୍ଲେଟ ଉପରେ ରଖାଗଲା ଗୋଟିଏ ଲେଖାଏଁ ବଡ଼ ରୋହି ମାଛର ଭଜା । ପରିଚାରକଙ୍କୁ କହିଲି, "ମୁଁ ମାଛ ମାଂସ ଖାଏ ନାହିଁ । ଦରକାର ନିରାମିଷ ଖାଦ୍ୟ ।" ଫରାସୀ ବନ୍ଧୁ ଅନୁବାଦ କରି କହିଲାବେଳେ, ଦୟାର୍ଦ୍ର ଚାହାଣିରେ ପରିଚାରକ କ'ଣ ଗୁଡ଼ାଏ ଗୁହାରି ଜଣାଇଲେ । ବନ୍ଧୁ ଦୁଃଖ ପ୍ରକାଶ କଲେ, "ଏଠାରେ ନିରାମିଷ ବ୍ୟବସ୍ଥା ନାହିଁ । ଅପେକ୍ଷା କରିବାକୁ ହେବ ।" ମଙ୍ଗୋଲୀୟ ବନ୍ଧୁ କମେଣ୍ଟ ଦେଲେ, "ତା ହେଲେ, ଆମ ଭିତରେ ଆପଣ ଏକା ହେଉଛନ୍ତି ପ୍ରକୃତ ଅଭ୍ୟାସଗତ ଅହିଂସ ବୌଦ୍ଧ ।" ଜାପାନୀ ପଣ୍ଡିତ ସମର୍ଥନ ଜଣାଇ କହିଲେ, "Three Cheers for our big Buddhist brother !"

ଭୋକ ଲାଗିଥାଏ । ମୋର ଶୂନ୍ୟ ପ୍ଲେଟ ଆଡ଼କୁ ନ ଚାହିଁ, ଅନ୍ୟମାନଙ୍କ ପ୍ଲେଟ୍ ଉପରେ ଆଖି ପକାଇଲି । ଠନ୍ ଠାନ୍ ଧ୍ୱନି ମଧ୍ୟରେ ଗିଳନ କାର୍ଯ୍ୟ ଚାଲିଥାଏ । ଭାବିଲି, ଗୋଟିଏ ମାଛରେ ତ ଉଦର ପୂରିବ, ଆଗତପ୍ରାୟ ଅନ୍ୟ ପ୍ଲେଟଗୁଡ଼ିକର ସଦୁପଯୋଗ ହେବ କିପରି । କିନ୍ତୁ ଅବିଳମ୍ବେ ମୋ ଚିନ୍ତାର ଅବସାନ ଘଟିଲା । ମାଛଭଜାରୁ ଖଣ୍ଡିଏ ବା ଦୁଇଖଣ୍ଡି ଚେକା କଣ୍ଟାରେ କାଢ଼ି ପାଟିରେ ଭରିଲାବେଳକୁ ପରିଚାରକମାନେ ମାଛ ପ୍ଲେଟ ଉଠାଇନେଇ ମାଂସ ପ୍ଲେଟ ଥୋଇଦେଉଥାନ୍ତି । ପ୍ଲେଟରେ ଥାଏ ମସ୍ତ ବଡ଼ ଖଣ୍ଡିଏ ଲେଖାଏଁ ମାଂସ

ଫଡ଼ିଆ ! କୌଣସି ବୃହଦାକାର ପକ୍ଷୀର ସୁସ୍ୱାଦୁ ଚରଣ ନିଶ୍ଚୟ ! ସେଥିରୁ ମଧ୍ୟ ଚେକାଏ ଦୁଇଚେକା ଉଦରସ୍ଥ କଲାବେଳକୁ ପ୍ଲେଟଗୁଡ଼ିକ ଉଠାଇ ନିଆଗଲା । ଆସିଗଲା ବୃହତ୍ତର ମାଂସପିଣ୍ଡୁଳା ପୂର୍ଣ୍ଣ ପ୍ଲେଟ୍ । ଗୋରୁ କିମ୍ବା ଘୁଷୁରି ଶବର ଖଣ୍ଡବିଶେଷ । ଚାହୁଁ ଚାହୁଁ ପରିଚାରିକାମାନେ ପ୍ରତ୍ୟେକ ଟେବୁଲରେ ରଖିଗଲେ ରଙ୍ଗ ବେରଙ୍ଗ ବୋତଲ । ଛୋଟ ଛୋଟ ଗ୍ଲାସ ଆଗରୁ ମହଜୁଦ୍ ଥାଏ । ଏତେବେଳେ ଆରମ୍ଭ ହେଲା ପ୍ରକୃତ ଭୋଜନ ଓ ପାନ । ସେଥି ସଙ୍ଗେ ଚାଲିଲା କଥାବାର୍ତ୍ତା ଓ ହାସ୍ୟରୋଳ ।

ନିରାମିଷ ପ୍ଲେଟ ପ୍ରତି ଅପେକ୍ଷା କରି ବସିଥାଏଁ । ଘଣ୍ଟାଏ ସମୟ ବିତିଗଲାଣି । ଦୂରବର୍ତ୍ତୀ ପର୍ଦ୍ଦାର ଅନ୍ତରାଳରୁ ମୋର ଦୟାଶୀଳ ପରିଚାରକ କେତେବେଳେ ଆତ୍ମପ୍ରକାଶ କରିବେ, ତାହାହିଁ ଥିଲା କ୍ଷୁଧିତ ପ୍ରାଣର ବ୍ୟାକୁଳ ଆଗ୍ରହ ! ଭୋକ ସମ୍ଭାଳି ନ ପାରି ଫରାସୀ ପଣ୍ଡିତଙ୍କୁ କହିଲି, ‘‘ଅନ୍ତତଃ ପକ୍ଷେ, ଏକ ପ୍ଲେଟ କଞ୍ଚା ଟମାଟୋ, କାକୁଡ଼ି ଓ କୋବିପତ୍ରର ସାଲାଡ୍ ତ ଆସି ପାରିଥାନ୍ତା !’’ ସେ ଅପ୍ରସ୍ତୁତ ହେବା ଦେଖି ଅନ୍ୟ କଥା ଉତ୍ଥାପନ କଲି ।

ପଚାରିଲି, ‘‘ବଡ଼ ମାଛର ଖଣ୍ଡିଏ ଲେଖାଏଁ ଚେକା ଦେଇଥିଲେ ଚଳିଥାନ୍ତା । ପୂରା ମାଛଟା ନଷ୍ଟ କରାଗଲା କାହିଁକି ?’’ ଆକଣ୍ଠ ଗୋମାଂସ ଭୋଜନ ଓ ମଦ୍ୟପାନ କରୁଥିବା ଅବସ୍ଥାରେ ସେ ଉତ୍ତର ଦେଲେ, ‘‘ନଷ୍ଟ କାହିଁକି ହେବ ? ଅଖିଆ ମାଛତକ ସବୁ ପଡ଼ିବ ମତ୍ସ୍ୟଚାଷ କରାଯାଉଥିବା ନଦୀ ଓ ଜଳାଶୟରେ । ସେଠାରେ ଥିବା ବଞ୍ଚିଲା ମାଛଗୁଡ଼ାକ ମାଛଭଜା ଖାଇବେ । ଏତେ ପ୍ରଚୁର ମାତ୍ରାରେ ମାଛ ଉତ୍ପାଦନ ହୁଏ ଯେ ଯେତେ ବେଶି ସମ୍ଭବ ସେଗୁଡ଼ିକୁ ନ ମାରିଲେ ଉପାୟ ନାହିଁ ।’’ କଥାଟା ବୁଝିଗଲି । ଲୋକସଂଖ୍ୟା ଅନୁପାତରେ ଖାଦ୍ୟ ପାଇଁ ମାଛ ଓ ପଶୁପକ୍ଷୀର ସଂଖ୍ୟା ଯଥେଷ୍ଟ ବେଶି । କୃଷି ଓ ଶିଳ୍ପ, ଉଭୟ ଦୃଷ୍ଟିରୁ ଫ୍ରାନ୍ସଦେଶର ସମୃଦ୍ଧି ଯୋଗୁଁ ଦେଶବାସୀଙ୍କର ଅଭାବ ନାହିଁ । ସେଥିଯୋଗୁଁ ସେମାନେ ବିଳାସପ୍ରିୟ ଓ ଆଳସ୍ୟପରାୟଣ ବୋଲି ଅନୁମାନ କଲି ।

ଦେଢ଼ଘଣ୍ଟା ବସିରହିଲା ପରେ, ପନିପରିବା ସିଝା ଭର୍ତ୍ତିଥିବା ପ୍ଲେଟ ଓ ତତ୍‌ସଙ୍ଗେ ଫଳ ସହ ଆଇସ୍‌କ୍ରୀମ୍ ପ୍ଲେଟମାନ ଆସିଗଲା । ଫରାସୀ ବନ୍ଧୁଙ୍କୁ ପଚାରିଲି, ‘‘ଆଉ କେତେ ସମୟ ପରେ ଅତିଥିମାନେ ବିଦାୟ ନେବେ ?’’ ଉତ୍ତର ଥିଲା, ‘‘ଧରନ୍ତୁ, ଆଉ ଘଣ୍ଟାଏ ।’’ ବାସ୍ତବିକ୍, ଅପରାହ୍ନ ୪ଟା ବେଳେ ମଧ୍ୟାହ୍ନ ଭୋଜନ ଶେଷ ହେଲା । ସେହି ମୁହୂର୍ତ୍ତରେ ଘୋଷଣା କରାଗଲା, ‘‘ରାତ୍ରିଭୋଜନରେ ଆପ୍ୟାୟିତ କରିବେ ପ୍ୟାରିସ ନଗରୀର ମେୟର । ସ୍ଥାନ ହୋଟେଲ ଡି ଭିଲ୍ଲେ (Hotel de Ville) । ସମୟ ରାତି ୮ ଟା ୩୦ ମିନିଟ ।’’

ସନ୍ଧ୍ୟାପରେ ହୋଟେଲରେ ବିଶ୍ରାମ ନେଲି । ରାତ୍ରିଭୋଜନ ପାଇଁ ଯିବି କି ନାହିଁ, ତାହା ଚିନ୍ତା କରିବାକୁ ହେଲା । ନୈଶ ଭୋଜି ଯେ ତିନି କିମ୍ବା ଚାରି ଘଣ୍ଟା ପାଇଁ ଚାଲିବ ସେଥିରେ ସନ୍ଦେହ ନଥାଏ । ଯିବି ନାହିଁ ବୋଲି ନିଷ୍ପତ୍ତି ନେଲା ବେଳକୁ, ସହସା ମନେପଡ଼ିଲା ହୋଟେଲ ଡି ଭିଲ୍ଲେର ଐତିହାସିକ ମର୍ଯ୍ୟାଦା ବିଷୟ । ସ୍ଥାନଟି ଦେଖିବାକୁ ପ୍ରେରଣା ପାଇଗଲି ।

## ହୋଟେଲ ଡି ଭିଲ୍ଲେ

ଚାଲିଲି ଇତିହାସପ୍ରସିଦ୍ଧ ହୋଟେଲ ଡି ଭିଲ୍ଲେ ଦିଗକୁ । ରାତି ୭ଟା । ଦୂରରୁ ଦିଶୁଥାଏ ସିଏନ ନଦୀ ପାଣିରେ ପଡ଼ିଥିବା ଆଲୋକସଜ୍ଜିତ ଡି ଭିଲ୍ଲେର ଉଜ୍ଜ୍ୱଳ ପ୍ରତିବିମ୍ବ । ମଧ୍ୟଯୁଗୀୟ ଅଟ୍ଟାଳିକାର ଅନେକ ଅଂଶକୁ ଆଧୁନିକ ରୂପ ଦିଆଯାଇଛି । ତିନିଗୋଟି ସୌଧର ସଂମିଶ୍ରଣରେ ସମଗ୍ର ପ୍ରାସାଦର ଆକାର ଥାଏ ସୁବିଶାଳ । ଗେଟ୍ ପାଖରେ ଦଳେ ସ୍ୱେଚ୍ଛାସେବୀ ଛାତ୍ରଙ୍କୁ ଦେଖି କହିଲି, "ଯେଉଁ ଛାତ୍ର ଇଂରାଜୀ ଜାଣିଥିବେ, ତାଙ୍କର ସାହାଯ୍ୟ ଆବଶ୍ୟକ । ନୈଶଭୋଜି ଅପେକ୍ଷା ଏହି ସୌଧର ଇତିବୃତ୍ତ ଜାଣିବା ନିମନ୍ତେ ଆସିଛି ।" ଜଣେ ଯୁବକ ଆଗେଇ ଆସି "I can show you this historic building" ବୋଲି କହି ରାସ୍ତା ଦେଖାଇଲେ । ବୁଲିଲା ସମୟରେ ସେ ବର୍ଣ୍ଣନା କରିଗଲେ—

ରେନେସାଁ ଯୁଗର ସ୍ଥାପତ୍ୟ ଶୈଳୀରେ ଏହି ସୌଧ ନିର୍ମିତ ହୋଇଥିଲା । ନାମ ପଛରେ 'ହୋଟେଲ' ଶବ୍ଦ ଥିଲେ ମଧ୍ୟ, ଏବେ ଏହା ହେଉଛି ମେୟରଙ୍କ ସରକାରୀ କାର୍ଯ୍ୟାଳୟ । ଷୋଡ଼ଶ ଶତାବ୍ଦୀର କୌଣସି ଏକ ସମୟରେ ଏହିଠାରେ ଦିନେ ହଜାର ହଜାର ପ୍ରୋଟେଷ୍ଟ୍ୟାଣ୍ଟ ନରନାରୀଙ୍କୁ ଜୀବନ୍ତ ପୋଡ଼ି ଦିଆଯାଇଥିଲା । ସେହି ସମୟରୁ ଏଠାରେ ଅନେକ ଘଟଣା ଘଟିଯାଇଛି । ପ୍ୟାରିସୀୟ ଜନତା ଏହି ସ୍ଥାନରୁ ବାରମ୍ବାର ବିଦ୍ରୋହ, ବିପ୍ଳବ ଓ ବିକ୍ଷୋଭର ଧ୍ୱଜା ଉତ୍ତୋଳନ କରିଥିବା ହେତୁ ଡି ଭିଲ୍ଲେ ପ୍ରସିଦ୍ଧ ରହିଛି । ୧୭୮୯ ମସିହାର ଫରାସୀ ରାଷ୍ଟ୍ରବିପ୍ଳବ ବେଳେ ଏହିଠାରେ ବିକ୍ଷୁବ୍ଧ ଜନତା ରାଜା ଷୋଡ଼ଶ ଲୁଇଙ୍କୁ ବିପ୍ଳବର ତ୍ରିରଙ୍ଗ ପୋଷାକ ପିନ୍ଧିବାକୁ ବାଧ୍ୟ କରିଥିଲେ । ରାଜାଙ୍କ ମୁଣ୍ଡକାଟ ପରେ ଏହି ଘରଗୁଡ଼ିକ ହିଂସ୍ର ନେତାମାନଙ୍କର କ୍ଷମତାକେନ୍ଦ୍ର ହୋଇଥାଏ । ସେମାନଙ୍କ ଆଦେଶରେ ଶତଶତ ନରନାରୀଙ୍କ ମୁଣ୍ଡଚ୍ଛେଦ ଘଟିଥିଲା ।

ଏହି ସ୍ଥାନରୁ ପୁଣି ରବ୍ସ୍‌ପିୟେର ଓ ଅନ୍ୟ ଉଗ୍ରପନ୍ଥୀ ନେତାମାନଙ୍କୁ ଧରିନେଇ ଗିଲୋଟିନ ତଳେ ହତ୍ୟା କରାଯାଇଥିଲା । ପରବର୍ତ୍ତୀ ସମୟରେ ଅନେକ ବଡ଼ ବଡ଼ ଘଟଣା ସହିତ ଡି ଭିଲ୍ଲେ ଜଡ଼ିତ ରହିଲା । ୧୮୭୧ ମସିହାରେ ଜାର୍ମାନମାନଙ୍କ ହସ୍ତରେ ଫରାସୀମାନେ ପରାସ୍ତ ହେବା ସଂବାଦ ପାଇ କ୍ରୋଧୋନ୍ମତ୍ତ ଜନତା

ଏହି ସୌଧକୁ ପୋଡ଼ିପକାଇ ଥିଲେ । ନିଜ ଦେଶର ପରାଜିତ ସରକାରଙ୍କ ବିରୋଧରେ ପ୍ୟାରିସବାସୀ ଅସ୍ତ୍ରଧାରଣ କରିବା ଦେଖି ଶେଷରେ ସରକାରୀ ସୈନ୍ୟମାନେ ଏଠାରେ ଥିବା ୨୦ ହଜାର ବିକ୍ଷୋଭକାରୀଙ୍କୁ ହତ୍ୟା କରିଥିଲେ ଓ ଅନେକଙ୍କୁ ଦୂରବର୍ତ୍ତୀ ଉପନିବେଶଗୁଡ଼ିକୁ ଜାହାଜ ଭର୍ତ୍ତିକରି ଦେଶାନ୍ତରିତ କରିଥିଲେ । ସେହି ଘଟଣା ପରେ, ଭସ୍ମୀଭୂତ ଡି ଭିଲ୍ଲେ ସ୍ଥାନରେ ନୂତନଭାବେ ଏହି ଅଟ୍ଟାଳିକା ନିର୍ମାଣ କରାଯାଇଥିଲା ।

ସ୍ଥାନରୁ ସ୍ଥାନାନ୍ତର ବୁଲାଇ ସାରି ଯୁବକଟି ଶେଷରେ ଗୋଟିଏ ବାଲକୋନିକୁ ମୋତେ ନେଇଗଲେ । ବର୍ଣ୍ଣନାର ଉପସଂହାର ଛଳରେ ସେଠାରେ ଛିଡ଼ା ରହି ସଗର୍ବେ ଜଣାଇଲେ, ‘‘ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ପର୍ଯ୍ୟାୟରେ ନାଜି ଜାର୍ମାନମାନଙ୍କ କବଳରୁ ପ୍ୟାରିସ ନଗରୀକୁ ମୁକ୍ତ କରିବା ଲାଗି ଫରାସୀ ମୁକ୍ତିବାହିନୀ ଏହି ଅଟ୍ଟାଳିକାକୁ ସମର ଛାଉଣୀ କରିଥିଲେ । ଏବଂ, ଜାର୍ମାନମାନଙ୍କ ପଳାୟନ ପରେ, ଏହି ବାଲକୋନିର ଏହି ସ୍ଥାନରେ ଛିଡ଼ା ହୋଇ ଫରାସୀ ବୀର ଚାର୍ଲସ୍ ଡି ଗଲ୍ ଅସଂଖ୍ୟ ଲୋକଙ୍କ ନିକଟରୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଗ୍ରହଣ କରିଥିଲେ ।’’ ଶେଷ ବାକ୍ୟଟି କହିଲାବେଳେ ତାଙ୍କ ମୁଖମଣ୍ଡଳରେ ଭାବପ୍ରବଣତା ଲକ୍ଷ୍ୟ କଲି ।

୮ଟା ବାଜିବାକୁ ଅଳ୍ପ ସମୟ ବାକି ଥାଏ । ଯୁବକ ପ୍ରଶ୍ନ କଲେ, ‘‘ନୈଶ ଭୋଜିରେ ଯୋଗ ଦେବେ ନାହିଁ ? ମେୟର ଏକ ହଜାର ନାଗରିକଙ୍କୁ ନିମନ୍ତ୍ରଣ କରିଛନ୍ତି !’’ ପଚାରିଲି, ‘‘ଡିନାର ଶେଷ ହେବ କେତେ ରାତିରେ ?’’ ସେ ଆଶା ପ୍ରକାଶ କଲେ, “By midnight, I think.” ତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ କହିଲି, “I have to first digest the mental food you have so kindly offered. Therefore, I shall have no liking for your honourable Mayor’s delicacies which are after all food for the body.”

୨୦ ତାରିଖ ଦିନ ସମ୍ମେଳନର ଶେଷ ଦୁଇ ଅଧିବେଶନରେ ‘ସତ୍ୟସିଦ୍ଧ ଓ ବିଜ୍ଞାନସମ୍ମତ’ ଇତିହାସ ରଚନା ସମ୍ବନ୍ଧରେ ତାତ୍ତ୍ୱିକ ଭାଷଣମାନ ଶୁଣିଲି । ସମ୍ମେଳନ ଶେଷ ହେଲା । ଆଗାମୀ ୧୦ ଦିନ ରହିଲା ବୁଲିବା ପାଇଁ ।

## ଭାର୍ସାଇ ରାଜପ୍ରାସାଦ

ଭ୍ରମଣ ତାଲିକାରେ ପ୍ରଥମ ସ୍ଥାନଟି ରଖିଥିଲି, ଭାର୍ସାଇ ରାଜପ୍ରାସାଦ । ୨୧ ତାରିଖ ସକାଳେ ବାସ୍ ଯୋଗେ ସେଠାକୁ ଚାଲିଲି । ପୃଥିବୀରେ ଅନେକ ରାଜା ଅନେକ ପ୍ରାସାଦ ନିର୍ମାଣ କରିଯାଇଛନ୍ତି । କିନ୍ତୁ ଭାର୍ସାଇ ପ୍ରାସାଦ ନିର୍ମାଣ ପଛରେ

ଥାଏ ଏକ ଅସ୍ୱାଭାବିକ ଦର୍ଶନ । ତାହାହିଁ ଥିଲା ଏହାର ବିଶେଷତ୍ୱ । ଚୁମ୍ବକରେ ତାହା ଉଲ୍ଲେଖ କରୁଛି ।

ଫରାସୀ ରାଜା ଚତୁର୍ଦ୍ଦଶ ଲୁଇ ଜଣେ ଧର୍ମଯାଜକଙ୍କ କଥାରେ ବିଶ୍ୱାସ କରିଥିଲେ ଯେ, ରାଜାମାନେ 'ହେଉଛନ୍ତି ଈଶ୍ୱରଙ୍କ ପ୍ରତିନିଧି । ସେମାନଙ୍କ ଶରୀର ହେଉଛି ପବିତ୍ର ଓ ପୁଣ୍ୟମୟ । ଐଶ ପୁରୁଷ ରୂପେ ସେମାନେ ସାଧାରଣ ମନୁଷ୍ୟର ଅନେକ ଉର୍ଦ୍ଧ୍ୱରେ । ଏହି ବିଶ୍ୱାସ ମଧ୍ୟରୁ ନିର୍ଗତ ହେଲା ତାଙ୍କର ବିଚିତ୍ର ଚିନ୍ତା ।

ସେତେବେଳ ପର୍ଯ୍ୟନ୍ତ ରାଜାଙ୍କ ପ୍ରାସାଦ ଥାଏ ପ୍ୟାରିସ ସହର ଭିତରେ । ପ୍ରଜାମାନେ ରାଜଦର୍ଶନ ନିମନ୍ତେ ଆସୁଥାନ୍ତି । ଲୁଇ ଭାବିଲେ, ଭଗବାନଙ୍କୁ ଯେପରି କେହି ଦେଖନ୍ତି ନାହିଁ, ଅଥଚ ଭକ୍ତି କରନ୍ତି, ଠିକ୍ ସେହିପରି ରାଜାଙ୍କୁ ମଧ୍ୟ ପ୍ରଜାମାନେ ଦେଖିବା ଉଚିତ ନୁହେଁ । ମୂର୍ଖ, ନୀଚ ଓ ଇତର ଶ୍ରେଣୀୟ ମନୁଷ୍ୟମାନେ ଯଦି ସହଜରେ ନରଦେହୀ ଚଳନ୍ତି ପ୍ରଭୁଙ୍କୁ ଦେଖିପାରିବେ, ତେବେ ରାଜାଙ୍କର ମର୍ଯ୍ୟାଦା ରହିବ ନାହିଁ । ଏହି ଧାରଣାର ବଶବର୍ତ୍ତୀ ହୋଇ ଚତୁର୍ଦ୍ଦଶ ଲୁଇ ପ୍ୟାରିସ ନଗରୀର ୧୨ ମାଇଲ ଦୂରରେ ଥିବା ଭାର୍ସାଇ ନାମକ ପତିତ ଭୂମିରେ ତାଙ୍କ ନିମନ୍ତେ ସୁରମ୍ୟ ରାଜପ୍ରାସାଦ ନିର୍ମାଣ କରିଥିଲେ । ସେହି ପ୍ରାସାଦର ବିଶାଳତା ଓ ସୌନ୍ଦର୍ଯ୍ୟ ଯୋଗୁଁ ଇଉରୋପର ଅନ୍ୟ ରାଜାମାନେ ଈର୍ଷାନ୍ୱିତ ହେଲେ ।

କଥା ଏତିକିରେ ଶେଷ ହେଲା ନାହିଁ । ରାଜା ନୂତନ ପ୍ରାସାଦରେ ରହିଲେ ଓ ସମଗ୍ର ସ୍ଥାନ ପ୍ରଜାମାନଙ୍କ ପାଇଁ ନିଷିଦ୍ଧ ଅଞ୍ଚଳ ବୋଲି ଘୋଷିତ ହେଲା । କିନ୍ତୁ ରାଜା ବା ଏକାକୀ ରହନ୍ତେ କିପରି ? ବିଚକ୍ଷଣ ବୁଦ୍ଧି ବଳରେ ଲୁଇ ଚିନ୍ତା ପ୍ରକଟ କଲେ ଯେ, ସୂର୍ଯ୍ୟଙ୍କ ଚାରିପଟେ ଗ୍ରହରାଜି ଘୂରିବୁଲିବା ପରି ରାଜାଙ୍କ ଚାରିପଟେ ଉଚ୍ଚତମ ସମ୍ଭ୍ରାନ୍ତମାନେ ଘୂରିବୁଲିବା ଦରକାର । ସେଥିପାଇଁ, ରାଜପ୍ରାସାଦ ମଧ୍ୟରେ ରହିବା ନିମନ୍ତେ ଏକ ସହସ୍ର ସଭାସଦଙ୍କ ଲାଗି ସ୍ୱତନ୍ତ୍ର କକ୍ଷମାନ ନିର୍ମିତ ହେଲା । ସଭାସଦମାନଙ୍କ ସେବା ଲାଗି ରହିଲେ ଚାରି ସହସ୍ର ଭୃତ୍ୟ । ରାଜପ୍ରାସାଦ ବାହାରେ ରହିଲେ ୧୪ ହଜାର ପ୍ରହରୀ ଓ ଦାସ ଦାସୀ ।

ଚତୁର୍ଦ୍ଦଶ ଲୁଇଙ୍କ ପରେ ତାଙ୍କ ଉତ୍ତରାଧିକାରୀ ପଞ୍ଚଦଶ ଲୁଇ ଭାର୍ସାଇ ପ୍ରାସାଦରେ ସାରା ଜୀବନ ବିତାଇଲେ । ସେତେବେଳକୁ ଭାର୍ସାଇ ହୋଇଥାଏ ଏକ ପ୍ରଖ୍ୟାତ ପ୍ରମୋଦନଗରୀ । ସମ୍ଭ୍ରାନ୍ତମାନଙ୍କ ବିଳାସବ୍ୟସନ ଓ ବ୍ୟଭିଚାରର ସୀମା ନଥାଏ । ଅଜସ୍ର ଅର୍ଥ ବ୍ୟୟ କରି ରାଜା ଓ ସଭାସଦମାନେ ରାଜକୋଷ ଶୂନ୍ୟ କଲେ । କରଭାରରେ ପ୍ରଜାମାନେ ଜର୍ଜରିତ ହେଲେ । ସେମାନଙ୍କ କ୍ରୋଧ ପଡ଼ିଲା ରାଜପ୍ରାସାଦ ଉପରେ । ଭୟଙ୍କର ବିପ୍ଳବ ଲାଗି ବେଳ ଆସିଯାଉଥାଏ । ମୃତ୍ୟୁ ପୂର୍ବରୁ ବୃଦ୍ଧ

ପଞ୍ଚଦଶ ଲୁଇଙ୍କ ମୁଖରୁ ଭବିଷ୍ୟବାଣୀ ବାହାରି ପଡ଼ିଥିଲା, "ମୋ ପରେ ମହାପ୍ଲାବନ !"

ସତକୁ ସତ ତାହାହିଁ ଘଟିଲା । ତାଙ୍କପରେ ସିଂହାସନରେ ବସିଲେ ଷୋଡ଼ଶ ଲୁଇ । ଏହି ହତଭାଗ୍ୟ ରାଜାଙ୍କ ଅମଳରେ ଫରାସୀ ରାଷ୍ଟ୍ରବିପ୍ଳବ ସଂଘଟିତ ହେଲା । ତାଙ୍କ ରାଣୀ ମେରୀ ଏଣ୍ଟୋଇନେଟେ ଏତେ ଦୂର ଅଜ୍ଞ ଥିଲେ ଯେ, ପ୍ରଜାମାନେ 'ରୋଟି' 'ରୋଟି' ଚିତ୍କାର କରୁଛନ୍ତି ବୋଲି ଖବର ପାଇ ସେ କହିଥିଲେ, "ରୋଟି ନାହିଁତ ସେମାନେ ସୁମିଷ୍ଟ ପିଠା (କେକ୍) ଖାଆନ୍ତୁ ।" ଶେଷରେ ଦିନେ ସହସ୍ର ସହସ୍ର କ୍ଷୁଧିତା ଓ ଛିନ୍ନବସ୍ତ୍ର-ପରିହିତା ନାରୀ 'ରୋଟି' 'ରୋଟି' ବିକଟ ଧ୍ୱନି ସହ ବିରାଟ ପଟୁଆରରେ ଆସି ରାଜପ୍ରାସାଦ ଆକ୍ରମଣ କଲେ । ସେମାନଙ୍କ ସାଙ୍ଗରେ ଥିଲେ ନାରୀବେଶଧାରୀ ଅସଂଖ୍ୟ ହିଂସ୍ର ପୁରୁଷ । ସେମାନେ ପ୍ରାସାଦ ରକ୍ଷୀମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟାକଲେ । ରାତ୍ରିର ଗଭୀର ଅନ୍ଧକାର ମଧ୍ୟରେ ସେଦିନ ଭାର୍ସାଇ ପ୍ରାସାଦ ରକ୍ତରଞ୍ଜିତ ହେଲା । ରାଣୀ ଆତ୍ମଗୋପନ କରି ରକ୍ଷା ପାଇଲେ । କିନ୍ତୁ ତହିଁ ପରଦିନ ଉଚ୍ଛୃଙ୍ଖଳ ଜନତା ରାଜପରିବାରକୁ ଘୋଡ଼ାଗାଡ଼ିରେ ଭର୍ତ୍ତିକରି ପ୍ୟାରିସ୍ ସହରକୁ ଧରି ନେଇ ଆସିଲେ । ଭାର୍ସାଇ ରାଜପ୍ରାସାଦ ଶୂନ୍ୟ ପଡ଼ିଲା । କାନ୍ଥରେ ଲେଖାରହିଲା "ଭାର୍ସାଇ ଭଡ଼ାରେ ଲାଗିବ ।"

ବାସ୍‌ରେ ବସି ଭାର୍ସାଇ ଅଭିମୁଖେ ଗଲାବେଳେ ଇତିହାସର ଏହି ସମସ୍ତ କାହାଣୀ ମନେପଡୁଥାଏ । ଗାଡ଼ି ପହଞ୍ଚିଲା ପ୍ରାସାଦ ଆଗରେ । ଆକାର ପ୍ରକାରରୁ ଜଣାଗଲା, ଇଂଲଣ୍ଡର ବକିଂହାମ୍ ରାଜପ୍ରାସାଦ ଭାର୍ସାଇ ପ୍ରାସାଦର ଗୋଟିଏ ଅଂଶ ସହିତ ସମାନ ହୋଇପାରେ । ରୁଷ ସମ୍ରାଟମାନଙ୍କର ସୁବିଶାଳ 'ଶୀତପ୍ରାସାଦ' ମଧ୍ୟ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଏହା ସହିତ ସମତୁଲ୍ୟ ନୁହେଁ । କାରଣ, ଭାର୍ସାଇ ନିର୍ମିତ ହୋଇଥାଏ ମନୋମୁଗ୍ଧକର ପ୍ରାକୃତିକ ପରିବେଶ ମଧ୍ୟରେ । ମାଇଲ ମାଇଲ ବ୍ୟାପୀ ଉଦ୍ୟାନ ଓ ସବୁଜ ବନାନୀର ଶୋଭା ଦିଶୁଥାଏ ପ୍ରାସାଦର ଉଭୟ ପାର୍ଶ୍ୱରେ । ଯେଉଁ ସ୍ଥପତି ସୌଧରାଜିର ନକ୍ସା ଅଙ୍କନ କରିଥିଲେ, ତାଙ୍କର ଉଦ୍ଦେଶ୍ୟ ଥିଲା, ଅପରୂପା ପ୍ରକୃତିରାଣୀର କୋଳରେ ରହିଥିବ ଅପୂର୍ବ ରାଜପ୍ରାସାଦ ।

ପ୍ରାସାଦର ଉଦ୍ୟାନରେ ପ୍ରବେଶ କଲି । ବିଭିନ୍ନ ସ୍ଥାନରେ ରହିଛି ମାର୍ବଲ ଓ ବ୍ରୋଞ୍ଜ୍ ନିର୍ମିତ ପୌରାଣିକ ମୂର୍ତ୍ତି । ଗୋଟିଏ ପ୍ରାନ୍ତକୁ ନେଇଯାଇ ଗାଇଡ଼ ଜଣାଇଲେ, ରାଜାମାନେ ପ୍ରକୃତିର ଶୋଭା ଉପଭୋଗ ଲାଗି ଏହି ସ୍ଥାନରେ ବିଚରଣ କରୁଥାନ୍ତି । "ଚତୁର୍ଦ୍ଦଶ ଲୁଇ ଭାବୁଥାନ୍ତି, ସେ ପ୍ରକୃତି ସହିତ ମିଶିଯାଇଛନ୍ତି ।" ସେଠାରୁ ଅନ୍ୟ ଏକ ନିଭୃତ କୋଣକୁ ନେଇ ସେ ଦେଖାଇଦେଲେ ଦୂରରେ

ଥିବା ନଦୀ ଓ ହ୍ରଦର ଦୃଶ୍ୟ । ହ୍ରଦକୂଳରେ ଦିଶୁଥାଏ ଗୋଟିଏ ଗ୍ରାମ୍ୟଗୃହ ଓ ମନୋରମ ଏକ କ୍ଷୁଦ୍ର ମନ୍ଦିର । ନାମ ଥାଏ 'ପ୍ରେମ ମନ୍ଦିର' । ଗାଇଡ୍ କହିଲେ, ''ରାଣୀ ମେରୀ ଏଣ୍ଟୋଇନେଟେ ସେଠାକୁ ଯାଇ ନିଜକୁ ଜଣେ କୃଷକ ମହିଳା ବୋଲି କଳ୍ପନା କରି ଗ୍ରାମ୍ୟ ଜୀବନର ସ୍ୱାଦ ଅନୁଭବ କରୁଥିଲେ ।'' ସବୁ ଦିଗରେ ଦିଶୁଥାଏ ପାଣିର ଉସ୍, ପୁଷ୍କରିଣୀ ଓ ନିଘଞ୍ଚ ବୃକ୍ଷଲତା ।

ରାଜପ୍ରାସାଦ ସମ୍ମୁଖରେ ରହିଛି ଜଳାଶୟ । ସେଥିରେ ପ୍ରତିଫଳିତ ହୁଏ ପ୍ରାସାଦର ପ୍ରତିବିମ୍ବ । ଘରସଂଖ୍ୟା ଗଣିବା ସମ୍ଭବ ହେଲା ନାହିଁ । ରହସ୍ୟପୂର୍ବକ ଗାଇଡ଼ଙ୍କୁ ଅନୁରୋଧ କଲି, ''ମୋତେ କେବଳ ଇତିହାସପ୍ରସିଦ୍ଧ କେତୋଟି କକ୍ଷକୁ ନେଇଚାଲନ୍ତୁ । ସବୁ କକ୍ଷ ତ ସବଳ ଓ ବିଶାଳକାୟ ଚତୁର୍ଦ୍ଦଶ ଲୁଇ ମଧ୍ୟ କଦାପି ଦେଖି ପାରି ନଥିବେ କିମ୍ବା ପଞ୍ଚଦଶ ଲୁଇ ଗଣ୍ଡିବାତ ଯୋଗୁଁ ଉପର ତାଲାକୁ ଯାଇପାରି ନଥିବେ ।'' ତାଙ୍କ ଦେଶର ରାଜାମାନଙ୍କ ସମ୍ବନ୍ଧରେ ମୋର କିଛି କିଛି ଧାରଣା ଅଛି ଜାଣି ଫରାସୀ ଗାଇଡ୍ ବିଶେଷ ପ୍ରୀତ ହେଲେ ।

ପ୍ରଥମେ ସେ ମୋତେ ଦ୍ୱିତୀୟ ତାଲାରେ ଥିବା ରାଜା ଓ ରାଣୀମାନଙ୍କ ଶୟନକକ୍ଷ ଦେଖାଇଲେ । ଉପକ୍ରମଣିକା ଛଳରେ ଜଣାଇଦେଲେ, ''ଫରାସୀ ବିପ୍ଳବ କାଳରେ ରାଜପ୍ରାସାଦର ଆସବାବପତ୍ର ଓ ମହାର୍ଘ ଚିତ୍ରପଟମାନ ବିପ୍ଳବୀ ଜନତା ଲୁଟ୍‌ପାଟ୍ କରି ନେଇ ପଳାଇଥିଲେ । କିନ୍ତୁ, ବିପ୍ଳବ ପରେ ଜାତୀୟ ସମ୍ପଦ୍‌ଗୁଡ଼ିକୁ ସେମାନେ ଫେରାଇ ଦେଇଥିଲେ । ଯଥାସମୟରେ ଭାର୍ସାଇ ପ୍ରାସାଦକୁ ଏକ ଜାତୀୟ ଯାଦୁଘରରେ ପରିଣତ କରାଗଲା । ଆପଣ ଯାହାସବୁ ଦେଖିବେ, ତାହା ହେଉଛି ଲୁଇ ରାଜାମାନଙ୍କର ଜିନିଷ ।''

ଚତୁର୍ଦ୍ଦଶ ଲୁଇଙ୍କ ଶୟନକକ୍ଷର କାନ୍ଥରେ ରହିଛି ରାଜାଙ୍କର ପ୍ରକାଣ୍ଡ ତୈଳଚିତ୍ର । ମିନାର୍ଡ଼ ନାମଧେୟ ଚିତ୍ରଶିଳ୍ପୀଙ୍କ ଅଙ୍କିତ ମୂର୍ତ୍ତି ଜୀବନ୍ତ ଦେଖାଯାଏ । ରାଜାଙ୍କ ପଲଙ୍କ ପ୍ରଭୃତି ଯଥାସ୍ଥାନରେ ରହିଛି । ପଞ୍ଚଦଶ ଲୁଇଙ୍କ କକ୍ଷମାନ ଅଧିକ ଆକର୍ଷଣୀୟ । କାରଣ, ସେ ଥିଲେ ଅତ୍ୟନ୍ତ ବିଳାସପ୍ରିୟ । ରାଣୀ ମେରୀ ଏଣ୍ଟୋଇନେଟେଙ୍କ ପଲଙ୍କ ଓ ଶେଯ ଦେଖାଇବାବେଳେ ଗାଇଡ଼ ସେହି ବିଳାସିନୀ ମହିଳାଙ୍କ ସମ୍ପର୍କରେ ଅନେକ କଥା କହିଗଲେ । ''ତାଙ୍କ ବ୍ୟକ୍ତିଗତ ଦାସଦାସୀଙ୍କ ସଂଖ୍ୟା ଥିଲା ପାଞ୍ଚଶହ ।'' କାନ୍ଥରେ ଝୁଲୁଥାଏ ଲେବ୍ରାନଙ୍କ ଅଙ୍କିତ ବୃହଦାକାର ତୈଳଚିତ୍ର । ସେଥିରେ ରାଣୀ ଓ ତାଙ୍କ ତିନିଜଣ ସନ୍ତାନସନ୍ତତିଙ୍କ ଛବି ଥାଏ । ଚତୁର୍ଥ ସନ୍ତାନଟି ମରିଯାଇଥିବାରୁ ଚିତ୍ରପଟରେ ଶିଶୁର ଶେଯଟି ଚିତ୍ରିତ ରହିଛି ।

ଗାଇଡ୍ ନେଇଗଲେ ଚତୁର୍ଦ୍ଦଶ ଲୁଇଙ୍କ ସୁପ୍ରସିଦ୍ଧ ଦରବାର କକ୍ଷକୁ । ରାଜାଙ୍କ ଅଭିପ୍ରାୟ ଥିଲା, ଦରବାରର ଚାକଚକ୍ୟରୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ମିଳିବ

ଉଚିତ । ସେଥିପାଇଁ, ସୁଦୀର୍ଘ କାନ୍ଥଗୁଡ଼ିକ ଉପରେ ବହୁମୂଲ୍ୟ ପ୍ରକାଣ୍ଡ ପ୍ରକାଣ୍ଡ କାଚଖଣ୍ଡ ଲଗାଇ କକ୍ଷଟିକୁ ଉଦ୍ଭାସିତ କରାଯାଇଥିଲା । କକ୍ଷର ନାମ ଥିଲା 'ଦର୍ପଣ କକ୍ଷ' ।

ଇତିହାସର କାଳଚକ୍ରରେ ଦିନେ ଭାର୍ସାଇ ପ୍ରାସାଦ ଜାର୍ମାନମାନେ ଅଧିକାର କରିନେଇଥିଲେ ଓ ବିସମାର୍କ ଏହି ଦରବାର କକ୍ଷରେ ଜାର୍ମାନ ସମ୍ରାଟଙ୍କ ଅଭିଷେକ ଉତ୍ସବ ପାଳନ କରିଥିଲେ (୧୮୭୧) । ପୁଣି ଦିନ ଆସିଲା ଯେତେବେଳେ ପ୍ରଥମ ମହାଯୁଦ୍ଧରେ ଜାର୍ମାନ ସମ୍ରାଟଙ୍କ ପରାଜୟ ପରେ, ସେହି 'ଦର୍ପଣ କକ୍ଷ' ମଧ୍ୟରେ ବିଜୟୀ ଫରାସୀମାନେ ପରାଜିତ ଜାର୍ମାନମାନଙ୍କୁ ଅପମାନଜନକ 'ଭାର୍ସାଇ ସନ୍ଧି' ରେ ସ୍ୱାକ୍ଷର କରିବାକୁ ବାଧ୍ୟ କରିଥିଲେ ।

ପ୍ରାସାଦ ଦେଖିସାରି ପୁଣି ଉଦ୍ୟାନରେ ବୁଲିଲି । ଯେଉଁ ସ୍ଥାନରେ ଛିଡ଼ାରହି ରାଜାରାଣୀମାନେ ପଶ୍ଚିମ ଦିଗ୍‌ବଳୟରେ ସୂର୍ଯ୍ୟାସ୍ତ ଦେଖୁଥିଲେ, ସେହିଠାରେ ସନ୍ଧ୍ୟାପର୍ଯ୍ୟନ୍ତ ବସିରହିଲି ।

### 'ମୋଲିନ୍ ରୋଜ୍' ରହସ୍ୟ

ଭାର୍ସାଇଠାରୁ ଫେରି ରାତି ୮ଟା ବେଳେ ହୋଟେଲ ଡାସିଆରେ ପହଞ୍ଚିଲି । ମ୍ୟାନେଜାର ମହୋଦୟ ମୋତେ ଅପେକ୍ଷା କରିଥିବା ପରି ଜଣାଗଲା । ତାଙ୍କ ପାଖରେ ବସିଥାନ୍ତି ଜଣେ ବାମନାକୃତି ମୋଟା ଭଦ୍ରଲୋକ । ମ୍ୟାନେଜାର ବାବୁ ଉତ୍କଣ୍ଠାମିଶ୍ରିତ କୋମଳ ସ୍ୱରରେ କହିଲେ, "ଏହି ଭଦ୍ରଲୋକ ଆଲଜେରିଆରୁ ଆସିଛନ୍ତି । ଜଣେ ବ୍ୟବସାୟୀ । ମୋଲିନ ରୋଜ୍ ଯିବା ପାଇଁ ଦୁଇଖଣ୍ଡି ଟିକଟ କିଣିଛନ୍ତି । କିନ୍ତୁ ତାଙ୍କ ବନ୍ଧୁ ଏ ପର୍ଯ୍ୟନ୍ତ ଆସିଲେ ନାହିଁ । ସାଢ଼େ ୮ଟାରେ 'ଶୋ' ଆରମ୍ଭ ହେବ । ଆପଣ ତାଙ୍କ ସାଙ୍ଗରେ ଯାଆନ୍ତୁ । ତିନି ଦିନ ଆଗରୁ ଟିକଟ ନ କଲେ ମୋଲିନ ରୋଜ ଯିବା ସମ୍ଭବ ନୁହେଁ । ଡିନାର ମୂଲ୍ୟ ୫୯୫ ଫ୍ରାଙ୍କ୍ ଓ ନାଚ ଦେଖିବା ପାଇଁ ୪୬୦ ଫ୍ରାଙ୍କ୍ ।"

ପ୍ୟାରିସ୍ ସହରର ଦୁଇଟି ନାମ ବୋଧହୁଏ ଆଗନ୍ତୁକମାନଙ୍କୁ ଜଣାଥାଏ । ଗୋଟିଏ ହେଲା ଏଇଫେଲ୍ ଗୁମ୍ଫଜ ଓ ଅନ୍ୟଟି ମୋଲିନ୍ ରୋଜ ନୃତ୍ୟଶାଳା । ଏଇଫେଲ୍ ଟାୱାର ଉଠିବା ଲାଗି ଦିନ, ଓ ମୋଲିନ ରୋଜ୍‌ରେ ବସିବା ପାଇଁ ରାତି । ଅନେକ ଟୁରିଷ୍ଟ ଏଇଫେଲ୍ ଉଠିବାକୁ ଇଚ୍ଛା କରନ୍ତି ନାହିଁ, କିନ୍ତୁ ମୋଲିନ ରୋଜରେ ରାତି ବିତାଇବାକୁ ସଂକଳ୍ପ ନେଇ ଆସିଥାନ୍ତି । ବିବସ୍ତ୍ରା ଓ ଆବରଣହୀନା ନଗ୍ନା ସୁନ୍ଦରୀମାନେ ବିଚିତ୍ର ଅଙ୍ଗଭଙ୍ଗୀ ପ୍ରଦର୍ଶନ ପୂର୍ବକ ଚାରିପଟେ ନାଚିବା ବେଳେ ଦର୍ଶକମାନେ ଅନ୍ୟ ସୁନ୍ଦରୀମାନଙ୍କ ହାତରୁ ମଦ୍ୟପାତ୍ର ଧରିନିଅନ୍ତି ।

ରାତିର ବିଳମ୍ବିତ ବା ଶେଷ ପ୍ରହର ପର୍ଯ୍ୟନ୍ତ ଅପ୍ସରାମାନଙ୍କୁ ଦେଖି ଦେଖି ପୁରୁଷମାନେ ସ୍ୱର୍ଗସୁଖ ଉପଭୋଗ କରନ୍ତି ।

ଆଲଜେରୀୟ ବ୍ୟବସାୟୀ ଥରେ ଘଡ଼ିକୁ ଚାହିଁ, ଆଉ ଥରେ ମୋ ମୁହଁକୁ ଦେଖୁଥାନ୍ତି । ସେତେବେଳେ ତାଙ୍କ ପ୍ରତ୍ୟେକ ମିନିଟର ମୂଲ୍ୟ ଥାଏ ସହସ୍ର ଡଲାର । ଚଞ୍ଚଳ ଆଖିରେ ମୋ ସମ୍ମତି ଆଶା କରୁଥାନ୍ତି । ମ୍ୟାନେଜାରବାବୁଙ୍କୁ କହିଲି, ''ମୋଲିନ ରୋଜ ଉପଭୋଗ କରିବା ଲାଗି ବୟସ ଗଡ଼ିଗଲାଣି, ତେଣୁ ଯିବି ନାହିଁ ।'' ସେ ଆପ୍ତବାକ୍ୟ ଶୁଣାଇଲେ, ''କଦାପି ନୁହେଁ, କଦାପି ନୁହେଁ । ବୟସ ଯେତିକି ବଢ଼ିଚାଲେ, ବାସନା ସେତିକି ବଢ଼ିଉଠେ । ସେଠାରେ ଆପଣଙ୍କ ଅଜାମାନଙ୍କୁ ମଧ୍ୟ ଦେଖିପାରିବେ । ମୋଲିନ୍ ରୋଜ୍ ପାଇଁ ବୟସର ସୀମା ନାହିଁ । ଦୃଷ୍ଟିଶକ୍ତି ରହିଲେ ଯଥେଷ୍ଟ । ସୁଯୋଗ ଛାଡ଼ନ୍ତୁ ନାହିଁ, ଆଖିବୁଜି ଚାଲିଯାଆନ୍ତୁ ।''

ଅବାନ୍ତର ବାକ୍ୟାଳାପ ପ୍ରତି ବିରକ୍ତି ଦେଖାଇ ଆଲ୍‌ଜେରୀୟ ଭଦ୍ରଲୋକ କ୍ରୋଧାନ୍ୱିତ ଭାବରେ ଅନ୍ତର୍ଦ୍ଧାନ ହେଲେ । ମ୍ୟାନେଜାରବାବୁ ମୋତେ ଭର୍ତ୍ସନା କଲେ, ''ଆପଣ ଅଦ୍ଭୁତ ବ୍ୟକ୍ତି ! ପ୍ୟାରିସ୍ ଆସି ମୋଲିନ୍ ରୋଜ୍ ଦେଖିବେ ନାହିଁ ? ମରିଯାଇଥିବା ରାଜାମାନଙ୍କର ଘର ଦେଖି କ'ଣ ପାଇବେ ? ଜୀବନ୍ତ ରୂପସୀମାନଙ୍କ ନୃତ୍ୟ ଭୋଗ କଲେ ଯୌବନ ଫେରିପାଇବେ, ବୁଝିଲେ ! ଏବେ ବି ସମୟ ଅଛି ! ପରେ ଅନୁତାପ କରିବେ ।'' ତାଙ୍କ ଭର୍ତ୍ସନାବାଣୀ ଶୁଣିବାକୁ ଭଲ ଲାଗିଲା ।

## ନେପୋଲିୟନଙ୍କ ସମାଧି ସୌଧ

ସେପ୍ଟେମ୍ବର ୨୨ ତାରିଖରୁ ୩୦ ତାରିଖ ମଧ୍ୟରେ ଯେଉଁ ସ୍ଥାନମାନ ଦେଖିଥିଲି, ତାହା ବର୍ଣ୍ଣନା କଲେ ବହିର ପୃଷ୍ଠାସଂଖ୍ୟା ବଢ଼ିଯିବ । ସେଥିଯୋଗୁଁ ସେଥିରୁ କ୍ଷାନ୍ତ ରହିଲି ।

୨୨ ତାରିଖ ଦିନ ସମ୍ରାଟ ନେପୋଲିୟନଙ୍କ ସମାଧିସୌଧ ଦେଖିବାକୁ ଗଲି । ସ୍ଥାନର ନାମ ଥାଏ 'ଇନ୍ ଭେଲିଡ୍' ବା ଅକର୍ମଣ୍ୟଙ୍କ ଆଶ୍ରୟସ୍ଥଳ । ପୂର୍ବକାଳରେ ସେଠାରେ ୭ ହଜାର ବୃଦ୍ଧ ଓ ବିକଳାଙ୍ଗ ସୈନ୍ୟଙ୍କ ଚିକିତ୍ସା ନିମନ୍ତେ ହସପିଟାଲ ଥାଏ । ହସପିଟାଲ ନିକଟସ୍ଥ ବୃହଦାକାର ଗିର୍ଜାଗୃହ ମଧ୍ୟରେ କବର ଭିତରେ ରଖାଯାଇଛି ନେପୋଲିୟନଙ୍କ ଦେହାବଶେଷ । ବ୍ରିଟିଶମାନଙ୍କ ହସ୍ତରେ ବନ୍ଦୀ ଭାବରେ ଆଟଲାଣ୍ଟିକ ମହାସାଗରରେ ଥିବା ସେଣ୍ଟ ହେଲେନା ଦ୍ୱୀପରେ ସମ୍ରାଟ ଜୀବନତ୍ୟାଗ କରିଥିଲେ । ମୃତ୍ୟୁ ପୂର୍ବରୁ ତାଙ୍କର ଶେଷ ଇଚ୍ଛାପତ୍ରରେ ସେ କହିଥିଲେ, ''ଯେଉଁ

ଫରାସୀ ଜାତିକୁ ମୁଁ ଭଲ ପାଇଛି, ସେହିମାନଙ୍କ ମଧ୍ୟରେ ସେଇନ୍ ନଦୀ କୂଳରେ ମୋର ମର ଶରୀରକୁ ବିଶ୍ରାମ ଦିଆଯାଉ । ଇଂରେଜ ଶାସକଗୋଷ୍ଠୀର ଭଡ଼ାଟିଆ ଆତତାୟୀମାନଙ୍କ ହାତରେ ନିହତ ହୋଇ ମୁଁ ମୋର ସମୟ ହେବା ପୂର୍ବରୁ ବିଦାୟ ନେଉଛି ।'' ମାତ୍ର ୫୨ ବର୍ଷ ବୟସରେ ତାଙ୍କର ମୃତ୍ୟୁ ଘଟିଥିଲା । ତାହାର ୨୦ ବର୍ଷ ପରେ ତାଙ୍କ କଫିନ୍‌କୁ ସେଣ୍ଟ ହେଲେନା ଦ୍ୱୀପରୁ ପ୍ୟାରିସ ଅଣାଯାଇ ସମାଧିସ୍ଥ କରାଗଲା । ଯେଉଁ ଦିଗ୍‌ବିଜୟୀ ଯୋଦ୍ଧା ଇଉରୋପ ମହାଦେଶକୁ ପଦାନତ କରିଥିଲେ ଓ ଫରାସୀ ଜାତିର ସମ୍ରାଟ ଥିଲେ, ତାଙ୍କ ପରି ମହାବୀରଙ୍କ ସମାଧି ମନ୍ଦିର ବିଶେଷ ମର୍ଯ୍ୟାଦାପୂର୍ଣ୍ଣ ଦିଶିଲା ନାହିଁ । ଆଶ୍ଚର୍ଯ୍ୟବୋଧ ହେଲା, ଆଧୁନିକ ବିଶ୍ୱର ଜଣେ ଅସାଧାରଣ କର୍ମବୀରଙ୍କ ସମାଧି 'ଅକର୍ମଣ୍ୟ' ନାମଧେୟ ସ୍ଥାନରେ ସ୍ଥାପିତ ହେଲା କାହିଁକି ? ଜଣେ ଫରାସୀ ପଣ୍ଡିତଙ୍କୁ ଏହି ପ୍ରଶ୍ନ ପଚାରି ସନ୍ତୋଷଜନକ ଉତ୍ତର ପାଇ ନଥିଲି ।

## ନଟରଡାମ୍ ଗିର୍ଜା

ନଟରଡାମ ଗିର୍ଜା ଦେଖିଲି । ଆଠ ଶହ ବର୍ଷର ସେହି ପୁରାତନ ଗିର୍ଜାଗୃହ ହେଉଛି ଫରାସୀ ଜାତିର ସର୍ବପ୍ରଧାନ ଧର୍ମପୀଠ । ଗଳ୍ପ ଅଛି, ଗିର୍ଜାର ପ୍ରଥମ ପୃଷ୍ଠପୋଷକ ସେଣ୍ଟ ଡେନିସ୍‌ଙ୍କୁ ହତ୍ୟା କଲାପରେ ସେ ନିଜ କଟା ମୁଣ୍ଡଟି ହାତରେ ଉଠାଇ ନେଇ ଚାଲିଯାଇଥିଲେ । ସ୍ଥାନର ଦୈବୀଶକ୍ତି ପ୍ରମାଣ ନିମନ୍ତେ ସେପରି କିମ୍ବଦନ୍ତୀର ସୃଷ୍ଟି ! ସେଇନ୍ ନଦୀ କୂଳରେ ନଟରଡାମର ବିଶାଳ ସୌଧ ଦୂରରୁ ସୁଦୃଶ୍ୟ ଚିତ୍ରପଟ ପରି ଦେଖାଯାଏ । ପ୍ରାଚୀନତ୍ୱ, ଆକାର ଓ ସ୍ଥାପତ୍ୟକଳା ଦୃଷ୍ଟିରୁ ଏପରି ଗିର୍ଜାର ସଂଖ୍ୟା ବିରଳ । ୪୩୦ ଫୁଟ ଦୈର୍ଘ୍ୟ ଓ ୧୫୦ ଫୁଟ୍ ପ୍ରସ୍ଥ ବିଶିଷ୍ଟ ପ୍ରାର୍ଥନାକକ୍ଷର ଛାତ ରହିଛି ୧୧୫ ଫୁଟ୍ ଉର୍ଦ୍ଧ୍ୱରେ । ଗିର୍ଜାର ଗୁମ୍ବଜ ୨୦୦ ଫୁଟ ଉଚ୍ଚ । ଆଠଶହ ବର୍ଷର ପୁରୁଣା ରଙ୍ଗିନ କାଚ ଦ୍ୱାରା ଝରକାଗୁଡ଼ିକ ଅଳଙ୍କୃତ । ଧର୍ମପ୍ରାଣ ନରନାରୀଙ୍କୁ ପ୍ରାର୍ଥନାରତ ଦେଖି ଗିର୍ଜାର ପବିତ୍ରତା ଅନୁଭବ କଲି ।

## ଏଇଫେଲ୍ ଟାୱାର

ଦିନେ ପ୍ୟାରିସର ଅନ୍ୟତମ ଆକର୍ଷଣ ଏଇଫେଲ୍ ଟାୱାର ଦେଖିବାକୁ ଗଲି । ଅଞ୍ଚଳଟି ଅସଂଖ୍ୟ ଦୋକାନରେ ପୂର୍ଣ୍ଣ ଥାଏ । ନାନାପ୍ରକାର ସୌଖୀନ ସାମଗ୍ରୀ ସେଠାରେ ମିଳେ । ସବୁଠାରୁ ଆକର୍ଷଣୀୟ ଜିନିଷ ଥାଏ ଅତର । ଦୋକାନୀମାନେ ପର୍ଯ୍ୟଟକମାନଙ୍କ ଦେହରେ ଟିକିଏ ଟିକିଏ ଅତର ଲଗାଇବା ମାତ୍ରେ ପୋଷାକ ପରିଚ୍ଛଦ ସୁବାସିତ ହୋଇଉଠେ । ସମଗ୍ର ବଜାରଟି ସୁଗନ୍ଧରେ ମହକି ଉଠୁଥାଏ ।

କିନ୍ତୁ ଦାମ୍ ଅନେକ ବେଶି । ଚ୍ୟାନେଲ୍, ଆମାଜୋନ ଓ ରୋଚାସ୍ ପ୍ରଭୃତି ଛୋଟ ଛୋଟ ଅତର ଶିଶିର ମୂଲ୍ୟ ଶହ ଶହ ଟଙ୍କା ।

ଏଇଫେଲ ଗୁମ୍ବଜର ଉଚ୍ଚତା ୯୮୦ ଫୁଟ ବା ୩୦୦ ମିଟାର । ଲିଫ୍ଟ୍ ଯୋଗେ ଉପରକୁ ଉଠିଲି । ଶୀର୍ଷ ସ୍ଥାନରୁ ସମଗ୍ର ସହର ଦେଖାଯାଏ । କୁହାଗଲା, ସେଠାରୁ ୪୦ ମାଇଲ ବ୍ୟାପୀ ଦୂରତ୍ୱ ପର୍ଯ୍ୟନ୍ତ ଦିଗ୍‌ବଳୟ ଦୃଷ୍ଟିଗୋଚର ହୁଏ ।

## ଲୌଭରେ

ପୂରା ଗୋଟିଏ ଦିନ ବୁଲିଲି ପ୍ୟାରିସ ନଗରୀର ସର୍ବାଧିକ ସୁନ୍ଦର ସ୍ଥାନ ରୂପେ ପରିଚିତ ଲୌଭରେ ନାମକ ଅଞ୍ଚଳରେ । ଏକଦା ସେହି ସ୍ଥାନରେ ଥିଲା ଫରାସୀ ରାଜାମାନଙ୍କର ତୁଇଲେରୀ ରାଜପ୍ରାସାଦ । ଅଧୁନା ସେଠାରେ ଅଛି ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଯାଦୁଘର ଓ ଚିତ୍ରଶାଳା । ଏହି ଅଞ୍ଚଳର ଗୋଟିଏ ଅଂଶରେ ରହିଛି ତଥାକଥିତ 'ପୁଷ୍ପ ପ୍ରାନ୍ତର', ଅର୍ଥାତ୍ ସବୁଜ ଘାସ ଉପରେ ନାନାପ୍ରକାର ପୁଷ୍ପର ଚିତ୍ର ବିଚିତ୍ର ସୁବିସ୍ତୀର୍ଣ୍ଣ ଶଯ୍ୟା । ସେହିଠାରୁ ମାର୍ବଲ ମୂର୍ତ୍ତି ଦ୍ୱାରା ସୁଶୋଭିତ ପଥଟି ବ୍ୟାପି ଯାଇଛି 'ବିଜୟ ତୋରଣ' ପର୍ଯ୍ୟନ୍ତ ।

ଲୌଭରେ ମିଉଜିୟମ ମଧ୍ୟରେ ରହିଥିବା ଅମୂଲ୍ୟ ଭାସ୍କର୍ଯ୍ୟ ଓ ଚିତ୍ରକଳା ଦେଖିବାକୁ ଯଥେଷ୍ଟ ସମୟ ନଥାଏ । ତଥାପି, ଭିତରେ ପଶିଲି । ରେନେସାଁ ଯୁଗର ଅମର ଶିଳ୍ପୀମାନଙ୍କର ବିଶ୍ୱବିଖ୍ୟାତ କୀର୍ତ୍ତିଗୁଡ଼ିକ ଏଠାରେ ରଖାଯାଇଛି । ଲିଓନାର୍ଡୋ ଡା ଭିନ୍‌ସିଙ୍କ ପ୍ରଖ୍ୟାତ ଚିତ୍ର 'ମୋନାଲିସା' ଦେଖିଲି । ଯେଉଁ ଚିତ୍ରର ସୌନ୍ଦର୍ଯ୍ୟ ବର୍ଣ୍ଣନାର ଆଦି ଅନ୍ତ ନାହିଁ, ତାହା ଦେଖି ବୁଝିପାରିଲି ନାହିଁ ସେହି ମହାର୍ଘ କଳାର ମାଧୁର୍ଯ୍ୟ ବିଷୟ । ଭ୍ରୂଲତାବିହୀନ ନାରୀମୁଖର ଚାହାଣି ଓ ଈଷତ୍ ହାସ୍ୟରେଖାରୁ ଚିତ୍ରକର ଓ ଚିତ୍ରପ୍ରେମୀମାନେ ଯେଉଁ ପ୍ରକାର ଅଭିନବତ୍ୱର ସନ୍ଧାନ ପାଇଥାନ୍ତି, ତାହା ମୋ ପରି ଅଜ୍ଞବ୍ୟକ୍ତି ପକ୍ଷରେ ବୁଝିପାରିବା କଷ୍ଟକର ହେଲା । ଅପର ପକ୍ଷରେ, ଗ୍ରେକୋଙ୍କ 'କ୍ରୁସବିଦ୍ଧ ଯିଶୁ', ମାଇକେଲ୍ ଏଞ୍ଜେଲୋଙ୍କ 'କ୍ରୀତଦାସ' ଓ ପଲ୍ ରୁବେନଙ୍କ 'ମେରିଆର ମେଡିସି' ପ୍ରଭୃତି କଳାକୃତି ଦେଖି ତନ୍ମୟ ହେବାକୁ ହେଲା ।

## ଦୁଇଟି ସ୍ତମ୍ଭ

ଆଉ ଦିନେ ପ୍ରସିଦ୍ଧ ଦୁଇଟି ସ୍ତମ୍ଭ ଦେଖିବାକୁ ଗଲି । ଗୋଟିଏ ଥିଲା ନେପୋଲିୟନଙ୍କ ଦ୍ୱାରା ଭେଣ୍ଡୋମ ନାମକ ସ୍ଥାନରେ ସ୍ଥାପିତ 'ମହାନ ସେନା' ସ୍ତମ୍ଭ । ସୁଉଚ୍ଚ ସ୍ତମ୍ଭର ମୂଳରୁ ଶୀର୍ଷ ପର୍ଯ୍ୟନ୍ତ ତାଙ୍କ ସମୟର ସାମରିକ ଅଭିଯାନଗୁଡ଼ିକର ଚିତ୍ର ଖୋଦନ କରାଯାଇଛି । ଅନ୍ୟ ସ୍ତମ୍ଭଟି ଛିଡ଼ା ରହିଛି ଏକଦା ଯେଉଁ ସ୍ଥାନରେ

ଥିଲା ରାଜତନ୍ତ୍ର ଯୁଗର କୁଖ୍ୟାତ ବନ୍ଦିଶାଳା ବ୍ୟାଷ୍ଟିଲ ଦୁର୍ଗ । ଅତ୍ୟାଚାରର ନିଦର୍ଶନ ରୂପେ ଜଣାଥିବା ସେହି ଭୟାବହ ଦୁର୍ଗକୁ ଧୂଳିସାତ୍ କରି ପ୍ୟାରିସ୍‌ବାସୀମାନେ ଫରାସୀ ରାଷ୍ଟ୍ରବିପ୍ଳବ ଆରମ୍ଭ କରିଥିଲେ । ଦୁର୍ଗଧ୍ୱଂସର ସ୍ମୃତିରକ୍ଷା ନିମନ୍ତେ ପରବର୍ତ୍ତୀ ସମୟରେ ସେଠାରେ ନିର୍ମିତ ହୋଇଥିଲା ବ୍ୟାଷ୍ଟିଲ ସ୍ତମ୍ଭ ।

ସୌନ୍ଦର୍ଯ୍ୟମୟୀ ନଗରୀର ସବୁସ୍ଥାନ ଦେଖିବା ସମ୍ଭବ ହେଲା ନାହିଁ । ଯେଉଁ ସ୍ଥାନ ଦେଖୁଥିଲି, ପୁଣିଥରେ ଦେଖିବାକୁ ଇଚ୍ଛା ହେଉଥାଏ । କବିଙ୍କର ଉକ୍ତି ଯଥାର୍ଥ, "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।" ଦ୍ୱିତୀୟ ବିଶ୍ୱଯୁଦ୍ଧର ଅନ୍ତିମ ସମୟରେ ଜାର୍ମାନୀର ସ୍ୱୈରଶାସକ ଏଡୋଲ୍ଫ ହିଟଲାର ତାଙ୍କ ଅଧିକୃତ ପ୍ୟାରିସ ନଗରୀକୁ ସମ୍ପୂର୍ଣ୍ଣ ଭାବେ ଧ୍ୱଂସ କରିଦେବାକୁ ତାଙ୍କର ଜନୈକ ସେନାପତିଙ୍କୁ ଆଦେଶ ଦେଇଥିଲେ । "ପ୍ୟାରିସ୍ ଜଳୁଛି ?" ଏହା ଥାଏ ଫୋନ ଯୋଗେ ବାରମ୍ବାର ତାଙ୍କର କଠୋର ପ୍ରଶ୍ନ । କିନ୍ତୁ ସେପରି କାର୍ଯ୍ୟ ନିମନ୍ତେ ନାଜି ସେନାପତିଙ୍କ ମନ ବଳିଲା ନାହିଁ । ତାଙ୍କ ନୃଶଂସ ନେତାଙ୍କୁ ସେ ବାରମ୍ବାର କହୁଥିଲେ, ଯଥାସମୟରେ 'ପ୍ୟାରିସ୍ ଜଳିବ' । କିନ୍ତୁ, ଶେଷ ପର୍ଯ୍ୟନ୍ତ ସେ ତାହା କଲେ ନାହିଁ । ପ୍ୟାରିସ୍ ରକ୍ଷା ପାଇଗଲା ।

ପ୍ୟାରିସର ଶୋଭାମୟ ପରିବେଶ ଲାଗି ଦାୟୀ ସେଠାକାର ଜନସଂଖ୍ୟା । ସୁପ୍ରଶସ୍ତ ରାଜପଥ ବା ସୁବିସ୍ତୃତ ପ୍ରାଙ୍ଗଣ ନିକଟରେ ବସ୍ତିବାସିନ୍ଦାମାନଙ୍କୁ ଦେଖିବାକୁ ମିଳେ ନାହିଁ । ସହରର ବହିର୍ଭାଗରେ ଜନବସତି ବଢ଼ି ଚାଲିଥିଲା ବେଳେ, ପ୍ୟାରିସର ଜନସଂଖ୍ୟା କମିବାକୁ ଲାଗିଛି । ପଚାଶ ବର୍ଷ ପୂର୍ବେ ଲୋକସଂଖ୍ୟା ୩ ନିୟୁତ ଥିଲାବେଳେ, ମୁଁ ଯାଇଥିବା ସମୟରେ, ୧୯୮୨ରେ, ଜନସଂଖ୍ୟା ଥିଲା ୨ ନିୟୁତ । ଶୁଣି ବିସ୍ମିତ ହେଲି ଯେ, ପ୍ରାୟ ଅର୍ଦ୍ଧେକ ପରିବାରରେ ଥାନ୍ତି ମାତ୍ର ଜଣେ ଲେଖାଏଁ ବ୍ୟକ୍ତି । କୁହା ଗଲାଣି, ପ୍ୟାରିସ୍ ହେଉଛି ପରିତ୍ୟକ୍ତା ଓ ବୃଦ୍ଧା ନଗରୀ । ଅଧିକାଂଶ ପରିବାର ସହରର ଉପକଣ୍ଠରେ ଥିବା ବିସ୍ତୃତ ସ୍ଥାନଗୁଡ଼ିକରେ ନୂଆ ଘରଦ୍ୱାର ତିଆରି କରି ସ୍ୱାଚ୍ଛନ୍ଦ୍ୟରେ ବସବାସ କରୁଛନ୍ତି । ଏ ସବୁ କଥା ଶୁଣିଲାବେଳେ ମନେ ପଡୁଥାଏ କଲିକତା ଓ ବୋମ୍ବେ ପ୍ରଭୃତି ମହାନଗରୀର କ୍ରମବର୍ଦ୍ଧମାନ ଜନସଂଖ୍ୟା କଥା, ନିୟୁତ ନିୟୁତ ନୁହେଁ, କୋଟି କୋଟି !

## ପ୍ୟାରିସ୍‌ରୁ ଲଣ୍ଡନ: ପହଞ୍ଚିବା ବେଳର ଘଟଣା

ଅକ୍ଟୋବର ୧ ତାରିଖ । ସକାଳ ୮ଟା ବେଳେ ହୋଟେଲ ଡାସିଆରୁ ବିଦାୟ ନେଲି । ଟ୍ୟାକ୍ସିରେ ଟଙ୍କା ଖର୍ଚ୍ଚ ନକରି ବାସ୍‌ରେ ଯିବା ଲାଗି ଠିକ୍ କଲି । ବାସ୍ ଷ୍ଟାଣ୍ଡକୁ ରାସ୍ତା ପଚାରିଲି । ଜଣେ ଭଦ୍ରବ୍ୟକ୍ତି ଗୋଟିଏ ଦିଗକୁ ଅଙ୍ଗୁଳି

ଦେଖାଇଦେଲେ । ହାତରେ ଥାଏ ଦୁଇଟା ବଡ଼ ସୁଟକେଶ୍ ଓ କାନ୍ଧରେ ବ୍ୟାଗ୍ । ଅନେକ ବାଟ ଗଲାପରେ ଯେଉଁ ବାସ୍‌ଷ୍ଟାଣ୍ଡ୍‌ରେ ପହଞ୍ଚିଲି, ସେଠାରୁ ବିମାନଘାଟିକୁ ବାସ୍ ଯାଏ ନାହିଁ । ଏୟାର ପୋର୍ଟରେ ରିପୋର୍ଟିଂ ସମୟ ଥାଏ ୧୦ ଟା । ସମୟ ହୋଇଥାଏ ୯ଟା ।

ସ୍ଥାନେ ସ୍ଥାନେ ସୁଟକେଶ ରଖି, ଛିଡ଼ା ହୋଇ, ଦମ୍ ମାରି, ମାଇଲେ ଦୂରରେ ଥିବା ଟ୍ୟାକ୍ସି ଷ୍ଟାଣ୍ଡରେ ପହଞ୍ଚିଲି । ଶେଷରେ, ସାଢ଼େ ୧୦ଟା ବେଳେ ବିମାନ ବନ୍ଦରରେ ପହଞ୍ଚିଲି । ସେତେବେଳକୁ ଛାତିରେ ଯନ୍ତ୍ରଣା ଅନୁଭବ କରୁଥାଏଁ । ୧୧ଟା ବେଳେ ବିମାନ ଛାଡ଼ିଲା । ଝରକା ପାଖରେ ବସି ଇଂଲିଶ୍ ଚ୍ୟାନେଲର ଦୃଶ୍ୟ ଦେଖିଲାବେଳେ କାହିଁକି କେଜାଣି ମୁଣ୍ଡ ଟଳମଳ କଲା ।

ମଧ୍ୟାହ୍ନ ୧୨ଟାରେ ଲଣ୍ଡନ ବିମାନଘାଟିରେ ପହଞ୍ଚିଲି । ଅନେକ କଷ୍ଟରେ ସୁଟକେଶ୍ ଦୁଇଟା ଧରି ବାହାରକୁ ଆସିଲା ଉତ୍ତାରୁ ଶୁଣିଲି, ବାସ୍ ଓ ଟ୍ୟାକ୍ସି ଧର୍ମଘଟ ଯୋଗୁଁ ସହର ଭିତରକୁ ଏୟାର୍ ପୋର୍ଟ ବାସ୍ ଯିବ ନାହିଁ । ଅନ୍ୟ ପାସେଞ୍ଜାରମାନଙ୍କୁ ନେବା ଲାଗି ଆତ୍ମୀୟମାନେ ଗାଡ଼ି ଧରି ଆସୁଥାନ୍ତି । ନିରୁପାୟ ଅବସ୍ଥାରେ ଫୁଟ୍‌ପାଥରେ ବସିପଡ଼ିଲି । ସେତେବେଳେ ପୁଣି ଥରେ ମୁଣ୍ଡ ବୁଲାଇଲା । ଜଣେ ବୃଦ୍ଧ ଇଂରେଜ ପଚାରିଲେ, "May I help you ?" "ଦୟାକରି ସହର ଭିତରେ ଛାଡ଼ିଦେଲେ କୃତଜ୍ଞ ରହିବି," ବୋଲି କହିଲାବେଳକୁ ସେ ସୁଟକେଶ ଦୁଇଟି ଗାଡ଼ିରେ ରଖିଲେ । ଗାଡ଼ି ଚାଲିଲାବେଳେ ଛାତିର ଯନ୍ତ୍ରଣା ବଢ଼ି ଚାଲିଥାଏ । ପାଖରେ ବସିଥିବା ବୃଦ୍ଧା ମହିଳା ବଡ଼ ବଡ଼ ଆଖିରେ ମୋତେ ଚାହିଁ ରହିଥାନ୍ତି ।

ମାର୍ବଲ ଆର୍କ ନାମକ ସ୍ଥାନରେ ସେ ଗାଡ଼ି ରଖିଲେ । ନିକଟରେ ହୋଟେଲ ଖୋଜିନେବି କହି ତାଙ୍କ ପାଖରୁ ବିଦାୟ ନେଲି । କିନ୍ତୁ ଚାଲିବା ପାଇଁ ଶକ୍ତି ନଥାଏ । ଖଣ୍ଡିଏ ବେଞ୍ଚ ଉପରେ ବସିଲାବେଳେ ଚେତା ଚାଲିଯିବ ଭାବି ଆତଙ୍କିତ ହୋଇଉଠିଲି ଓ ସେଠାରେ ଶୋଇପଡ଼ିଲି । ପାଖରେ ଟେଲିଫୋନ ବୁଥ୍ ଥାଏ । ଭାବିଲି, ଭାରତୀୟ ସହପାଠୀ ବିଶ୍ୱନାଥ ପାଣ୍ଡେଙ୍କୁ ଫୋନ କରିବି । ତାଙ୍କ ଘର ଠିକଣା ଜଣାଥାଏ, କିନ୍ତୁ ଫୋନ୍ ନମ୍ବର ଜଣା ନଥାଏ । ହଠାତ୍ ମନେପଡ଼ିଲା, କୋଟ୍ ପକେଟରେ ଅଛି ଡକ୍ଟର ପି.ଏନ୍. ଚୋପ୍ରାଙ୍କ ଦେଇଥିବା ତାଙ୍କ ପାକିସ୍ତାନୀ ବନ୍ଧୁଙ୍କ ଠିକଣା ଓ ଫୋନ୍ ନମ୍ବର । ବୁଥ୍ ପାଖକୁ ଯିବାଲାଗି ଉଠିଲାକ୍ଷଣି ମୁଣ୍ଡ ବୁଲାଇ ପଡ଼ିଗଲି । ହାତ ଠାରି ଜଣେ ଯୁବ ପଥଚାରୀଙ୍କୁ ପାଖକୁ ଡାକିଲି । ତାଙ୍କୁ କହିଲି, "ମୁଁ ଅତ୍ୟନ୍ତ ଅସୁସ୍ଥ । ଆପଣ୍ଡ ମହମ୍ମଦ ଇକ୍‌ରାମ ବାଟ୍‌ଙ୍କୁ ଫୋନ କରି ଶୀଘ୍ର ଏଠାକୁ ଗାଡ଼ି ଧରି ଆସିବାକୁ କହନ୍ତୁ । ତାଙ୍କ ଇଣ୍ଡିଆନ

ବନ୍ଧୁ ପି.ଏନ.ଚୋପ୍ରା ମାର୍ବଲ ଆର୍କ ଗେଟ୍ ପାଖରେ ଅପେକ୍ଷା କରିଛନ୍ତି ଓ ସେ ଖୁବ୍ ଅସୁସ୍ଥ ।'' ସେ ମୋ ପାଖରୁ ଫୋନ ନମ୍ବର ଓ ଗୋଟିଏ ମୁଦ୍ରା ନେଇ ବୁଥ୍ ଭିତରେ ପଶିଲେ । ଫେରିଆସି ସଂବାଦ ଦେଲେ, ''ମହମ୍ମଦ୍ ଇକ୍ରାମ୍ ହଜ୍ ଲାଗି ମକ୍କା ଯାଇଥିଲେ । ଆଜି ସକାଳେ ଫେରିଛନ୍ତି । କ୍ଲାନ୍ତ ଥିଲେ ମଧ୍ୟ ଆସିବେ ।''

ଅପେକ୍ଷା କଲି । ସନ୍ଦେହ କଲି, ହୋଟେଲକୁ ଗଲେ ମୋ ଅବସ୍ଥା ଦେଖି କେହି ରଖିବେ ନାହିଁ, କିମ୍ୱା ରଖି ସାରିଲେ ହସ୍‌ପିଟାଲ ପଠାଇଦେବେ । ଏକମାତ୍ର ଭରସା ବିଶ୍ୱନାଥ ପାଣ୍ଡେ । ସେ ମୋ ସହିତ ପିଏଚ୍.ଡି. ପଢୁଥିଲେ ଓ ଜଣେ ଇଂରେଜ ମହିଳାଙ୍କୁ ବିବାହ କରି ଲଣ୍ଡନରେ ରହିଯାଇଛନ୍ତି । ଆମ ମଧ୍ୟରେ ଚିଠିପତ୍ର ଆଦାନ ପ୍ରଦାନ ହେଉଥାଏ ।

ପ୍ରାୟ ଅଧଘଣ୍ଟାଏ ପରେ କାର୍ ଖଣ୍ଡିଏ ମାର୍ବଲ ଆର୍କ ଗେଟ୍ ଠାରେ ରହିଲା । ସେଥିରୁ ଜଣେ ମୁସଲମାନ ଭଦ୍ରବ୍ୟକ୍ତି ବାହାରି ଆସି ଚାରି ଦିଗକୁ ଚାହିଁବା ଦେଖି ମୁଁ ରୁମାଲ ହଲାଇ ପାଖକୁ ଆସିବାକୁ ସଂକେତ ଦେଲି ।

''ପ୍ରଥମେ ମୋତେ କ୍ଷମା କରନ୍ତୁ, ମୁଁ ଚୋପ୍ରା ସାହେବଙ୍କ ନାମ କହି ଆପଣଙ୍କୁ ଡକାଇଛି । ସେ ଆପଣଙ୍କର ବନ୍ଧୁ, ମୋର ମଧ୍ୟ ବନ୍ଧୁ । ଛାତିରେ ଯନ୍ତ୍ରଣା ଯୋଗୁଁ ବାଧ୍ୟ ହୋଇ ଡାକିଲି । ୱାରେନ ଷ୍ଟ୍ରିଟରେ ମୋ ସହପାଠୀ ବି.ଏନ. ପାଣ୍ଡେଙ୍କ ଘରେ ମୋତେ ଛାଡ଼ିଦେଲେ କୃତଜ୍ଞ ରହିବି । ଟ୍ୟାକ୍ସି ଧର୍ମଘଟ ଯୋଗୁଁ ଆପଣଙ୍କୁ କଷ୍ଟ ଦେଲି ।'' କଥା ଶେଷ ହେବା ପୂର୍ବରୁ ସେ ମୋତେ ବେଞ୍ଚରୁ ଉଠାଇ ଧରି କହିଲେ, ''ପ୍ରଥମେ ମୋ ଘରକୁ ନେଇଯିବି । ମୋ ଭାଇ ଡାକ୍ତର । ସେ ଦେଖି ସାରିଲା ପରେ, ଅନ୍ୟ କଥା ।''

ପଛ ସିଟ୍‌ରେ ମୋତେ ଶୁଆଇଦେଇ ଇକ୍‌ରାମ ସାହେବ ଗାଡ଼ି ଚଳାଇଲେ । ବେୟଜ୍ ୱାଟାର ନାମକ ଅଞ୍ଚଳରେ ତାଙ୍କ ଘର । ସ୍ତ୍ରୀଙ୍କୁ ଡାକି ମୋ ପାଇଁ ବିଛଣା ପ୍ରସ୍ତୁତ କରିବାକୁ ଆଦେଶ ଦେଲେ ଓ ତାଙ୍କ ଡାକ୍ତର ଭାଇଙ୍କୁ ଫୋନ କଲେ । ମୁଁ ବିଛଣା ଧରିଲା ବେଳକୁ ଡକ୍ଟର ଇବ୍ରାହିମ୍ ଓ ତାଙ୍କର ଜଣେ ଡାକ୍ତର ବନ୍ଧୁ ମୋ ଛାତି ଓ ଦେହ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଦେଲେ । ଆଶ୍ୱାସନା ଦେଲେ, ''Nothing to worry. I think, it is due to fatigue and exhaustion.'' ଆଗାମୀ କାଲି E.C.G. କରାଯିବ କହି ସେ ଔଷଧ ଓ ପଥ୍ୟ ଲେଖିଦେଲେ । ଇକ୍‌ରାମ୍ ସାହେବଙ୍କ ସ୍ତ୍ରୀ ବାର୍ଲି ପିଆଇଲେ ଓ ଟ୍ୟାବ୍‌ଲେଟ୍ ଖୁଆଇଲେ । ବୋଧ ହୁଏ, ନିଦ ବଟିକା ଯୋଗୁଁ ଗାଢ଼ ନିଦରେ ଶୋଇଗଲି ।

ସକାଳ ବେଳକୁ ଦୁର୍ବଳତା ସତ୍ତ୍ୱେ, ସୁସ୍ଥ ବୋଧ କଲି । ଜଣେ ଅପରିଚିତ ପାକିସ୍ତାନୀଙ୍କ ଆତିଥ୍ୟ ଗ୍ରହଣ କରିବାକୁ ସଂକୋଚ ଲାଗୁଥାଏ । ତେଣୁ ଚାଲି ଯିବା ଲାଗି ଇଚ୍ଛା ପ୍ରକାଶ କଲି । ଇକ୍‌ରାମ କହିଲେ, ‘‘ଆମେ ସ୍ୱାମୀ ସ୍ତ୍ରୀ ହାଜ୍ ଯାତ୍ରାରୁ ଫେରିଛୁଁ । ମକ୍କାରୁ ଆସିଲା ପରେ ବନ୍ଧୁମାନଙ୍କୁ ଆଜି ରାତିରେ ହାଜ୍ ଭୋଜି ଦିଆଯିବ । ଆପଣ ଆମର ବନ୍ଧୁ । ଆଜି ରହିବାକୁ ହେବ ।’’

ସନ୍ଧ୍ୟା ପରେ ପ୍ରାୟ ୨୦ ପର୍ଯ୍ୟନ୍ତ ପାକିସ୍ତାନୀ ମୁସଲମାନ ଭୋଜି ପାଇଁ ଏକତ୍ରିତ ହେଲେ । ସମସ୍ତେ ଥାନ୍ତି ଧନୀ ଓ ଶିକ୍ଷିତ । କେହି କେହି ବ୍ୟବସାୟୀ ଥିଲାବେଳେ ଅନ୍ୟମାନେ ଥିଲେ ଡାକ୍ତର ଓ ଇଞ୍ଜିନିୟାର । ଆସର ଭିତରେ ବସି ମୁଁ କହିଲି, ‘‘ମୁଁ ଜଣେ ଇଣ୍ଡିଆନ୍ ଓ ହିନ୍ଦୁ । ଆପଣମାନେ ମୁସଲମାନ ଓ ପାକିସ୍ତାନୀ । ହାଜ୍ ଭୋଜିରେ ମୋତେ ଦେଖି ଆପତ୍ତି ନାହିଁ ତ ?’’ ଜଣେ ହାଜ୍‌ଫେରନ୍ତା ଉତ୍ତର ଦେଲେ, ‘‘ଇଣ୍ଡିଆରୁ ମକ୍କା ଆସିଥିବା ଶହ ଶହ ହାଜ୍‌ଯାତ୍ରୀ ନିଜ ଦେଶକୁ ଫେରି ଆଜି ହାଜ୍ ଭୋଜି ଦେଉଥିବେ । ଯଦି ସେମାନଙ୍କ ମଧ୍ୟରୁ ଆପଣଙ୍କୁ କେହି ଡାକିଥାନ୍ତା, ଆପଣ ଯାଇଥାନ୍ତେ କି ନାହିଁ ?’’ ‘‘ନିଶ୍ଚୟ ଯାଇଥାନ୍ତି,’’ ଉତ୍ତର ଦେଲି ।

ଆଲୋଚନା ଚାଲିଲା । ମୋ ‘ଭାରତ ବିଭାଜନ’ ବହିଖଣ୍ଡିକ ଦେଖାଇଲି । ଜଣେ ଭଦ୍ରଲୋକ କହିଲେ, ‘‘ମୋ ଘର ଥାଏ ଉତ୍ତର ପ୍ରଦେଶର ବାଲିଆ ଜିଲ୍ଲାରେ । ଚାରି କକା ଓ ଜ୍ଞାତିମାନେ ସେଠାରେ ଅଛନ୍ତି । ମୁସଲିମ୍ ଲିଗ୍ ନେତା ଖାଲିକୁଜ୍‌ଜାମାନଙ୍କ ନାମ ଶୁଣିଥିବେ । ତାଙ୍କ କଥାରେ ପଡ଼ି ମୋ ଓକିଲ ବାପା ପାକିସ୍ତାନ ଚାଲିଆସିଲେ । ପାଠ ପଢ଼ା ଛାଡ଼ି ମୁଁ ମଧ୍ୟ ଆସିଲି । କାହିଁକି ଆସିଲି ବୋଲି ଏବେ ଅନୁତାପ କରୁଛି ।’’ ଅନ୍ୟ ଜଣେ ବୃଦ୍ଧ ବ୍ୟକ୍ତି ଉଦାସ ନୟନରେ ମୋ ଦିଗକୁ ଚାହିଁ ରହି କହିଲେ, ‘‘ମୋ ଘର ଥାଏ ଖୋଦ୍ ଦିଲ୍ଲୀର ଲାଲ୍ କିଲ୍ଲା ପାଖରୁ ପାଞ୍ଚଶହ ହାତ ଦୂରରେ । ଜନ୍ମ କାଳରୁ ୪୦ ବର୍ଷ ଯେଉଁ ଲାଲକିଲ୍ଲା ଦେଖି ଆସୁଥିଲି, ଆଜି ୩୫ ବର୍ଷ ତାହା ଦେଖି ନାହିଁ ।’’

କଥାବାର୍ତ୍ତା ସରଗରମ ହେଲା । ଜାଣି ପାରିଲି, ସେମାନେ ସମସ୍ତେ ଲଣ୍ଡନରେ ସ୍ଥାୟୀ ଭାବେ ରହିଯାଇଛନ୍ତି । ଅନେକେ ଥାନ୍ତି ଲାହୋର ଓ ମୁଲତାନର ବାସିନ୍ଦା । କଥାଛଳରେ ପଚାରିଲି, ‘‘ଦେଶକୁ କେବେ ଫେରିବେ ?’’ ରହିମ୍ ଖାଁ ନାମକ ବ୍ୟବସାୟୀ ସିଧାସଳଖ ଉତ୍ତର ଦେଲେ, ‘‘ଡିକ୍ଟେଟରୀ ଶାସନ ପରେ, ଏବେ ନୁହେଁ । ଇସଲାମ ଧର୍ମର ଦ୍ୱାହି ଦେଇ ଜିଆ ଉଲ୍ ହକ୍ ଶୈତାନୀ ଶାସନ ଚଳାଇଛି । ଦେଖିବେ, ପାକିସ୍ତାନୀ ଶାସନର ଗୋଟିଏ ନମୁନା ?’’

ରହିମ୍ ଖାଁ ତାଙ୍କର ଜଣେ ସାଙ୍ଗକୁ କ୍ୟାସେଟଟିଏ ଦେଖାଇବାକୁ ଅନୁରୋଧ କଲେ । ଅନ୍ୟମାନେ ମଧ୍ୟ ଦେଖିବେ ବୋଲି ଜିଦ୍ ଧରିଲେ । ଇକ୍‌ରାମ ସାହେବ ତାଙ୍କ ଟି.ଭି.ରେ କ୍ୟାସେଟ୍ ଫିଟ୍ କଲେ । ଫିଲ୍ମ ଆରମ୍ଭ ହେଲା । ଦେଖିଲାବେଳେ ମୋ ଦେହ ରୋମାଞ୍ଚିତ ହୋଇଉଠୁଥାଏ । ବିଷୟ ଥିଲା— .

ଲାହୋର ସହରର ଗୋଟିଏ ହୋଟେଲରେ ଇସଲାମୀୟ ଆଇନ ଭଙ୍ଗ କରି ବୃଦ୍ଧ ହୋଟେଲ ମାଲିକ ଓ ତାଙ୍କ ଯୁବକ ପୁତ୍ର ଗୋପନ କକ୍ଷରେ ମଦ୍ୟପାନ ଓ ଜୁଆ ଖେଳ ଲାଗି ସୁବିଧା ରଖିଥାନ୍ତି । ଦିନେ ବାପ ପୁଅ ଧରାପଡ଼ିଲେ । ବିଚାରରେ ଦଣ୍ଡ ମିଳିଲା, ବୁଢ଼ା ମାଲିକଙ୍କୁ ୫ ବେତ୍ରାଘାତ ଓ ଯୁବକ ପୁଅକୁ ୨୫ ବେତ୍ରାଘାତ କରାଯିବ, ହଜାର ହଜାର ଦର୍ଶକଙ୍କ ଆଗରେ । ମଞ୍ଚ ଉପରକୁ ପ୍ରଥମେ ବୁଢ଼ାଙ୍କୁ ଅଣାଗଲା । ତାଙ୍କର ଛାତି ପରୀକ୍ଷା କରି ଡାକ୍ତର ଘୋଷଣା କଲେ, ‘‘୭୭ ବର୍ଷର ବୁଢ଼ା ବେତ୍ରାଘାତ ସହ୍ୟ କରି ପାରିବ ନାହିଁ ।’’ ଦଣ୍ଡଦାତା ପୋଲିସ୍ ସାହେବ ହୁକୁମ ଦେଲେ, ‘‘ଅନ୍ୟ ଦଣ୍ଡ ଦିଅ ।’’ ସଙ୍ଗେ ସଙ୍ଗେ, ବୁଢ଼ାର ମୁଣ୍ଡରେ ଏକଟିଣ ବହଳ ଆଲକାତରା ଢାଳି ଦିଆଗଲା । ଦାଢ଼ି ସମେତ ଆପାଦମସ୍ତକ ସେ କଳାରଙ୍ଗର ତରଳ ଆବରଣ ଧାରଣ କରିବା ଦେଖି ଦର୍ଶକମାନେ କରତାଳି ଦେଲେ । ତା ପରେ, ଦଶ ପାହାଚ ଚଢ଼ି ଚଢ଼ି ଯୁବକ ପୁତ୍ର ମଞ୍ଚ ଉପରକୁ ଉଠିଲେ । ସେଠାରେ, ତାଙ୍କ ଦେହରୁ ଜାମା କାଢ଼ି ଦିଆଗଲା ଓ ମଞ୍ଚ ଉପରେ ସିଧା ଛିଡ଼ା ଥିବା କାଠର ମୋଟା ତକ୍ତା ଉପରେ ମୁହଁ ତଳକୁ ଓ ପିଠି ବାହାରକୁ ରଖି ହାତଗୋଡ଼ ବାନ୍ଧି ଦିଆଗଲା । ମଞ୍ଚର ଗୋଟିଏ ପାଖରେ ବସିଥାନ୍ତି ଡାକ୍ତର ଓ ପୋଲିସ୍ କର୍ମଚାରୀ । ଅନ୍ୟ ପାଖରେ ଥାନ୍ତି ଜଲ୍ଲାଦ ରୂପୀ ଜଣେ ପହଲବାନ । ତାଙ୍କ ହାତରେ ଥାଏ ଚାବୁକ୍ । ହୁଇସିଲ୍ ବାଜିଲାମାତ୍ରେ ପହଲବାନ ନାଚି ନାଚି କିଛି ପାଦ ପଛକୁ ଯାଇ ପୁଣି ନାଚି ନାଚି ଆଗକୁ ଦୌଡ଼ି ଆସି ପିଠି ଉପରେ ବସାଇଦେଲେ ପ୍ରଥମ ଛାଟ । ଯୁବକର ଚିତ୍କାର ଧ୍ୱନିରେ ମଞ୍ଚ ପ୍ରକମ୍ପିତ ହେଲା । ତା ପରେ, ଏକ, ଦୁଇ, ତିନି, ଚାରି ପର୍ଯ୍ୟାୟରେ ଦଶଥର ପାଇଁ ଚାବୁକ ପ୍ରହାର ବେଳକୁ ଯୁବକର ଆର୍ତ୍ତନାଦ ଆଉ ଶୁଭିଲା ନାହିଁ । ଡାକ୍ତର ବାବୁ ଆସନରୁ ଉଠି ନୀରବ ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ବାର୍ତ୍ତା ଦେଲେ, ‘‘ଚେତା ନାହିଁ ।’’ ତତ୍‌କ୍ଷଣାତ୍ ପୋଲିସ ସାହେବ ସମବେତ ଜନତା ସମ୍ମୁଖରେ ବଜ୍ରଗମ୍ଭୀର ସ୍ୱରରେ ରାୟ ଘୋଷଣା କଲେ, ‘‘ବାକି ଥିବା ଚାବୁକ ବଦଳରେ ଦୁଇ ବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା ।’’ ଅପରାଧୀକୁ ତକ୍ତା ଉପରୁ ଖସାଇ ଆଣି ମାଟି ଉପରେ ଶୁଆଇ ଦିଆଗଲା । ପିଠିରୁ ଝରି ପଡୁଥାଏ ତାଜା ରକ୍ତ ବିନ୍ଦୁ ।

ଫିଲ୍ମ ଶେଷ ହେଲା । ରହିମ ଖାଁ ମୋ ଆଡ଼କୁ ଚାହିଁ ପଚାରିଲେ, ''ଦେଖିଲେ, କିଆର ଶାସନ ? ଇଂଲଣ୍ଡରେ ବା ଇଣ୍ଡିଆରେ ଏପରି ଦଣ୍ଡ ବ୍ୟବସ୍ଥା ଦେଖିଛନ୍ତି ?'' ମୁଁ ମତାମତ ନ ଦେଇ ତୁନି ରହିଲି ।

ହାଜ୍ ଭୋଜିରେ ସ୍ୱମସ୍ତେ ବସିଲେ । ସ୍ୱତନ୍ତ୍ର ଆସନରେ ବସି ମୁଁ ରୋଗୀର ପଥ୍ୟ ଖାଇଲି । ପାଖରେ ବସିଥିବା ଜଣେ ଛାତ୍ର କାନ ପାଖରେ କହିଲେ, ''ଜୁଲ୍‌ଫିକାର ଆଲ୍ଲି ଭୁଟ୍ଟୋଙ୍କ ପୁଅ ମୁରତାଜା ଭୁଟ୍ଟୋ ଲଣ୍ଡନରେ ଆତ୍ମଗୋପନ କରି ଅଛନ୍ତି । ଆମେ ପାକିସ୍ତାନୀ ଛାତ୍ରମାନେ ତାଙ୍କର ସମର୍ଥକ ।''

ତହିଁ ପରଦିନ ଇକ୍‌ରାମ୍ ସାହେବଙ୍କ ଘରୁ ବିଦାୟ ନେଲି । କହିଥିଲି, ''ଜୀବନରେ ଆପଣଙ୍କ ଉପକାର ଭୁଲିବି ନାହିଁ । ମାନବୀୟ ଧର୍ମ ଆଗରେ କେହି ହିନ୍ଦୁ ନୁହେଁ, କେହି ମୁସଲମାନ ନୁହେଁ, କେହି ହିନ୍ଦୁସ୍ଥାନୀ ନୁହେଁ କି କେହି ପାକିସ୍ତାନୀ ନୁହେଁ । ଆପଣ ଓ ବେଗମ୍ ସାହେବା ହେଉଛନ୍ତି ଏହି ପ୍ରକାର ଉଚ୍ଚତର ଆଦର୍ଶର ନମୁନା ।'' ଯେଉଁ ଏକ ମାସ ଲଣ୍ଡନରେ ରହିଲି, ଇକ୍ରାମ ବାଟ୍ ବାରମ୍ବାର ହୋଟେଲରେ ଦେଖା କରିବାକୁ ଭୁଲିଲେ ନାହିଁ । ଭାରତକୁ ଫେରିଲାବେଳେ, ଚୋପ୍ରା ସାହେବଙ୍କ ପାଇଁ ମୂଲ୍ୟବାନ ଅତର ଶିଶି ପଠାଇଲେ ଓ ମୋ ବାରଣ ସତ୍ତ୍ୱେ ମୋତେ ମଧ୍ୟ ଦୁଇ ଶିଶି ଉପହାର ଦେଲେ ।

ଏଥର ଲଣ୍ଡନ ରହଣି ସମୟରେ ବୁଲାବୁଲି ନ କରି ନିଜର ଦାୟିତ୍ୱ ସମ୍ପାଦନାରେ ଲାଗିପଡ଼ିଲି । ସଫଳ ହେବାର ସନ୍ତୋଷ ସହ ନଭେମ୍ବର ୧ ତାରିଖ ଦିନ ଲଣ୍ଡନ ଛାଡ଼ି ୨ ତାରିଖ ମଧ୍ୟରାତ୍ରିରେ ଦିଲ୍ଲୀ ବିମାନ ଘାଟିରେ ପହଞ୍ଚିଲି ।



ନଟରଡାମ୍ ଗିର୍ଜା ଗୁମ୍ବଜରୁ ପ୍ୟାରିସର ଦୃଶ୍ୟ



ହୋଟେଲ ଡି ଭିଲ୍ଲେ



ସମ୍ରାଟ ନେପୋଲିୟନଙ୍କ ସମାଧି



ଭାର୍ସାଇ ରାଜପ୍ରାସାଦ

# ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ



## କେତେକ କଥା, କେତେକ ବ୍ୟଥା

### କୁଳପତି ପଦ ସମ୍ପର୍କରେ ପଦେ ଅଧେ

ପ୍ରତ୍ୟେକ ଦେଶରେ କୁଳପତି ପଦର ଗୋଟିଏ ସ୍ୱତନ୍ତ୍ର ମର୍ଯ୍ୟାଦା ଥିବା ଦେଖାଯାଏ । ଉଚ୍ଚଶିକ୍ଷା କ୍ଷେତ୍ରର ସେହି ସର୍ବୋଚ୍ଚ ପଦବୀ ପ୍ରତି ସମ୍ମାନ ରହିବା ଅସ୍ୱାଭାବିକ ନୁହେଁ । ଆମ ଦେଶରେ ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନ ଓ ଡକ୍ଟର ଜାକିର ହୁସେନଙ୍କ ପରି ପୂର୍ବତନ କୁଳପତିମାନେ ରାଷ୍ଟ୍ରପତି ପଦ ଅଳଙ୍କୃତ କରିପାରିଥିଲେ । ସାଧାରଣତଃ, ବରିଷ୍ଠ ଶିକ୍ଷାବିତ୍, ଅବସରପ୍ରାପ୍ତ ରାଷ୍ଟ୍ରଦୂତ ଓ ବିଚାରପତିମାନେ କୁଳପତି ଆସନ ଲାଗି ମନୋନୀତ ହୋଇଥାନ୍ତି । ଏକଦା କୁଳପତି ପଦ ଅବୈତନିକ ଥିଲେ ମଧ୍ୟ, ବିଶିଷ୍ଟ ବ୍ୟକ୍ତିମାନେ ସେଥିପ୍ରତି ଆକୃଷ୍ଟ ଥାନ୍ତି ।

ବ୍ରିଟିଶ୍ ଯୁଗର ଭାରତରେ ବିଶ୍ୱବିଦ୍ୟାଳୟଗୁଡ଼ିକର ସଂଖ୍ୟା ନଗଣ୍ୟ ଥିଲା । ସ୍ୱୀକୃତିପ୍ରାପ୍ତ କଲେଜ ସଂଖ୍ୟା ମଧ୍ୟ ଅତି ଅଳ୍ପ ଥାଏ । ଛାତ୍ରସଂଖ୍ୟା ଥାଏ ଅତ୍ୟନ୍ତ ସୀମିତ । ତେଣେ, ଡିଗ୍ରୀଧାରୀ ଛାତ୍ରମାନଙ୍କୁ ଚାକିରି ମିଳୁଥାଏ । ସମାଜରେ ଉଚ୍ଚଶିକ୍ଷିତମାନଙ୍କ ପ୍ରତି ସମ୍ମାନ ଥିଲା । ସଂକ୍ଷେପରେ, ସେ ସମୟର ଛାତ୍ର ଓ ଅଧ୍ୟାପକମାନଙ୍କ ସାମାଜିକ ସ୍ୱୀକୃତି ପରିପ୍ରେକ୍ଷୀରେ କୁଳପତିମାନେ ଥିଲେ ବରେଣ୍ୟ ବ୍ୟକ୍ତି ।

ସ୍ୱାଧୀନତା ପରେ ପରେ ସାରା ଦେଶରେ ବିଶ୍ୱବିଦ୍ୟାଳୟ, କଲେଜ ଓ ଛାତ୍ରସଂଖ୍ୟା କ୍ଷିପ୍ର ଗତିରେ ବଢ଼ି ଚାଲିଲା । ତାହା ଥିଲା ସମୟର ଆବଶ୍ୟକତା । କିନ୍ତୁ ସଂଖ୍ୟା ସହିତ ବଢ଼ି ଚାଲିଲା ନାନା ପ୍ରକାର ସମସ୍ୟା । ଜନବିସ୍ଫୋରଣ ଯୋଗୁଁ ସ୍ଥାନାଭାବ ଓ ଖାଦ୍ୟାଭାବ ଦେଖାଗଲା ପରି, ଛାତ୍ରସଂଖ୍ୟା ଅନୁପାତରେ ଶିକ୍ଷାର ଉପକରଣ ବଢ଼ିଲା ନାହିଁ । କ୍ଲାସ୍ କକ୍ଷ, ଛାତ୍ରାବାସ, ଲାଇବ୍ରେରୀ ଓ

ଲେବୋରାଟରୀ ଇତ୍ୟାଦି ଯୋଗାଇ ଦେବାକୁ ସରକାରଙ୍କ ଅର୍ଥାଭାବ ସତ୍ତ୍ୱେ, ସରକାରୀ କଲେଜ ସଂଖ୍ୟା କ୍ରମାନ୍ୱୟ ଭାବେ ବୃଦ୍ଧି ପାଇଲା । ସେଥିସହ ବୃଦ୍ଧି ପାଇଲା ବେସରକାରୀ କଲେଜ ସଂଖ୍ୟା । ଉଚ୍ଚଶିକ୍ଷାର ପ୍ରସାର ନିମନ୍ତେ ସମସ୍ତଙ୍କର ଆଗ୍ରହ ନିଶ୍ଚିତ ଭାବେ ପ୍ରଶଂସନୀୟ । କିନ୍ତୁ ସମ୍ବଳ ଅଭାବରୁ ଶିକ୍ଷାର ମାନଦଣ୍ଡ ଉନ୍ନତ ରଖିବା ଲାଗି ଆବଶ୍ୟକୀୟ ସାମୂହିକ ପ୍ରଚେଷ୍ଟା ଶିଥିଳ ହେଲା । ଫଳସ୍ୱରୂପ, କ୍ରମେ କ୍ରମେ ଉଚ୍ଚଶିକ୍ଷା କ୍ଷେତ୍ରରେ ନାନାପ୍ରକାରର ଜଟିଳ ସମସ୍ୟାର ଉତ୍ପତ୍ତି ଘଟିଲା । ସେଥିମଧ୍ୟରୁ ଦୁଇଟି ପ୍ରକ୍ରିୟାର ପ୍ରକୋପ ନିମନ୍ତେ ଶିକ୍ଷା ଜଗତର ମୌଳିକ ମୂଲ୍ୟବୋଧ ପ୍ରତି ଆଞ୍ଚ ଆସିଲା । ପ୍ରଥମ ହେଲା, ଉଚ୍ଚଶିକ୍ଷା ପରେ ବିଦ୍ୟାର୍ଥୀମାନଙ୍କର ଅନିଶ୍ଚିତ ଭବିଷ୍ୟତ ଓ ଶିକ୍ଷିତ ବେକାରୀ ସମସ୍ୟା । ଯେକୌଣସି ବିଷୟରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀଙ୍କୁ ମଧ୍ୟ ନିଯୁକ୍ତି ମିଳିଲା ନାହିଁ । ମଧ୍ୟବିତ୍ତ ସମ୍ପ୍ରଦାୟର ବାପା ମା ପୁଅର ଉଚ୍ଚଶିକ୍ଷା ଲାଗି ସର୍ବସ୍ୱାନ୍ତ ହେଉଥିଲେ, ଅଥଚ ଡିଗ୍ରୀଧାରୀ ପୁଅ ଉପାର୍ଜନକ୍ଷମ ହେଲେ ନାହିଁ । ତଦ୍ୱାରା, ଶିକ୍ଷାପ୍ରତି ବିତୃଷ୍ଣା ଆସିଗଲା । ଦ୍ୱିତୀୟରେ, କୋମଳମତି ଛାତ୍ରମାନଙ୍କୁ ରାଜନୈତିକ ବ୍ୟକ୍ତିମାନେ ହାତବାରିସି କରିବା ଲାଗି ତତ୍ପର ହେଲେ । କ୍ଷମତାସୀନ ତଥା ବିପକ୍ଷ ଦଳର ନେତାମାନେ ଛାତ୍ରନେତାମାନଙ୍କୁ ଦଳୀୟ ସ୍ୱାର୍ଥ ଦୃଷ୍ଟିରୁ ବ୍ୟବହାର କରିବାକୁ କୁଣ୍ଠାବୋଧ କଲେ ନାହିଁ । ଫଳତଃ, ବିଶ୍ୱବିଦ୍ୟାଳୟ ଓ କଲେଜ କ୍ୟାମ୍ପାସ୍‌ଗୁଡ଼ିକର ସ୍ୱାଭାବିକ ପରିବେଶ କଳୁଷିତ ହେବାକୁ ଲାଗିଲା । ସାରା ଭାରତର ଶିକ୍ଷାୟତନମାନଙ୍କରେ ଉତ୍ପତ୍ତି ଲାଭ କଲା ତଥାକଥିତ 'କ୍ୟାମ୍ପାସ୍ ଆନରେଷ୍ଟ' ବା ଛାତ୍ର ଅଶାନ୍ତି ନାମକ ଅଭିନବ ସଂଜ୍ଞା ।

ଏସବୁ କଥା ସୂଚନା ଦେବାର ଅର୍ଥ, ଜଟିଳ ଶିକ୍ଷା ସମସ୍ୟାର ପୃଷ୍ଠଭୂମିରେ ଭାରତୀୟ କୁଳପତିମାନଙ୍କ ଆସନ ପୂର୍ବପରି ନିରାପଦ ବା ଶାନ୍ତିମୟ ରହିଲା ନାହିଁ । ଯେକୌଣସି କଲେଜର ଛାତ୍ର ଅଶାନ୍ତିର ଧ୍ୱନି ପ୍ରତିଧ୍ୱନି କୁଳପତିଙ୍କ ଦ୍ୱାରଦେଶରେ ଶୁଣାଗଲା । କେଉଁଠାରେ ପ୍ରଶ୍ନପତ୍ର 'ଲିକ୍' ହେଲାଣି ତ କେଉଁଠାରେ 'ମାସ୍ କପି' ! କେଉଁଠାରେ ପରୀକ୍ଷା ପରିଦର୍ଶକମାନଙ୍କୁ ଆକ୍ରମଣ କରାଗଲାଣି ତ କେଉଁଠାରେ ଅଧ୍ୟକ୍ଷ ରକ୍ତାକ୍ତ ହେଲେଣି । ପରୀକ୍ଷା ତାରିଖ ଘୁଞ୍ଚାଇବା ଦାବି ସାଙ୍ଗକୁ ଫଳ ଲାଗି କୋହଳ ନୀତି ପାଇଁ ଦାବି ! ଛାତ୍ର ଇଉନିଅନ ନିର୍ବାଚନ ବେଳେ ଖଣ୍ଡଯୁଦ୍ଧ ସାଙ୍ଗକୁ ଆନୁଷ୍ଠାନିକ ଉତ୍ସବରେ ବୋମା ବିସ୍ଫୋରଣ ! ବାସ୍ କଣ୍ଡାକ୍ଟର ସହିତ ଟିକଟ ପାଇଁ ବଚସା ମଧ୍ୟରୁ ଛାତ୍ର ଧର୍ମଘଟ, ରାଜମାର୍ଗ ଅବରୋଧ ଓ ଭଙ୍ଗାରୁଜା କାଣ୍ଡ ! ଯାହା କିଛି ଦୁର୍ଘଟଣା ଘଟିଗଲେ, ଆରମ୍ଭ ହୁଏ କୁଳପତିଙ୍କ ମୁଣ୍ଡବ୍ୟଥା !

ତେଣେ, କ୍ୟାମ୍ପାସ୍ ହେଉଛି ପୋଲିସ୍ ପାଇଁ ନିଷିଦ୍ଧ ଅଞ୍ଚଳ । ରାଜନୈତିକ ନେତାମାନଙ୍କ ପ୍ରରୋଚନାରେ ଭଡ଼ାଟିଆ ଆକ୍ରମଣକାରୀମାନେ ପଶି ଆସିଲେ ମଧ୍ୟ, କୁଳପତି ପୋଲିସ ଡାକି ପାରିବେ ନାହିଁ । କାରଣ, ବାଗ୍‌ଦେବୀଙ୍କ ଆରାଧନା ପୀଠର ପବିତ୍ରତା ରକ୍ଷା କରିବା ହେଉଛି କୁଳପତିଙ୍କ କର୍ତ୍ତବ୍ୟ । କୌଣସି କୌଣସି ବିଶ୍ୱବିଦ୍ୟାଳୟର କୁଳପତି କ୍ଷତବିକ୍ଷତ ଅବସ୍ଥାରେ ପଡ଼ି ରହିଲେ ସୁଦ୍ଧା, ତାଙ୍କ ଜୀବନ ରକ୍ଷା ନିମନ୍ତେ ଆଇନ ରକ୍ଷାକାରୀମାନେ କ୍ୟାମ୍ପାସ୍ ଗେଟ୍ ଡେଇଁ ପାରିଲେ ନାହିଁ । କୌତୂହଳର ବିଷୟ, କେବଳ କୁଳପତିଙ୍କ ବ୍ୟତୀତ ଅନ୍ୟ କୌଣସି କର୍ମଚାରୀଙ୍କ ପୋଲିସ ଡାକିବା କ୍ଷମତା ନାହିଁ । କୁଳପତି ଚେତା ହରାଇଥିଲେ ମଧ୍ୟ ତାଙ୍କ ପକ୍ଷରୁ ରେଜିଷ୍ଟ୍ରାର ପୋଲିସ୍ ଆଣିବାକୁ ଅସମର୍ଥ । ଉତ୍ତର ଭାରତର କୌଣସି କୌଣସି କ୍ୟାମ୍ପାସ୍ ରଣାଙ୍ଗନରେ ପରିଣତ ହେଲେ ସୁଦ୍ଧା, ପୋଲିସ ଆସି ପାରିଲେ ନାହିଁ ।

କାଳକ୍ରମେ ଆମ ଦେଶରେ ଏପରି ସମୟ ଆସିଗଲା ଯେତେବେଳେ କୁଳପତି ଆସନ ପ୍ରତି ବିତୃଷ୍ଣା ପ୍ରକାଶ ପାଇଲା । "ମୁକୁଟ ମଣ୍ଡିତ ରାଜଶିର, ନୁହଁଇ ଶାନ୍ତି ଆସ୍ପଦ" କଥାଟି ରାଜାଶୂନ୍ୟ ଗଣତାନ୍ତ୍ରିକ ଭାରତରେ କୁଳପତିମାନଙ୍କ ପ୍ରତି ପ୍ରଯୁଜ୍ୟ ବୋଲି ବିଜ୍ଞ ବ୍ୟକ୍ତିମାନେ ମତ ଦେଲେ ।

## ମୋ ପୂର୍ବବର୍ତ୍ତୀ କୁଳପତିମାନଙ୍କ କଥା

୧୯୬୨ରେ ଉତ୍କଳ ବିଶ୍ୱବିଦ୍ୟାଳୟର କାର୍ଯ୍ୟାଳୟ ଓ ଶିକ୍ଷା ବିଭାଗ ଗୁଡ଼ିକ ବାଣୀବିହାରଠାକୁ ଉଠି ଆସିଲା । ଡକ୍ଟର ପ୍ରାଣକୃଷ୍ଣ ପରିଜା ଥାନ୍ତି କୁଳପତି । ନବନିର୍ମିତ କ୍ୟାମ୍ପାସ୍ ସହସା ଏକ ଜନବସତିର ରୂପ ନେଲା । କିନ୍ତୁ, ସହର ସହିତ ଯୋଗାଯୋଗ ରାସ୍ତା, ଯିବା ଆସିବା ଲାଗି ବାସ୍, ଚିକିତ୍ସା ପାଇଁ ଡାକ୍ତରଖାନା, ଜିମ୍ନା ହାଟବଜାର ଓ ଦୋକାନପତ୍ର ଇତ୍ୟାଦି ନଥାଏ । ପାଣି, ଆଲୁଅର ଅଭାବ ଓ ଖାଇବା ଲାଗି କ୍ୟାଣ୍ଟିନ ଇତ୍ୟାଦି ନ ଥିବା ଯୋଗୁଁ ଛାତ୍ରମାନଙ୍କର ଅସୁବିଧା ହେଲା । ଫଳସ୍ୱରୂପ, ଆରମ୍ଭ ହେଲା ଛାତ୍ର ଧର୍ମଘଟ ।

ଦିନେ ଶହ ଶହ ଉତ୍ତ୍ୟକ୍ତ ଛାତ୍ର କୁଳପତିଙ୍କ ବିରୋଧରେ ଧ୍ୱନି ଦେଇ ଅଫିସ୍ ଆଡ଼କୁ ମାଡ଼ି ଆସିବା ଦେଖି, ମୁଁ ସେମାନଙ୍କୁ ବାଧା ଦେଲି । ଛାତ୍ର ସଂସଦର ସଭାପତି ମୋର ଛାତ୍ର ଥିବାରୁ ଅନ୍ୟମାନଙ୍କୁ ଫେରାଇ ନେଲେ, ଯଦିଚ ଅଳ୍ପ ଦୂରରେ କୁଳପତିଙ୍କ କୁଶପୁତ୍ତଳିକା ପୋଡ଼ା ହେଲା । ଘର୍ମାକ୍ତ ଅବସ୍ଥାରେ କୁଳପତିଙ୍କ ପ୍ରକୋଷ୍ଠରେ ପଶିଲା ବେଳେ, ବାଲକୋନିରେ ଦଣ୍ଡାୟମାନ ଥିବା ଜଣେ ସିଣ୍ଡିକେଟ୍ ସଦସ୍ୟ ମୋତେ କହିଲେ, "ଛାତ୍ରଙ୍କ ଆକ୍ରମଣରୁ କୁଳପତି ଓ ତାଙ୍କ ଅଫିସକୁ ରକ୍ଷା କରିଥିବାରୁ ଆପଣଙ୍କୁ 'ପରମବୀର ଚକ୍ର' ସମ୍ମାନ ମିଳିବା ଉଚିତ ।"

ପରିଜା ସାହେବ ବିମର୍ଷ ମନରେ ସ୍ୱହସ୍ତ ଲିଖିତ ଇସ୍ତଫାପତ୍ରଟି ଅଧ୍ୟାପକ ଆୟାପ୍ପାନଙ୍କ ହାତକୁ ବଢ଼ାଇ ଦେଇ କହିଲେ, "Please go and read it out." ମୁଁ ଅନୁରୋଧ ଜଣାଇଲି, "ଆପଣ ନିଶ୍ଚିନ୍ତ ରହନ୍ତୁ, ଅଧ୍ୟାପକମାନେ ଛାତ୍ରମାନଙ୍କୁ ଶାନ୍ତ ରଖିପାରିବେ ।" ଛାତ୍ରମାନଙ୍କ ବିକ୍ଷୋଭ ସ୍ଲୋଗାନ୍ ପ୍ରତି ଆକ୍ଷେପ କରି ପରିଜା କହିଲେ, "ଛାତ୍ରମାନେ ମୋତେ Old Fossil (ପ୍ରସ୍ତରୀଭୂତ ଦେହ ବା କଙ୍କାଳ) ବୋଲି ଗାଳି ଦେଉଛନ୍ତି । ସେମାନଙ୍କୁ କୁହ, ଫସିଲ୍ ଦୁଇ ପ୍ରକାର । ଗୋଟିଏ ପ୍ରକାର ଫସିଲ ଅତ୍ୟନ୍ତ ଶକ୍ତ ଓ ଅନ୍ୟ ପ୍ରକାର ଫସିଲରେ ହାତ ଦେଲାକ୍ଷଣି ଗୁଣ୍ଡ ହୋଇଯାଏ । ପରିଜା ବୁଢ଼ା ହେଲେ ବି ଶକ୍ତ ଫସିଲ ।"

ତାଙ୍କ ପାଖରୁ ଆସିଲା ପରେ ଜଣେ ଅଧ୍ୟାପକ ବନ୍ଧୁ ମୋତେ ଭର୍ତ୍ସନା କଲେ, "ଆପଣ କାହିଁକି କୁଳପତିଙ୍କ ପକ୍ଷ ଧରିଛନ୍ତି ? ପରିଜା ସାହେବ କ'ଣ ମରିବା ପର୍ଯ୍ୟନ୍ତ କୁଳପତି ରହିବେ ?" ସେ ଯାହାହେଉ, କିଛି ଦିନ ପରେ ଛାତ୍ର ଅଶାନ୍ତିର ଉପଶମ ଘଟିଲା । ତାହାର କିଛିଦିନ ପରେ, ପରିଜା ସାହେବଙ୍କ ସାଙ୍ଗରେ ଦେଖା ହେବାରୁ ସେ ପଚାରିଲେ, "ସେ ଦିନ ଅମୁକ୍ ସିଣ୍ଡିକେଟ୍ ମେମ୍ବର ତୁମକୁ କ'ଣ କହିଥିଲେ ?" ମନେପକାଇ ମୁଁ କହିଲି, "ପରମବୀର ଚକ୍ର ସମ୍ମାନ ମୋତେ ମିଳିବା ଉଚିତ ବୋଲି ପ୍ରଶଂସା କଲେ ।" ହସି ଦେଇ ପରିଜା କହିଲେ, "ପ୍ରଶଂସା ନୁହେଁ, ବିଦ୍ରୂପ ! କେତେଜଣ ସିଣ୍ଡିକେଟ୍ ମେମ୍ବର ଚାହାନ୍ତି ପରିଜା ବାହାରିଗଲେ, ଏକଚାଟିଆ ବାଣିଜ୍ୟ ପାଇଁ ସୁବିଧା ପାଇଯିବେ । ଛାତ୍ରମାନେ ମୋତେ ଅପମାନ ଦେଇଥିଲେ ସେମାନେ ଖୁସି ହୋଇଥାନ୍ତେ ।"

ପରେ ଜାଣିଲି, ସିଣ୍ଡିକେଟ ସଦସ୍ୟମାନଙ୍କ ମଧ୍ୟରେ ହିଁ ଥାନ୍ତି କୁଳପତିଙ୍କ ଶତ୍ରୁ । ସେମାନେ ଭାବୁଥାନ୍ତି, ବିଶ୍ୱବିଦ୍ୟାଳୟ ହେଉଛି ସେମାନଙ୍କର ସାମ୍ରାଜ୍ୟ ବା ଉପନିବେଶ, ପ୍ରଚୁର ଅର୍ଥ ଆୟ ନିମନ୍ତେ ଏକ ନିଗମ । ନିର୍ବାଚିତ ହୋଇ ସିଣ୍ଡିକେଟ୍‌କୁ ଆସିବା ଲାଗି କେହି କେହି ଯଥେଷ୍ଟ ଉଦ୍ୟମ କରୁଥିଲେ, ଅର୍ଥ ବ୍ୟୟ ମଧ୍ୟ । ଆସିଗଲା ପରେ ସେମାନଙ୍କ ପ୍ରତିପତ୍ତିର ସୀମା ନଥାଏ ।

ଡକ୍ଟର ପରିଜାଙ୍କ ସମୟରେ ସ୍ୱୀକୃତିପ୍ରାପ୍ତ କଲେଜ ସଂଖ୍ୟା ଅଳ୍ପ ଥାଏ । ତେଣେ, ସେ ରେଭେନ୍‌ସା କଲେଜରେ ଦୀର୍ଘକାଳ ଅଧ୍ୟକ୍ଷ ଥିବା ହେତୁ ଓଡ଼ିଶାର ରାଜନୀତିଜ୍ଞ, ପ୍ରଶାସକ ଓ ବୁଦ୍ଧିଜୀବୀ ଗୋଷ୍ଠୀ ତାଙ୍କ ବ୍ୟକ୍ତିତ୍ୱ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଉଥିଲେ । ପରିଜା ମଧ୍ୟ ନିଜ ପଦବୀର ମର୍ଯ୍ୟାଦା ରକ୍ଷା ଲାଗି ସତତ ସତର୍କ ଥିଲେ । ଦିନକର ଘଟଣା ଉଲ୍ଲେଖ କରୁଛି । ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ବୀରେନ ମିତ୍ର । ପରିଜାଙ୍କ ଅଫିସ କକ୍ଷରେ **ଫୋନ୍** ବାଜିଲା ଓ ସେ ଉଠାଇଲେ । ଅନ୍ୟ ପାଖରୁ ଶୁଭିଲା, "ମୁଁ **ମୁଖ୍ୟମନ୍ତ୍ରୀଙ୍କ** ପି.ଏ.

କହୁଛି ।'' "Go to Hell'' ବୋଲି କହି ପରିଜା ଫୋନ ରଖିଦେଲେ ଓ ରାଗରେ କହିଲେ, "ମୁଖ୍ୟମନ୍ତ୍ରୀ ନିଜେ ଫୋନ୍ କରିପାରିବ ନାହିଁ ! ତା ପି.ଏ. ସାଙ୍ଗରେ ମୁଁ କଥା କହିବି ! ଇଡ଼ିୟଟ୍ ।''

ପୁଣି ଫୋନ୍ ବାଜିଲା ଓ ସେ ଉଠାଇଲେ । ଏଥର ଶବ୍ଦ ଶୁଭିଲା, "ମୁଁ ମୁଖ୍ୟମନ୍ତ୍ରୀଙ୍କ ପି.ଏ. । ଆପଣ ମୋତେ କେଉଁଠାକୁ ଯିବାକୁ କହିଲେ ?'' ପରିଜା ଗର୍ଜନ କଲେ, "ନରକକୁ ଯିବାକୁ କହିଲି, ନରକ । ସେହିଠାକୁ ଯା ।''

ଏକ ମିନିଟ ପରେ ପୁଣି ଫୋନ୍ ବାଜିଲା । ରାଗ ସମ୍ଭାଳି ନ ପାରି ପରିଜା ବଡ଼ ପାଟିରେ କହିଲେ, "ଯମ ଘରକୁ ଯା ।'' ଏଥର କିନ୍ତୁ ଫୋନ୍ ଆସିଥିଲା ଶ୍ରୀମତୀ ପରିଜାଙ୍କ ପାଖରୁ । ମଧ୍ୟାହ୍ନ ଭୋଜନ ଲାଗି ଡାକିବା ନିମନ୍ତେ ।

ଏହା ଥିଲା ଗୋଟିଏ ସମୟର କଥା । ଦିନ ପୁଣି ଆସିଲା ଯେତେବେଳେ ମୁଖ୍ୟମନ୍ତ୍ରୀଙ୍କ ପି.ଏ.ଙ୍କୁ କୁଳପତିମାନେ 'ଆଜ୍ଞା' 'ଆଜ୍ଞା' କହିବାକୁ ଉଚିତ ମଣିଲେ ।

ପରିଜା ସାହେବଙ୍କ ପରେ ଡକ୍ଟର ସଦାଶିବ ମିଶ୍ର କୁଳପତି ହେଲେ (୧୯୬୬) । ପରିଜା ଗାମ୍ଭୀର୍ଯ୍ୟ ରକ୍ଷା କରୁଥିଲା ବେଳେ ସଦାଶିବ ବାବୁ ଅତ୍ୟନ୍ତ ମେଳାପୀ ଥିଲେ । ଜ୍ଞାନ ଓ ପାଣ୍ଡିତ୍ୟ ବଳରେ ସେ ଅନ୍ୟମାନଙ୍କୁ ଆକର୍ଷଣ କରିପାରୁଥାନ୍ତି । ଛାତ୍ରମାନେ ତାଙ୍କ ଭାଷଣ ଶୁଣିବାକୁ ଖୁବ୍ ଭଲ ପାଉଥିଲେ ଓ ତାଙ୍କୁ ଭକ୍ତି କରୁଥିଲେ । କିନ୍ତୁ ତାଙ୍କ ପରି ଉଦାରଚେତା କୁଳପତିଙ୍କୁ ମଧ୍ୟ ଶାନ୍ତି ମିଳିଲା ନାହିଁ । ସିଣ୍ଡିକେଟର କେତେଜଣ ସଦସ୍ୟ ନାନାପ୍ରକାର ସମସ୍ୟା ସୃଷ୍ଟିକଲେ ଓ ଛାତ୍ରମାନେ ବିଭିନ୍ନ ଦାବି ଦ୍ୱାରା ତାଙ୍କୁ ବିବ୍ରତ କରିବା ଦେଖାଗଲା । ଦିନେ ପ୍ରତ୍ୟୁଷରେ କୁଳପତିଙ୍କ ବାସଭବନକୁ ଯାଇ ଦେଖିଲି ସେ ବିମର୍ଷ ମନରେ ସୋଫା ଉପରେ ବସିଛନ୍ତି । କହିଲେ, "ସାରା ରାତି ଏହିଠାରେ ବସି ରହିଛି । ଶୋଇ ନାହିଁ । ଭାବୁଛି, ଛାତ୍ର ସଂସଦର ବାର୍ଷିକ ଉତ୍ସବ ମାନେ କୁଳପତିଙ୍କ ବିପକ୍ଷରେ ଅଭିଯୋଗ ତାଲିକା ଦାଖଲ ଓ ପୌରୋହିତ୍ୟ କରିବାକୁ ଡାକିନେଇ ଚେତାବନୀ ଶୁଣାଣି ।'' ଶେଷରେ ଦିନେ ବାହାର କଲେଜରୁ ଆସିଥିବା ଅଳ୍ପ ସଂଖ୍ୟକ ଛାତ୍ରଙ୍କ ଉପଦ୍ରବ ଯୋଗୁଁ ସଦାଶିବ ବାବୁ କୁଳପତି ପଦରୁ ଇସ୍ତଫା ଦେଲେ (୧୯୭୧) । ମୁଁ ସେତେବେଳେ ସିମଳାରେ ଥିଲି । ଦୁଃଖ ହେଲା, ତାଙ୍କପରି ବିଦ୍ୱାନ୍ ଓ ମହତ୍ ବ୍ୟକ୍ତି ମଧ୍ୟ ବିଶ୍ୱବିଦ୍ୟାଳୟରେ ନିଜକୁ ଅସହାୟ ବୋଧ କଲେ ।

ତାଙ୍କପରେ ଡକ୍ଟର ରମାନାଥ ମହାନ୍ତି କୁଳପତି ହେଲେ । ଗଣିତ ଶାସ୍ତ୍ରରେ ତାଙ୍କପରି ପ୍ରତିଭାଶାଳୀ ପଣ୍ଡିତଙ୍କ ସଂଖ୍ୟା ସାରା ଦେଶରେ ବିରଳ ଥାଏ । ସେପରି ଶାନ୍ତ ପ୍ରକୃତିର ଅଧ୍ୟାପକ କୁଳପତି ହେବା ମଧ୍ୟ ବିରଳ । ବାଣୀବିହାର

ପରିସରରେ ନ ରହି ସେ ଦୈନିକ କଟକରୁ ଯିବା ଆସିବା କଲେ । "ଅନ୍ତତଃ, ରାତିରେ ନିଜ ଘରେ କିଛି ସମୟ ଶାନ୍ତିରେ ଶୋଇପାରିବି" ଏହି କଥାରୁ ସାଂକେତିକ ଅର୍ଥରେ କ୍ୟାମ୍ପାସ୍‌ର ପରିବେଶ ଜଣା ପଡ଼ିଥାଏ ।

କୁଳପତିଙ୍କ ସରଳତାର ସୁଯୋଗ ନେଇ ବାହାର କଲେଜର ଛାତ୍ରମାନେ ତାଙ୍କୁ ମଝେ ମଝେ ଅଫିସ୍ କକ୍ଷରେ ଘେରାଉ କରୁଥିଲେ । ଥରେ ଥରେ ଘେରି ରହିଥିବା ଛାତ୍ରମାନେ ୧୨ କିମ୍ବା ୧୮ ଘଣ୍ଟା ଅଖିଆ ଅପିଆ ବସିରହି ଶେଷରେ ଉଠିଗଲା ପରେ କୁଳପତି ଅବସନ୍ନ ଅବସ୍ଥାରେ ବାହାରି ଆସୁଥିଲେ । ଧୈର୍ଯ୍ୟ ଓ ସଂଯମର ଜୀବନ୍ତ ପ୍ରତିମୂର୍ତ୍ତି ! ଅପର ପକ୍ଷରେ, ବିଶ୍ୱବିଦ୍ୟାଳୟ ପରିଚାଳନା କାର୍ଯ୍ୟରେ ତାଙ୍କର ଯଥେଷ୍ଟ କର୍ମକୁଶଳତା ଓ ବିଚକ୍ଷଣତା ଉପଲବ୍ଧି କରି ହେଉଥାଏ । ତଥାପି, ଶେଷରେ ଦିନେ ଅକସ୍ମାତ୍ ଭାବରେ ରମାନାଥବାବୁଙ୍କ କାର୍ଯ୍ୟକାଳରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ନନ୍ଦିନୀ ଶତପଥୀଙ୍କ ସରକାର ୧୯୭୪ ମସିହା ଜୁଲାଇ ମାସରେ କୁଳପତିଙ୍କୁ କାର୍ଯ୍ୟରୁ ଅନ୍ତର କରି ଜଣେ ପ୍ରଶାସକଙ୍କୁ ନିଯୁକ୍ତ କଲେ । ବିଶ୍ୱବିଦ୍ୟାଳୟର ସ୍ୱାତନ୍ତ୍ୟ ଲୋପ ପାଇବା ଯୋଗୁଁ ଆମେ ମର୍ମାହତ ହେଲୁଁ । ଯଦିଚ ତାହା ଥିଲା ଏକ ସାମୟିକ ପଦକ୍ଷେପ ।

ପ୍ରଶାସକ ଜ୍ଞାନଚାନ୍ଦ ବିଶ୍ୱବିଦ୍ୟାଳୟ ଶାସନଭାର ଗ୍ରହଣ କଲାପରେ ସିଣ୍ଡିକେଟ୍ ରହିଲା ନାହିଁ । ବସ୍ତୁତଃ ସେ ହେଲେ ନିରଙ୍କୁଶ ଶାସକ । କିନ୍ତୁ ଅଧ୍ୟାପକ ଗୋଷ୍ଠୀ ଓ ଛାତ୍ରମାନଙ୍କ ନିକଟରୁ ସେ ସମ୍ମାନ ପାଇଲେ ନାହିଁ । କାର୍ଯ୍ୟରେ ଯୋଗଦେବା ଦିନ ହିଁ କେତେକ ଛାତ୍ର ତାଙ୍କ ଅଫିସରେ ଲଙ୍କାକାଣ୍ଡ ଭିଆଇ ଅର୍ଦ୍ଧରାତ୍ରିରେ ପୋଲିସ ଦ୍ୱାରା ଗିରଫ ହେଲେ । କେହି କେହି ଅଧ୍ୟାପକ ପ୍ରଶାସକଙ୍କ ଆଦେଶ ପ୍ରତି ଭ୍ରୂକ୍ଷେପ କଲେ ନାହିଁ । ଥରେ ଜ୍ଞାନଚାନ୍ଦ ଅଧ୍ୟାପକ ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କ ନିକଟକୁ କୌଣସି ବିଷୟରେ ନିର୍ଦ୍ଦେଶ ପଠାଇଲେ । ସୂର୍ଯ୍ୟକାନ୍ତ ବାବୁ ତାହା ମାନିପାରିବେ ନାହିଁ ବୋଲି ସିଧାସଳଖ ଲେଖିଦେଲେ । ପ୍ରଶାସକ ପୁଣିଥରେ ସେହି ଆଦେଶନାମା ପଠାଇବା ଦେଖି ସେ ଗୋଟିଏ ଧାଡ଼ି ଲେଖିଦେଲେ, "Dear Mr.Gyanchand, S.K.Das is S.K.Das. Yours sincerely, S.K.Das." ସେଥିରୁ ପ୍ରଶାସକ ମହୋଦୟ ବୁଝିପାରିଲେ ଯେ, ତାଙ୍କ ଅଧସ୍ତନ ଆଇ.ଏ.ଏସ୍. ଅଫିସାରମାନେ ଆଦେଶ ମାନିବାକୁ ଯେପରି ବାଧ୍ୟ ଥାନ୍ତି, ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନେ ସେପରି ଅବସ୍ଥାରେ ନଥାନ୍ତି ।

ତେଣେ, ଯେଉଁ ସମସ୍ୟାଗୁଡ଼ିକ ପାଇଁ ଆଇନ କଲେଜର ଛାତ୍ରମାନେ ବାରମ୍ବାର ପୂର୍ବତନ କୁଳପତି ରମାନାଥ ମହାନ୍ତିଙ୍କୁ ଘେରାଉ କରୁଥାନ୍ତି, ସେହି ସମସ୍ୟା ଲାଗି ପ୍ରଶାସକଙ୍କୁ ମଧ୍ୟ ଘେରାଉ ଓ ଅପଦସ୍ଥ କଲେ । ଥରେ ଛାତ୍ରମାନଙ୍କ

ଘେରରୁ ପୋଲିସ ଫୋର୍ସ ତାଙ୍କୁ ଉଦ୍ଧାର କରିବା ଦେଖାଗଲା । ବିଶ୍ୱବିଦ୍ୟାଳୟକୁ କାହିଁକି ଆସିଲେ ବୋଲି ଅନୁତାପ କରୁଥିବା ସମୟରେ, ଅକସ୍ମାତ ୧୯୭୫ ମସିହା ଜୁନ୍ ମାସ ୨୫ ତାରିଖ ଦିନ ଦେଶରେ ଆଭ୍ୟନ୍ତରୀଣ ଜରୁରୀ ପରିସ୍ଥିତି ଘୋଷଣା କରାଗଲା । ଇନ୍ଦିରା ଗାନ୍ଧିଙ୍କର ସେହି ପଦକ୍ଷେପ ଯଥାର୍ଥ ଥିଲା କି ନୁହେଁ, ତାହା ବୌଦ୍ଧିକ ତର୍କବିତର୍କର ବିଷୟ । କିନ୍ତୁ ଏଥିରେ ସନ୍ଦେହ ନଥାଏ ଯେ ଦେଶରେ ଭୟ ଖେଳିଗଲା । ସେଥିସହ ଭାରତର ସବୁ ବିଶ୍ୱବିଦ୍ୟାଳୟ କ୍ୟାମ୍ପାସ୍ ଶାନ୍ତ ଆକାର ଧାରଣ କଲା । ପ୍ରଶାସକ ଜ୍ଞାନଚାନ୍ଦ ଆଶ୍ୱସ୍ତ ହେଲେ । କେବଳ ସେତିକି ନୁହେଁ, ନନ୍ଦିନୀ ସରକାରଙ୍କ ନିଷ୍ପତ୍ତିକ୍ରମେ ସେ ସେହିବର୍ଷ ଡିସେମ୍ବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱନାମଧନ୍ୟ ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ବାଧ୍ୟତାମୂଳକ ଅବସର ଦେଇ ଚାକିରିରୁ ଅନ୍ତର କରିଦେଲେ ।

ଏହି ନିଷ୍ପତ୍ତି ଏପରି ଗୋପନୀୟ ରଖାଯାଇଥିଲା ଯେ ଶ୍ରୀରାମ ବାବୁଙ୍କ ପରି ବିଚକ୍ଷଣ ବ୍ୟକ୍ତି ମଧ୍ୟ ଆଗରୁ ସୁରାକ୍ ପାଇଲେ ନାହିଁ । ଯେତେବେଳେ ଜାଣିଲେ, ସେତେବେଳକୁ ଅନେକ ବିଳମ୍ବ ହୋଇଯାଇଥାଏ । ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଓ ଶିକ୍ଷାସଚିବଙ୍କ ପାଖକୁ ଯାଇ ନିରାଶ ହେଲାପରେ ଦିନେ ମଧ୍ୟରାତ୍ରରେ ମୋ ଘରେ ପହଞ୍ଚି କହିଲେ, "ମନ୍ମଥ, ତୁମ ସାହାଯ୍ୟ ପାଇଁ ଆସିଛି । ନନ୍ଦିନୀ ଶତପଥୀ କେବଳ ଜଣକ କଥା ମାନିବ । ତୁମ ସାନଭାଇ ମନୋଜ ଫୋନ୍ କଲେ ଅର୍ଡାର କ୍ୟାନସେଲ କରିବ । ବଡ଼ଭାଇ ହିସାବରେ ମନୋଜ ପାଖକୁ ବର୍ତ୍ତମାନ ମୋ ଆଗରେ ଚିଠି ଲେଖ ।" ସକାଳ ପାଖରୁ ସେ କିଛି ଖାଇ ନଥାନ୍ତି । ମୋ ସ୍ତ୍ରୀ ସଙ୍ଗେ ସଙ୍ଗେ ଗରମ ଖାଦ୍ୟ ପ୍ରସ୍ତୁତ କଲେ । ଖାଉଥିବା ଅବସ୍ଥାରେ ସେ ମୋତେ ଯାହା ଡକାଇଦେଲେ, ମନୋଜ ପାଖକୁ ସେହି କଥା ଲେଖିଲି । ନିଜେ ଷ୍ଟେସନରେ ଚିଠି ପକାଇବେ ବୋଲି ନେଇଗଲେ । ଶ୍ରୀରାମ ବାବୁଙ୍କ ପରି ଦୁର୍ଦ୍ଧର୍ଷ ବ୍ୟକ୍ତିଙ୍କୁ ସେପରି ଶ୍ରୀହୀନ ଅବସ୍ଥାରେ ଦେଖିବି ବୋଲି କେବେ ହେଲେ ଅନୁମାନ କରି ନଥିଲି । ଏମାର୍ଜେନ୍ସି ସମୟ !

ଡିସେମ୍ବର ୨୩ ତାରିଖ ସନ୍ଧ୍ୟା ୭ଟା ବେଳେ ପଣ୍ଡିଚେରୀରୁ ମନୋଜ ପାଖରୁ ଫୋନ୍ ଆସିଲା, "ଭାଇ, ଆପଣଙ୍କ ଚିଠି ଆଜି ୪ଟା ବେଳେ ପାଇ ରାତିରେ ନନ୍ଦିନୀ ଦେବୀଙ୍କୁ ଫୋନ କରିବି ବୋଲି ଠିକ୍ କରିଥିଲି । କିନ୍ତୁ ଅଳ୍ପ ସମୟ ପୂର୍ବେ ଓଡ଼ିଶାର ଆଞ୍ଚଳିକ ସମ୍ବାଦରୁ ଶୁଣିଲି, ଆଜି ୫ଟା ବେଳେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ବିଶ୍ୱବିଦ୍ୟାଳୟରୁ ବାଧ୍ୟତାମୂଳକ ଅବସର ଦିଆଯାଇଛି । ଆଗରୁ ଚିଠି ପାଇଥିଲେ ନନ୍ଦିନୀ ଦେବୀଙ୍କୁ ସେପରି କାର୍ଯ୍ୟରୁ କ୍ଷାନ୍ତ ହେବାକୁ ପରାମର୍ଶ ଦେଇପାରିଥାନ୍ତି । ଏବେ ଫୋନ୍ କଲେ ଫଳ ମିଳିବ ବୋଲି ଆଶା ନାହିଁ ।"

ପରେ ଅନୁସନ୍ଧାନରୁ ଜାଣିଲି, ବ୍ୟକ୍ତିଗତ ସ୍ତରରେ ଥିବା ପରସ୍ପର ପ୍ରତି ବିରକ୍ତି ଭାବ ଯୋଗୁଁ ନନ୍ଦିନୀ ଦେବୀ ଇମାରଜେନ୍ସିର ସୁଯୋଗ ନେଇ ଶ୍ରୀରାମବାବୁଙ୍କୁ ଶାସ୍ତି ଦେଲେ । କିନ୍ତୁ ତଦ୍ଵାରା ବିଶ୍ୱବିଦ୍ୟାଳୟର କ୍ଷତି ହେଲା ସତ, ଅଥଚ ଶ୍ରୀରାମଚନ୍ଦ୍ର ଦାଶଙ୍କର କ୍ଷତି ହେଲା ନାହିଁ । ସେ ଆଇନଜୀବୀ ଭାବରେ ଯଥେଷ୍ଟ ସୁଖ୍ୟାତି ଏବଂ ଅର୍ଥ ଉପାର୍ଜନ କଲେ । ଜରୁରୀକାଳୀନ ପରିସ୍ଥିତିର ଆବରଣ ତଳେ ନନ୍ଦିନୀ ଶତପଥୀ ଅନ୍ୟ ଗୋଟିଏ ଭୁଲ୍ କରିବସିଲେ । ସେତେବେଳେ କେନ୍ଦ୍ରରେ ଶିକ୍ଷାମନ୍ତ୍ରୀ ଥାନ୍ତି ଅଧ୍ୟାପକ ନୁରୁଲ୍ ହାସାନ । ତାଙ୍କର ଜଣେ ପ୍ରିୟ ବନ୍ଧୁଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଆସନରେ ବସାଇବା ଲାଗି ସେ ନନ୍ଦିନୀ ଦେବୀଙ୍କୁ ଅନୁରୋଧ କଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବିଲେ ନାହିଁ ଯେ, ସେହି ପଦ ପାଇଁ ଓଡ଼ିଶାରେ ଯୋଗ୍ୟ ବ୍ୟକ୍ତିମାନଙ୍କର ଅଭାବ ନାହିଁ । ନିଜ ଆଞ୍ଚଳିକ ସ୍ୱାଭିମାନ ପ୍ରତି ଆମ ନେତାମାନଙ୍କର କୌଣସି ଖାତିର ନଥିବା ହେଉଛି ଏକ ଲଜ୍ଜାଜନକ ଚାରିତ୍ରିକ ତ୍ରୁଟି !

୧୯୭୬ ମସିହା ଗ୍ରୀଷ୍ମଛୁଟି ପରେ ବାଣୀବିହାର ଆସି ଦେଖିଲାବେଳକୁ ପ୍ରଶାସକ ଜ୍ଞାନଚାନ୍ଦ ବିଦାୟ ନେଲେଣି ଓ ଡକ୍ଟର ଗୌତମ ମାଥୁର କୁଳପତି ଆସନରେ ବସିଗଲେଣି । ତାଙ୍କୁ ଭେଟିଲା ପରେ ମୋର ଧାରଣା ହେଲା, ଓଡ଼ିଶା ଶିକ୍ଷା ବିଭାଗର ସର୍ବୋଚ୍ଚ ନିର୍ଦ୍ଦେଶକ ଅଧ୍ୟାପକ ବିଧୁଭୂଷଣ ଦାସ, ବିଶ୍ୱବିଦ୍ୟାଳୟର ବରିଷ୍ଠ ଅଧ୍ୟାପକ ଡକ୍ଟର ବିଦ୍ୟାଧର ମିଶ୍ର, ଡକ୍ଟର ରାଧାନାଥ ରଥ ଓ ଡକ୍ଟର ସୂର୍ଯ୍ୟକାନ୍ତ ଦାସଙ୍କ ତୁଳନାରେ ଗୌତମ ମାଥୁର କିଛି ନୁହନ୍ତି । ଉପର ମହଲରେ ଧରାଧରି କରି କୁଳପତି ହେବାଦ୍ୱାରା କିମ୍ବା ଜଣେ ମୁଖ୍ୟମନ୍ତ୍ରୀଙ୍କ ମନୋମୁଖୀ କାର୍ଯ୍ୟ ଫଳରେ ବିଶ୍ୱବିଦ୍ୟାଳୟର ଯେ କେତେଦୂର ଅମଙ୍ଗଳ ଘଟିଥାଏ, ତାହା ମାଥୁରଙ୍କ ଶାସନ କାଳରେ ଜଣାପଡ଼ିଲା । ସେ ଯାହାହେଉ, କୁଳପତି ନିଯୁକ୍ତି ପରେ ବିଶ୍ୱବିଦ୍ୟାଳୟର ସ୍ୱାତନ୍ତ୍ର୍ୟ ଫେରିଆସିଲା । ସିଣ୍ଡିକେଟ୍ ଓ ସିନେଟ୍ ପୁନର୍ବାର ଗଠିତ ହେଲା । ଅବଶ୍ୟ ଏମାରଜେନ୍ସି ବଳବତ୍ତର ଥାଏ ।

ସେହି ଏମାରଜେନ୍ସି କାଳରେ ହିଁ ନନ୍ଦିନୀ ଶତପଥୀ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ବିଶ୍ୱାସ ହରାଇ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ତାହାର କିଛି ସମୟ ପରେ ଜରୁରୀକାଳୀନ ଅବସ୍ଥାର ଅବସାନ ଘଟିଲା । କେନ୍ଦ୍ରରେ ଜନତାଦଳ କ୍ଷମତାକୁ ଆସିଲା ପରେ ଓଡ଼ିଶାରେ ନୀଳମଣି ରାଉତରାୟ ଜନତା ସରକାରର ମୁଖ୍ୟମନ୍ତ୍ରୀ ହେଲେ । ସେତେବେଳକୁ ଗୌତମ ମାଥୁରଙ୍କ ଆସନ ଟଳମଳ ହେଉଥାଏ । ସିଣ୍ଡିକେଟ୍ ଓ ସିନେଟ ତାଙ୍କ ଦୋଷତ୍ରୁଟି ଦେଖି ତାଙ୍କୁ ଅସ୍ତବ୍ୟସ୍ତ କଲେ । ସିନେଟ ସଭ୍ୟମାନେ ସିନେଟ୍ ହଲ୍ ମଧ୍ୟକୁ ପଶିବା ଲାଗି

କୁଳପତିଙ୍କୁ ବାଟ ଛାଡ଼ିଲେ ନାହିଁ । ସମ୍ପୂର୍ଣ୍ଣ ବିଶୃଙ୍ଖଳାମୟ ପରିସ୍ଥିତିରେ ଅପଦସ୍ଥ ମାଥୁର ବିଦାୟ ନେଲେ ।

୧୯୭୭ରେ କୁଳପତି ନିର୍ବାଚନ ନିମନ୍ତେ ମନୋନୟନ କମିଟି ବସିଲା ଓ ଡକ୍ଟର ବିଦ୍ୟାଧର ମିଶ୍ର ମନୋନୀତ ହେଲେ । ସେ ଥିଲେ ଅର୍ଥନୀତି ଅଧ୍ୟାପକ ଏବଂ ଜଣେ ଚରିତ୍ରବାନ ବ୍ୟକ୍ତି । ସାମାନ୍ୟ ସାମାନ୍ୟ ବ୍ୟାପାରରେ ମଧ୍ୟ ସେ ତାଙ୍କ ସାଧୁତା, ନିଷ୍ଠା ଓ ନୀତି ବଜାୟ ରଖୁଥିଲେ । ଥରେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ପକ୍ଷରୁ ଚାରିଜଣ ଉଚ୍ଚପଦସ୍ଥ ବ୍ୟକ୍ତି ଅନୁଦାନ ମଞ୍ଜୁର ଲାଗି ବାଣୀବିହାର ଆସିଲେ । ଅନୁସନ୍ଧାନ ଶେଷ କରି ସେମାନେ ପୁରୀରେ ରାତ୍ରିଯାପନ ଲାଗି ସେଠାକାର ସବୁଠାରୁ ବଡ଼ ହୋଟେଲରେ ଯାଇ ରହିଲେ । ସେମାନଙ୍କ ହେପାଜତ ଦାୟିତ୍ୱ ଜଣେ କର୍ମଚାରୀଙ୍କୁ ଦିଆଗଲା । ରାତି ୯ଟା । ମୁଁ କୁଳପତିଙ୍କ ଅଫିସରେ ଉପସ୍ଥିତ ଥିଲି । ପୁରୀରୁ ଫୋନ୍ ଆସିଲା ଓ କୁଳପତି ଧରିଲେ । କର୍ମଚାରୀ ଜଣାଇଲେ, "ସେମାନେ ଚାରି ବୋତଲ ଭଲ ହୁଇସ୍କି ମାଗୁଛନ୍ତି, ଡିନାର୍ ପରେ ପିଇବେ ।" କୁଳପତି ବିରକ୍ତ ହୋଇ ଆଦେଶ ଦେଲେ, "ନା, ମୁଁ ମଦ ପାଇଁ ଟଙ୍କା ଦେବି ନାହିଁ । ନିଜ ଟଙ୍କାରେ ଯେତେ ପିଇବେ ପିଅନ୍ତୁ । ତୁମେ ସେପାଇଁ ଗୋଟିଏ ପଇସା ଖର୍ଚ୍ଚ କରିପାରିବ ନାହିଁ ।"

ମୁଁ ପ୍ରତିବାଦ ଜଣାଇ କହିଲି, "ଆପଣ ସାଂଘାତିକ ଭୁଲ୍ କରୁଛନ୍ତି । ସେମାନଙ୍କ ମର୍ଜି ଉପରେ ଲକ୍ଷ ଲକ୍ଷ ଟଙ୍କାର ଅନୁଦାନ ନିର୍ଭର କରୁଛି । ଚାରି ବୋତଲ୍ ହୁଇସ୍କି ପାଇଁ ଆପଣ ଯଦି ଚାରିଶହ ଟଙ୍କା ମଞ୍ଜୁର କରିବେ ନାହିଁ, ତେବେ ଚାରି ଲକ୍ଷ ଟଙ୍କା ବୁଡ଼ିଲା ବୋଲି ଜାଣନ୍ତୁ । ସେମାନଙ୍କ ମିଜାଜ୍ ଠିକ୍ ରଖିବା ଦୃଷ୍ଟିରୁ ମଦ୍ୟକୁ ଖାଦ୍ୟ ବୋଲି ଭାବିନିଅନ୍ତୁ ।" ପୁରୀରୁ ପୁଣି ଫୋନ୍ ଆସିଲା, ସଭ୍ୟମାନେ ଭୂରି ଭୋଜନ ପରେ ମଦ୍ୟ ପାଇଁ ଅପେକ୍ଷା କରିଛନ୍ତି । କୁଳପତି ନାସ୍ତିବାଣୀ ଶୁଣାଇଲେ– "ଟଙ୍କା ବୁଡ଼ିବ ବୁଡ଼ୁ, ମଦ ପିଆଇ ଟଙ୍କା ନେବି ନାହିଁ" ବୋଲି କହି ବାହାରିଗଲେ ।

ବିଦ୍ୟାଧରବାବୁଙ୍କ ସମୟରେ ମୁଁ ସିଣ୍ଡିକେଟକୁ ନିର୍ବାଚିତ ହୋଇଥାଏ । ଜାଣିପାରିଲି, ତିନିଜଣ ସିଣ୍ଡିକେଟ୍ ସଦସ୍ୟ କୁଳପତିଙ୍କ କାର୍ଯ୍ୟରେ ବାଧା ଦେବା ଲାଗି ବଦ୍ଧପରିକର । ସତେ ଯେପରି ସେହି କାମ ପାଇଁ ସେମାନେ ନିର୍ବାଚିତ ହୋଇ ଆସିଥାନ୍ତି । ଗୋଟିଏ ଦୃଷ୍ଟାନ୍ତ ହିଁ ଯଥେଷ୍ଟ । କୌଣସି ଏକ କଲେଜରେ ଜଣେ ବୃତ୍ତିଭୋଗୀ ମେଧାବୀ ଛାତ୍ରଙ୍କୁ 'କପି' ଅପରାଧ ଯୋଗୁଁ ଦଣ୍ଡ ମିଳିଲା । ଅନୁସନ୍ଧାନରୁ ଜଣାଗଲା, ଛାତ୍ରଟି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଓ ଅତ୍ୟନ୍ତ ଦରିଦ୍ର ।° ଦଣ୍ଡରୁ ଅବ୍ୟାହତି ଦିଆଯିବ ବୋଲି କୁଳପତି ସିଣ୍ଡିକେଟ୍‌ରେ ପ୍ରସ୍ତାବ ରଖିଲେ । ଜଣେ ସଦସ୍ୟ ବାଧା ଦେଇ

କହିଲେ, "ନା, ତା ହୋଇପାରିବ ନାହିଁ । ମୁଁ ଛାତ୍ରଜୀବନରେ ନିର୍ଦ୍ଦୋଷ ଥିବା ସତ୍ତ୍ୱେ ରାଷ୍ଟିକେଟେଡ୍ ହୋଇଥିଲି । ତେଣୁ, ଥରେ ଦଣ୍ଡ ଦିଆଗଲେ ତାହା ବାତିଲ କରିବାକୁ ମୁଁ ଦେବିନାହିଁ ।" ବିଚିତ୍ର ଯୁକ୍ତି ! ମୁଁ ବୁଝାଇଲି, "ଯେଉଁ ପ୍ରକାର ଭୁଲ୍ ଲାଗି ନିଜେ ଦୁଃଖ ଭୋଗିଛନ୍ତି, ଅନ୍ୟ ଜଣେ ନିର୍ଦ୍ଦୋଷ ଛାତ୍ର ପ୍ରତି ସେହି ପ୍ରକାର ଭୁଲ୍ କଲେ ଭଗବାନ ଆମକୁ କ୍ଷମା ଦେବେ ନାହିଁ ।" ସେହି ଦିନରୁ ସେ ମୋ ସହିତ ଥିବା ସୁସମ୍ପର୍କ ଛିନ୍ନ କଲେ । ସେତେବେଳେ ମୋର ଧାରଣା ହୋଇଥିଲା, କୁଳପତି ହେଲେ ନିଜର ମାନବିକ ବିଚାରଧାରାରେ ପୂର୍ଣ୍ଣଚ୍ଛେଦ ଟାଣିବା ଦରକାର । ଏକଥା ମଧ୍ୟ ଅନୁଭବ କଲି, କୁଳପତିମାନେ ସିଣ୍ଡିକେଟ୍‌ର ଆଜ୍ଞାବହ ରୂପେ କାର୍ଯ୍ୟ କରିବା ଦ୍ୱାରା ନିଜର ବ୍ୟକ୍ତିତ୍ୱ ହରାଇବାକୁ ବାଧ୍ୟ । ଏଠାରେ ଉଲ୍ଲେଖଯୋଗ୍ୟ, ବିଦ୍ୟାଧର ମିଶ୍ରଙ୍କ ସମୟରୁ ବିଶ୍ୱବିଦ୍ୟାଳୟ ଆଇନ ସଂଶୋଧନ ପୂର୍ବକ ସିଣ୍ଡିକେଟ୍‌କୁ ନୂତନ ରୂପ ଦେବା ଲାଗି ସରକାର ଚିନ୍ତା କଲେ । କିନ୍ତୁ ସେଥିପାଇଁ ଅନେକ ବର୍ଷ ଲାଗିଗଲା । ଗତାନୁଗତିକ ସିଣ୍ଡିକେଟ୍‌ର ଦୌରାତ୍ମ୍ୟ ସହ୍ୟ କରିବା ଦୃଷ୍ଟିରୁ ମୁଁ ଥିଲି ଶେଷ କୁଳପତି । ମୋ ବିଦାୟ ପରେ ସରକାର ଆଇନ ସଂଶୋଧନ କଲେ ଓ ସିଣ୍ଡିକେଟ କୁଳପତିଙ୍କ ପ୍ରାଧାନ୍ୟ ମାନିବାକୁ ବାଧ୍ୟ ହେଲେ ।

ବିଦ୍ୟାଧରବାବୁଙ୍କ କାର୍ଯ୍ୟକାଳ ମଧ୍ୟରେ ବିଶ୍ୱବିଦ୍ୟାଳୟ ପରିସରରେ ବାହ୍ୟ ହସ୍ତକ୍ଷେପ ଦିନକୁ ଦିନ ବଢ଼ି ଚାଲିଥାଏ । ଛାତ୍ରନେତାମାନେ ମଝେ ମଝେ କୁଳପତି ଓ ସିଣ୍ଡିକେଟ୍‌କୁ ଆକ୍ରମଣ କଲେ । ଥରେ ସିଣ୍ଡିକେଟ୍ ବସିଥିଲା ବେଳେ ବାହାରୁ ଢେଲା ପଥର ବୃଷ୍ଟି ହେଲା । ଝରକାର କାଚଗୁଡ଼ିକ ଖଣ୍ଡ ଖଣ୍ଡ ହୋଇ ଆମ ଉପରେ ପଡୁଥାଏ । ଆଉ ଦିନେ ଛାତ୍ର ଓ କର୍ମଚାରୀମାନଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଆରମ୍ଭ ହେବାର ସମ୍ବାଦ ପାଇ ମୁଁ ଓ ଅଧ୍ୟାପକ ସୂର୍ଯ୍ୟକାନ୍ତ ଦାସ ପରସ୍ପରମୁଖୀ ଯୋଦ୍ଧୃଦଳ ମଧ୍ୟରେ ଥିବା ସଂକୀର୍ଣ୍ଣ ସ୍ଥାନଟିରେ ଛିଡ଼ା ହେଲାବେଳେ ଆମ ଦୁହିଁଙ୍କ ମୁଣ୍ଡ ଉପର ଦେଇ ନାନା କିସମର କ୍ଷେପଣାସ୍ତ୍ର ଏ ପାଖରୁ ସେପାଖ ଓ ସେପାଖରୁ ଏପାଖ ଉଡ଼ିବାକୁ ଲାଗିଲା । ଯେକୌଣସି ଯୋଦ୍ଧାର ଈଷତ୍ ଲକ୍ଷ୍ୟଭ୍ରଷ୍ଟ ଦ୍ୱାରା କାଠଫାଳିଆ ବା ଢେଲା ମାଡ଼ରେ ଆମେ ଧରାଶାୟୀ ହୋଇଥାନ୍ତୁ, ଏଥିରେ ସନ୍ଦେହ ନଥାଏ ।

୧୯୭୮ରେ ବିଦ୍ୟାଧରବାବୁ କିଛି ସପ୍ତାହ ଛୁଟିରେ ଗଲାବେଳେ ରାଜ୍ୟପାଳ ତଥା ଚାନ୍‌ସେଲର ମୋତେ ଅସ୍ଥାୟୀ କୁଳପତି ଭାବେ କାର୍ଯ୍ୟ କରିବାକୁ ଆଦେଶ ଦେଲେ । ଟେବୁଲ ଉପରେ ଫାଇଲ ଗଦା ଦେଖି ରିସାର୍ଚ୍ଚ **ବେଞ୍ଚର** ଫାଇଲ ଗଦା ମନେ ପଡୁଥାଏ । ମନୋଜକୁ କହିଲି, "ଯେଉଁ **ଆସନରେ** କିଛି ଦିନ ପାଇଁ ବସିଛି, ସେଥିରେ ବେଶି ଦିନ ବସିବା ଦୁର୍ଭାଗ୍ୟ **ଭବିଷ୍ୟତରେ ନ ମିଳୁ** ।"

ବିଦ୍ୟାଧର ମିଶ୍ରଙ୍କ ପ୍ରଥମ ୩ ବର୍ଷ କୁଳପତିତ୍ୱ ପରେ ସେ ପୁଣି ତିନି ବର୍ଷ ପାଇଁ ରହିପାରିଥାନ୍ତେ । କିନ୍ତୁ ଦ୍ୱିତୀୟ ଦଫା କୁଳପତି ହେବେ ନାହିଁ ବୋଲି ସେ ଚାନ୍ସେଲରଙ୍କ ପାଖକୁ ଲେଖିଦେଲେ । ଗୋପନରେ ମୋତେ କହିଥିଲେ, ‘‘ଯେଉଁ ପ୍ରକାର ଭାଷା ଜୀବନରେ ଶୁଣି ନଥିଲି, କୁଳପତି ପଦରେ ରହି ଶୁଣିଲି । ଯଥେଷ୍ଟ ଅଭିଜ୍ଞତା ହାସଲ କରିଛି, ଆଉ ଦରକାର ନାହିଁ ।’’ ତାଙ୍କ ବିଦାୟରେ ବିଶ୍ୱବିଦ୍ୟାଳୟ ଜଣେ ସୁଦକ୍ଷ ଓ ନୀତିପରାୟଣ କୁଳପତିଙ୍କୁ ହରାଇଲା ।

ତାଙ୍କ ପରେ ଡକ୍ଟର ମହେନ୍ଦ୍ର କୁମାର ରାଉତ ୧୯୮୦ରୁ ୧୯୮୩ ପର୍ଯ୍ୟନ୍ତ କୁଳପତି ରହିଲେ । ରେଭେନ୍ସା କଲେଜର ଅଧ୍ୟକ୍ଷ ଓ ତା ପରେ ଡି.ପି.ଆଇ. ଭାବରେ ସେ ଶାସନ କାର୍ଯ୍ୟରେ ଯଥେଷ୍ଟ ଅଭିଜ୍ଞତା ହାସଲ କରିଥିଲେ । ରସାୟନ ବିଦ୍ୟାରେ ଉଲ୍ଲେଖଯୋଗ୍ୟ କୃତିତ୍ୱ ଯୋଗୁଁ ସର୍ବଭାରତୀୟ ସ୍ତରରେ ତାଙ୍କର ସୁଖ୍ୟାତି ଥିଲା । ସେ ବିଶ୍ୱବିଦ୍ୟାଳୟ ପରିଚାଳନାରେ ମନ ପ୍ରାଣ ଦେଇ କାମ କଲେ ।

କିନ୍ତୁ କୁଳପତିଙ୍କ ଦକ୍ଷତା ଓ କର୍ମନିଷ୍ଠା ସହିତ କ୍ୟାମ୍ପାସ୍ ଶାନ୍ତିର ସମ୍ପର୍କ ନ ଥାଏ । କେତେବେଳେ କେଉଁ ଘଟଣାକୁ କେନ୍ଦ୍ରକରି ବିସ୍ଫୋରଣ ଘଟିବ, ତାହା ଭାରତୀୟ କୁଳପତିମାନଙ୍କ ପକ୍ଷରେ ଅନୁମାନ କରିବା ସମ୍ଭବ ନ ଥାଏ । ଚଳିତ ଶତାବ୍ଦୀର ସପ୍ତମ ଦଶକ ପାଖରୁ ଦେଶର ରାଜନୈତିକ ପାଣିପାଗ ଉପରେ କ୍ୟାମ୍ପାସ୍ ପାଣିପାଗ ନିର୍ଭର କରିବା ଅନିବାର୍ଯ୍ୟ ଦେଖି ଶିକ୍ଷାବିତ୍‌ମାନେ ଶଙ୍କିତ ଥାନ୍ତି । ପରବର୍ତ୍ତୀ ଦଶକ ବେଳକୁ ଉଭୟ ପ୍ରକାର ଜଳବାୟୁର ମିଶ୍ରଣ ଘଟିଲା । ରାଜଧାନୀ ଦିଲ୍ଲୀରେ ଥରେ କେତେଜଣ ରାଜନୀତିଜ୍ଞଙ୍କ ସହିତ କ୍ୟାମ୍ପାସ୍ ରାଜନୀତି ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା ବେଳେ ମୁଁ ମତ ଦେଇଥିଲି, ‘‘ବିଶ୍ୱବିଦ୍ୟାଳୟ ପରିସର ଠାରୁ ଆପଣମାନେ ନିଜକୁ ଦୂରରେ ରଖିଲେ ଦେଶର ମଙ୍ଗଳ ହୁଅନ୍ତା ।’’ ଜଣେ ବରିଷ୍ଠ ନେତା ଉତ୍ତର ଦେଲେ, ‘‘ଅଧ୍ୟାପକମାନଙ୍କ ଦୃଷ୍ଟିରେ ବିଶ୍ୱବିଦ୍ୟାଳୟ ପରିସର ଉଚ୍ଚଶିକ୍ଷାର କେନ୍ଦ୍ରସ୍ଥଳୀ ହୋଇପାରେ, କିନ୍ତୁ ଆମ ବିଚାରରେ ସେହି ସ୍ଥାନ ଭବିଷ୍ୟତ ରାଜନୀତିଜ୍ଞମାନଙ୍କ ଲାଗି ତାଲିମ କେନ୍ଦ୍ର ହେବା ମଧ୍ୟ ଉଚିତ । ଶିକ୍ଷାଲାଭ କାଳରେ ହିଁ ଛାତ୍ରମାନେ ରାଜନୀତି ପ୍ରତି ଆକୃଷ୍ଟ ହେବା ଆବଶ୍ୟକ । ମେଧାବୀ ଛାତ୍ରମାନେ ଚାକିରି ପଛରେ ନ ଦୌଡ଼ି ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଲେ, ଦେଶର ମଙ୍ଗଳ ହେବ ।’’

ଏ ଯୁକ୍ତିର ଯଥାର୍ଥତା ନିଶ୍ଚୟ ରହିଛି । ଶିକ୍ଷିତ ବେକାରୀ ଯୁଗରେ ରାଜନୀତିକୁ ବୃତ୍ତି ରୂପେ ବରଣ କରିନେବା ବାଞ୍ଛନୀୟ । ସେଥିଲାଗି ଦେଶସେବା ଆଦର୍ଶରେ ଅନୁପ୍ରାଣିତ ହେବା ଦରକାର । ଇଂଲଣ୍ଡରେ ପଢ଼ିଲାବେଳେ ସେ ଦେଶର ଛାତ୍ରମାନେ ରାଜନୈତିକ ତାଲିମ ପାଇବା ଦେଖିଛି । କିନ୍ତୁ ଆମ ଦେଶରେ ସୁଚିନ୍ତିତ ତାଲିମ

ଦେବା ଲାଗି ବ୍ୟବସ୍ଥା ନାହିଁ । ଅନ୍ୟପକ୍ଷରେ, ଛାତ୍ରନେତାମାନଙ୍କୁ ନିଜ ନିଜ ଦଳଭୁକ୍ତ କରି ସ୍ୱାର୍ଥସାଧନ ଲାଗି ବ୍ୟବହାର କରିବାକୁ ହିଁ ନେତାମାନେ 'ତାଲିମ୍' ବୋଲି ଭାବିଥାନ୍ତି । ଅନେକ ଦୃଷ୍ଟାନ୍ତ ମଧ୍ୟରୁ ଦୁଇଟି ଅଭିଜ୍ଞତା ଉଲ୍ଲେଖ କରୁଛି ।

ମୋ ବିଭାଗର ଜଣେ ମେଧାବୀ, ବାଗ୍ମୀ ଓ ବୁଦ୍ଧିମାନ ଛାତ୍ରର ସଚ୍ଚରିତ୍ର ଓ ସଙ୍ଗଠନ ଶକ୍ତି ଦେଖି ତାଙ୍କୁ ମୁଁ ଶ୍ରଦ୍ଧା କରୁଥାଏ । ଦିନେ ସନ୍ଧ୍ୟାବେଳେ ମୋ ଆଗରେ ସଲଜ୍ଜ ମୁହଁରେ ଛିଡ଼ା ରହି କହିଲେ, "ସାର୍, ବିବେକ ଦଂଶନ ଯୋଗୁଁ ଗତ ରାତିରେ ଶୋଇପାରି ନାହିଁ । ଉପଦେଶ ପାଇଁ ଆସିଛି ।" କଥାର ସାରାଂଶ ଥିଲା, ଜଣେ ବରିଷ୍ଠ ନେତା ଏକ ହଜାର ନଗଦ ଟଙ୍କା ଗୋପନରେ ଧରାଇଦେଇ ଗୋଟିଏ 'ଘଟଣା' ସୃଷ୍ଟି ଲାଗି ପରାମର୍ଶ ଦେଇଛନ୍ତି ଓ ଭବିଷ୍ୟତରେ ଚାକିରି ଲୋଭ ଦେଖାଇଛନ୍ତି । ମୋର ଉପଦେଶ ଥିଲା, "ଯେଉଁ ବିବେକ ତୁମକୁ ଦଂଶନ କରୁଛି ବୋଲି କହୁଛ, ସେହି ବିବେକକୁ ପଚାରି କାମ କର ।" ଘଟଣା ସୃଷ୍ଟି କରିବାର ଅର୍ଥ ଥିଲା ବିଶୃଙ୍ଖଳା ସୃଷ୍ଟି ଓ ତାହାର ନେତୃତ୍ୱ ଗ୍ରହଣ !

ଅନ୍ୟ ଘଟଣାଟି ଅତ୍ୟନ୍ତ ଦୁଃଖଦାୟକ । ୧୯୮୩ ଗ୍ରୀଷ୍ମଛୁଟିର ଆରମ୍ଭ ଦିନର କଥା । ରାତ୍ରିର ଶେଷ ପ୍ରହରରେ ଫୋନ୍ ପାଇଲି, ମୋର ଜଣେ ଛାତ୍ର ଗଳାରେ ଦଉଡ଼ି ଦେଇ ଆତ୍ମହତ୍ୟା ଉଦ୍ୟମ କଲାବେଳେ ହଷ୍ଟେଲ ଦରଓ୍ୱାନର ଚିତ୍କାର ଶୁଣି ଅନ୍ୟମାନେ ତାଙ୍କୁ ରକ୍ଷା କରିଛନ୍ତି । ତତ୍‌କ୍ଷଣାତ୍ ଛାତ୍ରାବାସରେ ପହଞ୍ଚିଲି । ଗଳାରେ ମୋଟା ଦାଗ ଦେଖି ସ୍ତମ୍ଭିତ ହେଲି । ଡାକ୍ତରମାନେ ଦେଖିସାରିଥାନ୍ତି । ଛାତ୍ରର ବାକ୍‌ଶକ୍ତି ନ ଥାଏ । ପୁଣି ୧୦ଟା ବେଳେ ଆସିବି କହି ଘରକୁ ଫେରିଲି । ୧୦ଟା ବେଳେ ଶୁଣିଲି, ପିତୃହୀନ ବାଳକଟିର ମା ଖବର ପାଇ ମୁଣ୍ଡ ବାଡ଼େଇବା ପୂର୍ବରୁ ପୁଅକୁ ଗାଡ଼ିରେ ତାଙ୍କ ଘରକୁ ପଠାଇ ଦିଆଯାଇଛି । ସନ୍ଧ୍ୟା ପରେ ଫେରିବେ ଶୁଣି, ପୁଣି ଯାଇ ପହଞ୍ଚିଲି । ଏଥର କୁହାଗଲା, ଛାତ୍ରର ମନ ପରିବର୍ତ୍ତନ ଲାଗି ଦୁଇବନ୍ଧୁଙ୍କ ସାଙ୍ଗରେ ତାଙ୍କୁ ଘର ପାଖରୁ ସିଧା ରେଳଯୋଗେ କାଶ୍ମୀର ଭ୍ରମଣରେ ପଠାଇ ଦିଆଯାଇଛି । ଟଙ୍କା କିଏ ଦେଲେ, କେହି କହିପାରିଲେ ନାହିଁ ।

ଯଥାସମୟରେ ରହସ୍ୟ ଭେଦ କଲି । ଗ୍ରୀଷ୍ମଛୁଟି ପୂର୍ବ ସନ୍ଧ୍ୟାରେ ବିଶ୍ୱବିଦ୍ୟାଳୟ ପ୍ରେକ୍ଷାଳୟରେ ଅନୁଷ୍ଠିତ ହୋଇଥିବା ଉତ୍ସବକୁ କେତେଜଣ ବରିଷ୍ଠ ନେତା ସମ୍ମାନନୀୟ ବକ୍ତା ଭାବେ ଆସିଥିଲେ । ଗଣ୍ଡଗୋଳ ହେବାର ଆଶଙ୍କା ଥିବାରୁ ଏହି ଛାତ୍ରନେତାଙ୍କୁ ଶାନ୍ତିରକ୍ଷାର ଦାୟିତ୍ୱ ଦିଆଯାଇଥାଏ । ସେଥିପାଇଁ ସେ କେତେଜଣ ପହଲବାନଙ୍କୁ ବାହାରୁ ଆଣି ପ୍ରେକ୍ଷାଳୟର ବିଭିନ୍ନ ସ୍ଥାନରେ ମୁତୟନ କରିଥିଲେ । ସେମାନଙ୍କ ଉପସ୍ଥିତି ହିଁ ଶାନ୍ତିମୟ ପରିବେଶ ଲାଗି ଯଥେଷ୍ଟ ଥିଲା । ମୌଖିକ ଚୁକ୍ତି ଅନୁଯାୟୀ,

ମଧ୍ୟରାତ୍ରିରେ ମେଲୋଡ଼ି ଶେଷ ହେଲାକ୍ଷଣି ଶାନ୍ତିବାହିନୀ ମୋଟା ଟଙ୍କା ନେଇ ଫେରିଯିବେ । ଯେଉଁ ବ୍ୟକ୍ତି ଛାତ୍ରନେତାଙ୍କୁ ଟଙ୍କା ଦେବେ ବୋଲି ଜବାବ୍ ଦେଇଥିଲେ, ଉତ୍ସବ ପରେ ସେ ଆଉ ସାକ୍ଷାତ ଦେଲେ ନାହିଁ । ଶାନ୍ତିସେନା ଅଧ୍ୟକ୍ଷ ଧମକ ଦେଇଗଲେ, ରାତି ୧ଟା ସୁଦ୍ଧା ଟଙ୍କା ନ ଦେଲେ, ମୁଣ୍ଡ କାଟିଦେବେ । ସୁତରାଂ, ୧ଟା ପୂର୍ବରୁ ଆତ୍ମହତ୍ୟା ହିଁ ଥିଲା ଏକମାତ୍ର ପନ୍ଥା !

ଯେଉଁ ରାଜନୀତିଜ୍ଞମାନେ ଏହି ପ୍ରକାର ଶିକ୍ଷା ମାଧ୍ୟମରେ ଛାତ୍ରନେତାମାନଙ୍କୁ ତାଲିମ ଦେବାକୁ ଚାହାନ୍ତି, ସେମାନେ ଭବିଷ୍ୟତ ଦାୟାଦ ତଥା ଦେଶବାସୀଙ୍କର କେତେଦୂର ହିତସାଧନ କରୁଛନ୍ତି, ସେକଥା ସେହିମାନେ ହିଁ ଜାଣନ୍ତି । କ୍ୟାମ୍ପାସ୍ ଭିତରେ ପ୍ରତ୍ୟେକ ରାଜନୈତିକ ଦଳର ଛାତ୍ରଶାଖା ଗଢ଼ିଉଠିବା ଦ୍ୱାରା ଭାରତର ରାଜନୈତିକ ଜଳବାୟୁ ସହିତ କ୍ୟାମ୍ପାସ୍ ଜଳବାୟୁ ଏକାକାର ହେଲା । ବାହାରେ ଉତ୍ତାପ ବଢ଼ିଲେ କ୍ୟାମ୍ପାସ୍ ଉତ୍ତପ୍ତ ହେଲା । ଏପରିକି, ବାହାରେ ପାଗ ଥଣ୍ଡା ଥିଲେ ସୁଦ୍ଧା, ଭିତରେ ନିଆଁ ଜାଳି ଗରମ ରଖିବାକୁ ନେତାମାନଙ୍କ ଚେଲାମାନେ ସତତ ତତ୍ପର ରହୁଥିଲେ ।

ପ୍ରକାଶ ଥାଉକି, ବାଣୀବିହାରର ପ୍ରଥମ ପ୍ରାୟ ୧୨ ବର୍ଷ ମଧ୍ୟରେ ରାଜନୈତିକ ବ୍ୟକ୍ତିଙ୍କ ଉତ୍ପାତ ଦେଖାଯାଇ ନଥିଲା । କିନ୍ତୁ ଦିନ ଆସିଥିଲା ଯେତେବେଳେ ସ୍ୱୟଂ ଜଣେ ମହିଳା ମୁଖ୍ୟମନ୍ତ୍ରୀ ସଶସ୍ତ୍ର ଗୁଣ୍ଡାବାହିନୀ ସହ କ୍ୟାମ୍ପାସରେ ପ୍ରବେଶ ପୂର୍ବକ ଛାତ୍ରମାନଙ୍କୁ କ୍ଷତବିକ୍ଷତ କରି ନିଜ ବାହୁବଳର ପରିଚୟ ଦେଲେ (୧୯୭୫ ମାର୍ଚ୍ଚ ୨୩ ତାରିଖ) । ଛାତ୍ରମାନଙ୍କ ଅପରାଧ, ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ନିମନ୍ତ୍ରଣ କରିବେ ନାହିଁ ବୋଲି ଘୋଷଣା କରିଥିଲେ । ତେଣୁ ସେ ଭଡ଼ାଟିଆ ଲାଠିଆଳ (ପୋଲିସ ନୁହେଁ) ମାନଙ୍କୁ ଲଗାଇ ପ୍ରଥମେ ଗେଟ୍ ପାଖରୁ ପ୍ରେକ୍ଷାଳୟ ପର୍ଯ୍ୟନ୍ତ ଜଗିଥିବା ଛାତ୍ରମାନଙ୍କୁ ନିସ୍ତୁକ ପ୍ରହାର ଦେଇ ରାସ୍ତା ପରିଷ୍କାର କରାଇଲେ ଓ ତା ପରେ ବନ୍ଧୁକଧାରୀ ପୋଲିସ ଫୋର୍ସ ଗହଣରେ ମଞ୍ଚାସୀନ ହେଲେ । ଭାଷଣ ଶୁଣିଲେ ସାଦା ପୋଷାକଧାରୀ ପୋଲିସ ଓ ବାହାରୁ ଅଣାଯାଇଥିବା ଶ୍ରୋତୃମଣ୍ଡଳୀ । ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ତାଙ୍କ ଆତ୍ମଜୀବନୀରେ ଏହି ଦିବସକୁ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସରେ 'କଳା ଦିବସ' ବୋଲି ବର୍ଣ୍ଣନା କରିଛନ୍ତି ।

କୁଳପତି ଡକ୍ଟର ରାଉତଙ୍କ ସମୟକୁ ରାଜନୈତିକ ଉପଦ୍ରବ ଅନେକ ମାତ୍ରାରେ ବୃଦ୍ଧି ପାଇଯାଇଥାଏ । ଇନ୍ଦିରା ଗାନ୍ଧି ବାଣୀବିହାର ବାହାରେ ଉଦ୍‌ବୋଧନ ଦେଉଥିଲାବେଳେ କ୍ୟାମ୍ପାସ୍ ଭିତରେ ସରକାରୀ ବାସ୍‌ଗୁଡ଼ିକ ଜଳୁଥାଏ । ତାଙ୍କ ଦୁର୍ଭାଗ୍ୟକୁ କେତେକ ଅଧ୍ୟାପକଙ୍କ ଅସନ୍ତୋଷ ଓ କର୍ମଚାରୀମାନଙ୍କ ଧର୍ମଘଟ ଯୋଗୁଁ ସେ ଶାନ୍ତି ପାଇଲେ ନାହିଁ ।

ପରିଜାସାହେବଙ୍କ ଠାରୁ ଆରମ୍ଭ କରି ମହେନ୍ଦ୍ର ରାଉତଙ୍କ ପର୍ଯ୍ୟନ୍ତ ଦୀର୍ଘ ୨୧ ବର୍ଷ ମଧ୍ୟରେ ଉତ୍କଳ କୁଳପତିମାନଙ୍କ ଅବସ୍ଥା ଦେଖୁଥିବା କାଳରେ କଲିକତା, ଦିଲ୍ଲୀ, ପାଟଣା, ଆନ୍ଧ୍ର, ଲକ୍ଷ୍ନୌ ଓ ବନାରସ ପ୍ରଭୃତି ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କ ଅବସ୍ଥା ମଧ୍ୟ ଦେଖିପାରିଥିଲି । ସ୍ୱଚକ୍ଷୁରେ ଦେଖିଥିବା କେତେକଙ୍କ ଦୁର୍ଦ୍ଦଶା ବିଷୟ ଲେଖିବା ପାଇଁ ସ୍ଥାନ ନାହିଁ । ଦୁଃଖ ହେଉଥାଏ, କ'ଣ ହେଲା ଉଚ୍ଚଶିକ୍ଷାର ଅବସ୍ଥା, କ'ଣ ହେଲା କୁଳପତି ପଦବୀର ମୂଲ୍ୟ !

ଏକଦା କୁଳପତି ପଦ ଲାଗି ସର୍ବତ୍ର ବିଶିଷ୍ଟ ଓ ପ୍ରସିଦ୍ଧ ବ୍ୟକ୍ତିମାନେ ଆକର୍ଷିତ ହେଉଥିଲେ । ଡକ୍ଟର ଶ୍ରୀରାମ ଚନ୍ଦ୍ର ଦାଶଙ୍କ ନିକଟରୁ ଶୁଣିଥିଲି, ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ଦିନରୁ କେଉଁ କେଉଁ ବ୍ୟକ୍ତି କୁଳପତି ହେବା ଲାଗି ଆଶା ବାନ୍ଧିଥିଲେ । ଥରେ ପଣ୍ଡିତ ନୀଳକଣ୍ଠ ଦାଶ ଦୁଃଖ ପ୍ରକାଶ କରି କହିଥିଲେ, "ବୁଝିଲ ଶ୍ରୀରାମ, ଓଡ଼ିଶା ନୀଳକଣ୍ଠକୁ ଚିହ୍ନିଲା ନାହିଁ । ଚିହ୍ନି ଥିଲେ, ମୁଁ କ'ଣ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇପାରି ନଥାନ୍ତି ?" ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ ସେହି ପଦ ଲାଗି ପ୍ରାର୍ଥୀ ହୋଇ ପରାସ୍ତ ହୋଇଥିଲେ । ସେତେବେଳେ ସିନେଟ ସଦସ୍ୟମାନେ କୁଳପତିଙ୍କୁ ନିର୍ବାଚିତ କରୁଥିଲେ ଓ ଭୋଟରେ ପରିଜାସାହେବ ଜିଣିଥିଲେ । ସମୟ କ୍ରମେ ନିର୍ବାଚନ ପ୍ରଥା ଉଠିଗଲା ଓ ଉଚ୍ଚକ୍ଷମତାସମ୍ପନ୍ନ ମନୋନୟନ କମିଟି ଦ୍ୱାରା କୁଳପତି ମନୋନୀତ ହେଲେ । ଏହି କାର୍ଯ୍ୟରେ ଅବଶ୍ୟ ରାଜ୍ୟର ଗଭର୍ଣ୍ଣରମାନେ ଚାନ୍‌ସେଲର ଭାବରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ ।

### ଗଭର୍ଣ୍ଣରଙ୍କ ଆମନ୍ତ୍ରଣ

ଓଡ଼ିଶାର ରାଜ୍ୟପାଳ ହେଉଛନ୍ତି ବିଶ୍ୱବିଦ୍ୟାଳୟର ଚାନ୍‌ସେଲର ବା ସର୍ବୋଚ୍ଚ ଅଧ୍ୟକ୍ଷ । ରାଜ୍ୟପାଳ ଭାବରେ ସେ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳର ପରାମର୍ଶ ଅନୁସାରେ କାର୍ଯ୍ୟ କରିବା ସତ୍ତ୍ୱେ, ଚାନ୍‌ସେଲର ଭାବରେ କୁଳପତି ବା ଭାଇସ୍ ଚାନସେଲର ମନୋନୀତ କରିବା ନିମନ୍ତେ ତାଙ୍କର ସ୍ୱତନ୍ତ୍ର ଅଧିକାର ରହିଛି । କାରଣ, ବିଶ୍ୱବିଦ୍ୟାଳୟ ଗୋଟିଏ ସ୍ୱୟଂଚାଳିତ ସଂସ୍ଥା । କେନ୍ଦ୍ର ଓ ରାଜ୍ୟସରକାର ଅନୁଦାନ ଦିଅନ୍ତି, ଅଥଚ ଶିକ୍ଷାନୀତି ଓ ପରିଚାଳନା କ୍ଷେତ୍ରରେ ବିଶ୍ୱବିଦ୍ୟାଳୟର ସ୍ୱାତନ୍ତ୍ର୍ୟ ରହିଛି ।

୧୯୮୩ ଜୁନ ୧୩ ତାରିଖରେ ରାଜ୍ୟପାଳଙ୍କ ଦପ୍ତରରୁ ଖବର ଆସିଲା, ଅପରାହ୍ଣ ୫ଟାରେ ରାଜଭବନରେ ତାଙ୍କୁ ସାକ୍ଷାତ କରିବାକୁ ହେବ । ତହିଁ ପୂର୍ବବର୍ତ୍ତୀ ରାତିରେ କୌଣସି ଦୂରବର୍ତ୍ତୀ ସ୍ଥାନରୁ ଫେରିଥିବା ଯୋଗୁଁ ଦେହ ଭଲ ନଥାଏ । ଉତ୍ତାପ ସତ୍ତ୍ୱେ, ଦେଖା କରିବାକୁ ଗଲି । ସେହି ବର୍ଷ ଏପ୍ରିଲ୍ ମାସରେ

ସମ୍ବାଦପତ୍ରରୁ ଜାଣିଥିଲି ଯେ, ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଭାରତର ସବୁ ରାଜନୈତିକ ଦଳର ନେତାମାନଙ୍କର ସମ୍ମେଳନ ଡକାଇ ୧୯୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଶତବାର୍ଷିକୀ ଉତ୍ସବ ପାଳନ ସମ୍ପର୍କରେ ମତାମତ ଲୋଡ଼ିଥିଲେ । ସେଥିରେ ଦଳମତ ନିର୍ବିଶେଷରେ ନିଷ୍ପତ୍ତି ନିଆଯାଇଥିଲା ଯେ, କଂଗ୍ରେସର ଶତେବର୍ଷର ପୂର୍ଣ୍ଣାଙ୍ଗ ଇତିହାସ ୫ଟି ଗ୍ରନ୍ଥରେ ସଂକଳିତ ହେବ । ନିର୍ଭରଯୋଗ୍ୟ ସୂତ୍ରରୁ ଶୁଣିଥିଲି, ୧୯୩୫ ମସିହାରୁ ୧୯୪୭ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ, ସେହି ୧୨ ବର୍ଷର ଇତିହାସ ରଚନା ଲାଗି ଇନ୍ଦିରା ଗାନ୍ଧି ମୋତେ ମନୋନୀତ କରିଛନ୍ତି । ରାଜ୍ୟପାଳଙ୍କ ଡାକ ପାଇ ଅନୁମାନ କଲି, କଂଗ୍ରେସ ଇତିହାସ ସମ୍ପର୍କରେ ବୋଧହୁଏ ପ୍ରଧାନମନ୍ତ୍ରୀଙ୍କ ନିକଟରୁ କିଛି ବାର୍ତ୍ତା ଆସିଛି । ରାଜ୍ୟପାଳ ଥାନ୍ତି ସି.ଏମ୍.ପୁନାଚା । ସ୍ୱାଧୀନତା ସଂଗ୍ରାମ ଓ ସମ୍ବିଧାନ ପ୍ରସ୍ତୁତିରେ ଉଲ୍ଲେଖନୀୟ ଭୂମିକା ନିମନ୍ତେ ତାଙ୍କର ଯଥେଷ୍ଟ ସୁଖ୍ୟାତି ଥାଏ ।

ମୋର ଅସୁସ୍ଥତା ଦେଖି ରାଜ୍ୟପାଳ ଦୁଃଖ ପ୍ରକାଶ କଲେ । କିଛି ସମୟ ଅନ୍ୟ କଥା ଆଲୋଚନା ପରେ, ହଠାତ୍ ତାଙ୍କ ଉଦ୍ଦେଶ୍ୟ ଜଣାଇଲେ, "ଆପଣଙ୍କୁ କୁଳପତି ପଦ ଦେବା ଲାଗି ମୁଁ ନିଷ୍ପତ୍ତି ନେଇସାରିଛି । ମୁଖ୍ୟମନ୍ତ୍ରୀ ମୋ ସହିତ ଏକମତ । ଆପଣଙ୍କ ସମ୍ମତି ପାଇଲେ, ମନୋନୟନ କମିଟିକୁ ମୋ ଇଚ୍ଛା ଜଣାଇ ଦେବି ।" ଅପ୍ରସ୍ତୁତ ଭାବେ ମୁଁ କହିଗଲି, "ଅଧ୍ୟାପକ କାର୍ଯ୍ୟକାଳ ଶେଷ ହେବାକୁ ଆହୁରି ୩ ବର୍ଷ ବାକି ଅଛି । ତେଣେ, ବିଦେଶରୁ ଦୁଇଟି ନିମନ୍ତ୍ରଣ ପାଇଛି । ପୁଣି, କଂଗ୍ରେସ ଶତବାର୍ଷିକୀ ଇତିହାସ ଲେଖିବା ଲାଗି ପ୍ରଧାନମନ୍ତ୍ରୀଙ୍କ ଆଦେଶ ଆସିପାରେ । ଏସବୁ ଦୃଷ୍ଟିରୁ......।" କଥା ଶେଷ ହେବା ପୂର୍ବରୁ ପୁନାଚା ଦୃଢ଼ ସ୍ୱରରେ କହିଲେ, "ଆପଣଙ୍କ ନିଜ କଥା କହିବାକୁ ମୁଁ ଡାକି ନଥିଲି । ମୁଁ ଭାବୁଛି ବିଶ୍ୱବିଦ୍ୟାଳୟ କଥା । ଅଗଷ୍ଟ ମାସରେ ରାଜ୍ୟପାଳ ପଦବୀରୁ ଅବସର ନେବା ପୂର୍ବରୁ ମୁଁ ଆପଣଙ୍କୁ ନିଯୁକ୍ତିପତ୍ର ଦେଇଯିବି । ନିଜର ସ୍ୱାର୍ଥକୁ ଆଖିରେ ରଖି ଯଦି ମନା କରିବେ, ତାହା ଅନ୍ୟାୟ ହେବ ।" ମୁଁ ନିରୁତ୍ତର ରହିଲି । ଅର୍ଥାତ୍, ମୌନ ରହି ସମ୍ମତି ଜଣାଇଲି ।

ଏହାହିଁ ମନୁଷ୍ୟର ସ୍ୱାଭାବିକ ଦୁର୍ବଳତା । କୁଳପତି ଆସନ କଣ୍ଟକାକୀର୍ଣ୍ଣ ଜାଣି ସୁଦ୍ଧା, ମୋହ ଏଡ଼ାଇ ପାରିଲି ନାହିଁ । ଆସକ୍ତି ଓ ଅନାସକ୍ତିର ଦ୍ୱନ୍ଦ୍ୱ ମଧ୍ୟରେ ଆସକ୍ତିର ଜୟଲାଭ ହେଲା ।

## କଂଗ୍ରେସ ଇତିହାସ ସଂକଳନ ଦାୟିତ୍ୱ

ମୋ ସହିତ କଥାବାର୍ତ୍ତା ପରେ ରାଜ୍ୟପାଳ ପୁନାଚା ପ୍ରଧାନମନ୍ତ୍ରୀଙ୍କ ସହିତ କଂଗ୍ରେସ ଇତିହାସ ସମ୍ପର୍କରେ ଆଲୋଚନା କରିଥିଲେ ବୋଲି ଡକ୍ଟର ହରେକୃଷ୍ଣ

ମହତାବ ମୋତେ ସମ୍ବାଦ ଦେଲେ । ସେଥିସହ ସତର୍କ କରିଦେଲେ, ସ୍ୱାଧୀନତା ସମୟର ଇତିହାସ ସଂକଳନ କରିବା ସହଜ ବ୍ୟାପାର ନୁହେଁ ।

ଦିଲ୍ଲୀରୁ ଡାକ ଆସିଲା । ଜୁଲାଇ ୨୧ ତାରିଖ ଦିନ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ହାଜର ହେଲି । ବୟୋଜ୍ୟେଷ୍ଠ କଂଗ୍ରେସ ନେତା ଉମାଶଙ୍କର ଦୀକ୍ଷିତ ସେଠାରେ ଉପସ୍ଥିତ ଥିଲେ । ପରିଚୟ ଦେଲାମାତ୍ରେ ସେ କହିଲେ, ''ପ୍ରଧାନମନ୍ତ୍ରୀ ଖୁସି ହେଲେ ଯେକୌଣସି ବଡ଼ ପଦରେ ରଖିଦେଇ ପାରିବେ, କୁଳପତି ହେବା ଦରକାର ନାହିଁ । ଶୁଣିଥିବେ, ସେଦିନ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ କ'ଣ ଘଟିଲା । ଘେରାଉ ମଧ୍ୟରେ କୁଳପତି ଅଚେତ ହେଲାପରେ ବି ପୋଲିସ ଯାଇପାରିଲା ନାହିଁ । ଶେଷରେ ତାଙ୍କ ସ୍ତ୍ରୀଙ୍କ ଏତାଲାକ୍ରମେ କୁଳପତିଙ୍କୁ ଆମ୍ବୁଲାନ୍ସରେ ହସ୍‌ପିଟାଲ ନିଆଗଲା । ଆପଣ କଂଗ୍ରେସ ଇତିହାସ ଲେଖନ୍ତୁ, ଯଶ ରହିବ । କୁଳପତିମାନଙ୍କୁ କିଏ ମନେ ରଖେ ?''

''ଆଜ୍ଞା, ମୁଁ ଠିକ୍ ସେହିକଥା କହିବାକୁ ଆସିଛି । ଓଡ଼ିଶା ଗଭର୍ଣ୍ଣରଙ୍କୁ କହି ମୋତେ କୁଳପତି ପଦରୁ ଦୂରରେ ରଖିଲେ, ଇତିହାସ ଲେଖିବା ସହଜ ହେବ । ସେପାଇଁ ପ୍ରଧାନମନ୍ତ୍ରୀଙ୍କ ନିକଟରୁ ଅନ୍ୟ କୌଣସି ପଦପଦବୀ ମୋର ଦରକାର ନାହିଁ ।''

ଦୀକ୍ଷିତ କହିଲେ, ''ଗଭର୍ଣ୍ଣର ପୁନାଚାଙ୍କ କାର୍ଯ୍ୟକାଳ ଶେଷ ହେବା ଉପରେ । ତାଙ୍କ ସ୍ଥାନରେ ଯିବେ ବିଶ୍ୱମ୍ଭର ନାଥ ପାଣ୍ଡେ । କଂଗ୍ରେସ ଇତିହାସ ସଂକଳନର କାର୍ଯ୍ୟକାରୀ ଡାଇରେକ୍ଟର ଭାବେ ସେ କାର୍ଯ୍ୟ କରିବେ । ସୁତରାଂ, ଆପଣ କୁଳପତି ହେବେ କି ନାହିଁ, ସେ କଥା ସେ ଠିକ୍ କରିବେ ।''

ପ୍ରଧାନମନ୍ତ୍ରୀଙ୍କ କକ୍ଷରେ ପ୍ରବେଶ କଲି । ପ୍ରାୟ ୩୦ ବର୍ଷ ପୂର୍ବେ ଲଣ୍ଡନରେ ପଢୁଥିଲା ସମୟରେ ସେଠାରେ ତାଙ୍କୁ ଦେଖିଥିଲି । ସେତେବେଳର ରୂପ ଏବେ ନ ଥାଏ । ମୁଖମଣ୍ଡଳରୁ ବୟସର ଛାଇ ସ୍ପଷ୍ଟ ହୋଇଉଠୁଥାଏ । ତଥାପି ତାଙ୍କ ବ୍ୟକ୍ତିତ୍ୱରେ ଥିଲା ଅଭିନବତ୍ୱ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଗରିମା । ନମସ୍କାର ସହ ଗୋଟିଏ ପଦରେ କଥାଟି ଶେଷ କଲି । ''ମ୍ୟାଡ଼ାମ୍, ଆପଣଙ୍କ ଇଚ୍ଛା ପାଳନ କରିବା ମୋ ପକ୍ଷରେ ଏକ ଆନନ୍ଦଦାୟକ କର୍ତ୍ତବ୍ୟ ।'' ସ୍ମିତହାସ୍ୟ ସହ ସେ କହିଲେ, ''ପାଣ୍ଡେଜୀ ଆପଣଙ୍କୁ ସବୁ କଥା କହିବେ । ସମ୍ମତି ପାଇଁ ଧନ୍ୟବାଦ ।''

ତହିଁ ପରଦିନ ରକବଗଞ୍ଜ ରୋଡ଼ରେ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ବାସଭବନରେ ପହଞ୍ଚିଲି । ସେ ମୋତେ ତାଙ୍କ ଶୟନକକ୍ଷକୁ ନେଇଗଲେ । ତାଙ୍କ ସ୍ତ୍ରୀ ଶାନ୍ତା ପାଣ୍ଡେ ଜଳଖିଆ ପ୍ଲେଟ୍ ଧରି ଅପେକ୍ଷା କରିଥାନ୍ତି । ତାଙ୍କ ଆଗରେ ପାଣ୍ଡେଙ୍କ ସମ୍ପର୍କରେ ଶୁଣିଥିବା କଥାଟି କହିଦେଲି–''ଏହ୍ଲାବାଦରେ ମୁଁ ଏମ୍.ଏ. ପଢୁଥିଲା

ବେଳେ ପାଣ୍ଡେଜୀ ଥିଲେ ନଗର କଂଗ୍ରେସ କମିଟିର ସଭାପତି । ସେତେବେଳେ ତାଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ଥାଏ, ଦେଶ ସ୍ୱାଧୀନ ନ ହେଲା ପର୍ଯ୍ୟନ୍ତ ସେ ବିବାହ କରିବେ ନାହିଁ ବୋଲି ବଜ୍ରଶପଥ ନେଇଛନ୍ତି । ସେହି ଭୀଷ୍ମ ପ୍ରତିଜ୍ଞା ସେ ପାଳନ କରିଛନ୍ତି ।'' ଶାନ୍ତା ପାଣ୍ଡେ ମୋ ସ୍ମୃତିଚାରଣ ଉପଭୋଗ କଲେ ।

ପାଣ୍ଡେ କହିଲେ, ''ଦେଶ ବିଭାଜନ ସମ୍ପର୍କରେ ଆପଣଙ୍କ ଲିଖିତ ବହିଖଣ୍ଡିକ ପଢ଼ି ଇନ୍ଦିରା ଗାନ୍ଧି ସ୍ୱାଧୀନତା କାଳର କଂଗ୍ରେସ ଇତିହାସ ପ୍ରଣୟନ ଲାଗି ଆପଣଙ୍କୁ ନିଜେ ମନୋନୀତ କରିଛନ୍ତି । ସେହି ଗ୍ରନ୍ଥ ଲେଖିବାକୁ ପ୍ରଫେସର ନୁରୁଲ ହାସାନ ଓ ପ୍ରଫେସର ସତୀଶ ଚନ୍ଦ୍ର ଉଭୟେ ତାଙ୍କ ଉପରେ ଚାପ ପକାଇଥିଲେ । କିନ୍ତୁ ସେମାନଙ୍କୁ ସେ ରୋକ୍‌ଠୋକ୍ କହିଦେଲେ, ''I have selected my man for this volume, you two need not try for it.''

ପ୍ରଧାନମନ୍ତ୍ରୀଙ୍କ ସହିତ ମୋ କୁଳପତି ହେବା ବିଷୟ ଆଲୋଚନା କରିଛନ୍ତି ବୋଲି ଜଣାଇ ପାଣ୍ଡେ କହିଲେ, ''ପୁନାଚାଙ୍କ ଇଚ୍ଛା ଆପଣ କୁଳପତି ହେବେ । ତାଙ୍କ ପରେ ମୁଁ ଓଡ଼ିଶାର ଗଭର୍ଣ୍ଣର ହୋଇ ଯାଉଛି । ମୋର ମଧ୍ୟ ଇଚ୍ଛା ଆପଣ କୁଳପତି ହେବେ । କିନ୍ତୁ, କଂଗ୍ରେସ ଇତିହାସ ଆପଣଙ୍କୁ ଲେଖିବାକୁ ହେବ, ଏହା ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ଏବଂ ସେଥିପାଇଁ ମୋର ମଧ୍ୟ ଏକାନ୍ତ ଅନୁରୋଧ ।''

## କୁଳପତି ପଦରେ ଯୋଗଦାନ

୧୯୮୩ ଅଗଷ୍ଟ ୩ ତାରିଖ ଦିନ ମନୋନୟନ କମିଟି ବସିଲା । ଆଇନ୍ ଅନୁସାରେ ୩ ଜଣ ବ୍ୟକ୍ତିଙ୍କ ନାମ ସୁପାରିଶ କରାଗଲା । ସେଥିମଧ୍ୟରୁ ରାଜ୍ୟପାଳ ମୋ ନାମଟି ବାଛିଲେ । ଆଗରୁ ତ ସବୁ ଠିକ୍ ହୋଇସାରିଥିଲା । ତଥାପି, ଏ ପ୍ରହସନ ! ବିଜ୍ଞପ୍ତି ପ୍ରକାଶ ପାଇଲା ପରେ ମୁଁ ଜଣାଇଦେଲି ଯେ ବିଦାୟୀ କୁଳପତିଙ୍କ କାର୍ଯ୍ୟକାଳ ସେପ୍ଟେମ୍ବର ୧୩ ତାରିଖରେ ଶେଷ ହେଲା ପରେ ମୁଁ କାର୍ଯ୍ୟରେ ଯୋଗ ଦେବି । କୁଳପତି ରାଉତଙ୍କୁ ଅନୁରୋଧ କଲି, ସେ ତାଙ୍କ ନ୍ୟାଯ୍ୟ ଛୁଟି ନ ନେଇ ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରିବେ ଓ ସେ ରାଜିହେଲେ ।

ନାମ ଘୋଷଣା ପରେ ଅସଂଖ୍ୟ ସମର୍ଥନାସୂଚକ ପତ୍ର ପାଇ ଆଶଙ୍କା ବଢ଼ିଗଲା । ସତେଯେପରି ନୂଆ କୁଳପତି ଅନେକ କିଛି କରିପାରିବେ ! ବାସ୍ତବତା ଦୃଷ୍ଟିରୁ କୌଣସି କାମ କରିହେବ ନାହିଁ ବୋଲି ମୋର ସନ୍ଦେହ ନଥାଏ । କବିବର ରାଧାନାଥ ରାୟଙ୍କ ଧାଡ଼ିଟି ସ୍ମରଣ କଲି, 'ଭୟ ଏତେ ଦିନେ ପଶିଲା, ଭୟଶୂନ୍ୟ

ହୃଦୟେ !' ଅଧ୍ୟାପକ ରୂପେ ଭୟ କ'ଣ ଜାଣିନଥିଲି । କିନ୍ତୁ କୁଳପତି ହେବାପରେ ରାଜନୈତିକ ଗୋଷ୍ଠୀ, ସିଣ୍ଡିକେଟ, ଶିକ୍ଷକ ସଂଘ, କର୍ମଚାରୀ ସଂଘ, ଛାତ୍ରସମାଜ, ଅଭିଭାବକ, ସାମ୍ବାଦିକ, ସମସ୍ତଙ୍କ ପ୍ରତି ଭୟ ! ଜଣେ ବୟୋବୃଦ୍ଧ ବିଜ୍ଞ ବ୍ୟକ୍ତି (ନାମ ଲେଖୁନାହିଁ) ଦୁଇଟି ଧାଡ଼ି ଲେଖିଥିଲେ, ''ସବୁଜ ପଡ଼ିଆରେ ଚାଲିଲା ବେଳେ ଭାବିବ ନାହିଁ ଯେ ଘାସ ତଳେ ସାପ ନାହିଁ । ନଦୀ ତୀରରେ ବସି ଶାନ୍ତ ସଲିଳ ପ୍ରତି ତନ୍ମୟ ଚିତ୍ତରେ ଚାହିଁଲା ବେଳେ ଭାବିବ ନାହିଁ ଯେ ଜଳ ତଳେ କୁମ୍ଭୀର ନାହିଁ ।''

ଦିନେ ରାଜଭବନରେ ରାଜ୍ୟପାଳ ପୁନାଚାଙ୍କ ଆଗରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉପଦେଶ ଦେଇ କହିଲେ, ''କୁଳପତି ଭାବରେ ସବୁଠାରୁ ବଡ଼ ଭୁଲ୍ କରିବେ ଯଦି populist posture ନେବେ । କଳେ ବଳେ କୌଶଳେ ଯେକୌଣସି ଉପାୟରେ ଛାତ୍ରମାନଙ୍କୁ ସନ୍ତୁଷ୍ଟ ରଖିବା ଲାଗି ଚେଷ୍ଟା କରିବେ ନାହିଁ (By hook or by crook) । ତଦ୍ୱାରା ନିଜେ ବିପଦରେ ପଡ଼ିବେ ।''

ନାମ ଘୋଷଣା ପରେ ମୋତେ ସମ୍ବର୍ଦ୍ଧନା ଦେବା ଲାଗି କଟକସ୍ଥିତ 'ଦି ଇଉନିଭାର୍ସ' ଠାରେ ଗିରିଜାଭୂଷଣ ପଟ୍ଟନାୟକ ମିଟିଂ ଆୟୋଜନ କଲେ । ମୋର ପୂଜ୍ୟ ଗୁରୁ ସଦାଶିବ ମିଶ୍ର ଓ ଓଡ଼ିଶାର ବର୍ଷୀୟାନ ଜନନେତା ତଥା 'ସମାଜ' ସମ୍ପାଦକ ଡକ୍ଟର ରାଧାନାଥ ରଥ ଇତ୍ୟାଦିଙ୍କ ହାତରେ ଫୁଲତୋଡ଼ା ଦେଖି ଲଜ୍ଜିତ ହେଲି । ପୁଣି ଡକ୍ଟର ରଥଙ୍କ ହାତରେ ଥାଏ ଶ୍ୱେତପଦ୍ମର ଗୁଚ୍ଛ ! ଆନନ୍ଦ ପରିବର୍ତ୍ତେ ମନରେ ଆତଙ୍କ ଖେଳିଗଲା । ସମ୍ବର୍ଦ୍ଧନାର ଉତ୍ତରରେ ଭାରତୀୟ କୁଳପତିମାନଙ୍କ ଦୁର୍ଦ୍ଦଶା ବର୍ଣ୍ଣନା ପୂର୍ବକ ରାଜସ୍ଥାନ ବିଶ୍ୱବିଦ୍ୟାଳୟର କୁଳପତି ଭି.ଭି.ଜନଙ୍କ ଉକ୍ତିଟିଏ ଉଦ୍ଧାର କଲି– ''The surest way to hit the newspaper headline is to hit the ViceChancellor straight on his head. That also is the surest way to head towards future leadership.'' ଛାତ୍ରମାନଙ୍କ ଦ୍ୱାରା ଗୁରୁତର ଭାବେ ଆହତ ହୋଇ ହସ୍ପିଟାଲ ଶଯ୍ୟାରୁ ଭି.ଭି.ଜନ ଏହି କଥା ଡକାଇଥିଲେ । ତାଙ୍କ ଉକ୍ତିର ଭାବାର୍ଥ ଶ୍ରୋତାମାନେ ହୃଦୟଙ୍ଗମ କଲେ ।

ସେପ୍ଟେମ୍ବର ୧୩ ତାରିଖ ସନ୍ଧ୍ୟାରେ ମୋ ଇତିହାସ ବିଭାଗର ଛାତ୍ରମାନେ ବିଦାୟୀ କୁଳପତିଙ୍କୁ ନୈଶଭୋଜିରେ ଆପ୍ୟାୟିତ କଲେ । ଡକ୍ଟର ରାଉତଙ୍କ ଶେଷ ଉପଦେଶ ବାକ୍ୟଟି ଥିଲା, ''ଥରେ ସେ ଆସନରେ ବସିଲା ପରେ, ଆପଣଙ୍କର ନିଜର ବୋଲି କେହି ନ ଥିବେ ।'' ତହିଁ ପରଦିନ ପୂର୍ବାହ୍ନରେ କାର୍ଯ୍ୟଭାର ଗ୍ରହଣ କଲି ।

## କୁଳପତି ଥିବା ସମୟର କେତୋଟି କଥା

ଯେକୌଣସି କୁଳପତିଙ୍କ ସଂକ୍ଷିପ୍ତ କାର୍ଯ୍ୟକାଳ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇ ପାରିବ । ସେଥିରୁ ଅନେକ ଶିକ୍ଷଣୀୟ ଆଭାସ ମିଳିପାରେ । କିନ୍ତୁ ସେପରି ଧୃଷ୍ଟତାରୁ ମୁଁ କ୍ଷାନ୍ତ ରହୁଛି । ଆଗ ପୃଷ୍ଠା ଗୁଡ଼ିକରେ ଲେଖାଥିବା କ୍ୟାମ୍ପାସ୍ ପରିବେଶ, ଶିକ୍ଷା ସମସ୍ୟା ଓ ପୂର୍ବବର୍ତ୍ତୀ କୁଳପତିମାନଙ୍କ ଅବସ୍ଥାରୁ ପାଠକମାନେ ଯେଉଁ ଚିତ୍ର ପାଇଥିବେ, ତାହା ଅପରିବର୍ତ୍ତିତ ରହିଲା, ବରଂ ଅଧିକ ଗାଢ଼ ରଙ୍ଗ ଧାରଣ କଲା । ବିଶିଷ୍ଟ ବ୍ୟକ୍ତିମାନଙ୍କ ଅଯଥା ହସ୍ତକ୍ଷେପ, ଅଯୌକ୍ତିକ ଅନୁରୋଧ, ରାଜନୈତିକ ଚାପ, ଗୋଷ୍ଠୀ କନ୍ଦଳ, ଛାତ୍ର ଓ କର୍ମଚାରୀମାନଙ୍କ ନାନାପ୍ରକାର ଅସୁବିଧା, କ୍ରମବର୍ଦ୍ଧମାନ କଲେଜ ସଂଖ୍ୟା ଦୃଷ୍ଟିରୁ ପରୀକ୍ଷା ପରିଚାଳନା ଇତ୍ୟାଦି ନାନାବିଧ ସମସ୍ୟା ମଧ୍ୟରେ ବିଶ୍ୱବିଦ୍ୟାଳୟର ପ୍ରକୃତ ଉନ୍ନତିସାଧନ ନିମନ୍ତେ ଚିନ୍ତାପାଇଁ ସମୟ ମିଳିଲା ନାହିଁ । ତଥାପି, କିଛି ନା କିଛି କରିବା ଲାଗି ସଂକଳ୍ପ ନେଲି ।

## ନୂତନ ପଦ ସୃଷ୍ଟି ଉଦ୍ୟମ

ପ୍ରଥମେ ଦିଲ୍ଲୀ ଦରବାରରେ ପାଟିତୁଣ୍ଡ କରିବା ଉଚିତ ବୋଲି ଭାବିଲି । 'ଶୋଇଥିବା ପୁଅର ସମ୍ପତ୍ତିରେ ଭାଗ ନାହିଁ' ଉକ୍ତିର ଅର୍ଥ ଗଭୀର । ସମ୍ପତ୍ତି ରହିଛି ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ହାତରେ । ଭାଗ ମିଳିଥାଏ ଚେଇଁଥିବା ପୁଅମାନଙ୍କୁ । ମୋ ପୂର୍ବବର୍ତ୍ତୀ କୁଳପତିଙ୍କ ସମୟରେ ଅନୁଧ୍ୟାନକାରୀ ଦଳ ଆସିଥିଲେ । ଆମର ଦାବି ଅନେକ ଥିଲେ ସୁଦ୍ଧା କାଟଛାଟ କରି ସେମାନେ ୧୮ଟି ପ୍ରଫେସର, ୨୨ଟି ରିଡର ଓ ୨୪ଟି ଲେକ୍‌ଚରର ପୋଷ୍ଟ ପାଇଁ ସୁପାରିଶ କରିଥିଲେ । କିନ୍ତୁ, କମିଶନ ପୁଣି କାଟଛାଟ କରି ମାତ୍ର ୬ଟି ପ୍ରଫେସର ଓ ଅଳ୍ପ କେତୋଟି ଅନ୍ୟ ପୋଷ୍ଟ ମଞ୍ଜୁର କଲେ । ଛାତ୍ରସଂଖ୍ୟା ଓ ବିଭିନ୍ନ ବିଭାଗର ଆବଶ୍ୟକତା ଦୃଷ୍ଟିରୁ ଏହା ନଗଣ୍ୟ ଥିଲା ।

ଗୋଟିଏ କଥା ମୋ ମନେପଡ଼ିଲା । କୁଳପତି ହେବାର କିଛି ମାସ ପୂର୍ବରୁ ମଞ୍ଜୁରୀ କମିଶନର ଅନୁଧ୍ୟାନକାରୀ ଦଳରେ ମୁଁ ମାଡ୍ରାଜ ବିଶ୍ୱବିଦ୍ୟାଳୟକୁ ଯାଇଥିଲି । ସାତଜଣିଆ ଦଳ କୁଳପତିଙ୍କ ପ୍ରକୋଷ୍ଠରେ ପଶିଲାବେଳେ ଜଣେ କ୍ଷୁଦ୍ରାକୃତି କୃଷ୍ଣକାୟ ବ୍ୟକ୍ତି ଆମକୁ ପାଛୋଟି ନେଉଥିଲେ । ସେ ଜଣେ କିରାଣି ବୋଲି ମୁଁ ଭାବିଥିଲି । କିନ୍ତୁ ଆମେ ଆସନ ଗ୍ରହଣ କଲାପରେ ସେହି ବ୍ୟକ୍ତି ସିଂହାସନ ସଦୃଶ କୁଳପତିଙ୍କ ଆସନରେ ବସିଲେ । ଦୁଇପାଖରେ ବସିଥାନ୍ତି ସିଣ୍ଡିକେଟ ସଦସ୍ୟମାନେ । କୁଳପତି ଦାବିଗୁଡ଼ିକ ଉପସ୍ଥାପନ କଲେ । ଦଳର ଅଧ୍ୟକ୍ଷ ଭାବେ ଆସିଥିବା ମଞ୍ଜୁରୀ କମିଶନର ସେକ୍ରେଟାରୀ ମହୋଦୟ କହିଲେ, "ଅର୍ଥ ଅଭାବ ଯୋଗୁଁ କମିଶନ ପକ୍ଷରେ

ଏତେଗୁଡ଼ାଏ ଦାବି ଗ୍ରହଣ କରିବା ସମ୍ଭବ ନୁହେଁ ।'' ଦୃଢ଼ ସ୍ୱରରେ କୁଳପତି ଉତ୍ତର ଦେଲେ, ''ଯାହା ମାଗିଛି, ସବୁ ପାଇବା ଲାଗି ମୁଁ ହକ୍‌ଦାର । ଉତ୍ତର ଭାରତର ଦିଲ୍ଲୀ, ବନାରସ ଓ ଆଲିଗଡ଼ ପ୍ରଭୃତି ବିଶ୍ୱବିଦ୍ୟାଳୟକୁ ଅମାପ ଅନୁଦାନ ଢାଳିବା ପାଇଁ ଅର୍ଥ ଅଛି । କିନ୍ତୁ ଦକ୍ଷିଣ ଭାରତର ମାନ୍ଦ୍ରାଜ ପାଇଁ ଟଙ୍କା ନାହିଁ ! ଏପରି ଅବିଚାର ସହ୍ୟ କରିବାକୁ ଆମେ ତାମିଲ୍‌ମାନେ ପ୍ରସ୍ତୁତ ନୋହୁଁ ।''

ମୁଁ କହିପକାଇଲି, ''ଜଣେ କୁଳପତିଙ୍କ ପକ୍ଷରେ 'ଉତ୍ତର' ଓ 'ଦକ୍ଷିଣ' ଶବ୍ଦ ପ୍ରୟୋଗ କରିବା ଅସ୍ୱାଭାବିକ ବୋଧ ହେଉଛି ।''

ବଡ଼ ବଡ଼ ଆଖିରେ ଚାହିଁ ସେ ନିଃସଙ୍କୋଚ ଭାବରେ ମୋ ପ୍ରତି ଆକ୍ଷେପ କରି କହିଲେ, ''ମୁଁ ଜାଣେ, ଆପଣ ଓଡ଼ିଶାର ଲୋକ । ଓଡ଼ିଶା ଉତ୍ତରଭାରତର ନୁହେଁ କି ଦକ୍ଷିଣଭାରତର ନୁହେଁ । ମୋର ଦୃଢ଼ ବିଶ୍ୱାସ, ୟୁ.ଜି.ସି. ଉତ୍ତରର ବିଶ୍ୱବିଦ୍ୟାଳୟଗୁଡ଼ିକୁ ଶ୍ରଦ୍ଧାରେ ଓ ଦକ୍ଷିଣ ବିଶ୍ୱବିଦ୍ୟାଳୟଗୁଡ଼ିକୁ ଭୟରେ ଟଙ୍କା ଦିଅନ୍ତି । ଆପଣଙ୍କ ଉତ୍କଳ ପ୍ରତି ଶ୍ରଦ୍ଧା ନାହିଁ କି ଭୟ ନାହିଁ ।'' ମୁଁ ନୀରବ ରହିଲି । କହିବା ବାହୁଲ୍ୟ, କମିଶନ ମାନ୍ଦ୍ରାଜର ଦାବିମାନ ମାନିନେଲେ । କୁଳପତି ଥିଲେ ତଫସିଲ ଜାତିର ବ୍ୟକ୍ତି, ନିର୍ଭୀକ ଓ ବିଚକ୍ଷଣ ।

ତାଙ୍କ କଥା ମନେରଖି ଦିଲ୍ଲୀ ଚାଲିଲି । ମଞ୍ଜୁରୀ କମିଶନର ଅଧ୍ୟକ୍ଷା ଥିଲେ ମାଧୁରୀ ଶାହା । ସେପରି ମୋଟା ମହିଳା ପୂର୍ବେ କେବେ ଦେଖି ନଥିଲି, କିମ୍ବା ପରେ ମଧ୍ୟ ଦେଖିନାହିଁ । ପ୍ରବାଦ ଅଛି, କାର୍ଯ୍ୟରେ ଯୋଗଦେବା ପୂର୍ବରୁ ତାଙ୍କ ଲାଗି ଯେଉଁ ସ୍ୱତନ୍ତ୍ର ଚେୟାର ତିଆରି ହେଲା, ସେଥିରେ ପାଖାପାଖି ତିନିଜଣ ବସିପାରିବେ ବୋଲି ମିସ୍ତ୍ରୀମାନେ ମତ ଦେଇଥିଲେ । ମିସେସ୍ ଶାହାଙ୍କୁ ସିଧାସଳଖ କହିଲି, ''ଯେଉଁ କେତୋଟି ପୋଷ୍ଟ ଉତ୍କଳକୁ ଦିଆଯାଇଛି, ସେଗୁଡ଼ିକ ଫେରାଇ ଦେବାକୁ ଆସିଛି ।''

ବିରକ୍ତି ଭାବ ଦେଖାଇ ସେ କହିଲେ, ''ଜଣେ କୁଳପତିଙ୍କ ନିକଟରୁ ଏପରି ବାକ୍ୟ ମୁଁ ଆଶା କରିପାରୁ ନାହିଁ ।'' ଉତ୍ତର ଦେଲି, ''ୟୁ.ଜି.ସି. ଅଧ୍ୟକ୍ଷାଙ୍କ ନିକଟରୁ ମୁଁ ମଧ୍ୟ ସୁବିଚାର ଆଶା କରୁଛି । ଯଦି କଲିକତା, ପାଟନା ଓ ଏହ୍ଲାବାଦ ବିଶ୍ୱବିଦ୍ୟାଳୟ ଅନୁଧ୍ୟାନକାରୀ ଦଳର ସୁପାରିଶ୍ ମୁତାବକ ପୋଷ୍ଟଗୁଡ଼ିକ ପାଇଗଲେ, ଉତ୍କଳ ମଧ୍ୟ ସେହିପରି ନ୍ୟାୟ ପାଇବା ଉଚିତ ।'' ତର୍କ ବିତର୍କ ଚାଲିଲା । ଶେଷରେ ସେ ଗାମ୍ଭୀର୍ଯ୍ୟ ପ୍ରଦର୍ଶନ ପୂର୍ବକ ନୀରବ ରହିଲେ । ମୁଁ ମଧ୍ୟ ଦୃଢ଼ ପ୍ରତିବାଦ ଜଣାଇ ବାହାରି ଆସିଲି । ଆଶ୍ଚର୍ଯ୍ୟର ବିଷୟ, ମୁଁ ଫେରିବା ପରେ ପରେ ସବୁଗୁଡ଼ିକ ପୋଷ୍ଟ ପାଇଁ ମଞ୍ଜୁରୀ ଆସିଗଲା ।

## 'ପ୍ରତିଭା ପଦୋନ୍ନତି' ପ୍ରଥା ପ୍ରଚଳନ

ଭାରତର ଅଧିକାଂଶ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରେ Merit Promotion ବା ପ୍ରତିଭା ପଦୋନ୍ନତି ପ୍ରଥା ପ୍ରଚଳିତ ଥିଲେ ମଧ୍ୟ, ଓଡ଼ିଶା ସରକାର ତାହା ଗ୍ରହଣ କରି ନଥିଲେ । ପହଞ୍ଚିଲି ରାଜଭବନରେ, ଦାବି ପତ୍ର ସହ । ରାଜ୍ୟପାଳ ପାଣ୍ଡେଙ୍କୁ ପଚାରିଲି, ''ଓଡ଼ିଆ ଛାତ୍ରମାନଙ୍କ ମେରିଟ୍ ସମ୍ପର୍କରେ ଆପଣଙ୍କ ଧାରଣା କିପରି ?'' ''ଅତି ଉତ୍ତମ, ଅତି ଉତ୍ତମ ! ଉତ୍ତର ଭାରତର ପ୍ରାୟ ସବୁ ବିଶ୍ୱବିଦ୍ୟାଳୟରେ ସେମାନଙ୍କ ସୁନାମ ଅଛି । ସର୍ବଭାରତୀୟ ପରୀକ୍ଷାରେ ଉତ୍କଳ ଛାତ୍ରମାନେ ବରାବର କୃତିତ୍ୱ ହାସଲ କରନ୍ତି,'' ଗର୍ବିତ ମନରେ ରାଜ୍ୟପାଳ ଉତ୍ତର ଦେଲେ ।

''ଓଡ଼ିଶାର ଛାତ୍ରମାନେ ପ୍ରତିଭାଶାଳୀ ନିଶ୍ଚୟ, କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନଙ୍କର ପ୍ରତିଭା ନାହିଁ ବୋଲି ଓଡ଼ିଶା ସରକାର ଓ ମନ୍ତ୍ରୀମାନଙ୍କର ଦୃଢ଼ ବିଶ୍ୱାସ । ଆପଣ ପ୍ରତିଭାହୀନ ଅଧ୍ୟାପକ ଗୋଷ୍ଠୀର ଚାନସେଲର ରୂପେ ରହିପାରନ୍ତି, କିନ୍ତୁ ଆପଣଙ୍କ ଭାଇସ୍-ଚାନ୍ସେଲର ଭାବରେ ସେପରି ଶିକ୍ଷକଗୋଷ୍ଠୀର ମୁଖ୍ୟ ହେବାକୁ ମୋର ଇଚ୍ଛା ନାହିଁ'', ଏତକ କହି ମୋ ଦାବି ପତ୍ରଟି ତାଙ୍କ ଆଗରେ ଥୋଇଦେଲି । ଶେଷ ଧାଡ଼ିରେ ଲେଖିଥିଲି, ''If the Government of Orissa is not prepared to implement the Merit Promotion Scheme in Utkal University forthwith, this be treated as my letter of resignation.''

ଗଭର୍ଣ୍ଣର ତତ୍କ୍ଷଣାତ୍ ତାଙ୍କ ସଚିବଙ୍କୁ ଡାକି ଶିକ୍ଷାମନ୍ତ୍ରୀ, ଚିଫ୍ ସେକ୍ରେଟାରୀ, ଅର୍ଥ ସଚିବ ଓ ଶିକ୍ଷା ସଚିବଙ୍କର ବୈଠକ ଡକାଇବାକୁ ଆଦେଶ ଦେଲେ । ମାତ୍ର ସପ୍ତାହକ ମଧ୍ୟରେ ସରକାର ପଦୋନ୍ନତି ପ୍ରଥା ପ୍ରଚଳନ କରିବାକୁ ସମ୍ମତି ଜଣାଇଲେ । ୧୯୮୪ ଆରମ୍ଭରେ ଅଧ୍ୟାପକମାନଙ୍କୁ ନବବର୍ଷର ଉପହାର ସ୍ୱରୂପ ଅନେକ ଗୁଡ଼ିଏ ୟୁ.ଜି.ସି. ପୋଷ୍ଟ ଓ ଓଡ଼ିଶା ସରକାରଙ୍କ ମେରିଟ୍ ପୋଷ୍ଟଗୁଡ଼ିକ ପ୍ରଦାନ କଲି । ସେଥିସହ ଆରମ୍ଭ ହେଲା କ୍ରମାଗତ ଭାବେ ସିଲେକ୍ସନ ପର୍ବ ।

## ପଦ ସୃଷ୍ଟି ଜନିତ ସମସ୍ୟା

ଥରେ ଗୋଟିଏ ଉଚ୍ଚସ୍ତରୀୟ ବୈଠକରେ ପଦ ହାସଲ ପାଇଁ ମୁଁ ଗର୍ବ କରିବା ଦେଖି ଜଣେ ବିଚକ୍ଷଣ ସଚିବ ଯାହା କହିଥିଲେ ତାହା ଉଲ୍ଲେଖ କରୁଛି । ''ପ୍ରତ୍ୟେକ ୟୁ.ଜି.ସି. ପ୍ରଫେସର ବା ରିଡ଼ର ବା ଲେକ୍‌ଚାରାର ପଦ ପାଇଁ ଅନେକ ଆଶାୟୀ ପ୍ରାର୍ଥୀଙ୍କ ମଧ୍ୟରୁ ଆପଣ ଜଣେ ଲେଖାଏଁ ବ୍ୟକ୍ତିଙ୍କୁ ମନୋନୀତ କରିବେ । ଯିଏ ମନୋନୀତ ହେବେ, ସେ ନିଜ ଯୋଗ୍ୟତା ବଳରେ ପଦଟି

ପାଇଲେ ବୋଲି ଜାଣିବେ । ଯେଉଁମାନେ ବିଫଳ ହେବେ, ସେମାନେ ଆପଣଙ୍କୁ ଘୃଣା କରିବେ । ଏହାଠାରୁ ଅଧିକ ବିପଦ ମେରିଟ୍ ପ୍ରମୋସନ କ୍ଷେତ୍ରରେ । ପ୍ରତ୍ୟେକ ବିଭାଗର ସବୁ ଶିକ୍ଷକ ନିଜ ନିଜକୁ ପ୍ରତିଭାଶାଳୀ ଭାବିବା ସ୍ୱାଭାବିକ । କିନ୍ତୁ, କେତେଜଣ ଲେକଚାରାରଙ୍କ ମଧ୍ୟରୁ ଆପଣ ଜଣକୁ ରିଡାର କରିବେ ଓ କେତେଜଣ ରିଡାର ମଧ୍ୟରୁ ଜଣକୁ ପ୍ରଫେସର କରିବେ । ତଦ୍ୱାରା ବିଫଳ ପ୍ରାର୍ଥୀମାନେ ପ୍ରତିଶୋଧ ନେବେ ଆପଣଙ୍କ ଉପରେ, କାରଣ ସେମାନଙ୍କ ପ୍ରତିଭା ଅସ୍ୱୀକୃତ ହେବା ଦ୍ୱାରା ସେମାନେ ନିଶ୍ଚୟ ଛାତ୍ରମାନଙ୍କ ଆଗରେ ଅପମାନିତ ବୋଧ କରିବେ ।'' ଆଉ ଜଣେ ସଚିବ କହିଥିଲେ, ''ପୋଷ୍ଟଗୁଡ଼ିକ ନଥିଲା ବେଳେ କାହାରି କିଛି କହିବା ପାଇଁ ଅବକାଶ ନଥାଏ । ପୋଷ୍ଟ ଆଣିଦେବା ପରେ ଆପଣଙ୍କୁ ପକ୍ଷପାତୀ କହିବାକୁ ଅନେକଙ୍କୁ ସୁଯୋଗ ମିଳିଯିବ ।''

ଉପରୋକ୍ତ ଉକ୍ତିଗୁଡ଼ିକ ଅନେକାଂଶରେ ସତ୍ୟ ବୋଲି ଯଥାସମୟରେ ବୁଝିପାରିଲି । ପ୍ରତ୍ୟେକ ପଦ ଲାଗି ବାହାରୁ ବିଶେଷଜ୍ଞମାନେ ଆସିଲେ ସୁଦ୍ଧା, ସବୁ ଇଣ୍ଟରଭିଉରେ ମୋତେ ରହିବାକୁ ହେଲା । ତାହାହିଁ ହେଲା କୁଳପତିର ଦୁର୍ଭାଗ୍ୟ । ଅନେକେ ଭାବିଲେ, କୁଳପତି ଯାହାକୁ ଚାହିଁବେ, ସେହି ପ୍ରାର୍ଥୀ ମନୋନୀତ ହେବେ । ତେଣୁ, ରାଜନୈତିକ ଚାପ, ବ୍ୟକ୍ତିଗତ ପ୍ରଭାବ, ନାନାପ୍ରକାର କୌଶଳ ଓ ମାଲିମୋକଦ୍ଦମାର ଧମକ ଚମକ ମଧ୍ୟରେ ବିବ୍ରତ ରହିବାକୁ ପଡ଼ିଲା । ପୋଷ୍ଟଗୁଡ଼ିକ ପୂରଣ ହେବାବେଳକୁ କେତେକେ ଶତ୍ରୁ ହେଲେ, ଅନେକେ ନିନ୍ଦା କଲେ, କେହି କେହି ଅଦାଲତର ଆଶ୍ରୟ ନେଲେ । କାମ ନକଲେ ନିନ୍ଦା, କାମ କଲେ ଅଧିକ ନିନ୍ଦା, ଏହି ଅଭିଜ୍ଞତା ହାସଲ କଲି ।

ତେଣେ, କର୍ମଚାରୀମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିଲା ଯେ, କୁଳପତି କେବଳ ଅଧ୍ୟାପକ ସଂଖ୍ୟା ବଢ଼ାଇ ଚାଲିଛନ୍ତି, କର୍ମଚାରୀ ସଂଖ୍ୟା ନୁହେଁ, କାରଣ ସେ ଥିଲେ ଜଣେ ଅଧ୍ୟାପକ । ପ୍ରକୃତ ପକ୍ଷେ, ବିଶ୍ୱବିଦ୍ୟାଳୟର କାର୍ଯ୍ୟଭାର ତୁଳନାରେ କର୍ମଚାରୀ ସଂଖ୍ୟା ଅନେକ ବର୍ଷ ଯାବତ୍ ବଢ଼ି ନଥାଏ । ସମସ୍ୟାର ମୁକାବିଲା କରିବାକୁ ଯାଇ ଅନୁଭବ କଲି, ମଞ୍ଜୁରୀ କମିଶନ ଅଧ୍ୟକ୍ଷ କିମ୍ବା ରାଜ୍ୟପାଳଙ୍କ ସହିତ ଯୁକ୍ତିତର୍କ କରିବା ସହଜ, କିନ୍ତୁ ସେକ୍ରେଟାରିଏଟ୍ ଓ ରାଜ୍ୟପାଳଙ୍କ ଅଫିସ୍‌ରେ ସଚିବ ଓ ଅମଲାମାନଙ୍କୁ ବୁଝାଇବା ଅତ୍ୟନ୍ତ କଠିନ । ତଥାପି ବାରମ୍ବାର ଦୌଡ଼ାଦୌଡ଼ି କରି ୬୦ ଗୋଟି କିରାଣି ପୋଷ୍ଟ ମଞ୍ଜୁର କରାଇ ଆଣିଲି । କିନ୍ତୁ, ଏ କ୍ଷେତ୍ରରେ ମଧ୍ୟ ସେହି ସମସ୍ୟା, ପୋଷ୍ଟ ପୂରଣ କରିବାବେଳେ ଧରାଧରି, ବାହାର ଲୋକଙ୍କ ଚାପ, କେତେକ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଅସନ୍ତୋଷ, ଇତ୍ୟାଦି ।

ଛାତ୍ରମାନଙ୍କ ମଧ୍ୟରେ ଗୁଞ୍ଜରଣ ସୃଷ୍ଟିହେଲା, କୁଳପତି ଆମମାନଙ୍କ ପାଇଁ କିଛି କରୁ ନାହାନ୍ତି । ୟୁ.ଜି.ସି.କୁ ଲେଖାଲେଖି କରି ଦୁଇଟି ଛାତ୍ରାବାସ ମଞ୍ଜୁର କରାଇଲି । ଏଣେ, ୨୦ ବର୍ଷ ଆଗର କୋଠାବାଡ଼ି ଓ କ୍ୱାର୍ଟାରସ୍ ଭାଙ୍ଗିବା ଅବସ୍ଥାକୁ ଆସିଯାଉଥାଏ, କିନ୍ତୁ ମରାମତି ଲାଗି ଟଙ୍କା ନଥାଏ । ଅନୁଦାନ ବୃଦ୍ଧି ପାଇଁ ଲେଖାଲେଖି ଓ କାକୁତି ମିନତି ଆରମ୍ଭ କଲି, ଯଦିଚ ଫଳ ମିଳିଲା ମୋ କାର୍ଯ୍ୟକାଳ ପରେ ।

## ସଭାସମିତି ଅନୁଭୂତି

କୁଳପତି ହେବା ପୂର୍ବରୁ ପ୍ରାୟ ୩୦ ବର୍ଷ ଯାବତ୍ ଓଡ଼ିଶାର ବିଭିନ୍ନ କଲେଜରେ ମୁଖ୍ୟ ଅତିଥି ବା ବକ୍ତାଭାବେ ଭାଷଣ ଦେବାକୁ ଗଲାବେଳେ ଫୁଲମାଳ, ସାଦର ଅଭ୍ୟର୍ଥନା, ପ୍ରଶଂସା ଗାନ ଓ ଅଭିଧାନର ସର୍ବୋତ୍ତମ ବିଶେଷଣ ଦ୍ୱାରା ସମ୍ବର୍ଦ୍ଧିତ ହେଉଥାଏଁ । ଏବେ କୁଳପତି ରୂପେ ଗଲାବେଳେ ଅକସ୍ମାତ୍ ଏକ ଅସ୍ୱାଭାବିକ ପରିବର୍ତ୍ତନ ଲକ୍ଷ୍ୟ କଲି । ପ୍ରଶଂସା ପାଠ ପରିବର୍ତ୍ତେ ପାଇଲି ଅଭିଯୋଗ ପତ୍ର । ଥରେ ଜଣେ ଅଧ୍ୟକ୍ଷଙ୍କୁ ନିଭୃତରେ ପ୍ରଶ୍ନ କଲି, "ନମ୍ରତା ଦ୍ୱାରା ପୂର୍ବେ ଯେପରି ଅଭିଭୂତ କରୁଥିଲେ, ଏଥର ତାହାର ବ୍ୟତିକ୍ରମ ଦେଖିଲି କାହିଁକି ?" ଅସ୍ପଷ୍ଟ ଓ ଅବୋଧ ଭାଷାରେ ସେ ଯେଉଁ କୈଫିୟତ ଦେଲେ, ତାହାର ମର୍ମାର୍ଥ ଥିଲା, ଜଣେ ବରିଷ୍ଠ ଅଧ୍ୟାପକଙ୍କ ପ୍ରତି ନମ୍ରତା ପ୍ରଦର୍ଶନ ହେଉଛି ଭଦ୍ରତା, କିନ୍ତୁ ଜଣେ କୁଳପତିଙ୍କ ପ୍ରତି ସେପରି ବ୍ୟବହାର ଲୋକଲୋଚନରେ ଜଣାଯିବ ଭୀରୁତା !

ଛାତ୍ରମାନଙ୍କ ବାର୍ଷିକ ଉତ୍ସବକୁ ଯାଇ ଅନୁଭବ କଲି, କୁଳପତିଙ୍କ ଭାଷଣ ପ୍ରତି କାହାରି ଆଗ୍ରହ ନଥାଏ, କାରଣ ତାଙ୍କ ଠାରୁ ଶୁଣିବା ଅପେକ୍ଷା ତାଙ୍କୁ ଶୁଣାଇବା ଥାଏ ଉତ୍ସବର ଉଦ୍ଦେଶ୍ୟ । ଜଣେ ଛାତ୍ରନେତାଙ୍କୁ ପଚାରିଲି, ସରକାରୀ କଲେଜରେ ଯଦି ଘରର ଅଭାବ, ଛାତ୍ରାବାସର ଅଭାବ, ଲାଇବ୍ରେରୀରେ ବହି ନାହିଁ, ଲେବୋରାଟରୀ ଉପକରଣ ବା ଚେୟାର ଟେବୁଲ ନାହିଁ, ସେ କଥା ଶିକ୍ଷାମନ୍ତ୍ରୀଙ୍କୁ କହିବା ଉଚିତ, କୁଳପତିଙ୍କୁ କହୁଛନ୍ତି କାହିଁକି ? ଉତ୍ତର ମିଳିଲା, "ଆପଣ ଶିକ୍ଷାମନ୍ତ୍ରୀଙ୍କୁ କହିବେ, ଆମ କଥା ସେ ଶୁଣିବେ ନାହିଁ ।"

ଅଳ୍ପ କେତୋଟି ମାସ ମଧ୍ୟରେ ଉଚ୍ଚଶିକ୍ଷାର ସମସ୍ୟାଗୁଡ଼ିକ ଜାଣିଗଲି । ଛତୁ ଫୁଟିଲା ପରି ବେସରକାରୀ କଲେଜଗୁଡ଼ିକର ଅବସ୍ଥା ଦେଖି ସ୍ତମ୍ଭିତ ହେଲି । ସୁଯୋଗ ଲାଗି ଅପେକ୍ଷା କଲି, ଯଦି କୌଣସି ବଳିଷ୍ଠ ପଦକ୍ଷେପ ସମ୍ଭବ ହେବ !

## ସମାବର୍ତ୍ତନ ଉତ୍ସବରେ ପୂଜ୍ୟା ରମାଦେବୀଙ୍କୁ ସମ୍ମାନ

୧୯୮୪ ଏପ୍ରିଲ୍ ୧୬ ତାରିଖ ଦିନ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବ ନିର୍ଦ୍ଧାରିତ ହେଲା । ଏହି ସମ୍ପର୍କରେ ଗୋଟିଏ ବିଷୟ ଉଲ୍ଲେଖ କରିବି । ଯେଉଁ ବିଶିଷ୍ଟ ବ୍ୟକ୍ତି ବା ବ୍ୟକ୍ତିମାନଙ୍କୁ ସର୍ବୋଚ୍ଚ ସମ୍ମାନସୂଚକ ଡିଗ୍ରୀ ପ୍ରଦାନ କରାଯିବା ଉଚିତ, ତାହା ପ୍ରଥମେ ସିଣ୍ଡିକେଟ୍‌ରେ ପ୍ରସ୍ତାବିତ ହୁଏ ଓ ତା ପରେ ସିନେଟ ଦ୍ୱାରା ଅନୁମୋଦିତ ହୁଏ । ଅଭିଜ୍ଞତାରୁ ଜଣାଥାଏ, ପ୍ରସ୍ତାବିତ ନାମ ସମ୍ପର୍କରେ ବେଳେବେଳେ ସିଣ୍ଡିକେଟ୍‌ରେ ବାଦାନୁବାଦ ହୁଏ ଓ ସିନେଟ୍‌ରେ ମଧ୍ୟ । ସୁତରାଂ, ଏପରି ଜଣେ ବ୍ୟକ୍ତିଙ୍କ ନାମ ଠିକ୍ କଲି ଯାହାଙ୍କୁ ସର୍ବସମ୍ମତିକ୍ରମେ ସର୍ବୋଚ୍ଚ ସମ୍ମାନ ଲାଗି ଗ୍ରହଣ କରାଯିବ । ସେ ଥିଲେ ପୂଜ୍ୟା ରମାଦେବୀ ।

ସମସ୍ତେ ସିନା ତାଙ୍କ ନାମ ସାଦରେ ଗ୍ରହଣ କରିନେଲେ, କିନ୍ତୁ ରମାଦେବୀଙ୍କୁ ରାଜି କରାଇବା ସହଜ ନ ଥିଲା । ଦିନେ ରାତିରେ ସସ୍ତ୍ରୀକ ଯାଇ କଟକରେ ତାଙ୍କ ପାଖରେ ପହଞ୍ଚିଲି । ଅନୁନୟ ବିନୟ ସତ୍ତ୍ୱେ ସେ କହିଲେ, "ମୋତେ କାହିଁକି ସମ୍ମାନିତ କରିବେ ! ମୋର ବା କ'ଣ ଯୋଗ୍ୟତା ଅଛି ! ମୁଁ ଜଣେ ସାମାନ୍ୟ ସର୍ବୋଦୟ କର୍ମୀ ଓ ସମାଜସେବିକା । ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ପାଇବା ଲାଗି ମୁଁ ଯୋଗ୍ୟା ନୁହେଁ ।" ଅନେକ ବୁଝାଇଲା ପରେ ମଧ୍ୟ ସେ ମନା କରିବାରୁ, ଶେଷରେ ଗୋଟିଏ କଥା କହିଲି, "ଆପଣ ଏସବୁ ଲୌକିକ ସମ୍ମାନର ଅନେକ ଊର୍ଦ୍ଧ୍ୱରେ । ତଥାପି, ଆପଣଙ୍କ ମାଧ୍ୟମରେ ମାତୃଜାତି ପ୍ରତି ସାଂକେତିକ ସମ୍ମାନ ଦେବା ଲାଗି ଆମର ମହତ୍ ଇଚ୍ଛାରେ ବାଧା ଦିଅନ୍ତୁ ନାହିଁ । ଆପଣଙ୍କୁ ସମ୍ମାନ ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟ ସମ୍ମାନିତ ହେବ ।" ରମାଦେବୀ ରାଜି ହେଲେ ଓ ସମାବର୍ତ୍ତନ ଉତ୍ସବରେ ତାଙ୍କ ଉଦ୍ଦେଶ୍ୟରେ ମାନପତ୍ର ପାଠ କରି ନିଜକୁ ଗୌରବାନ୍ୱିତ ମନେକଲି ।

## ଭାରତୀୟ କୁଳପତି ସମ୍ମିଳନୀ: କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରସ୍ତାବ

୧୯୮୪ ମେ ମାସ ୨୧, ୨୨ ଓ ୨୩ ତାରିଖ ନୂତନ ଦିଲ୍ଲୀରେ ଭାରତୀୟ କୁଳପତିମାନଙ୍କର ସମ୍ମେଳନ ଅନୁଷ୍ଠିତ ହେଲା । ୨୧ ତାରିଖ ପୂର୍ବାହ୍ଣରେ କେନ୍ଦ୍ର ଶିକ୍ଷାମନ୍ତ୍ରୀ କେ.ସି.ପନ୍ଥ ସମ୍ମେଳନ ଉନ୍ମୋଚନ କଲେ । ତାଙ୍କ ଉଦ୍‌ବୋଧନ ଶେଷ ହେଲା ମାତ୍ରେ ମୁଁ ମାଇକ୍ ଯୋଗେ ସଭାପତିତ୍ୱ କରୁଥିବା ମାଧୁରୀ ଶାହାଙ୍କ ଦୃଷ୍ଟି ଆକର୍ଷଣ ପୂର୍ବକ ଅନୁରୋଧ କଲି, "ଭାରତର ବୃହତ୍ତମ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ମୋତେ ସର୍ବପ୍ରଥମେ ପ୍ରସ୍ତାବ ଆଗତ କରିବାକୁ ସୁଯୋଗ ଦିଆଯାଉ ।" ପ୍ରତିବାଦ ଧ୍ୱନି ଶୁଭିଲା, "କେଉଁ ଦୃଷ୍ଟିରୁ ବୃହତ୍ତମ ବିଶ୍ୱବିଦ୍ୟାଳୟ ?" ଦୃଢ଼ ସ୍ୱରରେ ଉତ୍ତର ଦେଲି, "ଯଦି ଅନ୍ୟ

କୌଣସି କୁଳପତି କହିପାରିବେ ଯେ ତାଙ୍କ ବିଶ୍ୱବିଦ୍ୟାଳୟର ପରିଚାଳନାରେ ୨୭୦ଟି ସ୍ୱୀକୃତିପ୍ରାପ୍ତ ମହାବିଦ୍ୟାଳୟ ରହିଛି, ତେବେ ମୁଁ ମୋର ଦାବି ପ୍ରତ୍ୟାହାର କରିନେବି ।'' ଗୁଞ୍ଜରଣ ମଧ୍ୟରେ ସମସ୍ତେ ନିରୁତ୍ତର ରହିଲେ । ମାଧୁରୀ ଶାହା ପ୍ରସ୍ତାବ ଆଗତ କରିବାକୁ ମୋତେ ଅନୁମତି ଦେଲେ ।

ପ୍ରସ୍ତାବ ରଖିଲି, "The Premier University of every major State of India be made a Central University". ବ୍ୟାଖ୍ୟାକରି କହିଥିଲି, ପଶ୍ଚିମବଙ୍ଗରେ ଗୋଟିଏ, ଉତ୍ତର ପ୍ରଦେଶରେ ଦୁଇଟି, ଦିଲ୍ଲୀ ନଗରୀରେ ତିନୋଟି ଓ ଆନ୍ଧ୍ର ପ୍ରଦେଶରେ ଗୋଟିଏ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଥିଲାବେଳେ, ଓଡ଼ିଶା, ବିହାର, ରାଜସ୍ଥାନ, ମଧ୍ୟପ୍ରଦେଶ, ଗୁଜରାଟ ଓ ତାମିଲନାଡୁ ପ୍ରଭୃତି ରାଜ୍ୟରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇ ନଥିବା ଅତ୍ୟନ୍ତ ପରିତାପର ବିଷୟ । ଭାରତ ସରକାର ଓ ୟୁ.ଜି.ସି. ଏଥିପ୍ରତି ଦୃଷ୍ଟି ନ ଦେଲେ ଧାରଣା ହେବା ସ୍ୱାଭାବିକ ଯେ ଇଣ୍ଡିଆନ ଇଉନିଅନ୍‌ର ସମସ୍ତ ରାଜ୍ୟର ମର୍ଯ୍ୟାଦା ସମାନ ନୁହେଁ । ଉଚ୍ଚତର ଶିକ୍ଷା କ୍ଷେତ୍ରରେ ରାଜ୍ୟ ରାଜ୍ୟ ମଧ୍ୟରେ କୌଣସି ପ୍ରକାର ତାରତମ୍ୟ ରହିବା କଦାପି ଶୋଭନୀୟ ନୁହେଁ । ଏକଥା ମଧ୍ୟ ଦାବି କଲି ଯେ, ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା କଲେଜ ସଂଖ୍ୟାର ବିପୁଳତା ଦୃଷ୍ଟିରୁ, ଶତାଧିକ କଲେଜକୁ ନେଇ ଉତ୍ତର ଓଡ଼ିଶାରେ ଅନ୍ୟ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଉ । ଅନ୍ୟ କେତେକ କୁଳପତି ପ୍ରସ୍ତାବ ସପକ୍ଷରେ ମତ ଦେଲେ । ଅଧ୍ୟକ୍ଷା ଘୋଷଣା କଲେ, "ନୀତିଗତ ଭାବେ ପ୍ରସ୍ତାବଟି ବିଚାର ନିମନ୍ତେ ଗୃହୀତ ହେଲା ।''

ଦ୍ୱିତୀୟ ଦିନ, କ୍ୟାମ୍ପାସ୍ ସମସ୍ୟା ଆଲୋଚିତ ହେଲା । ଏହ୍ଲାବାଦ କୁଳପତି ପ୍ରସ୍ତାବ ରଖିଲେ, ଆଇନ ଶୃଙ୍ଖଳା ରକ୍ଷା ଲାଗି କ୍ୟାମ୍ପାସ୍ ମଧ୍ୟକୁ ପୋଲିସ ଫୋର୍ସ ପ୍ରବେଶ କରିପାରିବେ ଓ ସେଥିପାଇଁ କୁଳପତିଙ୍କ ଅନୁମତି ଅନାବଶ୍ୟକ । ପ୍ରସ୍ତାବ ସପକ୍ଷ ଓ ବିପକ୍ଷରେ ଯୁକ୍ତିତର୍କ ଚାଲିଲା । ମୁଁ ବିପକ୍ଷରେ ଯୁକ୍ତି ବାଢ଼ିଲାବେଳେ, ଜଣେ କୁଳପତି ଘୋଷଣା କଲେ, "ମୁଁ ଅଛି ଦିଲ୍ଲୀରେ । ମୋ ଅନୁପସ୍ଥିତିରେ କାଲି ରାତିରେ ମୋ କ୍ୟାମ୍ପାସ୍ ବାସଭବନରେ ଅଗ୍ନି ସଂଯୋଗ କରାଯାଇଛି । ଉତ୍କଳ କୁଳପତି ଗ୍ୟାରେଣ୍ଟି ଦେଇପାରିବେ କି ଆଜି ରାତିରେ ତାଙ୍କ ବାସଭବନରେ ନିଆଁ ଲାଗିବ ନାହିଁ ?'' ଜବାହାରଲାଲ ନେହରୁ ବିଶ୍ୱବିଦ୍ୟାଳୟର କୁଳପତି ମୋ ପ୍ରତି ଆକ୍ଷେପ କରି କହିଲେ, "କୌଣସି କୁଳପତି ଭାବିବା ଉଚିତ ନୁହେଁ ଯେ ବିଶ୍ୱବିଦ୍ୟାଳୟର କୋଠାବାଡ଼ି ଓ ଲାଇବ୍ରେରୀ ଇତ୍ୟାଦି ହେଉଛି ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି ।'' ତର୍କ ବିତର୍କ ଶେଷରେ ଅଧ୍ୟକ୍ଷା ରୁଲିଂ ଦେଲେ, "ଆଇନ

ଶୃଙ୍ଖଳାର ଦ୍ରୁତ ଅବନତି ଓ ଛାତ୍ର ଅଶାନ୍ତିର ପୃଷ୍ଠଭୂମିରେ ଆବଶ୍ୟକ ବେଳେ କ୍ୟାମ୍ପାସ୍ ଭିତରକୁ ପୋଲିସ ପ୍ରବେଶ କରିପାରିବେ ବୋଲି ନୀତିଗତ ନିଷ୍ପତ୍ତି ଗୃହୀତ ହେଲା ।''

ଗର୍ବ ଓ ଆନନ୍ଦରେ ଦିଲ୍ଲୀରୁ ଫେରିଲି । କିନ୍ତୁ ଭୁବନେଶ୍ୱରରେ ପହଞ୍ଚିଲା ପରେ ହୃଦ୍‌ବୋଧ ହେଲା, ପ୍ରସ୍ତାବ ପାଶ୍ କରାଇନେବା ଅର୍ଥ ନୁହେଁ ଯେ ସଙ୍ଗେ ସଙ୍ଗେ ବାଣୀବିହାରର ରୂପାନ୍ତର ଘଟିବ ଓ ଅନ୍ୟତ୍ର ନୂତନ ବିଶ୍ୱବିଦ୍ୟାଳୟର ମୂଳଭିତ୍ତି ପଡ଼ିବ । ରାଜ୍ୟପାଳ କହିଲେ, ''ମୋ ଚିନ୍ତାରେ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପରିବର୍ତ୍ତେ ଓଡ଼ିଶାର ଦୁର୍ଗମ ପାର୍ବତ୍ୟାଞ୍ଚଳରେ ଗିରିଜନମାନଙ୍କ ଉଚ୍ଚଶିକ୍ଷା ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବା ଉଚିତ ।''

ଜଣେ ମାନ୍ୟବର ମନ୍ତ୍ରୀ ପଚାରିଲେ, ''କେନ୍ଦ୍ର ସରକାରଙ୍କ ହାତକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଟେକିଦେଲେ କ'ଣ ଓଡ଼ିଶାର ମର୍ଯ୍ୟାଦା ବଢ଼ିଯିବ ?'' ତାଙ୍କୁ ବୁଝାଇବାକୁ ପଡ଼ିଲା, ବିଶ୍ୱବିଦ୍ୟାଳୟ କେନ୍ଦ୍ର ଅଧୀନକୁ ଚାଲିଯିବ ନାହିଁ, କାରଣ ଏହାର ସ୍ୱାତନ୍ତ୍ର୍ୟରେ କେହି ହସ୍ତକ୍ଷେପ କରିପାରିବେ ନାହିଁ । କେନ୍ଦ୍ର ବା ୟୁ.ଜି.ସି. କେବଳ ପ୍ରଚୁର ଅନୁଦାନ ଦେବେ । ଉତ୍କଳକୁ ସାମାନ୍ୟ ଦୁଇ ତିନି କୋଟି ମିଳୁଥିଲା ବେଳେ, ନେହରୁ ବିଶ୍ୱବିଦ୍ୟାଳୟ ପାଏ ୩୬ କୋଟି, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପାଏ ୨୪ କୋଟି, ଇତ୍ୟାଦି ଇତ୍ୟାଦି । କେନ୍ଦ୍ରର ଟଙ୍କାରେ ନୂଆ ନୂଆ ବିଭାଗ ଖୋଲାଯିବ, କୋଠାବାଡ଼ି ତିଆରି ହେବ, ଉଚ୍ଚତର ଗବେଷଣା ଲାଗି ସୁବିଧା ମିଳିବ, ଇତ୍ୟାଦି । କେବଳ ଏତିକି କଥା, ଭାରତର ଅନ୍ୟ ରାଜ୍ୟର ମେଧାବୀ ଛାତ୍ରମାନଙ୍କ ଲାଗି ଆମ ବିଶ୍ୱବିଦ୍ୟାଳୟରେ ନିର୍ଦ୍ଦିଷ୍ଟ କେତୋଟି ସ୍ଥାନ ରହିବ । ସେଥିପାଇଁ ସ୍ୱତନ୍ତ୍ର ଅନୁଦାନ ରହିଛି ।

ମନ୍ତ୍ରୀମହୋଦୟଙ୍କ ମନ ମାନିଲା ନାହିଁ ଜାଣି ତାଙ୍କୁ ଅନୁରୋଧ କଲି, ''ଆପଣ ଦୟାକରି ବାଣୀବିହାରରେ ୩ ଦିନ ରହନ୍ତୁ, ତାପରେ ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟ ଓ ନେହରୁ ବିଶ୍ୱବିଦ୍ୟାଳୟରେ ସପ୍ତାହେ ଲେଖାଏଁ ରହନ୍ତୁ । ପାର୍ଥକ୍ୟ ବୁଝିପାରିବେ ।''

ଓଡ଼ିଶା ସରକାରଙ୍କ ଐକାନ୍ତିକ ସମର୍ଥନ ବିନା କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ବା ଅନ୍ୟ ଏକ ନୂତନ ବିଶ୍ୱବିଦ୍ୟାଳୟ ବିଷୟ କଳ୍ପନା କରିବା ମୋର ଚରମ ମୂର୍ଖତା ବୋଲି ଅବିଳମ୍ବେ ଜାଣିପାରିଲି ।

## ଏ ସମ୍ପର୍କରେ ରାଜୀବ ଗାନ୍ଧିଙ୍କ ନିକଟକୁ ପତ୍ର

୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଆତତାୟୀର ଗୁଳିରେ ପ୍ରାଣ ଦେଲେ । ନୂତନ ପ୍ରଧାନମନ୍ତ୍ରୀ ରାଜୀବ

ଗାନ୍ଧି ସେହି ବର୍ଷ ଡିସେମ୍ବର ମାସରେ ସାଧାରଣ ନିର୍ବାଚନ କରାଇଲେ । ତାଙ୍କର ସ୍କୁଲ ଦିନର ସହପାଠୀ ଚଳଚ୍ଚିତ୍ର ତାରକା ଅମିତାଭ ବଚ୍ଚନ ଏଲ୍ଲାହାବାଦ ନିର୍ବାଚନ ମଣ୍ଡଳୀରୁ ଲୋକସଭା ପାଇଁ ପ୍ରାର୍ଥୀ ହେଲେ । ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କୁ ନିର୍ବାଚନ ପ୍ରଚାରରେ ବ୍ୟବହାର କରିବା ଲକ୍ଷ୍ୟରେ ସେ ପ୍ରତିଶ୍ରୁତି ଦେଲେ ଯେ, ନିର୍ବାଚିତ ହେଲାପରେ ଏଲ୍ଲାହାବାଦକୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବେ । ଠିକ୍ ସେହିପରି କେନ୍ଦ୍ରମନ୍ତ୍ରୀ କେ.ସି.ପନ୍ଥ ଦକ୍ଷିଣ ଦିଲ୍ଲୀ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ସେଠାରେ ଗୋଟିଏ ନୂତନ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବେ ବୋଲି ପ୍ରତିଶ୍ରୁତି ଦେଇଦେଲେ ।

କଂଗ୍ରେସ ଦଳ ନିର୍ବାଚନରେ ଜୟଯୁକ୍ତ ହେଲେ ଓ ରାଜୀବ ଗାନ୍ଧି ପ୍ରଧାନମନ୍ତ୍ରୀ ପଦରେ ରହିଲେ । ୧୯୮୫ ଆରମ୍ଭରେ ଶୁଣିଲି, ଅମିତାଭ ବଚ୍ଚନ ପାର୍ଲିଆମେଣ୍ଟ ସଦସ୍ୟ ଭାବରେ ଏଲ୍ଲାହାବାଦକୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ କରିବା ପାଇଁ ୟୁ.ଜି.ସି.କୁ ପ୍ରସ୍ତାବ ଦେଲେଣି । କେ.ସି.ପନ୍ଥ ମଧ୍ୟ । ପ୍ରାରମ୍ଭିକ କାର୍ଯ୍ୟ ନିମନ୍ତେ ଅମିତାଭ ଏକ କୋଟି ଟଙ୍କା ମଞ୍ଜୁର ମଧ୍ୟ କରାଇନେଲେ ।

ଠିକ୍ କଲି, କଡ଼ା ଭାଷାରେ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖି ପ୍ରତିବାଦ ଜଣାଇବି । ଦୈବାତ୍‌କ୍ରମେ ଗାନ୍ଧି ପରିବାରର ପରମ ଆତ୍ମୀୟା ନିର୍ମଳା ଦେଶପାଣ୍ଡେ ଫେବ୍ରୁଆରୀ ୫ ତାରିଖ ଦିନ ମୋ ନିମନ୍ତ୍ରଣକ୍ରମେ ଆମ ବିଶ୍ୱବିଦ୍ୟାଳୟକୁ ଆସିଥାନ୍ତି । ତାଙ୍କରି ହାତରେ ରାଜୀବ ଗାନ୍ଧିଙ୍କ ପାଖକୁ ଚିଠି ପଠାଇବି ଠିକ୍ କଲି । ଦୀର୍ଘ ପତ୍ରର ସାରାଂଶ ଥିଲା–

ଆପଣଙ୍କ ଡୁନ୍ ସ୍କୁଲ ଦିନର ସହପାଠୀ ଅମିତାଭ ବଚ୍ଚନ ଆପଣଙ୍କ ବନ୍ଧୁତ୍ୱର ସୁଯୋଗ ନେଇ ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟକୁ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବାକୁ ମସୁଧା କଲେଣି । ଉତ୍ତରପ୍ରଦେଶରେ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ଆଲିଗଡ଼ ମୁସଲିମ୍ ବିଶ୍ୱବିଦ୍ୟାଳୟ ନାମକ ଦୁଇଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଥିଲାବେଳେ ସେଠାରେ ତୃତୀୟ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲେ 'ତେଲିଆ ମୁଣ୍ଡରେ ତେଲ' ସ୍ୱରୂପ ସରକାରୀ ନୀତିକୁ ଭାରତର ଶିକ୍ଷିତ ସମାଜ ସହଜରେ ମାନିନେବେ ନାହିଁ । ଅମିତାଭଙ୍କ କାର୍ଯ୍ୟ ଲାଗି ଭାରତର ପ୍ରଧାନମନ୍ତ୍ରୀ ଭାବରେ ଆପଣ ହିଁ ନିନ୍ଦିତ ହେବେ । ସେହିପରି, ରାଜଧାନୀ ଦିଲ୍ଲୀ ନଗରୀରେ ନେହରୁ ବିଶ୍ୱବିଦ୍ୟାଳୟ, ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଓ ଜାମିଆ ମିଲିଆ ପରି ୩ଟି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ରହିଥିଲା ବେଳେ, କେନ୍ଦ୍ରମନ୍ତ୍ରୀ କେ.ସି.ପନ୍ଥ ତାଙ୍କ ନିର୍ବାଚନମଣ୍ଡଳୀ ଦକ୍ଷିଣ ଦିଲ୍ଲୀରେ ଆଉ ଗୋଟିଏ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ ଲାଗି ଆଗେଇ ଗଲେଣି । ଓଡ଼ିଶା ପରି କେତେକ ବଡ଼ ବଡ଼ ରାଜ୍ୟରେ ଗୋଟିଏ ବୋଲି

କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ନଥିବା ବେଳେ ଉତ୍ତରପ୍ରଦେଶ ଓ ଦିଲ୍ଲୀରେ ଏତେଗୁଡ଼ିଏ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଦେଖି ଦେଶର ସଚେତନ ଗୋଷ୍ଠୀ ପ୍ରଧାନମନ୍ତ୍ରୀଙ୍କୁ ହିଁ ଭୁଲ୍ ବୁଝିବେ । ପ୍ରିୟାପ୍ରୀତି ଦୋଷାରୋପ ଆପଣଙ୍କ ବ୍ୟକ୍ତିତ୍ୱକୁ ସ୍ପର୍ଶ କରିବା ଉଚିତ ନୁହେଁ ଭାବି ଏପରି ପତ୍ର ଲେଖିବାକୁ ସାହସ କଲି ।"

ନିର୍ମଳା ଦେଶପାଣ୍ଡେ ଚିଠିଟି ପଢ଼ି ଚମକିଉଠିଲେ । ସେତେବେଳେ ମୋ ଘରେ ଭୋଜନ ପରେ ସେ ବିଶ୍ରାମ ନେଉଥାନ୍ତି । କହିଲେ, "ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଏପରି ଭାଷାରେ ଚିଠି ଲେଖିବା ଉଚିତ ନୁହେଁ । ସମସ୍ତେ ଜାଣନ୍ତି, ରାଜୀବ ଓ ଅମିତାଭ ବାଲ୍ୟବନ୍ଧୁ । ସେ କଥା ସୂଚାଇ ଦେଇ ବିଦ୍ରୂପ କରିବା ଠିକ୍ ନୁହେଁ । ଭାଷା ଓ ଶବ୍ଦ ବଦଳ କରି ଆଉ ଥରେ ଚିଠି ଲେଖିଲେ, ନେଇଯିବି । ଏ ଚିଠି ଖଣ୍ଡିକ କଦାପି ନେବି ନାହିଁ ।"

"ଗୋଟିଏ ଅକ୍ଷର ବି ବଦଳ କରିବି ନାହିଁ । ଯାହା ସତ୍ୟ, ସେହି କଥା ଲେଖିଛି । ପ୍ରଧାନମନ୍ତ୍ରୀ ବିରକ୍ତ ହେଲେ ମୋ'ର ଦୁଃଖ ନାହିଁ ।" ଅନେକ କଷ୍ଟରେ ତାଙ୍କୁ ରାଜି କରାଇଲି । ସେ ନିଜେ ରାଜୀବ ଗାନ୍ଧିଙ୍କୁ ଚିଠିଟି ପଢ଼ାଇବେ ବୋଲି ପ୍ରତିଶ୍ରୁତି ଦେଲେ । ବିଶ୍ୱସ୍ତ ସୂତ୍ରରୁ ଶୁଣିପାରିଲି, ପ୍ରଧାନମନ୍ତ୍ରୀ କ୍ଷୁବ୍ଧ ହେବା ପରିବର୍ତ୍ତେ ଖୁସି ହେଲେ ଓ ଏଲ୍ଲାହାବାଦ ଏବଂ ଦକ୍ଷିଣ ଦିଲ୍ଲୀରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେବ ନାହିଁ ବୋଲି ଲେଖିଦେଇଥିଲେ । ଅବଶ୍ୟ, ତଦ୍ୱାରା ଉତ୍କଳ ବିଶ୍ୱବିଦ୍ୟାଳୟର କିଛି ଲାଭ ହେଲା ନାହିଁ ।

କୁଳପତି ପଦରେ ରହି କୌଣସି ନୂତନ କାର୍ଯ୍ୟ କରିବା ସମ୍ଭବ ହେଲା ନାହିଁ । ଅପର ପକ୍ଷରେ, ସେହି ପଦ ଯୋଗୁଁ ଅନେକଙ୍କ ବିଷଦୃଷ୍ଟିରେ ପଡ଼ିବା ସାର ହେଲା । ସର୍ବୋପରି, କାରଣ ନ ଥାଇ ମଧ୍ୟ ଅଶାନ୍ତି ଉପଦ୍ରବ ! ଦୃଷ୍ଟାନ୍ତଟିଏ ତଳେ ଲେଖିଲି ।

## ଗୋଟିଏ ରାତ୍ରିର ଦାରୁଣ ପରିସ୍ଥିତି

ଆଗରୁ କହିଛି, କୁଳପତି ସମ୍ମେଳନରେ କ୍ୟାମ୍ପାସ୍ ଭିତରକୁ ପୋଲିସ ପ୍ରବେଶ ପ୍ରସ୍ତାବ ବିରୋଧରେ ମୁଁ ସ୍ୱର ଉତ୍ତୋଳନ କରିଥିଲି । ସେଥିପାଇଁ ଅନ୍ୟମାନେ ମୋତେ ଧିକ୍କାର କରିଥିଲେ । ସେମାନେ ଯେ ବାସ୍ତବବାଦୀ ଓ ବିଚକ୍ଷଣ ଥିଲେ ଏବଂ ମୁଁ ନିର୍ବୋଧ ଥିଲି, ତାହାର ପ୍ରମାଣ ପାଇଲି ଗୋଟିଏ ରାତିର ଅପ୍ରତ୍ୟାଶିତ ଏକ ଘଟଣା ଯୋଗୁଁ ।

ସମ୍ବଲପୁରର ବୁର୍ଲାଠାରେ ତଥାକଥିତ 'ଛାତ୍ର ସଂହାର' ଘଟିଯାଇଥାଏ । କୌଣସି ଏକ ଗୋଷ୍ଠୀର ସଂଗଠିତ ଆକ୍ରମଣରେ ଇଞ୍ଜିନିୟରିଂ କଲେଜର ୧୩ ଜଣ ଛାତ୍ର

କେନାଲ ଭିତରକୁ ଡେଇଁପଡ଼ି ଶୋଚନୀୟ ଭାବେ ପ୍ରାଣ ହରାଇଥିଲେ । ପ୍ରତିକ୍ରିୟା ସ୍ୱରୂପ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଲା । ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ପୋଲିସ ଗୁଳିରେ କେତେଜଣ ଛାତ୍ରଙ୍କ ଜୀବନ ଗଲା ଓ ଅନ୍ୟମାନେ ଆହତ ହେଲେ । ଏହିସବୁ ଘଟଣାର ପ୍ରଭାବ ପଡ଼ିଲା ବାଣୀବିହାର ଛାତ୍ରମାନଙ୍କ ଉପରେ ।

ସେପ୍ଟେମ୍ବର ୯ ତାରିଖ, ୧୯୮୪ ମସିହା ଅପରାହ୍ନ ୪ଟା ବେଳେ ଭୁବନେଶ୍ୱରର କେନ୍ଦ୍ରାଞ୍ଚଳ ରାଜମହଲ ଛକଠାରେ ବିପକ୍ଷ ଦଳ ପକ୍ଷରୁ ସରକାର ବିରୋଧୀ ଜନସମାବେଶ ଆୟୋଜିତ ହୋଇଥାଏ । ବୁର୍ଲାର ମୃତ ଛାତ୍ରଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ସେଠାରେ ପ୍ରାର୍ଥନା ଓ ପୁଷ୍ପ ଅର୍ପଣ ନିମନ୍ତେ ବାଣୀବିହାରରୁ ଅନେକ ଛାତ୍ରୀ ଯାଇଥିଲେ । ୫ଟା ବେଳେ ସେମାନେ ଫେରିବା ସମୟରେ କ୍ୟାମ୍ପାସ୍ ଠାରୁ ଅଳ୍ପ ଦୂରରେ ଥିବା ପୋଲିସ ସାହେବଙ୍କ ଅଫିସ୍ ଗେଟ୍ ସାମନାରେ ଦୁଇଜଣ ସବ୍‌ଇନ୍ସପେକ୍ଟର ପୋଲିସ୍ ଫୋର୍ସ ଦ୍ୱାରା ଝିଅମାନଙ୍କ ଗତିରୋଧ କଲେ । ଯୁକ୍ତି ଥିଲା, ଝିଅ ଦଳ ମଧ୍ୟରେ ଉପଦ୍ରବୀ ଛାତ୍ରନେତା ମୋହନ ଜେନା ଓ ଆଲୋକ ଜେନା ଆତ୍ମଗୋପନ କରି ସଭାରୁ ଫେରୁଛନ୍ତି ଓ ସେମାନଙ୍କ ନାମରେ ୱାରେଣ୍ଟ ଥିବା ଯୋଗୁଁ ଗ୍ରେପ୍ତାର କରାଯିବ । ଠେଲାପେଲା ଓ ଧସ୍ତାଧସ୍ତି ବେଳେ କେତେଜଣ ଛାତ୍ରୀ ଅଳ୍ପ ବହୁତେ ଆହତ ହେଲେ ଏବଂ ମୋ ଅଫିସ କକ୍ଷରେ ପହଞ୍ଚି ତୁରନ୍ତ ପ୍ରତିକାର ଦାବି କଲେ । ବାହାରୁ ପାଟି ଶୁଭିଲା, ପୋଲିସ ମାଡ଼ରେ ଗୁରୁତର ଆହତ ଛାତ୍ରନେତାଙ୍କୁ ହସ୍‌ପିଟାଲ ନିଆଗଲାଣି ।

କ୍ୟାପିଟାଲ ହସ୍‌ପିଟାଲକୁ ଯାଇ ଆହତ ପିଲାଙ୍କୁ ଦେଖିବା ଉଦ୍ଦେଶ୍ୟରେ ତଳକୁ ଆସିଲି । ସନ୍ଧ୍ୟା ଆସିଯାଉଥାଏ । ଆଖିରେ ପଡ଼ିଲା ଅସ୍ୱାଭାବିକ ଗୋଧୂଳିର ଦୃଶ୍ୟ । ଛାତ୍ରାବାସଗୁଡ଼ିକରୁ ଶହ ଶହ ଛାତ୍ର ବିକ୍ଷୋଭ ଯାତ୍ରା ଲାଗି ବାହାରି ଆସୁଥାନ୍ତି । ମୁଖରେ ରଣଧ୍ୱନି ! ତଡ଼ିତ ଗତିରେ ପ୍ରଚାର ହୋଇଗଲା, ବି.ଜେ.ବି. ଓ ଏକାମ୍ର କଲେଜରୁ ଛାତ୍ରମାନେ ଆସିଯିବେ; ରାଜମହଲ ଛକରୁ ହଜାର ହଜାର ଲୋକ ମାଡ଼ି ଆସିବେ; ପୋଲିସ ଅଫିସରେ ନିଆଁ ଲାଗିବ ! ଧ୍ୱନି ଶୁଭିଲା, "ଆମ ଭଉଣୀମାନଙ୍କୁ ପୋଲିସ ଆକ୍ରମଣ କରିଛି, ସରକାରୀ ଦମନଲୀଳାର ପ୍ରତିଶୋଧ ନେବୁଁ ।"

ସନ୍ଧ୍ୟା ୭ଟା ବେଳକୁ ପ୍ରାୟ ଦୁଇହଜାର ଛାତ୍ରର ଶୋଭାଯାତ୍ରା କ୍ୟାମ୍ପାସ୍ ଗେଟ୍ ପାଖରେ ପହଞ୍ଚିଲାବେଳକୁ ବାହାର ଅଞ୍ଚଳରୁ ଅସଂଖ୍ୟ ଛାତ୍ର ଓ ଅଣଛାତ୍ରଙ୍କ ସୁଅ ମାଡ଼ି ଆସୁଥାଏ । ମୋର ବାରଣ ସତ୍ତ୍ୱେ ବିକ୍ଷୋଭକାରୀମାନେ ପୋଲିସ କାର୍ଯ୍ୟାଳୟ ଦିଗକୁ ଆଗେଇ ଚାଲିଲେ । ଚାହୁଁ ଚାହୁଁ ଚାରିପାଖ ରାସ୍ତା ଓ ମୁକ୍ତ ପଡ଼ିଆ ଲୋକାରଣ୍ୟରେ ପରିଣତ ହେଲା । ଗୋଟିଏ ଉଚ୍ଚ ସ୍ଥାନରେ

ଛିଡ଼ା ରହି ଦେଖିଲି, ହେଲମେଟ୍ ପିନ୍ଧିଥିବା ଶହ ଶହ ଲାଠି ଓ ବନ୍ଧୁକଧାରୀ ପୋଲିସ ବ୍ୟୂହ ରଚନା କରି ଶତ୍ରୁପକ୍ଷର ଅପେକ୍ଷା କଲେଣି । ଆକ୍ରମଣ ଓ ପ୍ରତିଆକ୍ରମଣ ପାଇଁ ଉଭୟ ପକ୍ଷର ପ୍ରସ୍ତୁତି ଚାଲିଲା । 'ନର ଘାତକ' ଓ 'ଛାତ୍ରହନ୍ତା' ଇତ୍ୟାଦି ଉତ୍କଟ ବାକ୍ୟବାଣରେ ଜନତା ପୋଲିସବାହିନୀକୁ ଉତ୍ତ୍ୟକ୍ତ କଲେ । କେହି ଜଣେ ଅଜ୍ଞାତ ବ୍ୟକ୍ତି ଅନ୍ଧକାର ମଧ୍ୟରେ ମୋତେ ଆବିଷ୍କାର କରି ଖବର ଦେଲେ, ରାଜମହଲ ଛକରେ ସଭା ଶେଷ ହେବା ଉପରେ । ସେଠାରୁ ଲୋକେ ଆସିଗଲେ, ଆକ୍ରମଣ ଆରମ୍ଭ ହେବ । ରାତି ୧୦ଟା ବେଳକୁ ଅବସ୍ଥା ଅସମ୍ଭାଳ ହେଲା । କୁଳସଚିବ ମେଜର ପି.କେ.ଦାସ ଓ ଅଧ୍ୟାପକମାନେ ମୋତେ ଗେଟ୍ ପାଖରୁ ଚାଲି ଆସିବାକୁ ଅନୁରୋଧ କଲେ । କ୍ୟାମ୍ପାସ୍ ବାହାରେ ଯାହା କିଛି ଘଟିଲେ ସେଥିପାଇଁ କୁଳପତି ଦାୟୀ ହେବେନାହିଁ ବୋଲି ସେମାନଙ୍କ ଯୁକ୍ତି ଥାଏ । କିନ୍ତୁ କିଂକର୍ତ୍ତବ୍ୟବିମୂଢ଼ ଭାବରେ ମୁଁ ଛିଡ଼ା ରହିଲି ।

ଆରମ୍ଭ ହେଲା ଯୁଦ୍ଧାରମ୍ଭର ପ୍ରଚଣ୍ଡ ଶବ୍ଦ । ରାଜମହଲ ଛକରୁ ଯୋଦ୍ଧାମାନେ ଆସିଯାଇଥାନ୍ତି । ପୋଲିସ ଅଫିସ ଦିଗକୁ ସବୁଦିଗରୁ ଢେଲା ଓ ପଥରମାଡ଼ ଚାଲିଲା । ଢେଲାବିଦ୍ଧ ପୋଲିସମାନେ ପ୍ରତି ଆକ୍ରମଣ ଲାଗି ଅଧୈର୍ଯ୍ୟ ହେଲେ । ଜିଲ୍ଲା କଲେକ୍ଟର ତଥା ମାଜିଷ୍ଟ୍ରେଟ୍ ନରେନ୍ଦ୍ର କୁମାର ମହାପାତ୍ର ଏବଂ ପୋଲିସ ସାହେବ କୁଳମଣି ଦେଓ ସଶସ୍ତ୍ର ଶରୀରରକ୍ଷୀଙ୍କ ଗହଣରେ ଯଥାସ୍ଥାନରେ ଦଣ୍ଡାୟମାନ ହେଲେ । ଗୋଟିଏ ଦିଗରୁ ବିକଟ ଚିତ୍କାର ସହ ପଥର ବର୍ଷଣ ଓ ଅନ୍ୟ ପକ୍ଷରୁ ଘନ ଘନ ହୁଇସିଲ୍ ସହ ଲାଠି ଉତ୍ତୋଳନ ! ଚାରି ଦିଗରେ କୋଳାହଳ । କିଏ ଜଣେ ଦୌଡ଼ିଆସି ଗେଟ୍ ପାଖରେ ମୋ ଆଡ଼କୁ ଚାହିଁ ପାଟିକଲେ, "ପୋଲିସ ସାହେବ ସତର୍କ ବାଣୀ ଶୁଣାଇ ଛତ୍ରଭଙ୍ଗ ଦେବାକୁ କହିଲେଣି, ଏବେ ଲାଠି ଓ ଗୁଳି ଚାଲିବ ।"

କ୍ଷଣିକରେ ଭାବପ୍ରବଣତାରେ ମୁଁ ପୋଲିସ ଫୋର୍ସ ଆଗକୁ ଦୌଡ଼ି ଚାଲିଗଲି । ଦୁଇଜଣ ଅଧ୍ୟାପକ ମୋ ପଛରେ ଦୌଡ଼ିଲେ । ରାଜପଥର ଦକ୍ଷିଣ ଦିଗରେ କଲେକ୍ଟର ପୋଲିସ ସାହେବ ଓ ଫୋର୍ସ; ଉତ୍ତର ଦିଗରେ ବାଣୀବିହାରର ଶହ ଶହ ଛାତ୍ର; ଅନ୍ୟତ୍ର ସବୁଆଡ଼େ ବିକ୍ଷୁବ୍ଧ ଜନତା । ଛାତ୍ରମାନଙ୍କ ସମ୍ମୁଖରେ ଛିଡ଼ା ରହି ଉଚ୍ଚ ସ୍ୱରରେ କହିଲି, "ମୁଁ ତୁମର କୁଳପତି । ମୋ କଥା ମାନି କ୍ୟାମ୍ପାସ ଭିତରକୁ ଫେରି ନଗଲେ ମୁଁ ଗୁଳି ଆଗରେ ଛିଡ଼ା ହୋଇ ରହିବି ।" ଛାତ୍ରନେତାମାନେ ହଠାତ୍ ସ୍ଲୋଗାନ ବନ୍ଦ କରିବା ଦେଖି ସେମାନଙ୍କୁ ଠେଲି ଠେଲି କ୍ୟାମ୍ପାସ୍ ଦିଗକୁ ନେବା ଲାଗି ବଳ ପ୍ରୟୋଗ କଲି । ଗୋଟିଏ ପାଦ ସେମାନେ ପଛାଇବା ଦେଖି ମୋ ସାହସ ବଢ଼ିଗଲା । ସେତେବେଳକୁ ଅନ୍ୟ ସବୁ ଦିଗରୁ ପୋଲିସ

ଆଡ଼କୁ ଢେଲା ମାଡ଼ ଚାଲିଥାଏ । ଅକସ୍ମାତ୍ ମୋ ପାଟିରୁ ବାହାରି ଗଲା, "କଲେକ୍ଟର ମହୋଦୟ ଓ ପୋଲିସ ସାହେବଙ୍କୁ ମୋ ସହିତ କ୍ୟାମ୍ପାସ୍ ଭିତରକୁ ଆସିବା ଲାଗି ଅନୁରୋଧ କରୁଛି । ସେଠାରେ ଆପୋଷ ସମାଧାନ ଲାଗି କଥାବାର୍ତ୍ତା ହେବ । କିନ୍ତୁ, ପୋଲିସ ଫୋର୍ସ ଏହିଠାରେ ରହିବେ ।"

ନରେନ୍ଦ୍ର ବାବୁ ଓ କୁଳମଣି ବାବୁ ମନ୍ତ୍ରଚାଳିତ ଭାବେ ମୋ ପଛେ ପଛେ ଚାଲିଲେ । ଛାତ୍ରମାନଙ୍କୁ ଠେଲି ଠେଲି ଗେଟ୍ ପର୍ଯ୍ୟନ୍ତ ନେଇଗଲି । ପୋଲିସ ଫୋର୍ସ ନିଜ ସ୍ଥାନରେ ଛିଡ଼ା ରହିଲେ । ଗେଟ୍ ପାଖରେ ଗଳା ଫଟାଇ ଛାତ୍ରମାନଙ୍କୁ କହିଲି, "ତୁମ କୁଳପତିଙ୍କ ଉପରେ ବିଶ୍ୱାସ ରଖି କଲେକ୍ଟର ଓ ପୋଲିସ ସାହେବ କ୍ୟାମ୍ପସ୍ ମଧ୍ୟକୁ ନିରସ୍ତ୍ର ଓ ଏକାକୀ ଯିବା ପାଇଁ ମୋ ସାଙ୍ଗରେ ନିର୍ଭୟରେ ଆସିଛନ୍ତି । ମୋର ବିଶ୍ୱାସ, ଛାତ୍ରମାନେ ଆଲୋଚନା ଲାଗି ସେମାନଙ୍କୁ ଭିତରକୁ ପାଛୋଟି ନେବେ ।" ସମସ୍ୱରରେ ଅନେକେ ପାଟିକଲେ, "ସେମାନଙ୍କୁ ଆମେ ନିରାପତ୍ତା ଦେବୁ ।"

ସମୟ ପ୍ରାୟ ମଧ୍ୟରାତ୍ରି । ଗେଟ୍ ପାଖରୁ ସମାବର୍ତ୍ତନ ମଞ୍ଚ ପର୍ଯ୍ୟନ୍ତ ଗଲାବେଳେ କୌଣସି ବିପଦର ସଂକେତ ଦେଖିଲି ନାହିଁ । ମଞ୍ଚ ଉପରେ ଆମେ ତିନିଜଣ ଛିଡ଼ା ରହି ଛାତ୍ରମାନଙ୍କୁ ଶାନ୍ତ ହେବା ଲାଗି ଉପଦେଶ ଦେଉଥିଲାବେଳେ, ବିଜୁଳିବତିଗୁଡ଼ିକ ଅକସ୍ମାତ ଲିଭିଗଲା । ଅନ୍ଧକାର ଭିତରେ ଦେଖିବାକୁ ମିଳିଲା ବାହାରୁ ଜନସ୍ରୋତ ମାଡ଼ିଆସୁଛି । ବିକଟ ରଡ଼ି ଶୁଭିଲା, "ମାର କଲେକ୍ଟରକୁ, ମାର ଏସ୍.ପି.କୁ । ତିନି ତିନିଟା ଜାଗାରେ ଏହି ଏସ୍.ପି. ଗୁଳିକରି ମଣିଷ ମାରିଛି । ଆଜି ଏଠାରେ ମରିବ ।" ଆତଙ୍କପ୍ରଦ ଚିତ୍କାର ସହ ଜନତା ମଞ୍ଚ ଉପରକୁ ଉଠିଆସିଲେ । ଜାଣିନେଲି, କ୍ୟାମ୍ପାସ୍ ଏବେ ଉପଦ୍ରବୀମାନଙ୍କ ଆୟତ୍ତରେ । ଅନ୍ଧକାର ଭିତରେ କଲେକ୍ଟର ଓ ଏସ୍.ପି.ଙ୍କୁ ଛୁରା ଭୁଷିବା ଅସମ୍ଭବ ନୁହେଁ । ଦୁଇ ଅତିଥିଙ୍କୁ ଘେରି ରଖିବା ପାଇଁ ଛାତ୍ରମାନଙ୍କୁ ଗୋପନରେ ନିର୍ଦ୍ଦେଶ ଦେଲି । କେତେଜଣ ଅଣଛାତ୍ର ସେତେବେଳକୁ ମୋତେ ଟାଣିନେବା ପାଇଁ ବାରମ୍ବାର ଚେଷ୍ଟା କଲେ । ସୌଭାଗ୍ୟକୁ ଗଭୀର ଅନ୍ଧକାର ଯୋଗୁଁ ଓ ଭିଡ଼ ମଧ୍ୟରେ ଆତତାୟୀମାନେ କଲେକ୍ଟର ଓ ପୋଲିସ ସାହେବଙ୍କୁ ବୋଧହୁଏ ଠାବ କରିପାରିଲେ ନାହିଁ ।

ଛାତ୍ର ଓ ଅଧ୍ୟାପକମାନଙ୍କ ସାହାଯ୍ୟରେ କୌଶଳକ୍ରମେ ଜନତାର ଚକ୍ରବ୍ୟୂହ ଭେଦକରି ଦୁଇବନ୍ଧୁଙ୍କୁ ମଞ୍ଚ ତଳକୁ ନେଇ, ସେଠାରୁ ଉପର ତାଲାରେ ମୋ କକ୍ଷ ପର୍ଯ୍ୟନ୍ତ ନେଇ ଯାଇ ପାରିଲି । ଠେଲାପେଲା ଓ ଦଳାଚକଟାରେ ମୋ ସାର୍ଟ କୋଟ୍ ଛିଣ୍ଡିଯାଇଥାଏ । ଛାତ୍ରନେତାମାନଙ୍କୁ ମୋ ସହିତ ଆସିବାକୁ କହି

ଜନସମୁଦ୍ର ମଧ୍ୟରୁ ଅଜ୍ଞାତ ପଥରେ ଖସିଯିବା ଥିଲା ଗୋଟିଏ ପ୍ରକାର ଅସାଧ୍ୟ ସାଧନ ।

ମୋ ପ୍ରକୋଷ୍ଠ ଚାରିପାଖରେ ଶହ ଶହ ଛାତ୍ର ଘେରି ରହିଲେ । ପେଟ୍ରୋମ୍ୟାକ୍ସ ଜାଳି କକ୍ଷଟିକୁ ଆଲୋକିତ କରାଗଲା । କଲେକ୍ଟର ମହୋଦୟ ସେହି ସ୍ଥାନକୁ ତାଙ୍କର କୋର୍ଟ ବୋଲି ଘୋଷଣା କରି ରାୟ ଶୁଣାଇଲେ ଯେ, "ଯେଉଁ ଦୁଇଜଣ ପୋଲିସ କର୍ମଚାରୀ ବାଣୀବିହାର ଛାତ୍ରୀମାନଙ୍କୁ ବିନା କାରଣରେ ଆକ୍ରମଣ କରିଥିଲେ ବୋଲି ଅଭିଯୋଗ ଆସିଛି, ସେମାନଙ୍କୁ ସାମୟିକ ଭାବେ କାର୍ଯ୍ୟରୁ ଅନ୍ତର କରାଗଲା ।" ରାୟ ଘୋଷଣା ତତ୍‌କ୍ଷଣାତ୍ ବାହାରେ ପ୍ରଚାର କରିଦିଆଗଲା । ଛାତ୍ରଛାତ୍ରୀମାନଙ୍କର ଜୟ ହୋଇଛି ବୋଲି ଛାତ୍ରନେତାମାନେ ଘୋଷଣା କଲାବେଳେ ବାହାରେ ଭୀଷଣ କୋଳାହଳ ଶୁଣି ଅନୁମାନ କରାଗଲା ଯେ ବାହାରୁ ଆସିଥିବା ଅଣଛାତ୍ରମାନେ ଗଭୀର ଭାବେ ଅସନ୍ତୁଷ୍ଟ ଓ ଉପଦ୍ରବ ପାଇଁ ଉଦ୍ୟତ । ମୁହୂର୍ତ୍ତମାତ୍ର କାଳ ବିଳମ୍ବ ନ କରି ମୁଁ ଗୋପନରେ କଲେକ୍ଟର ଓ ଏସ୍.ପି.ଙ୍କୁ ଭିନ୍ନ ଏକ ରାସ୍ତାରେ କ୍ୟାମ୍ପାସ୍ ବାହାରକୁ ନେଇ ଚାଲିଗଲି । ସେତେବେଳକୁ ବାହାରେ ଥାନ୍ତି ବିପୁଳ ସଂଖ୍ୟକ ମିଲିଟାରୀ ଫୋର୍ସ ।

ନିରାପଦ ଅବସ୍ଥାରେ କଲେକ୍ଟର ଓ ପୋଲିସ ସାହେବଙ୍କୁ ଯଥାସ୍ଥାନରେ ଛାଡ଼ିଲା ବେଳେ ଶୁଣିଲି, ମୁଖ୍ୟମନ୍ତ୍ରୀ, ଅନ୍ୟାନ୍ୟ ମନ୍ତ୍ରୀ, ମୁଖ୍ୟ ଶାସନ ସଚିବ ଓ ପୋଲିସ ଆଇ.ଜି. ପ୍ରଭୃତି ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ ବସି ରହିଛନ୍ତି । ସେମାନଙ୍କ ଉତ୍କଣ୍ଠା ବୁଝି ସଙ୍ଗେ ସଙ୍ଗେ ଫୋନ୍ କରି କହିଲି, "ଜାନକୀବାବୁ, ସବୁ ଦୋଷ ମୋର । ମୋର ଭୁଲ ପାଇଁ କଲେକ୍ଟର ଓ ଏସ୍.ପି.ଙ୍କୁ ଦୋଷ ଦେବେ ନାହିଁ । ଜୀବନ ବିପନ୍ନ କରି ସେମାନେ ରିସ୍କ ନେଇଥିବା ଯୋଗୁଁ ନିଶ୍ଚିତ ଗୁଳିକାଣ୍ଡ ଏଡ଼ାଇ ଦିଆଯାଇ ପାରିଲା ।" ମୁଖ୍ୟମନ୍ତ୍ରୀ କେବଳ ପଚାରିଲେ, "କଲେକ୍ଟର ଓ ଏସ୍.ପି. ଭଲରେ ଫେରିଛନ୍ତି ତ ?"

ଏହି ଘଟଣା ପରେ ନାନାପ୍ରକାର ନିନ୍ଦା ଓ ସମାଲୋଚନାର ଶରବ୍ୟ ହେଲି ମୁଁ । ଜଣେ ବିଚକ୍ଷଣ ଶାସନ ସଚିବ ଆକ୍ଷେପ କରି ମୋତେ କହିଲେ, "ଆପଣଙ୍କ ପ୍ରଭାବ କ୍ଲାସ୍‌ରୁମ୍‌ରେ କିମ୍ବା କ୍ୟାମ୍ପାସ୍ ଛାତ୍ରମାନଙ୍କ ଉପରେ । କିନ୍ତୁ ବାହାରର ଉଚ୍ଛୃଙ୍ଖଳ ଓ ଉତ୍‌କ୍ଷିପ୍ତ ଜନତା ଆପଣଙ୍କୁ ମାନିବେ କାହିଁକି ? ଯଦି କୌଣସି ବିପକ୍ଷ ଦଳର ଭଡ଼ାଟିଆମାନେ ଅନ୍ଧାରର ସୁଯୋଗ ନେଇ କଲେକ୍ଟର ଓ ଏସ୍.ପି.ଙ୍କୁ ମାରି ପକାଇଥାନ୍ତେ, ତେବେ ଓଡ଼ିଶା ସରକାର ଓ ଶାସନ କଳର ଦୁର୍ନାମ ସାରା ଭାରତରେ ରଟିଯାଇଥାନ୍ତା । ସେଥିପାଇଁ ଦାୟୀ ହୋଇଥାନ୍ତା କିଏ ?" ଶୁଣିଲି, କମାଣ୍ଡୋ ଫୋର୍ସ ଉଦ୍ଧାର କାର୍ଯ୍ୟ ଲାଗି ଉଦ୍ୟତ ଥିଲାବେଳେ, ମୁଖ୍ୟମନ୍ତ୍ରୀ

ବାରମ୍ବାର କହିଥିଲେ, "କୁଳପତି ସେମାନଙ୍କ ପାଖରେ ଥିବା ପର୍ଯ୍ୟନ୍ତ ଭିତରକୁ ପଶିବା ଉଚିତ ନୁହେଁ ।" କମାଣ୍ଡୋମାନେ କିପରି ଭାବରେ ଉଦ୍ଧାର କରିଥାନ୍ତେ ସେ କଥା ଜଣେ ଅଭିଜ୍ଞ ବ୍ୟକ୍ତିଙ୍କ ପାଖରୁ ଶୁଣିଲି । ଛଦ୍ମବେଶରେ ମଦ୍ୟପ ଓ ଗୁଣ୍ଡାମାନଙ୍କ ପରି ସେମାନେ କଲେକ୍ଟର ଓ ଏସ୍.ପି.ଙ୍କୁ ମାରିଦେବେ ବୋଲି ଚିତ୍କାର କରି କରି ବୋମା ଓ ଅସ୍ତ୍ରଶସ୍ତ୍ରର ଭୟ ଦେଖାଇ ତଡ଼ିତବେଗରେ ଲୋକଙ୍କୁ ଠେଲି ପେଲି ପଶିଯାଇଥାନ୍ତେ ଓ ଦୁଇଜଣଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ନେଇ ଅନ୍ତର୍ଦ୍ଧାନ ହୋଇଥାନ୍ତେ ।

କ୍ରମେ କ୍ରମେ ଅନେକ କଥା ଜଣାପଡ଼ିଲା । ରାଜନୈତିକ ଅସ୍ଥିରତା ସୃଷ୍ଟିଲାଗି ସେହି ରାତ୍ରିରେ ଅପୂର୍ବ ସୁଯୋଗ ମିଳିଯାଇଛି ବୋଲି କେତେଜଣ ରାଜନେତା ଅଧୀର ହୋଇ ଉଠିଥିଲେ । ଏକେ ପୋଲିସ କାର୍ଯ୍ୟାଳୟ ଆଗରେ ଗୁଳିକାଣ୍ଡରେ କେତେକ ମରିଥାନ୍ତେ, ନଚେତ୍ କ୍ୟାମ୍ପାସ୍ ଭିତରେ କଲେକ୍ଟର ଓ ଏସ୍.ପି.ଙ୍କ ପତନ ପରେ ଉତ୍ତ୍ୟକ୍ତ ପୋଲିସ୍ ଫୋର୍ସ ଛାତ୍ରମାନଙ୍କୁ ଆକ୍ରମଣ କରି ପ୍ରତିଶୋଧ ନେଇଥାନ୍ତେ । ଯାହା ଘଟିଥିଲେ ମଧ, ସରକାରଙ୍କ ବିପକ୍ଷରେ ତାହା ହୋଇଥାନ୍ତା ଏକ ଆୟୁଧ ।

ଦୁଃଖ ହେଲା, ସମସ୍ତେ ମୋର କଠୋର ସମାଲୋଚନା କଲେ । କିନ୍ତୁ କେହି ଜଣେ ହେଲେ କହିଲେ ନାହିଁ ଯେ, କୁଳପତିଙ୍କ ରିସ୍କ ଯୋଗୁଁ ଗୁଳିକାଣ୍ଡ ଘଟିଲା ନାହିଁ ଓ କେତେଜଣଙ୍କ ଜୀବନ ରକ୍ଷା ପାଇଗଲା !

## କଂଗ୍ରେସ ଇତିହାସ ସଂକଳନ ପ୍ରସଙ୍ଗ

କୁଳପତି ପଦରେ ଥିଲାବେଳେ ତେଣେ କଂଗ୍ରେସ ଇତିହାସ ଲେଖା ଚାଲିଥାଏ । ସେଥିଲାଗି କେତେଥର ଦିଲ୍ଲୀ ଯିବାକୁ ହେଲା, କଂଗ୍ରେସ କମିଟି ଟଙ୍କାରେ । କଂଗ୍ରେସର ଶତବର୍ଷର ଇତିହାସକୁ ପାଞ୍ଚଖଣ୍ଡ ଗ୍ରନ୍ଥରେ ପ୍ରଣୟନ କରାଯିବ ବୋଲି ଇନ୍ଦିରା ଗାନ୍ଧିଙ୍କ ନିର୍ଦ୍ଦେଶ ଥାଏ । ସେଥି ନିମନ୍ତେ, ପାଞ୍ଚଜଣ ଐତିହାସିକଙ୍କ ମଧ୍ୟରେ କାର୍ଯ୍ୟ ବଣ୍ଟନ କରାଗଲା । ସେମାନେ ହେଲେ, କଲିକତାର ନିଶୀଥ ରଞ୍ଜନ ରାୟ, ଦିଲ୍ଲୀର ରବୀନ୍ଦ୍ର କୁମାର, ମୁଁ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଇକ୍‌ବାଲ ନାରାୟଣ ଓ ସେତେବେଳର ଗୃହମନ୍ତ୍ରୀ ପି.ଭି.ନରସିଂହ ରାଓ । ସଂକଳନ କମିଟିର ଉପଦେଷ୍ଟା ଥିଲେ ଉମାଶଙ୍କର ଦୀକ୍ଷିତ ଓ ଶଙ୍କର ଦୟାଳ ଶର୍ମା ପ୍ରଭୃତି କେତେଜଣ ବୟୋଜ୍ୟେଷ୍ଠ କଂଗ୍ରେସ ନେତା ଏବଂ ସାରଦା ପ୍ରସାଦ ପ୍ରଭୃତି ପ୍ରବୀଣ ପ୍ରଶାସକ । ଇନ୍ଦିରା ଗାନ୍ଧି ଥିଲେ ଅଧ୍ୟକ୍ଷା ଓ ଓଡ଼ିଶା ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ ଥିଲେ ସମ୍ପାଦକ ।

ଗୋଟିଏ ମିଟିଂରେ ପି.ଭି.ନରସିଂହରାଓଙ୍କୁ କହିଲି, ‘‘ଇତିହାସ ଲେଖିବାକୁ ଆପଣ ସମୟ ପାଇବେ ନାହିଁ । ଆମମାନଙ୍କୁ ସେ ଦାୟିତ୍ୱ ଛାଡ଼ିଦିଅନ୍ତୁ ।’’ ସେ ଉତ୍ତର ଦେଲେ, ‘‘ଶତବାର୍ଷିକୀ ସମାରୋହରେ ପ୍ରଥମ ତିନିଖଣ୍ଡି ଗ୍ରନ୍ଥ ଉନ୍ମୋଚିତ ହେବ, ଯଥା- କଂଗ୍ରେସର ଜନ୍ମକାଳରୁ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଇତିହାସ । ଇକ୍‌ବାଲ ନାରାୟଣ ଲେଖିବେ ‘ନେହରୁ ଯୁଗ’ ଓ ମୁଁ ଲେଖିବି ‘ଇନ୍ଦିରା ଯୁଗ’ର କଂଗ୍ରେସ ଇତିହାସ । ଏହି ଦୁଇଟି ଗ୍ରନ୍ଥ ପରେ ପ୍ରକାଶ ପାଇବ । ତେଣୁ, ମୁଁ ତରତରରେ ନ ଲେଖି ଧୀରେ ସୁସ୍ଥେ ଲେଖିବି ।’’ ସମୟ ନ ଥିଲେ ମଧ୍ୟ ତାଙ୍କର ଲେଖିବା ଆଗ୍ରହ ରହିଥାଏ ।

ଆଉ ଗୋଟିଏ ମିଟିଂର କଥା । ସେଦିନ ଇନ୍ଦିରା ଗାନ୍ଧି ମିଟିଂ କକ୍ଷକୁ ଆସି ଅଳ୍ପ ସମୟ ପରେ ଚାଲିଗଲେ । କାର୍ଯ୍ୟକ୍ରମ ଥାଏ, ପ୍ରତ୍ୟେକ ଲେଖକ ନିଜ ଗ୍ରନ୍ଥର ଅଧ୍ୟାୟଗୁଡ଼ିକ ଉପରେ ଆଲୋକପାତ କରିବେ ଓ ଉପଦେଷ୍ଟା ମଣ୍ଡଳୀ ମତାମତ ଦେବେ । ପ୍ରଥମ ଦୁଇଜଣଙ୍କ ପରେ ମୋ ପାଳି ପଡ଼ିଲା । ଦଶଟି ଅଧ୍ୟାୟ ମଧ୍ୟରେ ଗୋଟିଏ ଅଧ୍ୟାୟର ଶିରୋନାମା ରଖିଥିଲି ‘‘ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ଆଜାଦ୍ ହିନ୍ଦ୍ ଫୌଜ’’ । ଉମାଶଙ୍କର ଦୀକ୍ଷିତ ଅଧ୍ୟକ୍ଷ ଆସନରେ ବସିଥିଲେ । ସେ ପ୍ରଶ୍ନକଲେ, ‘‘କଂଗ୍ରେସ ଇତିହାସରେ ଆଜାଦ୍ ହିନ୍ଦ୍ ଫୌଜକୁ ସ୍ଥାନ ଦିଆଯିବ କାହିଁକି ?’’

ବିସ୍ମୟ ପ୍ରକାଶ ପୂର୍ବକ ମୁଁ ଉତ୍ତର ଦେଲି, ‘‘ସେହି ସମୟର କଂଗ୍ରେସ ଇତିହାସର ଅର୍ଥ ଶେଷ ପର୍ଯ୍ୟାୟ ସ୍ୱାଧୀନତା ସଂଗ୍ରାମର ଇତିହାସ । ସଂଗ୍ରାମ ଯୁଗର ଅନ୍ତିମ ଭାଗରେ ନେତାଜୀଙ୍କ ବୀରତ୍ୱ କାହାଣୀର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସେ ବିଷୟ ବର୍ଣ୍ଣନା ନ କଲେ ଇତିହାସ ଅପୂର୍ଣ୍ଣାଙ୍ଗ ରହିଯିବ ।’’ ଦୀକ୍ଷିତ ମହୋଦୟ ପ୍ରତିବାଦ କଲେ, ‘‘ସୁଭାଷ ବୋଷଙ୍କ ନୀତି କଂଗ୍ରେସ ଗ୍ରହଣ କରି ନ ଥିଲା ।’’ ପ୍ରତ୍ୟୁତ୍ତରରେ କହିଲି, ‘‘ତା ହୋଇପାରେ, କିନ୍ତୁ ସେ ତ ପୁଣି ଦୁଇଥର କଂଗ୍ରେସ ସଭାପତି ଭାବେ ନିର୍ବାଚିତ ହୋଇଥିଲେ ! ତାହାଛଡ଼ା, ଆଜାଦ ହିନ୍ଦ୍ ଫୌଜର ବୀରତ୍ୱ ଗାଥା ଓ ସେନାପତିମାନଙ୍କର ବିଚାର ଯୋଗୁଁ ସ୍ୱାଧୀନତାର ପ୍ରାକ୍‌କାଳରେ ସାରା ଭାରତରେ ଯେଉଁ ଜାତୀୟ ଉନ୍ମାଦନା ପ୍ରକାଶ ପାଇଥିଲା, ତାହାର ପ୍ରଭାବ ଓ ପରିଣାମ ବିଷୟ ଉଲ୍ଲେଖ କରିବା ଏକାନ୍ତ ଆବଶ୍ୟକ ।’’

ବୟୋବୃଦ୍ଧ ଦୀକ୍ଷିତ ମୋ ଯୁକ୍ତିମାନ ଗ୍ରହଣ ନ କରି ତର୍କ ବିତର୍କ ଲାଗି ଆହ୍ୱାନ ଦେଲେ । ଅଧଘଣ୍ଟାଏ ପର୍ଯ୍ୟନ୍ତ କଥା କଟାକଟି ପରେ ମୁଁ କହିପକାଇଲି, ‘‘You are most unreasonable.’’ ସ୍ୱୀକାର କରିବି ଯେ ଏପରି ବାକ୍ୟ ଥିଲା

'ସ୍ଲିପ୍ ଅଫ୍ ଟାଙ୍ଗ' । କିନ୍ତୁ ବରେଣ୍ୟ ନେତା ମହୋଦୟ ସେପରି ବିଶେଷଣ ବୋଧହୁଏ କେବେହେଲେ ଶୁଣି ନଥିବାରୁ ରାଗରେ କମ୍ପମାନ ହେଲେ ଓ ତାଙ୍କ ପାଖରେ ବସିଥିବା ଶଙ୍କର ଦୟାଲ ଶର୍ମାଙ୍କୁ କ'ଣ ଗୁଡ଼ାଏ କହିଗଲେ । ସେପରି ବେଳେ, ମୋ କାନ୍ଧ ଉପରେ କିଏ ହାତ ରଖିବା ଜାଣି ଚାହିଁଲାବେଳକୁ, ପି.ଭି.ନରସିଂହ ରାଓଙ୍କ ମୁହଁଟି ମୋ କାନ ପାଖରେ ଲାଗି ରହିଥାଏ । ଧୀର ସ୍ୱରରେ ସେ କହିଲେ, "Das, he is our seniormost leader. You should not have used such a term against him. At times, let us be reasonably unreasonable and unreasonably reasonable." ପି.ଭି.ମହୋଦୟଙ୍କ କଥାର ଅର୍ଥ ବୁଝିବା ପାଇଁ ସେତେବେଳେ ଅବକାଶ ନଥାଏ । ମୁଁ କିନ୍ତୁ ମୋ କଥାରେ ଅଟଳ ରହି କହିଲି, "I am here as a historian, not as a Congressman. The nationalist India would never forgive me if I do not devote a chapter to Netaji Bose and the Indian National Army." ଏହାପରେ, ଉମାଶଙ୍କର ଦୀକ୍ଷିତ ଆଉ କିଛି କହିଲେ ନାହିଁ, ଅଥଚ ଅନ୍ୟମାନେ ମତ ପ୍ରକାଶ କଲେ ଯେ, ନେତାଜୀଙ୍କ ସମ୍ପର୍କରେ ପୂରା ଅଧ୍ୟାୟ ନ ଲେଖି, ଅଳ୍ପ କିଛି ଉଲ୍ଲେଖ କଲେ ଯଥେଷ୍ଟ ହେବ । ବାଧ୍ୟ ହୋଇ ପରାଜୟ ସ୍ୱୀକାର କଲି । ଅନ୍ୟଥା, ଇନ୍ଦିରା ଗାନ୍ଧିଙ୍କ ନିକଟକୁ କଥାଟି ଯାଇଥାନ୍ତା ।

ସେ ଦିନ ମୋର ବ୍ୟବହାର ପି.ଭି.ନରସିଂହ ରାଓ ଯେ ଭୁଲିପାରିଲେ ନାହିଁ, ସେ ବିଷୟ କିଛି ବର୍ଷ ପରେ ଜାଣିପାରିଲି । ଥରେ ମୁଁ ଦିଲ୍ଲୀରେ ଥିଲାବେଳେ ବରହମପୁରର ଜଣେ ଓଡ଼ିଆ ବାରିଷ୍ଟର ମୋତେ ସାକ୍ଷାତ କରି କହିଲେ, "ମୁଁ କଂଗ୍ରେସ ପାର୍ଟିର ଆଇନ ପରାମର୍ଶଦାତା ଭାବରେ କାର୍ଯ୍ୟ କରିଆସୁଛି ଓ ସୁପ୍ରିମ୍ କୋର୍ଟରେ କଂଗ୍ରେସ ତରଫରୁ କେସ୍ ଲଢ଼େଁ । ମୋର ଇଚ୍ଛା, ଆପଣ ଏଥର ଓଡ଼ିଶାରୁ ରାଜ୍ୟସଭାକୁ ଆସିଲେ ଭଲ ହେବ । ଯଦି କହିବେ, ମୁଁ ନରସିଂହ ରାଓଙ୍କ ଆଗରେ ଆପଣଙ୍କ ନାମ ରଖିବି ।" ଦିଲ୍ଲୀସ୍ଥିତ ସେହି ଓଡ଼ିଆ ଭଦ୍ରବ୍ୟକ୍ତିଙ୍କୁ ଆଗରୁ ଦେଖି ନଥିଲି (ନାମ ମଧ୍ୟ ଭୁଲିଯାଇଛି) । ତାଙ୍କ ସୌଜନ୍ୟରେ ମୁଗ୍ଧ ହେବା ସଙ୍ଗେ 'ମୋର ଆପତ୍ତି ନାହିଁ' ବୋଲି ଜଣାଇଲି । ଦୁଇଦିନ ପରେ ସେ ପୁନର୍ବାର ସାକ୍ଷାତ କରି କହିଲେ, "ପି.ଭି.ଙ୍କୁ ଆପଣଙ୍କ କଥା କହିଲି । ସେ କହିଲେ, 'ଏମ୍.ଏନ୍.ଦାସଙ୍କୁ ମୁଁ ଭଲ ଭାବରେ ଜାଣେ । ସେ ପାର୍ଟି ହୁଇପ୍ ମାନିବେ ନାହିଁ, ନିଜ ଇଚ୍ଛା ଅନୁସାରେ ମତ ଦେବେ । ପାର୍ଲିଆମେଣ୍ଟରେ ସେ ଆମର ବୋଝ ହେବେ । ଏକଥା ମୁଁ କହିଲି ବୋଲି ତାଙ୍କୁ ଜଣାଇଦେବେ । ସେ ଭୁଲ୍ ବୁଝିବେ ନାହିଁ ।" ବାରିଷ୍ଟର ମହୋଦୟଙ୍କ ପାଖରୁ ଏକଥା ଶୁଣି

ମୁଁ ନରସିଂହ ରାଓଙ୍କୁ ଧନ୍ୟବାଦ ଦେବାକୁ ଅନୁରୋଧ କଲି ଯେ "ସେ ମୋର ସ୍ୱଭାବ ଜାଣିଥିବାରୁ ମୁଁ କୃତଜ୍ଞ ।"

୧୯୮୪ ଶେଷ ବେଳକୁ ପାଣ୍ଡୁଲିପି ଦାଖଲ କରିବା ନିମନ୍ତେ ତାଗିଦ୍ ଆସିଲା । ଲେଖା ଶେଷ କରିବାକୁ ବିନା ବେତନରେ କେତେକ ସପ୍ତାହ ଛୁଟି ନେଲି । ଅକ୍ଟୋବର ୩୦ ତାରିଖ ଦିନ ଇନ୍ଦିରା ଗାନ୍ଧି ଭୁବନେଶ୍ୱର ଆସିବେ ଜାଣି, ଗଭର୍ଣ୍ଣର ପାଣ୍ଡେଙ୍କୁ ଭେଟି ଅନୁରୋଧ କଲି, "ଯଦି ପ୍ରଧାନମନ୍ତ୍ରୀ ମୋ କଥା ପଚାରନ୍ତି, ଆପଣ ତାଙ୍କୁ ଦୟାକରି କହିଦେବେ ଯେ ଆଉ ଏକ ମାସ ଭିତରେ ମୋ ପାଣ୍ଡୁଲିପି ତାଙ୍କ ହାତରେ ଦେଇଆସିବି ।"

ସତକୁ ସତ, ୩୦ ତାରିଖ ଭୁବନେଶ୍ୱରରୁ ଦିଲ୍ଲୀ ଫେରିବା ପୂର୍ବରୁ ଇନ୍ଦିରା ଗାନ୍ଧି ପାଣ୍ଡେଙ୍କୁ କହିଥିଲେ, "M.N.Das did not come to see me. Tell him about my query. Other two have already submitted their works." ଗଭର୍ଣ୍ଣର ତାଙ୍କୁ ମୋ ଆବେଦନ ବିଷୟ ଜଣାଇଥିଲେ ।

ତହିଁ ପରଦିନ, ୩୧ ତାରିଖ ଅକ୍ଟୋବର, ଇନ୍ଦିରା ଗାନ୍ଧି ଆତତାୟୀର ଗୁଳିରେ ପ୍ରାଣ ହରାଇଲେ । ମୋ ଲେଖା ଶେଷ ହୋଇଆସୁଥାଏ । କିନ୍ତୁ ଯାହାଙ୍କ ଆଦେଶରେ ଲେଖୁଥିଲି, ସେ ଆଉ ନାହାନ୍ତି ଭାବି ଗଭୀର ବିଷାଦ ଅନୁଭବ କଲି ।

## ଏସୀୟ କୁଳପତି ସମ୍ମେଳନରେ ଯୋଗଦାନ

୧୯୮୫ ମାର୍ଚ୍ଚ ମାସ ତୃତୀୟ ସପ୍ତାହରେ ଦିଲ୍ଲୀଠାରେ 'ଏସୀୟ ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳ'ର କୁଳପତିମାନଙ୍କର ସମ୍ମେଳନ ବସିଲା । ଏସିଆ ମହାଦେଶର ପ୍ରାୟ ସବୁ ଦେଶରୁ ମନୋନୀତ କୁଳପତିମାନେ ଆସିଥିଲେ । ଭାରତର ବଡ଼ ବଡ଼ କେତୋଟି ବିଶ୍ୱବିଦ୍ୟାଳୟର କୁଳପତିମାନଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ଦୃଷ୍ଟିରୁ ସେମାନଙ୍କ ମଧ୍ୟରେ ସ୍ଥାନ ପାଇଲି ।

ସେପରି ଏକ ମହାଦେଶୀୟ କୁଳପତି ସମ୍ମେଳନ ଭାରତରେ ପ୍ରଥମ ଥର ଲାଗି ଆହୂତ ହୋଇଥାଏ । ଉଚ୍ଚଶିକ୍ଷା କ୍ଷେତ୍ରରେ ଦେଖା ଦେଇଥିବା ବୃହତ୍ତର ସମସ୍ୟାଗୁଡ଼ିକ ସମ୍ବନ୍ଧରେ ସୁଚିନ୍ତିତ ମତାମତ ଆଦାନ ପ୍ରଦାନ କରିବା ଥିଲା ସମ୍ମେଳନର ଉଦ୍ଦେଶ୍ୟ । ମାର୍ଚ୍ଚ ୧୮ରୁ ୨୧ ପର୍ଯ୍ୟନ୍ତ ଚାରିଦିନବ୍ୟାପୀ କାର୍ଯ୍ୟକ୍ରମ ଥାଏ । ମଞ୍ଜୁରୀ କମିଶନର ଅଧକ୍ଷା ମାଧୁରୀ ଶାହା ସ୍ୱତନ୍ତ୍ର ଭାବେ ମୋତେ ପତ୍ର ଲେଖିଥିଲେ ଯେ ୧୭ ତାରିଖ ଦିନ କେନ୍ଦ୍ର ଶିକ୍ଷାମନ୍ତ୍ରୀ କେ.ସି.ପନ୍ଥ ବ୍ୟକ୍ତିଗତ କଥାବାର୍ତ୍ତା ଲାଗି ମୋତେ ଭେଟିବାକୁ ଚାହାନ୍ତି । ଭାରତର ଉଚ୍ଚଶିକ୍ଷା ସମ୍ବନ୍ଧୀୟ ସମସ୍ୟାମାନ ଉପସ୍ଥାପନ କରିବାକୁ ଶିକ୍ଷାମନ୍ତ୍ରୀ ଆମ ତିନି ଚାରି ଜଣଙ୍କୁ ପରାମର୍ଶ ଦେଲେ ।

ସମ୍ମିଳନୀରେ ଆଲୋଚିତ ହୋଇଥିବା ବିଷୟବସ୍ତୁ ସମ୍ପର୍କରେ କିଛି ଲେଖୁନାହିଁ । ଉଲ୍ଲେଖ ଯୋଗ୍ୟ, ଅଧିକାଂଶ ଦେଶର କୁଳପତିମାନେ ଖୋଲାଖୋଲି ଭାବେ ଆଲୋଚନାରେ ଅଂଶଗ୍ରହଣ କରିଥିବାବେଳେ, ଚୀନ ଦେଶରୁ ଆସିଥିବା ୩ ଜଣ କୁଳପତି କୌଣସି ବିଷୟରେ କିଛି କଥା କହିଲେ ନାହିଁ । ସେ ଦେଶର ଉଚ୍ଚ ଶିକ୍ଷା ସମ୍ବନ୍ଧରେ କିଛି ଜାଣିହେଲା ନାହିଁ ।

ସମ୍ମିଳନୀ ଶେଷ ହେଲା ପରେ ମାଧୁରୀ ଶାହା ତାଙ୍କ ବାସଭବନକୁ ମୋତେ ଡାକି ନେଇଗଲେ । ସେ ଥିଲେ ଇନ୍ଦିରା ଗାନ୍ଧିଙ୍କର ନିଜର ଲୋକ । ନିହତ ପ୍ରଧାନମନ୍ତ୍ରୀଙ୍କ କଥା କହିଲାବେଳେ ତାଙ୍କ ଆଖିରେ ଅଶ୍ରୁ ଦେଖିଲି । ଶେଷରେ ସେ କହିଲେ, "ମୃତ୍ୟୁ ପୂର୍ବରୁ ଇନ୍ଦିରା ଇଚ୍ଛା ପ୍ରକାଶ କରିଥିଲେ, ତାଙ୍କ ପିତାଙ୍କ ସମ୍ପର୍କରେ ଉଚ୍ଚତର ଗବେଷଣା ନିମନ୍ତେ ଗୋଟିଏ ଜାତୀୟ ବୃତ୍ତି ୟୁ.ଜି.ସି. ପ୍ରଦାନ କରିବେ । ସଦ୍ୟ ଆପଣ କଂଗ୍ରେସ ଇତିହାସ ଲେଖିଛନ୍ତି । ଅନେକ ପୂର୍ବେ ନେହରୁଙ୍କ ରାଜନୈତିକ ଦର୍ଶନ ଲେଖିଥିଲେ । ଯଦି ଇଚ୍ଛା କରିବେ, ଜାତୀୟ ବୃତ୍ତି ଆପଣଙ୍କୁ ଦିଆଯିବ । ମୋର ଅନୁମାନ ଇନ୍ଦିରା ନିଜେ ଆପଣଙ୍କୁ କାମଟି ଦେଇଥାନ୍ତେ ।"

ସେତେବେଳକୁ ଜାଣିସାରିଥିଲି, କୁଳପତି ଭାବରେ କୌଣସି ଉଲ୍ଲେଖଯୋଗ୍ୟ କୃତିତ୍ୱ ହାସଲ କରିବା ସମ୍ଭବ ନୁହେଁ । ସରକାରଙ୍କୁ ସନ୍ତୁଷ୍ଟ କରିବା ଦକ୍ଷତା ମୋର ନ ଥାଏ । ସିଣ୍ଡିକେଟ୍, କର୍ମଚାରୀ ସଂଘ ଓ ଶିକ୍ଷକଗୋଷ୍ଠୀ ମୋ ପ୍ରତି ସନ୍ତୁଷ୍ଟ ନ ଥିଲେ । ଯେଉଁପ୍ରକାର ଆଶା ନେଇ କାର୍ଯ୍ୟଭାର ଗ୍ରହଣ କରିଥିଲି, ସେ ଆଶା ଥାଏ ସୁଦୂରପରାହତ । ଗତାନୁଗତିକ ଅଶାନ୍ତ ପରିବେଶରୁ ତ୍ରାହି ପାଇବା ନିମନ୍ତେ ମୁଁ 'ନେହରୁ ଜାତୀୟ ବୃତ୍ତି' ଗ୍ରହଣ କରିବି ବୋଲି ମାଧୁରୀ ଶାହାଙ୍କୁ ପ୍ରତିଶ୍ରୁତି ଦେଇଦେଲି ।

## କୁଳପତି ପଦରୁ ବିଦାୟ

୧୯୮୫ ମେ ମାସ କୁଳପତି ପଦରୁ ବିଦାୟ ନେଲି । ମୋ ପରେ, ଜଣକ ପରେ ଜଣେ, ଚାରିଜଣ ବ୍ୟକ୍ତି ଅସ୍ଥାୟୀ କୁଳପତି ଭାବେ କାର୍ଯ୍ୟ କରିଥିଲେ । ଯଥାସମୟରେ ସ୍ଥାୟୀ କୁଳପତି ନିର୍ବାଚନ କରିବାକୁ ମନୋନୟନ କମିଟି ବସିଲା । ମୁଁ ସେତେବେଳେ ଦିଲ୍ଲୀରେ ଥାଏ । କମିଟି ତିନିଜଣଙ୍କ ନାମ ଦାଖଲ କଲେ । ମୋ ନାମ ଥାଏ ପ୍ରଥମ ସ୍ଥାନରେ । ଅନ୍ୟ ଦୁଇଜଣଙ୍କ ନାମ କେବଳ ନିୟମ ପାଳନ ଦୃଷ୍ଟିରୁ ରଖାଯାଇଥାଏ । କମିଟିର ଉଦ୍ଦେଶ୍ୟ ଥିଲା, ରାଜ୍ୟପାଳ ମୋତେ ଡାକିବାକୁ ବାଧ୍ୟ ହେବେ ।

କିନ୍ତୁ, ଯେଉଁ ପଦ ଛାଡ଼ିଦେଇଥିଲି ସେହି ପଦକୁ ପୁଣିଥରେ ଫେରିବାକୁ ଇଚ୍ଛା ହେଲା ନାହିଁ । କିଛିଦିନ ମାନସିକ ଦ୍ୱନ୍ଦ୍ୱ ଭୋଗିଲି । ଆଶା ହେଉଥାଏ, ଏଥର କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ ଲାଗି ପ୍ରାଣପଣ ଉଦ୍ୟମ କରିବି । ଅନ୍ୟ ପକ୍ଷରେ ଭୟ ଆସୁଥାଏ, ଯଦି ସଫଳ ନ ହେବି, ତା ହେଲେ ! ଦୁର୍ଭାଗ୍ୟକୁ ସେତେବେଳକୁ ଓଡ଼ିଶା ସରକାର ମୋ ପ୍ରତି ଭୀଷଣ ଅସନ୍ତୁଷ୍ଟ ଥିଲେ । ଅପରାଧ ଥିଲା, ବାଲିଆପାଳ କ୍ଷେପଣାସ୍ତ୍ର ପରୀକ୍ଷା ଘାଟି ବିରୋଧୀ ଆନ୍ଦୋଳନରେ ଯୋଗ ଦେଇଥିଲି । ଦିଲ୍ଲୀର ନେତୃସ୍ଥାନୀୟ ବ୍ୟକ୍ତି ଓ ଏମ୍.ପି.ମାନଙ୍କ ସମ୍ମୁଖରେ ମୋର ଯୁକ୍ତି ଥାଏ, ଯଦି ନିକୋବାର ଦ୍ୱୀପପୁଞ୍ଜରେ ଥିବା ଜନଶୂନ୍ୟ ସ୍ଥାନରେ ଘାଟି ସ୍ଥାପନ ସମ୍ଭବପର, ତେବେ ଜନାକୀର୍ଣ୍ଣ ଓ ଶସ୍ୟଶ୍ୟାମଳ ବାଲିଆପାଳ ଅଞ୍ଚଳକୁ ଧ୍ୱଂସମୁଖକୁ ଠେଲିଦେବା ଅନ୍ୟାୟ ଓ ଅଯୌକ୍ତିକ । ଏ ସମ୍ପର୍କରେ ତଥ୍ୟ ସଂଗ୍ରହ ପୂର୍ବକ ଯେଉଁ ପ୍ରକାର ଯୁକ୍ତିମାନ ଦିଲ୍ଲୀ ମହଲରେ ଉପସ୍ଥାପନ କରିବାକୁ ଉଦ୍ୟମ କରିଥିଲି, ସେ ସବୁ କଥା ଏଠାରେ ଲେଖୁନାହିଁ । କିନ୍ତୁ ମୋର କାର୍ଯ୍ୟକଳାପ ଓ ବିଶେଷତଃ ବାଲିଆପାଳ ଅଞ୍ଚଳରେ ଜନସମାବେଶରେ ଯୋଗ ଦେବା ଦେଖି ତଦାନୀନ୍ତନ ସରକାର ଦାରୁଣ ଭାବେ ଯୁବ୍ଧ ହେଲେ ।

ସମସ୍ତ ବିଷୟ ବିଚାର କରି ସିଦ୍ଧାନ୍ତ ନେଲି, ଶାସକ ଗୋଷ୍ଠୀର ଚକ୍ଷୁଃଶୂଳ ହେଲାପରେ କୁଳପତି ପଦ ପାଇଁ ଲାଳାୟିତ ହେବା ଉଚିତ ନୁହେଁ । ରାଜ୍ୟପାଳ ମଧ୍ୟ ସୌଜନ୍ୟ ଦୃଷ୍ଟିରୁ ମୋତେ ପଚାରିବା ଉଚିତ ଥିଲା । କିନ୍ତୁ ସେପରି ସାହସ ତାଙ୍କର ନ ଥାଏ । ଯେଉଁପ୍ରକାର ଚାପର ବଶବର୍ତ୍ତୀ ହୋଇ ରାଜ୍ୟପାଳ କାର୍ଯ୍ୟ କଲେ, ତାହା ଲେଖିବା ସଙ୍ଗତ ହେବ ନାହିଁ । ଡକ୍ଟର ମହତାବ ତାଙ୍କ 'ପ୍ରଜାତନ୍ତ୍ର'ରେ ପ୍ରତିବାଦ ପ୍ରକାଶ କଲେ । ମୁଖ୍ୟ ଶାସନ ସଚିବ ଜ୍ଞାନଚାନ୍ଦଙ୍କ ନିକଟରୁ ପରବର୍ତ୍ତୀ ସମୟରେ କେତେକ କଥା ଶୁଣିଲି ।

ଦ୍ୱିତୀୟ ଥର ଲାଗି କୁଳପତି ନ ହୋଇ ମୁଁ ଆନନ୍ଦିତ ହୋଇଥିଲି, କିନ୍ତୁ ଗଭୀର ମନସ୍ତାପ ହେଲା ଯେତେବେଳେ କିଛି ମାସ ପରେ ସରକାର ବିଶ୍ୱବିଦ୍ୟାଳୟର ସ୍ୱାତନ୍ତ୍ର୍ୟ ଲୋପ କରି ମହମ୍ମଦ ହବିବ୍ ନାମକ ଜଣେ ପ୍ରଶାସକଙ୍କୁ ନିଯୁକ୍ତ କଲେ । ସେ ପୁଣି ଥିଲେ ଓଡ଼ିଶା ବାହାରର ଲୋକ । ତାଙ୍କ ଶାସନକାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାଣୁ ଅବସ୍ଥାରେ ରହିଲା । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଓ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ସ୍ୱପ୍ନରେ ପରିଣତ ହେଲା । ସେଥିପାଇଁ ଦାୟୀ କିଏ, ଏ ପ୍ରଶ୍ନର ଉତ୍ତର ସନ୍ଧାନ କରିବା ଅନାବଶ୍ୟକ !

# କାଲିଫର୍ଣ୍ଣିଆ ଯାତ୍ରା, ୧୯୮୪

## ଜଣେ ଆମେରିକୀୟ ଅଧ୍ୟାପକଙ୍କ କଥା

୨୭

### କାଲିଫର୍ଣ୍ଣିଆ ଯାତ୍ରା

ସ୍ୱାଧୀନତା ସଂଗ୍ରାମ ଯୁଗରେ ଉତ୍ପତ୍ତି ଲାଭ କରିଥିବା ହିନ୍ଦୁମୁସଲମାନ ରାଜନୈତିକ ଭେଦଭାବ ବିଷୟରେ ତିନୋଟି ବକ୍ତୃତା ଦେବାଲାଗି ୧୯୮୪ ମାର୍ଚ୍ଚ ମାସ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ପାଇଲି । ସେତେବେଳେ କୁଳପତି ଥାଏଁ । ପାଞ୍ଚବର୍ଷ ଆଗେ ଯୁକ୍ତରାଷ୍ଟ୍ର ଆମେରିକା ଯାଇଥିଲାବେଳେ ମହାଦେଶର ଆଟଲାଣ୍ଟିକ୍ କୂଳବର୍ତ୍ତୀ ପୂର୍ବାଞ୍ଚଳ ବୁଲି ଦେଖିଥିଲି । ସେତେବେଳେ ଶୁଣିଥିଲି, ଉତ୍ତର ଆମେରିକାର ପ୍ରକୃତ ରମଣୀୟ ଭୂଭାଗ ହେଉଛି ପ୍ରଶାନ୍ତ ମହାସାଗର କୂଳବର୍ତ୍ତୀ ପଶ୍ଚିମାଞ୍ଚଳରେ ଥିବା କାଲିଫର୍ଣ୍ଣିଆ । ସେଠାକାର ସାନଫ୍ରାନ୍‌ସିସକୋ ଓ ଲସ୍ ଏଞ୍ଜେଲସ୍ ସହର ୱାଶିଂଟନ ଓ ନିଉୟର୍କ ଅପେକ୍ଷା ଅଧିକ ସୁନ୍ଦର । ଦୂରତ୍ୱ ଯୋଗୁଁ ସେଠାକୁ ଯାଇପାରି ନଥିଲି । ଏବେ ଯିବା ଲାଗି ସୁଯୋଗ ପାଇ ଖୁସି ହେଲି ।

ମାର୍ଚ୍ଚ ୨୭ ତାରିଖ ମଙ୍ଗଳବାର ଦିନ ଏୟାର ଇଣ୍ଡିଆ ବିମାନରେ କଲିକତାରୁ ଯାତ୍ରାକରି ତହିଁ ପରଦିନ ବ୍ୟାଙ୍ଗକକ୍ ବିମାନଘାଟିରେ ପହଞ୍ଚିଲି । ୨୮ ତାରିଖ ଦିନ ସକାଳ ୮ଟାରେ ଜାପାନ ଏୟାର ଲାଇନ୍‌ସର ବିମାନ ଟୋକିଓ ଅଭିମୁଖେ ଯାତ୍ରା ଆରମ୍ଭ କଲା । ଜାପାନୀ ପରିଚାରିକା ଖାଦ୍ୟ ଅର୍ଡର ନେଲାବେଳେ ନିଜକୁ ନିରାମିଷାଶୀ ବୋଲି କହିଲି । ମଧ୍ୟାହ୍ନ ୧୨ଟାରେ ଖାଦ୍ୟ ପ୍ଳେଟ୍ ଆସିଲା । ଆଳୁ ଓ କୋବି ସିଝା ସହିତ ଦୁଇଖଣ୍ଡି ପାଉଁରୋଟି ଉପରେ ଦୁଇଟା ନାଲି ଟମାଟୋ ସିଝା ରହିଥାଏ । କଣ୍ଟା ଚାମଚରେ ଟମାଟୋଟିଏ ପାଟି ପାଖକୁ ଆଣିଲା ବେଳେ ଚମକିପଡ଼ିଲି । ଦେଖିଲି, ଟମାଟୋର ଦୁଇଟି ଛୋଟ ଛୋଟ ଆଖି ଜକ୍ ଜକ୍ କରୁଛି ଓ ତା ପାଖରେ ମୋଟା ସୂତାଖିଅ ପରି ଧଳା ରଙ୍ଗର ନିଶ । ପାଖରେ ବସିଥିବା ଜାପାନୀ ଯାତ୍ରୀଙ୍କୁ ପଚାରିଲି – "ଏ କଣ ଗୋଟିଏ ପ୍ରକାର ଫଳ ?" ହସିଦେଇ ସେ କହିଲେ, "No. It is Boiled

Sea Snail.'' ପ୍ଲେଟ୍‌ଟି ରଖିଦେଲି । ସିଝା ସମୁଦ୍ର ଗେଣ୍ଡାକୁ ଲାଗିଥିବା ଆଳୁସିଦ୍ଧ ଖାଇବାକୁ ଘୃଣା ଆସିଲା । ଉପବାସରେ ରହିଲି ।

୮ ଘଣ୍ଟା ପରେ ବିମାନ ପହଞ୍ଚିଲା ଜାପାନ ରାଜଧାନୀ ଟୋକିଓ ବିମାନଘାଟୀରେ । ଫେରିଲାବେଳେ ସେଠାରେ ତିନି ଦିନ ରହିବି ବୋଲି ଠିକ୍ କଲି । ସନ୍ଧ୍ୟାବେଳେ ଉଡ଼ାଜାହାଜ ଟୋକିଓ ଛାଡ଼ିଲା । ସାରାରାତି ବିମାନ ଉଡୁଥାଏ ପ୍ରଶାନ୍ତ ମହାସାଗର ଉପରେ । ଅନ୍ଧକାର ମଧ୍ୟରେ ଜଳରାଶିର ଦୃଶ୍ୟ ଦିଶିଲା ନାହିଁ । କିନ୍ତୁ ଆକାଶର ନକ୍ଷତ୍ରରାଜି ଦିଗକୁ ଅନେକ ସମୟ ଚାହିଁ ରହି ନୈସର୍ଗିକ ଶୋଭା ଉପଭୋଗ କଲି ।

ଉଷାକାଳରୁ ଦେଖିବାକୁ ପାଇଲି ପ୍ରଶାନ୍ତ ମହାସାଗରର ସୁଶାନ୍ତ ରୂପ । ନିଜର ନାମ ସାର୍ଥକ କରିଛି ଏହି ଅଗାଧ ଓ ଅନିର୍ଦ୍ଦିଷ୍ଟ ଜଳରାଶି । ଯଥାସମୟରେ ଆମେରିକାର ପଶ୍ଚିମ ଉପକୂଳ ଦୃଷ୍ଟିଗୋଚର ହେଲା । ଦିନ ୧୦ଟା ବେଳେ କାଲିଫର୍ଣ୍ଣିଆର ଲସ୍ ଏଞ୍ଜେଲସ ବିମାନଘାଟିରେ ଅବତରଣ କଲି ।

## ଜଣେ ପ୍ରଖ୍ୟାତ ଐତିହାସିକଙ୍କ କଥା

ମୋତେ ନେବା ଲାଗି ଆସିଥାନ୍ତି ଅଧ୍ୟାପକ ଷ୍ଟାନ୍‌ଲି ଓଲପାର୍ଟ । ଆଗରୁ ତାଙ୍କର ବହି ପଢ଼ିଥିଲି, କିନ୍ତୁ କେବେ ଦେଖି ନଥିଲି । କରମର୍ଦ୍ଦନ ବେଳେ ସେ ତାଙ୍କର ନାମ ଉଚ୍ଚାରଣ କଲାକ୍ଷଣି ମୁଁ ଆପତ୍ତି କଲି, ''ଆପଣ ନିଜେ ମୋତେ ନେବାକୁ ଆସିଛନ୍ତି ଦେଖି ମୁଁ ଲଜ୍ଜିତ ।'' ଭଦ୍ରତା ଓ ସୌଜନ୍ୟର ପରାକାଷ୍ଠା ଦେଖାଇ ସେ କହିଲେ, ''ଜଣେ କୁଳପତିଙ୍କୁ ସ୍ୱାଗତ କରିବା ମୋର ସୌଭାଗ୍ୟ ।'' ଏହି ବାକ୍ୟଟି ଶୁଣି ମୁଁ ଅତ୍ୟଧିକ ଲଜ୍ଜା ଅନୁଭବ କଲି । ଓଲପାର୍ଟ ମୋତେ ତାଙ୍କ ବାସଭବନକୁ ନେଇଗଲେ ।

ଏହି ବ୍ୟକ୍ତିଙ୍କ କଥା ଉଲ୍ଲେଖ କରୁଛି, ତାଙ୍କ କୃତିତ୍ୱ ଓ ଦୁର୍ଭାଗ୍ୟ ବିଷୟ । ଆମେରିକାର ଐତିହାସିକମାନଙ୍କ ମଧ୍ୟରେ ଯେଉଁ କେତେଜଣ ଭାରତ ଇତିହାସ ବିଷୟରେ ବିଶେଷଜ୍ଞ, ସେମାନଙ୍କ ମଧ୍ୟରେ ଓଲପାର୍ଟ ସ୍ୱନାମଧନ୍ୟ । ତାଙ୍କ ରଚିତ 'ଭାରତ ଇତିହାସ', 'ତିଳକ ଓ ଗୋଖଲେ', ଏବଂ 'ଦକ୍ଷିଣ ଏସିଆର ସଂଘଟନ' ପ୍ରଭୃତି ପୁସ୍ତକ ଉଚ୍ଚାଙ୍ଗ ଗବେଷଣାର ପରିଚୟ ଦେଇଥାଏ ।

କିନ୍ତୁ ତାଙ୍କର ସର୍ବାଧିକ ଦୁଇଟି ପ୍ରସିଦ୍ଧ ପୁସ୍ତକ ଲାଗି ସେ ନିଜକୁ 'ହତଭାଗ୍ୟ' ବୋଲି ମନସ୍ତାପ କରନ୍ତି । ପ୍ରଥମଟି ଥିଲା, 'Nine Hours to Rama' । ମହାତ୍ମା ଗାନ୍ଧିଙ୍କ ଜୀବନର ଶେଷ ଦିବସର ନଅଟି ଘଣ୍ଟାକୁ କେନ୍ଦ୍ରକରି ସେ ସେହି ବହି ଲେଖିଥିଲେ । ଗାନ୍ଧିଙ୍କ ମୃତ୍ୟୁପରେ ଭାରତ ଆସି, ବହୁ ଅଧ୍ୟବସାୟ

ବଳରେ ସେ ମହାତ୍ମାଙ୍କ ଅନ୍ତିମ ଦିନର ପ୍ରତ୍ୟେକ ମୁହୂର୍ତ୍ତର ବିବରଣୀ ସଂଗ୍ରହ କରିଥିଲେ; ନେହରୁ ଓ ପଟେଲ ସମେତ ଅନେକ ବ୍ୟକ୍ତିଙ୍କୁ ଭେଟିଥିଲେ; ଏବଂ ନାନା ସ୍ଥାନ ଭ୍ରମଣ କରି ତଥ୍ୟ ସଂଗ୍ରହ କରିଥିଲେ । ଆତତାୟୀ ନାଥୁରାମ ଗଡ଼ସେ ହସ୍ତରେ ଗୁଳିବିଦ୍ଧ ଗାନ୍ଧିଙ୍କର ଶେଷ ବାକ୍ୟ 'ହା ରାମ' ଶବ୍ଦ ସହିତ ଗ୍ରନ୍ଥ ସମାପ୍ତ ହୋଇଥିଲା । ମହାତ୍ମାଙ୍କ ପ୍ରତି ତାଙ୍କର ଭକ୍ତି ଯୋଗୁଁ ସେହି ମହାପୁରୁଷଙ୍କ ଶେଷ ଦିବସଟିକୁ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିବା ନିମନ୍ତେ ଓଲପାର୍ଟ ଅନୁପ୍ରାଣିତ ହୋଇଥିଲେ ।

ଗ୍ରନ୍ଥ ପ୍ରକାଶିତ ହେଲା । ଆକର୍ଷଣୀୟ ବିଷୟବସ୍ତୁ ଦେଖି ଆମେରିକାର ଜଣେ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା 'Nine Hours to Rama' ନାମକ ଚଳଚ୍ଚିତ୍ର ପ୍ରସ୍ତୁତ କଲେ । ସେଥିରେ ସେ ପ୍ରଚୁର ଅର୍ଥ ବ୍ୟୟ କରିଥିଲେ ଓ ଭାରତକୁ ଆସି ଅନେକ ସ୍ଥାନର ଛବି ନେଇଥିଲେ । ଓଲପାର୍ଟ ଫିଲମ୍‌ଟିକୁ ଆଣି ପ୍ରଧାନମନ୍ତ୍ରୀ ନେହରୁଙ୍କୁ ତାଙ୍କ ବାସଭବନରେ ରୂପେଲି ପର୍ଦ୍ଦାରେ ଦେଖାଇଲେ । ନିଭୃତରେ ଛବି ଦେଖିଲାବେଳେ ନେହରୁ ଭାବବିହ୍ୱଳ ହୋଇ କାନ୍ଦିପକାଇଲେ । ଓଲପାର୍ଟଙ୍କୁ ପ୍ରତିଶ୍ରୁତି ଦିଆଗଲା ଯେ, ଚଳଚ୍ଚିତ୍ରଟି ଭାରତରେ ପ୍ରଦର୍ଶିତ ହେବ । କିନ୍ତୁ ହିନ୍ଦୁ ମହାସଭା ଓ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ କ୍ରୋଧାନ୍ୱିତ ହେବେ ଜାଣି, ନେହରୁ ତାଙ୍କ କଥା ରଖିଲେ ନାହିଁ । ଅପରନ୍ତୁ, ଚଳଚ୍ଚିତ୍ର ଉପରେ ପ୍ରତିବନ୍ଧ ଲାଗି ଯୁକ୍ତରାଷ୍ଟ୍ର ସରକାରଙ୍କୁ ଅନୁରୋଧ କରାଗଲା । କେବଳ ସେତିକି ନୁହେଁ, ଓଲପାର୍ଟଙ୍କ ପୁସ୍ତକ ଉପରେ ଭାରତ ସରକାର ନିଷେଧାଜ୍ଞା ଜାରି କଲେ । ଫଳରେ, ପୁସ୍ତକ ପ୍ରକାଶକ ଓ ଚଳଚ୍ଚିତ୍ର ନିର୍ମାତା, ଉଭୟେ କ୍ଷତିଗ୍ରସ୍ତ ହେଲେ । ମୋ ଆଗରେ ଏହି ବିଷୟ ବର୍ଣ୍ଣନା କଲାବେଳେ, ଷ୍ଟାନଲି ଓଲପାର୍ଟ ଦୁଃଖ ପ୍ରକାଶ ପୂର୍ବକ ମହାର୍ଘ କଥାଟିଏ ଉଚ୍ଚାରଣ କଲେ, "ଭାରତ ବା ଆମେରିକା, ଯେଉଁ ସ୍ୱାଧୀନ ଦେଶରେ ସତ୍ୟ ପ୍ରତି ସରକାରଙ୍କ ଭୟ ଥାଏ, ସେ ଦେଶର ଗଣତନ୍ତ୍ର ସବଳ ଓ ସୁସ୍ଥ ରହିପାରିବ ନାହିଁ ।"

ସେହି 'ସତ୍ୟ' ଯୋଗୁଁ ତାଙ୍କର ଦ୍ୱିତୀୟ ବିପର୍ଯ୍ୟୟ ଘଟିଲା । ପାକିସ୍ତାନ ସରକାରଙ୍କ ଅନୁରୋଧକ୍ରମେ ସେ ପାକିସ୍ତାନର ଜନ୍ମଦାତା ମହମ୍ମଦ ଆଲି ଜିନ୍ନାଙ୍କ ପୂର୍ଣ୍ଣାଙ୍ଗ ଜୀବନଚରିତ ଲେଖିଲେ । ତଥ୍ୟ ସଂଗ୍ରହ ପାଇଁ ବାରମ୍ବାର ପାକିସ୍ତାନ ଓ ଭାରତ ଆସିଲେ । ଜିନ୍ନାଙ୍କୁ ଜାଣିଥିବା ବ୍ୟକ୍ତିମାନଙ୍କୁ ଭେଟି ବିବରଣୀ ସଂଗ୍ରହ କଲେ । ପାକିସ୍ତାନର ସାମରିକ ଶାସକ ସେନାପତି ଜିଆ ଉଲ୍ ହକ୍‌ଙ୍କ ସଚିବ କହିଥିଲେ ଯେ, ୪୦ ହଜାର ପୁସ୍ତକ ପାକିସ୍ତାନ ସରକାର କିଣିନେବେ । ସେହି ଚାହିଦା ପ୍ରତି ଦୃଷ୍ଟି ରଖି ଆମେରିକାର ପ୍ରକାଶକ ମୁଦ୍ରଣ ସଂଖ୍ୟା ବଢ଼ାଇଲେ ।

ଜିନ୍ନାଙ୍କ ଜୀବନଚରିତ ପ୍ରକାଶିତ ହେଲା । ଆମୂଳଚୂଳ ତାଙ୍କ ଜୀବନୀ ସମ୍ବନ୍ଧରେ ଅନେକ ସତ୍ୟ ତଥ୍ୟ ସ୍ଥାନ ପାଇଲା । ଦୁଇଟି ପୃଷ୍ଠାରେ ରହିଗଲା ଗୋଟିଏ ସାମାନ୍ୟ ଘଟଣା । ତଥ୍ୟଟି ଓଲପାର୍ଟ ପାଇଥିଲେ ଏମ୍.ସି.ଚଗଲାଙ୍କ ନିକଟରୁ । ଇସଲାମ ଧର୍ମର ରକ୍ଷକ ବୋଲି ନିଜକୁ ଦାବି କରୁଥିଲାବେଳେ, ତେଣେ ବୋମ୍ବେର ଗୋଟିଏ ପ୍ରସିଦ୍ଧ ହୋଟେଲରେ ଜିନ୍ନା ନିଷିଦ୍ଧ ଘୁଷୁରି ମାଂସ ଖାଇବା କଥା ଲେଖା ରହିଲା ।

ଆମେରିକାରୁ ଜଳଜାହାଜରେ ୪୦ ହଜାର ବହି ପାକିସ୍ତାନର କରାଚି ବନ୍ଦରରେ ପହଞ୍ଚିଲା । ତହିଁପୂର୍ବରୁ ଜେନେରାଲ୍ ଜିଆଙ୍କ ପାଖକୁ ଖଣ୍ଡିଏ କପି ପଠାଯାଇଥାଏ । ବହି ପଢ଼ିସାରି ସେ ଜିନ୍ନାଙ୍କ ଶୂକରମାଂସ ଖାଇବା କଥାଟିକୁ ବାଦ୍ ଦେବା ଲାଗି ଓଲପାର୍ଟଙ୍କ ପାଖକୁ ଲେଖିଲେ । ମାତ୍ର ଦୁଇଟି ପୃଷ୍ଠା କାଢ଼ିଦେଲେ, ସବୁ ବହି କିଣାଯିବ ବୋଲି ଜଣାଇ ଦିଆଗଲା । ଓଲପାର୍ଟ ଉତ୍ତର ଦେଲେ, ''ଦୁଇଟି ଅକ୍ଷର ମଧ୍ୟ ବଦଳ କରିବି ନାହିଁ । ଯାହା ସତ୍ୟ, ତାହା ସେହି ସତ୍ୟ ରୂପେ ହିଁ ପୁସ୍ତକରେ ଲେଖା ରହିବ । ଜଣେ ଐତିହାସିକ ଭାବରେ ମୁଁ ସତ୍ୟର ଅପଳାପ କରିବି ନାହିଁ ।'' ତାଙ୍କର ଉତ୍ତର ପାଇ ପାକିସ୍ତାନ ସରକାର କରାଚି ବନ୍ଦରରୁ ବହିତକ ଫେରାଇ ଦେଲେ ଓ ଓଲପାର୍ଟଙ୍କ ଲିଖିତ ଜିନ୍ନାଙ୍କ ଜୀବନଚରିତ ଉପରେ ନିଷେଧାଜ୍ଞା ଜାରି କଲେ । ତଦ୍ୱାରା, ପୁସ୍ତକ ପ୍ରକାଶକ ବିପୁଳ କ୍ଷତିରେ ପଡ଼ିଲେ ।

ଓଲପାର୍ଟଙ୍କ କଥା ଶୁଣୁଥିଲାବେଳେ ତାଙ୍କ ପତ୍ନୀ ଡୋରୋଥୀ ମଧ୍ୟାହ୍ନ ଭୋଜନ ଲାଗି ଡାକିଲେ । ଭାରତୀୟ ଶାଢ଼ି ପିନ୍ଧିଥାନ୍ତି । କୌତୁକ ଛଳରେ କହିଲି, ''ଆପଣ ଆମେରିକୀୟ କିମ୍ବା ଭାରତୀୟ, ତାହା ମୁଁ ଜାଣିପାରୁ ନାହିଁ । ତେବେ, ରୂପ, ରଙ୍ଗ ଓ ବେଶଭୂଷା ପାଇଁ ଅନେକାଂଶରେ ଇନ୍ଦିରା ଗାନ୍ଧିଙ୍କ ପରି ଦିଶୁଛନ୍ତି ।'' ''ମୋ ସ୍ୱାମୀଙ୍କ ଭାରତପ୍ରୀତି ଯୋଗୁଁ ମୁଁ ମଧ୍ୟେ ମଧ୍ୟେ ଭାରତୀୟ ମହିଳାଙ୍କ ରୂପ ଧରିଥାଏଁ'', ସେ କହିଲେ । ମୁଁ ଦୁଃଖ ପ୍ରକାଶ କଲି, ''ଭାରତପ୍ରୀତି ପାଇଁ ଆପଣଙ୍କ ସ୍ୱାମୀଙ୍କ ଦୁର୍ଦ୍ଦଶା ସତ୍ତ୍ୱେ, ଆପଣଙ୍କର ଦୁଃଖ ନାହିଁ ?'' ''ନା, ଦୁଃଖ ମୋର ହୁଏନା, ତାଙ୍କର ହୁଏ, କାରଣ ମୋ ଅର୍ଥରେ ଚଳନ୍ତି ବୋଲି ତାଙ୍କ ଆତ୍ମସମ୍ମାନରେ ବାଧା ପଡ଼େ ବୋଲି କହନ୍ତି ।'' ତାଙ୍କର ଏକଥା ଶୁଣି ଓଲପାର୍ଟ ହସିଲେ । ଶୁଣିଲି, ଶ୍ରୀମତୀ ଜଣେ ଆଡ୍‌ଭୋକେଟ ଓ ଆଇନ ବ୍ୟବସାୟରୁ ପ୍ରଚୁର ଅର୍ଥ ଆୟ କରନ୍ତି ।

ମୋ ବକ୍ତୃତା ପ୍ରସଙ୍ଗରେ କଥାବାର୍ତ୍ତା ହେଲି । ମୋରିସ୍ ଜୋନସ୍ ଓ ଜୁଡିଥ୍ ବ୍ରାଉନ ପ୍ରଭୃତି ଐତିହାସିକମାନେ ଭାରତ ସମ୍ପର୍କରେ ଭାଷଣ ଦେବେ ବୋଲି କାର୍ଯ୍ୟକ୍ରମ ଥାଏ । ହୋଟେଲରେ ଛାଡ଼ିଲାବେଳେ ଓଲପାର୍ଟ କହିଲେ, ''ଦୁଇଘଣ୍ଟା ବିଶ୍ରାମ ନିଅନ୍ତୁ । ସନ୍ଧ୍ୟା ପୂର୍ବରୁ ଆସିବି ଓ କେତେକ ସ୍ଥାନକୁ ନେଇଯିବି । ପ୍ରତିଦିନ ପୂର୍ବାହ୍ନରେ ଭାଷଣ ଓ ଅପରାହ୍ନରେ ଭ୍ରମଣ ପାଇଁ ବ୍ୟବସ୍ଥା କରିଛି ।''

## ଲସ୍ ଏଞ୍ଜେଲସ୍ ପରିକ୍ରମା

ଅପରାହ୍ନ ୫ଟା । ଓଲପାର୍ଟଙ୍କ ଗାଡ଼ିରେ ବୁଲି ବାହାରିଲି । ସମୁଦ୍ର ତଟରେ ଥିବା ଏକ ପ୍ରଶସ୍ତ ସ୍ଥାନରେ ପହଞ୍ଚି ସେ ଦେଖାଇଦେଲେ ଯେ ପ୍ରଶାନ୍ତ ମହାସାଗରର ସୌନ୍ଦର୍ଯ୍ୟ ଭୋଗ ଲାଗି ସେହି ବେଳାଭୂମିର ଖ୍ୟାତି ରହିଛି ।

ପ୍ରକାଣ୍ଡ ପ୍ରକାଣ୍ଡ ପଥର ଖଣ୍ଡ ଦ୍ୱାରା ସମୁଦ୍ର କୂଳ ଛାଇରହିଥାଏ । ସେଥି ଉପରେ ଧୀରେ ଧୀରେ ଭାଙ୍ଗି ପଡୁଥାଏ ଶାନ୍ତ ଲହରୀମାଳା । ଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ ପ୍ରଶାନ୍ତ ମହାସାଗରର ସଲିଳରାଶି ବ୍ୟାପି ରହିଥାଏ । ପଶ୍ଚିମ ଦିଗନ୍ତରେ ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖି ମୁଗ୍ଧ ହେଲି । ନିକଟବର୍ତ୍ତୀ ରାଜମାର୍ଗର ଅପର ପାର୍ଶ୍ୱରେ ଅନେକ ପର୍ଯ୍ୟଟକ ରୁଣ୍ଡ ହେବା ଦେଖି ଓଲପାର୍ଟ ସେଠାକୁ ନେଇଗଲେ । ଛିଡ଼ା ରହିଛି ଗୋଟିଏ ସୁବିଶାଳ ମହିରୁହ । ବହୁକାଳର ସେହି ବୃକ୍ଷର ଅନେକ ଗୁଡ଼ିଏ ଶାଖା ପ୍ରଶାଖା ଓ ଚେର ଏଣେ ତେଣେ ମାଡ଼ି ରହିଛି । ପ୍ରକୃତିର ଏକ ବିଚିତ୍ର ବ୍ୟତିକ୍ରମ ରୂପେ ଦିଶୁଥିବା ବୃକ୍ଷଟିକୁ ଅନେକ ଲୋକ ଦେଖିବାକୁ ଆସନ୍ତି । ଗଛର କୌଣସି ଅଂଶରେ କେହି ହାତ ଦେଇପାରିବେ ନାହିଁ ବୋଲି ନିଷେଧାଜ୍ଞା ଲେଖାଥାଏ ।

ସହର ଭିତରେ ଅନେକ ଜାଗା ଦେଖିଲି । ଧାଡ଼ି ଧାଡ଼ି ତାଳଗଛ, ପୁଷ୍ପମୟ ଉଦ୍ୟାନ ଓ ବଡ଼ ବଡ଼ ଅଟ୍ଟାଳିକା । ଯୁକ୍ତରାଷ୍ଟ୍ର ଆମେରିକାର ଦ୍ୱିତୀୟ ବୃହତ୍ତମ ଜନବହୁଳ ନଗରୀ । ସହରର ଆକାର ଅନିର୍ଦ୍ଦିଷ୍ଟ ଜଣାଯାଉଥାଏ । ରାସ୍ତାଘାଟରେ କୃଷ୍ଣାଙ୍ଗମାନଙ୍କ ବ୍ୟତୀତ ଏସୀୟ ଲୋକଙ୍କୁ ଚିହ୍ନି ହେଉଥାଏ । ବେଶି ଭାଗ ବିଦେଶୀ ଥାନ୍ତି ଭିଏତନାମୀ ଓ ଜାପାନୀ । ଭାରତୀୟମାନଙ୍କୁ ମଧ୍ୟ ଦେଖିଲି । ଅନେକ ଥାନ୍ତି ଶିଖ୍ ବ୍ୟବସାୟୀ ।

ହୋଟେଲରେ ଛାଡ଼ିଲା ବେଳେ ଓଲପାର୍ଟ କହିଲେ, "ଆଗାମୀ କାଲି ଆପଣଙ୍କୁ ଏପରି ଏକ ସ୍ଥାନକୁ ନେଇଯିବି, ଯେଉଁ ଜାଗାର ନାମ ଛାତ୍ରଜୀବନରୁ ଶୁଣିଆସିଥିବେ, ଅଥଚ ଦେଖିବେ ବୋଲି ଭାବି ନଥିବେ ।" ମୁଁ ବୁଝିପାରିଲି ନାହିଁ । ପୁଣିଥରେ ସେ ବୁଦ୍ଧି ପରୀକ୍ଷା କଲେ, "ଯେଉଁମାନେ ଆମେରିକାର ରାଜଧାନୀର ନାମ ଶୁଣି ନାହାନ୍ତି , ସେମାନେ ମଧ୍ୟ ଏହି ସ୍ଥାନର ନାମ କଣ୍ଠସ୍ଥ ରଖିଛନ୍ତି ।" ମୋ ସାଧାରଣ ଜ୍ଞାନର ଅଭାବ ଦେଖି ଶେଷରେ ସେ ପ୍ରକାଶ କଲେ– 'ହଲିଉଡ୍' ।

ପ୍ରକୃତ ପକ୍ଷେ, ସିନେମା ବ୍ରହ୍ମାଣ୍ଡର ସ୍ୱର୍ଗଧାମ ହଲିଉଡ୍ ନାମ ବା ଆଧୁନିକ ଜଗତରେ ନ ଶୁଣିଛି କିଏ ? ମୁଁ ତାଙ୍କ ପ୍ରସ୍ତାବ ପ୍ରତି ଆନ୍ତରିକ ସମର୍ଥନ ଜଣାଇଲି ।

## ହଲିଉଡ୍ ଭ୍ରମଣ

ମାର୍ଚ୍ଚ ୩୦ ତାରିଖ । କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ପୂର୍ବାହ୍ନ ଓ ଅପରାହ୍ନରେ ଭାଷଣ ପରେ, ଦିନ ୪ଟା ବେଳେ ଓଲପାର୍ଟ ତାଙ୍କ ଗାଡ଼ିରେ ନେଇଗଲେ ପ୍ରାୟ ୧୦ ମାଇଲ୍ ଦୂରରେ ଥିବା ହଲିଉଡ୍ ସହରକୁ । ସାଙ୍ଗରେ ଥାନ୍ତି ଆଉ ଦୁଇଜଣ ଅଧ୍ୟାପକ । ଲସ୍ ଏଞ୍ଜେଲସ୍ ଛାଡ଼ିଲା ପରେ ଗାଡ଼ି କ୍ରମାଗତ ଭାବେ ଉପର ଭୂମିକୁ ଉଠୁଥାଏ । ଦୂରରୁ ଦିଶୁଥାଏ ଗୋଟିଏ ପାହାଡ଼ । ପାହାଡ଼ର ଶୀର୍ଷ ସ୍ଥଳରେ ଖଣ୍ଡିଏ ପ୍ରଶସ୍ତ ପଥର ଗାତ୍ରରେ ଲେଖା ରହିଥାଏ ବଡ଼ ବଡ଼ ଅକ୍ଷରରେ Hollywood । ପାହାଡ଼ର ପାଦଦେଶରେ ବ୍ୟାପିରହିଥାଏ ସୁନ୍ଦର ସୁନ୍ଦର ବାସଗୃହ । ଦୂରରୁ ସ୍ଥାନଟିର ପ୍ରାକୃତିକ ଶୋଭା ଦେଖି ଅନୁମାନ କଲି, ବିଶ୍ୱ ଚଳଚ୍ଚିତ୍ର ଜଗତର ରାଜଧାନୀ ହଲିଉଡ୍ ସହର ସେହିପରି ସୁଦୃଶ୍ୟ ସ୍ଥାନରେ ପ୍ରତିଷ୍ଠିତ ହେବା ସ୍ୱାଭାବିକ ।

ଅଧ୍ୟାପକ ଓଲପାର୍ଟ ସ୍ଥାନର ଅତୀତ ଓ ବର୍ତ୍ତମାନ ଉପରେ ଆଲୋକପାତ କଲେ । ଶହେ ବର୍ଷ ପୂର୍ବେ ହୋରେସ୍ ଉଇଲ୍‌କକ୍ସ ନାମକ ଧର୍ମପରାୟଣ ବ୍ୟକ୍ତି ଏହି କ୍ଷୁଦ୍ର ସହର ସ୍ଥାପନ କଲାବେଳେ ତାଙ୍କର ଆଶା ଥିଲା, ସେଠାରେ କେବଳ ଈଶ୍ୱରବିଶ୍ୱାସୀ, ଧୀର ଶାନ୍ତ ଓ ଅଭାବଗ୍ରସ୍ତ ଲୋକମାନଙ୍କର ବସତିଟିଏ ଗଢ଼ିଉଠିବ ଏବଂ ଅଧିବାସୀମାନେ ମଦ୍ୟ ଓ ନିଶାଦ୍ରବ୍ୟ ପାଖରୁ ଦୂରରେ ରହି ଶାନ୍ତିମୟ ଜୀବନ ଯାପନ କରିବେ । କିନ୍ତୁ ସିନେମା ଶିଳ୍ପର ଉତ୍ଥାନ ପରେ ଏବେ ଏଠାରେ ଦେଖିବାକୁ ମିଳୁଛି ତାଙ୍କ ସ୍ୱପ୍ନର ବିପରୀତ ଜୀବନଧାରା । "ଧନ ଐଶ୍ୱର୍ଯ୍ୟ ଭରା ହଲିଉଡରେ ମଦ୍ୟର ସ୍ରୋତ ଭାସି ଚାଲିଛି । ନିଶା ସେବନ ଏଠାକାର ଧର୍ମ । ଶାନ୍ତି ପରିବର୍ତ୍ତେ ହଲିଉଡ ହୋଇଛି ଏକ ଅଶାନ୍ତ ଓ ଅଶୋଭନୀୟ ସ୍ଥାନ । ଧନଶାଳୀ ଅସାମାଜିକମାନଙ୍କ ଆଡ୍ଡା ।"

ତାଙ୍କ ବକ୍ତବ୍ୟରେ ବାଧା ଦେଇ ମୁଁ କହିଲି, "ଚଳଚ୍ଚିତ୍ର ତାରକାମାନେ ନିଶ୍ଚୟ ଶାନ୍ତିରେ ଥିବେ । ତା ନ ହେଲେ, ନିଜ ନିଜ ଅଭିନୟ ବଳରେ ସେମାନେ କୋଟି ପ୍ରାଣରେ ଶାନ୍ତି ଦେଇପାରନ୍ତେ ନାହିଁ ।"

ହସିଉଠି ଓଲପାର୍ଟ କମେଣ୍ଟ ଦେଲେ, "ହଁ, କେତେଦୂର ଶାନ୍ତିରେ ତାରକାମାନେ ରହନ୍ତି, ତାହାର ସାକ୍ଷୀ ସ୍ୱୟଂ ମେରିଲିନ୍ ମନ୍‌ରୋ । ହଲିଉଡର ପରମ ଶାନ୍ତି ଓ ଶୋଭା ମଧ୍ୟରେ ସେହି ଅନିନ୍ଦ୍ୟା ସୁନ୍ଦରୀ ଅଭିନେତ୍ରୀଙ୍କୁ ମଧ୍ୟ ଅକାଳରେ ବିଷ ପିଇ ଆତ୍ମହତ୍ୟା କରିବାକୁ ହେଲା ।"

ଗୋଟିଏ ରେସ୍ତୁରାଁରେ ଚା ପାନ ବେଳେ ଅନ୍ୟ ଦୁଇ ଅଧ୍ୟାପକ ହଲିଉଡ ଜୀବନ ସମ୍ପର୍କରେ ଅନେକ କଥା ଉଲ୍ଲେଖ କଲେ । ସେଠାକୁ ଦେଶ ବିଦେଶରୁ ସୁନ୍ଦରୀ ଓ ମଡେଲ୍‌ମାନେ ଆସନ୍ତି । ଅପୂରନ୍ତ କାମନା, ଅଭିନେତ୍ରୀ ହେବେ । ଦଲାଲମାନେ ସେମାନଙ୍କୁ ଆଣିବା ବେଳେ ସ୍ୱର୍ଗସୁଖର ଆଶା ଦିଅନ୍ତି । ତାପରେ, ଆରମ୍ଭ ହୁଏ ଭାଗ୍ୟର ବିଡ଼ମ୍ବନା । କେହି କେହି ପାଗଳ ହୁଅନ୍ତି, କେହି କେହି ରୂପଜୀବୀ, ଧନୀମାନଙ୍କର ଶିକାର ଓ ଏପରିକି କେହି କେହି ଆତ୍ମହତ୍ୟା କରନ୍ତି । ଯେଉଁମାନେ ରୂପ ଗୁଣ ବଳରେ ତାରକା ହେବାକୁ ସମର୍ଥ ହୁଅନ୍ତି, ସେମାନଙ୍କ ଜୀବନ ବିଳାସିତା, ବ୍ୟଭିଚାର, ବିବାହ ବିଚ୍ଛେଦ, ଛାଡ଼ପତ୍ର, କଳହ, ଅପବାଦ, ଲୋକନିନ୍ଦା ଓ ହିଂସା ମଧ୍ୟରେ ଜର୍ଜରିତ ହୁଏ । ବହିର୍ଦ୍ଦୃଷ୍ଟିରୁ ହଲିଉଡ୍ ସ୍ୱର୍ଗ, ଭିତରେ ନର୍କ ।

ସହରରେ କିଛି ସମୟ ବୁଲିଲା ପରେ କେତେଗୋଟି ପୁରାତନ ବା ପରିତ୍ୟକ୍ତ ଷ୍ଟୁଡ଼ିଓ ଦେଖିଲୁଁ । ଓଲପାର୍ଟ କହିଲେ, ''ପବିତ୍ର ହଲିଉଡ୍ ମାଟିରେ ଗୋଟିଏ ତୀର୍ଥସ୍ଥାନ ମଧ୍ୟ ରହିଛି । ସନ୍ଧ୍ୟାବେଳେ ସେଠାରେ ଯୁବକ ଯୁବତୀ ଓ ବୃଦ୍ଧବୃଦ୍ଧାଙ୍କର ଭିଡ଼ ଲାଗେ । ଏଠାକୁ ଆସି ସେଠାକୁ ନ ଗଲେ, ଯାତ୍ରା ନିଷ୍ଫଳ ହେବ ।''

ଚାଲିଲୁଁ ତଥାକଥିତ 'ତୀର୍ଥ ସ୍ଥାନ' ଦିଗକୁ । ସନ୍ଧ୍ୟା ଆସିଯାଇଥାଏ । ଲୋକଙ୍କ ଭିଡ଼ ଦେଖି ଭାବିଲି, ନିଶ୍ଚୟ ସେଠାରେ କିଛି ଚମକପ୍ରଦ ପଦାର୍ଥ ରହିଛି । ଆଗରେ ଦିଶିଲା ସିମେଣ୍ଟ ଚଟାଣ । ଚଟାଣର ଏଣେ ତେଣେ ଗୋଟିଏ ଗୋଟିଏ ଚିହ୍ନ ଦିଶୁଥାଏ । ପ୍ରତ୍ୟେକ ଚିହ୍ନ ପାଖରେ ଲେଖାଥାଏ ଗୋଟିଏ ନାମ ଏବଂ ଏକ ତାରିଖ । ଜଣେ ଅଧ୍ୟାପକ କହିଲେ, ''ଏହି ମେଜିଆ ବକ୍ଷରେ ପ୍ରସିଦ୍ଧ ଅଭିନେତା ଅଭିନେତ୍ରୀମାନଙ୍କର ପଦାଙ୍କ ରହିଛି । ସେହିଗୁଡ଼ିକ ଦେଖିବା ଲାଗି ଏପରି ଭିଡ଼ ।'' ପାଖରୁ ଦେଖି ବିସ୍ମିତ ହେଲି, ସବୁ ଚିହ୍ନଗୁଡ଼ିକ ଜୋତାର ଚିହ୍ନ, ମନୁଷ୍ୟ ପାଦର ନୁହେଁ । ପରିହାସ ଛଳରେ କହିଲି, ''ଯେଉଁ କୋମ୍ପାନୀର ଜୋତା ମେରିଲିନ୍ ବା ଲରେନ୍ସ ବ୍ୟବହାର କରୁଥିଲେ, ସେହି କୋମ୍ପାନୀର ଜୋତା ଲକ୍ଷ ଲକ୍ଷ ଲୋକ ବ୍ୟବହାର କରିଥିବେ । ସୁତରାଂ ଚର୍ମପାଦୁକାର ଚିହ୍ନକୁ ମନୁଷ୍ୟ ପାଦର ଚିହ୍ନ ବୋଲି ଚିନ୍ତା କରିବା ମୂର୍ଖାମି ବୋଧହୁଏ କେବଳ ହଲିଉଡରେ ସମ୍ଭବ !'' ''ଠିକ୍ କହିଛନ୍ତି'' କହି ଅନ୍ୟମାନେ ହସିଲେ ।

ଫେରିବାବେଳେ ଓଲପାର୍ଟ ଅନ୍ୟ ଏକ ରାସ୍ତାରେ ଗାଡ଼ି ଚଳାଇଲେ । ପ୍ରାଚୀରବେଷ୍ଟିତ ଗୋଟିଏ ପ୍ରାଙ୍ଗଣର ଫାଟକ ବାହାରେ ଲେଖାଥାଏ 'Disney Land' । ଭିତରେ ରହିଛି ପୃଥିବୀପ୍ରସିଦ୍ଧ Walt Disney ଚଳଚ୍ଚିତ୍ର କୋମ୍ପାନୀର କେତେଗୁଡ଼ିଏ ଷ୍ଟୁଡ଼ିଓ ।

## ଲସ୍ ଏଞ୍ଜେଲସ୍‌ରୁ ଟୋକିଓ

ମାର୍ଚ୍ଚ ୩୧ ତାରିଖ ୯ଟାରେ ଶେଷ ବକ୍ତବ୍ୟ ପରେ ସଙ୍ଗେ ସଙ୍ଗେ ବିମାନଘାଟିକୁ ଚାଲିଲି । ଷ୍ଟାନଲି ଓଲପାର୍ଟ ବିଦାୟ ଦେଲାବେଳେ ତାଙ୍କର ସୌହାର୍ଦ୍ଦ୍ୟ ଭୁଲି ପାରିବି ନାହିଁ ବୋଲି ଜଣାଇଲି । ପୁଣିଥରେ ଦେଖାହେବ ବୋଲି ଭାବିପାରି ନ ଥିଲି । କିନ୍ତୁ ଭବିଷ୍ୟତରେ ଆଉ ଦୁଇଥର ସାକ୍ଷାତ୍ ସୁଯୋଗ ମିଳିଥିଲା, ଥରେ ଲଙ୍ଗ୍ ବିଚ୍ ନାମକ ସହରରେ ଓ ତା ପରେ ଦିଲ୍ଲୀରେ ।

ବିଦାୟ ପୂର୍ବରୁ ଓଲପାର୍ଟ ଜଣାଇଦେଲେ ଯେ ଟୋକିଓରେ ୩ ଦିନ ରହିବା ବ୍ୟବସ୍ଥା ଯୋଗୁଁ ବିମାନ ଟିକଟରେ ସମୟ ବଦଳ କରାଯାଇଛି । ସେଥିପାଇଁ ଟୋକିଓ ବିମାନଘାଟିକୁ ଟ୍ରାଭଲ ଏଜେଣ୍ଟ ଗାଡ଼ିଧରି ଆସି ନ ପାରନ୍ତି । ଅବଶ୍ୟ ଟେଲିଫୋନ୍ ଯୋଗେ ଫ୍ଲାଇଟ ନମ୍ବର ଜଣାଇ ଦିଆଯାଇଛି । ହୋଟେଲ ଠିକଣା ଲେଖାଥିବା କାର୍ଡ଼ ଖଣ୍ଡିକ ସେ ହାତରେ ଦେଲେ । ନାମ ଥାଏ 'ଶିବା' (Shiba) । ଭାରତୀୟ ନାମ ସହିତ ସାମଞ୍ଜସ୍ୟ ଥିବାରୁ ଭଲ ଲାଗିଲା ।

ପୁଣି ସେହି ଅସୀମ ଦିଗନ୍ତ, ସେହି ପ୍ରଶାନ୍ତ ଜଳରାଶି । ଜାପାନ ଏୟାର ଲାଇନସ୍‌ର ବିମାନ । ପରିଚାରିକାମାନଙ୍କୁ 'ଗେଣ୍ଡା' ସିଝା ପରିବର୍ତ୍ତେ ଟମାଟୋ ସିଝା ଲଞ୍ଚ୍ ଦେବାକୁ କହିଲି । ପାଖରେ ବସିଥିବା ଜଣେ ଅଷ୍ଟ୍ରେଲିଆର ଯାତ୍ରୀଙ୍କ ସହିତ ଜାପାନୀ ଓ ଚୀନାମାନଙ୍କର ଖାଦ୍ୟ ବିଷୟରେ ଆଲୋଚନା ହେଲା । ସେମାନେ ପ୍ରାୟ ସବୁ ପ୍ରକାର ଜୀବଜନ୍ତୁର ମାଂସ ଖାଇବାକୁ ପସନ୍ଦ କରନ୍ତି । ବେଙ୍ଗ, ସାପ, ଝିଟିପିଟି, ଅସରପା, ମୂଷା, ମାଙ୍କଡ଼ ଓ କାଉ ପ୍ରଭୃତି ସବୁକିଛି ସେମାନଙ୍କର ହଜମ ହୁଏ । ଏପରିକି, ଉଇ ଓ ପିମ୍ପୁଡ଼ି ଭଜା ସେମାନଙ୍କୁ ଭଲ ଲାଗେ । ଚୀନ ଓ ଜାପାନ ଭ୍ରମଣ କରିଥିବା ସେହି ଅଭିଜ୍ଞ ଅଷ୍ଟ୍ରେଲୀୟ ଭଦ୍ରଲୋକ ବର୍ଣ୍ଣନା କଲେ, ଚୀନ ଦେଶର ଅଭିଜାତ ସମ୍ପ୍ରଦାୟର ସବୁଠାରୁ ପ୍ରିୟ ସୁସ୍ୱାଦୁ ଖାଦ୍ୟ ହେଉଛି ଜୋକ ଭଜା । ଚାଷ ଖେତରୁ ବଡ଼ ବଡ଼ ଜୋକ ଧରିଆଣି ଘୋଡ଼ାର ପିଠି ଓ ପେଟରେ ବସାଇ ଦିଆଯାଏ । ରକ୍ତ ଶୋଷଣ କରି ଜୋକଗୁଡ଼ିକ ପରିପୁଷ୍ଟ ହେଲାପରେ ସେ ଗୁଡ଼ିକୁ ଘିଅ ବା ତେଲରେ ଭାଜି ଖାଦ୍ୟ ରୂପେ ଉପଭୋଗ କରାଯାଏ । ସେହିପରି, ସେ ଦେଶର ସବୁଠାରୁ ଭଲ ପିକ୍‌ଲ୍ ବା ଆଚାର ତିଆରି କରାଯାଏ ମୂଷାରୁ । ପ୍ରଥମେ ମୂଷାଗୁଡ଼ିକର ଲାଞ୍ଜରେ ସୂତା ବାନ୍ଧି ନିଆଁ ଜଳୁଥିବା ଚୁଲି ଉପରେ ଟାଙ୍ଗିଦିଆଯାଏ । ତଦ୍ଦ୍ୱାରା ଲୋମଗୁଡ଼ିକ ପୋଡ଼ିଯାଇ ଝଡ଼ିପଡ଼େ । ତା'ପରେ, ସେଗୁଡ଼ିକ ମହୁ ଭର୍ତ୍ତିଥିବା ପାତ୍ରରେ କିଛିଦିନ ପାଇଁ ବୁଡ଼ାଇ ରଖାଯାଏ । ଯଥାସମୟରେ, ମୂଷାଗୁଡ଼ିକ ଆଚାରରେ ପରିଣତ ହୁଏ ।

ଥରେ ଶୁଣିଥିଲି, ଭାରତର ରାଷ୍ଟ୍ରଦୂତ ରୂପେ ଚୀନ ଦେଶକୁ ଯାଇଥିବା ସର୍ଦ୍ଦାର କେ.ଏମ୍.ପାନିକ୍କାରଙ୍କ ଦୁର୍ଦ୍ଦଶା କାହାଣୀ । ଚୀନ ଦେଶର ସର୍ବୋଚ୍ଚ ନେତା ମାଓ ସେ ତୁଙ୍ଗ୍ ତାଙ୍କୁ ନୈଶ ଭୋଜନ ଲାଗି ନିମନ୍ତ୍ରଣ କରିଥିଲେ । ପ୍ଲେଟ୍ ଉପରେ ଥାଏ ସିଦ୍ଧ ମାଙ୍କଡ଼ ମଗଜ । ମାଓ ସେ ଖାଦ୍ୟ ଖାଇଲାବେଳେ ସୌଜନ୍ୟ ଦୃଷ୍ଟିରୁ ବିନା ଆପତ୍ତିରେ ରାଷ୍ଟ୍ରଦୂତ ମଧ ଖାଇବାକୁ ବାଧ୍ୟ ହେଲେ । ବସାକୁ ଫେରିଆସି ପାନିକ୍କାର ମହୋଦୟ ପାଟି ଭିତରେ ପାଞ୍ଚ ଆଙ୍ଗୁଳି ଭର୍ତ୍ତିକରି ବାରମ୍ବାର ବାନ୍ତି କରି ଉଦର ମଧ୍ୟରୁ ସବୁ ଖାଦ୍ୟ ନିଷ୍କାସନ କଲେ । ତଥାପି ମନରୁ ବିକାର ଗଲା ନାହିଁ । ନିଦରେ ମାଙ୍କଡ଼ ମୁଣ୍ଡର ସ୍ୱପ୍ନ ଦେଖିଲେ । ପ୍ରାୟଶ୍ଚିତ୍ତ ନିମନ୍ତେ ଦୁଇଦିନ ଉପବାସ କଲେ । ଦିନେ ପାନିକ୍କାରଙ୍କ ସହିତ ମାନ୍ଦ୍ରାଜ ଷ୍ଟେସନରେ ସାକ୍ଷାତ ହେଲାବେଳେ ତାଙ୍କୁ ଏହି ବିଷୟର ସତ୍ୟାସତ୍ୟ ଜାଣିବା ଲାଗି ପଚାରିବି ବୋଲି ଭାବିଥିଲି । କିନ୍ତୁ ଅନ୍ୟମାନେ ତାଙ୍କ ପାଖରେ ଥିବା ଯୋଗୁଁ, ପଚାରି ପାରିଲି ନାହିଁ ।

ସଂକ୍ଷେପରେ, ଟୋକିଓ ରହଣି ବେଳେ କେବଳ ରୋଟି ଖାଇ ଓ ଦୁଧ ପିଇ ରହିବି ବୋଲି ସଂକଳ୍ପ ନେଲି । ମଧ୍ୟରାତ୍ରି ବେଳକୁ ଟୋକିଓ ବିମାନ ବନ୍ଦରରେ ପହଞ୍ଚିଲି ।

# ଜାପାନ ରାଜଧାନୀ ଟୋକିଓରେ ତିନିଦିନ



## କେତେକ ଦୃଶ୍ୟର ସ୍ମୃତି

### ଜାପାନ ଦେଖିବା ନିମନ୍ତେ ଆଗ୍ରହ

ବିଚିତ୍ର ଦେଶ ଜାପାନ । ଇତିହାସ ପଢ଼ିଲାବେଳେ ମନେ ହେଉଥାଏ, ପ୍ରହେଳିକାମୟ ଜାପାନର ଅନେକ ବିଷୟ ଅବୋଧ । ଗତ ଶତାବ୍ଦୀ ପର୍ଯ୍ୟନ୍ତ ପୃଥିବୀର ଅନ୍ୟ ଦେଶ ସହିତ ସେ ଦେଶର ସମ୍ପର୍କ ନଥାଏ । କିନ୍ତୁ, ଥରେ ସମ୍ପର୍କ ସ୍ଥାପିତ ହେଲାପରେ, ଏସିଆର ସବୁ ଦେଶ ମଧ୍ୟରେ ପାଶ୍ଚାତ୍ୟ ଶିକ୍ଷା ଓ ବିଜ୍ଞାନ ପ୍ରତି ସର୍ବାଧିକ ଆକର୍ଷିତ ହେଲା ଜାପାନ । ମାତ୍ର କେତୋଟି ଦଶକ ମଧ୍ୟରେ ନିଜର ପ୍ରଗତି ଓ ସମୃଦ୍ଧି ବଳରେ ଜାପାନୀମାନେ ସମସ୍ତଙ୍କୁ ଚକିତ କଲେ ଓ ନିଜ ଦେଶକୁ ଏସିଆର ସର୍ବଶ୍ରେଷ୍ଠ ଶକ୍ତି ରୂପେ ପରିଚିତ କରାଇଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅନ୍ତିମ ମୁହୂର୍ତ୍ତରେ ଜାପାନର ହିରୋସୀମା ଓ ନାଗାସାକି ଉପରେ ପରମାଣୁ ବୋମା ପଡ଼ିବା ଯୋଗୁଁ ସେ ଦେଶର ପତନ ଘଟିଥିଲା । ଅଥଚ, ଅଳ୍ପ ସମୟ ମଧ୍ୟରେ ପୁଣି ଯୁଦ୍ଧର ଧ୍ୱଂସସ୍ତୂପ ଭିତରେ ଜାପାନୀମାନେ କର୍ମନିଷ୍ଠା ବଳରେ ଉନ୍ନତି ପଥେ ଆଗେଇ ଗଲେ । ଅଧୁନା, ବିଶ୍ୱର ଅନ୍ୟତମ ଶିଳ୍ପସମୃଦ୍ଧ ଦେଶ ଭାବରେ ଆମେରିକା ପ୍ରଭୃତି ଦେଶର ସମକକ୍ଷ ହୋଇପାରିଛି ଜାପାନ ।

ଏହି ଦେଶ ସମ୍ବନ୍ଧରେ ନାନାପ୍ରକାର କିମ୍ବଦନ୍ତୀ ଓ କାହାଣୀମାନ ରହିଛି । କଲେଜରେ ପଢ଼ିଲା ସମୟରେ ଜନ୍ ଗୁନ୍ଥାର ନାମକ ପ୍ରସିଦ୍ଧ ଲେଖକଙ୍କ Inside Asia ବହିରେ ପଢ଼ିଥିଲି, ଜାପାନର ସମ୍ରାଟ ଜଣେ ମଣିଷ ପରି ଚାଲନ୍ତି, ବସନ୍ତି, ଖାଆନ୍ତି ଓ ଶୁଅନ୍ତି, କିନ୍ତୁ ତଥାପି ସେ ମନୁଷ୍ୟ ନୁହନ୍ତି, ଦେବତା । ଜାପାନୀମାନଙ୍କ ବିଶ୍ୱାସରେ, ସେମାନଙ୍କ ସର୍ବପ୍ରଥମ ସମ୍ରାଟ ବା ମିକାଡୋ ହେଉଛନ୍ତି ସୂର୍ଯ୍ୟଦେବୀ (ଦେବତା ନୁହେଁ)ଙ୍କ ନାତି, ଜିମ୍ମୁ । ଜାପାନରେ ରାଜତ୍ୱ କରିବା ଲାଗି ତାଙ୍କୁ ଦେବତାମାନେ ସ୍ୱର୍ଗଧାମରୁ ଭୂତଳକୁ ପଠାଇଥିଲେ । ଅଷ୍ଟମ ଶତାବ୍ଦୀରେ ମିକାଡୋ ହୋଇଥିବା ଜିମ୍ମୁଙ୍କ ବଂଶଧରମାନେ ଭବିଷ୍ୟତ କାଳରେ ମଧ୍ୟ ସୂର୍ଯ୍ୟଦେବୀଙ୍କ

ବଂଶାନୁକ୍ରମିକ ଦାୟାଦ ଭାବରେ ପୂଜିତ ହୁଅନ୍ତି । ଜାପାନୀମାନେ ସମ୍ରାଟଙ୍କୁ ଏତେଦୂର ଭକ୍ତି କରନ୍ତି ଯେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆମେରିକାର ସୈନ୍ୟମାନେ ଜାପାନ ଅଧିକାର କରି ପ୍ରଧାନମନ୍ତ୍ରୀ ଓ ଅନ୍ୟ ମନ୍ତ୍ରୀମାନଙ୍କୁ ବନ୍ଦୀ କଲାବେଳେ, ଚାରିଆଡ଼େ ଜାପାନୀମାନେ ପ୍ରାଚୀର ଗାତ୍ରରେ ଲେଖିଦେଲେ, "ଆମ ସମ୍ରାଟଙ୍କ ପବିତ୍ର ଛାୟା ସ୍ପର୍ଶ କରିବାକୁ ସାହସ କଲେ, ସମଗ୍ର ଜାତି ପ୍ରତିଶୋଧ ନେବାକୁ ଜୀବନ ଦେବେ ।" ଆମେରିକୀୟ ସେନାପତି ମ୍ୟାକ୍ ଆର୍ଥାର ଭୟ ପାଇଗଲେ । ସମ୍ରାଟ ଥିଲେ ମିକାଡୋ ହିରୋହିଟୋ ।

ଅପର ପକ୍ଷରେ, ଜାପାନରେ ଚାଲିଛି ଗଣତାନ୍ତ୍ରିକ ଶାସନ । ପାର୍ଲିଆମେଣ୍ଟ, ପ୍ରଧାନମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ଯଥାରୀତି କାର୍ଯ୍ୟରତ । ଜାପାନୀମାନଙ୍କ କର୍ମତତ୍ପରତା ସମ୍ପର୍କରେ ନାନାପ୍ରକାର ପ୍ରବାଦ ରହିଛି । ପରିଷ୍କାର ପରିଚ୍ଛନ୍ନତା ଦୃଷ୍ଟିରୁ ଟୋକିଓର ସମତୁଲ୍ୟ ସହର ପୃଥିବୀର ଅନ୍ୟତ୍ର ନାହିଁ ବୋଲି କୁହାଯାଏ ।

ଜାପାନର ଧର୍ମ ସମ୍ବନ୍ଧରେ ଅନେକ କଥା ପଢ଼ିଥିଲି । ହିନ୍ଦୁ ବିଶ୍ୱାସର ଦେବଦେବୀଙ୍କ ପରି ଜାପାନୀମାନେ ମଧ୍ୟ ଆଦିମ କାଳରୁ ଅନେକାନେକ ଦେବଦେବୀରେ ବିଶ୍ୱାସ ରଖିଥାନ୍ତି । କେହି କେହି ବିଶେଷଜ୍ଞଙ୍କ ମତରେ ଅତି ପ୍ରାଚୀନ କାଳରେ ହିନ୍ଦୁମାନଙ୍କ କେତେକ ଦେବଦେବୀଙ୍କୁ ଜାପାନୀମାନେ ନିଜ ଧର୍ମ ବିଶ୍ୱାସରେ ସ୍ଥାନ ଦେଇଥିଲେ । ଯଥାସମୟରେ ଦିନେ ଭାରତର ବୌଦ୍ଧଧର୍ମ ଜାପାନର ସର୍ବପ୍ରଧାନ ଧର୍ମରେ ପରିଣତ ହେଲା । ଆଶ୍ଚର୍ଯ୍ୟର ବିଷୟ, ବୁଦ୍ଧଙ୍କ ଅହିଂସା ଧର୍ମରେ ଦୀକ୍ଷିତ ଜାପାନୀ ଜାତି ହିଂସା କର୍ମରେ ପୃଥିବୀରେ ଅପ୍ରତିଦ୍ୱନ୍ଦ୍ୱୀ । ମହାଯୁଦ୍ଧ ବେଳେ ସେମାନେ ଯେଉଁପ୍ରକାରର ନିର୍ମମ ହିଂସାର ଆଶ୍ରୟ ନେଇଥିଲେ, ତାହାର ପଟାନ୍ତର ନାହିଁ । ବନ୍ଦୀ ଶତ୍ରୁ ସୈନ୍ୟମାନଙ୍କୁ ନିପାତ କରିବା ଲାଗି ଗୁଳି ନଷ୍ଟ ନକରି, ସଙ୍ଗୀନ ମୁନରେ ହତ୍ୟାକରି ସେମାନେ ଆନନ୍ଦ ପାଉଥିଲେ । 'ଜୀବପ୍ରତି ଦୟା' ଥିଲା ବୁଦ୍ଧଙ୍କର ବାଣୀ । କିନ୍ତୁ ବୌଦ୍ଧଧର୍ମାବଲମ୍ବୀ ଜାପାନୀମାନେ ଜୀବହତ୍ୟା ପ୍ରତି ତିଳେ ମାତ୍ର କାତରତା ଦେଖାଇ ନାହାନ୍ତି ।

ପିଲାଦିନର ଭୂଗୋଳ ବହିରେ ପଢ଼ିଥିଲି, ଜାପାନ ହେଉଛି ଭୂମିକମ୍ପର ଦେଶ । କେଉଁ ମୁହୂର୍ତ୍ତରେ ମାଟି ଦୋହଲି ଉଠିବ ଓ ଘରଦ୍ୱାର ଭୁଷୁଡ଼ି ପଡ଼ିବ ତାହା ହିଁ ଥାଏ ଲୋକଙ୍କର ଦୈନନ୍ଦିନ ଭୟ । ସେମାନଙ୍କ ବିଶ୍ୱାସରେ, ଭୂଗର୍ଭରେ ଶୋଇଥିବା ଗୋଟିଏ ବିଶାଳକାୟ ଜନ୍ତୁ ନିଦରେ ପାଶ ମୋଡ଼ିଲା ବେଳେ ପୃଥିବୀ ଥରିଉଠେ । ସେହି ଜନ୍ତୁଟିକୁ ଜାପାନୀମାନେ ଭୟ ନ କରି, କିମ୍ବା ପୂଜା ଆରାଧନା ଦ୍ୱାରା ସନ୍ତୁଷ୍ଟ କରିବାକୁ ଚେଷ୍ଟା ନ କରି, ତାକୁ ଶିକ୍ଷାଦେବା ନିମନ୍ତେ ନିଜ ନିଜ ବାସଗୃହକୁ କାଠରେ ତିଆରି କରନ୍ତି । ପତଳା ଓ ହାଲୁକା କାଠର ଘର

ଭାଙ୍ଗିଲେ ସୁଦ୍ଧା ମରିବା ଭୟ ନଥାଏ । କୁହାଯାଏ, ପାଞ୍ଚତାଲା ବିଶିଷ୍ଟ ବୌଦ୍ଧ ମନ୍ଦିରଗୁଡ଼ିକ ମଧ୍ୟ ଭୂମିକମ୍ପରୁ ରକ୍ଷା ପାଇଯାଏ । ସେଥିପାଇଁ ଅବଶ୍ୟ ନିର୍ମାଣ କୌଶଳ ଦାୟୀ । କାଠଘରର ମୂଳଭିତ୍ତି ମାଟି ଉପରେ ନ ରଖି, କିଞ୍ଚିତ ଉର୍ଦ୍ଧ୍ୱରେ ସ୍ତମ୍ଭ ଉପରେ ରଖାଯାଏ । ତେଣୁ, ଭୂକମ୍ପର ଶିହରଣରେ ଘର ହଲିଯାଏ ନାହିଁ ।

ଏବେ ଅବଶ୍ୟ ଅବସ୍ଥା ବଦଳିଯାଇଛି । ନୂତନ ଉପାୟରେ ଓ ନୂତନ ଉପାଦାନ ଦ୍ୱାରା ପତଳା କାଚର ଅଟ୍ଟାଳିକା ତିଆରି ହେଉଛି । ପୁରାତନ ଓ ନୂତନର ମିଶ୍ରଣ ହେଉଛି ଜାପାନର ବୈଚିତ୍ର୍ୟ ।

ଦ୍ୱୀପଦେଶ ଜାପାନର ଆକାର ଅତି କ୍ଷୁଦ୍ର । ରୁଷିଆ ବା ଚୀନ ଦେଶର ବିଶାଳତା ତୁଳନାରେ ଜାପାନକୁ ବାମନ ବୋଲି ବିଦ୍ରୂପ କରାଯାଏ । ଚାରିଟି ବଡ଼ ବଡ଼ ଦ୍ୱୀପ ଓ ଅଗଣିତ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପର ସମାବେଶରେ ଜାପାନ ଦେଶ ଗଠିତ । ଦେଶର ଦୈର୍ଘ୍ୟ ମାତ୍ର ଦେଢ଼ ହଜାର ମାଇଲ (୨,୪୦୦ କିଲୋମିଟର) । ହାରାହାରି ପ୍ରସ୍ଥ ହେଉଛି ୧୩୦ ମାଇଲ । ପ୍ରାୟ ସାତ କୋଟି ମନୁଷ୍ୟର ବସବାସ ନିମନ୍ତେ ଏତିକି ସ୍ଥାନ ଯଥେଷ୍ଟ ନୁହେଁ ଜାଣି, ଜାପାନୀମାନେ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ସମଗ୍ର ଦକ୍ଷିଣପୂର୍ବ ଏସିଆ ଓ ତା ପରେ ଅଷ୍ଟ୍ରେଲିଆ ମହାଦେଶ ଅଧିକାର କରିବେ ବୋଲି ଆଶା ବାନ୍ଧିଥିଲେ ।

୧୯୪୫ରେ ଜାପାନ ମାଟିରେ ଏଟମ୍ ବୋମା ପଡ଼ିଲା । ଦେଶର ପରାଜୟ ଓ ପତନ ପରେ ଜାପାନୀମାନେ ଯେଉଁ ଦୁର୍ଦ୍ଦଶା ଭୋଗିଲେ ତାହାର ଦୃଷ୍ଟାନ୍ତ ବିରଳ । ଅନେକ ରାଜନେତା ଆତ୍ମହତ୍ୟା କଲେ । ଯୁଦ୍ଧକାଳୀନ ପ୍ରଧାନମନ୍ତ୍ରୀ ହିଡେକି ତୋଜୋ ଓ ତାଙ୍କ ମନ୍ତ୍ରୀ, ସେନାପତିମାନେ ଫାଶି କାଠରେ ଝୁଲିଲେ । ଆମେରିକାନମାନେ ଜାପାନୀମାନଙ୍କୁ ଅଧିକାରରେ ରଖିଲେ । କିନ୍ତୁ ତାହାର ମାତ୍ର ୪୦ ବର୍ଷ ପରେ ଦେଖାଗଲା 'ବାମନ' ଜାପାନ 'ଶିଳ୍ପ ରାକ୍ଷସ'ରେ ପରିଣତ ହେଲାଣି । ମୋ ପିଲାବେଳେ ଭାରତର ହାଟ ବଜାରରେ ଶସ୍ତା ଜାପାନୀ ଖେଳନା କିଣିବାକୁ ମିଳୁଥାଏ । ଏବେ ବିଶ୍ୱ ବଜାରରେ ଜାପାନୀ ମୋଟରଗାଡ଼ି, ଟେଲିଭିଜନ, ରେଡ଼ିଓ, ଟ୍ରାଞ୍ଜିଷ୍ଟର, ଘଡ଼ି ଓ ବିବିଧ ପ୍ରକାର ଶିଳ୍ପଜାତ ପଦାର୍ଥର ସୁଅ ଛୁଟିଛି । କୁହାଯାଉଛି, ଅର୍ଥନୈତିକ ବିକାଶ ଦୃଷ୍ଟିରୁ ଜାପାନ ଏବେ ପାଶ୍ଚାତ୍ୟ ଦେଶଗୁଡ଼ିକୁ ଟପିଗଲାଣି ।

ଅନ୍ୟ ପକ୍ଷରେ, ଜାପାନୀମାନେ ନିଜ ଦେଶର ସଭ୍ୟତା, ସଂସ୍କୃତି ଓ ପରମ୍ପରା ଛାଡ଼ିପାରି ନାହାନ୍ତି । ପାଶ୍ଚାତ୍ୟ ଚାଲିଚଳଣ ଓ ଜ୍ଞାନବିଜ୍ଞାନ ଗ୍ରହଣ କରିଥିବା ସତ୍ତ୍ୱେ, ନିଜସ୍ୱ ସାମାଜିକ ଜୀବନର ଚିରାଚରିତ ବିଶ୍ୱାସ ଓ ମୂଲ୍ୟବୋଧ ପ୍ରତି

ସେମାନଙ୍କର ଆସ୍ଥା ରହିଛି । ଦେଶର ଆକାର କ୍ଷୁଦ୍ର ଥିବାରୁ ଜନସଂଖ୍ୟା ସୀମିତ ରଖିବା ଲାଗି ଜାପାନୀ ସମାଜ ସଚେତନ ଅଛି ।

ଜାପାନ ସମ୍ବନ୍ଧରେ ପାଠ୍ୟ ପୁସ୍ତକରୁ ଅନେକ କଥା ଜାଣିଥିଲି । ଏବେ ନିଜ ଆଖିରେ ଦେଖିବି ବୋଲି ଆନନ୍ଦିତ ହେଲି ।

## ବିମାନଘାଟିରୁ ଶିବା ହୋଟେଲ

୩୧ ମାର୍ଚ୍ଚ ମଧ୍ୟରାତ୍ରରେ ଟୋକିଓ ବିମାନ ବନ୍ଦରରେ ପହଞ୍ଚି ଦେଖିଲି, ମୋତେ ନେବାଲାଗି ଟ୍ରାଭଲ ଏଜେନ୍ସିର ଗାଡ଼ି ଆସିନାହିଁ । ଦଳ ଦଳ ଯାତ୍ରୀ ଟ୍ୟାକ୍ସିରେ ଚାଲିଯାଉଥାନ୍ତି । ଗୋଟିଏ ଟ୍ୟାକ୍ସି ପାଖରେ ପହଞ୍ଚିଲି । ଜାପାନୀ ଡ୍ରାଇଭାର ଇଂରାଜୀ ବୁଝିବେ ନାହିଁ । ଶିବା ହୋଟେଲର ନାମ ଉଚ୍ଚାରଣ କରି ଭଡ଼ା ବିଷୟ ପଚାରିଲି । 'ମିଟାର', 'ମିଟାର' ବୋଲି ଉତ୍ତର ଶୁଣିଲି । ମୋ ପାଖରେ ଜାପାନୀ ମୁଦ୍ରା ନଥାଏ । ପଚାରିଲି, "ଆମେରିକା ଡଲାର ଚଳିବ ?" "ଭେରି ଗୁଡ୍, ଭେରି ଗୁଡ୍" କହି ଆଗ ସିଟ୍‌ରେ ବସିବାକୁ କହିଲେ । ଦେଖୁ ଦେଖୁ ଆଉ ପାଞ୍ଚଜଣ ଜାପାନୀ ଆଗ ଓ ପଛ ସିଟ୍‌ରେ ଖୁନ୍ଦାଖୁନ୍ଦି ହୋଇ ବସିଗଲେ । ଟ୍ୟାକ୍ସି ଚାଲିଲା । ମିଟାରକୁ ଚାହିଁ ରହିଥାଏଁ । ମାଇଲ ପରେ ମାଇଲ ଗାଡ଼ି ଚାଲିଲା ବେଳେ ଶହ ଶହ ଜାପାନୀ ଅଙ୍କ ଉଠିଯାଉଥାଏ । ପାଖ ଯାତ୍ରୀଙ୍କୁ ପଚାରିଲି, "ସହର କେତେଦୂର ?" ମୁଣ୍ଡ ହଲାଇ କହିଲେ, "Very, very far." ଭାବିଲି, ମିଟାରରେ ଯେତେ ଅଙ୍କ ଉଠିଲେ ବି ସବୁ ପାସେଞ୍ଜର ଭାଗ ଅନୁଯାୟୀ ଟଙ୍କା ଦେବେ ।

ବିମାନଘାଟି ପାଖରୁ ସହରର ଦୂରତ୍ୱ ୬୦ ମାଇଲରୁ ବେଶି । ସହରରେ ପଶିଲା ପରେ ଡ୍ରାଇଭାର ପ୍ରତ୍ୟେକ ଯାତ୍ରୀଙ୍କୁ ଯଥାସ୍ଥାନରେ ଛାଡ଼ି ସବା ଶେଷରେ ଶିବା ହୋଟେଲ ଆଗରେ ଗାଡ଼ି ରଖିଲେ । ପ୍ରତ୍ୟେକଙ୍କ ପାଖରୁ ତାଙ୍କୁ ଟଙ୍କା ନେବା ଦେଖିଥିଲି । ଗାଡ଼ିରୁ ବାହାରିଲା ମାତ୍ରେ ମାଗିଦେଲେ, ୯୦ ଡଲାର । ମୁଁ ତଟସ୍ଥ ହେଲି । ହୋଟେଲକୁ ଉଠିଆସି ରିସେପ୍‌ସନ କକ୍ଷରେ ବସିଥିବା ଲୋକମାନଙ୍କୁ କିଛି ପଚାରିବା ପୂର୍ବରୁ ରୁକ୍ଷ ସ୍ୱରରେ ଜଣେ ଭଙ୍ଗା ଭଙ୍ଗା ଇଂରାଜୀରେ କହିଲେ, "First pay him, next come in". ରାତି ୨ଟା ବାଜିଥାଏ । ପ୍ରତିବାଦ ନ କରି ଡ୍ରାଇଭାର ହାତରେ ୯୦ ଡଲାର ଧରାଇ ଦେଲି ।

ଉପର ତାଲାରେ ମୋ କୋଠରୀ ପାଖରେ ଜଣେ ବିଦେଶୀ ଭଦ୍ରଲୋକ ବୋତଲରେ ପାଣି ଭର୍ତ୍ତି କରୁଥାନ୍ତି । ନିଜକୁ ହଲାଣ୍ଡ ଦେଶର ଟୁରିଷ୍ଟ ବୋଲି ପରିଚୟ ଦେଇ ସେ ମୋ ସହିତ ଇଂରାଜୀରେ କଥାବାର୍ତ୍ତା କଲେ । ମୁଁ ତାଙ୍କୁ

୯୦ ଡଲାର ଭଡ଼ା ସମ୍ବନ୍ଧରେ ପ୍ରଶ୍ନକଲି । ଆଶ୍ଚର୍ଯ୍ୟ ହୋଇ ସେ କହିଲେ, "ଗତକାଲି ଆମେ ପାଞ୍ଚଜଣ ପ୍ରତ୍ୟେକ ୧୦ ଡଲାର ହିସାବରେ ମୋଟ ୫୦ ଡଲାର ଦେଇଥିଲୁ । ଏହି ଜାପାନୀଗୁଡ଼ାକ ମସ୍ତବଡ଼ ଠକ । ଧନୀ ହେଲେ ବି ଅସାଧୁ । ଯେଉଁ ଦେଶର ପ୍ରଧାନମନ୍ତ୍ରୀ ଓ ମନ୍ତ୍ରୀମାନେ କୋଟି କୋଟି ଟଙ୍କା ଉତ୍କୋଚ ନେଇ କ୍ଷମତା ରାଜନୀତି ଖେଳନ୍ତି, ସେ ଦେଶର ଡ୍ରାଇଭରମାନେ ସାଧୁ ହେବେ କିପରି ?" ଜାପାନୀମାନଙ୍କର ଜାତୀୟ ଚରିତ୍ର ବିଷୟରେ ମୋର ଜ୍ଞାନୋଦୟ ହେଲା ।

ଏପ୍ରିଲ ୧ ତାରିଖ । ସକାଳ ଜଳଖିଆ ଖାଇଲା ବେଳେ ସେହି ଡଚ୍ ଭଦ୍ରଲୋକଙ୍କୁ ଭେଟିଲି । ସେ ଓ କେତେଜଣ ଇଉରୋପୀୟ ପର୍ଯ୍ୟଟକ ହାଟୋ ନାମକ ଟୁରିଷ୍ଟ୍ ବାସ୍‌ରେ ସହର ପରିକ୍ରମା ଲାଗି ବାହାରିଥିଲେ । ସେମାନଙ୍କ ଦଳରେ ମିଶିଲି । ଗାଇଡ୍ ଥିଲେ ଜାପାନୀ । ଇଂରାଜୀରେ କଥା କହିବେ ଜାଣି ତାଙ୍କ ନିକଟବର୍ତ୍ତୀ ସିଟ୍‌ଟିଏ ଦଖଲ କଲି ଓ ମୋ ପାଖରେ ଡଚ୍ ବନ୍ଧୁ ଚାର୍ଲସଙ୍କୁ ବସାଇଲି ।

## ଟୋକିଓ ଟାୱାର

ସକାଳ ୮ଟାରେ ବାସ୍ ଛାଡ଼ିଲା । ଗାଇଡ୍ ଘୋଷଣା କଲେ, "ପକ୍ଷୀମାନେ ଆକାଶରେ ଉଡ଼ିଲାବେଳେ ଟୋକିଓକୁ ଯେପରି ଦେଖନ୍ତି, ଆପଣମାନେ ପ୍ରଥମେ ସେହିପରି ଦୃଶ୍ୟ ଦେଖିପାରିବେ ।" ବସ୍ ରହିଲା ଟୋକିଓ ଟାୱାର ବା ଗମ୍ବୁଜ ପାଖରେ ।

ନିଶ୍ଚିତ ଭାବେ ଜାପାନୀମାନେ ଗୋଟିଏ ଅନୁକରଣପ୍ରିୟ ଜାତି । ଫ୍ରାନ୍ସ ଦେଶର ରାଜଧାନୀ ପ୍ୟାରିସ୍‌ରେ ଥିବା ସୁଉଚ୍ଚ ଏଇଫେଲ ଟାୱାର ଅନୁକରଣରେ ଏମାନେ ନିଜ ରାଜଧାନୀରେ ସେହିପରି ଏକ ଆକାଶଭେଦୀ ଗୁମ୍ବଜ ନିର୍ମାଣ କରିଛନ୍ତି । ବିଶ୍ୱଯୁଦ୍ଧର ମାତ୍ର ୧୨ ବର୍ଷ ପରେ ଟୋକିଓ ଟାୱାର ତିଆରି ହୋଇଥିଲା । ଗଠନ ଶୈଳୀ ଦୃଷ୍ଟିରୁ ଫରାସୀ ଗମ୍ବୁଜ ଅପେକ୍ଷା ମୋତେ ଜାପାନୀ ଗମ୍ବୁଜ ବେଶି ସୁନ୍ଦର ଦିଶିଲା । ଉପରକୁ ଉଠି ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ ଛିଡ଼ା ହେବାରୁ ସେଠାରୁ ପରିବ୍ୟାପ୍ତ ଟୋକିଓ ସହରର ସବୁ ଦିଗ ଦେଖାଗଲା । ପ୍ୟାରିସ୍ ପରି ଟୋକିଓ ସୌନ୍ଦର୍ଯ୍ୟମୟୀ ନୁହେଁ । ତଥାପି ଊର୍ଦ୍ଧ୍ୱଦେଶରୁ ଦିଗ୍‌ବଳୟ ପର୍ଯ୍ୟନ୍ତ ଅଟ୍ଟାଳିକାରାଜି ଦିଶିବା ଦ୍ୱାରା ସହରର ଆକାର ପ୍ରକାର ସମ୍ପର୍କରେ ଧାରଣା ହେଲା । କାନ ପାଖରେ ଚାର୍ଲସ କହିଲେ, "ଜାପାନୀମାନେ ସବୁ ବିଷୟରେ ଇଉରୋପକୁ ଟପିଯିବାକୁ ଚେଷ୍ଟା ଚଳାଇଛନ୍ତି ।"

ଗୁମ୍ବଜର ଉଚ୍ଚତା ୧୧ ଶହ ଫୁଟ । ଗାଇଡ୍ ସଦର୍ପେ ଘୋଷଣା କଲେ, "ପୃଥିବୀରେ ଅନ୍ୟ କେଉଁଠି ଏପରି ଗମ୍ବୁଜ ନାହିଁ ।"

## ପାର୍ଲିଆମେଣ୍ଟ ଭବନ

ବାସ୍ ଚାଲିଲା କାସୁମିଗାସେକି ନାମକ ସ୍ଥାନକୁ । ଟୋକିଓର କେନ୍ଦ୍ରସ୍ଥଳ । ଘରଦ୍ୱାର ଓ ଅଟ୍ଟାଳିକାଗୁଡ଼ିକର ଢଙ୍ଗରୁ ପୁରାତନ ଓ ନୂତନର ଅଭିନବ ମିଶ୍ରଣ ଜଣା ପଡ଼ିଥାଏ । ବୈଦେଶିକ ବ୍ୟାପାର ବିଭାଗ ପାଇଁ ନିର୍ମିତ ହୋଇଥିବା ସୌଧଟିକୁ ଦେଖାଇଦେଇ ଗାଇଡ କହିଲେ, "ଯୁଦ୍ଧ ପରେ ଗଠିତ ଏହି ବିଲ୍ଡିଂ ଅତ୍ୟାଧୁନିକ ନିର୍ମାଣ କୌଶଳରେ ତିଆରି କରାଯାଇଛି । ଭୂମିକମ୍ପ ଏହାକୁ ଛୁଇଁପାରିବ ନାହିଁ ।" କୋଠାର ଅଳ୍ପ ଦୂରରେ ପ୍ରଧାନମନ୍ତ୍ରୀଙ୍କ ବାସଭବନ । କିନ୍ତୁ ଆଧୁନିକ ଢଙ୍ଗର ନୁହେଁ । ତାହାପରେ ପଡ଼ିଲା ପାର୍ଲିଆମେଣ୍ଟ ଭବନ । ପଥର-ନିର୍ମିତ ଘର, କିନ୍ତୁ ଭୂମିକମ୍ପରେ ଭାଙ୍ଗିବା ଭୟ ନାହିଁ । ସରକାରୀ ଅଫିସ ଓ ପୋଲିସ କାର୍ଯ୍ୟାଳୟଗୁଡ଼ିକ ସେହି ଗୋଟିଏ ସ୍ଥାନରେ କେନ୍ଦ୍ରୀଭୂତ ଥିବା ଦେଖାଗଲା । ସେହିଠାରେ ପୁଣି ରହିଛି ୪୮୨ ଫୁଟ ଉଚ୍ଚତା ବିଶିଷ୍ଟ କାସୁମିଗାସେକି ସୌଧ ।

## ସମ୍ରାଟଙ୍କ ଉଦ୍ୟାନ

ରେସ୍ତୁରାଁରେ ମଧ୍ୟାହ୍ନ ଭୋଜନ ପରେ ବାସ୍ ପହଞ୍ଚିଲା ଜାପାନ ସମ୍ରାଟଙ୍କର 'ପୂର୍ବ ଉଦ୍ୟାନ' ନାମକ ପ୍ରସିଦ୍ଧ ସ୍ଥାନରେ । ରାଜପ୍ରାସାଦର ପଥରନିର୍ମିତ ପ୍ରାଚୀର ସେଠାରୁ ଦେଖାଯାଉଥାଏ । ଗାଇଡ୍ ବର୍ଣ୍ଣନା କଲେ ଯେ ସ୍ୱୟଂ ସମ୍ରାଟଙ୍କର ସେହି ବଗିଚା ପରି ପରିଷ୍କାର ସ୍ଥାନ ଅନ୍ୟତ୍ର ନାହିଁ । ପର୍ଯ୍ୟଟକମାନଙ୍କ ଲାଗି ଖୋଲା ରହିଲେ ସୁଦ୍ଧା ଉଦ୍ୟାନର ଗଛପତ୍ର ଓ ପୁଷ୍ପ ଲତାର କୌଣସି କ୍ଷତି ହୁଏ ନାହିଁ । ସବୁଜ ନିଘଞ୍ଚ ଘାସ ଉପରେ ନାନା ରଙ୍ଗର ଲତା ମାଡ଼ି ରହିଥାଏ ଓ ସବୁ ଲତାରେ ନାଲି ରଙ୍ଗର ଫୁଲ ଫୁଟିଥାଏ । ସମ୍ରାଟଙ୍କ ପ୍ରାସାଦ ପରିସର ମଧ୍ୟରେ କେବଳ ସେହି ଅଞ୍ଚଳ ଦର୍ଶକମାନଙ୍କ ନିମନ୍ତେ ମୁକ୍ତ ରହିଛି ।

ସେଠାରୁ ଯାଇ ପହଞ୍ଚିଲୁଁ ରାଜପ୍ରାସାଦ ସମ୍ମୁଖସ୍ଥ ପ୍ରାଙ୍ଗଣରେ । ସେଠାରେ ମଧ୍ୟ ଉଦ୍ୟାନ । ଉଦ୍ୟାନ ପରେ ପ୍ରାସାଦକୁ ଘେରି ରହିଛି ଗଭୀର ପରିଖା । ପରିଖା ପରେ ସୁଉଚ୍ଚ ପ୍ରାଚୀର । ରୁଷିଆ ଓ ଇଂଲଣ୍ଡ ଦେଶରେ ରାଜପ୍ରାସାଦମାନ ଯେପରି ନିକଟରୁ ଦେଖି ହୁଏ, ଜାପାନରେ ସେପରି ସୁବିଧା ନାହିଁ । ଯେତେହେଲେ, ସମ୍ରାଟ ହେଉଛନ୍ତି ନରଦେହୀ ଦେବତା, ସ୍ୱୟଂ ସୂର୍ଯ୍ୟଦେବୀଙ୍କ ବଂଶଧର । ସେଥିପାଇଁ ଏଠାକାର ରାଜପ୍ରାସାଦ ଲୋକଲୋଚନ ଅନ୍ତରାଳରେ ରଖାଯାଇଛି । ବହୁତ କଷ୍ଟରେ ଗୋଡ଼ର ବୁଢ଼ା ଅଙ୍ଗୁଳିରେ ଛିଡ଼ା ହୋଇ ପାରୁ ପର୍ଯ୍ୟନ୍ତ ଗଳା ଉତ୍ତୋଳନ କଲେ

ପ୍ରାସାଦର ଶୀର୍ଷ ଚୂଡ଼ା ଦେଖାଯାଏ । ଆମ ଦଳରେ ଥିବା ଜଣେ ମହିଳା ତାଙ୍କ ସ୍ୱାମୀଙ୍କ କାନ୍ଧ ଉପରେ ସର୍କସ ବାଳିକା ଢଙ୍ଗରେ ଛିଡ଼ା ରହି ପ୍ରାସାଦର ଚୂଡ଼ା ଦେଖିପାରିଲେ ବୋଲି ବଡ଼ପାଟିରେ ବିବୃତି ଦେଲେ । ଆମେ ସମସ୍ତେ ଈର୍ଷାନ୍ୱିତ ହେଲୁଁ ।

## ଚା ପାନ ଉତ୍ସବ

ସନ୍ଧ୍ୟାବେଳେ ଆମ ଦଳକୁ ନିଆଗଲା ଶହ ଶହ ବର୍ଷ ଆଗର ଗୋଟିଏ ବଗିଚାକୁ । ଜାଗାଟି ଅତି ସୁନ୍ଦର । ପ୍ରକାଣ୍ଡ ପ୍ରକାଣ୍ଡ ପଥର ହଣ୍ଡା ଭିତରେ ନାନା ପ୍ରକାର କ୍ଷୁଦ୍ରାକୃତି ପୁରୁଣା ଗଛ ରୋପଣ କରାଯାଇଥାଏ । ବଗିଚାର ଶେଷଭାଗରେ ରହିଛି କାଠତିଆରି ଗୋଟିଏ ଛୋଟ ଘର । ତା ଭିତରେ ଜାପାନୀ ସମାଜର ଚିରାଚରିତ 'ଚା ପାନ ଉତ୍ସବ' ପାଳନ କରାଯାଏ । ବିଦେଶୀମାନଙ୍କୁ ଉତ୍ସବ ବିଷୟରେ ଧାରଣା ଦେବା ଲାଗି ସେଠାକୁ ନିଆଯାଏ । ଆମେ ପହଞ୍ଚିଲା ପରେ ସେଠାକାର ପୁରୋହିତ ଇଂରାଜୀରେ ଯାହା ବର୍ଣ୍ଣନା କଲେ, ତାହାର ସାରାଂଶ ହେଲା–

ଜାପାନ ଦେଶରେ ବିଗତ ଛଅ ଶହ ବର୍ଷ ଯାବତ୍ ଚା ପିଇବା ସହିତ ମନୁଷ୍ୟର ଆଧ୍ୟାତ୍ମିକ ଚିନ୍ତା ଓ ପବିତ୍ର ମନୋଭାବକୁ ସଂଯୋଗ କରାଯାଇଛି । କେବଳ ପାନୀୟ ରୂପେ ବ୍ୟବହାର କରିବା ପରିବର୍ତ୍ତେ ଚା'ପାନ ବେଳେ ନିଜର ମନକୁ ଶୁଦ୍ଧ କରିବାକୁ ହେବ; ବୈଷୟିକ ଚିନ୍ତା, ଧନସମ୍ପତ୍ତିର ବାସନା ଓ ସାଂସାରିକ ମୋହ ପାଖରୁ ଦୂରରେ ରହିବାକୁ ପଡ଼ିବ । ଅର୍ଥାତ୍, ଚା ପାନ ହେବ ଏକ ପ୍ରକାର ଧର୍ମ ସମ୍ପାଦନ । ସେଥିପାଇଁ, ପ୍ରଚଳିତ ହେଲା 'ଚା ପାନ ଉତ୍ସବ' । ସେହି ଉତ୍ସବ ନିଜ କୋଠାଘର ବା ରେସ୍ତୁରାଁରେ ପାଳନ କରିବା ଅସମ୍ଭବ । ସେଥିଲାଗି ଦରକାର କୁଡ଼ିଆ ଘର । ତା ଭିତରେ ବସି ଚା ପିଇଲା ସମୟରେ ନିଜକୁ ଦରିଦ୍ର ବୋଲି ଭାବିବାକୁ ହେବ । ବଗିଚା ଗେଟ୍ ପାଖରୁ କୁଡ଼ିଆ ପର୍ଯ୍ୟନ୍ତ ଯେଉଁ ସଂକୀର୍ଣ୍ଣ ରାସ୍ତା ରହିଛି, ସେଥିରେ ଚାଲିଲା ବେଳେ ଚିନ୍ତା କରିବା ଆବଶ୍ୟକ ଯେ ବହିର୍ଜଗତ ସହିତ ସମ୍ପର୍କ ଛିନ୍ନ କରି ଜଣେ ଉଚ୍ଚତର ଦିବ୍ୟ ମାର୍ଗରେ ଆଗେଇ ଯାଉଛି । ସେଥିପାଇଁ ରାସ୍ତାଟିକୁ ପିଚ୍ଛିଳ ଓ କଣ୍ଟକିତ କରାଯାଇଛି । ଚା ପାନ କୁଟୀରକୁ 'ଶାନ୍ତି ଗୃହ' ବୋଲି ବିବେଚନା କରି ତିନିଫୁଟିଆ ଅନୁଚ୍ଚ ଦୁଆର ଭିତରେ ପଶିଲାବେଳେ ଭାବିବାକୁ ହେବ ଯେ, ଯିଏ ଯେତେ ବଡ଼ ହେଲେ ବି ମସ୍ତକ ଅବନତ କରିବା ହେଉଛି ମାର୍ଜିତ ରୁଚି ଓ ନମ୍ରତାର ପରିଚୟ ।

ପୁରୋହିତଙ୍କ ତାତ୍ତ୍ୱିକ ପ୍ରବଚନ ଶୁଣିଲା ପରେ ଆମେ ଜଣକ ପରେ ଜଣେ ମୁଣ୍ଡ ନୁଆଇଁ ଧୀରେ ଧୀରେ କୁଟୀର ଭିତରକୁ ପଶିଲୁଁ । ସେଠାରେ ସମ୍ପୂର୍ଣ୍ଣ ନୀରବତା ରକ୍ଷାକରି ପରିଷ୍କାର ମେଜିଆ ଉପରେ ଆଣ୍ଠୁମାଡ଼ି ବସିଗଲା ପରେ ଜଣେ ଜାପାନୀ ଚା କେଟଲି ଧରି ପ୍ରବେଶ କଲେ । କେଟଲିରେ ଚା ଫୁଟିବା ଶବ୍ଦର ମଧ୍ୟ ମାଧୁର୍ଯ୍ୟ ରହିଛି ବୋଲି କୁହାଗଲା । ତା ପରେ ପ୍ରତ୍ୟେକଙ୍କ ହାତକୁ ଚା କପ୍ ଧରାଇ ଦିଆଗଲା । ପୁରୋହିତ ଯେପରି ଭାବରେ ପିଇଲେ, ତାଙ୍କୁ ଅନୁକରଣ କରି ଆମକୁ ମଧ୍ୟ ସେହିପରି ଧୀରେ ଧୀରେ ଟିକିଏ ଟିକିଏ ଗରମ ଚା ଓଠରେ ଲଗାଇବାକୁ ପଡ଼ିଲା । ୧୫ ମିନିଟ ପରେ ଚା ପାନ ଶେଷ ହେଲା । ପୁରୋହିତ ମହୋଦୟ ଗମ୍ଭୀର ବଦନରେ ପ୍ରଶ୍ନକଲେ, "ଚା ପିଇଲା ସମୟରେ ମନକୁ ପବିତ୍ର ଓ ଶୁଦ୍ଧ ରଖିପାରିଲେ ତ ?" ସମସ୍ୱରରେ ଆମେ 'ହଁ' ଭରି କୁଟୀର ଭିତରୁ ବାହାରି ଆସିଲୁଁ ।

ବାସ୍‌ରେ ବସିଲା ପରେ 'ଚା ଉତ୍ସବ' ସମ୍ପର୍କରେ ଆଲୋଚନା ଚାଲିଲା । ଜଣେ ଯାତ୍ରୀ ବିରକ୍ତି ଭାବ ଦେଖାଇ କହିଲେ, "ଗୋଟିଏ ସୁନ୍ଦର ସନ୍ଧ୍ୟା ଅକାରଣେ ନଷ୍ଟ ହେଲା ।" ଅନ୍ୟ ଜଣେ କମେଣ୍ଟ କଲେ, "ଘରେ ବା ହୋଟେଲରେ ବା ଅଫିସ୍‌ରେ ଚା ପିଇଲା ବେଳେ ଜାପାନୀମାନେ ଅର୍ଥଚିନ୍ତାରେ ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ବୁଡ଼ି ରହନ୍ତି । କେବଳ କୁଡ଼ିଆ ଭିତରେ ଚା ପାନ ଉତ୍ସବ ବେଳେ ମନ ପବିତ୍ର ରଖି ଲାଭ କ'ଣ ?" ଜାପାନୀ ଗାଇଡ୍ କଥାଗୁଡ଼ିକ ଶୁଣିପାରି କର୍କଶ ସ୍ୱରରେ ପଚାରିଲେ, "ବାସ୍‌ରେ ବସି ରହିଲେ ନାହିଁ କାହିଁକି ? କୁଡ଼ିଆ ଭିତରକୁ କାହିଁକି ଗଲେ ?" ତାଙ୍କ ଆଦେଶରେ ଡ୍ରାଇଭର ଦ୍ରୁତଗତିରେ ଗାଡ଼ି ଚଳାଇ ସିଧା ରଖିଲେ ଶିବା ହୋଟେଲ ଆଗରେ ।

ରାତ୍ରି ଭୋଜନ ବେଳେ ଡଚ୍ ବନ୍ଧୁ କହିଲେ, "These Japs feel too proud of themselves. Rough and tough, they do not know how to behave !" ଅନ୍ୟ ଜଣେ ଇଉରୋପୀୟ ମତ ଦେଲେ, "We come to see Japan, not the Japanese."

ଶୋଇଲା ବେଳେ ମନେ ମନେ ଭାବିଲି, ଭାରତ ଭ୍ରମଣ ଲାଗି ଆସୁଥିବା ବିଦେଶୀମାନେ ଠିକ୍ ଏହି କଥା ଭାବୁଥିବେ କି ? "We come to see India, not the Indians !"

ଜାପାନୀମାନେ ରୁକ୍ଷ ଓ ଅଭଦ୍ର ହେଲେ ବି ଧନୀ ଓ ସମୃଦ୍ଧ । ଭାରତବାସୀ ଭଦ୍ର ଓ ମାର୍ଜିତ ହେଲେ ବି ଦରିଦ୍ର !

## ମେଇଜି ଜିଙ୍ଗୁ ଶିଣ୍ଟୋ ମନ୍ଦିର

ତହିଁ ପରଦିନ ଏପ୍ରିଲ ୨ ତାରିଖରେ ଅନ୍ୟ ଖଣ୍ଡିଏ ଟୁରିଷ୍ଟ ବାସ୍‌ରେ ସହର ଦେଖିବାକୁ ବାହାରିଲି । ପ୍ରଥମ ଦିନର ପର୍ଯ୍ୟଟକ ଦଳ ସେ ଦିନ ଜାପାନର ଗ୍ରାମାଞ୍ଚଳ ଦେଖିବାକୁ ବାହାରିଗଲେ । ଟୋକିଓର ଧର୍ମସ୍ଥାନମାନ ଦେଖିବା ଥାଏ ମୋର ଉଦ୍ଦେଶ୍ୟ ।

ପ୍ରଥମେ ବାସ୍ ରହିଲା ମେଇଜି ଜିଙ୍ଗୁ ନାମକ ସ୍ଥାନରେ ଥିବା ଜାପାନୀ ଶିଣ୍ଟୋ ଧର୍ମର ବୃହତ୍ତମ ଦେବାଳୟ ଆଗରେ । ଶିଣ୍ଟୋ ହେଉଛି ଜାପାନର ଆଦିମ ଧର୍ମ । ଶବ୍ଦର ଅର୍ଥ, 'ଦେବତାମାନଙ୍କ ପଥ' । ଦେବଦେବୀଙ୍କ ସଂଖ୍ୟା ଅନେକ । ଜାପାନୀମାନଙ୍କ ଆଦି ବିଶ୍ୱାସ ଅନୁଯାୟୀ, ଜୀବଜନ୍ତୁ ଓ ବୃକ୍ଷ ଇତ୍ୟାଦି ଦେବତାମାନଙ୍କ ନିକଟରୁ ଜନ୍ମିଥାନ୍ତି । ସେହିପରି, ଉଚ୍ଚ ବଂଶ ଓ ରାଜପରିବାରର ପ୍ରତିଷ୍ଠାତାମାନେ ମଧ୍ୟ ଦୂରବର୍ତ୍ତୀ ଦେବତାମାନଙ୍କର ଔରସ ଜାତ ସନ୍ତାନ । ଏହି ପ୍ରକାର ଅଦ୍ଭୁତ ବିଶ୍ୱାସରୁ ଉତ୍ପତ୍ତି ଲାଭ କରିଥିଲା ଜାପାନ ଦେଶର ପରିଚୟ, ଯଥା– 'ଦେବତାମାନଙ୍କର ଭୂମି ।'

ଜାପାନର ଏହି ସର୍ବପ୍ରାଚୀନ ଧର୍ମବିଶ୍ୱାସରେ ଆଧ୍ୟାତ୍ମିକତା ଅଥବା ଉଚ୍ଚତର ଦର୍ଶନର ସ୍ଥାନ ନଥାଏ । ଥିଲା କେବଳ ଅନ୍ଧବିଶ୍ୱାସ, କୁସଂସ୍କାର ଓ ଅବାନ୍ତର କ୍ରିୟାକାଣ୍ଡ । ଆମେ ମନ୍ଦିରର କାରୁକାର୍ଯ୍ୟ ଦେଖିଲୁଁ । ବଡ଼ ବଡ଼ ସ୍ତମ୍ଭ ଉପରେ କାଠର ବିମ୍ ଗୁଡ଼ିକ ରଖାଯାଇଛି । ନାମରେ ଦେବମନ୍ଦିର ହେଲେ ମଧ୍ୟ ଆକୃତିରେ ଗୋଟିଏ ହଲ୍ । ଉପରେ କାଠର ଛାତ । କୌତୂହଳ ସହ ଶୁଣିଲି, ଧର୍ମପ୍ରାଣ ଜାପାନୀମାନେ ସେଠାରେ ପ୍ରତିଦିନ ପ୍ରାର୍ଥନା କରିବାକୁ ଆସନ୍ତି, ଦେବଦେବୀଙ୍କୁ ନୁହେଁ, 'ସମ୍ରାଟଙ୍କ ପୂର୍ବପୁରୁଷମାନଙ୍କ ପ୍ରେତାତ୍ମାମାନଙ୍କୁ' ।

## ଆସାକୁସା କାନ୍ନୋନ ବୌଦ୍ଧ ମନ୍ଦିର

କାଳକ୍ରମେ ଜାପାନ ଦେଶକୁ ମାଡ଼ି ଆସିଥିଲା ବୌଦ୍ଧଧର୍ମର ସ୍ରୋତ । ଅତୀତରେ ଜାପାନୀମାନେ ଯେଉଁ ପ୍ରକାର ଆଧ୍ୟାତ୍ମିକ ସ୍ୱାଦ ପାଇ ନ ଥିଲେ, ବୌଦ୍ଧ ବିଶ୍ୱାସ ମଧ୍ୟରୁ ତାହା ଉପଭୋଗ କରି ସେମାନେ ନୂତନ ମାର୍ଗରେ ଜୀବନ ପରିଚାଳନା କଲେ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବେଳକୁ ଜାପାନୀମାନେ ବୌଦ୍ଧଧର୍ମକୁ ସେମାନଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ଧର୍ମ ରୂପେ ଗ୍ରହଣ କରିନେଲେ । ଅବଶ୍ୟ, ସେହି ଧର୍ମ ସହିତ ନିଜ ଦେଶର ରାଜନୈତିକ ଓ ସାମାଜିକ ରୀତିନୀତିଗୁଡ଼ିକ ମଧ୍ୟ ମିଶାଇଦେଲେ ।

ଆମେ ଯେଉଁ ମନ୍ଦିର ନିକଟରେ ପହଞ୍ଚିଲୁଁ ତାହା ଥିଲା ଟୋକିଓର ପ୍ରାଚୀନତମ ବୌଦ୍ଧ ମନ୍ଦିର । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ସେହି ମନ୍ଦିର ନିର୍ମିତ ହୋଇଥିଲା ।

ପ୍ରବେଶପଥର ଏକ ତୋରଣରେ ପ୍ରକାଣ୍ଡ ସ୍ୱସ୍ତିକ ଚିହ୍ନ ଦେଖି ଜାଣିପାରିଲି ଯେ, ସନାତନ ହିନ୍ଦୁ ଧର୍ମର ସେହି ମାଙ୍ଗଳିକ ଚିତ୍ରଟିକୁ ଜାପାନୀମାନେ ନିଜସ୍ୱ କରିନେଇଛନ୍ତି । ମନ୍ଦିର ପ୍ରାଙ୍ଗଣରେ ଓ ଭିତରେ ଅନେକ ଲୋକଙ୍କ ସମାଗମ ଦେଖିଲି । ପଥର, ଇଟା ଓ କାଠ ନିର୍ମିତ ମନ୍ଦିରର ଶୋଭା ଦେଖି ମୁଗ୍ଧ ହେଲି ।

ମନ୍ଦିର ଭିତରେ ରହିଛି ଅସଂଖ୍ୟ ବୌଦ୍ଧ ମୂର୍ତ୍ତି । ବୌଦ୍ଧଜାତକର କାହାଣୀ ଅନୁଯାୟୀ ଧର୍ମ ସମ୍ବନ୍ଧୀୟ ଚିତ୍ରମାନ ଅଙ୍କିତ ରହିଛି । ବୌଦ୍ଧ ମୂର୍ତ୍ତି ଓ ଚିତ୍ରମାନ ଠିକ୍ ଜାପାନୀ ମୁଖମଣ୍ଡଳ, କେଶ ଓ ବେଶଭୂଷା ଧାରଣ କରିଥିବା ଦେଖି କୌତୂହଳ ଆସିଲା, କିନ୍ତୁ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥାଏ । କାରଣ, ବୁଦ୍ଧ ଯେଉଁ ଦେଶରେ ପୂଜିତ ହୋଇଛନ୍ତି, ସେହି ଦେଶର ମନୁଷ୍ୟ ରୂପ ବରଣ କରିନେଇଛନ୍ତି । ତିବ୍ବତ ଦେଶର ବୁଦ୍ଧ ଠିକ୍ ତିବ୍ବତୀୟଙ୍କ ପରି, ଚୀନ ଦେଶରେ ବୁଦ୍ଧ ଦିଶନ୍ତି ଚୀନାଙ୍କ ପରି, କୋରିଆ ଓ ଜାପାନ ପ୍ରଭୃତି ପ୍ରତ୍ୟେକ ବୌଦ୍ଧ ଦେଶର ବୁଦ୍ଧମୂର୍ତ୍ତି ଠିକ୍ ସେହି ଦେଶର ଲୋକଙ୍କ ପରି । ଗାନ୍ଧାର ଶିଳ୍ପୀମାନଙ୍କ ଗଠିତ ବୁଦ୍ଧ ଦିଶନ୍ତି ଇଣ୍ଡୋ-ଗ୍ରୀକ୍ ମାନଙ୍କ ପରି । କେବଳ ଭାରତରେ ଗଠିତ ବୁଦ୍ଧମୂର୍ତ୍ତିମାନ ଶାନ୍ତି, ଅହିଂସା ଓ ନିଷ୍କାମ ଭାବଧାରା ବହନ କରି ଶାଶ୍ୱତ ଦେବତ୍ୱ ପ୍ରଦର୍ଶନ କରିଥାନ୍ତି । ସାରନାଥ ବୁଦ୍ଧମୂର୍ତ୍ତିରୁ ପ୍ରକଟିତ ହୁଏ ବୌଦ୍ଧ ଦର୍ଶନର ଚିରନ୍ତନ ଭାବଧାରା ।

ମନ୍ଦିର ଭିତରେ ଜଣେ ଜାପାନୀ ବୌଦ୍ଧ ପଣ୍ଡିତ ଇଂରାଜୀରେ କଥା କହୁଥିବା ଦେଖି ତାଙ୍କ ପାଖକୁ ଗଲି । ନିଜକୁ ଭାରତୀୟ ହିନ୍ଦୁ ବୋଲି ପରିଚୟ ଦେଇ ସ୍ୱସ୍ତିକ ଚିହ୍ନ ବିଷୟ ଉତ୍ଥାପନ କଲି । ତାଙ୍କ ମୁଖରୁ ଗୋଟିଏ କଥା ଶୁଣି ବିସ୍ମିତ ହେଲି ଯେ, "ଅତୀତ ଯୁଗରେ ଜାପାନର ତୋଦାଇଜି ଠାରେ 'ମହାନ ବୁଦ୍ଧ' ମୂର୍ତ୍ତି ସ୍ଥାପନ କଲାବେଳେ ଭାରତରୁ ଜଣେ ନୈଷ୍ଠିକ ବ୍ରାହ୍ମଣ ପୁରୋହିତଙ୍କୁ ମନ୍ତ୍ରପାଠ ସହ ବିଗ୍ରହ ପ୍ରତିଷ୍ଠା ନିମନ୍ତେ ଅଣାଯାଇଥିଲା । ସେହିପରି ଅନ୍ୟାନ୍ୟ ସ୍ଥାନକୁ ମଧ୍ୟ ଭାରତୀୟ ବ୍ରାହ୍ମଣମାନେ ମନ୍ତ୍ରପାଠ ଲାଗି ଆସିଥିଲେ ।" ଏ ଯୁଗରେ ବିଶ୍ୱାସ କରିବା କଷ୍ଟକର ଯେ ସୁଦୂର ଅତୀତରେ ଦୁର୍ଗମ ଦୂରତ୍ୱ ଅତିକ୍ରମ କରି ଭାରତର ବ୍ରାହ୍ମଣ ଓ ବୌଦ୍ଧମାନେ ଅନ୍ୟ ଦେଶରେ ଧର୍ମ ସମ୍ପାଦନ କରିପାରିଥିଲେ !

ମନ୍ଦିର ବାହାରକୁ ଆସିଲା ପରେ ଡ୍ରାଇଭର ଜଣାଇଲେ, ସେଠାରେ ବାସ୍‌ଟି ଦୁଇଘଣ୍ଟା ପଡ଼ିରହିବ । କାରଣ, ସେହି ଅଞ୍ଚଳରେ ଥିବା ଛୋଟ ଛୋଟ ଦୋକାନରେ ବହୁ କିସମର ଜିନିଷ ବିକ୍ରି ହୁଏ ଓ ଟୁରିଷ୍ଟମାନେ କିଣିବାକୁ ଭଲ ପାନ୍ତି । ଫୁଟ୍‌ପାଥ ଉପରେ ଟ୍ରାଞ୍ଜିଷ୍ଟର, ଘଡ଼ି ଓ କଲମ ସମେତ ବିବିଧ ପ୍ରକାର ଖେଳନା

ଦେଖିବାକୁ ମିଳିଲା । ଖେଳନା ଦେଖି ନାତିମାନଙ୍କ କଥା ମନେପଡୁଥାଏ, କିନ୍ତୁ ପକେଟ ଥାଏ ଶୂନ୍ୟ ।

## ସୁମିଦା ନଦୀରେ ନୌବିହାର

ଆସାକୁସା ବୌଦ୍ଧ ମନ୍ଦିରର ଅଳ୍ପ ଦୂରରେ ବହିଯାଉଛି ସୁମିଦା ନଦୀ । ଟୁରିଷ୍ଟ ବାସ୍ ଆମ ଦଳକୁ ନଦୀକୂଳ ପର୍ଯ୍ୟନ୍ତ ନେଇଗଲା । ଫେରିବୋଟ୍ ଯୋଗେ ଏକଘଣ୍ଟା ନୌବିହାର ବ୍ୟବସ୍ଥା ଥାଏ । ଷ୍ଟିମାର ଚାଲିଲା ଟୋକିଓ ବନ୍ଦର ପର୍ଯ୍ୟନ୍ତ । ନଦୀ କୂଳେ କୂଳେ ଦେଖିବାକୁ ମିଳୁଥାଏ ରାଶି ରାଶି ମାଛର ସ୍ତୂପ । ସମୁଦ୍ରରୁ ମାଛ ଧରାଯାଇ ସେଠାରେ ଜମା କରାଯାଏ ଓ ସେଠାରୁ ମାଛ ଚାଲାଣ ହୁଏ ଦେଶ ଭିତରକୁ ଓ ବାହାରକୁ । ଜାପାନୀମାନେ ମତ୍ସ୍ୟପ୍ରିୟ ଜାତି ଓ ଚାରି ଦିଗରେ ବ୍ୟାପି ରହିଥିବା ସମୁଦ୍ରରୁ ଆଧୁନିକ ଉପାୟରେ ଅପରିମିତ ମାଛ ଧରିବା ହେଉଛି ସେମାନଙ୍କର ଏକ ବ୍ୟବସାୟ ।

## ତାସାକି ମୁକ୍ତା କେନ୍ଦ୍ର

ସୁମିଦା ନଦୀରେ ନୌବିହାର ଶେଷ ହେଲାବେଳକୁ ରାତି ହୋଇଯାଇଥାଏ । ଟୁର୍ ପ୍ରୋଗାମ ଅନୁସାରେ ବାସ୍ ଚାଲିଲା ତାସାକି ନାମକ ସ୍ଥାନକୁ । ସେଠାରେ କୃତ୍ରିମ ଉପାୟରେ ଶାମୁକା ବା ଶୁକ୍ତିକା ପେଟରେ ମୁକ୍ତା ଉତ୍ପାଦନ କରିବା ଲାଗି ବିଜ୍ଞାନାଗାର ରହିଛି । ଜୀବନ୍ତ ଶାମୁକା ପେଟରେ ଯେଉଁ ପ୍ରଣାଳୀରେ ମୁକ୍ତା ଉତ୍ପତ୍ତି ସମ୍ଭବ ହୁଏ, ତାହା ଦେଖିବାକୁ ପାଇଲୁଁ । ସେଠାରେ ଅନେକ ପ୍ରକାର ଛୋଟ ଓ ବଡ଼ ମୁକ୍ତା ବିକ୍ରି ପାଇଁ ରଖାଯାଇଥାଏ । ଶାମୁକାର ଖୋଳପା ତଳେ ପ୍ରାକୃତିକ ରୀତିରେ ଗଢ଼ିଉଠିଥିବା ମୁକ୍ତା ଦେଖି ଆଶ୍ଚର୍ଯ୍ୟବୋଧ ହେଲା ।

କ୍ରେତାମାନଙ୍କୁ ଲୋଭାନ୍ୱିତ କରିବା ଉଦ୍ଦେଶ୍ୟରେ କୁହାଗଲା, ଖୋଲା ବଜାରରେ ଯେଉଁ ମୁକ୍ତାର ଦାମ୍ ପଚାଶ ହଜାର, ତାସାକି ଉତ୍ପାଦନ କେନ୍ଦ୍ରରେ ତାହା ଅଧା ମୂଲ୍ୟରେ ମିଳେ । ଆମ ଦଳରେ ଥିବା ୨୦ ଜଣଙ୍କ ମଧ୍ୟରୁ ଚାରିଜଣ ସ୍ୱେନୀୟ ବ୍ୟକ୍ତି ମୁକ୍ତା ପାଇଁ ଅଗ୍ରିମ କିସ୍ତି ଦାଖଲ କରି ସେମାନଙ୍କ ଘର ଠିକଣାରେ ପଠାଇବାକୁ ଅର୍ଡ଼ର କଲେ ।

ମୁକ୍ତାକେନ୍ଦ୍ର ଦର୍ଶକମାନଙ୍କୁ ଆପ୍ୟାୟିତ କରିବା ଲାଗି ଗୋଟିଏ କକ୍ଷରେ ଜାପାନୀ ନୃତ୍ୟର ବ୍ୟବସ୍ଥା ଥାଏ । ଅଧଘଣ୍ଟାଏ ସମୟ ସେହି ନୃତ୍ୟ ଦେଖିଲୁଁ । ତାହାପରେ ବିଜ୍ଞାନାଗାର ଦେଖିବାକୁ ନିଆଗଲା । ଯେଉଁ ପ୍ରକାର ସମୁଦ୍ର ପାଣିରେ ଯେଉଁ ଜାତୀୟ ଶୁକ୍ତିକାମାନେ ଗର୍ଭରେ ମୁକ୍ତା ଧାରଣ କରିଥାନ୍ତି, ଠିକ୍ ସେହିପ୍ରକାର ପାଣି ସେଠାରେ ରଖାଯାଇ ସେଥିରେ ଶାମୁକା ଗୁଡ଼ିକୁ ଛାଡ଼ି ଦିଆଯାଇଛି ।

ଜଣେ ବୈଜ୍ଞାନିକ ଜଣାଇଲେ ଯେ ତାଙ୍କ ଉତ୍ପାଦନ କେନ୍ଦ୍ର ମୁକ୍ତା ବ୍ୟବସାୟରୁ ବର୍ଷକୁ କୋଟି କୋଟି ଡଲାର ଆୟ କରେ । ସେ ସ୍ୱୀକାର କଲେ, ଅଗାଧ ସମୁଦ୍ର ଗର୍ଭରେ ପ୍ରାକୃତିକ ଭାବେ ଜାତ ହେଉଥିବା ମୁକ୍ତା ସହିତ କୃତ୍ରିମ ମୁକ୍ତା ତୁଳନୀୟ ନୁହେଁ । ପ୍ରଶାନ୍ତ ମହାସାଗରର ଯେଉଁ ଅଂଶରେ ଶୁକ୍ତିକାମାନେ ମୁକ୍ତା ଧାରଣ କରିଥାନ୍ତି, ସେଠାରୁ ପ୍ରକୃତ ମୁକ୍ତା ସଂଗ୍ରହ ସହଜସାଧ୍ୟ ନୁହେଁ ।

## ଗିଞ୍ଜା ବଜାର

ଏପ୍ରିଲ ୩ ତାରିଖ ଦିନ ଅନ୍ୟ ଏକ ଦଳ ଟୁରିଷ୍ଟ ସାଙ୍ଗରେ ଗିଞ୍ଜା ନାମକ ସ୍ଥାନରେ ପହଞ୍ଚିଲି । ଟୋକିଓ ସହରର ବଡ଼ ବଡ଼ ଦୋକାନ ସେହି ଅଞ୍ଚଳରେ ରହିଛି । ଲଣ୍ଡନ ଓ ନିଉୟର୍କ ପ୍ରଭୃତି ପାଶ୍ଚାତ୍ୟ ସହରରେ ଥିବା ଅତ୍ୟାଧୁନିକ ଆକାରର ଦୋକାନ ପରି ଏଠାରେ ମଧ୍ୟ ପ୍ରକାଣ୍ଡ ପ୍ରକାଣ୍ଡ ଦୋକାନ । ରାସ୍ତାରେ ଭିଡ଼ ଲାଗିଥାଏ । ରାଜପଥର ଉଭୟ ପାର୍ଶ୍ୱରେ ଆକର୍ଷଣୀୟ ରେସ୍ତୁରାଁ ଓ ନାଇଟ୍ କ୍ଲବ୍ । ଜଣେ ଜାପାନୀ ଦୋକାନୀ ଆମମାନଙ୍କୁ କହିଲେ, ‘‘ସମଗ୍ର ଏସିଆ ବା ପ୍ରାଚ୍ୟରେ ଏପରି ବିକ୍ରୟ କେନ୍ଦ୍ର ଓ ଆମୋଦଦାୟକ ସ୍ଥାନ ଆଉ ନାହିଁ ।’’

ଫେରିଲାବେଳେ, କିଛି ସମୟ ପାଇଁ ଟୋକିଓ ବିଶ୍ୱବିଦ୍ୟାଳୟ ପରିସରରେ ବୁଲି ବୁଲି ଦେଖିଲି । ଭାଷା ସମସ୍ୟା ଲାଗି କଥାବାର୍ତ୍ତା ସମ୍ଭବ ହେଲା ନାହିଁ ।

## ଶିବା ପାର୍କ

ସେଦିନ ଅପରାହ୍ନରେ ମିଉଜିୟମ ଓ ଚିତ୍ରଶାଳା ଦେଖିବି ବୋଲି ଭାବିଥିଲି । କିନ୍ତୁ ଅଧିକ ପରିଶ୍ରମ ପାଇଁ ଇଚ୍ଛା ହେଲା ନାହିଁ । ତେଣୁ, ହୋଟେଲ ସମ୍ମୁଖସ୍ଥ ପାର୍କରେ ବୁଲିବାକୁ ଗଲି । ଟୋକିଓର ପାର୍କଗୁଡ଼ିକ ଆକାରରେ ବଡ଼ ନୁହେଁ, କିନ୍ତୁ ଦେଖିବାକୁ ସୁନ୍ଦର । ପାର୍କକୁ ଗଲାବେଳେ, ଜାପାନୀ ବୁଢ଼ାବୁଢ଼ୀମାନେ ସାନ୍ଧ୍ୟ ଭ୍ରମଣ ଲାଗି ରାସ୍ତାକୁ ବାହାରିଥାନ୍ତି । ଦେଖିଲି, ବୁଢ଼ୀମାନଙ୍କ ହାତରେ ଥିବା ବାଡ଼ିଗୁଡ଼ିକ ତଳେ ଲୁହାମୁନ । ଚାଲିଲା ବେଳେ ରାସ୍ତାରେ ପଡ଼ିଥିବା ଶୁଖିଲା ପତ୍ରଗୁଡ଼ାକୁ ସେଥିରେ ଫୋଡ଼ି ଫୋଡ଼ି ଉଠାଇ ନେଇ ଅଳିଆ-ଟିଣ ଭିତରକୁ ଫୋପାଡ଼ି ଦେଉଛନ୍ତି । କେତେକ ବୁଢ଼ା ମଧ୍ୟ ସେହିପରି କରୁଥିବା ଦେଖିଲି । ରାସ୍ତାର ଦୁଇ ପାଖରେ ଅନେକ ପ୍ରକାର ଗଛ । ସେଥିରୁ ଶୁଖିଲା ପତ୍ର ଝଡ଼ିପଡ଼ିବା ସ୍ୱାଭାବିକ । କିନ୍ତୁ ଟୋକିଓର ରାସ୍ତାରେ ଓ ଫୁଟପାଥ୍ ଉପରେ ପତ୍ରଟିଏ ଦେଖିବାକୁ ମିଳେ ନାହିଁ । ଜାପାନୀମାନେ ବ୍ୟକ୍ତିଗତ ଭାବେ ନିଜ ଦେହକୁ ପରିଷ୍କାର ପରିଚ୍ଛନ୍ନ ରଖନ୍ତି ନାହିଁ ବୋଲି ସେମାନଙ୍କର ଅପବାଦ ରହିଛି । ଅଥଚ, ନିଜର ସହରକୁ ପରିଷ୍କାର ରଖି ଟୋକିଓର ଟେକ ରଖିଛନ୍ତି ।

ପାର୍କ ଭିତରେ ସେହି ପ୍ରକାର ଦୃଶ୍ୟ ଦେଖିଲି । ଖେଳୁଥିବା ବାଳକବାଳିକା କିମ୍ବା ବୁଲୁଥିବା ଯୁବକଯୁବତୀମାନେ ପଡ଼ିଆରେ ବା ଗଛମୂଳରେ ପଡ଼ିଥିବା ଯେକୌଣସି ଆବର୍ଜନା ଦେଖିଲାକ୍ଷଣି ଉଠାଇ ନେଇ ଅଳିଆ-ଟିଣରେ ପକାଇଦେଉଥିଲେ । ପାର୍କଟିକୁ ଉପଭୋଗ କରିବା ଯେପରି ଅଧିକାର, ତାକୁ ପରିଷ୍କାର ରଖିବା ସେହିପରି ଏକ କର୍ତ୍ତବ୍ୟ ବୋଲି ଜାପାନୀମାନେ ଜାଣିଛନ୍ତି ।

## ଟୋକିଓରୁ ବିଦାୟ

ଶିବା ହୋଟେଲରେ ରୁମ୍ ନେଲାବେଳେ ମୋତେ କୁହାଯାଇଥାଏ, ଟ୍ରାଭଲ ଏଜେନ୍ସି ମୋର ରୁମ୍ ଭଡ଼ା ଦାଖଲ କରିବେ, କିନ୍ତୁ ଖାଇବା ପିଇବା ବିଲ୍ ମୋତେ ଦେବାକୁ ହେବ । ଯେଉଁ ୩ ଦିନ ସେଠାରେ ରହିଲି, ତା ମଧ୍ୟରେ ମୋର ଖାଦ୍ୟ ଥାଏ ରୋଟି, ଟମାଟୋ ସିଝା, ପାଉଁରୋଟି, ଦୁଧ ଓ ଚା । ରାତି ୧୦ଟାରେ ହୋଟେଲ ଛାଡ଼ିବା ପୂର୍ବରୁ ଟଙ୍କା ଦେବାକୁ ଗଲି । ବିଲ୍‌ରେ ଲେଖାଥିବା ଅଙ୍କ ଦେଖି ସ୍ତମ୍ଭିତ ହେଲି । କାରଣ ପଚାରି ଉତ୍ତର ପାଇଲି, ''ସାର୍ଭିସ୍ ଚାର୍ଜ, ସାର୍ଭିସ୍ ଚାର୍ଜ, ଟ୍ୟାକ୍ସ, ସାର ଚାର୍ଜ, ଏଟେସେଟେରା, ଏଟେସେଟେରା ।'' ୩ଟି ବ୍ରେକ୍‌ଫାଷ୍ଟ ଓ ୩ଟି ଡିନାର ପାଇଁ ମୋଟ ୧୫ ହଜାର ୟେନ୍ । ପ୍ରତ୍ୟେକ ଦିନ ପାଇଁ ରୁମ୍ ରେଣ୍ଟ ଥାଏ ୧୨ ହଜାର ୟେନ୍ । ପକେଟ୍ ଶୂନ୍ୟ କରି ଡଲାର ହିସାବରେ ବିଲ୍ ପେ କଲି ।

ବିମାନଘାଟିକୁ ବାସ୍‌ରେ ଆସିଲି । ୩ ତାରିଖ ମଧ୍ୟରାତ୍ରରେ ବିମାନ ଟୋକିଓ ଛାଡ଼ିଲା । ଟୋକିଓରୁ ବ୍ୟାଙ୍ଗ୍‌କକ୍ ଓ ସେଠାରୁ କଲିକତା ଆସି ଏପ୍ରିଲ ୫ ତାରିଖ ଦିନ ଭୁବନେଶ୍ୱରରେ ପହଞ୍ଚିଲି । ସେତେବେଳେ କୁଳପତି ପଦରେ ରହିଥାଏଁ ।



ସର୍ବପ୍ରାଚୀନ ବୌଦ୍ଧ ମନ୍ଦିରରେ ହିନ୍ଦୁ ସ୍ୱସ୍ତିକା



ଟୋକିଓ ଟାୱାର

# ପଶ୍ଚିମ ଜାର୍ମାନୀ ଯାତ୍ରା, ୧୯୮୫



## ଷ୍ଟୁଟଗାର୍ଟ୍ ସମ୍ମିଳନୀ

### ଜାତୀୟ ବୃତ୍ତି ଅନୁଭୂତି

କୁଳପତି ପଦରୁ ଅବ୍ୟାହତି ନେଇ ୧୯୮୫ ମେ ମାସରେ ଜବାହାରଲାଲ ନେହରୁଙ୍କ ଜୀବନୀ ସମ୍ପର୍କରେ ଉଚ୍ଚତର ଗବେଷଣା ନିମନ୍ତେ ଦିଲ୍ଲୀରେ ପହଞ୍ଚିଲି । ମଞ୍ଜୁରୀ କମିଶନ ଅଧକ୍ଷା ମାଧୁରୀ ଶାହାଙ୍କ କଥାରୁ ଜାଣିଲି, ପରଲୋକଗତା ଇନ୍ଦିରା ଗାନ୍ଧିଙ୍କ ମତରେ ତାଙ୍କ ପିତାଙ୍କ ବିଷୟରେ ଅନେକ ପୁସ୍ତକ ଲେଖାଯାଇଥିବା ସତ୍ତ୍ୱେ ନୂତନ ତଥ୍ୟାବଳିରୁ ଅନ୍ୟ ଏକ ଗବେଷଣାମୂଳକ ବହି ଲେଖାଯିବା ଆବଶ୍ୟକ । ସେଥିପାଇଁ ଯଦି ମୋ ନାମ ତାଙ୍କ ମନକୁ ଆସିଥିଲା, ତାହାର କାରଣ ଥାଏ, 'ମାଉଣ୍ଟବ୍ୟାଟେନ କାଗଜ' ଦେଖି ମୋ ଲିଖିତ 'ଭାରତ ସ୍ୱାଧୀନତା ଓ ବିଭାଜନ' ବହିଖଣ୍ଡିକ ସେ ପଢ଼ିଥିଲେ । ସେଥିପାଇଁ ପୁଣି କଂଗ୍ରେସ ଶତବାର୍ଷିକୀ ଇତିହାସ ନିମନ୍ତେ ସ୍ୱାଧୀନତା ସମୟର ଗ୍ରନ୍ଥ ସଂକଳନ ଲାଗି ମୋତେ ବାଛିଥିଲେ । ମାଧୁରୀ ଶାହାଙ୍କ ଠାରୁ ଇନ୍ଦିରାଙ୍କ ମନୋଭାବ କଥା ଶୁଣିଲା ବେଳେ ମୋର ଧାରଣା ହେଲା, ନେହରୁଙ୍କ ସମସ୍ତ ବ୍ୟକ୍ତିଗତ କାଗଜପତ୍ର ଦେଖିବାକୁ ସୁଯୋଗ ପାଇବି ।

ଆଶା ହେଲା, ନେହରୁଙ୍କ ଅସଂଖ୍ୟ ଫାଇଲ ମଧ୍ୟରେ ରହିଥିବା ବହୁବିଧ ଗୋପନ ତଥ୍ୟରୁ ଚମତ୍କାର ବହିଟିଏ ଲେଖିହେବ । ନେହରୁଙ୍କ ଜୀବନୀ ଲେଖିଥିବା ଫ୍ରାଙ୍କ୍ ମୋରାଏସ୍‌ଙ୍କ ପରି ପ୍ରସିଦ୍ଧ ବ୍ୟକ୍ତିମାନେ ତାଙ୍କ ବ୍ୟକ୍ତିଗତ କାଗଜପତ୍ର ଦେଖି ନ ଥିଲେ । ସେହି ଲେଖକମାନଙ୍କ ତୁଳନାରେ ମୋ ଲେଖନୀ ଦୁର୍ବଳ ହେଲେ ସୁଦ୍ଧା, ତଥ୍ୟ ଦୃଷ୍ଟିରୁ ଲେଖାଟିକୁ ଉପଭୋଗ୍ୟ କରିପାରିବି ବୋଲି ଆତ୍ମବିଶ୍ୱାସ ଥାଏ ।

କାର୍ଯ୍ୟରେ ଯୋଗ ଦେଲାପରେ, ପ୍ରଥମେ 'ନେହରୁ ମେମୋରିଆଲ ମିଉଜିୟମ'ର ଅଧକ୍ଷ ଡକ୍ଟର ରବୀନ୍ଦ୍ର କୁମାରଙ୍କୁ ଭେଟିଲି । ସେ ଥିଲେ ନେହରୁ ପରିବାରର ଦୂର ସମ୍ପର୍କୀୟ ବ୍ୟକ୍ତି । ତାଙ୍କ ନିକଟରୁ ଶୁଣିଲି, ଜବାହାରଲାଲଙ୍କ ରାଶୀକୃତ

କାଗଜପତ୍ର ଏ ପର୍ଯ୍ୟନ୍ତ କେହି ଦେଖିନାହାନ୍ତି । ଇନ୍ଦିରା ଗାନ୍ଧିଙ୍କ ବ୍ୟକ୍ତିଗତ ଜିମାରେ ସେସବୁ ଥିଲା ଏବଂ ତାଙ୍କ ମୃତ୍ୟୁ ପରେ ରାଜୀବ ଗାନ୍ଧିଙ୍କ ଘରେ ଗଚ୍ଛିତ ଅଛି । ଅଧ୍ୟକ୍ଷ ମହୋଦୟ ଆଶ୍ୱାସନା ଦେଲେ, ଯେତେବେଳେ ଇନ୍ଦିରା ନିଜ ପିତାଙ୍କ ଜୀବନୀ ରଚନା ନିମନ୍ତେ ୟୁ.ଜି.ସି.କୁ ପ୍ରସ୍ତାବ ଦେଲେ, ସେତେବେଳେ ସେ ନିଶ୍ଚୟ ଲେଖକଙ୍କୁ 'ନେହରୁ କାଗଜ' ଦେଖାଇବେ ବୋଲି ନିଷ୍ପତ୍ତି ନେଇଥିବେ । କିନ୍ତୁ ସେ ତ ଅକାଳରେ ଚାଲିଗଲେ । ବର୍ତ୍ତମାନ ସବୁକିଛି ନିର୍ଭର କରିବ ତାଙ୍କ ପୁତ୍ର ତଥା ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧିଙ୍କ ଇଚ୍ଛା ଉପରେ । ଉପଦେଶ ଦେଲେ, ''ରାଜୀବ ଗାନ୍ଧିଙ୍କ ସହ ସାକ୍ଷାତ କରି ଆପଣଙ୍କ ଅଭିପ୍ରାୟ କଥା କହିଲେ, ସେ ରାଜି ହେବେ ।''

ସାହାଯ୍ୟ କରିବା ଉଦ୍ଦେଶ୍ୟରେ ରବୀନ୍ଦ୍ର କୁମାର ପ୍ରଧାନମନ୍ତ୍ରୀଙ୍କ ପରାମର୍ଶଦାତା ଏଇଚ.ୱାଇ.ସାରଦା ପ୍ରସାଦଙ୍କୁ ଫୋନ୍ ଯୋଗେ ମୋତେ ସାକ୍ଷାତ ଦେବା ଲାଗି ଅନୁରୋଧ କଲେ । ସେ ମହାଶୟ ଫୋନ୍‌ରେ ଆଦେଶ ଦେଲେ, ବିଶଦ ଭାବରେ ବିଷୟଟି ବର୍ଣ୍ଣନା କରି ଦରଖାସ୍ତ ଲେଖାଯିବା ଆବଶ୍ୟକ ଓ ସେଥି ସହ ନିର୍ଦ୍ଦିଷ୍ଟ ସମୟରେ ତାଙ୍କୁ ଭେଟିବାକୁ ହେବ ।

ତାଙ୍କ ଦେଇଥିବା ତାରିଖ ଓ ସମୟରେ ସାରଦା ପ୍ରସାଦଙ୍କ ପ୍ରକୋଷ୍ଠରେ ପହଞ୍ଚିଲି । ସେହି କକ୍ଷ ଖୋଦ୍ ପ୍ରଧାନମନ୍ତ୍ରୀଙ୍କ ଅଫିସ୍ କକ୍ଷକୁ ଲାଗିଥାଏ । ପ୍ରବେଶ ପଥରେ ମୋ ପୋଷାକପତ୍ର ସାର୍ଚ୍ଚ ଓ ମେଟାଲ୍ ଡିଟେକ୍ଟର ଦ୍ୱାରା ପରୀକ୍ଷା ନିରୀକ୍ଷା କରାଗଲା । ବାବୁ ସାରଦା ପ୍ରସାଦଙ୍କୁ ଆଗରୁ ଦେଖିଥାଏଁ । କଂଗ୍ରେସ ଇତିହାସ ସଂକଳନ କମିଟିର ସେ ସଦସ୍ୟ ଥିଲେ । ଭାବିଥିଲି, ଯେହେତୁ ସେ ମୋତେ ଜାଣନ୍ତି, ମୋ କଥା ମନ ଦେଇ ଶୁଣିବେ । ଶୁଣିଲେ ନିଶ୍ଚୟ, ପ୍ରାୟ ଏକ ଘଣ୍ଟା ପର୍ଯ୍ୟନ୍ତ । ଦରଖାସ୍ତ ମଧ୍ୟ ପଢ଼ିଲେ । କିନ୍ତୁ, ତାଙ୍କ ମୁଖମଣ୍ଡଳରୁ 'ଅସ୍ତି' ଅବା 'ନାସ୍ତି' ସୂଚକ କୌଣସି ସଂକେତ ପାଇଲି ନାହିଁ । ମିଶର ଦେଶର ପିରାମିଡ଼ ସମ୍ମୁଖରେ ଥିବା ସ୍ଫିଙ୍କସ୍ ମୂର୍ତ୍ତିର ମୁଖରୁ ଯେପରି 'ହସ' ବା 'କାନ୍ଦ'ର ସୂଚନା ବିଗତ ପାଞ୍ଚହଜାର ବର୍ଷ ଯାବତ୍ ମନୁଷ୍ୟ ଜାତି ଜାଣିପାରି ନାହିଁ, ଏକ ଘଣ୍ଟା ସମୟ ମଧ୍ୟରେ ସାରଦା ପ୍ରସାଦଙ୍କ ପ୍ରହେଳିକାମୟ ମୁଖରୁ ମୁଁ ମଧ୍ୟ ସେହିପରି କିଛି ଜାଣିପାରିଲି ନାହିଁ । ବୋଧହୁଏ, ପ୍ରଧାନମନ୍ତ୍ରୀଙ୍କ ସଚିବ ତଥା ପରାମର୍ଶଦାତା ନିଜର ମୁଖମଣ୍ଡଳକୁ ନିଶ୍ଚଳ ଓ ଗମ୍ଭୀର ରଖି ସବୁ କଥା ଶୁଣିବା ଲାଗି ଅଭ୍ୟସ୍ତ, କିନ୍ତୁ ପାଟି ଫିଟାଇବା ପାଇଁ ଅକ୍ଷମ । ଶେଷରେ ପଚାରିଲି, ''ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ କରିପାରିବି ?'' ତାଙ୍କର ଭାଷାହୀନ ଭଙ୍ଗୀରୁ ଜାଣିଲି 'ନା' ।

ଅନ୍ୟତ୍ର ଚେଷ୍ଟା କଲି । କିଛି ଦିନ ମଧ୍ୟରେ ହୃଦ୍‌ବୋଧ ହେଲା, 'ନେହରୁ କାଗଜ' ଦେଖିପାରିବା ଅସମ୍ଭବ । ଯେଉଁ ଆଶା ନେଇ ଜାତୀୟ ବୃତ୍ତି ଭୋଗ କରିବାକୁ ଯାଇଥିଲି, ସେ ଆଶା ବିଫଳ ହେଲା । ତେଣେ, ଦିଲ୍ଲୀ କର୍ମକର୍ତ୍ତାମାନେ ମୋତେ ଅନ୍ୟ ଭାବରେ ଉପଯୋଗ କରିବାକୁ ଚାହିଁଲେ ।

## ଷ୍ଟୁଟଗାର୍ଟ ସମ୍ମେଳନରେ ଯୋଗ ଦେବାକୁ ଆଦେଶ

୧୯୮୫ ଅଗଷ୍ଟ ମାସରେ ପଶ୍ଚିମଜାର୍ମାନୀର ଷ୍ଟୁଟଗାର୍ଟ ସହରରେ ଏକ ଆନ୍ତର୍ଜାତିକ ସମ୍ମେଳନରେ 'ଭାରତ ମହାସାଗର' ବିଷୟ ଆଲୋଚିତ ହେବାକୁ ଥାଏ । ପାଞ୍ଚଜଣ ଭାରତୀୟ ପ୍ରତିନିଧି ସେଥିରେ ଯୋଗଦେବେ ବୋଲି ସରକାର ଠିକ୍ କଲେ । ମସ୍କୋସ୍ଥିତ ଭାରତର ରାଷ୍ଟ୍ରଦୂତ ଅଧ୍ୟାପକ ନୁରୁଲ ହାସାନ ଓ ୟୁ.ଜି.ସି.ର ପୂର୍ବତନ ଅଧ୍ୟକ୍ଷ ଡକ୍ଟର ସତୀଶ ଚନ୍ଦ୍ରଙ୍କୁ ମନୋନୀତ କରିବା ସଙ୍ଗେ, ଭାରତୀୟ ଇତିହାସ ଗବେଷଣା ପରିଷଦର ୩ ଜଣଙ୍କ ମଧ୍ୟରେ ମୋତେ ରଖାଗଲା । ଅନ୍ୟ ଦୁଇଜଣ ଥିଲେ, ଇଣ୍ଡିଆନ୍ ଗେଜେଟିୟାରର ପୂର୍ବତନ ସମ୍ପାଦକ ପ୍ରାଣନାଥ ଚୋପ୍ରା ଓ ପରିଷଦର ନିର୍ଦ୍ଦେଶକ ତିଲକ ରାଜ ସାରିନ୍ ।

## ଭାରତ ମହାସାଗର

ଆନ୍ତର୍ଜାତିକ ସମ୍ମେଳନରେ ଆଲୋଚ୍ୟ ବିଷୟ ଥାଏ 'ଭାରତ ମହାସାଗର' । ଚାରିଦିନିଆ ଆଲୋଚନା ଚକ୍ରରେ ତଥ୍ୟମୂଳକ ବକ୍ତବ୍ୟ ଉପସ୍ଥାପନ ନ କଲେ, ଅନ୍ୟ ଦେଶର ପ୍ରତିନିଧିମାନଙ୍କ ଆଗରେ ନ୍ୟୂନ ହେବାକୁ ହେବ ଜାଣି, ଜ୍ଞାନ ଆହରଣ ଲାଗି ଦୁଇ ସପ୍ତାହ ଅଧ୍ୟୟନ କଲି । ବିଷୟଟି ଉପରେ ବସ୍ତୁତଃ ମୋର କୌଣସି ଧାରଣା ନ ଥାଏ । ଜଳଭାଗର ଇତିହାସର ଅର୍ଥ ହେଉଛି ତାହାର ଚାରିପାର୍ଶ୍ୱରେ ଥିବା ଦେଶମାନଙ୍କର ବିବରଣୀ ଓ କିପରି ଭାବରେ ସେହିସବୁ ଦେଶର ମନୁଷ୍ୟମାନେ ମହାସାଗରକୁ ଅତୀତ ଯୁଗରୁ ଆଜି ପର୍ଯ୍ୟନ୍ତ ଉପଯୋଗ କରି ଆସିଛନ୍ତି, ସେହି ବିଷୟର ବୃତ୍ତାନ୍ତ ।

ଅଧୁନା, ଭାରତ ମହାସାଗରକୁ ଲାଗିଥିବା ଦେଶମାନଙ୍କର ସଂଖ୍ୟା ୩୭ । ପୃଥିବୀର ଏକ-ତୃତୀୟାଂଶ ମନୁଷ୍ୟ ଏହି ଦେଶଗୁଡ଼ିକର ଅଧିବାସୀ । ଦକ୍ଷିଣ ଆଫ୍ରିକା ଠାରୁ ଆରମ୍ଭ କରି ଅଷ୍ଟ୍ରେଲିଆର ଦକ୍ଷିଣ ସୀମା ପର୍ଯ୍ୟନ୍ତ ଭାରତ ମହାସାଗରର ଦୂରତ୍ୱ ହେଉଛି ୧୦ ସହସ୍ର କିଲୋମିଟାର । ଏହି ଜଳରାଶିର ବିଶେଷତ୍ୱ ହେଲା, ଆକାରରେ ଆଟଲାଣ୍ଟିକ କିମ୍ବା ପ୍ରଶାନ୍ତ ମହାସାଗର ଠାରୁ କ୍ଷୁଦ୍ର ହେଲେ ସୁଦ୍ଧା, ଆବହମାନ କାଳରୁ ଏହି ମହାସାଗର ବିଭିନ୍ନ ଦେଶ ଓ ଜାତିର ମନୁଷ୍ୟମାନଙ୍କ ଦ୍ୱାରା ବିଭିନ୍ନ କାରଣ ଲାଗି ବ୍ୟବହୃତ ହୋଇଛି ।

ଜାତି ଜାତି ମଧ୍ୟରେ ଭାବଗତ, ଧର୍ମଗତ ଓ ବାଣିଜ୍ୟଗତ ଆଦାନ ପ୍ରଦାନ ନିମନ୍ତେ ଭାରତ ମହାସାଗରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ସମ୍ପର୍କ ରକ୍ଷା ଦୃଷ୍ଟିରୁ ମହାସାଗର କୂଳବର୍ତ୍ତୀ ଦେଶମାନ ଯେପରି ଭାବରେ ପରସ୍ପର ସହିତ ଘନିଷ୍ଠ ଭାବରେ ଜଡ଼ିତ, ସେପରି ଦୃଷ୍ଟାନ୍ତ ଅନ୍ୟ କୌଣସି ମହାସାଗରରେ ଦେଖିବାକୁ ମିଳିନାହିଁ । ଷ୍ଟୁଟଗାର୍ଟ ସମ୍ମେଳନ ପାଇଁ ପ୍ରସ୍ତୁତ ହେବାକୁ ଅନେକ ବହି ପଢ଼ି ସେଥିରୁ ତଥ୍ୟମାନ ସଂଗ୍ରହ କଲି । ସେ ବିଷୟରେ କିଛି ଲେଖୁନାହିଁ ।

## ଷ୍ଟୁଟଗାର୍ଟ ସହରରେ ଏକ ସପ୍ତାହ

ଅଗଷ୍ଟ ୨୧ ତାରିଖ ଦିନ ଚୋପ୍ରା ଓ ସାରିନଙ୍କ ସାଙ୍ଗରେ ଭାରତରୁ ଷ୍ଟୁଟଗାର୍ଟ ଅଭିମୁଖେ ଯାତ୍ରା କଲି । ରୋମ ସହରରେ ଗୋଟିଏ ଦିନ ରହି, ସେଠାରୁ ଫ୍ରାଙ୍କଫୁର୍ଟ୍ ଓ ତା ପରେ ଷ୍ଟୁଟଗାର୍ଟ ସହରରେ ୨୪ ତାରିଖ ସନ୍ଧ୍ୟାବେଳେ ପହଞ୍ଚିଲୁଁ ।

ଜାର୍ମାନୀର ବାଡେନ-ଉର୍ଟେମ୍ବାର୍ଗ ନାମକ ରାଜ୍ୟର ରାଜଧାନୀ ହେଉଛି ଷ୍ଟୁଟ୍‌ଗାର୍ଟ । ପ୍ରସିଦ୍ଧ କୃଷ୍ଣ ଅରଣ୍ୟ ବା Black Forest ଅଞ୍ଚଳର ଶେଷ ସୀମାରେ ଅବସ୍ଥିତ ଏହି ସ୍ଥାନର ପ୍ରାକୃତିକ ଶୋଭା ଦେଖି ପର୍ଯ୍ୟଟକମାନେ ମୁଗ୍ଧ ହୁଅନ୍ତି । ସହରର ଗୋଟିଏ ଭଲ ହୋଟେଲରେ ଆମର ରହିବା ବ୍ୟବସ୍ଥା ହୋଇଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଶତ୍ରୁପକ୍ଷର ବୋମାମାଡ଼ରେ ସହରର ଅଧିକାଂଶ ଘରଦ୍ୱାର ଧ୍ୱଂସ ପାଇଯାଇଥିଲା । ଯୁଦ୍ଧପରେ ଐତିହାସିକ ସୌଧଗୁଡ଼ିକର ପୁନରୁଦ୍ଧାର କରାଯିବା ସଙ୍ଗେ ଜାର୍ମାନମାନେ ନୂଆ ଭାବରେ ସହରଟିକୁ ନିର୍ମାଣ କରିଥିଲେ ।

ଷ୍ଟୁଟଗାର୍ଟ ବିଶ୍ୱବିଦ୍ୟାଳୟର ପ୍ରେକ୍ଷାଗୃହ ମଧ୍ୟରେ ୨୫ ତାରିଖ ପୂର୍ବାହ୍ଣରେ ସମ୍ମେଳନ ଉଦ୍‌ଘାଟିତ ହେଲା । ବିଭିନ୍ନ ଦେଶରୁ ୩୦୦ ପ୍ରତିନିଧି ସେଥିରେ ଯୋଗଦେବାକୁ ଆସିଥିଲେ । ଯଦିଚ ବିଷୟ ଥିଲା 'ଭାରତ ମହାସାଗର', ତଥାପି ଆଫ୍ରିକା, ଆମେରିକା ଓ ଇଉରୋପର ଅନେକାନେକ ଦେଶର ବିଶେଷଜ୍ଞମାନେ ଆଲୋଚନାରେ ଅଂଶଗ୍ରହଣ ନିମନ୍ତେ ଆସିଥିଲେ । ଆଶ୍ଚର୍ଯ୍ୟର ବିଷୟ, ଆରବ ସାଗର ଓ ପାରସ୍ୟ ଉପସାଗର ଭାରତ ମହାସାଗରର ଅଂଶ ହୋଇଥିବା ସତ୍ତ୍ୱେ, ସେହି ଦୁଇ ସାଗରର କୂଳବର୍ତ୍ତୀ ଦେଶମାନଙ୍କରୁ କୌଣସି ପ୍ରତିନିଧି ଆସି ନଥିଲେ । ପଶ୍ଚିମ ଏସିଆର ଦେଶଗୁଡ଼ିକ ସାଧାରଣତଃ ଆନ୍ତର୍ଜାତିକ ସମ୍ମିଳନୀଗୁଡ଼ିକୁ ପସନ୍ଦ କରନ୍ତି ନାହିଁ ବୋଲି କେହି କେହି କହୁଥିବା ଶୁଣିଲି ।

ସପ୍ତାହବ୍ୟାପୀ ସମ୍ମିଳନୀରେ କେଉଁ ଦିନ ଓ କେତେ ବେଳେ ବିଭିନ୍ନ ଦେଶର ପ୍ରତିନିଧିମାନେ ଭାରତ ମହାସାଗରରେ ନିଜ ନିଜ ଦେଶର ଭୂମିକା ସମ୍ପର୍କରେ

ଆଲୋକପାତ କରିବେ ତାହାର କାର୍ଯ୍ୟସୂଚୀ ବାଣ୍ଟି ଦିଆଗଲା । ସେହି ଭୂମିକାକୁ ପୁଣି ନାନା ଭାଗରେ ବିଭକ୍ତ କରାଯାଇଥାଏ । ଆମେ ଭାରତୀୟ ପ୍ରତିନିଧି ଦଳର ପାଞ୍ଚଜଣ ନିଜ ନିଜ ଭିତରେ ବିଷୟମାନ ବାଣ୍ଟିନେଲୁ । ନୁରୁଲ୍ ହାସାନ ମସ୍କୋରୁ ଆସି ଆମ ସହିତ ମିଶିଲାବେଳକୁ ସତୀଶ ଚନ୍ଦ୍ର ଲଣ୍ଡନରୁ ଆସି ପହଞ୍ଚିଥିଲେ । ଇଂରାଜୀରେ ଆଲୋଚନା ହେବ ବୋଲି ଘୋଷଣା କରାଗଲା । ପ୍ରତ୍ୟେକ ବ୍ୟକ୍ତିର ଭାଷଣ ପରେ ତର୍କବିତର୍କ ଲାଗି ସମୟ ରଖାଗଲା । ଆଲୋଚନା ସମ୍ପର୍କରେ କିଛି ଲେଖୁନାହିଁ । କେବଳ ଦେଖିଥିବା କେତେକ ସ୍ଥାନ ବିଷୟରେ ନିମ୍ନରେ ଉଲ୍ଲେଖ କଲି ।

ଦିନେ ଅପରାହ୍ନରେ ପ୍ରତିନିଧିମାନଙ୍କୁ ବାସ ଯୋଗେ ସହରର ବାହାର ଅଞ୍ଚଳରେ ଥିବା ଗୋଟିଏ ମୋଟରକାର୍ କାରଖାନା ଦେଖାଇବାକୁ ନିଆଗଲା । ହିଟଲାରଙ୍କ ନାଜି ଜାର୍ମାନୀର ପତନ ପରେ ମହାଯୁଦ୍ଧର ଧ୍ୱଂସସ୍ତୂପ ଉପରେ ଜାର୍ମାନମାନେ ଦେଶର ଆର୍ଥିକ ବିକାଶ ନିମନ୍ତେ ଯେଉଁ ପ୍ରକାର ଉଦ୍ୟମ କରିପାରିଛନ୍ତି ତାହା ବାସ୍ତବିକ ବିସ୍ମୟଜନକ । ମାର୍ସେଡେସ୍-ବେନଜ ଗାଡ଼ିର ଶିଳ୍ପାନୁଷ୍ଠାନ ଦେଖିବାକୁ ମିଳିଲା । ସେହି ଶିଳ୍ପାଞ୍ଚଳରେ ଅନ୍ୟ କେତେକ ପ୍ରକାର ଗାଡ଼ି ଇଞ୍ଜିନ ଉତ୍ପାଦନ କରାଯାଏ ।

ଅନ୍ୟ ଏକ ଅଞ୍ଚଳରେ ରହିଛି ଜାର୍ମାନୀର ସ୍ୱାସ୍ଥ୍ୟକେନ୍ଦ୍ର ରୂପେ ପ୍ରସିଦ୍ଧ ସ୍ଥାନର ଜଳପ୍ରସ୍ରବଣଗୁଡ଼ିକ । ସେଠାକାର ମିନେରାଲ ପାଣି ଲକ୍ଷ ଲକ୍ଷ ବୋତଲରେ ଭର୍ତ୍ତି କରାଯାଇ ରପ୍ତାନୀ କରାଯାଏ ।

ମୁଦ୍ରଣଯନ୍ତ୍ର ଉତ୍ପାଦନ ଲାଗି ଷ୍ଟୁଟଗାର୍ଟର ଖ୍ୟାତି ରହିଛି । ଦିନେ ମୁଁ ଓ ସାରିନ ସହରର କେନ୍ଦ୍ରାଞ୍ଚଳରେ ଥିବା ପୁସ୍ତକଭଣ୍ଡାରଗୁଡ଼ିକ ଦେଖିବାକୁ ଗଲୁଁ । ସେଠାରେ ଶତାଧିକ ପ୍ରକାଶନୀ ପ୍ରତିଷ୍ଠାନ ଦେଖିବାକୁ ମିଳିଲା । ଅତ୍ୟାଧୁନିକ ଉପାୟରେ ମୁଦ୍ରିତ ହୋଇଥିବା ବହିଗୁଡ଼ିକ ଦେଖି ମୁଦ୍ରଣଶିଳ୍ପର ଉତ୍କର୍ଷ ଜାଣିହେଲା । ଗୋଟିଏ କାରଖାନାରେ ରପ୍ତାନୀ ଲାଗି ରଖାଯାଇଥିବା ଉନ୍ନତ ଧରଣର ମୁଦ୍ରଣ ଯନ୍ତ୍ରମାନ ଦେଖିଲି ।

ଥରେ ସହରର ଐତିହାସିକ ସ୍ଥାନଗୁଡ଼ିକ ଦେଖାଇବା ନିମନ୍ତେ ପ୍ରତିନିଧିଦଳକୁ ନିଆଗଲା । ସାତ ଶହ ବର୍ଷ ଆଗର ଏକ ପ୍ରାଚୀନ ଦୁର୍ଗ ଯୁଦ୍ଧ ସମୟରେ ଧ୍ୱଂସୀଭୂତ ହୋଇଥିଲେ ସୁଦ୍ଧା ଜାର୍ମାନ ସରକାର ପୁନର୍ବାର ତାକୁ ସେହି ଆକାରରେ ଗଠନ କରି ସଂରକ୍ଷିତ କରିଛନ୍ତି । ଧ୍ୱଂସ ପାଇଥିବା ପ୍ରାଚୀନ ଗିର୍ଜାଗୁଡ଼ିକୁ ମଧ୍ୟ

ମଧ୍ୟଯୁଗୀୟ ସ୍ଥାପତ୍ୟ ଶୈଳୀରେ ପୁନର୍ନିର୍ମାଣ କରାଯାଇଛି । ଦୁଇ ଶହ ବର୍ଷ ଆଗର ପୁରୁଣା 'ନିର୍ଜନ ରାଜପ୍ରାସାଦ' ବା Solitude Palace ନାମକ ସୌଧ ଦର୍ଶକମାନଙ୍କୁ ମୁଗ୍ଧ କରିଥାଏ । ହୋଲନ୍ ହେମ୍ ନାମକ ଆଉ ଗୋଟିଏ ପୁରୁଣା ରାଜପ୍ରାସାଦ ଦେଖାଇ ଦିଆଗଲା ।

## ଷ୍ଟୁଟଗାର୍ଟରୁ ବିଦାୟ

ସେପ୍ଟମ୍ବର ୨ ତାରିଖ ଦିନ ଷ୍ଟୁର୍ଟଗାର୍ଟ ଠାରୁ ଫ୍ରାଙ୍କଫୁର୍ଟ ଆସିଲି । ସେଠାରୁ ରୋମ ଓ ରୋମରୁ ଦିଲ୍ଲୀ ଫେରିଲି ।

# ଜାତୀୟ କଂଗ୍ରେସର ଶତବାର୍ଷିକୀ ଉତ୍ସବ, ୧୯୮୫

## ଯୁକ୍ତରାଷ୍ଟ୍ରରେ ଅନୁଷ୍ଠିତ 'ଭାରତ ଉତ୍ସବ' ରେ ଯୋଗଦାନ




### ଜାତୀୟ କଂଗ୍ରେସର ଶତବାର୍ଷିକୀ

୧୮୮୫ ମସିହା ଡିସେମ୍ବର ମାସ ଶେଷରେ ବୋମ୍ବେ ନଗରୀର ଗୋକୁଳ ଦାସ ତେଜପାଳ ସଂସ୍କୃତ ମହାବିଦ୍ୟାଳୟର ପରିସର ମଧ୍ୟରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେହି ସମୟରୁ ଆରମ୍ଭ ହୋଇଥିଲା କଂଗ୍ରେସ ସଂଗଠନର ମହାନ୍ ଐତିହାସିକ ଭୂମିକା । ଜାତୀୟ ଜାଗରଣ, ଜାତୀୟ ଆନ୍ଦୋଳନ ଓ ଜାତୀୟ ସଂଗ୍ରାମର ଚୂଡ଼ାନ୍ତ ପରିଣତି ସ୍ୱରୂପ ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା । ସେହିଠାରୁ ଆରମ୍ଭ ହେଲା କଂଗ୍ରେସ ଦଳର ନୂତନ ଭୂମିକା । ବିଶ୍ୱର ବୃହତ୍ତମ ଗଣତନ୍ତ୍ରର ରୂପରେଖ ନିର୍ଣ୍ଣୟ ଓ ଭାରତୀୟ ସାଧାରଣତନ୍ତ୍ରର ପରିଚାଳନା ଦାୟିତ୍ୱ ହେଲା ଜାତୀୟ କଂଗ୍ରେସର ମୁଖ୍ୟ ଆଭିମୁଖ୍ୟ । କୃତିତ୍ୱ ଓ ସାଫଲ୍ୟ ତଥା ଘାତ ପ୍ରତିଘାତ ମଧ୍ୟରେ ୧୯୮୫ ମସିହାରେ କଂଗ୍ରେସ ସଂଗଠନ ତାହାର ଶତବର୍ଷ ଆୟୁଃକାଳ ପୂରଣ କଲା ।

ଭାରତର ସର୍ବତ୍ର ଶତବାର୍ଷିକ ଉତ୍ସବ ପାଳିତ ହେଲାବେଳେ, ପୃଥିବୀର ଅନ୍ୟ କେତେକ ଦେଶରେ ମଧ୍ୟ ସେହି ଉପଲକ୍ଷେ ଉତ୍ସବମାନ ପାଳନ କରାଗଲା । ଯୁକ୍ତରାଷ୍ଟ୍ର ସରକାର ଓ ଭାରତ ସରକାରଙ୍କ ମିଳିତ ଉଦ୍ୟମରେ ଆମେରିକାରେ ଆୟୋଜନ କରାଗଲା 'ଭାରତ-ଉତ୍ସବ' । ସେଥିରେ ରହିଲା ସାଂସ୍କୃତିକ କାର୍ଯ୍ୟକ୍ରମ ଓ ବକ୍ତୃତାମାଳା ।

ଆମେରିକାର ଲଙ୍ଗ୍ ବିଚ୍ ସହରରେ ବକ୍ତୃତାମାଳାର ଉଦ୍‌ଘାଟନ ଉତ୍ସବ ଲାଗି ୧୯୮୫ ଅକ୍ଟୋବର ୧୧ ତାରିଖ ନିର୍ଦ୍ଧାରିତ ଥାଏ । ସେଥିରେ ଅଂଶ ଗ୍ରହଣ ନିମନ୍ତେ ଜଣେ ଭାରତୀୟ ଐତିହାସିକଙ୍କୁ ପଠାଇବା ପାଇଁ ଆମେରିକାରୁ ଅନୁରୋଧ ଆସିଥାଏ । ଅନେକ ପୂର୍ବରୁ ପ୍ରୋଗ୍ରାମ ପ୍ରସ୍ତୁତ କରାଯାଇଥିବା ସତ୍ତ୍ୱେ, ଦିଲ୍ଲୀର

କର୍ମକର୍ତ୍ତାମାନେ କେଉଁ ଐତିହାସିକଙ୍କୁ ପଠାଇବେ, ତାହା ଠିକ୍ ନ କରି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଶ୍ଚିନ୍ତ ଥିଲେ । ଅମଲାତନ୍ତ୍ରର କଚ୍ଛପଗତି ଯୋଗୁଁ କିପରି ଅବସ୍ଥା ଭୋଗିବାକୁ ହୁଏ, ତାହାର ତିକ୍ତ ଅନୁଭୂତି ଅଙ୍ଗେ ନିଭାଇଲି ।

## ଟେଲିଫୋନ ଯୋଗେ ଦିଲ୍ଲୀରୁ ଡାକ

ଅକ୍ଟୋବର ୭ ତାରିଖ । ଭୁବନେଶ୍ୱରରେ ଥିଲି । ଅପରାହ୍ନ ୪ ଟା ସମୟରେ ଭାରତ ସରକାରଙ୍କ ସାଂସ୍କୃତିକ ବିଭାଗ ସଚିବ ଦିଲ୍ଲୀରୁ ଫୋନ କଲେ । ଏକା ନିଶ୍ୱାସକେ କହିଗଲେ, ''୧୧ ତାରିଖ ଦିନ ଆମେରିକାର ଲଙ୍ଗ୍ ବିଚ୍ ସହରରେ 'ଭାରତ ଉତ୍ସବ' ଉଦ୍‌ଘାଟନ ଉପଲକ୍ଷେ ଆପଣଙ୍କୁ ଜାତୀୟ କଂଗ୍ରେସର ଇତିହାସ ସମ୍ପର୍କରେ କହିବା ଲାଗି ସରକାର ମନୋନୀତ କରିଛନ୍ତି । ଆଗାମୀ କାଲି ସକାଳ ୮ ଟାରେ ମୋ ଅଫିସରେ ପହଞ୍ଚିବା ଦରକାର । ରାତି ବିମାନରେ ଆମେରିକା ଯିବେ ।''

ବିଦେଶ ଯାତ୍ରା ଲାଗି ପ୍ରସ୍ତୁତ ହେବାକୁ ଅନ୍ତତଃ ଦୁଇଦିନ ଲାଗିବ ବୋଲି ମୁଁ କହିବାରୁ ସେ ବାଧା ଦେଇ କହିଲେ, ''ସରକାରଙ୍କ ଅର୍ଡ଼ର ପାଇ ସଙ୍ଗେ ସଙ୍ଗେ ଫୋନ କରୁଛି । ସନ୍ଧ୍ୟା ଫ୍ଲାଇଟରେ ଭୁବନେଶ୍ୱରରୁ ଦିଲ୍ଲୀ ଚାଲି ଆସନ୍ତୁ ।''

୫ଟା ବାଜିଯାଇଥାଏ । ୬ଟାରେ ବିମାନ ଛାଡ଼ିବ । ବିମାନଘାଟିକୁ ଫୋନକରି ଜାଣିଲି, ସିଟ୍ ନାହିଁ । ଦିଲ୍ଲୀରୁ ପୁଣି ଫୋନ ଆସିଲା । ଏଥର ଅନ୍ୟ ଜଣେ ସଚିବ । ''୩ ସପ୍ତାହ ପାଇଁ ପ୍ରସ୍ତୁତ ହୋଇ ଆସିବେ । ପ୍ରୋଗ୍ରାମ୍ ଫାଇନାଲ୍ । ଭୁବନେଶ୍ୱର ଫ୍ଲାଇଟ ନ ପାଇଲେ, କଲିକତା ଆସି ସେଠାରୁ ସକାଳ ଦିଲ୍ଲୀ ଫ୍ଲାଇଟ୍‌ରେ ଆସିଯାନ୍ତୁ । ୮ ଟା ବେଳେ ଆମ ଅଫିସରେ ପହଞ୍ଚିବାକୁ ହେବ ।''

ଟ୍ରାଭେଲ୍ ଏଜେଣ୍ଟକୁ ଫୋନ କଲି । ଭୁବନେଶ୍ୱରରୁ କଲିକତା ଟିକଟ ମିଳିବ ବୋଲି କହିଲେ । କିନ୍ତୁ ସେଠାରୁ ଦିଲ୍ଲୀ ଟିକଟର ଗ୍ୟାରେଣ୍ଟି ନାହିଁ । ପୋଷାକପତ୍ର ପରିଷ୍କାର ନ ଥାଏ । ତଥାପି ବାଧ୍ୟ ହୋଇ ସୁଟକେଶ୍ ଭର୍ତ୍ତିକଲି । ରାତି ୧୧ ଟାରେ ଭୁବନେଶ୍ୱର ଛାଡ଼ିଲି । ୧୨ଟାରେ କଲିକତା । ଦିଲ୍ଲୀ ଟିକଟ ଲାଗି ଏଣେତେଣେ ଦୌଡ଼ିବାକୁ ହେଲା । ସାରାରାତି ଅନିଦ୍ରାରେ କଟିଲା । ୮ ତାରିଖ ସକାଳେ ଦିଲ୍ଲୀ ବିମାନଘାଟିରେ ପହଞ୍ଚିଲା ବେଳକୁ ପ୍ରବଳ ବର୍ଷା । ଟ୍ୟାକ୍ସି ଯୋଗେ ନିର୍ଦ୍ଦିଷ୍ଟ ସ୍ଥାନକୁ ଚାଲିଲି । ରାଜପଥରେ ପାଣିର ସୁଅ । ରାସ୍ତା ଓ ଦୁଇପାଖର ନର୍ଦ୍ଦମା, ଜଳରେ ବୁଡ଼ି ରହିଥାଏ । ଅଫିସ ଗେଟ ପାଖରେ ଦେଖିଲି, ଭିତର ପ୍ରାଙ୍ଗଣଟି ହ୍ରଦପରି ଦିଶୁଛି । ଆଣ୍ଠୁଏ ପାଣିରେ ଚାଲି ଓ ମୁଷଳ ବର୍ଷାରେ ଭିଜି ଅଫିସ୍ ଦ୍ୱାର ଧରିଲା ବେଳକୁ ସଦ୍ୟ ନଦୀଗର୍ଭରୁ ଉଠିଥିଲା ପରି ଦେଖାଯାଉଥିଲି ।

ସାଢ଼େ ୮ଟା ବାଜିଥାଏ । ତିନିଜଣ ଆଇ.ଏ.ଏସ୍. ଅଫିସାର ଅପେକ୍ଷା କରିଥିଲେ । ଓଦା କୋଟଟି ଦେହରୁ କାଢ଼ି ଗୋଟିଏ ଚେୟାରରେ ରଖିଲି । ଥଣ୍ଡାରେ ଦେହ ଥରୁଥାଏ । ମୁଣ୍ଡ ପୋଛିଲାବେଳେ ପଚାରିଲି, ଚା କପେ ମିଳିବ ? ନା, ଅଫିସ ଫିଟି ନାହିଁ, ପିଅନମାନେ ଆସି ନାହାନ୍ତି, ବର୍ଷା ଲାଗିରହିଛି, ଚା ଆଣିବ କିଏ ?

ସହାନୁଭୂତିସୂଚକ ଦୁଃଖ ପ୍ରକାଶ କରି ମିସ୍ ସ୍ୱତନ୍ତ୍ର ସେଖୋନ ନାମ୍ନୀ ଡେପୁଟି ସେକ୍ରେଟାରୀ ଜଣାଇଲେ, "ଗତ କାଲି ଦିନ ସାଢ଼େ ୩ଟାରେ ଉପର ମହଲରୁ ଫାଇଲ ଆସିଲା । ଆପଣଙ୍କ ଫୋନ ନମ୍ବର ପାଇବାକୁ ଅଧଘଣ୍ଟାଏ ଲାଗିଗଲା । ଏବେ ସଙ୍ଗେ ସଙ୍ଗେ ଆମେରିକା ଦୂତାବାସରୁ ଭିସା ଆଣିବାକୁ ହେବ । ରାତି ୧ଟା ଫ୍ଲାଇଟରେ ଟିକଟ କିଣା ସରିଛି ।"

ଓଦା କୋଟ ହାତରେ ଧରି ଓ ଭିଜା ପେଣ୍ଟ ସାର୍ଟ ପିନ୍ଧି ଜଣେ ଯୁବ ସଚିବଙ୍କ ଗାଡ଼ିରେ ଆମେରିକା ଦୂତାବାସ ଚାଲିଲି । ଅନେକ ଦୂରରେ ଦୂତାବାସ । ସେଠାରେ ୧୦ଟାରେ ପହଞ୍ଚି କାଗଜପତ୍ର ପୂରଣ କରିବାକୁ କିଛି ସମୟ ଲାଗିଲା । ତାପରେ ଅପେକ୍ଷା, ଅନିର୍ଦ୍ଦିଷ୍ଟ ଅପେକ୍ଷା । ତଳୁ ଉପରକୁ କାଗଜ ଉଠିବା ପାଇଁ ସମୟ ଦରକାର । ସଚିବ ମହୋଦୟ ଯେତେ ଦୌଡ଼ାଦୌଡ଼ି କଲେ ମଧ୍ୟ ଜଣକ ପରେ ଜଣେ ଦୂତାବାସ କର୍ମଚାରୀଙ୍କ ଦସ୍ତଖତ୍ ହାସଲ କରିବା ସହଜ ନଥାଏ । ଧୈର୍ଯ୍ୟର ଶେଷସୀମା ଅତିକ୍ରମ କଲାପରେ ଅବଶେଷରେ ଦିନ ୪ଟା ବେଳେ ଭିସା ମିଳିଲା । ସଚିବଙ୍କୁ କହିଲି, "ସବୁ କାମ ଶେଷ ମୁହୂର୍ତ୍ତରେ ନ କରି ସରକାରୀ କଳ ଯଥାପୂର୍ବରୁ ତତ୍ପର ନ ହେଲେ, ଏପରି ହଇରାଣ ହେବା ସ୍ୱାଭାବିକ ।" ସେ ନିରୁତ୍ତର ରହିଲେ । ମୋ ପରି ସେ ମଧ୍ୟ ସକାଳ ପାଖରୁ କିଛି ଖାଇ ନଥିଲେ ।

ସନ୍ଧ୍ୟା ୫ଟାରେ ମୋତେ ଅଶୋକା ହୋଟେଲରେ ଛାଡ଼ିଲା ବେଳେ ସେ କହିଲେ, "ମୋ ଡିଉଟି ସରିଲା । ଅନ୍ୟ ଜଣେ ଅଫିସାର ଆପଣଙ୍କ ଦାୟିତ୍ୱ ନେବେ । ଲରେଲ୍ ହାର୍ଡ଼ି ଆପଣଙ୍କୁ ବିମାନ ବନ୍ଦରରେ ଛାଡ଼ିବେ ।" ବିଦାୟୀ ସଚିବ ତାଙ୍କ ଟେଲିଫୋନ ନମ୍ବର ଦେଇ କହିଲେ, "ଅସୁବିଧା ହେଲେ ମୋତେ ରିଂ କରିବେ ।"

ଭୋକ ଯୋଗୁଁ ଶୀଘ୍ର ଖାଇନେଲି । ଗତ ରାତ୍ରିର ଅନିଦ୍ରା, ସକାଳର ବର୍ଷାମାଡ଼ ଓ ଆମେରିକା ଦୂତାବାସରେ ବିରକ୍ତିଜନକ ଅପେକ୍ଷା ଲାଗି, ଦେହରେ ଜ୍ୱର ବୋଧକଲି । ରିସେପସନିଷ୍ଟକୁ ଫୋନ କଲି, "ମିଷ୍ଟର ଲରେଲ ହାର୍ଡ଼ି ଆସିଲେ, ମୋ ରୁମ୍‌କୁ ପଠାଇଦେବେ ।" ସେ ଉତ୍ତର ଦେଲେ, "ଲରେଲ ଆଣ୍ଡ ହାର୍ଡ଼ି

ହେଉଛି ଟ୍ରାଭଲ ଏଜେନ୍ସିର ନାମ । ସେଠାରୁ କେହି ଆସିଲେ, ପଠାଇଦେବି ।" ବୁଝିପାରିଲି, ଲରେଲ ହାର୍ଡ଼ି ବ୍ୟକ୍ତି ନୁହନ୍ତି, ଅନୁଷ୍ଠାନ ।

ଶୋଇବା ପ୍ରଶ୍ନ ନଥାଏ । ରାତି ୧୧ ଟାରେ ବିମାନ ବନ୍ଦରରେ ପହଞ୍ଚିବା କଥା । କିନ୍ତୁ ସାଢ଼େ ୧୦ଟା ପର୍ଯ୍ୟନ୍ତ କାହାରି ଦେଖା ନଥାଏ । ବାଧ୍ୟ ହୋଇ ଡିଉଟି ସମ୍ପାଦନ କରି ଚାଲିଯାଇଥିବା ସଚିବଙ୍କୁ ଫୋନ କଲି । ଅପ୍ରସ୍ତୁତ ସ୍ୱରରେ ସେ କହିଲେ, "ଅନ୍ୟ ଜଣେ ଅଫିସରଙ୍କ ଦାୟିତ୍ୱ ! ମୁଁ କ'ଣ କରିବି, ଭାବି ପାରୁନାହିଁ । ଦୁଇଟି ଫୋନ ନମ୍ବର ଲେଖି ନିଅନ୍ତୁ । ଫୋନ କଲେ ସଙ୍ଗେ ସଙ୍ଗେ ଆସିଯିବେ ।" "ସେ କାମ ଆପଣଙ୍କର, ମୋର ନୁହେଁ । ସରକାରୀ କଳର ଅବହେଳାର ସୀମା ନଥାଇ ପାରେ, କିନ୍ତୁ ମୋ ଧୈର୍ଯ୍ୟର ସୀମା ଅଛି । ଆପଣ ଆମେରିକା ଯାତ୍ରା କ୍ୟାନ୍‌ସେଲ କରିଦିଅନ୍ତୁ," ଏତକ କହି ଫୋନ ରଖିଦେଲି ।

ବିରକ୍ତିସୂଚକ ବାକ୍ୟ ଫଳପ୍ରଦ ହେଲା । ସାଢ଼େ ୧୧ଟା ବେଳକୁ ନୂତନ ସଚିବ ଟିକଟ ସହ ପହଞ୍ଚିଗଲେ । କହିଲି, "ଆପଣମାନେ ଆସି ନଥିଲେ, ଭଲ ହୋଇଥାନ୍ତା । ରାତିରେ ଆରାମରେ ଶୋଇପାରିଥାନ୍ତି । ଗତ ରାତି ଉଜାଗର ଥିଲି, ଏ ରାତି ଉଜାଗର ରହିବି । ଆଗାମୀ ରାତି କଥା ଜଣା ନାହିଁ । 'ଭାରତ ଉତ୍ସବ' ରେ ଭାଷଣ ଦେଲାବେଳକୁ କଂଗ୍ରେସ ଇତିହାସ ମନେ ନ ଥିବ ।" ସଚିବ ସଫେଇ ଦେଲେ, "ମୁଁ ଭାବିଥିଲି, ଟ୍ରାଭଲ ଏଜେଣ୍ଟ ଆପଣଙ୍କୁ ଭେଟିଥିବ ।" ଏଜେଣ୍ଟ ପ୍ରତିବାଦ କଲେ "କେଉଁଠାରେ ଟିକଟ ଦାଖଲ କରିବି, ସେ କଥା ମୋତେ କେହି କହି ନଥିଲେ ।" ଉଭୟ ବ୍ୟକ୍ତିଙ୍କୁ ସାନ୍ତ୍ୱନା ଦେଲି, " This is called communication gap." ।

ଅଳ୍ପ ସମୟ ବିଳମ୍ବ ହୋଇଥିଲେ ଫ୍ଲାଇଟ ପାଇ ନଥାନ୍ତି । ଶେଷ ଯାତ୍ରୀ ରୂପେ କୌଣସି ପ୍ରକାରେ ପଶିଲି । ୮ ତାରିଖ ମଧ୍ୟରାତ୍ର ପରେ ପରେ ଯେଉଁ ବିମାନ ଦିଲ୍ଲୀ ଛାଡ଼ିଲା, ତାହା ବ୍ୟାଙ୍ଗ୍‌କକ୍ ଓ ଟୋକିଓ ବାଟରେ ଆମେରିକାର ଲଙ୍ଗ୍ ବିଚ୍ ବିମାନ ଘାଟିରେ ଅକ୍ଟୋବର ୧୦ ତାରିଖ ରାତିରେ ପହଞ୍ଚିବ ବୋଲି ଟିକଟରୁ ଜାଣିଲି ।

## ପ୍ରଶାନ୍ତ ମହାସାଗର ଆକାଶରେ ଏକ ବିସ୍ମୟକର ଦୃଶ୍ୟ

ଅକ୍ଟୋବର ୯ ତାରିଖ ଅପରାହ୍ନରେ ବିମାନ ଉଡୁଥାଏ ପ୍ରଶାନ୍ତ ମହାସାଗର ଉପରେ । ଭୂଗୋଳ ମାନଚିତ୍ରରେ ସେହି ମହାସାଗର ବକ୍ଷରେ ଉତ୍ତରମେରୁ ଓ ଦକ୍ଷିଣମେରୁ ମଧ୍ୟରେ ଟଣା ଯାଇଥିବା କୌଣସି ଏକ ଦ୍ରାଘିମାରେ ଚିହ୍ନିତ ରହିଛି 'ଆନ୍ତର୍ଜାତିକ ତାରିଖ ରେଖା' ବା International Date Line । ବିମାନ

ଉଡୁଥାଏ ଅନେକ ଉର୍ଦ୍ଧ୍ୱରେ ଓ ଘଣ୍ଟାପ୍ରତି ଦେଢ଼ ହଜାର ମାଇଲ ବେଗରେ । ଝରକା ପାଖରେ ବସି ମୁଁ ଆକାଶ ଓ ସାଗରର ଦୃଶ୍ୟ ଦେଖୁଥାଏଁ ।

ଅପରାହ୍ନ ଶେଷ ହୋଇ ଆସୁଥାଏ । ପଶ୍ଚିମ ଦିଗନ୍ତରେ ସୂର୍ଯ୍ୟାସ୍ତର ଦୃଶ୍ୟ ଦିଶିଲା । କ୍ରମେ କ୍ରମେ ଆକାଶର ରଙ୍ଗ ବଦଳି ଯାଉଥାଏ । ସନ୍ଧ୍ୟା ପରେ ପରେ ଅନ୍ଧକାର ଓ ଆକାଶରେ ନକ୍ଷତ୍ରରାଜିର ଦୃଶ୍ୟ । ପ୍ରାୟ ଘଣ୍ଟାଏ ପରେ ଜଣାଗଲା ସତେଯେପରି ଆକାଶରେ ମଧ୍ୟରାତ୍ରର ଗଭୀର ଅନ୍ଧକାର । ନକ୍ଷତ୍ରମାନଙ୍କର ଜ୍ୟୋତି ମଧ୍ୟ ସେହି ଅନୁପାତରେ ବଢ଼ିଯାଇଥିଲା । ଆଉ କିଛି ସମୟ ବିତିଗଲା । ପ୍ରାୟ ଦୁଇଘଣ୍ଟା । ଅକସ୍ମାତ ଜଣାଗଲା ପୂର୍ବ ଦିଗ୍‌ବଳୟ ଆଲୋକିତ ହୋଇଆସୁଛି । ଠିକ୍ ଉଷା-ପୂର୍ବର ଆକାଶ । ଚାହୁଁ ଚାହୁଁ ଉଷା ଓ ଅଳ୍ପ ସମୟ ମଧ୍ୟରେ ସୂର୍ଯ୍ୟୋଦୟର ଦୃଶ୍ୟ । ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ ମଧ୍ୟରେ ଯେଉଁ ଦୀର୍ଘ ରାତ୍ରିର ବ୍ୟବଧାନ, ପ୍ରଶାନ୍ତ ମହାସାଗରର ଉତ୍ତରଭାଗରେ ବୋଧହୁଏ ସେପରି ବ୍ୟବଧାନ ନାହିଁ ବୋଲି ଜଣା ପଡ଼ିଲା । ସନ୍ଧ୍ୟା ଓ ପ୍ରଭାତ ମଧ୍ୟରେ ଏପରି କମ୍ ସମୟ ଦେଖି ଅସ୍ୱାଭାବିକ ବୋଧ ହେଲା । ପ୍ରକୃତିର ବିଚିତ୍ର ରୀତି । ସ୍ଥାନ ଓ ସମୟ ଅନୁସାରେ କେତେବେଳେ ଦିନ ବା କେତେବେଳେ ରାତି, ତାହା ପ୍ରକୃତି ହିଁ ନିର୍ଣ୍ଣୟ କରି ରଖିଛି । ତେଣେ, ବିମାନରେ ପୂର୍ବଦିଗକୁ ଯାତ୍ରା କଲା ମଧ୍ୟରେ ସମୟ ପଛେଇ ଯାଉଥାଏ ।

ବିମାନ ପହଞ୍ଚିଲା ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋ ଘାଟିରେ । ସେଠାରେ କେତେ ଘଣ୍ଟା ଅପେକ୍ଷା କଲା ପରେ, ଲଙ୍ଗ ବିଚ୍ ଚାଲିଲି ।

## ଗୋଟିଏ ରାତ୍ରିର ବିଚିତ୍ର ଅନୁଭୂତି

ସେ ଦିନ ଥାଏ ଅକ୍ଟୋବର ୧୦ ତାରିଖ । ସନ୍ଧ୍ୟା ୮ ଟା ବେଳେ ଲଙ୍ଗ୍ ବିଚ୍ ବିମାନ ଘାଟିରେ ପହଞ୍ଚିଲାବେଳକୁ ଆର୍‌ନୋଲ୍ଡ କାମିନ୍‌ସ୍କି ନାମକ ଅଧ୍ୟାପକ ଉପସ୍ଥିତ ଥାନ୍ତି । ସେ ମୋତେ ଗୋଟିଏ ପଞ୍ଚତାରକା ହୋଟେଲକୁ ନେଇଗଲେ । ସାଙ୍ଗରେ ରାତ୍ରିଭୋଜନ ପରେ ଆଗାମୀ ଦିନର କାର୍ଯ୍ୟସୂଚୀ ଜଣାଇଦେଲେ । ସକାଳ ୯ଟାରେ ପ୍ରଥମେ ମୋର ଟେଲିଭିଜନ୍ ଇଣ୍ଟାରଭିଉ ଓ ତା ପରେ, ସାଢ଼େ ୧୦ଟାରେ ଉଦ୍‌ଘାଟନ ଉତ୍ସବ, ଏବଂ ୧୦ଟା ୪୦ ମିନିଟରେ ମୋର ବକ୍ତୃତା । ସୁଖନିଦ୍ରା କାମନା କରି ବିଦାୟ ନେଲା ବେଳେ, ସକାଳ ସାଢ଼େ ୮ଟାରେ ଆସି ମୋତେ ନେଇଯିବେ ବୋଲି କହିଲେ ।

ଘଡ଼ି ଦେଖିଲି, ରାତି ୧୦ । ସୁକୋମଳ ଶଯ୍ୟା । ସୁସଜ୍ଜିତ କକ୍ଷ । ଲାଇଟ୍ ବନ୍ଦ କରି ଶୋଇପଡ଼ିଲି । କାନ୍ଥରେ ଓ୍ୱାଲ୍ କ୍ଲକ୍ । ଅନ୍ଧକାର ଭେଦ କରି ଦିଶୁଥାଏ ମୃଦୁ ସବୁଜ ରଙ୍ଗର ଘଣ୍ଟା ଓ ମିନିଟ କଣ୍ଟା । ନିଃଶବ୍ଦରେ

ଆଗେଇ ଚାଲିଥାଏ ସେକେଣ୍ଡ କଣ୍ଟା । ଛାତି ଉପରକୁ କମ୍ବଳ ଟାଣିଲା ବେଳେ ଭାବିନେଲି, ସକାଳ ୬ଟା ପର୍ଯ୍ୟନ୍ତ ଗାଢ଼ ନିଦରେ ଶୋଇ ରହି ଗତ ତିନି ରାତିର ଉଜାଗର ମେଣ୍ଟାଇନେବି ।

ଆଖି ବନ୍ଦ ହେଲା, କିନ୍ତୁ ନିଦ ଆସିଲା ନାହିଁ । ଏ ପାଖ ସେ ପାଖ ପାଶ ଲେଉଟାଇଲି । କାହିଁକି ନିଦ ଲାଗୁନାହିଁ ତାହା ଭାବିପାରିଲି ନାହିଁ । କମ୍ବଳ କାଢ଼ି ପକାଇଲି, ପୁଣି ଘୋଡ଼ିଲି । ତକିଆ ଉପରେ ତକିଆ ରଖି ମୁଣ୍ଡର ସ୍ଥିତି ସୁଦୃଢ଼ କଲି । ତଥାପି ନିଦ ନାହିଁ । କାନ୍ଥ ଘଡ଼ିକୁ ଚାହିଁରହିଲି । ୧୧ ଟା, ୧୨ ଟା, ୧ ଟା, ଘଣ୍ଟାପରେ ଘଣ୍ଟା ବିତି ଚାଲିଛି । ବିଛଣାରୁ ଉଠି ସୋଫାରେ ବସିଲି, ସୋଫା ଛାଡ଼ି ରୁମ୍ ଭିତରେ ଚାଲିଲି । ପୁଣି ଶୋଇଲି । କିନ୍ତୁ ସବୁ ପ୍ରୟାସ ବିଫଳ ହେଲା । ମୋ ନିଦ ପାଇଁ ଘଡ଼ିକଣ୍ଟା ଅଟକିଗଲା ନାହିଁ । ୫ ଅଙ୍କ ଉପରେ ଘଣ୍ଟାକଣ୍ଟା ଛିଡ଼ା ହେଲା ।

୬ଟା ବେଳେ ଉଠିଲି । ବେସିନ ପାଖରେ ମୁହଁ ଧୋଇଲାବେଳେ ଅନୁଭବ କଲି ଆଖିଦୁଇଟି ବନ୍ଦ ହୋଇ ଆସୁଛି । ଗାଢ଼ ନିଦ ଆସି ଯାଉଥିବାର ଅନୁଭୂତି ମଧ୍ୟରେ ଦାଢ଼ି ଖିଅର ବେଳେ ଜାଣିପାରିଲି, ଛିଡ଼ା ଥିବା ଅବସ୍ଥାରେ ସୁଦ୍ଧା ଶୋଇପଡ଼ିବି, ଅଗାଧ ନିଦରେ । ମନୋବଳ ଦୃଢ଼ କରି ନିଦ ବିରୋଧରେ ଯୁଦ୍ଧ କଲି । ସାରା ରାତି ଶତଚେଷ୍ଟା କଲେ ମଧ୍ୟ ଯେଉଁ ନିଦ୍ରା ଆଖି ସ୍ପର୍ଶ କଲା ନାହିଁ, ସେହି ନିଦ୍ରା ପୁଣି ସକାଳ ପାଖରୁ ବଳପୂର୍ବକ ଆଖି ଦୁଇଟିକୁ ବନ୍ଦ କରିଦେଉଛି ! ୭ ଟା ବେଳେ ବ୍ରେକ୍‌ଫାଷ୍ଟ ଆସିଗଲା । ନିଦର ଦୌରାତ୍ମ୍ୟରୁ ତ୍ରାହି ପାଇବା ଲାଗି ଦୁଇ କପ୍ ଗରମ କଫି ପିଇ ପକାଇଲି । ।

ସାଢ଼େ ୮ଟା ସମୟରେ ଅଧ୍ୟାପକ କାମିନସ୍କି ଆସିଗଲେ । ବିକଳ ଭାବରେ ରାତ୍ରିର ଅନିଦ୍ରା ଅନୁଭୂତି କଥା କହିଲି । ସେ ବୁଝାଇଦେଲେ ଯେ, କେହି କେହି ବିମାନ ଯାତ୍ରୀଙ୍କୁ ଏହି ଅବସ୍ଥା ଭୋଗିବାକୁ ହୁଏ । ପ୍ରଶାନ୍ତ ମହାସାଗରର ଉତ୍ତରାଞ୍ଚଳରେ ଉଡ଼ିଲାବେଳେ ଗୋଟିଏ ରାତିର ସ୍ୱାଭାବିକ ସମୟ ସଂକୁଚିତ ହେବା ଫଳରେ, ସେ ରାତିଟି ମନୁଷ୍ୟର ଗତାନୁଗତିକ ଅଭ୍ୟାସଧାରାରୁ ହଜିଯାଏ । ଅଥଚ, ତା ପରବର୍ତ୍ତୀ ସମୟକୁ ଦେହ ଦିନ ବୋଲି ଭାବିଲେ ମଧ୍ୟ, ମନ ଭାବିଥାଏ ରାତି । ଅର୍ଥାତ, ସମୟ ସହିତ ମନ ନିଜକୁ ଖାପ ଖୁଆଇ ପାରେ ନାହିଁ । "ଗତ ରାତିରେ ଆପଣ ଶୋଇଲା ସମୟରେ, ମନ ଭାବିନେଲା ଶୋଇବା ସମୟ ଆସି ନାହିଁ । ଆଜି ସକାଳବେଳକୁ ଆପଣଙ୍କ ମନ ଭାବିଛି, ଏଇଟା ହେଉଛି ଶୋଇବା ସମୟ ।" ତାଙ୍କ ବକ୍ତବ୍ୟ ବିଷୟ ଅଧାଅଧି ବୁଝିଲି । ନିରୁପାୟ ଅବସ୍ଥାରେ ସଖୀ କଣ୍ଢେଇ ଭଳି ତାଙ୍କ ସହିତ ଚାଲିଲି ।

## ଭାରତ ଉତ୍ସବରେ ଅଂଶ ଗ୍ରହଣ

ପ୍ରଥମେ ଟେଲିଭିଜନ କକ୍ଷ ଭିତରକୁ ମୋତେ ନିଆଗଲା । ଚାରି ଦିଗରେ ଉଜ୍ଜ୍ୱଳ ଆଲୋକ । ଚେୟାରରେ ବସିଥିଲା ବେଳେ ମନେ ହେଉଥାଏ, ଚିନ୍ତା ଓ କଥନଶକ୍ତି ବୋଧହୁଏ ଲୋପ ପାଇଯାଇଛି । ନିକଟରେ ବସିଥାନ୍ତି ପ୍ରଶ୍ନକର୍ତ୍ତା । ଉଭୟଙ୍କ ମୁହଁ ଦିଗକୁ ନିବଦ୍ଧ ରହିଥାଏ ଟି.ଭି.କ୍ୟାମେରା । ଫୋକାସ୍ କରାଗଲା ଲାଇଟ୍ । ଆରମ୍ଭ ହେଲା ପ୍ରଶ୍ନୋତ୍ତର ପର୍ବ ।

ପ୍ରଶ୍ନ   ଆପଣଙ୍କ ମତରେ ଅଧୁନା ଭାରତୀୟ ଜାତୀୟ କଂଗ୍ରେସର ଗୁରୁତ୍ୱ କ'ଣ ?

ଉତ୍ତର   ବିଶ୍ୱର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ସର୍ବବୃହତ ରାଜନୈତିକ ଦଳର ମର୍ଯ୍ୟାଦା ହେଉଛି ତାହାର ବିଶେଷତ୍ୱ ପୂର୍ଣ୍ଣ ଗୁରୁତ୍ୱ ।

ପ୍ରଶ୍ନ : ଜାତୀୟ କଂଗ୍ରେସର ବିଗତ ଶତବର୍ଷର ଭୂମିକାର କ'ଣ ମହତ୍ତ୍ୱ ?

ଉତ୍ତର   ଆଧୁନିକ ଜଗତର ସର୍ବଶକ୍ତିମାନ ବୈଦେଶିକ ସାମ୍ରାଜ୍ୟର ଧ୍ୱଂସସାଧନ ଓ ପାଶ୍ଚାତ୍ୟ ସାମ୍ରାଜ୍ୟବାଦର ସମାଧି ଉପରେ ନୂତନ ସାଧାରଣତନ୍ତ୍ରର ମୂଳଭିତ୍ତି ସ୍ଥାପନ ତଥା ସୁଦୃଢ଼ ଅର୍ଥନୈତିକ ସୌଧ ଗଠନ ।

ପ୍ରଶ୍ନ : କଂଗ୍ରେସ ଆନ୍ଦୋଳନ ପ୍ରତି ଯୁକ୍ତରାଷ୍ଟ୍ର ଆମେରିକାର ଅବଦାନ ସମ୍ପର୍କରେ ଆପଣଙ୍କ ମତାମତ ?

ଉତ୍ତର : ଏ ବିଷୟରେ ନୀରବତା ଅବଲମ୍ବନ ମୋ ପକ୍ଷରେ ଉଚିତ ।

ପ୍ରଶ୍ନ : ଆମେ ଆପଣଙ୍କ ସୁଚିନ୍ତିତ ଓ ସ୍ପଷ୍ଟ ଉତ୍ତର ଚାହୁଁ ।

ଉତ୍ତର : ଦୁଃଖର ସହିତ ଅପ୍ରିୟ ସତ୍ୟ କହିବାକୁ ବାଧ୍ୟ ହେଉଛି ଯେ, କଂଗ୍ରେସର ସ୍ୱଦେଶୀ ଆନ୍ଦୋଳନ ଠାରୁ ଭାରତ-ଛାଡ଼ ଆନ୍ଦୋଳନ, ଅର୍ଥାତ୍, ରାଷ୍ଟ୍ରପତି ଥିଓଡୋର ରୁଜଭେଲ୍ଟଙ୍କ ସମୟରୁ ଫ୍ରାଙ୍କଲିନ୍ ଡେଲାନୋ ରୁଜ୍ଭେଲଟଙ୍କ ପର୍ଯ୍ୟନ୍ତ, ଯୁକ୍ତରାଷ୍ଟ୍ର ସରକାର ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଓ ସଂଗ୍ରାମ ପ୍ରତି ଭ୍ରୂକ୍ଷେପ କରି ନଥିଲେ, ସାହାଯ୍ୟ ଓ ସମର୍ଥନ ତ ଦୂରର କଥା ।

ପ୍ରଶ୍ନ   ଆମର ବିଶ୍ୱାସ, ସଭାପତି ଫ୍ରାଙ୍କଲିନ ରୁଜଭେଲଟ ଭାରତ-ଛାଡ଼ ବିପ୍ଳବ ବେଳେ ମହାତ୍ମା ଗାନ୍ଧିଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରିଥିଲେ ।

ଉତ୍ତର : ଏପରି ଧାରଣା ସତ୍ୟ ନୁହେଁ । ଦ୍ୱିତୀୟ ମହାଯୁଦ୍ଧ ବେଳେ ଦକ୍ଷିଣ-ପୂର୍ବ ଏସିଆରେ ଜାପାନୀମାନଙ୍କ ବିଜୟ ଓ ଭାରତ ଅଭିମୁଖେ ଅଗ୍ରସର ଦେଖି ରୁଜଭେଲଟ ତାହାର ପ୍ରତିରୋଧ ନିମନ୍ତେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚାର୍ଚ୍ଚିଲଙ୍କୁ ଭାରତୀୟ ଜାତୀୟ କଂଗ୍ରେସ ସହିତ ସମାଧାନ ସୂତ୍ର ବାହାର ଲାଗି ପରାମର୍ଶ ଦେଇଥିଲେ । କିନ୍ତୁ

ଚାର୍ଚ୍ଚିଲଙ୍କ ଧମକ ଯୋଗୁଁ ଭୟରେ ଚୁପ୍ ରହିବାକୁ ବାଧ୍ୟ ହେଲେ । ଭାରତ ସମ୍ପର୍କରେ ଆମେରିକା ସଭାପତିଙ୍କ କୌଣସି କଥା ଶୁଣିବାକୁ ଚାର୍ଚ୍ଚିଲ ପ୍ରସ୍ତୁତ ନ ଥିଲେ ।

ପ୍ରଶ୍ନ : ଏହା କ'ଣ ସତ୍ୟ ?

ଉତ୍ତର : କଂଗ୍ରେସ ଓ ଗାନ୍ଧିଙ୍କ ବିଷୟରେ କହିବାକୁ ଆସି ମୁଁ ମିଥ୍ୟାର ଆଶ୍ରୟ ନେଇପାରିବି ନାହିଁ । ଯଦି ସନ୍ଦେହ ହେଉଛି, ଆପଣଙ୍କ 'କଂଗ୍ରେସ ଲାଇବ୍ରେରୀ'ର ପାଣ୍ଡୁଲିପି ବିଭାଗରେ ଥିବା 'ରୁଜ୍‌ଭେଲଟ-ଚାର୍ଚ୍ଚିଲ ଯୁଦ୍ଧକାଳୀନ ଗୋପନ ପତ୍ର ବିନିମୟ' ଫାଇଲଗୁଡ଼ିକ ଦେଖିପାରନ୍ତି ।

ଏତିକିରେ ଟି.ଭି. ସାକ୍ଷାତକାର ଶେଷ ହେଲା । ସେଠାରୁ ଉଦ୍ୟୋକ୍ତାମାନେ ସଭାକକ୍ଷକୁ ନେଇଗଲେ । ଆଗନ୍ତୁକ ଅତିଥିମାନଙ୍କ ମଧ୍ୟରେ ଷ୍ଟାନଲି ଓଲପାର୍ଟଙ୍କୁ ଦେଖି ଉତ୍ସାହିତ ହେଲି । ୧୦ ଟା ୩୦ ମିନିଟରେ ଉତ୍ସବ ଆରମ୍ଭ ହେଲା । ପ୍ରଦୀପ ପ୍ରଜ୍ୱଳନ, ଉଦ୍‌ଘାଟନୀ ସଂଗୀତ ଇତ୍ୟାଦିର ଆଭାସ ନଥାଏ । ଯୁକ୍ତରାଷ୍ଟ୍ର କଂଗ୍ରେସର ଜନୈକ ସଦସ୍ୟ ମଞ୍ଚ ଉପରକୁ ଯାଇ ସଂକ୍ଷେପରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଶଂସା ଗାନ କଲାବେଳେ କହିଲେ, "ଆମେରିକାର ସ୍ୱାଧୀନତା ସଂଗ୍ରାମ ଓ ଭାରତର ସ୍ୱାଧୀନତା ସଂଗ୍ରାମ ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ଉଭୟ ସ୍ଥାନର ଦେଶବାସୀ ବ୍ରିଟିଶ ବିରୋଧରେ ଲଢ଼ିଥିଲେ ଓ ଜିଣିଥିଲେ । ଉଭୟ ଦେଶର ଜାତୀୟତାବାଦୀଙ୍କ ଉଦ୍ଦେଶ୍ୟ ଥିଲା, ସାଧାରଣତନ୍ତ୍ର ଗଠନ ଓ ମାନବିକ ମୁକ୍ତି ହାସଲ । ଆଧୁନିକ ଯୁଗରେ ଯୁକ୍ତରାଷ୍ଟ୍ର ଆମେରିକା ଓ ଭାରତ ହେଉଛି ବିଶ୍ୱର ଦୁଇଗୋଟି ମହାନ ଗଣତାନ୍ତ୍ରିକ ରାଷ୍ଟ୍ର । ଭାରତୀୟ ଜାତୀୟ କଂଗ୍ରେସର ଶତବାର୍ଷିକୀ ଉପଲକ୍ଷେ, ସେହି ମହାନ ସଂଗଠନ ପ୍ରତି ଆମେରିକାବାସୀଙ୍କର ସମ୍ମାନ ପ୍ରଦର୍ଶନ ନିମନ୍ତେ ଏହି ଉତ୍ସବ ଆୟୋଜିତ ହୋଇଛି ।"

ତାଙ୍କ ଭାଷଣ ପରେ ମୁଁ ମଞ୍ଚ ଉପରକୁ ଉଠିଲି । ଆମେରିକୀୟ ଶ୍ରୋତାଙ୍କ ସହିତ ସେଠାକାର ଅନେକ ଭାରତୀୟ ମଧ୍ୟ ଉପସ୍ଥିତ ଥିଲେ । କହିବା ପାଇଁ ମୋତେ ୪୦ ମିନିଟ ସମୟ ଦିଆଯାଇଥାଏ । ଉପକ୍ରମଣିକାରେ ଗୋଟିଏ ବିଷୟ ଉଲ୍ଲେଖ କରିବା ଉଚିତ ମଣିଲି । ଯଥା–

ଉଭୟ ଦେଶର ସ୍ୱାଧୀନତା ସଂଗ୍ରାମ ମଧ୍ୟରେ କେତେକ ସାମଞ୍ଜସ୍ୟ ଥିବା ସତ୍ତ୍ୱେ, ଅନେକ ପାର୍ଥକ୍ୟ ମଧ୍ୟ ରହିଛି । ଆମେରିକାନମାନେ ମୁଖ୍ୟତଃ ଥିଲେ ଇଂରେଜମାନଙ୍କର ବଂଶଧର, ଭାରତୀୟମାନେ ଥିଲେ ସମ୍ପୂର୍ଣ୍ଣ ଏକ ପୃଥକ ଜାତି । ଆଟଲାଣ୍ଟିକ ଉପକୂଳରେ ସ୍ଥାପିତ ହୋଇଥିବା ତେରଗୋଟି ଉପନିବେଶର ସୀମିତ ସୀମା ତୁଳନାରେ ଭାରତବର୍ଷ ଥିଲା ଗୋଟିଏ ସୁବିଶାଳ ଉପମହାଦେଶ ।

ଆମେରିକୀୟମାନଙ୍କର ଜାତି, ଧର୍ମ, ଭାଷା ଓ ସଂସ୍କୃତି ପ୍ରାୟତଃ ଏକ ଥିଲାବେଳେ, ଭାରତୀୟ ଉପମହାଦେଶରେ ଥିଲା ବହୁ ପ୍ରକାର ଜାତି, ଉପଜାତି, ଧର୍ମବିଶ୍ୱାସ, ଭାଷା, ଉପଭାଷା ଓ ସଂସ୍କୃତି । ଅମେରିକୀୟ ଉପନିବେଶଗୁଡ଼ିକରେ ପ୍ରଥମରୁ ନିଜ ନିଜର ବିଧାନ ସଭା, ଗଭର୍ଣ୍ଣର, ଶାସନ ସଂସ୍ଥା ଓ ପୋଲିସ ବାହିନୀ ଥିଲାବେଳେ, ଭାରତୀୟ ଅଞ୍ଚଳଗୁଡ଼ିକରେ ଚାଲିଥିଲା ନିରଙ୍କୁଶ ବ୍ରିଟିଶ ଶାସନ । ଆମେରିକୀୟମାନେ ଧନବଳ ଓ ଅସ୍ତ୍ରବଳରେ ବଳୀୟାନ ଥିଲାବେଳେ, ଭାରତୀୟମାନେ ଥିଲେ ଶୋଷିତ, ନିଃସ୍ୱ, ନିରସ୍ତ୍ର ଓ ନିଷ୍ପେଷିତ । ଆମେରିକା ସ୍ୱାଧୀନତା ସଂଗ୍ରାମର ଆୟୁଃକାଳ ଥିଲା ମାତ୍ର ୭ ବର୍ଷ, ଭାରତୀୟ ଆନ୍ଦୋଳନର ସମୟ ସୀମା ଥିଲା ୬୨ ବର୍ଷ । ଜର୍ଜ ଉଆସିଂଟନଙ୍କ ସଦୃଶ ଯୋଦ୍ଧାଙ୍କ ନେତୃତ୍ୱରେ ଆମେରିକାନମାନେ ସଶସ୍ତ୍ର ସଂଗ୍ରାମ କରିଥିଲାବେଳେ, ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଭାରତବାସୀ କରିଥିଲେ ଅହିଂସ ସଂଗ୍ରାମ । ଆମେରିକାନମାନେ ଇଂଲଣ୍ଡ ବିରୋଧରେ ଯୁଦ୍ଧ କରୁଥିଲାବେଳେ, ଇଂରେଜମାନଙ୍କ ବିରୋଧରେ ଯୁଦ୍ଧରେ ଯୋଗ ଦେଇଥିଲେ ଫ୍ରାନ୍ସ, ହଲାଣ୍ଡ ଓ ସ୍ପେନ; ଅଥଚ ସମଗ୍ର ସଂଗ୍ରାମ କାଳରେ ଭାରତକୁ କୌଣସି ବିଦେଶୀ ରାଷ୍ଟ୍ର ସାହାଯ୍ୟ କରି ନ ଥିଲେ । ଇଂଲଣ୍ଡ ବିପକ୍ଷରେ ପ୍ରାୟ ସମଗ୍ର ଇଉରୋପ ସଂଗଠିତ ଥିଲାବେଳେ, ଭାରତର ସାହାଯ୍ୟକାରୀ କେହି ନଥିଲେ । ସର୍ବୋପରି, ଆମେରିକୀୟ ଉପନିବେଶଗୁଡ଼ିକର ବିଦ୍ରୋହକୁ 'ମାତାଙ୍କ ସହିତ ଦୁହିତାମାନଙ୍କ କଳହ' ବୋଲି ଆଖ୍ୟାତ କରାଯାଇଥିଲା ବେଳେ, ଭାରତୀୟ ବିପ୍ଳବକୁ ଆଧୁନିକ ଯୁଗର ସର୍ବବୃହତ୍ ବୈଦେଶିକ ସାମ୍ରାଜ୍ୟ ବିରୋଧରେ ଏକ ନବଉତ୍ଥିତ ପୁରାତନ ଜାତିର ମୁକ୍ତି ସଂଗ୍ରାମ ବୋଲି କୁହାଯାଇଛି ।

ପାର୍ଥକ୍ୟ ସମ୍ବନ୍ଧରେ ସୂଚନା ଦେଲା ପରେ, ଜାତୀୟ କଂଗ୍ରେସର ଜନ୍ମ, ଆଦର୍ଶ ଓ ଆନ୍ଦୋଳନ ସମ୍ପର୍କରେ କେତେକ କଥା କହିଲି । ମୋ ପରେ, ଷ୍ଟାନଲି ଓଲପାର୍ଟ୍ ତାଙ୍କର ଅଭିମତ ପ୍ରଦାନ କଲେ ।

ଉତ୍ସବ ଅର୍ଥ ଭୋଜନ । ୧ ଟା ବେଳେ ଅତିଥିମାନଙ୍କୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରାଗଲା । ଭୋଜନ କକ୍ଷରେ ପହଞ୍ଚିଲାବେଳକୁ ମୋର ବାକ୍‌ଶକ୍ତି ନ ଥାଏ । ବନ୍ଧୁ ଓଲପାର୍ଟଙ୍କୁ ବିଗତ ରାତିର ଦୁର୍ଦ୍ଦଶା କଥା କହିଲି । ଅତିଥିମାନଙ୍କ ମଧ୍ୟରେ ଥିବା ଜଣେ ବିଶିଷ୍ଟ ଡାକ୍ତରଙ୍କୁ ସେ ତତ୍‌କ୍ଷଣାତ୍ ମୋ ପାଖକୁ ଡାକିଆଣିଲେ । ଡାକ୍ତରବାବୁ ସବୁ କଥା ଶୁଣି 'ସ୍ଲିପ୍ ଡିଜ୍‌ଅର୍ଡ଼ାର' ବୋଲି ଦର୍ଶାଇ ପରାମର୍ଶ ଦେଲେ, "To your brain this midday is like midnight. Please go back to your place and sleep peacefully for six hours." ଓଲପାର୍ଟ ଆଶ୍ୱାସନା ଦେଲେ, ଆଗାମୀ କାଲି କିଛି ପ୍ରୋଗ୍ରାମ ନାହିଁ ଏବଂ

ତେଣୁ "ସକାଳ ୯ଟାକୁ ରାତି ୯ଟା ଭାବି ଶୋଇପଡ଼ିବେ । ରାତି ୯ଟାରେ ଉଠି ଖାଇବେ । ଦିନେ ଦୁଇଦିନ ପରେ ନିଦ୍ରା-ବିଶୃଙ୍ଖଳା ଆପେ ଆପେ ଚାଲିଯିବ ।"

ମଧ୍ୟାହ୍ନ ଭୋଜନ ପରେ କେତେଜଣ ଭାରତୀୟ ଶ୍ରୋତା କଥାବାର୍ତ୍ତା ପାଇଁ ମୋ ପାଖକୁ ଆସିଲେ । କିନ୍ତୁ ଅସୁସ୍ଥ ଥିବା ଜାଣି ସେଥିରୁ କ୍ଷାନ୍ତ ରହିଲେ । ଜଣେ ଶିଖ୍ ଭଦ୍ରବ୍ୟକ୍ତି ଦୁଃଖ ପ୍ରକାଶ କଲେ ଯେ ସନ୍ଧ୍ୟାବେଳେ ଭାରତୀୟ ସୀତାର-ବାଦନ କାର୍ଯ୍ୟକ୍ରମରେ ମୁଁ ଯୋଗ ଦେଇ ପାରିବି ନାହିଁ ।

## କାର୍ଯ୍ୟକ୍ରମ ଶେଷରେ ଆମେରିକାରୁ ବିଦାୟ

ପୂରା ଗୋଟିଏ ଦିନକୁ ରାତି ପରି ଉପଭୋଗ କଲାପରେ ସତକୁ ସତ ନିଦ-ବିକାର ଉଭେଇଗଲା । କିନ୍ତୁ ତା ପରେ, ସ୍ଥାନରୁ ସ୍ଥାନାନ୍ତର ଉଡ଼ିବା ଫଳରେ ଶାରୀରିକ ଅବସନ୍ନତା ଲାଗିରହିଲା । ୩ ସପ୍ତାହ ସମୟ ମଧ୍ୟରେ ଲସ୍ ଏଞ୍ଜେଲସ୍ ସାନଫ୍ରାନ୍‌ସିସକୋ, ଉଆସିଂଟନ ଓ ନିଉୟର୍କ ସହରରେ ପୂର୍ବପ୍ରସ୍ତୁତ ସୂଚୀ ଅନୁଯାୟୀ ସଭା ସମିତିରେ କଂଗ୍ରେସ ଇତିହାସ ଓ ଗାନ୍ଧି ବିପ୍ଳବର ବିଶେଷତ୍ୱ ବର୍ଣ୍ଣନା କରିବାକୁ ହେଲା । ବହିର ପୃଷ୍ଠା ବୃଦ୍ଧି ଭୟରେ ଭ୍ରମଣ ଅନୁଭୂତି ଲେଖୁନାହିଁ ।

ନଭେମ୍ବର ୧ ତାରିଖ ଦିନ ନିଉୟର୍କ ବିମାନ ଘାଟିରୁ ଦିଲ୍ଲୀ ଅଭିମୁଖେ ଫେରିଲି । ଏଥର ପ୍ରଶାନ୍ତ ମହାସାଗର ପଥରେ ଉଡ଼ିବାକୁ ହେଲା ନାହିଁ । ଆଟଲାଣ୍ଟିକ ମହାସାଗର ପରେ ଲଣ୍ଡନ ହିଥ୍ ରୋ ବିମାନ ବନ୍ଦରରେ କିଛି ସମୟ ରହିଲି । ସେଠାରୁ ଦିଲ୍ଲୀ ଯାତ୍ରା ବେଳର ଜଣେ ସହଯାତ୍ରୀଙ୍କ କଥା ଉଲ୍ଲେଖ କରୁଛି ।

## ଲଣ୍ଡନରୁ ଦିଲ୍ଲୀ

ନିଉୟର୍କରୁ ଲଣ୍ଡନ ଏୟାର ଇଣ୍ଡିଆ ବିମାନରେ ଏକ୍‌ଜିକ୍ୟୁଟିଭ୍ କ୍ଲାସରେ ଆଗ ଧାଡ଼ିରେ ବସି ଏକାକୀ ଆସିଲା ସମୟରେ ଦୁଇଜଣକିଆ ସ୍ଥାନକୁ ଗୋଟିଏ ସିଟ୍‌ରେ ପରିଣତ କରି ଆରାମରେ ଶୋଇ ବସି ଆସିଲି । ୨ତାରିଖ ସକାଳେ ଲଣ୍ଡନ ବିମାନଘାଟିରେ ଜଣେ ନୂତନ ଯାତ୍ରୀ ମୋ ପାଖ ସିଟରେ ବସିବା ଦେଖି ବିରକ୍ତ ହେଲି । ସେ ବାରମ୍ବାର ମୋର ପରିଚୟ ଜାଣିବାକୁ ପ୍ରଶ୍ନ କଲା ସତ୍ତ୍ୱେ, ମୁଁ ତାଙ୍କ ମୁହଁକୁ ଚାହିଁଲି ନାହିଁ ।

ବିମାନ ଲଣ୍ଡନ ଛାଡ଼ିଲା । ସହଯାତ୍ରୀ ଥିଲେ ଭାରତୀୟ । ଆଲପସ୍ ପର୍ବତମାଳା ଉପରେ ଉଡୁଥିବା ସମୟରେ ଜଣେ କୋ-ପାଇଲଟଙ୍କୁ ପଚାରିଲି, "ଏହି ଅଞ୍ଚଳ ଫ୍ରେଞ୍ଚ ଆଲପ୍‌ସ, ନା ସୁଇସ୍ ଆଲପସ୍, ନା ଇଟାଲୀୟ ଆଲପସ୍ ?" ସଠିକ ଉତ୍ତର ନ ପାଇ ତାଙ୍କୁ କେତେକ ଜ୍ଞାତବ୍ୟ ବିଷୟ ଜଣାଇଲି । ପାର୍ଶ୍ୱବର୍ତ୍ତୀ ଯାତ୍ରୀ

ଆଲୋଚନା ଶୁଣୁଥିଲେ । କୋ-ପାଇଲଟ ଚାଲିଗଲା ପରେ ସେ କହିଲେ, "ମୋର ନାମ ହାସିମ୍ ଅବଦୁଲ ହାଲିମ୍, ମୁଁ ପଶ୍ଚିମବଙ୍ଗ ବିଧାନ ସଭାର ବାଚସ୍ପତି । ଆପଣଙ୍କ ପରିଚୟ ଦେଉନାହାନ୍ତି କାହିଁକି ?"

ନମସ୍କାର ସହ ନିଜର ପରିଚୟ ଦେଇ ମୁଁ କହିଲି, "ହାଲିମ୍ ସାହେବ, ମନୁଷ୍ୟ ସ୍ୱଭାବତଃ ସ୍ୱାର୍ଥପର । ଆପଣ ମୋ ପାଖ ସିଟ୍ ଦଖଲ କରିବା ଯୋଗୁଁ ଶୋଇପାରିଛି ନାହିଁ ଜାଣି ଆପଣଙ୍କ ପ୍ରତି ବିରକ୍ତି ଆସିଯାଇଥିଲା । ଏବେ ଅବଶ୍ୟ ପାଖରେ ଜଣେ ବରିଷ୍ଠ ମାର୍କ୍ସବାଦୀ ନେତାଙ୍କ ନିକଟରୁ କେତେକ କଥା ଶୁଣିବି ଭାବି ଆନନ୍ଦ ଲାଭ କରୁଛି ।"

ଆରମ୍ଭ ହେଲା କଥାବାର୍ତ୍ତା । ହାଲିମ ପଚାରିଲେ, "ପଶ୍ଚିମବଙ୍ଗର ମାର୍କ୍ସବାଦୀ ସରକାରଙ୍କ ସମ୍ପର୍କରେ ଆପଣଙ୍କ ଧାରଣା କ'ଣ ?" ଉତ୍ତର ଦେଲି, "ଗୋଟିଏ ବିଷୟରେ ପ୍ରଶଂସା କରିବି, ଆପଣଙ୍କ ମନ୍ତ୍ରୀମାନେ ବୋଧହୁଏ ନିଜ ନିଜର କୋଠାବାଡ଼ି ବା ପ୍ରାସାଦ ତିଆରି କରିପାରି ନାହାନ୍ତି ।" ଏହି ପ୍ରସଙ୍ଗରେ ସେ ତାଙ୍କ ଦୁଃଖ ବର୍ଣ୍ଣନା କଲେ । ସାରାଂଶ ଥିଲା, ସେ ଜଣେ ଧନୀ ଓ ପୁରାତନ ମୁସଲମାନ ପରିବାରର ସନ୍ତାନ । ବାଚସ୍ପତି ହେବା ପୂର୍ବରୁ ବାରିଷ୍ଟର ଥିଲେ । ପ୍ରଚୁର ଆୟ ହେଉଥାଏ । ନିଜସ୍ୱ ପାରିବାରିକ ସମ୍ପତ୍ତି ଓ ଅର୍ଥ କିଛି କମ୍ ନୁହେଁ । ତଥାପି ଭାଙ୍ଗିପଡୁଥିବା ପୈତୃକ କୋଠାର ମରାମତି ପାଇଁ ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁ ଅନୁମତି ଦେଲେ ନାହିଁ, କାରଣ ଲୋକେ କହିବେ ଦୁର୍ନୀତି ଅର୍ଥରେ ବାଚସ୍ପତିଙ୍କ ଘର ତିଆରି ଚାଲିଛି ।

ଭାରତୀୟ ରାଜନୀତି ବିଷୟରେ ଆଲୋଚନାର ଆଦି ଅନ୍ତ ନ ଥାଏ । ମଧ୍ୟରାତ୍ରିରେ ଦିଲ୍ଲୀ ବିମାନବନ୍ଦରରେ ପହଞ୍ଚିଲୁଁ । ହାଲିମ୍ ସାହେବଙ୍କୁ ନେବା ଲାଗି ପଦସ୍ଥ ଅଫସାରମାନେ ଆସିଥିଲେ । ତାଙ୍କ ସହିତ ଥିବା ଯୋଗୁଁ ସଙ୍ଗେ ସଙ୍ଗେ ବିମାନ ଘାଟିରୁ ମୁକ୍ତି ମିଳିଲା । ବାହାରକୁ ଆସିଲାକ୍ଷଣି ହାଲିମ୍ କହିଲେ, "ଭୁବନେଶ୍ୱର ଫ୍ଲାଇଟ୍ ସକାଳ ୧୦ ଟାରେ । ମୋ ପାଇଁ ଆପଣ ଦିନବେଳେ ଶୋଇପାରିଲେ ନାହିଁ । ପ୍ରତିଦାନରେ, ରାତ୍ରିର ସୁଖନିଦ୍ରାର ଦାୟିତ୍ୱ ମୁଁ ନେଉଛି ।" ବାଧ୍ୟକରି ପଶ୍ଚିମବଙ୍ଗ ସରକାରଙ୍କ ଦିଲ୍ଲୀସ୍ଥିତ ଏକ ସ୍ୱତନ୍ତ୍ର ଅତିଥିଭବନକୁ ସାଙ୍ଗରେ ନେଇଗଲେ ।

ସେଠାରେ ବାଚସ୍ପତିଙ୍କ ପାଇଁ ରୁମ୍ ରିଜାର୍ଭ ଥାଏ । ଅନ୍ୟ ରୁମ୍‌ଗୁଡ଼ିକରେ ବିଶିଷ୍ଟ ବ୍ୟକ୍ତିମାନେ ଆଗରୁ ରହିଥାନ୍ତି । ହାଲିମ ସାହେବ ତାଙ୍କ କୋଠରିକୁ ମୋତେ ଟାଣିନେଇ ଗଲେ । ତାଙ୍କ ପାଇଁ ରହିଥିବା ଖାଦ୍ୟ ମୋତେ ଜବରଦସ୍ତ ଖୁଆଇଲେ । ନିଜ ବିଛଣାରେ ମୋତେ ଶୋଇବାକୁ ବାଧ୍ୟ କରି ସେ ଡ୍ରଇଂରୁମ୍

ସୋଫାରେ ଶୋଇପଡ଼ିଲେ । ଜଣେ ରାଜନୈତିକ ବ୍ୟକ୍ତିଙ୍କ ପାଖରୁ ସେପରି ଆତ୍ମୀୟତା ଆଶା କରିପାରୁ ନ ଥାଏଁ । ନିଜ ହାତରେ ମୋତେ କମ୍ବଳ ଘୋଡ଼ାଇଲା ବେଳେ ତାଙ୍କର ବାକ୍ୟଟି ଥିଲା, ''ଆପନି ଆମାର ଅତିଥି । ଆପନାର ସେବା କରା ଆମାର କର୍ତ୍ତବ୍ୟ ।''

## ଜଣେ ରାଜନେତାଙ୍କ ଦର୍ଶନ ଲାଭ

ସକାଳ ୬ଟା ବେଳକୁ ମୋ ପାଇଁ ଗରମ ପାଣି ଓ ଜଳଖିଆ ପ୍ରସ୍ତୁତ ଥିବା ଦେଖିଲି । ୭ଟା ବେଳେ ହାଲିମ୍ କଲିକତା ଫ୍ଲାଇଟ୍ ପାଇଁ ବାହାରିଲେ ଓ ମୋତେ ବିମାନଘାଟିକୁ ନେଇଗଲେ । ସେଠାରେ ଭି.ଆଇ.ପି. ବିଶ୍ରାମ କକ୍ଷରେ ମୋର ବସିବା ସୁବିଧା କରିଦେଇ ସେ ବିଦାୟ ନେଲେ ।

ବିଶ୍ରାମକକ୍ଷ ଭିତରେ ଏକାକୀ ବସିଥାନ୍ତି ଜଣେ ଶୋଭମାନ ବ୍ୟକ୍ତି । ତାଙ୍କ ଦାଢ଼ିବିମଣ୍ଡିତ ମୁଖମଣ୍ଡଳକୁ ଚାହିଁ ଦେଇ ଚିହ୍ନିପାରିଲି, ସ୍ୱୟଂ ଚନ୍ଦ୍ରଶେଖର । ସଭକ୍ତି ପ୍ରଣାମ ସହ ତାଙ୍କର ଦିବ୍ୟମୂର୍ତ୍ତି, ଖଦଡ଼ ପୋଷାକ ଓ ଚଟି ଜୋତା ଇତ୍ୟାଦି ଚାହିଁ ଦେଖିଲି । ଆହା, କେଡ଼େ ମହାନ ବ୍ୟକ୍ତି, ଆଦର୍ଶବାଦୀ ବିଜ୍ଞ ପୁରୁଷ ! ନେହରୁ ଯୁଗର ନିର୍ଭୀକ 'ତରୁଣ ତୁର୍କ', ବିନୋବାଙ୍କ ସଦୃଶ ଭାରତବ୍ୟାପୀ ପଦଯାତ୍ରୀ, ସଚ୍ଚୋଟ ସାମ୍ୟବାଦୀ ଓ ଦେଶପ୍ରାଣ ନେତା ! ମନକୁ ଆସିଲା, ଏହି ପ୍ରକାର ମହାନ ଜନନାୟକ ପ୍ରଧାନମନ୍ତ୍ରୀ ପଦ ଲାଗି ଯୋଗ୍ୟତମ ବ୍ୟକ୍ତି ! ବିଶ୍ରାମ କକ୍ଷରୁ ଚନ୍ଦ୍ରଶେଖର ବାହାରି ଗଲାବେଳେ ତାଙ୍କୁ ଯେବେ ପ୍ରଣାମ କଲି, ଭକ୍ତିର ପାତ୍ରଟି ଉଚ୍ଛୁଳି ପଡୁଥାଏ ।

ଭୁବନେଶ୍ୱରରେ ପହଞ୍ଚିବାର କିଛି ଦିନ ପରେ ଦିନେ ମୋର କଲେଜ ଦିନର ସାଥୀ ଓ ବିଶିଷ୍ଟ ସାମ୍ୟବାଦୀ ନେତା ରବି ରାୟ ମୋ ଘରକୁ ଆସିଲେ । କଥା ପ୍ରସଙ୍ଗରେ ମୁଁ ଚନ୍ଦ୍ରଶେଖରଙ୍କ ଭୂୟସୀ ପ୍ରଶଂସା କରିବା ଶୁଣି ସେ ଚମକିଉଠି କହିଲେ, ''ଆପଣ କ'ଣ ପାଗଳ ହେଲେ ? ଚନ୍ଦ୍ରଶେଖର ପରା ବିହାର ଓ ଉତ୍ତରପ୍ରଦେଶର 'ମାଫିଆ' ଗୋଷ୍ଠୀର ସର୍ଦ୍ଦାର ! ବିହାରର ଖଣିମାଲିକମାନଙ୍କ ପାଖରୁ ଲକ୍ଷ ଲକ୍ଷ ଟଙ୍କା ଚାନ୍ଦା ନିଅନ୍ତି ! ତାଙ୍କ ପରି ଲୋକକୁ ଆପଣ ଦେବୋପମ ବୋଲି କହୁଛନ୍ତି ?''

ରବିବାବୁଙ୍କ ମୁହଁରୁ ଏପରି ବାକ୍ୟ ଶୁଣି ମୁଁ ତଟସ୍ଥ ହେଲି । ତାଙ୍କ ପ୍ରତି ବିଦ୍ରୂପ କରି କହିଲି, ''ଆପଣ ପରା ତାଙ୍କର ଚେଲା ? ସେହି ମହାନ୍ ସାମ୍ୟବାଦୀଙ୍କ ପଟ୍ଟଶିଷ୍ୟ ଓ ଘନିଷ୍ଠ ସହକର୍ମୀ !''

ନିଃସଙ୍କୋଚ ଚିତ୍ତରେ ରବି ରାୟ ଉତ୍ତର ଦେଲେ, ‘‘ରାଜନୀତିରେ ତାହା ଚଳେ । ନେତାମାନଙ୍କ ଭିତିରି କଥା ଜାଣି ସୁଦ୍ଧା ସେମାନଙ୍କୁ ଗୁରୁ ବୋଲି ମାନି ନିଆଯାଏ !’’

କିଛି ଦିନ ପରେ ଦିଲ୍ଲୀ ଅବସ୍ଥାନ କାଳରେ କେତେକ ବୁଦ୍ଧିଜୀବୀଙ୍କ ନିକଟରୁ ଚନ୍ଦ୍ରଶେଖରଙ୍କ ବିଷୟରେ ଅନେକ କଥା ଶୁଣିଲି, ତାଙ୍କର ତଥାକଥିତ ଆଶ୍ରମ, ବିଳାସ ବ୍ୟସନ, ସାଙ୍ଗପାଙ୍ଗ, ଦଳ ବଳ ଓ ଅର୍ଥ ପିପାସା ଇତ୍ୟାଦିର ବିଶଦ ବିବରଣୀ । ଭାରତୀୟ ରାଜନୀତିରେ କିଏ ଭଲ ଓ କିଏ ମନ୍ଦ, ଏ ରହସ୍ୟ ବୋଧହୁଏ ସ୍ୱୟଂ ଭଗବାନ ମଧ୍ୟ ଜାଣିପାରନ୍ତି ନାହିଁ, ମନୁଷ୍ୟ ତ ଛାର !

## ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ

୧୯୮୫ ନଭେମ୍ବର ପ୍ରଥମ ସପ୍ତାହରେ ଆମେରିକା ଗସ୍ତରୁ ଫେରିଲି । ତାହାର କିଛି ଦିନ ପରେ, ଇଂଲଣ୍ଡର ଅକ୍ସ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ଆସିଲା, ନଭେମ୍ବର ଶେଷ ସପ୍ତାହରେ ହେବାକୁ ଥିବା ଜାତୀୟ କଂଗ୍ରେସ ଶୀର୍ଷକ ପାଠଚକ୍ରରେ ଅଂଶ ଗ୍ରହଣ ନିମନ୍ତେ । ନଭେମ୍ବର ୨୦ ତାରିଖ ଏୟାର ଇଣ୍ଡିଆରେ ଦିଲ୍ଲୀରୁ ଲଣ୍ଡନ ଯାତ୍ରା ଲାଗି ଟିକଟ କିଣିଲି ।

ଯିବାର ୩ ଦିନ ଆଗରୁ କେବେ ଭୋଗି ନଥିବା ପୀଡ଼ାରେ ଆକ୍ରାନ୍ତ ହେଲି, ଦନ୍ତଶୂଳ । କୁହାଯାଏ, ଶତ୍ରୁର ଦାନ୍ତବିନ୍ଧା ହେଲେ ମଧ୍ୟ ତାଙ୍କୁ ଦୟା କରିବା ଉଚିତ । କ୍ୱାଇଁ ଡାକ୍ତର ବିଜନକୁମାର ପରାମର୍ଶ ଦେଲେ, ଏପରି ଅବସ୍ଥାରେ ଜେଟ୍ ବିମାନରେ ଉଡ଼ିବା ଠିକ୍ ହେବ ନାହିଁ । ନଭେମ୍ବର ଶୀତରେ ବିଲାତରେ ପହଞ୍ଚିଲା ପରେ ଯନ୍ତ୍ରଣା ଅସମ୍ଭବ ଭାବେ ବଢ଼ିଯିବାର ସମ୍ଭାବନା ଅଛି । ଭାବିଲି, ଅକ୍ସ୍‌ଫୋର୍ଡ଼ ପାଠଚକ୍ର ଓ ଦନ୍ତଶୂଳ, ଉଭୟ ଗୁରୁଭାର ଏକା ସମୟରେ ବହନ କରିବା ସମ୍ଭବ ନୁହେଁ ।

ଯାତ୍ରାର ଦିନକ ଆଗରୁ ପେନାଲ୍‌ଟି ଦେଇ ଟିକଟ କ୍ୟାନସେଲ କଲି । ସେହି ଦିନ ସକାଳେ ବନ୍ଧୁ ପୀତାମ୍ବର ମିଶ୍ର ସାକ୍ଷାତ ପାଇଁ ଆସିଥାନ୍ତି । ମୋର କଷ୍ଟ ଦେଖି କଟକ ଫେରିଯାଇ ସେଠାକାର ଜଣେ କବିରାଜଙ୍କ ପାଖରୁ ଦୁଇଟି ପୁଡ଼ିଆ ଆଣି ପଠାଇଦେଲେ । ରାତିରେ ଗୋଟିଏ ପୁଡ଼ିଆ ଗରମ ପାଣିରେ ଖାଇଲି ଓ ସକାଳେ ଆଉ ଗୋଟିଏ । ଆଶ୍ଚର୍ଯ୍ୟର ବିଷୟ, ଦିନକ ମଧ୍ୟରେ ଆରୋଗ୍ୟ ଲାଭ କଲି ଓ ପୀତାମ୍ବରବାବୁଙ୍କୁ କହିଲି, ‘‘ଯଦି ଏପରି ବ୍ୟଥାନିବାରିଣୀ ମହୌଷଧି ଦୁଇ ଦିନ ଆଗରୁ ଦେଇଥାନ୍ତେ, ‘ମୋର ଆକ୍ସଫୋର୍ଡ଼ ଯାତ୍ରା ରଦ୍ଦ ହୋଇ ନଥାନ୍ତା ।’’

## କଂଗ୍ରେସ ଶତବାର୍ଷିକୀ ଉତ୍ସବ ପ୍ରସଙ୍ଗ

୧୯୮୫ ଡିସେମ୍ବର ୨୮–୨୯ ତାରିଖରେ ବୋମ୍ବେ ମହାନଗରୀରେ ଭାରତୀୟ ଜାତୀୟ କଂଗ୍ରେସର ଶତବାର୍ଷିକ ଅଧିବେଶନ ମହାସମାରୋହରେ ଅନୁଷ୍ଠିତ ହେବ ବୋଲି ପ୍ରଚାର ହେଉଥାଏ । ପ୍ରଥମ ଦିନ, କଂଗ୍ରେସ ଇତିହାସର ପ୍ରଥମ ୩ ଖଣ୍ଡ ଗ୍ରନ୍ଥ ପ୍ରଧାନମନ୍ତ୍ରୀ ତଥା କଂଗ୍ରେସ ସଭାପତି ରାଜୀବ ଗାନ୍ଧି ଉନ୍ମୋଚନ କରିବେ ବୋଲି ସଂବାଦପତ୍ରରୁ ପଢ଼ିଲି । ଦୁଃଖ ହେଲା, ତୃତୀୟ ଗ୍ରନ୍ଥର ପ୍ରଣେତା ଭାବରେ ସେଠାରେ ଉପସ୍ଥିତ ରହିବାକୁ ନିମନ୍ତ୍ରଣ ପାଇଲି ନାହିଁ ।

କିନ୍ତୁ, ଟେଲିଗ୍ରାମ ଯୋଗେ ଶେଷରେ ୨୭ ତାରିଖ ସନ୍ଧ୍ୟାବେଳେ ବାର୍ତ୍ତା ପାଇଲି, "୨୮ ତାରିଖ ଅଧିବେଶନରେ କଂଗ୍ରେସ ଇତିହାସ ଉନ୍ମୋଚିତ ହେବ । ଯୋଗଦାନ ନିମନ୍ତେ ନମନ୍ତ୍ରଣ । ପ୍ରବେଶ ପାଇଁ ଅନୁମତି ପତ୍ର ବୋମ୍ବେ ତାଜ୍ ହୋଟେଲରେ ଓଡ଼ିଶା ଗଭର୍ଣ୍ଣରଙ୍କ ଠାରୁ ମିଳିବ । ବୋମ୍ବେ ଯିବା ଆସିବା ଖର୍ଚ୍ଚ ଦିଆଯିବ ।" ଟେଲିଗ୍ରାମ ପାଇ ସେତେବେଳେ ବୋମ୍ବେ ଯିବା ଅସମ୍ଭବ ଥିଲା । କେବଳ ଆରବ୍ୟ ଉପନ୍ୟାସର କୁହୁକ ଶତରଞ୍ଜି କିମ୍ବା ମହାକାୟ ଦୈତ୍ୟ ବିନା ଆଉ କୌଣସି ବ୍ୟବସ୍ଥା ମୋତେ ଉଡ଼ାଇ ନେଇ ରାତ୍ରିକାଳରେ ବୋମ୍ବେ ତାଜ ହୋଟେଲ ଆଗରେ ଛାଡ଼ିପାରି ନ ଥାନ୍ତା । ଉଦ୍ୟୋକ୍ତାମାନଙ୍କର କାର୍ଯ୍ୟଦକ୍ଷତାର ଏହା ଥିଲା ଏକ ନିଦର୍ଶନ, ଅଥବା ପ୍ରତାରଣାର ପ୍ରମାଣ !

ପରେ ସଂବାଦପତ୍ରଗୁଡ଼ିକରୁ ବୋମ୍ବେ ଅଧିବେଶନର ବିଶଦ ବିବରଣୀ ପଢ଼ିଲା ପରେ, ଯାଇ ନ ଥିବା ଯୋଗୁଁ ନିଜ ଭାଗ୍ୟକୁ ପ୍ରଶଂସା କଲି । ଗୋଟିଏ ରିପୋର୍ଟ ଥାଏ, ଅଗାଧ ଜନସମୁଦ୍ର ଓ ସ୍ୱେଚ୍ଛାସେବୀମାନଙ୍କର ଚକ୍ରବ୍ୟୂହ ଭେଦ କରି ପ୍ରବେଶ ଦ୍ୱାର ପଥରେ ହାତରେ ନିମନ୍ତ୍ରଣ କାର୍ଡ଼ ଧରି ଜଣେ ବର୍ଷୀୟାନ ନେତା ପଶିଯାଉଥିଲା ବେଳେ କର୍ମୀମାନେ ତାଙ୍କୁ ଭିତରୁ ଟାଣିଆଣି ବାହାରକୁ ପେଲିଦେଲେ । ସାଙ୍ଗରେ ଯାଇଥିବା ଅନ୍ୟ ଜଣେ କଂଗ୍ରେସନେତା ଅନୁନୟ ଜଣାଇ କହିଲେ, "ସେ ପରା ଜାତୀୟ କଂଗ୍ରେସର ଜଣେ ଭୂତପୂର୍ବ ସଭାପତି, ନିଜଲିଙ୍ଗପ୍ପା !" ମୁଖ୍ୟ ଦ୍ୱାରପାଳ ଗର୍ଜନ କରି ଉଠିଲେ "So What ?" ।

ଏହି 'ସୁତରାଂ କ'ଣ' ସଂସ୍କୃତି ଯୋଗୁଁ ଆମପରି ଜଣେ ନଗଣ୍ୟ ଇତିହାସଲେଖକଙ୍କୁ ବା ପଚାରିଥାଆନ୍ତା କିଏ ? କ୍ଷମତାସୀନ ମନ୍ତ୍ରୀ ଓ ମହାମନ୍ତ୍ରୀମାନଙ୍କ ଲାଗି ସ୍ୱତନ୍ତ୍ର ପ୍ରବେଶପଥ ଥିଲାବେଳେ, ଅନ୍ୟ ଅନେକ ନିମନ୍ତ୍ରିତ ବ୍ୟକ୍ତି ଠେଲାପେଲା ମଧ୍ୟରେ ମଣ୍ଡପ ଭିତରକୁ ପ୍ରବେଶ କରି ନ ପାରି ଅପଦସ୍ଥ ହେଲେ ବୋଲି ପ୍ରତ୍ୟକ୍ଷ୍ୟଦର୍ଶୀମାନଙ୍କ ଠାରୁ ଶୁଣିଲି ।

ବିସ୍ମିତ ହେଲି, ପ୍ରଣୀତ ପୁସ୍ତକଟି ଦେଖିଲା ପରେ । ବହିର ପ୍ରଚ୍ଛଦପଟ ବା ପ୍ରଥମ ପୃଷ୍ଠାରେ ମୋର ନାମ ପାଇଲି ନାହିଁ । ମୁଖବନ୍ଧ ଓ ଉପକ୍ରମଣିକା ଲେଉଟାଇଲା ପରେ ଅନେକ ପଛରେ ଛୋଟ ଅକ୍ଷରରେ ଛପା ଥିବା ନାମଟିକୁ ଆବିଷ୍କାର କଲାବେଳେ ଅନୁମାନ ହେଲା, ଏହା ମଧ୍ୟ କଂଗ୍ରେସ ସଂସ୍କୃତିର ଅଂଶବିଶେଷ । ପରେ ଶୁଣିଲି, ଜଣେ ସଂକଳକ ମହୋଦୟ ଅତିଭକ୍ତିର ପରିଚୟ ଦେଇ କୌଣସି ଏକ ନେତାଙ୍କୁ କହିଥିଲେ ଯେ, କଂଗ୍ରେସ ପାର୍ଟିର ପ୍ରକାଶିତ ପୁସ୍ତକରେ ପ୍ରଣେତାମାନଙ୍କ ପ୍ରତି ଗୁରୁତ୍ୱ ଦେବା ଉଚିତ ନୁହେଁ । ତାଙ୍କ କଥା ରହିଲା, ଏବଂ ଅନୁରକ୍ତିର ପୁରସ୍କାର ସ୍ୱରୂପ ସେ ପଦୋନ୍ନତି ଭୋଗକଲେ ।

ପରବର୍ତ୍ତୀ ଅଧ୍ୟାୟକୁ ଯିବା ପୂର୍ବରୁ ଏଠାରେ ଅନ୍ୟ ଗୋଟିଏ ଭ୍ରମଣ ବିଷୟ ଲେଖୁନାହିଁ । ୧୯୮୭ରେ ଦୁଇମାସ ପାଇଁ ଇଂଲଣ୍ଡ ଯାଇଥିଲା ସମୟରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଭେଟିଥିଲି ଓ କେତେକ ନୂଆ ସ୍ଥାନ ଦେଖିଥିଲି ।

## ବାଲିଆପାଳ ଗଣ ଆନ୍ଦୋଳନ

୧୯୮୬ ପରେ ପରେ ବାଲିଆପାଳ-ଭୋଗରାଇ ଅଞ୍ଚଳରେ ପ୍ରସ୍ତାବିତ କ୍ଷେପଣାସ୍ତ୍ର ପରୀକ୍ଷା ଘାଟି ବିରୋଧୀ ଆନ୍ଦୋଳନ ତୀବ୍ର ରୂପ ଧାରଣ କଲା । ଏକ ଶସ୍ୟଶ୍ୟାମଳା ସମୃଦ୍ଧ ଇଲାକାର ଲକ୍ଷାଧିକ ଅଧିବାସୀଙ୍କ ଭବିଷ୍ୟତ ପ୍ରତି ଭ୍ରୂକ୍ଷେପ ନ କରି ଭାରତ ସରକାର ସେଠାରେ କ୍ଷେପଣାସ୍ତ୍ର ସଂପରୀକ୍ଷା କେନ୍ଦ୍ର ସ୍ଥାପନ ଲାଗି ନିଷ୍ପତ୍ତି ନେଲେ । ଅପର ପକ୍ଷରେ ଜନସାଧାରଣ ତାହାର ପ୍ରତିରୋଧ ନିମନ୍ତେ ସଂକଳ୍ପବଦ୍ଧ ହେଲେ । ସ୍ଥାନୀୟ ଲୋକ ଭାବେ ମୋତେ ମଧ୍ୟ ଆନ୍ଦୋଳନରେ ସାମିଲ ହେବାକୁ ପଡ଼ିଲା । ସେଠାରେ ଘାଟି ସ୍ଥାପନର କୁପରିଣାମ ବର୍ଣ୍ଣନା କରି ପ୍ରବନ୍ଧ ଲେଖିଲି । ସଭା ସମିତିରେ ଭାଷଣ ଦେବାକୁ ହେଲା ।

ଦିନେ ଚନ୍ଦନେଶ୍ୱର ଠାରେ ଏକ ବିଶାଳ ଜନସମାବେଶରେ ଜନତାଦଳର ତୁଙ୍ଗନେତା ମଧୁ ଦଣ୍ଡବତେ ଭାବପ୍ରବଣ ଅବସ୍ଥାରେ ଘୋଷଣା କଲେ, "ସାମରିକ ବାହିନୀ ବାଲିଆପାଳ ଅଞ୍ଚଳରେ ପ୍ରବେଶ କଲେ, ବନ୍ଧୁକ ଆଗରେ ପ୍ରଥମେ ଛିଡ଼ା ହେବି ଓ ଜୀବନ ଦେବି ।" ହର୍ଷଧ୍ୱନି ଓ କରତାଳିରେ ସଭାସ୍ଥଳ କମ୍ପମାନ ହେଲା । ରାଜନେତାମାନଙ୍କର ସେପରି ଉତ୍ତେଜନାମୂଳକ ଉଦ୍‌ବୋଧନ ମୋତେ ଭଲ ଲାଗିଲା ନାହିଁ । ଦଣ୍ଡବତେଙ୍କୁ ଲକ୍ଷ୍ୟ କରି ଭାଷଣ ପ୍ରସଙ୍ଗରେ କହିଲି, "ନିରୀହ ଜନସାଧାରଣଙ୍କୁ ଉତ୍ତେଜିତ କରିବା ଅପେକ୍ଷା ଶାନ୍ତିପୂର୍ଣ୍ଣ ଓ ଅହିଂସ ଉପାୟରେ ଆନ୍ଦୋଳନର କାର୍ଯ୍ୟକ୍ରମ ନିର୍ଣ୍ଣୟ କରିବା ଉଚିତ । ଦଣ୍ଡବତେ ମହୋଦୟ ଦିଲ୍ଲୀରେ ରହିବେ । ସୈନ୍ୟ ବା ପୋଲିସ ଫୋର୍ସ ତାଙ୍କୁ ସେଠାରୁ ଡାକି ଆଣି

ବନ୍ଧୁକ ଆଗରେ ଛିଡ଼ା କରାଇ ଗୁଳି କରିବେ ନାହିଁ । ତେଣୁ, ତାଙ୍କୁ ମୋର ଅନୁରୋଧ, ସେ ପାର୍ଲିଆମେଣ୍ଟ କକ୍ଷରେ ବିପକ୍ଷ ଦଳର ଶକ୍ତି ପ୍ରଦର୍ଶନ ପୂର୍ବକ ସରକାରଙ୍କୁ ନିଷ୍ପତ୍ତି ପ୍ରତ୍ୟାହାର ଲାଗି ବାଧ୍ୟ ବା ପ୍ରଭାବିତ କରନ୍ତୁ ।''

ଦିଲ୍ଲୀଠାରେ କେତେକ ପାର୍ଲିଆମେଣ୍ଟ ସଦସ୍ୟଙ୍କ ଆଗରେ ତଥ୍ୟଭିତ୍ତିକ ମତାମତ ଉପସ୍ଥାପନ କଲି । ତେଣେ, ବାଲିଆପାଳର ଆବାଳବୃଦ୍ଧବନିତା ଯେଉଁ ପ୍ରକାର ଆନ୍ଦୋଳନ ଚଳାଇଲେ, ସ୍ୱାଧୀନତା ପରେ ସାରା ଦେଶରେ ସେପରି ଶାନ୍ତିପୂର୍ଣ୍ଣ ଗଣବିକ୍ଷୋଭର ପଟାନ୍ତର ନଥିଲା । ଜନଶକ୍ତି ସମ୍ମୁଖରେ ସରକାର ମଧ୍ୟ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ । ସମୟ ଗଡ଼ି ଚାଲିଲା । ବାଲେଶ୍ୱର ସମୁଦ୍ରତଟସ୍ଥ ଚାନ୍ଦିପୁର ଠାରେ ବୈଜ୍ଞାନିକମାନେ କ୍ଷେପଣାସ୍ତ୍ର ଉତ୍‌କ୍ଷେପଣ ଲାଗି ସମର୍ଥ ହେଲେ ।

ବାଲିଆପାଳ ଆନ୍ଦୋଳନ କଥା ଭାବିଲାବେଳେ ଜଣେ ଅସାଧାରଣ ବ୍ୟକ୍ତିଙ୍କୁ ସ୍ମରଣ କରିଥାଏଁ, ଗଦାଧର ଗିରି । ଏ ଯୁଗର ରାଜନୀତିରେ ତାଙ୍କ ପରି ନିଃସ୍ୱାର୍ଥପର, ନିଷ୍ଠାପରାୟଣ ଓ ଜନପ୍ରିୟ ବ୍ୟକ୍ତିଙ୍କୁ କ୍ୱଚିତ୍ ଦେଖିଛି । ଅର୍ଥଲୋଭ ବା ଦୁର୍ନୀତିର ଛାୟା ସୁଦ୍ଧା ତାଙ୍କୁ ସ୍ପର୍ଶ କରି ନ ଥିଲା । ଚିରଦରିଦ୍ର ଜନନେତା । ଦୁଆରେ ବସିବା ଲାଗି ତାଙ୍କ ଘରେ ଚେୟାରଟିଏ ନ ଥାଏ । ଅଥଚ ସେ ଥାନ୍ତି ବିଧାନସଭାର ସଦସ୍ୟ ।

ମୁଁ ଦିଲ୍ଲୀରେ ଥାଏଁ । ଶୁଣିଲି, ଗଦାଧର ବାବୁଙ୍କୁ ଅଲ୍ ଇଣ୍ଡିଆ ଇନଷ୍ଟିଚ୍ୟୁଟ୍‌ରେ ଭର୍ତ୍ତି କରାଯାଇଛି । ଦେଖିବାକୁ ଗଲି । ବେଶ୍ ସତେଜ ଥାନ୍ତି । କହିଲେ, ''ଆଗାମୀ କାଲି ଅପାରେସନ ହେବ । ଯେତେ ଶୀଘ୍ର ସମ୍ଭବ ଫେରିବି । ବାଲିଆପାଳ ଛାଡ଼ି ଦୂରରେ ରହିପାରିବି ନାହିଁ ।'' ଅକ୍ଲାନ୍ତ ପରିଶ୍ରମ ଓ ଦାରୁଣ ଦୁଶ୍ଚିନ୍ତା ଯୋଗୁଁ ଉଦରପୀଡ଼ା ବଢ଼ିଯାଇଛି ବୋଲି କହିଲେ । ଆରୋଗ୍ୟ କାମନା କରି ଫେରିଆସିଲି । ମଧ୍ୟବୟସ୍କ ବ୍ୟକ୍ତି ।

ଅପାରେସନ ପରେ ପରେ ହିଁ ସେହିଠାରେ ତାଙ୍କର ମୃତ୍ୟୁ ଘଟିଲା । ମର ଦେହକୁ ବାଲିଆପାଳ ଅଣାଗଲା ବେଳେ ସମଗ୍ର ଅଞ୍ଚଳରେ କ୍ରନ୍ଦନଧ୍ୱନି ଶୁଭିଥିଲା । ଅଞ୍ଚଳବାସୀ ସାମୂହିକ ଭାବେ ପାଳନ କଲେ ତାଙ୍କ ଅନ୍ତ୍ୟେଷ୍ଟି ।

# ହାଙ୍ଗେରୀ ଯାତ୍ରା, ୧୯୮୮




## ଏକ ପୂର୍ବ-ଇଉରୋପୀୟ ଦେଶର ଅନୁଭୂତି

### ଭାରତ ହାଙ୍ଗେରୀ ବନ୍ଧୁତା ଚୁକ୍ତି : ବୁଦାପେଷ୍ଟ ଯାତ୍ରା

ରାଜୀବ ଗାନ୍ଧିଙ୍କ ପ୍ରଧାନମନ୍ତ୍ରିତ୍ୱ କାଳରେ ଭାରତ ଓ ହାଙ୍ଗେରୀ ମଧ୍ୟରେ ବନ୍ଧୁତା ଚୁକ୍ତି ସ୍ୱାକ୍ଷରିତ ହେଲା । ଦୁଇଦେଶ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ବୃଦ୍ଧି କରିବା ଥିଲା ଚୁକ୍ତିର ମୁଖ୍ୟ ଉଦ୍ଦେଶ୍ୟ । ଆନୁଷଙ୍ଗିକ ଭାବେ ରଖାଗଲା ସାଂସ୍କୃତିକ ଭାବ ବିନିମୟ । ପ୍ରଥମ ପର୍ଯ୍ୟାୟରେ, ଉଭୟ ଦେଶର ଐତିହାସିକମାନଙ୍କର ଗୋଲଟେବୁଲ ବୈଠକ ହାଙ୍ଗେରୀ ରାଜଧାନୀ ବୁଦାପେଷ୍ଟ ସହରରେ ଆୟୋଜନ କରାଗଲା । ଭାରତରୁ ମୋତେ, ନେହରୁ ମିଉଜିୟମର ଅଧ୍ୟକ୍ଷ ରବୀନ୍ଦ୍ର କୁମାର ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ ସୁମିତ ସରକାର, ଏହି ତିନିଜଣଙ୍କୁ ପଠାଇବା ଲାଗି ସରକାର ମନୋନୀତ କଲେ । ନଭେମ୍ବର ୨୦ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ବୁଦାପେଷ୍ଟରେ ରହିବା ଲାଗି ପ୍ରସ୍ତୁତ ହୋଇ ୧୬ ତାରିଖ ଦିନ ଦିଲ୍ଲୀରେ ପହଞ୍ଚିଲି ।

୧୭ ତାରିଖ ସନ୍ଧ୍ୟାରେ ଦିଲ୍ଲୀସ୍ଥିତ ହାଙ୍ଗେରୀ ରାଷ୍ଟ୍ରଦୂତଙ୍କ ବାସଭବନରେ ରାତ୍ରିଭୋଜନର ବ୍ୟବସ୍ଥା ଥାଏ । ମୁଁ ଓ ରବୀନ୍ଦ୍ର କୁମାର ଯଥାସମୟରେ ସେଠାରେ ପହଞ୍ଚିଲୁଁ । ରାଷ୍ଟ୍ରଦୂତ ଜଣାଇଲେ, ଗୋଲଟେବୁଲ ଆଲୋଚନାରେ ହାଙ୍ଗେରୀର ବିଶିଷ୍ଟ ଐତିହାସିକମାନେ ଯୋଗଦେବେ । ସେମାନେ ଭାରତ ସମ୍ପର୍କରେ ଅନେକ କଥା ଜାଣିବାକୁ ଚାହିଁବେ, ବିଶେଷତଃ ଜାତୀୟ ଆନ୍ଦୋଳନ ଓ ନେହରୁଙ୍କ ଶାନ୍ତିନୀତି ଇତ୍ୟାଦି ବିଷୟରେ । ସେମାନେ ମଧ୍ୟ ହାଙ୍ଗେରୀର ଆଧୁନିକ ଇତିହାସ ସମ୍ବନ୍ଧରେ ଆପଣମାନଙ୍କୁ ଅବଗତ କରାଇବେ ।

ଖାଇଲାବେଳେ, ରେଡ଼ିଓରୁ ତାଙ୍କ ଦେଶର ସମ୍ବାଦ ଶୁଣି ରାଷ୍ଟ୍ରଦୂତ ସତର୍କବାଣୀ ଶୁଣାଇଲେ, "ବୁଦାପେଷ୍ଟରେ ପ୍ରବଳ ତୁଷାରପାତ ହେଉଛି । କିଛି ସପ୍ତାହ ପୂର୍ବରୁ ଶୀତ ଆସିଗଲା" । ତାଙ୍କ କଥା ଶୁଣି ମୁଁ ଚିନ୍ତିତ ହେଲି । କାରଣ, ସେପରି

ଶୀତ ଲାଗି ପ୍ରସ୍ତୁତ ହୋଇ ଆସି ନ ଥିଲି । ପ୍ରୋଗ୍ରାମ ଦେଖି ଜାଣିଲି, ହାଙ୍ଗେରୀର ଗ୍ରାମାଞ୍ଚଳ ଓ ଅନ୍ୟ କେତୋଟି ସହରକୁ ଆମକୁ ନିଆଯିବ ।

ନଭେମ୍ବର ୧୯ ତାରିଖ ରାତିରେ ଆମେ ଏୟାର ଇଣ୍ଡିଆ ବିମାନରେ ରୋମ୍ ଯାତ୍ରା କଲୁ ଓ ସେଠାରୁ ଏକ ପୂର୍ବ-ଇଉରୋପୀୟ ବିମାନ ଯୋଗେ ୨୦ ତାରିଖ ରବିବାର ଅପରାହ୍ନରେ ବୁଦାପେଷ୍ଟରେ ପହଞ୍ଚିଲୁଁ ।

## ବୁଦାପେଷ୍ଟ ସହରରେ ଅବସ୍ଥାନ

ଆମକୁ ନେବା ଲାଗି ହାଙ୍ଗେରୀ ସାଂସ୍କୃତିକ ବିଭାଗ ପକ୍ଷରୁ ମ୍ୟାଡାମ ଜୁଡିଥ୍ ପୋଲଗାର ଓ ଭାରତୀୟ ଦୂତାବାସର ପ୍ରଥମ ସଚିବ ରାକେଶ ଶ୍ରୀବାସ୍ତବ ବିମାନଘାଟିରେ ଉପସ୍ଥିତ ଥିଲେ । ସହରର କେନ୍ଦ୍ରସ୍ଥାନରେ ଥିବା 'ହୋଟେଲ ରୟାଲ' ରେ ଆମକୁ ରଖାଗଲା । ଇଉରୋପର ବିଭିନ୍ନ ଦେଶର ପର୍ଯ୍ୟଟକ ଓ ବ୍ୟବସାୟୀମାନେ ଭରପୂର ଥାନ୍ତି ।

ସନ୍ଧ୍ୟା ପରେ ମୋ ରୁମ୍‌କୁ ଆସିଲେ ବୁଦାପେଷ୍ଟ ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ ଆଚ୍ଛିଲ୍ଲା ଆଗ୍ । ବିଶୁଦ୍ଧ ଇଂରାଜୀରେ କଥା କହୁଥାନ୍ତି । ମୁଁ ତାଙ୍କ ଦେଶର ପ୍ରଶଂସା କରିବା ଦେଖି ସେ କେତେକ କଥା କହିଲେ । ସାରାଂଶ ଥିଲା, ହାଙ୍ଗେରୀ ହେଉଛି ମାତ୍ର ୯୦ ସହସ୍ର ବର୍ଗକିଲୋମିଟର ପରିମିତ ଏକ କ୍ଷୁଦ୍ର ଦେଶ । ଲୋକସଂଖ୍ୟା ଏକ କୋଟିରୁ କିଛି ବେଶି । ଭାରତ ପରି ସୁବିଶାଳ ଦେଶ ତୁଳନାରେ ହାଙ୍ଗେରୀ କିଛି ନୁହେଁ । "Small countries of Europe always and everywhere suffer from an identity crisis. Hungary is one such country, suffering from inferiority complex."

ହାଙ୍ଗେରୀର ଅତୀତ କଥା କହିଲେ । ତୁର୍କ ମୁସଲମାନମାନେ ସେହି ରାଜ୍ୟ ଷୋଡ଼ଶ ସପ୍ତଦଶ ଶତାବ୍ଦୀରେ ଶାସନ କରୁଥିଲେ । ତା ପରେ, ଅଷ୍ଟ୍ରିଆର ସମ୍ରାଟମାନେ ହାଙ୍ଗେରୀ ଶାସନ କଲେ । ପ୍ରଥମ ମହାଯୁଦ୍ଧ ପରେ ହାଙ୍ଗେରୀ ସ୍ୱାଧୀନ ହେଲା । ଦ୍ୱିତୀୟ ମହାଯୁଦ୍ଧ ବେଳେ ହିଟଲାରଙ୍କ ପକ୍ଷ ନେବାରୁ ହାଙ୍ଗେରୀୟମାନଙ୍କ ପ୍ରତି ବିପଦ ମାଡ଼ିଆସିଥିଲା । ୧୯୪୫ରେ ସୋଭିଏତ୍ ସୈନ୍ୟମାନେ ନାଜି ଜାର୍ମାନମାନଙ୍କ କବଳରୁ ହାଙ୍ଗେରୀକୁ ମୁକ୍ତ କଲେ । ତାହାର ଅଳ୍ପ କିଛି ବର୍ଷ ପରେ ହାଙ୍ଗେରୀରେ କମ୍ୟୁନିଷ୍ଟ ଦଳ ଶାସନ କ୍ଷମତାକୁ ଆସିଲା ।

ଅଧ୍ୟାପକ ଆଗ୍ ଥିଲେ ବୟସରେ ଯୁବକ । ତାଙ୍କ ବାକ୍ୟ ଓ ଭାବଭଙ୍ଗୀରୁ ଜଣାଯାଉଥାଏ, ସେ ତତ୍କାଳୀନ କମ୍ୟୁନିଷ୍ଟ ଶାସନ ପ୍ରତି ସନ୍ତୁଷ୍ଟ ନୁହନ୍ତି । ଗୋଟିଏ କମ୍ୟୁନିଷ୍ଟ ରାଷ୍ଟ୍ରର ନାଗରିକ ଭାବେ ନିଜ ଦେଶର ଶାସକଗୋଷ୍ଠୀ

ବିପକ୍ଷରେ ଆକ୍ଷେପ କରିବା ଦେଖି ମୁଁ ଭାବୁଥାଏଁ, ବୋଧହୁଏ ମୋତେ ସନ୍ତୁଷ୍ଟ କରିବା ଲାଗି ସେ ଭାରତୀୟ ଗଣତନ୍ତ୍ରର ପ୍ରଶଂସା ଗାନ କରୁଛନ୍ତି । କିନ୍ତୁ ପ୍ରକୃତ ପକ୍ଷେ ଘଟଣା ଥିଲା ଭିନ୍ନ । ୧୯୮୮ ମସିହା ବେଳକୁ ପୂର୍ବ-ଇଉରୋପୀୟ ଦେଶମାନଙ୍କରେ କମ୍ୟୁନିଷ୍ଟ ଶାସନ ଓ ସୋଭିଏତ ପ୍ରତିପତ୍ତି ବିରୋଧରେ ଗୁଞ୍ଜରଣ ଆରମ୍ଭ ହୋଇଯାଇଥାଏ । ତାହାର ମାତ୍ର ବର୍ଷକ ମଧ୍ୟରେ ହାଙ୍ଗେରୀର କମ୍ୟୁନିଷ୍ଟ ସରକାରର ପତନ ଘଟିଥିଲା । ଅବଶ୍ୟ, ଆଗ୍‌ଙ୍କ କଥାରୁ ମୁଁ ସେତେବେଳେ କିଛି ବୁଝି ପାରି ନ ଥିଲି ।

ଅଧ୍ୟାପକ ଆଗ୍ ଚାଲିଗଲା ପରେ ମୁଁ ହୋଟେଲର ବିଭିନ୍ନ ତାଲାରେ ଏକାକୀ ବୁଲିଲି । ଗୋଟିଏ ଲଞ୍ଜରେ ବସିଥିବା କେତେଜଣ ହାଙ୍ଗେରୀୟ ଭଦ୍ରଲୋକ ମୋତେ ଭାରତୀୟ ବୋଲି ଜାଣି ଚା ପାନ ଲାଗି ଅନୁରୋଧ କଲେ । ସେମାନେ ଭାରତ ପର୍ଯ୍ୟଟନରେ ଯିବା ଲାଗି ଇଚ୍ଛା କରନ୍ତି ବୋଲି କହିଲେ । ହଠାତ୍ ମୋର ମନେ ପଡ଼ିଲା, ଅନେକ ବର୍ଷ ଆଗର ଗୋଟିଏ ଘଟଣା । ସଦାଶିବ ମିଶ୍ର କୁଳପତି ଥାନ୍ତି । ଜଣେ ହାଙ୍ଗେରୀୟ ବୈଜ୍ଞାନିକ ଆମ ବିଶ୍ୱବିଦ୍ୟାଳୟକୁ ଆସିଥିଲେ । କୁଳପତିଙ୍କ ଆଦେଶରେ ମୁଁ ତାଙ୍କୁ ମୋ ଗାଡ଼ିରେ ବସାଇ ଭୁବନେଶ୍ୱରର ମନ୍ଦିରରାଜି ଦେଖାଇବାକୁ ନେଇଗଲି । ଲିଙ୍ଗରାଜ ମନ୍ଦିର ସମ୍ମୁଖରେ ଗାଡ଼ି ରଖି ତାଙ୍କୁ ଉଚ୍ଚା ସ୍ଥାନରେ ଛିଡ଼ା କରାଇ ମନ୍ଦିରର କାରୁକାର୍ଯ୍ୟ ଦେଖିବାକୁ କହିଲା ବେଳେ ତାଙ୍କର ଆଖି ନିବଦ୍ଧ ଥାଏ ଭିଖାରୀ ଓ ରୋଗୀମାନଙ୍କ ଉପରେ । ଅକସ୍ମାତ୍ ସେ ପାଟି କଲେ, "ମୋତେ ଏଠାରୁ ନେଇ ଚାଲନ୍ତୁ, ଶୀଘ୍ର ନେଇ ଚାଲନ୍ତୁ, ମୁଁ ମନ୍ଦିର ଦେଖିବାକୁ ଚାହେଁ ନାହିଁ । ମନକୁ ବିକାର ଆସୁଛି ।" ତୁରନ୍ତ ଗାଡ଼ି ଫେରାଇଲି ।

ବାଟରେ ସେ କହିଥିଲେ, "ଭାରତର ଯେଉଁ ସହରକୁ ଗଲେ, ଭିଖାରୀ ଓ ରୋଗୀଙ୍କର ଦୟନୀୟ ଦୃଶ୍ୟ । ଦୀନଦୁଃଖୀଙ୍କ ସଂଖ୍ୟା ଏତେ ବିପୁଳ ବୋଲି ଜାଣି ନଥିଲି ।" ବୃଦ୍ଧ ବୈଜ୍ଞାନିକଙ୍କୁ ବୁଝାଇଲି, "ଲୋକସଂଖ୍ୟା ବଢ଼ିଚାଲିଥିବାରୁ ଏପରି ଅବସ୍ଥା । ଜନସଂଖ୍ୟା ନିୟନ୍ତ୍ରିତ ହେଲାପରେ ଦାରିଦ୍ର୍ୟ ହ୍ରାସ ପାଇଯିବ ।" ସେତେବେଳେ ସେ କହିଥିଲେ, "ଆମ ହାଙ୍ଗେରୀ ଦେଶରେ ଦିନକୁ ଦିନ ଲୋକସଂଖ୍ୟା କମିଚାଲିଛି । ଯେତିକି ଲୋକ ମରୁଛନ୍ତି, ସେତିକି ଜନ୍ମୁ ନାହାନ୍ତି । ସ୍ୱାମୀ ସ୍ତ୍ରୀଙ୍କର ଜଣେ ପିଲା, କିମ୍ବା ଆଦୌ ନାହିଁ । ଭବିଷ୍ୟତରେ ଦିନେ ହାଙ୍ଗେରୀ ଜନଶୂନ୍ୟ ହେବା ଅସମ୍ଭବ ନୁହେଁ ।"

ଏହି କଥା ସ୍ମରଣ କରି ସେ ଦିନ ହାଙ୍ଗେରୀୟ ଭଦ୍ରଲୋକମାନଙ୍କୁ ସେମାନଙ୍କ ପରିବାର ସମ୍ପର୍କରେ ପଚାରିଲି । ଜଣେ କହିଲେ, "ମୁଁ ବିବାହ କରିନାହିଁ ।

ଏମାନଙ୍କ ମଧ୍ୟରୁ ଦୁଇଜଣଙ୍କ ପୁଅ ଝିଅ ନାହିଁ । ଅନ୍ୟ ତିନିଜଣଙ୍କ ମଧ୍ୟରୁ ଜଣଙ୍କର ଜଣେ ପୁଅ, ଅନ୍ୟ ଦୁଇ ଜଣଙ୍କ ଦୁଇଟି ଲେଖାଏଁ ପିଲା ।'' ମୋ ପ୍ରଶ୍ନର ରହସ୍ୟ ସେମାନେ ବୁଝିପାରି ନ ଥିଲେ । ମୁଁ କିନ୍ତୁ ଭାବୁଥାଏଁ, ଆମ ଦେଶର କଥା । ଜନବିସ୍ଫୋରଣ ଓ ଦାରିଦ୍ର୍ୟରୁ ଭାରତବର୍ଷ ବୋଧହୁଏ ରକ୍ଷାପାଇବ ନାହିଁ !

## ଗୋଲ ଟେବୁଲ ପାଠଚକ୍ର

ନଭେମ୍ବର ୨୧ ତାରିଖ ୧୦ଟା ସମୟରେ ବୁଦାପେଷ୍ଟ ଏଓତ୍‌ଵସ୍ ଲୋନାର୍ଡ ବିଶ୍ୱବିଦ୍ୟାଳୟର ସମ୍ମିଳନୀ କକ୍ଷରେ ପାଠଚକ୍ର ଉଦ୍‌ଘାଟିତ ହେବାର ପ୍ରୋଗାମ ଥାଏ । ହୋଟେଲରୁ ଚାଲି ଚାଲି ଗଲାବେଳେ ଫୁଟ୍‌ପାଥରେ ଥାଏ ବହଳ ବରଫ । ଭାରତୀୟ ରାଷ୍ଟ୍ରଦୂତ ଏସ୍.କେ.ଲାମ୍ବା, ଦୂତାବାସର ଦୁଇଜଣ ସେକ୍ରେଟାରୀ ଓ ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ । ଭାରତରେ ଥିବା ହାଙ୍ଗେରୀର ପୂର୍ବତନ ରାଷ୍ଟ୍ରଦୂତ ବନ୍ଧୁତା ଚୁକ୍ତିର ଗୁରୁତ୍ୱ ବିଷୟରେ ସୂଚନା ଦେଲେ । ତାହାପରେ, ମ୍ୟାଡାମ୍ ଭେରାପାଥ୍ ଓ ଅଧ୍ୟାପକ ଆଟିଲା ଆଗ୍ ସେମାନଙ୍କର ସନ୍ଦର୍ଭ ପାଠକଲେ । ଲାମ୍ବାଙ୍କ ଅନୁରୋଧକ୍ରମେ ମୋତେ ସଭାପତି ଆସନରେ ବସିବାକୁ ହେଲା । ହାଙ୍ଗେରୀର ଅନ୍ୟ ବିଶ୍ୱବିଦ୍ୟାଳୟରରୁ କେତେଜଣ ଅଧ୍ୟାପକ ଆସିଥିଲେ ।

ପାଠଚକ୍ରରେ ଆଲୋଚନା ଚାଲିଥିଲାବେଳେ ହାଙ୍ଗେରୀୟ ଶ୍ରୋତାମାନଙ୍କ ମଧ୍ୟରେ କୌଣସି କାରଣରୁ ଚାଞ୍ଚଲ୍ୟ ପ୍ରକାଶ ପାଇବା ଦେଖି ମୋତେ ଅସ୍ୱାଭାବିକ ବୋଧ ହେଲା । ରୁଦ୍ଧକକ୍ଷ ମଧ୍ୟରେ ଆମେ ବସିଥାଉଁ । କକ୍ଷ ବାହାରେ କିଛି ଗୋଟିଏ ଗୁଞ୍ଜରଣ ଚାଲିଥିବା ଅନୁମାନ କଲି । ମୋ ପାଖରେ ବସିଥାନ୍ତି ଅଧ୍ୟାପକ ମ୍ୟାଗ୍‌ଡୋଲନା ନାଜ୍ । ଘଟଣା କ'ଣ ବୋଲି ପଚାରିଲି । କାନ ପାଖରେ ସେ ଧୀର ସ୍ୱରରେ କହିଲେ, ''ଶୁଣାଯାଉଛି, ଛାତ୍ରମାନେ ଷ୍ଟ୍ରାଇକ୍ କରିବେ ବୋଲି ନୋଟିସ ଦେଇଛନ୍ତି । ଗତ ୪୦ ବର୍ଷ ଭିତରେ ଏହି ଷ୍ଟ୍ରାଇକ୍ ଶବ୍ଦଟି ହାଙ୍ଗେରୀରେ ଶୁଣା ନ ଥିଲା ।'' ସେତେବେଳେ ଅନୁମାନ କରିପାରି ନଥିଲି ଯେ, ଆଗାମୀ ହାଙ୍ଗେରୀୟ ବିପ୍ଳବର ଏହା ହେଉଛି ଏକ ପୂର୍ବାଭାସ !

ଅପରାହ୍ନ ଅଧିବେଶନରେ ମୁଁ ମୋର ସନ୍ଦର୍ଭ ପେଶ୍ କଲି । ତହିଁ ପରବର୍ତ୍ତୀ ଦୁଇଦିନ ଅଧିବେଶନଗୁଡ଼ିକ ବସିଲା ।

## ଅନ୍ୟାନ୍ୟ କାର୍ଯ୍ୟକ୍ରମ

୨୨ ତାରିଖ ସନ୍ଧ୍ୟାରେ ସହରର ଏକ ରଙ୍ଗମଞ୍ଚରେ ତାଲିମପ୍ରାପ୍ତ ହାଙ୍ଗେରୀୟ ଯୁବକମାନେ ଭାରତୀୟ ବୀଣା, ସୀତାର ଓ ବେହେଲା ପ୍ରଭୃତି ବାଦ୍ୟଯନ୍ତ୍ର ବଜାଇ

ଶ୍ରୋତାମାନଙ୍କୁ ମୁଗ୍ଧ କଲେ । ଘନ ଘନ କରତାଳିରେ ହଲ୍‌ଟି ଫାଟିପଡୁଥାଏ । ବୁଦାପେଷ୍ଟବାସୀଙ୍କର ଭାରତୀୟ ବାଦ୍ୟସଙ୍ଗୀତ ପ୍ରତି ସେପରି ଆଗ୍ରହ ଦେଖି ଆଶ୍ଚର୍ଯ୍ୟ ହେଲି । ରବିଶଙ୍କରଙ୍କ ଶିଷ୍ୟମାନେ କାର୍ଯ୍ୟକ୍ରମ ପରିବେଷଣ କରୁଥାନ୍ତି । କଳାକାରମାନେ ଭାରତୀୟ ପୋଷାକ ପିନ୍ଧି ଆମ ଶିଳ୍ପୀମାନଙ୍କ ଢଙ୍ଗରେ ମଞ୍ଚ ଉପରେ ବସିଥିବା ଦେଖିଲି । ରାକେଶ ଶ୍ରୀବାସ୍ତବ କରତାଳି ପ୍ରତି ଲକ୍ଷ୍ୟକରି ମୋତେ କହିଲେ, "ମୁକ୍ତ ହସ୍ତରେ ଦୀର୍ଘ ସମୟ କରତାଳି ଦେବା କାମରେ ହାଙ୍ଗେରୀୟମାନେ ଅପ୍ରତିଦ୍ୱନ୍ଦ୍ୱୀ ।"

୨୩ ତାରିଖ ମଧ୍ୟାହ୍ନରେ ହାଙ୍ଗେରୀର ନ୍ୟାୟ ବିଭାଗ ମନ୍ତ୍ରୀ ଡକ୍ଟର କାଲମାନ୍ କୁଲେସାରଙ୍କ ସହିତ ସାକ୍ଷାତ୍କାର ଥାଏ । ଭାରତୀୟ ରାଷ୍ଟ୍ରଦୂତଙ୍କ ସହିତ ଆମେ ତାଙ୍କ ବାସଭବନରେ ପହଞ୍ଚିଲୁଁ । ମନ୍ତ୍ରୀ ମହୋଦୟ ହାର୍ଦ୍ଦିକ ଅଭ୍ୟର୍ଥନା ଜଣାଇ ଭାରତ-ହାଙ୍ଗେରୀ ଅର୍ଥନୈତିକ ସହଯୋଗ ସମ୍ବନ୍ଧରେ ସମ୍ଭାବ୍ୟ ଯୋଜନାଗୁଡ଼ିକର ସୂଚନା ଦେଲେ । ଆଲୋଚନା ଚାଲିଥିବା ସମୟରେ ପ୍ରଧାନମନ୍ତ୍ରୀଙ୍କ ନିକଟରୁ ଡାକ ପାଇ ତୁରନ୍ତ ଚାଲିଯିବାବେଳେ ତାଙ୍କୁ ବିବ୍ରତ ଥିବା ଦେଖିଲି ।

ସେଠାରୁ ସଂସ୍କୃତି ଓ ଶିକ୍ଷା ବିଭାଗର ନିର୍ଦ୍ଦେଶକଙ୍କ ବାସଭବନରେ ମଧ୍ୟାହ୍ନ ଭୋଜନ ଲାଗି ପହଞ୍ଚିଲୁଁ । ସହରର କେତେଜଣ ବୁଦ୍ଧିଜୀବୀ ଆମ ସହିତ ଯୋଗଦେଲେ ।

## ଏଗାର ପରିଦର୍ଶନ

ନଭେମ୍ବର ୨୪ ତାରିଖ ସକାଳେ ବୁଦାପେଷ୍ଟ ଠାରୁ ୬୦ ମାଇଲ ଦୂରବର୍ତ୍ତୀ ଏଗାର (Eger) ନାମକ ସହରକୁ ଆମକୁ ନିଆଗଲା । ସାଙ୍ଗରେ ଗଲେ ଜୁଡିଥ୍ ପୋଲଗାର । ରାଜମାର୍ଗର ଉଭୟ ପାର୍ଶ୍ୱରେ ଗ୍ରାମାଞ୍ଚଳମାନ ଦେଖିବାକୁ ମିଳୁଥାଏ । ଗୋଟିଏ ସ୍ଥାନରେ ଗାଡ଼ି ରଖି ଜୁଡିଥ୍ ଆମକୁ ଗାଁ ଭିତରକୁ ନେଇଗଲେ । ସେଠାରେ ଦେଖାଇଲେ, ଗ୍ରାମ୍ୟ ମଦ ତିଆରି ଭାଟି । ଗାଁର ଚାରିପାଖରେ ଅଙ୍ଗୁର କ୍ଷେତ । ପେନ୍ଥା ପେନ୍ଥା ଅଙ୍ଗୁର ଦେଖି ଲୋଭ ହେଉଥାଏ । ସେଥିରୁ ତିଆରି ହୁଏ ଉତ୍ତମ କିସମର ମଦ୍ୟ । ମଦଭାଟି ହେଉଛି ଅଧିକାଂଶ ଗାଁର ଗ୍ରାମ୍ୟ ଶିଳ୍ପ । ସେହି ସବୁ ଭାଟିରୁ ସହରକୁ ମଦ ପଠାଯାଏ ଓ ବାହାର ଦେଶକୁ ରପ୍ତାନୀ କରାହୁଏ । ଇଉରୋପର ସର୍ବତ୍ର ଏହି ମଦ୍ୟର ଚାହିଦା ଅଛି ବୋଲି ଜୁଡିଥ୍ ଗର୍ବ କଲେ ।

ଏଗାର ସହରର ସିଟି ହଲ୍‌ଠାରେ କେତେଜଣ ବିଶିଷ୍ଟ ନାଗରିକ ଆମକୁ ଅପେକ୍ଷା କରିଥାନ୍ତି । ଚା ପାନରେ ଆପ୍ୟାୟିତ କଲାପରେ, ସେମାନେ ଭାରତ

ସମ୍ପର୍କରେ ଅନେକ କଥା ଜାଣିବାକୁ ଚାହିଁଲେ । ଆମେ ମଧ୍ୟ ହାଙ୍ଗେରୀ ସମ୍ବନ୍ଧରେ କେତେକ କଥା ପଚାରିଲୁଁ । ଆଲୋଚନା ଶେଷରେ ସେଠାକାର ମିଉଜିୟମ ଦେଖିଲୁଁ ।

ସିଟି କାଉନସିଲ୍ ପକ୍ଷରୁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥାଏ । ୨୫ ଜଣ ନେତୃସ୍ଥାନୀୟ ବ୍ୟକ୍ତି ଆମ ସାଙ୍ଗରେ ଖାଇଲେ । ମୁଁ ନିରାମିଷାଶୀ ଜାଣି ଉଦ୍ୟୋକ୍ତାମାନେ ଅପ୍ରସ୍ତୁତ ହେବା ଦେଖି, କେବଳ ଫଳ ଖାଇବି ବୋଲି ଅନୁରୋଧ କଲି । ବଡ଼ ବଡ଼ ପ୍ଲେଟ୍‌ରେ ଅଙ୍ଗୁର ଓ ଏପଲ୍ ଥୁଆହେଲା । ଫଳାହାରରୁ ତୃପ୍ତି ପାଇଲେ ମଧ୍ୟ ଖାଦ୍ୟାଭାବ ଯୋଗୁଁ ଦୁର୍ବଳତା ବୋଧକଲି ।

ଅପରାହ୍ନ ୪ଟାରେ ଆମକୁ ନିଆଗଲା ସହରର ଉପକଣ୍ଠରେ ଥିବା ଏକ ଜରାଜୀର୍ଣ୍ଣ ଦୁର୍ଗ ଦେଖିବା ନିମନ୍ତେ । କୁହାଗଲା, ଆକ୍ରମଣକାରୀମାନଙ୍କ ପ୍ରତିରୋଧ ଲାଗି ମଧ୍ୟଯୁଗରେ ସେହି ବିଶାଳ ଦୁର୍ଗ ନିର୍ମାଣ କରାଯାଇଥିଲା ଓ ସମଗ୍ର ଦେଶରେ ତାହା ଥିଲା ସର୍ବାଧିକ ଦୁର୍ଭେଦ୍ୟ ଦୁର୍ଗ । ସେତେବେଳକୁ ତୁଳାଗୁଣ୍ଡ ପରି ବରଫ ପଡ଼ିବା ଆରମ୍ଭ ହୋଇଯାଇଥାଏ । ବାହାରିଲାବେଳକୁ ଅସହ୍ୟ ଥଣ୍ଡା ପବନ । ଜୁଡିଥ୍ ପୋଲଗାର ଜଣେ ଭଦ୍ରଲୋକଙ୍କ ମୁଣ୍ଡରୁ ମୋଟା ଟୋପିଟିଏ କାଢ଼ିଆଣି ମୋତେ ପିନ୍ଧିବାକୁ କହିଲେ । କିନ୍ତୁ ଈଷତ୍ ଘୃଣା ଆସିବାରୁ ମନାକଲି । ଦମ୍ଭ ଦେଖାଇ କହିଲି, "ବରଫ ବୃଷ୍ଟିରେ ବୁଲିବା ଅଭ୍ୟାସ ଅଛି ।" ଜାଣି ନ ଥିଲି ଯେ, ପାହାଡ଼ ଶୀର୍ଷରେ ଥିବା ଦୁର୍ଗକୁ ଉଠିବା ଓ ସେଠାରେ ବୁଲିବା ଲାଗି ଦୁଇଘଣ୍ଟା ସମୟ ବିତିବ । ଭାରତୀୟ ବନ୍ଧୁ ଦୁଇଜଣ ବାହାନା ଦେଖାଇ ରହିଗଲେ ଓ ମୋତେ ଯିବାପାଇଁ ପ୍ରେରଣା ଦେଲେ । "ଜଣେ କେହି ନ ଗଲେ ସେମାନେ ଭାବିବେ କ'ଣ ?" ବୋଲି ଚତୁର ବନ୍ଧୁମାନେ ଯୁକ୍ତି ଦେଖାଇଲେ ।

ଦୁର୍ଗ ତଳେ ଗାଡ଼ି ରହିଲା । ବାହାରେ ପ୍ରଚଣ୍ଡ ଥଣ୍ଡା । ଆକାଶରୁ ବରଫ ଝରିପଡୁଥାଏ । କିନ୍ତୁ ଅପେକ୍ଷାରତ ଦୁର୍ଗ ସଂରକ୍ଷକମାନେ ମୋତେ ଏପରି ସମ୍ମାନିତ କଲେ ଯେ ସେମାନଙ୍କ ଆଗ୍ରହ ଆଗରେ ମୁଣ୍ଡ ନୁଆଁଇ ଉପରକୁ ଉଠିଲି । ଶାରୀରିକ ଦୁର୍ବଳତା ପ୍ରକାଶ କରିବା ଅପେକ୍ଷା ଗର୍ବର ସହ ଆଗେଇବା ବ୍ୟତୀତ ଅନ୍ୟ ଉପାୟ ନଥାଏ ।

ଦୁର୍ଗରେ ପଶିଲାବେଳକୁ ମୁଣ୍ଡରୁ ମେଞ୍ଚା ମେଞ୍ଚା ବରଫ ଖସିପଡୁଥାଏ । ତଥାପି ନାଚାର । ପ୍ରକୋଷ୍ଠ ପରେ ପ୍ରକୋଷ୍ଠ ଦେଖିବାକୁ ବାଧ୍ୟ ହେଲି । ଉପରେ କୌଣସି ଘରର ଛାତ ନ ଥାଏ । ସଂରକ୍ଷକ ମହୋଦୟ ଅନର୍ଗଳ ଇତିହାସ ବୟାନ କରି ଚାଲିଥାନ୍ତି । ତୁର୍କମାନଙ୍କ ଆକ୍ରମଣ ସମୟରୁ ମହାଯୁଦ୍ଧର ବୋମାମାଡ଼ ପର୍ଯ୍ୟନ୍ତ । ହାତ ଦୁଇଟା କଦଳୀପତ୍ର ପରି ଥରୁଥାଏ । ପାଟି ଖନେଇ ଯାଇଥାଏ । ତଥାପି,

ତାଲା ପରେ ତାଲା ଉଠିଲି । ପୋଲଗାର ପଚାରୁଥାନ୍ତି, "ଏଥର ଫେରିବା କି ?" ସଂରକ୍ଷକ କିନ୍ତୁ ସମଗ୍ର ଦୁର୍ଗ ଦେଖାଇବାକୁ ନଛୋଡ଼ବନ୍ଧା । ବିଦେଶରେ ନିଜ ଦେଶର ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ କଠିନ ପରୀକ୍ଷାର ସମ୍ମୁଖୀନ ହେବା ଉଚିତ ବୋଲି ସଂକଳ୍ପ ନେଲି । କ୍ରମେ କ୍ରମେ ଅନ୍ଧକାର ଘନୀଭୂତ ହେଲା ପରେ ଦୁର୍ଗ ଭ୍ରମଣ ଶେଷ ହେଲା ।

ଏଗାର ସହରରୁ ବିଦାୟ ନେଇ ବୁଦାପେଷ୍ଟ ଫେରିଲାବେଳେ ଶୀତତାପ ନିୟନ୍ତ୍ରିତ କାର ମଧ୍ୟରେ ବସିଥିଲେ ସୁଦ୍ଧା ଦେହ ଥରୁଥାଏ । ହୋଟେଲରେ ଖାଇସାରି ରାତି ୧୦ଟାରେ ବିଛଣା ଧରିଲି । ଦୁଇଖଣ୍ଡି କମ୍ବଳ ଘୋଡ଼ିବା ସତ୍ତ୍ୱେ, ପାଟି ଥରିବାକୁ ଲାଗିଲା । ଦେହ ଏପରି ପ୍ରଚଣ୍ଡ ଭାବରେ କମ୍ପିଲା ଯେ ନିଜକୁ ସମ୍ଭାଳି ପାରିଲି ନାହିଁ । ମୁଣ୍ଡ ଉପରେ ଯେଉଁ ଦୁଇଘଣ୍ଟା ବରଫ ପଡ଼ିଥିଲା, ତାହାରି ପରିଣାମ ଭୋଗିଲି ।

ତହିଁ ପରଦିନ, ଦୂତାବାସ ସଚିବ ରାକେଶ ଶ୍ରୀବାସ୍ତବ ରାଷ୍ଟ୍ରଦୂତ ଲାମ୍ବାଙ୍କ ବାର୍ତ୍ତା ଧରି ପହଞ୍ଚିଲେ । ଅନୁରୋଧ ଥାଏ, ଅନ୍ୟ ଦୁଇଜଣ ୨୬ ତାରିଖରେ ଫେରିଯିବେ, କିନ୍ତୁ ମୋତେ ଅଧିକା ଚାରିଦିନ ରହିବାକୁ ହେବ । କାରଣ, ଦୂତାବାସ ତରଫରୁ ଗୋଟିଏ ମିଟିଂ ଆୟୋଜନ କରାଯିବ ଓ ସେଥିରେ ନିମନ୍ତ୍ରିତ ବୁଦ୍ଧିଜୀବୀମାନେ ଭାରତୀୟ ସଂସ୍କୃତି ସମ୍ବନ୍ଧରେ ମୋ ବକ୍ତବ୍ୟ ଶୁଣିବେ । ଶ୍ରୀବାସ୍ତବ ପ୍ରଲୋଭନ ଦେଖାଇଲେ, ସହରର ଅନେକ ଜାଗା ଦେଖିପାରିବି, ଏବଂ ଇଚ୍ଛାକଲେ, ଅଷ୍ଟ୍ରିଆ ରାଜଧାନୀ ଭିଏନା ଓ ଚେକୋସ୍ଲୋଭାକିଆ ରାଜଧାନୀ ପ୍ରାଗ୍ ସହର ଯାଇପାରିବି । ତାଙ୍କ ପରାମର୍ଶ ଗ୍ରହଣ କଲି ।

## ରାଷ୍ଟ୍ରଦୂତଙ୍କ ନୈଶଭୋଜି

୨୬ ତାରିଖ ସନ୍ଧ୍ୟାରେ ରାକେଶ୍ ତାଙ୍କ ବାସଭବନକୁ ନେଇଗଲେ । ରାଷ୍ଟ୍ରଦୂତଙ୍କ ନୈଶଭୋଜି ସେହିଠାରେ ଆୟୋଜିତ ହୋଇଥାଏ । ରାକେଶ୍‌ଙ୍କୁ ଘର ମିଳିଥାଏ ଡାନ୍ୟୁବ୍ ନଦୀକୂଳରେ ଥିବା ଅନୁଚ୍ଚ ପାହାଡ଼ ତଳ ବସତିରେ । ଦ୍ୱିତୀୟ ତାଲାର ବାଲକୋନିରେ ଛିଡ଼ା ରହି ନଦୀର ଦୃଶ୍ୟ ଦେଖି ମୋହିତ ହେଲି । ତାଙ୍କୁ କହିଲି, "ଏଠାରେ ବସି ପ୍ରାକୃତିକ ଦୃଶ୍ୟ ଉପଭୋଗ କଲେ ଜଣେ କବି ପାଲଟିଯିବ ।" "କିନ୍ତୁ, ସେଠାରେ କେତେ ସମୟ ବସିପାରିବେ ଯେ କବିତା ଲେଖିବେ ?" ସେ ପ୍ରଶ୍ନକଲେ । ପ୍ରକୃତରେ ଶୀତର ପ୍ରକୋପ ଯୋଗୁଁ ଘର ଭିତରକୁ ପଳାଇ ଆସିଲି ।

ରାକେଶ୍ ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରି ଫରେନ୍ ସାର୍ଭିସ୍‌ରେ ଯୋଗ ଦେଇଥିଲେ । ମୁଁ ମଧ୍ୟ ସେହି ବିଶ୍ୱବିଦ୍ୟାଳୟର ଛାତ୍ର ଥିବାରୁ ମୋ

ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଆସିଥିବା ଦେଖିଲି । ଯୁବକ ବ୍ୟକ୍ତି, ସ୍ତ୍ରୀ ଓ ଦୁଇଟି ଛୋଟ ପିଲା ପାଖରେ ଥାନ୍ତି । ପୂର୍ବରୁ ମୋର ଧାରଣା ଥାଏ, ବିଦେଶୀ ଦୂତାବାସରେ ନିଯୁକ୍ତ ରାଷ୍ଟ୍ରଦୂତ ଓ ପଦସ୍ଥ କର୍ମଚାରୀମାନେ ବେଶ୍ ଆରାମରେ ରହନ୍ତି । କାମ କମ୍, ଦରମା ମୋଟା । ଆମୋଦ ପ୍ରମୋଦ ପାଇଁ ସମୟ ଓ ସୁବିଧା ମିଳେ । କିନ୍ତୁ ତାଙ୍କ କଥା ଶୁଣି, ଧାରଣା ବଦଳିଗଲା । ପ୍ରାୟତଃ ଘର ଭିତରେ ବନ୍ଦୀ ଭାବରେ ରହିବାକୁ ହୁଏ, ଆତଙ୍କବାଦୀ ଆକ୍ରମଣର ସମ୍ଭାବନା ଯୋଗୁଁ ବାହାରେ ବୁଲିବା ନିଷେଧ, କେବଳ ଅଫିସକୁ ଯାଇ ଫାଇଲ କାମ ସାରି ଫେରିବାକୁ ହୁଏ । ସ୍ତ୍ରୀ ଓ ପିଲାମାନେ ସହରରେ ବୁଲିପାରନ୍ତି ନାହିଁ । ଘରେ ପୁଅଝିଅଙ୍କୁ ପାଠ ପଢ଼ାଇବାକୁ ହୁଏ, କାରଣ ସ୍କୁଲରେ ବିଦେଶୀ ଭାଷା । ପାଖ ପଡ଼ୋଶୀଙ୍କ ସଙ୍ଗେ ସମ୍ପର୍କ ରଖି ହୁଏନାହିଁ । ରେଡିଓରୁ ନିଜ ଦେଶର ସମ୍ବାଦ ଶୁଣିବା ଛଡ଼ା ଭାରତୀୟ ସମ୍ବାଦପତ୍ର ମିଳେ ନାହିଁ । ଶ୍ରୀମତୀ ଶ୍ରୀବାସ୍ତବ ଦୁଃଖରେ କହିଲେ, ''ବେଶି ଦିନ ଏପରି ଅବସ୍ଥାରେ ରହିଲେ ମୁଁ ପାଗଳ ହୋଇଯିବି ଓ ପିଲାମାନେ ମଧ୍ୟ ।'' ରାକେଶ୍ ପ୍ରକାଶ କଲେ, ''ଇଉରୋପର ଯେକୌଣସି ଛୋଟ ଦେଶ ଓ ଆଫ୍ରିକାର ଯେକୌଣସି ବଡ଼ ବା ଛୋଟ ଦେଶରେ ରାଷ୍ଟ୍ରଦୂତ ହେବାର ଅର୍ଥ, ଅଭିଶାପ ଭୋଗ । ଆମେରିକା, ଇଂଲଣ୍ଡ ଓ ଫ୍ରାନ୍ସ ପ୍ରଭୃତି କେତେକ ଦେଶକୁ ଛାଡ଼ିଦେଲେ ଅନ୍ୟତ୍ର ଦୂତାବାସର କର୍ମଚାରୀମାନେ ଅସୁବିଧା ଓ ଅଶାନ୍ତିରେ ଦିନ କଟାନ୍ତି । ଏପରିକି, ଇଂଲଣ୍ଡ ଇତ୍ୟାଦି ଦେଶରେ ସୁଦ୍ଧା ରାଷ୍ଟ୍ରଦୂତଙ୍କ ବ୍ୟକ୍ତିଗତ ସ୍ୱାଧୀନତା ଅତିଶୟ ସୀମାବଦ୍ଧ ।''

ଦୂତାବାସର କର୍ମଚାରୀମାନଙ୍କ ସଂଖ୍ୟା ପଚାରିଲି । ''ରାଷ୍ଟ୍ରଦୂତ, ଦୁଇ ସଚିବ, ଦୁଇ କିରାଣୀ, ଦେହରକ୍ଷୀ, ଡ୍ରାଇଭର ଓ ଚପରାଶୀ ମିଶି ସର୍ବମୋଟ ଆଠ । ଦୂରଦୂରାନ୍ତ ଜାଗାରେ ପ୍ରତ୍ୟେକଙ୍କୁ ଘର ମିଳେ । ତେଣୁ ପାରିବାରିକ ସମ୍ପର୍କ ସମ୍ଭବ ହୁଏ ନାହିଁ'', ସେ କହିଲେ ।

ରାତି ୮ଟା ବେଳକୁ ରାଷ୍ଟ୍ରଦୂତ ଲାମ୍ବା, ତାଙ୍କ ସ୍ତ୍ରୀ, ଦୁଇ ପିଲା ଓ ପାଞ୍ଚଜଣ ହାଙ୍ଗେରୀୟ ଅତିଥି ଶ୍ରୀବାସ୍ତବଙ୍କ ବାସଭବନରେ ପହଞ୍ଚିଲେ । ନାନାପ୍ରକାର କଥାବାର୍ତ୍ତା ମଧ୍ୟରେ ନୈଶଭୋଜି ଶେଷହେଲା ।

## ଗୋଟିଏ ମିଟିଂ ପ୍ରସଙ୍ଗ

ନଭେମ୍ବର ୨୭ ତାରିଖ ଅପରାହ୍ଣ ୩ଟା ବେଳେ ସହରର ଗୋଟିଏ ପାଠାଗାର କକ୍ଷରେ କେତେଜଣ ଇଂରାଜୀ ବୁଝୁଥିବା ବିଦ୍ୱାନମାନଙ୍କୁ ଭାରତୀୟ ସଂସ୍କୃତି ବିଷୟରେ କେତେକ କଥା କହିଲି । ଭାରତୀୟ ଦୂତାବାସ ପକ୍ଷରୁ ମିଟିଂ ଆୟୋଜିତ ହୋଇଥାଏ । ଜଣେ ହାଙ୍ଗେରୀନିବାସୀ ଜାର୍ମାନ ଶ୍ରୋତା ପ୍ରଶ୍ନ କଲେ, ''ପାଶ୍ଚାତ୍ୟ ଦାର୍ଶନିକ

ସୋପେନହାୱରେ କାହିଁକି ଆତ୍ମଉଦ୍ଦୀପନା ମଧ୍ୟରେ କହିପକାଇଥିଲେ– Upanishads, you are the solace of my life, solace in death ?'' ଉତ୍ତର ଦେଲି, ''ଜୀବନବ୍ୟାପୀ ପାଶ୍ଚାତ୍ୟ ଦର୍ଶନ ଓ ଧର୍ମଶାସ୍ତ୍ର ମଧ୍ୟରୁ ସେ ଯେଉଁ ତିନୋଟି ପ୍ରଶ୍ନର ଉତ୍ତର ଖୋଜି ଖୋଜି ପାଉ ନ ଥିଲେ– ମୁଁ କେଉଁଠାରୁ ଆସିଛି, କେଉଁଠାକୁ ଯିବି ଓ ନିଜ ଜୀବଦ୍ଦଶାରେ କ'ଣ କରିବି– ସେହି ମହାର୍ଘ ପ୍ରଶ୍ନର ଯଥାର୍ଥ ଉତ୍ତର ପାଇଗଲେ ହିନ୍ଦୁ ଉପନିଷଦ ଗର୍ଭରୁ, ଯଥା– ଆତ୍ମା ଆସିଛି ପରମାତ୍ମା ପାଖରୁ, ଫେରିଯିବ ସେହି ପରମାତ୍ମାଙ୍କ ନିକଟକୁ ଏବଂ ଜନ୍ମ ଓ ମୃତ୍ୟୁ ମଧ୍ୟରେ ଜୀବନ ସ୍ୱରୂପ ସେତୁରେ ଆତ୍ମା ଗତି କରୁଥିବ ଅସତ୍ୟରୁ ସତ୍ୟ, ତମସ୍‌ରୁ ଜ୍ୟୋତି ଓ ମୃତ୍ୟୁରୁ ଅମରତ୍ୱ ପଥରେ ।'' ଉପସ୍ଥିତ ଥିବା ପ୍ରାୟ ୩୦ ଜଣ ଶ୍ରୋତା ବାକ୍ୟଟିକୁ କାଗଜରେ ଟିପିନେବାକୁ ଚାହିଁଲେ ଓ ମୁଁ ଡକାଇଲି, ''From Non Being to True Being, from Darkness to Light, from Death to Immortality.'' ହିନ୍ଦୁ ଦର୍ଶନ ପ୍ରତି ସେମାନଙ୍କ ଉତ୍କଣ୍ଠା ମୋତେ ବିସ୍ମିତ କଲା ।

### ଡାନ୍ୟୁବ୍ କୂଳରେ ସନ୍ଧ୍ୟା

ସାଢ଼େ ୪ଟାରେ ମିଟିଂ ଶେଷ ହେଲା । ଶ୍ରୀବାସ୍ତବ ଓ ପୋଲଗାରଙ୍କୁ କହିଲି, ମୋତେ ସନ୍ଧ୍ୟାଟି ଏକାକୀ ରହିବାକୁ ଛାଡ଼ିଦିଅନ୍ତୁ । ମୁଁ ଡାନ୍ୟୁବ ନଦୀର ସୌନ୍ଦର୍ଯ୍ୟ ଉପଭୋଗ କରିବି । ସେମାନେ ବୁଦାପେଷ୍ଟ ପାର୍ଲିଆମେଣ୍ଟ ଭବନର ପଶ୍ଚାତ୍ ଦିଗରେ ଗୋଟିଏ ବେଞ୍ଚ ଉପରେ ମୋତେ ବସିବାକୁ କହି ବିଦାୟ ନେଲେ ।

ସନ୍ଧ୍ୟାକାଳୀନ ଡାନ୍ୟୁବ ନଦୀର ଶୋଭା ମୋତେ ମୁଗ୍ଧ କଲା । ନଦୀର ଅପର ପାର୍ଶ୍ୱରେ ଅନେକ ଦୂରରେ ଦେଖାଯାଉଥାଏ ପାହାଡ଼ ଓ ଅରଣ୍ୟ । ଏକାଗ୍ର ଚିତ୍ତରେ ବସିରହିଲି । ପ୍ରତ୍ୟେକ ପ୍ରସିଦ୍ଧ ନଦୀର ବିଶେଷତ୍ୱ ରହିଛି । ଭାରତୀୟ ନଦୀଗୁଡ଼ିକର ଉତ୍ପତ୍ତି ସମ୍ବନ୍ଧରେ ଥିବା କିମ୍ବଦନ୍ତୀମାନ ମୋ ସାନଭାଇ ମନୋଜର ଲେଖାରୁ ଥରେ ପଢ଼ିଲାବେଳେ ଯଥେଷ୍ଟ ଆନନ୍ଦ ପାଇଥିଲି । ଇଉରୋପୀୟ ନଦୀଗୁଡ଼ିକ ସମ୍ପର୍କରେ ମଧ୍ୟ ସେହି ପ୍ରକାର ଉପାଖ୍ୟାନ ଥାଇପାରେ । ଆବହମାନ କାଳରୁ ବହିଯାଉଥିବା ସ୍ରୋତସ୍ୱିନୀମାନ ଧରିତ୍ରୀ ଓ ମନୁଷ୍ୟ ଜାତି ପ୍ରତି ସୃଷ୍ଟିର ମହାମୂଲ୍ୟ ଅବଦାନ ହେଲେ ମଧ୍ୟ, ସଂକୀର୍ଣ୍ଣମନା ମନୁଷ୍ୟ ନଦୀଜଳ ପାଇଁ ପରସ୍ପର ମଧ୍ୟରେ କଳହ କରିବାକୁ ଭୁଲେ ନାହିଁ । ଡାନ୍ୟୁବ ନଦୀ ବିଷୟ ଇତିହାସରୁ ପଢ଼ିଥିଲି । ଜାଣିଥିଲି, ତାହାକୁ କେନ୍ଦ୍ରକରି ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ରହିଥିବା ଦ୍ୱନ୍ଦ୍ୱ କଥା । କିନ୍ତୁ ନଦୀ ବହିଯାଉଛି ସମସ୍ତଙ୍କ ମଙ୍ଗଳ ନିମନ୍ତେ, ଯେଉଁ କଥା କି କ୍ଷଣସ୍ଥାୟୀ ମନୁଷ୍ୟ ବୁଝିପାରେନା ।

ଡାନ୍ୟୁବ୍ । ଭଲଗା ନଦୀ ତଳକୁ ଇଉରୋପ ମହାଦେଶର ଦ୍ୱିତୀୟ ଦୀର୍ଘତମ ନଦୀ । ଜାର୍ମାନୀର ପଶ୍ଚିମାଞ୍ଚଳରେ ଥିବା ଘନକୃଷ୍ଣ ଅରଣ୍ୟର ପର୍ବତରାଜି ମଧ୍ୟରେ ସଂକୀର୍ଣ୍ଣ ଝରଣା ଭାବେ ଜନ୍ମଲାଭ କରି ଏହା ବହିଯାଉଛି ଦୁଇ ହଜାର ମାଇଲ ଦୂରତ୍ୱରେ କୃଷ୍ଣସାଗର ପର୍ଯ୍ୟନ୍ତ । ଜାର୍ମାନୀ, ଅଷ୍ଟ୍ରିଆ, ଜେକୋସ୍ଲୋଭାକିଆ, ହାଙ୍ଗେରୀ, ଯୁଗୋସ୍ଲାଭିଆ, ବୁଲଗାରିଆ, ରୋମାନିଆ ଓ ରୁଷିଆ ମଧ୍ୟ ଦେଇ ଏହି ନଦୀର ଗତି । ଉପନଦୀଗୁଡ଼ିକ ଜଳ ଆଣିଥାଏ ଆଲପସ୍ ଓ ଅନ୍ୟାନ୍ୟ ପର୍ବତମାଳାରୁ । ଅନେକାନେକ ଅରଣ୍ୟ, ପାହାଡ଼ ପର୍ବତ ଓ ଉପତ୍ୟକା ଅତିକ୍ରମ କରିଛି ଏହି ନଦୀ । ମୁଁ ଯେଉଁଠାରେ ବସିରହି ନଦୀ ବକ୍ଷକୁ ଚାହିଁଥିଲି, ସେଠାରେ ଡାନ୍ୟୁବର ପ୍ରସ୍ଥ ଥିଲା ପ୍ରାୟ ଏକ ମାଇଲ ।

ନଦୀଗର୍ଭରେ ଭାସି ଚାଲିଥାଏ ଅନେକ ଗୁଡ଼ିଏ ଛୋଟ ବଡ଼ ଷ୍ଟିମାର । କ୍ରମେ କ୍ରମେ ନଦୀଜଳରେ ଉଦ୍ଭାସିତ ହୋଇଉଠିଲା ଉଭୟ କୂଳର ଆଲୋକମାଳା । ନଦୀର ଶାନ୍ତ ରୂପ ଅନ୍ଧକାର ମଧ୍ୟରେ ହଜିଗଲା । ପୋଲଗାର ପଛରୁ ଡାକିଲେ, "୬ଟା ବାଜିଗଲାଣି, ଏବେ ଅପେରା ଦେଖିବାକୁ ଯିବା ।"

## ହାଙ୍ଗେରୀରୁ ବିଦାୟ

ନଭେମ୍ବର ୨୮ ତାରିଖ ଦିନ ପୋଲଗାର ଖବର ଦେଲେ, "ଆମ ସାଂସ୍କୃତିକ ବିଭାଗ ପକ୍ଷରୁ ଆପଣଙ୍କ ଭିଏନା ଯିବା ବନ୍ଦୋବସ୍ତ ହୋଇସାରିଛି । ସେଠାରୁ ଫେରି ପ୍ରାଗ୍ ଯିବେ ।" କିନ୍ତୁ ଭାବିଲି, ହାଙ୍ଗେରୀର ଖର୍ଚ୍ଚରେ ଅନ୍ୟ ଦେଶ ଭ୍ରମଣରେ ଯିବା ସଙ୍ଗତ ହେବନାହିଁ । ତେଣୁ ତାଙ୍କୁ ମନା କଲି । ପରବର୍ତ୍ତୀ ଦୁଇ ଦିନ ମଧ୍ୟରେ ସେମାନେ ମିଉଜିୟମ ଓ ସାଂସ୍କୃତିକ ଅନୁଷ୍ଠାନମାନ ଦେଖାଇଲେ । ଶୀତର ପ୍ରାବଲ୍ୟ ଓ ବରଫପାତ ଯୋଗୁଁ ବେଶି ସ୍ଥାନ ବୁଲିବାକୁ ଇଚ୍ଛା ହେଲାନାହିଁ । ୩୦ ତାରିଖ ଦିନ ବୁଦାପେଷ୍ଟରୁ ବିଦାୟ ନେଲି ।

# ଅପ୍ରତ୍ୟାଶିତ ରାଜନୈତିକ ଦୁର୍ଘଟଣା




## ୧୯୯୧ ଜୁନ୍ ସାଧାରଣ ନିର୍ବାଚନରେ ଲୋକସଭା ନିମନ୍ତେ ପ୍ରାର୍ଥିତ୍ୱ

### ପୃଷ୍ଠଭୂମି

କୁହାଯାଇଥାଏ, ମନୁଷ୍ୟ କେବଳ ଗୋଟିଏ 'ସାମାଜିକ ଜନ୍ତୁ' ନୁହେଁ, ଗୋଟିଏ 'ରାଜନୈତିକ ଜନ୍ତୁ' ମଧ୍ୟ ! ଆଧୁନିକ ଗଣତାନ୍ତ୍ରିକ ଯୁଗରେ ଯେ କୌଣସି ବ୍ୟକ୍ତି ପକ୍ଷରେ ରାଜନୀତି ପ୍ରତି ଆକର୍ଷିତ ହେବା ଅସ୍ୱାଭାବିକ ନୁହେଁ ।

ରେଭେନ୍‌ସା କଲେଜରୁ ବି.ଏ. ପାଶ୍ କଲାପରେ ବୀରେନ ମିତ୍ର ମୋତେ କଂଗ୍ରେସ ରାଜନୀତିରେ ଯୋଗଦେବାକୁ ବାରମ୍ବାର କହିଥିଲେ । ତାଙ୍କ କଥାରେ କର୍ଣ୍ଣପାତ ନକରି ଏଲ୍ଲାହାବାଦରେ ଏମ୍.ଏ. ପଢ଼ିବା ପାଇଁ ଚାଲିଗଲି । ୧୯୪୮ରେ ଏମ୍.ଏ. ପାଶ୍ କଲାପରେ ମହତାବ ବାବୁ ତାଙ୍କ 'ପ୍ରଜାତନ୍ତ୍ର ପରିବାର'ରେ ମିଶିବା ଲାଗି ପ୍ରକାରାନ୍ତରେ ଇଙ୍ଗିତ ଦେଇଥିଲେ । କିନ୍ତୁ, ଅଧ୍ୟାପକ ଭାବେ ଚାକିରି ଆରମ୍ଭ କରି ରାଜନୀତି ପାଖରୁ ଦୂରରେ ରହିଲି ।

ଚାକିରିରୁ ଅବସର ନେଲା ପର୍ଯ୍ୟନ୍ତ ୩୮ ବର୍ଷ ଅଧ୍ୟାପକ ଜୀବନ କାଳରେ କେବେହେଲେ ରାଜନୀତିରେ ପ୍ରବେଶ କରିବା କଥା ମନରେ ସ୍ଥାନ ପାଇ ନଥିଲା । ବିଭିନ୍ନ ସମୟରେ 'ନେହରୁଙ୍କ ରାଜନୈତିକ ଦର୍ଶନ', 'ଜାତୀୟ କଂଗ୍ରେସ ବନାମ ବ୍ରିଟିଶ', 'ଭାରତ ବିଭାଜନ ଓ ସ୍ୱାଧୀନତା' ଶୀର୍ଷକ ବହି ଲେଖିଥିଲି ଓ ଶେଷରେ ଇନ୍ଦିରା ଗାନ୍ଧିଙ୍କ ନିର୍ଦ୍ଦେଶକ୍ରମେ 'କଂଗ୍ରେସ ଶତବାର୍ଷିକ ଇତିହାସ'ର ତୃତୀୟ ଖଣ୍ଡ ସଂକଳନ କରିଥିଲି । ଏସବୁର ଅର୍ଥ ନଥିଲା ଯେ ମୁଁ କଂଗ୍ରେସର ଜଣେ ସଭ୍ୟ ବା କର୍ମୀ ।

କୁଳପତି ପଦରୁ ୧୯୮୫ରେ ଅବସର ନେଲାପରେ, ବସ୍ତୁତଃ ମୁଁ ହେଲି ବେକାର । ଦିଲ୍ଲୀ ରହଣି କାଳରେ ରାଜନେତାମାନଙ୍କ ସହିତ କେବେକେବେ ସାକ୍ଷାତ୍ ହେଲାବେଳେ, କେହି କେହି ରାଜନୀତିରେ ପଶିବା ପାଇଁ ପରାମର୍ଶ

ଦେଉଥାନ୍ତି । କିନ୍ତୁ, ରାଜନୀତିଜ୍ଞମାନଙ୍କ ସ୍ୱଭାବ ଚରିତ୍ର ଓ କାର୍ଯ୍ୟକଳାପ ଦେଖି ପ୍ରତ୍ୟକ୍ଷ ରାଜନୀତି ପ୍ରତି ଆକର୍ଷଣ ଆସୁ ନଥାଏ । ସେ ସମୟର ପରିବେଶ ଥାଏ ବିରକ୍ତିଜନକ । ଭୁବନେଶ୍ୱର ଆସିଲେ, ମହତାବ ବାବୁଙ୍କ ସାଙ୍ଗରେ ଏ ବିଷୟରେ ଆଲୋଚନା କରୁଥିଲି । ତାଙ୍କ କଥାବାର୍ତ୍ତାରୁ ଜାଣୁଥିଲି, ରାଜନୀତିରେ ପ୍ରବେଶ କରିବା ସହଜ, କିନ୍ତୁ ପାହାଚ ପରେ ପାହାଚ ଉଠିବା ସହଜ ନୁହେଁ, ବରଂ ଅସମ୍ଭବ । "କେହି କାହାରିକୁ ବାଟ ଛାଡ଼ନ୍ତି ନାହିଁ" ସେ କହିଥିଲେ ।

## ଡକ୍ଟର ମହତାବଙ୍କ ଅନ୍ତିମ ସମୟର ଏକ ଘଟଣା

ଛ ବର୍ଷ ବୟସ ବେଳେ ସୁଭଦ୍ରା ମହତାବ ଲବଣ ସତ୍ୟାଗ୍ରହ ସମୟରେ ଆମ ଘରେ କିଛିଦିନ ଆତ୍ମଗୋପନ କରିଥିଲାବେଳେ ମୁଁ ତାଙ୍କ କୋଳରେ ବସୁଥିଲି । ସେହି ଘଟଣାର ୧୫ ବର୍ଷ ପରେ ମହତାବଙ୍କ ସହିତ ଛାତ୍ର ଭାବରେ ମୋର ପରିଚୟ ଓ ସେହି ସମୟରୁ ଦୀର୍ଘ ୪୦ ବର୍ଷ ତାଙ୍କ ସହିତ ଘନିଷ୍ଠ ସମ୍ପର୍କ ଓ ଆତ୍ମୀୟତା । ସେ ମୋତେ ବିଶ୍ୱାସ କରୁଥିଲେ ଓ ଖୋଲା ମନରେ ଅନେକ କଥା କହୁଥିଲେ ।

୧୯୮୬ ବେଳକୁ ନିଜ ବୟସ ପ୍ରତି ଭ୍ରୂକ୍ଷେପ ନକରି ସେ ଲେଖୁଥାନ୍ତି ତାଙ୍କର ଶେଷ ଗ୍ରନ୍ଥ "While Serving My Nation" । ସେହି କାର୍ଯ୍ୟରେ ସେ ମୋର ପରାମର୍ଶ ଆବଶ୍ୟକ କରୁଥାନ୍ତି । ପାଣ୍ଡୁଲିପି ପ୍ରସ୍ତୁତ ହେଲାପରେ ଦିଲ୍ଲୀର କୌଣସି ପ୍ରସିଦ୍ଧ ପ୍ରକାଶକଙ୍କୁ ମୁଦ୍ରଣ ଲାଗି ଅନୁରୋଧ କରିବି ବୋଲି କହିଲି । କିନ୍ତୁ ଅପେକ୍ଷା କରିବାକୁ ତାଙ୍କର ଧୈର୍ଯ୍ୟ ନଥାଏ । ସତେ କ'ଣ ଅନୁମାନ କରୁଥିଲେ, ଅନ୍ତିମ ସମୟ ଆସିଗଲାଣି ! "ପ୍ରକାଶ ଭାର ତୁମକୁ ଲାଗିଲା । ଯେତେଶୀଘ୍ର ସମ୍ଭବ ବହି ପ୍ରକାଶିତ ହେବା ଦରକାର", ମୋତେ କହିଲେ ।

ପ୍ରକାଶକ ବନ୍ଧୁ ପୀତାମ୍ବର ମିଶ୍ରଙ୍କୁ ଭେଟିଲି । 'ବିଦ୍ୟାପୁରୀ' ପ୍ରକାଶନ ସଂସ୍ଥା ପକ୍ଷରୁ ରୁଚିପୂର୍ଣ୍ଣ ଓ ଆକର୍ଷଣୀୟ ଆକାରରେ ଗ୍ରନ୍ଥଟିକୁ ପ୍ରକାଶ କରିବାକୁ ଅନୁରୋଧ କଲି । ପୀତାମ୍ବର ବାବୁ ପାଣ୍ଡୁଲିପି ସାଦରେ ଗ୍ରହଣ କଲେ । ମହତାବ ବାବୁ ସର୍ତ୍ତ ରଖିଲେ, "ଅତିଶୀଘ୍ର ମୁଁ ବହି ଦେଖିବାକୁ ଚାହୁଁଛି ।" ସୁନ୍ଦର ଆକାରରେ ବହି ମୁଦ୍ରିତ ହେଲା ।

ବହି ଧରି ପୀତାମ୍ବରବାବୁ ଓ ମୁଁ ତାଙ୍କ ଏକାମ୍ର ନିବାସରେ ପହଞ୍ଚିଲୁଁ । ସେପ୍ଟେମ୍ବର ଶେଷ ବା ନଭେମ୍ବର ଆରମ୍ଭରେ । ମହତାବ ବାବୁ ତାଙ୍କ ଇଚ୍ଛା ପ୍ରକାଶ କଲେ ଯେ, ପୁସ୍ତକଟି ଦିଲ୍ଲୀରେ ଉନ୍ମୋଚିତ ହେବା ଆବଶ୍ୟକ । ମୁଁ

ମତ ଦେଲି, ''ଆପଣଙ୍କ ଆତ୍ମଚରିତ ଉନ୍ମୋଚନ କରିବା ପାଇଁ ଜଣେ ମର୍ଯ୍ୟାଦାବାନ୍ ବ୍ୟକ୍ତି, ଯଥା– ମୋରାରଜୀ ଦେଶାଇ, ସୀମାନ୍ତ ଗାନ୍ଧି କିମ୍ବା ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ସହିତ ଯୋଗାଯୋଗ କରିବା ଆବଶ୍ୟକ । ସେଥିପାଇଁ ସମୟ ଦେଲେ, ମୁଁ ଚେଷ୍ଟା କରିବି ।''

''ନା, ଅପେକ୍ଷା କରିବାକୁ ସମୟ ନାହିଁ'', ମହତାବ କହିଲେ । ''ତାହା ହେଲେ, ଆନୁଷ୍ଠାନିକ ଭାବେ ଭାରତର ରାଷ୍ଟ୍ରପତି ଜୈଲ ସିଂହ ପୁସ୍ତକ ଉନ୍ମୋଚନ କଲେ ଭଲ ହେବ'', ମୁଁ କହିଲି ।

ମହତାବ ବାବୁ ରାଜିହେଲେ । ଭର୍ତ୍ତୃହରି ମହତାବ ଓ ପୀତାମ୍ବର ମିଶ୍ର ଦିଲ୍ଲୀଠାରେ ଉନ୍ମୋଚନ ଉତ୍ସବର ଦାୟିତ୍ୱ ନେଲେ । ନଭେମ୍ବର ୨୧ ତାରିଖ ମହତାବ୍‌ଙ୍କ ଜନ୍ମତିଥିରେ ପୁସ୍ତକ ଉନ୍ମୋଚିତ ହେବ ବୋଲି ଠିକ୍ ହେଲା ।

ନଭେମ୍ବର ୧୫ ତାରିଖ ଦିନ ମୁଁ ମୋ କାମରେ ଦିଲ୍ଲୀ ଚାଲିଗଲି । ୧୮ ତାରିଖ ରାତିରେ ଓଡ଼ିଶା ଭବନରୁ ଭର୍ତ୍ତୃହରିବାବୁଙ୍କ ଲୋକମାନେ ଆସି ମୋତେ ମୋ ବସାରୁ ନେଇଗଲେ, ମହତାବବାବୁ ଡାକୁଛନ୍ତି ।

ରାତି ପ୍ରାୟ ୧୦ଟା । ତାଙ୍କ କୋଠରି ଭିତରେ ମହତାବ ବିମର୍ଷ ମନରେ ବସିଥାନ୍ତି । ଦୁଃଖ ପ୍ରକାଶ କରି ଜଣାଇଲେ, ଉପରାଷ୍ଟ୍ରପତି ବି.ଭେଙ୍କଟରମଣଙ୍କୁ ଜ୍ଞାନୀ ବ୍ୟକ୍ତି ଜାଣି ପୁସ୍ତକ ଉନ୍ମୋଚନ ନିମନ୍ତେ ଅନୁରୋଧ କରାଯାଇଥିଲା ଓ ସେ ସମ୍ମତି ଦେଇଥିଲେ । କିନ୍ତୁ ବହି ପଢ଼ି ସେଥିରେ ନେହରୁଙ୍କୁ କିଛି ସମାଲୋଚନା କରାଯାଇଥିବା ଦେଖି ଶେଷ ମୁହୂର୍ତ୍ତରେ ମନା କରିଦେଲେ । ତା ପରେ, ଲୋକସଭା ବାଚସ୍ପତି ବଲରାମ ଝାକରଙ୍କୁ ଅନୁରୋଧ କରିବାରୁ ସେ ରାଜି ହେଲେ । କିନ୍ତୁ ସେ ମଧ୍ୟ ମନାକରି ଖବର ପଠାଇଛନ୍ତି । ଅଥଚ, ନିମନ୍ତ୍ରଣ ପତ୍ର ଛପା ସରିଛି । କ'ଣ କରାଯିବ !

ମହତାବଙ୍କ ମନୋଭାବ ଅନୁଭବ କରିପାରିଲି । କ୍ଷୋଭ, ପରିତାପ ଓ ମନସ୍ତାପ ! କ'ଣ ହେଲା ଦେଶର ଅବସ୍ଥା ! ସ୍ୱୟଂ ଉପରାଷ୍ଟ୍ରପତି ଓ ବାଚସ୍ପତି ଯଦି ନେହରୁଙ୍କ ନାତି ରାଜୀବ ଗାନ୍ଧି ରାଗିଯିବେ ବୋଲି ଅନୁମାନ କରି ମହତାବଙ୍କ ପରି ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ ବୟୋଜ୍ୟେଷ୍ଠ ରାଜନେତାଙ୍କ ପୁସ୍ତକ ଉନ୍ମୋଚନ କରିବାକୁ ସାହସ କରିବେ ନାହିଁ, ତେବେ ସେପରି ପଦାଧିକାରୀଙ୍କ ବ୍ୟକ୍ତିଗତ ମର୍ଯ୍ୟାଦା କିଛି ଅଛି କି ? ମହତାବ ତାଙ୍କ ବହିରେ ନେହରୁଙ୍କ ସହିତ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ନିଜ ମତପାର୍ଥକ୍ୟ କଥା ଉଲ୍ଲେଖ କରିଥିଲେ, ଆଉ କିଛି ନୁହେଁ । ଅଥଚ ଭେଙ୍କଟରମଣ ଓ ଝାକରଙ୍କ ପରି ବ୍ୟକ୍ତିମାନେ ତାଙ୍କ ନାତିଙ୍କୁ

ଓରି ନିମନ୍ତ୍ରଣ ରକ୍ଷାକଲେ ନାହିଁ ! ବୌଦ୍ଧିକ ଦୃଷ୍ଟିରୁ ତ ସେମାନେ କହିପାରିଥାନ୍ତେ ଯେ, ନା, ନେହରୁଙ୍କ ମତ ଠିକ୍ ଥିଲା, ମହତାବଙ୍କ ମତ ଭୁଲ ଥିଲା ! ପୁସ୍ତକ ଉନ୍ମୋଚନ ବେଳେ ଏ କଥା କହିଥିଲେ କ'ଣ କେହି ପ୍ରତିବାଦ କରିଥାନ୍ତେ ?

ସଂଯମ ହରାଇ ମୁଁ କହିଲି, "ଦେଶରେ ଗଣତନ୍ତ୍ର ଚାଲିଛି, ନା ସ୍ୱୈରତନ୍ତ୍ର ! ପୁସ୍ତକ ଉନ୍ମୋଚନ ଦରକାର ନାହିଁ । ଆମେ ପ୍ରେସ୍ କନଫାରେନ୍ସ ଡାକିବୁ । ଯାହା କହିବା କଥା, ମୁଁ କହିବି । ସମସ୍ତେ ଜାଣିବେ, ଭାରତର ଉପରାଷ୍ଟ୍ରପତି ଓ ବାଚସ୍ପତି କେଉଁ ପ୍ରକାର ସ୍ୱାର୍ଥପର ମେରୁଦଣ୍ଡବିହୀନ କାପୁରୁଷ ବ୍ୟକ୍ତି । ପ୍ରଧାନମନ୍ତ୍ରୀଙ୍କ ଭୟରେ ଖଣ୍ଡିଏ ବହି ଉନ୍ମୋଚନ ଲାଗି ମଧ୍ୟ ସେମାନଙ୍କର ସତ୍ ସାହସ ନାହିଁ ।"

ଧୀର ସ୍ୱରରେ ମହତାବ ବାବୁ କହିଲେ, "ପ୍ରେସ୍ ଆଗରେ ଏ ସବୁ କହି କିଛି ଲାଭ ନାହିଁ । ସମସ୍ତେ ଜାଣନ୍ତି, କିଏ କିପରି ଲୋକ । ବର୍ତ୍ତମାନ ବହି ଉନ୍ମୋଚନ କଥା ଠିକ୍ କର ।"

ଶେଷରେ ଠିକ୍ ହେଲା, ବୟୋବୃଦ୍ଧ ସ୍ୱାଧୀନତା ସଂଗ୍ରାମୀ ମଦନମୋହନ ଚୋପ୍ରା ସଭାପତିତ୍ୱ କରିବେ, କାଶୀ ବିଦ୍ୟାପୀଠର ପୂର୍ବତନ କୁଳପତି ରାଜାରାମ ଶାସ୍ତ୍ରୀ ପୁସ୍ତକ ଉନ୍ମୋଚନ କରିବେ ଏବଂ ଡକ୍ଟର ରବୀନ୍ଦ୍ର କୁମାର ମହତାବଙ୍କ ଜୀବନୀ ବିଶ୍ଳେଷଣ କରିବେ । ୨୧ ତାରିଖ ସନ୍ଧ୍ୟାରେ ବିଠଲ୍ ଭାଇ ପଟେଲ ହଲ୍‌ରେ ଦିଲ୍ଲୀର ଅନେକ ମାନ୍ୟଗଣ୍ୟ ବ୍ୟକ୍ତି, ସାମ୍ବାଦିକ, ପାର୍ଲିଆମେଣ୍ଟ ସଦସ୍ୟ, ଆଇନଜୀବୀ ଓ ବୁଦ୍ଧିଜୀବୀଙ୍କ ଉପସ୍ଥିତିରେ ଡକ୍ଟର ମହତାବଙ୍କୁ ସମ୍ବର୍ଦ୍ଧିତ କରାଗଲା । ଭର୍ତ୍ତୃହରି ବାବୁଙ୍କ ଉଦ୍ୟମରେ ସେପରି ଏକ ମର୍ଯ୍ୟାଦାସମ୍ପନ୍ନ ସମାବେଶ ସମ୍ଭବପର ହେବା ଦେଖି ସମସ୍ତେ ଆନନ୍ଦିତ ହେଲେ । ଯଥାରୀତି ପୁସ୍ତକ ଉନ୍ମୋଚିତ ହେଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆତ୍ମୀୟ ଦ୍ୱିଜେନ୍ଦ୍ର ନାଥ ବୋଷ ଅତିଥିମାନଙ୍କୁ ଧନ୍ୟବାଦ ଅର୍ପଣ କଲେ । ପ୍ରାରମ୍ଭିକ ସୂଚନା ଦେବାକୁ ଯାଇ ମୁଁ ମହତାବ ଯୁଗର ରାଜନୀତି ଓ ଏବେକାର ରାଜନୀତି ମଧ୍ୟରେ ତୁଳନାତ୍ମକ ବିଶ୍ଳେଷଣ କଲାବେଳେ ପୂର୍ବକାଳର ନିର୍ଭୀକଚେତା ରାଜନୀତିଜ୍ଞ ଓ ଏ ଯୁଗର ଦୁର୍ବଳଚେତା ରାଜନେତାମାନଙ୍କ କଥା ଉଲ୍ଲେଖ କଲି । କେଉଁମାନଙ୍କୁ ଲକ୍ଷ୍ୟରଖି ତାହା କହିଲି, ସେ ବିଷୟ କୁଲଦୀପ ନାୟାରଙ୍କ ପରି ବିଚକ୍ଷଣ ଅତିଥିମାନେ ଜାଣିନେଲେ ।

ମହତାବଙ୍କ ସୁଦୀର୍ଘ, କର୍ମବହୁଳ ଓ ବୈଶିଷ୍ଟ୍ୟମୟ ଜୀବନରେ ସେହି ପୁସ୍ତକ ଉନ୍ମୋଚନ ଉତ୍ସବରେ ଯୋଗଦାନ ଥିଲା ସାଧାରଣ ସମାବେଶରେ ତାଙ୍କର ଶେଷ ଉପସ୍ଥିତି । ତାହାର ମାତ୍ର କେତେକ ସପ୍ତାହ ପରେ, ୧୯୮୭ ଜାନୁଆରୀ ୨

ତାରିଖ ପୂର୍ବାହ୍ନରେ ଭୁବନେଶ୍ୱରର କ୍ୟାପିଟାଲ ହସ୍ପିଟାଲରୁ ମୋ ଡାକ୍ତରାଣୀ ଝିଅ ସଂଘମିତ୍ରା ଫୋନ୍ କଲା, ''ବାବା, ମହତାବ ଚାଲିଗଲେ । ଶେଷ ନିଃଶ୍ୱାସ ତ୍ୟାଗବେଳେ ତାଙ୍କ ଶେଯ ପାଖରେ ମୁଁ ଥିଲି ।''

## ରାଜନୀତି ପ୍ରସଙ୍ଗ

ପୁନର୍ବାର ରାଜନୀତି ପ୍ରସଙ୍ଗକୁ ଫେରୁଛି । ୧୯୮୭ ମସିହା ଶେଷ ଭାଗକୁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧିଙ୍କ ବିପକ୍ଷରେ ସ୍ୱର ଉତ୍ତୋଳନ କରି ବିଶ୍ୱନାଥ ପ୍ରତାପ ସିଂହ ଓ ଅନ୍ୟ କେତେକ ବରିଷ୍ଠ କଂଗ୍ରେସ ନେତା 'ଜନମୋର୍ଚ୍ଚା' ନାମକ ସଙ୍ଗଠନ ସ୍ଥାପନ କଲେ । ଓଡ଼ିଶାର ପାର୍ଲିଆମେଣ୍ଟ ସଦସ୍ୟ ଅନାଦି ଚରଣ ଦାସ ଓ ଭଜମନ ବେହେରା ମୋତେ ସେଥିରେ ଯୋଗଦେବା ଲାଗି ବାରମ୍ବାର ପ୍ରରୋଚନା ଦେଲେ । ୧୯୮୯ ନଭେମ୍ବର ସାଧାରଣ ନିର୍ବାଚନରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କରିପାରିଲା ନାହିଁ । ଫଳରେ, ଭାରତୀୟ ଜନତା ପାର୍ଟିର ସାହାଯ୍ୟରେ ଜାତୀୟ ସାମ୍ମୁଖ୍ୟ ସରକାର ଗଠନ କଲେ ଓ ବିଶ୍ୱନାଥ ପ୍ରତାପ ସିଂହ ପ୍ରଧାନମନ୍ତ୍ରୀ ହେଲେ । ଦିଲ୍ଲୀରେ ନୂତନ ସରକାର ଗଠିତ ହେଲାପରେ ଓଡ଼ିଶାରେ ବିଧାନସଭା ପାଇଁ ନିର୍ବାଚନ ହେଲା । ସେଥିରେ ମୋ କକାପୁଅ ସାନଭାଇ ଡକ୍ଟର କାଳିକୁମାର ଦାସଙ୍କ ପତ୍ନୀ ଡାକ୍ତର କମଳା ଦାସ ଭୋଗରାଇ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେବାପାଇଁ ଇଚ୍ଛା କଲେ ।

କମଳା ଥିଲେ କଟକ ମେଡ଼ିକାଲ କଲେଜରେ ଅଧ୍ୟାପିକା । ରାଜନୀତି ସହିତ ତାଙ୍କର କୌଣସି ସମ୍ପର୍କ ନଥାଏ । ନିର୍ବାଚନ ପୂର୍ବରୁ ଗୋଟିଏ ଚିକିତ୍ସକ ସମ୍ମିଳନୀରେ ଯୋଗଦେବା ଲାଗି ଦିଲ୍ଲୀ ଯାଇଥିଲାବେଳେ ଜନତା ଦଳର ବରିଷ୍ଠ ନେତା ମଧୁ ଦଣ୍ଡବତେ ଓ ତାଙ୍କ ପତ୍ନୀ ପ୍ରମିଳା ଦଣ୍ଡବତେ କମଳାକୁ ଚାକିରି ଛାଡ଼ି ରାଜନୀତିରେ ଯୋଗ ଦେବାକୁ କହିଲେ । ଏକଥା ଶୁଣି ବିଜୁ ପଟ୍ଟନାୟକ ତାଙ୍କୁ ଭୋଗରାଇରୁ ଛିଡ଼ା ହେବାପାଇଁ ଟିକଟ ଦେବେ ବୋଲି ଜବାବ୍ ଦେଇଥିଲେ । କିନ୍ତୁ ପରେ ପରେ ସ୍ଥାନୀୟ କର୍ମୀମାନଙ୍କ ଚାପରେ ମତ ପରିବର୍ତ୍ତନ କରି ମନା କରିଦେଲେ ।

ତାଙ୍କ ନାସ୍ତିବାଣୀ ଶୁଣି କାଳିକୁମାର ଓ କମଳା ମୋ ପାଖରେ ପହଞ୍ଚିଲେ । ଦୈବାତକ୍ରମେ ସେହିଦିନ ସନ୍ଧ୍ୟାବେଳେ ଲୋକସଭାର ବାଚସ୍ପତି ରୂପେ ଓଡ଼ିଶାର ଜନତାଦଳ ନେତା ରବି ରାୟ ନିର୍ବାଚିତ ହୋଇଥିବାରୁ ତାଙ୍କ ସମ୍ବର୍ଦ୍ଧନା ନିମନ୍ତେ ସୂଚନା ଭବନରେ ଦଳମତ ନିର୍ବିଶେଷରେ ସଭାଟିଏ ଅନୁଷ୍ଠିତ ହେବାର ଥିଲା । ସେଥିରେ ସଭାପତିତ୍ୱ କରିବା ଲାଗି ଆମନ୍ତ୍ରିତ ହୋଇଥାଏଁ । ମଉକା ପାଇ, ବିଜୁ ବାବୁଙ୍କୁ ପଚାରିଦେଲି, ''କମଳା ଚାକିରିରୁ ଇସ୍ତଫା ଦେଲା, ଅଥଚ ଟିକଟ ଦେବେ ନାହିଁ ବୋଲି ଏବେ କହୁଛନ୍ତି କିପରି ?'' ''ରାଜନୀତିରେ ସେମିତି

ହୁଏ । ଭୋଗରାଇ ଲୋକେ ତାଙ୍କୁ ଚାହୁଁ ନାହାନ୍ତି, ମୁଁ କ'ଣ କରିବି ?'' ସେ ଉତ୍ତର ଦେଲେ । କିଛି ସମୟ ପରେ ପୁଣି ସେହି କଥା ଉଠାଇଲି । ଏଥର ସେ ବିରକ୍ତ ହୋଇ କହିଲେ, ''ଥରେ ମନାକଲି, ପୁଣି ପଚାରୁଛ କାହିଁକି ?'' ମୁଁ ତୁନିପଡ଼ିଲି । କିନ୍ତୁ ହଠାତ୍ ତାଙ୍କ 'ମୁଡ୍' ଅନୁଯାୟୀ ବିଜୁବାବୁ ପଚାରିଦେଲେ, ''ତା ଜିଣିବା କଥା ତୁମେ ଗ୍ୟାରେଣ୍ଟି ଦେବ ?'' ଉତ୍ତର ଦେଲି, ''ପ୍ରଥମେ ଦଳୀୟ ଟିକଟ ଦିଅନ୍ତୁ । ତାପରେ ମୋର ଗ୍ୟାରେଣ୍ଟି ।'' ତତ୍‌କ୍ଷଣାତ୍ ଜବାବ ଦେଲେ, ''ହଁ ଟିକଟ ଦେବି । କାଲି ସକାଳେ ନେଇଯିବାକୁ କୁହ ।''

କମଳା ଜନତା ଦଳରୁ ନିର୍ବାଚନରେ ଛିଡ଼ା ହେଲେ । ଯେତେହେଲେ, ନିଜର ଭାଇବୋହୂ । ପାରିବାରିକ ସମ୍ପର୍କ ଆଗରେ ଅନେକ କଥା ଭୁଲିବାକୁ ହୁଏ । କଂଗ୍ରେସ ବିରୋଧରେ ପ୍ରଚାର କରିବା ଦୁଃଖଦାୟକ ହେଲେ ମଧ୍ୟ, ଭୋଗରାଇର ଅନେକ ସ୍ଥାନରେ ସଭାସମିତିରେ ଯୋଗଦେଲି । ବିବେକ ଦଂଶନ ଭୋଗ କରିବାକୁ ହେଲା ଯେ କଂଗ୍ରେସ ପ୍ରାର୍ଥୀ ବିଜୟ କୁମାର ପତି ଥିଲେ ଜଣେ ନିର୍ମଳ ବ୍ୟକ୍ତି ଓ ନିଷ୍ଠାପର କର୍ମୀ । ତେଣେ ରାଜୀବ ଗାନ୍ଧି ଓ କଂଗ୍ରେସ ବିପକ୍ଷରେ ବିଷୋଦ୍‌ଗାର କରିବାକୁ ହେଲା । କମଳା ବହୁସଂଖ୍ୟକ ଭୋଟରେ ନିର୍ବାଚନ ଜିଣିଲେ ଓ ବିଜୁ ମନ୍ତ୍ରିମଣ୍ଡଳରେ ରାଷ୍ଟ୍ରମନ୍ତ୍ରୀ ରୂପେ ସ୍ଥାନ ପାଇଲେ ।

ତେଣେ ଦିଲ୍ଲୀରେ ଜନତା ସରକାର ଅଧିକ କାଳ ତିଷ୍ଠିପାରିଲା ନାହିଁ । ମାତ୍ର ୬ ମାସ ପରେ ଦିନେ ରବି ରାୟଙ୍କ ସହିତ ରାଜଭବନରେ ସାକ୍ଷାତ ହେଲା । ସେ ପଚାରିଲେ, ''ବର୍ତ୍ତମାନ କ'ଣ ଲେଖୁଛନ୍ତି ?'' ଉତ୍ତର ଦେଲି, ''ଦିଲ୍ଲୀରେ ଜନତା ସରକାରର ଉତ୍ଥାନ ଓ ପତନ ଶୀର୍ଷକ ବହି ଲେଖୁଛି ।'' ଚମକିଉଠିଲା ଢଙ୍ଗରେ ସେ ପ୍ରତିବାଦ କଲେ, ''ଆପଣଙ୍କ ଧାରଣା ସମ୍ପୂର୍ଣ୍ଣ ଭୁଲ । ଆମ ସରକାର ଦୃଢ଼ ଅଛି ଓ ରହିବ ।'' ମୁଁ କହିଥିଲି, ''ଆପଣଙ୍କ ଗୁରୁ ଚନ୍ଦ୍ରଶେଖରଙ୍କ ପାଇଁ ସରକାର ଭାଙ୍ଗିବ ।'' ସତକୁ ସତ ମାତ୍ର ୧୧ ମାସ ମଧ୍ୟରେ ବିଶ୍ୱନାଥ ପ୍ରତାପ ସିଂହଙ୍କ ପତନ ଘଟିଲା ଓ ଚନ୍ଦ୍ରଶେଖର ସିଂହାସନ ଦଖଲ କଲେ । ଲୋକସଭାରେ ସଂଖ୍ୟାଗରିଷ୍ଠତାର ପ୍ରଶ୍ନ ନଥାଏ । ତେଣୁ, ପ୍ରଥମରୁ ତାଙ୍କ ଆସନ ଟଳମଳ ହେଲା । ଚନ୍ଦ୍ରଶେଖର ଭାବିଥିଲେ, ବାହାରୁ କଂଗ୍ରେସ ସମର୍ଥନ ପାଇ ସେ କୌଣସି ପ୍ରକାରେ ଚାରିବର୍ଷ ପ୍ରଧାନମନ୍ତ୍ରୀ ରହିଯିବେ । କିନ୍ତୁ ତାଙ୍କର ଆଶା ଦିବାସ୍ୱପ୍ନରେ ପରିଣତ ହେଲା ।

କଂଗ୍ରେସ ସମର୍ଥନ ପ୍ରତ୍ୟାହାର କଲାପରେ ପୁନର୍ବାର ସାଧାରଣ ନିର୍ବାଚନ ଅନିର୍ବାର୍ଯ୍ୟ ହୋଇଉଠିଲା । ୧୯୯୧ ଏପ୍ରିଲ୍ ବେଳକୁ ଆଗାମୀ ନିର୍ବାଚନ ପାଇଁ ଜାତୀୟ ଦଳଗୁଡ଼ିକ ପ୍ରସ୍ତୁତ ହେଲେ ।

ଏପ୍ରିଲ୍ ପ୍ରଥମ ସପ୍ତାହରେ ଶୁଣିବାକୁ ପାଇଲି, ବାଲେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ସଭାପତି ରାଜୀବ ଗାନ୍ଧି ମୋତେ ପ୍ରାର୍ଥୀ କରିବାକୁ ଚାହାନ୍ତି । ଯେଉଁ ବାର୍ତ୍ତାବହ ସମ୍ବାଦ ଆଣିଥିଲେ ତାଙ୍କୁ ବିଶ୍ୱାସ କରିପାରିଲି ନାହିଁ । କାହିଁ ରାଜୀବ ଗାନ୍ଧି ଓ କାହିଁ ମୁଁ ! ସେ ବା ମୋତେ ଜାଣିବେ କିପରି ! କେବେ ସାକ୍ଷାତ ମଧ୍ୟ ହୋଇନାହିଁ ! ପୁଣି, କମଳାର ନିର୍ବାଚନବେଳେ ବୋଫର୍ସ ଦୁର୍ନୀତି ଲାଗି ରାଜୀବ ଗାନ୍ଧିଙ୍କୁ କଠୋର ଭାଷାରେ ସମାଲୋଚନା କରୁଥିଲି । ବାର୍ତ୍ତାବହଙ୍କୁ ସନ୍ଦେହ କରି ରୋକଠୋକ୍ ଭାବେ ଜଣାଇଦେଲି, ମୁଁ ରାଜନୀତି କରିବି ନାହିଁ କିମ୍ବା ପ୍ରାର୍ଥୀ ହେବି ନାହିଁ !

ଏହା ପରେ ପରେ ବାଲେଶ୍ୱର ନିର୍ବାଚନମଣ୍ଡଳୀ ଲାଗି କାର୍ତ୍ତିକେଶ୍ୱର ପାତ୍ରଙ୍କ ନାମ ସୁପାରିଶ୍ କରିବା ନିମନ୍ତେ ଓଡ଼ିଶା କଂଗ୍ରେସ ସଭାପତି ଗିରିଧର ଗୋମାଙ୍ଗ ଓ ନିର୍ବାଚନ ଦାୟିତ୍ୱରେ ଥିବା ବସନ୍ତ କୁମାର ବିଶ୍ୱାଳ ଏବଂ କାହ୍ନୁଚରଣ ଲେଙ୍କାଙ୍କୁ ଅନୁରୋଧ କଲି । ସେମାନେ ମୋ କଥା ରଖିଲେ ଓ ୩ ଜଣ ସମ୍ଭାବ୍ୟ ପ୍ରାର୍ଥୀଙ୍କ ନାମ ତାଲିକାରେ କାର୍ତ୍ତିକେଶ୍ୱରର ନାମ ଭର୍ତ୍ତିକଲେ । କାର୍ତ୍ତିକେଶ୍ୱର ମୋ ତତ୍ତ୍ୱାବଧାନରେ ପିଏଚ.ଡି. ଡିଗ୍ରୀ ହାସଲ କରିଥିଲେ ଓ ପୂର୍ବରୁ ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ଜଣେ ସୁଲେଖକ ଓ ସୁବକ୍ତା ଭାବରେ ସେ ଲୋକସଭାରେ ନାମ କରିପାରିବେ ବୋଲି ମୋର ବିଶ୍ୱାସ ଥାଏ । ତାଙ୍କ ସ୍ତ୍ରୀ. ଉମାରାଣୀ ଓଡ଼ିଶା ମହିଳା କଂଗ୍ରେସର ସଭାନେତ୍ରୀ ଥାନ୍ତି ଓ ତାଙ୍କୁ ମୁଁ ଝିଅପରି ସ୍ନେହ କରୁଥାଏଁ ।

## ଏପ୍ରିଲ ୨୦ ମଧ୍ୟରାତ୍ରି, ରାଜୀବ ଗାନ୍ଧିଙ୍କ ଫୋନକଲ୍

୧୯୯୧ ଏପ୍ରିଲ ୨୦ ତାରିଖ ସନ୍ଧ୍ୟା ୬ଟାରେ ପୁରୀରେ ଏକ ସର୍ବଭାରତୀୟ ଯୁବ ସମ୍ମିଳନୀରେ ଉଦ୍‌ବୋଧନ ଦେବାଲାଗି ନିମନ୍ତ୍ରଣ ପାଇଥିଲି । ଗଭର୍ଣ୍ଣର ଉଦ୍‌ଘାଟନ କରିବେ ବୋଲି କଥା ଥିଲା । ମୋର ୯୫ ବର୍ଷ ବୟସ୍କା ମା ଜଗନ୍ନାଥ ଦର୍ଶନ କରିବା ପାଇଁ ବ୍ୟାକୁଳ ହେବା ଦେଖି ତାଙ୍କୁ ସାଙ୍ଗରେ ନେଇଗଲି । ସ୍ତ୍ରୀ, ବୋହୂ ଓ ନାତିନାତୁଣୀ ମଧ୍ୟ ଗାଡ଼ି ଭର୍ତ୍ତିହୋଇ ପୁରୀରେ ପହଞ୍ଚିଲେ ।

ଜଗନ୍ନାଥ ଦର୍ଶନ ପରେ ସଭାସ୍ଥଳରେ ପହଞ୍ଚି ଶୁଣିଲି, ଗଭର୍ଣ୍ଣର ଆସିବେ ନାହିଁ, କାରଣ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର ଭୁବନେଶ୍ୱର ଆସିଛନ୍ତି । ସାଢ଼େ ୭ଟା ବେଳେ ମିଟିଂ ଶେଷ ହେଲା । ସବଂଶେ ଫେରିଲାବେଳେ, ସହରର ଉପକଣ୍ଠରେ ପୋଲିସ ଗାଡ଼ି ଅଟକାଇଲେ । ପ୍ରଧାନମନ୍ତ୍ରୀ ଆସିବେ ଓ ଫେରିବେ । ତାଙ୍କ ଆଗମନ ଓ ବାହୁଡ଼ା ଯାତ୍ରା ଶେଷ ନ ହେଲା ଯାଏଁ, ପୁରୀ-ଭୁବନେଶ୍ୱର ରାଜପଥରେ ଗାଡ଼ି ଚଳାଚଳ ବନ୍ଦ । ରାତି ସାଢ଼େ ୯ଟାରେ ଚନ୍ଦ୍ରଶେଖର ପୁରୀରୁ ବାହାରିଗଲା

ପରେ ଗାଡ଼ି ଚାଲିଲା । ଘରେ ପହଞ୍ଚିଲାବେଳକୁ ରାତି ୧୧ଟା ବାଜିବାକୁ ଅଳ୍ପ ସମୟ ବାକି ଥାଏ ।

ପୁଅ ସିଦ୍ଧାର୍ଥ ଖବର ଦେଲା, ସନ୍ଧ୍ୟା ୮ଟା ପାଖରୁ ଦିଲ୍ଲୀରୁ ରାଜୀବ ଗାନ୍ଧିଙ୍କ ରେସିଡ଼େନ୍ସରୁ ବାରମ୍ବାର ଫୋନକଲ୍ ଆସୁଛି । ତା କଥା ଶେଷ ହେବା ପୂର୍ବରୁ ଫୋନ୍ ବାଜିଲା ଓ ମୁଁ ଉଠାଇଲି । ଜଣେ କିଏ କହିଲେ, "Please hold on. Rajivji will talk to you."

ମୃଦୁ ସ୍ୱରରେ ରାଜୀବ ଗାନ୍ଧି କହିଲେ, "Dasji, you are my personal candidate to Lok Sabha from Bhubaneswar. Please give your consent. I shall take charge of your election."

ଅପ୍ରତ୍ୟାଶିତ ଓ ଅସ୍ୱାଭାବିକ ! ହତଭମ୍ବ ଅବସ୍ଥାରେ ମୁଁ 'ସାର, ସାର' ବୋଲି ସମ୍ବୋଧନ କରି କହିଗଲି, "Kindly excuse me. I cannot fight an election. I beg your forgiveness." ମୋ ବାକ୍ୟଗୁଡ଼ିକ ଶେଷ କରିବାକୁ ସେ ଅବକାଶ ଦେଲେ ନାହିଁ । ଦୁଇଥର ସେହି କଥା ଶୁଣିଲା ପରେ ମୁଁ ବାଧ୍ୟହୋଇ କହିଲି, "Sir, I leave it to you."

ତା ପରେ ପୁଣି ଫୋନ୍ । ବାରମ୍ବାର ଫୋନ୍ । କଂଗ୍ରେସ ହାଇକମାଣ୍ଡର ଅନ୍ୟମାନଙ୍କର ପ୍ରଶ୍ନ । ରାତି ୧୨ଟା ବେଳେ ହଂସପାଳ ନାମକ ନେତା ଜଣାଇଲେ, "ରାଜୀବଜୀ ଆପଣଙ୍କ ନାମ ଘୋଷଣା କରି ସାରିଛନ୍ତି ।" ବ୍ୟସ୍ତ ହୋଇ ତାଙ୍କୁ ପଚାରିଲି, "ମୋତେ ସେ କାହିଁକି ବାଛିଲେ ?" "Intelligence report impressed him." ଝିଅ ସଂଘମିତ୍ରା ଫୋନ ଉଠାଇ ତଳେ ରଖିଦେଲା । ନିଦବଟି ମଧ୍ୟ ଖାଇବାକୁ ଦେଲା ।

## ନିର୍ବାଚନ ଅନୁଭୂତି

ଅଧ୍ୟାପକ ରୂପେ ତଥାକଥିତ 'ଗଜଦନ୍ତ ଗମ୍ବୁଜ' ବା Ivory Tower ମଧ୍ୟରେ ଆବଦ୍ଧ ରହିବା ଅବସ୍ଥାରେ କେବଳ ନିଜର ଘର, କ୍ଲାସ୍‌ରୁମ ଓ ଲାଇବ୍ରେରୀରେ ବର୍ଷ ବର୍ଷ ବିତିଯାଇଥାଏ । ଦୂରଦୂରାନ୍ତ ପୁରପଲ୍ଲୀ, ଦୁର୍ଗମ ଓ ଅଗମ୍ୟ ଅଞ୍ଚଳର ଜନସାଧାରଣଙ୍କ ଅବସ୍ଥା ବା ଜୀବନଧାରା ସମ୍ପର୍କରେ ପ୍ରାୟତଃ କୌଣସି ଧାରଣା ନଥାଏ । କିନ୍ତୁ ନିର୍ବାଚନ ଲଢ଼ିଲାବେଳେ ଯେଉଁ ପ୍ରକାର ଦୁଃଖଦୈନ୍ୟର ଦୃଶ୍ୟ ଦେଖିବାକୁ ମିଳିଲା, ତାହା ବିଶ୍ୱାସ କରିବା କଷ୍ଟକର ହେଉଥାଏ । ଗ୍ରାମ୍ୟ ଜୀବନର ପରିଚୟ ସ୍ପଷ୍ଟ ହେଲାବେଳକୁ ନିର୍ବାଚନ କ୍ରିୟାପ୍ରକ୍ରିୟା ସମ୍ବନ୍ଧରେ ସମ୍ୟକ ଧାରଣା ଆସିଗଲା । ରାଜନୀତି କେଉଁ ସ୍ତରରେ ପହଞ୍ଚିଲାଣି ତାହାର ବାସ୍ତବ ଚିତ୍ର ଦେଖିବାକୁ

ମିଳିଲା । ସମସ୍ତ ବିଷୟକୁ କେନ୍ଦ୍ରକରି 'ନିର୍ବାଚନ ଅନୁଭୂତି' ବିଷୟରେ ଗ୍ରନ୍ଥଟିଏ ଲେଖିପାରିବା ସମ୍ଭବ । କିନ୍ତୁ, ସମସ୍ତେ ତ ସବୁକଥା ଊଣା ଅଧିକେ ଜାଣନ୍ତି । ସେ ଦୃଷ୍ଟିରୁ ଅନୁଭୂତି ବର୍ଣ୍ଣନାର ଆବଶ୍ୟକତା ନାହିଁ କହିଲେ ଚଳେ ।

ଏହି ଅଧ୍ୟାୟରେ ଅନେକ କଥା ଲେଖିଥିଲି, ଭାରତୀୟ ଗଣତନ୍ତ୍ରର ପରିଚୟ ଦେବା ନିମନ୍ତେ । କିନ୍ତୁ, ଝିଅର ପରାମର୍ଶରେ ସେସବୁ ବାଦ୍ ଦେବାକୁ ବାଧହେଲି ।

ବ୍ୟକ୍ତିଗତ ନିଷ୍ଠାର ପ୍ରମାଣ ଦେବା ନିମନ୍ତେ, ପ୍ରାର୍ଥୀରୂପେ ମୋ ନାମ ଘୋଷଣା ପରେ ପରେ, କଂଗ୍ରେସ କର୍ମକର୍ତ୍ତାମାନଙ୍କୁ ମୋର ଦୁଇଟି ନୀତି ସ୍ପଷ୍ଟ କରିଦେଲି । ପ୍ରଥମରେ, କଂଗ୍ରେସ ଦଳ ମୋ ନିର୍ବାଚନରେ କେତେ ଟଙ୍କା ଖର୍ଚ୍ଚ କରିବେ ସେ କଥା ଜାଣିବି ନାହିଁ ଏବଂ ସେ ଟଙ୍କା ଗ୍ରହଣ କରିବି ନାହିଁ । ଦଳୀୟ ନେତାମାନେ ତାହା ବ୍ୟୟ କରିବେ । ଦ୍ୱିତୀୟତଃ, କୌଣସି ପୁଞ୍ଜିପତି, ଶିଳ୍ପପତି, ବ୍ୟବସାୟୀ ବା କଂଗ୍ରେସ ସମର୍ଥକଙ୍କ ପାଖରୁ ଗୋଟିଏ ପଇସା ମଧ ଚାନ୍ଦା ନେବିନାହିଁ । ଏହି ଦୁଇ ନୀତିରେ ଶେଷ ପର୍ଯ୍ୟନ୍ତ ଅଟଳ ରହିଲି । ଜାତୀୟ ସମ୍ବାଦପତ୍ରରେ ଏ ବିଷୟ ପ୍ରକାଶ ପାଇଲା । ଏପରି ନୀତିର ପରିଣାମ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । "ନିଜ ହାତରେ ଟଙ୍କା ନଧରି ନିର୍ବାଚନ ବୈତରଣୀ ପାର ହେବାର ଅର୍ଥ, ମଝି ନଇରେ ବୁଡ଼ିମରିବା" ବୋଲି ଜଣେ ଅଭିଜ୍ଞ ବନ୍ଧୁ କହିଥିଲେ । କିନ୍ତୁ, ସେଥିପାଇଁ ମୁଁ ପ୍ରସ୍ତୁତ ଥିଲି । ଅବଶ୍ୟ, ପ୍ରଥମରୁ ମୁଁ ଦିଲ୍ଲୀ ମହଲକୁ ଜଣାଇ ଦେଇଥିଲି, ମୁଁ ସୁନୀଲ ଦତ୍ତ, ଅମିତାଭ ବଚନ କିମ୍ବା ରାଜେଶ ଖାନ୍ନା ନୁହେଁ ଯେ ନିଜ ହାତରୁ କୋଟିଏ ଦୁଇକୋଟି ଖର୍ଚ୍ଚ କରି କଂଗ୍ରେସ ପ୍ରାର୍ଥୀ ରୂପେ ନିର୍ବାଚନ ଲଢ଼ିବି । ଅନ୍ୟ ଭାଷାରେ, ରିକ୍ତହସ୍ତ ପ୍ରାର୍ଥୀ ଓ ନିର୍ବାଚନ ସଂଗ୍ରାମ !

ମୋର ଏକମାତ୍ର ସାର୍ଟିଫିକେଟ ଥାଏ, 'ରାଜୀବ ଗାନ୍ଧିଙ୍କ ବ୍ୟକ୍ତିଗତ ପ୍ରାର୍ଥୀ' । ସେଥିପାଇଁ ଓଡ଼ିଶା କଂଗ୍ରେସର ତୁଙ୍ଗ ନେତାମାନଙ୍କ ପାଖରୁ ଗ୍ରାମାଞ୍ଚଳ କର୍ମୀମାନଙ୍କ ପର୍ଯ୍ୟନ୍ତ, ଅନେକ ବ୍ୟକ୍ତି ମୋ ପାଇଁ ପ୍ରଚାର କାର୍ଯ୍ୟରେ ଲାଗିପଡ଼ିଲେ । କେତେକଙ୍କ ଅକ୍ଳାନ୍ତ ପରିଶ୍ରମ ଦେଖି ତଟସ୍ଥ ହେଉଥିଲି । ତେଣେ, ଜନସାଧାରଣଙ୍କ ଆକର୍ଷଣ ଥାଏ, ମୁଁ ଅଣ-ରାଜନୈତିକ ବ୍ୟକ୍ତି, ଜଣେ ଅବସରପ୍ରାପ୍ତ ଶିକ୍ଷକ । ଅନେକ ସ୍ଥାନରେ ସ୍କୁଲଛାତ୍ରମାନେ ଶୋଭାଯାତ୍ରାରେ ଧ୍ୱନି ଦେଉଥିଲେ, 'ସ୍ୱାଗତମ୍, ଗୁରୁଜୀ' । ଭୁବନେଶ୍ୱର ଠାରୁ ଦୂରବର୍ତ୍ତୀ ଦଶପଲ୍ଲା ପର୍ଯ୍ୟନ୍ତ, ନିର୍ବାଚନ ସଭାରେ ମୋତେ ଶୁଣିବା ଲାଗି ହଜାର ହଜାର ଲୋକ ସମବେତ ହେଉଥିଲେ । ଥରେ ଜାନକୀ ବଲ୍ଲଭ ପଟ୍ଟନାୟକ ମୋତେ କହିଲେ, "ମୁଁ ଶୁଣୁଛି, ଆପଣ ଭାଷଣ ଦ୍ୱାରା ଲୋକମାନଙ୍କୁ ମୁଗ୍ଧ କରିଦେଉଛନ୍ତି !" ତାଙ୍କୁ କହିଲି, "ଯଦି ଭାଷଣ ଦ୍ୱାରା ଲୋକଙ୍କୁ ମୁଗ୍ଧ କଲେ

ପାର୍ଲିଆମେଣ୍ଟକୁ ଯାଇ ହୁଅନ୍ତା, ତେବେ ବାଗ୍ମୀ ଗୌରୀକୁମାର ବ୍ରହ୍ମା ଚାଳିଶ ବର୍ଷ ଆଗରୁ ସେଠାକୁ ଯାଇପାରିଥାନ୍ତେ ।'' ପାଖ ବ୍ୟକ୍ତିମାନେ ହସିଲେ । ଜଣେ କାନ ପାଖରେ କହିଲେ, ''ଯେଉଁମାନେ ସଭାରେ ଆପଣଙ୍କୁ ଶୁଣିବା ପାଇଁ ଆସୁଛନ୍ତି, ସେମାନେ ସମସ୍ତେ ଭୋଟ ଦେବେ ବୋଲି କଦାପି ଭାବିବେ ନାହିଁ ।''

ମୋ ସହିତ ଲଢୁଥିବା ବିପକ୍ଷ ଦଳର ପ୍ରାର୍ଥୀମାନେ ଥିଲେ, ଜନତାଦଳ ସମର୍ଥିତ ସି.ପି.ଏମ୍. ପ୍ରାର୍ଥୀ ଶିବାଜୀ ପଟ୍ଟନାୟକ, ଭାରତୀୟ ଜନତା ପାର୍ଟିର ଶାନ୍ତି ଦାସ ଓ ଚନ୍ଦ୍ରଶେଖରଙ୍କ ଦଳର ବାଙ୍କବିହାରୀ ଦାସ । ସମସ୍ତେ ଥାନ୍ତି ପୁରାତନ ବନ୍ଧୁ ଓ ଘନିଷ୍ଠ ବ୍ୟକ୍ତି । ଅଧିକାଂଶ ସଭାରେ ସେମାନଙ୍କ ପ୍ରଶଂସା ଗାନ ପରେ, ମୁଁ କଂଗ୍ରେସ ପାଇଁ ଭୋଟ ପ୍ରାର୍ଥନା କରୁଥିଲି, କେନ୍ଦ୍ରରେ ସୁଦୃଢ଼ ସରକାର ଗଠନର ଆବଶ୍ୟକତା ଦୃଷ୍ଟିରୁ । ଥରେ ଗୋଟିଏ ଜନସଭାରେ କହିସାରିଲା ପରେ, ଜଣେ ସାମ୍ବାଦିକ କହିଲେ, ''ଆପଣଙ୍କ ଷ୍ଟ୍ରାଟେଜି ଠିକ୍ ହେଉନାହିଁ । ଶତ୍ରୁମାନଙ୍କୁ 'ମିତ୍ର' ବୋଲି ବର୍ଣ୍ଣନା କରି, ନିଜ ପାଇଁ ଭୋଟ୍ ମାଗିବା ଉଚିତ ନୁହେଁ ।'' ଦିନେ ଆଉ ଗୋଟିଏ ସଭାପରେ, ଜଣେ ସ୍ଥାନୀୟ ନେତା କହିଲେ, ''ବିଜୁ ସରକାରର କୁଶାସନ ବିରୋଧରେ ନିଆଁଗିଳା ଭାଷଣ ଦେଇଥିଲେ ସିନା ଲୋକେ ଆପଣଙ୍କୁ ବିଶ୍ୱାସ କରିଥାନ୍ତେ । ସେମାନେ ସେହିକଥା ଶୁଣିବା ପାଇଁ ଆସିଥିଲେ । କିନ୍ତୁ ଆପଣ ବିପକ୍ଷ ଦଳକୁ ଗାଳି ନଦେଇ, କଂଗ୍ରେସ ପାଇଁ ଭୋଟ ମାଗିଲେ ।''

ସେତେବେଳେ ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀର ସବୁ ବିଧାନସଭା ମଣ୍ଡଳୀ ଥାଏ ଜନତା ଦଳର ଦଖଲରେ । ତିନିଜଣ ମନ୍ତ୍ରୀ ଓ ଅନ୍ୟ ସବୁ ଏମ୍.ଏଲ୍.ଏ. । ନିର୍ବାଚନ ରଣନୀତିର ଗୋଟିଏ ଦୃଷ୍ଟାନ୍ତ ଦେଉଛି । କୌଣସି ଏକ ସଭାରେ ପ୍ରାୟ ଦଶହଜାର ଲୋକଙ୍କ ସମାବେଶ ଦେଖି ଆଶ୍ଚର୍ଯ୍ୟ ହେଲି । ସଭାପତିତ୍ୱ କରୁଥାନ୍ତି ସ୍ଥାନୀୟ ହାଇସ୍କୁଲର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ । ସାଜସଜ୍ଜା, ମଞ୍ଚ ଓ ଆଲୋକମାଳା ଦେଖି ବାରମ୍ବାର ତାଙ୍କୁ ପ୍ରଶ୍ନକଲି, ସଭାର ବ୍ୟୟ ବହନ କରିଛି କିଏ ? ଅନିଚ୍ଛା ସତ୍ତ୍ୱେ ସେ ପ୍ରକାଶ କଲେ, ''ଏ ସଭା କଂଗ୍ରେସ ଦଳ ତରଫରୁ ଡକାଯାଇ ନାହିଁ । ସ୍ଥାନୀୟ ମାଇନର ସ୍କୁଲ, ହାଇସ୍କୁଲ ଓ କଲେଜ ଛାତ୍ରମାନେ ନିଜେ ନିଜେ ଚାନ୍ଦା ଦେଇ ଏହାର ଆୟୋଜନ କରିଛନ୍ତି ।'' ତାଙ୍କ କଥା ଶୁଣି ଆଖିକୁ ଲୁହ ଆସିଲା । ଶିକ୍ଷକ ଜୀବନର ସାର୍ଥକତା ସେହି ସନ୍ଧ୍ୟାରେ ଉପଭୋଗ କଲି ।

ସଭା ଶେଷରେ, ସଭାପତି ମହୋଦୟ ମୋ ସପକ୍ଷରେ ହାତ ଉଠାଇ ସମର୍ଥନ ଜ୍ଞାପନ ଲାଗି ଅନୁରୋଧ କଲେ । ଜୟଧ୍ୱନି ମଧ୍ୟରେ ସମସ୍ତେ ହସ୍ତ ଉତ୍ତୋଳନ

କରିବା ଦେଖି ବିମୋହିତ ହେଲି । ବିଦାୟ ନେଇ କିଛି ଦୂର ଆସିଲା ପରେ ଖବର ପହଞ୍ଚିଲା, ବିପକ୍ଷ ଦଳର କେତେଜଣ କର୍ମୀ ଅଳ୍ପ ଦୂରରେ ମାଇକ୍ ଯୋଗେ ଘୋଷଣା କରୁଛନ୍ତି, ''ଭାଇମାନେ, ରାଜୀବ ଗାନ୍ଧି ବାଲେଶ୍ୱର ଲୋକଙ୍କୁ ତୁମ ଉପରେ ଲଦିଦେଲା । ସେ ଜିଣିଲେ, ବାଲେଶ୍ୱର ପାଇଁ କାମ କରିବ, ତୁମର ଲାଭ କ'ଣ ହେବ ଯେ ହାତ ଉଠାଇଦେଲ । ସେ ତୁମ ପାଇଁ କିଛି କରିବ ନାହିଁ । ତାକୁ ଭୋଟ ଦେଇ ନିଜର ମୂଲ୍ୟବାନ କାଗଜଟିକୁ ନଷ୍ଟ କରନାହିଁ ।'' ଅନ୍ୟତ୍ର ମଧ୍ୟ ଏହି ପ୍ରକାର ପ୍ରଚାର କରାଗଲା । ଏପରିକି, ଦଶପଲ୍ଲା ଅଞ୍ଚଳର ସରଳ ଲୋକମାନଙ୍କୁ କୁହାଗଲା, ''ରାଜୀବ ଗାନ୍ଧି ଦିଲ୍ଲୀରୁ ଗୋଟେ ଲୋକଙ୍କୁ ପଠାଇଦେଲା । ଭୋଟ ପରେ ତା ଭେଟ ମିଳିବ ନାହିଁ । ସେ ଦିଲ୍ଲୀରେ ରହିବ ।''

ନିର୍ବାଚନ ପ୍ରସଙ୍ଗରେ ଅଧିକ ଲେଖିବା ଉଚିତ ନୁହେଁ । ମୁଖ୍ୟ ପ୍ରସଙ୍ଗ, ଅର୍ଥାତ୍ ଟଙ୍କା, ସେ ବିଷୟରେ କିଛି ଲେଖିବି ନାହିଁ । ଶୁଣୁଥିଲି, ଅମୁକ ନିର୍ବାଚନମଣ୍ଡଳୀରେ ଅମୁକ ପ୍ରାର୍ଥୀ ପ୍ରାୟ ୨ କୋଟି ଖର୍ଚ୍ଚ କରୁଛନ୍ତି । ଶହ ଶହ ଗାଡ଼ି, ହଜାର ହଜାର କର୍ମୀ । ଚାରିଆଡ଼େ, ଘରେ ଘରେ ଟଙ୍କାର ଖେଳ । ଦିଲ୍ଲୀରୁ ମୋ ଲାଗି ଯେଉଁ ଟଙ୍କା ଆସୁଥାଏ, ତାହା ସମୁଦ୍ରକୁ ଶଙ୍ଖେ ବୋଲି କେହି କେହି କହିଲେ । ଟଙ୍କା ଆସେ, ପୁଞ୍ଜିପତି ଓ ବ୍ୟବସାୟୀଙ୍କ ଚାନ୍ଦାରୁ । କାହ୍ନୁଚରଣ ଲେଙ୍କା ସଦାବେଳେ ଅସହାୟତା ପ୍ରକାଶ କରୁଥାନ୍ତି, କ'ଣ କରିବା ! ବସନ୍ତ କୁମାର ବିଶ୍ୱାଳ ସ୍ଥାନୀୟ ନେତାମାନଙ୍କୁ ଟଙ୍କା ଦେଇ ଦେଇ ହଇରାଣ ହେଉଥାନ୍ତି । ମୋ ପାଖକୁ ଯେଉଁମାନେ ଆସୁଥାନ୍ତି, ସେମାନଙ୍କୁ ସେହିମାନଙ୍କ ପାଖକୁ ପଠାଇ ଦେଉଥାଏଁ । ମୋର କାମ ଥାଏ, ପ୍ରଭାତ ସମୟରୁ ଏକାକୀ ଖଣ୍ଡିଏ ଗାଡ଼ିରେ ବାହାରି ଯିବି ଓ ପ୍ରୋଗ୍ରାମ ଅନୁସାରେ ସଭାସମିତିରେ ଯୋଗଦେଇ ଓ ପ୍ରତିଦିନ ୧୦, ୧୫ କିଲୋମିଟର ଗାଁଗଣ୍ଡା ବୁଲି ମଧ୍ୟରାତ୍ର ବେଳକୁ ଭୁବନେଶ୍ୱର ଫେରିବି । ଆଇନ ଅନୁଯାୟୀ, ପୋଲିସ ସାହେବ ବାରମ୍ବାର ରିଭଲଭାରଧାରୀ ଦେହରକ୍ଷୀ ମୋ ସାଙ୍ଗରେ ପଠାଇବେ ବୋଲି ଜିଦ୍ ଧରିଲେ । ମୁଁ ମନାକଲି । କାରଣ, ମୋ ଦେହ ପ୍ରତି କୌଣସି ଆଶଙ୍କା ନାହିଁ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ ଥାଏ । ବିପକ୍ଷ ପ୍ରାର୍ଥୀ ଓ ସେମାନଙ୍କ ପ୍ରଚାରକମାନେ ମଧ୍ୟ ମୋତେ ସମ୍ମାନ ଦେଉଥିଲେ । କୌଣସି ଠାରେ ଅପ୍ରୀତିକର ଘଟଣା ଘଟୁ ନ ଥାଏ, କିମ୍ବା ଅଘଟନର ସମ୍ଭାବନା ନଥାଏ । ଏଠାରେ ଉଲ୍ଲେଖ କରିବା ଉଚିତ ଯେ, ବିହାର ଓ ଉତ୍ତରପ୍ରଦେଶ ପ୍ରଭୃତି ଅଞ୍ଚଳରେ ନିର୍ବାଚନବେଳେ ସଶସ୍ତ୍ର ଗୁଣ୍ଡାବାହିନୀ ଯେପରି ଉପଦ୍ରବ କରିଥାନ୍ତି, ସେପରି ବ୍ୟାଧି ଓଡ଼ିଶାକୁ ପ୍ରବେଶ କରି ନଥାଏ । 'ମନି ପାୱାର' ଅବଶ୍ୟ

କାର୍ଯ୍ୟ କରେ, କିନ୍ତୁ 'ମସଲ୍ ପାୱାର' ଆମ ରାଜ୍ୟରେ କାର୍ଯ୍ୟକାରୀ ହୁଏ ନାହିଁ ବୋଲି ମୋର ହୃଦ୍‌ବୋଧ ହୋଇଥିଲା ।

## ରାଜୀବ ଗାନ୍ଧିଙ୍କ ଅନ୍ତିମ ଦିନର ଆଗ ରାତି

ମୋ ନିର୍ବାଚନ ପ୍ରକ୍ରିୟା ଉପରେ ରାଜୀବ ଗାନ୍ଧି ପ୍ରଥମରୁ ଧ୍ୟାନ ରଖିଥିଲେ । ଅଜିତ କୁମାର ପାଞ୍ଜା, ରାଜୁ ପାରମାର ଓ ହଂସପାଲ ପ୍ରମୁଖ ନେତାମାନେ ଭୁବନେଶ୍ୱରରେ ଡେରା ପକାଇ ରହୁଥିଲେ । ଶେଷରେ ଖବର ଆସିଲା, ନିଜେ ରାଜୀବ ଗାନ୍ଧି ଜନସମାବେଶରେ ଉଦ୍‌ବୋଧନ ଦେବା ନିମନ୍ତେ ଭୁବନେଶ୍ୱର ଆସିବେ । କଂଗ୍ରେସ କମିଟି ସେଥିପାଇଁ ଯଥାଯୋଗ୍ୟ ଆୟୋଜନ କଲେ ।

ଦିନଟି ଥିଲା ୧୯୯୧ ମେ ମାସ ୨୦ ତାରିଖ ସୋମବାର । କ୍ୟାପିଟାଲ ହାଇସ୍କୁଲ ପଛରେ ବିସ୍ତୃତ ଖେଳପଡ଼ିଆରେ କାହ୍ନୁଚରଣ ଲେଙ୍କାଙ୍କ ତତ୍ତ୍ୱାବଧାନରେ ସୁସଜ୍ଜିତ ମଞ୍ଚ ତିଆରି ହେଲା । ୫୦ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ନରନାରୀ ସମବେତ ହେବେ ବୋଲି କଳନା ଥାଏ ।

ସନ୍ଧ୍ୟା ସାଢ଼େ ୭ଟାରେ ସ୍ୱତନ୍ତ୍ର ବିମାନ ଯୋଗେ କଂଗ୍ରେସ ସଭାପତି ଭୁବନେଶ୍ୱର ବିମାନଘାଟିରେ ପହଞ୍ଚିବା କଥା । ଅଦିନିଆ ଅସ୍ରାଏ ବର୍ଷା ହେଉଥାଏ । ବିଭିନ୍ନ ସ୍ଥାନରୁ ଆସିଥିବା କଂଗ୍ରେସ କର୍ମୀମାନେ ଭର୍ତ୍ତିଥାନ୍ତି । ଦୁଇଜଣ ନାତୁଣୀଙ୍କ ହାତରେ ଦୁଇଟି ଗୋଲାପ ଫୁଲ ଧରାଇ ସ୍ୱାଗତ କରିବା ଲାଗି ପହଞ୍ଚିଲି । ନିରାପତ୍ତାରକ୍ଷୀମାନେ ଅବତରଣ ସ୍ଥାନଟିକୁ ଘେରି ରହିଥାନ୍ତି । ବିମାନ ପର୍ଯ୍ୟନ୍ତ ଯିବା ପାଇଁ ପ୍ରାର୍ଥୀ ଭାବରେ କେବଳ ମୋତେ ଛଡ଼ାଗଲା । ବୋହୂ ରଞ୍ଜିତାକୁ ଦୂରରେ ଛିଡ଼ା କରାଇ, ନାତୁଣୀ ବିଦିଶା ଓ ସତ୍ୟଶ୍ରୀର ହାତ ଧରି ଯଥାସ୍ଥାନରେ ଅପେକ୍ଷା କଲି । ବର୍ଷା ଛାଡ଼ିଯାଇଥାଏ ।

୮ଟା ସମୟରେ ରାଜୀବ ଗାନ୍ଧି ବିମାନରୁ ତଳକୁ ଆସିଲାମାତ୍ରେ ମୋତେ 'ଦାସଜୀ' ବୋଲି ସମ୍ବୋଧନ କରି ଦୁଇ ନାତୁଣୀ ହାତରୁ ଫୁଲ ଧରିନେବା ସଙ୍ଗେ ସେମାନଙ୍କ ମୁଣ୍ଡ ଉପରେ ଦୁଇ ତିନିଥର ଚୁମ୍ବନ ଦେଲେ । ପୋଲିସ ଘେର ଭାଙ୍ଗି କର୍ମୀମାନେ ସ୍ୱାଗତ କରିବା ଲାଗି ମାଡ଼ିଆସିବେ ଜାଣି ମୁହୂର୍ତ୍ତ ମଧ୍ୟରେ ଛୁଆ ଦୁଇଟିକୁ ନିଜ ହାତରେ ଟାଣିନେଇ ଇଞ୍ଜିନ ସେପାଖରେ ଅପେକ୍ଷା କରିଥିବା ସେମାନଙ୍କ ମା ପାଖରେ ଛାଡ଼ିଦେଇ କହିଲେ, "ଭାଗ୍ ଜାଇୟେ, ଭାଗ୍ ଜାଇୟେ, ସବ୍ ଲୋକ୍ ଆ ଜାୟେଙ୍ଗେ ।" ମୋତେ କହିଲେ, "You please go to the meeting. I am coming." ସତକୁ ସତ, ଘେର ଭାଙ୍ଗି ଅସଂଖ୍ୟ ଲୋକ 'ରାଜୀବ ଗାନ୍ଧି ଜିନ୍ଦାବାଦ୍' ଧ୍ୱନି ଦେଇ ଦୌଡ଼ି ଆସିଲେ ।

ସଭାସ୍ଥଳରେ ପହଞ୍ଚିଲା ବେଳକୁ ବର୍ଷା ନ ଥାଏ । କିନ୍ତୁ ପ୍ରତିକୂଳ ପାଣିପାଗ ଯୋଗୁଁ ଅନେକ ଲୋକ ଚାଲିଯାଇଥାନ୍ତି । ତଥାପି ପ୍ରାୟ ଚାଳିଶ ହଜାର ନରନାରୀ । ଦଶ ମିନିଟ ମଧ୍ୟରେ ରାଜୀବ ଗାନ୍ଧି ମଞ୍ଚ ଉପରକୁ ଉଠିଲେ । କିଛି ସମୟ ପାଇଁ ଅସଂଖ୍ୟ କଣ୍ଠରୁ ଜୟଧ୍ୱନି ଲାଗିରହିଲା । ଜନତାର ଅନୁମତି ନେଇ ଇଂରାଜୀରେ ତାଙ୍କୁ ସ୍ୱାଗତ କଲାବେଳେ ମୁଁ କହିଲି, "I welcome you on behalf of the people of this holy city of Bhubaneswar, and the people of the heroic areas of Khurdha, Jatni, Bolgarh, Begunia, Nayagarh, Khandapara and Daspalla. While Bhubaneswar is the abode of Lord Lingaraj and a city of temples, the other regions were the homeland of ancient and medieval Orissa's brave warriors who defended an empire that extended from the Ganges to the Godavari and beyond. I am proud to be your candidate from this prestigious parliamentary constituency of Orissa." ଏହାପରେ କିଛି ସମୟ ଓଡ଼ିଆରେ କହି ମୁଁ ଚେୟାରରେ ବସିପଡ଼ିଲି । ତତ୍‌କ୍ଷଣାତ୍ ସେ ହାତଧରି ମୋତେ ଆସନରୁ ଉଠାଇ ତାଙ୍କ ନିକଟରେ ଛିଡ଼ା କରାଇ ରଖିଲେ ।

ଘନ ଘନ ହର୍ଷଧ୍ୱନି ଓ କରତାଳି ମଧ୍ୟରେ ରାଜୀବ ଗାନ୍ଧି ୩୦ ମିନିଟ ସମୟ ହିନ୍ଦୀରେ ଭାଷଣ ଦେଲେ । ଶ୍ରୋତାମାନଙ୍କୁ ବୁଝାଇବା ଶକ୍ତି ତାଙ୍କର ଥାଏ । ତାଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱ ପ୍ରତି ଲୋକଙ୍କର ଯଥେଷ୍ଟ ସମ୍ମାନ ଥିବା ଜାଣିହେଉଥାଏ । ଆଗାମୀ ୫ ବର୍ଷ ନୁହେଁ, ୧୫ ବର୍ଷ ମଧ୍ୟରେ ଭାରତର ରୂପ ପରିବର୍ତ୍ତନ ନିମନ୍ତେ ଯେଉଁ ପ୍ରକାର ଯୋଜନାର ଆବଶ୍ୟକତା ରହିଛି, ସେଥି ସମ୍ବନ୍ଧରେ ସେ ସୂଚନା ଦେଇଗଲେ ।

ସଭାସ୍ଥଳରୁ ତାଙ୍କ ସାଙ୍ଗରେ ରାଜ୍ୟ ଅତିଥି ଭବନରେ ପହଞ୍ଚିଲି । ରାତି ୧୦ଟା, ନିଭୃତ କକ୍ଷ ମଧ୍ୟରେ ଇଂରାଜୀ ଓ ହିନ୍ଦୀରେ କଥାବାର୍ତ୍ତା ହେଲା । ପ୍ରଥମେ ସେ ପଚାରିଲେ, "ମୋତେ ଭୁବନେଶ୍ୱର ସହରକୁ ସ୍ୱାଗତ କଲାବେଳେ ଅନ୍ୟ କେତେକ ସ୍ଥାନର ନାମ କହିଲେ କାହିଁକି ?" ମୁଁ ବୁଝାଇଦେଲି, ଭୁବନେଶ୍ୱର ସହର ଦିଲ୍ଲୀ, କଲିକତା କିମ୍ବା ବୋମ୍ବେ ପରି ସୁବିଶାଳ ନୁହେଁ ଯେ ସହର ଭିତରେ ଅନେକ ଗୁଡ଼ାଏ ଲୋକସଭା ନିର୍ବାଚନମଣ୍ଡଳୀ ରହିଥିବ । ଅପର ପକ୍ଷେ, ଭୁବନେଶ୍ୱର ହେଉଛି ସାତଗୋଟି ବିଧାନସଭା ନିର୍ବାଚନମଣ୍ଡଳୀକୁ ନେଇ ଗଠିତ ଥିବା ଲୋକସଭା ନିର୍ବାଚନ ମଣ୍ଡଳୀର ଗୋଟିଏ ଅଂଶ ମାତ୍ର ।

"I thought this city is a parliamentary constituency by itself. I feel sorry, you have to cover such an extensive area," ସେ ଚିନ୍ତା ପ୍ରକଟ କଲେ ।

ତାଙ୍କ ଆଖିରେ ସମ୍ବେଦନାର ଆଭାସ ଦେଖି ମୁଁ କହିଲି, "Rajivji, you have reduced my age from 67 to 27, and I am moving through the whole area."

ସେ ହସି ହସି ଅନ୍ୟ କଥା ଆରମ୍ଭ କଲେ । ତାଙ୍କ ପ୍ରଶ୍ନଗୁଡ଼ିକରୁ ସୂଚନା ପାଇଲି, ମୋ ପ୍ରତି ଜନସମର୍ଥନ ଥିବା ବିଷୟ ସେ ଅଜିତ୍ ପାଞ୍ଜା କିମ୍ବା ପାରମାରଙ୍କ ପାଖରୁ ଶୁଣିଛନ୍ତି । କିନ୍ତୁ ହଠାତ୍ କହିଲେ, "I know, some of our own men are not happy with your nomination. But I shall see to it."

ସାହସ କରି ପଚାରିଦେଲି, "Rajivji, how could you give your trust to this humble man ?"

ଈଷତ୍ ହସିଦେଇ କଂଗ୍ରେସ ସଭାପତି ମାତ୍ର ଏତକ କଥା କହିଲେ, "I may have my own reasons."

ଘଡ଼ିକୁ ଚାହିଁଲି । ୧୦ଟା ୩୫ ମିନିଟ । କହିଲି, "Sir, it is time to take rest." ପ୍ଲେଟ୍‌ରେ ଥିବା ଅଙ୍ଗୁର ପେଣ୍ଡାରୁ ଗୋଟିଏ ଉଠାଇ ପାଟିରେ ରଖିଲେ । ଉଦାସ ଭାବରେ ଚାହିଁରହି କହିଲେ, "What rest ! So many people are waiting outside. I have to see them each and all."

ଉଠିପଡ଼ି ମୁଁ ଅନୁରୋଧ କଲି, "Kindly permit me to take leave of you. I may not come to see you off at the airport tomorrow morning."

ଚେୟାରରୁ ଉଠି ସେ ଏହି କଥାଟି କହିଥିଲେ, "I hate the people who come to see me off. You go ahead with your programme. There is no time to waste."

ଦରଜା ପର୍ଯ୍ୟନ୍ତ ମୋତେ ବିଦାୟ ଦେବାକୁ ଆସି ସେ ସହାସ୍ୟ ବଦନରେ କହିଲେ, "Hope to see you in Delhi."

କିଏ ଜାଣିଥିଲା, ମଧ୍ୟଯୁଗର ମୁସଲମାନ ସିଦ୍ଧପୁରୁଷ ନିଜାମଉଦ୍ଦୀନ ଆଉଲିଆଙ୍କ ସେହି ପ୍ରସିଦ୍ଧ ଉକ୍ତି—"ହାନୁଜ୍ ଦିଲ୍ଲୀ ଦୂର ଆସ୍ତ" ବା ଦିଲ୍ଲୀ ଏବେ ବି ବହୁତ

ଦୂର– ରାଜୀବ ଗାନ୍ଧିଙ୍କ କପାଳରେ ନିୟତି ଲେଖିରଖିଥିଲା ! ତହିଁ ପରଦିନ ଏତେବେଳକୁ ସେ ଇହଧାମରେ ନଥାନ୍ତି !

ରାଜୀବଙ୍କ କକ୍ଷରୁ ବାହାରି ଆସି ଦେଖିଲି ବାହାରେ ଅନେକ ଲୋକ । ଅତିଥି ଭବନର ଉପର ଓ ତଳ କରିଡରରେ ନେତା ଓ କର୍ମୀମାନଙ୍କ ଭିଡ଼ ଲାଗିଥାଏ । ରାଜୁ ପାରମାରଙ୍କ ଠାରୁ ପରେ ଶୁଣିଲି, ସେ ଦିନ ରାତି ୧ଟା ପର୍ଯ୍ୟନ୍ତ ସେ ଲୋକମାନଙ୍କୁ ସାକ୍ଷାତ ଦେଲେ ଓ ତା ପରେ, ଅତିଥି ଭବନର ଛାତ ଉପରେ ଏକାକୀ କିଛି ସମୟ ପଦଚାରଣ କରିଥିଲେ ।

## ମେ ୨୧ ରାତ୍ରିର ମର୍ମାନ୍ତିକ ସମ୍ବାଦ

୨୧ ତାରିଖ ପ୍ରଭାତରେ ଖଣ୍ଡପଡ଼ା ଅଞ୍ଚଳକୁ ପ୍ରଚାର ଲାଗି ବାହାରିଗଲି । ସକାଳ ପାଖରୁ ସନ୍ଧ୍ୟା ପର୍ଯ୍ୟନ୍ତ କର୍ମୀମାନଙ୍କ ଗହଣରେ ଗାଁଗଣ୍ଡା ବୁଲି ବୁଲି ଓ ଦୁଇଟି ସାଧାରଣ ସଭାରେ ଭାଷଣ ଦେଇ, ଶେଷରେ ୬ଟା ବେଳେ କଣ୍ଟିଲୋ ଠାରେ ଆୟୋଜିତ ବଡ଼ ଧରଣର ସମାବେଶରେ ଯୋଗଦେଲି । ୭ଟାରେ ସଭା ଭଙ୍ଗ ହେଲା । ଉଦ୍ୟୋକ୍ତାମାନେ ସେଠାରେ ରାତି ବିତାଇବା ପାଇଁ ଅନୁରୋଧ କଲେ । କିନ୍ତୁ ମୁଁ ଭୁବନେଶ୍ୱର ଫେରିଆସିଲି ।

ଘରେ ପହଞ୍ଚିଲା ବେଳକୁ ରାତି ୧୦ଟା ୨୦ ମିନିଟ୍ । ହାତଗୋଡ଼ ଧୋଇ ଖାଇବସିଲି । ଦେହରେ ବଳ ନ ଥାଏ । ରୁଟି ଖଣ୍ଡିଏ ପାଟିରେ ଦେଲାବେଳକୁ ଫୋନ୍ ବାଜିଉଠିଲା । ଉଠାଇଲି । ରାତି ୧୦ଟା ୪୦ ମିନିଟ୍ ।

"ଭାଇ, ମୁଁ ମନୋଜ କହୁଛି, ପଣ୍ଡିଚେରୀରୁ । ଗୋଟିଏ ଦାରୁଣ ଦୁଃସମ୍ବାଦ ଦେବି । ରାଜୀବ ଗାନ୍ଧି ମାନ୍ଦ୍ରାଜ ଠାରୁ କିଛିଦୂରରେ ଶ୍ରୀପେରୁମ୍ବୁଦୁର ଠାରେ ବୋମା ବିସ୍ଫୋରଣରେ ପ୍ରାଣ ହରାଇଛନ୍ତି, ମାତ୍ର ଅଳ୍ପ ସମୟ ପୂର୍ବେ । ମାନ୍ଦ୍ରାଜର ମେୟର ସେଠାରେ ଥିଲେ । ଫୋନ୍ ଯୋଗେ ମୋତେ ଜଣାଇଦେଲେ । ମୁଁ ବିଶ୍ୱାସ କଲି ନାହିଁ । କିନ୍ତୁ, ବର୍ତ୍ତମାନ ବି.ବି.ସି.ରୁ ସମ୍ବାଦ ଶୁଣି ଜଣାଇଦେଉଛି ।"

ମାତ୍ର ୨୪ ଘଣ୍ଟା ପୂର୍ବେ ଯାହାଙ୍କ ପାଖରେ ଥିଲି, ସେ ଆଉ ନାହାନ୍ତି । ଖାଇବା ଥାଳି ଠେଲିଦେଇ ଦୁଃଖରେ ମୋତେ ବସିପଡ଼ିବା ଦେଖି ସ୍ତ୍ରୀ, ଝିଅ, ପୁଅ, ବୋହୂ ଓ ନାତି ନାତୁଣୀମାନେ ପାଖକୁ ଦୌଡ଼ିଆସିଲେ । ବ୍ୟଥିତ ଚିତ୍ତରେ ସେମାନଙ୍କୁ ଜଣାଇଲି, "ରାଜୀବ ଗାନ୍ଧି ଆଉ ସଂସାରରେ ନାହାନ୍ତି । ଶତ୍ରୁମାନେ ତାଙ୍କୁ ମାରିଦେଇଛନ୍ତି ।" ବିକଳ ଭାବରେ ସେମାନେ କାନ୍ଦି ଉଠିଲେ । ଚାରି ବର୍ଷର ସାନ ନାତୁଣୀଟା ପଚାରିଲା, "କାଲି 'ଯା' ଙ୍କୁ ଫୁଲ ଦେଇଥିଲି, ସେଇ ମରିଗଲେ ?" "ହଁ, ସେହି ରାଜୀବ ଗାନ୍ଧି !"

କିଛି ଦିନ ପରେ ପାରମାର ମୋତେ ଗୋଟିଏ ଅଦ୍ଭୁତ କଥା କହିଥିଲେ । ମୃତ୍ୟୁ ପୂର୍ବଦିନ ରାତିରେ ରାଜ୍ୟ ଅତିଥି ଭବନ ଛାତରେ ଏକାକୀ ବୁଲି ବୁଲି ବିଳମ୍ବିତ ପ୍ରହରରେ ରାଜୀବ ଶୋଇବା ପାଇଁ ଆସିଲା ପରେ, ପାରମାର ଶେଷ ବ୍ୟକ୍ତି ଭାବେ ଦେଖା କଲାବେଳେ, କାଗଜ ଟୁକୁରାଟିରେ ଅଳ୍ପ କେତୋଟି ଶବ୍ଦ ଲେଖି ତାଙ୍କ ହାତକୁ ବଢ଼ାଇ ଦେଲେ–"My advice is not to go to the South." ରାଜୀବ ଗାନ୍ଧି ପଢ଼ିଲେ ଓ ଶୂନ୍ୟ ଦୃଷ୍ଟିରେ ଚାହିଁ ରହି କହିଥିଲେ, "I can understand your fear." ପାରମାରଙ୍କ କଥାରେ, ସେହି ମୁହୂର୍ତ୍ତର ତାଙ୍କର ସେହି ଚାହାଣି ଅସ୍ୱାଭାବିକ ଦିଶିଥିଲା, କାରଣ ସେପରି କରୁଣ ଚାହାଣି ସେ ପୂର୍ବେ କେବେ ଦେଖି ନଥିଲେ !

## ନିର୍ବାଚନରେ ପରାଜୟର ଆନନ୍ଦ

ନିର୍ବାଚନ ପ୍ରସଙ୍ଗ ଆଉ ବଢ଼ାଇବା ଅନାବଶ୍ୟକ । ରାଜୀବ ଗାନ୍ଧିଙ୍କ ମୃତ୍ୟୁ ଯୋଗୁଁ ଭୋଟ ତାରିଖ ୩ ସପ୍ତାହ ଘୁଞ୍ଚିଗଲା । ତା ଭିତରେ, ପ୍ରଚାରକାର୍ଯ୍ୟ ଲାଗି ମୋର ଆଉ ଆଗ୍ରହ ଆସିଲା ନାହିଁ । ଯେଉଁ ବ୍ୟକ୍ତି ମୋତେ ରାଜନୀତିକୁ ଟାଣିନେଇଥିଲେ, ତାଙ୍କ ଅକାଳ ବିୟୋଗରେ ହତାଶ ବୋଧ କଲି । ଜଣେ କଂଗ୍ରେସ ରାଜନେତାଙ୍କ ବାକ୍ୟଟି ମୋ କାନରେ ପଡ଼ିଲା, "Rajiv Gandhi is dead, let his candidate meet his political death." ତାଙ୍କ କାନ ପାଖକୁ ମୋର ବାର୍ତ୍ତା ଥିଲା, "ଯାହାର ରାଜନୈତିକ ଜୀବନ ନଥିଲା, ତା'ର ରାଜନୈତିକ ମୃତ୍ୟୁ କାମନା ନିରର୍ଥକ ।"

ନବନିର୍ବାଚିତ କଂଗ୍ରେସ ସଭାପତି ପି.ଭି. ନରସିଂହ ରାଓ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ତାଙ୍କ ପ୍ରଚାର ଅଭିଯାନ ଆରମ୍ଭ କରିବେ ବୋଲି ଖବର ଆସିଲା । ସହରର ଉପକଣ୍ଠରେ ତମାଣ୍ଡୋ ନାମକ ସ୍ଥାନରେ ଜନସମାବେଶ ପାଇଁ ଆୟୋଜନ ଚାଲିଲା । କିନ୍ତୁ ଶେଷମୁହୂର୍ତ୍ତରେ ପ୍ରୋଗ୍ରାମ ବଦଳ ହେଲା । ସେ କଟକ ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ଜାନକୀବାବୁଙ୍କ ପାଇଁ ବାରବାଟି କିଲ୍ଲା ମଇଦାନରେ ଭାଷଣ ଦେବେ ବୋଲି ନିଷ୍ପତ୍ତି ନେଲେ । ଭୁବନେଶ୍ୱର ବିମାନଘାଟିରେ ତାଙ୍କୁ ସ୍ୱାଗତ କଲାବେଳେ ମନକୁ ଦୁଃଖ ଆସିଲା, କାହିଁ କଂଗ୍ରେସ ସଭାପତି ରାଜୀବ ଗାନ୍ଧି, କାହିଁ ତାଙ୍କ ବିକଳ୍ପ ନରସିଂହ ରାଓ !

ନିର୍ବାଚନ ଫଳ ପ୍ରକାଶ ପାଇଲା । ୨ ଲକ୍ଷ ୭ ହଜାର ଭୋଟ ପାଇଲି । ଆଉ ମାତ୍ର ୪ ହଜାର ଭୋଟ ପାଇଥିଲେ ନିର୍ବାଚିତ ହୋଇଥାନ୍ତି । କିନ୍ତୁ, ଭୁବନେଶ୍ୱର ସହରର ସହସ୍ର ସହସ୍ର ସଂଖ୍ୟକ କଂଗ୍ରେସ ଭୋଟଦାତା ବୁଥ୍ ନମ୍ବର ଜାଣିବା ଲାଗି ଚିରକୁଟ ପାଇଲେ ନାହିଁ । ଭିତରେ ଥାଏ ନିଗୂଢ଼ ରହସ୍ୟ ।

ଫଳ ଜାଣିଲାକ୍ଷଣି ପୁଅକୁ କହିଲି, "This is the happiest moment of my life !" ସ୍ତ୍ରୀ, ଝିଅ ଓ ବୋହୂ ମନକଷ୍ଟ କରିବା ଦେଖି ସେମାନଙ୍କୁ ଏହି କଥା କହିଥିଲି:

ଯେଉଁ ମହାନ ନେତା ପ୍ରଧାନମନ୍ତ୍ରୀ ହୋଇଥାନ୍ତେ, ସେ ଅକାଳରେ ନିହତ ହେଲେ । ସେପରି ମର୍ମନ୍ତୁଦ ଦୁଃଖ ତୁଳନାରେ ମୋ ପରି ନଗଣ୍ୟ ବ୍ୟକ୍ତିର ପରାଜୟ ଅତ୍ୟନ୍ତ ଗୋଟିଏ ଛାର ଘଟଣା । ଗାନ୍ଧି ପରିବାରର ଅଗାଧ ଶୋକ ତୁଳନାରେ, ତୁମର ଦୁଃଖ ବୋଲି କିଛି ଥାଇ ପାରେନା ।

ପରାଜୟ ସମ୍ବାଦ ପାଇ ଦିନକ ମଧ୍ୟରେ ମନୋଜ ପଣ୍ଡିଚେରୀରୁ ସାନ୍ତ୍ୱନା ଦେବାକୁ ଆସି ଦେଖିଲାବେଳକୁ ମୁଁ ପରମ ଆତ୍ମସନ୍ତୋଷ ଉପଭୋଗ କରୁଛି ।

କିନ୍ତୁ ସହସା ଅନ୍ୟ ଏକ ବିପଦ ଆସିଗଲା । ବିଲ୍ ପରେ ବିଲ୍ । ସର୍ବମୋଟ ୨ ଲକ୍ଷ ୧୧ ହଜାର । ରାଜୀବ ଗାନ୍ଧିଙ୍କ ତିରୋଧାନ ପରେ ସୋନିଆ ଗାନ୍ଧି ତାଙ୍କ ସ୍ୱାମୀଙ୍କ ମନୋନୀତ ପ୍ରାର୍ଥୀଙ୍କୁ ସାହାଯ୍ୟ କରିବା ଲାଗି କାହ୍ନୁଚରଣ ଲେଙ୍କାଙ୍କ ହାତରେ ମୋ ଘରକୁ ଏକ ଲକ୍ଷ ଟଙ୍କା ପଠାଇଦେଇଥିଲେ । କାହ୍ନୁବାବୁଙ୍କ ସ୍ତ୍ରୀ ଗୋପନରେ ମୋ ସ୍ତ୍ରୀଙ୍କୁ ତାହା ଦେଇଯାଇଥିଲେ । ଫେରାଇ ଦେଲେ, ସୋନିଆଙ୍କ ମନରେ ଆଘାତ ଲାଗିବ ଅନୁମାନ କରି, ନିର୍ବାଚନ ଜିଣିଲା ପରେ ତାଙ୍କ ପାଖରେ ଦେଇଆସିବି ବୋଲି ଭାବିଥିଲି । କିନ୍ତୁ ଜଣେ ନିଃସ୍ୱ ପରାଜିତ ପ୍ରାର୍ଥୀ ପକ୍ଷରେ ତାହା ସମ୍ଭବ ହେଲାନାହିଁ । ସେତକ ଟଙ୍କା ସହ ବାକି ଟଙ୍କା କରଜ କରି ନିର୍ବାଚନ ଋଣ ପରିଶୋଧ କଲି । ଲକ୍ଷ ସଂଖ୍ୟାର ପ୍ରଚାର ପତ୍ର ମୁଦ୍ରଣ, ରଙ୍ଗିନ ପୋଷ୍ଟର ଛପା, ପ୍ରଚାର ଅଫିସ ଖର୍ଚ୍ଚ, କଟ୍ ଆଉଟ୍ ଇତ୍ୟାଦିର ବିଲ୍ ପରାଜିତ ପ୍ରାର୍ଥୀଙ୍କୁ ଦେବାକୁ ପଡ଼ିଲା । ବନ୍ଧୁମାନେ କହିଲେ, କଂଗ୍ରେସ ପାର୍ଣ୍ଣି କିମ୍ବା ଦାତାମାନଙ୍କ ଚାନ୍ଦା ହସ୍ତଗତ କରିଥିଲେ, ଏପରି ଦୁର୍ଦ୍ଦଶା ଭୋଗି ନଥାନ୍ତି କିମ୍ବା ନିର୍ବାଚନରେ ହାରି ନଥାନ୍ତି ! ପରେ ପରେ ଶୁଣିବାକୁ ପାଇଲି, ଅନେକ ସ୍ଥାନରେ ସ୍ଥାନୀୟ କଂଗ୍ରେସ କର୍ମୀମାନେ ମୋ ପାଇଁ ନିଜ ହାତରୁ ଅନେକ ଟଙ୍କା ଖର୍ଚ୍ଚ କରିଥିଲେ । ଏପରିକି, ଖଣ୍ଡପଡ଼ାର ଜଣେ ବ୍ୟକ୍ତି ନିଜ ମୋଟର ସାଇକେଲ୍ ବିକ୍ରିକରି ପ୍ରଚାର ଖର୍ଚ୍ଚ ତୁଲାଇ ଥିଲେ ।

ନିର୍ବାଚନ ସ୍ମୃତିରେ ରହିଗଲା ଗଭୀର କୃତଜ୍ଞତା ଓ ଦାରୁଣ ମନସ୍ତାପ !

## ରାଜନୀତିରୁ ବିଦାୟ ପ୍ରସଙ୍ଗ

ସପ୍ତାହକ ମଧ୍ୟରେ ଦିଲ୍ଲୀ ଯାଇ ପ୍ରଥମେ ସୋନିଆ ଗାନ୍ଧିଙ୍କ ବାସଭବନକୁ ଗଲି । କିନ୍ତୁ ସାକ୍ଷାତ ଲାଗି ଆବେଦନ କଲିନାହିଁ । ପ୍ରିୟଙ୍କା ଓ ରାହୁଲଙ୍କ

ଲାଗି ମୋର ଦୁଇଖଣ୍ଡ ବହି ଉପହାର ଦେଇ ଫେରିଆସିଲି । ଗାନ୍ଧି ପରିବାରର ନିକଟତମ ଜଣେ ବ୍ୟକ୍ତି ସେତେବେଳେ ମୋତେ କହିଥିଲେ, "ଆପଣ ରାଜୀବଜୀଙ୍କ ଲୋକ । ଆମେ ଆପଣଙ୍କ ଲାଗି ଯଥାଯୋଗ୍ୟ ପଦପଦବୀ ବନ୍ଦୋବସ୍ତ କରିବୁଁ । କଂଗ୍ରେସ ରାଜନୀତିରେ ଆପଣଙ୍କୁ ରହିବାକୁ ହେବ ।" ତାଙ୍କୁ ବିନୀତ ଅନୁରୋଧ ଜଣାଇଲି, ଦୟାକରି ମୋତେ ରାଜନୀତିରୁ ବିଦାୟ ଦିଅନ୍ତୁ । କୌଣସି ନିଯୁକ୍ତି ପ୍ରତି ମୋର ଆଗ୍ରହ ନାହିଁ । "ଗଭର୍ଣ୍ଣର ବା ଲେଫ୍‌ଟନ୍ୟାଣ୍ଟ ଗଭର୍ଣ୍ଣର ?" "ନା" ।

ଜଣକ ପରେ ଜଣେ ତୁଙ୍ଗ ନେତାଙ୍କୁ ଭେଟି ରାଜନୀତି ପ୍ରତି ପ୍ରଣାମ ଜଣାଇ ସେଥିରୁ ମୁକ୍ତିଲାଭ କଲି ବୋଲି ଦୃଢ଼ ଭାବରେ ଘୋଷଣା କଲି । ମନ୍ତ୍ରୀ ଅଜିତ କୁମାର ପାଞ୍ଜା କହିଲେ, "ତା ହେବନାହିଁ । ଅଳ୍ପ କେତୋଟି ଭୋଟରେ ହାରିଗଲେ । ଆଗାମୀ ପାଇଁ ପ୍ରସ୍ତୁତ ରହନ୍ତୁ । ନିଜର ନିର୍ବାଚନ ମଣ୍ଡଳୀର ନର୍ସିଂ କରନ୍ତୁ ।"

"ନର୍ସିଂ କିପରି କରିବି ?" ପଚାରିଲି ।

"ବନ୍ୟା ହେଲା, ସଙ୍ଗେ ସଙ୍ଗେ ଟ୍ରକ୍‌ରେ କପଡ଼ା ନେଇ ବାଣ୍ଟିବେ । ଗାଁ ପୋଡ଼ିଗଲା, ଘର ଘର ଯାଇ ସାହାଯ୍ୟ ଦେବେ । ତୋଫାନରେ ଲୋକଙ୍କ ଘର ଉଡ଼ିଗଲା, ଛପର ପାଇଁ ଟଙ୍କା ଦାନ କରିବେ ।"

"ଟଙ୍କା କେଉଁଠାରୁ ପାଇବି ?"

"ଆପଣ କଂଗ୍ରେସର ଜଣେ ସିନିଅର ନେତା ! ଫୋନ୍ କରିବେ, ବୋଧରାଜ, ଟଙ୍କା ଦରକାର; ସରାଫ୍ ଟଙ୍କା ପଠାଅ । ଯେକୌଣସି ଶିଳ୍ପପତି ପାଖରୁ ଟଙ୍କା ଆସିଯିବ ।"

ଏହି ପରାମର୍ଶ ପରେ ମାନ୍ୟବର ଅଜିତ ପାଞ୍ଜାଙ୍କ ପ୍ରସିଦ୍ଧ ବାକ୍ୟଟି ଥିଲା, "ଟାକା ନିତେ ହବେ, ଟାକା ଦିତେ ହବେ, ଆର୍ ଟାକା ରାଖ୍‌ତେ ହବେ ।"

ପ୍ରଶ୍ନ କଲି, "ନିତେ ହବେ, ଦିତେ ହବେର ମାନେ ବୁଝଲାମ୍ । ତବେ ରାଖ୍‌ତେ ହବେ କେନ ?"

ହସି ହସି ପାଞ୍ଜା ମହୋଦୟ ଉତ୍ତର ଦେଲେ, "ନିଜେର କାଛେ ଟାକା ନା ଥାକ୍‌ଲେ, ରାଜନୀତି କରା ହୟନା । ଗାଡ଼ି, ଡ୍ରାଇଭାର, କର୍ମଚାରୀ, ରାଖ୍‌ତେ ହବେ । ଅନୁଗତ କର୍ମୀ ଦିଗ୍‌କେ କିଛୁ କିଛୁ ନା ଦିଲେ ଚଲବେ ନା । କଥାୟ ଆଛେ, 'ପୃଥିବୀଟା ଟାକାର୍ ବଶ୍' । ବୁଝ୍‌ଲେନ୍ ?"

ଦିନେ ପହଞ୍ଚିଲି ହଂସପାଲଙ୍କ ଘରେ । ପଞ୍ଜାବୀ ଶିଖ୍ ନେତା । ମୋ ନିର୍ବାଚନ ବେଳେ ଭୁବନେଶ୍ୱର ଆସିଥିଲେ ଓ ମୋର ଖଣ୍ଡିଏ ବହି ମାଗିଥିଲେ । ଗେଟ୍

ପାଖରୁ ରୁଦ୍ଧ କକ୍ଷର ଦ୍ୱାରଦେଶ ପର୍ଯ୍ୟନ୍ତ ସିକ୍ୟୁରିଟି ଗାର୍ଡ । ତାଙ୍କ ଦୁଇ ପାଖରେ ବସିଥାନ୍ତି ଆଠ ଦଶ ଜଣ ଶିଖ ଭଦ୍ରଲୋକ । ବହି ବଢ଼ାଇଦେଇ ବାହାରି ଆସିଲି । ମୋ ପଛେ ପଛେ ଚାରିଜଣ ଶିଖ୍ ବାହାରି ଆସିଲେ ।

ବାରଣ୍ଡାକୁ ଆସିଲା ପରେ ଜଣେ ସର୍ଦ୍ଦାରଜୀ ମୋର ଭିଜିଟିଂ କାର୍ଡ ମାଗିଲେ । କାର୍ଡ ନଥାଏ । ତେଣୁ, ବ୍ୟାଗ୍ ଭିତରୁ ରାଇଟିଂ ପ୍ୟାଡ୍ ବାହାର କରିବା ଲାଗି ଚେୟାରରେ ବସିପଡ଼ିଲି । ଚାରିବନ୍ଧୁ ପାଖରେ ବସିଯାଇ ଚା ଅର୍ଡାର କଲେ । ପ୍ୟାଡ୍‌ରୁ ପୃଷ୍ଠାଟିଏ କାଢ଼ି ପ୍ରଥମ ସର୍ଦ୍ଦାରଙ୍କୁ ଧରାଇଦେଲି । ବୟସ୍କ ବ୍ୟକ୍ତି, ପରିପକ୍ୱ ଦାଢ଼ି । ସମସ୍ତେ ଥାନ୍ତି ପୋଖତ୍ ପଞ୍ଜାବୀ ରାଜନୀତିଜ୍ଞ ।

କାଗଜ ଖଣ୍ଡିକ ଦେଖିବାକ୍ଷଣି ସର୍ଦ୍ଦାରଜୀ ମୋ ନାମ ପାଖରେ ଲେଖାଥିବା ଡିଗ୍ରୀଗୁଡ଼ିକ ଉଚ୍ଚସ୍ୱରରେ ଅନ୍ୟମାନଙ୍କୁ ଶୁଣାଇଦେଲେ ଏମ୍.ଏ., ପିଏଚ୍.ଡି., ଡି.ଲିଟ୍ । ତା ପରେ ଆରମ୍ଭ ହେଲା ତାଙ୍କର ପ୍ରଶ୍ନ, ମୋର ଉତ୍ତର; ମୋର ପ୍ରଶ୍ନ, ତାଙ୍କର ଉତ୍ତର । ଚା ପାନ ଚାଲିଥାଏ । ସର୍ଦ୍ଦାରଜୀଙ୍କ ବ୍ୟଙ୍ଗପୂର୍ଣ୍ଣ ବାକ୍ୟଗୁଡ଼ିକ ମଧ୍ୟରେ ରହିଥାଏ ଭାରତୀୟ ରାଜନୀତିଜ୍ଞମାନଙ୍କ ମହାର୍ଘ ପରିଚୟ !

ସର୍ଦ୍ଦାରଜୀ : ''ଆପନେ ବି.ଏ. ପାଶ୍ କିୟା ?''

ମୁଁ : ''ବି.ଏ. ପାଶ୍ ନେହି କରନେ ପର୍, ଏମ୍.ଏ. କେଇସେ ହୋଗା ?''

ସର୍ଦ୍ଦାର : ''ମେରା ମତ୍‌ଲବ୍, ପଲିଟିକ୍ସ୍ କରନେ କେ ଲିୟେ ବି.ଏ. ପଢ଼ା ?''

ପ୍ରଶ୍ନର ଉତ୍ତର ବୁଝି ନପାରି ନିରୁତ୍ତର ରହିଲି । ତେଣୁ ସେ ବ୍ୟାଖ୍ୟା କଲେ ।

ସର୍ଦ୍ଦାର : ''ପଲିଟିକ୍ସ କରନେ କେ ଲିୟେ ପହ୍‌ଲେ 'ଝୁଟ୍ ବିଦ୍ୟା' ମେ ଗ୍ରାଜୁଏଟ୍ ହୋନା ଚାହିୟେ । ଯେତ୍‌ନା ସକୋ, ଝୁଟ୍ କହୋ । ଫାର୍ଷ୍ଟକ୍ଲାସ୍ କେ ଲିୟେ ହଣ୍ଡ୍ରେଡ୍ ପାରସେଣ୍ଟ ଝୁଟ୍ କହନା ଶିଖ୍‌ନେ ପଡ଼େଗା ।''

ମୁଁ : ''ଏମ୍.ଏ. ଡିଗ୍ରୀ କେ ଲିୟେ କୋନ୍‌ସେ ବିଷୟ ପଢ଼ନା ଚାହିୟେ ?''

ସର୍ଦ୍ଦାର : ''ଏମ୍.ଏ. ଡିଗ୍ରୀ କେ ଲିୟେ ସାବ୍‌ଜେକ୍ଟ ହୋଗା 'ଲୁଟ୍ ବିଦ୍ୟା' । ଯେତନା ସକେଁ, ଲୁଟିୟେ । ଯେଇସେ ବି ହୋ ଔର୍ ଯିସ୍ ସେ ବି ହୋ, ରୂପୟା ଲୁଟ୍ କରନେ କା ପ୍ରାକ୍ଟିକାଲ୍ ଜ୍ଞାନ ଚାହିୟେ । ହରେକ୍ କିସମ୍‌କେ ଲୋକସେ, ହରେକ୍ କିସମ୍ ଚନ୍ଦା ହାସଲ କରନା ଚାହିୟେ । ଫାର୍ଷ୍ଟକ୍ଲାସ କେ ଲିୟେ କମ୍ ସେ କମ୍ ଲାଖୋଁ ଔର କ୍ରୋରୋ ରୂପୟେ ଲୁଟ୍ କରନା ଶିଖନା ହୋଗା । ଲାଇସେନ୍ସ, ପରମିଟ୍, କୋଟା, ଟ୍ରାନ୍ସଫାର, ପ୍ରମୋସନ, କଣ୍ଟ୍ରାକ୍ଟ, ସବ୍‌ସେ ଆପକା କମିଶନ ହୋନା ଚାହିୟେ ।''

ମୁଁ : ''ପିଏଚ୍.ଡି. କେ ଲିୟେ ସାବ୍‌ଜେକ୍ଟ କ୍ୟା ହୋଗା ?''

ସର୍ଦ୍ଦାର : ''ପିଏଚ୍.ଡି. କା ସାବ୍‌ଜେକ୍ଟ ହୋଗା 'ବେଇମାନୀ ବିଦ୍ୟା' । ଆପ୍‌କେ ନେତା ହୋ ଔର ଚେଲା ହୋ, ଗୁରୁ ହୋ ଔର ଶିଷ୍ୟ ହୋ, ଭାଇ ହୋ ଔର ବନ୍ଧୁ ହୋ, ପଲିଟିକସ୍ ମେ ସବ୍‌କେ ଲିୟେ ବେଇମାନ୍ ଔର ନିମକ୍ ହାରାମ୍ ହୋନେ ସେ ଆପ୍‌କା ଥେସିସ୍ ପାର୍ଷ୍ଟ କ୍ଲାସ୍ ହୋଗା । ସାଥ୍ ସାଥ୍, ଦୁସ୍‌ମନ କୋ ଦୋସ୍ତ ଔର ଦୋସ୍ତ କୋ ଦୁସମନ ବନାନା ଶିଖନେ ହୋଗା ।''

ମୁଁ : ''ସର୍ଦ୍ଦାରଜୀ, ପିଏଚ୍.ଡି. ଥେସିସ୍ କେ ଲିୟେ ଗାଇଡ୍ ମିଲ୍‌ନା ଚାହିୟେ । ଆପ୍ ମେହେରବାନି କର୍‌କେ ଏକ ଆଚ୍ଛା ଗାଇଡ୍ କା ନାମ ବତାଇୟେ ।''

ସର୍ଦ୍ଦାର : ''ବାବୁ ଚନ୍ଦ୍ରଶେଖରଜୀ କେ ଆଶ୍ରମ ମେ ଯାଇୟେ । ଗାଇଡ୍ ଲିଷ୍ଟ ଇଧାର ମିଲ୍ ଯାଏଗା ।''

ମୁଁ : ''ଅବ୍ ମୁଝେ ଡି.ଲିଟ୍. ଡିଗ୍ରୀ କେ ଲିୟେ ସାବ୍‌ଜେକ୍ଟ ବତାଇୟେ ।''

ସର୍ଦ୍ଦାର : ''ସବ୍ ସେ ବଡ଼ା ଡିଗ୍ରୀ କେ ଲିୟେ 'ସଇତାନୀ ବିଦ୍ୟା' ମେ ଥେସିସ୍ କରନା ହୋଗା । ଯୋ ଆପକା ଦୁସମନ୍, ଉସ୍‌କୋ ଖତମ୍ କରନା ଶିଖ୍‌ନା ହୋଗା । ଦୋସ୍ତ କୋ ଖତମ୍ କର୍‌ନା ଭି ପାପ୍ ନେହି ହୋଗା । ଦଙ୍ଗା ହାଙ୍ଗାମା, ଲୁଟ୍ ତରାଜ, ମାରପିଟ୍, ଖୁନ୍, ବ୍ଲଡସେଡ୍, ସବ୍ କୁଛ୍ ମେ ଟ୍ରେନିଂ ଲେନା ହୋଗା ।''

ମୁଁ : ''ଗାଇଡ୍ କିଧାର୍ ମିଲେଗା ?''

ସର୍ଦ୍ଦାର : ''ମେରେ ସାଥ୍ ଚଲିୟେ । ମେ ହାମାରା ଚୌତାଲା ସାହେବ କା ଘର ଆପ୍‌କୋ ବତା ଦୁଙ୍ଗା । ଇଧାର୍ ଆଚ୍ଛା ସେ ଆଚ୍ଛା ଗାଇଡ୍ ମିଲ୍ ଯାୟେଙ୍ଗେ । ଘବରାନେ କି ଜରୁରତ୍ ନେହି ।''

ବାସ୍ତବଧର୍ମୀ ସର୍ଦ୍ଦାରଜୀଙ୍କୁ ଅଶେଷ ଧନ୍ୟବାଦ ସହ ସଭକ୍ତି ପ୍ରଣାମ ଜଣାଇ ବିଦାୟ ନେଲି । ତାଙ୍କ ବୌଦ୍ଧିକ ପ୍ରବଚନ ହୃଦୟ ସ୍ପର୍ଶ କଲା । ସଫଳକାମ ରାଜନୈତିକ ପୁରୁଷ ହେବା ନିମନ୍ତେ ତାଙ୍କ ତାତ୍ତ୍ୱିକ ବାଣୀ କେତେଦୂର ଗ୍ରହଣୀୟ ବା ସତ୍ୟ ଆଧାରିତ, ତାହା ଚିନ୍ତାର ବିଷୟ । ଝୁଟ୍, ଲୁଟ୍, ବେଇମାନୀ ଓ ସଇତାନୀ ଏହି ଚାରି ବିଦ୍ୟାର ମହତ୍ତ୍ୱ ଉପଲବ୍ଧି ପୂର୍ବକ ରାଜନୀତିରୁ ଚିରଦିନ ପାଇଁ ବିଦାୟ ନେଲି ।

# ଗ୍ରହ ଦୁର୍ବିପାକ

## ବୋମ୍ବେ ଚଳଚ୍ଚିତ୍ର ଜଗତରୁ ଦିଲ୍ଲୀ ହାଇକୋର୍ଟ



### ଗ୍ରହ ବିଡ଼ମ୍ବନାର ସୂତ୍ରପାତ

କେବେ କେବେ କଥା ପ୍ରସଙ୍ଗରେ ମୋର ଇଂରେଜ ଅଧ୍ୟାପକମାନଙ୍କ ପାଖରୁ ଶୁଣିଥାଏ, ଭାରତରେ ସତ୍ୟଭିତ୍ତିକ ଐତିହାସିକ ଚଳଚ୍ଚିତ୍ର ପାଇଁ କାହାରି ଆଗ୍ରହ ନାହିଁ, ଯଦିଚ ବିଷୟବସ୍ତୁର ଅଭାବ ନାହିଁ । "Films should be not only the media for entertainment, but also for instruction," ଥରେ ଅଧ୍ୟାପକ ବାଶାମ୍ ମତ ଦେଇଥିଲେ ।

ଧାରଣା ଆସିଲା, ସମ୍ରାଟ ଅଶୋକଙ୍କ ଉପରେ ଚଳଚ୍ଚିତ୍ର ପ୍ରସ୍ତୁତ କଲେ କେଡ଼େ ଭଲ ହୁଅନ୍ତା ! ଚଣ୍ଡାଶୋକରୁ ଧର୍ମାଶୋକ, କଳିଙ୍ଗ ସମର, ବୌଦ୍ଧଧର୍ମ ପ୍ରସାର ଇତ୍ୟାଦି ବିଷୟ ସିନେମା ମାଧ୍ୟମରେ ଲୋକଲୋଚନକୁ ଆସିପାରିଲେ ଦେଶବାସୀ ଜାଣିପାରନ୍ତେ ପ୍ରାଚୀନ କଳିଙ୍ଗର ବୀରତ୍ୱଗାଥା ଓ ବିଶ୍ୱ ସଭ୍ୟତାକୁ ଭାରତର ଅବଦାନ । ୧୯୭୧ରେ ସିମଲାରେ ଥିଲାବେଳେ ଦିନେ ବଳରାଜ ସାହାଣୀଙ୍କ ସହିତ ଏହି ବିଷୟ ଆଲୋଚନା କଲି । ଗୋଟିଏ କଥା ସେ କହିଥିଲେ, "ଆପଣ ଐତିହାସିକ ଭାବେ ଯାହା ଲେଖିବେ, ଚଳଚ୍ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକମାନେ ତାହାକୁ ବିକୃତ କରିଦେବେ । ଆପଣ ଲେଖିବେ କଲମରେ, ସେମାନେ ଚିତ୍ର ନେବେ କ୍ୟାମେରାରେ । କଲମ ଓ କ୍ୟାମେରା ମଧ୍ୟରେ ସମନ୍ୱୟ ରହିବା ଉଚିତ ।" ପ୍ରଥମେ ନିଜ ଭାଷାରେ ଗୋଟିଏ କାହାଣୀ ଲେଖି ତାହାର ଚଳଚ୍ଚିତ୍ର କିପରି ଆକାର ନେଉଛି, ସେ ବିଷୟରେ ଅଭିଜ୍ଞତା ହାସଲ ଲାଗି ସେ ପରାମର୍ଶ ଦେଲେ ।

ସିମଲାରୁ ଫେରି 'ଆହୁତି' ବୋଲି କାହାଣୀଟିଏ ଲେଖିଲି । ସୋମନାଥ ସାହୁ ନାମକ ଜଣେ ଓଡ଼ିଆ ପ୍ରଯୋଜକ ଗପଟି ନେଲେ । କଲିକତାର ପ୍ରସିଦ୍ଧ ନିର୍ଦ୍ଦେଶକ ପୀୟୂଷ ବୋଷ ନିର୍ଦ୍ଦେଶକ ହେଲେ । ତାଙ୍କ ଅନୁରୋଧକ୍ରମେ ବଙ୍ଗର ପ୍ରଖ୍ୟାତ ଅଭିନେତା ଉତ୍ତମ କୁମାର ମୋ କାହାଣୀକୁ ପର୍ଦ୍ଦା ନାଟକ ବା Screen playରେ

ପରିଣତ କଲେ । କଲିକତାରେ ସେମାନଙ୍କୁ ଭେଟିବାକୁ ହେଲା । ଏଣେ, ସୋମନାଥବାବୁ ମୋ ଉପରେ ମାୟାଜାଲ ବିସ୍ତାର କରି ୬୦ ହଜାର ଟଙ୍କା ଧାର ଆକାରରେ ନେଲେ । ଜଣେ ଆତ୍ମୀୟଙ୍କ ପାଖରୁ କରଜ କରି ସେ ଟଙ୍କା ଆଣିବାକୁ ହେଲା । କଲିକତା ଓ ପୁରୀରେ ସୁଟିଂ ଚାଲିଲା । କିନ୍ତୁ ଅବିଳମ୍ବେ ସୋମନାଥ ସାହୁ କୁଆଡ଼େ ଅନ୍ତର୍ଦ୍ଧାନ ହେଲେ । ମୋ ଟଙ୍କାତକ ପାଣିରେ ପଡ଼ିଲା ।

ଏହାର କିଛି ବର୍ଷ ପରେ, ୧୯୭୬ରେ, 'ସୁନା ସଂସାର' ବୋଲି ସାମାଜିକ ନାଟକ ଲେଖିଲି । 'ପଞ୍ଚଜନ୍ୟ ଫିଲ୍ମ ଦ୍ୱାରା ଚଳଚ୍ଚିତ୍ର ପ୍ରସ୍ତୁତ ହେଲା । ମୋ ନିଜ ଘରେ ଏକମାସ ପାଇଁ ଛବିର ସୁଟିଂ କରାଗଲା । ଛବିଟି ଓଡ଼ିଶାର ଚାରିଆଡ଼େ ଆଦୃତ ହେଲା, କିନ୍ତୁ ମୋ ପକେଟରୁ ଯେତିକି ଖର୍ଚ୍ଚ ହୋଇଥିଲା, ତାହା ବୁଡ଼ିଲା ।

## ଅଶୋକ 'ଗ୍ରହ'

ଗ୍ରହ ଟାଣି ନେଇ ଯାଉଥାଏ 'ଅଶୋକ' କାହାଣୀ ଦିଗକୁ । ଗବେଷଣା ଚଳାଇଲି । ଯେତିକି ତଥ୍ୟ ସଂଗ୍ରହ କଲି, ସେଥିରୁ ୩ ଘଣ୍ଟିଆ ଚଳଚ୍ଚିତ୍ର ନିମନ୍ତେ ଇଂରାଜୀରେ କାହାଣୀ ରଚନା କଲି । ତାହାର ହିନ୍ଦୀ ଅନୁବାଦ ବୋମ୍ବେର ପ୍ରଯୋଜକମାନେ ଚଳଚ୍ଚିତ୍ର କରିବେ ବୋଲି ଆଶା ଥାଏ ।

ବୋମ୍ବେ ଚଳଚ୍ଚିତ୍ର ଜଗତ ସମ୍ବନ୍ଧରେ କୌଣସି ଧାରଣା ନଥାଏ । ବଲରାଜ ସାହାଣୀ ଇହଧାମରେ ନଥାନ୍ତି । ଠିକ୍ କଲି, ଭାରତ ସରକାରଙ୍କ ମାଧ୍ୟମରେ ବୋମ୍ବେ ଚଳଚ୍ଚିତ୍ର ନିର୍ମାତାମାନଙ୍କୁ ପ୍ରଭାବିତ କରିବି । ୧୯୭୫ ନଭେମ୍ବର ମାସରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ଏକଥା ଜଣାଇଲି । ସେ କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ବିଦ୍ୟାଚରଣ ଶୁକ୍ଳଙ୍କ ନିକଟକୁ ଏହି ମର୍ମରେ ପତ୍ର ପଠାଇଲେ ଯେ, ବୋମ୍ବେର ପ୍ରଯୋଜକମାନେ ଐତିହାସିକ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ଲାଗି ପ୍ରୟାସ କରିବା ଉଚିତ । 'ଶୋଲେ' ପ୍ରଭୃତି କାଳ୍ପନିକ ଫିଲମ୍‌ରେ ବିପୁଳ ଅର୍ଥବ୍ୟୟ ପରିବର୍ତ୍ତେ 'ଅଶୋକ' ପରି ଚିତ୍ରରେ ଅର୍ଥବ୍ୟୟ କରିବା ଆବଶ୍ୟକ । ଶୁକ୍ଳ ସେ ଚିଠି ପାଇଲେ, କିନ୍ତୁ ପଦକ୍ଷେପ ନେଲେ କି ନାହିଁ, ଜାଣିପାରିଲି ନାହିଁ ।

ଓଡ଼ିଶାର ପ୍ରଯୋଜକମାନଙ୍କର ଅର୍ଥ ନଥାଏ । କଲିକତାର ପ୍ରଯୋଜକ ନିର୍ଦ୍ଦେଶକ ତରୁଣ ମଜୁମଦାରଙ୍କୁ ଭେଟିଲି । ସେ ବୁଝାଇଦେଲେ, ବଙ୍ଗଦେଶର ଫିଲ୍ମ ଇଣ୍ଡଷ୍ଟ୍ରିଜ୍ ପକ୍ଷରେ 'କଳିଙ୍ଗ ଯୁଦ୍ଧ' ପରି ବ୍ୟୟବହୁଳ ଦୃଶ୍ୟ ସୁଟିଂ କରିବା ଅସମ୍ଭବ । କେବଳ ବୋମ୍ବେର ପ୍ରଯୋଜକମାନେ 'ଅଶୋକ' ଫିଲ୍ମ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରିବାକୁ ସମର୍ଥ ।

ଦିନ ଗଡ଼ିଲା । କାର୍ଯ୍ୟବ୍ୟସ୍ତତା ମଧ୍ୟରେ 'ଅଶୋକ' କଥା ଭୁଲି ବସିଲି । କିନ୍ତୁ, ଅଶରୀରୀ ଚଣ୍ଡାଶୋକ ବୋଧହୁଏ କଳିଙ୍ଗ ଯୁଦ୍ଧର ସର୍ବଶେଷ ଖଣ୍ଡାଚୋଟ ମୋ ମୁଣ୍ଡକୁ ଲକ୍ଷ୍ୟକରି ପଛେ ପଛେ ବୁଲୁଥାନ୍ତି ।

୧୯୭୬ ନଭେମ୍ବର ମାସରେ ଇଲାଷ୍ଟ୍ରେଟେଡ୍ ଉଇକ୍‌ଲିରେ ପଢ଼ିଲି, ବୋମ୍ବେର ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା ତଥା ନିର୍ଦ୍ଦେଶକ ଓ.ପି.ରାଲହାନ 'ଅଶୋକ ଦି ଗ୍ରେଟ୍' ନାମକ ଫିଲ୍ମ ଲାଗି ଯୋଜନା କରୁଛନ୍ତି, ଯେପରି ଫିଲ୍ମ ପୂର୍ବେ କେବେ ହୋଇ ନଥିବ, ନା ଭାରତରେ, ନା ପୃଥିବୀରେ !

ସଙ୍ଗେ ସଙ୍ଗେ ତାଙ୍କ ନିକଟକୁ ସୁଦୀର୍ଘ ଚିଠିଟିଏ ଲେଖିଲି । ଗବେଷଣାପ୍ରସୂତ ମୋର ସମସ୍ତ ଲେଖା ତାଙ୍କ ହାତରେ ଅର୍ପଣ କରିଦେବି ବୋଲି ଜଣାଇଲି । ତାଙ୍କ ଦପ୍ତରରୁ ଉତ୍ତର ଆସିଲା, ରାଲହାନ ସାହେବ ନିଜେ ଦୀର୍ଘ ୧୫ ବର୍ଷ ଯାବତ୍ ଅଶୋକଙ୍କ ଜୀବନୀ ଉପରେ ଗବେଷଣାପୂର୍ବକ କାହାଣୀ ରଚନା କରିସାରିଛନ୍ତି । ତଥାପି, ମୁଁ ଯଦି କିଛି ନୂଆ ତଥ୍ୟ ଆବିଷ୍କାର କରିଥାଏ, ତାହା ଦେଖିବା ଲାଗି ସେ ପ୍ରସ୍ତୁତ ଅଛନ୍ତି । କିନ୍ତୁ, ମୋତେ ନିଜ ଖର୍ଚ୍ଚରେ ଯିବାକୁ ପଡ଼ିବ ।

## ବୋମ୍ବେ ଚଳଚ୍ଚିତ୍ର ଜଗତରେ ପଦାର୍ପଣ

୧୯୭୭ ଏପ୍ରିଲ ୨୦ ତାରିଖ ଅପରାହ୍ଣରେ ବୋମ୍ବେ ରେଳଷ୍ଟେସନରେ ପହଞ୍ଚିଲି । ରାଲହାନଙ୍କ ସେକ୍ରେଟାରୀ ରହମାନ ମହାଲକ୍ଷ୍ମୀ ନାମକ ସ୍ଥାନରେ 'ଫେମାଶ ସିନେ ବିଲ୍ଡିଂ' ଅଟ୍ଟାଳିକାର ଗୋଟିଏ କକ୍ଷକୁ ନେଇଗଲେ । ରାଲହାନଙ୍କ ବିଶାଳବପୁ, ବଡ଼ ବଡ଼ ଆଖି, ଅଦ୍ଭୁତ ନାକ ଓ ବିଚିତ୍ର ଭାବଭଙ୍ଗୀ ଦେଖି ଅନୁମାନ କଲି, ସିନେମା ଜଗତର କୋଟିପତି ପ୍ରଯୋଜକମାନଙ୍କ ରୂପଗୁଣ ବୋଧହୁଏ ସାଧାରଣ ମନୁଷ୍ୟ ଠାରୁ ପୃଥକ୍ । ସେ ଜଣେ ଅଭିନେତା । କିନ୍ତୁ ରୂପେଲି ପର୍ଦ୍ଦାରେ ତାଙ୍କ ସ୍ୱରୂପ ଦେଖିବାର ସୌଭାଗ୍ୟ କେବେ ମିଳି ନଥିଲା । ଗମ୍ଭୀର ସ୍ୱରରେ ରାଲହାନ ସାହେବ ତାଙ୍କ କର୍ମଚାରୀଙ୍କୁ ଆଦେଶ ଦେଲେ, "ମିଷ୍ଟର ଦାସଙ୍କୁ ପ୍ରେସିଡେଣ୍ଟ ହୋଟେଲକୁ ନେଇ ତାଙ୍କର ଆଦର ଅଭ୍ୟର୍ଥନା କର ।" ସହାସ୍ୟ ବଦନରେ ମୋତେ କହିଲେ, "ସନ୍ଧ୍ୟା ୬ଟା ବେଳକୁ ସେଠାରେ ପହଞ୍ଚିବି । ଆପଣଙ୍କ ମୁହଁରୁ ଅଶୋକ କାହାଣୀ ଶୁଣିବି ।"

ଯଥାସମୟରେ ପାଞ୍ଚଜଣ ବନ୍ଧୁଙ୍କ ସହ ରାଲହାନ ମୋ କୋଠରିରେ ପ୍ରବେଶ କଲେ । ଆରମ୍ଭ କଲି ଅଶୋକ କାହାଣୀ । ୧୫ ବର୍ଷ ଗବେଷଣା କରିଥିବା ରାଲହାନ ମହୋଦୟ ତକ୍ଷଶିଳା, ଉଜ୍ଜୟିନୀ, ପାଟଳିପୁତ୍ର, ବିଦିଶା ଓ ବୁଦ୍ଧଗୟା ପ୍ରଭୃତି ସ୍ଥାନ କେଉଁଠାରେ, ତାହା ଜାଣି ନଥିଲେ । ଅଶୋକଙ୍କ ପିତା ଓ ପିତାମହଙ୍କ ନାମ ମଧ୍ୟ ତାଙ୍କୁ ଅଜଣା ଥିଲା । କଳିଙ୍ଗ କେଉଁଠାରେ ଓ ସେ

ସ୍ଥାନର ଆଧୁନିକ ନାମ ତାଙ୍କୁ ଅଜ୍ଞାତ ଥାଏ । ତୋଷାଳୀ ନାମଟି ସେ ଜୀବନରେ ଶୁଣି ନଥିଲେ । ଅଥଚ, ନିଜ ଜ୍ଞାନର ପରିଚୟ ପ୍ରଦାନ ନିମନ୍ତେ ସେ ସର୍ବପ୍ରଥମେ ଯେଉଁ ମହାମୂଲ୍ୟ ବାକ୍ୟଟି ଉଚ୍ଚାରଣ କରିଥିଲେ, ତାହା ଥିଲା, "I know Asoka well. He was a most, most, most cruel man who fell in love with a very, very, very beautiful girl named Devi, killed many, many, many of his brothers, and became a king at last. Is n't it ?" ମୁଣ୍ଡ ଟୁଙ୍ଗାରି 'ହଁ' ଭରିଲି ।

ମୂଲ୍ୟବାନ ବେଶଭୂଷା ପରିହିତ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୁଖଧାରୀ ବ୍ୟକ୍ତିମାନେ ନିର୍ବାକ ଭାବରେ ଗଳ୍ପ ଶୁଣୁଥିଲେ । ପ୍ରାୟ ୩ ଘଣ୍ଟା ସମୟ ସବୁ ଦୃଶ୍ୟ ଶୁଣିସାରିବା ପରେ ରାଲହାନ ସାହେବ ବ୍ୟଗ୍ର ଚିତ୍ତରେ କହିଲେ, "ଦାସ୍ ସାହେବ, ଆଗାମୀ କାଲି ଫିଲ୍ମ ବିଷୟ ଫାଇନାଲ୍ କରିବା ।" ସର୍ବାଧିକ ମୋଟା ବ୍ୟକ୍ତିଙ୍କୁ ନିଦ ଲାଗିଯାଇଥାଏ । ଚମକି ଉଠି କହିଲେ, "ଆରେ ଭାଇ, କ୍ୟା ଡିନର ଟାଇମ୍ ନେହି ହୁଆ ?" ଏକମାତ୍ର ଶିକ୍ଷିତ ଓ ମାର୍ଜିତ ବ୍ୟକ୍ତି ଥିଲେ ହୋଟେଲ ମାଲିକ ରାଜକୁମାର । "Which drink would you prefer" ମୋତେ ପଚାରିଲେ । ମୁଁ ମୋ ରୁମ୍‌ରେ ନିରାମିଷ ଖାଦ୍ୟ ଖାଇବି କହିବାରୁ ସମସ୍ତେ ବାହାରିଗଲେ ।

ଖାଦ୍ୟପ୍ଲେଟ୍ ଧରି ଯେଉଁ ଫିଟ୍‌ଫାଟ୍ ଯୁବକ ଆସିଲେ, ତାଙ୍କୁ ପଚାରିଲି, "ରାଲହାନ ସାହେବଙ୍କ ସାଙ୍ଗରେ ଆସିଥିବା ଲୋକମାନେ କିଏ ?" "They are financiers of Ralhan Productions," ସେ ଉତ୍ତର ଦେଲେ । ଗଳ୍ପ ଶୁଣିଲାବେଳେ ଜଣେ ବ୍ୟକ୍ତିଙ୍କ ପ୍ରଶ୍ନଟି ମନେପଡ଼ିଗଲା । "ଓ 'ପାଟଲି' କୋନ୍ ସେ ଦେଶ କା କୁଇନ୍ ଥେ, ଯିସ୍‌କୋ ଲେଡ଼କା କୋ ଆପ୍ 'ପାଟଲିପୁତ୍ର' କହତେ ଥେ ?" ବୁଝିବାକୁ ବିଳମ୍ବ ହେଲାନାହିଁ, ଫିଲ୍ମ ଜଗତର ଏହି 'ଲମ୍ବ ଶାଟପଟାବୃତ' କୋଟିପତି ଅର୍ଥଦାତାମାନେ ପ୍ରକୃତ ଗଜମୂର୍ଖ ବା ଗଣ୍ଡମୂର୍ଖ । ପରବର୍ତ୍ତୀ ସମୟରେ ଜାଣିବାକୁ ପାଇଥିଲି, ବୋମ୍ବେ ସିନେମା ଜଗତର ଅସଲ ପ୍ରଭୁମାନେ ହେଲେ ଗଲଫ୍ ଦେଶଗୁଡ଼ିକରୁ ଗୋପନରେ ସୁନା ଓ ଡ୍ରଗ୍ ଆମଦାନୀ କରୁଥିବା ଚୋରା ବ୍ୟବସାୟୀ ଗୋଷ୍ଠୀ ! ତଥାକଥିତ ବୋମ୍ବେ ଭୂତଳ ପୃଥିବୀ ବା ଅଣ୍ଡର ୱାର୍ଲଡ୍‌ର ବାଦ୍‌ଶା । ରାଜନେତାମାନଙ୍କ ବାହୁଚ୍ଛାୟା ତଳେ ଏମାନେ ବଢ଼ନ୍ତି ଓ ନେତାମାନଙ୍କୁ ବାହୁବଳ ଓ ଅର୍ଥବଳରେ ନିର୍ବାଚନଯୁଦ୍ଧରେ ଜୟଯୁକ୍ତ କରାନ୍ତି । ଏମାନଙ୍କ ସାମ୍ରାଜ୍ୟରେ ହଜାର ହଜାର କୋଟି ଟଙ୍କାର କଳାଧନ ଅହରହ ଖେଳିବୁଲେ । ଚଳଚ୍ଚିତ୍ର' ଜଗତର ପ୍ରଯୋଜକମାନେ ଏମାନଙ୍କ ଚରଣଧୂଳି ମୁଣ୍ଡରେ ନ ଦେଲେ ଫିଲ୍ମ ତିଆରି କରିବାକୁ ଆଗେଇପାରନ୍ତି ନାହିଁ ।

ସେ ଯାହାହେଉ, ପରଦିନ ସକାଳେ ରାଲହାନ ସାହେବ ମୋତେ ହୋଟେଲରୁ ନେଇଗଲେ କଲାବା-କୁଫିପରେଡ ନାମକ ସ୍ଥାନରେ ଥିବା ତାଙ୍କର ବାଙ୍ଗ୍‌ଲୋକୁ । ନାମ ଦେଇସାରିଥିଲେ 'ଅଶୋକ ହାଉସ୍' । ''ଆଜି ପାଖରୁ ଏ ଘର ଆପଣଙ୍କର । ଯେବେ ଆସିବେ, ଏଠାରେ ରହିବେ ।''

ନିଭୃତରେ କଥାବାର୍ତ୍ତା କଲେ । ପଚାରିଲେ, ଯେଉଁ କଳିଙ୍ଗ ଯୁଦ୍ଧ କଥା ବର୍ଣ୍ଣନା କଲେ, ସେଥିରେ ଉଭୟ ପକ୍ଷର ଦଶ ଲକ୍ଷ ସୈନ୍ୟ, ହଜାର ହଜାର ହାତୀ, ଶହ ଶହ ରଥ ଦେଖାଇବାକୁ ହେବ । ''ରାତିରେ ନିଦ ହେଲାନାହିଁ । କୋଟି କୋଟି ଟଙ୍କାର ବ୍ୟାପାର । ଯୁଦ୍ଧ ସିନ୍‌ଗୁଡ଼ିକ ବାଦ୍ ଦେଲେ ଚଳିବ ନାହିଁ ?'' ତାଙ୍କୁ ବୁଝାଇଲି, କଳିଙ୍ଗ ଯୁଦ୍ଧ ହେଉଛି ଅଶୋକ କାହାଣୀର ମୁଖ୍ୟ ବିଷୟ । ଧ୍ୱଂସର ଭୟାବହତା ମଧ୍ୟରେ ଚଣ୍ଡାଶୋକ ହେବେ ଧର୍ମାଶୋକ । ତେଣୁ, ଯୁଦ୍ଧ ଦୃଶ୍ୟ ବାଦ୍ ଦେବା ଅସମ୍ଭବ ।

ଆଖି ବନ୍ଦକରି କିଛି ସମୟ ଚିନ୍ତା କଲାପରେ ସେ କହିଲେ, ''ଅବଶ୍ୟ, ହଲିଉଡ୍ ଓ ଜାପାନୀ କ୍ୟାମେରାମ୍ୟାନମାନେ ଦଶ ହଜାର ସୈନ୍ୟଙ୍କୁ ଦଶ ଲକ୍ଷ ଭାବେ ଦେଖାଇ ଦେଇପାରିବେ । ହାତୀ ଓ ରଥର ସଂଖ୍ୟା ଅନେକ ଗୁଣରେ ବେଶି କରିବା କୌଶଳ ସେମାନଙ୍କୁ ଜଣା । ଆପଣ ଆମେରିକା ଓ ଜାପାନର ଫିଲ୍ମ କୋମ୍ପାନୀ ପାଖକୁ ଦୁଇଟି ଅନୁରୋଧ ପତ୍ର ଡ୍ରାଫଟ୍ କରିଦିଅନ୍ତୁ । ସେମାନଙ୍କ ସାହାଯ୍ୟ ବିନା କଳିଙ୍ଗ ଯୁଦ୍ଧ ଅସମ୍ଭବ ।'' ରାଜି ହେଲି ।

ଏହାପରେ ଅର୍ଥ ବିଷୟ ଉତ୍ଥାପନ କଲେ । ''ଅଶୋକଙ୍କ ଚାରିଜଣ ମୁଖ୍ୟ ରାଣୀଙ୍କ ନାମ କହିଛନ୍ତି । ଜାଣନ୍ତି, ଅଭିନେତ୍ରୀମାନେ କେତେ ଟଙ୍କା ମାଗିବେ ? ପ୍ରଥମ ରାଣୀର ଭୂମିକା ଦେବି ହେମାମାଳିନୀକୁ, ସେ ମାଗିବେ ୧୫ ଲକ୍ଷ । ଦ୍ୱିତୀୟ ରାଣୀ ହେବେ, ଜିନତ୍ ଆମାନ, ସେ ମାଗିବେ ୧୨ ଲକ୍ଷ । ତୃତୀୟ ରାଣୀ କଥା ଭାବିନାହିଁ, ତଥାପି ୧୦ ଲକ୍ଷ ! ସର୍ବମୋଟ କେତେ କୋଟି ଖର୍ଚ୍ଚ ହେବ, ଭାବି ପାରୁନାହିଁ । ତଥାପି, ଅଶୋକ ଫିଲମ୍ ଅଲବତ୍ କରିବି, କରିବି, କରିବି । ଜାଣିରଖନ୍ତୁ, Asoka is your project, as much as Ralhan's project !''

ତାଙ୍କର ଉତ୍ସାହ ଦେଖି ଆନନ୍ଦରେ ଅଧୀର ହୋଇଉଠିଲି ଯେ ମୋ ସ୍ୱପ୍ନର 'ଅଶୋକ' ରୂପେଲି ପର୍ଦ୍ଦାରେ ଦେଖିବାକୁ ମିଳିବ । ରାଲହାନ ସାହେବ ମୋର ଅଶେଷ ପ୍ରଶଂସା କରି ଅନୁରୋଧ କଲେ, ''ଯେଉଁ କାହାଣୀ ଶୁଣାଇଛନ୍ତି, ଲିଖିତ ଆକାରରେ ଅତିଶୀଘ୍ର ତାହା ପଠାଇଦିଅନ୍ତୁ ।''

ବୋମ୍ବେରୁ ଆଶାନ୍ୱିତ ହୋଇ ଫେରିଲି । ଅବଶ୍ୟ ନିଜ ଟଙ୍କାରେ ଟିକଟ କାଟି ।

## ତିନି ବର୍ଷର ଅଧ୍ୟବସାୟ ଓ ଅଭିଜ୍ଞତା

୧୯୭୭ ରୁ ୧୯୮୦, ଏହି ତିନି ବର୍ଷରେ ବୋମ୍ବେ ଚଳଚ୍ଚିତ୍ର ଜଗତର ଯେଉଁ ପରିଚୟ ପାଇଥିଲି, ତାହା ଲେଖିବସିଲେ ସହସ୍ର ପୃଷ୍ଠାର ଗ୍ରନ୍ଥଟିଏ ହେବ । ଅଧ୍ୟବସାୟ ଲାଗି କାତରତା ନ ଥାଏ । ପ୍ରେରଣା ଥାଏ, ଭାରତବାସୀ ଜାଣନ୍ତୁ ଓଡ଼ିଶାର ପ୍ରାଚୀନ ବୀରତ୍ୱ ଓ ଗୌରବରାଜିର କାହାଣୀ; ଜାଣନ୍ତୁ, କଳିଙ୍ଗଯୁଦ୍ଧରେ କଳିଙ୍ଗ ପରାଜିତ ହୋଇ ନଥିଲା, ରହିଥିଲା ଅପରାଜେୟ ଓ ଅବିଜିତ, ଯେଉଁଥି ପାଇଁ ଅଶୋକ ହିଂସା ପରିତ୍ୟାଗ ପୂର୍ବକ ଅହିଂସା ମାର୍ଗରେ ଅଗ୍ରସର ହେଲେ । ସେଥିସଙ୍ଗେ, ପୃଥିବୀବାସୀ ଜାଣନ୍ତୁ, କଳିଙ୍ଗ ଯୁଦ୍ଧର ପରିଣାମ ସ୍ୱରୂପ କିପରି ଆରମ୍ଭ ହୋଇଥିଲା ବୌଦ୍ଧ ଧର୍ମର ପ୍ରସାର, ନୀତି ଓ ଶାନ୍ତିର ଆଲୋକ ବିସ୍ତାର !

କାହାଣୀ ଲେଖିଲି । ତା ପରେ, ଦୃଶ୍ୟ ପରେ ଦୃଶ୍ୟର ବିଶଦ ବର୍ଣ୍ଣନା । ଡ୍ରାଫ୍ଟ ପରେ ଡ୍ରାଫଟ୍ ଧରି ବୋମ୍ବେ ଯାଉଥାଏଁ । ପ୍ରତ୍ୟେକ ଗ୍ରୀଷ୍ମଛୁଟି, ପୂଜାଛୁଟି ଓ ଶୀତ ଛୁଟିରେ ବୋମ୍ବେ ହେଲା ମୋ ରହଣି ସ୍ଥାନ ।

ତେଣେ, ରାଲହାନ ସାହେବଙ୍କ ପ୍ରଚାର ବ୍ୟାପକ ହେଲା । ବଡ଼ ବଡ଼ ରେଲଷ୍ଟେସନରେ ଖଡ୍ଗଧାରୀ ଅଶୋକଙ୍କ ଚିତ୍ର, ଫିଲ୍ମ ମେଗାଜିନ୍‌ରେ ୧୫, ୨୦ କୋଟି ଟଙ୍କାର ଅଶୋକ, ଅଶୋକ, ଅଶୋକ । ରାଜସ୍ଥାନ ରାଜାମାନେ ଦେବେ ୩୦୦ ହାତୀ; ଭାରତ ସରକାର ଦେବେ ୧୦ ହଜାର ଅଶ୍ୱାରୋହୀ; କ୍ୟାମେରାମ୍ୟାନ ଆସିବେ ହଲିଉଡ ଓ ଜାପାନରୁ; ଜାପାନୀ ଅଭିନେତାମାନେ ହେବେ କଳିଙ୍ଗ ଯୁଦ୍ଧକ୍ଷେତ୍ରର ଆହତ ସୈନିକ; ସର୍ବଶ୍ରେଷ୍ଠ ଅଭିନେତା ଓ ଅଭିନେତ୍ରୀ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହେବେ ଏବଂ ସର୍ବୋପରି, ଅଶୋକ ଫିଲ୍ମ ହେବ ହିନ୍ଦୀ, ଇଂରାଜୀ ଓ ଜାପାନୀ ଭାଷାରେ ପୃଥିବୀର ସର୍ବପ୍ରଥମ ତ୍ରିଭାଷୀ ଚଳଚ୍ଚିତ୍ର !!

ପ୍ରଚାର ବଢ଼ି ବଢ଼ି ଚାଲିଲା ବେଳକୁ ମୋର ପରିଶ୍ରମ ଓ ଅର୍ଥବ୍ୟୟ ବଢ଼ି ଚାଲିଲା । ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ସତର୍କବାଣୀ ଶୁଣାଇଲେ, ଜାତୀୟ ପ୍ରତୀକ ଅଶୋକ ଚକ୍ରର ମହତ୍ତ୍ୱ ଦୃଷ୍ଟିରୁ ଚଳଚ୍ଚିତ୍ରଟି ଐତିହାସିକ ସତ୍ୟତା ଆଧାରିତ ହେବା ଆବଶ୍ୟକ । ହାତରୁ ଟଙ୍କା ଖର୍ଚ୍ଚ କରି ମୁଁ ଚାଲିଲି ସାରନାଥ, ମଥୁରା, ସାଞ୍ଚି ଓ ବିଦିଶା ପ୍ରଭୃତି ସ୍ଥାନକୁ, ଅଶୋକ-ଯୁଗର ଅଦୂରବର୍ତ୍ତୀ ସମୟର ଅସ୍ତ୍ରଶସ୍ତ୍ର, ଅଳଙ୍କାର ଓ ବେଶଭୂଷାର ଅନୁସନ୍ଧାନ ନିମନ୍ତେ । ସାଞ୍ଚି ସ୍ତୂପର ଭାସ୍କର୍ଯ୍ୟରୁ ପ୍ରାଚୀନ ମୂର୍ତ୍ତିଗୁଡ଼ିକର ଚିତ୍ର ଅଙ୍କନ ପାଇଁ ଜଣେ ଚିତ୍ରକରଙ୍କୁ ସାଙ୍ଗରେ ନେବା ଲାଗି ବାଧ୍ୟ ହେଲି । ଥରେ ସ୍ତ୍ରୀ ଅଭିଯୋଗ କଲେ, ''ଡ୍ରଇଂରୁମ୍‌ର ପର୍ଦ୍ଦା କିଣିବାକୁ ପଇସା ନାହିଁ, ଅଥଚ ଅଶୋକ ପାଇଁ ଶହ ଶହ ଟଙ୍କା ଖର୍ଚ୍ଚ ହେଉଛି ।''

ମା କହିଲେ, "ତୋ ବାପାଙ୍କୁ ଥିଏଟର ନିଶା ଲାଗିଥାଏ, ତୋତେ ସିନେମା ନିଶା ଲାଗିଛି ।"

## ରାଲହାନ ଚରିତ

ପ୍ରତ୍ୟେକ ଥର ବୋମ୍ବେ ଗଲେ, ରାଲହାନଙ୍କ କର୍ମଚାରୀମାନଙ୍କ ପାଖରୁ ତାଙ୍କ ଚରିତ୍ର ସମ୍ପର୍କରେ କିଛି କିଛି ଶୁଣୁଥିଲି । ମୋ ଇଂରାଜୀ ଲେଖାକୁ ହିନ୍ଦୀ ଭାଷାକୁ ଅନୁବାଦ କରୁଥାନ୍ତି ପ୍ରକାଶ ଚନ୍ଦ୍ର ବର୍ମା ନାମକ ବିଜ୍ଞ ଓ ଅଭିଜ୍ଞ ବ୍ୟକ୍ତି । ସେ ଥରେ ଗୋପନରେ କହିଲେ, "ବୋମ୍ବେ ଫିଲମ୍ ଜଗତର ଦୁଷ୍ଟ ଗ୍ରହ ହେଲା ଓ.ପି.ରାଲହାନ । ସାଂଘାତିକ ଲୋକ । ଆପଣଙ୍କୁ ମନ୍ତ୍ରମୁଗ୍ଧ କରି ରଖିଛି । ଅଶୋକ ଚିତ୍ରର ପ୍ରଚାର ଦେଖି ଭାବିବେ ନାହିଁ ଯେ ଫିଲମ୍ ହୋଇଗଲା ବା ହୋଇଯିବ ।"

ଦିନେ କୌଣସି ଜଣେ ସାମ୍ବାଦିକଙ୍କ ସହିତ ମୋର ପରିଚୟ କରାଇଦେବାବେଳେ ରାଲହାନ କହିଲେ, "Mr. Das is the noblest soul I have seen in my whole life." ତହିଁ ପରଦିନ ପ୍ରକାଶ ବର୍ମାଙ୍କୁ ଏକଥା କହିଲି । ବିଦ୍ରୂପ କରି ସେ କହିଲେ, "ହଁ ନିଶ୍ଚୟ ! ୨୦ କୋଟି ମୂଲ୍ୟର ଫିଲମ୍ ପାଇଁ କଥା କାହାଣୀ ଲେଖକ ଯଦି ଏଗ୍ରିମେଣ୍ଟ କରନ୍ତି ନାହିଁ, ଟଙ୍କା ମାଗନ୍ତି ନାହିଁ, ହାତରୁ ଖର୍ଚ୍ଚକରି ଦେଶସାରା ବୁଲନ୍ତି, ତେବେ ସେ ବ୍ୟକ୍ତି ନିଶ୍ଚିତ ଭାବେ ନୋବ୍‌ଲେଷ୍ଟ ସୋଲ !" ପଚାରିଲି, "Does he mean by noblest soul, the greatest idiot ?" "You are right", କହିଲେ ବର୍ମା ସାହେବ ।

ସତକୁ ସତ, ଦିନେ ସନ୍ଧ୍ୟାରେ ରାଲହାନ ସାହେବ ତାଙ୍କ ଅଭିନୟ ଚାତୁରୀ ପ୍ରୟୋଗ କରି ମୋତେ ଗଧ ବନାଇଲେ । ଅର୍ଦ୍ଧନିମୀଳିତ ଆଖିରେ ଧ୍ୟାନମଗ୍ନ ବୁଦ୍ଧ ପରି ଶେଯ ଉପରେ ବସିରହି ତାଙ୍କ ନିଭୃତ କକ୍ଷକୁ ଡାକି ପଠାଇଲେ । ସୋଫାରେ ବସିଲି । ମନ୍ତ୍ର ଉଚ୍ଚାରଣ ରୂପକ ଧ୍ୱନିରେ ନିଜକୁ ନିଜେ କହିବା ଶୁଣିଲି, "Ralhan will not die a sinner. Ralhan will not die a sinner." ତା ପରେ, ବିସ୍ଫାରିତ ଆଖିରେ ମୋ ଆଖିକୁ ଚାହିଁ ପଚାରିଲେ, "ଆପଣ ମୀନା କୁମାରୀଙ୍କ ନାମ ଶୁଣିଛନ୍ତି ?" ମୁଁ 'ହଁ' କହିଲା ଉତ୍ତାରୁ, ସେ ପୁନର୍ବାର ଆଖିବୁଜି କହିଗଲେ:

"ଜାଣନ୍ତି ତାଙ୍କ ଅନ୍ତିମ ସମୟର ଦୁଃଖ ବିଷୟ ? ଦୁରାରୋଗ୍ୟ ବ୍ୟାଧିରେ ମରଣ ସାଙ୍ଗରେ ସଂଗ୍ରାମ କରୁଥିଲା ବେଳେ, ଆତ୍ମୀୟ ସ୍ୱଜନ, ପରିବାରବର୍ଗ ଓ ପ୍ରଯୋଜକ ବନ୍ଧୁମାନେ ସମସ୍ତେ ତାଙ୍କୁ ପରିତ୍ୟାଗ କଲେ । ସେତେବେଳେ

ଶେଷ ଚିକିତ୍ସା ପାଇଁ ତାଙ୍କ ହାତକୁ ଏକ ଲକ୍ଷ ଟଙ୍କା ବଢ଼ାଇ ଦେଇଥିଲା ଏହି ଓ.ପି.ରାଲହାନ । କାହାକୁ କେତେବେଳେ ସାହାଯ୍ୟ ଦେବାକୁ ହୁଏ, ସେ କଥା ମୁଁ ଜାଣେ ।''

ଦୀର୍ଘଶ୍ୱାସ ତ୍ୟାଗ ପରେ ଆରମ୍ଭ କଲେ ପ୍ରକୃତ ବକ୍ତବ୍ୟ ବିଷୟ । ଦିଲୀପ କୁମାର, ଧର୍ମେନ୍ଦ୍ର, ସୁନୀଲ ଦତ୍ତ, ଆମଜାଦ୍ ଖାଁ, ହେମା, ଜିନତ୍ ଇତ୍ୟାଦି ତାରକାମାନେ ଅର୍ଥପାଗଳ ବୋଲି ବର୍ଣ୍ଣନା କରି, ହଠାତ୍ କରୁଣ ସ୍ୱରରେ ପ୍ରାର୍ଥନା କରିବା ଢଙ୍ଗରେ କହିଲେ, ''ଦାସ୍ ସାହେବ, ଆପଣ ଯଦି ଗୋଟିଏ ବ୍ୟକ୍ତିଗତ ଘୋଷଣାପତ୍ରରେ ଦୁଇଧାଡ଼ି ଲେଖିଦିଅନ୍ତେ ଯେ ଆପଣଙ୍କ ସମସ୍ତ ପ୍ରକାର ପରିଶ୍ରମ ଓ ଲେଖା ଲାଗି ଟଙ୍କାଟିଏ ବି ଗ୍ରହଣ କରିବେ ନାହିଁ, ତେବେ ସେହି କାଗଜଖଣ୍ଡିକ ମୁଁ ବୋମ୍ବେର ଅଭିନେତା ଅଭିନେତ୍ରୀମାନଙ୍କୁ ଦେଖାଇ ସେମାନଙ୍କ ମନରେ ଭାବ ଉଦ୍ରେକ କରିପାରନ୍ତି ଯେ, ଅଶୋକ ଚଳଚ୍ଚିତ୍ର ବ୍ୟବସାୟ ଉଦ୍ଦେଶ୍ୟରେ ପ୍ରସ୍ତୁତ କରାଯାଉନାହିଁ, ମନୁଷ୍ୟ ଜାତିକୁ ନୀତିଶିକ୍ଷା ଦେବାପାଇଁ କରାଯାଉଛି । It is a missionary venture, not a money making picture.''

ବିନା ଦ୍ୱିଧାରେ ମୁଁ ରାଜିହେଲି । ତହିଁ ପରଦିନ ସେହି ମର୍ମର ଘୋଷଣାପତ୍ରଟିଏ ତାଙ୍କ ଓକିଲ ଲେଖିଆଣିଲେ ଓ ଅନ୍ଧ ଭାବରେ ସେଥିରେ ମୁଁ ଦସ୍ତଖତ କରିଦେଲି । ତାହାର ଖଣ୍ଡିଏ କପି ମଧ୍ୟ ମୋତେ ଦିଆଗଲା ନାହିଁ । ଅଶୋକ ଚିତ୍ର ପାଇଁ ମୁଁ ଏତେଦୂର ବ୍ୟଗ୍ର ହୋଇ ଉଠିଥାଏଁ, ଯେକୌଣସି ତ୍ୟାଗ ନିମନ୍ତେ କାତରତା ନଥାଏ ।

ରାଲହାନଙ୍କ ଠକାମିର ଆଉ ଗୋଟିଏ ଦୃଷ୍ଟାନ୍ତ ଦେଉଛି । ଦିନେ ସନ୍ଧ୍ୟାବେଳେ ଗୋଟିଏ ନିର୍ଜନ ସ୍ଥାନକୁ ମୋତେ ନେଇଯାଇ ଗାଡ଼ି ପାଖରେ ଛିଡ଼ା ରହିବାକୁ ନିର୍ଦ୍ଦେଶ ଦେଲେ ଓ କହିଲେ, ''ଯେଉଁ ଯୁବ ଅଭିନେତାଙ୍କୁ ଅଶୋକ ଭୂମିକା ପାଇଁ ମନୋନୀତ କରିଛି, ତାଙ୍କ ସହିତ କଥାବାର୍ତ୍ତା କରିବି । ଆପଣ ତାଙ୍କୁ ଦୂରରୁ ଦେଖି ସେ ଉପଯୁକ୍ତ ହେବେ କି ନାହିଁ ମୋତେ କହିବେ ।'' ସେ ଫେରିଲା ପରେ ମୁଁ ମତ ଦେଲି, ''ସୁନ୍ଦର ଓ ସ୍ୱାସ୍ଥ୍ୟବାନ, କିନ୍ତୁ ଉଚ୍ଚତା କମ୍ ।'' ବୁଝାଇଦେଲେ, ''ସେ ପାଇଁ ଚିନ୍ତା କରିବା ଦରକାର ନାହିଁ । ବାମନକୁ ମଧ୍ୟ କ୍ୟାମେରା ଦୀର୍ଘକାୟ ଭାବରେ ଦେଖାଇ ପାରିବ ।''

ଏହାର କିଛି ଦିନ ପରେ ଫିଲମ୍ ମେଗାଜିନଗୁଡ଼ିକରେ ରାଲହାନଙ୍କ ବିଜ୍ଞାପନ ଦେଖିଲି—''ଅଶୋକ ଭୂମିକା ନିମନ୍ତେ ନୂତନ ମୁଖ ଆବଶ୍ୟକ ।'' ଫଟୋ ସହ ମନିଅର୍ଡ଼ର ଯୋଗେ 'ଫି' ଦାଖଲ କରି ଯେକୌଣସି ବ୍ୟକ୍ତି ଦରଖାସ୍ତ କରିପାରିବେ । ସେତେବେଳକୁ ଅଶୋକ ଫିଲମ୍ ବିଷୟରେ ସାରା ଭାରତରେ ଏପରି ବ୍ୟାପକ

ପ୍ରଚାର ଚାଲିଥାଏ, ଅଶୋକ ଭୂମିକା ଲାଗି ଅସଂଖ୍ୟ ଯୁବକ ଟଙ୍କା ଓ ଫଟୋ ପଠାଇଲେ । ଅଭିନେତା ନିର୍ବାଚନ ପରେ ମଧ୍ୟ ପ୍ରବଞ୍ଚନା । ଭାରତର କେତେ ସହସ୍ର ବା ଲକ୍ଷ ଯୁବକ ପ୍ରଚାର ପ୍ରହେଳିକାର ଶିକାର ହେଲେ, ତାହା ବା ଜାଣିବ କିଏ ?

୧୯୭୮ ମଝି ବେଳକୁ ରାଲହାନ ଜାପାନ ଓ ହଲିଉଡ୍ ଯାଇ ଅର୍ଥ ବ୍ୟବସ୍ଥା କଲେ । ବୌଦ୍ଧଧର୍ମ ବିଷୟରେ ଫିଲମ୍ ହେଉଥିବାରୁ ଜାପାନୀମାନେ ଏକ କୋଟି ଦାନ କରିବେ ବା କରିଛନ୍ତି ବୋଲି ଶୁଣିଲି । ସେପ୍ଟେମ୍ବର ମାସ ବୋମ୍ବେ ଯିବାପାଇଁ ଜରୁରୀ ଡାକ ପାଇଲି । ସାଙ୍ଗରେ ନିଜର ବିଶ୍ୱାସୀ ଷ୍ଟେନୋ-କମ୍-ଟାଇପିଷ୍ଟ ନେଇଯିବାକୁ ରାଲହାନ ଅନୁରୋଧ କଲେ, କାରଣ ବୋମ୍ବେରେ ତାଙ୍କ ନିଜ ଟାଇପିଷ୍ଟକୁ ମଧ୍ୟ ବିଶ୍ୱାସ ନାହିଁ, ସିନ୍‌ଗୁଡ଼ିକ ଲିକ୍ କରିଦେବେ । ପର୍ଦ୍ଦା ଦୃଶ୍ୟ ବା Screen play ଲେଖିବା ଲାଗି ଆଣ୍ଟ୍ର ସିନ୍‌କ୍ଲେୟାର ନାମକ ପ୍ରସିଦ୍ଧ ଲେଖକ ହଲିଉଡ୍‌ରୁ ଆସିବେ ବୋଲି ମୋତେ କୁହାଗଲା ।

ଓଡ଼ିଶା ସଚିବାଳୟର ପରିଚ୍ଛା ନାମକ ସୁଦକ୍ଷ ଷ୍ଟେନୋଗ୍ରାଫାରଙ୍କୁ ସାଙ୍ଗରେ ନେଇ ୩ ସପ୍ତାହ ପାଇଁ ବୋମ୍ବେରେ ପହଞ୍ଚିଲି । 'ଅଶୋକ ହାଉସ'ର ଗୋଟିଏ କକ୍ଷରେ ରହିଲେ ସିନ୍‌କ୍ଲେୟାର, ଦ୍ୱିତୀୟ କୋଠରିରେ ମୁଁ ଓ ତୃତୀୟରେ ରାଲହାନ । ପ୍ରତିଦିନ ସକାଳ ୮ ଟାରୁ ୧ଟା ପର୍ଯ୍ୟନ୍ତ ମୁଁ ଦୃଶ୍ୟ ପରେ ଦୃଶ୍ୟ ବୁଝାଇଲା ପରେ ସିନ୍‌କ୍ଲେୟାର ମୋ ଲେଖାଗୁଡ଼ିକ ନେଇ ଅପରାହ୍ନରେ ପରିଚ୍ଛାଙ୍କୁ ପର୍ଦ୍ଦା ଦୃଶ୍ୟମାନ ଡକାଇଲେ । ବିଳମ୍ବିତ ରାତି ପର୍ଯ୍ୟନ୍ତ ପରିଚ୍ଛା ସେଗୁଡ଼ିକ ଟାଇପ୍ କଲେ । ୧୫ ଦିନ ଏହିପରି ଅଧ୍ୟବସାୟ ପରେ ଅଶୋକ କାହାଣୀ ଚୂଡ଼ାନ୍ତ ରୂପ ଧାରଣ କଲା ।

ତା ପରେ, ରାଲହାନ ଡାକିଲେ ପ୍ରେସ୍ କନ୍‌ଫାରେନ୍ସ । ଫିଲ୍ମ ମେଗାଜିନ ଓ ସମ୍ବାଦପତ୍ରର ଶତାଧିକ ସାମ୍ବାଦିକ ଯୋଗଦେଲେ । କାହାଣୀ ସମ୍ପର୍କରେ ମୋତେ ଅନେକ ପ୍ରଶ୍ନ ପଚରାଗଲା । ମିଟିଂ ପରେ ମାଂସ ସାଙ୍ଗକୁ ମଦ୍ୟର ସୁଅ ! ଅର୍ଥଦାତା ପୃଷ୍ଠପୋଷକମାନେ ମଦ ପିଇ ପିଇ ବେହୋସ ହେବା ଅବସ୍ଥାକୁ ଆସିଲେ । ତହିଁ ପରଦିନ ସିନ୍‌କ୍ଲେୟାର ବୋମ୍ବେ ଛାଡ଼ିଲେ । ସେହି ରାତିରେ ମୁଁ ଓ ପରିଚ୍ଛା ଟ୍ରେନ୍ ଧରିଲୁଁ । ଟିକଟ ଅବଶ୍ୟ ଏଥର ରାଲହାନଙ୍କ ପାଖିରୁ କିଣାହେଲା । ପରିଚ୍ଛା ଭାବିଥିଲେ, ୩ ହଜାର ପାଇବେ । କିନ୍ତୁ ପାଇଲେ ୩ ଶହ । ତାଙ୍କୁ ସାନ୍ତ୍ୱନା ଦେଲି । ମଦ୍ୟନେ ହଜାର ହଜାର ଟଙ୍କାର ସୁଅ, ଅଥଚ ଜଣେ ଟାଇପିଷ୍ଟଙ୍କ ପ୍ରତି ଚରମ ଅବିଚାର !

## ରାଲହାନଙ୍କ ଓଡ଼ିଶା ଆଗମନ

କଳିଙ୍ଗ ଯୁଦ୍ଧର ସାଇଟ୍ ସିଲେକସନ୍ ଲାଗି ରାଲହାନ ସାହେବ ଓଡ଼ିଶା ଆସିବେ ଲେଖିଲେ । ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ କହି ତାଙ୍କୁ ରାଜ୍ୟ ଅତିଥି କରାଇଲି । କିନ୍ତୁ ଫଟୋଗ୍ରାଫର ଇତ୍ୟାଦି ଯୋଗାଡ଼ କରିବା ଲାଗି ବୋମ୍ବେରୁ ଫୋନ୍ ଆସିଲା । ଜାଣିଲି, ପକେଟରୁ ପ୍ରଚୁର ଖର୍ଚ୍ଚ ହେବ, ତଥାପି ଖୁସି ହେଲି, ଓଡ଼ିଶାରେ ସୁଟିଂ ହେବ ।

୧୯୭୯ ମାର୍ଚ୍ଚ ମାସ । ରାଲହାନ ବିମାନ ଯୋଗେ ଭୁବନେଶ୍ୱରରେ ଅବତରଣ କଲେ । ୬ ଦିନିଆ ରାଜକୀୟ ଗସ୍ତରେ ପୁରୀ, କୋଣାର୍କ, ଖଣ୍ଡଗିରି ଇତ୍ୟାଦି ତୀର୍ଥସ୍ଥାନ ଦେଖିବେ ବୋଲି ଇଚ୍ଛା ପ୍ରକାଶ କଲେ । ମୁଁ କହିଲି, ପ୍ରଥମେ ଚିଲିକାରେ ନୌଯୁଦ୍ଧ ପାଇଁ ସ୍ଥାନ ନିରୂପଣ ଓ ତା ପରେ ଖୋର୍ଦ୍ଧା ବରୁଣାଇ ପାହାଡ଼ ଓ ଭୁବନେଶ୍ୱର ଧଉଳି ପାହାଡ଼ ନିକଟସ୍ଥ ସ୍ଥାନରେ ମୁକ୍ତ ପ୍ରାଙ୍ଗଣ ମନୋନୀତ କରିବା ଦରକାର । ରାଜି ହେଲେ ।

ଭଲ ଫଟୋଗ୍ରାଫର ଓ କେତେଜଣ କର୍ମଚାରୀଙ୍କ ସହ ତାଙ୍କୁ ଚିଲିକା ନେଲି । ହ୍ରଦ ବକ୍ଷରେ ଷ୍ଟିମାର ଚାଲିଲା ବେଳେ ସେ ଅବିଶ୍ୱାସ୍ୟ ଓ ଚାଞ୍ଚଲ୍ୟକର କଥାମାନ ଶୁଣାଇଲେ । ଯଥା, ତିନୋଟି ପାହାଡ଼ ଶୀର୍ଷରେ ଛଅଟି କ୍ୟାମେରା ରଖାଯିବ; ପ୍ରତ୍ୟେକ କ୍ୟାମେରାର ମୂଲ୍ୟ ଏକ କୋଟି; ଆସିବ ହଲିଉଡ୍‌ରୁ; ହ୍ୟାଣ୍ଡଲ୍ କରିବେ ଆମେରିକାନ ଟେକନିସିଆନ; ଚିଲିକା ଜଳରେ ଭାସିବ ଏକହଜାର କୃତ୍ରିମ ବୋଇତ; ତିଆରି ହେବ ବାଉଁଶ ଓ କନାରେ; ସେ ପାଇଁ ଆସିବେ ବିଦେଶରୁ କାରିଗର, ଇତ୍ୟାଦି, ଇତ୍ୟାଦି ।

ଚିଲିକା ପରେ ବରୁଣାଇ, ତା ପରେ ଖୋର୍ଦ୍ଧା ନିକଟବର୍ତ୍ତୀ ସୁବିସ୍ତୀର୍ଣ୍ଣ ପ୍ରାଙ୍ଗଣ, ତାପରେ ଖଣ୍ଡଗିରି-ଉଦୟଗିରି, ଧଉଳି ପାହାଡ଼ ଓ ଶେଷରେ ପୁରୀ, କୋଣାର୍କ ଓ କଟକ ଇତ୍ୟାଦି ଦେଖାଇବାକୁ ତିନିଦିନ ଲାଗିଲା । ଡ୍ରାଇଭାରମାନେ କୋଟିପତି ସିନେମା ନିର୍ମାତାଙ୍କ ପାଖରୁ ବକ୍‌ସିସ୍ ଆଶା କରିବା ଦେଖି, ପ୍ରତ୍ୟେକ ସ୍ଥାନରେ ମୋତେ ପଚାଶ, ଶହେ ଦେବାକୁ ହେଲା । କେବଳ, ପୁରୀରେ ଦଇତାପତିଙ୍କ ଘରେ ମହାପ୍ରସାଦ ସେବନ ବେଳେ ରାଲହାନ ସାହେବ କୋଡ଼ିଏ ଟଙ୍କା ଧରାଇଦେବା ଦେଖିଲି । ଭକ୍ତି ଗଦ୍‌ଗଦ ସ୍ୱରରେ ମୋତେ ଚାହିଁ କହିଲେ, ‘‘ଭଗବାନ କା ଆଦମି । କୁଛ୍ ଦେନା ହୋଗା ।’’ ଓଡ଼ିଶା ରହଣି କାଳରେ ତାଙ୍କର ସର୍ବମୋଟ ବ୍ୟୟ ଥିଲା ସେହି ୨୦ ଟଙ୍କା ।

ସ୍ଥାନ ନିରୂପଣ ଶେଷ ହେଲା ବୋଲି ଘୋଷଣା କରି ମୋତେ ବଡ଼ ଧରଣର ପ୍ରେସ୍ କନଫାରେନ୍ସ ଆୟୋଜନ କରିବାକୁ କହିଲେ । ରାଜ୍ୟ ଅତିଥି ଭବନର ହଲ ଭିତରେ ସାମ୍ବାଦିକ ସମ୍ମିଳନୀ ବସିଲା । ବିଧାୟକ, ନେତା, ସରକାରୀ କର୍ମଚାରୀ, ସିନେମାପ୍ରେମୀ ଓ ସାଧାରଣ ଦର୍ଶକମାନେ ବହୁ ସଂଖ୍ୟାରେ ସମବେତ ହେଲେ । ସେ ବେଳର ଗୃହ ସଚିବ ମତ ଦେଲେ, "କୌଣସି ପ୍ରଧାନମନ୍ତ୍ରୀଙ୍କ ସାମ୍ବାଦିକ ସମ୍ମିଳନୀରେ ଏପରି ବିପୁଳ ସଂଖ୍ୟକ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଏକତ୍ରିତ ହେବା ମୁଁ ଦେଖି ନଥିଲି ।"

ନାଟକୀୟ ଢଙ୍ଗରେ ରାଲହାନ ପ୍ରବେଶ କଲେ । ମୋଗଲ ବାଦଶାହଙ୍କ ପରି ଦରବାର ମଣ୍ଡନ ପୂର୍ବକ ତାଙ୍କ ବକ୍ତବ୍ୟ ପେଶ୍‌କଲେ । ସାରାଂଶ ଥିଲା, ଅଶୋକ ଚଳଚ୍ଚିତ୍ର ପରି ଫିଲ୍ମ ପୃଥିବୀରେ ଇତିପୂର୍ବେ କୁଆଡ଼େ ହୋଇନାହିଁ । ଅଟକଳ ୨୦ କୋଟି, ହୋଇପାରେ ୪୦ ବା ୫୦ କୋଟି । ହଲିଉଡ୍ ଓ ଜାପାନର କ୍ୟାମେରାମ୍ୟାନ ଓ ଅଭିନେତା ଅଭିନେତ୍ରୀ ଆସିବେ । ଯେଉଁ କଳିଙ୍ଗ ଯୁଦ୍ଧ ଲାଗି ଓଡ଼ିଶାବାସୀ ଗର୍ବ କରନ୍ତି, ସେହି ଯୁଦ୍ଧର ଦୃଶ୍ୟମାନ ଭୁବନେଶ୍ୱର ମାଟିରେ ସୁଟିଂ କରାଯିବ । ବିଶ୍ୱବାସୀ ରୂପେଲି ପର୍ଦ୍ଦାରେ କଳିଙ୍ଗ ଯୁଦ୍ଧ ଦେଖିବେ । ସର୍ବଶେଷରେ ରାଲହାନ ଘୋଷଣା କଲେ, "ଅଶୋକ ଫିଲମ୍‌ରୁ ଯାହା ଲାଭ ହେବ, ସେ ଟଙ୍କା ମୁଁ ପିତୃମାତୃହୀନ ଅନାଥ ଶିଶୁମାନଙ୍କ କଲ୍ୟାଣ ନିମନ୍ତେ ଦାନ କରିବି । ସେହି ଅନାଥ ଆଶ୍ରମ ହୁଏତ ଓଡ଼ିଶାରେ ସ୍ଥାପନ କରାଯାଇପାରେ ।"

ସମ୍ମିଳନୀ ଶେଷରେ ଜଣେ ଅଣଓଡ଼ିଆ ସଚିବ ମୋ ପାଖକୁ ଆସି ଉପାଦେୟ ମତଟି ବ୍ୟକ୍ତ କଲେ, "I think, the distant descendants of the orphans left by Chandasoka in Kalinga two thousand three hundred years ago will now find a saviour in form of Mr.O.P.Ralhan who acts as a joker or a villain on the silver screen." ଅନ୍ୟମାନେ ହସିଲେ ଓ ମୁଁ ଲଜ୍ଜିତ ହେଲି ।

ଏହାପରେ, ରାଲହାନ ସାହେବ ଓଡ଼ିଶାର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଓ ସଂସ୍କୃତି ମନ୍ତ୍ରୀଙ୍କ ସହିତ ସାକ୍ଷାତ କରିବେ ବୋଲି ଅଡ଼ି ଧରି ବସିଲେ । ମୋ ଟାଇପିଷ୍ଟକୁ ଲମ୍ବା ତାଲିକାଟିଏ ଡକାଇଲେ, ୧ ହଜାର ତମ୍ବୁ, ୨୫ଟି ଆମ୍ବୁଲେନ୍ସ, ୧୦୦ ଟ୍ରକ, ତାରକାମାନଙ୍କ ଲାଗି ଷ୍ଟେଟ୍ ଗେଷ୍ଟ ହାଉସରେ ଓ ଅନ୍ୟ ବଡ଼ ବଡ଼ ହୋଟେଲରେ ୧୦୦ ରୁମ୍, ଇତ୍ୟାଦି ଇତ୍ୟାଦି ।

ରାଜ୍ୟପାଳ ଭଗବତ ଦୟାଲ ଶର୍ମାଙ୍କ ପାଖକୁ ନେଇଗଲି । ତାଙ୍କୁ ମନ୍ତ୍ରମୁଗ୍ଧ କଲାଭଳି କଥା କହିଲେ । ତା'ପରେ, ସ୍ୱରୂପ ପ୍ରକାଶ କଲେ ମୁଖ୍ୟମନ୍ତ୍ରୀ ନୀଳମଣି

ରାଉତରାୟଙ୍କ ଆଗରେ, ଅକସ୍ମାତ ଏକ ଅପ୍ରତ୍ୟାଶିତ ଦାବି ଉତ୍ଥାପନ ଦ୍ୱାରା । ଯେହେତୁ, ପୃଥିବୀର କୋଟି କୋଟି ନରନାରୀ କଳିଙ୍ଗ ବା ଓଡ଼ିଶା କଥା ଅଶୋକ ଫିଲମ୍‌ରୁ ଜାଣିବେ, ସେଥିପାଇଁ ଓଡ଼ିଶା ସରକାର ୨ କୋଟି ଟଙ୍କା ଅନୁଦାନ ଦେବା ଉଚିତ । ତଟସ୍ଥ ହୋଇ ନୀଳମଣିବାବୁ ମୋ ମୁହଁକୁ ଚାହିଁରହିଲେ । ଓଡ଼ିଆରେ ତାଙ୍କୁ କହିଦେଲି, ''ତାଲିକାରେ ଥିବା ସବୁ ଜିନିଷ ଦିଆଯିବ ଓ ଟଙ୍କା କଥା ପରେ ବିଚାର କରାଯିବ ବୋଲି କହିଦିଅନ୍ତୁ ।'' ସେ ତାହାହିଁ କଲେ ।

ସେହି ୨ କୋଟି ଅନୁଦାନ ପାଇଁ ଶିକ୍ଷାମନ୍ତ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ସଂସ୍କୃତି ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ପାଖରେ ରାଲହାନ ଜିଦ୍ ଧରିଲେ । ସେମାନଙ୍କୁ ଆଗରୁ ଶିଖାଇ ଦେଇଥିଲି । ''ଓଡ଼ିଶାରେ ସୁଟିଂ ଆରମ୍ଭ ହେଲାପରେ ନିଶ୍ଚୟ ଅର୍ଥ ସାହାଯ୍ୟ ମିଳିବ ।''

ରାଲହାନ ଓଡ଼ିଶାରୁ ବିଦାୟ ନେଲେ । ଆସିଲା ଘନ ଘନ ଚିଠି । ଓଡ଼ିଶା ସରକାରଙ୍କ ପାଖରୁ ଶୀଘ୍ର ଟଙ୍କା ପାଇବା ଦରକାର । ବିରକ୍ତ ହୋଇ ମୁଁ ଉତ୍ତର ଦେଲି, ''ମୋ ପରି ଜଣେ ନଗଣ୍ୟ ବ୍ୟକ୍ତିକୁ ବିଶ୍ୱାସ କରି ସରକାର ଏତେ ଟଙ୍କା ମଞ୍ଜୁର କରିପାରିବେ ନାହିଁ ।''

## ଅଶୋକ ଫିଲ୍ମରେ ଯବନିକା ପାତ

୧୯୭୯ ଦ୍ୱିତୀୟ ଭାଗରେ ମୁଁ ଇଂଲଣ୍ଡ ଓ ଆମେରିକା ଯାଇଥିବା ହେତୁ ବୋମ୍ବେରେ କ'ଣ ହେଉଛି ଜାଣିପାରିଲି ନାହିଁ । ୧୯୮୦ ଜାନୁଆରୀ ମାସରେ ଅକସ୍ମାତ୍ ରାଲହାନ ପାଖରୁ ଚିଠି ପାଇଲି, ମହାରାଷ୍ଟ୍ରର କଂଗ୍ରେସ ମୁଖ୍ୟମନ୍ତ୍ରୀ ଅବଦୁଲ୍ ରହମାନ ଆନ୍ତୁଲେ ୨୦ ଲକ୍ଷ ଟଙ୍କା ଉତ୍କୋଚ ମାଗୁଛନ୍ତି ଓ ଟଙ୍କା ନ ଦେଲେ ବୋମ୍ବେ ଫିଲମ୍ ସିଟି ନିକଟରେ କୃତ୍ରିମ ରାଜପ୍ରାସାଦ ଇତ୍ୟାଦି ଗଠନ କରିବାକୁ ଅନୁମତି ଦେବେ ନାହିଁ ଏବଂ ତେଣୁ ଅଶୋକ ଚଳଚ୍ଚିତ୍ର ପ୍ରସ୍ତୁତ କରିବା ସମ୍ଭବ ନୁହେଁ । ମୋର ୩ ବର୍ଷର ପରିଶ୍ରମ ଓ ଅଜସ୍ର ଅର୍ଥବ୍ୟୟର ପରିଣତି ଏପରି ଶୋଚନୀୟ ହେବ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

ଦୁଃଖ ଓ ଅନୁତାପ ମଧ୍ୟରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କୁ ଭେଟି ସବୁକଥା କହିବି ବୋଲି ଦିଲ୍ଲୀରେ ପହଞ୍ଚିଲି । ତାଙ୍କ ବ୍ୟକ୍ତିଗତ ସଚିବ ସିଧାସଲଖ ଜଣାଇଲେ, ''ଗୋଟିଏ ଫିଲମ୍ ବିଷୟରେ ପ୍ରଧାନମନ୍ତ୍ରୀ ଜଣେ ମୁଖ୍ୟମନ୍ତ୍ରୀଙ୍କୁ କେବେ ହେଲେ କିଛି କହିବେ ନାହିଁ ।'' ସେଠାରୁ ନିରାଶ ହୋଇ ମୋର ପ୍ରାକ୍ତନ ଛାତ୍ର ଶ୍ୟାମସୁନ୍ଦର ମହାପାତ୍ରଙ୍କ ଘରେ ପହଞ୍ଚିଲି । ସେ ଥାନ୍ତି କଂଗ୍ରେସ ଦଳର ସାଧାରଣ ସମ୍ପାଦକ ।

ମୋ ଅନୁରୋଧକ୍ରମେ ଶ୍ୟାମବାବୁ ବୋମ୍ବେ ଗଲେ ଓ ଆନ୍ଥୁଲେଙ୍କୁ ସାକ୍ଷାତ କଲେ । ସେଠାରୁ ଫେରି ମୋ ପାଖକୁ ଆନ୍ଥୁଲେଙ୍କ କହିଥିବା ବାକ୍ୟଟି ଲେଖି ପଠାଇଲେ–"Ask your Professor not to trust this Ralhan fellow."

ପ୍ରକାଶ ଚନ୍ଦ୍ର ବର୍ମା ଇତ୍ୟାଦିଙ୍କ ଚିଠିରୁ କ୍ରମେ କ୍ରମେ ରହସ୍ୟ ଜାଣିପାରିଲି । 'ଅଶୋକ' ନାମ ଧରି ରାଲହାନ ବୌଦ୍ଧ ଦେଶ ଜାପାନ ଓ ସିଂହଳରୁ ପ୍ରଚୁର ଟଙ୍କା ସଂଗ୍ରହ କରିଛନ୍ତି । ସଂସାରରେ ଏପରି ଠକ ଥାଆନ୍ତି ବୋଲି ବିଶ୍ୱାସ କରି ପାରିଲି ନାହିଁ । ଯଦି ଅଛନ୍ତି, ଭାରତର ରାଲହାନ ତାହାର ଏକ ଜ୍ୱଳନ୍ତ ନିଦର୍ଶନ । ପରେ ପରେ, ବୋମ୍ବେରୁ ଦୁଇଜଣ ଚଳଚ୍ଚିତ୍ର ନିର୍ମାତା ଅଶୋକ କାହାଣୀ ନେବା ପାଇଁ ମୋ ପାଖକୁ ଆସିଲେ । ସେମାନଙ୍କୁ ଉତ୍ତର ଦେଲି, ଗୋଟିଏ ଅଭିଜ୍ଞତା ଯଥେଷ୍ଟ, ବୋମ୍ବେ ସହିତ ଦ୍ୱିତୀୟ ସମ୍ପର୍କ ଦରକାର ନାହିଁ । ୧୯୮୪ ମସିହାରେ ଭାରତ-ବିଖ୍ୟାତ କଥାକାର ମୁଲକ୍ ରାଜ ଆନନ୍ଦ ମୋର ଦ୍ୱାରସ୍ଥ ହେଲେ । ଗୋଟିଏ ଫରାସୀ ଆନ୍ତର୍ଜାତିକ ଫିଲମ୍ କୋମ୍ପାନୀ ଦ୍ୱାରା ଅଶୋକ ଚଳଚ୍ଚିତ୍ର ପ୍ରସ୍ତୁତ କରିବେ ବୋଲି କହିଲେ । ତାଙ୍କୁ ମଧ୍ୟ ସସମ୍ମାନେ ବିଦାୟ ଦେଲି ।

### ୧୯୯୦ ମସିହା : ପୁନରପି ରାଲହାନ, ପୁନଶ୍ଚ ଅଶୋକ

୧୯୯୦ ଜାନୁଆରୀ ୧ ତାରିଖ । ୧୦ଟା ବେଳେ ଫୋନ୍ ବାଜିଲା । ଶୁଭିଲା ସେହି ପୂର୍ବପରିଚିତ କଣ୍ଠସ୍ୱର । "ଦାସ ସାହେବ, ମୁଁ ଅଶୋକବାଲେ ରାଲହାନ କହୁଛି । ଏଥର, ଅଶୋକ କାହାଣୀ ଉପରେ ଟି.ଭି.ସିରିଆଲ କରିବି ବୋଲି ଆଗେଇ ବସିଛି । ଦୂରଦର୍ଶନ ଟଙ୍କା ଦେବ, ସ୍ପୋନସରମାନେ ଧାଡ଼ି ଲାଗିଲେଣି । ଆପଣଙ୍କ ସ୍ୱପ୍ନ ଏତେ ଦିନ ପରେ ସଫଳ ହେବ । ରାମାୟଣ ଓ ମହାଭାରତ ସିରିଆଲ୍ ଠାରୁ ଶହେ ଗୁଣ ଭଲ ସିରିଆଲ କରିବି । ଏକାନ୍ତ ଅନୁରୋଧ, ଆଗାମୀ ୫ ତାରିଖ ଦିଲ୍ଲୀ ଆସନ୍ତୁ । ଗୋଟିଏ ଦିନ ବିଳମ୍ୱ କରିବା ଅସମ୍ଭବ ।"

ଯିବା ପାଇଁ ରାଜି ହୋଇଗଲି । ଗ୍ରହ ଯେତେବେଳେ ଟାଣିନିଏ, ବିଷଧର ସାପ ମଧ୍ୟ ସୁନାଦଉଡ଼ି ପରି ଦିଶିଯାଏ । ଦୂରଦର୍ଶନ ସିରିଆଲର ଆକର୍ଷଣ ମନକୁ ଗ୍ରାସକଲା । ଭାବିଲି, ସିନେମା ଯୁଗର କଥା ଅଲଗା । ଦୂରଦର୍ଶନ ଯୁଗରେ ଅବସ୍ଥା ବଦଳି ଯାଇଛି । ଟଙ୍କାର ଅଭାବ ନଥିବ ।

ଜାନୁଆରୀ ୫ ତାରିଖ ସକାଳ ୯ଟାରେ ଦିଲ୍ଲୀସ୍ଥିତ 'ଆଶାଦୀପ' ନାମକ କୋଠାରେ ରାଲହାନଙ୍କ ଫ୍ଲାଟ୍‌ରେ ପହଞ୍ଚିଲି । ଆଲୋଚନା ଚାଲିଲା । ରାମାୟଣ ଓ ମହାଭାରତ ପରି ୫୨ଟି ଏପିସୋଡ୍, ୪୫ ଘଣ୍ଟାର କାହାଣୀ ମୋତେ

ଲେଖିବାକୁ ହେବ । କାହାଣୀଟିକୁ ଦୀର୍ଘ କରିବା ଲାଗି ଅଶୋକଙ୍କ ପିତାମହ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରୁ ବିଷୟବସ୍ତୁ ଲେଖିବା ପାଇଁ ସେ ପରାମର୍ଶ ଦେଲେ । ଦାୟିତ୍ୱର ଗୁରୁତ୍ୱ ଦୃଷ୍ଟିରୁ ସିଧା ପଚାରିଲି, ‘‘ମୋର ପାରିଶ୍ରମିକ ଜାଣିଲା ପରେ ସମ୍ମତି ଦେବି ।’’

ପାଟି ଫିଟାଇବା ଉଚିତ ନ ମଣି ରାଲହାନ ସାହେବ ଅଭିନୟ କୌଶଳ ଦ୍ୱାରା ମୋ ପ୍ରାପ୍ୟ ଅଙ୍କର ପରିମାଣ ଜଣାଇଦେଲେ । ଦୁଇହାତର ଦଶ ଅଙ୍ଗୁଳିକୁ ଦୁଇଥର ଉପରକୁ ଉଠାଇବା ଦେଖି ଆଶାନ୍ୱିତ ହେଲି – ୨୦ ଲକ୍ଷ । ବିକଟ ଅଟ୍ଟହାସ୍ୟ ମଧ୍ୟରେ ରାଲହାନଙ୍କ ମୁଖରୁ ବାହାରିଲା ତିନୋଟି ଅବୋଧ୍ୟ ଧ୍ୱନି –‘ବ୍ଲା, ବ୍ଲା, ବ୍ଲା’ । ଅର୍ଥାତ୍, ନିର୍ଭର ପ୍ରତିଶ୍ରୁତି !

କଥାରେ ଅଛି, ଲୋଭରୁ ପାପ, ପାପରୁ ମୃତ୍ୟୁ । ସେହି ମୁହୂର୍ତ୍ତର ଲୋଭଟି ଯେ ମୋ ପାଇଁ କେଡ଼େ ବଡ଼ ବିପଦ ଡାକି ଆଣିବ, ତାହା ଚିନ୍ତାଶକ୍ତିର ବାହାରେ ଥିଲା । ଲେଖିବା ପାଇଁ ରାଜି ହେଲାମାତ୍ରେ ସେ ଅନୁରୋଧ କଲେ, ମାସକ ଭିତରେ ୩ଟି ପାଇଲଟ୍ ଏପିସୋଡ ଲେଖି ବୋମ୍ୱେରେ ପହଞ୍ଚିବା ଦରକାର !

## ବୋମ୍ୱେ ଯାତ୍ରା

ଫେବୃୟାରୀ ମଝି ବେଳକୁ ୩ଟି ଅଧ୍ୟାୟ ଧରି ବୋମ୍ୱେରେ ପହଞ୍ଚିଲି । ରାଲହାନ ମୋତେ ନେଇଗଲେ ରାହି ମାସୁମ ରାଜାଙ୍କ ଘରକୁ । ମୁସଲମାନ ହେଲେ ମଧ୍ୟ ମହାଭାରତ ସିରିଆଲର ସଂଳାପ ଲେଖି ସେ ଭାରତପ୍ରସିଦ୍ଧ ହୋଇସାରିଥିଲେ । ମେଜିଆରେ ଶତରଞ୍ଜି ମେଲାଇ ରାଜା ଶୋଇଥାନ୍ତି । ଡାକ୍ତର ଇଞ୍ଜେକସନ ଦେଲେ । ତାଙ୍କ ପାଖରେ ବସିଲି । ସେ ମୋ ପ୍ରଥମ ଅଧ୍ୟାୟର ପୃଷ୍ଠାଗୁଡ଼ିକ ପଢ଼ି ପରାମର୍ଶ ଦେଲେ, ‘‘ଦୃଶ୍ୟ ଗୁଡ଼ିକ ବିଶଦଭାବରେ ନ ଲେଖି ସଂଳାପଗୁଡ଼ିକ ଉପରେ ଗୁରୁତ୍ୱ ଦେବେ । କାରଣ, ପର୍ବତମାଳା ବା ଅରଣ୍ୟର ବିସ୍ତୃତ ବର୍ଣ୍ଣନା ଦେଲେ ସୁଦ୍ଧା, ପର୍ଦ୍ଦାରେ ଗୋଟିଏ ମିନିଟ୍‌ରେ ସେସବୁ ଦେଖାଇବାକୁ ପଡ଼ିବ । ଅପର ପକ୍ଷରେ, ବିଭିନ୍ନ ଚରିତ୍ର ମଧ୍ୟରେ କଥୋପକଥନ ଯେତେ ବେଶି ହେବ, ସେତେ ଭଲ ।’’ ମୁଁ ତାଙ୍କୁ ଅନୁରୋଧ କଲି, ‘‘ମୋ ଲେଖାରେ ଥିବା ଐତିହାସିକ ସଂଳାପଗୁଡ଼ିକରେ କୌଣସି ପରିବର୍ତ୍ତନ କରିବେ ନାହିଁ, କାରଣ ସତ୍ୟକୁ ଭିତ୍ତିକରି ସେଗୁଡ଼ିକ ଲେଖିଛି ।’’ ସେ ରାଜି ହେଲେ ।

ଏହାପରେ, ରାହି ମାସୁମ ରାଜା ମୋତେ ସାବଧାନ କରିଦେବା ଉଦ୍ଦେଶ୍ୟରେ କହିଲେ, ‘‘ଗତକାଲି ଭୀଷ୍ମଙ୍କ ଶରଶଯ୍ୟା ଦୃଶ୍ୟ ସୁଟିଂ ହେଉଥିଲାବେଳେ ତଳେ ପଡ଼ିଯାଇ ମୁଁ ମଧ୍ୟ ଶଯ୍ୟାରେ ପଡ଼ିରହିଛି । ତଥାପି, ଆଗାମୀ କାଲିର ସୁଟିଂ

ପାଇଁ ସଂଳାପ ଲେଖୁଛି । ଆପଣ ମଧ୍ୟ ଜାଣିରଖନ୍ତୁ, ଅଶୋକ ସିରିୟାଲର ଶେଷ ଅଧ୍ୟାୟର ଶେଷ ଦୃଶ୍ୟ ସୁଟିଂ ଶେଷ ନ ହେଲା ପର୍ଯ୍ୟନ୍ତ ନିସ୍ତାର ପାଇବେ ନାହିଁ ।'' ରାହି ସାହେବଙ୍କ ସତର୍କବାଣୀ ଶଙ୍କା ସୃଷ୍ଟି କଲାନାହିଁ, କାରଣ ୨୦ ଲକ୍ଷ ଟଙ୍କାର ସ୍ୱର୍ଣ୍ଣମୃଗ ଆଖି ଆଗରେ ଦୌଡ଼ି ବୁଲୁଥାଏ । ସେଠାରୁ ଯାଇ ପ୍ରଖ୍ୟାତ ସଙ୍ଗୀତ ବିଶାରଦ ନୌସାଦ ଆଲି ଖାଁଙ୍କୁ ଭେଟି, ଅଶୋକ ସିରିଆଲ ସମ୍ପର୍କରେ ଆଲୋଚନା କଲି ଓ କେତୋଟି ଗୀତର ବିଷୟବସ୍ତୁ ଜଣାଇଲି ।

'ଅଶୋକ ହାଉସ'ରେ ରାଲହାନ ତାଙ୍କ ଏକ୍‌ଜିକ୍ୟୁଟିଭ ଡାକରେକ୍ଟର ବି.କେ.କରଞ୍ଜିଆଙ୍କ ସହିତ ପରିଚୟ କରାଇଦେଲେ । ବ୍ଲିଜ୍ ପତ୍ରିକାର ସମ୍ପାଦକ ଓ ପାର୍ଲିଆମେଣ୍ଟ ସଦସ୍ୟ ଆର.କେ.କରଞ୍ଜିଆଙ୍କ ସାନ ଭାଇ ସଦ୍ୟ ଦୂରଦର୍ଶନ ନିର୍ଦ୍ଦେଶକ ପଦରୁ ଅବସର ନେଇ ଅଶୋକ ସିରିଆଲ ପରିଚାଳନା ଦାୟିତ୍ୱରେ ନିଯୁକ୍ତି ପାଇଥାନ୍ତି । ବିଶ୍ୱାସ ଆସିଲା, ସରିଆଲ ନିଶ୍ଚୟ ହେବ । ନିଭୃତରେ ତାଙ୍କୁ କହିଲି, ''ଗତ ଥରର ତିକ୍ତ ଅନୁଭୂତି ଯୋଗୁଁ ରାଲହାନ ପରି ଲୋକଙ୍କୁ ମୁଁ ବିଶ୍ୱାସ କରିପାରିବି ନାହିଁ ।'' ସେ ନିର୍ଭର ପ୍ରତିଶ୍ରୁତି ଦେଲେ, ''ଏଥର ଟଙ୍କାର ଅଭାବ ନାହିଁ । ନିଶ୍ଚିନ୍ତ ମନରେ କାମରେ ଆଗେଇ ଯାନ୍ତୁ । ମୁଁ ଆପଣଙ୍କ ସ୍ୱାର୍ଥ ଆଖିରେ ରଖିବି ।''

ତିନିଙ୍କ ମଧ୍ୟରେ ଯୋଜନାର ସାଫଲ୍ୟ ବିଷୟରେ ଆଲୋଚନା ହେଲା । ରାଲହାନ କହିଲେ, ''ମୁଁ ଶୁଣୁଛି, ଶ୍ୟାମ ବେନେଗାଲ ଲଣ୍ଡନ ଯାଇ ସେଠାରେ ଅଶୋକ କାହାଣୀ ଲେଖୁଛି । ଦୂରଦର୍ଶନ ସିରିଆଲ ପାଇଁ ସେ ଚେଷ୍ଟା କରିପାରେ । ଆପଣ କାହିଁକି ତୁରନ୍ତ ଲଣ୍ଡନ ଯାଉନାହାନ୍ତି ?'' ଉତ୍ତର ଦେଲି, ''ଯିବା ପାଇଁ ଆପତ୍ତି ନାହିଁ । ବ୍ରିଟିଶ୍ ମିଉଜିୟମ ଲାଇବ୍ରେରୀରେ ସବୁ ଦେଶର ବୌଦ୍ଧ ଗ୍ରନ୍ଥଗୁଡ଼ିକର ଇଂରାଜୀ ଅନୁବାଦ ରହିଛି । ସେଥିରୁ ଅନେକ ତଥ୍ୟ ମିଳିଯିବ ।'' ବ୍ଲା, ବ୍ଲା, ବ୍ଲା ଧ୍ୱନି ସହ ରାଲହାନ କହିଲେ, ''ତା' ହେଲେ, ଅବିଳମ୍ବେ ଯାଆନ୍ତୁ । ଲଣ୍ଡନରେ ମୋର ବନ୍ଧୁମାନେ ଅଛନ୍ତି । ସେମାନେ ଆପଣଙ୍କ ରହିବା ବ୍ୟବସ୍ଥା କରିବେ । ଆପଣ ସେଠାରେ ଯେଉଁଦିନ ପହଞ୍ଚିବେ, ତାହାର ଠିକ୍ ଚାରିଦିନ ପରେ ମୁଁ ପହଞ୍ଚିବି । ସବୁ ସୁବିଧା କରିଦେବି ।''

ତାଙ୍କର ଉଦ୍ଦେଶ୍ୟ ସେତେବେଳେ ବୁଝିପାରିଲି ନାହିଁ । ସେ ଜାଣିଥାନ୍ତି ଯେ ମୁଁ ବ୍ରିଟିଶ୍ କାଉନସିଲ ବା ଲଣ୍ଡନ ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣ କ୍ରମେ ସେଠାକୁ ବାରମ୍ବାର ଯାଏଁ । ତେଣୁ ଏଥର ମଧ୍ୟ ସେମାନଙ୍କ ଖର୍ଚ୍ଚରେ ଚାଲିଯିବି । ତାଙ୍କର ଏପରି ଧାରଣା ମଧ୍ୟ ଥିଲା ଯେ, ଲଣ୍ଡନ ଦୋକାନରୁ ଜିନିଷ କିଣିଲା ପରି ବ୍ରିଟିଶ୍ ଲାଇବ୍ରେରୀରୁ 'ଅଶୋକ' ମାଲଟି କିଣି ଆଣିବି । ତଥ୍ୟ ସଂଗ୍ରହ କିପରି କାମ, ସେ ବିଷୟରେ ଜଣେ ଅଜ୍ଞ ପ୍ରଯୋଜକର ତିଳେମାତ୍ର ଜ୍ଞାନ ନଥାଏ ।

## ଲଣ୍ଡନ ଯାତ୍ରା

ରାଲହାନ ପାଖରୁ ବିମାନ ଭଡ଼ା ପାଇଁ ଟଙ୍କା ଆସିଲା ନାହିଁ । ପରେ ପାଇବି ଭାବି ନିଜ ଟଙ୍କାରେ ଟିକଟ କିଣିଲି । ମାର୍ଚ୍ଚ ମାସ ମଝିରେ ଲଣ୍ଡନରେ ପହଞ୍ଚିଲି । ସାରଦାନା ନାମକ ଇଞ୍ଜିନିୟାର ବିମାନଘାଟିରୁ ତାଙ୍କ ଗାଡ଼ିରେ ନେଇଗଲା ବେଳେ ଜାଣିଲି ଯେ ସେ ରାଲହାନଙ୍କୁ ଦେଖିନାହାନ୍ତି କି ଜାଣି ନାହାନ୍ତି, ଅଥଚ ରାଲହାନର ଜଣେ ବ୍ୟବସାୟୀ ବନ୍ଧୁଙ୍କ ଅନୁରୋଧକ୍ରମେ ମୋତେ ତାଙ୍କ ଘରେ କିଛିଦିନ ପାଇଁ ରଖିବା ଲାଗି ରାଜି ହୋଇଛନ୍ତି । ସାରଦାନାଙ୍କ ସ୍ତ୍ରୀ ଜଣେ ଡାକ୍ତର । ସହର ବାହାରେ ତାଙ୍କର ଘର ।

ଆଶ୍ରୟ ମିଳିଲା, କିନ୍ତୁ ସେତେ ଦୂରରୁ ବ୍ରିଟିଶ ଲାଇବ୍ରେରୀକୁ ଯିବାଆସିବା ଖର୍ଚ୍ଚ କିଏ ଦେବ ! ରାଲହାନଙ୍କ ବ୍ୟବସାୟୀ ବନ୍ଧୁ ପ୍ରକାରାନ୍ତରେ ଜଣାଇଦେଲେ, ଅର୍ଥ ଦେଇପାରିବେ ନାହିଁ କିମ୍ବା ରାଲହାନ ମଧ୍ୟ କଦାପି ଆସିବେ ନାହିଁ । ଅପରିଚିତ ସାରଦାନା ଦମ୍ପତିଙ୍କୁ ବା ଟଙ୍କା ମାଗିବି କିପରି ? ସେମାନଙ୍କ ଆତିଥ୍ୟ ବା କେତେଦିନ ଭୋଗ କରିବି ! ଭାଗ୍ୟକୁ ମୋ ପ୍ରକାଶକ ବନ୍ଧୁ ପୀତାମ୍ବର ମିଶ୍ରଙ୍କ ନିକଟସମ୍ପର୍କୀୟ ଡକ୍ଟର ଶ୍ରୀକାନ୍ତ ଷଡ଼ଙ୍ଗୀଙ୍କ ଠିକଣାଟି ମୋ ପାଖରେ ଥାଏ । ତାଙ୍କ ପାଖରୁ ଟଙ୍କା ଧାର ଆଣି ଗୋଟିଏ ନିମ୍ନମାନର ହୋଟେଲକୁ ଚାଲିଆସିଲି ।

ବ୍ରିଟିଶ ଲାଇବ୍ରେରୀରେ ବୌଦ୍ଧ ଗ୍ରନ୍ଥର ଅଭାବ ନଥାଏ । କିନ୍ତୁ ଯେଉଁ ସମସ୍ତ ତିବ୍ବତୀୟ, ସିଂହଳୀୟ, ଜାପାନୀ ଓ ଚୀନା ଗ୍ରନ୍ଥରେ ତଥ୍ୟ ଆବିଷ୍କାର କଲି, ସେ ସବୁର ଫଟୋଷ୍ଟାଟ କପି ନେବାର ଖର୍ଚ୍ଚ ଅନେକ । ଅଳ୍ପ କିଛି କିଛି ହାତରେ ଟିପି ଆଣିବା ଛଡ଼ା ଅନ୍ୟ ଉପାୟ ନଥାଏ । ଦିନେ ସାରଦାନା ସାହେବ ହୋଟେଲରେ ଦେଖାକରି ସମ୍ବାଦ ଦେଲେ, ମୁଁ ହୋଟେଲରେ ରହିଥିବା ଖବର ପାଇ ରାଲହାନ ତାଙ୍କ ବ୍ୟବସାୟୀ ବନ୍ଧୁଙ୍କୁ ଫୋନ ଯୋଗେ ଗାଳି ଦେଇଛନ୍ତି ଓ ହୋଟେଲ ଖର୍ଚ୍ଚ କିଏ ଦେଉଛି ବୋଲି ପଚାରିଛନ୍ତି । ସାରଦାନା ମୋତେ ପଚାରିଲେ, ‘‘କୋଟି କୋଟି ଟଙ୍କାର ସିରିଆଲ କଥା କହୁଥିବା ଲୋକ ଯଦି ସାମାନ୍ୟ ହୋଟେଲ ଖର୍ଚ୍ଚ ଲାଗି ସଂକୀର୍ଣ୍ଣତା ଦେଖାଏ, ସେପରି ଅଦ୍ଭୁତ ବ୍ୟକ୍ତିଙ୍କୁ ଆପଣ ବିଶ୍ୱାସ କରୁଛନ୍ତି କିପରି ?’’

ଏପ୍ରିଲ ୧୫ ତାରିଖ ଦିନ ଭୁବନେଶ୍ୱରରେ ଫେରି ପହଞ୍ଚିଲି । କେଉଁ ଫ୍ଲାଇଟ୍‌ରେ ଆସୁଛି ଓ କେତେବେଳେ ପହଞ୍ଚିବି, ସେ କଥା ରାଲହାନ ତାଙ୍କ ବନ୍ଧୁଙ୍କ ପାଖରୁ ଜାଣିନେଇଥିଲେ । ମୁଁ ଘରେ ପହଞ୍ଚିବାର ଘଣ୍ଟାକ ମଧ୍ୟରେ ତାଙ୍କର ଫୋନ କଲ୍ ପାଇଲି ।

ରାଲହାନ : ''ବୋମ୍ବେ ବାଟେ ଆସିଥିଲେ, ଏହିଠାରେ ମୋତେ ଅଶୋକ ଲେଖା ଦେଇଯାଇ ପାରିଥାନ୍ତେ ।''

ମୁଁ : ''ଅଶୋକ କାହାଣୀ ଲଣ୍ଡନ ସହରର ଫୁଟ୍‌ପାଥରେ କିଣିବାକୁ ମିଳେନାହିଁ । ଏଠାରେ ଲେଖିବାକୁ ହେବ ।''

ରାଲହାନ : ''ସୁଟିଂ ତାରିଖ ଠିକ୍ ହୋଇଗଲାଣି । ଅତିଶୀଘ୍ର ଲେଖା ଦରକାର ।''

ମୁଁ : ''ଅତିଶୀଘ୍ର ମୋ ବିମାନଭଡ଼ା ଓ ହୋଟେଲ ଭଡ଼ା ପଠାଇଲା ପରେ ଲେଖା ପାଇବେ ।''

ରାଲହାନ : ''ବର୍ତ୍ତମାନ ଟଙ୍କା ଦେବା ସମ୍ଭବ ନୁହେଁ । ବାହାରୁ ଟଙ୍କା ଆସିଲା ପରେ ପାଇବେ ।''

ମୁଁ : ''ମୋର ଟଙ୍କା ଦରକାର ନାହିଁ । ଆପଣ ଅନ୍ୟ ଲେଖକ ଖୋଜନ୍ତୁ କିମ୍ବା ନିଜେ ଲେଖିପକାନ୍ତୁ । ଯାହାଙ୍କ ପାଖରୁ ଲଣ୍ଡନରେ ଟଙ୍କା ଧାର କରିଛି, ତାଙ୍କ ପରିବାରକୁ ଏଠାରେ ସଙ୍ଗେ ସଙ୍ଗେ ଫେରାଇବାକୁ ହେବ ।''

ଧମକର ଅର୍ଥ ବୁଝିପାରି ରାଲହାନ ଚେକ୍ ଖଣ୍ଡିଏ ପଠାଇଦେଲେ । ଅବଶ୍ୟ, ତାଙ୍କ ବନ୍ଧୁଙ୍କ ପାଖରୁ ସନ୍ଧାନ ନେଲାପରେ, ହୋଟେଲରେ ଘରଭଡ଼ା କେତେ ଟଙ୍କା ଦେଇଛି । ଖାଇବା ଖର୍ଚ୍ଚ ମୋ ହାତରୁ ଗଲା ।

## ପରବର୍ତ୍ତୀ ଘଟଣା

ରାଲହାନ ପ୍ରତି ଘୃଣା ସତ୍ତ୍ୱେ, କରଞ୍ଜିଆଙ୍କ ଅନୁରୋଧକ୍ରମେ ଅଧ୍ୟାୟ ପରେ ଅଧ୍ୟାୟ ପଠାଇଲି । କିନ୍ତୁ ଦୂରଦର୍ଶନ ଅନୁମତି ସମ୍ବନ୍ଧରେ ସନ୍ଦେହ ହେଲା । ଲୋକସଭା ବାଚସ୍ପତି ବନ୍ଧୁ ରବି ରାୟ ପ୍ରତିଶ୍ରୁତି ଦେଲେ, ଗୋଟିଏ ଦିନରେ ଅନୁମତି କରାଇଦେବେ । ଏକଥା ରାଲହାନଙ୍କୁ ଫୋନ୍‌ରେ ଜଣାଇବାରୁ ସେ କହିଲେ, ''ଅନୁମତି ପାଇଁ ଆପଣ ଚିନ୍ତା କରିବା ଦରକାର ନାହିଁ । ଲେଖା ଶେଷ କରନ୍ତୁ ।'' ମୋର ସନ୍ଦେହ ଘନୀଭୂତ ହେଲା ।

ତେଣେ, ଫିଲମ୍ ମେଗାଜିନଗୁଡ଼ିକରେ ଅଶୋକ ସିରିଆଲ୍ ପ୍ରଚାର ବଢ଼ି ଚାଲିଥାଏ । ୧୯୯୦ ନଭେମ୍ବର ମାସ ତିବ୍ବତୀୟ ଧର୍ମଗୁରୁ ଦଲାଇ ଲାମା ବୋମ୍ବେ ସହର ବାହାରେ ଅଶୋକ ସିରିଆଲର ସୁଟିଂ ଲାଗି 'ଭୂମିପୂଜା' ସମ୍ପାଦନ କଲେ । ମହାସମାରୋହରେ ଉତ୍ସବ ଅନୁଷ୍ଠିତ ହେଲା ବୋଲି ସମ୍ବାଦପତ୍ରରୁ ପଢ଼ିଲି । ଦଲାଇ ଲାମାଙ୍କ ଉପସ୍ଥିତିରେ ରାଲହାନ ସାହେବ ଘୋଷଣା କରିଥିଲେ, ''ଆମେରିକାରେ ଥିବା ପ୍ରବାସୀ ଭାରତୀୟମାନେ ୩୫ ନିୟୁତ ଡଲାର ସାହାଯ୍ୟ ଦେବେ ।'' ସେଥିସହ ସେ ଏକଥା ମଧ୍ୟ ପ୍ରକାଶ କରିଥିଲେ ଯେ, ଅଶୋକ ଭୂମିକା ପାଇଁ

ସାରା ଦେଶରେ 'ନୂତନ ମୁଖ' ଆବିଷ୍କାର କରାଯିବ । ସେଥି ନିମନ୍ତେ ଆବଶ୍ୟକ ଦରଖାସ୍ତ, ଫଟୋ ଓ ମନିଅର୍ଡ଼ର ।

ସମ୍ବାଦ ପଢ଼ି ସ୍ତମ୍ଭୀଭୂତ ହେଲି । ସିରିଆଲ ପାଇଁ ଦିଲ୍ଲୀରୁ ଅନୁମତି ମିଳିନାହିଁ, ଅଥଚ 'ଭୂମିପୂଜା' ? ପୁଣି, ଖୋଦ ଦଲାଇ ଲାମାଙ୍କ ହାତରେ ! ଗତଥର ଅଶୋକ ଫିଲମ୍ ପାଇଁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ, ବିଦେଶ ମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଓ ସର୍ବୋଚ୍ଚ ସେନାପତି ଟି.ଏନ୍.ରାଇନା ପ୍ରଭୃତି ବ୍ୟକ୍ତିଙ୍କ ନିକଟରୁ ଶୁଭେଚ୍ଛାମୂଳକ ବାର୍ତ୍ତାମାନ ପୁସ୍ତିକା ଆକାରରେ ପ୍ରକାଶ କରି ଦେଶ ବିଦେଶରେ ବଣ୍ଟା ଯାଇଥିଲା । ଏଥର, ଦଲାଇ ଲାମାଙ୍କୁ ବ୍ୟବହାର କରିବା ପଛରେ ନିଶ୍ଚୟ କିଛି ନିଗୂଢ଼ ରହସ୍ୟ ରହିଛି ବୋଲି ମୋର ସନ୍ଦେହ ହେଲା । ୧୯୯୦ ମସିହାରେ ସାରା ବିଶ୍ୱରେ 'ତିବ୍ବତ ବର୍ଷ' ପାଳିତ ହେଉଥାଏ । ତିବ୍ବତ ସପକ୍ଷରେ ସଚେତନତା ସୃଷ୍ଟି ଲାଗି ବୌଦ୍ଧଦେଶ ଓ ସଙ୍ଗଠନଗୁଡ଼ିକ ଅଜସ୍ର ଅର୍ଥ ଢାଳି ଦେଉଥାନ୍ତି । ତାହାର ସୁଯୋଗ ନେଇ ତିବ୍ବତୀୟ ପାଣ୍ଠିରୁ ଯଥେଷ୍ଟ ଅର୍ଥ ମାରିନେବା ରାଲହାନ ପରି ଠକ ପକ୍ଷରେ ଅସମ୍ଭବ ନୁହେଁ ବୋଲି ଭାବିଲି ।

ଆଶଙ୍କା ଘନୀଭୂତ ହେଲାପରେ, ଦିଲ୍ଲୀସ୍ଥିତ ନେସନାଲ ଆର୍କାଇଭସ୍‌ର ଡାଇରେକ୍ଟର ଜେନେରାଲଙ୍କୁ ଦୂରଦର୍ଶନ କର୍ମକର୍ତ୍ତାମାନଙ୍କୁ ଭେଟିବା ଲାଗି ଅନୁରୋଧ କଲି । ସତ୍ୟାସତ୍ୟ ଅନୁସନ୍ଧାନ କରି ସେ ଜଣାଇଲେ, ''ଅଶୋକ ସିରିଆଲ ପାଇଁ ପ୍ରକାଶ ମେହେରା ନାମକ ପ୍ରଯୋଜକ ଦୂରଦର୍ଶନ ଅନୁମତି ପାଇପାରନ୍ତି ।''

ମୋର ଧ୍ୟାନଭଙ୍ଗ ହେଲା । ପ୍ରକାଶ ମେହେରାଙ୍କ ସମ୍ବନ୍ଧରେ ଶୁଣିଥିବା କଥା ମନେପଡ଼ିଲା । ୧୯୭୮ ରେ ମୁଁ ଯେତେବେଳେ ଅଶୋକ ଫିଲମ୍ ଲାଗି ଦୃଶ୍ୟଗୁଡ଼ିକ ବର୍ଣ୍ଣନା କରିବା ସହ ମୋ ଲେଖାଗୁଡ଼ିକ ରାଲହାନଙ୍କୁ ଦେଉଥାଏଁ, ସେତେବେଳେ ରାମକୁମାର ନାମକ ଚିତ୍ରକର ସେହି ଦୃଶ୍ୟଗୁଡ଼ିକର ସ୍କେଚ୍ ବା ରେଖାଚିତ୍ର ଅଙ୍କନ କରୁଥାନ୍ତି । ତାହାର ବର୍ଷକ ପରେ ରାଲହାନ ଥରେ ଗଭୀର ଦୁଃଖ ପ୍ରକାଶ କରି କହୁଥିବା ଶୁଣିଥିଲି, ''ବିଶ୍ୱାସଘାତକ ରାମକୁମାର ଅଶୋକ କାହାଣୀର ସବିଶେଷ ବିବରଣୀ ପ୍ରକାଶ ମେହେରାକୁ ଦେଇଦେଇଛି ।'' ଏହିକଥା ମନେପଡ଼ିଯିବାରୁ ଜାଣିନେଲି, ମୋର ସମସ୍ତ ଅଧ୍ୟବସାୟ ବ୍ୟର୍ଥ ହେବ ।

ସଂକଳ୍ପ ନେଲି, ମୋ ଲେଖା ଶେଷ କରିବି । ସିରିଆଲ ହେଉ ବା ନ ହେଉ, ଟଙ୍କା ମିଳୁ ବା ନ ମିଳୁ, ଅନ୍ତତଃ ପକ୍ଷେ ଅଶୋକ ଓ କଳିଙ୍ଗଯୁଦ୍ଧ ବିଷୟରେ ବହିଖଣ୍ଡିଏ ପ୍ରକାଶ କରିପାରିବି । ଏହିପରି ସମୟରେ ୧୯୯୧ ମାର୍ଚ୍ଚ ମାସରେ ବି.କେ.କରଞ୍ଜିଆଙ୍କ ବ୍ୟକ୍ତିଗତ ଗୋପନୀୟ ଚିଠି ପାଇଲି । ସେ ଲେଖିଥିଲେ,

"ମୁଁ ରାଲହାନ ପାଖରୁ ବିଦାୟ ନେଲି, କାରଣ ତାଙ୍କ ସହିତ କାର୍ଯ୍ୟ କରିବା ଅସମ୍ଭବ । ସେପରି ବ୍ୟକ୍ତି ପାଖରେ ଜ୍ଞାନ, ଦକ୍ଷତା ବା ନମ୍ରତାର ଲେଶମାତ୍ର ନାହିଁ । ମୁଁ 'ଗାନ୍ଧି' ଚଳଚ୍ଚିତ୍ରର ନିର୍ମାତା ରିଚାର୍ଡ ଆଟେନ୍‌ବରୋଙ୍କ ସହିତ କାମ କରିଥିଲି । ତାଙ୍କପରି ମର୍ଯ୍ୟାଦାବାନ ବ୍ୟକ୍ତିଙ୍କ ସମ୍ପୂର୍ଣ୍ଣ ବିପରୀତ ମଣିଷ ହେଉଛି ରାଲହାନ । ଆପଣଙ୍କୁ ମୋର ଉପଦେଶ, ଏଗ୍ରିମେଣ୍ଟ କରନ୍ତୁ, ଟଙ୍କା ନିଅନ୍ତୁ । ସେ ଆପଣଙ୍କ ସରଳତାର ସୁଯୋଗ ନେଇ ପ୍ରତାରିତ କରୁଛି ।"

କରଞ୍ଜିଆଙ୍କ ପତ୍ର ପାଇ ପ୍ରକୃତ ଘଟଣା ସମ୍ପର୍କରେ ଅନୁସନ୍ଧାନ ଚଳାଇଲି । ରାଲହାନଙ୍କ କର୍ମଚାରୀମାନଙ୍କ ମଧ୍ୟରେ କେହି କେହି ପ୍ରତାରିତ ହେଲାପରେ, ସେମାନଙ୍କ ପୂର୍ବତନ ପ୍ରଭୁଙ୍କ ଚରିତ୍ର ଉଦ୍‌ଘାଟନ କରିବାକୁ ତତ୍ପର ଥାନ୍ତି । ଏପରିକି, ତାଙ୍କ ଭଣଜା ଓ ପୁତୁରା ପ୍ରଭୃତି ଆତ୍ମୀୟମାନେ ମଧ୍ୟ ତାଙ୍କୁ ଘୃଣା କରନ୍ତି । ସେ ଯାହାହେଉ, ରାଲହାନଙ୍କ ଉଦ୍ଦେଶ୍ୟ ଭେଦ କରିବାକୁ ବିଳମ୍ବ ହେଲାନାହିଁ । ସାଂଘାତିକ ଅଭିସନ୍ଧି, ଯଥା– ଏକେ ମୋ ଗବେଷଣାପ୍ରସୂତ ଅଶୋକ କାହାଣୀକୁ ଭାରତର କୌଣସି ପ୍ରସିଦ୍ଧ ପ୍ରଯୋଜକଙ୍କୁ ବିକ୍ରିକରି ଅମାପ ଟଙ୍କା ପାଇଯିବେ, ନଚେତ୍ ହଲିଉଡ୍‌ର କୌଣସି କୋମ୍ପାନୀକୁ ବିକ୍ରୟ କରି ନିୟୁତ ନିୟୁତ ଡଲାର ଆମଦାନି କରିବେ । ଉଲ୍ଲେଖ ଯୋଗ୍ୟ, ହଲିଉଡ୍‌ର କେତୋଟି କୋମ୍ପାନୀ ବିଶ୍ୱ ଇତିହାସର ମହାନ ଐତିହାସିକ ବ୍ୟକ୍ତିମାନଙ୍କ ଜୀବନୀକୁ ଆଧାର କରି ଧାରାବାହିକ ଭାବେ ଶିକ୍ଷାମୂଳକ ସିରିଆଲ ପ୍ରଦର୍ଶନ କରନ୍ତି । ଆଲେକ୍‌ଜାଣ୍ଡାର, ସିଜାର, ଚେଙ୍ଗିସ୍, ନେପୋଲିୟନଙ୍କ ଠାରୁ ହିଟଲାର, ମୁସୋଲିନୀ ପର୍ଯ୍ୟନ୍ତ ପ୍ରସିଦ୍ଧ ଜୀବନୀ ପ୍ରଦର୍ଶିତ ହେଉଥିଲାବେଳେ, ମାନବ ଜାତିର ସର୍ବଶ୍ରେଷ୍ଠ ନରପତି ରୂପେ ପରିଚିତ ଅଶୋକଙ୍କ ଜୀବନୀର ଚାହିଦା କେତେ ବେଶି ହୋଇ ନଥିବ !

ମୋର ଅନୁସନ୍ଧାନ ଚାଲିଥିଲାବେଳେ ତେଣେ ରାଲହାନଙ୍କ ପାଖରୁ ଘନ ଘନ ଫୋନ୍ ଆସୁଥାଏ, ଶେଷ ଅଧ୍ୟାୟ ଗୁଡ଼ିକ ଶୀଘ୍ର ଦରକାର । ମୁଁ ଟଙ୍କା ଓ ଏଗ୍ରିମେଣ୍ଟ ପାଇଁ ଅଡ଼ି ଧରି ବସିଲି । ତାଙ୍କର ଜଣେ ଧୂର୍ତ୍ତ କର୍ମଚାରୀ ଶର୍ମା ମହୋଦୟ ଫୋନ୍‌ରେ କହିଲେ, "ନିଜେ ବୋମ୍ବେ ଆସି ନଗଦ ଆକାରରେ ଟଙ୍କା ନେଇଯାନ୍ତୁ । ବ୍ୟାଙ୍କ୍ ଡ୍ରାଫଟ୍ ଯୋଗେ ଟଙ୍କା ପଠାଇଲେ, ଇନକମ୍ ଟ୍ୟାକ୍ସବାଲା ଆପଣଙ୍କୁ ଧରିବେ । ଆସିବା ଆଗରୁ, ଆଗ ବାକି ଲେଖାତକ ପଠାଇଦିଅନ୍ତୁ ।" "ଯେଉଁଦିନ ବ୍ୟାଙ୍କ୍ ଡ୍ରାଫ୍ଟ ପାଇବି, ସେହିଦିନ ଲେଖା ପଠାଇବି ବୋଲି ଆପଣଙ୍କ ମାଲିକଙ୍କୁ କହିଦିଅନ୍ତୁ," ମୁଁ ଉତ୍ୟକ୍ତ କଣ୍ଠରେ ଜଣାଇଦେଲି ।

ଦୁଇ-ତୃତୀୟାଂଶ ଲେଖା ପଠା ସରିଥିଲା, ବାଁକି ଏକତୃତୀୟାଂଶ ପାଇଁ ଦାବି । ତେଣେ, ଦୂରଦର୍ଶନ ଅନୁମତି ନାହିଁ କି ସୁଟିଂର ନାମ ଗନ୍ଧ ନାହିଁ । ପ୍ରଚାର

ମଧ୍ୟ ଧ୍ୱମେଇ ଯାଇଥାଏ । ଅଧିକ ସମୟ ଅପେକ୍ଷା ନକରି ଅକ୍ଟୋବର ଶେଷ ସପ୍ତାହରେ ଦିଲ୍ଲୀର ଜଣେ ପ୍ରକାଶକଙ୍କୁ ପାଣ୍ଡୁଲିପି ଦେଇଦେଲି । ସାତଶହ ପୃଷ୍ଠାର ବହି 'ରିମା' ପ୍ରକାଶନ ଦୁଇମାସ ଭିତରେ ପ୍ରକାଶ କରିବେ ବୋଲି ଜବାବ୍ ଦେଲେ । ବହିର ନାମ ରଖିଲି: "Emperor Asoka Maurya: Kalinga War to Universal Peace."

ଦିଲ୍ଲୀରୁ ଫେରି ରାଲହାନଙ୍କ ପାଖକୁ ଲେଖିଦେଲି, "ମୋ ଲେଖା ପ୍ରକାଶ ପାଇଁ ପ୍ରେସ୍‌କୁ ଦେଇଦେଇଛି । ପ୍ରକାଶିତ ବହିରୁ ଟି.ଭି. ସିରିଆଲ କରିପାରିବେ । ରାମାୟଣ, ମହାଭାରତ ବା ଟିପୁ ସୁଲତାନ ପ୍ରଭୃତି ସିରିଆଲମାନ ପ୍ରକାଶିତ ବହିରୁ ହେଉଛି । ଅଶୋକ ସିରିଆଲ ମଧ୍ୟ ବହିରୁ ହେବା ଉଚିତ ।"

ଚିଠି ପାଇ ଉତ୍‌କ୍ଷିପ୍ତ ରାଲହାନ ଫୋନ୍‌ରେ ଉଚ୍ଚ ସ୍ୱରରେ କଥା ଆରମ୍ଭ କଲାମାତ୍ରେ ତାଙ୍କୁ କଠୋର ଭାଷାରେ ଆଚ୍ଛା ଦୁଇପଦ ଶୁଣାଇଦେଲି । ମାନସିକ ଭାରସାମ୍ୟ ହରାଇ ସେ କୋର୍ଟ କଚେରୀର ଆଶ୍ରୟ ନେବାକୁ ଠିକ୍ କଲେ । ୧୯୯୨ ଆରମ୍ଭରୁ ମୋ ପ୍ରତି ବିପଦ ଘଣ୍ଟି ବାଜିଲା । ସୁନାମ ଅର୍ଜନ ସହିତ ଅର୍ଥଲାଭ ଆଶାରେ ଯେଉଁ ମାୟା ମରୀଚିକା ପଛରେ ଦୌଡ଼ିଥିଲି, ତାହାର ପରିଣାମ ଭୋଗିବାକୁ ହେଲା ।

## ଦିଲ୍ଲୀ ହାଇକୋର୍ଟ ଦର୍ଶନ

୧୯୯୨ ଏପ୍ରିଲ ମାସରେ ରାଲହାନ ମୋ ପୁସ୍ତକର ମୁଦ୍ରଣ ଓ ପ୍ରକାଶନ ଉପରେ ଦିଲ୍ଲୀ ହାଇକୋର୍ଟରୁ ନିଷେଧାଜ୍ଞା ଜାରୀ କରାଇଲେ । ଅଥଚ, ସେହି ବର୍ଷ ଫେବୃୟାରୀରେ ଦିଲ୍ଲୀ ପୁସ୍ତକ ମେଳାରେ ଅଶୋକ ବହି ପ୍ରଦର୍ଶିତ ହୋଇସାରିଥିଲା । ତା' ପରେ, ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ଦିଲ୍ଲୀ କନିଷ୍କ ହୋଟେଲରେ କ୍ୟାବିନେଟ ମନ୍ତ୍ରୀ, ବିଚାରପତି, ଆଇନଜ୍ଞ ଓ ସାମ୍ବାଦିକଙ୍କ ଉପସ୍ଥିତିରେ ସର୍ଦ୍ଦାର ପଟେଲ ସ୍ମାରକୀ ବକ୍ତୃତାମାଳା ଉପଲକ୍ଷେ ଆୟୋଜିତ ଭୋଜିସଭାରେ ଆନୁଷ୍ଠାନିକ ଭାବରେ ବହିଟି ଉନ୍ମୋଚିତ ହେଲା । ତେଣୁ, ମୁଦ୍ରଣ ଓ ପ୍ରକାଶନ ଉପରେ ନିଷେଧାଜ୍ଞାର ଅର୍ଥ ନଥାଏ । ତଥାପି, ସେହି ନିଷେଧାଜ୍ଞା ବାତିଲ କରିବା ଲାଗି ପାଞ୍ଚ ଥର ତାରିଖ ପଡ଼ିଲା ଓ ଏକବର୍ଷ ସମୟ ଲାଗିଲା ।

ଏହାପରେ, ରାଲହାନଙ୍କ ଓକିଲମାନେ ବହି ବିକ୍ରୟ ଉପରେ ନିଷେଧାଜ୍ଞା ଆଣିଲେ । ତାହାର ବିଚାର ପାଇଁ ତାରିଖ ପରେ ତାରିଖ ପଡ଼ିଲା ଓ ଆଉ ଏକ ବର୍ଷ ଲାଗିଗଲା । ଅଦାଲତରେ କିପରି ବିଳମ୍ବ ହୁଏ, ତାହା ଲେଖିବା ଆଇନ-ସମ୍ମତ ନୁହେଁ । କେବଳ ଭୁକ୍ତଭୋଗୀମାନେ ତାହା ଅନୁଭବ କରିଥାନ୍ତି । ଶେଷରେ ସେ ଆଦେଶ ମଧ୍ୟ ରଦ୍ଦ ହେଲା ।

ତା ପରେ ରାଲହାନ ବୃହତ୍ତର ଅଭିଯୋଗ ଆଣିଲେ ଯେ, ତାଙ୍କ ପ୍ରଣୀତ ପର୍ଦ୍ଦା ଦୃଶ୍ୟ ବା Screen-playରୁ ମୁଁ ମୋ ପୁସ୍ତକ ଲେଖିଛି । ମାନ୍ୟବର ବିଚାରପତି ମହେନ୍ଦ୍ର ନାରାୟଣ ରାଲହାନଙ୍କ ଓକିଲମାନଙ୍କୁ ପ୍ରଶ୍ନକଲେ, ''ଆପଣଙ୍କ ଫିଲ୍ମ ନିର୍ମାତା କ'ଣ ଜଣେ ଐତିହାସିକ ଯେ ଜଣେ ଇତିହାସ ଅଧ୍ୟାପକ ତାଙ୍କ ଲେଖାରୁ ଚୋରି କରି ପୁସ୍ତକ ଲେଖିବେ ?'' ମୁଁ ମାନ୍ୟବର ବିଚାରପତିଙ୍କୁ ସମ୍ବୋଧନ କରି କହିଲି, ''ଯେଉଁ ସ୍କ୍ରିନ୍-ପ୍ଲେ଼ରୁ ମୁଁ ନକଲ କରିଛି ବୋଲି ବିଜ୍ଞ ଓକିଲମାନେ କହୁଛନ୍ତି, ସେହି ସ୍କ୍ରିନ-ପ୍ଲେ ଆମୂଳଚୂଳ ମୋ ଲିଖିତ କାହାଣୀରୁ ମୋ ସମ୍ମୁଖରେ ପ୍ରସ୍ତୁତ କରାଯାଇଥିଲା ।'' ତତ୍‌କ୍ଷଣାତ ବିପକ୍ଷ ଓକିଲ ଅନ୍ୟ ଗୋଟିଏ ତାରିଖ ମାଗି ବସିଲେ ।

ପରବର୍ତ୍ତୀ ତାରିଖରେ ରାଲହାନଙ୍କ ଓକିଲ ଅରୁଣ ଭରଦ୍ୱାଜ (ସେତେବେଳର କେନ୍ଦ୍ର ଆଇନମନ୍ତ୍ରୀ ଏଇଚ.ଆର.ଭରଦ୍ୱାଜଙ୍କ ପୁତ୍ର) ହଠାତ୍ ଛିଡ଼ା ହୋଇ କହିଲେ, ''ମୁଁ ଏହି କେସ୍‌ରୁ ଓହରି ଯାଉଛି ।'' ସଙ୍ଗେ ସଙ୍ଗେ ନୂତନ ଜଣେ ଓକିଲ ଛିଡ଼ା ହୋଇପଡ଼ି ଆବେଦନ କଲେ, ''ତାଙ୍କ ସ୍ଥାନରେ ମୁଁ କେସ୍ ଲଢ଼ିବି । କିନ୍ତୁ ଫାଇଲ ଷ୍ଟଡି ପାଇଁ ଦୁଇମାସ ସମୟ ପ୍ରାର୍ଥନା କରୁଛି ।'' ବିଚାରପତି ମହୋଦୟ ରାଜିହେଲେ । ପୁଣି ତାରିଖ ପରେ ତାରିଖ । କିଛି ମାସ ପରେ ରାଲହାନଙ୍କ ନୂତନ ଓକିଲ ମଧ୍ୟ ଓହରିଗଲେ । ତାଙ୍କ ସ୍ଥାନରେ ଆଉ ଜଣେ ଓକିଲ ନିଯୁକ୍ତି ପାଇଲେ । ମୋ ଓକିଲମାନଙ୍କ ପାଖରୁ ଶୁଣିଲି, କୋଟିପତି ଫିଲମ୍ ନିର୍ମାତାଙ୍କ କେସ୍ ଲଢ଼ି ମୋଟା ଟଙ୍କା ଆୟ କରିବା ଲାଗି ବଡ଼ ବଡ଼ ଆଇନଜୀବୀମାନେ ବାହାରି ଆସନ୍ତି, କିନ୍ତୁ ଟଙ୍କା ନ ପାଇ କେସ୍ ଛାଡ଼ି ଦିଅନ୍ତି ।

୧୯୯୬ ମସିହାରେ ଏହି ଅଧ୍ୟାୟ ଲେଖୁଥିଲାବେଳେ, ଦିଲ୍ଲୀ ହାଇକୋର୍ଟରେ ଏବେ ବି କେସ୍ ଲାଗିରହିଛି । ସୁପ୍ରିମ୍‌କୋର୍ଟର ସିନିଅର ଆଡ଼ଭୋକେଟ ଏମ୍.ଏନ୍.କୃଷ୍ଣମନି ଓ ତାଙ୍କ ଜୁନିଅର ରାଜକୁମାର ସିଂହ ମୋ ତରଫରୁ ଲଢ଼ୁଛନ୍ତି । ସେମାନଙ୍କୁ 'ଫି' ଦେଇ ଦେଇ ଓ ନିଜେ ବାରମ୍ବାର ହାଜର ହେବାକୁ ଯାଇ ଯେପରି ଖର୍ଚ୍ଚାନ୍ତ ହେଉଛି ଓ ମନସ୍ତାପ ଭୋଗୁଛି, ସେଥିପାଇଁ କେବଳ ନିଜ ଭାଗ୍ୟକୁ ହିଁ ଦୋଷ ଦେଇ ସାନ୍ତ୍ୱନା ପାଉଛି ।

ସମ୍ରାଟ ଅଶୋକ ବିଷୟରେ ଗବେଷଣା ସରିଥିଲା । ଭାବିଲି, ଏକଦା ଚଳଚ୍ଚିତ୍ର ଜଗତରେ ପ୍ରସିଦ୍ଧି ଲଭିଥିବା ଓ.ପି.ରାଲହାନଙ୍କ ବିଚିତ୍ର ଚରିତ୍ର ସମ୍ବନ୍ଧରେ ରିସାର୍ଚ୍ଚ କଲେ ବୋଧହୁଏ ଲେଖନୀ ସାର୍ଥକ ହେବ ! ଗୋଟିଏ ପ୍ରଶ୍ନ ବାରମ୍ବାର ମନକୁ ଆସିଲା । ଯେଉଁ ବ୍ୟକ୍ତି ଅଦାଲତରେ ନ୍ୟାୟ ଭିକ୍ଷା କରନ୍ତି, ସେ ନିଶ୍ଚୟ

ଅତିଶୀଘ୍ର ନ୍ୟାୟ ଲାଗି ବ୍ୟଗ୍ର ହେବା ଉଚିତ । ଅପର ପକ୍ଷରେ, ନ୍ୟାୟପ୍ରାର୍ଥୀ ରାଲହାନ ତାଙ୍କ ତରଫରୁ ତାରିଖ ପରେ ତାରିଖ ଘୁଞ୍ଚାଇ ଓ ଓକିଲ ପରେ ଓକିଲ ବଦଳ କରି, ବିଳମ୍ବ ନୀତି ଅବଲମ୍ବନ କରିବାର ଉଦ୍ଦେଶ୍ୟ କ'ଣ ହୋଇପାରେ ! ଅନୁସନ୍ଧାନ ଆରମ୍ଭ କଲି । ବୋମ୍ବେ ଜଗତରୁ ଯେଉଁ ସମସ୍ତ ସମ୍ବାଦ ମିଳିଲା, ତାହାର ସାରାଂଶ ଥିଲା, ହାଇକୋର୍ଟ ମୋକଦ୍ଦମାର ଆବରଣ ତଳେ ସେ ଅର୍ଥଦାତାମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବାକୁ ଚାହାନ୍ତି । ଅଶୋକ ସିରିଆଲର ବ୍ୟାପକ ପ୍ରଚାର ଓ ପ୍ରହେଳିକା ମାଧ୍ୟମରେ ସେ ବୋମ୍ବେ ଆଣ୍ଡାର ୱାର୍ଲଡର ଚୋରାବେପାରୀମାନଙ୍କ କଳାଧନକୁ ଧଳା ଟଙ୍କାରେ ପରିଣତ କରିବେ କହି ଲକ୍ଷ ଲକ୍ଷ ଟଙ୍କା ସଂଗ୍ରହ କରିଥିଲେ । ସେହିପରି, ବୋମ୍ବେ ପୁଞ୍ଜିପତିଙ୍କ ପୁତ୍ରକନ୍ୟାମାନଙ୍କୁ ସିରିଆଲରେ ଅଭିନୟ ସୁଯୋଗ ଦେବେ କହି ବିପୁଳ ଚାନ୍ଦା ସଂଗ୍ରହ କରିଥିଲେ । ଭାବିଥିଲେ, ପ୍ରଚାର ଦ୍ୱାରା ନିଜର ପାରଗତା ଦେଖାଇ ସେ ନିଶ୍ଚୟ ଦୂରଦର୍ଶନ ଅନୁମତି ଓ ସ୍ପୋନସରମାନଙ୍କ ଠାରୁ କୋଟି କୋଟି ଟଙ୍କା ପାଇଯିବେ । ଅନ୍ୟଥା, ମୋ କାହାଣୀ ଆମେରିକା କୋମ୍ପାନୀକୁ ହସ୍ତାନ୍ତର କରି ପର୍ଯ୍ୟାପ୍ତ ଡଲାର ହସ୍ତଗତ କରିବେ । ଉଭୟ ଯୋଜନାରେ ବିଫଳ ହେଲାପରେ, ନିଜର ସମ୍ମାନ ରକ୍ଷା ନିମନ୍ତେ ଓ ବିପଦକୁ ଦୂରରେ ରଖିବା ଲାଗି, ହାଇକୋର୍ଟ ଆଶ୍ରୟ ଥିଲା ଏକମାତ୍ର ଉପାୟ ଏବଂ କେସ୍‌ଟିକୁ ବର୍ଷ ବର୍ଷ ଗଡ଼ାଇଦେବା ସଙ୍ଗେ ସଙ୍ଗେ ସେ ଯଥାସମୟରେ ପୁଣି ଥରେ ନିଜ ଅଭିଳାଷ ପୂର୍ଣ୍ଣ କରିବେ ବୋଲି ତାଙ୍କ ଅର୍ଥଦାତାମାନଙ୍କୁ ଆଶାବାଣୀ ଶୁଣାଉଛନ୍ତି । ଉଲ୍ଲେଖଯୋଗ୍ୟ, ଯେ କୌଣସି କେସ୍‌କୁ ୧୦ କିମ୍ବା ୧୫ ବର୍ଷ ଗଡ଼ାଇ ଦେବାପାଇଁ ସହଜ ଉପାୟମାନ ରହିଛି ।

ତେଣେ, ପ୍ରକାଶ ମେହେରା ଅଶୋକ ସିରିଆଲ ପାଇଁ ଦୂରଦର୍ଶନ ଅନୁମତି ପାଇଲା ପରେ ମୋ ସହିତ ସାକ୍ଷାତ କରିବା ଲାଗି ଭୁବନେଶ୍ୱର ଆସିବେ ବୋଲି ଖବର ପଠାଇଲେ । ମୁଁ ଅପେକ୍ଷା କଲି । କିନ୍ତୁ ରାଲହାନ ତାଙ୍କ ବିରୋଧରେ ବୋମ୍ବେ ହାଇକୋର୍ଟରେ କେସ୍ ଦାଏର କଲେ । ସେଥିରେ ମୋତେ ମଧ୍ୟ ଅଭିଯୁକ୍ତ କରାଯାଇଛି ବୋଲି ମେହେରାଙ୍କ ଲୋକେ ଫୋନ୍‌ରେ ଜଣାଇଲେ । ପରେ ପରେ ଶୁଣିଲି, ପ୍ରଚୁର ଅର୍ଥ ନେଇ (୩୫ ଲକ୍ଷ ?) ରାଲହାନ ସାହେବ କେସ୍ ଉଠାଇନେଲେ । ସେତକ ଉତ୍କୋଚ ନ ଦେଇଥିଲେ ମେହେରାଙ୍କ ସିରିଆଲ ଅନିର୍ଦ୍ଦିଷ୍ଟ କାଳ ପାଇଁ ସ୍ଥଗିତ ରହିଥାନ୍ତା ଓ ତାଙ୍କର କୋଟି କୋଟି ଟଙ୍କା ବରବାଦ୍ ହୋଇଥାନ୍ତା । ବୋମ୍ବେ ବା ମୁମ୍ବାଇ ସିନେମା ଜଗତରେ ସମସ୍ତ ଅସମ୍ଭବ ବ୍ୟାପାର ସମ୍ଭବ ହୋଇପାରେ । ରୂପେଲି ପର୍ଦ୍ଦାରେ ଅବାନ୍ତର ଓ ଅସ୍ୱାଭାବିକ ଦୃଶ୍ୟ ପରି ବାସ୍ତବ ଚଳଚ୍ଚିତ୍ର ଦୁନିଆରେ ସବୁପ୍ରକାର ଅସ୍ୱାଭାବିକ ଘଟଣା ସ୍ୱାଭାବିକ

ରୂପ ଧାରଣ କରିନିଏ । ଦୁଇ ପ୍ରଯୋଜକଙ୍କ ମଧ୍ୟରେ ମିତ୍ରତା ପରେ, ପ୍ରକାଶ ମେହେରା ମୋ ନିକଟକୁ ଆସିଲେ ନାହିଁ ।

ମୋର ଦୁଃଖ, ଯେଉଁ ଭାବରେ ମୁଁ କଳିଙ୍ଗ ଯୁଦ୍ଧର ଅବତାରଣା କରିଥିଲି, ସେପରି ଦୃଶ୍ୟମାନ ପ୍ରକାଶ ମେହେରାଙ୍କ ଟି.ଭି. ସିରିଆଲରେ ଦେଖିବାକୁ ମିଳିବ ନାହିଁ । କେଉଁ ଭାବରେ ସେ ପ୍ରାଚୀନ କଳିଙ୍ଗର ବୀରତ୍ୱ ଓ ମହତ୍ତ୍ୱ ପ୍ରତିପାଦିତ କରିବେ, ତାହା ମୋତେ ଅଜଣା । କୌଣସି କୌଣସି ବନ୍ଧୁ ମୋତେ ପରାମର୍ଶ ଦେଲେ, ସୂଚନା ଓ ପ୍ରସାରଣ ମନ୍ତ୍ରୀ ଓଡ଼ିଶାର ରାଜାସାହେବ କେ.ପି.ସିଂହଦେଓଙ୍କୁ କହିଲେ ସେ ମେହେରାଙ୍କୁ ମୋ ବହି ଦେଖି ସିରିଆଲ କରିବାକୁ କହିପାରିବେ ଓ ତଦ୍ଦ୍ୱାରା ପ୍ରାଚୀନ କଳିଙ୍ଗର ମହତ୍ତ୍ୱ ବଜାୟ ରହିବ । ରାଜାସାହେବ ମୋ ଅଶୋକ ପୁସ୍ତକ ପାଇଥିଲେ । କିନ୍ତୁ, ନିଜ ରାଜ୍ୟର ଜଣେ ବ୍ୟକ୍ତିଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କଲେ, ତାଙ୍କର ମର୍ଯ୍ୟାଦା ହାନି ଘଟିପାରେ ବୋଲି ଭାବିଥିବେ, ଏହା ମୋର ଅନୁମାନ । କାରଣ, ସେ ମେହେରାଙ୍କୁ ସେପରି କୌଣସି ନିର୍ଦ୍ଦେଶ ବା ଉପଦେଶ ଦେଇ ନ ଥିଲେ । ଦଶା ବିପାକ ଯୋଗୁଁ ମୁଁ ବୋମ୍ବେର ଗୋଟିଏ ଦୁଷ୍ଟଗ୍ରହର କବଳରେ ପଡ଼ିଗଲି । ଜଣେ ଅଭିଜ୍ଞ ବ୍ୟକ୍ତିଙ୍କ ମତରେ, ବି.ଆର୍.ଚୋପ୍ରା, ରାମାନନ୍ଦ ସାଗର ବା ସଞ୍ଜୟ ଖାଁଙ୍କ ହାତରେ ଯଦି ମୋ ଅଶୋକ କାହାଣୀ ପଡ଼ିଥାନ୍ତା, ତେବେ ଦେଶବାସୀ ସୁନ୍ଦର ସିରିଆଲ୍‌ଟିଏ ଦେଖିପାରିଥାନ୍ତେ ।

ପ୍ରକାଶ ମେହେରା ମୋ ବହିରୁ ସିରିଆଲ କରୁଛନ୍ତି କି ନାହିଁ ମୁଁ ଜାଣେ ନା ।

# ନାସ୍ତିକତାରୁ ଆସ୍ତିକତା (?)



## ଶ୍ରୀ ଶ୍ରୀ ସତ୍ୟସାଇ ବାବାଙ୍କ ଦର୍ଶନ ଲାଭ

## ବିସ୍ମୟାବହ ଉପଲବ୍ଧି

### ସୂଚନା

ସ୍ରଷ୍ଟା ଓ ସୃଷ୍ଟି, ବିଶ୍ୱବ୍ରହ୍ମାଣ୍ଡ, ଜଗତ ଓ ପ୍ରକୃତି ଏବଂ ଜନ୍ମ-ଜୀବନ-ମୃତ୍ୟୁ ଇତ୍ୟାଦି ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ରହିବା ହିଁ ପ୍ରକୃତ ବିଜ୍ଞତା । କାରଣ, ଯେଉଁ ସମସ୍ତ ଅପ୍ରକାଶ୍ୟ ରହସ୍ୟ ଉନ୍ମୋଚନ କରିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ, ସେଥିନିମନ୍ତେ ଚିନ୍ତାଶକ୍ତି ପ୍ରୟୋଗ କରିବା ନିରର୍ଥକ । ଋକ୍‌ବେଦର ସେହି ଶାଶ୍ୱତ ପ୍ରଶ୍ନ ମଧ୍ୟରୁ ସୃଷ୍ଟିତତ୍ତ୍ୱ ବୋଧଗମ୍ୟ ହେବା ସମ୍ଭବ ଅଥବା ଅସମ୍ଭବ, ତାହାର ସଂକେତ ମିଳିଥାଏ–

''କିଏ ବା ଜାଣିଛି ସେହି ଦୁର୍ଜ୍ଞେୟ ରହସ୍ୟ
କିଏ ବା କରିଛି ତା'ର ଏ ସ୍ଥାନେ ପ୍ରଚାର''
''କେ ସ୍ଥାନରୁ, କି ହେତୁ ବା
ବହୁବିଧ ଏହି ସୃଷ୍ଟି ହୋଇଲା ଉଦ୍‌ଗତ ?
ସ୍ୱୟଂ ଦେବଗଣ ଲଭିଥିଲେ ବହୁ ପରେ ସତ୍ତା
କିଏ ବା ଜାଣିଛି କେବେ
ହୋଇଥିଲା ଏ ବିଶାଳ ସୃଷ୍ଟିର ପ୍ରସାର ?''
''ସେହି, ଯାହାଙ୍କ ପାଖରୁ ହେଲା ସର୍ବମୟ ସୃଷ୍ଟିର ଉତ୍ପତ୍ତି,
ତାଙ୍କ ଇଚ୍ଛାଶକ୍ତି କି ବା ସୃଜିଥିଲା ଏହା, ଅବା ଥିଲା ସ୍ତବ୍ଧ,
ସର୍ବୋଚ୍ଚ ସ୍ୱର୍ଗରେ ଥିବା ସର୍ବଶ୍ରେଷ୍ଠ ଦ୍ରଷ୍ଟା,
ଜାଣିଥିବେ ଅବା ସେହି,
କିମ୍ବା ସମ୍ଭବତଃ, ସେଇ ମଧ୍ୟ ଜାଣିଥିବେ ନାହିଁ ।''

(ଋକ୍ ବେଦ, ୧୦.୧୨୯)

ଯଦି ଦିବ୍ୟଦ୍ରଷ୍ଟା ମହାଋଷିମାନେ ମଧ୍ୟ ସୃଷ୍ଟିତତ୍ତ୍ୱ ଜାଣିପାରି ନଥିବେ, ଅଜ୍ଞାନ ମନୁଷ୍ୟ ପକ୍ଷରେ ସୃଷ୍ଟିର କେଉଁ ବିଷୟ ବା ଜାଣିହେବ ? ସ୍ୱୟଂ ଗୌତମ ବୁଦ୍ଧ ମଧ୍ୟ ପରମେଶ୍ୱରଙ୍କ ସନ୍ଧାନ ପରିବର୍ତ୍ତେ, ମନୁଷ୍ୟ ଜୀବନର ସନ୍ଧାନ ନିମନ୍ତେ ବ୍ୟାକୁଳ ହୋଇଥିଲେ ଓ ଈଶ୍ୱରବିଶ୍ୱାସ ଅପେକ୍ଷା ମାନବୀୟ ନୀତି ପ୍ରତି ଗୁରୁତ୍ୱ ଦେଇଥିଲେ । ଏସବୁ ପ୍ରସଙ୍ଗ ଉତ୍ଥାପନ କରିବା ମୋ ପରି ବ୍ୟକ୍ତି ପକ୍ଷରେ ଚରମ ମୂର୍ଖତା ।

ମୁଁ ମେଟ୍ରିକ୍ ପଢ଼ିବା ବେଳର କଥା । ଦିନେ ଜଣେ ସାଧୁପୁରୁଷ କାଶୀଧାମରୁ ଆମ ଘରକୁ ଆସିଥିଲେ । ବାପା ତାଙ୍କୁ ଭଗବାନଙ୍କ ସମ୍ବନ୍ଧରେ କିଛି କହିବାକୁ ଅନୁରୋଧ କଲେ । ସାଧୁଙ୍କର ଗୋଟିଏ ବାକ୍ୟ ମନେ ରହିଛି । ଈଶ୍ୱରଙ୍କ ମାହାତ୍ମ୍ୟ ପ୍ରସଙ୍ଗରେ ସେ କହିଥିଲେ, ''ଭଗବାନଙ୍କ ପ୍ରତି ବିଶ୍ୱାସ ଥିଲେ, ଗ୍ରହନକ୍ଷତ୍ରର ଜ୍ୟୋତି କିମ୍ୱା ସୂର୍ଯ୍ୟ ଚନ୍ଦ୍ରର କିରଣ ଠାରୁ ଆରମ୍ଭ କରି ଫୁଲର ସୌରଭ ବା ଫଳର ସ୍ୱାଦ, ସବୁଥିରେ ତାଙ୍କରି ଲୀଳା ଅନୁଭବ କରିପାରିବେ ।''

## ବିଶ୍ୱାସ ଓ ଅବିଶ୍ୱାସ

ସାମାନ୍ୟ ମନ ଓ ବୁଦ୍ଧିକୁ ନେଇ ମନୁଷ୍ୟର ଜୀବନ । କେତେବେଳେ କେଉଁ ପ୍ରକାର ପ୍ରଭାବ ବଳରେ ମନରେ କେଉଁ ପ୍ରକାର ଭାବନା ସୃଷ୍ଟିହୁଏ, ତାହା ଚିନ୍ତାକଲେ ବିସ୍ମୟ ଜାତ ହୁଏ । ଅତି ସାମାନ୍ୟ ଘଟଣାରୁ ମଧ୍ୟ ମନରେ ବୃହତ୍ତର ଆଲୋଡ଼ନ ପ୍ରକାଶ ପାଏ ।

ଈଶ୍ୱରଙ୍କ ପ୍ରତି ବିଶ୍ୱାସ ଅବିଶ୍ୱାସ ବିଷୟ କହୁଛି । ଚିରନ୍ତନ ବିଶ୍ୱାସରେ ଈଶ୍ୱର ହେଉଛନ୍ତି ସର୍ବଶକ୍ତିମାନ ଓ ପରମ ଦୟାଳୁ । କିନ୍ତୁ, ତାଙ୍କର ଶକ୍ତି ଓ ଦୟା ଦ୍ୱାରା ମନୁଷ୍ୟର କିଛି ଉପକାର ହୁଏ କି ? ଦୁଃଖୀର ଦୁଃଖ ଭଗବାନ ନେଇପାରନ୍ତି କି ? ଆତୁରର କରୁଣ ପ୍ରାର୍ଥନା ଶୁଣନ୍ତି କି ? ଯଦି ନୁହେଁ, ତେବେ ତାଙ୍କୁ ପୂଜା ଆରାଧନା କରି ଲାଭ କ'ଣ ? ସ୍ୱାର୍ଥକୁ କେନ୍ଦ୍ରକରି ପ୍ରାଣ । ସ୍ୱାର୍ଥ ଲାଗି ଅଥବା ବିପଦ ବେଳେ ଭଗବାନଙ୍କୁ ସ୍ମରଣ କରିବା ସ୍ୱାଭାବିକ । ଅଥଚ, ଫଳ କ'ଣ ?

ଦିନେ କଟକ ମେଡ଼ିକାଲ କଲେଜ ହସ୍‌ପିଟାଲରେ ଜଣେ ଯୁବ ଆତ୍ମୀୟଙ୍କ ରୋଗଶଯ୍ୟା ପାଖରେ ଛିଡ଼ା ହୋଇଥାଏଁ । ଗୋଡ଼ ପାଖରେ ତାଙ୍କ ଚାରିବର୍ଷର ଝିଅଟିକୁ ଦେଖିଲି । ହାତରେ ଶ୍ରୀକୃଷ୍ଣଙ୍କ ଛବିଟିକୁ ଧରି ବିକଳ ଭାବରେ କାନ୍ଦି କାନ୍ଦି ଡାକୁଥାଏ, ''ଭଗବାନ, ମୋ ବାବାକୁ ଭଲ କରିଦିଅ ।'' ତାକୁ କୁହାଯାଇଥାଏ, ଭଗବାନ କେବଳ ତାହାରି ଡାକ ଶୁଣିବେ । ସରଳ ବିଶ୍ୱାସରେ ଛାତି ଫଟାଇ କାନ୍ଦୁଥାଏ । ମନକୁ ପ୍ରଶ୍ନ ଆସିଲା, ଭଗବାନ କ'ଣ ତା ଡାକ ଶୁଣିବେ ?

ରୋଗୀର ମୃତ୍ୟୁ ମୁହୂର୍ତ୍ତରେ ଶିଶୁର ଯେଉଁ କରୁଣ କ୍ରନ୍ଦନ ଦେଖିଥିଲି, ତାହା ଭୁଲିପାରିଲି ନାହିଁ । ଏହିପରି ଅନେକ, ଅନେକ ଘଟଣା । ନିର୍ଦ୍ଦୋଷର କଷ୍ଟ, ଅସହାୟର ଦୁଃଖ, ଏପରିକି ନିରୀହ ପଶୁପକ୍ଷୀର ଯନ୍ତ୍ରଣା ଦେଖିଲା ବେଳେ ମନ ବିକ୍ଷୁବ୍ଧ ହୋଇ ଉଠୁଥାଏ, ଏହା ହେଉଛି ଭଗବାନଙ୍କ ରାଜ୍ୟ ! ଧନ୍ୟ ତୁମେ ଭଗବାନ !

କ୍ରମେ କ୍ରମେ ମନରୁ ଈଶ୍ୱରବିଶ୍ୱାସ ଉଭେଇଗଲା । ଅନୁଭବ କରିପାରିଲି, ଅବିଶ୍ୱାସ ମଧ୍ୟରେ ଯେଉଁ ଆତ୍ମତୃପ୍ତି ରହିଛି, ବିଶ୍ୱାସ ମଧ୍ୟରେ ତାହା ନାହିଁ । ତାତ୍ତ୍ୱିକ ଜ୍ଞାନ ଅଥବା ଉଚ୍ଚତର ହେତୁବାଦ ଓ ଯୁକ୍ତିବାଦ ପ୍ରଭୃତି ଦର୍ଶନ ବଳରେ ଅନେକେ ନାସ୍ତିବାଦୀ ହୁଅନ୍ତି ବୋଲି ଜଣାଥାଏ । କିନ୍ତୁ ସେପରି ଦର୍ଶନ ବା ସାହିତ୍ୟ ମୁଁ ପଢ଼ି ନଥିଲି । ଅଥଚ, ନିଜର କ୍ଷୁଦ୍ର ବୁଦ୍ଧିରେ ନିଜକୁ ନାସ୍ତିକ ବୋଲି ଭାବି ଆନନ୍ଦ ପାଇଲି ।

ଏତିକିରେ ସନ୍ତୁଷ୍ଟ ନ ରହି ସମୟକ୍ରମେ ଭଗବାନ ଓ ଦେବଦେବୀଙ୍କ ନିନ୍ଦା କରି ଗର୍ବ ଅନୁଭବ କଲି । କ୍ଲାସରେ ପଢ଼ାଇଲାବେଳେ ବିଭିନ୍ନ ଐତିହାସିକ ଘଟଣାକୁ ଆଳ କରି ଈଶ୍ୱରନିନ୍ଦାକୁ ଅଭ୍ୟାସରେ ପରିଣତ କଲି । ସାଧାରଣ ସଭା ସମିତିରେ ମଧ୍ୟ ଈଶ୍ୱରନିନ୍ଦା ହେଲା ବକ୍ତବ୍ୟ ବିଷୟ । ଥରେ ଥରେ ଅହଂଭାବର ସୀମା ଲଂଘନ କଲି । ସତେ ଯେପରି, ମନୁଷ୍ୟର ଦୁର୍ଭାଗ୍ୟ ଓ ଦୁଃଖ ଦୈନ୍ୟ ନିମନ୍ତେ ପରମେଶ୍ୱର ଦାୟୀ ! ପାପୀ ଓ ଦୁରାଚାରୀମାନଙ୍କର ରକ୍ଷାକର୍ତ୍ତା ଓ ତ୍ରାଣଦାତା ମଧ୍ୟ ସେହି ଭଗବାନ !

ସେତିକିରେ ଅହଂବାଦର ଶେଷ ହେଲା ନାହିଁ । ଆଧୁନିକ ଯୁଗର ସାଧୁ, ସନ୍ଥ ଓ ଐଶପୁରୁଷମାନଙ୍କ ନିନ୍ଦା ଲାଗି ଜିହ୍ୱାକୁ ତୀକ୍ଷ୍ଣ କଲି । କୁତ୍ସା ପ୍ରଚାର ସାଙ୍ଗକୁ ସେମାନଙ୍କ ଅଲୌକିକତା ଓ ଅତିମାନବତ୍ୱକୁ ପ୍ରବଞ୍ଚନା, ପ୍ରତାରଣା, କପଟତା ଓ ଚଞ୍ଚକତା ଇତ୍ୟାଦି ରୂପରେ ବ୍ୟାଖ୍ୟା କରିବାକୁ ସାହସ ବଢ଼ିଗଲା ।

ସମସାମୟିକ ଦିବ୍ୟପୁରୁଷମାନଙ୍କ ମଧ୍ୟରେ ପ୍ରଖ୍ୟାତ ଥିବା ସତ୍ୟସାଇ ବାବାଙ୍କ ଐଶ୍ୱରିକ ଶକ୍ତି ସମ୍ବନ୍ଧରେ ଅନେକ କଥା ଶୁଣୁଥାଏଁ । ତାଙ୍କ ଭକ୍ତମାନଙ୍କ ସଂଖ୍ୟା କିଛି କମ୍ ନ ଥାଏ । ଅନେକ ସ୍ଥାନରେ ସତ୍ୟସାଇ ଭଜନମଣ୍ଡଳୀ ଓ ସେବା ସଙ୍ଗଠନ ରହିଥିବା ଦେଖିଲି । ଜଣେ ଜଣେ ବିମୋହିତ ଭକ୍ତଙ୍କ ନିକଟରୁ ସାଇବାବାଙ୍କ ଅଲୌକିକ କାର୍ଯ୍ୟକଳାପ ବିଷୟକ ଗଳ୍ପମାନ ଶୁଣି, ଶେଷରେ ତାଙ୍କର ନିନ୍ଦା ପ୍ରଚାର ଆରମ୍ଭ କଲି । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସୁଦ୍ଧା ଛଳନାପୂର୍ଣ୍ଣ ଆଚରଣ ବଳରେ ସାଇବାବା କିପରି ଭାବରେ ଅସଂଖ୍ୟ ନରନାରୀଙ୍କୁ ବଶୀଭୂତ କରିପାରୁଛନ୍ତି, ଏହି ପ୍ରଶ୍ନ ବିଭିନ୍ନ ସଭାସମିତିରେ ଉଠାଇଲି । ଭାରତବାସୀଙ୍କ ଅଜ୍ଞତା ଓ ଅନ୍ଧବିଶ୍ୱାସର

ସୁଯୋଗ ନେଇ ସେ ସମ୍ମୋହନ ବିଦ୍ୟା ପ୍ରୟୋଗ କରୁଛନ୍ତି ବୋଲି ଶ୍ରୋତାମାନଙ୍କୁ ବୁଝାଇଲି । ତାଙ୍କୁ କପଟାଚାରୀ ଓ ଭଣ୍ଡ ସାଧୁ ବୋଲି ସାଇଭକ୍ତମାନଙ୍କ ଆଗରେ ବର୍ଣ୍ଣନା କଲି । ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ପରି ବିଜ୍ଞ ଅଧ୍ୟାପକଙ୍କ ମୁଖରୁ ସତ୍ୟସାଇ ବାବାଙ୍କ ଗୁଣକୀର୍ତ୍ତନ ଶୁଣି ସମାଲୋଚନା କଲି, "ଶ୍ରୀରାମ ବାବୁଙ୍କ ମସ୍ତିଷ୍କ-ବିକୃତି ଘଟିଛି ।"

ନାସ୍ତିକତା ମଧ୍ୟରେ ଅନେକ ବର୍ଷ ବୁଡ଼ିରହିଲା ପରେ ଅକସ୍ମାତ ଗୋଟିଏ ଅସ୍ୱାଭାବିକ ଉପଲବ୍ଧିର ଦ୍ୱାରଦେଶରେ ପହଞ୍ଚିଲି । ତଦ୍ୱାରା ବିଶ୍ୱାସ ଫେରିଲା କି ନାହିଁ ସେ କଥା ଏବେ ବି କହିପାରିବି ନାହିଁ । ତେବେ, ଈଶ୍ୱରଙ୍କ ସମ୍ବନ୍ଧରେ କିଛି ନ ଜାଣିଲେ ମଧ୍ୟ, ଦିବ୍ୟପୁରୁଷମାନଙ୍କ ନିକଟରେ ଐଶ୍ୱରିକ ଶକ୍ତି ରହିଥିବାର ଚାକ୍ଷୁଷ ପ୍ରମାଣ ପାଇ ସ୍ତମ୍ଭିତ ହେଲି । ଯଦି ମର୍ତ୍ତ୍ୟଭୂମିର ଅତିମାନବମାନଙ୍କ ନିକଟରେ ଦୈବବଳ ରହିଛି, ତେବେ ପରମେଶ୍ୱରଙ୍କ ବଳ କଳନା କରିବା ମନୁଷ୍ୟ ପକ୍ଷେ ସମ୍ଭବ ହେବ କି ?

## ଝିଅର ପ୍ରରୋଚନାରେ 'ପ୍ରଶାନ୍ତି ନିଳୟମ୍' ଯାତ୍ରା

୧୯୮୭ ମସିହା ସେପ୍ଟେମ୍ବର ମାସ । ପୁଅକୁ ନେଇ ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍ସରେ ଭର୍ତ୍ତି କରାଇଲି । ତା ପାଖରେ ଝିଅକୁ ଦିନ ରାତି ରହିବାକୁ ହେଲା । ମୁଁ ରହିଲି ୱେଷ୍ଟାର୍ଣ୍ଣ କୋର୍ଟ ଅତିଥି ଭବନରେ । ପୁଅର ସପ୍ତାହବ୍ୟାପୀ ସ୍ୱାସ୍ଥ୍ୟପରୀକ୍ଷା ପରେ ସେମାନଙ୍କୁ ନେଇ ନିଶ୍ଚିନ୍ତ ମନରେ ବସାକୁ ଫେରିଲି । ନିକଟରେ କନଟ୍ ପ୍ଲେସର ଦୋକାନ ଧାଡ଼ି । ପକେଟରୁ ହଜାରେ ଟଙ୍କା ବାହାର କରି ଖୁସି ମନରେ ଝିଅ ହାତକୁ ବଢ଼ାଇ ଦେଇ କହିଲି, "ତୋ ଭାଇର ସେବା କରିଛୁ । ନିଜ ପାଇଁ ଖଣ୍ଡିଏ ଶାଢ଼ି କିଣିବା ପାଇଁ ଏତକ ଟଙ୍କା ନେ ।"

ସଂଘମିତ୍ରାର ଆତ୍ମସମ୍ମାନ ପ୍ରତି ଆଘାତ ଲାଗିଲା । ସେ ତା ଭାଇକୁ ପ୍ରାଣଠାରୁ ଭଲପାଏ । ନିଜେ ପୁଣି ଡାକ୍ତର ଓ ଟଙ୍କାର ଅଭାବ ନଥାଏ । ଦୁଃଖଭରା ସ୍ୱରରେ କହିଲା, "ଭାଇର ସେବାପାଇଁ ଟଙ୍କା ପାଇବି ଜାଣିଥିଲେ, ନିଜେ ନ ଆସି ଜଣେ ନାର୍ସକୁ ଯୋଗାଡ଼ କରି ପଠାଇଥାନ୍ତି ।" ବୁଝାଇବାକୁ ଚେଷ୍ଟାକଲି, "ନାର୍ସ କାମ ଲାଗି ପାରିଶ୍ରମିକ ଦେଉନାହିଁ । ମୋ ମନରେ ଆନନ୍ଦ ଯୋଗୁଁ ତୋ ମନ ଖୁସୀ କରିବାକୁ ଚାହୁଁଛି ।" କିଛି ସମୟ ବାପ ଝିଅ ମଧ୍ୟରେ ବାଦାନୁବାଦ ଚାଲିଲା । ଟଙ୍କା ଛଡ଼ା ଜଣକୁ ଖୁସୀ କରିବା ଲାଗି ଅନ୍ୟ ଉପାୟ ଅଛି କି ନାହିଁ ! ମୁଁ ସ୍ୱୀକାର କଲି, ଅନ୍ୟ ଉପାୟ ନିଶ୍ଚୟ ରହିଛି । "ତୁ ଯେଉଁ ଭାବରେ ଖୁସୀ ହେବୁ, ତାହା ମୁଁ ମାନି ନେବି ।"

ସଂଘମିତ୍ରା ଦାବି କରି ବସିଲା, "ଦିଲ୍ଲୀରୁ ଫେରିଲା ପରେ ମୋତେ ସତ୍ୟସାଇ ବାବାଙ୍କ ଦର୍ଶନ ଲାଗି ପ୍ରଶାନ୍ତି ନିଳୟମ୍ ନେଇ ଯିବ ବୋଲି ଜବାବ୍ ଦିଅ ।" ପ୍ରତିଶ୍ରୁତି ଦେଇଦେଲି ।

ଭୁବନେଶ୍ୱର ଫେରିଲି । ପ୍ରଶାନ୍ତି ଯିବା ଲାଗି ଟ୍ରେନ୍ ଇତ୍ୟାଦି ବୁଝାବୁଝି କରିବାକୁ କଲେଜ ଦିନର ବନ୍ଧୁ ହରିରାମ ଦାଶଙ୍କୁ ଡାକି ପଠାଇଲି । ସେ ବାରମ୍ବାର ସେଠାକୁ ଯାଆନ୍ତି । ମୋ ଯିବା କଥା ଶୁଣି ପ୍ରଥମେ ସେ ବିଶ୍ୱାସ କଲେ ନାହିଁ । ମୋ ମନରେ ମଧ୍ୟ ଦ୍ୱିଧା ଆସୁଥାଏ, ଯେଉଁ ସତ୍ୟସାଇ ବାବାଙ୍କ ନିନ୍ଦା କରିଆସିଛି, ତାଙ୍କ ପବିତ୍ର ଆଶ୍ରମକୁ ଯିବା ଉଚିତ ହେବ କି ନାହିଁ ? ତଥାପି କାହିଁକି କେଜାଣି ଯିବା ପାଇଁ ଇଚ୍ଛା ହେଲା । ହରିରାମବାବୁ ସାଙ୍ଗରେ ନେଇଯିବେ ବୋଲି ଆନନ୍ଦରେ ରାଜି ହେଲେ ।

ମୁଁ, ମୋ ସ୍ତ୍ରୀ, ଝିଅ ସଂଘମିତ୍ରା, ଦୁଇ ଜଣ ନାତି ରାଣା ଓ ସମ୍ରାଟ, ଏବଂ ହରିରାମ, ତାଙ୍କ ପୁଅ ଓ ଝିଅ, ସର୍ବମୋଟ ୮ ଜଣ ମିଶି ଡିସେମ୍ବର ୭ ତାରିଖ ସନ୍ଧ୍ୟା ଗାଡ଼ିରେ ସିକନ୍ଦରାବାଦ ଅଭିମୁଖେ ଯାତ୍ରା କଲୁଁ । ତହିଁ ପରଦିନ ସନ୍ଧ୍ୟାରେ ସେଠାରୁ ଅନ୍ୟ ଏକ ଟ୍ରେନ୍‌ରେ ଯାଇ ୯ ତାରିଖ ମଧ୍ୟାହ୍ନରେ ଧର୍ମାବରମ୍ ଷ୍ଟେସନ୍‌ରେ ପହଞ୍ଚିଲୁଁ । ଷ୍ଟେସନ୍ ବାହାରେ ଛିଡ଼ା ଥିବା ଖଣ୍ଡିଏ ବାସ୍‌ରେ ସମସ୍ତେ ବସିଲୁ । ବାସ୍‌ଟି ଆସିଥାଏ କେତେଜଣ ଡାକ୍ତର ପ୍ରତିନିଧିଙ୍କୁ ପ୍ରଶାନ୍ତି ଆଶ୍ରମ ନେବାପାଇଁ ।

ବାସ୍ ଛାଡ଼ିଲା । କ୍ଷୁଦ୍ର ଧର୍ମାବରମ ବଜାର ଅତିକ୍ରମ କଲାପରେ ଭକ୍ତିଭାବରେ ବିହ୍ୱଳ ହୋଇ ହରିରାମ ଉଚ୍ଚ ସ୍ୱରରେ ଭଜନ ଗାଇବାକୁ ଆରମ୍ଭ କଲେ । କର୍କଶ କଣ୍ଠରେ ସୁମଧୁର ସାଇ ସଙ୍ଗୀତ । ଚାରିଜଣ ସାଇଭକ୍ତ ଡାକ୍ତର ତାଙ୍କ ସହିତ ସ୍ୱର ମିଳାଇ ଗାଇବାକୁ ଚେଷ୍ଟାକରି ବିଫଳ ହେଲେ । ମୁଁ ଦୁଇ କାନରେ ଅଙ୍ଗୁଳି ଭର୍ତ୍ତିକଲି । ତଥାପି ହସ ସମ୍ଭାଳି ନପାରି, ପାଟିରେ ରୁମାଲ ଭର୍ତ୍ତି କରିବାକୁ ଉଦ୍ୟମ କଲି । ମୋର ସେଭଳି ଆଚରଣ ଦେଖି ସଂଘମିତ୍ରା କ୍ଷୁବ୍ଧ ହେଲା । ପାଖକୁ ଆସି ଧୀର ସ୍ୱରରେ କହିଲା, "ବାବାଙ୍କ ଭଜନ ଗାଇଲା ବେଳେ ହସିବା ଉଚିତ ନୁହେଁ ।" "ଭଜନ ପ୍ରତି ଅଭକ୍ତି ନାହିଁ, ହରିରାମର ଉତ୍କଟ ରଡ଼ି ଶୁଣି ହସ ଲାଗୁଛି," କୈଫିୟତ ଦେଲି । ସେ ସନ୍ତୁଷ୍ଟ ହେଲା ନାହିଁ । ତେଣେ, ହରିରାମଙ୍କ କଣ୍ଠରୁ ଭଜନ ପରେ ଭଜନ ଭାସି ଚାଲିଲା ।

ଘଣ୍ଟାଏ ପରେ ଦୂରରୁ ପୁଟ୍ଟାପର୍ତ୍ତୀ ଅଞ୍ଚଳର ଦୃଶ୍ୟ ଦିଶିଲା । ଚିତ୍ରାବତୀ ନଦୀ ଉପତ୍ୟକାକୁ ଘେରି ରହିଥାଏ କେତେଗୁଡ଼ିଏ ପାହାଡ଼ । ନଦୀ ବହିଯାଉଥାଏ ଆଶ୍ରମ ଦିଗକୁ । କିଛି ସମୟ ପରେ ଦେଖାଗଲା ଅନୁଚ୍ଚ ଏକ ପାହାଡ଼ର

ଶୀର୍ଷ ଦେଶରେ ନିର୍ମିତ ହୋଇଥିବା ବିଶ୍ୱବିଦ୍ୟାଳୟର ସୌଧ । ତାଜମହଲ ସଦୃଶ ଆକାର । ନୀଳ ଆକାଶକୁ ଭେଦି ରହିଥିବା ଗୁମ୍ବଜର ଉପରିଭାଗରେ ଭାସିଯାଉଥାଏ ଖଣ୍ଡ ଖଣ୍ଡ ଧଳା ମେଘ । ଚାହୁଁ ଚାହୁଁ ବାସ୍ ପହଞ୍ଚିଲା ଆଶ୍ରମ ପରିସର ଭିତରେ । ପ୍ରଶସ୍ତ ପଥର ଦୁଇପାଖରେ ଥାଏ ବୃକ୍ଷଲତା ଓ ପୁଷ୍ପମଣ୍ଡିତ ସୁନ୍ଦର ସୁନ୍ଦର ଉଦ୍ୟାନ, ଉଦ୍ୟାନଗୁଡ଼ିକ ପଛରେ ସ୍କୁଲ, କଲେଜ, ଛାତ୍ରାବାସ ଓ ପାଠାଗାର । ନୀରବ ପରିବେଶ ମଧ୍ୟରେ ସ୍ଥାନଟି ରମଣୀୟ ଥାଏ ।

ଆଶ୍ରମ ଅଫିସ୍‌ରେ ପହଞ୍ଚିଲୁଁ । ରହିବା ଲାଗି 'ସାଇ ସଦନ' ନାମକ ଅତିଥି ଭବନରେ ଆମ ଦଳକୁ ଗୋଟିଏ ମାତ୍ର କୋଠରି ମିଳିଲା । ନିଜ ଲାଗି ସ୍ୱତନ୍ତ୍ର ରୁମ୍ ପାଇଁ ଚେଷ୍ଟାକରି ବିଫଳ ହେଲି । ଶକ୍ତ ମେଜିଆରେ ଶୋଇବାକୁ ହେବ । ଅବସ୍ଥା ଦେଖି ମୁଣ୍ଡ ଗରମ ହେଲା । ହରିରାମ ଦୂରକୁ ହାତ ଦେଖାଇ କହିଲେ, "ଯେଉଁ ୩୦, ୪୦ଟି ସେଡ୍ ଦିଶୁଛି, ସେଥିରେ ଗୋଟିଏ ଗୋଟିଏ ସେଡ୍‌ରେ ୫ ଶହ ଲୋକ ରହନ୍ତି । ବାବାଙ୍କ ଇଚ୍ଛା, ଏଠାରେ ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ଭୁଲି ସମସ୍ତେ ଗୋଷ୍ଠୀଜୀବନ ଶିକ୍ଷା କରିବା ଆବଶ୍ୟକ ।" ଅସ୍ପଷ୍ଟ ସ୍ୱରରେ ମୋ ପାଟିରୁ ବାହାରି ଗଲା, "Damn your community life !"

## ପ୍ରଶାନ୍ତି ନିଳୟମ୍

କୋଠରି ଭିତରେ ଅଟକି ରହିବା ସମ୍ଭବ ନଥିଲା । ତେଣୁ, ବାହାରେ ବୁଲିଲି । ସମୟ ଅପରାହ୍ନ ୩ଟା । ଭକ୍ତି ବା ବିଶ୍ୱାସର ପ୍ରଶ୍ନ ନଥାଏ । କେବଳ କୌତୂହଳ ! ହଜାର ହଜାର ଆବାଳବୃଦ୍ଧବନିତା ଚାରିଆଡ଼େ ବିଛାଡ଼ି ରହିଥାନ୍ତି । ତଥାପି, ନିସ୍ତବ୍ଧ ଓ ଶାନ୍ତ ପରିବେଶ । ଶହ ଶହ ବିଦେଶୀ ନରନାରୀ ଓ ଶିଶୁଙ୍କୁ ଦେଖିଲି । ଗୋଟିଏ ଗୋଟିଏ ସ୍ଥାନରେ ଶ୍ୱେତାଙ୍ଗ ଭକ୍ତମାନେ ଧ୍ୟାନରତ ଅବସ୍ଥାରେ ବସିଥାନ୍ତି । ଲୋକମାନଙ୍କ ବେଶଭୂଷାରୁ ଜଣାଯାଉଥାଏ, ସେମାନେ ଭିନ୍ନ ଭିନ୍ନ ଦେଶ, ଧର୍ମ ଓ ଜାତିର ମନୁଷ୍ୟ । ସ୍ୱେଚ୍ଛାସେବୀମାନେ ନିଷ୍ଠା ସହ କାମ କରିଯାଉଥାନ୍ତି । ଆଶ୍ରମ ପରିସର ଥାଏ ପରିଷ୍କାର ପରିଚ୍ଛନ୍ନ । ଜଣାଯାଉଥାଏ, କୌଣସି ଅଜ୍ଞାତ ପ୍ରଭାବ ବଳରେ ପ୍ରଶାନ୍ତି ନିଳୟମ୍ ଶାନ୍ତି ଓ ପବିତ୍ରତାର ପରିବେଶ ଧାରଣ କରିପାରିଛି ।

ଅପରାହ୍ନ ସାଢ଼େ ୩ଟା ବେଳକୁ ଶହ ଶହ ନରନାରୀ ପ୍ରଶାନ୍ତି ମନ୍ଦିର ନିକଟସ୍ଥ ମୁକ୍ତ ପ୍ରାଙ୍ଗଣରେ ଧାଡ଼ି ଧାଡ଼ି ହୋଇ ବସିଯିବା ଦେଖିଲି । ପୁରୁଷମାନେ ଗୋଟିଏ ପଡ଼ିଆରେ ବସିଲାବେଳକୁ ମହିଳାମାନେ ପୃଥକ ଗୋଟିଏ ପଡ଼ିଆରେ ବସିଯାଉଥାନ୍ତି । ବାଲି ଉପରେ ଚକାମାଡ଼ି ସାହେବମାନେ ବସିପଡୁଥାନ୍ତି । ହରିରାମ ମୋତେ କହିଲେ, ଆମକୁ ମଧ୍ୟ ବସିବାକୁ ହେବ । ତେଣେ, ନାତି ଦୁଇଜଣ

ଆସିଗଲେ । ଆମେ ଚାରିଜଣ ପୁରୁଷ ବିଭାଗର ପ୍ରାଙ୍ଗଣରେ ବସିଗଲୁଁ । ଚକାମାଡ଼ି ବସିବାକୁ କଷ୍ଟ ହେଲା ।

ଲାଇନ୍ ଲାଗିଗଲା ପରେ ଜଣେ ସ୍ୱେଚ୍ଛାସେବୀ ଟୋକନ୍ ଥଳି ଧରି ପହଞ୍ଚିଲେ । ପ୍ରତ୍ୟେକ ଧାଡ଼ିର ଆଗରେ ବସିଥିବା ବ୍ୟକ୍ତି ଥଳି ଭିତରୁ ଯେଉଁ ଟୋକନ ନମ୍ବର ବାହାର କଲେ, ସେହି ନମ୍ବର ଅନୁସାରେ ଧାଡ଼ି ପରେ ଧାଡ଼ିର ଲୋକମାନଙ୍କୁ ମନ୍ଦିର ସମ୍ମୁଖକୁ ଯିବାଲାଗି ଅନୁମତି ମିଳିଲା । ଆମ ଧାଡ଼ିର ନମ୍ବର ଥାଏ ୨୮ । ଅନେକ ପଛରେ ବସିବାକୁ ହେଲା ।

ଆଗରେ ପ୍ରଶାନ୍ତି ମନ୍ଦିର । ଆକାରରରେ କ୍ଷୁଦ୍ର, କିନ୍ତୁ ଦେଖିବାକୁ ସୁନ୍ଦର । ସ୍ନିଗ୍ଧ ରଙ୍ଗର ଶୋଭାମୟ ସୌଧ । ସେହି ମନ୍ଦିର ମଧ୍ୟରେ ରହନ୍ତି ଭଗବାନ ଶ୍ରୀଶ୍ରୀ ସତ୍ୟସାଇ ବାବା ।

## ଦୂରରୁ ଦର୍ଶନ

ସେ ଦିନଟି ଥାଏ ୧୯୮୭ ଡିସେମ୍ବର ୯ ତାରିଖ । ସମୟ ଅପରାହ୍ନ ୪ଟା । ମନ୍ଦିର ସମ୍ମୁଖସ୍ଥ ପ୍ରଶସ୍ତ ପ୍ରାଙ୍ଗଣ ଦୁଇଭାଗରେ ବିଭକ୍ତ ଥାଏ । ହିସାବ କରି ଦେଖିଲି, ପୁରୁଷ ବିଭାଗରେ ପ୍ରାୟ ୩ ହଜାର ଲୋକ । ମହିଳା ବିଭାଗରେ ପ୍ରାୟ ୪ ହଜାର । ଉଭୟ ସ୍ଥାନରେ ଅସ୍ୱାଭାବିକ ନୀରବତା । ଆମ ଗହଣରେ ଶତାଧିକ ବିଦେଶୀ ଚକାମାଡ଼ି ବସିଥାନ୍ତି । ସମସ୍ତଙ୍କର ଦୃଷ୍ଟି ନିବଦ୍ଧ ଥାଏ ମନ୍ଦିରର ଦ୍ୱାରଦେଶ ଦିଗରେ । ସେଠାରେ ଧାଡ଼ି ଧାଡ଼ି ବସିଥାନ୍ତି ଶତ ଶତ ଛାତ୍ର, ଶୃଙ୍ଖଳିତ ଓ ଧ୍ୟାନମଗ୍ନ ।

ସହସା ଏକ ନିସ୍ତବ୍ଧ ବାତାବରଣ ବ୍ୟାପିଗଲା । ନାତି ରାଣା ଓ ସମ୍ରାଟ ମୋ କାନ ପାଖରେ କହିଦେଲେ, ‘‘ବାରଣ୍ଡାରେ ସତ୍ୟସାଇ ବାବା ।’’ ସେହି ଦିଗକୁ ଚାହିଁଲି । ମୁହୂର୍ତ୍ତକ ପାଇଁ ତାଙ୍କର ମୁଖମଣ୍ଡଳ ଦୃଷ୍ଟିଗୋଚର ହେଲା । କ୍ଷଣକ ଲାଗି ଅସ୍ୱାଭାବିକ ଶିହରଣ ଅନୁଭବ କଲି ।

ମନ୍ଦିର ବାହାରେ, ସାଇବାବା ପୁରୁଷ ବିଭାଗ ଦିଗକୁ ଧୀର ପଦକ୍ଷେପରେ ଅଗ୍ରସର ହେଲେ । ଗୋଟିଏ ପାର୍ଶ୍ୱରେ ସ୍ୱତନ୍ତ୍ର ଭାବେ ବସିଥିବା ବିକଳାଙ୍ଗ ଓ ପୀଡ଼ାଗ୍ରସ୍ତ ବ୍ୟକ୍ତିମାନଙ୍କୁ ଚାହିଁଦେଇ, ସେ ଦର୍ଶନପ୍ରତ୍ୟାଶୀ ସମବେତ ଜନତା ଦିଗକୁ ଯନ୍ତ୍ରଚାଳିତ ମୂର୍ତ୍ତି ଭାବେ ଆଗେଇ ଆସିବା ଦେଖିଲି । ତାଙ୍କର ପ୍ରତ୍ୟେକ ପଦକ୍ଷେପରେ ଏକପ୍ରକାର ବିଚିତ୍ର ଶୈଳୀ ଥିଲାପରି ଜଣାପଡ଼ିଲା । ସମଗ୍ର ଦେହ ଗାଢ଼ ଲାଲ ରଙ୍ଗର ପରିଚ୍ଛଦ ତଳେ ଲୁଚି ରହିଥାଏ । ଦେଖାଯାଉଥାଏ କେବଳ ହାତ ପାପୁଲି । ମସ୍ତକରେ ଶୋଭା ପାଉଥାଏ ଅସାଧାରଣ ଢଙ୍ଗର ଘନ କେଶ ।

ଠିକ୍ ଯେପରି ଦକ୍ଷିଣ-ଆଫ୍ରିକାର କୃଷ୍ଣାଙ୍ଗ ନିଗ୍ରୋଜାତୀୟ ଲୋକଙ୍କ ମୁଣ୍ଡରେ ଥିବା ଘଞ୍ଚ ଗହଳ ବାଳ । ଆକାରରେ କ୍ଷୁଦ୍ରାକୃତି ମନୁଷ୍ୟ । ତାଙ୍କ ରୂପ ଦେଖି ମନରେ ପ୍ରତିକ୍ରିୟା ହେଲା, ଏ ପୁଣି ଗଡ୍‌ମ୍ୟାନ୍ !

ପୁରୁଷମାନଙ୍କ ଆଗ ଦେଇ ମୃଦୁ ପଦକ୍ଷେପରେ ଚାଲିଯାଉଥିବା ବେଳେ ହଠାତ୍ ଗୋଟିଏ ସ୍ଥାନରେ ବାବା ଅଟକିଗଲେ । କେତେକ ଗୁଡ଼ାଏ ଲାଇନ ପଛରେ ବସିଥିବା ଜଣେ ଲୋକଙ୍କ ଦିଗକୁ ଅଙ୍ଗୁଳି ଦେଖାଇ ପଚାରିଦେଲେ, ''ତୁମେ ଭେନେଜୁଏଲାରୁ ଆସିଛ ?'' ସେ ଲୋକ ତତ୍‌କ୍ଷଣାତ ଉଠିପଡ଼ି 'ହଁ' କହିବାକ୍ଷଣି ସାଇବାବା ତାଙ୍କୁ ମନ୍ଦିର ଦିଗକୁ ଅଗ୍ରସର ହେବାଲାଗି ଇଙ୍ଗିତ ଦେଲେ । ସଙ୍ଗେ ସଙ୍ଗେ, ଦଳବଦ୍ଧ ଭାବରେ ବସିଥିବା ୧୫ ଜଣ ବିଦେଶୀ 'ବ୍ୟକ୍ତିଗତ ଦର୍ଶନ' ନିମନ୍ତେ ମନ୍ଦିର ବାରଣ୍ଡା ଆଡ଼କୁ ଆଗେଇଗଲେ । ପ୍ରତ୍ୟେକଙ୍କ ସ୍କାର୍ଫରେ ବଡ଼ ବଡ଼ ଅକ୍ଷରରେ ଲେଖାଥାଏ 'ଭେନେଜୁଏଲା' । ମୋ ମନକୁ ପ୍ରଶ୍ନ ଆସିଲା, ଏଥିରେ ଅତ୍ୟାଶ୍ଚର୍ଯ୍ୟ ବା ଅଲୌକିକତା ରହିଲା କେଉଁଠି ? କାନ୍ଧ ଉପରେ ପଡ଼ିଥିବା ଦେଶର ନାମ ଦେଖି ସେହି ନାମରେ ଡାକିଦେଲେ । ଏହା କ'ଣ ଉଚ୍ଚତର ଶକ୍ତିର ନିଦର୍ଶନ ? ସାଇବାବାଙ୍କ ତଥାକଥିତ 'ମିରାକ୍‌ଲ୍'ର ପ୍ରମାଣ କାହିଁ ? କେବଳ ଏତିକି ଭାବି ଆଚମ୍ବିତ ହେଲି ଯେ, ଆଟଲାଣ୍ଟିକ ମହାସାଗର ସେପାରି ସୁଦୂର ଦକ୍ଷିଣ-ଆମେରିକାର ଉତ୍ତରଭାଗରେ ଥିବା ଭେନେଜୁଏଲା ନାମକ ଦେଶରେ ମଧ୍ୟ ସତ୍ୟସାଇଙ୍କୁ ବିଶ୍ୱାସ କରୁଥିବା ଲୋକ ଅଛନ୍ତି ଏବଂ ପ୍ରଚୁର ଅର୍ଥବ୍ୟୟ କରି ସେତେ ଦୂରରୁ ଆମ ଦେଶକୁ ଆସୁଛନ୍ତି !

ମହିଳା ବିଭାଗରେ ଦର୍ଶନ ଦେଲାପରେ ବାବା ମନ୍ଦିର ଭିତରକୁ ଚାଲିଗଲେ । ନିଃଶବ୍ଦରେ ସମବେତ ଜନତା ବିଦାୟ ନେଲେ । ଦେଢ଼ଘଣ୍ଟା ସମୟ ଆଣ୍ଠୁଭାଙ୍ଗି ଓ ଚକାମାଡ଼ି ବସିରହିଥିବା ହେତୁ ଗୋଡ଼ ଦୁଇଟିରେ ବ୍ୟଥା ହେଉଥାଏ । ଦୁଇ ନାତି ମୋ ହାତ ଧରି ଉଠାଇଲେ ।

ସନ୍ଧ୍ୟାପରେ ମନ୍ଦିର ଚାରିପାଖରେ ଏକାକୀ ବୁଲି ବୁଲି ସମୟ ବିତାଇଲି । ସଦାବେଳେ ମନକୁ ଆଘାତ କରୁଥାଏ ସେହି ଗୋଟିଏ ପ୍ରଶ୍ନ – ସାଇବାବାଙ୍କ ଦିବ୍ୟଶକ୍ତିର ନିଦର୍ଶନ କାହିଁ ? ରାତି ୧୦ଟା ବେଳେ ଆଶ୍ରମ ଭୋଜନାଳୟରେ ଶହ ଶହ ଲୋକଙ୍କ ସାଙ୍ଗରେ ବସି ରାତ୍ରିଭୋଜନ କଲି ।

ରାତି ୧୧ଟାରେ ରୁମ୍ ଭିତରେ ପଶିଲି । ଅନ୍ୟମାନେ ଶତରଞ୍ଜି ମେଲାଇ ଶୋଇବା ବ୍ୟବସ୍ଥା କରୁଥାନ୍ତି । ଦୁଇ ନାତିଙ୍କ ମଝିରେ ମୋ ପାଇଁ ଜାଗା ରହିଥାଏ । ମୋ ପାଦଦେଶରେ ହରିରାମର ଶେଯ । ତାଙ୍କ ଦୁଇ ପାଖରେ ପୁଅ ଓ ଝିଅ । ଆଠଜଣିଆ କୋଠରିରେ ସୁଖନିଦ୍ରା ସମ୍ଭବ ନଥାଏ । ଏପଟ

ସେପଟ ପାଶ ଲେଉଟାଇ ନିଜକୁ ଧିକ୍କାର ଦେଉଥାଏଁ, ଅଯଥା କାହିଁକି ଆସିଲି ! ଅର୍ଥବ୍ୟୟ, ସମୟ ନଷ୍ଟ ଓ ଶାରୀରିକ ପରିଶ୍ରମ, ଏ ସବୁର ଆବଶ୍ୟକତା କ'ଣ ଥିଲା ?

ଅନିଦ୍ରାରେ ସମୟ ବିତିଯାଉଥାଏ । ଅନ୍ୟମାନେ ଥିଲେ ସୁଷୁପ୍ତ । ଶତରଞ୍ଜିରେ ପଡ଼ିରହି ଭବିଷ୍ୟତ କାର୍ଯ୍ୟକ୍ରମ ଚିନ୍ତା କଲି । ଡିସେମ୍ବର ଶେଷ ସପ୍ତାହରେ ଦିଲ୍ଲୀ ଯିବାକୁ ହେବ । ନବଗଠିତ ଜନମୋର୍ଚ୍ଚାର ନେତାମାନଙ୍କ ପାଖରୁ ଆଗରୁ ସମ୍ବାଦ ଆସିସାରିଥାଏ । ନବବର୍ଷର ପ୍ରଥମ ଦିନରେ ଦିଲ୍ଲୀରେ ଏକ ସାମ୍ବାଦିକ ସମ୍ମିଳନୀରେ ରାଜନୀତିରେ ଯୋଗଦେବା ବିଷୟ ଘୋଷଣା କରିବି ବୋଲି ସଂକଳ୍ପ ନେଲି । ପ୍ରଶାନ୍ତି ନିଳୟମ୍ ଆସିବା ପୂର୍ବରୁ ରାଜନୀତି କରିବି ବୋଲି ଠିକ୍ କରିସାରିଥିଲି । କିନ୍ତୁ ସେ କଥା ନିଜ ମନରେ ଲୁଚାଇ ରଖିଥିଲି । ପରିବାରର କେହି ବ୍ୟକ୍ତି ବା ବାହାରର କୌଣସି ବନ୍ଧୁ ତାହାର ଆଭାସ ପାଇ ନଥିଲେ । ରାତ୍ରିର ଅନିଦ୍ରା ଓ ଅଶାନ୍ତି ମଧ୍ୟରେ, ସମ୍ପୂର୍ଣ୍ଣ ଗୋପନ ରଖିଥିବା ବିଷୟଟିକୁ ଚୂଡ଼ାନ୍ତ ରୂପ ଦେଇଦେଲି ।

## ରାତ୍ରି ଶେଷର କଥା

ମଝି ରାତିରେ ଡିସେମ୍ବର ୧୦ ତାରିଖ ଆସିଗଲା । ବିଛଣାରେ ପଡ଼ି ନ ରହି, ରାତିର ଶେଷ ପ୍ରହରରେ ନିଃଶବ୍ଦରେ ବାହାରକୁ ଚାଲିଆସିଲି । ୪ଟା ବେଳକୁ ଉପର ତାଲାରେ ଥିବା ସାହେବ ଓ ସାହେବାଣୀମାନଙ୍କୁ ସନ୍ତର୍ପଣରେ ତଳକୁ ଆସୁଥିବା ଦେଖିଲି । ବାହାରେ ଅନ୍ଧକାର । ରାସ୍ତାରେ ବିଜୁଳିବତି ଜଳୁଥାଏ । ନିକଟବର୍ତ୍ତୀ ଆଉ ଦୁଇଟି ଅତିଥିଭବନରୁ ଓ ଦୂରବର୍ତ୍ତୀ ସେଡ୍‌ଗୁଡ଼ିକରୁ ଦଳ ଦଳ ଲୋକ ବାହାରି ଆସୁଥାନ୍ତି । ପଚାରି ବୁଝିଲି, ସମସ୍ତେ ବାହାରୁଛନ୍ତି 'ନଗର ସଂକୀର୍ତ୍ତନ'ରେ ଯୋଗଦେବା ପାଇଁ ।

ଅଳ୍ପ ସମୟ ମଧ୍ୟରେ ଚାରିପାଖର ରାସ୍ତାରେ ବହୁସଂଖ୍ୟକ ସ୍ତ୍ରୀପୁରୁଷ ମନ୍ଦିର ଦିଗକୁ ଯାଉଥିବା ଦେଖିଲି । ମୁଁ ବାରଣ୍ଡା ତଳ ପାହାଚରେ ଛିଡ଼ା ରହିଥାଏଁ । ନଗର ପରିକ୍ରମାର ସୂଚନା ମିଳିଲା । ଦୂରରୁ ଶୁଭିଲା ସଂକୀର୍ତ୍ତନ ଧ୍ୱନି ।

ତଳୁ ଉପରକୁ ଉଠି ଆସିଲି । ପାହାଚ ଶେଷରେ ଥାଏ ପ୍ରଶସ୍ତ ପ୍ରବେଶ କକ୍ଷ । କକ୍ଷର କାନ୍ଥଦେଶରେ ଥାଏ ସତ୍ୟସାଇ ବାବାଙ୍କର ବୃହଦାକାର ଆଲୋକଚିତ୍ର । ଉପରେ ଜଳୁଥାଏ ଉଜ୍ଜ୍ୱଳ ବିଦ୍ୟୁତ୍‌ବତି । ଫଟୋଚିତ୍ରର ତଳେ ଚିତ୍ରିତ ଥାଏ ଧର୍ମୀୟ ଚିହ୍ନ ।

କେଉଁ ଅଜ୍ଞାତ କାରଣରୁ ଅକସ୍ମାତ୍ ମନମଧ୍ୟରେ ଏକ ଅଦ୍ଭୁତ ଭାବନା ଜାଗ୍ରତ ହେଲା । ସତ୍ୟସାଇ ବାବାଙ୍କ ଚିତ୍ର ଦିଗକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହି ଯେତେ

ଇଚ୍ଛା ସମ୍ଭବ ନିନ୍ଦା ବର୍ଷଣ କରିବାକୁ ପ୍ରବୃତ୍ତି ଅନୁଭବ କଲି । ମନରୁ ନିର୍ଗତ ହେଉଥାଏ ନାନା ପ୍ରକାର ପ୍ରଶ୍ନବାଣ ଓ ଆକ୍ଷେପମୂଳକ ବାକ୍ୟ, ଯଥା– ମନୁଷ୍ୟର ଅଜ୍ଞତା ଓ ଅନ୍ଧବିଶ୍ୱାସର ସୁଯୋଗ ନେଇ ପ୍ରହେଳିକା ସୃଷ୍ଟି କରିବା ଉଚିତ କି ? କାହିଁକି ଅସଂଖ୍ୟ ଲୋକଙ୍କୁ ମିଥ୍ୟା ପ୍ରଚାର ବଳରେ ଆକର୍ଷଣ କରି ଆଣୁଛନ୍ତି ? ଦେଶ ବିଦେଶର ସହସ୍ର ସହସ୍ର ନରନାରୀ ଓ ବାଳକବାଳିକାଙ୍କୁ ଅଯଥା କଷ୍ଟ ଦେବାର ଉଦ୍ଦେଶ୍ୟ କ'ଣ ? ଅନ୍ଧବିଶ୍ୱାସୀମାନେ ଖର୍ଚ୍ଚାନ୍ତ ହୋଇ ଆସୁଛନ୍ତି, ଅସୁବିଧା ଭୋଗୁଛନ୍ତି ଓ ସମୟ ନଷ୍ଟ କରୁଛନ୍ତି ! ଏପରି ଅବାନ୍ତର ପ୍ରହସନ କାହିଁକି ? ଇତ୍ୟାଦି, ଇତ୍ୟାଦି !

ବାକ୍ୟବାଣ ଆପେ ଆପେ ଉଚ୍ଚାରିତ ହୋଇଯାଉଥାଏ । ଶେଷରେ, ଚିତ୍ରପଟରେ ବାବାଙ୍କ ଉଜ୍ଜ୍ୱଳ ଆଖି ଦୁଇଟି ଉପରେ ନିଜର ଆଖି ଦୁଇଟି ନିବଦ୍ଧ ରଖି, ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କଲି, "ଆଜି ଦିନକ ପାଇଁ ମୁଁ ଏଠାରେ ରହିବି । ଯଦି ଆପଣଙ୍କର ଅଲୌକିକ ଶକ୍ତି ରହିଛି, ତାହାର ପ୍ରମାଣ ଆଜି ଓ କେବଳ ଆଜି ମଧ୍ୟରେ ପାଇ ପାରିବି କି ?"

ଏହାପରେ ରାସ୍ତାରେ ବୁଲିବା ଲାଗି ବାହାରିଗଲି । ସେତେବେଳେ ବି ଉଷାକାଳ ଆସି ନ ଥାଏ । ଦୂରରୁ ଶୁଭୁଥାଏ ସମବେତ ନରନାରୀ କଣ୍ଠରୁ ନଗର ସଂକୀର୍ତ୍ତନର ମଧୁର ମୂର୍ଚ୍ଛନା ।

## ଡିସେମ୍ବର ୧୦ ତାରିଖ : ଦିବ୍ୟଶକ୍ତିର ପ୍ରତ୍ୟକ୍ଷ ଅନୁଭୂତି

ସକାଳ ଦର୍ଶନର ସମୟ ହେଲା । ପୁନର୍ବାର ମନ୍ଦିର ଆଗରେ ବସିଲି । ଏଥର ସାଇବାବା ପ୍ରଥମେ ମହିଳା ବିଭାଗ ଦିଗକୁ ଗତିକଲେ । କୌଣସି ସ୍ଥାନରେ ବସିଥିବା ନୀଳ ପୋଷାକ ପିନ୍ଧିଥିବା ଦଳେ ମହିଳାଙ୍କୁ ବ୍ୟକ୍ତିଗତ ସାକ୍ଷାତ ଲାଗି ନିର୍ଦ୍ଦେଶ ଦେବା ଦେଖିଲି । ମହିଳା ଦଳ ଉଠିପଡ଼ିବା ଦେଖି ଆମ ବିଭାଗରେ ବସିଥିବା କେତେଜଣ ପୁରୁଷ ଉଠିପଡ଼ି ମନ୍ଦିର ଦିଗକୁ ଆଗେଇ ଚାଲିଲେ । ଶୁଣିଲି, ଏହି ପୁରୁଷ ଓ ନାରୀମାନେ ପ୍ରବାସୀ ଭାରତୀୟ ଓ ସ୍ୱତନ୍ତ୍ର ଦର୍ଶନ ଆଶାରେ ଦୁଇ ସପ୍ତାହ ଅପେକ୍ଷା କରି ରହିଥିଲେ । ମନରେ ପୁଣି ସେହି ପ୍ରଶ୍ନ – ଏଥିରେ 'ମିରାକ୍‌ଲ୍‌' ରହିଲା କେଉଁଠି ?

ଦର୍ଶନପର୍ବ ଶେଷ ହେଲା । ଉଠିଲାବେଳେ ଆଣ୍ଠୁଗଣ୍ଠିର ବେଦନା ସହ୍ୟ କରି ନ ପାରି ନାତିମାନଙ୍କୁ କହିଲି, "ବେଳ ଓଳି ଦର୍ଶନ ପାଇଁ ଆସିବି ନାହିଁ । ଦୁଇ ଥର ବାବାଙ୍କୁ ଦେଖିଲା ପରେ ଆଉ ଥରେ ଦେଖିବା ପାଇଁ ଇଚ୍ଛା ନାହିଁ । Enough is enough."

୧୨ଟା ବେଳେ ମଧ୍ୟାହ୍ନ ଭୋଜନ ଶେଷକରି ରୁମ୍ ଭିତରେ ଶତରଞ୍ଜି ମେଲାଇଲି । ଝିଅ ପ୍ରତି ବିରକ୍ତି ଭାବ ଦେଖାଇ କହିଲି, "ଗତ ରାତିରେ ଗୋଟିଏ ମିନିଟ୍ ଶୋଇନାହିଁ । ବର୍ତ୍ତମାନ ପାଖରୁ ଏକାଥରେ ଶୋଇଯିବି ରାତି ୧୦ଟା ଯାଏ । ସନ୍ଧ୍ୟା ଦର୍ଶନକୁ ଯିବି ନାହିଁ । ତୁମେ ସମସ୍ତେ ଯାଅ । ମୁଁ ରାତିରେ ଖାଇଲାବେଳକୁ ନିଦରୁ ଉଠିବି ।" ମୋ ମନୋଭାବ ସଂଘମିତ୍ରା ବୁଝିପାରିଲା, ଯେଉଁ ନାସ୍ତିକକୁ ସେହି ନାସ୍ତିକ !

ଘଡ଼ି ଦେଖିଲି । ୧ଟା ବାଜିଥାଏ । ଦୁଇ ଦିନ ଖିଅର ହୋଇ ନ ଥାଏ । ମଇଳା ଧୋତି ଓ ସାର୍ଟ ପିନ୍ଧିଥାଏଁ । ମୋ ଦୁଇ ପାଖରେ ଦୁଇ ନାତି ଶୋଇପଡ଼ିଲେ । ଅନ୍ୟମାନେ ବି ଶୋଇଗଲେ । ଅବିଳମ୍ବେ ମୋତେ ଗାଢ଼ ନିଦ ଲାଗିଗଲା ।

ପ୍ରାୟ ଏକ ଘଣ୍ଟା ପରେ ସହସା ନିଦ ଭାଙ୍ଗିଗଲା । ଅନୁଭବ କରିପାରିଲି ଏକ ଅଜ୍ଞାତ ପ୍ରେରଣା । ନାତି ଦୁଇଟାକୁ ନିଃଶବ୍ଦରେ ଉଠାଇଲି । "ଚାଲ, ଲାଇନ ଆଗରେ ଏତେ ଆଗରୁ ଯାଇ ବସିଯିବା । ଯଦି ଭାଗ୍ୟରେ ଥିବ, ଭଲ ଟୋକନ୍ ନମ୍ବର ମିଳିଯାଇପାରେ ।" ସେମାନେ ଆନନ୍ଦରେ ଚାଲିଲେ । ଅନ୍ୟମାନେ ଗାଢ଼ ନିଦରେ ଶୋଇଥାନ୍ତି ।

ଦିନ ସାଢ଼େ ୨ଟା ବେଳେ ପଡ଼ିଆରେ କେହି ନ ଥାନ୍ତି । କିନ୍ତୁ, ଲାଇନ୍ ଟଣା ସରିଥାଏ । ଗୋଟିଏ ଲାଇନରେ ସମ୍ରାଟକୁ ସବା ଆଗରେ ବସାଇ, ତା ପଛରେ ରାଣା ଓ ମୁଁ ଜଣକ ପରେ ଜଣେ ବସିଗଲୁଁ । ସାଢ଼େ ୩ଟା ବେଳକୁ ଅନ୍ୟ ଲାଇନ୍‌ଗୁଡ଼ିକରେ ଲୋକେ ବସିଗଲେ । ଟୋକନ୍ ଥଳି ଧରି ସ୍ୱେଚ୍ଛାସେବୀ ଆସିଗଲେ । ସମ୍ରାଟ ହାତ ପୂରାଇ ଉଠାଇଲା, ନମ୍ବର ୬ । ୪ଟା ସମୟରେ ମନ୍ଦିର ଆଗରେ ପହଞ୍ଚିଲାବେଳକୁ ଆମ ଆଗରେ ପାଞ୍ଚଧାଡ଼ି ଲୋକ ବସିଯାଇଥାନ୍ତି । ତଥାପି ଭଲ ଲାଗିଲା ଯେ ଅନେକ ପଛରେ ନ ବସି ଆଗରେ ବସିବା ସମ୍ଭବ ହେଲା ।

ଠିକ୍ ୪ଟା ୩୦ ମିନିଟ୍‌ରେ ସତ୍ୟସାଇ ବାବା ମନ୍ଦିର ଭିତରୁ ବାହାରିଲେ । ଏଥର ପୁରୁଷ ବିଭାଗ ଦିଗକୁ ଆଗେଇ ଆସୁଥିବା ଦେଖିଲି । ଷଷ୍ଠ ଧାଡ଼ିରେ ଖୁନ୍ଦାଖୁନ୍ଦି ହୋଇ ବସିଥାଏଁ । ଚିରାଚରିତ ଢଙ୍ଗରେ ଧୀର ପଦକ୍ଷେପରେ ବାବା ଅଗ୍ରସର ହେଉଥାନ୍ତି । ମଧ୍ୟେ ମଧ୍ୟେ ସମସ୍ତଙ୍କ ଆଡ଼କୁ ଚାହିଁ ହସ୍ତ ଉତ୍ତୋଳନ ପୂର୍ବକ ଆଶୀର୍ବାଦ ସଂକେତ ଦେଉଥାନ୍ତି । ମୁଁ ସେତେବେଳେ ଅନ୍ୟମନସ୍କ ଥିଲି ।

ହଠାତ୍ ଚମକି ଉଠିଲାବେଳକୁ ମୋ ଦିଗକୁ ତାଙ୍କ ଅଙ୍ଗୁଳି ନିର୍ଦ୍ଦିଷ୍ଟ ରହିଥାଏ । ହସ ହସ ମୁଖ ଅଥଚ ଚତୁର ଦୃଷ୍ଟିଭଙ୍ଗୀରେ ଚାହିଁ ମୋତେ ଇଂରାଜୀରେ ପଚାରିଦେଲେ:

"କେଉଁ ସ୍ଥାନରୁ ଆସିଛ ?" ଛିଡ଼ା ହୋଇ ମୁଁ ଉତ୍ତର ଦେଲି, "ଭୁବନେଶ୍ୱର, ଓଡ଼ିଶାରୁ ।"

"ସାଙ୍ଗରେ କେତେଜଣ ଅଛନ୍ତି ?" ବାବା ପଚାରିଲେ ।

"ଆଠ ଜଣ"

"ଆସ", ବୋଲି କହି ବାବା ମନ୍ଦିର ଦିଗକୁ ଯିବାଲାଗି ଇଙ୍ଗିତ ଦେଲେ ।

ଆଗରେ ଲୋକ, ପଛରେ ଲୋକ, ଦୁଇପାଖରେ ଲୋକ । କେଉଁପଟେ ବାହାରିବି ଠିକ୍ କରି ନ ପାରି ପଛକୁ ବୁଲିପଡ଼ିଲା କ୍ଷଣି ବାବା ହସିଦେଇ କହିଲେ, "ନା, ଆଗକୁ ଆସ, ଏହି ରାସ୍ତାରେ ବାହାରିଆସ ।" ଆଗଧାଡ଼ିମାନଙ୍କରେ ବସିଥିବା ଲୋକେ ମୋ ପାଇଁ ରାସ୍ତା ଛାଡ଼ିଦେଲେ । ଅନ୍ୟମାନଙ୍କୁ ଦର୍ଶନ ଦେବା ନିମନ୍ତେ ବାବା ତାଙ୍କ ପଥରେ ଆଗେଇ ଗଲେ ।

ଦୁଇ ନାତିର ହାତ ଧରି ଆଗକୁ ବାହାରିଲି । ଅନେକ ପଛରେ ବସିଥିବା ହରିରାମବାବୁଙ୍କୁ ସାଙ୍ଗରେ ଆସିବା ଲାଗି ହାତ ଉଠାଇ ସଂକେତ ଦେଲି । ତାଙ୍କ ପୁଅକୁ ଧରି ସେ ବାହାରିଆସିଲେ । ଦୂରବର୍ତ୍ତୀ ମହିଳା ବିଭାଗ ପ୍ରତି ଚାହିଁ ହାତ ଉଠାଇ ଝିଅକୁ ଆସିବା ପାଇଁ ଇଙ୍ଗିତ ଦେଲି ।

ମନ୍ଦିର ପଥରେ ଆଗେଇଲାବେଳେ ତଡ଼ିତ୍ ଗତିରେ ମନ ମଧ୍ୟରେ ପ୍ରତିକ୍ରିୟା ସୃଷ୍ଟିହେଲା, ସାଇବାବାଙ୍କ ମୂର୍ତ୍ତି ଆଗରେ ଯେଉଁ ଚ୍ୟାଲେଞ୍ଜ୍ ଦେଇଥିଲି, ସେ କଥା ସେ କ'ଣ ଜାଣିପାରିଲେ ? ମନ୍ଦିର ବାରଣ୍ଡାରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଆମେ ବସିଗଲୁଁ । ବାବା ସେତେବେଳେ ପୁରୁଷ ବିଭାଗ ପରେ ମହିଳା ବିଭାଗ ପରିକ୍ରମା କରୁଥିଲେ । ବସିବା ଜାଗାରୁ ତାଙ୍କ ଗତିପଥ ଦେଖାଯାଉଥାଏ । ଆମେ ବସିଥାଉଁ ବାବାଙ୍କର ବ୍ୟକ୍ତିଗତ ସାକ୍ଷାତ୍କାର କକ୍ଷର ଦ୍ୱାରଦେଶରେ । କବାଟ ବନ୍ଦ ଥାଏ । ହରିରାମବାବୁ ବାବାଙ୍କ ସାକ୍ଷାତ ପାଇବା କଥା ଚିନ୍ତା କରି ଆତ୍ମହରା ଅବସ୍ଥାରେ ବିହ୍ୱଳ ହୋଇପଡ଼ିଲେ । କିଛି ସମୟ ଅଶ୍ରୁ ଢାଳିଲା ପରେ ପିଲାଙ୍କ ପରି କାନ୍ଦିବାକୁ ଆରମ୍ଭ କରିଦେଲେ । ତାଙ୍କ କ୍ରନ୍ଦନଧ୍ୱନି ମନ୍ଦିର ଗାତ୍ରରେ ପ୍ରତିଧ୍ୱନିତ ହେଲା । ଭାବପ୍ରବଣ ଭକ୍ତଙ୍କ ପକ୍ଷରେ ଅଶ୍ରୁ ବିସର୍ଜନ ହେଉଛି ଭକ୍ତିର ଅର୍ଘ୍ୟ !

ଅଳ୍ପ ସମୟ ପରେ ସତ୍ୟସାଇ ବାବା ବାରଣ୍ଡାକୁ ଉଠିଆସିଲେ । ଯେଉଁ ପ୍ରକାର କୌତୁକାବହ କଟାକ୍ଷପାତ ପୂର୍ବକ ସେ ମୋ ମୁହଁକୁ ଚାହିଁ ହସିଦେଲେ, ସେଥିରୁ ଅନୁମାନ କଲି ଶେଷ ରାତ୍ରିର ଆହ୍ୱାନ ବୋଧହୁଏ ସେ ଜାଣନ୍ତି । ହରିରାମର ବିଳାପ ଦେଖି ଶ୍ରଦ୍ଧାପୂର୍ଣ୍ଣ କଣ୍ଠରେ କହିଲେ, "What is there to weep !"

ରୁଦ୍ଧ କକ୍ଷର ଦ୍ୱାର ଫିଟିଲା । ଭିତରକୁ ବାବା ଡାକିନେଲେ । କ୍ଷୁଦ୍ର ପ୍ରବେଶ କକ୍ଷ ଭିତରେ ଆମେ ଆଠଜଣ ବାବାଙ୍କ ସମ୍ମୁଖରେ ଧାଡ଼ିବାନ୍ଧି ଛିଡ଼ା ହୋଇଗଲୁଁ । ସଦୟ ଦୃଷ୍ଟିରେ ସେ ସମସ୍ତଙ୍କ ମୁହଁକୁ କିଛି ସମୟ ଚାହିଁଲେ । ଧୀର ପଦକ୍ଷେପରେ ଆଗେଇ ଆସି ପ୍ରଥମେ ମୋ ସ୍ତ୍ରୀଙ୍କ ସମ୍ମୁଖରେ ନିଜ ହାତ ଊର୍ଦ୍ଧ୍ୱକୁ ଉଠାଇଲା କ୍ଷଣି ନିମିଷ ମଧ୍ୟରେ ଶୂନ୍ୟରୁ ବିଭୂତି ଝରିଆସିବା ଦେଖିଲି । ସେତକ ବିଭୂତି ବାବା ମୋ ସ୍ତ୍ରୀଙ୍କ ହାତରେ ଅଜାଡ଼ି ଦେଲେ । ତା'ପରେ ଛିଡ଼ାହେଲେ ସଂଘମିତ୍ରା ଆଗରେ । ଶୂନ୍ୟରୁ ବିଭୂତି ସୃଷ୍ଟି କରିବା ଦୃଶ୍ୟ ଉତ୍ତମ ଭାବରେ ଦେଖିବା ଲାଗି ଏଥର ମୁଁ ତୀକ୍ଷ୍ଣ ଦୃଷ୍ଟିରେ ଉପରକୁ ଚାହିଁରହିଲି ଓ ତାଙ୍କ ହାତ ପାପୁଲି ପ୍ରତି ଲକ୍ଷ୍ୟ ରଖିଲି । ପୁଣି ଶୂନ୍ୟରୁ ବିଭୂତି ଝରିଲା । ବାବା ଝିଅ ହାତରେ ସେତକ ରଖିଦେଲେ ।

ଏଥର ମୋର ପାଳି । ବୋଧହୁଏ ମୋ ମନରୁ ସନ୍ଦେହ ଦୂର କରିବା ଉଦ୍ଦେଶ୍ୟରେ ବାବା ମୋ ମୁଣ୍ଡ ଉପରେ ତାଙ୍କ ପାପୁଲି ଦୁଇଟି ଶ୍ରଦ୍ଧାବର୍ଷଣ ଲାଗି କିଛି ସମୟ ରଖିଲେ । ତା'ପରେ, ଡାହାଣ ପାପୁଲି ମୋ ଆଖି ଆଗରେ ଶୂନ୍ୟକୁ ଉଠାଇଲେ । ମୁହୂର୍ତ୍ତ ମଧ୍ୟରେ ତାଙ୍କ କରପୃଷ୍ଠରେ ଶୂନ୍ୟରୁ ବିଭୂତି ବର୍ଷିବା ଦେଖିଲି । ତାହାକୁ ମୋ ହାତରେ ନ ଦେଇ ବାବା କପାଳରେ ଓ ମୁଣ୍ଡରେ ବୋଳିବାବେଳେ ଝିଅ ଆଖିରେ ଲୁହ ଦେଖିପାରିଲି । ହୁଏତ ଜଣେ ନିନ୍ଦୁକ ପ୍ରତି ବାବାଙ୍କ ସ୍ନେହ ଦେଖି ସେ ଭାବପ୍ରବଣ ହୋଇପଡ଼ିଥିଲା ।

ପ୍ରବେଶ କକ୍ଷକୁ ଲାଗିଥାଏ ନିଭୃତ ଦର୍ଶନ କକ୍ଷ । ବାବା ତା ଭିତରକୁ ଆମକୁ ଡାକିନେଲେ । ସିଂହାସନ ସଦୃଶ ଚେୟାରରେ ସେ ଆସନ ଗ୍ରହଣ କଲେ । ତାଙ୍କ ପାଦତଳେ ଆମେ ମେଜିଆରେ ବସିଗଲୁଁ । ସେତେବେଳେ ପର୍ଯ୍ୟନ୍ତ ମୋ ଅହଂଭାବ ପୂର୍ବପରି ରହିଥାଏ । ସଦର୍ପେ ନିଜର ପରିଚୟ ଦେଲି, "ମୁଁ ଜଣେ କୁଳପତି ଥିଲି । ଇତିହାସ ପୁସ୍ତକମାନ ଲେଖିଛି, ଏବଂ ମୁଁ ଜଣେ ନାସ୍ତିକ, ବିଶ୍ୱାସ କରେ ନାହିଁ.....।"

ମୋ ବାକ୍ୟ ଶେଷ ହେବା ପୂର୍ବରୁ ବାବା ହସିଦେଇ କହିଲେ, "ମୁଁ ଜାଣେ ।" ତହିଁ ପରକ୍ଷଣରେ ସେ ଯେଉଁ କଥା କହିଲେ ତାହାର ଅର୍ଥ ଅନ୍ୟମାନେ ବୁଝିପାରିଲେ ନାହିଁ, କେବଳ ମୁଁ ବୁଝିଲି । ସ୍ତମ୍ଭିତ ହେଲି, ମୋ ମନ କଥା କେହି ଜାଣି ନ ଥିଲାବେଳେ, ସତ୍ୟସାଇ ବାବା ତାହା ଜାଣିଲେ କିପରି ?

କଠୋର ଦୃଷ୍ଟିରେ ମୋ ମୁହଁକୁ ଚାହିଁରହି ଇଂରାଜୀରେ କହିଲେ: "ରାଜନୀତିରେ ପ୍ରବେଶ କରିବ ଭାବିଛ । ସେଥିରେ ନୈତିକତା, ସାଧୁତା ଓ ଶୀଳାଚାର ଅଛି କି ? ତା କରନା ।" ("Is there morality, virtue and ethics in it ? Do n't do it.")

ବାବାଙ୍କର ଏହି ଉପଦେଶ ପରେ, ମୁଁ ଅନ୍ୟ ଏକ ପ୍ରସଙ୍ଗ ଉତ୍ଥାପନ କଲାମାତ୍ରେ, ମୁଁ ଯାହା କହି ନଥିଲି, ଅଥଚ ସତ୍ୟ ଥାଏ, ସେହି କଥା ଉଚ୍ଚାରଣ କରି ବାବା ମୋତେ ଆଚମ୍ବିତ କଲେ ।

ସଂଘମିତ୍ରାକୁ ସଶ୍ରଦ୍ଧ ଦୃଷ୍ଟିରେ ଚାହିଁ ବାବା କହିଲେ, "ତୁ ଗତ ୧୯ ବର୍ଷ ଧରି ମୋ ନିକଟକୁ ଆସିବୁ ବୋଲି ଇଚ୍ଛା କରୁଥିଲୁ ଏବଂ ଶେଷରେ ଏତେଦିନ ପରେ ଆସିଲୁ !" ତାଙ୍କର ଦୃଷ୍ଟି ପଡ଼ିଗଲା ଝିଅର ଭ୍ୟାନିଟି ବ୍ୟାଗ ଉପରେ । କହିଲେ, "ତା ଭିତରେ ମୋ ପାଇଁ ଗୋଟିଏ ଜିନିଷ ରଖିଛୁ । ବାହାର କରି ମୋତେ ଦେ ।" ସଂଘମିତ୍ରା ଅପ୍ରସ୍ତୁତ ହେଲା । ବାବାଙ୍କ କହିବା ସତ୍ତ୍ୱେ, ସେ ବ୍ୟାଗ୍ ଫିଟାଇବାକୁ ଇଚ୍ଛା କଲାନାହିଁ । ବାବା ହସି ହସି କୌତୁକ କଲେ, "ମୁଁ ଜାଣେ, ବ୍ୟାଗ ଭିତରଟା ଗୋଟିଏ ମିନି ବଜାର । ହେଲେ, ତା ଭିତରେ ମୋ ପାଇଁ ଖଣ୍ଡିଏ କାଗଜ ଟୁକୁରା ଅଛି । ବ୍ୟାଗ୍ ଫିଟାଇ ମୋ ଜିନିଷ ମୋତେ ଦେଇ ଦେ ।" ଇତସ୍ତତଃ ହୋଇ ସଂଘମିତ୍ରା ଚେନ୍ ଟାଣି ଥଳି ଫିଟାଇଲା । ଭିତରେ ଥାଏ, ସ୍ନୋ, ପାଉଡର, ଔଷଧ, ରୁମାଲ, ବିସ୍କୁଟ, ଚକୋଲେଟ୍ ଓ ଅଧାଖିଆ ଖଣ୍ଡିଆ ଗୋଟିଏ ଆପେଲ୍ । ସବା ତଳେ ଥିଲା, ବାବାଙ୍କ ଉଦ୍ଦେଶ୍ୟରେ ନିଜର କୌଣସି ବ୍ୟକ୍ତିଗତ ଦୁଃଖ ଜଣାଇ ଲେଖିଥିବା ଚିଠିଖଣ୍ଡିକ । କାଗଜଟି ବଢ଼ାଇ ଦେଲାବେଳେ, ବାବା ହସିଦେଇ କହିଲେ, "ତୋର ତ ଦୁଇଟି ପୁଅ ଓ ଗୋଟିଏ ଉତ୍ତମ ଝିଅ ଅଛି ! ଆଉ ଚିନ୍ତା କ'ଣ ?"

ମୋ ସ୍ତ୍ରୀ ଓ ଝିଅକୁ ଉପଦେଶ ଦେଲାବେଳେ ବାବା ଯେପରି ଭାବରେ ସେମାନଙ୍କ ସୁଖ, ଦୁଃଖ, ସମସ୍ୟା, ଚିନ୍ତା, ସ୍ୱଭାବ ଓ ପ୍ରକୃତି ବିଷୟ ଖୋଲିଦେଲେ, ତାହା ଶୁଣି ଭାବୁଥାଏଁ, ଏ କ'ଣ ସର୍ବଜ୍ଞ, ସମସ୍ତଙ୍କର ସବୁକଥା ଜାଣିଛନ୍ତି ! ଠିକ୍ ସେହିପରି, ହରିରାମଙ୍କୁ ତାଙ୍କ ପୁଅ ଝିଅ ସମ୍ପର୍କରେ ପ୍ରଶ୍ନ କଲାବେଳେ ଜଣାପଡ଼ିଲା, ବାସ୍ତବିକ ତାଙ୍କୁ କୌଣସି ବିଷୟ ଅଗୋଚର ନୁହେଁ ।

ଅଧଘଣ୍ଟା ସମୟ ସାକ୍ଷାତକାର ମଧ୍ୟରେ ସାଇବାବାଙ୍କ ଅଲୌକିକ ଶକ୍ତିର ପ୍ରମାଣ ପାଇଗଲି । ସସ୍ନେହରେ ଦ୍ୱାର ପର୍ଯ୍ୟନ୍ତ ଛାଡ଼ିବାକୁ ଆସି ମୋ ମୁଣ୍ଡରେ ହାତ ରଖି ବାବା ଶେଷ ଉପଦେଶ ଦେଲେ, "Have Faith, Feel Happy". ଭକ୍ତିପୂତ ମନୋଭାବ ସହ କହିଲି, "ବାବା, ସମ୍ପୂର୍ଣ୍ଣ ଜଣେ ଅବିଶ୍ୱାସୀକୁ ଆପଣ କ୍ଷଣକ ମଧ୍ୟରେ ବିଶ୍ୱାସୀ କରିଦେଲେ !"

ସତ୍ୟସାଇ ବାବାଙ୍କ କକ୍ଷରୁ ବାହାରି ଆସିଲା ପରେ ଅପାର ସନ୍ତୋଷ ଅନୁଭବ କଲି, ସତେ ଯେପରି ମସ୍ତିଷ୍କରୁ ଅନେକ ଦୁଃସହ ବୋଝ ଖସିପଡ଼ିଛି । ଝିଅକୁ ପଚାରିଲି, "ସାଇବାବା ତୋତେ କାହିଁକି ପଚାରିଲେ ଯେ ତୁ ୧୯ ବର୍ଷ ଧରି

ଆସିବୁ ଆସିବୁ ବୋଲି ଭାବୁଥିଲୁ ? ୧୯ ବର୍ଷ କଥାଟି କ'ଣ ଠିକ୍ ?'' ସଂଘମିତ୍ରା ଅଙ୍ଗୁଳି ରେଖା ଗଣିସାରି ଉତ୍ତର ଦେଲା, ''ଠିକ୍ ୧୯ ବର୍ଷ ଆଗେ ପ୍ରଥମେ ବାବାଙ୍କ ଚିତ୍ର ଦେଖିଲା ସମୟରୁ ତାଙ୍କୁ ଦର୍ଶନ କରିବାକୁ ଆସିବି ବୋଲି ମନେ ମନେ ଆଶା କରୁଥିଲି ।'' ଝିଅ ମୋତେ ପ୍ରଶ୍ନକଲା, ''ମୋର ଦୁଇ ପୁଅ ଓ ଗୋଟିଏ ଝିଅ ଅଛି ବୋଲି ବାବା କିପରି ଜାଣିଲେ ?'' ''ସେହି କଥା ମୁଁ ମଧ ଭାବୁଛି,'' ବୋଲି ଉତ୍ତର ଦେଲି ।

ତହିଁ ପରଦିନ ପ୍ରଶାନ୍ତି ନିଳୟମ୍‌ରୁ ବିଦାୟ ନେଲୁଁ ।

## ଦର୍ଶନ ପରବର୍ତ୍ତୀ କେତୋଟି ଘଟଣା

ସଂଘମିତ୍ରା ଆଶ୍ରମ ଦୋକାନରୁ ସତ୍ୟସାଇ ବାବାଙ୍କର ଦୁଇଟି ବଡ଼ ବଡ଼ ଫ୍ରେମ୍ ଓ କାଚବନ୍ଧାଇ ଚିତ୍ର କିଣି ଆଣିଥାଏ । ନିଜ ଘର ପ୍ରାର୍ଥନାଗୃହରେ ସେହି ଛବି ଆଗରେ ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ତା ପୁଅଝିଅମାନେ ଆଳତି କରିବାକୁ ଲାଗିଲେ । ଆମ ଘରେ ସେପରି ବ୍ୟବସ୍ଥା ହୋଇ ନ ଥାଏ । ମୋ ଘର ଓ ଝିଅ ଘର ମଧରେ ଥାଏ ଅନୁଚ୍ଚ ପ୍ରାଚୀର ।

ପ୍ରଶାନ୍ତିରୁ ଫେରିଲା ପରେ ସପ୍ତାହଟିଏ ବିତି ନ ଥାଏ । ଦିନେ ପ୍ରଭାତରେ ସଂଘମିତ୍ରା ମୋତେ ଉଚ୍ଚ ସ୍ୱରରେ ଡାକି ପ୍ରାର୍ଥନାଘରକୁ ନେଇ ଦେଖାଇଲା– ସତ୍ୟସାଇ ବାବାଙ୍କ ଚିତ୍ର ଉପରେ ଥିବା ଦୁଇଟି କାଚରୁ ଧାର ଧାର ହୋଇ ମହୁ ଝରିଛି ଓ ତଳେ ପିମ୍ପୁଡ଼ି ଧାଡ଼ି ଲାଗିରହିଛି । ଚାହିଁଦେଇ ସନ୍ଦେହ କଲି, ବୋଧହୁଏ ମୋ ମନରେ ବିଶ୍ୱାସ ଦୃଢ଼ୀଭୂତ କରିବା ଲାଗି ଝିଅ ରାତିରେ ଟୋପା ଟୋପା ମହୁ କାଚଗୁଡ଼ିକ ଉପରେ ଢାଳିଦେଇଛି । ତାକୁ ଖଣ୍ଡିଏ ପରିଷ୍କାର କନା ଆଣିବାକୁ କହିଲି ଓ କାଚ ଉପରୁ ମହୁ ପୋଛିଦେବାକୁ ନିର୍ଦ୍ଦେଶ ଦେଲି । ସଙ୍ଗେ ସଙ୍ଗେ ସେ ମୋ କଥା ମାନିଲା । କାଚ ସ୍ୱଚ୍ଛ ଦିଶିଲା ପରେ ବାବାଙ୍କ ମୁଖମଣ୍ଡଳ ଉପରେ ଆଖି ପକାଇଲି । ସେହି ମୁହୂର୍ତ୍ତରେ ମୋ ଆଖି ଆଗରେ ସେହି କାଚ ଉପରେ ଝରିପଡ଼ିଲା ଆଉ ଏକ ବିନ୍ଦୁ ଉଜ୍ଜ୍ୱଳ ମହୁ । ଅଙ୍ଗୁଳିରେ ଧରିନେଇ ଜିଭରେ ଲଗାଇଲି । ନୂତନ ସ୍ୱାଦଯୁକ୍ତ ସୁମିଷ୍ଟ ମହୁ !

କିଛି ସପ୍ତାହ ପରେ । ମୋର ୩ ବର୍ଷ ବୟସର ନାତୁଣୀ ବିଦିଶା ଖେଳିଲାବେଳେ ପଡ଼ିଯାଇ ଡାହାଣ ହାତର ମଣିବନ୍ଧ ବା କରଗ୍ରନ୍ଥି ଭାଙ୍ଗିପକାଇଲା । ଡାକ୍ତର ଏକ୍ସ-ରେ କରିବାକୁ କହିଲେ । ଯନ୍ତ୍ରଣା ଯୋଗୁଁ ପିଲାଟି ବିକଳ ଭାବେ କାନ୍ଦୁଥାଏ । ଆଘାତ ପାଇଥିବା ସ୍ଥାନଟିକୁ ଛୁଇଁବାକୁ ଦେଉ ନ ଥାଏ । କୋଳରେ ବସାଇ ହସ୍‌ପିଟାଲ ନେଲାବେଳେ ଝିଅର କଷ୍ଟ ଦେଖି ନ ପାରି ତା ମା ସାଇବାବାଙ୍କୁ

ସ୍ମରଣ କରିବା ସହିତ ବ୍ୟାଗ୍ ଭିତରୁ ବିଭୂତି ବାହାର କରି ଜଖମ ଜାଗାରେ ଲଗାଇଦେଲା । ତତ୍‌କ୍ଷଣାତ୍ ବିଦିଶାର ବିଳାପ ବନ୍ଦ ହୋଇଗଲା ଓ ହାତ ବୁଲାଇ ଘରକୁ ଗାଡ଼ି ଫେରାଇବାକୁ ତା ମା'କୁ ବାଧ୍ୟକଲା ।

କିଛି ଦିନ ପରେ । ସନ୍ଧ୍ୟାବେଳେ ବିଛଣାରେ ବସି କୌଣସି ଏକ କୃତିତ୍ୱ ଲାଗି ଆସ୍ଫାଳନ କରୁଥିଲା ବେଳେ, ମୋ ପାଖରେ ୯ ବର୍ଷ ବୟସର ନାତି ସମ୍ରାଟ ସାଇବାବାଙ୍କ ଫଟୋକାର୍ଡ଼ଗୁଡ଼ିକ ଖେଳୁଥାଏ । ହଠାତ୍ ପାଟିକଲା, ଖଣ୍ଡିଏ ଛବିରେ ମହୁ ଝରିଯାଉଛି । ଚାହିଁଲାବେଳକୁ ଶୁଖିଲା କାର୍ଡ ଉପରେ ସଦ୍ୟ ବାହାରିଥିବା ବହଳ ମହୁ । ସେତେବେଳକୁ ବାବାଙ୍କ ସମ୍ବନ୍ଧରେ ଜାଣିସାରିଥିଲି ଯେ, ମନୁଷ୍ୟର ଗର୍ବ ଓ ଅହଂ ଧ୍ୱଂସ ପାଇଁ ସେ 'ସଙ୍କେତ' ଦ୍ୱାରା ଚେତନା ଆଣିଥାନ୍ତି । କେତେଗୁଡ଼ିଏ ଅନୁଭୂତି ହାସଲ କରିସାରିଥିଲି, ଅସମ୍ଭବ କ୍ରୋଧବେଳେ ଅକସ୍ମାତ ବାବାଙ୍କ ମୂର୍ତ୍ତି ମନେ ପଡୁଥାଏ ଓ ସେହି ମୁହୂର୍ତ୍ତରେ ରାଗ ପରିବର୍ତ୍ତେ ଦୟା ଓ କୋମଳତା ଉପଲବ୍ଧ ହେଉଥାଏ ।

ମହୁ 'ମିରାକ୍‌ଲ୍'ର ଅନ୍ୟ ଏକ ଦୃଷ୍ଟାନ୍ତ ଦେଉଛି । ଦିନେ ଭୁବନେଶ୍ୱରସ୍ଥିତ ପଦାର୍ଥବିଦ୍ୟା ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକ ମହୋଦୟ ଗୋଟିଏ ବୈଜ୍ଞାନିକ ସମ୍ମିଳନୀ ଉଦ୍‌ଘାଟନ କରିବା ଲାଗି ମୋତେ ଅନୁରୋଧ କଲେ । ଓଡ଼ିଶା ଓ ଓଡ଼ିଶା ବାହାରର ବିଦ୍ୱାନମାନେ ସେଥିରେ ଯୋଗଦେବେ ବୋଲି ଜଣାଇଲେ । ମୁଁ କହିଲି, ବିଜ୍ଞାନ ସମ୍ବନ୍ଧରେ କୌଣସି ଜ୍ଞାନ ନଥାଇ ସେପରି ସମ୍ମେଳନରେ ନିଜର ଅଜ୍ଞତା ଦେଖାଇବାକୁ ଯିବିନାହିଁ ।'' ସେ ବୁଝାଇଲେ, ''ବିଜ୍ଞାନ ସମ୍ବନ୍ଧରେ କହିବା ପାଇଁ ଆପଣଙ୍କୁ ଡକାଯାଉ ନାହିଁ । ଜଣେ ପୂର୍ବତନ କୁଳପତି ଭାବରେ ଆନୁଷ୍ଠାନିକ ଉଦ୍‌ଘାଟନ ଉତ୍ସବରେ ଆପଣ ଯାହା ପଦେ ଦୁଇପଦ କହିଲେ ଯଥେଷ୍ଟ ।'' ରାଜି ହେଲି ଓ ମୋ ବକ୍ତବ୍ୟ ବିଷୟର ଶିରୋନାମ ରଖିଲି ''Signs Beyond Science'' ।

ନିର୍ଦ୍ଦିଷ୍ଟ ତାରିଖ ୯ଟା ସମୟରେ ସଭାକୁ ଯିବାବେଳେ ପଣ୍ଡିଚେରୀରୁ ମନୋଜ ପାଖରୁ ଫୋନ୍ ଆସିଲା, ମା ଗୁରୁତର ଅସୁସ୍ଥ, ମୋତେ ଅବିଳମ୍ବେ ସେଠାକୁ ଯିବାକୁ ହେବ । ରାତି ଗାଡ଼ିରେ ମାନ୍ଦ୍ରାଜ ଯିବାପାଇଁ ଟିକଟ ବ୍ୟବସ୍ଥା କରି ମିଟିଂ ସ୍ଥାନକୁ ଚାଲିଲି । ଉଦ୍‌ଘାଟନୀ ଭାଷଣରେ ବ୍ୟାଖ୍ୟା କଲି ଯେ, ବିଜ୍ଞାନସମ୍ମତ ଜ୍ଞାନ ପ୍ରତି ଧ୍ୟାନ ଦେଲାବେଳେ, ଅତି ପ୍ରାକୃତିକ ଦୃଶ୍ୟମାନ ବସ୍ତୁ ଓ ବ୍ୟାପାର ବିଷୟରେ ମଧ୍ୟ ବୈଜ୍ଞାନିକ ରୀତିରେ ଅନୁସନ୍ଧାନ କରାଯିବା ଉଚିତ । କାରଣ, ପ୍ରାର୍ଥିବ ଓ ପାରମାର୍ଥିକ, ଭୌତିକ ଓ ଅଭୌତିକ, ଜଡ଼ବାଦ ଓ ବ୍ରହ୍ମବାଦ ମଧ୍ୟରେ ଥିବା ଅଭେଦ୍ୟ ପ୍ରାଚୀରକୁ ଭେଦ କରିବା ହେଉଛି ପ୍ରାଜ୍ଞ ପଣ୍ଡିତମାନଙ୍କ ପ୍ରତି ଏ ଯୁଗର ଏକ ନୂତନ ଆହ୍ୱାନ ।

କଥା ପ୍ରସଙ୍ଗରେ ଝିଅଘର କାଚରେ ବାହାରିଥିବା 'ମହୁ' ବିଷୟ ଉଲ୍ଲେଖ କଲାବେଳେ ଜଣେ ବୈଜ୍ଞାନିକ ପ୍ରଶ୍ନକଲେ, "ଆପଣଙ୍କ ଝିଅ କେଉଁ ସ୍ଥାନରୁ ସେହି କାଚଯୁକ୍ତ ଚିତ୍ରମାନ ଆଣିଥିଲେ?" ଉତ୍ତର ଦେଲି, "ସତ୍ୟସାଇ ବାବାଙ୍କ ପ୍ରଶାନ୍ତି ନିଳୟମ ଦୋକାନରୁ।"

"ସେହି କାଚଗୁଡ଼ିକୁ ଆମ ବିଜ୍ଞାନାଗାରରେ ପରୀକ୍ଷା ଲାଗି ଦେଇପାରିବେ? ଆମର ବିଶ୍ୱାସ, କାଚ ଦେହରେ ଏପରି କୌଣସି ଅଦୃଶ୍ୟ ରାସାୟନିକ ପ୍ରଲେପ ଦିଆଯାଇଛି, ଯାହା ଯଥାସମୟରେ ତରଳ ହୋଇ ମହୁର ରୂପ ଗୁଣ ନେଇପାରୁଥିବ। ଗଡ୍‌ମ୍ୟାନମାନେ ଏପରି କୌଶଳ ଅବଲମ୍ବନ କରିବା ଅସମ୍ଭବ ନୁହେଁ। ଆଶ୍ରମ କାଚ ପ୍ରତି ଆମର ତିଳେ ସୁଦ୍ଧା ବିଶ୍ୱାସ ନାହିଁ," ବୈଜ୍ଞାନିକ ମତ ଦେଲେ।

ତତ୍‌କ୍ଷଣାତ୍ ମୁଁ ଉତ୍ତର ଦେଲି, "ଆପଣଙ୍କ ପ୍ରସ୍ତାବ ମୁଁ ବିନା ଦ୍ୱିଧାରେ ଗ୍ରହଣ କରୁଛି। ମୋ ମା'ଙ୍କ ଅସୁସ୍ଥତା ଯୋଗୁଁ ଆଜି ରାତିରେ ମୁଁ ପଣ୍ଡିଚେରୀ ଚାଲିଯାଉଛି। ଯେଉଁଦିନ ସେଠାରୁ ଫେରିବି, ସେହିଦିନ ହିଁ କାଚଗୁଡ଼ିକ ଆପଣଙ୍କ ଲେବୋରାଟରିରେ ପରୀକ୍ଷା ନିରୀକ୍ଷା ପାଇଁ ଦାଖଲ କରିବି। ସତ୍ୟସାଇ ବାବାଙ୍କ ଅଲୌକିକତା ସମ୍ପର୍କରେ ମୁଁ ମଧ୍ୟ ବୈଜ୍ଞାନିକ ପ୍ରମାଣ ଆବଶ୍ୟକ କରେ। ଅନ୍ଧବିଶ୍ୱାସୀ ଭାବେ ସବୁ କଥା ମାନିନେବାକୁ ଜଣେ ଆଧୁନିକ ମନୁଷ୍ୟ ରୂପେ ମୁଁ ପ୍ରସ୍ତୁତ ନୁହେଁ।"

ସେହିଦିନ ରାତି ଟ୍ରେନ୍‌ରେ ମାନ୍ଦ୍ରାଜ ଅଭିମୁଖେ ଯାତ୍ରାକରି ସେଠାରୁ ପଣ୍ଡିଚେରୀ ଗଲି। ମା ପ୍ରତ୍ୟେକ ବର୍ଷ ଥରେ ଦୁଇଥର ତାଙ୍କ ସାନପୁଅ ପାଖରେ ମାସେ ଦୁଇମାସ ରହୁଥିଲେ। ଏଥର ସେଠାରେ ଥିଲାବେଳେ ଗୁରୁତର ଅସୁସ୍ଥ ହେଲେ। ବୟସ ହୋଇଥାଏ ୯୩। ଆରୋଗ୍ୟ ଲାଭ ପାଇଁ ଦୁଇ ସପ୍ତାହ ଲାଗିଲା। ସେ ସମ୍ପୂର୍ଣ୍ଣ ସୁସ୍ଥ ହେଲାପରେ ମୁଁ ଫେରିଆସିଲି। ମାନ୍ଦ୍ରାଜ ମେଲ୍ ବିଳମ୍ବରେ ଭୁବନେଶ୍ୱରରେ ପହଞ୍ଚିଲା, ରାତି ୧୨ଟା ପରେ। ସକାଳେ ବିଳମ୍ବରେ ଉଠିବି ବୋଲି କହି ଶେଯ ଧରିଲି।

କିନ୍ତୁ ସୂର୍ଯ୍ୟୋଦୟ ପୂର୍ବରୁ ବୋହୂ ରଞ୍ଜିତା ମୋତେ ନିଦରୁ ଉଠାଇ ପ୍ରାର୍ଥନାଘର ଭିତରକୁ ଡାକି ଆଣିଲା। ସତ୍ୟସାଇ ବାବାଙ୍କ ଛବି ଉପରେ ଥିବା ବଡ଼ ବଡ଼ ଚାରିଖଣ୍ଡି କାଚରେ ଧାର ଧାର ମହୁ ଝରି ରହିଥାଏ। ରଞ୍ଜିତା ବିସ୍ମୟ ପ୍ରକାଶ କରି କହିଲା, "ସନ୍ଧ୍ୟାବେଳେ ଆରତି ସମୟରେ କିଛି ନ ଥିଲା। ରାତି ଭିତରେ ଏତେଗୁଡ଼ାଏ ମହୁ ଝରି ବହିଯାଇଛି। ସବୁ କାଚରେ ପିମ୍ପୁଡ଼ି ଧାଡ଼ି।"

ମନେପଡ଼ିଗଲା ବୈଜ୍ଞାନିକମାନଙ୍କୁ ଦେଇଥିବା ମୋ ପ୍ରତିଶ୍ରୁତି କଥା। ମୁଁ ଘରେ ନ ଥିବା ସମୟରେ ସ୍ତ୍ରୀ ଓ ବୋହୂ ପ୍ରାର୍ଥନା କକ୍ଷଟି ସଜାଇଛନ୍ତି ବୋଲି ଜାଣିଲି।

ପ୍ରଶ୍ନକଲି, ''ଏତେଗୁଡ଼ାଏ ଫ୍ରେମ୍ ଓ କାଚ କେଉଁଠାରୁ କିଣାଯାଇଛି ?'' ସ୍ତ୍ରୀ ଉତ୍ତର ଦେଲେ, ''ତୁମର ପୁରୁଣା ଗ୍ରୁପ୍‌ଫଟୋଗୁଡ଼ିକ କାଢ଼ିଦେଇ ସେହି ଫ୍ରେମ୍‌ଗୁଡ଼ିକ ଭିତରେ କ୍ୟାଲେଣ୍ଡାରରେ ଥିବା ବାବାଙ୍କର ଚିତ୍ରଗୁଡ଼ିକ ଭର୍ତ୍ତି କରାଯାଇଛି।'' ପଚାରିଲି, ''କୌଣସି ଫ୍ରେମ୍ ବା କାଚ ପୁଚ୍ଛାପର୍ତ୍ତୀରୁ ଆସି ନାହିଁ ତ ?'' ସ୍ତ୍ରୀ ଓ ବୋହୂ ସମସ୍ୱରରେ କହିଲେ, ''ନା। ସବୁଗୁଡ଼ିକ କୀଟ ଓ ପୋକଖିଆ ଫଟୋଗୁଡ଼ିକର ଫ୍ରେମ୍ ଓ କାଚ।''

ଫ୍ରେମ୍‌ଗୁଡ଼ିକ ଭଲଭାବରେ ଦେଖିଲି । ବିଶ୍ୱବିଦ୍ୟାଳୟର ବିଦାୟୀ ଛାତ୍ରମାନଙ୍କ ଗହଣରେ ନିଆଯାଇଥିବା ମୋର ଫଟୋର ଫ୍ରେମ୍ ଓ କାଚ। ଫ୍ରେମ୍ ତଳେ ଲେଖାଥିବା ବିଭିନ୍ନ ବର୍ଷର ଅଙ୍କ ମଧ୍ୟ ପଢ଼ିଲି। ଝିଅ ଘରର କାଚ ସିନା ଆସିଥିଲା ସାଇବାବାଙ୍କ ଆଶ୍ରମରୁ ! କିନ୍ତୁ ଏହି କାଚଗୁଡ଼ିକ କଢ଼ା ଯାଇଥିଲା ନିଜର ଗୋଦାମ ଘର ଭିତରୁ। ଏଥିରୁ ବୈଜ୍ଞାନିକମାନେ କେଉଁପ୍ରକାର ରାସାୟନିକ ପ୍ରଲେପ ଆବିଷ୍କାର କରିବେ ! ଅତିପ୍ରାକୃତିକ ଶକ୍ତି ପ୍ରତି ବିଶ୍ୱାସ ରଖିବା ପାଇଁ ଏହା କ'ଣ ସତ୍ୟସାଇଙ୍କର ଥିଲା ମୋତେ ଏକ ଶିକ୍ଷା !

ଏହାପରେ ଆଉ କେତେଗୁଡ଼ିଏ 'ମିରାକ୍‌ଲ୍'ର ଅନୁଭୂତି ଉପଲବ୍ଧି କଲି। ସେ ସବୁ ବିଷୟ ଲେଖିବାକୁ ଯାଉନାହିଁ। ରାଜନୀତିରେ ପ୍ରବେଶ କରିବାକୁ ବାବା ନିଷେଧ କରିଥିଲେ। ତାହା ସତ୍ତ୍ୱେ, ଘଟଣାଚକ୍ରରେ ଯେତେବେଳେ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେଲି, ସେତେବେଳେ ବାବାଙ୍କ କଥା ସ୍ମରଣ ପୂର୍ବକ ନୀତିବାଦୀ ରୂପେ ରାଜନୀତି କରିବି ବୋଲି ସଂକଳ୍ପ ନେଇଥିଲି। ସେଥିଯୋଗୁଁ କଂଗ୍ରେସ ପାର୍ଟିର ଲକ୍ଷ ଲକ୍ଷ ଟଙ୍କା କିମ୍ବା ବ୍ୟବସାୟୀମାନଙ୍କ ପ୍ରଚୁର ଚାନ୍ଦା ଗ୍ରହଣ କଲିନାହିଁ। ପରାଜୟ ପରେ ଯେଉଁ ପରମ ସନ୍ତୋଷ ଲାଭ କଲି, ତାହା ମଧ୍ୟ ଥାଏ ବାବାଙ୍କର ଅନୁଗ୍ରହ। ବୋଧହୁଏ ମୋର ପୂର୍ବ ଆଶାର ଅସାରତା ଦର୍ଶାଇବା ନିମନ୍ତେ ରାଜନୀତିରେ ପ୍ରବେଶ କରାଇ, ସେଥିରୁ ଉଦ୍ଧାର କରିବା ଥିଲା ତାଙ୍କର ଇଚ୍ଛା। ଅନ୍ତତଃ ପକ୍ଷେ, ମୋ ମନରେ ଏହିପରି ଧାରଣା ସୃଷ୍ଟି ହୋଇଥିଲା।

ତେଣେ, ବାରମ୍ବାର ପ୍ରଶାନ୍ତି ଯିବାକୁ ପ୍ରେରଣା ଆସିଯାଉଥାଏ। ପ୍ରତ୍ୟେକ ଥର, ଦିବ୍ୟଶକ୍ତିର ପ୍ରଭାବ ଅନୁଭବ କରିପାରୁଥାଏଁ। ସେଠାରେ ଯେଉଁ ଅସଂଖ୍ୟ ଲୋକଙ୍କୁ ଦେଖୁଥିଲି, ସେମାନଙ୍କ ମଧ୍ୟରେ ଥାନ୍ତି ଅନେକାନେକ ପାଶ୍ଚାତ୍ୟ ଓ ଭାରତୀୟ ବୈଜ୍ଞାନିକ, ମନସ୍ତତ୍ତ୍ୱବିଦ୍, ଦାର୍ଶନିକ ଓ ଲେଖକ। କେତେଜଣ ନାସ୍ତିବାଦୀଙ୍କୁ ମଧ୍ୟ ଦେଖିଥିଲି। ଅଷ୍ଟ୍ରେଲିଆ, କାନାଡା, ଜାର୍ମାନୀ, ଇଂଲଣ୍ଡ, ଫ୍ରାନ୍ସ, ଇଟାଲୀ, ଯୁକ୍ତରାଷ୍ଟ୍ର, ଜାପାନ ଓ ଦକ୍ଷିଣ ଆମେରିକାର ବିଭିନ୍ନ ଦେଶର ଲୋକଙ୍କୁ ଦେଖି

ବୁଝି ହେଉଥାଏ ସତ୍ୟସାଇ ବାବାଙ୍କର ସାର୍ବଜନୀନ ପ୍ରଭାବ। ଥରେ, ଆରବ ଜଗତର ଦଳେ ମୁସଲମାନ ସାଇ-ବିଶ୍ୱାସୀଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି। ସେମାନେ ଚାକ୍ଷୁଷ ଯେଉଁ 'ମିରାକ୍‌ଲ୍' ଦେଖିଥିଲେ, ତାହା ବର୍ଣ୍ଣନା କଲେ। ସେଠାରେ ରହଣି ବେଳେ ଜଣାଯାଉଥାଏ, ପ୍ରଶାନ୍ତି ନିଳୟମ୍ ହେଉଛି ଦେଶ, ଧର୍ମ, ଜାତି ନିର୍ବିଶେଷରେ ସମସ୍ତଙ୍କ ପାଇଁ ଏ ଯୁଗର ଏକ ପବିତ୍ର ତୀର୍ଥସ୍ଥାନ।

## ପୁସ୍ତକ ରଚନା ନିମନ୍ତେ ପ୍ରେରଣା

ଥରକୁ ଥର ପ୍ରଶାନ୍ତି ଯାତ୍ରା ଓ ସେଠାରେ ସତ୍ୟସାଇ ବାବାଙ୍କର ନାନାବିଧ ଅଲୌକିକ କାର୍ଯ୍ୟ ସମ୍ପାଦନ ଦେଖି ଅତିପ୍ରାକୃତିକ ଓ ଆଧ୍ୟାତ୍ମିକ ଶକ୍ତି ପ୍ରତି ବିଶ୍ୱାସ ଜନ୍ମିଲା। ଇତିହାସ ସଦାବେଳେ ବିଜ୍ଞାନସମ୍ମତ ଓ ସତ୍ୟ-ପ୍ରତିଷ୍ଠିତ ହେବା ଉଚିତ ବୋଲି ଯେଉଁ ଶୃଙ୍ଖଳା ଶିକ୍ଷା କରିଥିଲି, ତାହାର ଯଥାର୍ଥତା ପ୍ରତି ମନରେ ଦ୍ୱୈଧବୋଧ ହେଲା। ଆଧୁନିକ ଯୁଗର ଇତିହାସଲେଖକମାନେ ପୌରାଣିକ ଓ କାଳ୍ପନିକ ବିଷୟଗୁଡ଼ିକୁ ସମ୍ପୂର୍ଣ୍ଣରୂପେ ବିସର୍ଜନ ଦେବାଲାଗି ଶିକ୍ଷା ପାଇଥାନ୍ତି। ସବୁ ଯୁଗର ଧର୍ମପ୍ରବର୍ତ୍ତକ ଓ ସାଧୁପୁରୁଷମାନଙ୍କ ବିଷୟରେ ବର୍ଣ୍ଣିତ ହୋଇଥିବା କଥା ଓ ଉପକଥାମାନ ଅବାନ୍ତର ବୋଲି ବିବେଚନା କରିବା ହେଉଛି ଆଧୁନିକ ଐତିହାସିକମାନଙ୍କର ଦୀକ୍ଷା। ପ୍ରଖ୍ୟାତ ଫରାସୀ ପଣ୍ଡିତ ଭଲଟେୟାରଙ୍କ ଉକ୍ତି, ଯଥା– ଧର୍ମଗୁରୁମାନେ ହେଉଛନ୍ତି ପ୍ରତାରକ, ଅଲୌକିକତା ହେଉଛି ପ୍ରହେଳିକା ଏବଂ ଐଶ ସତ୍ୟ ପ୍ରକଟନ ହେଉଛି ମନୁଷ୍ୟର ମିଥ୍ୟା ରଚନା– ଏହି ପ୍ରକାର ଚିନ୍ତାଧାରା ଏ ଯୁଗର ଐତିହାସିକମାନଙ୍କୁ ପ୍ରଭାବିତ କରିଥାଏ। ସଂକ୍ଷେପରେ, ଯାହା ଅସ୍ୱାଭାବିକ, ଅପ୍ରାକୃତିକ ଓ ଅସମ୍ଭବ, ସତ୍ୟସିଦ୍ଧ ଇତିହାସ ତାହା ଗ୍ରହଣ କରିପାରିବ ନାହିଁ।

ଉପରୋକ୍ତ ଦୃଷ୍ଟିଭଙ୍ଗୀର ପରିଣାମ ଚିନ୍ତା କରାଯାଉ। ପୃଥିବୀ ଇତିହାସରେ ସାଧାରଣତଃ ତିନି ପର୍ଯ୍ୟାୟର ମହାନ ବ୍ୟକ୍ତିଙ୍କୁ ଦେଖିବାକୁ ମିଳେ, ମୁଖ୍ୟତଃ ଯେଉଁମାନଙ୍କ ଜୀବନୀ ଉପରେ ଆଲୋକପାତ କରାଯାଏ। ପ୍ରଥମ ପର୍ଯ୍ୟାୟରେ ଅଛନ୍ତି ଧର୍ମପ୍ରବର୍ତ୍ତକ, ଆଧ୍ୟାତ୍ମିକ ପୁରୁଷ, ଧର୍ମ ପ୍ରଚାରକ, ତତ୍ତ୍ୱଜ୍ଞାନୀ ଓ ଦିବ୍ୟଦର୍ଶୀ ସାଧୁସନ୍ଥମାନେ ଯେଉଁମାନେ ଯୁଗେ ଯୁଗେ ମାନବ ଜାତିକୁ ଦିବ୍ୟଦୃଷ୍ଟି ଓ ପରମ ଜ୍ଞାନ ଦେଇଯାଇଛନ୍ତି। ଦ୍ୱିତୀୟ ପର୍ଯ୍ୟାୟରେ ଦେଖିବାକୁ ମିଳିଥାନ୍ତି ବୀରପୁରୁଷ ଓ ଯୋଦ୍ଧା, ରାଜ୍ୟ ଓ ସାମ୍ରାଜ୍ୟ ନିର୍ମାତା, ଦିଗ୍‌ବିଜୟୀ ଓ ଆକ୍ରମଣକାରୀ, ରାଜା ଓ ସମ୍ରାଟ, ବିପ୍ଳବୀ ଓ ରାଷ୍ଟ୍ରନାୟକ, ଯେଉଁମାନେ ମନୁଷ୍ୟ ଜାତିର ପାର୍ଥିବ ଓ ସାଂସାରିକ ଜୀବନ ନିୟନ୍ତ୍ରଣ କରିଥାନ୍ତି। ତୃତୀୟ ପର୍ଯ୍ୟାୟରେ ଅଛନ୍ତି

କବି ଓ ସାହିତ୍ୟିକ, ଦାର୍ଶନିକ ଓ ଭାବୁକ, ଶିଳ୍ପୀ ଓ ଚିତ୍ରକର, ଉଦ୍ଭାବକ ଓ ଆବିଷ୍କାରକ, ବୈଜ୍ଞାନିକ ଓ ସଂସ୍କାରକ, ଯେଉଁମାନଙ୍କ ଅବଦାନ ଲାଗି ମନୁଷ୍ୟ ସଭ୍ୟତାର ପରିବୃଦ୍ଧି ଘଟିଛି।

ଐତିହାସିକମାନେ ଶେଷ ଦୁଇ ପର୍ଯ୍ୟାୟର ମନୁଷ୍ୟମାନଙ୍କର ଜୀବନ ଓ କାର୍ଯ୍ୟକଳାପ ଉପରେ ଆଲୋକପାତ କଲାବେଳେ ବିଶେଷ ସମସ୍ୟାର ସମ୍ମୁଖୀନ ହୁଅନ୍ତି ନାହିଁ। କାରଣ, ସେମାନଙ୍କ ସମ୍ବନ୍ଧରେ ମିଳୁଥିବା ତଥ୍ୟର ସତ୍ୟାସତ୍ୟ ନିରୂପଣ କରିବା ସହଜ। ଅପର ପକ୍ଷରେ, ପ୍ରଥମ ପର୍ଯ୍ୟାୟର ମହାପୁରୁଷମାନଙ୍କର ଜୀବନୀ ଲେଖିଲାବେଳେ ଐତିହାସିକମାନେ ଧର୍ମଶାସ୍ତ୍ରବର୍ଣ୍ଣିତ ଅତିପ୍ରାକୃତିକ ଘଟଣାରାଜିକୁ ସତ୍ୟ ବୋଲି ମାନିନେଇପାରନ୍ତି ନାହିଁ। ଯାହା ସବୁ ଅସ୍ୱାଭାବିକ ଓ ଅତିମାନବୀୟ ଜଣାଯାଏ, ତାହା ଇତିହାସ ପୃଷ୍ଠାରେ ସ୍ଥାନ ପାଏ ନାହିଁ।

ଫଳତଃ, ଅତୀତ ଯୁଗର ଜୋରୋଷ୍ଟାର, ବୁଦ୍ଧ, ଯିଶୁ, ମହମ୍ମଦ ଓ ଶଙ୍କର, କିମ୍ବା ମଧ୍ୟଯୁଗର ନାନକ, ଅଥବା ଆଧୁନିକ ଯୁଗର ରାମକୃଷ୍ଣ ପରମହଂସ ସଦୃଶ ମହାପୁରୁଷମାନଙ୍କ ଜୀବନୀ ପ୍ରତି ଗୁରୁତ୍ୱ ନ ଦେଇ ଐତିହାସିକମାନେ ସେମାନଙ୍କ ପ୍ରଚାରିତ ଧର୍ମ ବା ନୀତି ପ୍ରତି ଗୁରୁତ୍ୱ ଦେଇ ଇତିହାସ ରଚନା କରନ୍ତି। ରାମକୃଷ୍ଣ ପରମହଂସଙ୍କର କେଉଁ ପ୍ରକାର ଅଲୌକିକ ଶକ୍ତିର ପ୍ରତ୍ୟକ୍ଷ ଅନୁଭୂତି ବଳରେ ସ୍ୱାମୀ ବିବେକାନନ୍ଦ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ, ସେ କଥା ମଧ୍ୟ ଛାତ୍ରମାନଙ୍କୁ କହିବା ନିମନ୍ତେ ଅଧ୍ୟାପକମାନଙ୍କ ସାହସ ହେବନାହିଁ, କାରଣ ତାହା ବିଜ୍ଞାନସମ୍ମତ ନୁହେଁ।

ଏତିକିରେ କଥା ଶେଷ ହେଲା ନାହିଁ। ଆଧୁନିକ ଐତିହାସିକମାନେ ଅତୀତର ଧର୍ମପ୍ରବର୍ତ୍ତକମାନଙ୍କୁ ପାର୍ଥିବ ଜଗତର 'ଛଳନାକାରୀ' ବୋଲି ବର୍ଣ୍ଣନା କରିବା ସହ ସେମାନଙ୍କ ଅନୁଗାମୀମାନଙ୍କୁ ଅନ୍ଧବିଶ୍ୱାସୀ, ଭୀରୁ, ବୁଦ୍ଧିହୀନ, ଅଜ୍ଞ ଓ ଦୁର୍ବଳଚେତା ଇତ୍ୟାଦି ଆଖ୍ୟା ଦେବାକୁ ଭୁଲିଲେ ନାହିଁ। କେହି କେହି ମତଦେଲେ ଯେ, ଅତୀତର ଧର୍ମଗୁରୁମାନେ ଏ ଯୁଗରେ ଆଉ ଜନ୍ମିପାରିବେ ନାହିଁ, କାରଣ ଏହି ବୈଜ୍ଞାନିକ ଯୁଗରେ ଅଜ୍ଞତାର ସ୍ଥାନ ନାହିଁ ଏବଂ ଗୁରୁମାନଙ୍କର ମିଥ୍ୟା ପ୍ରହେଳିକା ମନୁଷ୍ୟ ସମାଜ ଗ୍ରହଣ କରିବ ନାହିଁ।

ସବୁ ମୂଳରେ ଥିଲା ସେହି ଗୋଟିଏ ସନ୍ଦେହ– ଅତିପ୍ରାକୃତିକ 'ମିରାକ୍ଲ୍' ବା ଚମତ୍କାରିତା କ'ଣ ସତ୍ୟ ବା ସମ୍ଭବ ହୋଇପାରେ? ଯଦି ନୁହେଁ, ତେବେ ବୁଦ୍ଧ ବା ଯିଶୁ, ମହମ୍ମଦ ବା ନାନକ ପ୍ରଭୃତି ମନୁଷ୍ୟ ଏ ଯୁଗରେ ଜନ୍ମଲାଭ

କରିପାରିବେ କି ? ଊନବିଂଶ ଶତାବ୍ଦୀର ଜଣେ ପାଶ୍ଚାତ୍ୟ ପଣ୍ଡିତ "False Divinitics" ନାମକ ଗ୍ରନ୍ଥରେ ମୋଜେସ୍, ଖ୍ରୀଷ୍ଟ ଓ ମହମ୍ମଦଙ୍କୁ କଠୋର ଭାଷାରେ ନିନ୍ଦା କରି ଶେଷରେ ଲେଖିଲେ, "ଏମାନେ ଯଦି ଦେବତ୍ୱ ଦାବି କରିବେ, ଆମେ ଅବଶ୍ୟ ସେମାନଙ୍କୁ କ୍ରୁଶବିଦ୍ଧ କରିବୁ ନାହିଁ, କିନ୍ତୁ ସେମାନଙ୍କୁ ଦେଖି ହସିବୁ କିମ୍ବା ପାଗଳ ଗାରଦରେ ଭର୍ତ୍ତିକରି ପ୍ରତାରକମାନେ କାହିଁକି ନିଜକୁ ରକ୍ଷା କରିପାରିଲେ ନାହିଁ ବୋଲି ପଚାରିବୁ।" ଅର୍ଥାତ୍, ସେମାନଙ୍କର ଯଦି ଅଲୌକିକ ଶକ୍ତି ରହିଛି, ତେବେ ସେମାନେ ବନ୍ଦୀ ହେଲେ କିପରି ?

ଏହି ପ୍ରକାର ଲେଖାର ଆଦି ଅନ୍ତ ନାହିଁ। ଗୋଟିଏ ଦୃଷ୍ଟାନ୍ତ ଦେଉଛି। ବୈଜ୍ଞାନିକ ପ୍ରଣାଳୀରେ ଇତିହାସ ରଚନା ଦୃଷ୍ଟିରୁ ଯିଶୁଖ୍ରୀଷ୍ଟଙ୍କ ଜୀବନୀ ଲେଖିଲେ ଆର୍ଣ୍ଣେଷ୍ଟ ରେନାନ ନାମକ ଜଣେ ଫରାସୀ ଗବେଷକ (ଜନ୍ମ ୧୮୨୩, ମୃତ୍ୟୁ ୧୮୯୨)। ତାଙ୍କ ପୁସ୍ତକ ଖ୍ରୀଷ୍ଟିଆନ ଜଗତରେ ଚହଳ ପକାଇଲା। ବିଦ୍ୱାନମାନେ ସେହି ଗ୍ରନ୍ଥକୁ ଯିଶୁଙ୍କ ପ୍ରଥମ ଜୀବନଚରିତ ରୂପେ ମାନିନେଲେ, ଯେଉଁଥିରେ ତାଙ୍କୁ 'ଈଶ୍ୱରଙ୍କ ପୁତ୍ର' ରୂପେ ବର୍ଣ୍ଣନା ନ କରି ଜଣେ ମନୁଷ୍ୟ ରୂପେ ବର୍ଣ୍ଣନା କରାଯାଇଛି। ବହୁ ସଂଖ୍ୟାରେ ବହି ବିକ୍ରି ହେଲା, ସଂସ୍କରଣ ପରେ ସଂସ୍କରଣ ପ୍ରକାଶ ପାଇଲା। ସେହି ଗ୍ରନ୍ଥରେ ରେନାନ୍ ପ୍ରମାଣ କଲେ ଯେ, ଯିଶୁଙ୍କର ସମସ୍ତ ପ୍ରକାର 'ମିରାକ୍‌ଲ୍' ହେଉଛି ମିଥ୍ୟା। ଯିଶୁଙ୍କୁ ପ୍ରତାରକ, ପ୍ରବଞ୍ଚକ, ଠକ, ଶଠ, ମିଥ୍ୟାବାଦୀ ଓ ଛଳନାକାରୀ ରୂପେ ବର୍ଣ୍ଣନା କରି ରେନାନ ଶେଷରେ ମତ ଦେଲେ, "ସୁତରାଂ, ଆମେ ବିନା ସଂକୋଚରେ ସ୍ୱୀକାର କରିବୁ ଯେ, ଯେଉଁ ପ୍ରକାର କାର୍ଯ୍ୟମାନ ବର୍ତ୍ତମାନ ମାୟା ବା ମୂର୍ଖତା ବୋଲି ବିବେଚନା କରାଯିବ, ସେହି ପ୍ରକାର କାର୍ଯ୍ୟମାନ ଯିଶୁଙ୍କ ଜୀବନରେ ମୁଖ୍ୟ ସ୍ଥାନ ଅଧିକାର କରିଥିଲା।"

ମିରାକ୍‌ଲ୍ ବା ଅଲୌକିକ କାଣ୍ଡ ସମ୍ବନ୍ଧରେ ଐତିହାସିକମାନଙ୍କ ମନରେ ଥିବା ଧାରଣାର ପରିପ୍ରେକ୍ଷୀରେ ମୋ ମନରେ ଆଲୋଡ଼ନ ସୃଷ୍ଟିହେଲା ସତ୍ୟସାଇ ବାବାଙ୍କର ବିସ୍ମୟଜନକ କାର୍ଯ୍ୟମାନ ଦେଖିଲା ପରେ। ସ୍ୱଚକ୍ଷୁରେ ଦେଖିଲି ଅନେକ ଦୃଶ୍ୟ। ପାଶ୍ଚାତ୍ୟ ଦେଶମାନଙ୍କରୁ ଆସୁଥିବା ବୈଜ୍ଞାନିକ ଓ କୌତୂହଳୀ ବା ଜିଜ୍ଞାସୁ ବ୍ୟକ୍ତିମାନଙ୍କ ସହିତ କଥାବାର୍ତ୍ତାରୁ ବାବାଙ୍କ ମିରାକ୍‌ଲ୍ ପ୍ରତି ସେମାନଙ୍କର ଅଗାଧ ବିଶ୍ୱାସ ଥିବା ଜାଣିଲି। ମନକୁ ପ୍ରଶ୍ନ ଆସିଲା, ଯଦି ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ସତ୍ୟସାଇ ବାବା ପୃଥିବୀର ଲକ୍ଷ ଲକ୍ଷ ନରନାରୀଙ୍କ ସମ୍ମୁଖରେ ଦିନ ପରେ ଦିନ, ବର୍ଷ ପରେ ବର୍ଷ ନିଜର ଅତିମାନବୀୟ ଅତ୍ୟାଶ୍ଚର୍ଯ୍ୟ ଶକ୍ତି ପ୍ରଦର୍ଶନ

କରିବାକୁ ସମର୍ଥ ହେଉଛନ୍ତି, ତେବେ ଅତୀତ ଯୁଗର ଜୋରୋଷ୍ଟାର, ବୁଦ୍ଧ ବା ଯିଶୁଖ୍ରୀଷ୍ଟ କାହିଁକି ବା ସେହିପରି ଶକ୍ତି ପ୍ରଦର୍ଶନ କରିପାରି ନ ଥିବେ !

କୁହାଯାଇଛି, ଅତୀତର ଧର୍ମଗୁରୁମାନେ ଅଜ୍ଞ, ନିରକ୍ଷର, ଦରିଦ୍ର ଓ ସରଳମନା ନରନାରୀଙ୍କ ସମ୍ମୁଖରେ ଅଦ୍ଭୁତ କାଣ୍ଡ ଓ ଭେଳିକି ଦେଖାଇ ନିଜର ଦେବତ୍ୱ ପ୍ରମାଣ କରିପାରୁଥିଲେ। ପ୍ରକୃତ ପକ୍ଷେ, ଯିଶୁଙ୍କ ପରି ଜଣେ ମନୁଷ୍ୟ ମିଥ୍ୟା ଓ ପ୍ରତାରଣାର ଆଶ୍ରୟ ନେଇ ନିଜକୁ 'ଈଶ୍ୱରଙ୍କ ପୁତ୍ର' ବୋଲି ଦାବି କରିପାରିଥିବେ କି ତାହା ଚିନ୍ତାର ବିଷୟ। ଏକଥା ସତ୍ୟ ହୋଇପାରେ ଯେ, ଜୋରୋଷ୍ଟାର, ବୁଦ୍ଧ ଓ ଯିଶୁଙ୍କ ପ୍ରତ୍ୟକ୍ଷ ଶିଷ୍ୟମାନେ ତଥା ପରବର୍ତ୍ତୀ ଯୁଗର ଭକ୍ତମାନେ ସେମାନଙ୍କ ମିରାକ୍‌ଲ୍‌ଗୁଡ଼ିକୁ ଅତିରଞ୍ଜିତ କରି ବର୍ଣ୍ଣନା କରିଯାଇଥିଲେ। କିନ୍ତୁ ଏହାର ଅର୍ଥ ନୁହେଁ ଯେ ସେମାନଙ୍କ ପ୍ରଦର୍ଶିତ ସମସ୍ତ ପ୍ରକାର ମିରାକ୍‌ଲ୍ ଅସ୍ୱୀକାର କରାଯିବ !

ଗଭୀର ଭାବେ ଚିନ୍ତାକଲି, ଯଦି ଏ ଯୁଗର ସତ୍ୟସାଇ ବାବାଙ୍କର ମିରାକ୍‌ଲ୍‌ମାନ ସମ୍ଭବପର, ତେବେ ଦୂର ଅତୀତର ଯିଶୁଙ୍କର ମିରାକ୍‌ଲ୍ କାହିଁକି ଅସ୍ୱୀକାର କରାଯିବ ? ଯିଶୁଙ୍କ ଅତିପ୍ରାକୃତିକ କାର୍ଯ୍ୟକଳାପ ଦେଖିଥିଲେ ସଂକୀର୍ଣ୍ଣ ନାଜାରେଥ ନାମକ ସ୍ଥାନର ନିରକ୍ଷର ଧୀବର ସମ୍ପ୍ରଦାୟ ଏବଂ ଦୀନଦୁଃଖୀ ଅଥବା ରୋଗାକ୍ରାନ୍ତ ଆତୁରମାନେ। ଅନ୍ୟ ପକ୍ଷରେ, ସତ୍ୟସାଇ ବାବାଙ୍କ ମିରାକ୍‌ଲ୍ ଦେଖୁଛନ୍ତି ପ୍ରାଚ୍ୟ ଓ ପାଶ୍ଚାତ୍ୟର ଅସଂଖ୍ୟ ବିଜ୍ଞ ବୈଜ୍ଞାନିକ, ହେତୁବାଦୀ, ଯୁକ୍ତିବାଦୀ, ବୁଦ୍ଧିବାଦୀ ଓ ନାସ୍ତିବାଦୀ। ବିଶେଷଜ୍ଞ ଓ ଅବିଶ୍ୱାସୀମାନେ ଯଦି 'ସତ୍ୟସାଇ ମିରାକ୍‌ଲ୍'କୁ ସତ୍ୟ ବୋଲି ସ୍ୱୀକାର କରୁଛନ୍ତି, ତେବେ ଅତୀତର ଦେବତ୍ୱସମ୍ପନ୍ନ ମହାପୁରୁଷମାନଙ୍କ କାର୍ଯ୍ୟ ଦିଗରେ କଟାକ୍ଷପାତ କରିବା ସମୀଚୀନ ବା ଯୁକ୍ତିଯୁକ୍ତ ନୁହେଁ ବୋଲି ମୋର ଧାରଣା ଦୃଢ଼ୀଭୂତ ହେଲା।

ଏକ ପୁସ୍ତକ ରଚନା ନିମନ୍ତେ ଅଧ୍ୟବସାୟ ଆରମ୍ଭ କଲି। ଜୋରୋଷ୍ଟାର, ବୁଦ୍ଧ, ଯିଶୁଖ୍ରୀଷ୍ଟ, ମହମ୍ମଦ ଓ ନାନକ, ଏହି ପାଞ୍ଚଜଣ ଧର୍ମପ୍ରବର୍ତ୍ତକଙ୍କ ସମ୍ବନ୍ଧରେ ଶାସ୍ତ୍ରବର୍ଣ୍ଣିତ ମିରାକ୍‌ଲ୍‌ଗୁଡ଼ିକର ବିବରଣୀ ସଂଗ୍ରହ କଲି। ବହିର ପ୍ରଥମ ଭାଗରେ ସେଗୁଡ଼ିକ ଉଲ୍ଲେଖ କଲି। ଦ୍ୱିତୀୟ ଭାଗରେ ଲେଖିଲି ସତ୍ୟସାଇ ବାବାଙ୍କର କେତେଗୋଟି ମିରାକ୍‌ଲ୍ କଥା। ହାୱାର୍ଡ ମାର୍ଫେଟ୍, ଜନ ହିସଲପ, ସାମୁଏଲ ସ୍ୟାଣ୍ଡଉଇସ୍, ଫିଲିସ୍ କ୍ରିଷ୍ଟାଲ ଓ ଏର୍‌ଲେଣ୍ଡର ହେରାଲଡ୍‌ସନ ପ୍ରଭୃତି ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଅନୁସନ୍ଧାନ, ଅନୁଧ୍ୟାନ, ବ୍ୟକ୍ତିଗତ ଅନୁଭୂତି ଓ ଦୀର୍ଘକାଳ ଗବେଷଣାଲବ୍ଧ ମିରାକ୍‌ଲ୍‌ମାନ ଉଲ୍ଲେଖ କଲି। ବହିର ନାମ ରଖିଲି, "Miracles of Mankind's Great Saviours: Zoroaster to Sathya Sai"। ୧୯୯୨ରେ ପ୍ରଥମ ସଂସ୍କରଣ

ଦିଲ୍ଲୀରେ ପ୍ରକାଶିତ ହେଲା। କିଛି ସମୟ ପରେ ଦ୍ୱିତୀୟ ସଂସ୍କରଣ ମୁଦ୍ରିତ ହେଲା। ଜଣେ ହଙ୍ଗେରୀୟ ଅଧ୍ୟାପକ ତାଙ୍କ ଦେଶର ଭାଷାରେ ବହି ଅନୁବାଦ କରିବା ପାଇଁ ଅନୁମତି ପାଇଲେ।

## ବିଶ୍ୱାସ ବିଷୟକ ଶେଷକଥା

ସ୍ୱାର୍ଥପର ମନୁଷ୍ୟ ପକ୍ଷରେ ବିଶ୍ୱାସ ବା ଭକ୍ତି ସହିତ ନିଜର ବ୍ୟକ୍ତିଗତ ଅଭୀପ୍ସା ଜଡ଼ିତ ରହିବା ସ୍ୱାଭାବିକ । କାମନା ବାସନାର ଅନେକ ଊର୍ଦ୍ଧ୍ୱରେ ରହି ଆତ୍ମୋପଲବ୍ଧି ସ୍ତରରେ ଉପନୀତ ହେବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ଯେଉଁପ୍ରକାର ସ୍ୱଚେଷ୍ଟାସିଦ୍ଧ ଚେତନା, ଆତ୍ମସଂଯମ ଓ ଆତ୍ମତ୍ୟାଗ ବଳରେ ଉଚ୍ଚତର ଆଧ୍ୟାତ୍ମିକ ସୋପାନ ଆରୋହଣ କରିବା ସମ୍ଭବପର, ତାହା ବସ୍ତୁବାଦୀ ବୈଷୟିକ ଜୀବନାସକ୍ତ ବ୍ୟକ୍ତିର ସାଧନାର ଅତୀତ। ସତ୍ୟସାଇ ବାବାଙ୍କର ମହାର୍ଘ ତାତ୍ତ୍ୱିକ ବାଣୀ ମଧ୍ୟରେ ଯେଉଁ ଗଭୀର ତତ୍ତ୍ୱଜ୍ଞାନ ନିହିତ ଅଛି, ତାହା ହୃଦୟଙ୍ଗମ କରିବା କିମ୍ବା ତଦନୁଯାୟୀ କାର୍ଯ୍ୟ କରିବା ମୋ ପରି ବ୍ୟକ୍ତି ପକ୍ଷରେ ଏକ ବ୍ୟର୍ଥ ପ୍ରୟାସ ବୋଲି ଜାଣିପାରିଲି।

ସନ୍ଦେହରୁ ମୁକ୍ତ ହୋଇପାରିଲି ନାହିଁ— ଅଦୃଶ୍ୟ ଈଶ୍ୱର ଅଥବା ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ ହେଉଥିବା ଐଶ ପୁରୁଷମାନେ କ'ଣ ମନୁଷ୍ୟର ଶୋକ, ଦୁଃଖ, ବିପଦ, ଆପଦ, ଶାରୀରିକ ବ୍ୟାଧି ଓ ମାନସିକ ପୀଡ଼ା ଅପସାରଣ କରିପାରିବେ? ଯଦି ନୁହେଁ, ତେବେ କେବଳ ଭାଗ୍ୟବିଶ୍ୱାସ ବିନା ଅଶାନ୍ତ ପ୍ରାଣରେ ଶାନ୍ତି ମିଳିବ ନାହିଁ। ଯାହା ହେବାର ଥିବ, ତାହାହିଁ ହେବ, ଈଶ୍ୱର ବିଶ୍ୱାସ ପ୍ରଗାଢ଼ ହେଉ ଅଥବା ନ ହେଉ, ଥାଉ ବା ନଥାଉ।

''କିମ୍ବା ସ୍ୱୟମ୍ଭୂଃ ଶିବଶକ୍ତୀ ବିଷ୍ଣୁଃ
କପାଲଦୁଃଖଂ ନ କରୋତି ଦୂରମ୍।
ଅତଃପରୋ ଜୀବଃ ସ୍ୱକର୍ମଭୋଗଃ
କପାଲଃ କପାଲଃ କପାଲମୂଲମ୍ !!''

''ମାତୁଲୋ ଯସ୍ୟ ଗୋବିନ୍ଦଃ
ପିତା ଯସ୍ୟ ଧନଞ୍ଜୟଃ।
ସୋଽଭିମନ୍ୟୁଃ ରଣେ ଶେତେ
ନିୟତିଃ କେନ ବାଧ୍ୟତେ।''

ବାଲ୍ୟକାଳରେ ବାପାଙ୍କ ପାଖରୁ ଶୁଣି ମୁଖସ୍ଥ କରିଥିବା ଏହି ପଦଗୁଡ଼ିକ ଶେଷ ବେଳର ସାନ୍ତ୍ୱନା।

୭

## ସମାପ୍ତି

# ସାୟାହ୍ନ ଶୋଚନା



### ସମୟୋଚିତ ଅନୁଚିନ୍ତା

ମୃତ୍ୟୁ ଆଗରେ ବ୍ୟକ୍ତି ବା ବୟସ ବିଚାର ନ ଥାଏ । ଅସଂଖ୍ୟ ମନୁଷ୍ୟ ଅକାଳରେ ଚାଲିଯାନ୍ତି । ଯେଉଁମାନେ ପରିଣତ ବୟସରେ ପହଞ୍ଚିପାରନ୍ତି, ସେମାନଙ୍କ ଦିନ କାଳ ଶେଷ ହୋଇ ଆସିଲା ଜାଣି, ମାନସିକ ସ୍ତରରେ ମରଣ ପ୍ରତି ପ୍ରସ୍ତୁତ ରହିବା ଉଚିତ । ବୌଦ୍ଧ ଦର୍ଶନର ଏକ ମହାର୍ଘ ତତ୍ତ୍ୱର ସାରାଂଶ ହେଉଛି, "He who meditates on Death, attains Nirvana." 'ନିର୍ବାଣ' ଶବ୍ଦର ଅର୍ଥ ଉପଲବ୍ଧି କରିବା ସହଜ ନୁହେଁ । କିନ୍ତୁ, ମୃତ୍ୟୁ ପ୍ରତି ଆଗ୍ରହ ପ୍ରକାଶ କରିବା ସମ୍ଭବ ।

ଜରା ଓ ତତ୍‌ସଂଲଗ୍ନ ବ୍ୟାଧି ଦୁଃଖଦାୟକ ଜାଣି ସୁଦ୍ଧା ମୃତ୍ୟୁ ପ୍ରତି ଅନାଗ୍ରହ ପ୍ରକାଶ କରିବା ପ୍ରବୃତ୍ତି ମନୁଷ୍ୟର ଚିରାଚରିତ ଦୁର୍ବଳତା । ବକରୂପୀ ଧର୍ମ ଯେତେବେଳେ ଧର୍ମରାଜ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଥିଲେ, "କିମ୍ ଆଶ୍ଚର୍ଯ୍ୟମ୍", ସେ ଉତ୍ତର ଦେଇଥିଲେ,

"ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମମନ୍ଦିରମ୍ ।
ଶେଷାଃ ସ୍ଥିରତ୍ୱମିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃପରମ୍ ॥"

ମୃତ୍ୟୁର ଆଗମନ, ଅନୁମାନ ଶକ୍ତିର ଅତୀତ । ଏହି ଶାଶ୍ୱତ ସତ୍ୟର ସାକ୍ଷୀ ଇତିହାସ । ମାତ୍ର ୩୩ ବର୍ଷ ବୟସରେ ମହାବୀର ସିକନ୍ଦର ମୃତ୍ୟୁର ଶୀତଳ ସ୍ପର୍ଶରେ ଇହଧାମରୁ ବିଦାୟ ନେଇପାରନ୍ତି; କିମ୍ବା ମାତ୍ର ୩୯ ବର୍ଷ ବୟସରେ ମହାଯୋଗୀ ସ୍ୱାମୀ ବିବେକାନନ୍ଦ ଦେହତ୍ୟାଗ କରିପାରନ୍ତି । ଅଗଣିତ ଦୃଷ୍ଟାନ୍ତ । ଯଦି ମହାନ ପୁରୁଷମାନଙ୍କ ଜୀବନକାଳ ସୀମିତ ହୋଇପାରିଲା, ଆମ ପରି କୀଟପତଙ୍ଗ ତୁଲ୍ୟ ମନୁଷ୍ୟ କେତେକାଳ ଜୀବିତ ରହିବାକୁ ଆଶା କରିବା ଉଚିତ ?

''କେହି ରହିନାହିଁ, ରହିବେ ନାହିଁଟି ଭବରଙ୍ଗ ଭୂମିତଳେ''– ଜୀବନ ସାୟାହ୍ନରେ ରାତ୍ରିର ଅନ୍ଧକାରରେ ଅଦୃଶ୍ୟ ହେବା ନିମନ୍ତେ ଅଗ୍ରସର ହେବା ହିଁ ଆନନ୍ଦଦାୟକ। ''Men fear death as children fear to go in the dark,'' କହିଥିଲେ ଫ୍ରାନ୍‌ସିସ୍ ବ୍ୟାକନ୍। କିନ୍ତୁ ଅନ୍ଧକାରକୁ ଭୟ ନ କରିବା ପାଇଁ ଶିଶୁମାନଙ୍କୁ ଶିକ୍ଷା ଦିଆଯାଇଥାଏ।

ଭୟ ଆଣିଦେଲା, ପୁନର୍ଜନ୍ମର ଚିନ୍ତା। ପଞ୍ଚଭୂତର ଶରୀର ସିନା ପଞ୍ଚଭୂତରେ ମିଶିଯିବ। କିନ୍ତୁ ଆତ୍ମା? ହିନ୍ଦୁ ବିଶ୍ୱାସ ଅନୁଯାୟୀ, କର୍ମଫଳ ଭୋଗ ପାଇଁ ପୁନର୍ଜନ୍ମ ସୁନିଶ୍ଚିତ। ଜୀବନର କର୍ମତାଲିକା ଅନୁଧ୍ୟାନ କଲି। ପୁଣ୍ୟର ସଂଖ୍ୟା ଶୂନ୍ୟ, ପାପର ସଂଖ୍ୟା ଗଣନାତୀତ। ସୁତରାଂ, ମୃତ୍ୟୁପରେ ଶ୍ୱାନ ବା ଶୃଗାଳ ରୂପେ ଜନ୍ମିବା ଅସମ୍ଭବ ନୁହେଁ।

ଦିନେ ପ୍ରଶାନ୍ତି ନିଳୟମ୍ ପରିସରରେ ଜଣେ ବିଜ୍ଞ ବ୍ୟକ୍ତିଙ୍କ ସମ୍ମୁଖରେ ପୁନର୍ଜନ୍ମ ପ୍ରଶ୍ନ ଉତ୍ଥାପନ କଲି। ସେ ଉପଦେଶ ଦେଲେ, ''ଯଦି ଆଗାମୀ ଜୀବନ ପ୍ରତି ଶଙ୍କା ପ୍ରକାଶ ପାଉଛି, ତେବେ ଏ ଯୁଗର ସର୍ବପ୍ରଧାନ ବୈଜ୍ଞାନିକ ଆଲବାର୍ଟ ଆଇନଷ୍ଟାଇନଙ୍କ ମତ ଗ୍ରହଣ କରିନେଲେ ଶାନ୍ତି ଲାଭ କରିବ। ଆଇନଷ୍ଟାଇନ କହିଥିଲେ, ପ୍ରାଣ ଥାଏ ଶରୀର ରୂପୀ ଆଧାର ମଧ୍ୟରେ। ଆଧାର ଲୋପ ପାଇଲା କ୍ଷଣି, ତନ୍ମଧ୍ୟରେ ଥିବା ପ୍ରାଣ ମଧ୍ୟ ଲୋପ ପାଇଯାଏ। ଯେଉଁମାନେ ପୁନର୍ଜନ୍ମ ବା ଘଟ ପରିବର୍ତ୍ତନ କଥା କହନ୍ତି, ସେମାନେ ଶିଶୁସୁଲଭ ଅଜ୍ଞତା ପ୍ରକାଶ କରିଥାନ୍ତି।''

ଯଦି ପ୍ରକୃତପକ୍ଷେ ଆଇନଷ୍ଟାଇନ ଏହି ପ୍ରକାର ମତ ଦେଇଥିଲେ, ତାହା ସତ୍ୟ ହେଉ ବା ନ ହେଉ, ତାଙ୍କ ମତ ମନକୁ ସ୍ପର୍ଶକଲା ଓ ପୁନର୍ଜନ୍ମ ପ୍ରତି ଭୟ ରହିଲା ନାହିଁ। ସାନଭାଇ ମନୋଜକୁ ଏକଥା କହିଲାବେଳେ, ତାଙ୍କର ବକ୍ତବ୍ୟ ଥିଲା, ଆଇନଷ୍ଟାଇନ ନିଜର ବୈଜ୍ଞାନିକ ଚିନ୍ତାଧାରା ବଳରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଲେ, ତାହା ତାଙ୍କର ସିଦ୍ଧାନ୍ତ ହୋଇପାରେ, କିନ୍ତୁ ଏକମାତ୍ର ସତ୍ୟ ସିଦ୍ଧାନ୍ତ ହୋଇ ନ ପାରେ। ବୈଜ୍ଞାନିକ ସିଦ୍ଧାନ୍ତ ପରି ଆଧ୍ୟାତ୍ମିକ ସିଦ୍ଧାନ୍ତମାନ ରହିଛି। ପ୍ରତ୍ୟେକ ସିଦ୍ଧାନ୍ତର ପୁଣି ନିର୍ଦ୍ଦିଷ୍ଟ ତାତ୍ତ୍ୱିକ ବ୍ୟାଖ୍ୟାମାନ ରହିଛି। କୌଣସି ଗୋଟିଏ ଧାରଣା ''ଶେଷ ସିଦ୍ଧାନ୍ତ'' ହୋଇ ନ ପାରେ।

ମନୋଜ କଥାର ଅର୍ଥ ବୁଝିଲି। ତଥାପି, ନିଜର କ୍ଷୁଦ୍ର ବୁଦ୍ଧିରେ ଯେଉଁ ମତ ଭଲ ଲାଗିଲା, ତାହାକୁ ବିଶ୍ୱାସ ରୂପେ ବରଣ କରିନେଲେ ଶାନ୍ତି ମିଳିବ ବୋଲି ହୃଦ୍‌ବୋଧ ହେଲା। ମୃତ୍ୟୁପରେ ଯଦି ଅନ୍ୟ ଜୀବନ ନାହିଁ, ତେବେ ନିର୍ଭୟରେ ମୃତ୍ୟୁକୁ ଅପେକ୍ଷା କରିବା ଲାଗି ଆଗ୍ରହ ବଢ଼ିଲା।


ସାନଭାଇ ମନୋଜ

ଥରେ ଜଣେ ଅଶୀତିପର ବୃଦ୍ଧ ସାଧକଙ୍କ ମୁଖରୁ ଶୁଣିଥିଲି, ''ମଣିଷ ଯମକୁ ଡରେ ନାହିଁ, ଡରିଥାଏ ଯମର ଦୂତକୁ। ମୃତ୍ୟୁ ପରି ଧ୍ରୁବ ସତ୍ୟ ପ୍ରତି ଆଶଙ୍କା ନ ଥିଲା ବେଳେ, ମୃତ୍ୟୁର ଯନ୍ତ୍ରଣା ବିଷୟ ଚିନ୍ତା କରି ମଣିଷ ଆତଙ୍କିତ ଓ ଭୟାତୁର ରହେ।'' ବାସ୍ତବିକ ଯମଦୂତମାନେ ଆସିଥାନ୍ତି ଭିନ୍ନ ଭିନ୍ନ ରୂପରେ। ଜଣେ ଜଣେ ଦୂତ ସଂକେତ ନ ଦେଇ ଜୀବନ ନେଇ ଚାଲିଯାନ୍ତି। ଦୋଳିରେ ବସି ସମ୍ବାଦପତ୍ର ପଢୁଥିଲା ବେଳେ ମୋ ବାପା ନିମିଷ ମଧ୍ୟରେ ଚିରନିଦ୍ରାରେ ଶୋଇପଡ଼ିଥିଲେ। ମୋ ଭାଗ୍ୟରେ ସେପରି ସୁଖମୃତ୍ୟୁ ଥିବ ବୋଲି ପ୍ରମାଣ କ'ଣ! ଅନେକ ଯମଦୂତ ଆସନ୍ତି ଦାରୁଣ ଶାସ୍ତି ପ୍ରଦାନ ସହ ନେଇଯିବା ପାଇଁ। ଅପମୃତ୍ୟୁ, ସର୍ପାଘାତ, ବଜ୍ରପାତ ଇତ୍ୟାଦିରୁ ଆରମ୍ଭ କରି ପକ୍ଷାଘାତ, ମଧୁମେହ, ଶ୍ୱାସ, ଯକ୍ଷ୍ମା ପ୍ରଭୃତି ବହୁ କିସମର ଦୂତ। ଏ ଯୁଗର ସର୍ବାଧିକ ଭୟଙ୍କର ଯମଦୂତଙ୍କ ନାମ ହୋଇପାରେ କ୍ୟାନ୍‌ସାର। କାହାକୁ ସ୍ୱଳ୍ପକାଳ ନିର୍ଯ୍ୟାତନା ଦିଅନ୍ତି ତ ଆଉ କାହାକୁ ଦୀର୍ଘକାଳ!

ଏପରି ମଧ୍ୟ ଅନାମଧେୟ ଦୂତ ଅଛନ୍ତି ଯାହାଙ୍କ ଦଣ୍ଡ ଚିନ୍ତାରେ ଭୟ ଆସିବା ସ୍ୱାଭାବିକ। କୌଣସି ଏକ ପ୍ରସିଦ୍ଧ ରାଜବଂଶର ଲୋକଙ୍କ ସହ ମୋର ସମ୍ପର୍କ ଥାଏ। ଦିନେ ଶୁଣିଲି, ଗୁରୁତର ଅସୁସ୍ଥ ଅବସ୍ଥାରେ ରାଜାସାହେବ ତାଙ୍କ କଲିକତାସ୍ଥିତ ପ୍ରାସାଦରେ ଶଯ୍ୟାଶାୟୀ ଅଛନ୍ତି। ବର୍ଷାଧିକ ସମୟ ପରେ ତାଙ୍କ ମୃତ୍ୟୁ ସମ୍ବାଦ ମିଳିଲା। ଯେଉଁ ଭାବରେ ସେ ମରିଥିଲେ, ତାହାର ବିବରଣୀ ଶୁଣି ସ୍ତମ୍ଭିତ ହେଲି। ଅସ୍ୱାଭାବିକ ବ୍ୟାଧି। ସାରା ଦେହ ଅଚଳ ହେଲା, ବାକ୍‌ଶକ୍ତି ଲୋପ ପାଇଗଲା, ଅଥଚ ଚେତନା ଶକ୍ତି ପୂର୍ବପରି ରହିଲା। ସବୁପ୍ରକାର ଚିକିତ୍ସା ବିଫଳ ହେଲା। ଶିଳ୍ପପତି ପୁତ୍ର ଓ ଜାମାତାମାନେ ରାଜାଙ୍କ ସେବାଲାଗି ଛଅ ଜଣ ଭୃତ୍ୟ ନିଯୁକ୍ତ କରି ବୋମ୍ବେ ଓ ଦିଲୀସ୍ଥିତ ନିଜ ନିଜ କର୍ମକ୍ଷେତ୍ରକୁ ବିଦାୟ ନେଲେ। ମାସ ପରେ ମାସ ବିତିଚାଲିଲା, ତଥାପି ମୃତ୍ୟୁ ଆସିଲା ନାହିଁ। ସେବକମାନେ କର୍ତ୍ତବ୍ୟରେ ଘୋରତର ଅବହେଳା କଲେ। ବିଛଣାପତ୍ର ପରିଷ୍କାର କଲେ ନାହିଁ। ଶେଯ ଉପରେ ପରିତ୍ୟକ୍ତ ଆବର୍ଜନାରେ ବୁଡ଼ି ରହୁଥିଲା ବେଳେ, ଭୃତ୍ୟମାନେ ଆଗରେ ବୀଭତ୍ସ ଅଙ୍ଗଭଙ୍ଗୀ ଦେଖାଇ ଅଶ୍ରାବ୍ୟ ଭାଷାରେ କହୁଥାନ୍ତି, ''ତୋତେ ଯମ ନେଉନାହିଁ କାହିଁକି? ତୋ ପାଇଁ ଆମେ କାହିଁକି ନରକ ଘାଣ୍ଟି

ଘାଣ୍ଟି ମରିବୁ ?'' ରାଜାସାହେବ ଗାଳି ବୁଝୁଥାନ୍ତି, ଶୁଣୁଥାନ୍ତି, ଲାଞ୍ଛନା ଭୋଗୁଥାନ୍ତି; ନିର୍ବାକ ନିସ୍ପନ୍ଦ ଅବସ୍ଥାରେ ଜୁଳୁଜୁଳୁ ଆଖିରେ ଚାହିଁ ରହୁଥାନ୍ତି। ଶେଷରେ, ସାରା ଦେହ ଘା'ରେ ପଚିଗଲା। ଧନ୍ୟ ସେହି ଯମଦୂତ, ଧନ୍ୟ ତାଙ୍କର କର୍ତ୍ତବ୍ୟପାଳନ ନିମନ୍ତେ ସଦୟ ଆଗମନ।

ଚିନ୍ତା କଲି, ଯଦି ମରଣକୁ ଆହ୍ୱାନ କରିବା ଦ୍ୱାରା ଆନନ୍ଦ ମିଳୁଛି, ଯମଦୂତଙ୍କୁ ସ୍ୱାଗତ କରିବା ପାଇଁ ମାନସିକ ପ୍ରସ୍ତୁତିରୁ ମଧ୍ୟ ଆନନ୍ଦ ପାଇବା ଆବଶ୍ୟକ। ରାଜାସାହେବଙ୍କୁ ଯେଉଁ ଯମଦୂତ ନେଇଥିଲେ, ତାଙ୍କୁ ସୁଦ୍ଧା ସାଦରେ ଅଭ୍ୟର୍ଥନା ଜଣାଇବା ଉଚିତ। ଦିନେ ସନ୍ଧ୍ୟାରେ ଝିଅ ସଂଘମିତ୍ରା ଓ ପୁଅ ସିଦ୍ଧାର୍ଥକୁ ପାଖକୁ ଡାକି ନିଜର ଇଚ୍ଛା ପ୍ରକାଶ କଲି, ''କ୍ୟାନ୍‌ସାର ବା ପକ୍ଷାଘାତ ବା ଅନ୍ୟ କୌଣସି ସାଂଘାତିକ ବ୍ୟାଧି, ଯାହା ହେଲେ ବି ମୋର ଚିକିତ୍ସା ଦରକାର ନାହିଁ।'' ସେମାନଙ୍କ ପ୍ରତିବାଦ ଧ୍ୱନିର ଊର୍ଦ୍ଧ୍ୱକୁ ସ୍ୱର ଉତ୍ତୋଳନ କରି ଶେଷରେ ପଚାରିଲି, ''ଆଉ କେତେ ବର୍ଷ ମୁଁ ବଞ୍ଚି ରହିଲେ ତୁମେମାନେ ସୁଖୀ ହେବ ? ଜରା ଓ ବ୍ୟାଧି ଆକ୍ରମଣ କଲେ, ସେବା ସିନା କରିବ, କିନ୍ତୁ ମୋ କଷ୍ଟ ନେଇପାରିବ କି ?''

ବାସ୍ତରୀ ବର୍ଷରେ ଚାଲିଯିବାକୁ ଇଚ୍ଛା ହୋଇପାରେ। କିନ୍ତୁ ମୃତ୍ୟୁ ମନୁଷ୍ୟର ଇଚ୍ଛାଧୀନ ନୁହେଁ। ସୁତରାଂ, ଯମଦୂତଙ୍କ ଆଗମନ ଲାଗି ଦ୍ୱାର ଉନ୍ମୁକ୍ତ ରଖି ଅପେକ୍ଷା କରିବାକୁ ହେବ।

ଅଧ୍ୟାୟ ଶେଷ କଲାବେଳକୁ ଅନେକ ଦିନ ପୂର୍ବର ଗୋଟିଏ କଥା ସ୍ମୃତିପଟରେ ଖେଳିଯାଉଛି। ବାପାଙ୍କ ମୃତ୍ୟୁପରେ ଥରେ ସାଗର ଦ୍ୱୀପରେ ଥିବା ଆମ ଘରର ଭୂସମ୍ପତ୍ତି ଦେଖିବାକୁ ଯାଇଥିଲାବେଳେ ଶୁଣିଲି, ଦ୍ୱୀପରେ ଜଣେ ଶତାୟୁ ବ୍ୟକ୍ତି ଅଛନ୍ତି ଯିଏ କି ତାଙ୍କ ବାଲ୍ୟକାଳରେ ମୋ ପ୍ରପିତାମହଙ୍କୁ ଦେଖିଥିଲେ ଓ ପରେ ପିତାମହଙ୍କ ସହ ଘନିଷ୍ଠ ସମ୍ପର୍କରେ ଆସିଥିଲେ। ତାଙ୍କୁ ଦେଖିବା ପାଇଁ ଅନେକ ଦୂରରେ ଗଙ୍ଗା ତୀରରେ ଥିବା ତାଙ୍କ ବାସଘରେ ପହଞ୍ଚିଲି। ପରିଚୟ ଶୁଣି, ନିଃସ୍ପୃହ ସନ୍ନ୍ୟାସୀ ସାକ୍ଷାତ ଦେଲେ। ବାକ୍‌ଶକ୍ତି ଶିଥିଳ ହୋଇଆସିଥାଏ। ଓଡ଼ିଆ ଓ ବଙ୍ଗଳା ମିଶା ଅଦ୍ଭୁତ ଭାଷାରେ ସେ ମୋ ପୂର୍ବ ପୁରୁଷମାନଙ୍କ ନାମ ଧରି କେତେକ କଥା ଅସ୍ପଷ୍ଟ ସ୍ୱରରେ କହିଲେ। ଅଧିକ କଥା ଶୁଣିବା ଲାଗି ମୋର ଆଗ୍ରହ ଦେଖି ସେ ଅନୁରୋଧ କଲେ, ''ଆଉ ଥରେ ଆସିଲେ, ମନେପକାଇ ଆପଣଙ୍କ ପ୍ରପିତାମହ ଓ ପିତାମହଙ୍କ ସୁନ୍ଦରବନ ଆବାଦ ବିଷୟ କହିବି।''

ମୁଁ ଚାଲି ଆସିଲି। 'ଆଉ ଥରେ' ଆସିବାକୁ କହିଲାବେଳେ ସେ ଭାବି ନ ଥିଲେ ଯେ ମୁଁ ଏକ ବର୍ଷ ପରେ ଆଉ ଗୋଟିଏ ଶୀତକାଳରେ ପୁନର୍ବାର ସେଠାକୁ ଆସିବି !

ବର୍ଷକ ପରେ ପୁଣି ସାଗର ଦ୍ୱୀପରେ ପହଞ୍ଚି ଖବର ପାଇଲି ବୃଦ୍ଧ ସନ୍ନ୍ୟାସୀ ନିମୋନିଆରେ ପୀଡ଼ିତ। ଅନ୍ତିମ ଅବସ୍ଥା। ସନ୍ଧ୍ୟା ପୂର୍ବରୁ ତାଙ୍କ ଘରେ ପହଞ୍ଚିଲି। ଦେଖିବା ଲାଗି ଲୋକମାନେ ଆସୁଥାନ୍ତି। ଅନ୍ତିମ ଶଯ୍ୟାରେ ସଂଜ୍ଞାହୀନ ଅବସ୍ଥାରେ ସେ ଶୋଇଥାନ୍ତି। ଗୀତାପାଠ ଚାଲିଥାଏ। ଶେଷ ମୁହୂର୍ତ୍ତ ଆସନ୍ନ ପ୍ରାୟ। ମସ୍ତକ ପାଖରେ ଥିବା ଖଣ୍ଡିଏ ସ୍ଲେଟ୍‌ରେ ତାଙ୍କ ସ୍ୱହସ୍ତ ଲିଖିତ ବଡ଼ ବଡ଼ ଅକ୍ଷର ଦିଗକୁ ମୋର ଦୃଷ୍ଟି ଆକର୍ଷଣ କରାଗଲା। ବଙ୍ଗଳାରେ ଲେଖାଥାଏ– "ସମସ୍ତଙ୍କ ଉଦ୍ଦେଶ୍ୟରେ ରଖିଗଲି ମୋର ଶ୍ରଦ୍ଧା ଓ ଶେଷ ପ୍ରଣାମ।"

ଘର ଭିତରୁ ବାହାରି ଆସି ଗଙ୍ଗା ତୀରରେ ପଶ୍ଚିମ ଦିଗନ୍ତକୁ ଚାହିଁରହି ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖିଲି। ଦୂରରୁ ଭାସି ଆସୁଥାଏ କୌଣସି ଏକ ଅଜ୍ଞାତ ଗାୟକର ସୁଲଳିତ କଣ୍ଠସ୍ୱର–"ସନ୍ଧ୍ୟା ଘନାଲ ଗଙ୍ଗାର୍ ତୀରେ ନିଭିଲ ଦିନେର୍ ଆଲୋ।"

ବହିର ଏହି ଶେଷ ପୃଷ୍ଠାରେ ରହିଲା, ଅଗଣିତ ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ଆନ୍ତରିକ ଶ୍ରଦ୍ଧା ଓ ପରିଚିତ ଶୁଭେଚ୍ଛୁମାନଙ୍କ ଉଦ୍ଦେଶ୍ୟରେ ଶେଷ ନମସ୍କାର ! ଆଖି ଆଗରେ ଭାସିଯାଉଛି ସେ ଦିନ ଦେଖିଥିବା ଗଙ୍ଗାତୀରର ସ୍ନିଗ୍ଧ ସନ୍ଧ୍ୟା।





ପ୍ରଫେସର୍ ମନ୍ମଥ ନାଥ ଦାସ ଜଣେ ବରିଷ୍ଠ ଶିକ୍ଷାବିତ୍ ତଥା ରାଷ୍ଟ୍ରୀୟ ଓ ଆନ୍ତଃରାଷ୍ଟ୍ରୀୟ ସ୍ତରରେ ଲବ୍ଧପ୍ରତିଷ୍ଠ ଐତିହାସିକ ରୂପେ ସୁପରିଚିତ । ଏକ କର୍ମମୟ ଜୀବନ କାଳର ବହୁବିଧ ଅନୁଭୂତି ଓ ବାରମ୍ବାର ବିଦେଶ ଭ୍ରମଣ ବେଳର ସ୍ମରଣୀୟ ଅଭିଜ୍ଞତା ବହନପୂର୍ବକ ତାଙ୍କ ଲିଖିତ ଏହି ପୁସ୍ତକ "ଜୀବନର ପଥ ପ୍ରାନ୍ତେ ଦିଗନ୍ତର ଦୃଶ୍ୟ"ଓଡ଼ିଶାର ସମସାମୟିକ ସାହିତ୍ୟ ପ୍ରତି ଏକ ଉଲ୍ଲେଖନୀୟ ଅବଦାନ । ଦେଶ ବିଦେଶରେ ସେ ଦେଖିଛନ୍ତି ଅନେକାନେକ ସ୍ଥାନ, ବ୍ୟକ୍ତି ଓ ଘଟଣା । ସେଥିସଙ୍ଗେ ଉପଲବ୍ଧି କରିଛନ୍ତି ପୃଥିବୀର ପୃଥକ୍ ପୃଥକ୍ ସମାଜ ଓ ସମୟର ବିଶେଷତ୍ୱ । ଜିଜ୍ଞାସୁ ଦର୍ଶକର ଦୃଷ୍ଟିଭଙ୍ଗୀ ସହିତ ମିଶାଇଛନ୍ତି ଚିନ୍ତାଶୀଳ ଭାବୁକର ମନୋଭାବ । ବର୍ଣ୍ଣନା ମଧ୍ୟରେ ପରିସ୍ଫୁଟ ହୁଏ ବଳିଷ୍ଠ ଲେଖନୀର ପ୍ରଭାବ ।

ସାରସ୍ୱତ ସାଧନା-ପ୍ରସୂତ ଏହି ସୁଖପାଠ୍ୟ ଓ ଶିକ୍ଷଣୀୟ ପୁସ୍ତକ ପାଠକ ପାଠିକାଙ୍କ ସମ୍ମୁଖରେ ଉପସ୍ଥାପନ କରି ଆମେ ଆନନ୍ଦିତ ।

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ISBN 81-7411-198-0

ଟ ୧୯୦.୦୦